ପୀତାମ୍ବର ଦାଶ ବିରଚିତ

# ନୃସିଂହ ପୁରାଣ



ପ୍ରକାଶକ: ଧର୍ମଗ୍ରନ୍ଥ ଷ୍ଟୋର ଅଲିଶା ବଜାର, କଟକ-୨

ବିପ୍ର ପୀତାମ୍ବର ଦାସଙ୍କ ବିରଚିତ

# ନୃସିଂହ ପୁରାଣ

## ପ୍ରଥମ ସାଗର

(ନୂତନ ମୁଦ୍ରଣ)

ପ୍ରକାଶକ :

ଧର୍ମଗ୍ରନ୍ଥ ଷ୍ଟୋର



ପ୍ରାପ୍ତିସ୍ଥାନ :

ଧର୍ମଗ୍ରନ୍ଥ ଷ୍ଟୋର

ପରିଚାଳକ -

ଶ୍ରୀ ବିଦ୍ୟାଧର ସାହୁ

ଅଲିଶା ବଜାର, କଟକ - ୨

ଫୋନ୍ - ୬୦୮୨୯୬, ୬୦୭୯୨୨

ମୂଲ୍ୟ : ସତୁରୀ ଟଙ୍କା ମାତ୍ର

ସମ୍ପୂର୍ଣ୍ଣ ସେଟ୍‌ର ମୂଲ୍ୟ ଟ୩୫୦.୦୦ଙ୍କା

ବନ୍ଧାଇ ଖର୍ଚ୍ଚ ଲାଗୁହେବ

# : ସୂଚିପତ୍ର :



: ପ୍ରଥମ ସାଗରର ସୂଚିପତ୍ର ସମାପ୍ତ :

# ନୃସିଂହ ପୁରାଣ

## ପ୍ରଥମ ସାଗର

ଆସୀନ କମଳାସନେ କମଳୟା ବକ୍ଷସ୍ଥଳାସୀନୟା,
ବିଦ୍ୟୁଦ୍ଦ୍ୟୋତସଟାସମୂହବିଲସତ୍ ସୌମ୍ୟନନାମ୍ଭୋରୁହଂ ।
ଜାନ୍ୱାରର୍ପିତଯୋଗପଟ୍ଟମୁଭୟୋର୍ବାହୁ ଦୃଢ଼ା ବାୟତୌ,
ହସ୍ତାଭ୍ୟାଂ ଧୃତଶଙ୍ଖଚକ୍ରମନିଶଂ ଲକ୍ଷ୍ମୀନୃସିଂହ ଭଜେ ।୧।
ନାରାୟଣଂ ନମସ୍କୃତ୍ୟଂ ନରଂ ଚୈବ ନରୋତ୍ତମଂ ।
ଦେବୀଂ ସରସ୍ୱତୀଂ ବ୍ୟାସଂ ତତୋଜୟ ମୁଦୀରୟେତ୍ ।୨।
ବେଦେ ରାମାୟଣେ ଚୈବ ପୁରାୟେ ଭାରତେ ତଥା ।
ଆଦ୍ୟେ ଚାନ୍ତେ ଚ ମଧ୍ୟେ ଚ ହରିଃ ସର୍ବତ୍ର ଗୀୟତେ ।୩।
ତଂ ବେଦଶାସ୍ତ୍ର ପରିନିଷ୍ଠିତ ଶୁଦ୍ଧବୁଦ୍ଧିଂ ଚର୍ମାମ୍ବର ସୁରମୁନୀନ୍ଦ୍ରନୁତଂ କବୀନ୍ଦ୍ରଂ ।
କୃଷ୍ଣତ୍ୱିଷଂ କନକପିଙ୍ଗଜଟାକଲାପଂ ବ୍ୟାସଂ ନମାମି ଶିରସା ତିଲକଂମୁନିନାଂ ।୪।
ନାହଂ ତିଷ୍ଠାମି ବୈକୁଣ୍ଠେ ଯୋଗିନାଂ ହୃଦୟେ ନ ଚ ।
ମଦ୍ଭକ୍ତା ଯତ୍ର ଗାୟନ୍ତି ତତ୍ର ତିଷ୍ଠାମି ନାରଦ ।୫।

### ନୃସିଂହ ବନ୍ଦନା

ବନ୍ଦଇ ଶ୍ରୀ ଲକ୍ଷ୍ମୀକାନ୍ତ ନୃସିଂହ ଚରଣ
ନିରାକାର ନିର୍ବିକାର ନିର୍ଗୁଣ ସଗୁଣ ।
ଯାର ଆଦିଅନ୍ତ ଚାରିବେଦେ ନୋହେ କହି
ଅଶେଷ ବ୍ରହ୍ମାଣ୍ଡେ ଯାର ବିଶ୍ୱରୂପ ଦେହୀ ।
ମହା ଭୟଙ୍କର ମୂର୍ତ୍ତି ବିକଟ ଦର୍ଶନ
ସିଂହମୁଖ ରଙ୍ଗନେତ୍ର ମନୁଷ୍ୟ ଚରଣ ।
ଦୀର୍ଘବାହୁ ତୀକ୍ଷ୍ଣ ନଖ ଭୀଷଣ କେଶର
ପ୍ରଳୟ ମେଘ ପରାୟ ଗର୍ଜନ ଯାହାର ।
ଯା ଅଟ୍ଟହାସେ ପାଇଲେ ଅସୁରେ ତରାସ
ଅଣଚାଶ ପବନ ଯା ନାସିକା ନିଃଶ୍ୱାସ ।
ଶୁଖିଲା ପତ୍ର ପରାୟେ ଦୁର୍ଦ୍ଦାନ୍ତ ଅସୁରେ
ଉଡ଼ିଲେ ଗଗନ ମାର୍ଗେ ଯାହାର ହାଇରେ
ଯାହାର ମୂରତି ଦେଖି ହିରଣ୍ୟ ଦଇତ
ମେଦିନୀ ଉପରେ ପଡ଼ି ହୋଇଲା ମୂର୍ଚ୍ଛିତ ।
ଯାର ମହା ଉଗ୍ରତେଜ ପ୍ରଭାବ ଦେଖିଣ
ରହି ନ ପାରିଲେ ସ୍ୱର୍ଗେ ଦେବାସୁରଗଣ ।
ତେତିଶକୋଟି ଦେବତା ଭୟରେ କାତର
ଯାହାର ମହିମା ବ୍ରହ୍ମା ଶିବେ ଅଗୋଚର ।
ପବନହୁଁ ବେଗଗତି ସ୍ୱାମୀ ବିଶ୍ୱମ୍ଭର
ଜ୍ୱଳନ ଈଶ୍ୱର ଜ୍ୟୋତି ଅତି ପରଖର ।
ସର୍ବମଙ୍ଗଳ ଉପରେ ଯେ ଜନନାୟକ
ବକ୍ଷେ କୌମ୍ମଦକୀ ଚକ୍ର ବାମେ ଧନୁ ଶଙ୍ଖ ।
ଭକ୍ତପାଇଁ ଚନ୍ଦ୍ରମୁଖେ ହୁଏ ସୁଧା ବୃଷ୍ଟି
ସାଧୁଏ ପିଅନ୍ତି ଯାହା ଲୋଭ ମୋହ କାଟି ।
ଅବ୍ୟୟ ଅବ୍ୟକ୍ତ ସୂକ୍ଷ୍ମ ନିତ୍ୟ ବ୍ରହ୍ମଜ୍ଞାନ
ଯୋଗାରୂଢ଼ ପୁରୁଷ ହେ ପ୍ରସନ୍ନ ବଦନ ।
ସର୍ବଜନ ଅନ୍ତର୍ଯ୍ୟାମୀ ବ୍ରହ୍ମାଣ୍ଡ କାରଣ
ହେତୁ ମତି ଦେଇ ଆପେ ଆପଣାକୁ ଚିହ୍ନ ।
କ୍ଷୀର ସମୁଦ୍ର ମଧରେ ରତ୍ନ ପଲଙ୍କରେ
ଶୟନ କରୁଛ ପ୍ରଭୁ ଅନନ୍ତ ଶଯ୍ୟାରେ ।
କୋଟି ଭୂଷଣକୁ ଜିଣି ଶ୍ରୀଅଙ୍ଗ ଉଜ୍ଜ୍ୱଳ
ନେତ୍ର ତ୍ରୟେ ଶୋଭାପାଏ ଚନ୍ଦ୍ରାର୍କ ଅନଳ ।
ପିନାକ ଶାୟକ ଶୋହେ ଅଭୟ କରରେ
କୋଟି ଇନ୍ଦ୍ର ଜିଣି ଛବି ଦିଶେ ନିରନ୍ତରେ ।

ଏହିପରି କୋଟି କୋଟି ଶିବ ହେବେଯେବେ
ନୃସିଂହ ରୂପକୁ ସମ ନୋହିବେଟି କେବେ
ମନୋହର ସୁଧାପାଗ ଶିରରେ ସୀମାନ୍ତ
କର୍ଣ୍ଣ ବେନି ମଣିନାଗ କୁଣ୍ଡଳେ ରଞ୍ଜିତ ।
ଅମୂଲ୍ୟ ମଣିମୁକୁଟ ଲଲାଟରେ ଶୋହେ
କଣ୍ଠେ କଉସ୍ତୁଭ ମଣି ମଧୁଧାରା କହେ ।
କରରେ ମଣି ମୁଦ୍ରିକା ରୁଣୁଝୁଣୁ ବାଜେ
ବାଦରେ ବିଦ ଶ୍ରୀବତ୍ସ ଚିହ୍ନ ହୃଦେ ସାଜେ
ବକ୍ଷସ୍ଥଳରେ ପଦକ କଟୀରେ ଓଢ଼ଣୀ
ଜାନୁଯୁଗଳେ ଶୋଭିତ କ୍ଷୀରୋଦ୍ରିପତନୀ ।
ତ୍ରିଶାଖା ମର୍କତ ରତ୍ନମୁଦି ଅଙ୍ଗୁଳିରେ
ବିଜେ କରିଛନ୍ତି କ୍ଷୀର ବଇକୁଣ୍ଠ ପୁରେ ।
ଅନନ୍ତ ସହସ୍ରଫଣା ଟେକି ଛତ୍ରପ୍ରାୟ
ମୁଁ କିସ ବର୍ଣ୍ଣିବି ତାହା ବହି ନରଦେହ ।
କୋଳରେ ମହାଲକ୍ଷ୍ମୀଙ୍କୁ ଘେନିଣ ଶ୍ରୀପତି
ଶେଷଦେବଙ୍କ ଉପରେ ସୁଖେ ବିଳସନ୍ତି ।
ତପ୍ତ ସ୍ୱର୍ଣ୍ଣ ନିଶ ଦାଢ଼ୀ ଉଡ଼େ ଫରହରେ
ତପତ ହାଟକ କେଶ ବେଢ଼ିଛି ମୁଖରେ ।
ତପତ ହାଟକ ବର୍ଣ୍ଣ ଦିଶେ ଶିରେ ଚୂଳ
ତପତ ହାଟକ ଜଟା ଅଟଇ ଶ୍ୟାମଳ ।
ସେ ଜଟା ସହସ୍ର ହାତ ଯାଇଅଛି ବଢ଼ି
ବେନି ସହସ୍ର ଯେ ମୋଟ ଆଡ଼ଦୀର୍ଘେ ପଡ଼ି
ତିନିସହସ୍ର ହାତ ଯେ ଦାଢ଼ିର ବିସ୍ତାର
ତପତି ହାଟକ ନିଶ ଅତ୍ୟନ୍ତ ସୁନ୍ଦର ।
ସେହି ମହାଜଟା ବହି ଗୁଣବନ୍ତ ହରି
ଅନନ୍ତ ନାଗ ଉପରେ ଛନ୍ତି ବିଜେକରି ।
ସେ ତପ୍ତହାଟକ ଦାଢ଼ି ଏମନ୍ତ ଅଟଇ
ଅର୍ଦ୍ଧଅଙ୍ଗୁଳି ବଢ଼ାନ୍ତେ ରୁଢ଼ ବୋଲି କେହି ।
ଚତୁରାଙ୍ଗୁଳି ବଢ଼ନ୍ତେ ହୁଅଇ ମୁକୁଳ
ହାତେ ଲମ୍ବ ହୁଅନ୍ତେ ସେବୋଲାଇଯେବାଲ
ବହୁତ ଲମ୍ବ ହୁଅନ୍ତେ ଜଟା ବୋଲି କହି
ଏମନ୍ତ ମୂରତି କ୍ଷୀର ବଇକୁଣ୍ଠଶାୟୀ ।
ସେ ବିଷ୍ଣୁ ମହିମାଂ ଅନ୍ତ କେ ପାରିବ କରି
ଭକ୍ତ ଉଦ୍ଧାରଣ ପ୍ରଭୁ ପାପ ନାଶକାରୀ ।
ଅଭୟ ବରଦାତା ସେ କମଳାରମଣ
ଭୃତ୍ୟ ଦୁଃଖ ଛେଦି ତାକୁ କରନ୍ତି ରକ୍ଷଣ ।
ସଦା ଆଶା ସେହି ଲକ୍ଷ୍ମୀ ନୃସିଂହ ପୟର
ଜନ୍ମେ ଜନ୍ମେ ସେବେ ଦାସ ବିପ୍ର ପୀତାମ୍ବର
ମୋର ପିତାମହ ଥିଲେ ଲକ୍ଷ୍ମୀଧର ଦାସ
ବିଷ୍ଣୁଙ୍କର ପଦାମ୍ବୁଜେ ବହୁତ ବିଶ୍ୱାସ ।

କୌଣ୍ଡନ୍ୟସ ଗୋତ୍ରେ ସେହୁହୋଇଲେସମ୍ଭୂତି
ସର୍ବଶାସ୍ତ୍ରେ ପରିପୂର୍ଣ୍ଣ ସେହି ଯଜୁର୍ବେଦୀ ।
କହିଲଇଁ କଣଶାଖା ଶାଖୀ ଯଥାବିଧି ।
ତହିଁପର କଥା ଯାହା ଶୁଣ ଅଦ୍ୟାବଧି ।
ପରମ ହଂସ ଦୀକ୍ଷା ଯେ ତାଙ୍କର ପ୍ରଚାର
ବ୍ରହ୍ମାରେ ନିପୁଣ ଗଣେ ବଇକୁଣ୍ଠପୁର ।
ବାଲୁକେଶ୍ୱର ନାମରେ ତାଙ୍କ ଜ୍ୟେଷ୍ଠସୁତ
ଜାଣନ୍ତି ସଦ୍‌ଗୁରୁ ପଦ ସେବି ବେଦତତ୍ତ୍ୱ ।
ସେହି ପୁଣି ବିଷ୍ଣୁଙ୍କର ଅତ୍ୟନ୍ତ ଭକତ
ପ୍ରଭୁଙ୍କ ପାଦରେ ସେହୁ ଦେଇଥାନ୍ତି ଚିତ୍ତ ।
ବେଦ୍ ଶାସ୍ତ୍ର ପୁରାଣରେ ବହୁ ଶ୍ରମ କରି
ଦିନ କାଳ କାଟିଲେ ଯେ ବିଷ୍ଣୁ ନାମ ସ୍ମରି
ସେ ମୋହର ପିଅର ମୁଁ ତାଙ୍କର ଆତ୍ମଜ
ମୋହର ନାମ ଅଟଇ ପୀତାମ୍ବର ଦ୍ୱିଜ ।
ଦେଖିଲେ ଏ କଳିକାଳ ମାୟା ଅନ୍ଧକାର
ମନ ମଧ୍ୟେ ଭାଳି ଭାଳି କରଇ ବିଚାର ।
କେଉଁରୂପେ ଗତିମୁକ୍ତି ଲଭିବ ମୋ ଦେହୀ
ଆଶାଜଳରେ ସର୍ବଦା ମଜ୍ଜିଲଇ ମୁହିଁ ।
କାମ କ୍ରୋଧଲୋଭ ମୋହ ନ ପାରିଲିକାଟି
ମାୟା ଭ୍ରମରେ ଭ୍ରମିଲା ମୋର ବେନି ଦୃଷ୍ଟି
ରାଗ ଅପବାଦ ହିଂସାନଳେ ମନ ଭ୍ରମି
ଏଥି ମଜ୍ଜ କରି ଦିନ ଗଲା ଅତିକ୍ରମି ।
କେଉଁପରି ଗତିମୁକ୍ତି ହେବ କଳେବର
ଗୋବିନ୍ଦ ଲୀଳାବିନୁ ମୋ ନାହିଁ ପ୍ରତିକାର ।
ଭରସା କରି ଏମନ୍ତ ପାଞ୍ଚ ମୁହିଁ ଚିତ୍ତେ
ସେ ବିଷ୍ଣୁ ଲୀଳାରୁ କିଛି ବଖାଣିବି ଗୀତେ ।
ଯେବଣ ପ୍ରଭୁ ମହିମା ଅଟଇ ଅନନ୍ତ
ମାନବ ଦେହ ବହି କେ କରିପାରେ ଅନ୍ତ ।
ଅଶେଷ ବ୍ରହ୍ମାଣ୍ଡ ଅଛି ଯା ଉଦରେ ପୂରି
କେ ଗୋଚର କରିପାରେ ମହିମା ତାହାରି
ଚବିଶ ମୂରତି ଦଶ ଅବତାର ଯେତେ
ନୃସିଂହ ପୁରାଣ ପଦ କହିବଇଁ ତୋତେ ।
ଏମନ୍ତ ବିଚାରି ମୁହିଁ ହୃଦେ କଲି ଠାବ
ଭବବାରି ତରିବାକୁ ପଦ୍ମନାଭ ନାବ
ସେ ନାବରେ ବସିଲେ ଏ ଭବଭୟ ବାରି
ଗୋଖେଜ ତରିଲା ପ୍ରାୟ ଯିବି ହେଲେ ତରି
ଏମନ୍ତ ଆକୁଳ ମନେ କରନ୍ତେ ମୁଁ ଧ୍ୟାନ
ରାତ୍ରେବାକ୍ୟଦେବୀମୋତେ ହୋଇଲେ ପ୍ରସନ୍ନ
ବୀରକିଶୋର ଦେବଙ୍କ ବତିଶ ଅଙ୍କରେ
ସିଂହମାସ ଶୁକ୍ଳପକ୍ଷ ପଞ୍ଚମୀ ତିଥିରେ ।

ସୋମବାର ହୋଇଥିଲା ଆସିଣ ସେ ଦିନ
ମୋ ଆଗରେ ଉଭାହୋଇ ବୋଇଲେ ଏସନ
ନୃସିଂହ ପୁରାଣ ଗ୍ରନ୍ଥ କର ତୁହି ଏବେ
ଶୁଣି ପଢ଼ ସର୍ବଜନେ ପାପୁଁ ମୁକ୍ତ ହେବେ ।
ପଦ୍ମକଳ୍ପେ ଏ ବିଚାରି ହୋଇଛି ନିର୍ଣ୍ଣୟ
ସତ୍ୟଯୁଗ ପୁରାଣର ଚରଚା ତୁ କହ ।
ସାମବେଦରୁ ସମ୍ଭୁତ ହୋଇଛି ଏ ଗ୍ରନ୍ଥ
ବ୍ରହ୍ମା ନାରଦ ସମ୍ବାଦ ଶୁକ ପରୀକ୍ଷିତ ।
ନୃସିଂହ ଶେଷଦେବଙ୍କ ଅବତାର ଲୀଳା ।
ବଙ୍ଗଦେଶେ ଜାତ କୃଷ୍ଣ ବଲ୍ଲଭର ବଳା ।
ସେ କୃଷ୍ଣବଲ୍ଲଭ ରାଜ ବିଷ୍ଣୁରେ ଭକତି
ତାହାଙ୍କ ଭାରିଯା ନାମ ଅଟେ ଭଗବତୀ ।
ସେ ନାରୀ ଗର୍ଭେ ନୃସିଂହଶେଷହେଲେଜନ୍ମ
ଜ୍ୟେଷ୍ଠ ଭାଇ ନୃସିଂହ ହେ ଶେଷଅଟେସ୍ଥାନ
ସେ ଅବତାରର କୀର୍ତ୍ତି ଲେଖ ତୁହି ଏବେ
ଅବ୍ୟକ୍ତ ପଦ ତୋହର ମୁଖରୁ ସ୍ଫୁରିବେ ।
ଯେତେବେଳେ ଲେଖିବୁ ତୁ ଲେଖନକୁ ଧରି
ତେତେବେଳେ ପଦମାନ ଯାଉଥିବ ସ୍ଫୁରି ।
ଏତେ କହିଣ ଅଦୃଶ୍ୟ ହେଲେ ଗୋସାମଣି
ନିଦ୍ରାଭଙ୍ଗେ ତାହାକୁ ମୁଁ ସ୍ୱପ୍ନପ୍ରାୟ ମଣି ।
ଶୁଣ ଆହେ ସୁଜ୍ଞଜନ ପୁରାଣ ଚରିତ
ତାହାଙ୍କ ଆଜ୍ଞାରେ ଏହା କଲି ମୁଁ ପ୍ରକୃତ ।
ମୁହିଁ କଲି ବୋଲି ମନେ ନ ଧରିଣ ଦୋଷ
ନୃସିଂହ ପାଶେ ଶରଣ ପୀତାମ୍ବର ଦାଶ ।



## ରାଜା ପରୀକ୍ଷିତଙ୍କର ବ୍ରହ୍ମଶାପ ବୃତ୍ତାନ୍ତ

ଏ ଯେ ପ୍ରଥମ ସାଗର ନୃସିଂହ ପୁରାଣ
ମଞ୍ଜିଣିଲେ ସୃଷ୍ଟି ଆଦ୍ୟେ ପ୍ରଭୁ ନାରାୟଣ ।
ବ୍ରହ୍ମା ନାରଦ ସମ୍ବାଦେ ଅଟଇ ଏ ବାଣୀ
କହିଲେ ଶୁକ ଶୁଣିଲେ ପରୀକ୍ଷିତ ପୁଣି ।
ଯେମନ୍ତ ହେଲା ଭକତ କହିବା ତା ଶୁଣ
ସୋମବଂଶ ପରୀକ୍ଷିତ ନାମେ ନୃପରାଣ ।
କୁରୁକୁଳ ମଣ୍ଡନ ସେ ହସ୍ତିନା ନୃପତି
ଜନ୍ମେଜୟ ରାଜାଙ୍କର ପିଅର ଅଟନ୍ତି ।
ଅଭିମନ୍ୟୁର କୁମର ସୁଭଦ୍ରାର ନାତି
ପଣ୍ଡୁକୁଳ ମଣ୍ଡନ ସେ ଅଟେ ଚକ୍ରବର୍ତ୍ତୀ ।
ଉତ୍ତରାବଳୀ ନନ୍ଦନ ଯେ ପରୀକ୍ଷ ରାଜା
ଅତି ସୁନ୍ଦର ପଣରେ କାମ ଗର୍ବଗଞ୍ଜା ।
ବୀର ଶୂର ପକ୍ଷରେ ସେ ସମ ସୁରପତି
ପଣ୍ଡିତେ ପଣେ ସାକ୍ଷାତ ଅଟେ ବୃହସ୍ପତି ।
ବାଣୀ ଗମ୍ଭୀର ବସନ୍ତ କୋକିଳକୁ ସମ
ଦୟାଳୁ ପଣରେ କିବା ଅଟଇ ଶ୍ରୀରାମ ।
ଚନ୍ଦ୍ରମା ପ୍ରାୟେ ଆହ୍ଲାଦ ଶାନ୍ତ ପରାକ୍ରମ
ଧଇର୍ଯ୍ୟପଣରେ ରାଜା ମେରୁଗିରି ସମ ।
କ୍ଷମା ଶାନ୍ତି ଲକ୍ଷଣରେ ବାରିଧି ପରାୟ
ରାଜେଶ୍ୱର ପଣରେ ସେ ଯୁଧିଷ୍ଠିର ରାୟ ।
ଧନବନ୍ତ ପଣରେ ସେ ଅଟେ ଧନେଶ୍ୱର
ବାଣୀ ଶୀତଳ ଯେସନ ଗଙ୍ଗାନଦୀ ନୀର ।
ଅଷ୍ଟାବଧାନରେ ପୁଣି ରାମଙ୍କ ସମାନ
ତେଜ ଗୁଣେ ପ୍ରତ୍ୟକ୍ଷରେ ପ୍ରଚଣ୍ଡ ତପନ ।
ଶରଚ୍ଚନ୍ଦ୍ର ସମ ନୁହେଁ ଉଜ୍ଜ୍ୱଳ ପଣରେ
ବିଷ୍ଣୁଚକ୍ର ସଦୃଶ୍ୟ ସେ ବଇରୀ କୁଳରେ ।
ବତିଶ ଲକ୍ଷଣ ଯାକ ଘେନିଣ ଉପୁନ୍ନ
ଗର୍ଭରେ ମରି ଜୀଆନ୍ତେ ପରୀକ୍ଷିତ ନାମ ।
ସୋମବଂଶ ଉଦ୍ଧାରଣ ଅଟଇ ସେ ବୀର
ଜମ୍ବୁଦ୍ୱୀପଯାକ ଜୟ କଲେ ଶତେବାର ।
ବଂଶାନୁଚରିତମାନ ଶୁଣି ନରନାଥ
ରାଜନୀତିରେ ବଢ଼ିଣ ସାଧୁ କ୍ଷତ୍ରି ବୃତ୍ତ ।
ରାଜ୍ୟର ନ୍ୟାୟ ଅନ୍ୟାୟ ଧର୍ମାଧର୍ମ ଯେତେ
ବିପ୍ର ମୁଖରୁ ଏମାନ ଶୁଣି ଶାସ୍ତ୍ରମତେ ।
ସ୍ୱଦେଶ ପରଦେଶରେ ଶୁଣନ୍ତି ଗୁହାରି
ପ୍ରଜାକୁଳ ପାଳନ୍ତି ସେ ପୁତ୍ରସମ କରି ।
ପ୍ରାତଃକାଳେ ଘୃତଦେଇ ଅଗ୍ନିକୁଯେତୋଷି
ଅନ୍ନଦାନ ଦିଅନ୍ତି ସେ ଦେଖି ଭୋକୀ ଶୋଷୀ
ନିତ୍ୟଗୁରୁ ବଇଷ୍ଣବ ଚରଣ ସେବନ୍ତି
ବିଷ୍ଣୁଙ୍କର ପୂଜା ସନ୍ଧ୍ୟା ପ୍ରତ୍ୟହ କରନ୍ତି ।
ଅତିଥି ଯେ ଅଭ୍ୟାଗତ ଭିକ୍ଷାଶୀ ସନ୍ନ୍ୟାସୀ ।
ଏମାନଙ୍କୁ ରାଜା ଅନ୍ନ ବସ୍ତ୍ର ଦେଇ ତୋଷୀ ।
ସୁଜନ ପ୍ରତିପାଳନ ଦୁର୍ଜ୍ଜନ ନିପାତି
ଉତ୍ତମ ବିପ୍ର ଦେଖିଣ ଚରଣ ସେବନ୍ତି ।
ଏହିରୂପେ ପ୍ରତିଦିନ ଚର୍ଚ୍ଚାମାନ କରି
ଜନମୁଖେ ଶୁଭେ ଧନ୍ୟ ଧନ୍ୟ ଦଣ୍ଡଧାରୀ ।
ନାଗଲୋକ ନରଲୋକ ଦେବଲୋକ ଯାଏ
ସବୁବେଳେ ପ୍ରଶଂସନ୍ତି ପରୀକ୍ଷିତ ରାୟେ ।
ଏହିମତେ କେତେଦିନ ହୋଇଗଲା ଭୋଗ
ଦେଖ ସେ ପରୀକ୍ଷ ରାଜା କର୍ମର ବିୟୋଗ ।
ବଇଶାଖ କୃଷ୍ଣପକ୍ଷ ଅମାବାସ୍ୟା ତିଥି
ବେଣ୍ଟ ପାରିଧିରେ ଗଲେ ପଣ୍ଡୁ ପଣନାତି ।

ହରଙ୍କ ଉଦ୍ୟାନ ବନ ଉତ୍ତରାଭିମୁଖେ
ସଖା ସେନା ସଙ୍ଗେ ଘେନି ମିଳିଲେ ପରୀକ୍ଷେ
ସେ ବନେ ପଶି ଖୋଜନ୍ତି ଗଣ୍ଡା ପଶୁ ମୃଗ
ତହିଁ ନ ପାଇଣ ରାଜା ଗଲେ ଆନ ମାର୍ଗ ।
ବୁଲି ବୁଲି ଆସନ୍ତେ ସେ ନଇମିଷାରଣ୍ୟେ
ଦେଖିଲେ ଏକ ତପସ୍ୱୀ ଛନ୍ତି ଯୋଗଧ୍ୟାନେ
ସେ ଋଷ ପାଶରେ ଆସି ମିଳିଲେ ରାଜନ
ତୃଷା ଲାଗିବାରୁ ଦେହ ହୁଏ କମ୍ପମାନ ।
ଏକେ ତ ବସନ୍ତ ଋତୁ ନିଦାଘର କାଳ
ଜଳ କାହିଁ ନ ଦେଖିଣ ହୋଇଲେ ଆକୁଳ
ମୁନିଙ୍କୁ ପୁଚ୍ଛିଲେ ରାଜା ଶୁଣ ହେ ପୁରୁଷ
ଜଳ ଦିଅ ଆମ୍ଭଙ୍କୁ ତ ହେଉଅଛି ଶୋଷ ।
ପାରିଧି ନିମନ୍ତେ ଆଜ ପଶିଲୁ ଅରଣ୍ୟେ
ବେଣ୍ଟ ମୋ ନିଷ୍ଫଳ ଗଲା ଚିତ୍ତ ତୃଷାଛନ୍ନେ ।
ତୁମ୍ଭଙ୍କୁ ଉତ୍ତମ ଜ୍ଞାନେ ମାଗିଲୁ ଯେ ନୀର
ଦେଲେ ତ ତୃଷା ହରିବ ଦେହ ହେବ ସ୍ଥିର
ରାଜାଙ୍କ କହିବା ବାକ୍ୟ ନ ଜାଣନ୍ତି ମୁନି
ଯୋଗରେ ବସିଅଛନ୍ତି ଲକ୍ଷ୍ୟସୂତ୍ର ଘେନି ।
ଏକେ ତ ବ୍ରାହ୍ମଣ ନୀତି ବ୍ରହ୍ମେ ଅଛି ଧ୍ୟାନ
ସେ କାହିଁ ଶୁଣିବେ ରାଜା କହିବା ବଚନ ।
ଏତେକ କହିଣ ତୃଷା ଆକୁଳେ ନୃପତି
ବୋଇଲେ ଚଣ୍ଡାଳ କେହ୍ନେ ବୋଲାଉତୁ ଯତି
ଏଡ଼େ ନିର୍ଦ୍ଦୟ ତୁ ପୁଣି ଅଟୁ ମହାମୁନି
ବଧିର ପ୍ରାୟ ରହିଲୁ ବଚନ ନ ଶୁଣି ।
କିରୂପେ ତପ କରୁଛୁ ତପସ୍ୱୀ ବୋଲାଇ
ଜୀବ ଆତ୍ମା ଆକୁଳିତ ନ ଶୁଣିଲୁ ତୁହି ।
ଏମନ୍ତ ବୋଲିଣ ରାଜା ଚାହିଁ ଚଉକତି ।
ଦେଖିଲେ ମୃତ ସର୍ପେକ ପଡ଼ିଅଛି କ୍ଷିତି ।
ସେ ସର୍ପ ଗୋଟକ ହସ୍ତେ ଧରି ନୃପନିଧି
ଋଷିଙ୍କ ଗଳାରେ ରାଜା ଦେଲେ ନେଇବାନ୍ଧି
ଆପଣା ରାଜ୍ୟକୁ ତହୁଁ ଚାଲିଲେ ତକ୍ଷଣେ
ବସିଲେ ସ୍ନାନ ମଣୋହି ସାରି ସିଂହାସନେ ।
ଏଥି ଉତ୍ତାରୁ ମିଳିଲେ ଆସି ଋଷିବଳା
ଦେଖିଲେ ପିତାଙ୍କ କଣ୍ଠେ ଲମ୍ବେ ବନମାଳା
ନିରେଖି ଚାହିଁ ଦେଖିଲେ ପୁଣି କାଳସର୍ପ
ବୋଇଲେ କେଉଁ ଦୋରହା ଅର୍ଜିଲା ଏ ପାପ
କଶ୍ୟପନନ୍ଦନ ବୋଲି ନ କଲା ସେ ଭୟେ
ଗଳାରେ ଲଦିଲା ନେଇ ମୃତ ସର୍ପଟାଏ ।
ମୁଁ ଯେବେ ନିଷ୍ଠେ ଅଟଇ ଜାଣ ଋଷି ପୁତ୍ର
ଅବଶ୍ୟ ତକ୍ଷକ ଆସି ଧ୍ୱଂସିବ ତା ଗାତ୍ର ।
ଆଜଠାରୁ ସାତଦିନେ ହୁଅ ତୁ ବିନାଶ
ଏଶାପ ଦେଲେ ସେ ଋଷି ଶମୀଙ୍କର ଶିଷ୍ୟ
ଶାପ ଦେଇ ପୁତ୍ର ପୁଣି ବିଳାପ କରନ୍ତି
କ୍ରନ୍ଦନ ଧ୍ୱନି ଶୁଣିଣ ଉଠିଲେକ ଯତି ।
କୋମଳ ନୟନ ମେଲି ଦେଖିଲେ ସେ ଋଷି
ହୃଦରୁ ସର୍ପ କାଢ଼ିଣ ପଚାରନ୍ତି ବସି ।
ହେ ପୁତ୍ର କାହିଁକି ତୁରେ କରୁଛୁ ବିଳାପ
କେବଣ ମହାତ୍ମା ଜାତ କରାଇଲା କୋପ ।
ଶୁଣିମା ହେଉ ଭୋ ତାତ ଶୁଣି ପୁତ୍ର କହେ
କେଉଁ ମୂର୍ଖ ଲମ୍ବାଇଲା ସର୍ପ ତୁମ୍ଭ ଦେହ ।
ତେଣୁକରି ତାକୁ ମୋରକୋପେ ହେଲାମନେ
ଶାପ ମୁଁ ଦେଲି ଦଂଶିବ ସର୍ପ ସାତଦିନେ ।
ମୁନି ବୋଇଲେ ପୁତ୍ରରେ କେଡ଼େ କର୍ମକଲୁ
ଧ୍ୟାନେ ଜାଣିଲି ଶାପ ତୁ ପରୀକ୍ଷେ ବିହିଲୁ ।
କେଡ଼େ ଦ୍ରୋହ ଅର୍ଜି କଲୁ ନଜାଣିଣ କୋପ
ସୋମବଂଶ ରାଜନ ସେ ପରୀକ୍ଷିତ ନୃପ ।
ମହା ଧର୍ମଶୀଳ ସେହି ଅଭିମନ୍ୟୁ ବଳା
ତୃଷାର ଆତୁରେ ସର୍ପ ବାନ୍ଧିଲା ମୋଗଳା ।
ତହିଁକି ତୁ ଏଡ଼େ କୋପ କଲୁ ଆରେବତ୍ସ
ସାତଦିନେ ମୃତ୍ୟୁ ଯେବେ ପାଇବ ପରୀକ୍ଷ ।
ଏ ପୃଥ୍ୱୀରେ ଆଉ କେହୁ ହୋଇବ ନୃପତି
ଏହିଠାରୁ ବୁଡ଼ିଲା ତ ସୋମବଂଶ କୀର୍ତ୍ତି ।
ପୀତାମ୍ବର ବୋଲେ ତୁମ୍ଭେ କଲଟଅନ୍ୟାୟ
ହୁଅନ୍ତୁ ସହାୟ ତାଙ୍କୁ ପ୍ରଭୁ ଦୟାମୟ ।



## ପରୀକ୍ଷିତଙ୍କର ହରିନାମ କୀର୍ତ୍ତନ ଓ ଋଷିମାନଙ୍କର ଆଗମନ

ଏସନକ ଉଚ୍ଚବାଚ ହୁନ୍ତେ ପିତା ପୁତ୍ର
ସେ ଖବର ଜନମୁଖେ ଉଠିଲା ଜଗତ ।
ରାଜା ତାହାଶୁଣି ମନ ମଧ୍ୟେ ବିଚାରିଲେ
ପ୍ରମାଣ ଆମ୍ଭେ ଏଦୋଷ ଅର୍ଜିଲୁ ବୋଇଲେ
ବ୍ରହ୍ମଋଷି ଏ ବୋଲିଣ ନ ପାରିଲୁ ଚିହ୍ନି
କାଳସର୍ପ ଭରିଲି ମୁଁ ସ୍ୱହସ୍ତରେ ଘେନି ।
ଯେଉଁ ବ୍ରହ୍ମଶାପେ ଗଲା ଯଦୁବଂଶ କ୍ଷୟ
ସେହି ଶାପ ଖଣ୍ଡିବାକୁ ନାହିଁ ମୋ ଉପାୟ
ଅବଶ୍ୟ ଆସି ଘଟିଲା ମୋତେ ମୃତ୍ୟୁଯୋଗ
ଋଷିର ଶାପେ ନିଶ୍ଚୟ ଦଂଶିବ ଭୁଜଙ୍ଗ ।
ଆଜହୁଁ ସପତ ଦିନେ ଯେବେ ହେବିନାଶ
ଏ ପୃଥ୍ୱୀରେ ଆଉ ମୋର ପ୍ରୟୋଜନ କିସ

ଏକମାତ୍ର ହରିନାମ ସଂସାରର ସାର
ପଢ଼ିଲେ ଶୁଣିଲେ ମୁହିଁ ପାଇବି ନିସ୍ତାର ।
ସକଳ ଦୁରିତ କ୍ଷୟ ଯିବ ସର୍ବ ଦୋଷ
ଏଥୁ ବା ପାରି କରିବେ ମୋତେ ହୃଷୀକେଶ
ଏତେ ପାଞ୍ଚ ମହାରାଜା ହସ୍ତିନା ବାହାରେ
ପୁରେକ ନିର୍ମାଣ କଲେ ଗଙ୍ଗାନଦୀ ତୀରେ ।
ଗୃହ ମଣ୍ଡପ ଜଗତୀ ଅଟ୍ଟାଳି ଦେଉଳ
ହୀରା ନୀଳାରେ ନିର୍ମିତ ନନ୍ଦାବର୍ତ୍ତ ଚାଳ ।
ଦ୍ୱୋମୁହିଁ ଯେ ଆଡ଼ମୁହିଁ ଲଙ୍କାମୁହିଁ କରି
ସହସ୍ର ବଖରା ଘରେ ଲମ୍ବେ ହୀରାଝରୀ ।
ଏସନ ପୁର ନିର୍ମାଣ ଜାହ୍ନବୀରେ ତୀରେ
ବାଲୁକା ବେଦୀ ସ୍ଥାପିଲେ ତହିଁର ମଧ୍ୟରେ ।
ଅଁଳା ବେଲ ତୁଳସୀ ପଦ୍ମ ଯେ ରୁଦ୍ରାକ୍ଷ
ବେଦୀର ଚାରିପାରୁଶେ ରୋପିଲେ ପରୀକ୍ଷ ।
ସେ ବାଲୁକା ବେଦୀପରେ ପାରି କୁଶଶଯ୍ୟା
ତହିଁପରେ ବିଜେକଲେ ସୋମବଂଶ ରାଜା
ଗୋବିନ୍ଦ ଗୋପାଳ ହରେ ରାମବୋଲିମୁଖେ
ଅନ୍ତର୍ଜଳେ ବିଜେ କଲେ ଉତ୍ତରାଭିମୁଖେ ।
ବଜାଇ ଶଙ୍ଖ ମହୁରୀ ମୃଦଙ୍ଗ କାହାଳୀ
ତାଳ କଂସାଳ ଟମକ ଦମ ରାମତାଳି ।
ବିପ୍ରମାନେ ସାମବେଦ ଉଚ୍ଚାରନ୍ତି ମୁଖେ
ରାଜ୍ୟଜନେ ହାହାକାରକରୁଛନ୍ତି ଶୋକେ ।
କେହୁ ବୋଲେ ପଡ଼ିଯାଉ ଆମ୍ଭ ରାଜ୍ୟସୁଖ
କଅଁଳା ପୁଅ ପାଇଲା ଏଡ଼େ ବଡ଼ଦୁଃଖ ।
କେହି ବୋଇଲା ସରିଲା ଏବେ ଆମ୍ଭ ନାଟ
ସୋମବଂଶ ଏହିଠାରୁ ହେଲା ଅଣପାଟ ।
ଏହିପରି କୁହାକୁହି ହେଲେ ସର୍ବଜନ
ସକଳ ଦେଶେ ଶୁଭିଲା ଏହି କୁବଚନ ।
ଏଥୁଅନନ୍ତରେ ତହିଁ ସର୍ବ ଋଷିମାନେ
ବାରତାପାଇ ମିଳିଲେ ରାଜା ସନ୍ନିଧାନେ ।
କହିବାକୁ ସେ ଋଷିଙ୍କ ନାମ କାର ଶକ୍ୟ
ଶୁଣିବାକୁ ଯେ ବଳୁବ ଏକକୁ ଆରେକ ।
କଶ୍ୟପ ବୋଢୁ ଆସୁରି ଜାବାଳି ଜନକ
ବଶିଷ୍ଠ ଯେ ବାମଦେବ କଣ୍ୱ ପଞ୍ଚଶିଖ ।
ପୁଲକ ପୌଲସ୍ତ୍ୟ ଆଉ ଅଙ୍ଗିରା ଭାର୍ଗବ ।
ଅଗସ୍ତି କପିଳ ମୁନି ସୁଦେବ ଗାର୍ଗବ ।
କହି ହବି ଚ୍ୟବନ ଯେ ବଇଶମ୍ପାୟନ ।
ମରୀଚି ଅତ୍ରି ଅପ୍ଲବ ଯେ ପିପ୍ପଳାୟନ ।
ଭରଦ୍ୱାଜ ବିଶ୍ୱାମିତ୍ର ଦୁର୍ବାସା ନାରଦ
ମୁଦ୍‌ଗର ଗୌତମ ମୁନି ଲୋମଶ ସାନନ୍ଦ ।

ପରାଶର କାତ୍ୟାୟନ ଋଷି ଶୃଙ୍ଗ ଶୁକ
ସନକ ସୌନକ ଆଉ ସନତ କୌଶିକ ।
ଉଦ୍ଧାଳକ ସତ୍ୟାନନ୍ଦ ସ୍ୱତ ପୌରାଣିକ
ଆତ୍ରେୟ ଯେ ବିଭାଣ୍ଡକ ଉସନା ବାଲ୍ମୀକ ।
ମାର୍କଣ୍ଡେୟ ସନାତନ ଅଷ୍ଟବକ୍ର ଋଷି
ମୋରାଞ୍ଚ ଯେ ଶରଭଙ୍ଗ ଯମଦଗ୍ନି ଆସି ।
ମିଳିଲେକ ଋଷିଗଣ ଅପାରୁ ଅପାର
ଧ୍ୟାନଯୋଗରେ ଜାଣିଲେ ପରୀକ୍ଷ ବିଚାର ।
ବ୍ରହ୍ମଋଷି ଦେବଋର୍ଷି ରାଜଋର୍ଷି ଯେତେ
ସମସ୍ତେ ମିଳିଲେ ଆସି ପରୀକ୍ଷ ଅଗ୍ରତେ ।
ଋଷିମାନଙ୍କୁ ଦେଖିଣ ସୋମବଂଶ ରାଜା
ଜଣ ଜଣକେ ଆସନ ଦେଇ କଲେ ପୂଜା ।
ସହସ୍ର ବଖରା ଘର ନିର୍ମିତ ଯେ ପୁରେ
ଆସନ ପାଇଣ ଋର୍ଷି ବସିଲେ ତହିଁରେ ।
ସମସ୍ତ ଋଷିଙ୍କୁ ଚାହିଁ ପରୀକ୍ଷ ରାଜନ
କର ଯୋଡ଼ିଣ ପୁଚ୍ଛନ୍ତି ଶ୍ରୀକୃଷ୍ଣ ପୁରାଣ ।
ଆହେ ଋଷି ମୁନିମାନେ ଶୁଣ ମୋରବୋଲ
ମୋରପିଣ୍ଡ ଗତିପଥେ ତୁମ୍ଭେ ବିଜେକଲ ।
ସବୁକାଳେ ତୁମ୍ଭେମାନେ ଥାଅ ପରହିତେ
ପ୍ରଳୟ କାଳକୁ ଆସିନୌକାହେଲେମୋତେ
କହ ଏବେ ଭବପାରି କିରୂପେ ତରିବି
ଯାହା କର୍ଣ୍ଣରେ ଶୁଣିଲେ କୃତାର୍ଥହୋଇବି ।
କହିବା ହେଉ ସେକଥା ଫେଡ଼ିକରିମୋତେ
ପରୀକ୍ଷ ବଚନ ଶୁଣି ସର୍ବ ତପୋବନ୍ତେ ।
ଏକକୁ ଆରେକ ହ୍ୱନ୍ତି ମୁଖ ଚାହାଁଚାହିଁ
ଶ୍ରୀ ମହାରାଜା ଛାମୁରେ କେ ପାରିବ କହି ।
କାହାକୁ କିସ ଆସଇ କାବ୍ୟ ଖଣ୍ଡେ ଖଣ୍ଡେ
କେହୁ ଅବା ପଢ଼ିଥିବ ବେଦ ତିନିକାଣ୍ଡେ ।
କେହି ଅବା ପଢ଼ିଥିବ ମନ୍ତ୍ର ଭାଗୟାକ
ଏ ମହା ସଭାରେ କେହୁହେବ ପୌରାଣିକ ।
ଏରୂପେ ଋଷି ବିଚାର କଲେ ଜଣେ ଜଣେ
ବଳିଷ୍ଠ ବୋଲନ୍ତି ଶୁଣ ଆହେ କୁରୁରାଣେ
କେବଳ ଶ୍ରୀହରି ନାମ ସଂସାରକୁ ମୂଳ
ଆଉ ଯେତେ କଥାମାନ ସବୁହିଁ ବିଫଳ ।
ପୁତ୍ର ଦାରା ଦାସ ଦାସୀ ଧନ ଘରଦ୍ୱାର
ଲୋଭରେପଡ଼ିଣ ପ୍ରାଣୀବୋଲେମୋରମୋର
ଧନ ଜନ ସମ୍ପଦ ସେ ଯେତେ ଅର୍ଜିଥାଏ
ଗଲାର ବେଳକୁ ଏଥୁନ ନିଏ ଚିନାଏ ।
ମଞ୍ଚେ ଜନ୍ମହେଲା ମାତ୍ରେ ମୁଁ ଦାସ ଲାଗଇ
ହରିନାମ ନ ଧରିଣ ବ୍ୟର୍ଥେ ଦିନ ଯାଇ ।

ଏ ହରିନାମ ମହିମା ଏମନ୍ତ ଅଟଇ
କୋଟି ଗୋଦାନ ଗ୍ରହଣକାଳେଯେବେଦେଇ
ଅୟୁତ କଳପସ୍ନାନ ଗଙ୍ଗାଜଳ କଲେ
ମେରୁ ଗିରିର ସମାନ ସ୍ୱର୍ଣ୍ଣ ଦାନ ଦେଲେ ।
ବାରବ୍ରତ ଗଙ୍ଗା ଗୟା ଆଦି ତୀର୍ଥକରି
ତିଳାର୍ଦ୍ଧେ ନୁହେଁ ଗୋବିନ୍ଦକୀର୍ତ୍ତନକୁ ସରି ।
ତୁ ଏବେ ଏହି ବଚନ ହେତୁ ରଖି ଘେନ
ଶୁକମୁନି ପାଦେ ସେବି ଶୁଣ ତୁ ପୁରାଣ ।
ଅଟନ୍ତି ସେ ସର୍ବ ଶାସ୍ତ୍ରେ ବେତ୍ତା ବ୍ରହ୍ମଦେହୀ
ନିର୍ଗୁଣବନ୍ତ ପୁରୁଷ ନିର୍ମାୟା ନିମୋହୀ ।
ଲୋଭ ମୋହ କାମକ୍ରୋଧ ମଦ ମତ୍ସରାଦି
ହିଂସା ଅପବାଦ ମାୟା ଆଦି ସର୍ବ ଛେଦି ।
ସେ କହିବେ ତୋର ମନଜାଣି ବିଷ୍ଣୁଲୀଳା
ଭୋ ରାଜନ ଏ କଥାରେ ନକର ତୁ ହେଳା
ବିଷ୍ଣୁର ମହିମା ଅଛି ଅନେକ ପ୍ରକାର
ଶ୍ରୀନୃସିଂହ ପୁରାଣକୁ କେବଳ ପ୍ରଚାର ।
ଏହି ପୁରାଣେ ବିଷ୍ଣୁର ସବୁଲୀଳା ଅଛି
ହରି ରାମ କୃଷ୍ଣଙ୍କର ଯା ପାରିବୁ ପୁଛି ।
ହରି ବୋଲିବା ନାମଟି ନୃସିଂହ ପ୍ରବର୍ତ୍ତେ
ସେହି ନୃସିଂହଟି ରାମ ଅବତାର ମର୍ତ୍ତ୍ୟେ ।
ସେହି ରାମଟି ଲେଉଟି କୃଷ୍ଣ ହେଲେ ଜାଣ
ବ୍ରହ୍ମ ତାରକା ସମ୍ବାଦ ପ୍ରତ୍ୟକ୍ଷେ ତୁ ଶୁଣ ।
ଶୁକମୁନି ଏକା ତୋର ପାରିବେ ଯେ କହି
ସବୁ ପୁରାଣ ତାହାଙ୍କୁ ବ୍ୟାସଛନ୍ତି କହି ।
ବଶିଷ୍ଠ କହିଲେ ଯହୁଁ ଏସନକ ବାକ୍ୟ
ବେନିକର ଯୋଡ଼ି ପୁଣି ପୁଚ୍ଛନ୍ତି ପରୀକ୍ଷ ।
ଆହେ ମୁନିବର ମୋତେ ଲାଗିଲା ସଂଶୟ
ସମସ୍ତ ଋଷି ମୋତେ ତ ଦିଶେ ବ୍ରହ୍ମମୟ ।
ଜଣ ଜଣକେ ଚିନ୍ତିଲେ ସୃଷ୍ଟି କରିପାର
ଶୁକକୁ କାହିଁକି ଏତେ ଟେକିଲ ସଭାର ।
ସେ ଶୁକଦେବ ଅଟନ୍ତି କାହାର ତନୟ
କେଉଁ ସକାଶୁ ହୋଇଲେ ସେହି ବ୍ରହ୍ମମୟ ।
ଫିଟାଇଣ କହ ମୋତେ ଏଥିର ସନ୍ଦେଶ
ରାଜାର ବାକ୍ୟେ କହନ୍ତି ବଶିଷ୍ଠ ତାପସ ।
ବୋଇଲେ କହିବା ଶୁଣ ଆହେ ଦଣ୍ଡଧାରୀ
ପୂର୍ବେ ପିତାଏ ରସିଲେ ଉର୍ବଶୀ ସୁନ୍ଦରୀ ।
ତହିଁରୁ ପୁଣି ଆମ୍ଭେଟି ହୋଇଲେ ଉତ୍ପତ୍ତି
ଆମ୍ଭର ମନୋହାରିଣୀ ହେଲେ ଅରୁନ୍ଧତୀ ।
ତାହାଙ୍କ ଗର୍ଭୁଁ ଜନ୍ମିଲେ ଶକ୍ତି ମହାମୁନି
ସେହିତ ପୁଣି କାଳେକ ରମିଲେ କେଲୁଣୀ
ତହୁଁ ପରାଶର ଋଷି ହେଲେ ଉତପତ୍ତି
ସେହି ପୁଣି ସମୟେକ ରମିଲେ କୈବର୍ତ୍ତୀ
ସେ କଇବର୍ତ୍ତୀ ଉଦରୁ ବେଦବ୍ୟାସ ଜନ୍ମି
ବେଦବ୍ୟାସଙ୍କର ପୁତ୍ର ଏ ଶୁକ ମହାମୁନି ।
ଏ ଶୁକମୁନି ଲେଖାରେ ଆମ୍ଭ ପଣନାତି
ନିର୍ମାୟାବନ୍ତ ପୁରୁଷେ ବିଷ୍ଣୁରେ ଭକତି ।
ତାହାଙ୍କ ଜନ୍ମ କହିବା ଶୁଣ ରାୟେ ଏବେ
ବ୍ରହ୍ମା ନାରଦ ସମ୍ବାଦ ଜାଣୁ କିଛି ଆମ୍ଭେ ।
ସତ୍ୟବନ୍ତ ସବୁଠାରେ ଯଶୋବନ୍ତୀ ପୁରେ
ନୃସିଂହ ଗ୍ରନ୍ଥ ବ୍ରହ୍ମାଙ୍କୁ ନାରଦେ ପଚାରେ ।
ବ୍ରହ୍ମା ସେ ପୁରାଣଯାକ ଅର୍ଥ କରୁଥିଲେ
ତହିଁ ଶୁକ ଜନ୍ମ ଆମ୍ଭେ ଶୁଣିଅଛୁ ଭଲେ ।
ଏହା ଶୁଣି ପରୀକ୍ଷିତ ମୁନିପାଦ ଧରି
ବୋଇଲେ ସେ କଥା ମୋତେ କହନ୍ତୁ ବିସ୍ତାରି
ପୀତାମ୍ବର ଦାଶ ବୋଲେ ଶୁଣ ଏ ପୁରାଣ
ମୋହର ଶରଣ ଏକା ଶ୍ରୀରଙ୍ଗୀ ଚରଣ ।



## ପାର୍ବତୀଙ୍କୁ ଈଶ୍ୱରଙ୍କ ବ୍ରହ୍ମଜ୍ଞାନ କଥନ ଓ ଶୁକଦେବଙ୍କର ଜନ୍ମ ବିବରଣ

ରାଜା କହନ୍ତେ ବୋଇଲେ ଉର୍ବଶୀର ପୁତ୍ର
ତାହା ପ୍ରସ୍ତାବେ କହିବୁ ତୋତେ କିଛି ମାତ୍ର
ବ୍ରହ୍ମର୍ଷି ଅଟନ୍ତି ସେହୁ ବ୍ୟାସଙ୍କ ନନ୍ଦନ
ତାହାଙ୍କ ସମାନ ଜ୍ଞାନୀ ନାହିଁ କେ ରାଜନ ।
ଏତେ କହିଣ ବଶିଷ୍ଠ ଚିନ୍ତି କାମଦେବ
ବୁଝାନ୍ତି ଶୁକ ଦେବଙ୍କ ଜନ୍ମ ପଦାପଦ ।
ଶୁଣ ହେ ପରୀକ୍ଷ ରାଜା ଅପୂର୍ବ କାହାଣୀ
ହର ପାର୍ବତୀ ଦେବଙ୍କ ଏକାନ୍ତ ଭାଳେଣୀ ।
ଆଦ୍ୟ ସତ୍ୟଯୁଗର ଏ ନୃସିଂହ ପୁରାଣ
ଈଶ୍ୱର ସାଧିଲେ ଯେଉଁକାଳେ ବ୍ରହ୍ମଜ୍ଞାନ ।
ଏକାକ୍ଷର ବ୍ରହ୍ମର ସେ ଅଟେ ମହାଧ୍ୱନି
ତହିଁରେ ନିମର୍ଜ୍ଜିହର ହେଲେ ମହାଜ୍ଞାନୀ ।
ସେହି ଜ୍ଞାନ ଶୁଣିବାକୁ ଉମା ମନ କଲେ
ଅଖଣ୍ଡ ବ୍ରହ୍ମ ମହିମା ସ୍ୱାମୀଙ୍କୁ ପୁଚ୍ଛିଲେ ।
ନାରଦ ଆଗରେ ଏହା ବ୍ରହ୍ମା କହୁଛନ୍ତି
ଈଶ୍ୱରଙ୍କୁ ପୁଚ୍ଛାକଲେ ଦେବୀ ହୈମବତୀ ।
ବ୍ରହ୍ମଜ୍ଞାନ ବୋଲି ସ୍ୱାମୀ ବୋଲନ୍ତି କାହାକୁ
କେହି ତ ଗୋଚର କରି ନ ପାରିଲେ ତାକୁ
ରୂପରେଖ ମୂରତି ଯେ କେଉଁ ବର୍ଣ୍ଣ ତାର
କାହିଁ ଥାଇଣ ବଞ୍ଚଇ ସେ ନିଶି ବାସର ।

କଳା କି ଶ୍ୟାମଳ ସେହି ଗୌରବର୍ଣ୍ଣ ଦିଶି
ସ୍ତୀରି କି ପୁରୁଷ ମୋତେ କହ ଦେବକାଶୀ
ସାଧିଲ ଯା ସାତକଳ୍ପ ବସି ତ୍ରିଲୋଚନ
ଆହାର ନିଦ୍ରାକୁ ଛାଡ଼ି ତେଜିଣ ମୈଥୁନ ।
କ୍ଷୁଧା ତୃଷା ନିବାରଣେ ହେଲେ ଅକ୍ରାମର
ଏ କଥା ଶୁଣିବି ସ୍ୱାମୀ କହି ମୋତେ ହର ।
ପ୍ରିୟାମୁଖୀ ଏ ବଚନ ଶୁଣି ସଦାଶିବ
ବୋଇଲେ ଭଲା ପୁଚ୍ଛିଲୁ ଅପୂର୍ବ ପ୍ରସ୍ତାବ ।
ଏକାନ୍ତ ସ୍ଥାନରେ ସିନା ଏହି କଥା କହି
ନଥିବେ ଯହିଁରେ ଜୀବଜନ୍ତୁ ଜଣେ କେହି ।
ଚାଲ ଏକାନ୍ତେ ବସିବା ଯାଇ ଆମ୍ଭେ ଦୁହେଁ
ଉତ୍ତମ ଶିଷ୍ୟରେ ସିନା ଏହା ସବୁ କହେ ।
ଏତେ ବିଚାରି ଚଳିଲେ ଈଶ୍ୱର ଈଶ୍ୱରୀ
ମିଳିଲେ ନୈମିଷାରଣ୍ୟେ ତେଜି ଶ୍ୱେତଗିରି
ଦେଖିଲେ ସେ ବନେ ପଶି ଭୂମି ଦିବ୍ୟଜ୍ଞାନ
ବସିଲେ ଚମ୍ପକ ବୃକ୍ଷମୂଳେ ବେନିଜନ ।
ନିର୍ଜନ ସ୍ଥାନ ବୁଝିଣ ପ୍ରିୟାମୁଖ ଚାହିଁ
କୋଳରେ ବସାଇ ହର ହରଷିତ ହୋଇ
ହସ ହସ ହୋଇଣ ସେ ବୋଲନ୍ତିଗୋ ଶୁଣ
କଳା କି ଶ୍ୟାମଳ ରୂପ ପୁଚ୍ଛ ବ୍ରହ୍ମଜ୍ଞାନ ।
ତହିଁର ବୃତ୍ତାନ୍ତମାନ ଶୁଣ ପ୍ରାଣସହୀ
ବ୍ରହ୍ମପୁରୁଷ ବୋଲି ଯେ ଶୁକ୍ଲାମ୍ବର ଦେହୀ ।
ପୁଚ୍ଛିଲୁ ଯେ ରୂପରେଖ ମୂର୍ତ୍ତି ବର୍ଣ୍ଣ ତାର
ଅରୂପ ନୁହଇ ରୂପେ ନାହିଁ ପଟାନ୍ତର ।
ପଞ୍ଚାଶ କୋଟି ବସୁଧା ତାର ଯେତେସ୍ଥାନ
ଅଚ୍ଛିଦ୍ର ଭାବେ ବ୍ୟାପିଛି ଅଣାକାର ବ୍ରହ୍ମ ।
ଅବ୍ୟକ୍ତ ଅଖିଳ ନ୍ୟାସ ଅନାମୟ ହରି
ଅନନ୍ତ କୋଟି ଜୀବଙ୍କ ହୃଦେ ବିଜେକରି ।
ସ୍ତିରୀ ବା ପୁରୁଷ ବୋଲି ପୁଚ୍ଛାକଲୁ ସହି
ସ୍ତିରୀ ଅଙ୍ଗ ସେହିଜାଣ ପୁରୁଷଟି ସେହି ।
ଦେଖ ତୋର ହୃଦେ ଥାଇ ଶୁଣେ ସବୁକଥା
ମୋ ହୃଦେ ଥାଇ କହୁଛି ସକଳ ବାରତା ।
ଶୁଣ ଏମନ୍ତ ପୁରୁଷ ମହିମା ତୁ ଏବେ
ସତ୍ତ୍ୱ ରଜ ତମଗୁଣେ ଅଛି ସର୍ବଜୀବେ ।
ପଞ୍ଚାଶ ପାଖୁଡ଼ା ପଞ୍ଚଭୂତ ଅଷ୍ଟଦଳ
ଷଡ଼ଚକ୍ର ଭେଦି ସ୍ଫୁରେ ତ୍ରିକାଳ ମୃଣାଳ ।
ବାରମାତ୍ର ପଞ୍ଚାଶତ ଅକ୍ଷରୁ ଉଲଗ
ତାହାକୁ ଚିହ୍ନିଲା ପ୍ରାଣୀ ଲଭେ ମୁକ୍ତିମାର୍ଗ ।
ଯୋଗସାଧନରେ ଦଶ ଦ୍ୱାର ନ ଫିଟାଇ
ଉନମୁଖ ଧ୍ୟାନେ ବେନିପାଦ ଲେଉଟାଇ ।
ମୂଳ କମଳକୁ ଭିଡ଼ି ଟେକିବ ଉଜାଣି
ସୁଷୁମ୍ନାରୁନ୍ଧିବ ନାଳେ ପୁରାଇବ ପାଣି ।
ତ୍ରିବେଣୀ ଘାଟ ଉପରେ କାଉଁରୀ ମଣ୍ଡଳ
ଅଷ୍ଟଗିରି ମଧ୍ୟେ ବସି ଜାଳିବ ଅନଳ ।
ଇଅଁଳା ପିଅଁଳା ବେନିପାରିବ କବାଟ
ନିରଞ୍ଜନ ଗୃହମଧ୍ୟେ ପରଂହଂସ ଭେଟ ।
ଗୋଲାହାଟରେ ପଶିଣ ବଙ୍କୁନାଳେ ଖେଦି
ବହଇ ଅମୃତ ନଦୀ ନବଦ୍ୱାର ଭେଦି ।
ଅମର ସରୋବରେ ଯେ ପୂରାଇବ ପାଣି
ବ୍ରହ୍ମରନ୍ଧ୍ରରେ ଦେଖିବ ତହିଁ ଦିନମଣି ।
ଚକ୍ରାକାରେ ହଂସଯେବେବୁଲେ ସରୋବରେ
ମନକୁ ରଖିବ ତେବେ ଚଇତନ ଦ୍ୱାରେ ।
ସ୍ୱହସ୍ର କମଳ ମଧ୍ୟେ ଭ୍ରମର ଯେ ଭ୍ରମି
ସେ ସ୍ଥାନ ମଧ୍ୟେ ଆସନ ନିରାକାର ସ୍ୱାମୀ ।
ଜଳାଇବ ଯେ ଦିହୁଡ଼ି ଷୋଳଦ୍ୱାର ଭେଦି
ଷଡ଼ଚକ୍ର ନିରୋଧିବ ମେରୁଦଣ୍ଡ ରୁନ୍ଧି ।
ଅଷ୍ଟଦଳ ଚିହ୍ନିଯେବେ ବାତ ଚଳାଇବ
ଏଗାର ଦ୍ୱାର ମୁଦିଲେ ହଂସ ଯେ ନ ଯିବ
ପ୍ରାଣ ପବନ ଭିତରେ ଅପାନ ପୁରାଇ
ତ୍ରିବେଣୀ ସଙ୍ଗମ କରି ସମତୁଲେ ରହି ।
ପିଣ୍ଡ ଯେ ତାଳୁକା କଣ୍ଠ କପୋଳ ଏଚାରି
କପାଟ ପାରି ସାଧିବ ବଧି ମନେ ଧରି ।
ମନ ପବନ ଚୈତନ୍ୟ କରିବ ଯେ ଏକ
ତେବେ ସେ ଦେଖିବ ନିରାକାର ପଦ୍ମମୁଖ ।
କୀଟଠାରୁ ବ୍ରହ୍ମଯାଏ ବିଜେ ଚକ୍ରପାଣି
ଦେଖିବ ସବୁ ସମାନ କରି ମନେ ଗୁଣି ।
ଯେ ଶ୍ରୀହଟ୍ଟ ପାଟଣାରେ ଦେଖିବ ପବନ
ଶାନ୍ତହୋଇ ରହିବଟି ତାର ପଞ୍ଚମନ ।
ନିଶିଦିନ ହୁଏ ଘେନି ରବି ଚନ୍ଦ୍ରମାକୁ
ଭବଭୟ ତୁଟିଯାଇ ଚିହ୍ନିଲେ ତାହାକୁ ।
କାଳ କମଳରେ ଘରେ ନିରଞ୍ଜନ ବାସ
ସ୍ୱପ୍ନସୁଷୁପ୍ତି ଜାଗ୍ରତେ ହୋଇଛି ପ୍ରକାଶ ।
ଅଙ୍ଗାଙ୍ଗଯୋଗ ସାଧନ୍ତି ତହିଁ ସିଦ୍ଧ ମୂର୍ତ୍ତି
ଚଉରାଶି ଖଣ୍ଡଜ୍ଞାନ ଭିନ୍ନ ଭିନ୍ନ ପ୍ରତି ।
ଶୂନ୍ୟର ଭିତରେ ଅଛି ମହାଶୂନ୍ୟ ରହି
ପରମଶୂନ୍ୟ ଯେ ଶୂନ୍ୟ ଉପରକୁ କହି ।
ସମାଧି ଆତ୍ମା ପରମ ଆତ୍ମା ମଧ୍ୟେ ସ୍ଥିତି
ସେ ସମାଧି ଆତ୍ମାମଧ୍ୟେ ଉଦେ ସପ୍ତଜ୍ୟୋତି
ଆକାର ଉକାକ ଆଉ ଓକାର ମକର
ସକାର ବକାର ଘେନି ଜଗିବ ହକାର ।

ଏହିରୂପେ ସପ୍ତଜ୍ୟୋତି ଶୁଣ ପ୍ରାଣସହି
ଏକାନ୍ତ ଘେନିଣ ବିଜେ ପ୍ରଭୁ ଭାବଗ୍ରାହୀ ।
ମନ ପବନ ବିନ୍ଦୁ ଏ ଦେହକୁ ଧାରଣା
ଏହାଙ୍କ ଉପରେ ଆତ୍ମା ଅଟେ ଜଗଜ୍ଜିଣା ।
ସେ ଆତ୍ମା ଜଗତଯାକ ଅଛଇ ଆବୋରି
ଆତ୍ମାଟି ଗୋ ତତ୍ତ୍ୱଶାଖା ଜୀବ ସବୁଙ୍କରି ।
ଆତ୍ମାର ପରତେ ଦେଲେ ବ୍ରହ୍ମଜ୍ଞାନ ଜାଣି
ଆତ୍ମାକୁ ଚିହ୍ନିଲା ଲୋକ ମୃତ୍ୟୁପାରେ ଜିଣି ।
ଜୀବାତ୍ମା ପରମ ଆତ୍ମା ବୋଲିଟି ଯାହାକୁ
ଜୀବରୁ ଚିହ୍ନିବେ ସଖି ପାଏ ପରମକୁ ।
ଚଇତନଦ୍ୱାରେ ଯେବେ ନେତ୍ର ଥକାଇବ
ପରମକୁ ଘେନି ଜୀବ ସୁଖେ ବିହରିବ ।
ଶୁଣ ହେ ପରୀକ୍ଷ ରାଜା ନିର୍ଗୁଣ ଯେ ଦୀକ୍ଷା
ଯେପରି ବ୍ରହ୍ମାଙ୍କଠାରୁ ନାରଦଙ୍କ ଶିକ୍ଷା ।
ଜ୍ଞାନର ମହିମା ଜାଣ ଏମନ୍ତ ଅଟଇ
ଶଙ୍କର କହନ୍ତି ଆଗୋ ଶୁଣ ପ୍ରାଣସହି ।
ସେ ବୃକ୍ଷ ଉପରେ ଏକ ମୃତପକ୍ଷୀ ଥିଲା
ହରଗୌରୀ ସମ୍ବାଦେ ତାଦେହ ପଲ୍ଲବିଲା ।
ଜୀବ ପରମ ଘେନି ସେ ବାହାର ହୋଇଲା
ସଂସାରରେ ଶୁକମୁନି ସେହୁ ବୋଲାଇଲା ।
ସଂଶୟମନା ହୋଇଲେ ରାଜା ଏହା ଶୁଣି
ବଶିଷ୍ଠଙ୍କ ପଦେକଲେ ନିଉଛାଳି ପୁଣି ।
ଷଡ଼ଅର୍ଘ୍ୟ ଦେଇ ପୂଜା କଲେ ମହାରାଜ
କିରୂପେ ଜନ୍ମିଲେ ଶୁକ କହ ବ୍ରହ୍ମଦ୍ୱିଜ ।
ବ୍ରହ୍ମା ବୋଇଲେ ନାରଦ ଗଲେ ସିନାବୁଝି
ତୁମ୍ଭେ ତ ଶୁଣାଇଲ ମୁଁ ନ ପାରିଲିହେଜି ।
ଏବେ ଯେ କହିଲ ବୃକ୍ଷେ ମୃତପକ୍ଷୀ ଥିଲା
ହରଗୌରୀ ସମ୍ବାଦେ ତାଦେହ ପାଲଟିଲା ।
କେବଣ ପ୍ରକାରେ ସେହୁ ହେଲା ଶୁକମୁନି
ସଂଶୟ ଫେଡ଼ିଣ ମୋତେ କହ ମହାମୁନି ।
ରାଜାର ବିନୟ ବାଣୀ ଶୁଣି ତପୋବନ୍ତ
ବୋଇଲେ ତେବେ କହିବା ଶୁଣ ପରୀକ୍ଷିତ
ଭାଗ୍ୟବନ୍ତ ସଭାରେ ଯେ ବ୍ରହ୍ମା ଏହି ଅର୍ଥ
କହନ୍ତି ନାରଦ ମୁନି ଶୁଣନ୍ତି ଏ ଗ୍ରନ୍ଥ ।
ଏ ପକ୍ଷୀକଥା ପୁରାଣେ ଯାହା କହିଥିଲେ
ବ୍ରହ୍ମା ଏକା ଶୁକଦେବ ହୋଇଲା ବୋଇଲେ
ତୁହି ଯେବେ ପକ୍ଷୀଜନ୍ମ ପଚାରିଲୁ ମୋତେ
ଏକବ୍ୟାଧ ମାରିଥିଲା ତାକୁ ଯୁଗ ସତ୍ୟେ ।
ତାହାର ନାମଗୋଟି ଯେ ଅଟେ ଶୁକପକ୍ଷୀ
ଅଠା ଲଗାଇଣ ବ୍ୟାଧ ଦେଲା ନଳ ଯୋଖି
ସୂତ୍ର କରିଣ ଲଗାନ୍ତେ ବାଜିଲା ଯେ କାଠି
କ୍ଷଣକେ ପଡ଼ିଲା ପ୍ରାଣ ଛାଡ଼ି ପକ୍ଷୀଗୋଟି ।
ସେ ଗଛ କ୍ରୋଟର ମଧ୍ୟେ ଲାଗିରହେ ଶବ
ଚଉକତି ଲୋଡ଼ି ବ୍ୟାଧ ହୋଇଲା ଅଦୃଷ୍ଟ ।
ଜନ୍ତୁକୁ ନପାଇ ତହୁଁ ବାହୁଡ଼ିଣ ଗଲା
ସେହିକାଳୁଁ ବୃକ୍ଷେ ଶବ ଲାଗି ରହିଥିଲା ।
ମୃଗଚର୍ମ ପ୍ରାୟେ ଶୁଷ୍କ ହୋଇଲା ନିମର୍ଜି
ଆତ୍ମାଯାଇ ବ୍ରହ୍ମଦେହେ ରହିଲା ଉପୁଜି ।
ଜୋକପ୍ରାୟେ ସିନା ଏହି ଆତ୍ମାର ଲକ୍ଷଣ
ସେ ଯେହ୍ନେ ଏକପାଦକେ ସଞ୍ଚରଇ ତୃଣ ।
ଜୀବ ସେହିରୂପେ ଯେବେ ଦେହରୁଟି ଯାଇ
ପଞ୍ଚଭୂତ ଘେନି ବ୍ରହ୍ମ ଦେହେ ଉପୁଜଇ ।
ବ୍ରହ୍ମରେ ଜନ୍ମିଲାକ୍ଷଣି ବ୍ରହ୍ମନ୍ୟାୟ କରେ
ପାପୀକି ପାପେ ଜନ୍ମାଏ ପୁଣ୍ୟକୁ ପୁଣ୍ୟରେ
ଏ ସଂସାରେ ଜୀବହୋଇ ଯେତେ ଜନ୍ମିଛନ୍ତି
ବ୍ରହ୍ମ ପୁରୁଷର ଏହି କଳଙ୍କ ଅଟନ୍ତି ।
କଳଙ୍କ ହେବାରୁ ବ୍ରହ୍ମ ନ ପାରଇ ଚିହ୍ନି
ଯେ ବ୍ରହ୍ମ ଚିହ୍ନେ ସେ ଜନ୍ମ ମୃତ୍ୟୁକୁ ନମାନି
ସେ ପକ୍ଷୀ ପ୍ରାଣ ଛାଡ଼ିଣ ବ୍ରହ୍ମେ ମିଶିଗଲା
ଶବଗୋଟି ଶୁଖିଶୁଖି ବୃକ୍ଷେ ଲାଗିଗଲା ।
ନୃସିଂହ ପୁରାଣେ ଏହା କହୁଛନ୍ତି ବ୍ରହ୍ମା
ଜ୍ଞାନ ଶୁଣନ୍ତେ ଏକାନ୍ତେ ହରମୁଖୁଁ ଉମା ।
ଚଉରାଶି ଖଣ୍ଡଜ୍ଞାନ ଆଦିଅନ୍ତ କରି
କହନ୍ତି ଯେ ସଦାଶିବ ଶୁଣନ୍ତି ଗଉରୀ ।
ଏଥୁ ଅନନ୍ତରେ ସେହି ମୃତ ଶବଗୋଟି
ଜ୍ଞାନ ବାସନା ଲାଗି ତା ଶରୀର ପାଲଟି ।
ତକ୍ଷଣେ ବୃକ୍ଷରେ ବସି ରାବେ ପକ୍ଷୀବର
ତାହାଦେଖି ମହେଶ୍ୱର ହୋଇ ଚମତ୍କାର
ବିଚାରନ୍ତି ଜୀବ ଏଥେ ନଥିଲା ତ ପୁଣି
ଶୁଣିଲା ପାପିଷ୍ଠ କାହୁଁ ଆସି ଜ୍ଞାନବାଣୀ
ମୁଁ ଯେବେ ନ ମାରି ଏହା ଛାଡ଼ିବି ନିକର
ଆଜହୁଁ ହେଲା ଏ ନିଶ୍ଚେଁ ଅଜର ଅମର ।
ଗୁପତ ଜ୍ଞାନକୁ ମୋର ପାଦରେ ଢାଳିବ
ବନଜନ୍ତୁ ସଙ୍ଗେ ମିଳି ପ୍ରଘଟ କରିବ ।
ସ୍ୱଭାବେତ ମୂଢ଼ହୀନ ଅଟେ ପକ୍ଷୀଜନ୍ତୁ
ଏ କିସ ଜାଣିବ ଭଲ ମନ୍ଦ ଜ୍ଞାନ ତତ୍ତ୍ୱ ।
ଏହାକୁ ରଖିଲେ ଭଲ ନାହିଁ ଏ ସଂସାରେ
ଧଇଲେ ନିଶ୍ଚୟ ମାରି ଦହିବି ଅଗ୍ନିରେ ।
ଅସ୍ଥି ଚର୍ମ ମାଂସ ଲୋମ କିଛି ନ ରଖିବି
ନିଃଶେଷ କରି ଏହାକୁ ଭସ୍ମ କରିଦେବି ।

ଏତେ ବିଚାରିଣ ହର ଉମାମୁଖ ଚାହିଁ
ବୋଇଲେ ସଖିରେ ଚଳ କପିଳାସ ଭୂଇଁ
ମୁହିଁ ତୋତେ ଜ୍ଞାନ ଆଜୁଁ ଜଣାଇଲିଯେତେ
ତୁମ୍ଭେ ନ ଜାଣୁ ଏ ପକ୍ଷୀ ଶୁଣିଲା ସାକ୍ଷାତେ
ଦେଖି ନ ଶୁଣିଲା ପ୍ରାୟେ ବସିଲା ବୃକ୍ଷରେ
ଏହାକୁ ନ ମାରି ମୁହିଁ ନ ଯିବଟି ପୁରେ ।
ଏବେ ତୁମ୍ଭେ ପ୍ରିୟସହୀ ହୋଇ ଦିବ୍ୟବେଶ
ବୃଷଭ ପିଠିରେ ବସି ଚଳ କପିଳାସ ।
ଏତେ ବୋଲିଣ ଈଶ୍ୱର ବୃଷଭ ସୁମରି
ଆସନ ଟଳିଲା ତାର ଆସେ ଶୀଘ୍ର କରି ।
ହର ଉମାଙ୍କର ପାଦେ ନମିଲା ବୃଷଭ
କଲ୍ୟାଣ ବାଞ୍ଛା କରିଣ କହନ୍ତି ଯେ ଶିବ ।
ତୁ ଏବେ ଆହେ ବୃଷଭ ଶୁଣ ମୋରବାଣୀ
କପିଳାସକୁ ଚଳନ୍ତୁ ଘେନି ଗୋସାମଣି ।
ଈଶ୍ୱର ବଚନ ଶୁଣି ବୃଷଭ ସନ୍ତୋଷ
ପାର୍ବତୀଙ୍କୁ ଘେନିଯାଇ ମିଳେ କପିଳାସ ।
ତହିଁ ଉତ୍ତାରୁ ଶଙ୍କର ବୃକ୍ଷ ଶିରେ ଉଠି
ପକ୍ଷୀକି ଧରିବେ ବୋଲି ବଢ଼ାଇଲେ ମୁଠି ।
ଚହଟି ହୋଇଲା ପକ୍ଷୀ ଈଶ୍ୱରଙ୍କୁ ଦେଖି
ଶୂନ୍ୟେ ଉଡ଼ିଗଲାବେନି ଡେଣାକୁ ସେ ଟେକି
ତାହାଦେଖି ସଦାଶିବ ମହାକୋପ ହୋଇ
ବୃକ୍ଷରୁ ଖସିବା ଦେଖି ଉପରକୁ ଚାହିଁ ।
ଡାକନ୍ତେ କେଣେ ଆଜ ତୁ ଯିବୁ ହୀନଜନ୍ତୁ
ମୋତେ ଲୁଚି କାହିଁ ପଶି ରଖିବୁତୋ ମୃତ୍ୟୁ
ଏତେ ବୋଲିଣ ଈଶ୍ୱର କୋପମୁଖ ହୋଇ
ସେ ପକ୍ଷୀର ପଛେ ପଛେଗଲେକ ଗୋଡ଼ାଇ
ଉଡ଼ିକରି ଶୂନ୍ୟମାର୍ଗେ ପଳାଉଛି ପକ୍ଷୀ
କେତେ ମଣ୍ଡଳ ବୁଲିଲା ନପାରେ କେ ରଖି
ଏ ପୁରାଣେ ସେ ମଣ୍ଡଳ ନାମମାନ ଶୁଣ
ବ୍ରହ୍ମା ଯାହା କହିଛନ୍ତି ନାରଦ ଆଗେଣ ।
ସାରାମଣ୍ଡଳ ଯେ ସତ୍ୟମଣ୍ଡଳ ଭ୍ରମିଲା
ସ୍ୱର୍ଗମଣ୍ଡଳରୁ ଯମ ମଣ୍ଡଳେ ମିଳିଲା ।
ଗୋଲକମଣ୍ଡଳୁ ଶୂନ୍ୟମଣ୍ଡଳକୁ ଘେନି
ତାରା ଚନ୍ଦ୍ର ସୂର୍ଯ୍ୟ ଏହି ମଣ୍ଡଳ ଯେ ତିନି ।
ଦେବ ଧ୍ରୁବ ପୁଣି ବିଷ୍ଣୁମଣ୍ଡଳଟି ଜାଣ
ଶିବ ଗୋମତୀ ଯେ ଉର୍ଦ୍ଧ୍ୱମଣ୍ଡଳ ଭ୍ରମିଣ ।
ବ୍ରହ୍ମା କାଉଁରୀ ନିର୍ଗୁଣ ମଣ୍ଡଳେ ପଶିଲା
ତହୁଁ କଉସ୍ତୁଭ ଗ୍ରହମଣ୍ଡଳେ ମିଳିଲା ।
ଜୟ ବିଜୟ ମଣ୍ଡଳ ପଦ୍ମ ମଣ୍ଡଳରେ
ଉଦୟ ମେରୁ ମଣ୍ଡଳେ ପଶିଲା ଭୟରେ ।

ତହିଁ ପୁଣି ପକ୍ଷୀ ଡେରି ଆସି ମଧୁପୁରେ
ପଶିଗଲା ପୁର ନଗ୍ର ଦେଶମାନଙ୍କରେ ।
ଗୋପପୁର ମଧୁପୁର ଅଯୋଧ୍ୟା ନଗରୀ
ବସନ୍ତି ଖେଚର ପୁର ନୀଳେନ୍ଦ୍ରି ସେ ପୁରୀ ।
ଶାଖାସୁର ରାଖାପୁର ମାଲ୍ୟବନ୍ତପୁର
ନିଶାଦପୁରରେ ଯାଇ ପଶେ ପକ୍ଷୀବର ।
ଏମାନଙ୍କେ ପଶି ପୁଣି ନପାରି ସମ୍ଭାଳି
ଏ ନଗ୍ରମାନଙ୍କୁ ଜାଣଗଲା ବେଗେ ଚଳି ।
ସାରନଗ୍ର ଯାନଗ୍ର ବୃନ୍ଦାନଗ୍ର ଆଦି
ଉଜାଣ ବିଜୟାନଗ୍ର ଓଡ଼ନଗ୍ର ଖେଦି ।
ବିଞ୍ଚନଗ୍ର ବେଲାଳ ଯେ ଗୌରୀନଗ୍ର ଯାଏ
ଭୋଜବୀର କୁଶନଗ୍ର ଲେଉଟି ପଳାଏ ।
ଏ ନଗ୍ରମାନଙ୍କେ ପଶି ନ ପାରନ୍ତେ ଲୁଚି
ଦେଶମାନଙ୍କୁ ସେ ପୁଣି ପଳାଇଲା ଘୁଞ୍ଚି ।
ମହ୍ଲାର ଗୋମେତ ମତ୍ସ୍ୟଦେଶ ମରିହଟ୍ଟ
କାଶୀ କଉଶିକ ଦେଶ କେଦାଇ କର୍ଣ୍ଣାଟ ।
ଭୈରବ ମୈଳାଣଦେଶ ମହେନ୍ଦ୍ର ମାଧବୀ
ଚିତ୍ରାଚିତ୍ରାଙ୍ଗଦ ଦେଶ ପୁରେନ୍ଦ୍ରୀ ପୁରବୀ ।
ଶବରୀ ସୁଜାଣ ଦେଶ ସୌରାଷ୍ଟ୍ର ଆବର
ଅଞ୍ଜନ ଖଞ୍ଜନ ଯାଇ ମିଳିଲା କୁଞ୍ଜର ।
କାହିଁ ରହି ନପାରିଲା ଈଶ୍ୱରଙ୍କ ଡରେ
ଆତଙ୍କ ହୋଇଣ ପକ୍ଷୀ ବିଷ୍ଣୁଙ୍କୁ ସୁମରେ ।
ଆହେ ଦୟାନିଧି ମୋତେ ଉଦ୍ଧାରିବା ଏଥୁ
ଦେଖ ଏ ଶଙ୍କର ମୋର ହେଲା କାଳଶତ୍ରୁ
ପୃଥିବୀ ବୁଲିଲି କେହି ନ ପାରିଲେ ରଖି
ତୁମ୍ଭେ ନ ରଖିଲେ ନିଶ୍ଚେ ମଲା ଶୁକପକ୍ଷୀ ।
ଯେବଣ ଜ୍ଞାନ ଜାଣିଲେ ଅକ୍ରାମର ଦେହୀ
ତୁମ୍ଭ ଚିହ୍ନିଲା ପ୍ରାଣୀର ମୃତ୍ୟୁ ଅଛି କାହିଁ ।
ଶରଣ ପଞ୍ଜର ନାଥ ଅଟୁ ଅନ୍ତର୍ଯ୍ୟାମୀ ।
ଭୃତ୍ୟର ଭ୍ରାନ୍ତିନାଶକ ଭକ୍ତଜନ ସ୍ୱାମୀ ।
ନିର୍ଗୁଣ ପୁରୁଷ ତୁହି ନିତ୍ୟ ଦେହବନ୍ତ
ଯାବତ ଜୀବରୂପୀ ତୋ ସ୍ୱରୂପ ଅନନ୍ତ ।
ଏକାକ୍ଷର ବ୍ରହ୍ମା ତୁହି ଶବ୍ଦେ ଜଣାଯାଉ
ଜୀବ ପରମ ହୋଇଣ ପ୍ରାଣୀହୃଦେ ଥାଉ ।
ଠୁଳଶୂନ୍ୟ ମଧରେ ତୁ ସଦାକାଳେ ବସୁ
ସକାର ଅଶ୍ୱେ ଚଢ଼ିଲ ହକାରକୁ ଆସୁ ।
ହକାରେ ବିହାର କରୁ ଠୁଳକୁ ନ ଛାଡ଼ି
ଚରଣକେ ଚାଲୁଥାଉଁ ପକ୍ଷୀ ପ୍ରାୟେ ଉଡ଼ି ।
ଜୀବ ପରମ ହୋଇଣ ସର୍ବ ହୃଦେ ଖେଳୁ
ମୂର୍ଖକୁ ଅଦୃଶ୍ୟ ଜ୍ଞାନୀ ଅଗ୍ରତରେ ମିଳୁ ।

ଏକାକ୍ଷର ବ୍ରହ୍ମସୂତ୍ର ଜାଣଇ ସେ ଏକ
କୋଟି ଗ୍ରନ୍ଥ ପଢ଼ୁ ତୋତେ ନଜାଣନ୍ତି ଲୋକ
ଜ୍ଞାଣ ମୁନିମାନେ ଯେଉଁ କାଳଚକ୍ର ଛେଦି ।
ଯେ ଚକ୍ର ଘେନିଣ ମୋତେ ମୃତ୍ୟୁଞ୍ଜୟ ଖେଦି ।
ସର୍ବେ ବୋଲନ୍ତି ତ୍ରୈଲୋକ୍ୟଚିନ୍ତାମଣିତୋତେ
ତେଣୁ ଶରଣ ପଶିଲି ତୋର ପାଦଗ୍ରତେ ।
ଶିବ ଭୟରୁ ଉଦ୍ଧାର ଆହେ ଭାବଗ୍ରାହୀ
ତୁମ୍ଭ ବିନା ମୋର ଆଉ ସାହା କେହିନାହିଁ
ଜଳ ସ୍ଥଳ ଅନଳଯେ ସୋମ ଦିବାକର
ସକଳ ବ୍ୟାପକତୁମ୍ଭେ ଅଟ ଦାମୋଦର ।
ତୁମ୍ଭେ ଏକା ବ୍ରହ୍ମା ବିଷ୍ଣୁ ତୁମ୍ଭେ ପଞ୍ଚାନନ
ଛପନକୋଟି ଜୀବଙ୍କୁ ସଞ୍ଜିଲେ ଆପଣ ।
ଯାହାକୁ ଯେପରି ରଖ ଏ ପୃଥ୍ୱୀରେ ଆଣି
ସେ ତୋତେ ଆଣ୍ଡ ଦେଖାଇ ମରୁଥାଇଟାଣି
ପ୍ରକୃତି ଭେଦ ଗୋଡ଼ାଇ ମରୁଛି ଯେ ହର
ଏ ବିପଦୁ ମୋତେ ପ୍ରଭୁ ବେଗେରକ୍ଷାକର ।
ଏମନ୍ତ ବ୍ୟାକୁଳ ହୋଇ ସୁମରନ୍ତେ ହରି
ତତକ୍ଷଣେ ପୀତବାସ ତହିଁ ବିଜେକରି ।
ଅନ୍ତର୍ଯ୍ୟାମୀ ପୁରୁଷଜାଣନ୍ତି ସର୍ବଚିତ୍ତ
ଶୁକପକ୍ଷୀର ଯେ ଦୁଃଖପଡ଼ିଲେ ଅଚ୍ୟୁତ ।
ଶ୍ରୀପଦ କରେ ଆଉଁସି ଦେଲେ ପୀତବାସ
ହରିତବର୍ଣ୍ଣ ଦିଶିଲା କ୍ଷୟ ଗଲା କ୍ଳେଶ ।
ପୀତ ବସନ ଶ୍ରୀହରି ଅଙ୍ଗେଯେହ୍ନେଶୋହେ
ତାହାର ତେଜ ଦିଶିଲା ପକ୍ଷୀ ପୀତମୟେ ।
ପଦ୍ମକର ଲାଗନ୍ତେଣ ରକ୍ତବର୍ଣ୍ଣ ଦିଶି
ଥଣ୍ଟ ଡେଣା କଣ୍ଠେରଙ୍ଗ ରହିଲା ବିକାଶି ।
ଏତେକ ଲକ୍ଷଣ ତାକୁ ଦେଇ ଭଗବାନ
ବୋଇଲେ ବ୍ୟାସଙ୍କ ବୀର୍ଯ୍ୟେହୋଇବୁ ଜନମ
ଶୁକଦେବ ତୋର ନାମ ହେଉ ପକ୍ଷୀବର
ବଳେ କି କରିପାରିବେ ଆଉ ତୋ ତେନର
ତୋର ବହୁତ ବଖାଣ ହେବ ମୋର ଯଶ
ମୋହର ନାମ ଜଗତେ କରିବୁ ପ୍ରକାଶ ।
ସକଳ ଜନେ ଶୁଣି ତା ହୋଇବେ ପବିତ୍ର
କହିବୁ ଋଷିଙ୍କ ମଧ୍ୟେ ବସି ବେଦଶାସ୍ତ୍ର ।
ଏମନ୍ତ ବର ଦେଇଣ ଯାନ୍ତେ କଞ୍ଜଆଖି
ଶୁଣି ପାଦପଦ୍ମେ ପଡ଼ି ପଚାରଇ ପକ୍ଷୀ ।
ଆହେ ଶଙ୍ଖପାଣି ମୋତେ ଦେଲେକେଉଁଚିହ୍ନ
ମୁହିଁ ଲେଉଟି ଜନ୍ମିଲେ ବହିବି ଯେ ବର୍ଣ୍ଣ ।
ଶ୍ରୀହରି ବୋଇଲେ ମନେ ନ ଭାଳ ହେ କିଛି
ଆଜ୍ଞୁଁ ତୋବଂଶେ ଜନ୍ମିବେଯେତେପଶୁପକ୍ଷୀ

ସକଳେ ଏହି ସ୍ୱରୂପେ ଜନମ ଲଭିବେ
ପ୍ରାତୁ ଉଠି ରାମ କୃଷ୍ଣ ନାମକୁ ଗାଇବେ ।
ସଂସାରୁ ସରିବେ ନାମ ଶୁଣି ନରନାରୀ
ଯେ ତୁମ୍ଭଙ୍କୁ ମାରିବେ ସେ ମୋହର ବଇରୀ
ତୁ ଏବେ ବ୍ୟାସଙ୍କ ବୀର୍ଯ୍ୟେ ହୁଅ ଯେ ଜନମ
ଏତେ କହିଣ ଅଦୃଶ୍ୟ ହେଲେ ପୂର୍ଣ୍ଣବ୍ରହ୍ମ ।
ଏସନ ସମୟେ ସେହି ଶଙ୍କର ଦୈବତ
ବ୍ରହ୍ମାଣ୍ଡ ବୁଲି ବୁଲି ସେ ହେଲେ ଅକଶତ ।
ପକ୍ଷୀକି ଧରି ନପାରି ଆତଙ୍କ ଯେ ହୋଇ
ବ୍ରହ୍ମଜ୍ଞାନ ନେଲା ବୋଲି ଅଛନ୍ତି ଗୋଡ଼ାଇ
ଭୋଳାନାଥ ପ୍ରଭୁ ସିନା ଭୋଳାନାଥ ସ୍ୱାମୀ
ଯେ କଥାରେ ମନ ଥାଇ ତହିଁ ଥାନ୍ତି ଭ୍ରମି ।
ପକ୍ଷୀକି ମାରିବେ ବୋଲି ବିଚାରନ୍ତି ହୃଦେ
ଗୋଡ଼ାଇଅଛନ୍ତି ତେଣୁ ତାପଛରେ କ୍ରୋଧେ
ତହୁଁ ପକ୍ଷୀବର ନେତ୍ରେ ହୋଇଲା ଗୋଚର
ଈଶ୍ୱର ଡାକନ୍ତି କେଣେ ଯିବୁ ଜ୍ଞାନଚୋର ।
ପୂର୍ବ ରୂପକୁ ତେଜିଣ ହେଲୁ ଅନ୍ୟ ମୂର୍ତ୍ତି
ଏହି ରୂପ ଧଇଲେ କି ଯିବୁ ପ୍ରାଣେ ବର୍ତ୍ତି
ଧଇଲୁ ତୁ ପୀତବର୍ଣ୍ଣ ଛାଡ଼ି କଳାବର୍ଣ୍ଣ
ବର୍ଣ୍ଣଶଙ୍କର ହୋଇଲେ ରହିବ କି ପ୍ରାଣ ।
ପକ୍ଷୀଜନ୍ତୁ ସିନା ତୋର ବୁଦ୍ଧିମାତ୍ର କେତେ
ଜ୍ଞାନଲାଗି ଭବିଷ୍ୟ ତୁ ଦେଖାଉଛୁମୋତେ ।
ଆଜି ତୋତେ ଯୋଗ୍ନିମୁଖେକାଟି ଦେବି ପକ୍ଷୀ
ବ୍ରହ୍ମା ବିଷ୍ଣୁ ଇନ୍ଦ୍ର ହେଲେ ନ ପାରିବେରଖି
ଏତେବୋଲି ଶିବ ଧାଇଁଯାନ୍ତେ ତଡ଼ବଡ଼େ
ପକ୍ଷୀ ଲାଞ୍ଜ ବାଜିଗଲା ଆସି ମୁଣ୍ଡେଗୋଡ଼େ
ପକ୍ଷୀକି ଧଇଲା ପ୍ରାୟ ବୁଝନ୍ତି ଈଶ୍ୱର
ବିଷ୍ଣୁର ବଳରେ ମାୟା କରେ ପକ୍ଷୀବର
କ୍ଷଣକେ ଦୃଶ୍ୟ ହୁଅଇ କ୍ଷଣକେ ଅଦୃଶ୍ୟ
କ୍ଷଣକେ ହୃଦରେ ବସେ କ୍ଷଣକେ ଆକାଶ ।
କ୍ଷଣକେ ସେ ଲୁଚାଦେଇ କ୍ଷଣେ ଆଗେ ବସି
ଧରୁ ଧରୁ ପଳାଏ ସେ କରମଧ୍ୟୁ ଖସି ।
ପୁଣି ଲେଉଟି କ୍ଷଣକେ ବସେ ହର ଶିରେ
ତାହାଦେଖି ଚମତ୍କାର ହେଲେ ଉମାବରେ
ବିଚାରିଲେ ଏହାକୁ ମୁଁ ନ ପାରିଲି ଧରି
ପୃଥିବୀଯାକ ବୁଲିଲି ପ୍ରଦକ୍ଷିଣ କରି ।
ଆଉ କି ରୂପେ ଏହାକୁ କରିବି ନିଧନ
ଛାଡ଼ିଦେଲେ ବ୍ୟର୍ଥ ହେବମୋର ବ୍ରହ୍ମଜ୍ଞାନ ।
ଜନ ଜନ୍ତୁରେ ମିଳି ଏ କହିବ କେବଳ
ଗୁପତ ଜ୍ଞାନକୁ ମୋର ଜାଣିବେ ସକଳ ।

ଏମନ୍ତ ପାଞ୍ଚଣ ହର ପ୍ରକୁପିତ ହୋଇ
ବୋଇଲେ ମୁଁ ବିଶ୍ୱରୂପ ଆଜ ଧରିବଇଁ ।
ବ୍ରହ୍ମାଣ୍ଡଯାକ ଘୋଟିଣ ବଢ଼ାଇବି କାୟା
ମାରିବି ଦେଖିଲେ ତହିଁ ପକ୍ଷୀଜନ୍ତୁ ଶୁଆ
ଦେଖ ଏ ଚାଣ୍ଡାଳ ଜନ୍ତୁ ବସିଲା ମୋ ମାଥେ
ଏହିକ୍ଷଣି ପଳାଇବ ହସ୍ତକୁ ବଢ଼ାନ୍ତେ ।
ଦଣ୍ଡେ ଏ ପକ୍ଷୀ ମୁଣ୍ଡରେ ବସିଥାଉ ମୋର
ଏତେ ପାଞ୍ଚଣ ବ୍ରହ୍ମାଣ୍ଡେ ଘୋଟିଲେ ଈଶ୍ୱର
ଲକ୍ଷେଯୂଣ ଓସାର ଯେ କଳେବର କଲେ
ବେନିଲକ୍ଷ ଯୂଣଯାଏ ଆକାଶ ବେଢ଼ିଲେ ।
ମହାବିଶ୍ୱମୂର୍ତ୍ତି ରୂପ ବିକାଶିଲେ ରୁଦ୍ର
ଗିରି ଗହ୍ୱର ସହିତେ ପୂରିଲେ ସମୁଦ୍ର ।
ନଦନଦୀ ସର୍ବଜନ୍ତୁ ସରୋବରେ ବ୍ୟାପି
ଈଶ୍ୱରଙ୍କ ପାଦତଳେ ରହିଗଲେ ଛପି ।
ଇନ୍ଦ୍ର ଅଗ୍ନି ଯମ ଆଉ ବରୁଣ ନୈର୍ଋତ
ବାୟୁ କୁବେର ଈଶାନ ଆକାଶ ଅନନ୍ତ ।
ଏହିରୂପେ ଦଶଦିଗ ବ୍ୟାପି ସଦାନନ୍ଦେ
ଚଉଦକୋଟି ଯେ ରୁଦ୍ର ପ୍ରକାଶିଲେ ହୃଦେ
ମହାଉଗ୍ର ବଦନ ଯେ ବିକରାଳ ଦଂଷ୍ଟ୍ର
କଟିତଳେ ବିରାଜଇ ଭୁଜଙ୍ଗ ଲେଙ୍ଗଟ ।
କଣ୍ଠତଟେ ବକ୍ଷସ୍ଥଳେ ଅହିରାଜ ଗର୍ଜେ
ନବଲକ୍ଷ ଡମ୍ବରୁ ଯେ ଅନ୍ତରୀକ୍ଷେ ବାଜେ ।
ଅସ୍ଥି ରୁଦ୍ରାକ୍ଷର ମାଳା ବିଭୁତି ଭୂଷଣ
ଯୋଜନେ ଯୋଜନେ ଲମ୍ବ ନାସାଚକ୍ଷୁକର୍ଣ୍ଣ
ଝମ ଝମ ଦମ ଦମ କୁହୁକୁହୁ ଗିର
ଧଇଲେକ ବିଶ୍ୱମୂର୍ତ୍ତି ଦେବ ଦିଗମ୍ବର ।
ରଟ ମଟ କରନ୍ତି ସେ ଦନ୍ତପନ୍ତି ଭିଡ଼ି
ଡକାନ୍ତି ଆଜ କାହିଁରେ ଯିବୁ ପକ୍ଷୀ ଉଡ଼ି ।
କୁରାଳଚକ୍ର ପରାୟେ ବୁଲୁଥିଲୁ ପୁଣ
ଏବେ ବିଧି ଘଟାଇଲେ ଆଣି ତୋ ମରଣ ।
ସୁମରରେ ପକ୍ଷୀ ଛାର ତୋର ପିତା ମାତା
ସୁମରରେ ପକ୍ଷୀ ଏବେ ତୋ ଇଷ୍ଟ ଦେବତା
ସୁମରରେ ପକ୍ଷୀ ତୋର ଜ୍ଞାତି ବନ୍ଧୁବର୍ଗ
କେ ପାରିଲେ ରକ୍ଷା କରୁ ଆସି ତୋରଅଙ୍ଗ
ଏତେ ବୋଲି ସଦାନନ୍ଦ କମ୍ପାଇଲେ ଦେହ
ତାହା ଦେଖି ଶୁକପକ୍ଷୀ ହସେ ଟହଟହ ।
ବିଚାରିଲା ଦେଖ ଏବେ ପୁରୁଷ କପାଳୀ
ମାୟାରେ ବୁଲାଏ ମୋତେ ମାରିବଏ ବୋଲି
ମୁହିଁତ ଜାଣିଲି ବ୍ରହ୍ମା ବିଷ୍ଣୁ ମହେଶ୍ୱର
ଏକାତ୍ମା ଅଟନ୍ତି ପୁଣି ତ୍ରିଗୁଣେ ବିହାର ।

ସେହି ବ୍ରହ୍ମା ସେହି ବିଷ୍ଣୁ ସେହି ଶୂଳପାଣି
ଆଣିଛି ଏ ଜ୍ଞାନ କେଉଁ ବାପଠାରୁ ପୁଣି ।
ମୋର ଜ୍ଞାନ ନେଲାବୋଲି ବଢ଼ାଇଛି କାୟା
ଏହିଠାରେ ଆଜି ମୁହିଁ କରିବି ଯେ ମାୟା ।
ନାରାୟଣଙ୍କୁ ଚିନ୍ତିବି ଦେବ ବୃକ୍ଷେ ପେଶି
ହରକୋପୁଁ ତରିବି ମୁଁ ସେହି ବୃକ୍ଷେ ବସି ।
ଏତେକ ପାଞ୍ଚି ବିଷ୍ଣୁଙ୍କୁ ସୁମରିଲା ଚିତ୍ତେ
ତକ୍ଷଣେ ବୃକ୍ଷେକ ଆସି ଜନ୍ମିଲା ଅଗ୍ରତେ ।
ଶ୍ରୀବିଷ୍ଣୁଙ୍କୁ ସୁମରନ୍ତେ ବୃକ୍ଷ ହେଲା ଥୁଳ
ବୈକୁଣ୍ଠପୁରରୁ ପେଷିଦେଲେ ଆଦିମୂଳ ।
ସାକ୍ଷାତେ ବ୍ରହ୍ମରୁ ହେଲା ଯେଣୁ ପକ୍ଷୀଜାତ
ତେଣୁ ସେ ବୃକ୍ଷକୁ ବିଷ୍ଣୁ ପେଶିଲେ ଜଗତ
ପୃଥ୍ୱୀକି ଆସି ତା ନାମ ହେଲା କଳ୍ପବଟ
ମହାପ୍ରଳୟେ ବିଷ୍ଣୁର ଫେଡ଼ଇ ସଙ୍କଟ ।
ଆମୋଦ ଅମାୟା ଅଟେ ସେହି କଳ୍ପବୃକ୍ଷ
ବ୍ୟାପିଅଛି ପ୍ରକୃତିକି ଘେନି ଚୌଦଲୋକ ।
ଚାରିବେଦ ଯେ ବୃକ୍ଷର ଅଟେ ଚାରି ଡାଳ
ଦ୍ୱାଦଶ ପତ୍ର ଘେନିଣ ବିକାଶଇ ମୂଳ ।
ବାରମାତ୍ରା ଜପ ମନ୍ତ୍ର ପଞ୍ଚାଶ ଅକ୍ଷର
ଏମାନେ ଅଟନ୍ତି ସେହି ବୃକ୍ଷର ଶରୀର ।
ଗଉର ଶ୍ୟାମଳ କଳା ଯେତେ ନାନାବର୍ଣ୍ଣ
ସତ ରଜ ତମ ତହୁଁ ତ୍ରିଗୁଣ ଉତ୍ପନ୍ନ ।
ଧର୍ମ ଅର୍ଥ କାମ ମୋକ୍ଷ ଚତୁର୍ବର୍ଗ ଆଦି
ବାଞ୍ଛା ପ୍ରସିଦ୍ଧି କୁସୁମ ହାସେ ମନ ଭେଦି ।
କାଳ ବୃକ୍ଷ ଯୁବା ବୃକ୍ଷ ସବୁକାଳେ ଏକ
ମାନକଲେ ଆକାଶକୁ ବଢ଼େ ତାର ଶିଖ ।
ବିକଳ୍ପରେ ହୁଏ ସାନ ବଢ଼େ କଳ୍ପନାରେ
ଏମନ୍ତ ବୃକ୍ଷକୁ ପେଶିଦେଲେ ଚକ୍ରଧରେ ।
ଚଉଦିଗେ ଚାହୁଁଥିଲେ ଶିବଶିରେ ବସି
ପକ୍ଷୀର ଆଗରେ ବୃକ୍ଷ ପ୍ରବେଶିଲା ଆସି ।
ଆଶା ଭରସା ନ ପାଇ ଭାଳୁଥିଲେ ମନେ
ବୃକ୍ଷଦେଖି ଶ୍ରଦ୍ଧାରେ ସେ ଉଡ଼ିଲା ଗଗନେ ।
କର ଭଉଁରୀ ଦେଇଣ ଆଡ଼ଚିରା ମାରି
ବୃକ୍ଷର ଶିଖେ ବସିଲା ବିଷ୍ଣୁଙ୍କୁ ସୁମରି ।
ନିଶ୍ଚିନ୍ତେ ବସି କହଇ ଈଶ୍ୱରଙ୍କୁ ଚାହିଁ
ବ୍ରହ୍ମଜ୍ଞାନ ତୋର ଏବେ ନେଲୁ କିଗୋସାଇଁ
ମୋହର ଜ୍ଞାନ ବୋଲି ସେ କରିଥିଲୁ ଆଶ
ମୁଠାକରି ଭରିଦିଅ ବାଟେ ନୋହୁନାଶ ।
ଚୋରଖଣ୍ଟ ଦେଖି କାଳେ ନେବେବଳେପିଟି
ପେଡ଼ି ଭିତରେ ଲୁଚାଇ ରଖ ହେ ଧୂର୍ଜଟି ।

ଏହି ହିଂସା ବୁଦ୍ଧି ତୋର ଦେଖି ଆଦିମାତ
ବିଷ୍ଣୁଙ୍କୁ ଆତ୍ମା କରିଣ ସଞ୍ଜିଲେ ଜଗତ ।
ବ୍ରହ୍ମା ହୋଇଣ ବସିଲେ ବିଷ୍ଣୁ ସର୍ବ ହୃଦେ
ସେହି ବୋଲନ୍ତି ପରମ ଜୀବ ଆତ୍ମାପାଦେ ।
ତୋ ଦେହ ମୋ ଦେହେଁ ସେହି ଆତ୍ମା ଅଛି ଲାଗି
ଏହା ନଚିହ୍ନିଣ ବୋଲୁ ମୁହିଁ ଏକା ଯୋଗୀ
ନୋହିଲେ ତୁ ରହି ଭୁଲୁ ଦଇବୀ ମାୟାରେ
ଆନନ୍ଦେ ବିହାର କରୁ ଜନନୀ ସଙ୍ଗରେ ।
ଲୋକେ ଭୁଲାଇବା ପାଇଁ ଅସ୍ଥିମାଳା ବହୁ
ବୃଷଭ ଗୋଟିଏ ଚଢ଼ିଦାଣ୍ଡେ ବୁଲୁଥାଉ ।
ସତେ ଆମ୍ଭେ ଜ୍ଞାନୀ ବୋଲି ଜଟାଟିଏ ବାନ୍ଧୁ
ଭସ୍ମ ବୋଲିହୋଇକରି କନାଖଣ୍ଡେ ପିନ୍ଧୁ ।
ତୁମ୍ବା ଗୋଟିଏ ବଜାଉ ଡମ୍ବରୁ ଧରିଣ
ମଶାଣିଭୂମି ଆବୋରି ବୋଲୁ ମୁଁ ରାଜନ ।
ଏକା ଭାରିଯା ଗୋଟାକୁ ନପାରୁ କି ପୋଷି
ଭୂତ ପିଶାଚ ଘେନିଣ ମାତୁ ଅହର୍ନିଶି ।
ଏଡ଼େ ଭଳି ପୁରୁଷ ତୁ ଅଟୁ ହେ ଈଶ୍ୱର
ମହାଦେବ ମାଡୁଆ ଯେ ବୋଲୁଥାନ୍ତି ନର
ଏମନ୍ତ ଲୋକ ତୁ କାହୁଁ ହେବୁ ବିଷ୍ଣୁରୂପୀ
ଦ୍ୱିଗୁଣ କୋପ ଈଶ୍ୱର ଅଙ୍ଗେ ଗଲା ବ୍ୟାପୀ
ବୋଇଲେ ତୁ ଶୁଣ ଆରେ ନଷ୍ଟହୀନ ଜୀବ
ନରଦେହ ହେଲେ ସିନା ଜାଣନ୍ତି ମୋଭାବ
ପକ୍ଷୀ ଜନ୍ତୁଟାଏ ସିନା କେଡ଼େ ତୋରବୁଦ୍ଧି ।
ତୁ କିସ ଜାଣିବୁ ଭଲ ମନ୍ଦ ଆତ୍ମ ସିଦ୍ଧି ।
ଏତେକ କଥା ଆମ୍ଭର ଥିଲା ଗୋପ୍ୟହୋଇ
ଏକା ତୁ ଜାଣୁ ବ୍ରହ୍ମାଣ୍ଡେ ନ ଜାଣନ୍ତି କେହି
ଏତେ କଥା ଉଘାଇଣ କହିଲୁଣି ଯେବେ
ମହାଦେବ ପଦ ମୋର ଭାସିଗଲା ଏବେ ।
ମୁଖ ତୋର ମୁଦି ରଖ ବୁଦ୍ଧି ଯିବ ଖସି
ଆଜ୍ଞୁ ଅଜାତି ହୋଇଣ ରହିଲି ମୁଁ ବସି ।
ତୋତେ ଏକା ସାକ୍ଷୀକରି ସଭାକୁ ଡାକିଲେ
ବାୟସ ପ୍ରାୟ ତର୍କକୁ କରିବୁ ପୁଚ୍ଛିଲେ ।
କୁଳ ମୂଳ ଦୁଇକଥା ନାହିଁ ତୋର ଯେଣୁ
ସାଧୁ ଲୋକକୁ ତୁ ନିନ୍ଦା କରୁଅଛୁ ତେଣୁ ।
ଭେକ ଅନବରତରେ ବସେ ପଦ୍ମମୂଳେ
ସେହି କି ପଦ୍ମକୁସୁମ ଚିହ୍ନେ କେତେବେଳେ
ଦେଖରେ ମୂଢ଼ ଭ୍ରମଇ ଶତେଯୋଜନେ ଥାଇ
ପଦ୍ମ ପ୍ରକାଶିଲେ ଜଳେ ବାସ ଘେନିଯାଇ ।
ସେ ଭେକ ପଦ୍ମମୂଳରୁ ଖାଉଥାଇ ପଙ୍କ ।
ଏହି ରୂପେ ମୂର୍ଖଟିନ ଚିହ୍ନେ ଭଲଲୋକ ।

ତୁହି ସେହି ଭେକପ୍ରାୟ ନ ଚିହ୍ନିଲୁ ମୋତେ
ଆନ ଉପଲକ୍ଷେ ଆଉ ନ ଯୋଗାଇତୋତେ
ଏତେବୋଲି କୋପାନଳ ଈଶ୍ୱରହୋଇଲେ
ଧରିବେ ବୋଲି ମିଳିଲେ ସେ ବଟ ମୂଳରେ
ବସନ୍ତେ ସେ ବିଶ୍ୱରୂପୀ ଧରି ନିଜ କାୟ
ସେ ବୃକ୍ଷମୂଳେ ଦିଶିଲା ବାଳୁତ ପରାୟ ।
ବ୍ରହ୍ମା ନାରଦ ସମ୍ବାଦ ପରୀକ୍ଷିତ ପାଶେ
ବଶିଷ୍ଠ ମୁନି କହନ୍ତି ପ୍ରସ୍ତାବ ସାଦୃଶ୍ୟେ
ଶୁଣ ହେ ମହାରାଜା ସେ ବୃକ୍ଷ ଏଡ଼େ ପୁଷ୍ଟ
କଳ୍ପନାରୁ ବଢ଼ିବାରୁ ନାମ କଳ୍ପବଟ ।
ତେଣୁକରି ବୃକ୍ଷଗୋଟି ମହାପ୍ରଳୟରେ
ବିଷ୍ଣୁଙ୍କୁ କହଇ କେତେ କଳ୍ପକଳ୍ପାନ୍ତରେ ।
ସେହି ବୃକ୍ଷମୂଳେ ମିଳି ଯାଇଁଣ ସେ ହର
ଧରିବାକୁ ସେ ପକ୍ଷୀକି ବଢ଼ାଇଲେ କର ।
କଦାପି ସେ ହରଙ୍କର ହସ୍ତ ନ ପାଇଲା
ବିଷ୍ଣୁଙ୍କ ପ୍ରଭାବେ ବୃକ୍ଷ ଅଧିକେ ବଢ଼ିଲା ।
କେଡ଼େ ରୂପ ଧରି ଭ୍ରମି ନ ପାରିଲେ ଧରି
ମନେ କଥାଏ ପାଞ୍ଚିଲେ ପୁଣି ତ୍ରିପୁରାରି ।
ବୋଇଲେ ଉପାୟ ଯଦି ନ କରିବି ଆଜ
ବିଅର୍ଥେ ନିନ୍ଦା ପାଇବ ମୋର ବଳବୀର୍ଯ୍ୟ ।
ଉଚ୍ଚସ୍ଥାନେ ନକଲେ ନ ପାଏ ମୋର ହସ୍ତେ
ଦେଖୁଁ ଦେଖୁଁ ବଢ଼ିଲା ଏ ବୃକ୍ଷ ଅପ୍ରମିତେ ।
ଏତେ ପାଞ୍ଚି ସୁମରିଲେ ଅଷ୍ଟରତ୍ନ ଗିରି
ତକ୍ଷଣେ ନୀଳାଦ୍ରି ଆସି ତହିଁ ବିଜେ କରି ।
ସେ ବୃକ୍ଷ ମୂଳରେ ଆସି ହୋଇଲେ ଯେ ଉଭା
ଦଶଯୋଜନ ଯାଏ ଉଚ୍ଚ ଉପରକୁ ଶୋଭା ।
ଦୀର୍ଘତ ଏତିକି ପ୍ରତି ପାଞ୍ଚକୋଶ ପରି
ତେଣୁ କରି ତାର ନାମ ହେଲା ନୀଳଗିରି ।
ତହିଁ ଉପରେ ଉଠିଲେ ଯାଇ ସଦାଶିବ
ତେବେ ବୃକ୍ଷ ଉଗୁଳିଲା ତିନିହାତ ଲମ୍ବ ।
ନ ପାଇଲେ ତହୁଁ କିଛି କାର୍ଯ୍ୟ ତ୍ରିଲୋଚନ
ପୁଣି ହୀରା ପର୍ବତକୁ କରିଲେ ସ୍ମରଣ ।
ତକ୍ଷଣେ ହୀରାଦ୍ରି ଆସି ହେଲା ଉପବେଶ
ସେହି ଦଶଯୋଜନଯାଏ ବଢ଼ିଲା ଆକାଶ ।
ତାହାକୁ ଦେଖି ଶରଧା ବହି ଉମାକାନ୍ତ
ନୀଳଗିରିରେ ଲଦିଲେ ହୀରା ପରବତ ।
ସେ ପର୍ବତେ ଉଠିକରି ବଢ଼ାନ୍ତି କପାଳୀ
ପୁଣି ତିନିହାତ ବୃକ୍ଷ ରହିଲା ଉଗୁଳି ।
ପକ୍ଷୀ ଧରି ନ ପାରିଲେ ଯହୁଁ ପଶୁପତି
ବିସ୍ମୟ ହୋଇଣ ପୁଣି ସୁମରିଲେ ମୋତି ।

ସମୁଦ୍ର ଭିତରେ ସୁଖେ ମୋତିଗିରି ଥିଲା
ଶିବ ସୁମରନ୍ତେ ଆସି ପରବେଶ ହେଲା ।
ଉଚ୍ଚେ ଦଶଯୁଣ ବଢ଼ି ମିଳିଲା ସେ ଆସି
ତାକୁ ଦେଖିଣ ସନ୍ତୋଷ ହେଲେ କାଶୀବାସୀ ।
ଏହା ଯୋଗୁଁ ଯଶ ଅବା ପାଇବି ପାଞ୍ଚିଲେ
ଭାଳି ହୀରାପରେ ମୋତି ରଖି ଉଚ୍ଚାକଲେ ।
ତହିଁ ଉପରେ ଉଠିଲେ ଯାଇ ଭୋଳାନାଥ
ଦେଖିଲେ ବୃକ୍ଷ ଉଗୁଳି ରହେ ତିନିହାତ ।
ଏହି ରୂପେ ଅଷ୍ଟରତ୍ନ ଗିରିକି ସୁମରି
ତା ଉପରେ ତା ଉପରେ ରଖି ତ୍ରିପୁରାରୀ ।
ଦଶରେ ଗୁଣନ୍ତେ ଉଚ୍ଚ ଅଶୀଯୁଣ ହେଲା
ତେବେ ବିଶ୍ୱନାଥଙ୍କର ହସ୍ତ ନ ପାଇଲା ।
କେବଳ ସେ ଅଷ୍ଟରତ୍ନ ଜନଙ୍କର ହିତେ
ଆସିଣ ସେ ବିଶ୍ୱନାଥ ରଖିଲେ ଜଗତେ ।
ସେ ପକ୍ଷୀକି କଦାପି ସେ ନପାରିଲେ ଧରି
ଯେ ହେତୁ ବୃକ୍ଷକୁ ପେଶି ଅଛନ୍ତି ମୁରାରି ।
କଉତୁକ ଦେଖୁ ଛନ୍ତି ପକ୍ଷୀ ସାହାହୋଇ
ଲେଉଟି ସେ ହର କଥା ଶୁଣି ମନଦେଇ ।
ଜନ୍ତୁକୁ ଧରି ନ ପାରି ହୁଅଇ ପ୍ରଚଣ୍ଡ
କୋପେ ଶରୀରରୁ ଜାତ କଲେ ପଞ୍ଚମୁଣ୍ଡ ।
ବେନିପାଦ ଦଶଭୁଜ ପଞ୍ଚଦଶ ଆଖି
ଆକାଶ ପର୍ଯ୍ୟନ୍ତେ ଶିର ରହିଲେ ସେଟେକି ।
ଯେବେ ସେ ପକ୍ଷୀକି ଧରି ନ ପାରିଲେ ହରି
ତେଣୁ ବ୍ୟୋମକେଶ ନାମ ହୋଇଲା ତାଙ୍କରି
ଯେ ହେତୁ ବ୍ୟୋମ ନାମକୁ ବହଇ ଆକାଶ
ବ୍ୟୋମକୁ ବେଢ଼ିଣ ନାମ ହେଲା ବ୍ୟୋମକେଶ ।
ଭବ ନାମ ବହିଲେ ସେ ଭବଯାକ ପୁରି
ଭୀମ ନାମକୁ କହିଲେ ଭୀମରୂପ ଧରି ।
ବୋଇଲେ ଯେ ପଞ୍ଚମୁଖ ପଞ୍ଚଶର ବହି
ବିରୁପାକ୍ଷ ନାମହେଲା ବିରୂପ ସେ ହୋଇ ।
ସ୍ଥାଣୁ ନାମ ବହିଲେ ସେ ଜଳସ୍ଥଳ ଘୋଟି
ଏବେ ସେ ପକ୍ଷୀର କଥା ଶୁଣ ତୁ ଲେଉଟି ।
ଅପାରମତେ ଈଶ୍ୱର ନ ପାରିଲେ ଧରି
ଏହିରୂପେ ବେନିଲକ୍ଷ ବର୍ଷ ଗଲା ପୁରି ।
ବିସ୍ମୟ ମନ ହୋଇଣ ରହି ଉମାପତି
ଧଇଲେକ ବିଶ୍ୱରୂପ ତେଜି ନିଜମୂର୍ତ୍ତି ।
ପାଞ୍ଚିଲେ ଏତେ ପ୍ରକାର ବଢ଼ାଇଲେ କାୟା
ଭଲ ମନ୍ତ୍ର କଲାପକ୍ଷୀ କେହ୍ନେ ଦୈବୀ ମାୟା
କାହିଁ ରଙ୍ଗବର୍ଣ୍ଣ କାହିଁ ହୋଇ ପୀତବର୍ଣ୍ଣ
କାହିଁ ତୃଣେ ବସେ କାହିଁ ଉଠଇ ଗଗନ ।
ଶରେବସେ କେତେବେଳେ ବସେହାତେ ଗୋଡ଼େ
ଧରି ନ ପାରିଲେ ଜ୍ଞାନ ନେଲା ତ ଅଖଡ଼େ ।
ଏମନ୍ତେ ବୋଲେ ରହିଲେ ଶିବ ତୁନିହୋଇ
ପକ୍ଷୀର କଥା ତୁ ଏବେ ଶୁଣ ମନ ଦେଇ ।
ବିସ୍ମୟ ହୋଇଣ ହର ସୁମରନ୍ତେ ଜ୍ଞାନ
ବୃକ୍ଷରେ ଥାଇ ଜାଣିଲେ ପକ୍ଷୀ ତାଙ୍କ ମନ ।
ବିଚାରିଲେ ଶିବ ଧରି ନ ପାରିଲେ ମୋତେ
ମୁଁ ଏବେ ଜନ୍ମିବି ଯାଇ ଶ୍ରୀୟା ଗର୍ଭଗତେ ।
ଶୁକ ବୋଲେ ନାରାୟଣ ମୋତେ ଛନ୍ତି କହି
ଅବଶ୍ୟ ମୁଁ ଜନ୍ମ ହେବି ବ୍ୟାସଘରେ ଯାଇ ।
ହରଙ୍କୁ ଆଉ ଜଞ୍ଜାଳ କଲେ ହେବ କିସ
ବୃକ୍ଷକୁ ଓଳଗି ତହୁଁ ଉଡ଼ିଲା ଆକାଶ ।
ସେହି ତରୁ ରହିଲାଟି କଳ୍ପତରୁ ହୋଇ
ନୀଳାଦ୍ରି ବୈକୁଣ୍ଠେ ସର୍ବେ ଦରଶନ ପାଇ ।
ଉଡ଼ିଗଲା ଯେତେବେଳେ ବୃକ୍ଷରୁ ସେ ପକ୍ଷୀ
ହର ଚାହୁଁଥିଲେ ମିଟି ମିଟି କରି ଆଖି ।
ବ୍ୟାସମୁନିର ଭବନେ ପଶନ୍ତେ ତା ଦେଖି
ଧାଇଁଲେ ଈଶ୍ୱର ପଛେ ଚାହିଁଣ ନିରେଖି ।
ପକ୍ଷୀ ଉଡ଼ନ୍ତେ ଗୋଡ଼ାନ୍ତି ହର ପଛେ ପଛେ
ନ ପାରନ୍ତି ତାକୁ ଧରି ଯାନ୍ତି କାଛେ କାଛେ ।
ବଦରିକାଶ୍ରମେ ପୁର ବେଦବ୍ୟାସଙ୍କର
କରନ୍ତି ଶ୍ରୀୟାବତୀଙ୍କୁ ଘେନି ତହିଁ ଘର ।
ଏମନ୍ତେ କେତେକ ଯୁଗ ଭୋଗ କଲେ ତହିଁ
ବ୍ୟାସ ମୁନିଙ୍କର କେବେ ପୁତ୍ର ହେଲା ନାହିଁ ।
ଶୁଦ୍ଧସ୍ନାନ କଲାକ୍ଷଣି ପତ୍ନୀ ତାହାଙ୍କର
ପୁଚ୍ଛିଲେ ଗର୍ଭ ହେଲୁ କି କହ ରାମାବର ।
ଏମନ୍ତେ ଲେଉଟି ପୁଣି ସ୍ନାନଯୋଗ ହନ୍ତେ
ଗଙ୍ଗାକୁ ଗାଧୋଇ ଗଲେ ଶୁଚିର ନିମନ୍ତେ ।
ଆନନ୍ଦରେ ଅଷ୍ଟଗନ୍ଧ ଧରି ବ୍ୟାସପ୍ରିୟା
କର୍ପୂର କୁଙ୍କୁମ ଗନ୍ଧ କସ୍ତୁରୀ ଯେ ଚୁଆ ।
କୃଷ୍ଣ ଅଗୁରୁ ଗୁଣ୍ଡ ପନୀରୁ କୁରୁବକ
ଏହିରୂପେ ଅଷ୍ଟଗନ୍ଧ ପ୍ରସିଦ୍ଧ ତ୍ରୈଲୋକ୍ୟ ।
ସେ ଗନ୍ଧମାନ ଘେନିଣ ବେଦବ୍ୟାସ ନାରୀ
ଗଙ୍ଗାରେ ପଶିଣ ସ୍ନାନ କରିଣ ସୁନ୍ଦରୀ ।
ଏକେ ତ ଯୁବାବୟସ ତନୁ କାମଛଟା
ରମଣୀ କି ପୀୟୁଷ ସେ ସ୍ତିରୀ ଶରୀରଟା ।
ଅଷ୍ଟଗୁଣେ ବିକାଶଇ କାମ ଜରଜର
ଉଲଟ ରମ୍ଭା ଜାନୁ ତା ଉଚ୍ଚ କୁଚ ଭାର ।
ମୁଖ କି ପୂର୍ଣ୍ଣିମା ଚାନ୍ଦ ଘଟଣ ଶୋଭନ
ଡାଳିମ୍ବ ମଞ୍ଜିର ପ୍ରାୟେ ବିରାଜେ ଦଶନ ।

ନାସିକା ଅତି ଶୋଭନ ତିଳପୁଷ୍ପ ବଳି
ଖଞ୍ଜନ ନୟନେ ଅଛି ଅଞ୍ଜନ ଯେ ଝଳି ।
କହିବା ବଚନ ତାର ନିନ୍ଦେ ପିକବାଣୀ
ଲଲାଟ ସୁନ୍ଦର ଦିଶେ ପ୍ରାତଃସୂର୍ଯ୍ୟ ଜିଣି ।
ଶରଭଙ୍ଗ ଋଷିଙ୍କର ଅଟନ୍ତି ସେ ଜେମା
ସୌନ୍ଦର୍ଯ୍ୟ ପଣକୁ ନାହିଁ ତ୍ରିଲୋକ୍ୟେ ଉପମା
ବ୍ୟାସ ମହାଋଷିଙ୍କର ଅଟନ୍ତି ଯୁବତୀ
ମନରେ ପୁତ୍ର କଳ୍ପନା କରି ସେହି ସତୀ ।
ସାତଥର ଜଳେ ବୁଡ଼ି କୂଳେ ହୋଇ ଉଭା
ବସ୍ତ୍ର ପିନ୍ଧି ବେଶ ହୋଇ ବାନ୍ଧେ ମଲ୍ଲୀଗଭା ।
ଏସନ ସମୟେ ପକ୍ଷୀ ଆସେ ଶୂନ୍ୟେ ଉଡ଼ି
ଧରିବେ ବୋଲି ଈଶ୍ୱର ଅଛନ୍ତି ଦଉଡ଼ି ।
ସବୁପୁର ବୁଲି ପକ୍ଷୀ ନ ପାଇଲା ସ୍ଥାନ
ଦେଖିଲା ବ୍ୟାସଙ୍କ ନାରୀ କରୁଛନ୍ତି ସ୍ନାନ ।
ବେଶଭୂଷା ହୋଇଣ ସେ ମଣ୍ଡନ୍ତି ଗଭାକୁ
ବଦନ ଗୋଟି ବ୍ୟାଦନ କରି ଉପରକୁ ।
ଏସନ ସମୟେ ପକ୍ଷୀ ମୁଖବାଟେ ଆସି
ମଶାର ପ୍ରାୟେ ହୋଇଣ ଗର୍ଭେ ଗଲା ପଶି ।
ଈଶ୍ୱର ଦେଖୁ ଦେଖୁ ସେ ଗର୍ଭେ ହେଲା ଠୁଳ
ଧାଇଁଯାଇ ସଦାନନ୍ଦ ଧଇଲେ ତା ବାଳ ।
କିଲୋ ପାମରୀ ଭକ୍ଷିଲୁ କିମ୍ପା ପକ୍ଷୀମାଂସ
ବ୍ୟର୍ଥଗଲା ଭ୍ରମିବାର ଦୁଇଲକ୍ଷ ବର୍ଷ ।
ଦେବି ବିଶାବଳି ଶିର କାଟିଣ ତୋହରି
ନୋହିଲେ ଚାଣ୍ଡାଳୀ ପକ୍ଷୀ ପକାଅ ଉଦ୍‌ଗାରି
ଏତେ ବୋଲିଣ ଈଶ୍ୱର ହେଲେ କୋପମୂର୍ତ୍ତି
ତାହା ଶୁଣି ଚାଟୁବାକ୍ୟେ କହେ ଶ୍ରୀୟାବତୀ ।
ବୋଲନ୍ତି ଭୋ ଦେବ ତୁମ୍ଭେ ଶୁଣ ସଦାଶିବ
ମୁହିଁ ଲୋଡ଼ିବାକୁ ଯାଇ ନ ଥିଲି ସେ ଜୀବ ।
ଜଳେ ସ୍ନାନ କରୁଅଛି ଇଚ୍ଛାରେ ମୋହର
ଅଦଭୁତେ ଆସି ମୋର ଧଇଲୁ ଯେ ବାଳ ।
ପାରିବୁ କି ତାରିବୁ ବା ତୋର ସିନା ଇଚ୍ଛା
ଅପୁତ୍ରିକ ଅଟେ ମୁହିଁ ନାହିଁ ମୋର ବତ୍ସା ।
ଏକେ ତ ଯୁବତୀ କିସ କହିବି ବା ମୁହିଁ
ସ୍ତିରୀହତ୍ୟା ବଡ଼ଦୋଷ ପୁରାଣ କହଇ ।
ମାଇଲେ କୋଟିଏ ମୀନ ଯେତେ ପାପକରି
ଏକ ଗୋଟି ମେଷ ବଧେ ଅଟେ ସମସରି ।
ମାଇଲେ କୋଟିଏ ମେଷ ଯେତେ ପାପହୁଏ
ଏକ ନରବଧ କଲେ ତାର ସମ ହୁଏ ।
ମାଇଲେ କୋଟିଏ ନର ଯେତେ ପାପଜାଣ
ଏକଗୋଟି ଗୋରୁ ବଧେ ଅଟେ ତାସମାନ ।

କୋଟିକୋଟି ଗୋରୁ ବଧେ ଲାଗେ ଯେତେ ଦୋଷ
ତେତେ ପାପ ଲାଗେ ଏକ ଦ୍ୱିଜ କଲେ ନାଶ ।
କୋଟି ବ୍ରହ୍ମ ବଧ କଲେ ଯେତେ ପାପ ହୁଏ
ଗୋଟିଏ ବୃକ୍ଷଲୀ ନାଶେ ସମସରି ନୁହେ ।
କୋଟିଏ ବୃକ୍ଷଲୀ ହତ୍ୟା କରିବଟି ଯେବେ
ଏକ ନାରୀ ବଧତୁଲ୍ୟ ନୁହନ୍ତି ଏ କେବେ ।
ଜାଣୁନା ବ୍ରହ୍ମବଧରେ ପାଇଲୁ ଯେ କଷ୍ଟ
ଏବେ ସ୍ତିରୀ ବଧକଲେ ପୂରିବ ତୋ ପେଟ ।
ଏତେବୋଲି ଶ୍ରୀୟାଦେବୀ କଲେ ବହୁସ୍ତୁତି
ଜୟ ଜୟ ଈଶ୍ୱର ହେ ଜୟ ଆଦିମୂର୍ତ୍ତି ।
ଜୟ ଜୟ ତୁ ଈଶାନ ଜୟ ଭୋ ଶଙ୍କର
କୃପାକରି ପୁତ୍ରଦାନ ଦିଅ ମୋତେ ହର ।
ଜୟ ଜୟ ବିଶ୍ୱନାଥ ତ୍ରିଭୁବନବାସୀ
ଏ ରୂପେ ଦର୍ଶନେ ମୋର ସର୍ବଦୁଃଖ ନାଶି ।
ଗିରିଜା ବଲ୍ଲଭ ନାଥ ସୀତାଶୁଂ ମଉଳି
ବୃଷଭବାହନ ନାଥ ଜୟ ତୁ କପାଳି ।
ଭୁଜଙ୍ଗାଭରଣ ନାଥ ତୁ ମଞ୍ଚମଉଳି ।
ଆରତଭଞ୍ଜନ ନାଥ ତୋ ଭାରିଯା ବାଳୀ ।
ନମସ୍ତେ ନମସ୍ତେ ଦେବ ସର୍ବମାତା ପିତା
ନମସ୍ତେ ନମସ୍ତେ ଦେବ ସିଦ୍ଧି ବରଦାତା ।
ନମସ୍ତେ ନମସ୍ତେ ଦେବ ପଞ୍ଚବକ୍ତ୍ରନ୍ୟେ
ନମସ୍ତେ ନମସ୍ତେ ଦେବ ଅନାଦି ତୁ ଶିବ ।
ନମସ୍ତେ ନମସ୍ତେ ଦେବ ପଞ୍ଚଦଶ ଅକ୍ଷ
ନମସ୍ତେ ନମସ୍ତେ ଦେବ କାଳକୂଟ ଭକ୍ଷ ।
ନମସ୍ତେ ନମସ୍ତେ ଦେବ ଅନ୍ଧଦର୍ପ ଗଞ୍ଜା
ନମସ୍ତେ ନମସ୍ତେ ଦେବ କାଳଦର୍ପ ଗଞ୍ଜା ।
ନମସ୍ତେ ନମସ୍ତେ ଦେବ ଅଭୟ ତୋ ରୂପ
ନମସ୍ତେ ନମସ୍ତେ ଦେବ ହରୁ ଦୁଷ୍ଟଦର୍ପ ।
ନମସ୍ତେ ନମସ୍ତେ ଦେବ ତ୍ରିଶୂଳ ଧାରଣ
ନମସ୍ତେ ନମସ୍ତେ ଦେବ ଦୁଷ୍କୃତ ନାଶନ ।
ନମସ୍ତେ ନମସ୍ତେ ଦେବ ସଦାନନ୍ଦ ଯୋଗେ
ଧରନ୍ତେ ଯାହାର ନାମ ଯମଭୟ ଭାଙ୍ଗେ ।
ନମସ୍ତେ ନମସ୍ତେ ଦେବ ଶମ୍ଭୁ ବିଶ୍ୱନାଥ
ପୂର୍ଣ୍ଣକର ବେଦବ୍ୟାସନାରୀ ମନୋରଥ ।
ଏହା କହି ଶିବପାଦେ ଶ୍ରୀୟାଦେବୀ ନମି
ଉଦ୍ଧର ପୀତାମ୍ବର ଆହେ ଅନ୍ତର୍ଯ୍ୟାମୀ ।
ଶ୍ରୀୟାଦେବୀଙ୍କର ଏ ସ୍ତୁତି ଶୁଣି ତ୍ରିଲୋଚନ
କେଶ ଛାଡ଼ି ତୋଷ ହୋଇ କହନ୍ତି ବଚନ ।
ବୋଇଲେ ସୁନ୍ଦରୀତୁରେ ମାଗ ମୋତେ ବର
ଆଜ ତୋ ମନସ୍କାମନା ଦେବଇଁ ସତ୍ୱର ।

ଅଦୋଷେ ଧଇଲି ଆସି ମୁଁ ତୋହର କେଶ
ସ୍ଥିରୀହୋଇ ସ୍ତୁତି କଲୁ ନ ବହି ତୁ ରୋଷ ।
ଏଡ଼େ ପଣ୍ଡିତ ବୁଦ୍ଧି ନ ଦେଖିବା କାହିଁ
ମାଗ ବେଗେ ସୁନ୍ଦରୀରେ ବର ଦେବି ମୁହିଁ ।
ଶ୍ରୀୟାଦେବୀ ବୋଲେ ତେବେ ମାଗିଲି ଏବର
ମୋ ଗର୍ଭରୁ ଜାତହେଉ ଗୋଟିଏ କୁମର ।
ବ୍ୟାସ ମହାଋଷିର ମୁଁ ଅଟଇ ଯୁବତୀ
ତୁମ୍ଭେ କୃପାକଲେ ମୁହିଁ ଲଭିବି ସନ୍ତତି ।
ଈଶ୍ୱର ବୋଇଲେ ଯେବେ ମାଗିଲୁ ଏ ବର
ଯାଅ ଏବେ ତୋର ନିଶ୍ଚେ ହୋଇବ କୁମର ।
ସୁବେଳେ ଭେଟିଲେ ମୋତେ ଏବେ ଶୁଦ୍ଧସ୍ନାନ
ଶୁଆକୁ ମୁଁ ମାରନ୍ତେ ତୁ କରିଲୁ ଭୋଜନ ।
ଏକା ତୁହି ପାଳୁଥିବୁ ମୋହର ଏ ବାକ୍ୟ
ନିଦ୍ରାଗଲେ ନ ଶୋଇବୁ ହୋଇ ଉର୍ଦ୍ଧ୍ୱ ମୁଖ ।
ରବି ଉଦେନୋହୁଣୁ ତୁ ତେଜିବୁଯେ ଶଯ୍ୟା
ଏ ମାର୍ଗେ ନ ଥିଲେ ନିଶ୍ଚେ ହେବ ଗର୍ବଗଞ୍ଜା
ଆବର କୁଜନ ସଙ୍ଗେ ସଙ୍ଗ ନ କରିବୁ
ଏକ ବସ୍ତ୍ରେ ଦେବାଳୟ ସଦନ ନ ଯିବୁ ।
ପର ଲୋକର ପ୍ରମାଦ କେବେ ନ ଚିନ୍ତିବୁ
ଭିକ୍ଷା ମାଗିଲେ ତୁ ଷଡ଼ ନିଃଶ୍ୱାସରେ ଦେବୁ ।
ଆଉ ନିଃଶ୍ୱାସ ବଳିଲେ ଧର୍ମ ତହିଁ ନାହିଁ
ମୂଳଲାଗି ଅନୁସରି ନେଲା ପ୍ରାୟ ହୋଇ ।
କୁସୁମ ଆପଣେ ଗୁନ୍ଥି ନୋହିବ ମଣ୍ଡଣି
ଗୋରସ ସଙ୍ଗେ ଆମିଷ ନ ଭକ୍ଷିବୁ ପୁଣି ।
ଅଶୁଦ୍ଧ ଦ୍ରବ୍ୟକୁ ବାରେ ଗ୍ରାସ ନ କରିବୁ
ଭୁଞ୍ଜି ସାରି ଉଚ୍ଛିଷ୍ଟ ଯେ ଘରେ ନ ରଖିବୁ ।
ଅନୁକ୍ଷଣେ ଭଜୁଥିବ ଗୋବିନ୍ଦର ନାମ
କେତେବେଳେ ନ ଛେଦିବୁ ଦେହୁ ନଖରୋମ
ଗୃହସ୍ଥ ବିନା ଅନ୍ୟେନ ଦେବୁ କାହିଁ ଚିତ୍ତ
ଏ ମାର୍ଗେ ଥିଲେ ଅବଶ୍ୟ ଉପୁଜିବ ସୁତ ।
ଆନ ଲୋକକୁ ନ କହି ସିନାଉପଦେଶ
ତୁହି ପତିବ୍ରତା ତୋତେ ବୁଝାଇବି କିସ ।
ସେହି ପକ୍ଷୀଗୋଟି ତୋର ପୁତ୍ର ହେବ ଏବେ
କେବଳ ବାରବରଷ ରହିବ ତୋ ଗର୍ଭେ ।
ମୋ ନାମ ଶଙ୍କର ତୋର ନାମ ଶ୍ରୀୟାବତୀ
ଶୁଆ ଘେନି ସୁତ ହେବ ନାମ ଶୁକଯତି ।
ଏକମାତ୍ର ଦୁର୍ବାସନ ଦୋଷ ଚିତ୍ତେ ଘେନି
ବଜ୍ର କାଛୋଟା ପାଇଲେ ଜନ୍ମ ହେବ ପୁଣି ।
କରିଥିବୁ ନିଶ୍ଚେଁ ସତ ଏଥିକୁ ତୁ ଲୟେ
ତାହାଶୁଣି ଋଷିପ୍ରିୟା ପୁଚ୍ଛାକଲେ ଭୟେ ।

ବୋଇଲେ ଭୋ ନାଥ ଶୁଣ ଉମାଦେବୀକାନ୍ତ
ମୋହର ମୁଣ୍ଡରେ ଆଣି ଲଦିଲା ପର୍ବତ ।
ଗର୍ଭଭରା ବଡ଼କଷ୍ଟ କହନ୍ତି ସ୍ତିରୀଏ
ନବମାସ ହେଲେ ପେଟ ଚଡ଼ଚଡ଼ ହୁଏ ।
ଦଶମାସ କଷ୍ଟେଉଠି ବସିନ ପାରଇ
ଦ୍ୱାଦଶ ବରଷ କେହ୍ନେ ପାରିବି ମୁଁ ବହି ।
ଈଶ୍ୱର ବୋଇଲେ ତୁ ଗୋଶୁଣ ଋଷିପ୍ରିୟେ
ପୁଷ୍ପପ୍ରାୟେ ରହିବୁ ତୁ ବାରବର୍ଷ ଯାଏ ।
ଯେତେବେଳେ ବଳା ଉଚ୍ଚେ କହିବ ଏବାଣୀ
ସେକାଳେ ବଜ୍ର କାଛଟା ବ୍ୟାସଦେବ ଆଣି ।
ତୁ ଗିଳିଲେ ପୁତ୍ର ପିନ୍ଧି ହେବ ଉତପନ୍ନ
ଦୁର୍ବାସନା କଳ୍ମଷକୁ ଜିଣିବ ସେ ଜାଣ ।
ବ୍ରହ୍ମା ବିଷ୍ଣୁ ଇନ୍ଦ୍ରଆଦି ଦେବେ ଛନ୍ତି ଯେତେ
କେହି ଜାଣି ପାରି ନାହିଁ କହିଲି ମୁଁ ତୋତେ ।
କାହିଁ ନ କହିବୁ କଥା କରିବୁ ଗୁପତ
ମୋହର ଜ୍ଞାନ ନେଇ ସେ ହୋଇଛି ସିଦ୍ଧାନ୍ତ
କେବଳ ଅନେକ କଷ୍ଟ ଦେଇଛି ସେ ମୋତେ
ରହିବ ଦ୍ୱାଦଶ ବର୍ଷ ତେଣୁ କୃଷ୍ଣ ସାଥେ ।
କହିଲେ ଏମନ୍ତ ବାକ୍ୟ ଯହୁଁ ପଶୁପତି
ଶୁଣି କରପତ୍ର ଯୋଡ଼ି ପୁଚ୍ଛେ ଶ୍ରୀୟାବତୀ ।
ଭୟପାଇ ବୋଇଲେ ହେ ଶୁଣ ଉମାକାନ୍ତ
ଦୁର୍ବାସନା ବୋଇଲେ ସେ ଅଟନ୍ତି କେମନ୍ତ ।
ଶଙ୍କର ବୋଇଲେ ଶୁଣ ଆଗୋ ଚାନ୍ଦ ମୁହିଁ
ଯେତେବେଳେ ପିତାମାତା ଏକ ଯୋଗ ହୋଇ ।
ସେକାଳେ ଅମୋହରେତ ପଡ଼ଇ ଯେ ଖସି
ଠାବଘେନି ମାତାଗର୍ଭେ ରହଇ ଯେ ଆସି ।
ଯେମନ୍ତ ରୂପେ ସେ ଦେହପାଇ ସେହୁ ପୁଣ
ତାହା ତୁହି ଶ୍ରୀୟାବତୀ ଏକମନେ ଶୁଣ ।
ଜୀବ ପୁରୁଷ ବିହାର ମନର ସ୍ୱରୂପେ
ପିଣ୍ଡରେ ପ୍ରକାଶମାନ ହୁଏ ଆତ୍ମାରୂପେ ।
ଯେଜନଯୋଜନରହେ ସେ ଗର୍ଭସଂଯୋଗେ
ରହଇ ସେ ରଜବୀର୍ଯ୍ୟ ଏମନ୍ତ ପ୍ରୟୋଗେ ।
ପ୍ରଥମ ଦିନେ ରହଇ ପଡ଼ି ନାଳରୂପେ
ପଞ୍ଚମ ଦିନ ରହଇ ସେ ବିନ୍ଦୁ ସ୍ୱରୂପେ ।
ପୁଣି ଯେ ଦଶମ ଦିନେ ହୁଅଇ ଯେମନ୍ତ
ବଦରିଫଳ ପ୍ରମାଣେ ତା କାୟା ବର୍ଦ୍ଧିତ ।
ପଞ୍ଚଦଶ ଦିନେ ହୁଏ ଅଣ୍ଡାର ଆକୃତି
ଶୁଣ ହୋ ଶ୍ରୀୟା କହନ୍ତି ଦେବ ପଶୁପତି ।
ସେ ଅଣ୍ଡାକୁ ଯେତେବେଳେ ପୂର୍ଣ୍ଣହୁଏ ମାସେ
ସେତେବେଳେ ଶିର କଣ୍ଠ ନାସିକା ପ୍ରକାଶେ ।

ପଞ୍ଚଚାଳିଶ ଦିନରେ ଶ୍ରବଣ ଲୋଚନ
କର ଚରଣ ହୁଅଇ ବେନି ମାସେ ଜାଣ ।
ସତୁରି ଦିନର ମଧ୍ୟେ ଅଧଉର୍ଦ୍ଧ୍ୱ ଦେଖେ
ତୃତୀୟ ମାସର ଲିଙ୍ଗ ଲୋମ ପରକାଶେ ।
ଚତୁର୍ଥ ମାସରେ ଜାନୁ ଜଙ୍ଘ ହୁଏ ଜାଣ
ଚର୍ମ ଶୋଣିତ ଯେ ମେଦମାଂସ ପରିମାଣ ।
ପଞ୍ଚମ ମାସେ ପଞ୍ଜରା ଅସ୍ଥି ଉର ସ୍ୱେଦ
ଷଡ ମାସେ କ୍ଷୁଧା ତୃଷା ଲାଗେ ଆସି ହୃଦ ।
ଭକ୍ଷିବାର ଲୋଭ ମୋହ ଲାଗେ ସାତମାସେ
ସମ୍ପୂର୍ଣ୍ଣ ହୁଅଇ ଦେହ ଗର୍ଭେ ଅଷ୍ଟମାସେ ।
ଯେତେ ଅନ୍ନ ରସ ମାତା ଭକ୍ଷଣ କରଇ
ସେ ରସ ବାସନା କିଛି ଗର୍ଭେ ଶିଶୁପାଇ ।
ଯେମନ୍ତ ଭୁଞ୍ଜଇ ତୋତେ କହିବା ତା ଶୁଣ
ଭୁଞ୍ଜୁ ଥାଇ ସର୍ବଦା ସେ କୁଷ୍ମାଣ୍ଡ ସମାନ ।
ବୃକ୍ଷକୁ ଲାଗିଣ ସେହି ଯେପରି ବଢ଼ଇ
ସେହିରୂପେ ଗର୍ଭ ମଧ୍ୟେ ଜୀବ ସଞ୍ଚରଇ ।
ମାତା ଯେଉଁ ଦ୍ରବ୍ୟମାନ ଭକ୍ଷେ ଦିବାନିଶି
ମୃଣାଳସୂତ୍ରେ ଯେ ରସ ବାସନାଟି ପଶି ।
ବାଳକର ହୃଦୟକୁ ଆସେ ପଦ୍ମ ନାଢ଼େ
କ୍ଷୁଧା ତୃଷା ଦ୍ୱାରେ ଯାଇ ବାସନାହା ଛୁଢ଼େ ।
ତେଣୁ କରି ଗର୍ଭସ୍ଥିତ ଜୀବ ବଢୁଥାଇ
ବିଷମ ଗ୍ରାମରେ ପୁଣ ବ୍ୟାକୁଳିତ ହୋଇ ।
ସେ ବିଷମ ଗ୍ରାସ ଏବେ କହିବାକ ଶୁଣ
କଷା ତିକ୍ତ ମଧୁର ଯେ କଟକ ଲବଣ ।
ଅତିଶୟ ତପ୍ତଜଳ ଆବର ଆମ୍ବିଳ
ଭୁଞ୍ଜିଲେ ଏ ଦ୍ରବ୍ୟମାନ ହୁଅଇ ବିକଳ ।
ଏହିରୂପେ ଗର୍ଭେ ଶିଶୁ ସବୁ ଦୁଃଖ ସହେ
ସ୍ଥାବର ଜଙ୍ଗମ କୀଟ ପତଙ୍ଗାଦି ଯାଏ ।
ନବମ ମାସରେ ସେହି ହୁଏ ବିରକତ
ପଥ ନ ପାଇଣ କରେ ମନ ମଧ୍ୟେ ଭୀତ ।
କିରୂପେ ଏ ଗର୍ଭମଧ୍ୟୁ ହେବି ଉତପତ୍ତି
ପାରି କରିବେ କି ଅବା ମୋତେ ଜଗଜ୍ଜ୍ୟୋତି ।
ଏତେ ପାଞ୍ଚି ବିଷ୍ଣୁଙ୍କର ପାଦେ ଚିନ୍ତା କରେ
ଭକତି ଉପୁଜେ ତହୁଁ ଗୋବିନ୍ଦ ସୁମରେ ।
ଆହେ ନାରାୟଣ ସ୍ୱାମୀ ଅଟୁ ଜ୍ଞାନମୟେ
ଆତ୍ମାର ସ୍ୱରୂପେ ବସୁ ବ୍ରହ୍ମ କୀଟଯାଏ ।
ସର୍ବଘଟ ମଧ୍ୟେ ତୁହି ହେଉ ପରକାଶ
କୋଟିଏ ସୂର୍ଯ୍ୟଙ୍କୁ ଜିଣିଦିଶେ ଜ୍ୟୋତିତ୍ରାସ ।
କେବଳ ଜ୍ଞାନୀଙ୍କୁ ସେହି ଜ୍ୟୋତି ଜଣାଯାଏ
ଏକାକ୍ଷର ବ୍ରହ୍ମ ଯହିଁ ଶବଦ ସମ୍ଭାଏ ।

ଜୀବରେ ସେ ଯୋଗଗୋଟି ଗତାଗତ ଭୂମି
ନ ଜାଣିଲେ ଲୋକମାନେ ମରୁଥାନ୍ତି ଭ୍ରମି ।
ମଞ୍ଚମଣ୍ଡଳ ବୋଲାଏ ଏ ସ୍ଥାନେ ଜନ୍ମିଲେ
ବ୍ରହ୍ମମଣ୍ଡଳ ଯେ କହେ ସେ ସ୍ଥାନକୁ ଗଲେ ।
ଭାଗ୍ୟଭୋଗେ କରୁ ଜନ୍ମ ତାହାକୁ କି ରୂପେ
ପୂର୍ଣ୍ଣବ୍ରହ୍ମ ପରକାଶୁ ଯେ ଅରୂପ ରୂପେ ।
ଜନ୍ମକାଳେ ଶୁଭଲଗ୍ନେ ପ୍ରାଣୀ ଉପୁଜିଲେ
ଯାବତ ଭୋଗାଦିମାନ ଭୁଞ୍ଜେ ଧର୍ମ ଥିଲେ ।
ମୁହିଁ ଏବେ ତୋର ପାଦେ କରୁଅଛି ଲୟ
ହୁଅ ନାଥ ଭାବଗ୍ରାହୀ ମୋଠାରେ ସଦୟ ।
ଏଁ ଗର୍ଭକଷ୍ଟ ବେଦନା ନ ପାରଇ ସହି
କେମନ୍ତେ ଏଥିରୁ ଜନ୍ମି ବିଳସିବି ମହୀ ।
ତେବେ ସିନା ତୋପାଦେ ମୁଁ କରିବି ଭଜନ
ଲୋଭ ମୋହମାୟା କାଟି ପାଦେ ହେବିଲୀନ ।
ଆଗହୁଁ ଯଦ୍ୟପି ତୋତେ ଭଜିଥାନ୍ତି ମୁହିଁ
କିମ୍ବା ଏ ଗର୍ଭଯାତନା ଦ୍ୟନ୍ତୁ ଭାବଗ୍ରାହୀ ।
ତୋତେ ଦଇନି କରୁଛି ଏବେ ପୀତବାସ
ଏ ଗର୍ଭ ସଙ୍କଟୁ ମୋତେ ରଖ ରମାଈଶ ।
ସହିବି ଗର୍ଭ ଯାତନା କିଏ ଦେହବହି
ନାସିକର୍ଣ୍ଣ କୃମି ପଶି କୋରୁଛନ୍ତି ଦେହୀ ।
ଏତେବୋଲି କୃଷ୍ଣଠାରେ ମନକୁ ନିବେଶି
ଏକାଗ୍ରେ ସୁମରେ ହରେ ରାମ କୃଷ୍ଣ ବସି ।
ଏହିରୂପେ ଦିଶମାସି ହୁଅନ୍ତେ ସମ୍ପୂର୍ଣ୍ଣ
ପବିନି ରୂପରେ ଶୂଳ ଆସେ ଘନ ଘନ ।
ଭଗଦ୍ୱାରେ ଜନ୍ମହୁଏ ବେନିକର ଯୋଡ଼ି
ଅଜ୍ଞାନ ହୋଇଣ ଆସି ଭୂମିଗତେ ପଡ଼ି ।
ମହୀରେ ପଡ଼ନ୍ତେ ସେ ଯେ ଗର୍ଭଜ୍ଞାନ ଖଣ୍ଡେ
ପଡ଼ି ପୁଣି କୁଆଁ କୁଆଁ ଶବ୍ଦ କରେ ତୁଣ୍ଡେ ।
ରୋଦନ ବେଳେ ସେ ଘର ପଡ଼ଇ ଚହଟି
ମାତା ସ୍ତନଭରି କ୍ଷୀରଦିଏ ତାର ପାଟି ।
ସେହିଠାରୁ ମାୟା ତାର ଦେହରେ ଆବୋରି
ଗର୍ଭେ କଲା ଭଜନକୁ ପକାଏ ପାଶୋରି ।
ମାତା ଗର୍ଭପଥେ ଆସେ ଇନ୍ଦ୍ରିକୁ ଲଗାଇ
ତାହାକୁଟି ଦୁର୍ବାସନା କଳମଷ କହି ।
ଏହିରୂପେ ସଂସାରଟି ହୁଏ ଆତଯାତ
ଦୁର୍ବାସନା ଦୋଷକୁ ତ ଜିଣିବ ତୋ ସତ ।
ଏତେ କହିଣ ଈଶ୍ୱର ହେଲେ ଅନ୍ତର୍ଦ୍ଧାନ
ଶ୍ରୀୟାବତୀ ଚଳିଗଲେ ଆପଣା ଭୁବନ ।
ପ୍ରବେଶ ହୋଇଣ ଘରେ ଯାଇ ବିପ୍ରଓଷ୍ଟୀ
ରାତ୍ରେ ସୁବେଶ ହୋଇଣ ସ୍ୱାମୀପାଦେ ଖଟି

କୁଙ୍କୁମ ଲାଗି ହୋଇଣ ପୋଛିଲେ ଶ୍ରୀଅଙ୍ଗ
ସୁବର୍ଣ୍ଣର ଜ୍ୟୋତିପ୍ରାୟ ଦିଶିଲା ତା ଅଙ୍ଗ ।
ଚାମର ଚିକୁରେ ପୁଣି ଖୋଷି ଦିବ୍ୟଖୋଷା
ମଣ୍ଡିଲେ ମଲ୍ଲୀ ମାଳତୀ କୁନ୍ଦ ଫୁଲେଯୋଷା ।
କୁଞ୍ଚିତ କେଶକୁ ବେଢ଼ି ରହିଲା ସୁବେଣୀ
ପଦ୍ମରାଗ କେଶରେ କି ନୀଳ ମଧ ଶ୍ରେଣୀ ।
ମଥାରେ ମୁକୁତାବଳି ସୂତା ଚନ୍ଦ୍ରମଣି
ମହେନ୍ଦ୍ର ପର୍ବତେ ଯେହ୍ନେ ଉଦେ ଦିନମଣି ।
ଅତୁଳ ନାସା ପୁଟେ ସେ ଖଞ୍ଜିଲେକ ଗୁଣା
ଇନ୍ଦ୍ର ନୀଳମଣିକୁ ସେ କୋଟିଗୁଣେ ଜିଣା ।
ସୁରଙ୍ଗ ଅଧର ନିନ୍ଦେ ବଧୁଲିର କାନ୍ତି
ସିନ୍ଦୂରେ ଝଳିତ ମୁକ୍ତାପ୍ରାୟ ଦନ୍ତପନ୍ତି ।
ବସନ୍ତ କୋକିଳ ପରି ମିଠାକଥା କହେ
ଚନ୍ଦ୍ରମଣ୍ଡଳୁ କି ଅବା ସୁଧାରସ ବହେ ।
ଭ୍ରୂଲତା ତା କାମଧେନୁଡୋଳା ତୀକ୍ଷ୍ଣଶର
ଅପାଙ୍ଗ ଚାହାଣୀକି ଯେ ଶୋହେ ବିମ୍ବାଧର ।
କର୍ଣ୍ଣେ ହୀରା ମଣି ମାଣିକ୍ୟରେ ଜଡ଼େ
ମେଘମଣ୍ଡଳରୁ ଖସି ବିଜୁଳି କି ପଡ଼େ ।
ଗଭା ଉପରେ ଭଉଁରୀ ଫୁଲମଣି ଖଞ୍ଜା
କୃଷ୍ଣପକ୍ଷ ରାତ୍ରେ ଯେହ୍ନେ ତାରା ପୁଞ୍ଜା ପୁଞ୍ଜା ।
କର୍ଣ୍ଣମୂଳ ପରିଯନ୍ତେ ଖସି ଯେ ପଡ଼ଇ
ମେଘଶିଖରୁ କି ଆସେ ଜମ୍ବୁନଦୀ ବହି ।
ନାନାବିଧ ରତ୍ନମଣି କଣ୍ଠେ ଆଭରଣ
ହୀରା ନୀଳା ପଦ୍ମରାଗ ମାଣିକ୍ୟ ଶୋଭନ ।
ହସ୍ତୀ ଥୋରହସ୍ତ ପ୍ରାୟେ ଦିଶେ ବାହୁ ଦୁଇ
କ୍ଷୁଧା ତୃଷା ବେନି ଯହିଁ ସନ୍ତୋଷ ନୁହଇ ।
ତାଡ଼ ତୋରଡ଼ କଙ୍କଣ ବିଦ ଯେ ବାହୁଟି
ବିରାଜେ ହୀରା ମାଣିକ୍ୟ ଚୂଡ଼ି କୋଟି କୋଟି
କନକର ଚମ୍ପାକଢ଼ୀ ପରାୟେ ଅଙ୍ଗୁଳି
ଶଙ୍ଖ ଚକ୍ର ପଦ୍ମ ଚିହ୍ନେ ଅଙ୍ଗରେଖା ବଳି ।
ଜାଈ ପାଖୁଡ଼ା ପରାୟେ ନଖପନ୍ତି ଶୋଭୀ
ନିଷ୍କଳଙ୍କ ଦରଶନ ପ୍ରାୟ ଜ୍ୟୋତି ଆଭା ।
ବିଶାଳ ବକ୍ଷସ୍ଥଳରେ ପାନ ସ୍ତନ ଘେନି
ନାହିଁ ପଟାନ୍ତର ଲକ୍ଷ୍ୟ ସ୍ୱର୍ଣ୍ଣକୁମ୍ଭ ଜିଣି ।
ହର ଡମ୍ବରୁ ପରାୟେ ଶୋହେ କଟୀମଝା
ଚାଲନ୍ତେ ମାତଙ୍ଗ ଦେଖି ପାନ୍ତି ବଡ଼ଲଜ୍ୟା ।
ଅମଳାନ ଝୀନବସ କଟିତଟେ ଭିଡ଼ି
ମରକତ ଜାଲି କି ସେ ସ୍ୱର୍ଣ୍ଣପାତ୍ର ଜଡ଼ି ।
ଉଲଟ ରମ୍ଭାକୁ ଜିଣି ଦିଶେ ବେନି ଜାନୁ
ଚାଲନ୍ତେ ଥରଇ ଯେହ୍ନେ ଗଗନରୁ ଭାନୁ ।
ହୀରାର ନୂପୁର ବେନି ବେନି ପାଦେ ସାଜେ
ଚରଣ ବଢ଼ାନ୍ତେ ବଳା ଝୁମୁଝୁମୁ ବାଜେ ।
ହୋଇଲେ ସ୍ୱାମୀର ପାକେ ଯାଇଁ ସତୀଭେଟ
ଶ୍ରୀୟାବତୀ ରୂପଗୁଣ ତୈଲୋକ୍ୟ ଗରିଷ୍ଠ ।
କହନ୍ତେ ନ ସରଇ ସେ ଶ୍ରୀୟାର ସୁବେଶ
ସୁପତି ଶଯ୍ୟାରେ ଘେନିହୋଇ ବେଦବ୍ୟାସ
ପୁତ୍ର ଇଚ୍ଛା ନିମନ୍ତେ ସେ ମତି ମନ ରଞ୍ଜି
ରତି ଆରମ୍ଭି ବସିଲେ ବେଳାଲଗ୍ନ ବୁଝି ।
ଦ୍ୱାତ୍ରିଂଶତି ଆଲିଙ୍ଗନ ଷୋଳକଳା ଛନ୍ଦି
ଛୟାନବେ ଯେ ବିନ୍ଧାଣୀ ଚଉଷଠି ବନ୍ଧ ।
ବାସ୍ତରି କ୍ରୀଡ଼ା ଚୌରାଶି ପୁଣି ପ୍ରେମରସ
ପଞ୍ଚଦଶ ଚନ୍ଦ୍ରକଳା ବାର ଅଭିଳାଷ ।
ଏକାଦଶ ମାର୍ଗ କାମ ପଞ୍ଚ ଅନୁରାଗ
ଶତେକ ଚଉତିରିଶ ବିଳାସର ଭୋଗ ।
କୋଟି ଲକ୍ଷ ଗ୍ରନ୍ଥ ଯାର ବଦନୁ ଉକତ
ତାହାଙ୍କୁ କି ରତିଶାସ୍ତ୍ର ଅଟେ ଅବିଦିତ ।
ଏସନ ପ୍ରକାରେ ଲୀଳା କରନ୍ତେ ସେ ବ୍ୟାସ
ବ୍ରହ୍ମରନ୍ଧ୍ରେ ମହାରେତ ହୋଇଲା ପ୍ରବେଶ ।
ଅଙ୍ଗରୁ ତେଜନ୍ତେ ସେହି ମହାରେତ ମୁନି
ତହିଁର ସଙ୍ଗେ ରହିଲା ପକ୍ଷୀଠୁଳ ଘେନି ।
ଅଚିନ୍ତା ହୋଇ ଗର୍ଭରେ ସୁଖେ କଲା ବାସ
ଅନେକ କାଳର କଷ୍ଟ ପାଶୋରିଲା ପ୍ରାସ ।
ସରିଲା ସୁରତି ରସ ତେଜି ମୁନିବର
ଏଥୁଅନ୍ତେ କଥା ଶୁଣ ସେ ଶୁକପକ୍ଷୀର ।
ଦିନକୁ ଦିନ ସେ ପୁତ୍ର ବଢ଼େ ଗର୍ଭେ ଥାଇ
ଦୁଇ ତିନି ଚାରିମାସ ଷଡ଼ମାସ ହୋଇ ।
ସପ୍ତ ଅଷ୍ଟ ଦଶମାସ ହୁଅନ୍ତେ ସମ୍ପୂର୍ଣ୍ଣ
ଦ୍ୱାଦଶ ମାସରେ ପୁଣ ନୋହିଲା ଜନମ ।
ଏହିପରି ଦୁଇ ଚାରି ଆଠବର୍ଷ ଗଲା
ତଥାପି ଗର୍ଭରୁ ପୁତ୍ର ପ୍ରସବ ନୋହିଲା ।
ଦିନକୁ ଦିନ ଭଜଇ ଗର୍ଭେ ହରିବାଣୀ
ବରଷ ବଞ୍ଚନ୍ତି ଶ୍ରୀୟା ମାସପ୍ରାୟ ମଣି ।
ସଦାଶିବଙ୍କ ଆଜ୍ଞାକୁ ଧରି ଶିରାଗ୍ରତେ
ଗର୍ଭର କଷ୍ଟ ସହନ୍ତି ପୁତ୍ର ଲବ୍‌ଧ ଅର୍ଥେ ।
ଏମନ୍ତ ହୋଇଲା ପୁଣି ଏକାଦଶ ବର୍ଷ
ଗର୍ଭରେ ଥାଇ ବାଳକ ବୁଲେ ଚଉପାଶ ।
ଦୁର୍ବାସନା କଲ୍ମଷକୁ ମନେ ଭୟକରି
ଭଗଦ୍ୱାର ଜନ୍ମ ଭୟେ ସୁମରଇ ହରି ।
ଆହେ ନାରାୟଣ ସ୍ୱାମୀ ଭକତ ବତ୍ସଳ
ଜନ୍ତୁଙ୍କ ଜୀବନଆତ୍ମା କରୁଣା ନିର୍ମଳ ।

ଶରଣ ସୋଦର ଆହେ ଶ୍ରୀମନ୍ତ ଶ୍ରୀକାନ୍ତ
ସୁଜ୍ଞ ସାଧୁଜନଙ୍କର ଜ୍ଞାନ ସାରସ୍ୱତ ।
ପରମ ଶ୍ରୀନିରାକାର ପରମ ଦୟାଳୁ
ବେଗେ ମୋତେପାରିକର ଏ ଗର୍ଭମଣ୍ଡଳୁ ।
ଏମନ୍ତ ଭାଳୁ ପୂରିଲା ଦ୍ୱାଦଶ ବରଷ
ଲାଗିଲା ଶ୍ରୀୟାକୁ ସେହିଦିନୁ ବହୁ ପ୍ରାସ ।
ଉଠି ଚଢି ନ ପାରନ୍ତି ବଡ଼ ବଡ଼ ପେଟ
ବଥାଏ ଯେ କଟି ପିଠି ଶୁଖେ ତାଲୁ କଣ୍ଠ ।
ବୁକୁ ଦମ ଦମ ଖରେ ବହଇ ନିଃଶ୍ୱାସ
ଚାହାଁନ୍ତେ ଦିଶଇ ଝିମି ଝିମି ଦଶଦିଶ ।
ଅଶକତ ହେଲେ ଦିନୁଦିନ ଶ୍ରୀୟାବତୀ
ତାହାଦେଖି ବ୍ୟାସଙ୍କର ମନେ ହେଲା ଭୀତି ।
ପାଞ୍ଚିଲେ ଦେଖ ଆମ୍ଭର କର୍ମର ଅଭାଗ୍ୟ
ଏତେକାଳେ ପ୍ରିୟାକୁ ଯେ ହେଲା ଗର୍ଭଯୋଗ
ବିଧାତା ପୁରୁଷ ତାର ଜନ୍ମ ନ ବିହିଲା
ଦଶମାସେ ହେବା କଥା ବାରବର୍ଷ ଗଲା ।
କିବା ଧର୍ମଦେବ ଏହା ନ ପାରିଲା ଜାଣି
କିବା ଏହା ବ୍ରହ୍ମା ବିଷ୍ଣୁ ଅଟେ ଶୂଳପାଣି ।
କିବା ଭୂତ ପିଶାଚ ଏ ଗର୍ଭେ ରହେ ଆସି
ଏତେ ବୋଲି ପତ୍ନୀ ପାଶେ ବସି ମହାଋଷି ।
ଚାହିଁଣ ଗର୍ଭକୁ ମୁନି ପୁଚ୍ଛନ୍ତି ବଚନ
କେବଣ ପୁରୁଷ ତୁହି ନୋହିଲୁ ଜନମ ।
ଏ ପୃଥ୍ୱୀରେ ଦଶମାସେ ହୁଅଇ ଉଭବ
ତୁ କେହ୍ନେ ଦ୍ୱାଦଶ ବର୍ଷ ରହିଲୁ ଏ ଗର୍ଭ ।
ଏଥିର ସନ୍ଧି ବିଚାର କହ କିନା ମୋତେ
ନ କହିଲେ ସ୍ତିରୀହତ୍ୟା ଘଟିବଟି ତୋତେ ।
ଦେଖ କେତେ ବେଦନା ତ ପାଉଛି ମୋସହି
ଏମନ୍ତ ବୋଲି ରହିଲେ ବ୍ୟାସ ତୁନିହୋଇ ।
ବ୍ୟାସଙ୍କ ବାଣୀ ଶୁଣି ସେ ଗର୍ଭସ୍ଥ ବାଳକ
ବୋଇଲେ ଭୋ ପିତା ଶୁଣ ମୋର ନିଜ ବାକ୍ୟ ।
ମୋତେ ଯେ ପୁଚ୍ଛିଲ ତୁମ୍ଭେ କେବଣ ପୁରୁଷ
ମୁଁ ହେଲି ଶ୍ରୀ ନିରାକାର ବ୍ରହ୍ମ ପରକାଶ ।
ଅଖଣ୍ଡ ବ୍ରହ୍ମଜ୍ଞାନକୁ ପାର୍ବତୀଙ୍କ ଆଗେ
ଖଣ୍ଡ ଖଣ୍ଡ କରି ହର କହନ୍ତି ସରାଗେ ।
ସେ ଜ୍ଞାନ ଗୋଟିଯାକ ମୁଁ ଧରିଣ ଅଇଲି
ଈଶ୍ୱର ଦେଖୁ ଦେଖୁ ଏ ଜଠରେ ରହିଲି ।
ସେ ମହାଜ୍ଞାନ ପାଇଲେ ନୋହେ ଯୋନି ଜନ୍ମ
କେବଣ ହେତୁରୁ ମୁହିଁ ଲଭିଲି ଏ କର୍ମ ।
ସଂସାର ଲୋକଙ୍କ କଥା କହିଲି ହେ ତାତ
ଦୁର୍ବାସନ କଳ୍ମଷରେ ସର୍ବେ ହୁନ୍ତି ଜାତ ।
ଭଗଦ୍ୱାରେ ଜନ୍ମହୁନ୍ତି ଇନ୍ଦ୍ରିକି ଲଗାଇ
ଜନ୍ମନ୍ତି ମରନ୍ତି ସର୍ବେ ଚରାଚର ମହୀ ।
ମୁହିଁ ପୁଣି ଦଶମାସେ ଲଭିଥାନ୍ତି ଜନ୍ମ
ଏହି ଭୟରେ ଦ୍ୱାଦଶ ବର୍ଷ ଗଲା ଦିନ ।
ତୁମ୍ଭେ ନ କହିଲେ ଆଉ ଯାନ୍ତା କେତେ କାଳ
ବଜ୍ର କାଛଟାଏ ମୋତେ ଦିଅ ଋଷିବାଳ ।
ହର ମୁଖରୁ ଶୁଣିଛି ମାତ ସାନକାଳେ
ବଜ୍ରକାଛଟା ପିନ୍ଧିଲେ ଜନ୍ମିବ ଗୋ କାଳେ ।
ଏବେ ଭୋ ତାତ ବହନ ତୁମ୍ଭେ ଚଳିଯାଅ
ସଦାଶିବଠାରୁ ବଜ୍ରକାଛଟା ଅଣାଅ ।
ସେ ବଜ୍ରକାଛଟା ଗୋଟି ଗିଳିଦେବ ମାତ
ତାହାକୁ ପିନ୍ଧିଲେ ଜାଣ ମୁହିଁ ହେବି ଜାତ ।
ଗର୍ଭରୁ ଏସନ ବାଣୀ ଶୁଣି ବେଦବ୍ୟାସ
ପ୍ରିୟାର କଷ୍ଟ ଦେଖିଣ ଗଲେ କପିଳାସ ।
ଈଶ୍ୱର ପୂରେ ମିଳିଲେ ଯାଇ ମହାମୁନି
ଏକାନ୍ତେ ବସିଅଛନ୍ତି ଗୌରୀ ଶୂଳପାଣି ।
ଶୁକପକ୍ଷୀ ସଙ୍ଗତରେ ଭ୍ରମିବା ଖବର
ଉମା ପଚାରୁଅଛନ୍ତି କହୁଛନ୍ତି ହର ।
ଏସନ ବେଳେ ମିଳିଲେ ଯାଇ ମୁନିବର
ଆଦିମାତା ହରପାଦେ କଲେ ନମସ୍କାର ।
କାର୍ପଣ୍ୟ ହୋଇଣ ଆଗେ ଉଭାହେଲେ ମୁନି
ଋଷିଙ୍କି ଦେଖି ଆସନ ଦେଇ ଶୂଳପାଣି ।
ପୁଚ୍ଛନ୍ତି ଗୌରବ କରି ସକଳ ବୃତ୍ତାନ୍ତ
କିଅର୍ଥେ ଅଇଲ ମୁନି ହୋଇଣ ଏକାନ୍ତ ।
ଭୋଳାନାଥ ମୁଖୁବାଣୀ ଶୁଣି ବେଦବ୍ୟାସ
କହନ୍ତି ଆତଙ୍କ ହୋଇ ଶୁଣ ବ୍ୟୋମକେଶ ।
ଭୋ ସ୍ୱାମୀ ସଙ୍କଟ ଆସି ପଡ଼ିଲାକ ମୋତେ
ପତ୍ନୀ ଗର୍ଭପ୍ରସବ ନକଲା କଦାଚିତ ।
ଆଜକୁ ବାରବରଷ ଭୋଗ ହେଲା ପୁଣି
ଗର୍ଭକୁ ପୁଚ୍ଛନ୍ତେ ମୋତେ କହିଲା ଏବାଣୀ ।
ବୋଇଲା ଶିବଙ୍କପୁରେ ଯାଅ ବେଗେତୁମ୍ଭେ
ସେଠାରୁ ବଜ୍ରକଛଟା ମାଗିଆଣ ଏବେ ।
ସେ କର୍ପଟୀ ପିନ୍ଧିଲେ ମୁଁ ହୋଇବି ଉଭବ
ଏକଥା ଶୁଣି ଏଠାକୁ ଅଇଲି ଭୋ ଦେବ ।
ଶୁଣି ସଦାନନ୍ଦ ପ୍ରଭୁ ହେଲେ ଆନନ୍ଦିତ
ପାର୍ବତୀଙ୍କୁ କହୁଥିଲେ ବସି ସେ ବୃତ୍ତାନ୍ତ ।
ବ୍ୟାସଙ୍କ କହିବା ବାଣୀ ଶୁଣି ତ୍ରିଲୋଚନ
ଭଣ୍ଡାରୁ ବଜ୍ରକଛଟା ଆଣିଲେ ବହନ ।
ବ୍ୟାସଙ୍କ ଗୋଚରେ ଆଣି ଦେଲେ ସଦାଶିବ
ବୋଇଲେକ କଦଳୀରେ ପୁରାଇ ଖୋଇବ ।

ସନ୍ଧାନ ପାଇଣ ବ୍ୟାସ ହୋଇଲେ ସନ୍ତୋଷ
ମେଲାଣି ମାଗି ଚଳିଲେ ଆପଣାର ଦେଶ ।
ସ୍ୱଗୃହରେ ଯାଇଁ ଋଷି ମିଳିଲେ ବହନ
ଯେଣେତେଣେ ଗଲେ ଅଛି ପ୍ରିୟମତି ମନ ।
ପତ୍ନୀ ପାଶରେ ମିଳିଲେ ସେ କର୍ପଟୀ ଘେନି
ଦେଖିଲେ ଦୁଃଖିତେ ବସି ଅଛଇ କାମିନୀ ।
ରମ୍ଭା ପକ୍ୱଫଳ ଗୋଟି ତକ୍ଷଣେ ଆଣିଲେ
ସେ ବଲ୍କଳକାଛଟା ତହିଁ ମଧ୍ୟେ ପୂରାଇଲେ ।
ପ୍ରିୟାର ହସ୍ତରେ ନେଇ ଦେଲେ ମହାମୁନି
ବୋଇଲେ ଗର୍ଭକୁ ଏହା କ୍ଷେପରେ ଭାବିନୀ ।
ଏ ପକ୍ୱଫଳ ଭିତରେ ଅଛିଟି କର୍ପଟୀ
ଗିଳିଲେ ଏକ୍ଷଣି ଜାତ ହେବ ପୁତ୍ରଗୋଟି ।
ପତିର ମୁଖରୁ ଶୁଣି ପୁତ୍ର ଜନ୍ମବାଣୀ
ଫଳ ଭକ୍ଷିଲେ ହରଷ ହୋଇ ଋଷିଆଣୀ ।
ଏଥୁଅନନ୍ତରେ ସେହୁ ଗର୍ଭସ୍ଥ ବାଳକ
ପଦ୍ମାସନରେ ବସିଣ ଭଜେ ପୁଣ୍ୟଶ୍ଲୋକ ।
ଜୀବଙ୍କର ଗତାଗତ ଅଟେ ଯେଉଁ ଭୂମି
ତହିଁ ଲୟ କରି ଭଜେ ଚିଦାନନ୍ଦ ସ୍ୱାମୀ ।
ଏମନ୍ତ ପାଞ୍ଚୁ ସେ ମନେ ମିଳେ ଫଳଗୋଟି
ଗର୍ଭରେ ପଡ଼ନ୍ତେ ଶିଶୁ ଧଇଲା ସାଉଁଟି ।
ହସ୍ତେ ଧରି ବିଦାରନ୍ତେ ଦିଶିଲା ବସନ
ତକ୍ଷଣେ ସେ ବାଳବସ୍ତ୍ରି ପିନ୍ଧିଲା କାଛିଣ ।
ଜନ୍ମ ହେବାପାଇଁ ଶିଶୁ ହେଲା ଦିବ୍ୟସଜ
ଦଣ୍ଡ କମଣ୍ଡଳୁ କରେ ସୂର୍ଯ୍ୟପ୍ରାୟ ତେଜ ।
ଶିରରେ ପିଙ୍ଗଳ ଜଟା କର୍ଣ୍ଣରେ କୁଣ୍ଡଳ
ବିଭୂତି ଲେପନ ଦେହ ଦିଶଇ ନିର୍ମଳ ।
ନାସାଗ୍ରରୁ କେଶଯାଏ କାଟିଅଛି ଚିତା
ହସ୍ତରେ ଭଜନମାଳା କନ୍ଧରେ ପଇତା ।
କାଖତଳେ ଆଶାବାଡ଼ି କଠାଉ ପାଦରେ
ଭିକ୍ଷାମୁଣି ଲାଉ ତୁମ୍ବା ଖଣତି ହସ୍ତରେ ।
ସ୍ୱାହା ସ୍ୱାଧାପ୍ରୋକ୍ଷଣୀ ଯେ ଘେନି ତମ୍ବାପାତ୍ର
ମନର କଳ୍ପନ୍ତେ ସବୁ ହେଲା ଉତପତି ।
ଏମନ୍ତ ସଜ ହୋଇଣ ଗର୍ଭର ବାଳକ
ଜନ୍ମିବା ପାଇଁ ବସିଲା ହୋଇ ଅଧୋମୁଖ ।
ସେହିଠାରୁ ଶୂଳ ଆସି ମାରେ ଘନ ଘନ
ଭଗଦ୍ୱାର ଦେଇ ଶୁକ ହୋଇଲେ ଜନମ ।
ଶ୍ରୀୟାବତୀର ପ୍ରସବ ଦେଖି ପୁରଲୋକ
ହରିବୋଲ ଶବଦରେ ପୂରାଇ ଦେଲେକ ।
ହୁଳହୁଳି ରାମତାଳି କଂସାଳ ଯେ ଭେରୀ
ମର୍ଦ୍ଦଳ କାହାଳୀ ଦମା ବଜାଇ ମହୁରୀ ।
ଢକ୍କା ଡମ୍ବରୁ ଡିଣ୍ଡିମ ଆଉ ବୀଣାବାଦ୍ୟ
ଘୁମୁଘୁମୁ ଘୁମୁରା ଯେ କରେ ଉଚ୍ଚନାଦ ।
ଢୋଲ ଟମକ ନିଶାଣ ବାଜେ ଘିଡ଼ି ଘିଡ଼ି
ଶଙ୍ଖ ମୃଦଙ୍ଗ ନାଗରା ବାଜେ ଯୋଡ଼ି ଯୋଡ଼ି ।
ଉଗୁଳି ଥିଲେ ଆଉ ବା ଯେତେ ଯନ୍ତ୍ରବାଦ୍ୟ
ସ୍ୱଇଚ୍ଛାରେ ଶୁକ ଜନ୍ମକଲେ ସର୍ବେ ନାଦ ।
କେ ମୁଖେ କହି ପାରିବ ଶୁକ ଜନ୍ମବାଣୀ
ସାକ୍ଷାତେ ଅକ୍ଷୟ ବ୍ରହ୍ମ ନିରାକାର ପୁଣି ।
ଜନ୍ମ ପରିତ୍ରାଣ ଅର୍ଥେ ଏକାକ୍ଷର ବ୍ରହ୍ମ
ଶୁକରୂପେ ଅବତାର ହୋଇଲେ ଜନମ ।
ନାରଦ ବ୍ରହ୍ମାଙ୍କୁ ଏହି ପୁରାଣ ପୁଛନ୍ତି
ତାହା ଯେ ଏକମନରେ କର୍ଣ୍ଣରେ ଶୁଣନ୍ତି ।
ଅପୁତ୍ରିକେ ପୁତ୍ର ଜାତ କରିବ ଅବଶ୍ୟ
ନାରୀର ମଡ଼ିଛି ବନ୍ଧ୍ୟା ଦୋଷ ଯିବ ନାଶ ।
ଜ୍ୱରରୋଗ ବାଦ ଭୟ ରାଜଦଣ୍ଡମାନ
ଯେ ନର ସଂକଳ୍ପ କରି ଶୁଣେ ଏ ପୁରାଣ ।
ସକଳ ତଥା ବର୍ଦ୍ଧିତ ହୋଇବ ତାହାର
ଦେହ ଅନ୍ତେ ଗମିବ ସେ ବଇକୁଣ୍ଠପୁର ।
ପଦ ପଦକେ ଅମୃତ ଶୁକ ଜନ୍ମବାଣୀ
ଇତିହାସ ପୁରାଣରେ ବଶିଷ୍ଠ ବଖାଣି ।
ଶୁଣ ଆହେ ମହାରାଜା ଏଥୁ ଅନନ୍ତରେ
କଷା ବସ୍ତ୍ର ପିନ୍ଧି ଶୁକ ଜନ୍ମିଲେ ଗର୍ଭରେ ।
ବେନି କରଯୋଡ଼ି ବାଳ ଭୂମିପରେ ପଡ଼ି
ମଉନେ ବସିଲେ ତହୁଁ ହରିନାମ ପଢ଼ି ।
କାହାକୁ କିଛି ସମସ୍ୟା ନ ଦେଇ କୁମାର
ବ୍ରହ୍ମରେ ଚିତ୍ତ ନିବେଶିଗଲେ ଦେଶାନ୍ତର ।
ଅନ୍ତୁଡ଼ିଶଲେ ଚଳିଲେ ଉଠି ଶୁକଯତି
ତାହାଦେଖି ପିତାମାତା ମନେ କଲେ ଭ୍ରାନ୍ତି ।
ବୋଇଲେକ ଦେଖ ପୁତ୍ରଜନ୍ମି ଏତେଦିନେ
କାହାକୁ ନ କହି କିଛି ପଳାଇଛି କେଣେ ।
ପାଞ୍ଚନ୍ତି ବାଳକ କଥା ଅତି ବିପରୀତ
ବଡ଼ଲୋକର ପରାୟ ଚାଲୁଥାନ୍ତି ପଥ ।
ଭୂମିରେ ପଡ଼ିଥାନ୍ତି ତ ଜାତହେବା ପୁତ୍ରେ
ତଡ଼ବଡ଼ ପଳାଏ ଏ ଜନ୍ମହେବା ମାତ୍ରେ ।
ସେ ବେନିଜନେ ଏମନ୍ତ ସନ୍ତପ୍ତ ହୁଅନ୍ତି
ପତ୍ନୀ ଛାଡ଼ି ପୁତ୍ରପାଶେ ବ୍ୟାସ ଚଳିଯାନ୍ତି ।
ବାଳକର ପଛେ ପଛେ ଅଛନ୍ତି ଗୋଡ଼ାଇ
ଡାକନ୍ତି କେଣେ ବାବୁରେ ଯାଉଛୁ ପଳାଇ ।
ଅନ୍ଧର ଲଉଡ଼ି ମୋର ଏକଇ ତୁ ବଳା
କେଉଁହେତୁ ରୁଷି ବାପ କରି ଏ ସଙ୍କୋଳା ।

କି ଅବା ଧନ ସମ୍ପଦ ନ ଥିବାରୁ ମୋର
ତହିଁକି ଅବା ବଳାରେ କରୁଛୁ ଅନ୍ତର ।
କିବା ଘରଦ୍ୱାର ତୋତେ ନ ରୁଚିଲା କିଛି
ତହିଁକିରେ ଯାଉଅଛୁ ବାବୁ ମୋତେ ତେଜି ।
ନ ଦେଖି ବନ୍ଧୁ କୁଟୁମ୍ବ ଭ୍ରାତା ବହୁଜନ
ତେଣୁଅବା ଆରେବାପ ଧଇଲୁ ବୈଗୁଣ୍ୟ ।
କିଅବା ମାତା ପିତା ନ ଯୋଗାଇଲା ତୋତେ
ଏଥିର ସନ୍ଧି ବାପରେ କହଟିକି ମୋତେ ।
ବ୍ୟାସଙ୍କ ବଚନ ଶୁଣି ଶୁକ ମହାଯତି
ବୋଇଲେ ଭୋ ତାତ ଶୁଣ କହିବା ଏ ରୀତି ।
ତୁମ୍ଭେ ଯେ ବୋଇଲ ବଳା ଯାଉଅଛୁ ଋଷି
ମୁଁ କେତେଦିନର ଅଟେ ତୁମ୍ଭ ବାଳଶିଶି ।
ଯାଉଅଛି ତେଜ୍ୟାକରି ପୋଷିବା ପୋଏତ
ତେଡ଼େ ଉପକାରୀ ନୁହେଁ ତୁମ୍ଭର ମୁହିଁତ ।
ଧନ ସମ୍ପଦ ବିଷୟ କହିଲ ଯା ତାତ
ମାୟାର ରଙ୍ଗ ଲାଗିଛି ନୁହଁଇ ଏ ସତ ।
ଧନର ଲୋଭରେ ପ୍ରାଣୀ ନ ବସନ୍ତି ସ୍ଥିରେ
ନ ଭାବିଣ ଅଳପକେ ମରୁଛନ୍ତି ନରେ ।
ଧନ ହୋଇଲେ ପ୍ରାଣୀର ମତି ହୁଏ ବଣା
ଧନ ଥିଲାଠାରେ ତାତ ପଡ଼େ ରାତିହଣା ।
ଭାଇ ବନ୍ଧୁ ବୋଲି ଯାହା ବଖାଣିଲ ତାତ
ବହୁ କୁଟୁମ୍ବ ଜନଙ୍କୁ ନ ମିଳଇ ଭାତ ।
ତଣ୍ଡୁଳ ବିହୀନେ ସର୍ବେ ମରୁଥାନ୍ତି ଭାଳି
ତହିଁରେ ଘର ସ୍ୱାମୀକି ଲାଗଇ ଶାଙ୍କୋଳି ।
ପିତା ମାତାଙ୍କ ବିଷୟ କହିଲ ଯା ଆଣି
କେ କାହାର ପିତା କିଏ କାହା ପୁତ୍ରପୁଣି ।
ତୁଚ୍ଛା ମୋହ ହୋଇଣ ବୋଲମୋର ସୁତ
କହ କାହାର ବାପକୁ ପୋଷେ କାହାପୁତ୍ର ।
ତୁମ୍ଭେକି ପୋଷା ନଯିବ ଆସମୋତେ ଲୋଡ଼ି
କାହାପାଇଁ ବାପ କେତେଗଲେଣି ଯେ ଗଡ଼ି ।
ତୁମ୍ଭେ ପରାଶରଙ୍କର ଅଟ ନିଜ ସୁତ
ତାଙ୍କୁତୁମ୍ଭେ କେତେଦିନ ପୋଷିଛ କହତ ।
ବିଚାରିଲେ ତୁମ୍ଭର ତ କେଶ ପାଚିଲାଣି
ଏ ବୃଦ୍ଧକାଳେ କିମ୍ପାଇ ବସ ମୋହଘେନି ।
ଆବର ଯେ ବୋଲ ମୋତେଘର ଗଲଛାଡ଼ି
ଏ ଶରୀର ବହି ଦେଖ କେତେ ଯତ୍ନେଗଢ଼ି ।
ବୁଝିଲେତ ମୂଳଘର ଅଟେ ଆଗ ଏହୁ
ଦଶଗୋଟା ଦ୍ୱାର ଅଛି ନ ଚିହ୍ନନ୍ତି କେହୁ ।
ଆଉ କେଉଁ ଦ୍ରବ୍ୟଟା ଏ ଘରେ ରଖିନାହିଁ
ପ୍ରତ୍ୟକ୍ଷ ଦେଖ ଜଠରେ ଅଗ୍ନି ଅଛି ରହି ।
ସେ ଅଗ୍ନି ଜଳିବାପାଇଁ ପବନ ବହୁଛି
ପବନ ବହିଲେ ଅଗ୍ନିପ୍ରଚଣ୍ଡ ଜଳୁଛି ।
ଜଳିଲେ ଜଳ ତାହାକୁ କରୁଛି ଶୀତଳ
ଯେବେ ଜୀବ ପରମ ଏ ଘରେ ହ୍ୱନ୍ତିମେଳ ।
ଯାବତ ରସଯାକ ସେ ସୁଖେ ଭୁଞ୍ଜୁଥାନ୍ତି
ସେ ଜୀବ ପରମ ପୁଣି ଘର ଛାଡ଼ିଯାନ୍ତି ।
ସାଂସାରିକ ଘରାଛାଡ଼ି କିସ ଅଛି ଆଉ
ତହିଁକି ମୋତେ ବୋଲୁଛ କାହିଁକି ପଳାଉ ।
ଏ କଥା ମନରେ ପାଞ୍ଚି ବେଗେଯାଅ ତାତ
ଏତେକହି ଶୁକଦେବ ଧାଇଁଲେକ ପଥ ।
ପୁଣିହିଁ ବ୍ୟାସ ପଛରେ ଅଛନ୍ତି ଗୋଡ଼ାଇ
ଲୋଭ ଛାଡ଼ି ନ ପାରନ୍ତି ପୁତ୍ର ସ୍ନେହ ପାଇ ।
ବାଳକ କହିବା ବାଣୀ ନ ଶୁଣିଣ ବ୍ୟାସେ
ମାୟାରେ ଗମନ୍ତି ପୁତ୍ର ଆଣିବାର ଆଶେ ।
ଶ୍ରୀ ନୃସିଂହ ପୁରାଣ ଏ ଅଟେ ଧର୍ମଶାସ୍ତ୍ର
ବ୍ୟାସେ ଦେଖ ଯାଉଛନ୍ତି ଜ୍ଞାନକରି ପୁତ୍ର ।
ଯେବଣ ଜ୍ଞାନକୁ ହର ଧରି ନ ପାରିବେ
ସେ ଜ୍ଞାନକୁ ଦେଖ ଏବେ ବ୍ୟାସମୁନି ଭୁଲେ ।
ବଶିଷ୍ଠ କହୁଅଛନ୍ତି ଶୁଣ ସୋମଗୋତ୍ରେ
ଏମନ୍ତ ଯେ ଖଣ୍ଡେଦୂରେ ଯାନ୍ତେ ପିତାପୁତ୍ରେ ।
ବୈଶାଖ ଶୁକ୍ଳପଞ୍ଚମୀ ତିଥି ଯେ ସେ ଦିନ
ଗୁରୁବାର ପୁଷ୍ୟାନାମେ ନକ୍ଷତ୍ରଟି ଜାଣ ।
ତୈତିଳ ନାମେ କରଣ ପ୍ରୀତିନାମେ ଯୋଗ
ମେଷ ସଙ୍କରାନ୍ତିର ଯେ ବାରଦିନ ଭୋଗ ।
ବସନ୍ତୋତ୍ସବ ଚନ୍ଦନ ଯାତ୍ରାଟି ସେ ଦିନ
ସ୍ୱର୍ଗର କାମିନୀମାନେ କରନ୍ତି ଗମନ ।
ଗଙ୍ଗାରେ ପଶିଣ ସ୍ନାନ କରନ୍ତି ସୁନ୍ଦରୀ
ତେତିଶକୋଟି ଦେବଙ୍କ ଅଟନ୍ତି ସେ ନାରୀ ।
ସେ ସମସ୍ତ ନବଯୁବା ଏକଇ ବୟସ
ଚନ୍ଦନ ଯାତ୍ରାରେ ମିଳି ଖେଳନ୍ତି ନାରୀଶ ।
ତିଳ ଅଏଁଳା ମଥାରେ ଘେନିଣ ସୁନ୍ଦରୀ
ପରିହାସରେ କେ ଟାହି ଟାପରାକୁ କରି ।
ଖେଳିବାରେ ତାଙ୍କ ଅଙ୍ଗୁବସ୍ତ୍ର ଖସିପଡ଼େ
ଗଭୀର ଜଳେ ପିଚିକାମାରଇ କେ ବୁଡ଼େ ।
ଏମନ୍ତ ନାଗରୀମାନେ ହୋଇ ମତିଭୋଳ
ଗଙ୍ଗାଜଳରେ ପଶିଣ ଖେଳନ୍ତି ସେ ଖେଳ ।
ଖେଳେ ମାତିବାରୁ ବସ୍ତ୍ର କାହା ହୃଦେ ନାହିଁ
ଉଲଗ୍ନେ ଖେଳନ୍ତି ମସ୍ତ ହୋଇ ନାରୀ ତହିଁ ।
ଏଥୁଅନନ୍ତରେ ତହୁଁ ଶୁକ ମହାଯତି
ସେ ପଥେ ଯାନ୍ତେ ମିଳିଲେ ସେମାନଙ୍କ କତି

କନ୍ୟାଗଣ ଦେଖି ତାଙ୍କୁ ତେଜି ଖେଳରସ
ମତ୍ତଭୋଳେ ମିଳିକରି ଶୁକଦେବ ପାଶ ।
ଚଉକତି ବେଢ଼ି କଲେ କୋଳେ ସମ୍ଭାଷଣ
ଚୁମ୍ବନ ଦିଅନ୍ତି ପ୍ରେମେ ଲଗାଇ ବଦନ ।
କେ ହାସ୍ୟ କରଇ କେହୁ କରଇ ଢମାଳି
ବକ୍ରଭାବେ ଚାହିଁଇ କେ ବେନିନେତ୍ର ଢାଳି ।
କେ କୋଳେ ଧରଇ କେହୁ ଚାପିଧରେ ହୃଦେ
କେବାହୁ ବନ୍ଧେ ଭିଡ଼ିକେ ଛନ୍ଦେପାଦପଦ୍ମେ ।
ଚରଣ ପଖାଳଇ କେ କରେ ଆଗେ ସ୍ତୁତି
କେ ବୋଲଇ ଦେଖଆଗେ ନିରାକାର ଜ୍ୟୋତି ।
ସାକ୍ଷାତ ବ୍ରହ୍ମ ଅଇଲା ଏତ କାହୁଁ ଏଥେ
ଦେଖ ଦଣ୍ଡ କମଣ୍ଡଳୁଁ ଧରିଅଛି ହାତେ ।
ତାହା ଶୁଣି ସ୍ତିରୀ ଏକ ଏମନ୍ତ କହଇ
ସମସ୍ତେ ଆମ୍ଭେ ଉଲଗ୍ନ ଦେଖ ହୋଇଥାଇଁ ।
ଆମ୍ଭର ଯେ ଯଉବନ ଦେଖି କେ ମୂର୍ଚ୍ଛନ୍ତା
ପୁରୁଷ ହେଲେ ରମଣ ନିଶ୍ଚୟ କରନ୍ତା ।
ନୁହଇ ଦେବତା ନୁହେଁ ମାନବ ଏହିଟି
ରହିଅଛି ଏ ପରମ ଜୀବେ ଦେଇ ଦୃଷ୍ଟି ।
ଏହିଠାରେ ଆମ୍ଭେ ଯେତେ ନାରୀଜନ ଥାଇଁ
ସେ ଜୀବ ପରମ ଏବେ କାହାଦେହେ ନାହିଁ ।
ଜଣେ ହେଲେ କେହି ଚିହ୍ନିପାରିଛକି କହ
ଏ ମହାତମା ପ୍ରତ୍ୟକ୍ଷେ ଦେଖ ବ୍ରହ୍ମଦେହ ।
ସେ ପ୍ରିୟା କଥା ଶୁଣିଣ କହେ ଆନ ଜଣ
ଯାହା କହିଲ ଏ କଥା ଅଟଇ ପ୍ରମାଣ ।
ପ୍ରତ୍ୟକ୍ଷ ବ୍ରହ୍ମ ବୋଲିଣ କହିଲୁ ଯା ଚାହିଁ
ଏ ବ୍ରହ୍ମ ପଛରେ ହର ଥିଲେ ତ ଗୋଡ଼ାଇ ।
ଶ୍ରୀୟାବତୀ ଗିଳିବାରୁ ବର ଦେଇଗଲେ
ଶୁକଦେବ ହୁଅ ବୋଲି ଶିବ କହିଥିଲେ ।
ଏ କଥାମାନ କିଛି ମୁଁ ଶୁଣିଥିଲି ପୂର୍ବେ
ସେହି ଅବା ଉପୁଜିଣ ଆସିଅଛି ଏବେ ।
ଏହିପରି ସ୍ତିରୀମାନେ ହୁନ୍ତି କୁହାକୁହି
ସେହିଠାରେ ବ୍ୟାସରଷି ମିଳିଗଲେ ଯାଇ ।
ଶୁକଯତିଙ୍କୁ ବେଢ଼ିଣ ଥିଲେ ଦେବନାରୀ
ବ୍ୟାସ ଦେଖି ଲଜ୍ୟା ପାଇ ଗଲେ ଅପସରି ।
ସମସ୍ତେ ରହିଲେ ଯାଇ ନଦୀତଟେ ଲୁଚି
ପିତାଙ୍କୁ ଦେଖିଣ ଶୁକ ଗଲେ ତହୁଁ ଘୁଞ୍ଚି ।
କନ୍ୟାଙ୍କର ପରିଗୁଣ ଦେଖି ବ୍ୟାସରଷି
ସମସ୍ୟା ଦେଖି ପୁଚ୍ଛନ୍ତି ଶୁଣ ଶୁଭ୍ରକେଶୀ ।
ମୋର ପୁତ୍ରକୁ ଧରି ତ କରୁଥିଲ କୋଳ
କାହିଁକି ମୋତେ ଦେଖିଣ ପଶିଗଲ ଜଳ ।
ବିଚାରିଲେ ମୋହର ତ ଅଟେ ବୃଦ୍ଧରୂପ
ମୋ ପୁତ୍ର ରୂପକୁ ସରି ନୁହଁଇ କନ୍ଦର୍ପ ।
ବଢ଼ାଇଥିଲ ତା ତୁଲେ ତୁମ୍ଭେମାନେ ପ୍ରୀତି
କାହିଁକି ବସିଲ ମୋତେ ଦେଖି ମଥାପୋତି ।
ତୁମ୍ଭେମାନେ ମୋତେ କନ୍ୟା ପରାୟତ ଦିଶ
କାହିଁପାଇଁ ଲୁଚିଲ ତା କହ ମୋର ପାଶ ।
ବ୍ୟାସ ବଚନେ ବୋଲନ୍ତି ସେହି ଦେବନାରୀ
କହିବା ତେବେ ତୁମ୍ଭଙ୍କୁ ଶୁଣ ତପଚାରୀ ।
ସେ ପୁରୁଷ କଥା ଯାହା ପୁଚ୍ଛିଲ ଗୋସାଇଁ
ନିରିଗୁଣ ବ୍ରହ୍ମରାଶି ସାକ୍ଷାତେ ଅଟଇ ।
ହିଂସା ମୋହ କାମ କ୍ରୋଧ ମାୟତାର ନାହିଁ
ବିଷ୍ଣୁ ଜନ୍ମିଛନ୍ତି ଏହି ଶୁକଦେବ ହୋଇ ।
ପୁତ୍ର ବୋଲି ତୁମ୍ଭେ ତାଙ୍କୁ ପାଞ୍ଚୁଛ ଯା ମନେ
ଆମ୍ଭର ଭାଗ୍ୟ ଥିବାରୁ ଦେଖିଲୁ ଏ ସ୍ଥାନେ ।
ଯୁବୀ ପୁରୁଷ ଘେନି ଯେ ମାଇଲୁ ବୋଇଲ
ସେହି କିସ ଯୁବା ତୁମ୍ଭେ ବୃଦ୍ଧବୋଲି ବୋଲ ।
ହୋଇଅଛି ତୁମ୍ଭ ଦେହ ତ୍ରିଗୁଣେ ବନ୍ଧନ
ବୃଦ୍ଧବୃଦ୍ଧ ବୋଲି ତାଙ୍କୁ ବୋଲୁଛ କେସନ ।
ମୋହ ମାୟା ପଛରେତ ହୁଏ ପରିଚାର
ବୃଦ୍ଧ ହେଲେ କି ହେବ ହେ ଶୁଣ ମୁନିବର ।
ଏଡ଼େ ବଡ଼ ଲୋଭ କରି ଧାଆଁ ପୁତ୍ରବୋଲି
ବାଳକ କଥା ନ ମାନି ଯାଏ ଦେଇ ଠେଲି ।
ଆମ୍ଭେମାନେ କେତେ ସ୍ନେହେ ଧଇଲୁ ତା ହସ୍ତ
କାହାକୁ କିଛି ନ କହି ଚଳିଲେ ତ୍ୱରିତ ।
କନ୍ୟାଙ୍କ ମୁଖରୁ ଶୁଣି ଏସନ ବଚନ
ମାୟା ଲାଗିବାରୁ ପୁଣି କରନ୍ତି ଗମନ ।
ଖଣ୍ଡେ ଦୂର ଯାଇ ମୁନି ଡାକନ୍ତି ଉଚ୍ଚରେ
ଆରେ ଆରେ ନନ୍ଦନ ତୁ ଅଛୁ କେଉଁଠାରେ ।
ମୋହଠାରୁ ସ୍ନେହ ଅବା ମନରୁ ତେଜିଲୁ
ଗର୍ଭଧାରୀ ମାତାକୁ ତୁ କେସନେ ମୂର୍ଚ୍ଛିଲୁ ।
ବାରବର୍ଷଯାଏ ଗର୍ଭେ ବହିଥିଲା ତୋତେ
ତାହାଠାରେ ଦୟା ତୋର ନବସିଲା ଚିତ୍ତେ ।
ଜନମ କରି ସେ କ୍ଷଣେ ନ ଧରିଲା କୋଳେ
ନ ଦେଲା ମୁଖରେସ୍ତନ ଭରି କ୍ଷୀର ବେଳେ ।
ଏଡ଼େ ନିର୍ଦ୍ଦୟ କେମନ୍ତେ ସହିଲା ତୋ ମନ
ଏତେ କହି ବେଦବ୍ୟାସ କରନ୍ତି ରୋଦନ ।
ପିତାଙ୍କ ବିଳାପ ବାଣୀ ଶୁଣି ଶୁକ କର୍ଣ୍ଣେ
ପଛକୁ ଚାହିଁଲେ ରହି ନିରେଖି ନୟନେ ।
ଶୁକଦେବ ଡାକଦେଲେ ଶୁଣ ଆହେ ତାତ
ମାୟାରେ ପଡ଼ି କାହିଁକି ହୁଅ ଅଣାୟତ୍ତ ।

ନଦୀଜଳ ପ୍ରାୟ ଯିବା ପିତାଙ୍କର ଆଶା
ସେ ଯେହ୍ନେ ପୂରି ବଢ଼ଇ ହୋଇଣ ବରଷା ।
ବର୍ଷାକାଳ ଅନ୍ତେ ପୁଣି ଜଳ ଶୁଖିଯାଇ
ସେହିରୂପେ ସିନା ଜନ୍ମ ମରଣ ଏ ଦୁଇ ।
ବାଳକାଳେ ପିତା ଯେହ୍ନେ କରୁଥାଇ ସ୍ନେହ
ଯୁବା ହେଲେ ସେ କଥାଟି ରହଇ କି କହ ।
ଭାର୍ଯ୍ୟା ନ ଖଟିଲେ ତାକୁ ଘରୁ କାଢ଼ିଦିଏ
ଏଣୁ କରି ପିତା ସ୍ନେହ ନଦୀଜଳ ପ୍ରାୟେ ।
ଜନନୀ ଲକ୍ଷଣ ଯାହା କହିଲ ହେ ପିତା
ଜନମ କାଳକୁ ସିନା ହୋଇଥାନ୍ତି ମାତା ।
କୋଳେ ଧରି ମୁଖେ ଯେଉଁ ସ୍ତନ୍ୟଦେଉଥାଇ
ସେ ପୁଣ ଯୁବା କାଳକୁ ଗୋପନ ହୁଅଇ ।
ଏ ବ୍ରହ୍ମାଣ୍ଡରେ ଅଛନ୍ତି ଯେତେ ବାରାଙ୍ଗନା
ସମସ୍ତେ ଅଟନ୍ତି ପିତା ଏକଅଂଶ ସିନା ।
ଉବୁରି ନାହାନ୍ତି ସେହି ମୁଖୁ କେହି ପୁଣ
ତୁମ୍ଭେବି ବଣା ହେଉଛ ଲେଖିଣ ପୁରାଣ ।
ପ୍ରଥମେ ଜନ୍ମ କରିଣ ବୋଲନ୍ତି ଯେ ମାତା
ଯୁବା କାଳକୁ ସେ ପୁଣି ବୋଲାଏ ବନିତା ।
ନାନା କଉତୁକେ ସ୍ୱାମୀ ମନ ନିଏ ମୋହି
ଅନ୍ତଃକାଳକୁ କାଳିକା ରୂପ ହୁଏ ସେହି ।
ଭକ୍ଷଇ ଦହଇ ବେଳେ ହିଙ୍ଗୁଳା ସ୍ୱରୂପେ
ଏହିରୂପେ ପୁରୁଷକୁ ନାଶେ ନାରୀ ଆପେ ।
ଏଣୁ ସ୍ତିରୀ ରୂପଗୋଟି ଅଟେ ଆଦିମାୟା ।
ତହୁଁ ଯେ ବର୍ତ୍ତିଛି ସେହି ଜାଣ ବ୍ରହ୍ମକାୟା ।
ଏଣୁ ସ୍ତ୍ରୀସଙ୍ଗ ଦେହକୁ ଦିଏ ବଡ଼ କ୍ଲେଶ
ସ୍ତ୍ରୀସଙ୍ଗ ତେଜିଲା ଲୋକ ଅଟେ ସୁପୁରୁଷ ।
ତୁମ୍ଭେ ସ୍ତିରୀସଙ୍ଗେ ଯେଣୁହୋଇ ବିମୋହିତ
ତେଣୁ କେତେଯେବେଦନା ପାଉଛଭୋତାତ
ମୋରମୋର ବୋଲିମାୟାମୋହେଅଛଧାଇଁ
କେ କାହାର ପିତା କେ କାହା ପୁତ୍ର ହୋଇ
ବ୍ୟାସ ବୋଇଲେ ବାବୁରେ ଏଡ଼େତୁବ୍ରହ୍ମଣ୍ୟ
ଗର୍ଭୁ ପଡ଼ିବା ମାତ୍ରକେ କହୁ ବ୍ରହ୍ମଜ୍ଞାନ ।
ଏଣୁ ଯାବତ ପୁରାଣ ହେଉ ତୋତେ ଦୃଶ୍ୟ
ଶ୍ରୀଭାଗବତ ପୁରାଣ ମୁଖେ ତୁ ଅଭ୍ୟାସ ।
ଶୁକ ବୋଇଲେ ତାତହେ ତୁମ୍ଭ ସୁକଲ୍ୟାଣେ
ଦୃଶ୍ୟ ହେଲା ନମସ୍କାର ହେଉଛି ଚରଣେ ।
ଦଇନୀ ଘେନି ମୋହର ଏବେ ଘରେ ଯାଅ
ମୋହ ନ ଘେନିଣ ହୁଅ ନିର୍ମଳ ହୃଦୟ ।
ଏମନ୍ତ କହି ଜାହ୍ନବୀ କୂଳେ ଶୁକ ଗଲେ
ନଟିନ୍ଟିଲା ପାଦ ଗଙ୍ଗା ପାରି ହୋଇଗଲେ ।

ନୈମିଷାଅରଣ୍ୟେ ଯାଇହୋଇଲେ ପ୍ରବେଶ
ପୁତ୍ରଗଲା ବୋଲି ପୁଣି ଧାଇଁଗଲେ ବ୍ୟାସ ।
ସେହି ସଲଖରେ ଜଳେ ପଶନ୍ତେ ଝସାଇ
ଅଣ୍ଟାପେଟେବୁକେ ବେକେତୁଣ୍ଡେପାଣିହୋଇ
ନାକେକାନେପଶନ୍ତେସେହୋଇଲେ ବ୍ୟାକୁଳ
ବାହୁଡ଼ି ଆସି ବସିଲେ ପୁଣି ନଦୀକୂଳ ।
ଚଉକତି ଚାହିଁ ମୁନି ହୁଅନ୍ତି ନିରାଶ
ଶୂନ୍ୟେ ଶବଦ ଶୁଭିଲା ଶୁଣ ଆହେ ବ୍ୟାସ ।
କିମ୍ପାଇଁ ବସିଣ ଦୁଃଖ ଘେନୁଛ ମନର
ଅପୁତ୍ରିକ ଦୋଷ ଏବେ ଗଲା ଯେ ତୁମ୍ଭର ।
ନିର୍ଗୁଣ ବ୍ରହ୍ମ ତୁମ୍ଭର ପୁତ୍ର ହେଲେ ଯେବେ
ତିନିକାଳେ ଚିନ୍ତା ଆଉ କାହିଁଅଛି ଏବେ ।
ଋଷିଗଣଙ୍କ ମଧ୍ୟେ ସେ ହେବ ଅଗ୍ରଗଣ୍ୟ
ତିମିର ଧ୍ୱଂସନେ ଯେହ୍ନେ ଦିଶଇ ତପନ ।
ସେହିରୂପେ ତବପୁତ୍ର ନିଷ୍କଳଙ୍କ କାୟ
ପରୀକ୍ଷିତକୁ କହିବ ପୁରାଣ ନିର୍ଣ୍ଣୟ ।
ସେହି ନିର୍ଣ୍ଣୟ ଭାଷା ଯେ ହେବ ଭାଗବତ
ସୂତ ପୌରାଣିକଠାରୁ ଶୁଣିବେ ସମସ୍ତ ।
ଏ ବେଳେ ଏ କଥା ନୁହେଁ କହିବାଦ୍ୱାପରେ
ନୃସିଂହ ପୁରାଣ ମଧ କହିବ ରାଜାରେ ।
ଆସିଅଛି ଘର ଛାଡ଼ି ତପସ୍ୟା ନିମିତ୍ତ
ବାହୁଡ଼ି ଯିବଟି ପୁଣି ସମୟେକ ପୁତ୍ର ।
ଏମନ୍ତ ପ୍ରକାରେ ଶୂନ୍ୟ ଶୁଭିଲା ଶବଦ
ଶୁଣି ବ୍ୟାସ ମହାମୁନି ହୋଇଲେ ଆନନ୍ଦ ।
ହରଷ ହୋଇଣ ମୁନିଗଣ ଚଳିଗଲେ
ଶୁଣ ହେ ପରୀକ୍ଷା ରାଜା ବଶିଷ୍ଟ କହିଲେ ।
ଏମନ୍ତ ପ୍ରକାରେ ଜାଣ ଶୁକ ଜନ୍ମକଥା
ତାହାଙ୍କ ମୁଖୁଁ ପୁରାଣ ଶୁଣ ମହାରଥା ।
ନୈମିଷ୍ୟାରଣ୍ୟେ ଅଛନ୍ତି ଋଷିଗଣ ସଙ୍ଗେ
ଆସିବେ ତୁ ସୁମରିଲା ମାତ୍ରେ ଏହିଲାଗେ ।
ଏ ଠାବରେ ଶୁକଦେବ ଜନ୍ମକଥା ଶେଷ
ସେ ମୁନି ପାଦେ ଶରଣ ପୀତାମ୍ବର ଦାଶ ।



## ଶୁକଦେବଙ୍କ ତପସ୍ୟା

ଏମନ୍ତ ତହିଁ ବଶିଷ୍ଠ ମାଗନ୍ତେ ମେଲାଣି
ଛାଡ଼ି ନ ଦେଇ ପରୀକ୍ଷ ପଚାରିଲେ ପୁଣି ।
ବୋଇଲେ ଭୋ ମୁନି ମୋତେ ଲାଗିଲାସଂଶୟ
ସେଠାରୁ ଯାଇଣ ଶୁକ କଲେ କି ଉପାୟ ।
ବ୍ୟାସ ଛାଡ଼ିକରି ତାଙ୍କୁ ଅଇଲେ ଘରକୁ
ତହୁଁ ସେ କିକର୍ମ କଲେ କହ ତା ଆମ୍ଭଙ୍କୁ ।

ଫିଟିଯିବ ମୁକ୍ତିବାଟ ତବ ମୁଖୁଶୁଣ
ରାଜା ପୁଚ୍ଛନ୍ତେ ସନ୍ତୋଷ ସେ ବଶିଷ୍ଠ ମୁନି ।
ବୋଇଲେ ପରୀକ୍ଷ ତୁହୋ କେଡ଼େଜ୍ଞାନଶୀଳ
ଅଦୃଶ୍ୟ କଥା ପଚାରୁ ଧରି କଥା ମୂଳ ।
କିଞ୍ଚିତେ କହିଲେ ତୋତେ ଶୁକଦେବ ଜନ୍ମ
ବିଶେଷି କହିଲେ ଏ ତ ଅସୀମ ପୁରାଣ ।
ନାରଦ ପୁଚ୍ଛନ୍ତେ ତାଙ୍କୁ ବ୍ରହ୍ମା କହିଥିଲେ
ଏ ନୃସିଂହ ପୁରାଣ ସେ ସଂକ୍ଷେପେ ଶୁଣିଲେ ।
ଆମ୍ଭ ପାଶେ ବସି ତାହା ବୁଲିଲୁ ଅଳପ
କହିବା ଶୁକଦେବର ଶୁଣ ଏବେ ବାପ
ସକଳ ତୀର୍ଥଯାକ ସେ ପରିକ୍ରମା କରି
ଏକାନ୍ତ ହୋଇ ବସିଲେ କୃଷ୍ଣଙ୍କୁ ସୁମରି ।
ଦେଖି ନିର୍ମଳ ନିର୍ଜ୍ଜନ ନିରାଲମ୍ବ ସ୍ଥାନ
ବସିଲେ ପଦ୍ମାସନରେ ବ୍ରହ୍ମେ ଦେଇ ମନ ।
ନିର୍ମାୟାବନ୍ତ ପୁରୁଷ ନିର୍ଗୁଣ ତା ଦେହୀ
ସ୍ଥାପିଲେ ନିରଞ୍ଜନଙ୍କୁ ନେତ୍ର ଅଗ୍ରେ ନେଇ
କାମକ୍ରୋଧ ଲୋଭ ମୋହ ମଦ ମତ୍ସରାଦି
ଶୁକମୁନି ଏମାନଙ୍କ ଅଙ୍ଗଦେଲେ ଛେଦି ।
ତାଙ୍କୁ ଅନ୍ତର କରନ୍ତେ ହୋଇ ସେ ବିକଳ
ଚରଣେପଡ଼ି ଜଣାନ୍ତି ଆହେ ବ୍ୟାସବାଳ ।
ଏହି ଦେହରେ ଧାରଣ ଅଟୁ ଆମ୍ଭେମାନେ
କହ ତୁମ୍ଭେ ଆମ୍ଭ ଆଶା ଭାଙ୍ଗୁଛ କେସନେ
ଏକେ ତୁମ୍ଭଙ୍କୁ ଦଇନୀ କରୁ ଶୁକଦେବ
ତୁମ୍ଭ ବୋଲେ ଥିବୁ ଆମ୍ଭେ ରଖଦେଇଠାବ
ନଯିବୁ ବୁଲି କେଣିକି ଘର ଥିବୁ ଜଗି
କ୍ଷୁଧା ତୃଷା କଲେ ପଛେ ଖାଇବୁ ଯେ ମାଗି
ତାହାଙ୍କ ବିକଳ ଶୁଣି ହସି ଶୁକଯତି
ବୋଇଲେ ସତ୍ୟ ସିନା ଏ ଅଟନ୍ତି ସୁକୃତି ।
ଦେହଥିବା ଲୋକଙ୍କୁ ଏ ନ ପାରନ୍ତି ଛାଡ଼ି
ତପସ୍ୟାର ପାଇଁ ସିନା ଦେଲଇଁ ଘଉଡ଼ି ।
ଏମାନେ ଗଲେ ହୁଅନ୍ତା କିଛି ମୋର ଭଲ
ସେ ଦ୍ୱାରମାନ ତ ସବୁ ହୁଅନ୍ତା ମୁକୁଳ ।
ଏମନ୍ତ ପାଞ୍ଚ ଲୋଭକୁ ରଖି ମୁଖଦ୍ୱାରେ
ମନକୁ ବୋଇଲେ ଲୋଭ ମୁଞ୍ଚ ଏକଦ୍ୱାରେ ।
ମୋହକୁ ବୋଇଲେ ତୁହି କର୍ଣ୍ଣଦ୍ୱାରେ ଥିବୁ
କ୍ରୋଧକୁ ବୋଇଲେ ଚକ୍ଷୁ ଆବୋରି ରହିବୁ
କାମକୁ ବୋଇଲେ ଥିବୁ ଇନ୍ଦ୍ରିଦ୍ୱାର ମାଡ଼ି
ବିନ୍ଧିଲେ ଅନଙ୍ଗବାଣ ଦେବୁ ନା ଘଉଡ଼ି ।
ମଦାନ୍ଧ ପୁରୁଷେ ଡାକି ବୋଇଲେକ ତୁହି
ଶିର ଉପରେ ବସିବୁ କାହାକୁ ନ କହି ।
ମତ୍ସରକୁ ବୋଇଲେ ତୁ କି କରିବୁ କହ
ତୋତେ ଏବେ ସ୍ଥାନଦେଲି ଦେହଯାକରହ
ହିଂସାକୁ ବୋଇଲେ ତୁହି ଶୁଣିଥାରେ ପୁଣି
ଅପମାନ ଜଗିଥିବୁ ତୁ ବେଳକାଳ ଜାଣି ।
ଶରୀରକୁ ବୋଇଲେ ତୁ ଶୁଣ କଳେବର
ପ୍ରକୃତିଗଣଙ୍କୁ ରଖ ଗୋଚରେ ତୋହର
ଯେ ଯହିଁକି ମନ କଲେ କହି ତାଙ୍କୁ ଜ୍ଞାନ
ରଖିବୁ ଏହାଙ୍କ ପରେ ହୁଅ ତୁ ପ୍ରଧାନ ।
ଏତେ କହି ଶୁକଦେବ ବସି ପଦ୍ମାସନେ
ସକାର ହକାର ବେନି ଚିନ୍ତି ଯୋଗଧ୍ୟାନେ
ତ୍ରିକୂଟ ଉପରେ ଯହିଁ ବହୁଛି ତ୍ରିବେଣୀ
ଦିବାରାତ୍ର ତ୍ରିସନ୍ଧ୍ୟାରେ ଟେକିଲେ ଉଜାଣି
ସଦାଶିବ ଶିରେ ନିତ୍ୟେ ପଡ଼ଇ ଯେ ଖସି
ତହୁଁ ବାରଅଙ୍ଗୁଳି ଯେ ଦେହଯାଏ ପଶି ।
ତେଣୁ ସେ ହଂସ ପୁରୁଷ ବିକାଶଇ ପ୍ରଭା
ଦିନକୁ ଦିନ ବଢ଼ିଣ ହୁଏ ନବଯୁବା ।
ସେ ଝରଟି ଶୁଖିଗଲେ ଉଡି ହଂସଘର
ଶୂନ୍ୟେ ଚଳିଯାଏ ଛାଡ଼ି ଚଇତନ ଦ୍ୱାର ।
ସେ ଘରକୁ ଜଗିଲେଟି ହୁଏ କଳ୍ପଭୋଗୀ
ନିରଞ୍ଜନ କମଳରେ ଚିତ୍ତ ଥିବ ଲାଗି ।
ପ୍ରାଣ ପବନକୁ ଦେବ ଷଡ଼ ଚକ୍ରେ ବାଟ
ଆଧାର ଲିଙ୍ଗ ନାଭି ଯେ କଣ୍ଠ ହୃଦତଟ ।
ପଞ୍ଚାଶ ପାଖୁଡ଼ାରେ ତା ପୁରାଇବ ଆଣି
ପ୍ରଥମ ଚାରିପାଖୁଡ଼ା ବଶଷସ ଭଣି ।
ବସଇ ଦ୍ୱିତୀୟ ଚକ୍ରେ ଯେ ଷଡ଼ ପାଖୁଡ଼ା
ତ ଠାରୁ ଲ ପରିଯନ୍ତେ ହୋଇଛନ୍ତି ବେଢ଼ା
ତୃତୀୟ ଚକ୍ରରେ ଦଶ ପାଖୁଡ଼ାକୁ ଘେନି
ଡ ଠାରୁ ପ ଯାଏ ମଣିପୁର ପରିମାଣି ।
ଚତୁର୍ଥେ ଚକ୍ରେ ବସଇ ଦ୍ୱାଦଶ ଅକ୍ଷର
କ ଠାରୁ ଠ ଯାଏ ଖଞ୍ଜି ଅନାହତ ପୁର
ପଞ୍ଚମ ଚକ୍ରରେ ଷୋଳ ପାଖୁଡ଼ାଟି ଜାତ
ଅ ଠାରୁ ଅଃ ପରିଯନ୍ତେ କହିବା ଗଣିତ ।
ଲଲାଟ ଚକ୍ରରେ ଦୁଇପାଖୁଡ଼ା ପ୍ରକାଶେ
ହ କ୍ଷ ବୋଲିଣ ତହିଁରେ ବେନିଦଳ ବସେ ।
ଷଡ଼ଚକ୍ର ଏ ଶରୀର ସ୍ଥାନରେ ଏସନ
ରହିଥାଇ ଗୁପତରେ କିଛି ନ କହିଣ ।
ସେ ବେନିଦଳ ଉପରେ ନିରାକାର ଭୂମି
ଯହିଁରେ ଜୀବ ଭ୍ରମଇ ଦିବାରାତ୍ର ବେନି ।
ତ୍ରିକୂଟ ତ୍ରିମୁନା ବୋଲି ସେ ସ୍ଥାନକୁ କହି
ତାହାର ଦକ୍ଷିଣାବର୍ତ୍ତେ ବହୁଅଛି ନଇ ।

ସେ ନଦୀ ଉପରେ ପୁଣି ଗୋଲାହାଟ ପୁର
ସର୍ବଦା ତାହାକୁ ବେଢ଼ି ବସିଛି ବଜାର ।
ସେହି ବଜାର ଉପରେ କାଉଁରୀ ପାଟଣା
ତହିଁରେ ବସିଣ ମନ ବାଏ ବ୍ରହ୍ମବୀଣା ।
ଭ୍ରମର ଗୁମ୍ଫାରେ ଗଳି ଶବଦ ଆସୁଛି
ପରମ ଘର କ୍ଷେପିଣ ତ୍ରିକୂଟେ ପଶୁଛି ।
ତେଣୁ ଏକାକ୍ଷରେ ବ୍ରହ୍ମ ଶବଦକୁ କହି
ସକାର ହକାର ସେ ଶବଦ ନ ଛାଡ଼ଇ ।
ଜୀବ ପରମ ଘେନିଣ ପଶେ ଅର୍ଗଳିରେ
ତହିଁ ଲୀଳାକରି ଷଡ଼ଚକ୍ର ଭେଦି ସ୍ଫୁରେ ।
ପରମ ପୁରୁଷ ଗୋଟି ଲାଗିଅଛି ତହିଁ
ଖେଳନ୍ତି ଜୀବ ପରମତେଣୁ ଏକ ହୋଇ ।
ଦଧି ମନ୍ଥନ ସମୟେ ଯେହ୍ନେ ଝିଙ୍କ ରୋଳ
ସେହିରୂପେ ହୋଇ ଜୀବ ପରମ ଯେ ମେଳ
ତ୍ରିକୂଟରେ ଛନ୍ଦିହୋଇ ମନ୍ଥନ୍ତି ଦେହକୁ
ତେଣୁ ଦେହୁଁ ଉପୁଜଇ ଲବଣୀ କାଳକୁ ।
ସେ ଲବଣୀଟି ରଜ ବୀର୍ଯ୍ୟ ହୋଇ ଆସେ
ସ୍ତିରୀ ପୁରୁଷ ଅଙ୍ଗକୁ ରତୁ ହୋଇ ଖସେ ।
ଶରୀରୁ ଶରୀର ଜନ୍ମି ଶବ୍ଦ ସଞ୍ଚରଇ
ସେହି ଶବଦକୁ ଶୁକ ବସିଲେଟି ଧ୍ୟାୟି ।
ଧ୍ୟାନରେ ବସନ୍ତେ ତେଣୁ ମନ ଗଲା ମର୍ଜି
ସେ ବ୍ରହ୍ମବୀଣା ଶବଦ ଝୁମୁଝୁମୁ ବାଜି ।
ଏମନ୍ତେ ବସି ଧ୍ୟାମନ୍ତେ ଶୁକ ବ୍ରହ୍ମଭାଗ
ଏଥିଅନନ୍ତରେ ତହୁଁ ଗଲା କେତେଯୁଗ ।
ଏସନ କଠୋର ତପ ଦେଖି ଦେବଗଣ ।
ଭୟେ ରମ୍ଭାପତ୍ର ପରି ହେଲେ କମ୍ପମାନ ।
ଇନ୍ଦ୍ର ବିଚାରିଲେ ଅବା ନେବ ମୋର ପଣ
ଅନଳ ଦେବଙ୍କ ତେଜ ହୋଇଲା ନିଉନ ।
ଯମ ପାଞ୍ଚିଲା ମୋ ଶାଢ଼ୀ ନେବ ଏ ଛଡ଼ାଇ
ଏଡ଼େ ତପ କରୁଛି ଏ କେଡ଼େ ଦୁଃଖ ସହି ।
ନୈର୍ଋତ ବୋଇଲା କିସ କରିବି ମୁଁ ଏବେ
ଡରନ୍ତି ଏହାର ତପ ଦେଖି ସର୍ବଦେବେ ।
ବରୁଣ ବୋଇଲା ମୋର ସରିଲା ତ ନଟ
ମୋର ପାଇଁ ବସିଛି ଏ ତପେ ବାନ୍ଧି ଜଟ
ପବନ ବୋଇଲା ମୋର ଅଣଚାଶ ମୂର୍ତ୍ତି
ମଉନେ ବସିଛି ନେବ ବୋଲି ଶୁକଯତି ।
କୁବେର ଦେବତା ଭୟେ ହୁଏ ଥରହର
ଅଷ୍ଟନିଧି ଗୃହେ ମାଡ଼ି ବସିବ ମୋହର ।
ଈଶାନ ଦେବତା ମନେ ବିଚାରିଣ ପୁଣ
ଛଡ଼ାଇ ନେବ କି ଅବା ମୋର ବ୍ରହ୍ମଜ୍ଞାନ

ଅନନ୍ତ ଦେବତା ପୁଣି ପାଞ୍ଚନ୍ତି ପାତାଳେ
ପୃଥିବୀ ତ କମ୍ପୁଛନ୍ତି ଯାର ତପବଳେ ।
ଏମନ୍ତ ବିଚାରି ସର୍ବ ସୁରଗଣ ତହିଁ
ମେନକା ଅପସରାକୁ ନିକଟକୁ ରାଇ ।
ବୋଇଲେ ସୁନ୍ଦରୀ ଶୁଣକହିବାଗୋଟୋଟେ
ନୈମିଷ୍ୟା ବନକୁ ଯାଅତୁ ଆମ୍ଭର ହିତେ
ସେ ସ୍ଥାନରେ ଶୁକଯତି ବସିଅଛି ତପେ
ସେ ତପକୁ ଭାଙ୍ଗି ଆସି ପାରିବୁ କି ଆପେ ।
ତୋର ରୂପକୁ ଦେଖିଲେ ସେ ହୋଇବ ମୋହିତ
ମୋହିତ ହେଲେ ଶରୀରୁ ଖସିବ ଯେ ରେତ
ରେତ ଖସିଲେ ଶରୀରୁ ହେବ ଭ୍ରଷ୍ଟ ଯୋଗ
ଯୋଗଭ୍ରଷ୍ଟ ହେଲେତାର ବୁଦ୍ଧି ହେବ ଭଙ୍ଗ
ବୁଦ୍ଧିଭଙ୍ଗହେଲେ ତାକୁ ମାୟା ଯେ ଗ୍ରାସିବ
ମାୟା ଗ୍ରାସିଲେ ତ ଲୋଭପ୍ରବଳ ହୋଇବ
ଲୋଭ ହେତୁ ମୋହଜାତ ମୋହୁହିଂସାଜାତ
ହିଂସାରୁ ଯେ ଅତି କ୍ରୋଧ ହୋଇବ ସମ୍ଭୁତ
ସେଠାରୁ ସଂସାର ଚକ୍ରେ ପଡ଼ିବ ସେ ଆସି
ଏହିକଥା ବିଚାରି ତୁ ଚଳ ଶୁଭ୍ରକେଶୀ ।
ଦେବଙ୍କ ଆକୁଳ ବାଣୀ ଶୁଣିଣ ତରୁଣୀ
ସୁବେଶ ହୋଇ ମଥାରେ ଖଞ୍ଜି ମଥାମଣି
ସୁନ୍ଦାବେଣୀ ପାରି ବାନ୍ଧି ମଲ୍ଲୀଫୁଲ ଗଭା
ଖଞ୍ଜନ ନୟନ କଲା ଅଞ୍ଜନରେ ଶୋଭା
କର୍ଣ୍ଣରେ ହୀରାର କାପ କଣ୍ଠେ ଚାପସରି
ନାସାରେ ହୀରା ବସଣି ହୀରାଚୂର୍ଣ୍ଣ କରି ।
ଲଲାଟେ ସିନ୍ଦୂର ଟୋପି କସ୍ତୁରି ଅଳକା
ହୃଦେ ଦେବାଙ୍ଗ କାଞ୍ଚଲା ଭିଡ଼ିଲା ମେନକା ।
ବାହେଣ ବିଦ କଙ୍କଣ ହୃଦରେ ପଦକ
କଟି ଓଢ଼ିଆଣୀ କରେ ମୁଦ୍ରିକା କନକ ।
ଉପରେ ପନୀର ଝୀନ ଉପରାଣ ପାଟ
ମୁକୁତା ଜଡ଼ିତ ପରି ଦିଶେ ଝଟପଟ ।
ପୟରେ ନୂପୁର ମୁଦି ଅଙ୍ଗୁଳିରେ ସାଜେ
ସଧୀରେ ପଦ ବଢ଼ାନ୍ତେ ରୁଣୁଝୁଣୁ ବାଜେ ।
ଏରୂପେ ସୁବେଶ ହୋଇ ଦର୍ପଣେ ଚାହିଁଲା
ଅଲଗା ଦିଶିଲା ସ୍ଥାନ ପୁଣି ସଜାଇଲା ।
ନୀଳ କୁଞ୍ଚିତ କୁନ୍ତଳା ଚାରୁ ଶୁଭ୍ରକେଶୀ
ଯେଉଁପରି ଶୁକଯତି ଭୁଲିବଟି ରସି ।
ଗନ୍ଧ ମନ୍ଦାର ସେବତୀ ବାନ୍ଧେ ଗଭା ଟେକି
କୃତ୍ତିକା ପୁଞ୍ଜି ପରାୟ ଦିଶିଲା ଝଟକି ।
ତଥିପରେ ଖଞ୍ଜିଲା ସେ ଦୟଣା ଚୌତରା
ମୁକ୍ତା ପୁଞ୍ଜି ପୁଞ୍ଜି ମୋତି ମାଣିକ୍ୟରଝରା ।

ଭ୍ରୂଲତା କି କାମଧେନୁ ଡୋଳା ତୀକ୍ଷଣଶର
ପିଛଡ଼ା ମୁଳେ କି ବାଣ ସନ୍ଧେ ନିରନ୍ତର ।
ଭ୍ରୂଭଙ୍ଗୀ ଲୀଳାଗତିକୁ ଅପାଙ୍ଗ ଚାହାଣି
ତପିଏ ଦେଖିଲେ ଢଳି ପଡ଼ିବେ ଧରଣୀ ।
ଲଲାଟପାଟି ଯାଏ ତା ଲେଖା ଟେକନାସା
ଅଣ୍ଡିର କୋକିଳ ପରି ମଧୁର ତା ଭାଷା ।
ସୁବଳିତ ସୁବିଶାଳ ସୁନ୍ଦର ତା ବାହୁ
ବେନି କୁଚର ମୂଳକୁ ଆଭରଣ ସେହୁ ।
ତାହାର ହୃଦୟ ଗୋଟି ହେମପାତ୍ର କି ସେ
ପଦ୍ମପତ୍ର ନୀଳ ପ୍ରାୟ ସୁଚଟୁଳ ଦିଶେ ।
ଭଉଁରୀ କୁନ୍ଦିଲା ପରି ଦିଶେ ତାର ନାଭି
ସେ ନାଭି ଚାହିଁଲେ ଯତି ଚିତ୍ତ ଯିବ ଦ୍ରବି ।
କୁସୁମମାଳ ପତନୀ କଟିତଟେ ଶୋହେ
ଶୋଭା ଦିଶୁଅଛି ଇନ୍ଦ୍ର ନୀଳମଣି ପ୍ରାୟେ ।
ବନ୍ଧୂଲୀ କୁସୁମ ଜିଣି ସୁରଙ୍ଗ ଅଧର
ଅମୃତ ରସ ବହଇ କହନ୍ତେ ସେ ଗିର ।
କର୍ଣ୍ଣେ ଆଲୋକ କୁଣ୍ଡଳ ଖଞ୍ଜି ହୀରାମୋତି
ଗୁରୁ ଶୁକ୍ର ଉଦେ ପ୍ରାୟ ପ୍ରକାଶଇ ଜ୍ୟୋତି
କପାଳରେ ବିରାଜଇ ଗୋରଚନା ଚିତା
ସର୍ବାଙ୍ଗ ଅଳଙ୍କାରେ ସେ ତରୁଣୀ ଶୋଭିତା
ପୁଲକିତା ରୋମାବଳି ବିଶାଳ ତା ଗଣ୍ଡ
କରୀବର ଥୋରହସ୍ତ ପ୍ରାୟେ ଭୁଜଦଣ୍ଡ ।
ବିସ୍ତାରି ବକ୍ଷସ୍ଥଳକୁ ସଂକୀର୍ଣ୍ଣତା ମଝା
ତାର ଠାଣି ଦେଖି ସିଂହପାଇବ ଯେ ଲଜ୍ଜା
ଅଙ୍ଗୁଳି ଶୋଭା ଦିଶଇ ଚମ୍ପାକଢ଼ି ଜିଣି
ନଖ ତାର ସେବତୀର ପାଖୁଡ଼ାକୁ ଜାଣି ।
ବେନିକରେ ହୀରାବାହୀ ଦର୍ପଣରେ ସେ ଫୁଟି
ହୃଦେ ନବରତ୍ନମାଳା ଖଞ୍ଜି ମଣିକୋଟି ।
ଏହିପରି ଅଳଙ୍କୃତ ମେନକା ହୋଇଲା
ରତିଦେବୀ ପ୍ରାୟ ସେହୁଁ ସାକ୍ଷାତେ ଦିଶିଲା ।
ଏମନ୍ତ ସୁବେଶ ହୋଇ ମେନକା ଅପସରୀ
ଦେବଙ୍କ ଆଗରେ ଉଭାହେଲା ବୀଣା ଧରି ।
ତାକୁ ଦେଖି ଆନନ୍ଦିତ ହେଲେ ସୁରଗଣ
ସୁଲକ୍ଷଣ ଯୁବତୀ ସେ ଗୁଣେ ପରିପୂର୍ଣ୍ଣ ।
ବିଶ୍ୱଜନ ମନ ମୋହେ ସୁଧା ପରକାରେ
ସୁମଧୁର ଗୀତ ତାର ଯୋଗୀ ଚିତ୍ତହରେ ।
ମନ୍ଦ ମନ୍ଦ ହାସରେ ସେ କହଇ ବଚନ
ଦେଖିଲେ ମୋହିତନିଶ୍ଚେ ହେବେଯୋଗୀଜନ
ଶଚୀସାଇଁ ବୋଇଲେ ତୁ ଶୁଣ ଦେବନାରୀ
ଶୁକଦେବ ତପଭଗ୍ନ ପାରିବୁ କି କରି ।
ତୁହି ଯିବାପାଇଁ ସର୍ବେ ଛନ୍ତି ବାଟଚାହିଁ
ବୋଲନ୍ତି ମେନକାରୂପେ ସ୍ତିରୀ ଲକ୍ଷ୍ୟ ନାହିଁ
ଗଲେ ସେ ଭାଙ୍ଗିବ ଏକା ଶୁକଦେବ ଲୟେ
ତେବେ ସୁସ୍ଥରେ ରହିବା ଆମ୍ଭେ ଦେବତାଏ
ଏବେ ତୁ ସୁନ୍ଦର ଏଥୁ ବହନ ଗୋ ଚଳ
ଶୁକଦେବ ତପ ଭାଙ୍ଗି ଆସ ସ୍ୱର୍ଗଆଳ ।
ଅଳି କୋକିଳ ବସନ୍ତ ଆଦି ସଙ୍ଗେ ଯାନ୍ତୁ
ହାହା ହୁହୁ ଯେ ଗନ୍ଧର୍ବ ତୁମ୍ବର ଏ ଥାନ୍ତୁ ।
ଜରା ମରଣ ତାରଣ ମୃତସଞ୍ଜୀବନୀ
ଏହାଙ୍କୁ ଗୌରବ କରି ସଙ୍ଗେଥିବୁ ଘେନି ।
କ୍ଷୁଧା ତୃଷା ମଇଥୁନ ନିଦ୍ରା ଚାରି ନିଅ
ଏମାନେ ସଙ୍ଗରେ ଥିଲେ ହେବତୋର ଜୟ
ସ୍ତମ୍ଭନ ମୋହନ ବଶ୍ୟ ଆଉ ଉଚ୍ଚାଟନ
ପାଦୁକା ଲୋପ୍ୟକରଣ ଗୋଟିକା ଅଞ୍ଜନ ।
ଅଷ୍ଟଧାତୁ ମାତୃକା ଯେ ନୃତ୍ୟଆଦି କରି
ଏମାନଙ୍କୁ ସଙ୍ଗେ ଘେନି ଚଳରେ ନାଗରୀ ।
ମନସିଜ ଯାଉ ତୋର ସଙ୍ଗତରେ ଚଳି
ବିନ୍ଧିବ ଯେ ପଞ୍ଚବାଣ ଶୁକ ଆଗେ ମିଳି ।
ଏତେକହି ଦେବଇନ୍ଦ୍ର ଏହାଙ୍କୁ ହକାରି
ମେନକା ସଙ୍ଗେ ସମର୍ପି ଦେଲେ ବ୍ରଜଧାରୀ ।
ଏହାଙ୍କୁ ଘେନିଣ ବାଳା ହୋଇଲା ବାହାର
ଇନ୍ଦ୍ରର ପାଦେ ନମିଲା କୋଟି କୋଟି ବାର
ମେଲାଣି ମାଗିଲା ସର୍ବେ ଚଳିଲେ ନୈମିଷା
ଯେଉଁଠାରେ ଶୁକଦେବ କରନ୍ତି ତପସ୍ୟା
ସେଠାରେ ମିଳିଲେ ଯାଇ ମେନା ମନସିଜ
ଅବସନ୍ତରେ ବସନ୍ତ ବହେ ମଳୟଜ
ହାହା ହୁହୁ ତୁମ୍ବୁର ଯେ ହସ୍ତେ ତାଳଧରି
ଗାବନ୍ତି ଗୀତ ମଧୁରେ ଗାନ୍ଧାର ଉଚ୍ଚାରି ।
ଯେବଣଠାରେ ବିଜୟ ଶୁକ ପଦ୍ମାସନେ
ସେ ସ୍ଥାନକୁ ଚାହିଁଲେ ସେ ମେନକାମଦନେ
ପଞ୍ଚଶର ବିନ୍ଧିଲା ସେ ରତିର ନାୟକ
ଉତ୍ପଳ ରସାଳ ମଲ୍ଲୀ ଅଶୋକ ଚମ୍ପକ ।
ଏ ପଞ୍ଚଶର ଘେନିଣ ବିନ୍ଧନ୍ତେ ତୁହାଇ
ଶୁକଦେବଙ୍କର ଦେହେ ନ ଭେଦିଲେ କେହି
ଯେତେ ଜୀବଜନ୍ତୁ ସେହି ବନେ ରହିଥିଲେ
ମଦନ ଭୋଳେ ସମସ୍ତେ ଉନ୍ମତ୍ତ ହୋଇଲେ
ତରୁଲତା ବନଗିରି କନ୍ଦର ସହିତେ
କାମେ ଜର୍ଜ୍ଜରିତ ହେଲେ ମନସିଜ ଘାତେ ।
ଯେତେ ଆଉ ତପୀ ଥିଲେ ସେବନରେରହି
ଶୁକକୁ ଛାଡ଼ିଣ ଟଳି ପଡ଼ିଲେକ ମହୀ ।

ମନଗନ୍ଧ ପରିମଳ ସୁଶୀତଳ ବାତେ
ପଲ୍ଲଲି ଉଠିଲେ ଥିଲେ ଶୁଷ୍କତରୁ ଯେତେ
ବିସ୍ତାରିତ ଫଳପୁଷ୍ପ ଭରେ ଲତାମାଳ
ଧାତୁଦ୍ରବ୍ୟ ବିନାଶିଲେ କାନନ କୋମଳ ।
ଡାକନ୍ତି ବସି କୋକିଳ ଅଳି ଶାରୀ ଶୁଆ
ତିତ୍ତିରି ଡାହୁକ ଝିଙ୍କ ଆଦି କୁମ୍ଭାଟୁଆ ।
ଏମାନଙ୍କ କୋଳାହଳ ସ୍ୱର ମୃଦୁବାଣୀ
ତୁମ୍ବୁର ଦୁନ୍ଦୁଭୀ ବୀଣା ବଜାଇଲେ ପୁଣି ।
ସ୍ଥାବର ଜଙ୍ଗମ କୀଟ ପତଙ୍ଗାଦି ବନେ
ସମସ୍ତେ ମଦନଭୋଳେ ମନସିଜ ବାଣେ ।
ନାଗଲୋକ ନରଲୋକ ଦେବଲୋକ ଯାଏ
କାମେ ଅସାଷ୍ଟମ ହୋଇପଡ଼ିଲେ ସଭିଏଁ ।
ବ୍ରହ୍ମା ବିଷ୍ଣୁଇନ୍ଦ୍ର ରୁଦ୍ର ବରୁଣ କୁବେର ।
ଏହାଙ୍କର ଅଙ୍ଗ ହେଲା କାମେ ଜରଜର ।
ବ୍ରହ୍ମ କୀଟ ପରିଯନ୍ତେ ଯେତେ ଜୀବଜନ୍ତୁ
କାମବାଣେ ବୁଡ଼ିଗଲା ସମସ୍ତଙ୍କ ହେତୁ ।
ଇନ୍ଦ୍ରକୋଳରେ ଇନ୍ଦ୍ରାଣୀବ୍ରହ୍ମାଯେବ୍ରାହ୍ମଣୀ
ବିଷ୍ଣୁ ମୋହ ଗଲେ ଘେନି ଲକ୍ଷ୍ମୀଠାକୁରାଣୀ
ହାରାବତୀକୁ କୁବେର ଉମାକୁ ମହେଶ
ଦକ୍ଷ ଦୁହିତାକୁ କୋଳେ ଘେନିଲେ ଜଳେଶ
ପବନେ ଅଞ୍ଜନା ସ୍ୱାହା ସୁଧା ତୁଲେ ଅଗ୍ନି
ଯମଦେବତା ଯେ କାଳୀ କରାଳୀଙ୍କୁ ଘେନି
ସଂଜ୍ଞା ତୁଲେ ସୂର୍ଯ୍ୟଚନ୍ଦ୍ରେ ସଙ୍ଗରେ ରୋହିଣୀ
ଋଷିମାନଙ୍କୁ କୋଳରେ ଘେନି ଋଷିଆଣୀ
ନାଗମାନେ ନାଗପତ୍ନୀ ଘେନିଣ କୋଳରେ
ଦେବେ ନିଜେ ନିଜ ପତ୍ନୀଧରି ମୋହଗଲେ
ଶୁଣି ପରୀକ୍ଷିତ ନୃପ ଶୁକର ପ୍ରସଙ୍ଗ
ସାକ୍ଷାତେ ନିରଞ୍ଜନ ସେ ଅଟେ ବିଷ୍ଣୁଅଙ୍ଗ ।
ମେନକା ମଦନ ଗଲେ ଅହଙ୍କାର ବହି
ବ୍ୟାସ ମୁନିଙ୍କର ତପ ଭାଙ୍ଗିବାର ପାଇଁ ।
ପଞ୍ଚବାଣ ଘେନିଣ ସେ ବିନ୍ଧିଲା ଅନଙ୍ଗ
ଶୁକକୁ ଦେଖିଣ ଶରେ ହୋଇଲେ ବିଭଙ୍ଗ ।
ବିଚାରିଲେ ଏଡ଼େ ତପ ଭାଙ୍ଗିବା କି ରୂପେ
ନିର୍ଗୁଣବନ୍ତ ପୁରୁଷ ଦେବ ବ୍ରହ୍ମରୂପେ ।
ଏ ତପ ଭାଙ୍ଗିଲେ ନାହିଁ କାହାକୁ ତ ପାର
ଆମ୍ଭେତ ଅପାଳଟକେ ଅଟୁ ପଞ୍ଚଶର ।
ସିଦ୍ଧ ନ କଲେ ନ ଯାଉଁ କାମଦେବ ତହିଁ
ଏତେ ବୋଲି ଘୋଟିଲେ ସେ ଚରାଚରମହୀ
ଭୁବଲୋକ ମହଲୋକ ସ୍ୱର୍ଲୋକ ଭୂଲୋକ
ଜନଲୋକ ବିତଳ ଯେ ଭୂତଳ ଅତଳ
ତଳାତଳ ରସାତଳ ସପତ ପାତାଳ ।
ମହାତଳ ରସାତଳ ସପତ ପାତାଳ ।
ଜଳ ସ୍ଥଳ ଅଗ୍ନି ପଞ୍ଚଭୂତ ଘେନି
ସ୍ଥାବର ଜଙ୍ଗମ କୀଟ ଆଦି ଚାରିଖାନି ।
ସମସ୍ତଙ୍କ ଶରୀରରେ ଭେଦେ ପଞ୍ଚବାଣ
କାମ ଆତୁରେ ସକଳେ ହେଲେ ଅଚେତନ
କାମ ଯେ ପଞ୍ଚଶରକୁ ବିନ୍ଧିଲା ତୁହାଇ
ଆପେ ରତିକୁ ସ୍ମରିଲା କାମଭାରା ପାଇ ।
ମେନକା ଯେ ସ୍ଥାନେ ଏକାରହେହୋଇଉଭା
ତହିଁ ଆହାପାଇଁ ନାହିଁ ପୁଂସ ନବଯୁବା ।
ସେହି ମଦନ ବାଧାରେ ଚାହେଁ ଚଉକତି
ଏକ ପୁରୁଷ ବସିଛି ତହିଁ ମହାଜ୍ୟୋତି ।
ଜାଜ୍ୱଲ୍ୟମାନ ତା ଜ୍ୟୋତି ଅତ୍ୟନ୍ତ ସୁନ୍ଦର
କାମଦେବ ତା ରୂପକୁ ନୁହେଁ ପଟାନ୍ତର ।
ସେ ସୁନ୍ଦର ପୁରୁଷକୁ ଦେଖିଲା ମାତ୍ରକେ
କାମଜ୍ୱର ଘୋଟିଲା ଯେ ତାର ଦେହଯାକେ
ସ୍ୱର୍ଗର ମେନକା ସେହି କାମେ ଚାରୁହଂସୀ
କନ୍ଦର୍ପ ବାଧା ପଡ଼ନ୍ତେ ଅଙ୍ଗେ ତାରଆସି ।
ଆକୁଳ ହୋଇ ସେ ବାଳା ଯୁବା ପାଶେମିଳି
ଲାବଣ୍ୟେ କହଇ କର ମୋ ସଙ୍ଗରେ କେଳି
କାଟୁଅଛି କେତେ ଦୁଃଖ ସହି ଏଥେ ଦିନ
ପ୍ରେମେ ଆସି ସ୍ୱାମୀ ମୋରେ କର ଆଲିଙ୍ଗନ
ଶ୍ରେଷ୍ଠ ନାୟିକା ମୁଁ ପୁଣି ଅଟେ ଯୁବାନାରୀ
ମୋତେ ନାଥ ଭୋଗକରଦୁଃଖକୁ ପାଶୋରି
ଖାଇଲଣି ଶୀତ ବର୍ଷା ଖରା ଏଥେ କେତେ
ମୋପାଇଁ ବସିଛ ସିନା ତପକରି ଏଥେ ।
ମୁଁ ତୁମ୍ଭର ନିଜ ନାରୀ ତୁମ୍ଭେ ମୋର ଭର୍ତ୍ତା
ଜନମକାଳୁ ବିଧାତା ଲେଖିଛି ଏ କଥା ।
ସହିଲିଣି କେତେଦୁଃଖ ଆଶାକରି କାନ୍ତ
ଦୟାକରି ପୂର୍ଣ୍ଣକର ମୋର ମନୋରଥ ।
ମୁହିଁ ଯୁବାନାରୀ ତୁମ୍ଭେ ଯୁବାପୁଂସ ଅଟ
ଏ ଭୋଗ ନ କରି କିମ୍ପା ପାଉଛ ଏ କଷ୍ଟ ।
ମୋର ଏ ରୂପ ଦେଖିଲେ ସର୍ବଜନମୋହ
କେମ୍ନେ ରହିଛ ପୁରୁଷ ଦେହ ବହି କହ ।
ଏମନ୍ତ ସୁନ୍ଦରୀ ନାରୀ ଦେଖି ନୟନରେ
ଯେଉଁ ପୁଂସ ଆଲିଙ୍ଗନ ତାହାକୁ ନ କରେ ।
ତାହାର ଜୀବନ ଗୋଟି ଅଟଇ ବିଫଳ
ସୁନ୍ଦରୀ କାମିନୀ ଯେହୁ ନ କରନ୍ତି କୋଳ ।
ତାଠାରେ କୋପ କରନ୍ତି ଜଗତ ଈଶ୍ୱର
ସଂସାର ସୁଖରେ ସୁଖୀ ନୁହଇ ସେ ନର ।

କାପୁରୁଷ ବୋଲି ତାକୁ ବୋଲନ୍ତି ସକଳେ
ପୁତ୍ରର ବଦନ ଦେଖି ନପାରେ ସେ ଡୋଳେ
ନପୁଂସକରେ ଗଣନା ହୁଅଇ ସେ ପ୍ରାଣୀ
ତୁମ୍ଭେ ତ ପୁରୁଷ ସିଂହ ମୁଁ ରମଣୀମଣି ।
ମେନକା ମୁଖରୁ ଶୁଣି ଏମନ୍ତ ବଚନ
ବ୍ରହ୍ମରେ ମତକୁ ଥୋଇ ବ୍ୟାସର ନନ୍ଦନ ।
ବୋଇଲେ ସୁନ୍ଦରୀତୋତେ କହିବା ତ ଶୁଣ
ଯେତେକଥା କହିଗଲୁ ସବୁ ଅକାରଣ ।
ଏ ଦେହଗୋଟି ଯେ ମଳମୂତ୍ରର ଆଧାର
ପୁଜ ନାଳ ସ୍ୱେଦନୀର ଆବର ରୁଧିର ।
ହାଡ଼ ନାଡ଼ ମାଂସ କୃମି ଅଙ୍ଗଯାକ ଜଡ଼ି
ଚର୍ମ ଢାଙ୍କୁଣୀ କରିଛି ଉପରେ ସଜାଡ଼ି ।
ଜାଣି ଶୁଣି ଏ ଦେହକୁ କରୁଥାନ୍ତି ସ୍ନେହ
ନାନାଯୋନିରେ ଜନମି ହେଉଥାନ୍ତି ମୋହ
ମୋହର ରମଣୀ ବୋଲି କରନ୍ତି ଯେକୋଳ
ମାୟା ସଂସାରରେ ପଡ଼ି ହୁଅନ୍ତି ଦୁର୍ବଳ ।
ମରନ୍ତି ମୂତ୍ର ପରିସ୍ରାଦ୍ୱାରେ ଘାଣ୍ଟି ହୋଇ
ନିରନ୍ତର ପ୍ରାଣୀ ମୋହ ହୋଇଥାନ୍ତି ତହିଁ ।
ଏକେତ ଦୁର୍ଗନ୍ଧ ଦେହ ଦୁର୍ଗନ୍ଧରେ ମିଳି
ମୁଁ ଏଥକୁ ଯୋଗ୍ୟ ନୁହେଁ ବେଗେ ଯାଅଚଳି
ଶୁକଙ୍କ ମୁଖୁ ଏସନ ଶୁଣି ସେ ନୟିକା
କାମେ ଢଳିପଡ଼ି ବାଳୀ ହୋଇଲା ତାଟକା
ସଚେତ ହୋଇଣ ପୁଣି କହଇ ଉତ୍ତର
ବୋଇଲା ଭୋଦେବ ତୁମ୍ଭେ ଶୁଣ ମୁନିବର ।
ଇନ୍ଦ୍ରଦେବଙ୍କ କାର୍ଯ୍ୟରେ ଆସିଥିଲି ମୁହିଁ
ପୋତୁ ଏବେ ସେହିକଥା କାମୁ ରଖ ତୁହିଁ
ଏକେତ କାମିନୀ ଆମ୍ଭେ କାମଦେବ ଘର
ପୁନରପି କାମଦେବ ବିନ୍ଧେ ପଞ୍ଚଶର ।
ଯୁବତୀ ଅବଳା ମୁହିଁ ଚନ୍ଦ୍ରମାବଦନୀ
ଦୁର୍ଗନ୍ଧ ବୋଲି କିମ୍ପାଇ ଖୁଣ ମୋତେ ମୁନି
ଶାସ୍ତ୍ର କହିଛନ୍ତି ସ୍ତିରୀଦେହ ଅଗ୍ନିକୁଣ୍ଡ
ବୁଝିଲେ ପୁରୁଷ ପିଣ୍ଡ ଅଟେ ଘୃତଭାଣ୍ଡ ।
ଅନଳେ ଘୃତଭାଣ୍ଡ କି ତରଳି ନ ଯାଇ
ବୃଥା ସେ ଅଗ୍ନିକୁ ନିନ୍ଦା କରୁଛ କିମ୍ପାଇଁ ।
ଦେଖ ମୋହର ଶରୀରେ ଅମୃତ ପୂରିଛି
ଦେଖିଲେ ଯୁବା ପୁରୁଷ ନପାରିବେ ମୂର୍ଚ୍ଛି ।
ଆମ୍ଭରୂପ ଦେଖି ବ୍ରହ୍ମା ଇନ୍ଦ୍ର ହେବେ ମୋହ
ପୁଂସ ହୋଇ ତୁମ୍ଭେ କେହ୍ନେ ଧରିଅଛଦେହ
ଭୋ ମୁନି ସ୍ତିରୀମାନଙ୍କୁ ନିନ୍ଦିଲେ ବହୁତ
ହେଉଛି ସଂସାର ସ୍ତିରୀ ଘେନି ଆତଯାତ ।
ସ୍ତିରୀ ନ ଥିଲା ପୁଂସକୁ କାହିଁରେ ନ ଗଣି
ସ୍ତିରୀଲାଗି ସଂସାରରେ ଜନମନ୍ତି ପ୍ରାଣୀ ।
ସ୍ତିରୀକୁ ଛାଡ଼ିଣ କେହୁ ଅଛଇ ସଂସାରେ
ସ୍ତିରୀମାନେ ସୁଖଦାତା ଅଟନ୍ତି ପୁଂସରେ ।
ସ୍ତିରୀ ଗୃହଲକ୍ଷ୍ମୀ ପୁଣି କରେ କୁଳୋଦ୍ଧାର
ପିତୃଏ କରନ୍ତି ସ୍ତିରୀ ଘେନି ପିଣ୍ଡଦ୍ୱାର ।
ସ୍ତିରୀ ସର୍ବଘଟ ହେତୁ ସ୍ତିରୀ ପୁଣ୍ୟଦାତା
ସ୍ତିରୀ ଘେନି ନବସୃଷ୍ଟି ସୃଜିଲା ବିଧାତା ।
ସ୍ତିରୀ ଘେନି ପୁରୁଷଟି ବୋଲାଏ ଗୃହସ୍ଥ
ସ୍ତିରୀଘେନି ପୁତ୍ର ପୌତ୍ରୀ ହେଉଛି ବିଖ୍ୟାତ
ଉଜ୍ଜ୍ୱଳ ହୁଅଇ ସ୍ତିରୀଲାଗି କୁଳଯାକ
ପୁରୁଷ ଅଟଇ ସ୍ତିରୀ ଘେନି ବଡ଼ଲୋକ ।
ଆଗେ ନାରୀ ନାମ ପଛେ ପୁଂସ ନାମ କହି
ପ୍ରଥମ ଲକ୍ଷ୍ମୀ ଦ୍ୱିତୀୟେ ନାରାୟଣ ହୋଇ
ଆଦ୍ୟେ ଉମାଦେବୀ ନାମ ପଛେ ମହେଶ୍ୱର
ସାବିତ୍ରୀ ନାମ ଆଦ୍ୟରେ ପଛେ ବେଦବର
ପ୍ରଥମରେ ଶଚୀ ନାମ ପଛେ ଇନ୍ଦ୍ରନାମ
ପ୍ରଥମରେ ସୀତାଦେବୀ ଦ୍ୱିତୀୟେ ଶ୍ରୀରାମ ।
ଆଦ୍ୟରେ ସ୍ତିରୀ ଜନମ କଲା ପରମେଷ୍ଠୀ
ପଛେ ସିନା ରଚିଲା ଏ ଚରାଚର ସୃଷ୍ଟି ।
ଏଣୁକରି ସ୍ତିରୀ ଘେନି ପୁରେ ତିନିପୁର
ସ୍ତିରୀ ସିନା ସଂସାରର ରଖେ କୁଳାଚାର ।
ସ୍ତିରୀଅଟେ ଶୃଙ୍ଗାରକୁ ଶୀତ ପୂର୍ଣ୍ଣଇନ୍ଦୁ
ସ୍ତିରୀଘେନି କାମ ଚଳେ ପୁରୁଷଙ୍କ ବନ୍ଧୁ ।
ଆମ୍ଭେ ସ୍ତିରୀ ଜାତିମାନେ ସବୁକାଳେ ଥାଉଁ
କାମନାରେଥିବାଯୋଗୁ କାମିନୀ ବୋଲାଉଁ
ପୂରିଲେ ବାର ବରଷ ହେଉ ବାରାଙ୍ଗନା
ବାମେ ଚାହାଁନ୍ତେବୋଲାଉ ଯେବାମଲୋଚନା
ପର ପୁରୁଷଙ୍କୁ ସେବି ପ୍ରେମଦାନୀ ହେଉ
ଭରତାକୁ ସେବାକରି ଭାବିନୀ ବୋଲାଉ ।
ସ୍ୱାମୀକୁ ଲଳିତେ ସେବି ଲଳନା ଯେ ଭଣି
ନିତମ୍ବ ଦମ୍ଭହେବାରୁ ନାମ ନିତମ୍ବିନୀ ।
ସୁନ୍ଦର ଦିଶିଥିବାରୁ ସୁନ୍ଦର ବୋଲାଉ
ସ୍ତନ ଶମ୍ଭୁ ପ୍ରାୟେହ୍ୱନ୍ତି ତରୁଣୀ ଯେ ହେଉ ।
ଅଙ୍ଗେ ଭାରା ବହି ଆମ୍ଭେ ବୋଲାଉ ଅଙ୍ଗନା
ବାମ ଆଲିଙ୍ଗନ ଘେନି ନାମ ହେଲା ବାମା
ଯେଉଁପରି ସ୍ୱାମୀ ସଙ୍ଗେ ଲଗାଉ ପୀରତି
ତେଣୁକରି ଆମ୍ଭ ନାମ ହେଲା ପ୍ରିୟବତୀ ।
ରମଣଶୀଳା ହେବାରୁ ଲାଜା ନାମ ବହୁ
ରକତ ବୁହାଇ ନୀବୀମୁଖେ ସ୍ତିରୀ ହେଉ ।

ନାଗର ପୁରୁଷ ମୋହି ନାଗରୀ ହୋଇଲୁ
ପତିର ବୋଲ ପାଳିଣ ପତିବ୍ରତା ହେଲୁ ।
ପିତା ମାତା ଘରେ ଆମ୍ଭେ ଦୁହିତାଂବୋଲାଉ
ଦୁର୍ବାକ୍ଷତପୂତ ହେଲେ ବନିତା ଯେ ହେଉ
ଏକ ପତି ସେବି ସତୀ ବୋଲାଉ ଯେ ପୁଣି
ପୁତ୍ର ପ୍ରସବ କରିଣ ବୋଲାଉ ଜନନୀ ।
ଯୁବା ବୟସ ହୋଇଲେ ବୋଲାଉ ଯୁବତୀ
ରଚନ ବୋଲାଉ ପୁଣି ସ୍ୱାମୀ ଦେଇ ରତି ।
ଗୃହସ୍ଥ ନାମ ଭଣାଉ ନାରୀ ନାମ ବହୁ
ଏତେରୂପେ ସ୍ତିରୀ ନାମ କି କହିବି ଆଉ ।
ଏମନ୍ତ ସ୍ତିରୀକି ନିନ୍ଦାକଲ ତୁମ୍ଭେ ଆଣି
କେତେ ସ୍ତିରୀ ହରିଛନ୍ତି ଶାସ୍ତ୍ର ଅଛି ଶୁଣି ।
ଗଉତମ ଋଷି ପତ୍ନୀ ଥିଲେ ପୁଣି ପୂର୍ବେ
କପଟେ ହରିଲା ଇନ୍ଦ୍ର ତାଙ୍କୁ ଋଷିଭାବେ ।
ବୃହସ୍ପତିଙ୍କ ଭାରିଯା ତାର ନାମ ପୁଣ
ତାହାଙ୍କୁ ଯାଇଣ ଇନ୍ଦ୍ର କରିଛି ରମଣ ।
ଗଙ୍ଗା ପୁଣି ବରୁଣର ପାଟ ମହାଦେଈ
ତାର ବଶ ହୋଇ ହର ଶିରେଛନ୍ତି ବହି ।
ବ୍ରହ୍ମା ପୁଣି ଉର୍ବଶୀକି ଦେଖି ମୋହଗଲେ
ବଶିଷ୍ଠ ନାମେଣ ଋଷି ତହୁଁ ଜନମିଲେ ।
ସପତ ଋଷିଙ୍କର ଯେ ସପ୍ତ ମନୋହାରୀ
ତାହାଙ୍କୁ ଅଗ୍ନିଦେବତା ଛନ୍ତି ପୁଣି ହରି ।
ରମ୍ଭା ବୋଲି ଅପସରା ଯେବଣ ନାୟିକା
ଯାଇଥିଲେ ଶୁଦ୍ଧସ୍ନାନ କରିବାକୁ ଏକା ।
ପିନ୍ଧୁ ପିନ୍ଧୁ ଉଡ଼ନ୍ତେ ତା ବସ୍ତ୍ର ପବନରେ
ଦିଶିଲା ତା ବେନିଜାନୁ ଦେଖିଲେ ଭାସ୍କରେ ।
ଭେଦିବାରୁ ପଞ୍ଚଶରା ରହି ନ ପାରିଲେ
ଆସି ରମ୍ଭାକୁ ରମଣ ତହୁଁ କରିଗଲେ ।
ବିଶ୍ୱାମିତ୍ର ରମଣ ଯେ କରିଛନ୍ତି ମୋତେ
ଏରୂପେ ସ୍ତିରୀ ହରଣ କହିବଇଁ କେତେ ।
ସ୍ତିରୀବଶ ନୋହିଁ କେହୁ ଅଛି ତିନିପୁରେ
ସ୍ତିରୀମାନେ ସିନା ସୁଖ ଦ୍ୟନ୍ତି ପୁରୁଷରେ ।
ସ୍ତିରୀଙ୍କ ମୁଖରେ ସିନା ଅମୃତ ପୂରିଛି
ସ୍ତିରୀକି ଦେଖି ପୁରୁଷ ନ ପାରଇ ମୂର୍ଚ୍ଛି ।
ପଞ୍ଚଶର ସ୍ତିରୀଙ୍କର ନେତ୍ର ପରକାଶି
ଚାହାନ୍ତେ କାମ ପୀଡ଼ଇ ପୁରୁଷକୁ ଆସି ।
ସ୍ତିରୀ ଏହି ସଂସାରରେ ଅଟଇ ଯେ ମୂଳ
କେ ଅବା ସ୍ତିରୀମାନଙ୍କୁ ନ କରୁଛି କୋଳ
ସ୍ତିରୀ ନ ଥିଲେ ହୁଅନ୍ତେ ତୁମ୍ଭେ କାହୁଁ ଜନ୍ମ
ନିନ୍ଦା ନ କର ସ୍ତିରୀଙ୍କି ଏଣୁ ଶୁକବ୍ରହ୍ମ ।

ଏବେ ଆସିଣ ଭୋ ମୁନି କରମୋତେକୋଳ
ଏ ପଞ୍ଚଶର ସ୍ରୋତରୁ ରଖ ବ୍ୟାସବଳ ।
ମୁଁ ଯେ ନ ଜାଣି ଅଇଲି ସ୍ତ୍ରୀ ଅଦଣ୍ଡ୍ୟ ପ୍ରାଣୀ
ତୁମ୍ଭଙ୍କୁ ନ ପାଇ କାମ ପ୍ରାଣ ନେଲା ପୁଣି ।
ସ୍ତିରୀଙ୍କ ଭକ୍ଷ ଯାହାଟି ବୋଲନ୍ତି ଦ୍ୱିଗୁଣ
ବୁଦ୍ଧି ଚାରି ବ୍ୟବହାର ଷଟ ପ୍ରକାରେଣ ।
କାମ ଆଠଗୁଣ ବୋଲି ଲେଖନ୍ତିଟି ଯାହା
ସେକାମ ଏକାବେଳକେ ଘାରିଲାମୋଦେହା
ମୋତେ ସିନା ଦେଖି ତୁମ୍ଭେମାଗୁଥାନ୍ତଦାନ
ମୁଁ ଏବେ ଦେଖି ତୁମ୍ଭଙ୍କୁ ହେଲି ଅଚେତନ
ମେନକା କହିବା ବାଣୀ ଶୁଣି ଶୁକଦେବ
ବୋଇଲେବାଲୀ କହିବା ତୋତେଶୁଣଏବେ
ତୁମ୍ଭେ ତ ସକଳ ନାରୀ ଅଟ ଏକମୂର୍ତ୍ତି
ମୁହିଁ ତ ତୁମ୍ଭ ଗର୍ଭରୁ ହୋଇଛି ଉତ୍ପତ୍ତି ।
ବୁଝିଲେ ମାତାପରି ତୁ ହେଲୁ ଆସି ମୋର
ମାତାକୁ ପୁତ୍ର କେସନେ କରିବ ଶୃଙ୍ଗାର ।
ଏ ପାପରେ କେମ୍ଭେ ମାତାହୋଇବି ପ୍ରବେଶ
ରହିଲି ଏଣୁ ମୁଁ ଗର୍ଭେ ଦ୍ୱାଦଶ ବରଷ ।
ଇନ୍ଦ୍ରି ଲାଗିବ ବୋଲିଣ ମାତା ଭଗଦ୍ୱାରେ
ଜନ୍ମ ନୋହିଲି ପାପକୁ ଡ଼ରି ମର୍ତ୍ତ୍ୟପୁରେ ।
ବକ୍ର କାଛଟା ପିନ୍ଧି ମୁଁ ଗର୍ଭୁ ହେଲି ଜନ୍ମ
ଏଣୁ ଆସି ଏଠାରେ ମୁଁ କରୁଛି ଭଜନ ।
କାହାକୁ ହିଂସା କପଟ ମାୟା ନାହିଁ ମୋର
ଦିଶନ୍ତି ସକଳ ଜୀବ ମୋତେ ଏକାକାର ।
ମୁହିଁ ତ କାହାର ପୁଣି ନୁହଇ ବଇରୀ
ତୋତେକିମ୍ପା ପେଶିଲେ ମୋପାଶେବଜ୍ରଧାରୀ
ତୁହି ଏବେ ମାତା ଏଥୁ ବହନ ଗୋ ଚଳ
ମୋର ମନ ହରିନାମ ଭଜନେ କେବଳ ।
ଅନଙ୍ଗଦେବ ଆଉ ନ କରୁ ଏଥେ ପୀଡ଼ା ।
ମୋର ବଚନେ ଛାଡ଼ୁ ତୋ କାମଶରଜ୍ୱାଳା
ଏତେବୋଲି ଶୁକଦେବ ଚାହିଁ ମେନକାକୁ
ବୋଇଲେ ପାଞ୍ଚଶର ହେ ଚଳ ତୋ ପୁରକୁ
ଭଲ ମନ୍ଦ ଜାଣୁ ତୁହି ସର୍ବଜ୍ଞ ଆବର
ଦର୍ପଦଳନକାରୀ ତୁ ସ୍ତିରୀ ପୁରୁଷର ।
ଦୁଃଖୀ ଦରିଦ୍ରରେ ତୋର ଅଟେ ବଡ଼ ଦୟା ।
ଏକ ବାଣ ବିନ୍ଧି କରି ସମ୍ଭାଳୁ ତା କାୟା
ଯୁବା ଯୁବତୀ ଜନ୍ମର ଘେନୁ ତୁ ପରାଣ
ଦେଖି ଭୋଗୀ ପୁରୁଷଙ୍କୁ ବିନ୍ଧୁ ପଞ୍ଚବାଣ ।
କାମଦେବ ସାୟକ ତୁ ଅଟୁ ପୁଣ୍ୟଶ୍ଳୋକ
ତିନିଶର ପେଶି ଗଞ୍ଜୁ ଦେଖିଲେ ରସିକ ।

ବିଦ୍ୟାବନ୍ତ ଲୋକ ଦେଖି ଭାଙ୍ଗୁତାର ଗର୍ବ
ଚାରିଶର ପେଶିଲେ ସେ ହୁଅଇ ନିର୍ଜୀବ ।
ଏମନ୍ତ ମହିମା ତୋର କନ୍ଦର୍ପ ଶାସ୍ତ୍ରକ
ପାପି ଜନ ଦେଖି ବିନ୍ଧୁ ପଞ୍ଚବାଣ ଯାକ ।
ସାତ୍ତ୍ୱିକ ଲୋକ ନିକଟେକେଭେ ତ ନଯାଉ
ଆଉ ସମସ୍ତ ପ୍ରାଣୀଙ୍କୁ ମୋହିତ କରାଉ ।
ଏବେ ଆମ୍ଭେ କହୁଅଛୁଁ ତୋତେ ପାଞ୍ଚଶର
ଏ ସୁନ୍ଦରୀ ଅଙ୍ଗ ଏବେ ବାରେକ ସଂହର ।
ମୋତେ ସିନା ମୋହିବାକୁ ଆସିଥିଲା ନାରୀ
ହିମ ସଂଯୋଗରେ ଯେହ୍ନେ କମ୍ପଇଁ ଶରୀରି
ସେହିରୂପେ ଥରୁଛି ଏ ଦେହ ପଞ୍ଚଶରେ
ମହା ଧୀର ଅଟେ ମୁଁ ଶ୍ରୀହରି କୃପାରେ ।
ଶ୍ରୀହରିଙ୍କ ଆଜ୍ଞାରେ ମୁଁ ଅଟେ ଧୈର୍ଯ୍ୟବନ୍ତ
ବିନ୍ଧିଲେ ତ କୋଟିବାଣ ନ ଟଳେମୋ ଗାତ୍ର
ମେନକା ଅଙ୍ଗୁଖସି ସେ ସ୍ଥିର ହୋଇ ବସୁ
ଏଣୁ ତୋତେ ବହୁଛିହେ ଚଳ କୁସୁମେଷୁ ।
ତିଆରି କହନ୍ତେ ମୁନି ଏସନ ପ୍ରକାର
ତକ୍ଷଣେ ମେନକା ଅଙ୍ଗୁଗଲା କାମଜ୍ୱର ।
ଆବର ଯେତକ ଘୋଟିଥିଲା ପୃଥ୍ୱୀଯାକେ
ସବୁ ହୃଦୁ ଚଳିଗଲା କାମ ଶୁକବାକ୍ୟେ ।
ରତିପତି ଏକାନ୍ତରେ ପ୍ରବେଶିଲେ ଯାଇ
ତହୁଁ ମେନକା ବସିଲା ଧୀରସ୍ଥିର ହୋଇ ।
ବିନୟରେ ଶୁକଦେବ ପାଦକଲା ପୂଜା
ନିରାଲମ୍ବ ପୁରୁଷ ତୁ ଅଟୁ ବ୍ରହ୍ମତେଜା ।
ଅଣାକାର ବ୍ରହ୍ମରୁ ତୋ ଆକାର ହୋଇଲା
ଶୁକମୁନି ଅବତାର ରୂପ ପ୍ରକାଶିଲା ।
ସକଳ ଋଷିଙ୍କ ମଧ୍ୟେ ତୋ ନାମ ପୂଜିତ
ଯେ କାରଣୁ ଅଟୁ ତୁହି ଅଯୋନି ସମ୍ଭୂତ ।
ଲୋଭ ମୋହ କାମକ୍ରୋଧ ସର୍ବ ପରିତ୍ୟାଗୀ
ନିର୍ମାୟା ପୁରୁଷ ଅଟୁ ତୁ ପରମଯୋଗୀ ।
ବ୍ରହ୍ମା ଇନ୍ଦ୍ର ଚନ୍ଦ୍ର ରବି ଯେ ତୋମହାବଳୀ
ଆମ୍ଭଙ୍କୁ ଦେଖିଲେ କାମେପୀଡ଼ନ୍ତି ଯେ ଟଳି
ତୋହର ପରା ପୁରୁଷ ନ ଦେଖିଲି କାହିଁ
ବୁଲି ତିନିପୁରଯାକ ଦେଖିଅଛି ମୁହିଁ ।
ଏବେ ଦଇନୀ କରୁଛି ତୋତେ ମୁନିବର
ଆଜ୍ଞା ଦିଅ ସ୍ୱର୍ଗପୁରେ ମୁଁ ଯିବି ଏଥର ।
ଶୁଣି ଶୁକ ଯାଅ ବୋଲି ମଥା ହଲାଇଲା
ନାରଦ ଶୁଣନ୍ତି ଏହା ବ୍ରହ୍ମା କହୁଥିଲେ ।
ଏତେ କହିଣ ସୁନ୍ଦରୀ ଗଲା ଶୂନ୍ୟମାର୍ଗେ
ସ୍ୱର୍ଗେ ଆଣିବା ଲୋକଙ୍କୁ ଘେନି ସଙ୍ଗେସଙ୍ଗେ
ସୁଧର୍ମା ସଭାରେ ଯାଇ ହୋଇଲା ପ୍ରବେଶ
ଇନ୍ଦ୍ରଆଗେ କହିଲା ସେ ସକଳ ସନ୍ଦେଶ ।
ବୋଇଲା ହେ ଦେବ ଶୁଣ ଅମରାଧିନାଥ
ଶୁକମୁନି ପାଶକୁ ଯେ ପେଶିଲୁ ଆମ୍ଭନ୍ତ
କେଉଁଗୁଣେ କହିବି ସେ ପୁରୁଷର କଥା
ମନୁଷ୍ୟ ନୁହଇ ସେହି ଅଟେ ବ୍ରହ୍ମବେତ୍ତା ।
କେତେବାଗେ କହିଲି ମୁଁ ତାକୁ ଚାଟୁବାଣୀ
କାମଦେବ ହିଁ ବିନ୍ଧିଲା ପଞ୍ଚଶର ଟାଣି ।
ବସନ୍ତ କୋକିଳ ପୁଣି ଆଳି ପିକ ଶାରୀ
ତୁମ୍ବୁର ଗାୟନ କରେ ବିପଞ୍ଚିକି ଧରି ।
କିଛିହିଁ ତାର ଅଙ୍ଗରେ ନ ଭେଦିଲା ଜାଣ
ଅଧିରେ ଆମ୍ଭଙ୍କୁ ପୀଡ଼ା ଦେଲେ ପଞ୍ଚବାଣ
ଶୁଣିଣ ଇନ୍ଦ୍ର ଦେବତା ଟହ ଟହ ହସି
ବୋଇଲେ ଆମ୍ଭଙ୍କୁକାମପୀଡ଼ା ଦେଲା ଆସି
ଏହିକ୍ଷଣି ଶରୀରରୁ ଗଲା ପଞ୍ଚଶର
ତୁ ଏବେ ସୁନ୍ଦରୀ ଯାଇ ରହ ତୋର ପୁର ।
ଏତେ କହି ଇନ୍ଦ୍ର ତାକୁ ପୁରୁଷାର୍ଥ କରି
ଗଉରବ ପାଇ ପୁରେ ଚଳିଲା ସୁନ୍ଦରୀ ।
ଯେ ଯାହାର ମନସୁଖେ ରହିଲେ ପୁରରେ
ଶୁକଦେବ କଥା ଶୁଣ ଏଥୁଅନନ୍ତରେ ।
ଉଠୁଛି ଏ ପୁରାଣରୁ ଅମୃତ ଲହରୀ
ପୀତାମ୍ବର ବୋଲେ ଜନେତର ପାନକରି ।



## ଶୁକଦେବଙ୍କର କନକଋଷିଙ୍କଠାରୁ ମନ୍ତ୍ର ଗ୍ରହଣ

କିଛିଦିନେ ମହାତ୍ମା ତେଜିଲେ ସେ ତପ
ହୋଇଛନ୍ତି ସାକ୍ଷାତରେ ସେହୁ ବ୍ରହ୍ମରୂପ ।
ନୈମିଷା ବନେ ରହିଲେ ସର୍ବ ଋଷିମେଳେ
ଚଳିଯାନ୍ତି ନିତ୍ୟ ସ୍ନାନକରି ନଦୀ କୂଳେ ।
ଗଙ୍ଗାଜଳେ ପଶି ଶୁକ ଗାଧୋଇ ଆସନ୍ତେ
ଋଷିଗଣ ବସି ଏଣେ ଭାଳନ୍ତି ଏକାନ୍ତେ ।
ବୋଲନ୍ତି ଦେଖୁ ଏ ଅଟେ ବ୍ରହ୍ମଣ୍ୟ ପୁରୁଷ
ଗୁରୁକରି ନ ରହିଲେ ଅଣ ଉପଦେଶ ।
ଗୁରୁ ନ କଲା ଲୋକର ଅଙ୍ଗ ଅପ୍ରତିଷ୍ଠା
ଅଶୁଦ୍ଧ ଅଟଇ ତାର କଳେବର ଗୋଟା ।
ଗୁରୁ ନ କଲା ଲୋକର ନଛୁଇଁବ ପାଣି
ସେ ଜଳ ଚଣ୍ଡାଳ ଜଳ ସହିତରେ ଗଣି ।
ଗୁରୁ ନ କଲା ଲୋକର ନ ଚାହିଁବ ମୁଖ
ଚାହିଁଲେ ଲାଗଇ ତାକୁ ପାତକ ଅନେକ ।

ଗୁରୁ ନ କଲା ଲୋକର ପଦାର୍ଥ ଅଶୁଦ୍ଧ
ତାହାର ଅନ୍ନ ଭୁଞ୍ଜିବା ଲୋକର ବିରୁଦ୍ଧ ।
ଗୁରୁ ନ କଲା ଲୋକର ଜନ୍ମ ନର୍କେ ପୁଣି
ଶ୍ୱାନ ଚଣ୍ଡାଳ ମୂରଖ ସଙ୍ଗେ ତାକୁ ଗଣି ।
ଗୁରୁ ନ କଲା ଲୋକକୁ ଲେଖ ପଶୁଗଣେ
ମୂଢ଼ରେ ଗଣନା ତାକୁ କରନ୍ତି ସୁଜନେ ।
ଅଶୁଦ୍ଧ ହେବାରୁ ତାର କଳେବର ଗୋଟା
ବସିବା ଆସନ ଭୂମି ହୁଏ ଅପ୍ରତିଷ୍ଠା ।
ହରେରାମ ମହାମନ୍ତ୍ର ଚାରିବେଦ ସାର
ଏହା କର୍ଣ୍ଣେ ନ ଶୁଣିଲେ ନାହିଁ କାହିଁ ପାର
ଆଉ ମହାମନ୍ତ୍ର ସବୁ ଉପଲବ୍ଧ କର୍ମ
ମହାମନ୍ତ୍ର ଷଡ଼ାକ୍ଷର ଅଟେ ଏକା ବ୍ରହ୍ମ ।
ଏସନକ ବିଚାରିଣ ସର୍ବ ଋଷିମାନେ
ଶୁକଦେବ ନ କହନ୍ତି ଭୟକରି ମନେ ।
ଶାସ୍ତ୍ର ପ୍ରମାଣରେ ବାରଅଙ୍ଗୁଳି ଯେ ମାଟି
ସ୍ଥାନକୁ ଚଳନ୍ତେ ଭୂମି ମଧ୍ୟଦେଇ କାଟି ।
ନୂତନ ମୃତ୍ତିକାମାନ ତହୁଁ ଆଣି ପୁଣି
ଢାଳି ଉପରେ ସିଞ୍ଚନ୍ତି ତୁଳସୀରେ ପାଣି ।
ଗୋମୟ ଲିପି ଚନ୍ଦନ ଛେରା ତହିଁ ଦ୍ୟନ୍ତି
କୃଷ୍ଣାଜିନ ଛାଲ ତାହା ଉପରେ ବିଛାନ୍ତି ।
ସେ ଛାଲ ଉପରେ ଆସି ବସି ବ୍ୟାସପୁତ୍ର
ପଢ଼ନ୍ତି ଋଷିମାନଙ୍କ ମଧ୍ୟେ ସ୍ତୁତି ସ୍ତୋତ୍ର ।
ଏହିରୂପେ ବହିଯାନ୍ତେ କିଛିକାଳ ତହିଁ
ଦେଖିଲେ ଶୁକ ଆସନ ଅଛି ଓଦା ହୋଇ ।
ପାଞ୍ଚିଲେ ମୋ ଆସନେ କେଦେଲାଓଦାମାଟି
ସବୁଙ୍କରି ଆସନ ତ ଦିଶେ ପରିପାଟୀ ।
ଏତେବୋଲି ଶୁକଦେବ ପୁଚ୍ଛି ଜଣ ଜଣ
କେହି ତାକୁ ଭୟକରି ନ କହନ୍ତି ପୁଣ ।
ସମସ୍ୟା ନ ଦେଇ କେହି ସର୍ବ ହ୍ୱନ୍ତି ତୁନି
ଅଗସ୍ତି ଏକା କହିଲେ ଶୁଣ ଶୁକମୁନି ।
ଯାହା ପୁଚ୍ଛିଲେ ତୁମ୍ଭେଟି ଏ ଋଷି ସଭାରେ
କେହି ତୁମ୍ଭଙ୍କୁ ଏ କଥା ନ କହନ୍ତି ଡରେ ।
ଆମ୍ଭର ମୁଖରୁ ଏବେ ଶୁଣିବା ସିଦ୍ଧାନ୍ତ
ଏ ଋଷିମାନେ ବିଚାର କଲେ ଯେଣ୍ଟା ଚିତ୍ତ
ବୋଇଲେ ଶୁକଦେବ ତ ବ୍ରହ୍ମଣ୍ୟ ଅଟନ୍ତି
ଗୁରୁଠାରୁ ମନ୍ତ୍ର କିମ୍ପା ନ ନେଲେ ଏ ଯତି
ବାରବର୍ଷ ଯାଏ ସିନା ମତି ବାଳଭାବ
ହୁଅଇ ତହିଁ ତେଣିକି ରେତ ଉଦଭବ ।
ଏ ମଧ୍ୟେ ନ ନେଲେ ଯେବେ ମନ୍ତ୍ରଗୁରୁମୁଖୁ
ସକଳ ପାତକ ସଙ୍ଗେ ଘୋଟେଦେଖୁଦେଖୁ

ଯେ ଛୁଇଁଲେ ଦ୍ରବ୍ୟ ଜାଣ ଅଶୁଦ୍ଧଟି ହୁଏ
ଘେନିଲେ କେବଳ ମନ୍ତ୍ର ଶୁଦ୍ଧ ହୁଏ କାୟେ ।
ନ ଘେନିଛ ଗୁରୁ ମନ୍ତ୍ର ତୁମ୍ଭେ ଶୁକଦେବ
ତେଣୁ ଅଶୁଦ୍ଧ ହେଉଛି ଯହିଁରେ ବସିବ ।
ଏଣୁ ଏହି ଋଷିମାନେ ତୁମ୍ଭଙ୍କୁ ଉରସି
କହି ନ ପାରି ଆନନ ଖୋଲି ଅହର୍ନିଶି ।
ସେ ମାଟି କାଢ଼ିଣ ଗଙ୍ଗା ମୃତ୍ତିକା ଦିଅନ୍ତି
ତେଣୁ ତୁମ୍ଭର ଆସନ ଓଦା ହୁଏ ତିନ୍ତି ।
କହନ୍ତେ ଅଗସ୍ତି ଋଷି ତାଙ୍କୁ ନ୍ୟାୟଶାସ୍ତ୍ର
ଶୁଣି ମନରେ ସଂଶୟ ଘେନି ବ୍ୟାସପୁତ୍ର ।
ବୋଇଲେ ଏରୂପେ ଯେବେ ଅଛି ଧର୍ମନୀତି
କେହେବ ଗୁରୁ ମୋହର କହ ହେ ଅଗସ୍ତି
ଗୁରୁ ନ କଲେ ପବିତ୍ର ଯେବେନୁହେଁ ଦେହ
ତେବେ ମହାମନ୍ତ୍ର ମୋର କର୍ଣ୍ଣେବେଗେକହ
ବୋଇଲେ ଅଗସ୍ତି ଯେବେ ପୁଚ୍ଛିଲଆମ୍ଭଙ୍କୁ
ଏ ସଭାରେ ନାହାନ୍ତି କେ ମନ୍ତ୍ର କହିବାକୁ ।
ଏକ ମାତ୍ର କଥା ଶୁକ ଶୁଣ ଆମ୍ଭଠାରୁ
ଜନକ ଋଷିଙ୍କୁ ଏବେ କର ଯାଇ ଗୁରୁ ।
ସେହି ଏକା ଗୁରୁପଣେ ତୁମ୍ଭଙ୍କୁ ଭାଜନ
ଆଉ ଋଷିମାନଙ୍କରେ ନାହିଁ ପ୍ରୟୋଜନ ।
ଏମନ୍ତ ବୋଲିଣ ଯହୁଁ କହିଲେ ଅଗସ୍ତି
ଭ୍ରାନ୍ତି ପାଇ ଶୁକ ତାକୁ ଲେଉଟି ପୁଚ୍ଛନ୍ତି ।
ବୋଇଲେ ଏଠାରେ ଅଛଯେତେଋଷିଗଣେ
ଅପଣ୍ଡିତ ନ ଦିଶୁଛି କେହି ମୋତେ ଜଣେ
କେହି ପୁରାଣ ପଢ଼ା କେ ବେଦଧ୍ୟାୟୀ ଅଟ
କେ ମହାବ୍ରହ୍ମଣ୍ୟ କେହି ତପରେ ଗରିଷ୍ଠ ।
ଜନକ ଋଷିଙ୍କୁ କିମ୍ପା ଟେକିଦେଲ ଏତେ
କହିବା ହେଉ ମହିମା ତାହାଙ୍କର କେତେ
ଶୁଣିବା ଯେବେ ତାହାଙ୍କୁ ଗୁଣମାନ ଆମ୍ଭେ
ଗୁରୁକରି ତାଙ୍କଠାରୁ ମନ୍ତ୍ର ନେବା ତେବେ
ଅଗସ୍ତି ବୋଇଲେ ଯତି କହୁଁ ଶୁଣ ଏବେ
ଜନକଙ୍କ ଗୁଣ ଯାହା ଶୁଣିଅଛୁ ପୂର୍ବେ ।
ନାରଦଙ୍କ ଅଗ୍ରତରେ କହୁଥିଲେ ବ୍ରହ୍ମା
ଆପଣ ଏବେ ସେ କଥା ପ୍ରତ୍ୟକ୍ଷେ ଶୁଣିମା
ଜନକ ସନକ ଏହି ମହାଋଷି ଦିନେ
ଅକସ୍ମାତେ ଭେଟହେଲେ ଆସିଅନ୍ୟେଅନ୍ୟେ
ଜନକ ମହର୍ଷି ପୁଣି ସଂଯୋଗ ବୋଲନ୍ତି
ସନକ ମହାଋଷି ଯେ ନିର୍ବାଣୀ ଅଟନ୍ତି ।
ସଂଯୋଗୀଙ୍କର ମହିମା ନିର୍ବାଣୀଙ୍କ ଗୁଣ
ଏ ଦୁଇ କଥାକୁ ଶୁକ ସାବଧାନେ ଶୁଣ ।

ଗୃହସ୍ଥାଶ୍ରମରେ ସୁଖେ ଜନକ ଯେ ରହି
କରନ୍ତି ଯେ ନାନାକର୍ମ ପରମାତ୍ମା ଧାୟି ।
ଅଖଣ୍ଡ ଜ୍ଞାନକୁ ପିଣ୍ଡ ବ୍ରହ୍ମାଣ୍ଡ ଚିହ୍ନନ୍ତି
ସେ ଜ୍ଞାନଗୋଟି ଯାବତ ଜନ୍ତୁ ଆତ୍ମା ହୁଅନ୍ତି ।
ସଂସାର ମୁଣ୍ଡରେ ସଙ୍ଗ ଯେଉଁଠାରେଜାତ
ସେଠାକୁ ଜନକ ଋଷି ଦେଇଥାନ୍ତି ଚିତ୍ତ ।
ଜୀବ ପରମ ବିହାର ତହିଁ ଦେଖୁଥାନ୍ତି
ହଂସଟି ଉଦୟ ଅସ୍ତ ସେ ସ୍ଥାନେ ହୁଅନ୍ତି ।
ସେ ହଂସର ଉଦେ ଅସ୍ତ ନ ଜାଣନ୍ତି ଯେହୁ
ଜାଣ ଶୁକ ତାକୁ ଆମ୍ଭେ କୁଜ୍ଞାନୀ ଯେ କହୁ
ହଂସର ଚାଲିବା ଚିହ୍ନ ଜନକହିଁ ଦେଖେ
ହକାର ସକାର ସେହି ଅକ୍ଷର ପ୍ରତ୍ୟକ୍ଷେ ।
ସେଇ ଦୁଇ ଅକ୍ଷରକୁ ଜନକ ମହର୍ଷି
ଶ୍ରୀଗୁରୁ ପ୍ରାୟ ଭଜନ୍ତି କରି ଦିବାନିଶି ।
ସନକ ଋଷିଙ୍କ ଗୁଣ କହିବାକ ଶୁଣ
ଉଲଗ୍ନ ବ୍ରହ୍ମଚାରୀ ସେ ଅଟନ୍ତି ଆପଣ ।
କରନ୍ତି ସେ ବେଦମୟ କର୍ମଫଳ ଘେନି
ସାଂସାରିକ କର୍ମ କେବେ ନ ଛାଡ଼ନ୍ତି ମୁନି ।
ବାଳକ କାଳରୁ ସେହି ତପସ୍ୟା କରନ୍ତି
ଅମାବାସ୍ୟା ସଂକ୍ରାନ୍ତିରେ ତେଲ ନ ଘେନନ୍ତି
ବାର ବ୍ରତ ତପ ଜପ ମହାଯଜ୍ଞ ଯେତେ
ଗୁରୁ ଇଷ୍ଟକରି ଏହା ଆଚରନ୍ତି ନିତ୍ୟେ ।
ସନକ ଋଷିଙ୍କର ଏ କର୍ମ ଦେଖିକରି
ଜନକ ବୋଇଲେ ସବୁ ବ୍ୟର୍ଥ ଏ ତୁମ୍ଭରି ।
କର୍ମକରି ସତ୍ୟ ଯେବେ ନ କହିବ ତୁଣ୍ଡେ
କେବଳ ସେ ଭକ୍ତି ଶ୍ରମ ଅଟଇ ବ୍ରହ୍ମାଣ୍ଡେ ।
ଆତ୍ମଦର୍ଶୀ ନ ହୋଇଣ କର୍ମ ଯେ କରନ୍ତି
ସେହୁ କର୍ମମାନ ଜାଣ ଅଲଗା ଅଟନ୍ତି ।
ତିଉଣ ଭାଣ୍ଡରେ ଯେହ୍ନେ ଲୁଣ ନ ପଡ଼ିଲେ
ଲାଗଇ ଯେମନ୍ତେ ସ୍ୱାଦ ସେ ଦ୍ରବ୍ୟ ଭୁଞ୍ଜିଲେ
ଆତ୍ମା ଅଚିହ୍ନା କର୍ମଟି ତେମନ୍ତ ଅଟଇ
ଶ୍ରୀକୃଷ୍ଣଙ୍କୁ ଭକ୍ତି ଯାର ହୃଦୟରେ ନାହିଁ ।
ସନକ ବୋଇଲେ ତେବେ ତପସ୍ୟାନକଲେ
ହସ୍ତେ ଅଛନ୍ତିକି ହରି ଦେଖିବ ଚାହିଁଲେ ।
ଜପ ତପରେ ତ ନାହିଁ କାହିଁ ଅଛ କହ
ଜନକ ବୋଇଲେ ତୁମ୍ଭ ହୃଦପଦ୍ମେ ଚାହଁ ।
ଜୀବ ପରମ ଏ ଦୁଇ ଦେଖାଦେବେ ଯେବେ
ଆତ୍ମା ନାରାୟଣ ଜ୍ୟୋତି ଦେଖିବଟି ତେବେ
ଯେ ଜ୍ୟୋତି ବେନି ଅକ୍ଷର ଆସିଲେ ବ୍ରହ୍ମରୁ
ଭେଟିବ ଚିହ୍ନିଲେ ତାଙ୍କୁ ତୁମ୍ଭର ଶରୀରୁ ।

ଏ ରୂପେ ଜନକ ଋଷି କହନ୍ତେ ତାହାଙ୍କୁ
ସନକ ଶୁଣି ଚାହିଁଲେ ଆପଣା ଦେହକୁ ।
ତାଳୁରୁ ତଳିପାଯାଏ ନିରେଖି ଚାହିଁଲେ
ଗୁଡ଼ାଏ ରୋମ ଦେଖିଣ ହସ ହସ ହେଲେ
ବୋଇଲେ ଏ ରୋମକୁ କି କହ ବେନିକ୍ଷର
ଜନକ ବୋଇଲେ ଆଉ ବହୁ ଜପ କର ।
ସନକ ବୋଇଲେ ମୁଁ ତ ନ ଦେଖିଲି କିଛି
ଏବେତୁମ୍ଭେ ଦେଖା ମୋତେ ହରି କାହିଁଅଛି
ଜନକ ବୋଇଲେ ଯାର ନାହିଁ ଜ୍ଞାନଦୃଷ୍ଟି
ସେ ଲୋକ କି ଚିହ୍ନିପାରେ ଆତ୍ମାରାମଗୋଟି
ତୁମ୍ଭଙ୍କୁ ଯେବେ ଅଜଣା ହେଲେ ଆତ୍ମାରାମ
ଦେଖ ତେବେ ଏହିକ୍ଷଣି ହେବ ସେ ବ୍ରହ୍ମଣ୍ୟ.
ଏତେ ବୋଲି ବ୍ରହ୍ମେ ଦୃଷ୍ଟି ଦ୍ୟନ୍ତେବୃଢ଼କରି
ଦୁଇଋଷି ମଧ୍ୟେ ଉଭା ହେଲେ ଆସି ହରି ।
ବେନି ଅକ୍ଷର ରୂପରେ ତାଙ୍କୁ ଦେଖାଦେଲେ
ଚିହ୍ନିଣ ଜନକ ଋଷି ଦଣ୍ଡବତ କଲେ ।
ସନକ ବୋଇଲେ ଏହି କିଏ ହେ ଜନକ
ଜନକ ବୋଇଲେ ଏହୁ ଜଗତ ନାୟକ ।
ଗୁରୁ ବେନିକ୍ଷର ବ୍ରହ୍ମ ସାକ୍ଷାତେ ଏ ଜାଣ
ବଣା ହୁଅ ତୁମ୍ଭେ ସିନା ତାଙ୍କୁ ନ ଚିହ୍ନିଣ
ସନକ ବୋଇଲେ ଯେବେ ଅଟନ୍ତି ଏ ଗୁରୁ
ଉପଦେଶ ଆମ୍ଭେ ଆଜି ନେବା ଯାଙ୍କଠାରୁ
ଜନକ ବୋଇଲେ ତୁମ୍ଭେ ଜଣାତିନି ବେଳେ
ଶୁଣିବା କି ବୋଲି ଆଜ୍ଞାଦେବେ ଆଦିମୂଳେ
ଜନକଠାରୁ ଶୁଣିଣ ସକଳ ମହର୍ଷି
ପାଦପଦ୍ମ ତଳେ ପଡ଼ି ଜଣାଇଲେ ଆସି ।
ପୁଚ୍ଛା କଲେ ତୁମ୍ଭେ ପୁଣି ଗୁରୁ ଭଗବାନ
ଆମ୍ଭଙ୍କୁ କର ହେ ଶିଷ୍ୟ କହି ତତ୍ୱଜ୍ଞାନ ।
ତୁମ୍ଭଙ୍କୁ ନ ଚିହ୍ନି ଆମ୍ଭେ ବ୍ୟର୍ଥହେଲୁ ଶ୍ରମୀ
ଋଷିଙ୍କର କଥା ଶୁଣି ହସି ଅନ୍ତର୍ଯ୍ୟାମୀ ।
ବୋଇଲେ ବୁଝିବା ଆଗ ତତ୍ୱ ଏହାଙ୍କର
ମନ ବିଡ଼ିଣ ଦେଖିବା କେତେ ହେତୁକର
ଏତେକ ବିଚାରି ବିଷ୍ଣୁ ଚାହିଁଲେ ଋଷିଙ୍କି
ବୋଇଲେ କହିବା ଶିଷ୍ୟ କଥା ପାଳିବାକି
ଜନ୍ତୁ ଯୋଡ଼ିଏ ମଣୋହି କରିବାକୁ ଦେବ
ମାରିକରି ମାଂସ ତୁମ୍ଭେ ଘେନିଆସ ଜୀବ ।
ମାରିବାବେଳେ ସଂସାରେ ନଦେଖିବେକେହି
ଆନଲୋକଦେଖିଲେ ସେ ମାଂସ ମୁଁ ନଖାଇ
ଏତେ ବୋଲି ଚିନ୍ତାକଲେ ବିଷ୍ଣୁବେନି ମୃଗ
ଗୋବିନ୍ଦ ମାୟାରୁ ଆସି ମିଳିଲେ ସେ ଆଗ

ସେ ଦୁଇ ଋଷିଙ୍କୁ ଜନ୍ତୁ ଦୁଇ ସମର୍ପିଲେ
ଯାଅ ଶୀଘ୍ର ବୋଲିଆଜ୍ଞା ଶ୍ରୀମୁଖରେ ଦେଲେ
ଶୁଣିଣ ସେ ବେନି ଋଷି ଆଜ୍ଞା ପରମାଣେ
ଜନ୍ତୁଙ୍କୁ ବଧିବେ ବୋଲି ଗଲେ ତତକ୍ଷଣେ
ସଂସାରଯାକରେ ସ୍ଥାନ ନ ପାନ୍ତେଣ ଭ୍ରମି
ସନକ ପାଞ୍ଚିଲେ ଆମ୍ଭେ ଏକାନ୍ତରେ ଗମି ।
ଏ ଜନ୍ତୁଙ୍କୁ ମାରି ମାଂସ ତାଙ୍କୁ ଆଗେଦେଲେ
ନାରାୟଣ ମୋତେ ଦୟା କରିବେକ ଭଲେ
ଏତେକ ପାଞ୍ଚି ପଶିଲେ ବନେ ମୁନିବର
ଜନକଙ୍କୁ ଛାଡ଼ିକରି ଗଲେ ଖଣ୍ଡଦୂର ।
ଏକାନ୍ତ ସ୍ଥାନ ଦେଖିଣ ଜୀବ ବଧ କଲେ
ସେ ମାଂସକୁ ଶ୍ରୀବିଷ୍ଣୁଙ୍କୁ ଆଗେନେଇଦେଲେ
ପଚାରିଲେ ପରଂବ୍ରହ୍ମ ଦେଖି ସନକଙ୍କୁ
ହେ ସନକ କେଉଁଠାରେ ନାଶିଲ ମୃଗକୁ ।
ସନକ ବୋଇଲେ ବୃକ୍ଷମୂଳେ ନାଶକଲି
କେହିମୋତେ ଦେଖିନାହିଁ ତକ୍ଷାଳେ ଆସିଲି
ଜନକଙ୍କ ସଙ୍ଗେ ଥିଲେ ମରୁଥାନ୍ତି ବୁଲି
ସେ ଅବା କାହିଁଗଲେ ମୁଁ ତାଙ୍କୁ ନଦେଖିଲି
କହୁଥିଲେ ତାହାଙ୍କର କଥା ନ ସରଇ
କେବେସେଆସିବେ ତାହାମୋତେଜଣାନାହିଁ
ଏରୂପେ ହୁଅନ୍ତେ କଥାବାର୍ତ୍ତା ବିଷ୍ଣୁ ସଙ୍ଗେ
ମିଳିଲେ ଜନକ ଋଷି ଆସି ସେହିଲାଗେ ।
ପାୟେ ପଡ଼ି ନାରାୟଣ ଛାମୁରେ ବୋଇଲେ
ଜୀବିତ କୁରଙ୍ଗୀଗୋଟି ନେଇ ଛାଡ଼ିଦେଲେ ।
ଋଷି ବୋଇଲେ ଭୋ ସ୍ୱାମୀ ଶୁଣ ଭଗବାନ
ସଂସାରଯାକ ବୁଲିଲି ନ ପାରିଲି ସ୍ଥାନ ।
ଯହିଁକି ଚାହିଁଲି ତୁମ୍ଭେ ରହିଛ ସେଠାରେ
ସ୍ଥାବରେ ଜଙ୍ଗମ କୀଟ ପତଙ୍ଗ ହୃଦରେ ।
ଗତାଗତ ପଥେ ଚନ୍ଦ୍ର ସୂର୍ଯ୍ୟ ଚାହିଁଛନ୍ତି
ତାହାଙ୍କୁ ଲୁଚାଇ ମୁହିଁ କିରୂପେ ମାରନ୍ତି ।
ତରୁ ତୃଣ ମୂଳରେ ମୁଁ ମାରନ୍ତି ବା ନେଇ
ସେହି ତ ସାକ୍ଷାତେ ଆତ୍ମା ପଲକେ ଦେଖଇ
ତଥାପି ତ ପୂର୍ବ ତୃଣ ଆଛନ ସ୍ଥାନରେ
ମାଛି ଉଡୁଥାନ୍ତି ତହିଁ ଦେଖିବେ ମାଇଲେ ।
ପୃଥ୍ୱୀ ଆପ ତେଜ ଆଉ ବାୟୁ ଯେ ଆକାଶ
ଅଛିଦ୍ରରେ ପୂରିଅଛି ସବୁ ପୀତବାସ ।
ଏଣୁକରି ମୋତେ ସ୍ଥାନ ନ ମିଳିଲା କାହିଁ
ଅଇଲି ତେଣୁ ଛାମୁକୁ ଜନ୍ତୁଗୋଟି ନେଇ ।
ଏ ଜୀବ ମାରନ୍ତେ ଯେବେ ପ୍ରଭୁତୁମ୍ଭବୋଲେ
ଶଙ୍ଖ ଚକ୍ର ଦେଖିଲି ତା ହୃଦେ ଦିଶୁଥିଲେ

ଏମନ୍ତ ବୋଲିଣ ତହିଁ କହନ୍ତେ ଜନକ
ତାହା ଶୁଣି ଅଧୋମୁଖେ ବସିଲେ ସନକ ।
ପାଞ୍ଚିଲେ ବିଷ୍ଣୁଙ୍କୁ ଆସି କହିଲି ମୁଁ ମିଥ୍ୟା
ବୃକ୍ଷେ ତ ଦେଖିଅଛନ୍ତି ମୋର ଜୀବହତ୍ୟା
ଯେବେ ମୁହିଁ ନିତ୍ୟ ସ୍ନାନ କରେ ତୀର୍ଥ ବ୍ରତ
ନୋହିଲା ତ ତତ୍ତ୍ୱଜ୍ଞାନ ସବୁ ହେଲା ବ୍ୟର୍ଥ ।
ନ ଜାଣି ମୁହିଁ ଜନକ ସଙ୍ଗେ କଲି ବାଦ
ଧନ୍ୟ ଏ ମହାପ୍ରଭୁଙ୍କ ମହିମା ଅଗାଧ ।
ଜନକ ଋଷିଠାରୁ କେ ନାହିଁ ଭାଗ୍ୟବନ୍ତ
ଏଡ଼େ ବ୍ରହ୍ମାଙ୍କୁ ଚିହ୍ନାଇ କହିଲେ ଆମ୍ଭନ୍ତ ।
କେଡ଼େ ଜ୍ଞାନଦୃଷ୍ଟି ଏହୁ ଜନକର ଆଖି
କାହୁଁ ପାଇଲେ ସେ ତତ୍ତ୍ୱ ପଚାରିବା ଦେଖି
ଏହା ଭାବିଣ ସନକ ପୁଚ୍ଛେ ଜନକଙ୍କୁ
ବୋଇଲେ କେ କହିଲା ଏ ଜ୍ଞାନ ଆପଣଙ୍କୁ
ଜନକ ବୋଲେ ସନକ ଶୁଣ ତୁମ୍ଭେ ଯେବେ
ଏ ତତ୍ତ୍ୱ ବିଷ୍ଣୁ ଆମ୍ଭଙ୍କୁ କହିଥିଲେ ଗର୍ଭେ ।
ଜନନୀ ଜଠରେ ଶୁଣି ସବୁ ହେତୁ କଲୁ
ସେହି ହେତୁ ଧରି ଅଟେ ଗର୍ଭୁ ଜନମିଲୁ ।
ତୁମ୍ଭେ ମଧ ସେହି ଜ୍ଞାନ ଶୁଣିଥିଲ ଗର୍ଭେ
ପ୍ରସବ କାଳେ ପାସୋରି ପଡ଼ିଲ ଏ ଭବେ ।
ହେତୁକରି ଖସିଥାନ୍ତ ଭବମୁଖେ ଯେବେ
କାହିଁକି ନ ଥାନ୍ତା ସେହି ଦେହଯାକତେବେ
ପୃଥିବୀ ଉପରେ ପଡ଼ି ଲେଉଟି କୁହାଟି
ଜ୍ଞାନ ନ ପାଇଲ ଲେମ୍ଭୁରସ ପାଇଲଟି ।
ଆପଣଙ୍କୁ ଏକା ଆମ୍ଭେ ନ ବୋଲୁ ଯେଏହା
ସମସ୍ତେ ବୋଲନ୍ତି ଜନ୍ମ ହୋଇ କୁଆଁ କୁଆଁ
ଆପଣ ଅଟନ୍ତି ପୁଣି ସାକ୍ଷାତେ ବ୍ରହ୍ମଣ୍ୟ
ବାଳକର ଭାବ ବହି ପାଶୋରିଛ ଜ୍ଞାନ ।
ଏବେ ଆସି ଶ୍ରୀକୃଷ୍ଣଙ୍କୁ କରିବାକ ସେବା
କହିଦେବେ ଜ୍ଞାତ ତହିଁ ଯେଝାପୁରେ ଯିବା
ଏମନ୍ତ ମନେ ବିଚାରି କରି ଋଷି ଦୁଇ
ଶ୍ରୀବ୍ରାହ୍ମଣ୍ୟ ପୁରୁଷଙ୍କୁ ଜଣାଇଲେ ଯାଇ ।
ବୋଇଲେ ଆମ୍ଭଙ୍କୁ ସ୍ୱାମୀ କହ ତତ୍ତ୍ୱଜ୍ଞାନ
କି ରୂପେ ଗର୍ଭୁ ଜନ୍ମିଣ ନ ଭୁଲିବୁ ନାମ ।
ଗୋବିନ୍ଦ ବୋଇଲେ ଯାଉ ଏସମୟଯେବେ
କିଛିଦିନ ଗଲେ ଯିବ ବୈକୁଣ୍ଠକୁ ତୁମ୍ଭେ ।
ସେହିଠାରେ ତତ୍ତ୍ୱଜ୍ଞାନ କହିବା ତୁମ୍ଭଙ୍କୁ
ଏତେ କହି ନାରାୟଣ ଗଲେ ବୈକୁଣ୍ଠକୁ ।
ଜନକ ସନକ ମଧ ଗଲେ ଆଜ୍ଞା ପାଇ
ଶୁଣ ଆହେ ଶୁକମୁନି ଅଗସ୍ତି ଯେ କହି ।

ତୁମ୍ଭେ ଯେ ବୋଇଲ ମୋତେ ସବୁ ଋଷିସରି
ଯାହାର ଯେ ଗୁଣ ତାକୁ ଘେନି ବଡ଼କରି ।
ସୁନା ଗୁଞ୍ଜାଫଳ ଦୁହେଁ ଦେଲେ ସରିହୋନ୍ତି
ମୂଲ୍ୟ କଲେ ସେ ଦୁହେଁ ତ ସମାନ ନୁହନ୍ତି ।
ପର୍ଶୁରାମ ପ୍ରାୟ ଭେକ ବହି ସେ ବୁଲିବ
ପଚାରିଲେ ଭେଦଗୋଟି କହି ନ ପାରିବ ।
ସାଧୁଙ୍କ ତୁଲେ ତେବେ ସେ ହୋଇବକିପରି
ଏଣୁକରି ଗୁଣ ଚିହ୍ନିଥିବ ଗୁରୁକରି ।

**ଶ୍ଳୋକ**

ବିପ୍ରୋ ବିଧ୍ୱସ୍ତକାମା ଜିତପ୍ରକୃତିରିପୁ
ନିର୍ମଳାଙ୍ଗୋ ଗରିଷ୍ଠୋ,
ଭକ୍ତିଃ କୃଷ୍ଣାଙ୍ଘ୍ରପଙ୍କେରୁହଯୁଗତଳେ
ନିବ୍ରଜଃ ସତ୍ୟସନ୍ଧଃ ।
ବତ୍ତା ବେଦାଗମାନାଂ ସକଳଗୁଣଯୁତୋ
ଦୈଶିକୋ ଧର୍ମଶୀଳେ
ମନ୍ତ୍ରୀ ଜ୍ଞାନୀ ସବିଜ୍ଞଃ ସୁମଧୁର ବଚନଃ
ସାଧୁ ସଙ୍ଗୋହି ଧୀରଃ ॥

**ଗୀତ**

ଶୁଣ ହେ ଶୁକ ଯାହାକୁ କରିବଟି ଗୁରୁ
ଗୁଣ ବୁଝି କଲେ ତରି ସଂସାର ଜଳରୁ ।
ବିଷ୍ଣୁଭକ୍ତ ଯୋଗାଭ୍ୟାସୀ ଉତ୍ତମ ବ୍ରାହ୍ମଣ
କାମନା ପ୍ରକୃତି ହୃଦୁଁ ତେଜିଥିବ ପୁଣ ।
ନିର୍ମଳଶରୀର ସର୍ବ ବିଚାରେ ଗରିଷ୍ଠ
ହରିପାଦେ ଭକ୍ତିଥିବ ପୁଣି ଜ୍ଞାନନିଷ୍ଠ
ରାଗ ହିଂସା ଅହଙ୍କାରେ କ୍ରୋଧ ତ୍ୟାଗକରି
କହିବା ପାଣ୍ଡିତ୍ୟ କଥା ପୁରାଣ ବିଚାରି ।
ଶାନ୍ତଶୀଳ ହୋଇ କର୍ମ କରିବ ସସ୍ଥଙ୍ଗେ
ବସିଥିଲେ ବିଦ୍ୟାବନ୍ତ ହୋଇ ସାଧୁସଙ୍ଗେ ।
ପ୍ରାଣୀଙ୍କ ମନ ଘେନିବ ମିଷ୍ଟକଥା କହି
ଦୈଶିକ ଜନ ହୋଇବ କୁଳଶୀଳେ ଥାଇ
ଅଧ୍ୟୟନ ଅଧ୍ୟାପନ ଯାଜନ ଯଜନ
କରୁଥିବ ପ୍ରତିଦିନ ଦାନ ହେ ଗ୍ରହଣ ।
ଏମନ୍ତ ଗୁରୁ ଚିହ୍ନି ଯେ କରେ ପାଦପୂଜା
ସେ ଲୋକକୁ ସଂସାରେଟି ନ ଉପୁଜେଲଜ୍ଜା

**ଶ୍ଳୋକ**

ଇଦୃଶଂ ଲକ୍ଷଣଂ ଯସ୍ୟ ସଗୁରୁଃପରମେମତ
କୁଳବର୍ଣ୍ଣ ନାନାଜାତି ନକୁର୍ଯ୍ୟାତଂକଦାଚନ

**ଗୀତ**

ଯେଉଁ ପୁରୁଷ ଅଙ୍ଗରେ ଏ ଲକ୍ଷଣ ଥାଇ
କରିବ ତାହାକୁ ଗୁରୁ ପୁରାଣରେ କହି ।
କୁଳ ବର୍ଣ୍ଣ ଦୁଇ ଯାର ନ ଜାଣିବ କିଛି
ତହୁଁ ମନ୍ତ୍ର ନ ଘେନିବ ଶୁଣ ବ୍ୟାସ ବଚ୍ଛି
ଜନକ ଋଷିଙ୍କୁ ଯାଇ ତେଣୁ କରି ଗୁରୁ
କୁଳଶୀଳ ବନ୍ତ ଗୃହୀ ଶ୍ରେଷ୍ଠ ସବୁଠାରୁ ।
ଶୁଣିଲେ ଏମନ୍ତ ଗୁରୁମୁଖୁଁ ମନ୍ତ୍ରସିଦ୍ଧି
ପୁରାଣର ବାକ୍ୟ ଏଥୁ କହିଲୁ ଯେ ବିଧି ।
ଶୁକ ବୋଇଲେ ଏମନ୍ତ ଜନ ଯେବେ ସେହୁ
କାହିଁ ଗୃହ ତାହାଙ୍କର କହିଦେବା ହେଉ ।
ଅଗସ୍ତି ବୋଇଲେ ଯାଅ ମିଥିଳା ଭୁବନେ
ଶୁକ ବୋଇଲେ ହେ ଚାଲଯିବା ସେହିସ୍ଥାନେ
ଅଗସ୍ତି ଋଷି ବୋଇଲେ ଚାର ଆଗେ ଯାଉ
ତାହାଙ୍କ ସମୟ ବୁଝି ଆମ୍ଭ ଆଗେ କହୁ ।
ସମସ୍ତ ଋଷି ଏ ମିଶି ଯିବା ତାଙ୍କ ପୁର
ଏତେ ବୋଲିଣ ଅଗସ୍ତି ପେଶିଲେକ ଚାର
ବୋଇଲେ କହିବୁ ଯାଇ ଶୁକମନ୍ତ୍ର ପାଇଁ
ଆସିବେ ଜାଗ୍ରତ ତୁମ୍ଭେଥିବହେ ଗୋସାଇଁ ।
ସେହିରୂପେ ଯାଇ ତାଙ୍କୁ କହିଲାକ ଚାର
ଜନକ ଆଶ୍ଚର୍ଯ୍ୟ ହେଲେ ପାଇଣ ଖବର ।
ବୋଇଲେ ଶୁକଦେବ ତ ଜନ୍ମିଛି ବ୍ରହ୍ମରୁ
ଅଗସ୍ତି ଯେବେ କହିଲେ କରିବାକୁ ଗୁରୁ ।
ମୋହର ଦେହେ ବସନ୍ତୁ ଆସି ନାରାୟଣ ।
ସେ ପ୍ରଭୁ ମହିମା ସିନା କହିବଇଁ ପୁଣ ।
ଏମନ୍ତ ବୋଲି ମନରେ ପାଞ୍ଚନ୍ତେ ମହର୍ଷି
ଜଗତ କରତା ଦେହେ ରହିଲେକ ଆସି ।
ବସନ୍ତେ ଫୁଟି ଦିଶିଲା ଦେହେ ବିଷ୍ଣୁ ଚିହ୍ନ
ଋଷିମାନେ ସେ ରୂପକୁ ଚାହିଁ କଲେ ଧ୍ୟାନ
ଶୁକଦେବଙ୍କ ବିଚାର ଜାଣିଲେ ଜନକ
ଯାଗ ଆବର ବିଧିକି ହୋଇଲେ ଯାଜ୍ଞିକ ।
ପାଞ୍ଚିଲେ ଶୁକଦେବ ତ ଅଟେ ବ୍ରହ୍ମଦେହୀ
ଏକମାତ୍ର ଗୁରୁସେବା କରିନାହିଁ ସେହି ।
ଯାଅ ଆହେ ଚାର ତୁମ୍ଭେ ଅଗସ୍ତିଙ୍କୁ କହ
ସଙ୍ଗେ ଘେନି ଆସନ୍ତୁ ହେ ବ୍ୟାସଋଷି ପୁଅ
ଏତେକହି ମହାମୁନି ଆରମ୍ଭିଲେ ଯାଗ
ତିଳ ତଣ୍ଡୁଳ ସମିଧ ଘେନି ହବିର୍ଭାଗ ।
ଜୀବନ୍ୟାସ କରିଦେଲେ ଅନଳରେ ଘୃତ
ଯାଗକୁଣ୍ଡ ପାଶେ କଲେ ଚନ୍ଦନର ଖ୍ୟାତ ।
ପ୍ରଥମରୁ ମହାମନ୍ତ୍ର ଉଚ୍ଚାରଣ କରି
ବସିଲେ ଯାଗ ପାଶରେ ପତ୍ନୀ ସଙ୍ଗେ ଧରି ।
ଏଥୁ ଅନନ୍ତରେ ତହୁଁ ଯାଇ ଚାରଜନେ
କହନ୍ତେ ସକଳ କଥା ଶୁଣି ଋଷିମାନେ ।

ତହୁଁ ସର୍ବେ ସଜହୋଇ ଶୁକ ସହିତରେ
ମିଥିଳାକୁ ବାହାରିଲେ ଶୁଭ ମୁହୂର୍ତ୍ତରେ ।
ଅଗସ୍ତିଙ୍କ ସହିତରେ ସପ୍ତ ମୁନିଯାକ
ଉତ୍ତମ ସେ ଗଉତମ ବଶିଷ୍ଠ ବାଲ୍ମୀକ ।
କଶ୍ୟପ ଯେ ଭରଦ୍ୱାଜ ଦୁର୍ବାସା ଜୈମିନି
ଚୈତନ୍ୟ ପୁଲସ୍ତ୍ୟ ପୁଣି ମାରକଣ୍ଡ ମୁନି ।
କୋକିଳ ପୁଙ୍ଗ ଭାଣ୍ଡକ ବିଭାଣ୍ଡକ ଋଷି
ଏ ଆଦି ଯେତେକ ମୁନି ସର୍ବେ ଗଲେ ମିଶି
ବାଜଇ ମୃଦଙ୍ଗ ତାଳ ବଂଶୀ ଆଗେ ଆଗେ
ଦେବତାଏ ପୁଷ୍ପବୃଷ୍ଟି କଲେ ଶୂନ୍ୟମାର୍ଗେ
ବଜାଏ କେ ବେଣୁ ବୀଣା ସପ୍ତସ୍ୱର ଦଣ୍ଡ
ହରିବୋଲ ଶବଦରେ ପୂରଇ ବ୍ରହ୍ମାଣ୍ଡ ।
ମନ୍ତ୍ର ଉପଦେଶ ପାଇଁ ଦ୍ରବ୍ୟ ଲୋଡ଼ା ଯେତେ
ତାହା ସବୁ ହସ୍ତେ ଧରି ଚଳନ୍ତି ସମସ୍ତେ ।
ମିଥିଳା ଭୁବନେ ଯାଇ ପ୍ରବେଶ ହୋଇଲେ
ଜନକ ମହର୍ଷି ଯହିଁ ଯାଗ କରୁଥିଲେ ।
ଶିଷ୍ୟମାନଙ୍କୁ ସଙ୍ଗରେ ଘେନି ମହାମୁନି
ସ୍ରୁବେ ସ୍ରୁବେ ଗୁଆଘୃତ ଢ଼ାଳନ୍ତି ବ୍ରହ୍ମାଗ୍ନି
ବିଧିମମତେ ଯାଗରେ ସେ ମନ୍ତ୍ର ଉଚ୍ଚାରନ୍ତି
ପ୍ରିୟା ତାଙ୍କ ବାମଜାନୁ ଉପରେ ଅଛନ୍ତି ।
ଦକ୍ଷିଣ ପାଦକୁ ମୁନି ଯାଗକୁଣ୍ଡେ ଭରି
ସ୍ତମ୍ଭନ ମୋହନ ବାକ୍ୟେ ମନ୍ତ୍ରମୂର୍ତ୍ତି କରି ।
ଚନ୍ଦନ କୁଣ୍ଡରେ ବାମ ଚରଣକୁ ପୋତି
ବସିଛନ୍ତି ଶିଷ୍ୟମାନେ ଦିଅନ୍ତି ଆହୁତି ।
ଏସନ ସମୟେ ଋଷି ଅଗସ୍ତି ପ୍ରବେଶ
ସକଳ ମୁନି ସଙ୍ଗରେ ଘେନି ବ୍ୟାସଶିଷ୍ୟ ।
ଦେଖିଲେକ ଖଣ୍ଡେଦୂର ଜନକ ଆଚାର
ଚାହିଁଣ ଶୁକ କମ୍ପନ୍ତି ହୋଇ ଥରହର ।
ଝାଳ ଜରଜର ହୋଇ ବହେ ଶୁକଗାତ୍ରେ
ଅଣ ଉପଦେଶ ଭାରା କଳମଷ ଯେତେ ।
ଜନକ ପାଶେ ମିଳିଲେ ଆସି ଋଷିଯାକ
ଆସନମାନ ସବୁକୁ ଦେଲେ ସେ ଜନକ ।
ଆସନ ପାଇ ବସିଲେ ସେ ସମସ୍ତ ଋଷି
ଜନକ ଋଷି ପୁଚ୍ଛନ୍ତି ଅଗସ୍ତିଙ୍କୁ ହସି ।
ବୋଇଲେ ଏଥିରେ ଯୋଗ ଆପଣନକଲେ
ଶୁକ କାହିଁକି ଆସନ୍ତେ ମୋର ଯଜ୍ଞଶାଳେ ।
ଆମ୍ଭେ ତ ଜାଣି ତାଙ୍କୁ ସେ କେବଳବ୍ରହ୍ମଚାରୀ
ତୁମ୍ଭେ ସିନା ଲଗାଇଲଲୋକାଚାର ଚେଷ୍ଟା
ଏ ଲୌକିକ କଥାହେଲେ ଗୋବିନ୍ଦର ଯନ୍ତ୍ର
ତେବେ ଆସନ୍ତୁ ଶୁକ ଘେନନ୍ତୁ ମହାମନ୍ତ୍ର ।

ଜନକ ମୁଖୁଁ ଅଗସ୍ତି ଏସନକ ଶୁଣି
ବୋଇଲେ ଆପଣ ମହାମାନ୍ୟ ଅଟ ପୁଣି ।
ତୁମ୍ଭେ ତ ସହସ୍ର ଗୁଣେ ଆମ୍ଭଠାରୁ ଉଚ୍ଚ
ଶ୍ରୀବିଷ୍ଣୁ ମହିମା ଯେଣୁ କର୍ଣ୍ଣେ ଶୁଣାଉଛ ।
ସାକ୍ଷାତେ ବ୍ରହ୍ମାବୋଲି ଯେ କରିଲେ ଆପଣ
ସେଏକାହୋଇଥିଲେ କେସଙ୍ଖୋଳନ୍ତେକୋଣ
ବ୍ରହ୍ମା ଯେବେ ହୋଇଅଛି ଆସୁ ଶୁକଦେବ
ତେଣୁଟି ତାହାଙ୍କୁ ତୁମ୍ଭେ ନିଜେ ମନ୍ତ୍ର ଦେବ ।
ମନ୍ତ୍ରକୁ ଘେନିଲେ ଶୁକ ତୁମ୍ଭଙ୍କୁ ପୂଜିବେ
ସାକ୍ଷାତରେ ବ୍ରହ୍ମଦ୍ୱିଜ ବୋଲିଣ ବୋଲିବେ
ଜନକ ବୋଇଲେ ତେବେ ବସନ୍ତୁ ସେ ଆସି
ବୋଇଲେ ଅଗସ୍ତି ଯାଅ ଆଜ୍ଞାଦେଲେଋଷି
ଶୁଣି ଶୁକ ଚାହିଁ ଦେଲେ ଜନକ ଋଷିଙ୍କୁ
ବିଷ୍ଣୁଙ୍କର ତେଜ ଦେଖି ତାହାଙ୍କ ରୂପକୁ ।
ବୋଇଲେ ଏଡ଼େ କରଣି କରିଛନ୍ତି ଋଷି
ବୁଝିବା ଏହାଙ୍କ ମନ କାହିଁ ଅଛି ପଶି ।
ଭାରିଯା ଘେନି ଅଛନ୍ତି ଜାନୁର ଉପରେ
ବାମହସ୍ତ ଦେଇଛନ୍ତି ତାର କନ୍ଧପରେ ।
ଦକ୍ଷିଣ କରରେ ମାଳା ଗଡ଼ାଉ ଅଛନ୍ତି
ବିଷୟ ରଜ୍ଜୁରେ ପୁଣି ବନ୍ଧା ହୋଇଛନ୍ତି ।
ଅଛି କି ଭଜନେ ମନ ରମଣୀରେ ମନ
କିବା ବିଷୟରେ ଅଛି ଦେଖିବାଚୈତନ୍ୟ
ଏତେ ବୋଲି ଶୁକଦେବ ଆପଣା ମନକୁ
ହୃଦରୁ ବାହାର କରି ତିଆରିଲେ ତାକୁ ।
ଆମ୍ଭେ ଅଛୁ ତୁ ଜନକ ହୃଦେ ଯାଇ ପଶ
କାହିଁ ତାଙ୍କ ମନ ଅଛି ଦେଖି ବେଗେ ଆସ
ଏତେ କହିଣ ମନକୁ ପଠିଆଇ ଦେଲେ
ସେ ମନ ଜନକ ଦେହେ ଯାଇଣ ପଶିଲେ ।
ଦେଖିଲେ ଶ୍ରୀ ଶଙ୍ଖଚକ୍ର ଗଦା ପଦ୍ମ ଧାରୀ
ଜନକ ହୃଦ ମଧ୍ୟରେ ଛନ୍ତି ବିଜେକରି ।
ଶରୀର ଭିତରେ ପଶି ସବୁ ଖୋଜି ଖୋଜି
ଦେଖିଲେ ଜନକ ଚିତ୍ତ କାହିଁ ନାହିଁ ମଜ୍ଜି ।
ହେତୁ ଦେଇ ରଖିଛନ୍ତି ଚରଣାରବିନ୍ଦେ
ପରମହଂସେ ନିମଜ୍ଜିଅଛନ୍ତି ଆନନ୍ଦେ ।
ଶ୍ରୀପାଦପଦ୍ମରୁ ଗଳେ ଯେଉଁ ମକରନ୍ଦ
ପିବନ୍ତି ଜନକଋଷି ଭଜି ପୂର୍ଣ୍ଣାନନ୍ଦ ।
ଏରୂପେ ଦେଖିଣ ମନ ଶୁକ ପାଦେ ଆସି
କହିଲା ଜନକଋଷି କଥା ହୃଦେ ବସି ।
ତାହାଶୁଣି ଶୁକମୁନି ଆଶ୍ଚର୍ଯ୍ୟ ହୋଇଲେ
କେଡ଼େ ପୁରୁଷ ଏବୋଲିହୃଦୟେପାଞ୍ଚିଲେ

ଏଡ଼େ ନୋହିଲେ ଅଗସ୍ତି ମୁନିମୋତେଆଣି
କିରୂପେ କରାନ୍ତେ ଶିଷ୍ୟ ନଥିଲେ କରଣି ।
ପ୍ରମାଣ ଏହି ଜନକ ଅଟନ୍ତି ବ୍ରହ୍ମଣ୍ୟ
ନୋହିଲେ କି ଦେହେଦିଶେ ଶଙ୍ଖଚକ୍ର ଚିହ୍ନ ।
ଶିଷ୍ୟ ହୋଇଆମ୍ଭେ ଗୁରୁ କରିବା ଏହାଙ୍କୁ
ଏତେ ବୋଲି ଶରୀରରେ ରଖିଲେ ମନକୁ ।
ଆବର ଯେତେକ ଋଷି ରହିଥିଲେ ତହିଁ
ଶୁକଦେବଙ୍କ ବିଚାର କେହି ଜାଣିନାହିଁ ।
ଏ ହୃଦରୁ ମନ ଗଲା ସେ ହୃଦେ ପଶିଲା
ସେ ହୃଦୟଯାକ ଖୋଜି ଏ ହୃଦେ ଆସିଲା ।
ତେବେ ଯାଇ ଶୁକଦେବ ଦଣ୍ଡବତ କଲେ
ମନରୁ ସଂଶୟ ଗଲା ଗୁରୁଙ୍କୁ ଚିହ୍ନିଲେ ।
ସେ ଗୁରୁଙ୍କ ପାଦତଳେ ବସି ବ୍ୟାସବସି
ଚରଣ ବେନି ଧୋଇଣ ଶିରେଦେଲେ ସିଞ୍ଚି ।
ଗୁରୁ ମୁଖରୁ ଉଚ୍ଛିଷ୍ଟ ମାଗି ସେବାକଲେ
ଚରଣ ବେନି ଧରିଣ ମନ୍ତ୍ର ପଚାରିଲେ ।
ଜନକ ବୋଇଲେ ତୁମ୍ଭେ ପୂର୍ବମୁଖେ ବସ
ତୁଳସୀ ଗଣ୍ଡୁଷେ ଦେବା କରଆଗେ ଗ୍ରାସ ।
ବିଷ୍ଣୁ ଭଜିଣ ଗର୍ଭକୁ ତାହା ବେଗେ କ୍ଷେପ
ଏ ଜଳ ତୁଳସୀ ଜାଣ ପ୍ରତ୍ୟକ୍ଷେ ସ୍ୱରୂପ ।
ଦକ୍ଷିଣ କର୍ଣ୍ଣରେ ମନ୍ତ୍ର କହି ସିନା ପୁଣି
ଏତେକ କହି ସିଞ୍ଚିଲେ ତୁଳସୀର ପାଣି ।
ନାସା ଅଗ୍ର କେଶଯାଏ ଠିଆଚିତା ଦେଲେ
ଦ୍ୱାଦଶ ଦଣ୍ଡବତ ସେ ପୁଣି କରାଇଲେ ।
ପୁନରପି ଏକାଦଶ ତିଳକ କାଟିଲେ
ନାସା ତିଳକ ମିଶିଣ ଦ୍ୱାଦଶ ହୋଇଲେ ।
ଜିହ୍ୱା ସଫା କରାଇଲେ ସ୍ୱର୍ଣ୍ଣ ଖଡ଼ିକାରେ
ତୁଳସୀପତ୍ର ଗୋଟିଏ ଦେଲେ କର୍ଣ୍ଣମୂଳେ ।
ବୋଇଲେ ପାଦପଦ୍ମକୁ ଚିହ୍ନିବଟି ଧରି
କହିଲା ମାତ୍ରେ ଦେଖିବ ଶରୀର ତୁମ୍ଭରି ।
ରହିଛି ସେ ପାଦପଦ୍ମ ଛତ୍ର ପ୍ରାୟ ହୋଇ
ଗୁରୁଙ୍କରି ନ ଶୁଣିଲେ କାରେ ଜଣାନୋହି ।
ଶୁଣିଣ ଶୁକ ବସିଲେ ବେନି ପାଦତଳେ
କର୍ଣ୍ଣମୂଳେ ହରି ରସ ଜନକ କହିଲେ ।
ବତିଶ ଅକ୍ଷର ଶୁକ ସେ ମନ୍ତ୍ର ଶୁଣିଲେ
ଗୁରୁଙ୍କ ବଚନେ ତହିଁ ତ୍ରିବାର ପଢ଼ିଲେ ।
ବଜାଇଲେ ସର୍ବଋଷି ଧରି ରାମତାଳି
ହରିବୋଲ ନାଦେ ମହୀ ପଡ଼ଇ ଉଛୁଳି ।
ସ୍ୱର୍ଗେଥାଇ ଦେବତାଏ କଲେ ଜୟ ଜୟ
ଆତ୍ମାରାମରେ ଜଡ଼ିତ ହେଲା ଶୁକକାୟ ।
ଷଡ଼ାକ୍ଷର ମହାମନ୍ତ୍ର ଶୁଣେ ଗୁରୁମୁଖେ
ହ-କାର ବର୍ଣ୍ଣ ଅଟଇ ହିଙ୍ଗୁଳା ପ୍ରତ୍ୟକ୍ଷେ ।
ର-କାର ଶୋଣିତ ବର୍ଣ୍ଣ ରା-ଟି ରତ୍ନମୟ
ମ-କାର ଅକ୍ଷର ଅଟେ ନୀଳକଣ୍ଠ କାୟ ।
କୃ-କାରଟି କୃଷ୍ଣ ଷ-ଟି ଶୁକ୍ଳବର୍ଣ୍ଣ ଅଟେ
ହ-କାର ଅକ୍ଷର ଗୋଟି ତ୍ରିଲିଙ୍ଗେ ପ୍ରକଟେ ।
ରେ-କାର ଅକ୍ଷରଗୋଟି ପୁରୁଷେ କହଇ
ରା କାର ଅକ୍ଷର ଜାଣ ଶକତି ବୋଲାଇ ।
ମ-କାର ଅକ୍ଷର ଅଟେ ପୁରୁଷ ସାକ୍ଷାତେ
କୃ-କାର ଅକ୍ଷର ଗୋଟି ସ୍ତ୍ରୀଠାରେ ପ୍ରବର୍ତ୍ତେ ।
ଷ-କାର ଅକ୍ଷର ପୁଣି ପ୍ରତ୍ୟକ୍ଷେ ପୁରୁଷ
ଆତ୍ମାରୂପେ ପରକାଶି ଅଛନ୍ତି ଅଶେଷ ।
ଏ ଷଡ଼ାକ୍ଷର ମହିମା ନ ଜାଣେ ଯେ ଗୁରୁ
ବିଫଳ ହୁଅଇ ମନ୍ତ୍ର ଘେନିଲେ ତାଠାରୁ ।
ମନ୍ତ୍ର ମହିମା ନ ଜାଣି ଶିଷ୍ୟ ଯେ କରନ୍ତି
ସେ ଗୁରୁଗୋସାଇଁକି ଟ ନାହିଁ ଗତିମୁକ୍ତି ।
ତାହାଶୁଣି ଶୁକଦେବ ହୋଇଲେ ସନ୍ତୋଷ
ଫିଟିଲା ମନରୁ ଭ୍ରାନ୍ତି ପାଇ ଉପଦେଶ ।
ଦ୍ୱାଦଶ ଦଣ୍ଡବତରେ ଗୁରୁ ମନ ମୋହି
ଦକ୍ଷିଣା ସ୍ୱରୂପେ ଦେଲେ ଲକ୍ଷେ ସ୍ୱର୍ଣ୍ଣ ନେଇ
ଧନ ବସ୍ତ୍ର ଅଳଙ୍କାର-କୁଣ୍ଡଳ ସହିତେ
ଦକ୍ଷିଣା ପାଇ ଜନକ ତୁଷ୍ଟ ହେଲେ ଚିତ୍ତେ ।
ଶୁକଦେବଙ୍କୁ ମେଲାଣି ଦେଲେ ଯାଅ ବୋଲି
ଆଜ୍ଞାପାଇ ଶୁକଦେବ ଗଲେ ତହୁଁ ଚାଲି ।
ସେହି ଶୁକଦେବଙ୍କର ଚରଣ ସରୋଜ
ଅନବରତରେ ଭଜେ ପୀତାମ୍ବର ଦ୍ୱିଜ ।



## ପରୀକ୍ଷିତ ନିକଟରେ ଶୁକଦେବଙ୍କ ପ୍ରବେଶ

ନୈମିଷା ଅରଣ୍ୟେ ଯାଇ ହେଲେ ବ୍ୟାସଚାଟ
ଶୁଣ ହେ ପରୀକ୍ଷରାଜା କହନ୍ତି ବଶିଷ୍ଠ ।
ସେ ଶୁକଦେବଙ୍କଠାରୁ ଶୁଣ ହେ ପୁରାଣ
ବସିବୁ ସ୍ୱର୍ଗରେ ଖଣ୍ଡି ଅକାଳ ମରଣ ।
ଶୁଣି ପୁଲକିତ ଅଙ୍ଗ ହୋଇ ନୃପବର
ବଶିଷ୍ଠଙ୍କୁ ନମସ୍କାର ହେଲେ ଶତେବାର ।
ବହୁତ ବିନୟ ହୋଇ ପଚାରେ ନୃପସାଇଁ
କିରୂପେ ତାହାଙ୍କ ଭେଟ ପାଇବଇଁ ମୁହିଁ ।
ସେ କାହିଁ ଅଛନ୍ତି ଏବେ ଲଭିବି ମରଣ
ସତେ କିବା ଦେଖିବି ମୁଁ ଶୁକଙ୍କ ଚରଣ ।

ମୋର ଛାର ହୀନ ପାଇଁ କରିବେ କି ବିଜେ
ବ୍ରହ୍ମରୁ ଜନ୍ମହୋଇ ସେ ସର୍ବ ମନ ରଞ୍ଜେ ।
ତାଙ୍କୁ ମୋହ କରିବାକୁ କେତେସ୍ଥାନ ନାହିଁ
ଆମ୍ଭ ପ୍ରାୟ କେତେଛନ୍ତି ଖର୍ବ ଖର୍ବ ହୋଇ
ତାହାଙ୍କୁ ଅନୁସରି ମୁଁ ଦିନେ ପାଇଛି କି
ଅଭକ୍ତିରେ ସେବାକଲେ ଆସିବେ କାହିଁକି ।
ବଶିଷ୍ଠ ବୋଇଲେ ଏହା ତୁମ୍ଭେ ନ ବିଚାର
କାହାଠାରୁ ଶତ୍ରୁ ମିତ୍ର ନାହିଁଟି ତାଙ୍କର ।
ଶରଣଜନଙ୍କୁ ସେହି ଦୂରରୁ ରଖନ୍ତି
ଅଶରଣ ଲୋକଙ୍କୁ ସେ ବେଗେ ସଙ୍ଖୋଳନ୍ତି ।
ଘେନନ୍ତି ଯାବତ ଆଜ୍ଞା ସମ ଜ୍ଞାନ କରି
ଶୂନ୍ୟେ ଯେହ୍ନେ ସମାନରେ ବରଷଇ ବାରି ।
ତେମନ୍ତ ମହିମା ସତ୍ୟ ପୁରୁଷର ଚିତ୍ତ
ତାଙ୍କଠାରୁ ଶୁଣ ତୁ ପୁରାଣ ପରୀକ୍ଷିତ ।
ଏହିକ୍ଷଣି ଆସିବେ ତୁ ସୁମରିବୁ ଯେବେ
ଜପାମାଳାଟିଏ ଘେନି ବସ ଦେବା ଆମ୍ଭେ ।
ମିଳିବେ ତକ୍ଷଣେ ଶୁକ ଆସି ଯୋଗମାର୍ଗେ
ବିଶେଷ କରି କହିବେ ପୁରାଣ ତୋ ଆଗେ ।
ଏତେକହି ବଶିଷ୍ଠ ଯେ ଦେଲେ ଜପାମାଳି
ବସିଲେ ପରୀକ୍ଷ ରାଜା ଶୁଦ୍ଧମନେ ଭାଳି ।
ଶୁକଦେବ ନାମେ ମନ୍ତ୍ର କଲେ ଉଚ୍ଚାରଣ
ଟଳିଲା ଆସନ ଶୁକ ଜାଣିଲେ ତକ୍ଷଣ ।
ଚିନ୍ତାକଲା ସୋମବଂଶ ରାଜା ହୃଦଗତେ
ଲକ୍ଷ ବାଳଖିଲ୍ୟା ଘେନିଗଲେ ଇନ୍ଦ୍ରପ୍ରସ୍ଥେ ।
ବାଳିଖିଲ୍ୟାଙ୍କେ ସହସ୍ର ଛନ୍ତି ଶିଷ୍ୟଗଣ
ଶିଷ୍ୟଙ୍କେ ସହସ୍ରଛନ୍ତି ବ୍ରହ୍ମଯତି ପୁଣ ।
ବ୍ରହ୍ମଯତିକି ସହସ୍ର ଅଛନ୍ତି ସନ୍ୟାସୀ
ସନ୍ୟାସିଙ୍କେ ସହସ୍ରେକ ଛନ୍ତି ସୋମହଂସୀ ।
ସୋମହଂସ୍ରୀକେ ସହସ୍ର ଛନ୍ତି ଭ୍ରଗବତୀ
ଭଗବଂତୀଙ୍କେ ସହସ୍ର ଅଛନ୍ତି ସିଦ୍ଧାନ୍ତୀ ।
ଏସନ ପ୍ରକାରେ ଗଲେ ଅନେକ ମହର୍ଷି
ଗିରି ପୁରୀ ହେ ଭାରତୀ ଦଣ୍ଡୀ ପରହଂସୀ ।
ବେଦ ବେଦାନ୍ତାଦି ସର୍ବେ ଗାୟନ କରନ୍ତି
ଦକ୍ଷିଣାବର୍ତ୍ତକ ଶଙ୍ଖେ ତୀର୍ଥଜଳ ଦ୍ୟନ୍ତି ।
ସ୍ୱାହା ପ୍ରୋକ୍ଷଣୀ ଉତ୍ତରୀ ଧୋତି ଛତାପୀଢ଼ା
ଗଡ଼ୁ ତମ୍ବାପାତ୍ରୀ ବେଦକାଣ୍ଡୀ କୁଶବିଡ଼ା ।
କମଣ୍ଡଳୁ ଭସ୍ମଚିତା ତ୍ରିଦଣ୍ଡ ଦୋହଲା
କନ୍ଧେ ପଇତା ରୁଦ୍ରାକ୍ଷ ତୁଳସୀର ମାଳା ।
ଲମ୍ବିତ ଜୁଡ଼ାତ୍ର କଛ ବସନ କର୍ପଟି
କେ ଲେପିଛି ଭସ୍ମ ଅଙ୍ଗେ କେବା ରଙ୍ଗମାଟି ।

ବାହେ ବାହୁମୂଳେ ଶଙ୍ଖଚକ୍ର ଚିହ୍ନ କେହି
ଫଳାହାର କେହି ତୃଣ ଜଳକୁ ଭକ୍ଷଇ ।
ପବନ ଆହାରୀ କେହି ସ୍ୱାଦୁ ଫଳ ଖାଏ
କେ ଅନ୍ନ ଆହାରୀରହେ ନିରାହାରେ କିଏ ।
କେ ମାଂସଆହାରୀ କେହୁ ନିରାମିଷେ ରହେ
କେହୁ ଚର୍ମ ପିନ୍ଧେ କେହୁ ଶୀତବର୍ଷା ସହେ ।
ଲୋଟଣୀ ଜଡ଼ା କାହାରମାଥେଜଟା ଶୋହେ
କେହୁ ପଞ୍ଚବର୍ଣ୍ଣ ମାଳା ଆଭରଣ ଦେହେ ।
କା ହାତେ ବେତ ଲଉଡ଼ିକେହୁ ଲୌହବାଡ଼ି
ଧରେ ଚକ୍ର କାତିଖଣ୍ଡା କେ ଖଡ୍‌ଗ ଦଉଡ଼ି ।
ଏସନ ପ୍ରକାରେ ତହୁଁ ସର୍ବଋଷିମାନେ
ଶୁକମୁନି ସଙ୍ଗେ ଗଲେ ନୃପ ସନ୍ନିଧାନେ ।
ଶୁକମୁନି ଦେବେ କଷା ବସନ ଦେଖିଣ
ଋଷିମାନେ ପ୍ରଶଂସନ୍ତି ତାଙ୍କୁ ଜଣ ଜଣ ।
ଧନ୍ୟ ନିର୍ଗୁଣ ପୁରୁଷ ଅଟେ ପୁଣ୍ୟଦାତା
ହିଂସା ଲୋଭ ମୋହ କାମସର୍ବ ବିବର୍ଜିତା ।
ପରୀକ୍ଷା ଶ୍ରୋତାକୁ ତୋର ବକ୍ତାରୂପ ଶୋହେ
ପୁରାଣ ପ୍ରକାଶ ପାଇଁ ଜନ୍ମିଅଛ ଦୁହେଁ ।
ଏବେ ପରୀକ୍ଷିତ ରାଜା ଗଙ୍ଗାକୂଳେ ଆସି
ସମାଧି ଘେନି ବସନ୍ତି ଜପାମାଳି ଘୋଷି ।
ଆଜି ତୋର ବଡ଼ ଭାଗ୍ୟ ଦେଖିବେ ସେ ତୋତେ
ଏମନ୍ତ ବୋଲି ପ୍ରଶଂସା କରନ୍ତି ସମସ୍ତେ ।
ଏଥୁଅନନ୍ତରେ ସେହି ସୋମବଂଶୀ ରାଜା
ଶୁକମୁନିଙ୍କି ଦେଖିଣ କଲେ ପାଦପୂଜା ।
ଦକ୍ଷିଣାବର୍ତ୍ତକ ଶଙ୍ଖେ ଘେନି ଗଙ୍ଗାଜଳ
ପାଦ ପଖାଳିଣ ଦେଲେ ବସନ କୁଣ୍ଡଳ ।
ରତ୍ନ ଆସନ ଉପରେ ବସାଇଲା ନେଇ
ପଞ୍ଚବର୍ଣ୍ଣ ମାଳା କଣ୍ଠେ ଲମ୍ବାଇଣ ଦେଇ ।
କୋଟି ଚନ୍ଦ୍ରରୁ ଶୀତଳ ଆଲଟ ଧରିଣ
ଚାଳନା କରନ୍ତି ଧୀରେ ପରୀକ୍ଷ ରାଜନ ।
କୃତ୍ୟ କୃତ୍ୟ ହୋଇଣ ସେ ପୁଚ୍ଛେ ନୃପବର
ବୋଇଲେ ଭୋ ମୁନି ମୋତେ ପ୍ରତିକାର କର ।
କେଉଁ ଅଭାଗ୍ୟରୁ ମୋର କର୍ମ ହେଲା ବାମ
ଋଷିଶାପେ ସରିଲା ମୋ ଆସି ଭୋଗ କର୍ମ
ତେଣୁ ସପ୍ତଦିନଯାଏ ଆୟୁଷ ଅଛଇ
ଲୋକମୁଖୁଁ ଶୁଣି ତେଣୁ ତୁମ୍ଭଙ୍କୁ ପୁଚ୍ଛଇଁ ।
କହ ମୋତେ ଶ୍ରୀକୃଷ୍ଣଙ୍କ ମହିମା ପୁରାଣ
କୃତାର୍ଥ ହୋଇବି ତବ ମୁଖରୁ ଶୁଣିଣ ।
ପ୍ରତ୍ୟକ୍ଷରେ ତୁମ୍ଭେ ବିପ୍ରକୁଳକୁ ସବିତା
ତପୀ ଜନମାନଙ୍କର ଅଟେ ଜ୍ଞାନ ଦାତା ।

କୋଟିଚନ୍ଦ୍ରରୁ ଅଧିକ ବଚନ ଶୀତଳ
ପାରିବ କେ କହି ତୁମ୍ଭ ମହିମା ଅଚଳ ।
ଯେଣୁ ବଶିଷ୍ଠଙ୍କ ମୁଖୁଁ ଶୁଣିଅଛି ପୂର୍ବେ
ଭରସି ପଚାରୁଅଛି ତେଣୁକରି ଏବେ ।
ପଣ୍ଡିତ ଲୋକଙ୍କୁ ପୁଣି ପଚାରିଲେ ବାଣୀ
ନ ଧରି ଅଳସ ମନେ କହନ୍ତି ସେକ୍ଷଣି ।
ହୋଇଣ ଜନମ ତୁମ୍ଭେ ହେଲ ମାତାତ୍ୟାଗୀ
ଆବର କେବଣ ସୂତ୍ରେବସି ହେଲେ ଯୋଗୀ ।
କହିଲେ ତତ୍ତ୍ୱ ବିଚାର ପୁଣି କେଉଁ ଗୁରୁ
କେଉଁ ମନ୍ତ୍ର ଇଷ୍ଟକରି ଭଜନ ତୁ କରୁ ।
କହିବା ହେଉ ଏ କଥା ନିଶ୍ଚୟ କରିଣ
ତରିବି ଶାପରୁ ତୁମ୍ଭ ମୁଖରୁ ଶୁଣିଣ ।
ନୃସିଂହ ପୁରାଣ ରସ ଅତି ସୁମଧୁର
ପୀତାମ୍ବର ଦାଶ କହେ ପିଅ ନିରନ୍ତର ।



## ପରୀକ୍ଷିତ ଅଗ୍ରତେ ଶୁକଦେବଙ୍କର ନିଜଗୁରୁ ବୃତ୍ତାନ୍ତ କଥନ

ରାଜାର ଲାବଣ୍ୟ ବାଣୀ ଶୁକଦେବ ଶୁଣି
ଚାହିଁଲେ ପ୍ରକାଶ କରି ନିଜ ନେତ୍ର ବେନି ।
କୋମଳ ଲଳିତେ ତହିଁ କରନ୍ତି ଉତ୍ତର
ଶୁଣ ଆହେ ମହାରାଜା ଯେଉଁ ଗୁରୁମୋର ।
ବନାଇ କହିବା ତାହା ଶୁଣ ଏକଚିତ୍ତେ
ପ୍ରଥମରୁ ପ୍ରାଣୀ ହେବେ ପ୍ରକୃତିଟି ଯେତେ ।
ଶ୍ରବଣ ନୟନ ଜିହ୍ୱା ନାସା ପାଦ ପାଣି
ପାୟୁସ୍ଥେ ଅସ୍ଥି ମଜ୍ଜା ଧାତୁ ସ୍ୱେଦଶ୍ରେଣୀ ।
ଉର୍ମ ଧୂର୍ମ ଜ୍ୟୋତି ଜ୍ୱାଳା ଷୋଡ଼ଶ ଡମ୍ବରୁ
ସତ୍ତ୍ୱ ରଜ ତମ ମଧ୍ୟେ ଶୁଣ ରାଜା କୁରୁ ।
ଏହାଙ୍କ ଉପରେ ମନ କରଇ ରାଜତ୍ୱ
ଯେ ମନୁରାଜାର ଥାଟ ଅଟେ ଅପ୍ରମିତ ।
ନୃପ ସେବାରେ ସେମାନେ କାଟୁଥାନ୍ତି ଦିନ
ଗୋଟି ଗୋଟି କରି ତାଙ୍କ ନାମମାନ ଶୁଣ ।
କ୍ଷୁଧା ତୃଷା ବୋଲିକରି ଯେଉଁ ସେନାପତି
ଅନବରତ ବଦନ ଦେଶେ ଆବୋରନ୍ତି ।
ହିଂସା ନାମେ ତାହାଙ୍କର ଯେଉଁ ସୈନ୍ୟବଳ
ମିତ୍ରହେଲେ ଶତ୍ରୁତାକୁ କରେ ତତକାଳ ।
ପରିଛାପଣରେ କ୍ରୋଧ ଥାଇ ନେତ୍ର ପାଶେ
କେ ରସ ବୋଇଲେ ସେହୁଉଠଇ ତାମସେ ।
ପାତ୍ର ହୋଇକରି ଲୋଭ ବୁଲେ ପ୍ରତିକ୍ଷଣେ
ଦ୍ରବ୍ୟ ଆଶାରେ ପ୍ରତ୍ୟହଚଳେ ଲକ୍ଷଯୂଣେ ।
ମୃତ୍ୟୁସ୍ଥାନେ ଦ୍ରବ୍ୟଥିଲେ ଆଣିବି ବୋଲଇ
କଲେ ଅବା ମରିଯିବ ଏ ଭୟ ନଥାଇ ।
ବେହେରାପଣ ଆବୋରି ବସିଥାଏ ବାଦ
ଅଳପ କଥାରେ ସେହୁ କରେ ଗୋଳଦ୍ୱନ୍ଦ ।
ଅହଙ୍କାର କଥା କିସ କହିବି ବା ମୁହିଁ
ଶତ୍ରୁହେଲେ ଯେହୁ ତାର ପ୍ରାଣ ଘେନିଯାଇ ।
କାମନା ଯେତେ ଜ୍ୱାଳା ତ ସମସ୍ତେ ଜାଣୁଛ
ବଳ ଆୟୁଷ ବପୁ ସେ ନାଶୁଛି ପ୍ରତ୍ୟକ୍ଷ ।
ଭୁଲାଉ ଅଛନ୍ତି ମୋହ ମାୟା ଦୁହେଁ ମିଳି
ଏହାଙ୍କ ଉପରେ ମନ ଅଟେ ଦଣ୍ଡଧାରୀ ।
ଯହିଁ ବରଷିଲେ ମନ ତହିଁ ଚଳିଯାନ୍ତି
ଏଣୁକରି ମନରାଜା ଶରୀରେ ଅଟନ୍ତି ।
ସେ ମନକୁ ଦେହ ମଧ୍ୟେ ପାରଇ ଯେ ଚିହ୍ନି
ତେବେ ଯାଇଣ ତାହାକୁ କହି ମହାଜ୍ଞାନୀ ।
ମନ ନ ଚିହ୍ନିଲେ କାହୁଁ ଭକ୍ତି ହେବ ଉଦେ
ମନ ଏକା ସାଧୁ ଅଟେ ସମସ୍ତଙ୍କ ହୃଦେ ।
କୋଟିକାର୍ଯ୍ୟ ସରି ନୁହେଁ ନ ଚଳିଲେ ମନ
ମନ ଏକ ମୂଳ ଅଟେ ଶୁଣ ହେ ରାଜନ ।
ଏଣୁ ମନକୁ ମୋହର ଗୁରୁକରି ଆଣି
ଭଜିଲେ ହରିପାଦରେ ଦିବସ ରଜନୀ ।
ଜୀବ ପରମ ଚିହ୍ନିଣ ଜପେ ଅନୁକ୍ଷଣ
ଜପ ପରିମାଣ ଏବେ କହୁଅଛି ଶୁଣ ।
କୋଡ଼ିଏ ସହସ୍ର ପରେ ଆବର ଷୋଡ଼ଶ
ଦିନକୁ ଏଣେ ଦେଖିଣ ଭଜୁଅଛି ହଂସ ।
ଷୋଡ଼ଶ ମହାମନ୍ତ୍ର ଯେ ଅଭୀଷ୍ଟ ଆମ୍ଭର
ମନକୁ ହୃଦରେ ଚିହ୍ନି କରିଛୁ ଗୋଚର ।
ହଂସର ଉଦୟ ଅସ୍ତ ନ ଜାଣନ୍ତି ସେହି
ବ୍ରହ୍ମାଦି ଶଙ୍କର ଛନ୍ତି ସେ ହଂସକୁ ଧ୍ୟାୟି ।
ସମୀର ବାହନେ ବସି ଚଳେ ହଂସ ଘରୁ
ଅହୋରାତ୍ର ଚାଲଇ ନ ଉଠି ଆସନରୁ ।
ଆସନୁ ନ ଉଠି ଏକପଦେ ବୁଲି ଯାଇ
ଠାବ ମେଲିକରି ତହୁଁ ଜୀବେ ପ୍ରବର୍ତ୍ତଇ ।
ଏଣୁ ଏ ଜୀବ ପରମ ଦେହ ମଧ୍ୟେ ସ୍ଥିତି
ଏ ବେନିଙ୍କ ଲୀଳା କେହିଲୋକେ ନ ଜାଣନ୍ତି ।
ତିନି ତିହୁଡ଼ି ତ୍ରିକୂଟ ତ୍ରିମୁନାରେ ବସି
ଅଷ୍ଟଦଳ କମଳର ମଧ୍ୟେ ଥାନ୍ତି ବସି ।
ଖେଳନ୍ତି ଅନେକ ରୂପ ହୋଇ ନାନାହୃଦେ
କୀଟ ବ୍ରହ୍ମଯାଏ ପୁଣି ଏକଇ ଶବଦେ ।
ଗୁରୁଙ୍କୁ ସେବିଲେ ସେହି ଶବ୍ଦ ଜଣାଯାଇ
ସେହି ଶବଦକୁ ଜୀବ ପରମଟି କହି ।

ମନକୁ ଚିହ୍ନିଲେ ଜୀବ ପରମକୁ ଜାଣି
ଏଣୁ ମନ ଗୁରୁ ମୋର ଶୁଣ ନୃପମଣି ।
ଆପଣାର ମନ ଯେବେ ଆପଣେ ନ ଚିହ୍ନେ
ପଶୁଜୀବ ତୁଲେ ତାକୁ ଦେଖି ଏ ଭୁବନେ ।
ଯେ ଯାହାର ଶରୀରରେ ମନ ଏକା ଗୁରୁ
ସବୁ କର୍ମ କରେ ପ୍ରାଣୀ ମନ ସକାଶରୁ ।
ମନଗୋଟି ତାହାରି କେ ଛଡ଼ାଇ ନିଏକି
ଏଣୁକରି ମନ ଗୁରୁ କରି ହେ ବିବେକି ।
ଗୁରୁ କରୁଣାରେ ମାୟା ନ ରହଇ ଦେହେ
ସକଳ ଜୀବ ତାହାକୁ ଦିଶେ ଏକପ୍ରାୟେ ।
ଆତ୍ମା ଚିହ୍ନିଲା ସକାଶୁ ଭୟ ମୋର ନାହିଁ
ଏକଥା ଶୁଣିଣ ରାଜା ପୁଣି ପଚାରଇ ।
ଆହେ ମହାଋଷି ଏବେ ଶୁଣ ଶୁକଦେବ
ତୁମ୍ଭ ମୂର୍ତ୍ତି ଦେଖି ମୋତେ ଲାଗୁଛି ଅପୂର୍ବ ।
ଜନମ ହୋଇଲାକ୍ଷଣି କୁଟୁମ୍ବ ତେଜିଣ
ତପସ୍ୟା ଅର୍ଥେ ଗମିଲେ ନଇମିଷାରଣ୍ୟ ।
ଆହାର ଶୟନ ଆଦି କରି ପରିତ୍ୟାଗ
ସାଧିଲେ ଆସନ ବସି ତହିଁ ଯୋଗମାର୍ଗ ।
ଆବର ଶତ୍ରୁକୁ ସହି ରହିଲେ ଅରଣ୍ୟ
ଏତେ କଷ୍ଟେ ତବଦେହ ବିରାଜେ କେସନ ।
ଭୋଗୀ ଲୋକର ପରାୟେ ଦିଶେ ଦେହବର୍ଣ୍ଣ
କହ ମୋତେ ମହାମୁନି ଏ କଥା ଫେଡ଼ିଣ ।
ଏମନ୍ତ ବଚନ ଶୁଣି ବ୍ୟାସଙ୍କ ଆତ୍ମଜ
କହନ୍ତି ରାଜାଙ୍କୁ ବୋଲେ ପୀତାମ୍ବର ଦ୍ୱିଜ ।



## ପରୀକ୍ଷିତଙ୍କ ଅଗ୍ରତେ ଶୁକଦେବଙ୍କ ଜ୍ଞାନମାର୍ଗ କଥନ

ରାଜାର ମୁଖରୁ ଶୁକ ଏସନକ ଶୁଣି
କହନ୍ତି ମୁଖ ପ୍ରକାଶି ସୁମଧୁର ବାଣୀ ।
ବୋଇଲେ ଧନ୍ୟ ଯେ ରାଜା ତୋର ଗୁଣକର୍ମ
ସବୁକଥା ଜାଣିପାରୁ ଆମ୍ଭେ ପ୍ରତିଦିନ ।
ତେଣୁ ତୋର ମନ ଜାଣି ଅଇଲୁ ତଡ଼ତି
ଏବେ ପରୀକ୍ଷିତ ତୁହି ପାଇବୁ ମୁକତି ।
ଜଗତେ ତୋହର ପ୍ରାୟ ନାହିଁ ବିଜ୍ଞପ୍ରାଣୀ
ଆନ କେ କହନ୍ତା ମୁଖେ ଏହି ସାଧୁବାଣୀ ।
ଜୀବଠାରେ ଅନୁକ୍ଷଣେ ଦୟା ନାହିଁ ଯାର
ସେ କାହୁଁ କହିବ ଏଡ଼େ ସୁମଧୁର ଗିର ।
ଚିତ୍ତ ଯାର ଅନୁକ୍ଷଣ ଗୋବିନ୍ଦେ ଭକତି
ସେ ଲୋକ ଯେ ସୁମଧୁର ବଚନ କହନ୍ତି ।

ଏହିରୂପେ ଆପଣେ ତ ପଚାରିଲେ ମୋତେ
କହିବା ସମସ୍ତ କଥା ସାଂସାରିକ ମତେ ।
ଯେବେଣ ଭାବରେ ମୋର ବିକଶିଲା ଦେହ
ପ୍ରଥମ ଆଶା ବିନାଶି ତ୍ୟାଗକରି ମୋହ ।
କାମକ୍ରୋଧ ଲୋଭଆଦିଥିଲେ ହୃଦେଯେତେ
ଛାଡ଼ିଲଇଁ ପାପଚିନ୍ତା ବାଦ ହିଂସା ପ୍ରାନ୍ତେ ।
ଆବର ଯେ ଛଳ ଶ୍ଳେଷ ନାହିଁ ମୋର ଜାଣ
ତେଣୁକରି ଏଡ଼େ ତୀକ୍ଷ୍ଣ ଦିଶେ ଦେହବର୍ଣ୍ଣ ।
ସାଧିଲି ମାତାର ଗର୍ଭେ ଥାଇ ବ୍ରହ୍ମବିଦ୍ୟା
ପ୍ରଥମରୁ ବ୍ରହ୍ମଚାରୀ ଅଟେ ଯୋଗସିଦ୍ଧା ।
ଗର୍ଭେ ବାରବର୍ଷ ଯାଏ କରିଥିଲି ବାସ
ନ ପୁଚ୍ଛିଲୁ ତହିଁ ମୁଁ କି କରିଥିଲି ଗ୍ରାସ ।
ଜ୍ଞାନ ଭଜନ ଲୋକର ସବୁଠାରେ ସରି
ଲୋଭରୁ ସିନା ପ୍ରାଣୀଏ ଅଳପକେ ମରି ।
ସେ ଲୋକକୁ ଛାଡ଼ି କେହି ନାହାନ୍ତି ଜଗତେ
ଏ ସଂସାରେ ଜନ୍ମିଛନ୍ତି ପ୍ରାଣୀମାନେ ଯେତେ ।
ସମସ୍ତ ଧନ ଦରବ ପଦାର୍ଥରେ ବଶ
ଏକ ଦୁଇ ହେଲେ ସର୍ବେ ଲୋଡ଼ନ୍ତି ପଚିଶ ।
ପଚିଶରୁ ଶତେ ଶତୁ ସହସ୍ରେ କ ପାଞ୍ଚ
ସହସ୍ରେକ ହେଲେ ପୁଣି ଲକ୍ଷେ ମନବାଞ୍ଛ ।
ଲକ୍ଷରୁ କୋଟିହୋଇଲେ ପୁଣି କ୍ରୋଡ଼ପୋଛେ
କ୍ରୋଡ଼େଯାଏ ହେଲେ ପୁଣି ଉନ୍ଦ୍ରପଦଇଛେ ।
ଏହିରୂପେ ପ୍ରାଣୀଙ୍କୁ ଯେ କରାଏ ପ୍ରବଳ
ତହିଁରେ ଭୁଲିଣ ଲୋକ ଧନେ ହୁଏ ଭୋଳ ।
ଆବର ବହୁତ ଧନ ଯାହାରଟି ଥାଇ
କହିଲେ ତାହାର ଲୋଭ ଜାଣ ନ ସରଇ ।
ବୋଇଲେ ବହୁତ ଧନ ଡରଇ ରାଜାକୁ
ବୋଲଇ ଅନ୍ୟାୟ କରି ଦଣ୍ଡିବେ ଆମ୍ଭଙ୍କୁ ।
ଖଟୁଆ ମିଛୁଆ ଲୋକେ ଅଛନ୍ତି ଅନେକ
କେହି ଅବା କହିଦେବ ଲଗାଇ କଳଙ୍କ ।
ଏବକାଳ ରାଜାଏ ତ ଖଚ ଶୁଣିକରି
ସବୁ ଧନ ନ୍ୟନ୍ତି ଧର୍ମାଧର୍ମ ନ ବିଚାରି ।
ପଣ୍ଡିତ ନୃପତି ସିନା ପ୍ରଜା ପଦାର୍ଥକୁ
ଯେ ଯେତେ ଖଚ କହିଲେ ନ ଶୁଣେ ଦେବାକୁ
ଧନୀଲୋକ ମନେ ଭାଳି ମରଇ ଏ ରୂପେ
ମଳିନ ବସନ ପିନ୍ଧି ରଖେ ଦ୍ରବ୍ୟଗୋପ୍ୟେ ।
ଯେବେ ଭିକ୍ଷୁଲୋକ ଭିକ୍ଷାମାଗେ ଆସି ଦ୍ୱାରେ
ଚକ୍ଷୁ ତାକୁ ତରାଟିଣ ଗରଜଇ ଘରେ ।
କେବେ ବନ୍ଧୁଲୋକ ଯେବେ ମିଳେ ଘରେ ଆସି
କଦାପି ତାହାକୁ କଥା ନ କହଇ ହସି ।

ପାଞ୍ଚଇ ଏହାଙ୍କୁ କାହୁଁ ଦେବଇଁ ବେଳକ
ଏ ଆସି ନ ଥିଲେ ଆମ୍ଭେ ବଞ୍ଚନ୍ତୁ ଦିନେକ ।
ଭାରିଯାକୁ ବୋଲଇ ଲୋ ଦେଖକିନାବାରେ
କୃଷି ହେବାଯାଏ ଅନ୍ନ ଆଉନାହିଁ ଘରେ ।
ମକରରୁ ତୁଳଯାଏ ରଖିଛ ଯା ଖଞ୍ଜି
ମିଥୁନ ସରିଲେ କାହୁଁ ଆଣିବି ମୁଁ ଅର୍ଜି ।
ବିଛା ଉତ୍ତାରୁ ମିଳିବ ସିନା ମୋତେ ସବୁ
ପୁତ୍ର ହେଲେ କହେ ତାକୁ ଅଳ୍ପ ଖାଅ ବାବୁ ।
ଯଦ୍ୟପି କେ ଅବା ପାଣିମାଗେ ଆସି ଘରେ
ବୋଲଇ ତାହାକୁ ପିଅଯାଇ ପୋଖରୀରେ ।
ଏମନ୍ତ ଲୋଭରେ ପଡ଼ି ମରେ ଧନ ଆଶେ
ଗୃହ ଛାଡ଼ିଗଲେ କ୍ଷଣେ ନ ରହେ ପ୍ରବାସେ ।
କ୍ଷୁଧା ପିପାସା ନ ମାନି ଧାଇଁଆସେ ଲୋଭେ
ଦିନେମାତ୍ର ଭଲଦ୍ରବ୍ୟ ନ ଭକ୍ଷଇ କେବେ ।
ଧର୍ମ ନ କରି ଯେ ଧନ ଅସଂଖ୍ୟକ ରଖେ
କାଳେ ଭୋଗହୁଏ ସେହୁ ଚୌରଅଗ୍ନି ମୁଖେ ।
ପଦାର୍ଥେ ମୋହ ହୋଇଣ ନ ଭଜଇ ହରି
ସେ ନର ମୁଖ ଚାହିଁଲେ ବ୍ରହ୍ମହତ୍ୟା ସରି ।
ପଦାର୍ଥରୁ ଲୋଭ ହୁଏ ଲୋଭୁ ପାପ ଜାତ
ପାପହେଲେ ଘୋଟେ ଆସି କ୍ଲେଶ ଅପର୍ଯ୍ୟାପ୍ତ
କ୍ଳେଶରୁ ହୁଅଇ ଦୁଃଖ ଦୁଃଖୁଁ ମୃତ୍ୟୁ ହୋଇ
ମରଣ ହେଲା ଉତ୍ତାରୁ ନର୍କେ ପଡ଼ିଥାଇ ।
ଏଣୁ ଏ ଦେହକୁ ଧନ ଅଟଇ ବଇରି
ତ୍ୟଜନ୍ତି ପଣ୍ଡିତ ଲୋକେ ନର୍କ ମନେକରି ।
କଦାପି ଧନରେ ସେହି ଆସକ୍ତ ନୁହନ୍ତି
ନିଷ୍ଠଲେ ଶ୍ରୀକୃଷ୍ଣ ପଦ୍ ପଙ୍କଜେ ଭକତି ।
ମହାଜନ ହୁଅଇ ଯେ ହରିନାମ ବିକି
ସଂସାରରେ ତାହା କୁଟି ଧନୀ ମଧ୍ୟେ ଲେଖି ।
ସେ ବଣିଜ କିଣି ଲୋକ ଦୁସ୍ତରୁ ନିସ୍ତରେ
କର୍ଣ୍ଣରେ ଆପ୍ୟାନ କରି ଆତ୍ମାରୁ ନିସ୍ତରେ ।
ଧନ ଜନ ପ୍ରାଣ ସବୁ ସପନ ଆକୃତି
ଚିରସ୍ଥାୟୀ କରି କେହୁ ରଖି ନ ପାରନ୍ତି ।
ଏଣୁକରି ସଂସାରରେ ଏମାନ ମୁଁ ଦେଖି
ଜନ୍ମ ହୋଇ ତାତ ମାତ ଅଇଲି ଉପେକ୍ଷି ।
ତଥାପି ଜନ୍ମ ମୋହର ନାହିଁ ଜନସଙ୍ଗ
ଶୁଣ ହେ ପରୀକ୍ଷ ରାଜା କହିବା ତା ମାର୍ଗ ।
ଜନ ସଙ୍ଗେ ସଙ୍ଗୀହେଲେ ମାୟା ନ ଛାଡ଼ଇ
ରତିରସେ ପଡ଼ି ମନେ କୁଟୁମ୍ବ ଇଚ୍ଛଇ ।
ଯେତେବେଳେ ତାର ଅଙ୍ଗୁ ଜନ୍ମନ୍ତି ବାଳକ
ସେହିଠାରୁ ଚିନ୍ତା ତାକୁ ଲାଗଇ ଅନେକ ।
କୁଟୁମ୍ବଙ୍କୁ କେଉଁରୂପେ ପୋଷିବଇଁ ଭାଳେ
ଗୋବିନ୍ଦର ନାମ ଭଜି ନ ପାରଇ ବେଳେ ।
କୁଟୁମ୍ବ ନିମନ୍ତେ ପୁଣି ନାନା ଦୁଃଖ ପଡ଼େ
ପରଦ୍ରବ୍ୟ ଘେନିବାକୁ ତାର ଲୋଭବଢ଼େ ।
ପାପେଦେହ ବୋଲି କେଭେ ନ ଭାଳଇ ଚିତ୍ତେ
କୁଟୁମ୍ବ ନିମନ୍ତେ ପ୍ରାଣୀ ଲାଗେ ଚାଷ ବୃତ୍ତେ ।
ରାଜ୍ୟର ଚିନ୍ତା ତଣ୍ଡ ଯେ ପଡ଼ିଲେ କଉଡ଼ି
ଘରୁ ଦ୍ରବ୍ୟ ଦେଇ ଶସ୍ୟେ ଲାଗେ ମରିପଡ଼ି ।
ତହୁଁ ଯତ୍ନେ ଶସ୍ୟ ଆଣି ରଖଇ ଖଳାରେ
ରାଶି ବେଢ଼ି ବାନ୍ଧି ଉଭାହୁଏ ଖଣ୍ଡେଦୂରେ ।
ନାନ କଷ୍ଟ ପାଇ ଦେହେ ଶସ୍ୟ ଉପୁଜାଇ
ଲେଖି ଯୋଖି ନ୍ୟନ୍ତିସବୁ ପ୍ରଧାନ ବିଶୋଇ ।
ଉଠା ଭାତ ଦେଇଁ ଚଷା ପ୍ରଜା ନୁହେଁ କିଛି
ପଛବେଳକୁ ଗଞ୍ଜଣା ସବୁ ସହେ ମୂର୍ଚ୍ଛି ।
ଏଥିସୁଖ ନାହିଁ ବୋଲି କୃଷି ଯେବେତେଜେ
ଉଦର ନିମନ୍ତେ ପୁଣି ପଶଇ ବାଣିଜ୍ୟେ ।
ବାଣିଜ୍ୟରେ କଷ୍ଟ ଯେତେ କି କହିବି ରାୟେ
ଗୃହଧର୍ମେ ଥାଇକୁଳେ ତୀର୍ଥବାସୀ ପ୍ରାୟେ ।
ଆପଣାର ଦ୍ରବ୍ୟ ଧରି ବିଲେ ଗ୍ରାମେ ଗ୍ରାମେ
ଲାଭ କିଛି ନ ଦିଶିଲେ ନାନାଦେଶେ ଭ୍ରମେ ।
ବିଳମ୍ବ ହୋଇଲେ ଦିନ ପାଞ୍ଚଇ ମନରେ
ବୋଲଇ ଚାରର ରଡ଼ି ପଡ଼ିଥିବ ଘରେ ।
କି ଅବା ପୁତ୍ର ଦୁହିତା ଝୁରୁଥିବେ ମୋତେ
ଘର ବ୍ୟୟକୁ ଖରଚ ନ ଅଣ୍ଟିବ କେତେ ।
ଆବର ଯେ ମୋର ଅଛି ନବଯୁବା ନାରୀ
ଗୃହେ ତାକୁ ଅଇଲି ମୁଁ ତାକୁ ଏକାକରି ।
କାମଦେବ ପୀଡ଼ାରେ ସେ ମରୁଥିବ ପରା
କଣ୍ଟକୁ ତ ବେନିମାସ ହେଲା ଆସି ପରା ।
ପୋଡୁ ଏ ବାଣିଜ୍ୟ କିମ୍ପା ଅଇଲି ଏକାଳେ
ଦେଖିବିପ୍ରିୟାକୁ ଯାଇ ଏବେ କେତେବେଳେ
ଦଇବେ ଅତି ସୁନ୍ଦରୀ ଅଟେ ମୋର ସଖୀ
ମାତିଥାଇ କିବା ପର ପୁରୁଷକୁ ଦେଖି ।
ରସିକ ଲୋକଙ୍କୁ ଦେଖି ତରୁଣୀ ଭୁଲନ୍ତି
ସଙ୍କୋଚ ଲଜ୍ଜା ତେଜିଣ ରମଣୀ ଇଚ୍ଛନ୍ତି ।
ଏମନ୍ତ ପ୍ରକାରେ ଭାଳି ଆସନ୍ତେ ପ୍ରବାସୁ
ଘରେ ମିଳିଲେ ଜଞ୍ଜାଳ ଲାଗେକ୍ଷଣେ ବସୁ ।
କୁଟୁମ୍ବର ପାଇଁ ସହେ ଏଡ଼େବଡ଼ ଦୁଃଖ
ସରିଲେ ହାତରୁ ଧନ ମାଗେ ପୁଣି ଭିକ ।
କାହାକୁ ସଙ୍କୋଚ ପୁଣି ଲଜ୍ଜା ନ କରଇ
ମାଗି ଖାଇବାର ସେହି କେବଳ ଜାଣଇ ।

ମାଗିବାର କଥାଗୋଟି ମୃତ୍ୟୁତୁଲ୍ୟ ଲେଖି
ନ ମିଳିଲେ ଦୁଃଖଜାତ ମିଳିଲେ ସେ ସୁଖୀ ।
କୁଟୁମ୍ବ ପୋଷଣ ଅର୍ଥେ ଭ୍ରମେ ନାନା ଦେଶ
ଯେଉଁଦିନ କିଛି ରଖି ନ କରିବ ଗ୍ରାସ ।
ସେହିଦିନ ପତ୍ନୀ ତାର ନକହେ ସୁଖକରି
ବସଇ ବିମୁଖ ହୋଇ ମନେ ତାପ କରି ।
ଗୃହସ୍ଥର ଦୁଃଖ କଷ୍ଟ ନ ଘେନଇ ଚିତ୍ତେ
କିଛି ନ ମିଳିଲା ଦିନ ଗଞ୍ଜେ ଅନୁବ୍ରତେ ।
ବୋଲଇ ଧଇଲି ଯେଉଁ ଦିନୁ ସ୍ୱାମୀହସ୍ତ
ଦିନେ ହେଲେ ସୁଖକରି ନ ଭୁଞ୍ଜିଲି ଭାତ ।
ବସ୍ତ୍ର ଅଳଙ୍କାର ବୋଲି ଦିନେ ନ ଜାଣିଲି
ପଞ୍ଚ ଯୁବତୀରେ ଲେଖାକେବେ ନ ହୋଇଲି ।
ଉତ୍ତମ ଲୋକର ହସ୍ତ ଧରିଥାନ୍ତି ଯେବେ
ବୋଲାଇଥାନ୍ତି ସେ ଘରେ କୁଳଙ୍ଗନା ତେବେ ।
କୁଟୁମ୍ବଯାକ ମୋର ହସ୍ତକୁ ଥାନ୍ତେ ଚାହିଁ
ଶିରୋମଣି କରିଥାନ୍ତେ ମଥାପରେ ବହି ।
ଏମନ୍ତ ବୋଲିଣ ବାଣୀ ହୁଅନ୍ତେ ବିମୁଖ
ତାହାଶୁଣି ଗୃହସ୍ଥର ମନେ ହୁଏ ଦୁଃଖ ।
ବୈରାଗ୍ୟ ମନରେ ଘେନି ଭାଳେ ଅନୁବ୍ରତେ
ଗୋବିନ୍ଦଙ୍କୁ ଭଜି ଆଉ ନ ପାରଇ ଚିତ୍ତେ ।
ଯେବେ ସେହି ଗୋବିନ୍ଦଙ୍କୁ ଭଜି ନ ପାରଇ
କି କାରଣେ ତୁଣ୍ଡେ ତାର ଜିହ୍ୱା ଅଛିବହି ।
ତାହାର ବଚନମାନ ଭେକ ରୂପେ ଲେଖି
ସେ ଯେହ୍ନେ ଅନବରତେ କର୍ଦ୍ଦମକୁ ଭକ୍ଷି ।
ଶ୍ରବଣ ଥାଉ ଯେ କର୍ଣ୍ଣେ ନ ଶୁଣଇ ନାମ
ବିବର ସମାନ ଦେଖି ତାର ଦୁଇକର୍ଣ୍ଣ ।
ଲୋଚନ ଥାଉ ଯେ ହରିଭକତ ନ ଦେଖି
ସେ ଦୁଇଆଖି ତାହାର ଶିଖିପୁଚ୍ଛେ ଲେଖି ।
ଏ ସଂସାର ଯାକ ତାକୁ ଅନ୍ଧ ବୋଲିଜାଣ
ନାସାଥାଉଁ ତୁଳସୀ ସେ ନକରେ ଆଘ୍ରାଣ ।
ଗ୍ରାମପଶୁ ତୁଲେ ସିନା,ତାକୁନେଇ ଲେଖି
ସେ ଯେହ୍ନେ ନ ଘେନିଭଲଅକ୍ଷକୁ ଭକ୍ଷି ।
ଏ ଦେହ ମଧ୍ୟରେ ଯେବେ ଥିବ ବହି ଶିର
ଚାଲୁଥିବ ଘେନିଦାଣ୍ଡେ ନାନା ଅଳଙ୍କାର ।
ସେ ଶିର ଗୁରୁଗୋବିନ୍ଦ ପାଦେ ଯେ ନ ମଣ୍ଡି
ଏ ଅଟେ ସଂସାରରେ ସେହୁ କୁରାଳରହାଣ୍ଡି ।
ଆବର ଭବେ ହୃଦୟ ବହି ଯେଉଁନର
ରାମନାମ ଶୁଣି ତନୁ ନ ପୁଲକେ ଯାର ।
ମହୀ ଲତା ଜନ୍ତୁ ତୁଲେ ତାର ଦେହ ଲେଖି
ଯେ ଯେତେ ଗଡ଼େଭୂମିରେ ବର୍ଷାକାଳ ଦେଖି ।

ବେନିପାଦ ଥାଉଁ ଯେ ନଯାଏ ବିଷ୍ଣୁଆଳେ
ବୃକ୍ଷତୁଲ୍ୟ ଅଟେ ସେହୁ ଏ ମହୀମଣ୍ଡଳେ ।
ସେ ଯେହ୍ନେ ଭେଡ଼ାଏ ଚାଲି ନ ପାରଇ ପାଦେ
ସେହିମତେ ସେ ଲୋକକୁ ଲେଖି ଜନପଦେ ।
ଏମନ୍ତ ବୋଲିଣ ଶୁକରାଜା ଆଗେ କହି
କୁଟୁମ୍ବ ନିମନ୍ତେ ନାମ ଭଜି ନ ପାରଇ ।
ସଂସାର ଏମନ୍ତ ଦେଖି ଭୟ ହେଲା ମୋତେ
ପାଞ୍ଚିଲଇଁ ଗୃହସ୍ଥକୁ ଜ୍ଞାତି କାଳ ନିତ୍ୟେ ।
କାଳ ଯେମନ୍ତେ ପିଣ୍ଡରୁ ଆତ୍ମାନିଏ କାଢ଼ି
ସେହିରୂପେ ଗୃହସ୍ଥକୁ କୁଟୁମ୍ବଟି ବେଢ଼ି ।
କୁଟୁମ୍ବ ଜଞ୍ଜାଳ ଏଣୁ ଅଟେ କାଳପାଶ
ତହିଁ ନ ଥିବା ପ୍ରାଣୀଙ୍କୁ ଜ୍ଞାନ ହୁଏ ଦୃଶ୍ୟ ।
ବୋଲନ୍ତି ତାହାକୁ ଜନ ମଧ୍ୟେ ସର୍ବେ ଭଲ
କୁଳକୁ ଅଟଇ ସେହି ଲୋକ ଚନ୍ଦ୍ରତୁଲ୍ୟ ।
ପ୍ରୀତି ଅନୁସାରେ ଆତ୍ମା ଖେଳେନାନା ରଙ୍ଗେ
ଗଲାବେଳେ କେହି ନେଇ ନ ପାରଇ ସଙ୍ଗେ ।
ଆବର ପଦାର୍ଥରେ କି ତୋର ପ୍ରୟୋଜନ
ଯେବେ ନ ଜାଣଇ ପ୍ରାଣ ଆତ୍ମା ପରଭିନ୍ନ ।
ସେ ପ୍ରାଣୀ ଜାଣେ ସଂସାରେ ତାକୁ ବୋଲି ସାଧୁ
କିଞ୍ଚିତେ ତରଇ ସେହୁ ଏ ଘୋର ପ୍ରମାଦୁ ।
ତେଣୁକରି ବସୁଦେବ ଭଜେ ମୁହିଁ ନିତ୍ୟେ
ଅଛିଦ୍ର ରୂପରେ ପୂରିଅଛନ୍ତି ଜଗତେ ।
ନାନା ନାମ ବହି ସେହୁ ବ୍ରହ୍ମାଣ୍ଡରେ ଖେଳେ
ନାମୁଁ ଅନ୍ୟ ହୋଇନାହିଁ କେହି ଏ ଶୟଳେ ।
କୀଟ ବ୍ରହ୍ମଯାଏ ସ୍ୱାମୀ ନାମରେ ପ୍ରକାଶି
ଆକାଶ ପ୍ରାୟେ ଘୋଟିଲା କାହିଁନାହିଁ ମିଶି ।
ସକଳ ହୃଦ-ପଦ୍ମରେ ଏକା ନାରାୟଣ
ମୂର୍ତ୍ତିକେ ନାମ ବହଇ ଆତ୍ମା ସ୍ୱରୂପେଣ ।
ସେ ଆତ୍ମାକୁ କେଉଁଜନ ଚିହ୍ନେ ଦେହମାଗେ
ତାହାରି ତହିଁକି ଲୋଡ଼ା କୁଟୁମ୍ବଙ୍କ ସଙ୍ଗେ ।
ଶୁଣ ମହାରାଜା ଯାହା କୁଟୁମ୍ବଟି କହି
ତାଙ୍କୁ ଦେହେ ଘେନିମୁହିଁ ସଦା ବୁଲୁଥାଇ ।
ପ୍ରଥମେ ଧଇର୍ଯ୍ୟ ଜାଣ ଅଟେ ମୋର ତାତ
ଦ୍ୱିତୀୟରେ କ୍ଷମା ପୁଣି ଅଟେ ମୋର ମାତ ।
ଶାନ୍ତି ବୋଲିକରି ଯାହା ହୃଦେ ମୋର ଅଛି
ସେ ମୋର ରମଣୀସିନା ବୋଇଲା ମୃଗାକ୍ଷୀ ।
ସଦ୍‌ଗୁଣୀ ତନୟା ଦୟା ମୋହର ଭଗିନୀ
ମନ ମୋର ଭାଇ ଜାଣ ଜ୍ଞାନ ଅନ୍ନପାଣି ।
ଗୃହକାର୍ଯ୍ୟ ବୋଇଲେ ଯେ ଯେହ୍ନୁଆନ ନାହିଁ
ଅଷ୍ଟିଯାକ ରୁଅ ଶେଣୀ ତମ ତହିଁ ଛାଇ ।

ସେ ଗୁଅ ଶେଣୀର ବାଆସ୍ତରୀ ସସ୍ର ନାଡ଼ୀ
ଭିଡ଼ା ହୋଇଅଛି ଠାବେ ଠାବେ ଗଣ୍ଠିପଡ଼ି ।
ଏମନ୍ତ ଘରେ ମୋହର କୁଟୁମ୍ବ ଯେ ରହି
ଦିଗ ବକଳ ବସଇ ଭୂମିଶଯ୍ୟା ହୋଇ ।
ହସ୍ତ ଅଙ୍ଗୁଳି ଏ ବେନି ଅଟେ ଚକ୍ରପାତ୍ର
ଏରୂପେ କୁଟୁମ୍ବ ଘେନି ବଞ୍ଚୁ ଦିବାରାତ୍ର ।
ଏ କୁଟୁମ୍ବ ପାଇଁ ଧନ ସଞ୍ଚିଛି ମୁଁ ଯେତେ
ତାହା ପୁଣି କହିଦେବା ଶୁଣ ଶ୍ରଦ୍ଧାଚିତ୍ତେ ।
ଜୀବ ପରମ ବୋଲିଣ ଅଛନ୍ତି ଯେ ଦୁଇ
ତାହା ମୁହିଁ ଧନକରି ସଦା ରଖିଥାଇ ।
ଅସଂଖ୍ୟ ଭଣ୍ଡାର ମୋର ଗୃହେ ଅଛି ପୂରି
ସେ ଧନକୁ ଜଗେ ନିତ୍ୟେଚେତୁଆ ଦୁଆରୀ ।
ବହିଲେ ଦୁଇ ମୁହେଁ ସେ ଧନ ନ ସରଇ
ବହିଲେ ସଭିଏଁ ରାଜ୍ୟ ଲେଉଟି ପୂରଇ ।
ସରିଲେ ପୂରଇ ମୋର ଏମନ୍ତ ଭଣ୍ଡାର
ତେଣୁଟି ଦୋମୁହିଁ ନାମ ବୋଲି ସିଂହଦ୍ୱାର ।
ବ୍ରହ୍ମା ଇନ୍ଦ୍ର କୁବେର ନ ପାରେ ତହିଁ ପଶି
ପବନ ଦେବତା ଏକାପରେ ଧନ ଗ୍ରାସି ।
ସେ ଧନ ଆୟ ବ୍ୟୟକୁ ସ୍ୱାମୀର ଯେ ମୂଳ
ଚନ୍ଦ୍ର ସୂର୍ଯ୍ୟ ଅଟନ୍ତି ଯେ ତହିଁ ଦ୍ୱାରପାଳ ।
ଦଶଦିଗ ଦେବତାଏ କଟୁଆଳ ପଣେ
ଜାଣିଣ ବୁଲନ୍ତି ଦିବାରାତ୍ର ଏଣେତେଣେ ।
ଯେ ଭଣ୍ଡାରେ ପଶିବାକୁ ଅଛି ଦଶଦ୍ୱାର
ଏକଦ୍ୱାର ଜଣାନୋହେ ନଅଟି ଗୋଚର ।
ଅଗୋଚର ବୋଲିକରି ଯେଉଁ ଦ୍ୱାରଗୋଟି
ତ୍ରିବେଣୀ ଦ୍ୱାର ବହୁଛି ତହିଁରୁ ଯେ ଫୁଟି ।
ସେ ଦ୍ୱାର ସକାଶୁ ମୋର କୁଟୁମ୍ବ ହେ ସୁଖୀ
ସଦା ଆନନ୍ଦରେ ବଞ୍ଚୁ ଦିବାରାତ୍ର ଭକ୍ଷି ।
ସମ୍ଭାଳି ହେବେ କି ଏହୁକ୍ଷଣେ ତ ଖାଇଲେ
ମୂଳ କରିଅଛି ଏଣୁ କୁଟୁମ୍ବ ମୁଁ ଭଲେ ।
ଆବର କଥାଏ ମୋର ନାହିଁ ପ୍ରୟୋଜନ
ଶୁଣି ପରୀକ୍ଷ ମୁନିଙ୍କି କଲେ ଧନ୍ୟ ଧନ୍ୟ ।
ବୋଇଲେ ଭାଗ୍ୟ ମୋହର ଦିଶିଲା ତ ଏବେ
ଶ୍ରୀବ୍ରହ୍ମଣ୍ୟ ପୁରୁଷଙ୍କୁ ଭେଟିଲିଣି ଯେବେ ।
ପଦେ ପୁଛିବାରୁ ଏତେ ଜ୍ଞାନ କହିଗଲେ
ସାତଦିନେ ପୁରାଣ ମୁଁ ଶୁଣିଲଇଁ ଭଲେ ।
ତେବେ ସିନା ତରିବି ମୁଁ ଋଷିଙ୍କ ଶାପରୁ
ଏତେ ପାଞ୍ଚ ଦଣ୍ଡବତ କଲେ ରାଜା କୁରୁ ।
ବୋଇଲେ ଭୋମୁନି ମୋତେ ପୁରାଣ ଯେ କହ
ଶୁଣିଲେ ତବ ମୁଖରୁ ମୁକ୍ତ ହେବ ଦେହ ।
ପୁରାଣ ବିଷୟ ମନେ ନଥିଲା ମୋ ହେଲେ
ଏ କଥା ବଶିଷ୍ଠ ଋଷି ଆସି କହିଗଲେ ।
ବୋଇଲେ ତୁ ଯେବେ ରାଜା ଶୁଣିବା ପୁରାଣ
ଶ୍ରୀ ଶୁକଦେବଙ୍କ ମୁଖୁଁ କରିବି ଶ୍ରବଣ ।
ଏହା ସେହୁ ପରିମଳ କରିଣ କହିବେ
ତାଙ୍କ ବିନୁ ଅନ୍ୟ ଋଷି କହି ନ ପାରିବେ ।
ଏମନ୍ତ ବୋଲି ବଶିଷ୍ଠ ଯାଇଛନ୍ତି କହିଁ
ଶୁଣିବି ଆପଣ ଆଜ୍ଞା କଲେ ଏବେ ମୁହିଁ ।
ନିରନ୍ତରେ ସୁଜ୍ଞାନର ଶୁଣ ଏ ପୁରାଣ
ପୀତାମ୍ବର ବୋଲେ ପାପ ହୋଇବ ଦହନ ।



## ପରୀକ୍ଷିତଙ୍କର ପୁରାଣ ଶ୍ରବଣ ଓ ନାରଦଙ୍କର ବ୍ରହ୍ମଶାପ ମୋଚନ

ରାଜା ପଚାରନ୍ତେ ତହୁଁ ହସି ବ୍ୟାସପୁତ୍ର
ବୋଇଲେ କହିବା ଶୁଣ ତେବେ ଦିବ୍ୟଶାସ୍ତ୍ର ।
ନୃସିଂହ ପୁରାଣ ବୋଲି ହୋଇଛି ଯାଆଦ୍ୟେ
ବ୍ରହ୍ମାଙ୍କ ମୁଖରୁ ଶୁଣି ଅଛନ୍ତି ନାରଦେ ।
ଶେଷ ନୃସିଂହ ରୂପରେ ଜନ୍ମି ନାରାୟଣ
ମାରିବେ ମାନବରୂପେ ସେ ମୁର ଦାରୁଣ ।
ଲକ୍ଷ୍ମୀଙ୍କୁ ବିବାହ ହୋଇ ବୈକୁଣ୍ଠକୁ ଯିବେ
ପୁଣି ସେ ମୁର ଦାରୁଣ ଲେଉଟି ଜନ୍ମିବେ ।
ହିରଣ୍ୟ ହିରଣାକ୍ଷ ଯେ ହେବ ତହୁଁ ନାମ
ଏହା ତୋତେ ଭାଗବତେ କହିବାକୁ ପୁଣ ।
କିନ୍ତୁ ଭାଗବତେ ସବୁ ବିଷ୍ଣୁଲୀଳା ଅଛି
ଶେଷ ନୃସିଂହଙ୍କ ଜନ୍ମ ନ ପଡ଼ଇ କିଛି ।
ଶେଷନୃସିଂହ ମହିମା ପ୍ରଥମରୁ ଶୁଣ
ପ୍ରାଞ୍ଜଳ କରନ୍ତୁ ଏବେ ଆହେ ନାରାୟଣ ।
ପଛେ ଯାଇ ଭାଗବତ ଶ୍ରବଣ କରିବ
ବ୍ୟାସଙ୍କ ଆଜ୍ଞାକୁ ମୋତେ ସ୍ମରଣ ହୋଇବ
ନୃସିଂହ ପୁରାଣ ଏବେ ଶୁଣ ଆମ୍ଭଠାରୁ
ଶୁଣିଲେ ନାରଦ ଯାହା ବ୍ରହ୍ମାଙ୍କ ମୁଖରୁ ।
ସେ ନାରଦ ଦୋଷ ଅର୍ଜିଏ ଗ୍ରନ୍ଥ ଶୁଣିଲେ
ହୋଇଲେ ପରୀକ୍ଷ ସେହୁ କି ଦୋଷକରିଲେ ।
ଶୁକମୁନି ବୋଇଲେ ସେ ବ୍ରହ୍ମହତ୍ୟା କଲେ
ଦକ୍ଷ ପ୍ରଜାପତିଙ୍କର ପୁତ୍ରକୁ ମାଇଲେ ।
ସେ ଦକ୍ଷପୁତ୍ରକୁ ଋଷି ମାଇଲେ ଯେମନ୍ତେ
ସେ ବିଷୟ କହିବାକ ତୋତେ ଭାଗବତେ ।
ଏବେ ନାରଦ ଋଷିଙ୍କ କଥା ଶୁଣ ଆଗ
ବ୍ରହ୍ମହତ୍ୟା ଦୋଷକରି ମିଳିଲେ ଯେ ସ୍ୱର୍ଗ ।

ଏକା ଜାଣି ଦେବେ ମୁଖ ଟେକି ନ ଚାହିଁଲେ
ମଥାପାତି ସର୍ବେ ଯହୁଁ ମଉନେ ରହିଲେ ।
ଏସନ ନ ଦେଇ ପୁଣି ବାକ୍ୟ ନ କହିଲେ
ଏମନ୍ତ ଦେଖିଣ ତହୁଁ ବାରତା ପୁଚ୍ଛିଲେ ।
ବୋଇଲେ ହେ ତୁମ୍ଭେମାନେ ଶୁଣ ଦେବଗଣେ
କାହିଁପାଇଁ କଥା ମୋତେ ନ କହିଲା ଜଣେ ।
ଅନ୍ୟଦିନେ ଦେଖିଲେତ ମାନ୍ୟ ଧର୍ମ କର
ଏବେ ତୁମ୍ଭେ କି ନିମନ୍ତେ ନଦେଲ ଉତ୍ତର ।
ଏରୂପେ କିସ ପୁଚ୍ଛନ୍ତେ ସକଳ ଦେବତା
ବୋଇଲେ କରିଅଛି ତ ତୁମ୍ଭେ ବ୍ରହ୍ମହତ୍ୟା ।
ଚାହିଁଲେ ବ୍ରହ୍ମହା ପ୍ରାଣୀ ଲାଗେ ବଡ଼ ଦୋଷ
କୋଟି ଗଙ୍ଗାସ୍ନାନ କଲେ ନ ଯାଏ କଲ୍ମଷ ।
କିବା ଲକ୍ଷ ଲକ୍ଷ ସ୍ୱର୍ଣ୍ଣ ପ୍ରଦାନ କରିଲେ
ପାରନାହିଁ ବ୍ରହ୍ମହତ୍ୟା ପାପୀଙ୍କୁ ଦେଖିଲେ ।
ଏଣୁକରି ତୁମ୍ଭପରି ଋଷି ଆମ୍ଭେ ଦେଖି
ପାପକୁ ଡରିଣ ନ ଚାହିଁଲୁ ମଥାଟେକି ।
ନାରଦ ବୋଇଲେ ତେବେ ଶୁଣ ଦେବତାଏ
ଏଡ଼େ ଦୋଷ ଅଛି ଯେବେ କହତ ଉପାୟେ
ଦେଖିଲେ ଲୋକକୁ ଯେବେ ଲାଗିବଟି ଦୋଷ
ସ୍ନାନ ଦାନ ଯେତେ କଲେ ନଯାଏ କଲ୍ମଷ ।
ପାପ କଲାଲୋକ ତେବେ କି ରୂପେ ତରିବେ
ଏ କଥା ସିଦ୍ଧାନ୍ତ କରି କହିବା ତା ଏବେ ।
ଦେବତା ବୋଇଲେ ଆମ୍ଭେ ଜାଣିଛୁ ଯାବେଦେ
ତାହା କହୁଅଛୁ ଏବେ ଶୁଣ ହେ ନାରଦେ ।
ଯେଉଁ ଜନ ବ୍ରହ୍ମହତ୍ୟା କରଇ ନ ଜାଣି
ପୁରାଣ ଶୁଣିଲେ ଏକା ତରଇ ସେ ପ୍ରାଣୀ ।
ନାନା ଜପ ନାନା ତପ ନାନା ବ୍ରତ କଲେ
ନ ଶୁଣିଲେ ପୁରାଣ ସେ ନ ତରଇ ଭଲେ ।
ଗୋରୁହତ୍ୟା ବ୍ରହ୍ମହତ୍ୟା ଯେ ମାତୃହରଣ
ଏ ପାତକ ଧ୍ୱଂସ ହୁଏ ଶୁଣିଲେ ପୁରାଣ ।
ପୁରାଣ ନ ଶୁଣି କୋଟି ଗଙ୍ଗା ସ୍ନାନ କଲେ
ସେ ଲୋକମତରେ ଦେବେ ଏ ରୂପେ କହିଲେ ।
ଏ କାରଣୁ ଋଷି ତୁମ୍ଭେ ଶୁଣ ହେ ପୁରାଣ
ବ୍ରହ୍ମାଙ୍କୁ ପଚାରି ବୁଝ ଆମ୍ଭ ବୋଲ ଶୁଣ ।
ଏମନ୍ତ ରୂପେ କହିଲେ ଯହୁଁ ଦେବତାଏ
ନାରଦ ସେଠାରୁ ଗଲେ ବ୍ରହ୍ମଲୋକ ଯାଏ ।
ସ୍ନାନ ସନ୍ଧ୍ୟା ତରପଣ ସାରି ମହାଋଷି
ପିତାମହଙ୍କ ଛାମୁରେ ପ୍ରବେଶିଲେ ଆସି ।
ପାଦ୍ୟ ଅର୍ଘ୍ୟ ଦେଇ ତାଙ୍କୁ ଦଣ୍ଡବତ କଲେ
ଦେବତାଙ୍କ କଥା କହି ଆଗରେ ବସିଲେ ।

ବୋଇଲେ ଭୋ ପିତା ମୁଁ ଯେ ବ୍ରହ୍ମ ହତ୍ୟା କଲି
ଦକ୍ଷ ପ୍ରଜାପତିଙ୍କର ପୁତ୍ରକୁ ମାଇଲି ।
ଏ ବିଷୟେ ତୁମ୍ଭଙ୍କୁ ତ ଜଣାଥିବ କେତେ
ସେ ଦୋଷକୁ ଦେବେ ଏବେ ଲଗାଇଲ ମୋତେ ।
ବୋଇଲେ ବ୍ରହ୍ମାଙ୍କ ମୁଖୁଁ ପୁରାଣ ଯାଇ ଶୁଣ
ତେବେ ତୁମ୍ଭର ଏ ଦୋଷ ହୋଇବ ଖଣ୍ଡନ ।
ତେଣୁ ଛାମୁକୁ ଅଇଲି ଶୁଣିବାକୁ ଗ୍ରନ୍ଥ
କି କହିବା ଅବା ତୁମ୍ଭେ ଜାଣ ମୋର ଚିତ୍ତ ।
ନାରଦ ବିନୟ ବାଣୀ ଶୁଣିଣ ବିଧାତା
ବୋଇଲେ ଯଥାର୍ଥ ତୋତେ କହିଲେ ଦେବତା ।
ପୁରାଣ ଶୁଣିଣ ହେଲେ ସବୁଦୋଷ ହରେ
କୋଟି କୋଟି ପାପ କରିଥିଲେ ପ୍ରାଣୀତରେ ।
ଏଣୁ ନାରଦ ଶୁଣ ହେ ନୃସିଂହ ପୁରାଣ
ଯେତେ ପାପଥିଲେ ତୋର ହୋଇବ ଖଣ୍ଡନ ।
ନିର୍ମଳ ମନେ ସଂକଳ୍ପ କରି ତୁହି ବସ
ଆଦ୍ୟ ପ୍ରାନ୍ତଯାଏ ବୁଝ ପୁରାଣର ରସ ।
ଶୁଣିଣ ନାରଦ ଋଷି ଯୋଡ଼ି କରପତ୍ର
ବୋଇଲେ ଭୋ ପିତା ମୋତେ କହ ଏହି ଶାସ୍ତ୍ର ।
ଏ ନୃସିଂହ ପୁରାଣର କେମନ୍ତ ମହିମା
ଆପଣ ଅର୍ଥ କଲେ ତ ସେ କଥା ଶୁଣିମା ।
ବ୍ରହ୍ମାଏ ବୋଇଲେ ତେବେ ଶୁଣ ହେ ନାରଦ
ଏ ଗ୍ରନ୍ଥର ମହିମା ତ ଅଟଇ ଅଗାଧ ।
ଅରୂପାନନ୍ଦ ବିଷ୍ଣୁ ଯେ ସ୍ୱରୂପ ପ୍ରକାଶି
ଶେଷ ନୃସିଂହ ରୂପରେ ଜନମିବେ ଆସି ।
ଲକ୍ଷ୍ମୀ ବିଭାହୋଇ ମୁର ଦାରୁଣ ମାରିବେ
ଅନେକ ଲୀଳା କରିଣ ବୈକୁଣ୍ଠକୁ ଯିବେ ।
ସମୟରେ ଏହି ବିଷ୍ଣୁ ଖମ୍ଭୁ ଅବତରି
ପୁଣି ବୈକୁଣ୍ଠେ ଆସିବେ ହରିଣ୍ୟକୁ ମାରି
ବାମନ ଅବତାରଟି ହୋଇଲେ ସେକାଳେ
ଦାନ ନେଇଣ ବଳୀକୁ ରଖିବେ ପାତାଳେ ।
ପର୍ଶୁରାମ ଶ୍ରୀରାମ ତ ହେବେ କୃଷ୍ଣ ଏହି
ଶୁଣ ହୋ ନାରଦ ଏହି ପିତାମହ କହି ।
ଏହି ନୃସିଂହଟି ଦଶ ଅବତାର ହୁନ୍ତି
ଲୀଳାରେ ମୂର୍ତ୍ତି ଏ ରଖି ବୈକୁଣ୍ଠକୁ ଯାନ୍ତି ।
ଆତ୍ମା ରୂପେ ବସନ୍ତି ସେ ପୁଣି ସର୍ବ ଘଟେ
ତାଙ୍କୁ ଯେ ନ ଜାଣେ ସେହି କୁତ୍ସିତଟି ଅଟେ ।
କୋଥି ନୋହି ସଂସାରରେ କିଏ ଅଛି ପୁଣ
କୀଟୁ ବ୍ରହ୍ମ ପରିଯନ୍ତେ ସବୁ ଏକା ପ୍ରାଣ ।
କାହାକୁ ମାରିବାକୁ କେ ହିଂସା ନାହିଁ କର
ପୁତନାର ପ୍ରାଣ ଶୋଷି କୃଷ୍ଣ ଅବତାର ।

କୋପ ନୋହିଲେ କଂସକୁ ମାରନ୍ତେ କି ରୂପେ
ଏଣୁ ସବୁ ଅବତାର ନୃସିଂହଟି ଆପେ ।
ଯେତେବେଳେ ଯାଇ ଦେହେ ରୋଗ ଜାତ ହୋଇ
ନୃସିଂହଙ୍କ ପ୍ରଭା ସେହୁ ପ୍ରତ୍ୟକ୍ଷ ଅଟଇ ।
ଏଣୁ ସେ ନୃସିଂହ ନାମ ଜୀବକୁ ପଞ୍ଚାରି
ନୃସିଂହଙ୍କ ନାମ ସତ୍ୟ ଆଉ ମିଥ୍ୟାପରି ।
ପାପ ପୁଣ୍ୟ ଦେହେ ଏହି ମଳମୂତ୍ରେ ପୂର୍ଣ୍ଣ
ଏଥେ ଔଷଧି ନୃସିଂହ ତିନିଗୋଟି ବର୍ଣ୍ଣ ।
ନୃସିଂହ ତିନିଅକ୍ଷର ତିନିମୂର୍ତ୍ତି ଜାଣ
ବ୍ରହ୍ମା ବିଷ୍ଣୁ ହର ଏହି ନାମକୁ ଧରିଣ ।
ପୃଥ୍ୱୀ ଆପ ତେଜ ବାୟୁ ଦଶଦିଗପାଳ
ଏହି ତିନି ଅକ୍ଷରୁ ସର୍ବେ ହୁନ୍ତି ଠୁଳ ।
ନ ଜାଣିଣ ପ୍ରାଣୀମାନେ ବଣା ହେଉଥାନ୍ତି
ନୃସିଂହ ଉପରେ ଅନ୍ୟଦେବତା ନାହାନ୍ତି ।
ସୁତବିତ୍ତ ଦାରା ପୁଣି ବିଷୟାଦି ଯେତେ
ଏଥିରେ ଗଞ୍ଜି ହୋଇଣ ମରୁଥାନ୍ତି ନିତ୍ୟେ ।
ଅହନ୍ତା ଅକୀର୍ତ୍ତି ଆଉ ଦୁର୍ବୁଦ୍ଧିରେ ପଡ଼ି
ଏମାନ କରନ୍ତି ସତ୍ୟ ପଥମାନ ଛାଡ଼ି ।
ମାୟାରେ ଭୁଲିଣ ନରେ ହେଉଥାନ୍ତି ମୋହ
କେହୁ ଏଥେ ଚିରକାଳ ରଖିଲାଣି ଦେହ ।
ଯେମନ୍ତ ପ୍ରକାଶ ପାଏ ଜଳେ ବିମ୍ବଫୁଟି
ତେସନ ସଂଜାତ ଦେହେବସେ ଆତ୍ମାଗୋଟି
ମନୁଷ୍ୟଙ୍କୁ ମୁହୂର୍ତ୍ତେକ ମୃତ୍ୟୁ ନାହିଁ ଛାଡ଼ି
ଯେସନେକ ରାହୁ ଘୋଟେ ଇନ୍ଦ୍ରଙ୍କ ଦଉଡ଼ି ।
ଚାହୁଁ ଚାହୁଁ ଚନ୍ଦ୍ର ଜ୍ୟୋତି ହଜିଯାଏ ଯେହ୍ନେ
ମୃତ୍ୟୁପିଣ୍ଡେ ଗ୍ରାସିଅଛି ମୃତ୍ୟୁ ହିଁ ଯେସନେ ।
ଜାଣୁ ଜାଣୁ ପ୍ରାଣୀମାନେ ହେଉଛନ୍ତି ଗଞ୍ଜି
ଧର୍ମଥିଲେ ପୁନରପି ଜନ୍ମେ ତାହା ଭୁଞ୍ଜି ।
ପୁଣ୍ୟଥିଲା ପ୍ରାଣୀମାନେ ଅବସାନ କାଳେ
ଯମର କାଳଦଣ୍ଡରେ ନ ପଡ଼ନ୍ତି କାଳେ ।
ଆବର ଧନ ଜନ ଯେ ପ୍ରାଣୀ ଲୋଭ କରେ
ଗଲାର ବେଳକୁ ଆପେ ଆପେ ଏକା ମରେ ।
ଭାଇ ଭାରିଯାଏ କୁଟୁମ୍ବ ପୁତ୍ର ପୁତ୍ରୀ ଯେତେ
ଏମାନେ ଦେହକୁ ଜାଣ କାଳଦଣ୍ଡ ନିତ୍ୟେ ।
ବସ୍ତ୍ର ଅଳଙ୍କାର ଥିଲେ ଛଡ଼ାଇ ଘେନନ୍ତି
ଧର୍ମାର୍ଥ ବିଚାରରୁ ନ ରହେ କେହୁ କତି ।
ଆପଣାର କ୍ଳେଶମାନ ଆପେ କେହି ପ୍ରାଣୀ
ମିଛକୁ ମୁହାଁସ କରି ଭୁଲଇ ନ ଜାଣି ।
କୀର୍ତ୍ତି ଅପକୀର୍ତ୍ତି ଦେହ ଅର୍ଜିଥାଇ ଯାହା
ଆନକୁ ସେ ନୁହେଁ ଭୋଗ ଆପେ ଭୁଞ୍ଜେ ତାହା ।

ଆବର ସେହି ଯେତେକ କଥା ଥାଇ କରି
ଦେହରୁ ପ୍ରାଣ ଛାଡ଼ିଲେ ଦିଅଇ ପାଶୋରି ।
ସେ ପିଣ୍ଡେ ବାଣ୍ଟ କରୁଛି ପଞ୍ଚଭୂତ ଯୋଗ
ଭୋଗ ଅନ୍ତେ ପୁଣି ହୁଏ ରଜବୀର୍ଯ୍ୟ ଯୋଗ ।
ନାରଦ ବୋଇଲେ ପିତା କହିଲ ଯା ମୋତେ
ଏ କଥା ଶୁଣି ଆଶ୍ଚର୍ଯ୍ୟ ଲାଗିଲା ତ ଚିତ୍ତେ ।
ପ୍ରାଣ ଗଲା ଉତ୍ତାରୁ ତ ପଡ଼ିରହେ ଦେହ
ରଜବୀର୍ଯ୍ୟରୁ କି ରୂପେ ପୁଣି ଆସେ କହ ।
ବ୍ରହ୍ମା ବୋଇଲେ ପୃଥ୍ୱୀରେ ପିଣ୍ଡ ସିନାମିଶେ
ଜଳରେ ଜଳ ରହଇ ଶବ୍ଦ ଆକାଶେ ।
ପବନେ ପବନ ଅଗ୍ନି ସଙ୍ଗେ ଅଗ୍ନି ରହେ
ଏ ପଞ୍ଚ ଭୋଗ କେହୁ କରୁନାହିଁ ଦେହେ ।
ଏ ପଞ୍ଚ ପଞ୍ଚଭୂତରେ ଥାଆନ୍ତି ନିମଜ୍ଜି
ରସାଦି ଭୋଗକରି ସେ ଆସନ୍ତି ଉପୁଜି ।
ପୃଥ୍ୱୀ ଫଳ ରସାଦି କେ ନ ପାଇ ଅଛି କି
ବୈଶ୍ୱାନର ତପତିରେ କେହି ନୁହେଁ ସେକି ।
ଜଳକୁ ନ ଭକ୍ଷି କେହୁ ଅଛଇ କି କହ
ପବନ ବାସନା ଘେନୁନାହିଁ କେଉଁ ଦେହ ।
ଆକାଶକୁ ନ ଲାଗି କେ କହିବ କି ଭାଷା
ଏମନ୍ତ ସେ ପିଣ୍ଡ ହୁଏ ବଳବୀର୍ଯ୍ୟ ମିଶା ।
ଶରୀରରୁ ସେ ସଞ୍ଚରି ବୀର୍ଯ୍ୟରୂପେ ଆସେ
ଆତ୍ମାପୁରୁଷକୁ ଘେନି ମାତା ଗର୍ଭେ ପଶେ ।
ଜନମ ହୋଇଲେ ପୁଣି ଲେଉଟି ମରଇ
ସେହିରୂପେ ପଞ୍ଚଭୂତେ ପିଣ୍ଡ ମିଶୁଥାଇ ।
ଏଣୁ ପିଣ୍ଡ ବ୍ରହ୍ମାଣ୍ଡଟି ଅଟେ ଜାଣ ଏକ
ଏମାନେ ଚିହ୍ନି ପାରନ୍ତି ଏକା ଜ୍ଞାନୀଲୋକ
ନାରଦ ବୋଇଲେ ସ୍ୱାମୀ କହିଲେ ଯା ମୋତେ
ଜାଣିଲଇଁ ପିଣ୍ଡ ସିନା ମିଶେ ପଞ୍ଚଭୂତେ ।
ଶରୀରରୁ ଆତ୍ମାଗୋଟି ରହେ କାହିଁ ଯାଇ
ଆଜ୍ଞାକଲେ ଏ ଆଜ୍ଞା ମୁଁ ଆଜ ଶୁଣିବଇଁ ।
କାହାକୁ ତ ଜଣାନାହିଁ ଏ ଜ୍ଞାନ ସଂସାରେ
ଏଣୁ କରି ପଚାରୁଛି ବସି ମୁଁ ଛାମୁରେ ।
ଏମନ୍ତ ବଚନ ଶୁଣି ହସି ପିତାମହ
ବୋଇଲେ କେ ହୃଦେ ଜୀବ ଚିହ୍ନିଅଛି କହ ।
ସେ ଜୀବର ମହିମା ତ ଅଲୋକ୍ୟ ଅଟଇ
ତେଣୁ ପ୍ରମାଣେ କହିବା ଶୁଣ ଏବେ ତୁହି ।
ଜୀବଗୋଟି ଯେତେବେଳେ ଦେହ ଛାଡ଼ିଯାଏ
ପରମ ପୁରୁଷ ଦେହେ ଯାଇ ଲୀନ ହୁଏ ।
ଯେସନେକ ନଦୀଜଳ ସମୁଦ୍ରରେ ପଶେ
ଜୀବଗୋଟି ସେହି ରୂପେ ପରମରେ ମିଶେ ।

ବୀର୍ଯ୍ୟକୁ ଚାହିଁଣ ପୁଣି ରହିଥାଇ ସେହି
ଯାହାକୁ ଯେଉଁ ଯୋଗ ସେ ଯୋନିକୁ ଆସଇ
ପୁଣ୍ୟବନ୍ତ ଆତ୍ମାକୁ ଯେ ଶୂନ୍ୟସ୍ଥାନ ମିଳେ
ପାପକୁ ପାପ ସ୍ଥାବରେ ଖଞ୍ଜେ ବହି ବଳେ ।
କୀଟ ପତଙ୍ଗ ଯୋନିରେ କେ ଅବା ଜନ୍ମଇ
ମରିଗଲେ ପରମରେ ପୁଣି ମିଶେ ଯାଇ ।
ପରମ ପୁରୁଷ ଆସି ପୁଣି ଜୀବ ହୁଏ
ସେ ଜୀବକୁ ଚିହ୍ନି କେହି ନ ପାରନ୍ତି ଦେହେ ।
ଆତ୍ମା ଗତାଗତ ସୀମା କେହି ନ ଜାଣନ୍ତି
ପିଣ୍ଡ କାହିଁ ଆତ୍ମା ଗଲା ବୋଲିଣ କହନ୍ତି ।
ବୁଝିବେ ଯହୁଁ ଆସିଲା ଚଳିଗଲା ତହିଁ
ଏହିରୂପେ ବେଦବର ନାରଦଙ୍କୁ କହି ।
ପିତା ପୁତ୍ରଙ୍କ ସମ୍ବାଦ ଏହିରୂପେ ବାଣୀ
କହନ୍ତି ଯେ ଶୁକମୁନି ଶୁଣ ନୃପମଣି ।
ଆପଣ ପୁଚ୍ଛିବାରୁ ତ ହେଲା ଅପ୍ରଚ୍ଛନ୍ନ
ନୋହିଲେ ଏ ଶାସ୍ତ୍ର ଥିଲା ଗୁପତେ ରହିଣ ।
ନାରଦଙ୍କୁ ବ୍ରହ୍ମା ସିନା କହିଥିଲେ କେବେ
ତୁମ୍ଭ ସକାଶରୁ ଏବେ ସମସ୍ତ ଜାଣିବେ ।
ଶୁଣିଣ ପରୀକ୍ଷ ରାଜା ହୋଇଣ ସନ୍ତୋଷ
ବୋଇଲେ ଆପଣ ଶୁଣାଇଲ ଏହୁ ରସ ।
ଅଛଇ ଏଣିକି ଆଉ ଯେ ସକଳ ଅର୍ଥ
ତାହା ମୋତେ କହ ସ୍ୱାମୀ କରି ପରମାର୍ଥ ।
ବ୍ରହ୍ମା ନାରଦ ସମ୍ବାଦ ତୁମ୍ଭକୁହିଁ ଜଣା
ଆମ୍ଭକୁ ସେ ଅଗୋଚର ପୁଣି ଅକଳଣା ।
ପରମ ପବିତ୍ର ଏହି ନୃସିଂହ ପୁରାଣ
ଦ୍ୱିଜ ପୀତାମ୍ବର ବୋଲେ ଶୁଣ ସାଧୁଜନ ।



## ନୃସିଂହ ପୁରାଣ ମହାତ୍ମ୍ୟ

ପରୀକ୍ଷିତ ବାକ୍ୟେ ଶୁକ ବୋଇଲେକ ଶୁଣ
ସବୁଗ୍ରନ୍ଥେ ସାର ଏହି ନୃସିଂହ ପୁରାଣ ।
ବ୍ରହ୍ମାଙ୍କ ଛାମୁରେ ବସି କହନ୍ତି ନାରଦ
ଆହେପିତା ଜନ୍ମିଲା ଏ ଗ୍ରନ୍ଥ କାହୁଁ ଆଦ୍ୟ ।
ବିଧାତା ବୋଇଲେ ବାବୁ ପଚାରିଲୁ ଯାହା
ବ୍ୟାସ ଆସୁ ଆସୁ ଗର୍ଭୁ ଉଚ୍ଚାରିଲେ ଏହା ।
ନୃସିଂହ ମହିମାଯାକ ପୁରାଣ ବାନ୍ଧିଲେ
ପ୍ରଥମରୁ ମୂଳବୀର୍ଯ୍ୟ ସେ ଗ୍ରନ୍ଥ ହୋଇଲେ ।
ଭୂମିରେ ପଡ଼ନ୍ତେ ପୁଣି ବାନ୍ଧିଲେ ସେ ଗ୍ରନ୍ଥ
ଶୁଣ ତୁମ୍ଭେ ବ୍ୟାସଙ୍କର କେଡ଼େ କରାମତ ।
ନାରଦ ବୋଇଲେ କିମ୍ପା ହେଲେ ସେହି ଯୋଗ୍ୟ
ବ୍ରହ୍ମା ବୋଇଲେ କହିବା ଶୁଣ ତାଙ୍କ ଭାଗ୍ୟ ।
ବାପ ମାଏ ଯେତେବେଳେ ତାଙ୍କୁ ଜାତ କଲେ
ଲଗ୍ନ ମୁହୂର୍ତ୍ତ ଧରିଣ କେଳି ଆରମ୍ଭିଲେ ।
ବିଷ୍ଣୁ ଆସି ଜନ୍ମୁ ବୋଲି ମନେ ବିଚାରନ୍ତେ
ପାଦେ ଲଗ୍ନ ଘୁଞ୍ଚିଗଲା ଆହେ ତପୋବନ୍ତେ ।
ତିନିପାଦ ମଧ୍ୟେ ରେତ ପଡ଼ିଲାକ ଖସି
ତେଣୁ କରି ବେଦବ୍ୟାସ ହୋଇଲେକ ଋଷି ।
ଲଗ୍ନ ଚାରିପାଦେ ଯେବେ ବୀର୍ଯ୍ୟ ହୋଇଥାନ୍ତେ
ସାକ୍ଷାତ ସେ ବିଷ୍ଣୁ ରୂପେ ଜନ୍ମଲଭି ଥାନ୍ତେ ।
ତିନି ପାଦ ସକାଶରୁ ବେଦବ୍ୟାସ ହେଲେ
ଶୁଣ ହୋ ନାରଦ ଏହା ବିଧାତା କହିଲେ ।
ବେଦବ୍ୟାସ କୃତ ଏହି ସବୁ ଶାସ୍ତ୍ର ଜାଣ
ଅଷ୍ଟାଦଶ ପୁରାଣ ଯେ ବାନ୍ଧିଲେକ ପୁଣ ।
ନୃସିଂହ ପୁରାଣ କଲେ ତାଙ୍କ ମଧ୍ୟେ ରାଜା
ତହିଁକି ବ୍ରହ୍ମପୁରାଣ ପାତ୍ରପଣେ ଖଞ୍ଜା ।
ମନ୍ତ୍ରୀ ପଣରେ ଖଟିଲେ ମାର୍କଣ୍ଡ ପୁରାଣ
ବଶିଷ୍ଠ ପୁରାଣ କଲେ ପ୍ରୋହିତ ବରଣ ।
ମତ୍ସ୍ୟପୁରାଣ ବେହେରା ମାହପାତ୍ର ହେଲେ
ସୈନ୍ୟବଳ ଛତ୍ର କୂର୍ମ ପୁରାଣକୁ କଲେ ।
ବରାହ ପୁରାଣ ହେଲେ ସର୍ବ ଅଧିକାରୀ
ପରିଛା କଲେ ବାମନ ପୁରାଣ ବିଚାରି ।
ବୀଣା ବଜାଇ ରହିଲେ ବାଗ୍‌ଦେବୀ ପୁରାଣ
ଲକ୍ଷ୍ମୀପୁରାଣ ସେବିଲେ ପ୍ରିୟାହୋଇ ଜାଣ ।
ପଦ୍ମପୁରାଣ ନିଯୋଗ ହେଲା ସେବାକାରୀ
ବ୍ରହ୍ମାଣ୍ଡ ପୁରାଣ ହେଲେ ସଭା ପଢ଼ିହାରୀ ।
ଏହା ଉତ୍ତାରୁ ଆବର ଯେତେକ ପୁରାଣ
ପରିଚାର ହେଲେ ରାଜା ପାଦରେ ରହିଣ ।
ଯେବଣ କାଳେ ହେଲେ ଏ ପୁରାଣ ପ୍ରକାଶ
କହିଯାନ୍ତି ବେଦବ୍ୟାସ ଲେଖନ୍ତି ଗଣେଶ ।
ନୃସିଂହ ପୁରାଣ କଲେ ଷାଠିଲକ୍ଷ ଗ୍ରନ୍ଥ
ତହୁଁ ବିଂଶଲକ୍ଷ ନେଇ ଦେଲେ ଦେବତାନ୍ତ ।
ଆବର କୋଡ଼ିଏ ଲକ୍ଷ ଦେଲେ ନାଗପୁରେ
ରଖିଲେ କୋଡ଼ିଏ ଲକ୍ଷ ମଞ୍ଚ ମଣ୍ଡଳରେ ।
ସେହୁ କୋଡ଼ିଏ ଲକ୍ଷରୁ ବାଛି ସାର ପୁଣ
କଲେ ସେ ପୁଣି ଭାରତ ଭାଗବତ ଜାଣ ।
ବାଲ୍ମୀକି ମୁନି ତହିଁରୁ କିଛିତ ନେଇଣ
ରାମାୟଣ ଗ୍ରନ୍ଥ କଲେ ଆହେ ନାରାୟଣ ।
ଋଷିମାନେ ତାହାଜାଣି କଲେ ଯେ ପଠନ
ଶୁଣି ଜନଙ୍କର ହେଲା ପାତକ ନାଶନ ।
ଏଗାର ସହସ୍ରେ ମହାଭାରତ ଲେଖନ
ପଞ୍ଚ ସହସ୍ର ଶ୍ଳୋକରେ କଲେ ନାରାୟଣ ।

ଅଷ୍ଟାଦଶ ଶ୍ଳୋକେ କଲେ ଭାଗବତ ପୁଣ
ପନ୍ଦର ସହସ୍ର ଶ୍ଳୋକେ ନୃସିଂହ ପୁରାଣ ।
ଏଣୁ ନୃସିଂହ ପୁରାଣ ପୁରାଣଙ୍କ ରାୟେ
ଶୁଣନ୍ତେ ଗୋହତ୍ୟା ବ୍ରହ୍ମହତ୍ୟା ପାପ ଯାଏ ।
ନୃସିଂହ ପୁରାଣ ଅଟେ ସାଗର ସମାନ
ଯେବଣ ଗ୍ରନ୍ଥ ଶୁଣନ୍ତେ ନ ଦଣ୍ଡେ ଶମନ ।
ନିର୍ମଳ ଚିତ୍ତେ ଶୁଣିଲେ ଏହା ଏକାବେଳେ
କୋଟି ଯୋଗ ଫଳ ନିଷ୍ଟେ ଲଭେ ତତକାଳେ ।
ସଂକଳ୍ପ କରି ଶୁଣିଲେ ପୁତ୍ର ଜାର ହୋଇ
ପୌରାଣିକଠାରେ ଏକା ଦକ୍ଷିଣାଟି ଦେଇ
କୋଟି ଜପ କୋଟି ତପ କୋଟି ବାରବ୍ରତେ
ଏଥି ଫଳ ଲଭଇ ଯେ ଶୁଣଇ ସୁଚିତ୍ତେ ।
ଯୋଘ୍ନ କୃତଘ୍ନ ପ୍ରଭୃତି ସୁରାପାନ ଦୋଷ
ପଞ୍ଚ ମହାପାତକ ଯେ ପୁଣି ହୋଏ ନାଶ ।
ଗୁରୁଦ୍ରୋହ ବାଳହତ୍ୟା ଯେ ମାତୃହରଣ
ଅଳ୍ପକେ ଶୁଣିଲେ ଏଥୁ ହୁଅନ୍ତା ଖଣ୍ଡନ ।
ଶ୍ରୀନୃସିଂହ ପୁରାଣର ଏହି ଫଳଶ୍ରୁତି
କୋଟି ଗଙ୍ଗାସ୍ନାନଫଳ ଏଥେ ପ୍ରାପ୍ତହୋନ୍ତି
ଯେଉଁ ନର ଶ୍ରୀନୃସିଂହ ପୁରାଣ ଶୁଣଇ
ଯମ କେତେବେଳେତାକୁ ଦଣ୍ଡି ନ ପାରଇ ।
ନୃସିଂହ ଗ୍ରନ୍ଥ ଶୁଣିଲେ ରଣେ ହୋଏ ଜୟ
ଆବର ହୁଅଇ ଏଥେ ଗ୍ରହରିଷ୍ଟ କ୍ଷୟ ।
ନୃସିଂହ ପୁରାଣ ଖଣ୍ଡେ ଅକାଳ ମରଣ
ଆବର ଜାତ ହୁଅଇ ତହୁଁ ତତ୍ତ୍ୱଜ୍ଞାନ ।
ଜଗତରେ ନରସିଂହ ପୁରାଣ ବିଦିତ
ମିଳଇ ଧର୍ମାର୍ଥ ମୋକ୍ଷ ଯେ ମନେ ବାଞ୍ଛିତ
କୋଟିବାର ସ୍ନାନ ଯେବେ କରି ଗଙ୍ଗାଜଳେ
ଏକା ନୃସିଂହ ପୁରାଣ ଶୁଣିଲେ ସେ ମିଳେ ।
କୋଟି ଜନ୍ମଯାଏ ତପ କରିଲେ କାଶୀରେ
କିବା ପ୍ରାତେଃ ଝାସଦେଲେ ମଣିକର୍ଣ୍ଣିକାରେ
ଆବର କୋଟିଏ ତୀର୍ଥସ୍ନାନ ଯେବେ କରି
ଏକା ନୃସିଂହ ପୁରାଣ ସେ ନୁହଇ ସରି ।
ନୃସିଂହ ପୁରାଣ ଆତ୍ମା ଆଉ ଶାସ୍ତ୍ର ପିଣ୍ଡ
ସମସ୍ତ ତୃଷାର୍ତ୍ତ ଏହୁ ଅଟେ ସୁଧାକୁଣ୍ଡ ।
ଏହା ବିଚାରିଣ ଶୁଣ ନୃସିଂହ ପୁରାଣ
ଧନ ପୁତ୍ର ବାଞ୍ଛା ସିଦ୍ଧ ଲଭିଣ କାରଣ ।
ଅପମୃତ୍ୟୁ କ୍ଷୟ ପାଏ ରିଷ୍ଟ ଶାନ୍ତି ହୋଇ
ଜ୍ୱର ରୋଗ ପ୍ରମାଦ ଯେ କ୍ଲେଶ ବିନାଶଇ ।
କର ଅନୁଗ୍ରହ ମୋତେ କମଳାବିଳାସ
ନ ପାଇ ଶରଣ ମାଗେ ପୀତାମ୍ବର ଦାଶ ।
ଶ୍ରୀନୃସିଂହ ପୁରାଣର ଏସନ ମହିମା
ଶୁଣ ହେ ବାବୁ ନାରଦ କହନ୍ତି ଯେ ବ୍ରହ୍ମା ।
ବ୍ରହ୍ମହତ୍ୟା ଦୋଷ ତାର ନିଷ୍ଟେ ଯିବ ଏବେ
ହରିହର ବ୍ରହ୍ମ ଲୟ ଶୁଣିବୁ ତୁ ଯେବେ ।
ଶୁଣି ଜ୍ଞାନ ଉଦେ ହେବ ହୃଦୟେ ତୋହର
ସ୍ଥିରମନ ହୋଇ ଶୁଣ କହେ ପୀତାମ୍ବର ।



## ପ୍ରଳୟ ବର୍ଣ୍ଣନା

ପିତାଙ୍କ ମୁଖୁ ନାରଦ ଏସନକ ଶୁଣି
ଛାମୁରେ କର ଯୋଡ଼ିଣ ପଚାରନ୍ତି ପୁଣି ।
ଭୋପିତା କହ କିରୂପେ ବିଷ୍ଣୁ ଲୟ ହେଲେ
ଭବ ବିହି ଲୟ ଦେଲେ ଆଉ କେ ରହିଲେ
ଦେବ ଦାନବ ମାନବ ଜୀବ ଜନ୍ତୁ ଯେତେ
ନ ରହିଲେ ବ୍ରହ୍ମା ବିଷ୍ଣୁ ପ୍ରଳୟ ହୁଅନ୍ତେ
ପୃଥ୍ୱୀ ଆପତେଜ ବାୟୁ ଆକାଶ ଯେ ଥିଲେ
ଭବ ବହି ପ୍ରଳୟରେ ଏମାନେ କି କଲେ ।
ସ୍ଥାବର ଜଙ୍ଗମ କୀଟ ପତଙ୍ଗ ଯେ ତୃଣ
ବନ ଗିରି ପାଟଣାଦି କି ହେଲା ତା ଭଣ
ସ୍ୱର୍ଗ ମର୍ତ୍ତ୍ୟ ପାତାଳରେ ଯେତେ ଭୂମି ସୀମା
ଏମାନେ କାହିଁ ରହିଲେ କହ ମୋତେବ୍ରହ୍ମା
ପୁତ୍ରର ପୁଚ୍ଛିବା ଶୁଣି ହସିଲେ ଆତ୍ମାଭୁ
ବୋଇଲେ ଆଚ୍ଛା କଥାଏ ପଚାରିଲୁ ବାବୁ
ଯହୁଁ ହରି ହର ବ୍ରହ୍ମଲୟ ପ୍ରାପ୍ତ ହେଲେ
ଆଉ କେ କାହୁଁ ରହନ୍ତା ସଂଶୟ ତୁ କଲେ
ସ୍ଥିତିରୁ ପ୍ରଳୟ ଜାଣ ପ୍ରଳୟ ରଚନା
ଭିନ୍ନେ ଭିନ୍ନେ କହିବା ତୁ ତାହା ଶୁଣିବୁନା
ସ୍ଥିତି ଆଗ ଶୁଣ ପଛେ ପ୍ରଳୟକୁ ଶୁଣ
ତହିଁ ଉତ୍ତାରେ କହିବା ରଚନା ଲକ୍ଷଣ ।
ଶୁଣ ସତ୍ୟ ଯୁଗର ଏ ପୁରାତନ ବାଣୀ
ସୋମକ ନାମରେ ବ୍ରହ୍ମ କ୍ଷିତିନାମ କ୍ଷୌଣୀ
ସ୍ୱୟମ୍ଭୁ ନାମରେ ବିଷ୍ଣୁ ଶ୍ରୀନାମରେ ଲକ୍ଷ୍ମୀ
ସ୍ୱତୀକ୍ଷ୍ଣୁ ନାମରେ ଇନ୍ଦ୍ରପାଳେ ସ୍ୱର୍ଗଭୂମି
ସୁବ୍ରତା ନାମେ କରଣ ହଂସ ନାମେ ସୂର୍ଯ୍ୟ
ସୁଧାଂଶୁ ନାମରେ ଚନ୍ଦ୍ର ଶ୍ରୀମନ୍ତ ଯେ ଦ୍ୱିଜ
ଶ୍ରୀକଣ୍ଠ ନାମରେ ହର ଯମ ଯେ ଶମନ
ସ୍ୱାହା ନାମେଣ ଯେ ଅଗ୍ନି ସତ୍ୟନାମେ ଧର୍ମ
ପଞ୍ଚଭୂତକୁ ଘେନିଣ ପଳାନ୍ତି ଯେ ମହୀ
ମନ ପବନ ବିନ୍ଦୁକୁ ଦେହେ ଠାବ ଦେଇ
ମନ ପବନ ବିନ୍ଦୁରୁ ଜାତ ରୂପ କର୍ମ
ମନ ରୂପିଣୀ ଯେ ମାୟା ବାୟୁରୂପୀ ବ୍ରହ୍ମ ।

ବ୍ରହ୍ମରୁ ପ୍ରକୃତି ଜାତ ପ୍ରକୃତିରୁ ବିନ୍ଦୁ
ଇନ୍ଦ୍ରେ ଭବବିନ୍ଦୁ ରଜ ବୀର୍ଯ୍ୟ ବାୟୁ ମଧୁ
ଏରୂପେ ମନପବନ ବିନ୍ଦୁ ହେଲେ ତିନି
ସତ୍ୱ ରଜ ତମ ହୋଇ ପାଳିଲେ ମେଦିନୀ
ଆତ୍ମା ହୋଇ ସମସ୍ତଙ୍କ ପିଣ୍ଡେ ପୁଣି ବସେ
ପ୍ରାଣାଦି ପବନ ଘେନି ପ୍ରକାଶଇ ନାଶେ ।
ଜୀବନ ସୂତ୍ର ଧରିଣ ପବନକୁ ଚଳେ
ପରମରୁ ଯାଇ ପୁଣି ପବନରେ ମିଳେ ।
ପବନକୁ ଧରି ଚଳିଆସେ ଗଲା ମାର୍ଗେ
ନିଃଶ୍ୱାସ ରୂପରେ ତହୁଁ ସଞ୍ଚରଇ ଅଙ୍ଗେ ।
ସେହି ନିଃଶ୍ୱାସରୁ ଆମ୍ଭେ ଷଡ଼ଗୋଟି ଲେଖି
ସଂସାରେ ଲିତାଏ କରି ତାହାଅଛୁ ଯୋଖି
ଏରୂପେ ଷାଠିଏ ଲିତା ଜାଣନ୍ତି ପ୍ରମାଣେ
ଦଣ୍ଡେ କରିଣ ତାହାକୁବେଦରେ ବଖାଣେ ।
ଏହିରୂପେ ବେନିଦଣ୍ଡ ଘଡ଼ିଏ ଦିନର
ଚାରିଘଡ଼ି ହେଲେ ଜାଣ ବୋଲାଇ ପ୍ରହର ।
ଏହିରୂପେ ପ୍ରାଣୀଙ୍କର ହୁଏ ଦିନ ଶେଷ
ରାତ୍ର ଭୋଗକଲେ ପୁଣି ହୁଅଇ ଦିବସ ।
ସେହିଠାରୁ ପ୍ରଥମରେ ବାର ଲେଖାହୋଇ
ରବି ସୋମ ମଙ୍ଗଳ ଯେ ବୁଧ ନାମେକହି ।
ବୃହସ୍ପତି ଶୁକ୍ରବାର ଆବର ଯେ ଶନି
ରବିବାରମାନ ଘେନି ଚଳଇ ମେଦିନୀ ।
ଗଣନା ହୁଅଇ ଏହି ସାତବାର ନିତି
ମାସକରେ ଅମାବାସ୍ୟା ପୂର୍ଣ୍ଣମୀ ସଂକ୍ରାନ୍ତି ।
ତହିଁଯାଇ ସାତବାରେ ଖଞ୍ଜିଲେ ଲେଉଟି
ପ୍ରତିପଦ ଦ୍ୱିତୀୟା ଯେ ତୃତୀୟା ଚଉଠି
ପଞ୍ଚମୀ ଷଷ୍ଠୀ ସପ୍ତମୀ ଅଷ୍ଟମୀ ନବମୀ
ଦଶମୀ ଯେ ଏକାଦଶୀ ଦ୍ୱାଦଶୀକୁ ଘେନି ।
ତ୍ରୟୋଦଶୀ ଚତୁର୍ଦ୍ଦଶୀ ଅମାବାସ୍ୟା ଯାଏ
ଏହିପରି କୃଷ୍ଣ ଶୁକ୍ଳ ଅମାବାସ୍ୟା ହୁଏ ।
ବେନିପକ୍ଷେ ମାସେ କହି ବାରମାସ ବର୍ଷେ
ବରଷକେ ଭୋଗ ଯାଇ ତାରା ସତାଇଶେ ।
ପ୍ରଥମେ ଅଶ୍ୱିନୀ ଦ୍ୱିଜା କୃତ୍ତିକା ରୋହିଣୀ
ମୃଗଶିରା ଆରଦ୍ରା ଯେ ପୁନର୍ବସୁ ପୁଣି ।
ପୁଷ୍ୟା ଅଶ୍ଳେଷା ଯେ ମେଘା ପୁରୁବା ଉତ୍ତରା
ହସ୍ତା ଚିତ୍ରା ସ୍ୱାତୀ ପୁଣି ବିଶାଖା ଯେ ତାରା
ଅନୁରାଧା ଜ୍ୟେଷ୍ଠା ମୂଳା ପୂର୍ବାଷାଢ଼ା ପୁଣ
ଉତ୍ତରାଷାଢ଼ା ଶ୍ରବଣା ଧନିଷ୍ଠାହିଁ ଜାଣ ।
ଶତଭିଷା ପୂର୍ବଭାଦ୍ର ଉତ୍ତରା ରେବତୀ
ଏହାକୁ ଘେନିଣ ଚନ୍ଦ୍ର ଭୋଗକରେ ନିତି ।

ବାରମାସେ ଜାଣ ବାରଲଗ୍ନ ମୂଳ ହୋଇ
ମେଷ ବୃଷ ମିଥୁନ ଯେ କକଡ଼ା ବୋଲାଇ ।
ସିଂହ କନ୍ୟା ତୁଳା ବିଛା ଧନୁ ଯେ ମକର
କୁମ୍ଭ ମୀନ ଘେନି ଲଗ୍ନ ହୁଏ ଏ ପ୍ରକାର ।
ଯୋଗକରଣ ଇତ୍ୟାଦି ଏଥିମଧ୍ୟେ ଯାଇ
ହିମ ଶିଶିର ବସନ୍ତ ଗ୍ରୀଷ୍ମକାଳ କହି ।
ବରଷା ଶରତ ମିଶି ଷଡ଼ଋତୁ ହୁଏ
ପ୍ରାଣୀମାନଙ୍କୁ ଏମାନେ କ୍ରମେ ଭୋଗ ହୁଏ ।
ସେହୁ ବାର ସେହୁ ତିଥି ସେହିଟି ନକ୍ଷତ୍ର
ସତ୍ୟ ତ୍ରେତା ଯେ ଦ୍ୱାପରକଳିଯୁଗେସେତ
ଚାରିଯୁଗେ ଏକଦିନ ହୁଅଇ ଦେବଙ୍କୁ
ଜାଣ ଗଣ୍ଡାଟିଏ ହୁଏ ମନୁଷ୍ୟମାନଙ୍କୁ ।
ବାଆଷଠି ଗଣ୍ଡା ଯୁଗ ହେଲେ ଏ ପ୍ରକାରେ
ଏକଗୋଟି ମନୁ ହୁଏ କହଇ ବେଦରେ ।
ଏହିପରି ଚତୁର୍ଦ୍ଦଶ ମନୁ ହେଲେ ଲେଖା
ବ୍ରହ୍ମାଙ୍କୁ ଦୁଇପ୍ରହର ବେଳହୁଏ ଲେଖା ।
ଅଠାଇଶ ମନୁ ହେଲେ ଦିନେ ଭୋଗ ଯାଇ
ବ୍ରହ୍ମା ଦିବସେ ଚବିଶ ବିଷ୍ଣୁରୂପ ହୋଇ ।
ସେ ଚବିଶ ରୂପ ନାମ ଶୁଣ ହୋ ନାରଦ
ପ୍ରଥମେ ମେଦିନୀ ରୂପ ହୋଇବ ଗୋବିନ୍ଦ ।
କଳପଦ୍ରୁମ ରୂପରେ ଏ ରୂପ ଧରିବେ
ଶ୍ରୀମଧୁସୂଦନ ହୋଇ ମଧୁକୁ ମାରିବେ ।
ପୃଥ୍ୱୀ ସ୍ଥାପିଲାରୁ ପୁଣି କେତେଦିନ ଅନ୍ତେ
ହଂସରୂପେ ଆସି ଜ୍ଞାନ କହିବେ ସନକେ ।
ତହୁଁ ସନକାଦି ଋଷି ହଂସକୁ ଚିହ୍ନିବେ
ପୁଣି ହୟଗ୍ରୀବ ରୂପ ଗୋବିନ୍ଦ ହୋଇବେ ।
ତହିଁ ଉତ୍ତାରୁ ଲେଉଟି ଅନ୍ୟରୂପ ହେବେ
ନରନାରାୟଣ ରୂପେ ତପସ୍ୟା କରିବେ ।
ତହୁଁ ଗୋମୁଖୀ କେଶବ ହୋଇବେ ଶ୍ରୀହରି
ମୁରାରି ନାମ ବହିବେ ସୁରାସୁର ମାରି ।
ତହିଁ ଉତ୍ତାରୁ ପୁଣି ସେ ଦତ୍ତାତ୍ରୟ ହେବେ
କପିଳ ରୂପରେ ପ୍ରଭୁ ଲେଉଟି ଜନ୍ମିବେ ।
ମାତାଙ୍କୁ ଜ୍ଞାନ କହିଣ ଯିବେ ନିଜ ସ୍ଥାନ
ଦାମୋଦର ରୂପ ପୁଣି ହେବେ ଭଗବାନ ।
ପୁନରପି କେତେଦିନ ଋଷଭ ହୋଇବେ
ନାରଦ ଋଷି ଅଂଶରେ ଆପେ ଉପୁଜିବେ ।
ପୃଥିବୀ ରୂପେ ପ୍ରତ୍ୟକ୍ଷ ପୁଣି ହେବେ ଜନ୍ମ
ବେଦବ୍ୟାସ ହୋଇ ଶାଖା କରି ଶାସ୍ତ୍ରଧର୍ମ ।
ପୁଣି ଚକ୍ରପାଣି ରୂପେ ତାରିବେ ସେ ଗଜ
ବାଳଖିଲ୍ୟାଙ୍କ ଆତଙ୍କହେବେ ଚତୁର୍ଭୁଜ ।

ମୀନ ଅବତାରେ ପୁଣି ଶଙ୍ଖାକୁ ମାରିବେ
କୂର୍ମ ଅବତାର ପ୍ରଭୁ ଲେଉଟି ହୋଇବେ ।
ତହିଁପରେ ପୁନରପି ସେହି ପୁଣ୍ୟ ଶ୍ଳୋକ
ମାରିବେ ବରାହରୂପ ହୋଇ ହିରଣାକ୍ଷ ।
ନୃସିଂହବତାର ପୁଣି ଶ୍ରୀହରି ହୋଇବେ
ବାମନ ରୂପକୁ ଧରି ବାଳୀକି ଚାପିବେ ।
ଜିଣିବେ ସହସ୍ରାର୍ଜ୍ଜୁନ ପର୍ଶୁରାମ ହୋଇ
ଶ୍ରୀରାମ ରୂପେ ମାରିବେ ରାବଣକୁ ଯାଇ ।
ପୁଣି କୃଷ୍ଣର ଅବତାର ଶ୍ରୀହରି ହୋଇବେ
ବୌଦ୍ଧ ଅବତାରେ ନୀଳଗିରିରେ ବସିବେ ।
ତହିଁ ଉତ୍ତାରେ କଳକୀ ଅବତାର ହେବେ
ଶୁଣ ହେ ନାରଦ ଏହା କହନ୍ତି ଦଇବେ ।
ପୃଥ୍ୱୀ ରକ୍ଷାପାଇଁ ହ୍ୱନ୍ତି ଏତେ ରୂପ ଜାଣ
ଲୀଳା ସାରି ବୈକୁଣ୍ଠକୁ ଆସୁଥାନ୍ତି ପୁଣ ।
ଅଶେଷ ଜୀବଙ୍କ କାୟେ ଆତ୍ମା ପୁଣ ହୋନ୍ତି
ପ୍ରଳୟ ପର୍ଯ୍ୟନ୍ତ ଜନ୍ମ ମୃତ୍ୟୁ ଲଭିଥାନ୍ତି ।
ପ୍ରଳୟ ମହିମା ଏବେ କହିବାକ ଶୁଣ
ଯୁଗାନ୍ତକାଳେ ସମସ୍ତେ ଲଭନ୍ତି ମରଣ ।
ନାଦର ବୋଇଲେ ସ୍ୱାମୀ ପ୍ରଳୟ କାଳରେ
ପ୍ରଥମରୁ କିଏ ମଲା କହ ମୋ ଆଗରେ ।
ଗୋବିନ୍ଦଙ୍କ ରୂପ ଏବେ ଶୁଣିଲି ଅପୂର୍ବ
କିରୂପେ ପ୍ରଳୟ ହୁଏ କୁହନ୍ତୁ ହେ ଦେବ ।
ବ୍ରହ୍ମା ବୋଇଲେ ପ୍ରଥମେ ଇନ୍ଦ୍ରନାଶହେଲେ
ଇନ୍ଦ୍ର ମରିବାରୁ ମେଘ ଜଳ ନ ବର୍ଷିଲେ ।
ଜଳ ବୃଷ୍ଟି ନ କରନ୍ତେ ଜନ୍ତୁ ଗଲେ ନାଶ
ଜନ୍ତୁଏ ମରନ୍ତେ ଧୂମ ଉଠିଲା ଆକାଶ ।
ଆକାଶୁଁ ଧୂମ ହେବାରୁ ଘୋଟିଲା ତିମିର
ଅନ୍ଧକାର ଉତପତ୍ତି ହୋଇଲା ସଂସାର ।
ସଂସାରର ଉତପାତ ଦେଖି ପଞ୍ଚଭୂତେ
ସଭାକରି ବସିଣ ସେ ଭାଳନ୍ତି ଏକାନ୍ତେ ।
ବୋଇଲେ ଇନ୍ଦ୍ରତ ମଲା କି କରିବା ଆମ୍ଭେ
ଜନ୍ତୁମାନେ ତ ସଂସାରେ ନାଶଗଲେସର୍ବେ ।
ପୃଥ୍ୱୀଶୁଣି ବୋଇଲେ ମୁଁ ତେବେହେବି ରାଜା
କରିବେ ସମସ୍ତେ ଏକା ମୋର ପାଦପୂଜା ।
ପାଳିବଇଁ ସଂସାର ମୁଁ ଏବେ ଛନ୍ତି ଯେତେ
ନୋହିଲେ ପ୍ରଳୟ ହେବ ଜାଣିଥାଅସତେ ।
ତାହାଶୁଣି ଚାରିଭୂତେ ଆରମ୍ଭିଲେ ଗୋଳ
ଆପେଆପେ ମନକୁ ସେ କାଢ଼ିଲେକନ୍ଦଳ ।
ଅଗ୍ନି ବୋଇଲେ କାହିଁକି ଥିବିତୋତେସେବି
ତୁ ଯେବେ ପାଳିବୁ ମୁହିଁସବୁ ପୋଡ଼ିଦେବି ।
ପବନ ଉଠିଲା ତାହା ଶୁଣି କୋପ ହୋଇ
ବୋଇଲା ଦୁହିଁଙ୍କି ଆଜ ମାରିବି ଉଡ଼ାଇ ।
ଅଣଚାଶ ରୂପଯାକ ଧରି ଏକାବେଳେ
ତୁମ୍ଭ ଦୁହିଁଙ୍କର ବପୁ ଭାଙ୍ଗିବଇଁ ବଳେ ।
ବହ୍ନିମହୀ ପବନର କଥା ଶୁଣ ଜଳ
ବୋଇଲେ ତୁମ୍ଭର ମୁହିଁ ପୂରାଇବି କାଳ ।
ବସିବି ଉପରେ ମାଡ଼ି ଜଳାର୍ଣ୍ଣବ ହୋଇ
ଆକାଶ ଉଠିଲା ତାହା ଶୁଣି କୋପବହି ।
ପୃଥ୍ୱୀ ଅଗ୍ନି ବାୟୁ ଜଳ ଚାରିଙ୍କୁ ଚାହିଁଲା
କାହିଁପାଇଁ ପାଟିଗୋଳ ହେଉଛି ବୋଇଲା
ମୋର ତୁଲେ ବାଦ କରି ନ ପାରିବ ଜଣେ
କେବଳ ସଂସାର ନାଶ କଲ ଅକାରଣେ ।
ଜଳ ବୋଇଲେ ଆକାଶ କଲୁ ଏତେ ଆଣ୍ଟ
ମୁଁ ମାଡ଼ି ପଡ଼ିଲେ ତୋର ସରିଯିବନାଟ ।
ଆକାଶ ବୋଇଲା ମୋର ତଳେ ଥାଇକରି
ପାଷାଣ୍ଡ ପରାୟ କଥା କହୁଛି ହେ ବାରି ।
ଜଳ ବୋଇଲା ଦେଖିବ ସମୁଦ୍ରକୁ ଆଣି
ତିନିପୁରଯାକ ମାଡ଼ିପଡ଼ିବ ଏକ୍ଷଣି ।
ଆକାଶ ବୋଇଲେ ବୁଝିବା ଏବେ କରାମତ
ଆପ ବୋଲେ ପୃଥ୍ୱୀ ଯେବେ କରିବରାଜତ୍ୱ
ଅଗ୍ନି ପୋଡ଼ିଦେବ ଯେବେ ବାୟୁ ଉଡ଼ାଇବ
ତେବେ ବୁଝ ସିନା ମୋର ପ୍ରତିଜ୍ଞାବଢ଼ିବ ।
ଜଳ କଥା ଶୁଣି ଶୂନ୍ୟେ ହସ ହସ ହେଲା
ତୁହି ବଢୁଥିଲେ ମୁହିଁ ବଢ଼ିବି ବୋଇଲା ।
ଏମୋହର ଶରୀର ତ ଅକଳନା ଅଟେ
ଭବ ବିହି କଳି ଯହିଁ ନ ପାରନ୍ତି ଭେଟେ ।
ଆକାଶର ବାକ୍ୟ ଶୁଣି ମନେ ପାଞ୍ଚେ ଜଳ
ପ୍ରକୃତ କଥା କହିଲା ଏ ଶୂନ୍ୟମଣ୍ଡଳ ।
ପୃଥ୍ୱୀ ଅଗ୍ନି ପବନ ଏ ସିନା କ୍ଷୟ ଯାନ୍ତି
ଆମ୍ଭେ ହେଲେ ପ୍ରଳୟର ରହୁ ବେନିମୂର୍ତ୍ତି ।
ଜଳ ଆକାଶ ଏ ବେନି ନ ଯାଏଟି କ୍ଷୟେ
ଏମନ୍ତେ ବୋଇଲେ ପୃଥ୍ୱୀ କମ୍ପମାନ ହୋଏ
ଜଳ ଶୂନ୍ୟଙ୍କ ବିଚାରେ ସହି ନ ପାରିଲା
ଆପେ ଆପେ ରାଜା ହୋଇ ସଂସାରପାଳିଲା
ପୃଥ୍ୱୀ ପାଳିବାର ଦେଖି ଅଗ୍ନି କଲା କୋପ
ଠାବେ ଠାବେ ବ୍ୟାପିଗଲା ଧରି ବିଶ୍ୱରୂପ ।
ଘୋଟିଗଲା ଯେତେବେଳେ ପ୍ରଚଣ୍ଡ ଅନଳ
ଜଳିଲା ପାଟଣା ବନଗିରି ଅନ୍ତରାଳ ।
ପବନ ତାହା ଦେଖିଣ ସହି ନ ପାରିଲା
ଅଣଚାଶ ରୂପଧରି ପ୍ରଚଣ୍ଡେ ବହିଲା ।

ପବନକୁ ଦେଖି ଜଳ ଉଠେ କୋପ ହୋଇ
ଗର୍ଜି ବାହାରିଲା ସଙ୍ଗେ ସମୁଦ୍ରକୁ ନେଇ ।
ପୃଥ୍ୱୀ ବାୟୁ ଅଗ୍ନିପରେ ମାଡ଼ିଣ ପଡ଼ିଲା
ଉପରକୁ ଲକ୍ଷେପଦ୍ମ ଯୋଜନ ବଢ଼ିଲା ।
ବନ ପାଟଣା ପର୍ବତ ସବୁ ଗଲେ ମିଳି
ତାହାଦେଖି ଦେବତା ଏ ମନେମନେ ଭାଳି ।
ପ୍ରଳୟ ହୋଇଲା ବୋଲି ବିଚାରିଲେ ଚିତ୍ତେ
ମିଳିଲେ ସର୍ବେ ଏକତ୍ର ହୋଇ ଶୂନ୍ୟପଥେ
ଦେବତାମାନଙ୍କୁ ଦେଖି ପୃଥ୍ୱୀ ଗଲା ଭାଜି
ପବନ ବହୁଥିଲା ଯେ ରହିଲା ନିମର୍ଜ୍ଜି ।
ରହିଲେ ଯେ ଚନ୍ଦ୍ର ସୂର୍ଯ୍ୟ ଅଗ୍ନି ହେଲେଲୀନ
ଗ୍ରହମାନେ ଗଲେ ମଧ ଘେନି ଯୋଗଲଗ୍ନ
ଦଶଦିଗପାଳ ଋଷି ଶ୍ରୀହରି ସହିତେ
ଗନ୍ଧରବ ବିଦ୍ୟାଧର ପିଶାଚାଦି ଯେତେ ।
ବେଦ ପୁରାଣାଦି ଧର୍ମ କର୍ମ ପିତୃଗଣ
ସମସ୍ତେ ମିଳିଲେ ଯାଇ ବ୍ରହ୍ମା ଅଗ୍ରତେଣ ।
ବୋଇଲେ ଭୋଦେବ ଆମ ସୃଷ୍ଟି ନାଶହେଲା
ସ୍ୱର୍ଗ ମର୍ତ୍ତ୍ୟ ପାତାଳ ଏ ସବୁ ପୋଡ଼ିଗଲା
ତେଣୁ ତୋତେ କହି ଆମ୍ଭେ ପଶିଲୁ ଶରଣ
ରଖବୋଲି କହି ସର୍ବେ ଛାଡ଼ିଲେ ପରାଣ ।
ଦେବଙ୍କ ପ୍ରଳୟ ଦେଖି ମେରୁଗଲା ବୁଡ଼ି
ପଙ୍କ ହୋଇ ମିଳିଗଲା ଜଳ ମଧ୍ୟେ ପଡ଼ି ।
ଏହି ପ୍ରଳୟ ପରାୟେ ଆତ୍ମାର ମରଣ
ଯେହୁ ମରିଯାଏ ତାକୁ ପ୍ରଳୟଟି ଜାଣ ।
ଯେତେବେଳେଯାରପିଣ୍ଡୁ ଆତ୍ମାଗୋଟି ଯାଇ
ଏହି ରୂପେ ବାୟୁଅଗ୍ନି ଜଳେ ଲୟହୋଇ ।
ପ୍ରଥମରେ ଜ୍ୱାଳା କରେ ମଧ୍ୟେ କରେ ଶୀତ
ପ୍ରାନ୍ତରେ ବହିଲେ ଜଳ ବୋଲି ସନ୍ନିପାତ
ପିଣ୍ଡ ବ୍ରହ୍ମାଣ୍ଡ ଏ ଦୁହେଁ ବିଚାରିଲେ ଏକା
ଶୁଣ ହେ ନାରଦ ଏହି ପ୍ରଳୟର ଟୀକା ।
ଦେବଙ୍କ ପ୍ରଳୟ ହେଲା ଯେତେବେଳେଜାଣ
ବ୍ରହ୍ମାଏ ଯୋଗରେ ବସି ଜାଣିଲେ ତକ୍ଷଣ ।
ପ୍ରଳୟ ହୋଇଲା ବୋଲି ବିଚାରିଲେ ବସି
ଦେଖିଲେ ସେ ଆପଣାର ଆୟୁ ଖଡ଼ି ଘଷି ।
ବାଆସ୍ତରୀ ଗଣ୍ଡା ଯୁଗେ ଏକ ମନୁ ଭାଷେ
ଅଠାଇଶ ମନୁରେ ଯେ ବ୍ରହ୍ମାଙ୍କୁ ଦିବସେ ।
ଏ ରୂପେ ତିରିଶ ଦିନ ଆବର ଷାଠିଏ
ବ୍ରହ୍ମାଙ୍କୁ ଭୋଗ ହୁଅଇ ବରଷ ଗୋଟିଏ ।
ଏହିରୂପେ ଶଏ ଆଠ ବରଷ ପୂରନ୍ତେ
ବ୍ରହ୍ମା ଜାଣିଲେ ପ୍ରଳୟହେଲା ଆସି ମୋତେ

ପରମାୟୁ ପୂରିଲେ ନ ରହେ ଆଉ ଦେହ
ହଂସକୁ ବୋଇଲେତୁହିବେଗେ ମୋତେକହ
ଶୁଣି ହଂସ ତାକୁ ପୃଷ୍ଟେ ବହିଲା ତତ୍‌କ୍ଷଣେ
ପିଠି ଉପରେ ବସାଇ ଉଡ଼ିଲା ଗଗନେ ।
ଆହାର ନାହିଁ ତାହାର ନିଦ୍ରା ନାହିଁବେଗେ
ମେଲଛ କଳପା ଯାଏ ଉଡ଼ିଲା ଏ ଭାବେ ।
ଉଡ଼ି ଉଡ଼ି ପାଇଲା ସେ ଶ୍ରମ ଯେତେବେଳେ
ତାଙ୍କୁ ପାଲଟିକହିଲା ଚାହିଁ ବେନି ଡୋଳେ
ଭୋ ପଦ୍ମ ଯୋନି ପାଇଲି ମୁହିଁ ବଡ଼ ଦୁଃଖ
ଉଡ଼ି ଉଡ଼ି ଖୁରା ମୋର ଛାଡ଼ିଗଲା ଦେଖ ।
ତୁମ୍ଭେ ଏବେ ନ ରଖିଲେ ପଡ଼ିବୁଟି ଜଳେ
ଜାଣିଲି ବ୍ରହ୍ମ ପ୍ରଳୟ ହେଲା ଏତେବେଳେ
ଏତେକ କହିଣ ହଂସ ଛାଡ଼ିଲା ପରାଣ
ବ୍ରହ୍ମାଙ୍କ ଶରୀରେଯାଇ ହୋଇଲା ସେ ଲୀନ ।
ହଂସ ମୃତ୍ୟୁ ଦେଖି ପିତା ହେଲେ ଅନ୍ତରାଳ
ନାରାୟଣ ଦେବତାଙ୍କୁ ଚିନ୍ତିଲେ ତତ୍କାଳ ।
ଜାଣି ନାରୟଣ ସ୍ୱାମୀ ଆସି ବିଜେ କଲେ
ବ୍ରହ୍ମାଙ୍କ ମହାପ୍ରଳୟ ଜଳେ ଦେଖାଇଲେ
ମୃତ୍ୟୁକାଳରେ ବିଷ୍ଣୁଙ୍କୁ ବ୍ରହ୍ମା ନେତ୍ରେ ଦେଖି
ଯାବତ ଜାଣନ୍ତି ଚିତ୍ତ ପାଦ ପଦ୍ମେ ରଖି ।
ଭୋ ସ୍ୱାମୀ ବହୁ ପ୍ରଳୟ ହେଲା ଜାଣିଥାଅ
ମୋତେ ଶରଣ ସମ୍ଭାଳି ରଖ ତୁମ୍ଭ ଦେହ ।
ଏତକ କହି ଛାଡ଼ିଲେ ବ୍ରହ୍ମା ନିଜ ଦେହୀ
ଶ୍ରୀବିଷ୍ଣୁ ନାଥ ଶରୀରେ ଲୀନ ହେଲେ ଯାଇ
ବ୍ରହ୍ମା ମୁଖୁ ଶୁଣି ହରି ପ୍ରଳୟର ଭୟେ
ଗରୁଡ଼କୁ ବୋଇଲେ ତୁ ବହ ମୋରକାୟେ
ଆଜ୍ଞା ପାଇଣ ଗରୁଡ଼ ବିସ୍ତାରିଲା ପିଠି
ବିଷ୍ଣୁଙ୍କୁ ବହି ଉଡ଼ିଲା ଯୁଗ ଲକ୍ଷଗୋଟି ।
ତଦନ୍ତେ ତାଙ୍କୁ ଗରୁଡ଼ ନ ପାରିଲା ବହି
ଚାରି ଚରଣ ଛିଡ଼ନ୍ତେ ବିଷ୍ଣୁଙ୍କୁ ଜଣାଇ ।
ବୋଇଲେ ଭୋସ୍ୱାମୀ ମୋର ହେଲାଟି ପ୍ରଳୟ
ଶ୍ରୀମୁଖ ଚାହିଁ କହୁଛି ଆହେ ଦୟାମୟ ।
ଚରଣାରବିନ୍ଦେ ନେଇ କର ମୋତେ ଲୀନ
ଏତେକହି ଗରୁଡ଼ ଯେ ଛାଡ଼ିଲା ଜୀବନ ।
ବାହନର ମୃତ୍ୟୁ ଦେଖି ବିଷ୍ଣୁ କଲେ ଚିନ୍ତା
ତତକ୍ଷଣେ ସୁମରିଲେ ଶ୍ରୀରୁଦ୍ର ଦେବତା ।
ବିଷ୍ଣୁଙ୍କ ଆକୁଳ ଜାଣି ଅଇଲେକ ଶିବ
ଦେଖିଲେ ଭାସୁଛି ଜଳେ ଗରୁଡ଼ର ଶବ ।
ଶ୍ରୀନାରାୟଣ ଆରତେ ହେଉଛନ୍ତି ଭ୍ରମି
ଶିବବୋଇଲେ କାହିଁକି ଡର ଅନ୍ତର୍ଯ୍ୟାମୀ ।

ବିଷ୍ଣୁ ବୋଇଲେ ସେ କଥା କହିବା ହେ ଶୁଣ
ହରି ହରି ବ୍ରହ୍ମା ଆମ୍ଭେ ତିନି ଏକା ପ୍ରାଣ ।
ବ୍ରହ୍ମାର ପ୍ରଳୟ ହେଲା ହେଲା ମୋ ପ୍ରଳୟ
ତୁମ୍ଭେ ତ ମୋତେ ସମ୍ଭାଳି ରଖ ନିଜକାୟ
ଏମନ୍ତ ବୋଲିଣ ହର ପ୍ରାଣ ସମର୍ପିଲେ
ବେନି ଆତ୍ମା ଧରି ଶିବ ଶରୀରେ ପଶିଲେ ।
ଶିବଙ୍କ ଆତ୍ମାରେ ବ୍ରହ୍ମା ବିଷ୍ଣୁ ଆତ୍ମାଆସି
ତିନିହେଁ ଏକ ହୋଇଣ ଗଲେ ଜାଣ ମିଶି ।
ଗୋବିନ୍ଦ ପ୍ରଳୟ ହେଲେ ଜାଣସେକାଳରେ
ଶିବଙ୍କ ଆତଙ୍କ ଜାଣ କହିଲେ ନ ସରେ ।
ମହାପ୍ରଳୟ ହୋଇଲା ବିଚାରନ୍ତେ ଚିତ୍ତେ
ବୃଷଭକୁ ବୋଇଲେ ତୁ ବେଗେବହମୋତେ
ଆଜ୍ଞା ପାଇଣ ବୃଷଭ ଈଶ୍ୱରଙ୍କୁ ବହି
ପହଁରିଲା ହଂସପ୍ରାୟ ଜଳମଧେ ଯାଇ ।
ଅୟୁତ କୋଟି ଯୁଗ ସେ ଜଳେ ପହଁରିଲା
ଶରୀର ପୀଡ଼ା କରନ୍ତେ ହରିଙ୍କୁ କହିଲା
ପ୍ରଳୟ ଘୋଟିବାରୁ ସେ ନ ପାରିଲା ସହି
ରୁଦ୍ରଙ୍କୁ ବୋଲେ ସମ୍ଭାଳ ଏବେ ତୁମ୍ଭଦେହୀ
ଜଳେ ଭାସୁ ଭାସୁ ମୋର ପୁରିଲାକ ଆୟୁ
ଜୀବ ପରମଙ୍କୁ ଘେନି ଗଲା ନାଶ ବାୟୁ ।
ବ୍ରହ୍ମ ଶରୀରକୁ ଆତ୍ମା ଗଲା ମୋର ଚଳି
କହି ବୃଷଭ ପଡ଼ିଲା ଜଳମଧେ ଢଳି ।
ଈଶ୍ୱର ତାହା ଦେଖିଣ ହୋଇଲେ ଆକୁଳ
ବୋଇଲା ନିଶ୍ଚେ ପୂରିଲା ମୋର ଏବେକାଳ
ଅଥଳ ଜଳ ତହିଁରେ ନ ଛୁଅଇ କଳି
ବୃଷଭ ହେଲେ କେମନ୍ତ ରହନ୍ତା ସମ୍ଭାଳି ।
ମୋତେ ନ ଦେଖିଣ ମାଡୁଅଛି ଏତେ ଡର
ଏ ପ୍ରଳୟ ଭିତରୁ ଭୋ ଧର୍ମ ପାରିକର ।
ଏହିରୂପେ ସଦାଶିବ କରନ୍ତେଣ ଚିନ୍ତା
ତକ୍ଷଣ ମିଳିଲେ ଆସି ଶ୍ରୀ ଧର୍ମଦେବତା ।
ଈଶ୍ୱର ବୋଇଲେ ସ୍ୱାମୀସମ୍ଭାଳହେମୋତେ
ପ୍ରଳୟ ବା ତୁମ୍ଭଙ୍କୁ କି କରି ଆମ୍ଭ ଅନ୍ତେ ।
ଏତେକ ବୋଲି ଛାଡ଼ିଲେ ଶିବ ପିଣ୍ଡପ୍ରାଣ
ଧର୍ମ ପୁରୁଷର ଦେହେ ହେଲା ଯାଇ ଲୀନ
ଈଶ୍ୱରେ ମାରି ପ୍ରଳୟ କାଳ ଚାହୁଁଥିଲା
ଧର୍ମକୁ ଦେଖିଣ ପୁଣି ମାନି ସେ ପଡ଼ିଲା ।
ସେ ଧର୍ମ ରହିଲେ ଶତକଳ୍ପ ଜଳେ ବୁଡ଼ି
ପ୍ରଳୟ ଘୁଞ୍ଚିବାରୁ ସେ ଉଠିଲା ବାହୁଡ଼ି ।
ପରମାୟୁ ଦେଖି ନିଜ ପ୍ରାଣତ୍ୟାଗ କଲେ
ନିରଞ୍ଜନକୁ ସୁମରି ଆତ୍ମାକୁ ଛାଡ଼ିଲେ

ସେହି ଆତ୍ମା ନିରଞ୍ଜନେ ହୋଇବାରୁ ଠୁଳ
ପରମହଂସ ଚାହିଁ ସେ ରହି କେତେକାଳ ।
ପିଛଡ଼ା ନ ପକାଇ ସେ ଏକ ଦୃଷ୍ଟେ ରହି
କାଳେ ପୁଣି ପ୍ରଳୟକୁ ନ ପାରିଲେ ସହି ।
ଆତଙ୍କରେ ନିରାକାର ବିଷ୍ଣୁ ସୁମରିଲେ ।
ଜାଣିଣ ସେ ମହାପ୍ରଭୁ ତହିଁ ବିଜେକଲେ ।
ଆସି ଚକ୍ରାକାର ଦେଲେ ପାଦକୁ ପ୍ରକାଶି
ଶୂନ୍ୟକୁ ପ୍ରଳୟ ଆଉ ନ ପାରିଲା ଗ୍ରାସି ।
ସେପାଦରେଜ୍ୟୋତିଦିଶେକୋଟିସୂର୍ଯ୍ୟ ପ୍ରାୟ
ଚକ୍ରକାରେ ରହି ବ୍ରହ୍ମନିଶି କଲ କ୍ଷୟ ।
ସେହିକାଳେ ତିମିରକୁ ବୋଲି ବ୍ରହ୍ମନିଶି
ଏ ଭାଷାର ଅର୍ଥଗୋଟି କାହାକୁ ନ ଦିଶି ।
ବ୍ରହ୍ମନିଶି କିଏ ବୋଲି ପଚାରନ୍ତି ଯାହା
ପ୍ରତ୍ୟକ୍ଷରେ ନିରଞ୍ଜନ ଦେଖିଲେତ ତାହା ।
ନିରାକାରଙ୍କୁ ଅନାଇଁ ବୋଇଲେ ସେ ପୁଣ
ଘୋଟିଲା ପ୍ରଳୟ ଏବେ ଛାଡ଼ିଅଛି ପ୍ରାଣ ।
ଏତେ କହି ନିରଞ୍ଜନ ଆତ୍ମା ବିସର୍ଜିଲେ
ଶ୍ରୀନିରାକାର ପ୍ରଭୁଙ୍କ ପାଦେ ଲୀନ ହେଲେ ।
ନିରଞ୍ଜନ ମୃତ୍ୟୁ ଅନ୍ତେ ଏ ସଂସାର ତୁଚ୍ଛା
ଯାବତ ଆତ୍ମା ହୋଇଲେ ଏକଠାବେ ସଞ୍ଚା
ବ୍ରହ୍ମ ଶରୀରରେ ସର୍ବେ ମିଶିଣ ରହିଲେ
ଶୁଣ ନାରଦ ଏମାନେ ଏ ରୂପରେ ମଲେ ।
ଯେତେବେଳେ ନିରକାର ଏକାଛନ୍ତି ଜାଣ
ସେ ମଧ ପ୍ରଳୟ କଲେ କହିବା ତା ଶୁଣ ।
ସେ ନିରାକାର ଅନନ୍ତ କୋଟି କୋଟି କଳ୍ପ
ସମସ୍ତଙ୍କୁ ରଖି ଗର୍ଭେ ହେଲେ ଏକରୂପ ।
ଦିବସ ନାହିଁ ତାହାଙ୍କୁ ରାତ୍ର ନାହିଁ ଜାଣ
ଯୁଗମନ୍ୱ କଳ୍ପବୋଲି ନ ଜାଣନ୍ତି ପୁଣ ।
ଜଳ ସ୍ଥଳ ଆକାଶରେ ଅଛିଦ୍ରେ ସେ ପୂରି
ସେ ଠୁଳ ପୁରୁଷ ଦେହେ ଯାବତ ସଂହାରି
ଏହିମତି କେତେକାଳ ଭୋଗ ହୋଇଯାନ୍ତେ
ନିରାକାରଙ୍କୁ ପ୍ରଳୟ ଲାଗିଲାକ ପ୍ରାନ୍ତେ ।
ପ୍ରଳୟ ଲାଗିବାରୁ ସେ ନ ପାରିଲେ ସହି
ବିରାଳମ୍ଭ ବିଷ୍ଣୁ ଚିନ୍ତା କଲେ ଭୟପାଇ ।
ନିରାକାର ନିର୍ବିକଳ୍ପ ନିରଞ୍ଜନ ହରି
ନିରାକାର ଚିନ୍ତିବାରୁ ତହିଁ ବିଜେକରି ।
ଦୃଶ୍ୟହୋଇ ବୋଇଲେକ ଡରୁ ତୁ କିମ୍ପାଇ
ନିରାକାର ବୋଲେ ମୃତ୍ୟୁ ଦାଢ଼େ ପଡ଼ିଲଇଁ
ସମସ୍ତଙ୍କୁ ଏ ପ୍ରଳୟ ଦେଲାଣି ତ ଭକ୍ଷି
ଆଜିଯାଏ ଏ କେଉଁପରି ଥିବ ମୋତେ ରଖି ।

ଏବେ ଆସି କାଳମୋତେ ଘୋଟିଲାଣି ଜାଣ
ଏହା କହି ନିରାକାର ଛାଡ଼ିଲେକ ପ୍ରାଣ ।
ନିରାଲମ୍ବ ବିଷ୍ଣୁଙ୍କର ଦେହେ ଲୀନ ହେଲେ
ସେଠାରୁ ଜଳମାନଙ୍କ ବଳ ଭାଙ୍ଗିଦେଲେ ।
ବଳ ଭାଙ୍ଗନ୍ତେ ଜଳର ପ୍ରଳୟ ଘଟିଲା
ନିରାଲମ୍ବ ବିଷ୍ଣୁଙ୍କର ଦେହେ ଲୀନ ହେଲା ।
ଜଳ ଯିବା ଦେଖି ଶୂନ୍ୟ ତହିଁ ଗଲା ପଶି
ନିରାଲମ୍ବ ବିଷ୍ଣୁ ଦେହେ ରହିଲା ସେ ମିଶି ।
ଜଳ ଶୂନ୍ୟେ ହଜିଯାନ୍ତେ ନାହିଁ ଆଉ କେହି
ନିରାଲମ୍ବ ରହିଲେ ସେ ଅଣାକ୍ଷର ହୋଇ
ବିନ୍ଦୁ ପ୍ରମାଣେ ମଙ୍ଗଳ ଆକାରେ ବ୍ୟାପିଲେ
ସୁଦର୍ଶନ ଚକ୍ରପ୍ରାୟେ ଆକୃତି ବହିଲେ ।
କୋଟି ପଦ୍ମ କାଠିଯାଏ ରହି ସ୍ଥିର ହୋଇ
ଅକ୍ଷର ଦୁଇଟି ପିଠି ଚରଣ ଅଟଇ ।
ସେହି ଦୁଇ ଚରଣର ମଧ୍ୟଭାଗଯାକ
ମହାଶୁକ୍ଳ ଶରୀର ସେ ଅଟଇ ଆଲୋକ୍ୟ ।
ପାଦକେ ଶବଦ ବ୍ରହ୍ମପାଦେ ନିଃଶବ୍ଦଟି
ଶୁଣ ହେ ବାବୁ ନାରଦ କହେ ପରମେଷ୍ଠୀ ।
ଯେତେବେଳେ ଶୂନ୍ୟଜଳ ନିରାକାର କଲେ
ପରଂବ୍ରହ୍ମ ମିଶି-ଶୁକ୍ଳ ଦେହେ ନିମଜ୍ଜିଲେ ।
ନିଶବଦ ବ୍ରହ୍ମଯୋଗୁ ଶୁକ୍ଳେ ପ୍ରକାଶିଲା
ଚିତ୍ରପ୍ରତିମା ସଂଜାତେ ଲେଉଟି ପଡ଼ିଲା ।
ଅକ୍ଷର ଲେଉଟିଯାନ୍ତେ ଶବ୍ଦ ହେଲାଜାତ
ହକାର କକାର ସେହି ଶବଦଟି ତାତ ।
ସକାର ଜୀବ ଅଟଇ ପରମ ହକାର
ପରମ କହିଲେ ବୁଝାଏଟି ନିରାକାର ।
ସେ ନିରାକାର ବ୍ରହ୍ମର ପ୍ରକାଶ ଯେ କାଳେ
ଶୂନ୍ୟତା ଗର୍ଭରୁ ଆସି ରହିଲାକ ତଳେ ।
ଶୂନ୍ୟ ପ୍ରକାଶନ୍ତେ ଜଳ ତଳେ ପ୍ରକାଶିଲା
ନାରାୟଣ ପାଦନଖ କଣରୁ ବହିଲା ।
ତିନିଧାର ହୋଇ ଅମ୍ବୁ ପଡ଼ିଲାକ ଖସି
ଗଙ୍ଗା ଯମୁନା ଆବର ସରସ୍ୱତୀ ଭାଷି ।
ସର ସର ହୋଇ ପୁର ଝରି ଆସୁ ଆସୁ
ନିରାକାର ବୋଇଲେ ତୁ କାହାକୁଟି ଗ୍ରାସୁ ।
କାହିଁକି ପ୍ରଳୟ ପ୍ରାୟ ପୁଣି ଆସୁ ବହି
ରହ ତୁ ନିଶ୍ଚଳେହେବି ମୁଁ ଅନନ୍ତଶାୟୀ ।
ଜଳ ବୋଲେ ଏବେମୁହିଁ ହେବି ରଜୋବତୀ
ସ୍ନାହାନ କଲେ ମୁଁ ଯାଇ ହେବି ଶୁଦ୍ଧମତୀ ।
ତେବେଯାଇ ମୋତେସିନା ସମସ୍ତେ ଭଜିବେ
ବର୍ତ୍ତିବେ ଆତ୍ମକୁଶଳ କରି ସର୍ବଜୀବେ ।
ମୁହିଁ ଯେବେ ରହିବିଟି ଶୁଚିମନ୍ତ ନୋହି
ତୁମ୍ଭେ ତ ଅନନ୍ତ ଶଯ୍ୟା କରିବଟି କାହିଁ ।
ତାହାଶୁଣି ମହାବିଷ୍ଣୁ ଆଚମ୍ଭିତ ହେଲେ
ଲେଉଟି ଜଳକୁଚାହିଁ ସମସ୍ୟା ସେ ଦେଲେ
ବୋଇଲେକ ତୁହିଯେବେ ରଜସ୍ୱଳା ହେଉ
ଅଶୁଦ୍ଧ ହୋଇ ସଂସାରେ କେଉଁଦିନୁ ରହୁ ।
ଆମ୍ଭେ ତ ଜାଣୁ ତିନିଶ ଷାଠି ଦିନଯାକେ
କେହି ତୋ ପାକାମ୍ବରଣ ନଜାଣନ୍ତି ଲୋକେ
ସ୍ନାନ ପାନକରି ରାତ୍ର ଦିବା ଭଜୁଥାନ୍ତି
ବିଷ୍ଣୁ ପ୍ରତିମା ସ୍ଥାପିଣ ସର୍ବେ ଚଳୁଦ୍ୟନ୍ତି ।
ତୋତେ ନ ଭକ୍ଷିବା ଅବା ନବର୍ତ୍ତିବେକେହି
ବ୍ରହ୍ମକୀଟ ପରିଯନ୍ତେ ଛନ୍ତି ଯେତେ ଦେହୀ ।
ଯେଉଁଦିନ ତୋତେ ପୁଣି ନ ଛୁଅଁନ୍ତି ଲୋକେ
ଏ କଥା ନିଷ୍ଠାକରି ତୁ କହ ଆମ୍ଭବାକ୍ୟେ ।
ଶ୍ରୀନିରାକାରଙ୍କ ମୁଖୁଁ ଏହା ଶୁଣି ଜଳ
ବୋଲଇ ପୁଛିଲେ କେଡ଼େକଥା ଆଦିମୂଳ
ମୋର ସ୍ନାନରତୁ ହେଲେ ନ ଥିଲେକଜାଣି
କହୁଛି ଶୁଣ ଏଠାରୁ ବୁଝିବେକ ପୁଣି ।
ଷୋଳବର୍ଷି ଅମ୍ବୁବତୀ ବିଚାରିଲେ ମୁହିଁ
ରଜସ୍ୱଳା ହେଲେ ଜାଣ ପ୍ରଳୟ ହୁଅଇ ।
ବ୍ରହ୍ମକୀଟ ପରିଯନ୍ତେ ନ ବର୍ତ୍ତନ୍ତି କେହି
ସ୍ନାନ କଲାରୁ ଆସନ୍ତି ପୁଣି ଜନ୍ମ ହୋଇ ।
ତାହାଶୁଣି ପୂର୍ଣ୍ଣବ୍ରହ୍ମ ପଚାରିଲେ ପୁଣି
କେଡ଼େ ଅଗମ୍ୟକାହୁଁ ତୁ ଘଟାଇଲୁ ଆଣି
ତୋ ଅଙ୍ଗେ ସମସ୍ତେ ବୁଡ଼ି ତରନ୍ତି ସଂସାରୁ
ତୁହି ତ ଅଶୁଦ୍ଧ ହେଲେ କାହିଁ ସ୍ନାନକରୁ ।
ତଥାପି ତୁ ପଞ୍ଚଦିନ ସ୍ନାନକରୁ ଯେବେ
ଏତେକ ପ୍ରଳୟ କିବା ହୁଅନ୍ତି ବ୍ରହ୍ମା ଶିବେ ।
ପାପ ବୋଇଲା କହିବା ତାହା ତୋତେସବୁ
ମୋ ରଜସ୍ରବିଲେ ଆଗ ମରଇ ଆମ୍ଭୁ ।
ଆବର ଦେବ ଦାନବେ ମାନବେ ମରନ୍ତି ।
ଏମାନେ ମଲାରୁ ପୁଣି ବିଷ୍ଣୁପ୍ରଳେ ହୁଅନ୍ତି ।
ବିଷ୍ଣୁ ପ୍ରଳେ ହୁଅନ୍ତି ରୁଦ୍ର ମରେ ପୁଣି କାଳେ
ରୁଦ୍ର ମରନ୍ତେ ଧର୍ମର ହୁଏ ପୁଣି ପ୍ରଳେ ।
ଧର୍ମ ମଲା ପରେ ପୁଣି ମରେ ନିରଞ୍ଜନ
ନିରଞ୍ଜନ ମରନ୍ତେ ଏ ସଂସାର ଯେ ଶୂନ୍ୟ ।
ମୋ ଦେହ ଅଶୁଦ୍ଧ ହେଲେ ସମସ୍ତ ମରନ୍ତି
ସମସ୍ତେ ମଲାରୁ ମୋତେ କେହି ନ ଛୁଅନ୍ତି ।
ପାଞ୍ଚଦିନ ଅନ୍ତେ ତହିଁ କରେ ପୁଣି ସ୍ନାନ
ତେବେ ଯାଇ ସମସ୍ତେଟି ହୁଅନ୍ତି ଜନମ ।

ଏ ପାଞ୍ଚଦିନେ ଯାହାକୁ ଯେତେ କାଳହୁଏ
ତାହା ମୁଁ ଲେଖି ଛାମୁରେ କରିଛି ନିର୍ଣ୍ଣୟେ
ପାଞ୍ଚକୋଟି ପଦ୍ମକାଠି ଯୁଗ ହୁଏ ଜାଣ
ଏଥି ଭିତରେ ସମସ୍ତେ ଲଭନ୍ତି ମରଣ ।
ବ୍ରହ୍ମା ଶିବ ହର ଧର୍ମ ନିରଞ୍ଜନ ଯାଏ
ଏହାଙ୍କ ଆୟୁଷଯାକ ମାସେ ମୋତେ ହୁଏ
ମାସକୁ ମାସ ମୁହିଁ ଯେ ହୁଏ ପୁଷ୍ପବତୀ
ଯହିଁସ୍ନାନ କରେ ଶୁଣ ସେହି ଅମ୍ବୁବତୀ ।
କାରୁଣ୍ୟ କରୁଣାନିଧି ସେହି ଭାବଗ୍ରାହୀ
ତାହାଙ୍କ ପାଦପଦ୍ମରେ ଯାଇ ମୁଁ ବୁଡ଼ଇ
ସେ ପାଦ ନଖ କୋଣରେ ବୁଡ଼ିବାହାରନ୍ତେ
ତେଣୁ ମହାଶୁଦ୍ଧ ମୁହିଁ ଅଟଇ ଜଗତେ ।
କେବଳ ଜାଣ ମୁଁ ଏକା ରଜସ୍ୱଳା ହେଲେ
ସର୍ବେ ମରି ଜନମ ହୁଅନ୍ତି ସ୍ନାନ କଲେ ।
କେଉଁରୂପେ ଜନ୍ମନ୍ତି ସେ ଜୀବ ସୁତ ଶୁଣ
ଜଳରୁ ସର୍ବେ ଉତ୍ପତ୍ତି ହୁଅନ୍ତିଟି ଜାଣ ।
ଜୀବନମାତ୍ରକେ ଛନ୍ତି ଯେତେ ଦେହ ବହି
ଶ୍ରୀ ବ୍ରହ୍ମା ବିଷ୍ଣୁ ମହେଶ ଆନଦେବ ତହିଁ ।
ସ୍ଥାବର ଜଙ୍ଗମ କୀଟ ପତଙ୍ଗାଦି ଯେତେ
ବୀର୍ଯ୍ୟ ପଡ଼ିଲେଟି ଜାଣ ଜନ୍ମନ୍ତି ଜଗତେ ।
ଆତ୍ମାରୁଟି ଆତ୍ମା ଗୋଟି ଆସେ ଆତ୍ମାହୋଇ
ଆତ୍ମା ଅଚିହ୍ନା ଲୋକ ଏ ବିଶ୍ୱେ ଭ୍ରମୁଥାଇ
ଆତ୍ମାର ଆସିବା ସ୍ଥାନ ଯେ ଚିହ୍ନିପାରିବ
ଯମର ଯତନକୁ ସେ କାହିଁକି ଡରିବ ।
ସେ ତ ପାଞ୍ଚବ ଆସିଲି ମୁହିଁ ଏହି ସୂତ୍ରେ
ଗଲେ ଲେଉଟି ରହିବି ଯାଇ ବ୍ରହ୍ମଗୋତ୍ରେ
ବ୍ରହ୍ମରୁ ଆସି ଜନ୍ମିବି ପୁଣି ଜୀବ ହୋଇ
ଯହିଁ ସେ ଗମିବେ ସେହିବୀର୍ଯ୍ୟେ ମିଶିବଇଁ ।
ବୀର୍ଯ୍ୟେ ନ ମିଶିଲେ ନାହିଁ କାହାର ଯେଜନ୍ମ
ସକଳ ଆତ୍ମାତ ପୁଣି ଅଟେ ଏକ ବ୍ରହ୍ମ ।
ବ୍ରହ୍ମରୁ ପ୍ରକୃତି ଜାତ ପ୍ରକୃତିରୁ ବିନ୍ଦୁ
ସେ ବିନ୍ଦୁରୁ ଦୁଇ ଜାତି ଉପୁଜଇ ହୃଦୁ ।
ଦୁଇ ଜାତି ବୋଲେ ଯେହୁ ସ୍ତିରୀ ପୁରୁଷଟି
ଦେଖ ଏକା ଦେହୁ ସ୍ତିରୀ ପୁରୁଷ ଆସେଟି
ସେ ସ୍ତିରୀ ପୁରୁଷ ଯେବେ ହୁଅନ୍ତି ଏକଠାଏ
ମୁହିଁ ବୀର୍ଯ୍ୟରୂପେ ଖସି ପଡ଼ଇ ଥୋକାଏ ।
ତେବେ ଯାଇଁ ସବୁ ଜୀବେ କଳେବର ପାନ୍ତି
ବହୁ କୀଟଯାଏ ଯେତେ ସଂସାରେ ଅଛନ୍ତି ।
ଜଳ ଯେବେ ରଜସ୍ୱଳା ନ ହୁଅନ୍ତ ପ୍ରଭୁ
ଜୀବ ବୋଲକରି ଆଉ ଜନ୍ମନ୍ତା କେ ଗର୍ଭୁ

ଏଣୁକରି ଜଳଗୋଟି ଅଟେ ମହାବ୍ରହ୍ମ
ବୀର୍ଯ୍ୟ ହୋଇ ଗର୍ଭେ ପଡ଼ି ପ୍ରକାଶଇ ଆତ୍ମା
ଆତ୍ମାରୁ ଆତ୍ମା ଜନ୍ମିଣ ବହୁରୂପ ଧରେ
କ୍ରୀଡ଼ାରେ ଅନ୍ତେ ସେ ପୁଣି ସମସ୍ତ ସଂହରେ ।
ଏକରୂପ ଧରି ରହେ ପୁଣି ଶେଷେ ମିଶେ
ଅଣାକାର ବ୍ରହ୍ମ ହୋଇ ମଣ୍ଡଳେ ପ୍ରକାଶେ ।
ଅବ୍ୟକ୍ତ ବ୍ରହ୍ମ ବୋଲିଣ ଯାହାକୁଟି କହି
ରହନ୍ତି ପ୍ରଳୟ ହେଲେ ସର୍ବେ ତହିଁ ଯାଇଁ ।
ତାହା ଶୁଣି ନିରାକାର ପଚାରିଲେ ପୁଣି
ବୋଇଲେ ହେ ଜଳ ତୁହିକହିଲୁ ଯେବାଣୀ
ମଲେ ସର୍ବ ଜୀବେ ଯେବେ ମିଶନ୍ତିହ୍ରଦରେ
କି ହେବସଂସାରେ ତେବେ ଧର୍ମ କରିବାରେ
ପାପୀ ଆଉ ପୁଣ୍ୟବନ୍ତ ଏହି ଦୁଇ ଲୋକେ
ମରିଲେ ସମାନ ଯେବେ ହୋଇବେପାତକେ
ଜପ ତପ ଦାନ ପୁଣ୍ୟ କଲେ ହେବ କିସ
ଚଣ୍ଡାଳର ଅନ୍ନ ତେବେ ଦ୍ୱିଜ କରୁ ଗ୍ରାସ ।
ଜଳ ବୋଲେ ପୁଚ୍ଛିଲେହେ ଯାହାନିରାକାର
ତୁମ୍ଭଙ୍କୁ ତ ଏହି ଛାର କଥା ଅଗୋଚର ।
ଲୋକେ ଜାଣିବାକୁ ମୋତେ ପଚାରୁଛ ଅବା
ଶୁଣନ୍ତୁ ହେ ନିରାକାର ସେ କଥା କହିବା ।
ବ୍ରହ୍ମରେ ମିଶନ୍ତି ସର୍ବେ ଅଟନ୍ତି ଏ ସତ
ଯେଉଁରୂପେ ଜୀବ ମିଶେ ବୁଝ ସେ ବୃତ୍ତାନ୍ତ
ପିଣ୍ଡ ମଧ୍ୟୁ ଆତ୍ମଗୋଟି ଯେତେବେଳେଯାଏ
ଷଡ଼ଚକ୍ର ଯୋଜନେ ସେ ସ୍ଥାନୁ ବ୍ରହ୍ମଯାଏ
କାହା ତଳେ ଲାଗିଅଛି ଯମ ଭୁବନଟି
ବୁଝିଲେ ପିଣ୍ଡ ବ୍ରହ୍ମାଣ୍ଡ ଅଟେ ଏକ ସୃଷ୍ଟି ।
ବୋଇଲେ ଷଡ଼ଲକ୍ଷ ଯେ ଷଡ଼ଲକ୍ଷ ମାପେ
ତହିଁରେ ବ୍ରହ୍ମଗୋଟି ରହିଅଛି ଗୋପ୍ୟେ ।
ଯେମନ୍ତେ ସେ ବ୍ରହ୍ମ ଆତ୍ମା ଜାଣ ଭେଟପାଇ
ପ୍ରତ୍ୟକ୍ଷରେ ତାହା ପୁଣି କହି ଦେଉଁଥାଇଁ ।
ଯେତେବେଳେଜୀବ ଗୋଟିଏ ଦେହକୁଛାଡ଼େ
ଚକ୍ରେଚକ୍ରେ ଭେଦିଯାଇବ୍ରହ୍ମକୁ ସେ ଲୋଡ଼େ
ପୁଣ୍ୟବନ୍ତ ଲୋକେ ସେହୁ ମୁହୂର୍ତ୍ତକେ ମିଶେ
ଅଣାକାର ବ୍ରହ୍ମଗର୍ଭେ ଯାଇଣ ସେ ପଶେ ।
ସୁଭାଗ୍ୟ ହେତରୁ ପୁଣି ସୁସ୍ଥାନେ ଜନ୍ମଇ
ପାପୀ ଲୋକ ମରିଗଲେ ବହୁ ଦୁଃଖ ପାଇ ।
ବ୍ରହ୍ମ ପୁରୁଷ ଛାମୁକୁ ସେହି ଯାଉ ଯାଉ
ମାରନ୍ତି ଯେ ଯମଙ୍କର ଲୋକେ ବାଟେନେଉ
ତହୁଁ ଯମ ଆଗେ କହି ନର୍କରେ ପକାନ୍ତି
ଯେବଣ ପାପୀକୁ ଯେଉଁଦଣ୍ଡ ସେ ଦିଅନ୍ତି ।

ସେ ଭୋଗ ସରିଲେ ତାକୁ ଛାଡ଼ନ୍ତି ଆକାଶେ
ଆକାଶେ ଛାଡ଼ନ୍ତେ ସେହୁ ବ୍ରହ୍ମେଯାଇ ମିଶେ
ସେ ବ୍ରହ୍ମ ମହିମା ଶୁଣ ଏ ପ୍ରକାରେ ଅଛି
ଯେ ତହିଁକି ଯୋଗ୍ୟ ତାକୁ ରଖେ ତହିଁ ସଞ୍ଚି ।
ପାତକ ବୁଝିଣ ପୁଣ୍ୟ ବୀର୍ଯ୍ୟେ ନେଇ ଖଞ୍ଜେ
ପାପୀଲୋକ ଗୋଟି ପାପଯୋନିରେ ଉପୁଜେ
ଶ୍ୱାନ ଚଣ୍ଡାଳ କୀଟ କି ଗୃଧ୍ର ଖର ହୁଏ
ନ ମାନନ୍ତି ଜନମକୁ ଏକା ସେ ଜ୍ଞାନୀଏ ।
ଯହିଁକି ନ ମାନେ ସେହୁ କହୁଛି ତା ହେତୁ
ଆତ୍ମାର ବସିବ ସ୍ଥାନ ଦେଖିଲ ସେ ତତ୍ତ୍ୱ ।
ଗଲେ ମୁଁ ଲେଉଟି ଯାଇ ରହିବି ତ ତହିଁ
ଏଣୁକରି ମୋର ଜନ୍ମ କେତେବେଳେ ନାହିଁ
ଅନ୍ୟ ଜୀବମାନଙ୍କର ନିଶ୍ଚେ ଅଛି ଜନ୍ମ
ପାପୀ ପାପ ଯୋନି ପାପ ଜ୍ଞାନୀ ପୁଣ୍ୟସ୍ଥାନ ।
ଘଟଇ ଯେ ଏହି କଥାଗୋଟି ନିଶ୍ଚେ ନିଶ୍ଚେ
ମଲେ ସବୁରି ପ୍ରତ୍ୟକ୍ଷେ ଜନ୍ମ ଅଛି ମଞ୍ଚେ ।
ଜନମ ନୋହିଲେ ଅବା କାହିଁକି ମରନ୍ତା
ଏଣୁ ଜନ୍ମ ମରଣର ଅଟେ ଏକ ପନ୍ଥା ।
କେତେବେଳେ ଜୀବଟିକୁ ଅବସର ନାହିଁ
ତହୁଁ ଆସି ଏଥେ ଜନ୍ମେ ଏଥୁଁ ଗଲେ ତହିଁ
ରୂପକୁ ଗଲେ ଅରୂପ ଅରୂପକୁ ରୂପ
ଜ୍ଞାନୀଏ ଜାଣନ୍ତି ଏହା ଆନକୁ ଏ ଗୋପ୍ୟ ।
ଏରୂପେ କହନ୍ତେ ଜଳ ଜୀବ ଗତାଗତ
ବୋଇଲେ ସେ ନିରାକାର ପୁଣି ସତ ସତ ।
ଜଳକୁ ଚାହିଁଣ ସ୍ୱାହା ବହୁ ପ୍ରଶଂସିଲେ
କେଡ଼େ ଜ୍ଞାନ ସଂସାରେତୁ କହିଲୁବୋଇଲେ
ବ୍ରହ୍ମା ଆଦି ଶଙ୍କରଙ୍କୁ ଯେଉଁ ଜ୍ଞାନ ବଣା
ତୁ ଏବେ ବ୍ରହ୍ମାଣ୍ଡେ ଆସି କଲୁ ତାହାଜଣା
ପଣ୍ଡିତ ଲୋକେ ଏବେ ଯେ ଶୁଣି ହେବେଜ୍ଞାନୀ
ଦେବ ଦୟା କରିବେ ଯେ ଜୀବଆତ୍ମା ଚିହ୍ନି
ଏତେ ବୋଲିମହାବିଷ୍ଣୁଶେଷଶାୟୀ ହେଲେ
ବିଧାତା ମୁଖରୁ ଏହା ନାରଦ ଶୁଣିଲେ ।
ଏରୂପେ ସେ ଜଳ ବିଷ୍ଣୁ ହେଲେ ପୁଚ୍ଛାପୁଚ୍ଛି
ଯୋଗୀନ୍ଦ୍ରଜ୍ଞାନେ ଏ ମନ ରଖିଲେଟି ସଞ୍ଚି ।
ପରୀକ୍ଷ ରାଜା ଆଗରେ କହନ୍ତି ସେ ଶୁକ
ଶୁଣ ଏ ବ୍ରହ୍ମା ନାରଦ ସମ୍ବାଦ ଆଲୋକ୍ୟ ।
ହେ ରାଜା ଯେଉଁ ପ୍ରଳୟ କହିଲେ ବିଧାତା
ନିଶ୍ଚେ ନିଦାନ କାଳର ଅଟଇ ଏ ତଥା ।
ଯାହା ଯା କହିଲେଟି ବ୍ରହ୍ମା ନାରଦଙ୍କୁ
ଆନର ବଳେ ଜଣା ଏ ନୁହଇ କାହାକୁ ।

ପରୀକ୍ଷ ଶୁଣି ବୋଇଲେ ମୋତେତୁମ୍ଭେବ୍ରହ୍ମା
ମୁଁ ଏକା ନାରଦ ପ୍ରାୟେ ପୁଚ୍ଛନ୍ତି ଜାଣିମା ।
ଆପଣ ଆସିଣ ଯେବେ'ନ କହନ୍ତେ ମୋତେ
କାହୁଁକିଏ ଏ କଥା ବା ଜାଣନ୍ତା ଜଗତେ
ତୁମ୍ଭର ପ୍ରସାଦୁଁ ଏବେ ସମସ୍ତେ ଶୁଣିବେ
ନ ଜାଣିବା ଲୋକ ଗୁରୁ କରିଣ ଜାଣିବେ
ଅଜ୍ଞ ଭାଷା ଅଟନ୍ତି କି ଏହି ପଦମାନେ
ଶୁଣିଲା ମାତ୍ରକେ ଭୁଲିଯିବେ ଜ୍ଞାନୀଜନେ ।
ବସିବେ ସେ ଅନୁମାନ କରି ପଦ ହେଜି
ଜୀବଆତ୍ମା ଚିହ୍ନିଥିଲେ ଯିବେ ଅବା ବୁଝି
ଜୀବ ପରମ ଭଜନ ଯେହୁ ନ ଜାଣଇ
ତାହାକୁ କି ଗୁରୁ କଲେ ବ୍ରହ୍ମଜ୍ଞାନ ଯାଇ ।
ଥୋକେ ଲୋକ ଗୀତା ଭାଗବତ ଆଦି ଶିଖି
ବ୍ରହ୍ମ ଚିହ୍ନିଲୁ ବୋଲି ଯେ ହେଉଥାନ୍ତିଟେକି
ବୁଢ଼ାମାନେ ପଢ଼ି ଯେବେ ଅବଧୂତ ହୋନ୍ତି
ଆତ୍ମାକୁ ନ ଚିହ୍ନି ତୁଚ୍ଛା ଜ୍ଞାନ କହୁଥାନ୍ତି ।
ଯେବଣ ଜନମାନେଟି ମାତୃଗର୍ଭୁ ପଢ଼ି
ଆମ୍ଭେ ବ୍ରହ୍ମ ଜାଣୁବୋଲି କହେ ନିଶମୋଡ଼ି
ସତେ ଯେବେ ବ୍ରହ୍ମଟିକୁ ଚିହ୍ନିଥିବ ପ୍ରାଣୀ
ସେ କଦାପି ନ ବୋଲଇ ଆମ୍ଭେ ଅଛୁଜାଣି
ସମଦରଶୀ ଭାବ ତ ଯାହାଠାରେ ଥିବ
ଏବେ ଲକ୍ଷଣ ବୁଝିଲେ ଆପଣ ବା ହେବ ।
ନୋହିଲେ ଏଡ଼େ ପ୍ରସଙ୍ଗ ଦିଅନ୍ତା ତାହାକୁ
ଜୀବର ପ୍ରଳୟ ଗତାଗତ କହିବାକୁ ।
ଏରୂପେ ଗୁରୁ ମିଳନ୍ତି ଯେବେ ପ୍ରାଣୀପାଶେ
ତେବେ ସିନା ତରିବାକୁ ଭବେ ବୁଦ୍ଧିଦିଶେ
ଏମନ୍ତ ବୋଲିଣ ରାଜା ଶୁକକୁ ପ୍ରଶଂସି
ପ୍ରସ୍ତାବ କହିବାଠାରୁ ପୁଚ୍ଛିଲେ ସେ ହସି
ବୋଇଲେ ହେ ଶୁକ ମୋର ଶୁଣିବାବିଚାର
କହ ତହିଁ ଉତ୍ତାରୁ କି କଲେ ନିରାକାର ।
ଜଳକୁ ଏମନ୍ତ କହି ଶେଷଶାୟୀ ହେଲେ
ତହିଁ ଉତ୍ତାରୁ ନାରଦ କି କି ପଚାରିଲେ ।
ବ୍ରହ୍ମାଏ ତାହାଙ୍କୁ ପୁଣି କହିଲେଟି କିସ
ସେ ବିଷୟ ମୋତେ ଆଗକହ ବ୍ୟାସଶିଷ୍ୟ
ଶୁଣ ଜନେ ମନଦେଇ ଏ ପୁରାଣ ସାର
ନାରଦ ଶ୍ରୋତା ବକତା ଯହିଁ ବେଦବର ।
ଶୁକମୁନି ଯେ କହନ୍ତି ପରୀକ୍ଷ ଶୁଣନ୍ତି
ଜଳ ନିରାକାରଙ୍କର ଉକ୍ତି ପ୍ରତିଉକ୍ତି ।
ଶ୍ରୀହରି ଅଭୟ ପାଦପଦ୍ମେ ରଖି ଆଶ
କହିଲା ଦୀପ ଅଧମ ପୀତାମ୍ବର ଦାଶ ।

## ସୃଷ୍ଟି ପ୍ରକ୍ରିୟା

ଶୁଣି ଶୁକ ବୋଇଲେ ହେ ଧନ୍ୟରାଜା କୁରୁ
ଏ ଗହନ କଥାମାନ ତୁହ ପୁଚ୍ଛିବାରୁ ।
ନିରାକାର ଏହା କହି ଜଳେ ନିଦ୍ରାଯାନ୍ତେ
ଯାହା ଯାହା ପଚାରିଲେ ନାରଦ ତଦନ୍ତେ ।
ପାଦ୍ୟ ଅର୍ଘ୍ୟ ଦେଇଣ ସେ ବ୍ରହ୍ମାଙ୍କରପାଦେ
ନମସ୍କାର କରି ବସି ପୁଚ୍ଛନ୍ତି ନାରଦେ ।
ଭୋ ପିତା କହ କିରୂପେ ଜଳେ ମହାବାହୁ
ଆସନ କରି ଶୂତିଲେ ଘର ଦେଲା କେହୁ ।
ସେହି ଭୁବନର ନାମ ଅଟେ ପୁଣି କିସ
କେତେକ ଯୋଜନ ଲମ୍ବପ୍ରତି ସେ ଆବାସ ।
ସେ ପୁର ସିଂହଦ୍ୱାରକୁ ଜଗେ ପୁଣି କେକେ
ଏକଥା ବିଚାରି ମୋତେ କହ ଏକେ ଏକେ
ସେ ନାରଦ ପିତାମୁଖୁଁ ଏସନକ ଶୁଣି
ବୋଇଲେ କହିବା ବାବୁ ବୁଝ ପରିମାଣି ।
ନାରୟଣ ପୁରୁଷର ଭୁବନ କି ଅନ୍ତ
କୋଟି ବ୍ରହ୍ମାଣ୍ଡ ଯାହାର ଲୋମମୂଳୁଁ ଜାତ ।
ଅଶେଷ ପୁର ସେ ବିଷ୍ଣୁ ଉପରେହିଁ ଅଛି
ଚଉଦ ଭୁବନ ତହିଁ ମଧ୍ୟୁ ସାର ବାଛି ।
ସବୁ ଭୁବନେ ବସନ୍ତି ସେହି ଆତ୍ମା ରୂପେ
ଜୀବ ପରମ ଭଜନ କରେ ରହି ଗୋପ୍ୟେ
ସେ ଭଜନ ଯେ ବୁଝଇ ବ୍ରହ୍ମଙ୍କୁ ସେ ଚିହ୍ନେ
ତେଣୁ ସେ ସବୁ ଶରୀରୁ ନାରାୟଣ ଘେନେ ।
ଯହିଁ ବସେ ନାରାୟଣ ସେହି ତାର ସ୍ଥିତି
ସେହି ସ୍ଥିତିଟି ସୁନିଧି ବୈକୁଣ୍ଠ ଅଟନ୍ତି ।
ସେ ବୈକୁଣ୍ଠ ପରିମାଣ ଶୁଣ ହେ ନାରଦ
ପଞ୍ଚାଶକୋଟି ଯୋଜନ ଅଟେ ତାର ହଦ ।
ତହିଁ ସିଂହଦ୍ୱାରେ·ବାର ଯୋଜନ ସେ ସାରି
ରେଚକ ପୁରକ ନାମେ ଜଗେ ବେନି ଦ୍ୱାରି
ସେ ବୈକୁଣ୍ଠର ବଇଠି ଅନନ୍ତ ଯେ ଅହି
ଅଠାଅଶୀ ଲକ୍ଷ ଯୁଗ ତାର ଫଣୀ ହୋଇ ।
ବହେ ନାସାବାୟୁ ସିନ୍ଧୁ ଲହରୀ ପରାୟେ
ତାର ବେନିନେତ୍ର ଦିଶେ କୋଟିସୂର୍ଯ୍ୟ କିଏ
କୁମ୍ଭକ ନାମରେ ତହିଁ ଦେବତାଏ ଅଛି
ଘେନଇ ବାସନାମାନ ଆବାହନ ଇଚ୍ଛି ।
ଅତ୍ୟନ୍ତ ନିର୍ମଳ ପୁଣି ଅଟେ ତାର ଦେହୀ
ସର୍ବତ୍ର ପୂରି ରହିଛି ଅଛିଦ୍ର ରୂପେହିଁ ।
ସ୍ୱର୍ଗ ମର୍ତ୍ତ୍ୟ ପାତାଳ ହେ ସୁତଳ ବିତଳ
ଭୂତଳ ଅତଳ ରସାତଳ ତଳାତଳ ।
ତହିଁର ତଳରେ ଯାଇଁ ବୈକୁଣ୍ଠଟି ଜାଣ
ସେ ପୁରେ ଅନନ୍ତ ଶଯ୍ୟା କରେ ନାରାୟଣ
ତହିଁତଳେ କିସ ଅଛି ମଣିମା କେ ନିକି
ଅହିତଳେ କୂର୍ମ କୂର୍ମ ତଳରେ ମଣ୍ଡୁକୀ ।
ମଣ୍ଡୁକୀ ତଳେଅନିଳ ତାହା ତଳେ ଧୂମ
ଧୂମର ତଳେ ନିଧନ ତାର ତଳେ ଶୂନ୍ୟ ।
ଶୂନ୍ୟର ତଳେ ଶବଦ ଶବ୍ଦ ତଳେ ଧ୍ୱନି
ସେ ଧ୍ୱନିତଳରେ ଜ୍ୟୋତି ଥିବ ତଳେଅଗ୍ନି
ଅଗ୍ନିର ତଳେ ଅଗମ୍ୟ ସେହି ନିରାକାର
ଏମନ୍ତ ହୋଇ କରେ ସେ ପୁରୁଷ ବିହାର
ଆଉ ଅବା ତଳକୁ ସେ ଅଛି କେତେ କ୍ଷେପି
ଏ କଥା ଠୁଳ କରି କେ ନପାରଇ ମାପି ।
ହେତୁରେ ପ୍ରକାଶେ ଅଣହେତୁରେ ସେସ୍ଥିର
ଅଶେଷ ଆକାଶ ତାହା କହୁଁ ଅଣାକାର ।
ତୁ ଯେ ଭୁବନ ପୁଚ୍ଛିଲୁ ଦେଲା କେ ତାହାକୁ
କୋଟି ବ୍ରହ୍ମାଣ୍ଡ ଗଢ଼ି ସେ ପାରନ୍ତି କ୍ଷଣକୁ ।
ସେ ବ୍ରହ୍ମ ପୁରୁଷ ଜାଣ ମୂର୍ତ୍ତିମନ୍ତ ହୋଇ
ଆସନ କରି ଶୁତିଲେ ସହସ୍ର ଶିର ବହି
ସସ୍ରମୁଖ ସସ୍ର ନାସା ସହସ୍ର ଚରଣ
ସସ୍ର ଚକ୍ଷୁ ସସ୍ର ବାହୁ ସହସ୍ର ଶ୍ରବଣ ।
ଯବ ଅଙ୍ଗୁଳି ପ୍ରମାଣ ଯେ ପୁରୁଷ ହୋଇ
ବିରାଟ ବଳେ ବରକୁ ଧଇଲେକ ସେହି ।
ଏ ରୂପେ ଜାଣ କେତେକ କାଳ ଭୋଗ ଗଲା
ଏକରୂପେ ରହନ୍ତେଣ ସୁଖ ନ ଲାଗିଲା ।
ସଂସାର କରିବାକୁ ଯେ ବଢ଼ିଲାକ ଇଚ୍ଛା
ନାଭିରୁ ପଦ୍ମ ବୃକ୍ଷର ପ୍ରକାଶିଲା ସଞ୍ଚା ।
ଫୁଟନ୍ତେ ଦଶପାଖୁଡ଼ା ହୋଇ ପଦ୍ମ ଗୋଟି
ମନକୁ ବୋଇଲେ ତୁ ହୋ ପଦ୍ମକୁ ଯାଅଟି
ରଜଗୁଣକୁ ଘେନିଣ କଳେବର ଧର
ପଦ୍ମ ଗର୍ଭୁ ଜନ୍ମି ସୃଷ୍ଟି ସରଜନା କର ।
ଏତେକ କହି ବିରାଟ କାଢ଼ି ହୃଦୁଁ ରଜ
ମନକୁ ତହିଁ ପଠାଇ ଦେଲେ ଆତ୍ମାତେଜ ।
ବିଷ୍ଣୁର ବୋଲେ ସେ ମନ ରଜ ଘେନିଗଲା ।
ଆତ୍ମାଭେଦ ସୂତ୍ର ଧରି ପଦ୍ମରେ ଜନ୍ମିଲା ।
ମନ ଏକ ବ୍ରହ୍ମ ହେଲା ଶୁଣ ହେ ନାରଦ
ପଦ୍ମର ଜନ୍ମ ପାଇଲା ପଦ୍ମଯୋନି ପଦ ।
ଜଳଗୁଡ଼ାକ ଦେଖି ସେ ପିତା ଭୟ କଲା
ଚାରିଦିଗକୁ ଚାହାଁନ୍ତେ ଚାରିମୁଖ ହେଲା ।
ସେ ଚାରିମୁଖର ନାମ ଶୁଣ ଏକେ ଏକେ
ଧାତା ପ୍ରଜାପତି ବ୍ରହ୍ମା ବିରଞ୍ଚି ଯେ ମୁଖେ ।

ପଦ୍ମ କଣ୍ଠମଧ୍ୟେ ଏହି ଚାରିମୁଖ ଧରି
ପଦ୍ମଚୁନ୍ଦ ପିତା ବସିଅଛି ଲୟ କରି ।
ଶ୍ରୀ ନାରାୟଣ ସୁମରି ବସିଛି ବିଧାତା
ଏ ସମୟେ ମୁଖମାନେ ହେଲେ କଥାବାର୍ତ୍ତା ।
ଧାତାମୁଖ ବୋଇଲା ହେ ଶୁଣ ବ୍ରହ୍ମମୁଖ
ତୋ ବିନା ବୋଲିବଆନ ନାହିଁମୋରପାଖ
ଏ ବୃକ୍ଷର ସ୍ଥିତି ଯେବେ ନ ଥାନ୍ତାଟି ମୂଳେ
କାହିଁପାଇଁ ପ୍ରକାଶନ୍ତି ଆସି ଏଡ଼େ ଜଳେ ।
ତାହା ଶୁଣି ବ୍ରହ୍ମାମୁଖ ବୋଇଲେ ରହ ରହ
ବୃକ୍ଷ ଉତ୍ତାରୁ ଆଉ କେ ଏଥେ ଅଛି କହ ।
ବିରଞ୍ଚି ମୁଖୁ ବୋଇଲେ ମୁଁ ଯେବେ କହୁଛି
ବୁଝିଲେ ଏସମୟକୁ ଅନ୍ଧକାର ଅଛି ।
ଏ ଘୋର ଅନ୍ଧାର ଏକା ଜ୍ଞାନାଞ୍ଜନେ ଯାଇ
ସପ୍ତ ପୁରୁଷ ସେବିଲେ ତିମିର ଫଟାଇ ।
କ୍ଷିତି ନଥିଲେ ଆସନ୍ତା ବୃକ୍ଷ କାହିଁ ହେଲେ
ସେ ସ୍ଥିତି କାହିଁ ଅଛଇ କହ ଜାଣିଥିଲେ ।
ବିରଞ୍ଚି ମୁଖରୁ ଶୁଣି ପ୍ରଜାପତି ମୁଖ
ସେ ବୋଇଲା ସ୍ଥିତି ଏକା ହୃଦେ ଅଛିଦେଖ
ଜୀବ ପରମ ଭଜନ ଯାହା କରୁଛନ୍ତି
ସେ ଭଜନକୁ ଚିହ୍ନିଲେ ଜାଣିବା ନ ସ୍ଥିତି
ସ୍ଥିତିଯେବେ ନ ଖୋଜିବ ବୃକ୍ଷତେବେଖୋଜ
କେଉଁଠାରୁ ଆସିଛ ସେ ଦେଖିବ ପଙ୍କଜ ।
ଏମନ୍ତ ବିଚାର କରି ସେହି ଚାରି ମୁଖେ
ଶରୀରକୁ ଧରି ଗଲେ ବୃକ୍ଷ ଶିଖେ ଶିଖେ ।
ମୃଣାଳ ରନ୍ଧ୍ରରେ ପଶିଯାନ୍ତେ ମୁଖ ଚାରି
ଏମନ୍ତେ ଚାରି ସହସ୍ର ଯୁଗ ଗଲା ପୂରି ।
ଶୁଣ ବାବୁ ନାରଦ ସେ ବୃକ୍ଷର ମହିମା
ବିଷ୍ଣୁର ଗର୍ଭ ଭିତରେ ପଶିଯାନ୍ତେ ବ୍ରହ୍ମା ।
ଅନ୍ତର୍ଯ୍ୟାମୀ ନାରାୟଣ ତାର କଥା ଜାଣି
ତହୁଁ ଆଦି ପୁରୁଷତ୍ୱ ପେଶିବେ ସେକ୍ଷଣି ।
ବୋଇଲେ ବ୍ରହ୍ମାଙ୍କୁ ଯାଇ ବାହୁଡ଼ାଇ ବେଗେ
ସୃଷ୍ଟି ନ ସର୍ଜି ଆସିଛ କିମ୍ପା ଏହି ଲାଗେ
ବିଷ୍ଣୁର ବୋଲେ ସେଆଜି ଗଲାଶୀଘ୍ର ହୋଇ
ପିତାଙ୍କୁ ଭେଟିଲେ ପଦ୍ମନାଡ଼ ମଧ୍ୟେ ଯାଇଁ ।
କିଏକିରେ ତୁହି ବୋଲି ବ୍ରହ୍ମା ଦେଲେଡ଼ାକି
ଶୁଣିଣ ଉତ୍ତର ଦେଲା ସେ ଆସିବା ଲୋକ ।
କାହିଁପାଇଁ ତଳକୁ ହେ ଧାତା ଆସ ପୁଣି
ଆଜ୍ଞା ମେଣ୍ଟି ଅଇଲୁ ତ ନସର୍ଜି ଧରଣୀ ।
ବ୍ରହ୍ମା ବୋଇଲେ ସବୁ ତ ପୂରିଅଛି ଜଳେ
ସ୍ଥିତି ନ ପାଇଲାରୁ ମୁଁ ଆସେ ବୃକ୍ଷେମୂଳେ ।
ଆଉ ଏଣିକି ଅଛଇ ବୃକ୍ଷ କେତେ କହ
ଶୁଣି ସେହି ତଳଲୋକ ହସେ ଟହ ଟହ ।
ଏ ପଥ ବାଣୀ ପଚାରୁ ତୁ ଯେ ଚଉମଥା
କହିବାକୁ ଅସମ୍ଭବ ଅଲୌକିକ କଥା ।
ମୁହିଁ ହେଲେ ବୃକ୍ଷମୂଳୁ ଆସୁଛି ଯେ ଦିନୁ
ଲେଖନ୍ତେ ଭୋଗହୋଇବ ଦୌଦକୋଟିମନୁ
ମୋହର ନାମ ଆଦି ହେ ଶୁଣ ବେଦବର
ଶୀଘ୍ର ଲେଉଟି ଯେ ଆଜ୍ଞା ହୋଇଛି ପ୍ରଭୁର
ସ୍ଥିତିରୁ ହେଲେ ତୁ ସ୍ଥିତି ଧରି ଆସୁଅଛୁ
ଗୁରୁ ନ ମଲାରୁ ସ୍ଥିତି ଚିହ୍ନିନ ପାରୁଛୁ ।
ସ୍ଥିତିଟି ଶରୀର ଜୀବ ପରମଟି ଅଟେ
ଜୀବ ପରମ ଚିହ୍ନିଲେ ସ୍ଥିତିକି ସେ ଭେଟେ
ଭେଟିବୁ ଯେବେ ବୈକୁଣ୍ଠ ଆସୁସିନା ପଛେ
ବ୍ରହ୍ମାଣ୍ଡ ଆଗେ ସର୍ଜନା କର ଯାଇ ମଞ୍ଚେ ।
ପୁଣି ବିଧାତା ଆକୁଳ ହୁଅନ୍ତେ ତା ଶୁଣି
ଆଦି ବୋଇଲେ ଆଉ ନ ଭାବ କୁଶପାଣି ।
ଏଥକୁ ତୋତେ କଥାଏ ବିଷ୍ଣୁ ସଞ୍ଚବେଣି
ପ୍ରତ୍ୟକ୍ଷେ ଦେଖିବାକୁ ତାହା ଗଲେ ଏହିକ୍ଷଣି
ଆଦି ପୁରୁଷ ଏତେକ କହି ବାହୁଡ଼ନ୍ତେ
ଜଳେ ପୁଣି ମହାପ୍ରଭୁ ଜନ୍ମିଲେ ଅଦ୍ଭୁତେ ।
ଆପେ ଜଟାଇ ଭିତରୁ ପ୍ରକାଶିଲେ ବୃକ୍ଷେ
ସେହିଟି କଳପ ବୃକ୍ଷ ହୋଇଲେ ପ୍ରତ୍ୟକ୍ଷେ ।
ସେ ବଟପୁଟେ ମୋହିନୀ ରୂପକୁ ସେ ଧରି
ପୁରୁଷେକ ହୋଇ ପୁଣି ତହିଁ ବିଜେ କରି ।
ଆପେସ୍ତିରୀ ହେଲେପୁଣ ଆପେ ଯେ ପୁରୁଷ
ଆପେ ପୁଣ ଦେହ ଘଷି କାଢ଼ ମନ୍ଦରସ ।
ବ୍ରହ୍ମଆଂସୁ ଆସୁ ତାକୁ ଜଳେ ପକାଇଲେ
ଅସୁରେକ ହୁଅ ବୋଲି ମନରେ ପାଞ୍ଚିଲେ
ପାଞ୍ଚିବା ମାତ୍ରକେ ତାହା ହେଲା ସେ ରାକ୍ଷସ ପୁଣି
ପ୍ରଳୟ ଜଳ ତାହାକୁ ହେଲା ଆଣ୍ଠୁଆଣି ।
ମଧୁକୈଟଭ ବୋଲିଣ ତାର ନାମ ହେଲା
ଗଗନକୁ ଜିଣି ଶିର ଶୂନ୍ୟେ ପ୍ରକାଶିଲା ।
ପ୍ରକାଶ ମେରୁ ମନ୍ଦର ଜାଣି ବେନି କର୍ଣ୍ଣ
ଶୃଙ୍ଗା ଗୁହାର ପରାୟେ ନାସିକା ନୟନ ।
ନିଃଶ୍ୱାସଘାତେ ଉଚ୍ଛୁଳେ ପାଣି ଗଗନକୁ
ରଡ଼ି ଦିଅନ୍ତେ ଶୁଭଇ ପାତାଳ ପୁରକୁ ।
କହିବାକୁ ଅଗୋଚର ପୂର୍ଣ୍ଣ କଳେବର ।
ଉଭର କି ପ୍ରକାଶିଲେ ସପ୍ତ ରତ୍ନାକର ।
ଭୁଜେ ବଢ଼ିଗଲେ ପୂର୍ବେ ପଶ୍ଚିମକୁ ମାଡ଼ି
ପାଦ ଅଙ୍ଗୁଷ୍ଠିହିଁ ଗଲା ପାତାଳକୁ ବାଡ଼ି ।

ଏରୂପେ ବଢ଼ନ୍ତେ ସେହି ଦୈତ୍ୟବିଶ୍ୱରୂପେ
ତାହାକୁ ଦେଖି ଲୁଚିଲେ ବ୍ରହ୍ମାପଦ୍ମ କୂପେ
କେଶର ମଧ୍ୟେ ପଶନ୍ତେ ଯାଇ ବେଦପତି
ଧାତାକୁ ନ ପାଇ ଦୈତ୍ୟବୁଲେଚଉକଂତି ।
କେତେକ ଦୂରେ ଦେଖିଲା ପୁଣି ବଟବୃକ୍ଷ
ତା ଉପରେ ନିଦ୍ରା ଯାଇଛନ୍ତି ପଦ୍ମ ମୁଖ ।
ମୋହିନୀ ରୂପରେ ପୁଣି ଆପେଛନ୍ତି ବସି
ଦଇତ୍ୟକୁ ମୋହୁଛନ୍ତି ମନ୍ଦେ ମନ୍ଦେ ହସି ।
କୋଟି ଚନ୍ଦ୍ରରୁ ଅଧିକ ମୁଖ ବିରାଜଇ
ଦେଖିଲା ମାତ୍ରକେ ହରେ କ୍ଷୁଧା ତୃଷ୍ଣା ଦୁଇ
ରତିଦେବୀ ସଦୃଶ୍ୟରେ ଦିଶଇ ସୁନ୍ଦର
ଦେହଜ୍ୟୋତି ଦିଶେ ଜିଣି ସହସ୍ର ଭାସ୍କର ।
ମହାମାୟା ମେଦିନୀ ଯେ ହୋଇ ମଧୁହାରୀ
ମୋହିଅଛନ୍ତି ମଧୁକୁ କାମବାଣେ ଘାରି ।
ଶୁଣ ସେ ମୋହିନୀରୂପୀ ବିଷ୍ଣୁଙ୍କର ଭାବ
ଦେଖିଲାମାତ୍ରେ ଅସୁର ହୋଇଲା ଯେ ଦ୍ରବ୍ୟ
ଆନନ୍ଦେ କାମାନ୍ଧ ହାଇ କରିବାକୁ କୋଳ
ବୁଲିଲେ ମେଦିନୀ ତନୁ ଚକ୍ର ପରକାର ।
ନିଦ୍ରା ଯିବା ବିଷ୍ଣୁଙ୍କୁ ସେ ପ୍ରଦକ୍ଷିଣ କଲେ
ଧରୁ ଧରୁ ଅସୁରର ହସ୍ତୁ ଖସିଗଲେ ।
ପଛେ ପଛେ ଭ୍ରମି ଦୈତ୍ୟ ଆଶକ୍ତ ହୁଅନ୍ତେ
ମୋହିନୀ ବୋଇଲେ ଧରି ନପାରିବୁମୋତେ
ଗୋଡ଼ାଉଥିଲେ ତୁହିଁ ମୁଁ ପଳାଉଣ ଥିବି
ପଛେ ପଛେ ଆସ ମନେ ଏହିକଥା ଭାବି ।
ଯଦ୍ୟପି ତୁ ହରିବାକୁ ଆସୁ ପରସ୍ତିରୀ
ଏହି ନିଦ୍ରିତ ଜନକୁ ପାରିବୁ କି ମାରି ।
ତେବେଅବା ଭୋଗ ମୋତେ କରିବୁତୁନେଇ
ନୋହିଲେ ହରିନପାରୁ ଏହିଥିଲେ ଶୋଇ
ଶ୍ରୀମୋହିନୀ ନାରାୟଣ କହନ୍ତେ ଏ ବାଣୀ
ଅମୃତ ପରାୟେ ଦୈତ୍ୟ ମଣିଲା ତା ପୁଣି ।
ବୋଇଲାକ ଏଡ଼େ କଥା ଅଛି ଯେବେସତେ
କାହିଁକି ପଳାଉଥିଲୁ ନ କହିଣ ମୋତେ ।
ଏତେବେଳଯାଏ ଏହି ଥାଆନ୍ତା କି ବର୍ତ୍ତି
ଏକା ମୁଥେ ମାରି ତାକୁ ଦିଅନ୍ତିଣି ମନ୍ଥି ।
ଉଠିଲା ଅସୁର ଏତେବୋଲି କୋପଭରେ
ମାଇଲା ବିଧାଏ ନେଇ ବିଷ୍ଣୁର ଉପରେ ।
ସେ ବିଧା ବାଜନ୍ତେ ହରି ଅଧିକ ଶୋଇଲେ
ଏହାଦେଖି ଦୈତ୍ୟପତିବେନିଚକ୍ଷୁ ଖୋଲେ
ଚକ୍ଷୁ ଖୋଲନ୍ତେ ନିଃଶ୍ୱାସଦେଲେ ବିଷ୍ଣୁଛାଡ଼ି
ସେ ଆଘାତେଖଣ୍ଡେଦୂରେପଡ଼େଦେତ୍ୟଉଡ଼ି

ପୁନରପି ଉଠି ଧାଏଁ ହୋଇ ତମତମ
ବିଷ୍ଣୁଙ୍କ ଉପରେଯାଇ ଚଢ଼େଦେଇ ଦ୍ରୁମ ।
ଦ୍ରୁମ ଡିଅନ୍ତେ ବିଷ୍ଣୁର ଲୋମ ନ ହଲିଲା
ମେରୁ ପ୍ରାୟେ ପଡ଼ିଛନ୍ତି ଅସୁର ଦେଖିଲା ।
ନିର୍ଘାତ ପରାୟ ପୁଣି ମାରେ ନେଇ ପାଦ
ତଥାପି ଯେ ଗୋବିନ୍ଦର ନ ଭାଜିଲା ନିଦ ।
ନିଦ୍ରା ନ ଭାଜନ୍ତେ ପୁଣି ଦୈତ୍ୟ କୋପକଲା
ବିଷ୍ଣୁଙ୍କର ଭୁଜ ଧରି ଆକର୍ଷି ଝିଙ୍କିଲା ।
ଉଠିଲେକ ନିଦ୍ରା ଭାଙ୍ଗି ତହୁଁ ଭାବଗ୍ରାହୀ
ଭାବ ବୁଝିବା ନିମନ୍ତେ ଥିଲେ ସିନା ଶୋଇ
ସେ ଅଜ୍ଞାନୀ ଅସୁରର ଦେଖି ଦୁଷ୍ଟବୁଦ୍ଧି
ପୁଚ୍ଛା କଲେ ଚକ୍ଷୁ ମଳି ବସି ଦୟାନିଧି ।
ବୋଇଲେରେ କେଡ଼େଦୋଷକଲୁଚିଶାଚର
କେତେକାଳ ନିଦ୍ରାତୁରେ ଭାଙ୍ଗିଲୁ ମୋହର
ନିଦ୍ରାଭାଙ୍ଗିଲା ଲୋକ ତ ମରଇ ଅନ୍ଧକେ
ମୈଥୁନ ଭାଙ୍ଗିଲା ଲୋକେ ମରେ ଅପୁତ୍ରିକେ
ଆହାର ଭାଙ୍ଗିବା ଲୋକ ଦରିଦ୍ର ହୁଅନ୍ତି
ସଂସାରେ ଏ ତିନିଦୋଷୀ କେବେ ନତରନ୍ତି
ଅସୁର ବୋଇଲା ତୁରେ କରୁ କେତେ ଧର୍ମ
ତୋତେ ମାରିବାକୁ ମୁହିଁ ହୋଇଛି ଜନମ ।
ବିଷ୍ଣୁ ଶୁଣି ବୋଇଲେରେ ବୁଝିବା ତା ଆଜ
କେ ହାରିବ କେ ଜିଣିବ ଆଗ ତୁହି ବୁଝ ।
ଏତେ କହିଣ ଶ୍ରୀହରି କାୟା ବିସ୍ତାରିଲେ
ଲକ୍ଷ ଯୋଜନ ପର୍ଯ୍ୟନ୍ତ ତହୁଁ ବଢ଼ିଗଲେ ।
ମନ କରିଥିଲା ବୋଲି କରିଛି ତପ୍ୱର
ବିଶ୍ୱରୂପ ଧରି ଭୁଜ ଧଇଲା ହୁଙ୍କାର ।
ଉପାଡ଼ି ନେବି ବୋଲିଣ ଝିଙ୍କନ୍ତେ କୁନ୍ଥାଇ
ଲମ୍ୱିଲା ବାଦୁଡ଼ି ପକ୍ଷୀପ୍ରାୟ ଦୈତ୍ୟ ତହିଁ ।
ଦେଖି ତାହା ନାରାୟଣ ସିଞ୍ଚାଡ଼ିଲେ କର
ପଡ଼ିଲା ସହସ୍ର ଯୂଣେ ଯାଇ ନିଶାଚର ।
ଗୋବିନ୍ଦର ଭୁଜଧରି ତିନିଲୋକ ଘୋଟି
ସଚେତ ହୋଇଣ ଦୈତ୍ୟ ଚାହିଁଲା ଲେଉଟି
ବିଶ୍ୱରୂପ ଧରି ସେହୁ ଛାଡ଼େ ଘୋରରଡ଼ି
ତହୁଁ ଧାଇଁଯାଇ ଧରେ ପୁଣି ଭୁଜ ଭିଡ଼ି ।
ଉଡ଼ିଣ ମନକୁ ପଡ଼ି ଗଡ଼ାଗଡ଼ି ହେଲା
ପାଦକୁ ପାଦ ଛନ୍ଦି ସେ ବନ୍ଧାବନ୍ଧି କଲା ।
ବକ୍ଷସ୍ଥଳେ ଦୁଇକର ପିଠି ଜାନୁ ମୁଣ୍ଡ
ନଖ ଦନ୍ତେ ବିଦାରିଲା କରି ଖଣ୍ଡ ଖଣ୍ଡ ।
ପଡ଼ିଗଲା ଉଠି ଆପେ ହୋଇ ଛାଟିପିଟି
ଆଣ୍ଠୁଭରା ଦେଇ ମାଡ଼ି ବସିଲା ଲେଉଟି ।

ଧରାଧରି ମରାମରି କଲା ସେ ଅନେକ
କଦାପି ନୋହିଲା ବିଷ୍ଣୁ ଭୁଜ ଗ୍ରୁମ ବାଙ୍କ ।
ନିଃସାର ହୋଇଣ ଦୈତ୍ୟ ଅଶକତ ହେଲା
ଶ୍ରୀ ନାରାୟଣଙ୍କୁ ଚାହିଁ ଆତଙ୍କେ ଡାକିଲା ।
ଭୋ ପ୍ରଭୁ ତୋହର ତୁଲେ କଲିଯେତେବାଦ
ସହସ୍ର ବର୍ଷରେ ଭାଙ୍ଗି ନ ପାରିଲି ନିଦ ।
ଧନ୍ୟ ଧନ୍ୟ ଶ୍ରୀଭୁଜ ତୋ ଏଡ଼େବଡ଼ ଆଣ୍ଟ
ଏବେଯାଇ ଚିହ୍ନିଲି ତୁ ପ୍ରତ୍ୟକ୍ଷେବୈକୁଣ୍ଠ
ମୁହିଁ ଯେତେ ଦ୍ରୋହ କଲି କ୍ରୋଧତାରନାହିଁ
ମାରୁଥାଅ ବୋଲିଭୁଜ ଦେଲୁ ତୁ ବଢ଼ାଇ
ମୁଁ ଯେତେ ମାଇଲେ ସେହି ଭୁଜର କି ଯିବ
ସେ ଭୁଜତଳେରେ ମୋତେରଖ ବାସୁଦେବ
ତୋର ଭୁଜତଳେ ଥିଲେ ସଜୀବେ ମୁଁ ଥିବି
ଏହି ଆଜ୍ଞା କର ପ୍ରଭୁ କେବେ ନ ମରିବି ।
ଦୈତ୍ୟର ବଚନ ଶୁଣି ହସି ମହାପ୍ରଭୁ
ବୋଇଲେକ କେଡ଼େ ବରମାଗିଲୁରେବାବୁ
ମୋର ଭୁଜତଳେ ଯେବେ ରହିବୁ ବୋଇଲୁ
ସମସ୍ତ ଜୀବର ତେବେ ଜନନୀ ହୋଇଲୁ ।
ଜନନୀ ତୁ ଯେବେ ହେଲୁ ମୋରବୋଲକର
ପଚାଶକୋଟି ଯୋଜନ କାୟାକୁ ବିସ୍ତାର ।
ସେ କାୟା ଉପରେ ମୁହିଁ ହେବି ଜୀବରୂପ
ଛପନକୋଟି ବର୍ଣ୍ଣରେ ରହିବ ସ୍ୱରୂପ ।
ସେହି ଜୀବମାନଙ୍କର ପାଦତଳେ ଥିବୁ
ନାନା ଶସ୍ୟଫଳ ରସ ତୋ ହୃଦୁଁ ସ୍ରବିବୁ ।
ସେ ଫଳରେ ରସଯାକ ଆପେ ଏକା ମୁହିଁ
ଆତ୍ମାହୋଇ ଭୁଞ୍ଜୁଥିବିତୋତେ ଚକୁଦେଇ
ସବୁ ଆତ୍ମା ପାଦତଳେ ଥିଲୁ ତୁ ସର୍ବଦା
ମୁହିଁ ତୋତେ ସ୍ଥାପି ନାମଦେଲିମେଦମେଦା
ତୋର ତୁଲ୍ୟ ଭକ୍ତ ମୋତେନମିଳିବକେବେ
ତୁହି ବସିଥିଲେ ସିନା ସର୍ବ ଭକ୍ତ ହେବେ ।
କହୁଛି ଶୁଣ ତୁ ଆଉ ଭକ୍ତଙ୍କର ନ୍ୟାୟେ
ବୋଲନ୍ତି ଭଜିବେ ବଡ଼ ହେବା ସବୁଠାଏ
ଲୋକଙ୍କ ମଧରେ ଏଣେ ହେବ ବ୍ରହ୍ମଦ୍ୱିଜା
କରିବେ ସମସ୍ତ ଆସି ଆମ୍ଭ ପାଦପୂଜା ।
ଏମନ୍ତେ ସେବନ୍ତେ ମୋର ପାଦମନେମନେ
ତୁହି ଏବେ ଲାଗିରହ ସବୁରି ଚରଣେ ।
ଆବର ତୁ ବୋଲୁଅଛୁ ହୋଇବି ସଜୀବ
ଏଥରଙ୍କ ମଲେ ତୋର ଦୈତ୍ୟଦେହ ଯିବ
ଏଣୁକରି ତୋତେ ଏକା ଏ ବେଳକୁ ମାରି
କରିବି ଜଳ ଉପରେ ଥୋଇ ବସୁନ୍ଧରୀ ।

ତଥାପି ମୁଁ ନ ମାରନ୍ତି କହୁଛି ତା ଶୁଣ
ସ୍ତିରୀ ହୋଇଥାନ୍ତୁ ଯେବେପୁରୁଷ ନୋହିଣ ।
କାହିଁପାଇଁ ତୋତେ ଆଉ ମାରନ୍ତିଟି ମୁହିଁ
ମାରୁଅଛି ପଡ଼ିବୁ ତୁ ସ୍ତିରୀଅଙ୍ଗ ବହି ।
ରହିବୁ ପୃଥିବୀହୋଇ ତେବେ ସର୍ବଜୀବେ
ତୋଦେହେ ମଞ୍ଜି ପଡ଼ିଲେ ବୃକ୍ଷଅଙ୍କୁରିବେ ।
ଆବର ତୋ ନାମ ହେବ ବସୁମାତା ଜାଣ
ଏହାଶୁଣି ଅସୁର ଯେ ବିଚାରିଲା ମନ ।
ତହୁଁ ଶ୍ରୀହରି ନିକଟେ ମିଳିଲା ସେ ଯାଇ
କନ୍ଧ ସମର୍ପିଲା ଦୈତ୍ୟ ହେଉ ବୋଲିକହି
ବିଷ୍ଣୁ ଆଜ୍ଞା ପାଇ ମହାବିଶ୍ୱରୂପୀ ହେଲା
ପଚାଶ କୋଟି ଯୁଣ ସେ କାୟା ବିସ୍ତାରିଲା
ତାହା ଦେଖି ନାରାୟଣ ଚକ୍ରେ ତାକୁ ହାଣି
ସ୍ତିରୀ ହୁଅ ବୋଲି ମନ୍ତ୍ରି ସିଞ୍ଚିଦେଲେ ପାଣି
ବିଷ୍ଣୁଙ୍କର ମନ୍ତ୍ରବଳେ ହୋଇଲା ମୃତ୍ତିକା
ସେ ମୃତ୍ତିକା କଲେ ହରି ପୃଥିବୀ ମାଳିକା
ନବଯୁବା ଦେହ ବହି ସଜୀବ ସେ ହେଲା
ବିଷ୍ଣୁ ଆଜ୍ଞାରେ ଜଳକୁ ମାଡ଼ିଣ ରହିଲା ।
ପାଦପଦ୍ମ ତଳେ ତାକୁ ରଖିଲେ ଶ୍ରୀହରି
ବହିଲା ସବୁଭାଗ ସେ ହୋଇ ବସୁନ୍ଧରୀ ।
ଶୁଣ ବାବୁରେ ନାରଦ ଏଥୁ ଅନନ୍ତରେ
ବ୍ରହ୍ମା ଲୁଚିଥିଲା ସେହି ପଦ୍ମର ଭିତରେ ।
ଅସୁରକୁ ମାରି ହରି ପୃଥ୍ୱୀ କରିଦ୍ୟନ୍ତେ
ପଦ୍ମେ ଲୁଚି ରହି ବ୍ରହ୍ମାଚାହୁଁ ଥିଲେ ଗୁପ୍ତେ ।
ପାଣି ଉପରେ ଧରଣୀ ଦେଖି ବାହାରିଲା
ବାହାରନ୍ତେ ନାରାୟଣ ଶ୍ରୀମୁଖ ଦେଖିଲା ।
ଦେଖିଣ ପ୍ରଣାମ କରି ଧରେ ପଦ୍ମପାଦ
ବଦନ ଲଗାଇ ତହୁଁ କାଢ଼େ ମକରନ୍ଦ ।
ସେ ମକରନ୍ଦ ରସଟି ନାମମୟ ହେଲା
ସେ ନାମ ଭିତରୁ ସ୍ୱାଦୁ ଅମୃତ ଗଳିଲା ।
ସେ ଅମୃତ ପାନକରି ବ୍ରହ୍ମା ହେଲା ତୋଷ
ଦେଖିଲା ସେ ଅନାହତ ଦ୍ୱାର ଶ୍ରୀନିବାସ ।
ପାଦପଦ୍ମ ତଳେ ବସି ଚାହିଁଲା ପ୍ରତ୍ୟକ୍ଷେ
ଦେଖିଲା ଏକା ଚରଣ ଯାଏ ଅନ୍ତରୀକ୍ଷେ ।
ନ ପୁଣ ଆର ଚରଣ ଟେକିଥାଏ ବୋଲି
ତଳକୁ ଝିଙ୍କିଣ ବ୍ରହ୍ମା ଧରେ ମନ ପେଲି ।
ସେ ପାଦକୁ ମୂଳ କରି ଧରି ହୃଦେପାଞ୍ଚେ
ବୋଇଲେ ସେ ଗଲାପାଦେ ଆସେ ସିନା ପଛେ ।
ଏ ପଦକୁ ଛାଡ଼ିଲେ ତ ବିଷ୍ଣୁ ନ ପାଇବି
ଚରଣ ପଛକେ ଯାଉ ପାଦେ ଧରିଥିବି ।

ମୁଁ ଚରଣେ ଧରୁ ଯେବେ ଚରଣକେ ଯିବେ
ଗଲେ ତ ଅବଶ୍ୟ ସେହୁପାଦ ଦେଖାଇବେ ।
ଏମନ୍ତ ପାଞ୍ଚନ୍ତେ ବ୍ରହ୍ମା ହସି ନାରାୟଣ
ବୋଇଲେ ଦେଖ ତୁ ମୋର ଟେକିବା ଚରଣ
ସେ ପାଦଦର୍ଶନେ ତୋର ମନ ଯେବେ ହେଲା
ଭବାବ୍ଧି ତରିବୁ ଯେବେ ଭରସା ଦିଶିଲା ।
ଏତେବୋଲି ଦେଖାଇଲେ ଆଣି ସେହିପାଦ
ଓଲଟି ଊର୍ଦ୍ଧ୍ୱକୁ ଟେକି ଚାହିଁଲେ ଗୋବିନ୍ଦ ।
ବ୍ରହ୍ମା ବୋଲେ ସ୍ୱାମୀ କେହ୍ନେ ଏକ ପାଦେ ଯାଉ
ଏହି ସୂତ୍ର କହ ମୋର ମନ ଥୟ ହେଉ ।
ଶ୍ରୀହରି ବୋଇଲେ ତୁହେ ଶୁଣ ବେଦବ୍ରହ୍ମା
ଏକ ଚରଣକେ ମୋର ତଳେ ସବୁ ଆତ୍ମା ।
ଚାଲୁଅଛି ତେଣୁକରି ଚରଣେକ ମୁହିଁ
କୋଟି ବ୍ରହ୍ମାଣ୍ଡରେ ଆରପାଦେ ଥୋଇଥୋଇ ।
ମୁହିଁ ସିନା ଜୀବହୋଇ ସବୁଠାରେ ଅଛି
ପାଦେ ଜୀବହାତେ ପାଦେ ବ୍ରହ୍ମାଣ୍ଡ ଭ୍ରମିଛି ।
ଯେଉଁଦିନ ମୁହିଁ ଦୁଇ ପାଦକୁ ଟେକଇ
ସେହିଦିନ ସର୍ବେ ଯାନ୍ତି ପ୍ରଳୟ ଯେ ହୋଇ ।
ବ୍ରହ୍ମା ବୋଲି ତୋତେ ସେହିପାଦ ଚିହ୍ନାଇଲି
ଶୁଣି ପିତାମହ ବୋଲେ ଏବେ ନିସ୍ତରିଲି ।
କେଡ଼େ ସୁନ୍ଦର ଅଟଇ ତୋର ବେନିପାଦ
ହଂସ ପ୍ରାୟ ଶୁଭୁଅଛି ଚାଲିବା ଶବଦ ।
ସେ ଶବଦ ଜାଣିବ ଯେ ନିଶ୍ଚେ ହେବ ଜ୍ଞାନୀ
ଏତୋର ଘୋର ମାୟାରୁ ତରିବ ସେକ୍ଷଣି ।
ସଂସାରେ ନ ଚିହ୍ନି ତୋତେ ସେହୁ ମରିଯାଏ
ସେ ଅଣହେତୁ ମରଣ ଅଗାଡ଼ିର ପ୍ରାୟେ ।
ଜୀବ ରୂପେ ପୁଣି ତୁହି ସର୍ବହୃଦେ ବସୁ
ପବନ ପରାୟେ ହୋଇ ହୃଦରେ ପ୍ରକାଶୁ ।
ସେ ପବନ ଗୋଟି ଦେହମଧେ ରହିଥାଇ
ଆଘ୍ରାଣ କରିଲେ ସବୁ ବାସନା ଘେନାଇ ।
ସମାନେ ସେ ବସିଥାଏ ସବୁ ଦେହ ଯାକେ
ତିଳରୁ ଉଶ୍ୱାସ ହୋଇ ବହୁଥାଏ ନାକେ ।
ସେହି ପୁଣି ଯେତେବେଳେ ହୁଅଇ ଅସୁତ୍ର
ପର୍ବତ ପରାୟେ ଭାରା ଧରେ ବୃଦ୍ଧ ଗାତ୍ର ।
ତେଣୁଟି ପବନ ହେଉଅଛି ଏଡ଼େ ଗୁରୁ
ଉଶ୍ୱାସ ଅଟେ ଏଣୁ ତୋ ନାମ ସବୁଠାରୁ ।
ବୋଝ ନୁହେଁ କିବା ସେହୁ ନୁହଇ ଯେ ଭାର
ଖୋଜିଯିବି ବୋଇଲେ ନ ଥାଇ ପୁଣ ଦୂର ।
ମନେ ଚିନ୍ତାକଲେ ଜିହ୍ୱା ମୂଳୁ ହୁଏ ଜନ୍ମ
ହେଜି ଗଣିବି ବୋଇଲେ ନାହିଁ ଯେ ପ୍ରଥମ ।
ତେଣୁ ତୋର ନାମ କେହି ଗଣି ନ ପାରଇ
ଶଙ୍କର ବ୍ରହ୍ମାଦି ଦେବ ଛନ୍ତି ଯେତେ ରହି ।
ଏବେ ଜନ୍ମ କରିଅଛି ମୋତେ ଆଣି ଏଥେ
ଦଇତ୍ୟର ପ୍ରାୟ ସ୍ୱାମୀ ମାରିବକି ମୋତେ ।
ତୋତେ କଦାପି ବିଶ୍ୱାସ ଲାଗୁନାହିଁ ହରି
ପ୍ରତ୍ୟକ୍ଷ ମାଇଲୁ ଦୈତ୍ୟ ଆପେ ଜାତକରି ।
ବିରଞ୍ଚି ବଚନ ଶୁଣି ହସି ନାରାୟଣ
ବୋଇଲେ ମାଇଲେ ତାକୁ ତୋର ଲାଗି ଜାଣ
ତୁଯେବେ ନ ଡରିଥାନ୍ତୁ କେହ୍ନେ ପୃଥ୍ୱୀହୋନ୍ତା
ନିଶ୍ଚିନ୍ତ ହୋଇଣ ଏଥେ ସୃଷ୍ଟି କରଧାତା ।
ପ୍ରଥମରେ ମେଦିନୀକି କର ଯେ ସଳଖ
ସ୍ଥାପିବୁ ତହିଁ ଉତ୍ତାରୁ ଯାଇଁ ଜୀବଯାକ ।
ସର୍ଜିବୁ ଚଉଦପୁର କରି ପୃଥ୍ୱୀଗୋଟି
ରହିବ ପଞ୍ଚାଶ ଲକ୍ଷଯାଏ ଜଳ ମାଟି ।
ସେ ଭୂମି ସପତ ପୁରେ ପାତାଳ ହୋଇବ
ଯେଉଁରୂପେ ଯେଉଁ ଜନ ଯେମନ୍ତେ ରହିବ ।
ଉପରକୁ ଏକଲକ୍ଷ ତ୍ରିଂଶଯୂଣ କର
ରଚନା କର ତୁ ଭିନ୍ନେ ଭିନ୍ନେ ସାତପୁର ।
ଭୂଲୋକକୁ ଆଦିକରି ସପ୍ତଲୋକ ଯାଏ
ଏହି ସାତପୁର ଘେନି ବସିବେ ସଭିଏଁ ।
ଏତେବୋଲି ଚାରିବେଦ ଦେଲେ ଦେବହରି
ବୋଇଲେ ସବୁକୁ ଏହା ଘେନି ତିନିପୁରୀ ।
ଏ ଚାରିବେଦକୁ ଚାହିଁ ସୃଷ୍ଟି କର ଜାତ
ଏତେ କହି ଅନ୍ତର୍ଦ୍ଧାନ ହେଲେ ଜଗଦ୍‌ଭୂତ ।
ଗଲେ ବୈକୁଣ୍ଠେ ମୋହିନୀରୂପୀ ନାରାୟଣ
ବିପ୍ର ପୀତାମ୍ବର ଦାଶ ପଶିଲା ଶରଣ ।
ଯେଉଁ ଚରଣ ଟେକନ୍ତେ ବ୍ରହ୍ମା ଝିଙ୍କିଧରେ
ସେ ଚରଣ ରେଣୁ ଆସିପଡୁ ମୋରଶିରେ ।



## ସୃଷ୍ଟି ରଚନା ପ୍ରଣାଳୀ

ଏଥୁଅନ୍ତେ ସେ ନାରଦ ମହାମୁନି ପୁଣି
ପିତା ପାଦେ ଅର୍ଘ୍ୟ ଦେଇ କରନ୍ତି ଦଇନୀ ।
ପଚାରନ୍ତି ଭୋ ବିହି ସେ ବିଷ୍ଣୁ କହିଗଲେ
ତହିଁ ଉତ୍ତାରୁ ଯେ ବ୍ରହ୍ମା କି ଉପାୟ କଲେ ।
ନାରଦଙ୍କ ଏ ବଚନେ ହସି ଚଉମଥା
ବୋଇଲେ କହିବା ବାବୁ ଶୁଣ ବ୍ରହ୍ମ କଥା ।
ବିଷ୍ଣୁ କହି ଯେତେବେଳେ ଗଲେ ପାଦଟେକି
ପଦ୍ମ ଭିତରୁ ସେ ବ୍ରହ୍ମା ଖସିଲେ ପୃଥ୍ୱୀକି ।
ସେ ପୃଥିବୀ ଟଳମଳ ହୋଇ ଚହଲିଲା
ଚହଲିବା ଦେଖି ପିତା ପୃଥ୍ୱୀକି ପୁଚ୍ଛିଲା ।

ବସୁମତୀ କିମ୍ପା ଏଡ଼େ ଦୁର୍ବଳ ତୁ ହେଲୁ
କିମ୍ପାଇଁ ବସିଲେ ସ୍ଥିର ନୋହି ଚହଲିଲୁ ।
ଏ ରୂପେ ତୁ ହଲିଲେ କି ହେବ ଆଉ ପୃଥ୍ୱୀ
ମୁଁ ତେବେ ଯାଇ କହିବି ମୁହିଁ ଜଗଜ୍ୟୋତି ।
ପୃଥ୍ୱୀ ଶୁଣି ବୋଇଲେ ତୁ କି କହିବୁ ଯାଇଁ
ଶୁଣ ମୁହିଁ କହୁଅଛି ଯେଣୁ ଚହଲଇ ।
ଆଶ୍ରାଗୋଟି ନ ପାଇ କେ ରହି ପାରିଛି କି
କୀଟୁ ବ୍ରହ୍ମଯାଏ ପୂରି ଅଛନ୍ତି ସତେ କି ।
ତୁ କାହାକୁ ଆଶ୍ରାକରି କହିବୁ ଯାଇଣ
ଏକାତ୍ମା ହୋ ବୈକୁଣ୍ଠେ ଲୁଚିଛି ଯେପୁଣ ।
ଅଷେଶ ପ୍ରକାରେ ଭାବ ନାନାବିଧ ନାମ
ଧରି ଶରୀର ଆଶ୍ରାରେ ହୁଅଇ ଜନମ ।
ଜୀବ ଗୁଣ ପରମର ଆଶ୍ରାଧରି ବଞ୍ଚେ
ନୋହିଲେ ଏକାକୀ କିମ୍ପା ବୈକୁଣ୍ଠେ ସେ ଲୁଚେ ।
ଏଣୁ ଏହି ସଂସାରରେ ଯେତେ ଲୋକଥାଇ
ଆଶ୍ରା ନ ପାଇଲେ ରହି ନ ପାରନ୍ତି କେହି ।
ଯହିଁରେ ଆଶ୍ରା ଲୋଡ଼ିଛି ବିଷ୍ଣୁ ହୋଇ ଆତ୍ମା
ଆଉ ଆନ ଲୋକକୁ ତୁ ଲେଖୁଛୁ କି ବ୍ରହ୍ମା ।
ମୁଁ ଯେବେ ନିଶ୍ଚଳ ହେବି କହୁଛି ଶୁଣିବୁ
ପଦ୍ମ ବୃକ୍ଷକୁ ଉପାଡ଼ି ମେରୁ କରିଦେବୁ ।
ଆଠଗୋଟି ରୋମ ଦେବି ନିଅ ପୁଣ ଧରି
ଆଠ ଗୋଟି ପୋତିଦିଅ ହେଉ ଅଷ୍ଟଗିରି ।
ଏତେ କହି ଆଠ ରୋମ ସମର୍ପିଲେ ମହୀ
ସତ ବୋଲି ମନେ ପାଞ୍ଚି ଧଇଲେ ତା ବିହି ।
ପୃଥ୍ୱୀର ବଚନେ ପଦ୍ମ ବୃକ୍ଷ ଉପାଡ଼ିଲା
ମୃଣାଳ ଦଣ୍ଡ ଗୋଟିକି ହସ୍ତରେ ଧଇଲା ।
ମନେ କଳ୍ପ ପୋତିଦେଲା ହେଲା ମେରୁଦଣ୍ଡ
ଉଦେ ଅସ୍ତେଯାଏ ମାଡ଼ି ବସିଲା ବ୍ରହ୍ମାଣ୍ଡ ।
ଅକର୍ମାଶିଳା ଯାଏ ସେ ପାତାଳେ ଭେଦିଲା
ଉପରକୁ ଉଭାହୋଇ ଥୋକାଏ ବହିଲା ।
ସେହିଟି ହୋଇଲା ମେରୁଗିରି ଶିଖସ୍ଥଳୀ
ତହିଁରେ ରହି ବିଧାତା ମନ ମଧେ ଭାଳି ।
ପୃଥ୍ୱୀ ପୁଣି ଯାହା ଦେଇଥିଲେ ଆଠରୋମ
ଦିଗେ ଦିଗେ ସ୍ଥାପି ତାକୁ ଦେଲେ ଏହି ନାମ
ପ୍ରଥମେ ରୋମେକ ନେଇ ପୂର୍ବରେ ପୋତିଲେ
ଉଦୟଗିରି ବୋଲିଣ ତାହା ନାମ ଦେଲେ ।
ଅଗ୍ନିକୋଣରେ ସ୍ଥାପିଲେ ପୁଣି ରୋମେନେଇ
ଗନ୍ଧମାର୍ଦ୍ଦନ ବୋଲିଣ ତାର ନାମ ଦେଇ ।
ଦକ୍ଷିଣେ ପୋତିଲେ ନେଇ ପୁଣି ଏକରୋମ
ମାଲ୍ୟବନ୍ତଗିରି ବୋଲି ଦେଲେ ତାର ନାମ ।
ନୈର୍ଋତ କୋଣକୁ ଗଲେ ପୁଣ ରୋମଧରି
ତହିଁରେ ବସାଇ ନାମଦେଲେ ବିନ୍ଧ୍ୟଗିରି ।
ପଶ୍ଚିମଦିଗେ ଗମିଲେ ପୁଣି ପ୍ରଜାପତି
ଅଷ୍ଟଗିରି ବୋଲି ତହିଁ ରୋମେ ଦେଲେ ପୋତି ।
ବାୟବକୋଣେ ପୋତିଲେ ପୁଣ ନେଇ ରୋମେ
ଲୋକାଲୋକ ଗିରି ବୋଲି ଦେଲେ ତାକୁ ନାମେ ।
ପୁଣିହିଁ ଉତ୍ତରେ ନେଇ ରୋମେ ଦେଲେ ପୋତି
ମନ୍ଦରଗିରି ତା ନାମ ଦେଇ ପ୍ରଜାପତି ।
ଐଶାନ୍ୟ କୋଣେପୋତିଲେ ପୁଣି ଏକ ରୋମ
ହିମଗିରି ବୋଲି ବ୍ରହ୍ମା ଦେଲେ ତାର ନାମ ।
ଏହିରୂପେ ସେ ପୃଥ୍ୱୀର ଦେହ ଗୋଟି କଲେ
ସେ ଦେହକୁ ଚତୁର୍ଦ୍ଦଶ ଭାଗ ପୁଣି କଲେ ।
ସେ ଚଉଦ ଭାଗୁ ହେଲେ ଚଉଦ ଯେ ପୁର
ଏଣୁ ଏ ପିଣ୍ଡ ବ୍ରହ୍ମାଣ୍ଡ ଜାଣ ଏକାକାର ।
ସେ ପୁରର ନାମମାନ ନାରଦ ହେ ଶୁଣ
ଭୂଲୋକ ଯେ ଭୁବଲୋକ ସ୍ୱର୍ଗେ କାହିଁ ଜାଣ ।
ମହଲୋକ ଜନଲୋକ ତପଲୋକ ଯାଏ
ସତ୍ୟଲୋକ ଆଦିଲୋକ ରଚିଲେ ପିତାଏ ।
ତଳକୁ ରଖିଲେ ପୁଣ ସାତପୁର ଖଞ୍ଜି
ସେ ପୁର ନାମ କହିବା ବୁଝ ତାହା ହେଜି ।
ସୁତଳ ବିତଳ ଆଉ ତଳ ମହାତଳ
ତଳାତଳ ରସାତଳ ସପତ ପାତାଳ ।
ଏ ପୁର ପରେ ସଞ୍ଚିଲେ ସ୍ୱର୍ଗପୁରନେଇ ।
ସ୍ୱର୍ଗର ଉପର ପୁରୀ ଯଶୋବନ୍ତୀ କହି ।
ସେ ଯଶୋବନ୍ତୀ ପୁରରେ ପିତାମହ ବସେ
ନାହିଁ ଦିବାରାତ୍ର ତହିଁ ଜ୍ୟୋତିର୍ମୟ ଦିଶେ ।
ଆବର ଜନ୍ମ ହୋଇବେ ଯେତେକ ଦେବତା
ତାଙ୍କପାଇଁ ମଧ୍ୟପୁରେ ସଞ୍ଚିଲେ ବିଧାତା ।
ସ୍ଥାବର ଜଙ୍ଗମ କୀଟ ପତଙ୍ଗମାନଙ୍କୁ
ରଖିଲେକ ପୁରମାନ ଖଞ୍ଜି ସମସ୍ତଙ୍କୁ ।
ଜୀବ ହୋଇ ଯେତେଗୋଟି ଉପୁଜିବେ ପୁଣି
ଠାବ ସଞ୍ଚିଲେ ସବୁଙ୍କ ପାଇ ଧାତା ଜାଣି ।
ସେ ଜୀବଙ୍କ ଜନ୍ମ ଆର କହିବା ତୋ ଆଗେ
ଯେ ଯେଉଁଠାରୁ ଆସିଲେ ଜନ୍ମି ଯେଉଁମାର୍ଗେ ।
ଏବେ ଆଗ ନାରଦ ହୋ ଶୁଣ ବହୁକଥା
ପୁରମାନ ହେଲାରୁ ସେ କଲେ ହୃଦେ ଚିନ୍ତା ।
ମନେ ପାଞ୍ଚିଲେ ରଖିକି ଗୃହଶୂନ୍ୟ କରି
ନିବାସକୁ ଶୋଭା ଦିଶେ ଥିଲେ ସିନାସ୍ତିରୀ ।
ସ୍ତିରୀ ନ ଥିଲା ଗୃହତ ଅରଣ୍ୟ ଅବଳେ
ଏତେକ ବୋଲିଣ ବ୍ରହ୍ମା ପଞ୍ଚମନେ ଭାଳେ ।

ପୁନରପି ବିଚାରଇ କେଡ଼େ କର୍ମ କଲି
ପ୍ରଭୁ ଗଲାବେଳେ ଏହା କିମ୍ପା ନ କହିଲି ।
କହିଥିଲେ ଏକଥା ସେ ଦେଇ ଯାଇ ଥାନ୍ତେ
ନୋହିଲେ ଏହି ସର୍ଜନା ଲାଗେ ସିନା ମୋତେ ।
ଗୃହକୁ ଭାରିଯା ସୁତ ବିତ୍ତ ସିନା ନାରୀ
ଏ ତିନି ଯାହାର ନାହିଁ ସେ ଦରିଦ୍ର ପୁରୀ ।
ଏହା ସଞ୍ଚିଲେ ପ୍ରଭୁ କି ବୋଲିବେକ ମୋତେ
ବେଦଯେ ଦେଇଗଲେ କି କାର୍ଯ୍ୟ ଅଛି ଏଥେ ।
ସ୍ତିରୀ ନ ଥାଇ ସନ୍ତତି ସୃଜିବି କେସନେ
ବ୍ରହ୍ମାର ବଚନ ଶୁଣି ହସି ଦେବମାନେ ।
ପିତାଙ୍କୁ ଚିତୋଇ କହିଦେଲେ ଦେବାଡାକି
ବୋଇଲେକ ବ୍ରହ୍ମା ତୁ ହୋ ଭାଳୁଛୁ କାହିଁକି ।
ମୋତେ ତ ଶ୍ରୀମୁଖେ କହି ଯାଇଛନ୍ତି ପ୍ରଭୁ
ବେଦ ଉଚ୍ଚାରିଲେ ତୁହି ଭାରିଯା ପାଇବୁ ।
ଓଁ କାର ମହାବ୍ରହ୍ମର ଗୋତ୍ର ଗୋଟିହୋଇ
ଚାରିପାଦରେ ଜନ୍ମିବେ ଗାୟତ୍ରୀ ନ ବହି ।
ଚଉଷଠି ଅକ୍ଷର ସେ ମନ୍ତ୍ର ପ୍ରକାଶିବେ
ଚତୁଷ୍ପଦା ହୋଇ ଆଠପୁତ୍ର ତୋତେ ଦେବେ
ଜନ୍ମିବେ ସେ ଆଠପାଦ କରେ ଦୁଇ ଦୁଇ
ମରୀଚି ଅଙ୍ଗିରା ଅତ୍ରି ତାଙ୍କ ନାମ ବହି ।
କ୍ରତୁ ବଶିଷ୍ଠ ପୁଲକ ଭୃଗୁ ପ୍ରଜାପତି
ଏ ଆଠ ବଂଶରୁ ହେବେ ସକଳ ସନ୍ତତି ।
ଏ ଋଷିଏ ନ ଜନ୍ମୁ ତୁ କଥା ଏକ କର
ଲଲାଟେ ତୋହର ଘଷି ଜନ୍ମିବେ ଈଶ୍ୱର ।
ସେହି ଈଶ୍ୱର ଭରସା ତୋହର ହୋଇବ
ଯାବତ ଜୀବରେ ସେହି ମିଶି ଉପୁଜିବ ।
ରଜ ତାପସ ସାତ୍ତ୍ୱିକ ତିନିଗୁଣ ଘେନି
ସୃଜିବୁ ତୁ କୀଟୁ ବ୍ରହ୍ମଯାଏ ଚାରିଖାନି ।
ସେ ସର୍ଜନା ନାମ କିଛି ଶୁଣିଥା ତୁ କର୍ଣ୍ଣେ
ଦେବତା ଗନ୍ଧର୍ବ ପିତୃ କିନ୍ନର ଚାରଣେ ।
ବିଦ୍ୟାଧର ବିଘ୍ନକର୍ତ୍ତା ମାଧବ ବିହନ୍ତା
ମନୁଷ୍ୟ ଋଷି ଅନାଦି ବିପ୍ର ଆଦିମାତା ।
ପିଶାଚ ଉରଗ ଭୂତ ପ୍ରେତ କାଳଗଣ
ମାସ ଉତ୍ସବରେ ଯୁଗ ରବି ଶଶୀ ପୁଣ ।
ମୁହୂର୍ତ୍ତ କରଣ ଯୋଗ ଲଗ୍ନ କାଳକେତୁ
ଗ୍ରହ ଯେ ନକ୍ଷତ୍ର ତାର ବାର ଷଡ଼ଋତୁ ।
ଜରାୟୁଜ ଯେ ସ୍ୱେଦଜ ଅଣ୍ଡଜ ଉଦ୍ଭିଜ
ପଶୁଙ୍କର ଜନ୍ମ ଏବେ ଶୁଣ ହେ ଅବଜ ।
ସୁରଭୀ ବଳିୟା ଶଶା ଶ୍ୱାନ ସିଂହ ଶୁଆ
କୁରଙ୍ଗୀ ଗୟଳ ଗଜ ବ୍ୟାଘ୍ର ବଣଭୁଆ ।
ଜଳଚର ଜୀବ ଆଦି ପକ୍ଷୀଜନ୍ତୁ ଯାଏ
ଏ ସବୁ ଜାତ ହୋଇବେ ତୋହରି ଉପାୟେ ।
ଦେବଙ୍କ ବାକ୍ୟ ଶୁଣି ବ୍ରହ୍ମା ହୋଇ ତୋଷି
ସତ ମଣି କପାଳକୁ କରେ ଦେଲେ ଘଷି ।
ତକ୍ଷଣେ ଜନ୍ମିଲେ ସଦାଶିବ ଶିର ଟେକି
ପଞ୍ଚମୁଖଯାକରେ ଯେ ତିନି ତିନି ଆଖି ।
ଶୁକ୍ଳ ଶୁଭ ଶୁଚି ଶ୍ୱେତ ହୋଇ ସୁଢ଼ଲାଙ୍ଗେ
ନବଲକ୍ଷ ଡମ୍ବରୁ ଯେ ବାଜେ ସଙ୍ଗେ ସଙ୍ଗେ ।
ତହିଁ ପାରୁଶେ ଶୁଭୁଛି ଦଶକୋଟି ଡାକ
ଏକାଦଶ କୋଟି ବାଜେ ଟମକ ଝମକ ।
ଦ୍ୱାଦଶ କୋଟି ଶୁଭଇ ଶିଙ୍ଗା ବେଣୁଧ୍ୱନି
ତେରକୋଟି ଘଣ୍ଟ ପୁଣି ବାଜେ କିଣି କିଣି ।
ଚଉଦ କୋଟି ଅଛନ୍ତି ସଙ୍ଗେ ରୁଦ୍ରଗଣ
ଏତେ ସମ୍ଭର୍ବେ ଜନ୍ମିଲେ ଶୂଳପାଣି ଜାଣ ।
ସଂସାର ପାଳିବା ପାଇଁ ଆସି ଉପୁଜିଲେ
ମୋତେ ପୁର ଯେତେ ଦିଅ ବ୍ରହ୍ମାଙ୍କୁ ବୋଇଲେ
ଧାତା ବୋଇଲେ ସ୍ୱାମୀହେ କପିଳାସେ ରହ
ତୁମ୍ଭଙ୍କୁ ଯେହୁ ଭଜିବ ତାକୁ ବର ଦିଅ ।
ଜୀବଙ୍କର ହିତେ ଥାଅ ବହୁ ଭୋଗ ଦେଇ
ସଂସାରରେ ପୂଜା ପାଅ ଲିଙ୍ଗମୂର୍ତ୍ତି ବହି ।
ଏହା ଶୁଣି ସଦାଶିବ ହୋଇଲେ ସନ୍ତୋଷ
ବ୍ରହ୍ମାଙ୍କ ବଚନେ ତହୁଁ ଗଲେ କପିଳାସ ।
ରୁଦ୍ରଗଣ ଘେନି ତହିଁ ରହିଲେ ଧୂର୍ଜ୍ଜଟି
ଶୁଣ ବାବୁରେ ନାରଦ କହେ ପରମେଷ୍ଠୀ ।
ତହିଁ ଉତ୍ତରୁ ସେ ଧାତା ଦେବଙ୍କ ବଚନେ
ଉଚ୍ଚାରି ବସିଲେ ଶ୍ରଦ୍ଧା ହୋଇ ସ୍ୱରନାମେ ।
ବାଜନ୍ତେ ସେହି ସ୍ୱରର ଶବ୍ଦ ବ୍ରହ୍ମ ହୋଇ
ଜନମିଲେ ମହାମାୟୀ ହିଂସାରୁଢ଼ା ହୋଇ ।
ଚାରିମୁଖେ ଚାରିଭୁଜ ଚାରିପାଦ ଧରି
ଜନମିଲେ ରକ୍ତବର୍ଣ୍ଣ ହୋଇ ଗାୟତିରୀ ।
ଅର୍ଦ୍ଧମାତ୍ରା ପରେ ଅଛି ଯେଉଁ ବ୍ରହ୍ମବିନ୍ଦୁ
ସେ ବିନ୍ଦୁ ହୋଇଲେ ଅଧେ ଗାୟତିରୀଛନ୍ଦୁ ।
ବିନ୍ଦୁ ଏକ ବ୍ରହ୍ମ କୋଟି ବିନ୍ଦୁପ୍ରାୟ ଦିଶେ
ସେ ତେଣୁ ବ୍ରହ୍ମବାଦିନୀ ନାମ ପରକାଶେ ।
ଅର୍ଦ୍ଧଚନ୍ଦ୍ର ଭୂଷଣରେ ଦେହ ବିରାଜଇ
ବ୍ରହ୍ମାଙ୍କ ବଚନ ବିଷ୍ଣୁ ହୃଦ ମହାମାଈ ।
ତେଣୁକରି ଗାୟତ୍ରୀକି ବ୍ରହ୍ମା ଜପୁଥାନ୍ତି
ଗାୟତ୍ରୀ ଜପ କରିଲେ ବ୍ରହ୍ମାଙ୍କୁ ପାଆନ୍ତି ।
ଅଟଇ ଗାୟତ୍ରୀ ବ୍ରହ୍ମା ଏକଇ ଯେ ବ୍ରହ୍ମ
ବିପ୍ରଙ୍କର ଏହି ବ୍ରହ୍ମଲାଗି ସନ୍ଧ୍ୟା କର୍ମ ।

ଏମନ୍ତ ବ୍ରହ୍ମା ଆସିଣ ଗାୟତିରୀ ହୋନ୍ତେ
ଦେବେ କହିଲେ ବ୍ରହ୍ମା ହେ ଦେଲୁ ନିଅ ତୋତେ ।
ସଂସାର ସରଜି ତୁହି ଯାକୁ ନିତ୍ୟେ ରମ
ପ୍ରତ୍ୟକ୍ଷର ଏ ଗାୟତ୍ରୀ ଅଟେ ମହାବ୍ରହ୍ମ ।
ତୋହର ପାଇଁ ଶରୀର ଆମ୍ଭେ ଜାତ କଲୁଁ
ହେଲା ଦୁହିତାଟି ନିଅ ତୁମ୍ଭଙ୍କୁ ଯେ ଦେଲୁ ।
ଧାତା ବୋଇଲେ ଦୁହିତା ମତେ ଯେବେ ଦେଲ
ମୁଁ ଜାମାତା ହେଲି ତୁମ୍ଭେ ଶ୍ୱଶୁର ହୋଇଲ ।
ସଂକଳ୍ପ କରି ସମର୍ପି ଦିଅ ତେବେ ମୋତେ
ଦେବସୁତା ପତି ହୋଇ ରହିଥିବି ନିତ୍ୟେ ।
ଶୁଣି ସେହି ଦେବମାନେ ଉତ୍ତମ ବୋଇଲେ
ବିଷ୍ଣୁର ରୂପକୁ ଚିନ୍ତା ବାକ୍ୟ ଉଚ୍ଚାରିଲେ ।
ଶୁକ୍ଳାୟର ବିଷ୍ଣୁ ବୋଲି ସଂକଳ୍ପେକ ପଢ଼ି
ବ୍ରହ୍ମାଙ୍କ କରେ ଗାୟତ୍ରୀ ଦେଲେ ହସ୍ତ ଯୋଡ଼ି
କୁଶଗ୍ରନ୍ଥି ବାନ୍ଧି ପୁଣି ବିଭାବିଧି କଲେ
ଯଜୁର୍ବେଦର ଭିତରୁ ବାକ୍ୟ ଉଚ୍ଚାରିଲେ ।
ସେ ବାକ୍ୟକୁ କଲେ ଏକ ଚାଳିଶ ଯେ ଅଧା
ତହୁଁ ପ୍ରଜାଯେ ଯାବତ କର୍ମରେଟି ଶ୍ରଦ୍ଧା ।
ସଂସାର ଯେ କର୍ମ ଧର୍ମ ସଂସାରରୁ ଜାତ
ସେ ଧର୍ମରୁ ବଂଶ ପୁଣି ହୁଅଇ ବିଖ୍ୟାତ ।
ବଂଶ ବିଖ୍ୟାତରୁ ମନ ସଂସାର ହୁଅଇ
ନାଦ ବିନ୍ଦୁ ପ୍ରତିଷ୍ଠାଟି ଏଣୁ କରି କହି ।
ବେଦରୁ ନାଦ ଜନମ ବିନ୍ଦୁଟିରୁ ସୁତ
ନାଦ ଅଟେ ମନ୍ତ୍ରଭାଗ ବିନ୍ଦୁବ୍ରହ୍ମ ତତ୍ତ୍ୱ ।
ବିନ୍ଦୁକୁହିଁ ନାଦ ଏଣୁ କରଇ ସଂସ୍କାର
ଶୁଣହେ ବାବୁ ନାରଦ କହେ ବେଦବର ।
ଚଉଷଠି କାଣ୍ଡୀ ମନ୍ତ୍ରେ ବ୍ରହ୍ମା ବିଭା ହେଲେ
ବେଦମାନ ନେଇ ଶଙ୍ଖ କୁଶଜଳ ଦେବେ ।
ଯୌତୁକ ନିମନ୍ତେ ଆପେ ଆପେ ହୋଇରୁଚି
ବ୍ରହ୍ମାଙ୍କ ମୁଖେ ରଞ୍ଜିଲେ ଦେବତାଏ ଭଜି ।
ପ୍ରସନ୍ନ ହୋଇ ଧାତାଙ୍କ ଜିହ୍ୱାଗ୍ରତ ହେଲେ
ବେଦବର ବୋଲି ଆପେ ଆପେ ନାମ ଦେଲେ
ରହିଲେ ବଢ଼ାଇ ବିଭାଗୋଟି ହେଇ ତୁନି
ତହୁଁ ଯାଇଣ ବିଧାତା ଗାୟତ୍ରୀଙ୍କୁ ଘେନି ।
ସୁହଂସ ପଲ୍ୟଙ୍କ ପରେ ନେଇ ଶୁଆଇଲେ
ରେଚକ ପୁରକ କ୍ରମେ ତହୁଁ କ୍ରୀଡ଼ାକଲେ ।
ହରିଲେ ହକାର ଇନ୍ଦ୍ରବେଳେ ପଦ୍ମଯୋନି
ସମ୍ଭବ କଲେ ସକାର ଶକତିରେ ପୁଣି ।
ହୋଇଛି ସଂସାର ମୁଣ୍ଡେ ଶୃଙ୍ଗ ଯହିଁ ଉଦେ
ପ୍ରକାଶେ ବ୍ରହ୍ମଗାୟତ୍ରୀ ତହିଁ ଚାରିପାଦେ ।
ସେ ପାଦ ଚିହ୍ନି ଗାୟତ୍ରୀ ଯେହୁ ଜପ କରେ
ତାହାକୁ ବ୍ରାହ୍ମଣ ବୋଲି କହନ୍ତି ସଂସାରେ ।
ଚତୁଷ୍ପଦା ନ ଭଜି ଯେ ତ୍ରିପଦା ଭଜଇ
ସେ ଭଜନ ବନ୍ଧ୍ୟାସ୍ତିରୀ ପରାୟ ଫଳଇ ।
ତେଣୁକରି ବ୍ରହ୍ମା ସେହି ଚାରିପାଦେ ଟେକି
ରମିଲେ ପୁତ୍ର ହୁଅଇ ବୋଲି ଗାୟତ୍ରୀଙ୍କି ।
ପ୍ରଥମ ପାଦକୁ ତୋଳି ଊର୍ଦ୍ଧ୍ୱକୁ ଟେକିଲେ
ସେକ୍ଷଣି ମରୀଚି ଆଉ ଅତ୍ରି ଜନମିଲେ ।
ଦ୍ୱିତୀୟ ପାଦକୁ ତୋଳିନ୍ୟନ୍ତେ ଅଧୋଦେଶେ
ଜନମିଲେ ଅଙ୍ଗିରା ଯେ ବଶିଷ୍ଠ ତାପସେ ।
ତହିଁ ଉତ୍ତାରୁ ଟେକନ୍ତେ ତୃତୀୟ ପାଦଟି
ଜନ୍ମିଲେ ତହୁଁ ପୁଲହ କ୍ରତୁ ଦୁଇଗୋଟି ।
ଏମନ୍ତେ ଚତୁର୍ଥ ପାଦ ଟେକି ପିତାମହ
ଜନମିଲେ ପ୍ରଜାପତି ଭୃଗୁ ଦୁଇପୁଅ ।
ଚାରିପାଦରୁ ଜନମ ହୁନ୍ତେ ଆଠରଷି
ପିଆଇଲେ କ୍ଷୀର ତାଙ୍କୁ ଗାୟତିରୀ ବସି ।
ଜନମିଲେ ରଷିମାନେ ଚିରଜୀବୀ ହୋଇ
ଗାୟତ୍ରୀମାତା ତାହାଙ୍କୁ କ୍ଷୀର ଦିଏ ନେଇ ।
ଏ ଗାୟତ୍ରୀ ପାଦଦେଲେ ଏ ପିଠି ସେ ପିଠି
ପିଠିଏ ଜୀବ ପିଠିଏ ଅଟେ ପରମେଷ୍ଠୀ ।
ପରମ ଜୀବଟି ଜାଣ ଦୁଇ ଦୁଇ ପାଦ
ଏ ରୂପେ ଚାରିପାଦଟି ଗାୟତ୍ରୀଙ୍କ ହୃଦ ।
ଗାୟତ୍ରୀଙ୍କ ପାଦକୁ ଯେ ହଂସବୋଲି କହି
ସେ ହଂସକୁ ଚିହ୍ନିବାର ଦୁର୍ଗମ ଅଟଇ ।
ବ୍ରହ୍ମଙ୍କୁ ଯେ ଜାଣଇ ସେ ଗାୟତ୍ରୀଙ୍କୁ ଚିହ୍ନେ
ଗାୟତ୍ରୀ ଚିହ୍ନିଲେ ଲୋକ ଚତୁଷ୍ପଦା ଜାଣେ ।
ଚତୁଷ୍ପଦା ଗାୟତ୍ରୀକୁ ଜାଣେ ଯେହୁ ଜପି
ବ୍ରାହ୍ମଣ କୁଳକୁ ସାଧେ ସେହି ଚନ୍ଦ୍ରରୂପୀ ।
ଶୁଣ ହେ ନାରଦ ଏବେ ସେ ରଷିଙ୍କ କଥା
ଜନ୍ମ ହେଲା ପରେ ତାଙ୍କୁ ପୁଚ୍ଛିଲେ ବିଧାତା ।
ବୋଇଲେକ ସୃଷ୍ଟି ସର୍ଜି ପାରିବ କି ବାବୁ
ତୁମ୍ଭେ ପାରିବ ବୋଇଲେ ଆମ୍ଭେ ସୁଖ ହେବୁ
ତାହା ଶୁଣି ପୁତ୍ରମାନେ ମନୁ ଇଚ୍ଛା ଛାଡ଼ି
ଜଣାଇଲେ ପିତାଙ୍କର ପାଦତଳେ ପଡ଼ି ।
ଆହେ ତାତ ଆମ୍ଭଙ୍କୁ ଯେ ବୋଲ ସୃଷ୍ଟି ସର୍ଜ
କେଉଁରୂପେ ସର୍ଜିବୁ ନ ଦେଲେ ରଜବୀର୍ଯ୍ୟ ।
ରଜରେ ପକାନ୍ତୁ ଯେବେ ଆମ୍ଭେ ବୀର୍ଯ୍ୟନେଇ
ତେବେ ଜୀବ ସଂସାରରେ ଯାନ୍ତେ ଜାତ ହୋଇ
ଶୁଣି ପିତାମହ କ୍ଷଣେ ମନରେ ପାଞ୍ଚିଲେ
ବୋଇଲେ ସତ୍ୟ ବଚନ ବାଳକ କହିଲେ ।

ରଜ ବୀର୍ଯ୍ୟ ନ ମିଶିଲେ ଏହି ଭବକୂପେ
ଶୂନ୍ୟରେ ପୋଏ ହେଲେହେଁ ସଜୀବ କି ରୂପେ
ତାହାଙ୍କୁ ଭାରିଯା ଜଣେ ଜଣେ ଦେବା ଆଣି
ଏମନ୍ତ ପାଞ୍ଚି ଧ୍ୟାନରେ ବସି କୁଶ ପାଣି ।
ଆପଣାର ମନକୁ ସେ ପୁରୁଷକ କଲେ
ଅଷ୍ଟଦଳ ମଧ୍ୟେ ନେଇ ତାକୁ ଭେଟାଇଲେ ।
ମନକୁ ନେଇ ଭେଟାନ୍ତେ ତହୁଁ ଦଳମାନେ
ବୋଇଲେ ଏହାକୁ କିମ୍ପା ଆଣିବି ଏ ସ୍ଥାନେ ।
ଧାତାଏ ବୋଇଲେ ତୁମ୍ଭେ ବିଭା ହେବ ବୋଲି
ତେଣୁ ତୁମ୍ଭ ସଙ୍ଗେ ମନ ଆଣି ଭେଟାଇଲି ।
ତୁମ୍ଭେ ଅଷ୍ଟଦଳ ଏବେ ହୁଅ ଅଷ୍ଟସଖୀ
ମନକୁ ଗୃହସ୍ଥ ପ୍ରାୟ ଭୋଗ କର ରଖି ।
ସେ ମନୋରଥ ଦୁହିତା ଆଠଗୋଟି ଦିଅ
ତାହାଙ୍କୁ ବିଭା ହୁଅନ୍ତୁ ମୋର ଆଠପୁଅ ।
ଏ ମନର ନାମ ହେଉ କର୍ଦ୍ଦମ ଯେ ଗତି
ଅଷ୍ଟଦଳ ବୋଲାଅ ଯେ ତୁମ୍ଭେ ଦେବହୁତି ।
ଦଳେ ବୋଇଲେ ସୁଝିଲେ ସିନା ବିଭାହେବୁ
ନ ଶୁଝିଲେ ଦେବହୁତି ହୋଇ କି କରିବୁ ।
ବ୍ରହ୍ମା ବୋଇଲେ ବୁଝିବା ଯେବେ ତୁମ୍ଭେ ଶୁଣ
ମନର ହୋଇଲା ମଘା ସିଂହରାଶି ଜାଣ ।
କୃତ୍ତିକା ବୃଷ ହୋଇଲା ଜାଣ ତୁମ୍ଭ ରାଶି
ଷଡ଼ାଷ୍ଟକ ନାଗନାଡ଼ୀ ଗଲାନାହିଁ ମିଶି ।
ଗଣନାରେ ଦୁଇକୁଳ ହୋଇଲା ସମାନ
କର୍ଦ୍ଦମ ନାମକୁ ମଧ୍ୟ ଶୁଝିଲା ଉତ୍ତମ ।
ଶୁଣିକରି ଅଷ୍ଟଦଳ ବିଧାତାର ବୋଲେ
ଶୁଝିଲା ଯହୁଁ ବରଣମାଳା ଗଲେ ଦେଲେ ।
ବର କନ୍ୟାଙ୍କ ସ୍ୱରୂପେ ବସି ବିଭା ହୋଇ
ବିଭାସାରି ମଧୁଶଯ୍ୟା ଘରେ ଯାଇ ଶୋଇ ।
ଏଣୁ ସେହି ମନ ସବୁ ପ୍ରକୃତି ଉପରେ
ଗୃହସ୍ଥ ପରାୟେ ହୋଇ ଶରୀରେ ବିହରେ ।
ଯେତେବେଳେ ଅଷ୍ଟଦଳ ରମିଲେ ମନକୁ
ଆଠକନ୍ୟା ଉପୁଜାଇ ଦେଲେ ସେ ବ୍ରହ୍ମାଙ୍କୁ ।
ସେ କନ୍ୟାଙ୍କ ନାମ ଶୁଣ ଜନ୍ମ ଯେଉଁଠାରୁ
ସୁଖଦା ହେମବତୀ ଏ ପ୍ରସବ କର୍ଣ୍ଣରୁ ।
ନୟନରୁ ଉପୁଜିଲେ ସୁମତୀ ଜୟନ୍ତୀ
ସୁକ୍ରିୟା ଯେ ଅନୁସୂୟା ନାସାରୁ ଉତ୍ପତ୍ତି ।
ମୁଖଦଳରୁ ସୁକାନ୍ତି ଜାଣ ଉପୁଜିଲେ
ଅରୁନ୍ଧତୀ ସେ ତ୍ରିକୂଟ ତଳୁ ଜନମିଲେ ।
ଏହି ଦଳ ଉପରେ ଶ୍ରୀ ନିରାକାର ବିଜେ
ସକଳ ଶରୀରେ ବସିଛନ୍ତି ଚତୁର୍ଭୁଜେ ।

ବହୁଛି ତ୍ରିବେଣୀ ଧାର ଫୁଟି ସେହୁ ଦଳୁ
ହର ଶିରେ ପଡ଼େ ଆସି ସୁଷୁମ୍ନା ନାଳୁ ।
ଲହରୀ ସ୍ରୋତରେ ପଡ଼ି ଶଶିଥାଏ ହଜି
ଶରୀର ପରାୟେ ମୁଖେ ଅରବିନ୍ଦ ବାଜି ।
ଏମନ୍ତ ସେହି ତ୍ରିକୂଟ ଦଳର ମହିମା
ଅରୁନ୍ଧତୀ କନ୍ୟାର ସେ ଅଟେ ଜନ୍ମ ସୀମା ।
ଏ ରୂପେ ସେ ଅଷ୍ଟଦଳୁଁ ଜାତ ଅଷ୍ଟବାଳୀ
ବିଧାତା ବୋଇଲେ ବାବୁ ଏବେ ଯାଅ ଚଳି ।
ଏ କନ୍ୟାମାନଙ୍କୁ ନେଇ ସୁଖେ ଭୋଗ କର
ଶୁଣିଣ କୁମର ଦେଲେ ତହିଁର ଉତ୍ତର ।
ଆପଣେ ଆମ୍ଭଙ୍କୁ ଦିଅ ଏ କନ୍ୟାଙ୍କୁ ବାଣ୍ଟି
ଯାହାକୁ ଦେବେ କରିବୁ ତାକୁ ଘେନି ସୃଷ୍ଟି ।
ଧାତା ବୋଇଲେ ମରୀଚି ନେଉ ସୁଖଦାକୁ
ଅନୁସୂୟା କନ୍ୟାଦିଅ ଅତ୍ରି କୁମରକୁ ।
ହେମବତୀ କନ୍ୟା ଋଷି ଅଙ୍ଗିରା ଯେ ନେଉ
ବଶିଷ୍ଠ ଏ ଅରୁନ୍ଧତୀ ଜେମା ବିଭାହେଉ ।
ସୁମତିକୁ ନେବା ହେଉ ପୁଲହ ମହର୍ଷି
କ୍ରତୁ ହେଉ ସକ୍ରିୟାକନ୍ୟା ସଙ୍ଗେ ବିଳାସୀ ।
ଜୟନ୍ତୀ ନାମେ କନ୍ୟାକୁ ଭୃଗୁ ବିଭାହେଉ
ସୁକାନ୍ତି କନ୍ୟାକୁ ଦକ୍ଷ ପ୍ରଜାପତି ନେଉ ।
ଏମନ୍ତ କହି କନ୍ୟାକୁ ଆଣି ପଦ୍ମଯୋନି
ମହାମନ୍ତ୍ର ପଢ଼ିକରି ସମର୍ପିଲେ ପୁଣି ।
କୁଶଗ୍ରନ୍ଥି ବାନ୍ଧି ପୁତ୍ରେ ବିଭା କରାଇଲେ
ତହିଁ ଉତ୍ତାରୁ ଯେ ବ୍ରହ୍ମା ଦକ୍ଷକୁ କହିଲେ ।
ଷାଠିଏ ଗୋଟି ଦୁହିତା ତୁହି ଉପୁଜାଇ
ଆମ୍ଭର ଗୋଚରେ ତାକୁ ସମର୍ପିବୁ ନେଇ ।
କରିବି ମୁଁ ଯେ କନ୍ୟାର ପାଇଁ ବରବାଞ୍ଛା
ଶୁଣି ହେଉ କହି ତହୁଁ ଗଲେ ଦକ୍ଷରାଜା ।
ସୁକାନ୍ତିକି ନେଇ ନିଜ ମନୋହାରୀ କଲେ
କିଛିଦିନ ଉତ୍ତାରୁ ସେ ଗର୍ଭବାସ ହେଲେ ।
ବନବାସ ପରେ ଦଶମାସର ଭିତରେ
ଜନମିଲେ କନ୍ୟାମାନେ ଦକ୍ଷଙ୍କର ଘରେ ।
ଷାଠିଏ କନ୍ୟାଙ୍କ ହସ୍ତ ଧରି ପ୍ରଜାପତି
ବ୍ରହ୍ମାଙ୍କ ଗୋଚରେ ନେଇ ଦେଲେକ ସବୁନ୍ତି ।
କନ୍ୟାକୁ ଦେଖିଣ ପିତାସନ୍ତୋଷ ହୋଇଲେ
ପ୍ରଥମେ ରୁଦ୍ରଙ୍କୁ ସତୀକନ୍ୟା ବିଭା ହେଲେ ।
ସେ ସତୀକନ୍ୟାର ବିଭା କହିବା ତୋ ଆଗେ
ଧର୍ମ ଦେବତାଙ୍କ ଜନ୍ମ ଶୁଣ ଆଗେ ବେଗେ
ଦକ୍ଷ କନ୍ୟାଗଣ ଆଣି ଯେତେବେଳେ ଦେଲେ
ସେ କନ୍ୟାମାନେ ପିତାଙ୍କ ମୁଖକୁ ଚାହିଁଲେ ।

ବ୍ରହ୍ମାଙ୍କ ପାଶେ ବେଢ଼ିଣ ପଚାରନ୍ତି ସର୍ବେ
କହ ଆମ୍ଭେମାନଙ୍କର ପତି କିଏ ହେବେ ।
ଧାତା ବୋଇଲେ ଆକୁଳ ନୁହ ଆଗୋ କେହି
ତୁମ୍ଭଙ୍କୁ ଅବଶ୍ୟ ବର ଖଞ୍ଜିଦେବି ମୁହିଁ ।
ଏତେକ ବୋଲି ଅଧର ଆଉଁସିଲେ ପିତା
ତକ୍ଷଣେ ଜନ୍ମିଲେ ତହୁଁ ଶ୍ରୀଧର୍ମ ଦେବତା ।
ସେ ନିରଞ୍ଜନ ପୁରୁଷ ଧରନ୍ତେଣ ଦେହ
ଦଶଗୋଟି କନ୍ୟା ତାଙ୍କୁ ଦେଲେ ପିତାମହ ।
ସେ କନ୍ୟାମାନଙ୍କ ନାମ କହୁଛି ଶୁଣିମା
ଚନ୍ଦ୍ରଭାନୁ ସୁମେଧା ସେ ମେଧା କ୍ଷତି କ୍ଷମା ।
ଧୃତିଶ୍ରୁତି ସୁତାରୁ ଯେ ଶ୍ରଦ୍ଧା ନାମ ପୁଣି
ଏମନ୍ତ ଧର୍ମକୁ ଦେଲେ ଦଶକନ୍ୟା ଆଣି ।
ଜନ୍ମିଲେ ସେ ଦଶକନ୍ୟାଠାରୁ ଯେତେଜଣ
ସୁମେଧାର ପୁତ୍ରଗୋଟି ହେବ ମେଘ ଦ୍ରୋଣ
ଶ୍ରଦ୍ଧା କନ୍ୟାର ଯେ ପୁତ୍ର ଆବର୍ତ୍ତକ ହେଲା
ଚନ୍ଦ୍ର ଗର୍ଭୁ ସମ୍ବର୍ତ୍ତକ ମେଘ ଜନମିଲା ।
ଭାନୁ ଗର୍ଭରୁ ଜନ୍ମିଲେ ପୁଷ୍କର ଯେ ମେଘ
କ୍ଷିତି କନ୍ୟାଠାରୁ ଜାତ ହେଲା ଚାରିଯୁଗ ।
ଧୃତି କନ୍ୟାର ଉଦରୁ ଜାତ ପିତୃଗଣ
କ୍ଷମା କନ୍ୟା ଜାତ କଲେ ଏଗାର କରଣ ।
ଶ୍ରଦ୍ଧାର ଉଦରୁ ଜାତ ହେଲେ ସନ୍ଧ୍ୟା ତିନି
ଶ୍ରୁତି କନ୍ୟାର ଗର୍ଭରୁ ଜନ୍ମିଲା ରଜନୀ ।
ସୁତାରୁ କନ୍ୟାର ଗର୍ଭୁ ଜନ୍ମ ଷଡ଼ଋତୁ
ଶୁଣ ହୋ ବାବୁ ନାରଦ କହେ କୁଶକେତୁ ।
ତହିଁ ଉତ୍ତାରୁ ଅଗ୍ନିକୁ ଦୁଇକନ୍ୟା ଦେଲେ
ସେ ଅଗ୍ନି ଜନମ ଶୁଣ ଯହୁଁ ଉପୁଜିଲେ ।
ବ୍ରହ୍ମାଙ୍କର ଜିହ୍ୱା ମୂଳୁଁ ହୋଇଲେ ସେ ଜାତ
ଯେଉଁରୂପେ ଜନମିଲେ ଶୁଣ ବିଧିମତ ।
ଷାଠିଏରୁ ଅଣତାଶ ହୁଅନ୍ତେଣ ବିଭା
ତାହାଙ୍କୁ ଦେଖିଣ ଧାତା କାମୁଡ଼ିଲେ ଜିହ୍ୱା ।
ରସନା ଭିଡ଼ି ଘଷନ୍ତେ ବ୍ରହ୍ମ ଦନ୍ତତାଳୁଁ
ଜନମିଲେ ବ୍ରହ୍ମଅଗ୍ନି ଧାତା ଜିହ୍ୱାମୂଳୁଁ ।
ଅନଳ ଜାତ ହୁଅନ୍ତେ ଘୁଞ୍ଚିଗଲେ ବିହି
ରହିଲେ ଖଣ୍ଡେ ଦୂରରେ ଯାଇ ଉଭା ହୋଇ ।
ପାଳନ୍ତେ ସେ ତେଜଜ୍ୱାଳା ଲାଗି ବେଦବର
ବାଳୁତରୂପେ ଗୋଡ଼ାଇ ଅଛି ବୈଶ୍ୱାନର ।
ବ୍ରହ୍ମା ଡାକନ୍ତିରେ ବାବୁ କିମ୍ପା ଅଛୁ ଧାଇଁ
ତୋର ତେଜଲାଗି ମୁହିଁ ରହି ନ ପାରଇ ।
ରହନ୍ତୁ ଅଳ୍ପ ଅନ୍ତର ହୋଇ ଯେବେ ମୋତେ
ତୁହେଁ ବସି ହୁଅନ୍ତାଇ କଥାପଦ କେତେ ।
ଅଗ୍ନି ବୋଇଲେ ରହନ୍ତୁ ରହିଲି ଯେ ବସି
କ୍ଷୁଧା ତୃଷାଲାଗି ଏକା ମୁଁ ଯାଉଛି ଭାସି ।
ଜନମ କରିଣ ତୁମ୍ଭେ ପଳାଉଛ ଛାଡ଼ି
ବୋଲିବେ ସଂସାରେ ଏହା ଶୁଣି କେତେ ରାଢ଼ୀ ।
ମୂର୍ଖବୁଦ୍ଧି ପ୍ରାୟ ତୁମ୍ଭ ବୁଦ୍ଧି ଯେବେ ଲେଖି
ଏହା ଶୁଣି ପିତାମହ ଚାହିଁଲେ ନିରେଖି ।
ଅଗ୍ନିକୁ ବୋଇଲେ କେହ୍ନେ ଦିଅନ୍ତି ମୁଁ କ୍ଷୀର
ତୋତେ ଛୁଇଁବାକୁ ମୋତେ ମାଡୁଅଛି ଡର ।
ଆହାର ଯେ ଲୋଡୁ ଅଛୁ ଥାଅ ଦିନା କେତେ
ଶ୍ୱେତରାଜା ଜନମିଲେ ଦେବ ଘୃତ ତୋତେ
ଶତରୂପା ଗର୍ଭରୁ ହେ ପୁଣ ଉପୁଜିବ
ହୋଇବ ତାହାର ପିତା ନାମ ସ୍ୱାୟମ୍ଭୁବ ।
ଅଗ୍ନିବୋଲେ ଜନମିବ ସେହି କେବେ ଯାଇ
ମୁଁ ଆଗ ବଞ୍ଚିବି କେହ୍ନେ କହ କିସ ଖାଇ ।
ବିଧାତା ବୋଇଲେ ବେଗେ ଚୁମ୍ଭ ତୋ ଅଙ୍ଗୁଳି
ବହିବ ଅମୃତଧାରା ନଖକୋଣୁ ଝଳି ।
ଭାଙ୍ଗିଯିବ କ୍ଷୁଧା ଭକ୍ଷି ହୋଇବ ତୃପତି
ଶୁଣିଣ କରପଲ୍ଲବ ଚୁମ୍ବିଲେ ବହତି ।
ସ୍ରବିଲା ଅମୃତ ରସ ଅଙ୍ଗୁଳି ପଦରୁ
ସନ୍ତୋଷ ହୋଇ ଆନନ୍ଦେ ଭକ୍ଷିଲେ ତହିଁରୁ ।
ନାଶିଲେ ଅମୃତ ଖାଇ ଅଗ୍ନି ଯେଣୁ କ୍ଷୁଧା
ପିତାଙ୍କୁ ଜଣାଇଲେ ସେ ପୁତ୍ରଙ୍କର ବାଧା ।
ମୁଁ ଯେମନ୍ତ ତୋଷ ହେଲି ତୁମ୍ଭ ବୋଲି ପାଳି
ସେହିମତି ସବୁପୋଏ ଚୁମ୍ବନ୍ତୁ ଅଙ୍ଗୁଳି ।
ଶୁଣି ଅନଳର ବାଣୀ ପିତା ଅସ୍ତୁ କଲେ
ପିଲା ଅଙ୍ଗୁଳି ଭିତରେ ପୀୟୁଷ ରଖିଲେ ।
ରହିଲା ବାଳୁତଙ୍କ ଏ କଥା ହୋଇ ସିଦ୍ଧି
କ୍ଷୁଧା କଲେ ଯେଝା କର ଚୁମ୍ବନ୍ତି ଅବଧି ।
ଆଗହୁଁ ଆଜି ପର୍ଯ୍ୟନ୍ତ ବାଳୁତଙ୍କୁ ଦେଖ
ଗର୍ଭୁ ଜନମି ଚୁମ୍ବନ୍ତି ଯେ ଯାହାର ନଖ ।
ପୁତ୍ରକୁ ନିଦ୍ରିତ କରି ମାତା ଯେତେବେଳେ
ଚାଲିଯାଏ କରିବାକୁ ବିଷୟା ଜଞ୍ଜାଳେ ।
ସେହି ସମୟେ ଅଙ୍ଗୁଳି ଭରି ପୁତ୍ର ତୁଣ୍ଡେ
ଲୋଚନ ବୁଜିଣ ସୁଧା ଭକ୍ଷନ୍ତି ସେ ଦଣ୍ଡେ ।
ସେ ଅଙ୍ଗୁଳି ରସ ଏକା ଜାଣନ୍ତି ବାଳୁତେ
ବଡ଼ଲୋକଙ୍କୁ ଗୋଚର ନୁହେଁ କଦାଚିତେ ।
ଏରୂପେ ଅଗ୍ନିକୁ ତୋଷି ବିଧାତା ଯେ ପୁଣି
ପ୍ରଜାପତିଙ୍କ ଝିଅଙ୍କୁ ବିଭା କଲେ ଆଣି ।
ବେନି ଦୁହିତା ନେଇଣ ତାଙ୍କୁ ସମର୍ପିଲେ
ସ୍ୱାହା ସ୍ୱଧା ବୋଲିଣ ଯେ ତାଙ୍କ ନାମ ଦେଲେ

ଜନ୍ମିଲେ ଦୁଇକନ୍ୟାଙ୍କଠାରୁ ଦୁଇବଳା
ସେ ଦୁହିଁଙ୍କ ନାମ ପୁଣ ଦେଲେ ଧୂମ୍ର କଳା ।
ଯେତେକାଳ ଅନଳଟି ଥିବ ଦେହ ଧରି
ତେତେଦିନ ପରିଯନ୍ତେ ନାହାନ୍ତି ସେ ମରି ।
ତହିଁପରେ ପୁନରପି ଧାତା ପାଞ୍ଚି ମନେ
ଆଉ ପୁତ୍ରେ ଜନ୍ମବୋଲି ବସିଲେ ସେ ଧ୍ୟାନେ
ନିଜ ଦେହେ ଓଁ କାରର ସ୍ଥାନକୁ ନ ଖୋଜି
ବସିଲେ ବ୍ରହ୍ମକୁ ଚିହ୍ନି ବ୍ରହ୍ମ ବ୍ରହ୍ମ ଭଜି ।
ବ୍ରହ୍ମକୁ ଭଜନ୍ତି ବିଷ୍ଣୁ ହେଲେ ଆସି ଦୃଶ୍ୟ
ରୂପ ଧରିଣ ହକାର ଶବ୍ଦ କଲେ ଘୋଷ ।
ଧାତାକୁ ବୋଇଲେ ଆଉ କାହିଁକି ସ୍ମରିଲୁ
ବରମାଗ ତେବେ ଆଜ୍ଞା ଆମ୍ଭେ ତୋତେ ଦେଲୁ
ବ୍ରହ୍ମାଏ ବୋଇଲେ ସ୍ୱାମୀ ବର ଯେବେ ଦେବୁ
କି ରୂପେ ମୋ ପୂରା ହେବ ସେ କଥା କହିବୁ
ବିଷ୍ଣୁ ଶୁଣି ପୁନରପି ଦେଲେ ପ୍ରତ୍ୟୁତ୍ତର
ବୋଇଲେ ହୋ ବ୍ରହ୍ମା ଆଗେ ଶବଦକୁ ଧର ।
ଅନାହତ ଦ୍ୱାରେ ଯେଉଁ ବାଜେ ବାରଧ୍ୱନି
ପାରିବୁ ତୋ ହୃଦୟରେ ତାହା ତେବେ ଚିହ୍ନି ।
ସେ ବରଦାନରୁ ତୋର ପୁତ୍ର ହେବ ଜାତ
ନାରଦ ତାହାଙ୍କ ନାମ ଦେବୁଟି ବିଧାତ ।
ପ୍ରଜାପତି ଝିଅ ଯେଉଁ ଅଛନ୍ତି ଷାଠିଏ
ଏଥୁ ମଧ୍ୟୁ ନେବୁ ତୁହି ଦୁହିତା ଗୋଟିଏ ।
ସେ କନ୍ୟା ରମିଲେ ବହୁପୁତ୍ର ଜାତ ହେବ
ଅଦୃଶ୍ୟ ହୋଇଲେ ଏତେ କହି ବାସୁଦେବ ।
ଚଳିଲେ ଗୋବିନ୍ଦ ଆଜ୍ଞାପାଇ ଯେତେବେଳେ
ବସିଲେ ସେ ପିତାମହ ସମାଧି ନିଶ୍ଚଳେ ।
ଶବଦ ବ୍ରହ୍ମଙ୍କୁ ଚିହ୍ନି ଧରନ୍ତି ଆକ୍ରୋଶି
ଷଡ଼ଚକ୍ର ଭେଦି ଯେଉଁ ଅକ୍ଷର ଶୁଭୁଛି ।
ଟେକନ୍ତେ ସେ ଅକ୍ଷରକୁ ହେଜି ନାନାବିନ୍ଦୁ
ଜନମିଲେ ପୁତ୍ରେ ଆସି ଦ୍ୱାଦଶ ଶବଦୁଁ ।
କାଖରେ କଳି ଧୋକଡ଼ି ହସ୍ତେ ବୀଣା ଟିପି
ମନପବନରେ ବସି ବକ୍ଷେ ମାଳା ଜପି ।
କଟିତଟେ ପିନ୍ଧିଛନ୍ତି କଷା କଉପୁନି
ଏମନ୍ତ ରୂପରେ ଆସି ପ୍ରକାଶିଲେ ମୁନି ।
ପୁତ୍ରକୁ ଦେଖିଣ ବ୍ରହ୍ମା ସନ୍ତୋଷ ହୋଇଲେ
ନାଦୁ ଜନ୍ମନ୍ତେ ନାରଦ ବୋଲି ନାମ ଦେଲେ ।
ସେ ନାରଦ ପ୍ରତ୍ୟକ୍ଷରେ ଅଟେ ବିଷ୍ଣୁଅଂଶୀ
ଦେବ ଡଗର ହୋଇଲେ ତିନିପୁରେ ପଶି ।
କହିବା ଆବର ପୁତ୍ର ଜନ୍ମ ଥାଅ ଶୁଣି
ବିଷ୍ଣୁଙ୍କ ଆଜ୍ଞାରେ ବ୍ରହ୍ମା କନ୍ୟାଦେଲେ ପୁଣି ।

ଲୋକିତ ମାର୍ଗରେ ଚାହିଁ ଆପେ ବିଭାଦେଲେ
ସାବିତ୍ରୀ ବୋଲିଣ ସେହି କନ୍ୟାନାମ ଦେଲେ ।
ରମନ୍ତେ ସାବିତ୍ରୀ କନ୍ୟା ନେଇ ପଦ୍ମଯୋନି
ତାଙ୍କ ବୀର୍ଯ୍ୟୁ ଜନମିଲେ ବହୁ ମହାମୁନି ।
ସେ ମୁନିଙ୍କ ନାମମାନ ଶୁଣ ବାବୁ ଏବେ
ଅଷ୍ଟପୁତ୍ରଙ୍କ ଜନ୍ମତ କହିଥାଇ ପୂର୍ବେ ।
ତାହାଙ୍କର ବଂଶାବଳି କହିବା ଯେ ଆଗେ
ଯେ ଯେଉଁଠାରେ ଜନମ ହେଲେ ଯେଉଁ ମାର୍ଗେ
ଏବେ ଆଗ ବିଧାତାର ଶୁଣ ପୁତ୍ର ଜନ୍ମ
କରନ୍ତେ ସାବିତ୍ରୀ ଘେନି ଧାତା କେଳିକର୍ମ ।
ମନମଧ୍ୟେ ପୁତ୍ର ପାଞ୍ଚି କ୍ରୀଡ଼ା କରୁ କରୁ
ଭାଳିଲା ଲଲାଟଚକ୍ରେ ଧାତୁ ବିନ୍ଦୁ ଘରୁ ।
ଭାଲପଟେ ଗଳି କଣ୍ଠ ଚକ୍ରକୁ ଆସିଲା
କଣ୍ଠଚକ୍ରୁ ପୁଣି ଖସି ହୃଦଚକ୍ରେ ଗଲା ।
ହୃଦଚକ୍ରୁ ବୁଲି ନାଭିଚକ୍ରେ ଆସେ ଖସି
ନାଭିଚକ୍ରୁ ପୁଣି ଗଲା ଲିଙ୍ଗଚକ୍ରେ ପଶି ।
ଲିଙ୍ଗଚକ୍ରେ ଆସି ବିନ୍ଦୁ ଭ୍ରମି ଅନ୍ତରାଳ
ଶରୀରରୁ ସଞ୍ଚରିଣ ଦେହେ ହେଲା ଠୁଳ ।
ଯେ ରୂପଟି ଶରୀରରୁ ଶରୀର ସଞ୍ଚରେ
ଅଚିହ୍ନା ଲୋକ ଏହା ନ ଚିହ୍ନି ଭ୍ରମି ମରେ ।
ଯେଉଁଠାରେ ଝରି ବିନ୍ଦୁ ଆସେ ଇନ୍ଦ୍ରିମୁଖେ
ପାରନ୍ତି ସେ ସ୍ଥାନ ଚିହ୍ନି ଏକା ଜ୍ଞାନୀଲୋକ ।
ସବୁରି ସେ ଝରଯାକ ଜାଣ ଆତ୍ମାରୂପୀ
ଉପୁଜେ ତହୁଁ ଯେ ଯାହା ଭାଗ୍ୟବନ୍ତୁ କଳ୍ପି ।
ସେ ବିନ୍ଦୁ ସରୋବରରୁ ଝରେ ଧାତୁ ଯାହା
ସଜୀବ ଘେନିଣ ଜୀବ ଉପୁଜଇ ଦେହା ।
ଶୁଣ ଆହେ ନାରଦ ସେ ବ୍ରହ୍ମାର କାହାଣୀ
ଛାଡ଼ିବେ ରମଣ କରି ବୀର୍ଯ୍ୟ ଗର୍ଭେ ପୁଣି ।
ସେ ବୀର୍ଯ୍ୟ ସାବିତ୍ରୀ ମାୟେ ନ ପାରିଲେ ମୁହିଁ
ଉଦ୍‌ଗାରିଣ ଯୋନିମୁଖେ ପକାଇଲେ ମହୀ ।
ମହୀପରେ ପଡ଼ିବାରୁ ବ୍ରହ୍ମା ଧାତୁମନ୍ଦା
ସେ ଧାତୁ ବହି ନ ପାରି କାନ୍ଦଇ ବସୁଧା ।
ସେ ବସୁଧା ମାଏ କାନ୍ଦି ଡାକନ୍ତି ଆକୁଳେ
ବୋଲନ୍ତି ସମ୍ଭାଳଧାତା ମୋତେ ଏତେବେଳେ ।
ଏହି ଧାତୁମନ୍ଦା ଭାର ନ ପାରଇ ବହି
ରସାତଳ କ୍ଷଣକାଳ ମଧ୍ୟେ ଯିବି ମୁହିଁ ।
ଧଇଲେ ବିଧାତା ଏହା ଶୁଣି ତୋଳି କର
ଶୁଦ୍ଧ ସ୍ଫଟିକ ପରାୟେ ଦିଶେ ଜ୍ୟୋତି ତାର ।
ସେ ଦ୍ରବ୍ୟକୁ କରେ ଧରେ ପାଞ୍ଚେ ବ୍ରହ୍ମାମନେ
ମହୀ ନାଶଗଲେ ମୁହିଁ ରହନ୍ତି କେସନେ ।

ଭୂମି ଯେବେ ଏହି ଦ୍ରବ୍ୟ ନ ପାରିଲା ବହି
ମୁଁ ଏବେ ଏହାକୁ ନେଇ ରଖିବଇଁ କାହିଁ ।
ଏମନ୍ତ ବୋଲିଣ ଧାତା ସୁମରନ୍ତେ ହରି
ଆସିଲେ ତକ୍ଷଣେ ଦେବ ଦେବ ଦଇତାରି ।
ଶଙ୍ଖ ଚକ୍ର ଗଦା ପଦ୍ମ ବିରାଜିତ ହୋଇ
ବିଧାତା ଆଗରେ ଦେଖାଦେଲେ ଭାବଗ୍ରାହୀ ।
ଶ୍ରୀନାରାୟଣଙ୍କ ରୂପ ଦେଖି ଚତୁର୍ମୁଖ
ଛାମୁରେ ସେ ଉଭାହୋଇ ଜଣାଇଲେ ଦୁଃଖ ।
ବୋଇଲେ ଭୋ ସ୍ୱାମୀ ତୁମ୍ଭ ଆଜ୍ଞାରେ ମୁଁ ଗଲି
ବଚନ ମେଣ୍ଟିଣ ଏକ କନ୍ୟା ବିଭାହେଲି ।
କି ଯୋଗେ ସେ କନ୍ୟାଜାଣ ଗର୍ଭବତୀ ହେଲା
ଗର୍ଭେ ସେ ବୀର୍ଯ୍ୟ ନ ରହି ମହୀରେ ପଡ଼ିଲା ।
ସେ ପଦାର୍ଥ ଭାରା ପୃଥ୍ୱୀ ନ ପାରିଲା ବହି
ମୋତେ ସୁମରିଲା ବଡ଼ ଆକୁଳିତା ହୋଇ ।
ତାର ଚିନ୍ତା ଦେଖି ମୁହିଁ ଧଇଲି ତ ଟେକି
ଏବେ ମୁଁ ବହି ନ ପାରି ଜଣାଉଛି ଡାକି ।
ଶୁଣ ଆହେ ଶ୍ରୀୟାକାନ୍ତ ଦେବ ନାରାୟଣ
ତୁମ୍ଭଙ୍କୁ ନ କହିଲେ ମୋ ଯିବ ବଡ଼ପଣ ।
ଗୋବିନ୍ଦ ବୋଇଲେ ଧାତା ନ ଭାଳତୁ କିଛି
ଏହି ପଦାର୍ଥରେ ତୋର ବହୁଗୁଣ ଅଛି ।
କାହିଁ ନ ପକାଇ ତାକୁ ଦେହେ ହୁଅବୋଳି
ଜନ୍ମିବେ ଅନେକ ପୁତ୍ର ତୋର ଅଙ୍ଗୁଳି ।
ଅଦୃଶ୍ୟ ହୁଅନ୍ତେ ଏତେ କହି ଚକ୍ରପାଣି
ବୋଳିଲେ ସେ ଦ୍ରବ୍ୟ ଧାତା ତହୁଁ ଅଙ୍ଗେ ଆଣି ।
ବିଷ୍ଣୁଙ୍କ ଆଜ୍ଞାରେ ବୋଳିହୁନ୍ତି ଦେହଯାକ
ଜନ୍ମିଲେ ତକ୍ଷଣେ କର୍ଣ୍ଣ ମୂଳୁ ପୁତ୍ର ଏକ ।
ସେହି ପୁତ୍ରନାମ କଣ୍ୱ ହୋଇଲାକ ଜାଣ
ଆଉ ଯେତେ ଜନ୍ମିଲେ ତ ପରିମାଣି ଶୁଣ ।
ଯେ ଯେଉଁ ସ୍ଥାନକୁ ଘେନି ପ୍ରକାଶିଲେ ଆସି
ସେହିମାନେ ସଂସାରରେ ହେଲେ ବ୍ରହ୍ମଋଷି ।
ମସ୍ତକରୁ ତିନିପୁତ୍ର ହେଲେ ପୁଣି ଜାତ
ତାଙ୍କର ନାମ ସନକ ସୌନକ ସନତ ।
ସ୍ତନମଧ୍ୟୁ ଜନମିଲେ ସ୍ଥୂଳଋଷି ବୋଲି
ବାଳମଧ୍ୟୁ ବିଭାଣ୍ଡକ ଜନମ କହିଲି ।
ଭୁଜରୁ ସେ ଭରଦ୍ୱାଜ ହୋଇଲେଟି ଜାତ
କରମୂଳରୁ କପିଳ ହୋଇଲେ ସମ୍ଭୁତ ।
ଗାଲମଧ୍ୟୁ ଉପୁଜିଲେ ଗଉତମ ଋଷି
ରୋମମୂଳୁ ଜନମିଲେ ରୋମାଞ୍ଚ ତପସ୍ୱୀ ।
ଜଙ୍ଘରୁ ଜନମ ହେଲେ ଜୟମୁନି ଜାଣ
ଉଭରୁ ଉତ୍ତଙ୍ଗ ଋଷି ଜନମିଲେ ପୁଣ ।
କଣ୍ଠମଧ୍ୟୁ ଜନମିଲେ କୃପାଜଳ ଋଷି
ଶରୀରୁ ଜନମ ହେଲେ ଶରଭଙ୍ଗ ଆସି ।
ହାଡ଼ମଧ୍ୟୁ ଜନମିଲେ ପୁଣି ହୋମହୋତ୍ର
ଦଶଦ୍ୱାରୁ ଜନମିଲେ ଦଶଗୋଟି ପୁତ୍ର ।
ସେ ଦଶପୁତ୍ରଙ୍କ ନାମ ଶୁଣ ଏ ପୁରାଣେ
ରହିଲେ ସେ ଦିଗନାମ ବହି ଜଣେ ଜଣେ ।
ପୂର୍ବ ପଶ୍ଚିମ ଉତ୍ତର ଦକ୍ଷିଣ ନୈର୍ଋତ
ଐଶାନ୍ୟ ଅଗ୍ନିକୁ ଘେନି ଆବର ମରୁତ ।
ଅଧଃ ଉର୍ଦ୍ଧ୍ୱ ଦୁଇ ମିଶି ଦଶ ଗୋଟି ଜାଣ
କଟିରୁ ଜନମ ହେଲେ କୂର୍ମ ଋଷି ପୁଣ ।
କୁକ୍ଷିରୁ ଜନମ ହେଲେ ଦଶଟ ମହର୍ଷି
ପାଦରୁ ଯେ ଶୃଙ୍ଗମୁନି ଜନମିଲେ ଆସି ।
ତାଳୁ ମଧ୍ୟୁ ଜନ୍ମ ହେଲେ ପୁଣି ତାରାଗଣ
ନାସାରୁ ଜନମ ହେଲେ ନିଗମ ପୁରାଣ ।
ଅଙ୍ଗୁଳିରୁ ଜନମିଲେ ଅକ୍ଷର ସମସ୍ତେ
ଭ୍ରୁଲତାରୁ ପୁଣି ଜନ୍ମ ହେଲେ ବିଷ୍ଣୁଭକ୍ତେ ।
ମଉଳିରୁ ଜନମିଲେ ମନ୍ଦର ଯେ ଋଷି
ଅଧରରୁ ଅପସରୀ ପ୍ରକାଶିଲେ ଆସି ।
କପାଳରୁ ଜନମିଲେ କ୍ରୌଞ୍ଚ ମହାମୁନି
କାଖତଳୁ ଉପୁଜିଲେ କୋଟି କାତ୍ୟାୟିନୀ ।
ବେନି ନେତ୍ରୁ ନବଗ୍ରହ ପ୍ରକାଶ ହୋଇଲେ
ପିଠିଭାଗରୁ ପନ୍ଦର ତିଥି ଉପୁଜିଲେ ।
ସ୍ୱେଦରୁ ସେ ସତାଇଶ ଯୋଗହେଲେ ଜାତ
ଚର୍ମରୁ ଚ୍ୟବନ ଋଷି ହୋଇଲେ ସମ୍ଭୁତ ।
ସୋହଂ ହଂସୁ ଜନମିଲେ ସପତ ବରୁଣ
ବଚନରୁ ଉପୁଜିଲେ ବିଶ୍ୱେ ଦେବାଗଣ ।
ଶବଦରୁ ସାତବାର ହେଲେ ଉତପତ୍ତି
କଣ୍ଠ ମଧ୍ୟୁ ଉପୁଜିଲେ କୋକିଳ ଯେ ଯତି ।
ଲିଙ୍ଗ ମଧରୁ ଜନମ ହେଲେ ଲଗ୍ନଯାକ
ବଦନରୁ ଜନମିଲେ ପୁଣି ବାଲମିକ ।
କାଳିଜା ମଧରୁ ଜନମିଲେ କାଳଗଣ
ମାଂସରୁ ଜନମ ହେଲେ ବାରମାସ ପୁଣ ।
ମନ ମଧ୍ୟୁ ଜନମିଲେ ମୁହୂର୍ତ୍ତେ ନିମିଷ
ବୀର୍ଯ୍ୟରୁ ଜନମ ହେଲେ ବିହନ୍ତା ପୁରୁଷ ।
ଗଣ୍ଠିମୂଳୁ ଗନ୍ଧରଗ ଋଷି ହେଲେ ଜାତ
ଦଧିଚି ଦନ୍ତ ମୂଳରୁ ହୋଇଲେ ସମ୍ଭୁତ ।
ଚଇତନ ଦ୍ୱାରୁ ପୁଣି ଚିନ୍ତାଜାତ ହେଲେ
ରୁଧିର ଭିତରୁ ପୁଣି ରୋଗ ଜନମିଲେ ।
ଭ୍ରୂମଧରୁ ଜନମିଲେ ଭୟ ପୁଣି ଦୁଃଖ
ସତ୍ୟ ସ୍ଥାନରୁ ଜନମ ହେଲା ଆସି ସୁଖ ।

ଆଧାର ଚକ୍ରରୁ ପୁଣି ଅହଲ୍ୟା ଜନ୍ମିଲେ
ଲିଙ୍ଗଚକ୍ର ମଧ୍ୟୁ ରତିଦେବୀ ଉପୁଜିଲେ ।
ନାଭିରୁ ଜନ୍ମିଲେ ନରମଦା ସରସ୍ୱତୀ
ହୃଦୟ ଚକ୍ରରୁ ଜନ୍ମ ହେଲେ ଦେବମତୀ ।
ପୁନରପି କଣ୍ଠତଳୁ ଜନ୍ମିଲେ କାମାକ୍ଷୀ
ଲଲାଟ ଚକ୍ରରୁ ଜନ୍ମ ହେଲେ ଅଷ୍ଟଆଖି ।
ଅଷ୍ଟଆଖି ପ୍ରତ୍ୟକ୍ଷରେ ଅଟେ ବ୍ରହ୍ମାଗୋଟି
ଶୁଣ ବାବୁରେ ନାରଦ କହେ ପରମେଷ୍ଠୀ ।
ଦୁଇଥର ହୋଇ ବ୍ରହ୍ମା ଜନମନ୍ତେ ହାଦେ
ତେଣୁ ସେ ନାମ ବହିଲେ ଦ୍ୱିତୀୟ ପରାର୍ଦ୍ଧେ ।
ଧାତା ଜାତ ହୁଅନ୍ତେ ସେ ପିଣ୍ଡଗଲା ପଡ଼ି
ମହୀରେ ଯାଇ ରହନ୍ତେ ବେନିଖଣ୍ଡ ଛିଡ଼ି ।
ସେହି ବେନିଖଣ୍ଡ ସ୍ତିରୀ ପୁରୁଷଟି ହେଲେ
କହିବା ତୋତେ ତାହାଙ୍କ ନାମଶୁଣ ଭଲେ ।
ଖଣ୍ଡକ ସେ ସ୍ୱାୟଂଭୁବ ମନୁ ଜାଣ ହେଲା
ଆରଖଣ୍ଡ ଶତରୂପା ନାରୀ ବୋଲାଇଲା ।
ପୁନରପି ସେ ଦୁହିଁକୁ ବ୍ରହ୍ମା ବିଭାକଲେ
ପତିପତ୍ନୀ ହୋଇଣ ସେ କ୍ରୀଡ଼ା ଆରମ୍ଭିଲେ ।
ସେ ବେନିଙ୍କଠାରୁ ତିନି ଶିଶୁ ହେଲେ ଜାତ
ଉତ୍ତାନପାଦ ଆବର ଶ୍ୱେତ ପ୍ରିୟାବ୍ରତ ।
ସେ ପ୍ରିୟାବ୍ରତ ନନ୍ଦନ ଅଗ୍ନିଧ ହୋଇଲା
ଅଗ୍ନିଧ ଔରସେ ପୁଣି ନାଭି ଉପୁଜିଲା ।
ନାଭିର ତନୟ ପୁଣି ହୋଇଲା ଋଷଭ
ଋଷଭଠାରୁ ଭରତ ହୋଇଲା ସମ୍ଭବ ।
କହିବା ସେ ଭରତର ଜନ୍ମ ଆଗ ତୋତେ
ଉତ୍ତାନପାଦର ପୁଣ ହେବେ ବେନିସୁତେ ।
ହେବ ତାଙ୍କ ନାମ ଧ୍ରୁବ ଉତ୍ତମ ବୋଲିଣ
ଭାଗବତେ ପଢ଼ିବ ଯେ ତାଙ୍କ କୀର୍ତ୍ତିମାନ ।
ଶୁକ ମୁଖରୁ ପରୀକ୍ଷ ଶୁଣିଲେ ସମ୍ବାଦ
ସେଥିର ମହିମା ଏବେ ଶୁଣ ହେ ନାରଦ ।
ସ୍ୱାୟଂଭୁବ ବୋଲି ଯେହୁ ବ୍ରହ୍ମାର ତନୁଜା
ଏହି ପୃଥିବୀରେ ତାଙ୍କୁ କରିବେ ସେ ରଜା ।
ସେ ଦିନୁ ଶ୍ୱେତବରାହ କଳପ ହୋଇଲା
ବିବାହ ସମୟେ ମହାବାକ୍ୟରେ ବସିଲା ।
କରିବେ ଯେ ଏହି ଶ୍ୱେତରାଜା ମହାଯାଗ
ବ୍ରହ୍ମା ଅଗ୍ନିକୁ ତୋଷିବେ ଦେଇ ହବିର୍ଭାଗ ।
ଏ ଯାଗ ପ୍ରସଙ୍ଗ କଥା କହିବା ଯେ ତୋତେ
ପଞ୍ଚମ ଖଣ୍ଡରେ ଯାଇ ପଚାରିବୁ ମୋତେ ।
ଆଧାର ଚକ୍ରରୁ ଯେଉଁ ଅହଲ୍ୟା ଜନ୍ମିଲେ
କହିବା ତାଙ୍କର ବିଭା ଯେରୂପେ ହୋଇଲେ ।

ହୁଅନ୍ତେ ଅତି ସୌନ୍ଦର୍ଯ୍ୟରୂପ ଶଶୀମୁଖୀ
ସକଳ ଋଷି ବୋଇଲେ ନେବେ ତାଙ୍କୁ ଦେଖି
ସମସ୍ତେ ପିତାଙ୍କୁ ତହୁଁ ମାଗିଲେକ ଆସି
ବିଧାତା କହିଲେ ଏହା ଶୁଣି ତାଙ୍କୁ ହସି ।
ବୋଇଲେକ ଆରେ ବାବୁ ଶୁଣ ମୋର ପୋଏ
କେହି ଗୋଳ ନ କରିବ କହିବି କଥାଏ ।
ବୋଲୁଅଛ ଏହି କନ୍ୟା ଗୋଟିନେବି ନେବି
ସମସ୍ତେ ତ ମାଗୁଅଛ କାହାକୁ ମୁଁ ଦେବି ।
ଏଣୁ ତୁମ୍ଭେ ଶୁଣ ଋଷଗଣ ଅଛ ଯେତେ
କଳହ ନକର ଆଉ ତୁମ୍ଭେ କଦାଚିତେ ।
ଗଙ୍ଗା ଗୟା ତୀର୍ଥ ଯାଅ ମୋ ବଚନ ପାଳି
ଆସିବ ଯେ ତହିଁ ସ୍ନାନକରି ବେଗେ ଚଳି ।
ପ୍ରଥମରେ ଆସି ମୋତେ ଯେ ଆଗ ଭେଟିବ
ସେହି ନିଶ୍ଚେ ଜାଣ ଏହି କନ୍ୟା ବିଭାହେବ ।
ଏମନ୍ତ ପ୍ରକାରେ ଯହୁଁ ବ୍ରହ୍ମାଏ କହିଲେ
ଶୁଣି କରି ଋଷିମାନେ ଶୀଘ୍ରରେ ଧାଇଁଲେ ।
ପିତାଙ୍କର ବୋଲ ମାନି ଗଲେ କେତେ ଜଣ
ସେମାନଙ୍କ ନାମ ଏବେ କହିବାକ ଶୁଣ ।
ଉତ୍ତମ ଯେ ସ୍ଥୂଳଋଷି କୃପାଜଳ ମୁନି
ରୋମାଞ୍ଚ ଶରଭଙ୍ଗ ଯେ କପିଳ ସୁଜ୍ଞାନୀ ।
ସନକ ଯେ ସନାତନ ଶଉନକ ଗଲେ
କମଠ କ୍ରଉଞ୍ଚ ମୁନି କଣ୍ୱଋଷି ତୁଲେ ।
ମନ୍ଦର ମରୀଚି ଜୟମିନି ଭରଦ୍ୱାଜ
ଅଗସ୍ତି ଅତ୍ରି ଅଙ୍ଗିରା ବଶିଷ୍ଠ ଯେ ସଜ ।
ପୁଲହ କ୍ରତୁ ଭୃଗୁ ଯେ ବିହନ୍ତା ପୁରୁଷେ
ଦକ୍ଷ ବିଭାଣ୍ଡକ ଆଦି ଗଲେ ତୀର୍ଥବାସେ ।
ଗଉତମ ଏକା ଯେ ନ ଗଲେ ତୀର୍ଥକରି
ବୁଲିଲେ ବ୍ରହ୍ମାଙ୍କୁ ସେହିଠାରେ ବେଢ଼ି ଚାରି ।
ମିଳିଲେ ଯେ ପ୍ରଦକ୍ଷିଣ କରି ପିତା ଆଗେ
ବୋଇଲେ ସେ ମତେ କନ୍ୟା ଦାନ କରବେଗେ ।
ବିଧାତା ବୋଇଲେ ତୁହି ନ ଗଲୁ ତୀର୍ଥକୁ
ଏହିଠାରେ ବୁଲି ମୋତେ ମାଗୁଛୁ କନ୍ୟାକୁ ।
ଗୌତମ ବୋଇଲେ ତେବେ ଶୁଣ ହୋ ବିରଞ୍ଚି
ତୁମ୍ଭଠାରୁ ବଡ଼ହୋଇ କେଉଁ ତୀର୍ଥ ଅଛି ।
ବୁଝିଲେ କରିଛ ସବୁ ତୀର୍ଥ ତୁମ୍ଭେ ଜାତ
ତୁମ୍ଭଙ୍କୁ ଯେ ଚିହ୍ନଇ ତାହାର କି ବ୍ରତ ।
ଆତ୍ମାନଦୀରେ ଯେ ପ୍ରାଣୀ ନ ପାରଇ ବୁଡ଼ି
ସେ କେବେ ତରିଅଛି କି ଗଙ୍ଗାଜଳେ ବୁଡ଼ି ।
ଆହେ ପିତା ଶୁଣ ମୁହିଁ ଆତ୍ମା କଲି ନଦୀ
ରଖିଲି ବିବେକ ତହିଁ ଦେଇ ତୀର୍ଥ ଭେଦି ।

ସେ ତୀର୍ଥେ ଶାନ୍ତିକୁ ପୁଣି ଜଳ କଲି ଆଣି
ସତ୍ୟକୁ ଲହରୀ କଲି ସେ ଜଳରେ ପୁଣି ।
ସେ ନଦୀରେ ସ୍ନାନ କରି ମିଳେ ତୁମ୍ଭପାଶ
ଆତ୍ମାକୁ ଚିହ୍ନିଲା ଲୋକ କରେ ତୀର୍ଥବାସ ।
ଶରୀରେ ତୀର୍ଥ ଅଛି ନ ଚିହ୍ନି ଭ୍ରମୁଥାଇ
ତିନିଧାର ହୋଇ ଗଙ୍ଗା ଯାଉଅଛି ବହି ।
ଇଅଁଳା ପିଅଁଳା ଯେଉଁ ସୁଷୁମ୍ନା ଧାର
ଚିହ୍ନିଲେ ପ୍ରତ୍ୟକ୍ଷେ ସେହି ଅଟେ ଗଙ୍ଗାନୀର ।
ଏମନ୍ତ ଗଙ୍ଗାନୀରଟି ଶରୀରେ ବହୁଛି
ଏହାକୁ ନ ଚିହ୍ନି ପ୍ରାଣୀ ବୁଲି ମରୁଅଛି ।
କେବଳ ତୀର୍ଥର ଫଳଯାକ ଅଟେ ଶ୍ରମ
ଏତେ ତୋତେ ବୋଲି କେହି କହି ନାହିଁ ଧର୍ମ
ସହଜେ ଗଙ୍ଗାରେ ଯାଇ ବୁଡ଼ନ୍ତି ଯେ ଦେହ
ହିଂସ୍ରକର ପାପକେବେ ଛାଡ଼ିଛି କି କହ ।
ବୁଡ଼ିଲେ ତ କେଶ ଯେବେ ଶୁକ୍ଳବର୍ଣ୍ଣ ହୁଅନ୍ତା
ତେବେ ଜାଣନ୍ତାଇ ଅଙ୍ଗୁପାପ ଛାଡ଼ିଯାନ୍ତା ।
ସେହୁ କେଶ ସେହି ଧର୍ମ ସେହି ତନୁ ଧରି
ଗୃହକୁ ଆସଇ ସିନା ଗଙ୍ଗା ସ୍ନାନ କରି ।
ଲୋକିତ ମାତ୍ରକ କହି ହୁଅଇ ସେ ନିକି
ତାର ତୀର୍ଥସ୍ନାନ ଫଳ ଅଟଇ ତେଣିକି ।
ଯେଉଁମାନେ ତୀର୍ଥକରି ତରନ୍ତି ସଂସାରେ
କହୁଛି ମୁଁ ସେମାନଙ୍କ ନାମ ପୁରାଣରେ ।
ଯାହାରଟି ଆତ୍ମାଠାରେ ଦୟା ଧର୍ମ ଅଛି
ପ୍ରାଣୀକୁ ହିଂସା କପଟ ମାୟା ନ କରିଛି ।
ପରଦ୍ରବ୍ୟ ପରସ୍ତିରୀ ନ ହରିଛି ଯେହୁ
ଯାର ସତ୍ୟଭାଷା ସଦା ବାହାରଇ ସେହୁ ।
ସେମାନେ ସେ ତୀର୍ଥସ୍ନାନ କରିଣ ତରନ୍ତି
ଆଉମାନେ ଗଲେ ମାତ୍ର ଲୋକିତକୁ ଯାନ୍ତି ।
ଆହୁରି କଥାଏ ମଧ କହୁଛି ଭୋଦେବ
ବୁଝିଲେତ ଅର୍ଜିଅଛ ତୁମ୍ଭେ ମାତ୍ର ସର୍ବ ।
ଏଣୁ ମୁହିଁ ଆପଣଙ୍କୁ ପ୍ରଦକ୍ଷିଣ କଲି
ସକଳ ତୀର୍ଥରେ ବୁଲି ଛାମୁକୁ ଆସିଲି ।
ଆସିଗଲି ତୁମ୍ଭ ବୋଲ ପାଳି ଆଗହୋଇ
ମୋତେ ଶୀଘ୍ର ବିଭାକର କନ୍ୟାକୁ ସେ ଦେଇ
ଶୁଣି ଭୂମିରେ ଲୋଟିଲେ ହସି ପଦ୍ମଯୋନି
ପାଞ୍ଚିଲେ ଏ ଗଉତମ ଅଟେ କେଡ଼େ ଜ୍ଞାନୀ ।
ସବୁ ଋଷିଙ୍କଠାରୁ ତ ଅଟେ ବଡ଼ଟିଏ
ଗଙ୍ଗାକୁ ଏ ଚିହ୍ନେ ପ୍ରତ୍ୟକ୍ଷରେ ଆତ୍ମାମୟେ ।
ଏହାକୁ କିପରି ବିଭା ନ କରିବି ମୁହିଁ
ବରଣ କଲେ ଏମନ୍ତ ପାଞ୍ଚ ମନେ ବିହି ।

କୁଶଗ୍ରନ୍ଥି ହସ୍ତେ ବାନ୍ଧି ବିଭା କରିଦେଲେ
ଏଥୁ ଅନନ୍ତରେ ଆସି ଋଷିଏ ମିଳିଲେ ।
ପ୍ରଥମେ ପ୍ରବେଶ ହେଲେ ସ୍ଥୂଳମୁନି ଆସି
ମିଳିଗଲେ ତହୁଁ ପଛେ ପଛେ ଆଉ ଋଷି ।
ଦେଖିଲେ ଅହଲ୍ୟା ହୁଏ ଗୌତମକୁ ବିଭା
ସକଳେ ବିଚାର କଲେ ବସିକରି ସଭା ।
ବୋଇଲେ ଦେଖ ଏ ବ୍ରହ୍ମା କେଡ଼େ କୃତ୍ୟ କଲେ
ଆମ୍ଭଙ୍କୁ ତୀର୍ଥକୁ ପେଶି ଗୌତମକୁ ଦେଲେ ।
ଥୋକାଏ ଋଷି ବିଚାର କଲେ ବସି ପୁଣି
ବିହି ଘଟାଇ ସୃଜିଛି ଏ ଦୁହିଁଙ୍କୁ ଆଣି ।
ଆମ୍ଭେ ଗୋଳକଲେ ଅବା ହେବ ଆଉ କିସ
ଚାଲଆମ୍ଭେ ଯିବା ଏବେ ଯେ ଯାହାର ଦେଶ ।
ଥୋକାଏ ଋଷି କହିଲେ କିମ୍ପା ଆମ୍ଭେ ଯିବା
ତା ତହୁଁ କନ୍ୟା ଛଡ଼ାଇ ଚାଲବଳେ ନେବା ।
ଥୋକେ ଶୁଣି ବୋଇଲେ ନ କର ଗୋଳ କେହି
ଆମ୍ଭ କର୍ମ ତୀର୍ଥ ଯିବା ଲିହିଥିଲା ବିହି ।
ଗଉତମକୁ ବୋଇଲେ ହେବ ଅବା କିସ
କଥା ମାତ୍ରକ ରହିବ ନ ପାଇବା ଯଶ ।
ତାହା ଶୁଣିଣ ସଭାରୁ ଉଠି ସ୍ଥୂଳମୁନି
ମହାକ୍ରୋଧେ ପୁଛାକଲେ ଯାଇ ପଦ୍ମଯୋନି
ଭୋପିତା ମୁଁ ଯେ ତୋହର ବୋଲେ ତୀର୍ଥ ଗଲି
ସକଳ ତୀର୍ଥରେ ବେଗେ ବୁଲି ସ୍ନାନ କଲି ।
ଛାମୁରେ ମିଳିଲି ଆସି ଆଗ ଦେଖ ମୁହିଁ
ମୋତେ ନ ଦେଇ ଗୌତମେ ଦେଲେ କାହିଁ ପାଇଁ ।
ବ୍ରହ୍ମା ବୋଇଲେ ବାବୁରେ ଶୁଣ ସ୍ଥୂଳଋଷି
ତୁ ନ ଆସୁ ଗଉତମ ମିଳିଥିଲା ଆସି ।
ଗଙ୍ଗାର ନିର୍ଣ୍ଣୟଯାକ କହିଲା ମୋ ଆଗେ
ବୋଇଲା ତହିଁରେ ବୁଡ଼ି ଅଇଲି ମୁଁ ବେଗେ ।
ଏରୂପ ନିଦାନ ବାକ୍ୟ ତାର ମୁଖୁ ଶୁଣି
ତେଣୁ ତାକୁ ବିଭା କରିଦେଲି ସୁଲକ୍ଷଣୀ ।
ସ୍ଥୂଳଋଷି ବୋଇଲେ ସେ ତୀର୍ଥ କେବେ ଗଲା
ତୁମ୍ଭଙ୍କୁ ସେ ମିଥ୍ୟା କହି କନ୍ୟା ବିଭାହେଲା
ବ୍ରହ୍ମା ବୋଇଲେକ ତେବେ ପରୀକ୍ଷା କରିବା
ତୁମ୍ଭ ଦୁହିଁଙ୍କୁ ଅନଳ ମଧ୍ୟେ ପୁରାଇବା ।
ତହିଁରୁ ବାହାର ହେବ ଯେହୁ ଦେହ ଧରି
ତେବେ ଜାଣିବା ସେ ଆସିଅଛି ତୀର୍ଥକରି
ଏତେ ବୋଲି ଜାଳିଦେଲେ ପିତା ଅଗ୍ନି କୁଣ୍ଡ
ଶିଖା ଟେକିଲା ଅନଳ ହୋଇଣ ପ୍ରଚଣ୍ଡ ।
ବ୍ରହ୍ମା ବୋଇଲେକ ପଶ ଦୁହେଁ ଏ କୁଣ୍ଡରେ
ଯେ ପଶି ପାରିବ ତାକୁ ଚିହ୍ନିବା ଏଠାରେ ।

ଗଙ୍ଗାକୁ ଯିବା ଲୋକର ବୁଝିବାନା ଆଣ୍ଟ
ଏ କଥାରେ ମୋର ଆଉ ଅଛି କି କପଟ ।
ସ୍ଥୂଳ ବୋଇଲେ ଗୌତମ ପଶୁ ତେବେ ଆଗ
ଲୋଭ ମିଥ୍ୟା କହି କନ୍ୟା କରୁଅଛି ଭୋଗ ।
ଶୁଣିଣ ଗୌତମ ଅତି ଆନନ୍ଦ ହୋଇଲେ
ପଶିବି ବୋଲି ବ୍ରହ୍ମାଙ୍କୁ ନମସ୍କାର କଲେ ।
ଯେବଣ ଗଙ୍ଗା ବହିଛି ଦେହେ ହୃଦୂ ଫୁଟି
ତାହାଆଣି ଆମ୍ଭାଶିରେ ସିଞ୍ଚିଲେ ଲେଉଟି ।
ଶୁଚିମନ୍ତ ହୋଇ ଲୟ କଲେ ପଦ୍ମପାଦ
ଶୀତଳ ହେଲା ଯେ ପାଦ ଆହାଲାହୁଁ ହୃଦ ।
ଦେହକୁ ଶୀତଳ କରି ଗଲେ ରଷି ଚାଣ୍ଡେ
ସମସ୍ତେ ଦେଖନ୍ତି ପଶିଗଲେ ଅଗ୍ନିକୁଣ୍ଡେ ।
ଜଳେ ବୁଡ଼ିଲା ପରାୟ ଅନଳରେ ପଶି
ତପତ ହାଟକ ରୂପେ ବାହାରିଲେ ଆସି ।
ରଷିମାନେ ଦେଖି ତାଙ୍କୁ ଚମତ୍କାର ହେଲେ
ସ୍ଥୂଳମୁନି ଦେଖି ଏକା ସଙ୍କୋଚ ପାଇଲେ ।
ଅନ୍ତରାଳ ହୋଇ ସଭାମଧ୍ୟୁ ଗଲେ ଉଠି
ଗୌତମକୁ ଧନ୍ୟ ଧନ୍ୟ କଲେ ପରମେଷ୍ଠୀ ।
ସ୍ଥୂଳମୁନି ପଳାନ୍ତେଣ ଭାଜିଗଲା ବାଦ
କହନ୍ତି ଯେ ପିତାମହ ଶୁଣ ହେ ନାରଦ ।
ଏହିରୂପେ ଗଉତମ ବିଭାହେଲେ ଜାଣ
ତାହାଙ୍କର ପୁତ୍ର ହେଲେ ସତ୍ୟାନନ୍ଦ ଶୁଣ ।
ଲିଙ୍ଗଚକ୍ରୁ ଜନ୍ମିଲା ଯେବଣ ତରୁଣୀ
ତାହାଙ୍କୁ ବିବାହ ହେଲେ କାମଦେବ ପୁଣି ।
ସେ ରତି କାମ ବିବାହ କରିବା ଯେ ଆଗେ
ଶାରଦାଙ୍କ କଥା ତୁହି ଶୁଣି ଏହିଲାଗେ ।
ଯେତେବେଳେ ହୃଦୁ ବ୍ରହ୍ମାକଲେ ତାଙ୍କୁ ଜାତ
ବୟାଳିଶ ରାଗ ଟେକି ପ୍ରକାଶିଲେ ମାତ ।
କହିବା ସେ ରାଗଙ୍କର ନାମ ମଧ ଶୁଣ
କାଫି କଉଶିକ କାଳି କାମୋଦୀ କଲ୍ୟାଣ ।
କନଡ଼ା ଯେ କୋଳାହଳ କର୍ଣ୍ଣାଟ କେଦାର
ମାରୁଆ ମାଳଶ୍ରୀ ଘେନି ମଙ୍ଗଳା ମହ୍ଲାର ।
ମଧୁକେରୀ ରାମକେରୀ ମୁଖାରୀ ମାଳବ
ଭଇରବ ଭଟିଆରୀ ଭୁପାଳ ତାଣ୍ଡବ ।
ଧନାଶ୍ରୀ ଯେ ବଙ୍ଗଳାଶ୍ରୀ ଗୌରୀ ଦେଶାକ୍ଷଣ
ଅମର ତାଣ୍ଡବ ତୋଡ଼ି ଶଙ୍କରାଭରଣ ।
ଶ୍ରୀଦକ୍ଷିଣା ଆଶାବାରୀ ଶ୍ରୀହରି ଆହାରୀ
ଗୁଜ୍ଜରୀ ଯେ ଗୁଣକେରୀ ପଟ୍ଟହମଞ୍ଜରୀ ।
ବସନ୍ତ ବରାଡ଼ ନଟ ସିନ୍ଧୁଡ଼ା ବିଭାସ
ଟଙ୍କାସାର ଚଳଘଣ୍ଟ ପୁରବୀ ପ୍ରକାଶ ।

ଚୋଖି ଚିନ୍ତାମଣି ରାଗ ଟେକନ୍ତେ ଯେ ଏତେ
ସନ୍ତୋଷ ହୋଇଲେ ଶୁଣି ପିତାମହ ଚିତ୍ତେ
ହୃଦରେ ପାଞ୍ଚିଲେ ଏତ ଅଟେ ସରସ୍ୱତୀ
କେବଳ ଏ ବିଷ୍ଣୁଙ୍କର ହେବ ପ୍ରିୟବତୀ ।
ଆନ ଲୋକଙ୍କୁ ନୁହଇ ଯୋଗ୍ୟ କଦାଚିତେ
ଏତେବୋଲି ଦେଲେ ନେଇ ଗୋବିନ୍ଦ ଅଗ୍ରତେ ।
ତାର ବାର ରଷି ଗଣି କୃଷ୍ଣେ ସମର୍ପିଲେ
ଆପେ ପୁରୋହିତ ହୋଇବାକ୍ୟ ଉଚ୍ଚାରିଲେ
କୁଶଗ୍ରନ୍ଥି ହସ୍ତେ ବାନ୍ଧି ଜଳଦେଲେ ଟେକି
ବଢ଼ିଲା ବିବାହ ପ୍ରଭୁ ନେଲେ ଭାରତୀଙ୍କି ।
ଅଚିନ୍ତାରେ ବୈକୁଣ୍ଠରେ ନେଇ ଭୋଗକଲେ
ବେଦମତୀ ପ୍ରସବ ତୁ ଶୁଣ ଏବେ ଭଲେ ।
ଆଦ୍ୟରେ ସେ ମହାଲକ୍ଷ୍ମୀ ହୋଇ ଜନ୍ମି ଥିଲେ
ଦ୍ୱିତୀୟରେ ପୁଣି ସେହି ବେଦମତୀ ହେଲେ ।
ସେହି ବେଦମତୀ ପୁଣି ସୀତାଦେବୀ ହେଲେ
ଚତୁର୍ଥରେ ପୁନରପି ରୁକ୍ମିଣୀ ହୋଇଲେ ।
ପ୍ରଥମରେ ଏ ଲକ୍ଷ୍ମୀଙ୍କି ଭୃଗୁ ଜାତକଲେ
କହିବା ତାହାଙ୍କ ଜନ୍ମ ଆଗେ ତୋତେ ଭଲେ
ଶୁଣି ମନରେ ସନ୍ତୋଷ ହୋଇଲେ ନାରଦ
ପିତାଙ୍କୁ ପୁଛିଲେ ପୁଣି ଧରି ବେନି ପାଦ ।
ବୋଇଲେ ହେ ପିତାମହ କହ ତୁମ୍ଭେ ଏବେ
ଜାତ ହୋଇଥିଲେ ଯେଉଁ ଆଠପୁତ୍ର ପୂର୍ବେ ।
ତାହାଙ୍କର ବଂଶମାନ କେତେହେଲେ କହ
ତୁମ୍ଭମୁଖୁ ଶୁଣିଲେ ମୋ ଫିଟିବ ସନ୍ଦେହ ।
ନାରଦ ବଚନେ ବ୍ରହ୍ମା ହୋଇଲେ ସନ୍ତୋଷ
ବୋଇଲେ ଶୁଣିଛୁ ପରା ପ୍ରଜାପତି ବଂଶ ।
ଆଉ ସପତ ପୁତ୍ରର ବଂଶ ଶୁଣ ତେବେ
ଭିନ୍ନେ ଭିନ୍ନେ ବୁଝାଇଣ କହିବା ପ୍ରସ୍ତାବେ ।
ବ୍ରହ୍ମାଙ୍କର ପୁତ୍ର ଯେଉଁ ଅଙ୍ଗିରା ମହର୍ଷି
କେମନ୍ତ କନ୍ୟାକୁ ସେହି ବିଭାହେଲେ ଆସି ।
ତାହାଙ୍କୁ ନେଇଣ ରଷି କରନ୍ତେ ରମଣ
ଜନମିଲେ ବୃହସ୍ପତି ଘେନି ଦିବ୍ୟଗୁଣ ।
ସେହି ବୃହସ୍ପତି ମହାଯୋଗ୍ୟ ହୋଇବାରୁ
ତାରାକୁ ବରିଲେ ଦ୍ୱିଜ ସୁନନ୍ଦ ଗୃହରୁ ।
ବିଭାହୋଇ ଅଚିନ୍ତାରେ ରହିଲେ ସେ ପୁରେ
ଶୁଣ ତୁମ୍ଭେ ଅତ୍ରି ବଂଶ ଏଥୁଅନନ୍ତରେ ।
ଅନସୂୟା ନାମେ କନ୍ୟା ବିଭାହୋଇ ମୁନି
ରହିଲେ ଆନନ୍ଦ ମନେ ନିଜ ପ୍ରିୟା ଘେନି ।
ଶୁଣ ବାବୁ ନାରଦ ସେ ଅତ୍ରି ମୁନି ଭାବ
ଲିଙ୍ଗକୁ ପରମ କଲେ ଭବ କଲେ ଜୀବ ।

ଜୀବକୁ ମନରେ କଳ୍ପ ପୁଣି ଲିଙ୍ଗ କଲେ
ପରମକୁ ଶକ୍ତି ଲିଙ୍ଗ ହୁଅ ତୁ ବୋଇଲେ ।
ବୋଇଲେ ହେ ଲିଙ୍ଗ ତୁମ୍ଭେ ବସ ମନ୍ତ୍ର ଜପି
ହୁଅଇ ତୁମ୍ଭ ଜପରୁ ବିଷ୍ଣୁ ଆତ୍ମାରୂପୀ ।
ଦେହ ଧରି ଆସିଲେ ସେ ଦୃଷ୍ଟିରେ ଦେଖିବୁ
ତହୁଁ ତାଙ୍କ ନାମ ଆମ୍ଭେ ଦୁର୍ବାସାଯେ ଦେବୁ ।
ଶୁଣିଣ ସେ ଲିଙ୍ଗ ଶକ୍ତି ମୁନିଙ୍କ ବଚନେ
ବସିଲେ କେଳିକରି ସୁରପତି ଭବନେ ।
ଜୀବ ପରମର ପ୍ରାୟେ ରତି ଆରମ୍ଭିଲେ
ଏ ଅର୍ଥ ବୁଝିବ ଏକ ଗୁରୁ କରିଥିଲେ ।
ଯାବତ ହୃଦେ ପ୍ରକାଶ ହୁଏ ନରହରି
ଜୀବ ପରମ ରୂପରେ ଛନ୍ତି ବିଜେକରି ।
ଚାଲି ଆସନ୍ତି ପାଦର ତ୍ରିକୂଟ ଦଣ୍ଡରେ
ପ୍ରାଣୀଏ ବୁଲିଆସନ୍ତି ଶରୀର ମଧରେ ।
ଏଣୁ କରି ଜୀବଗୋଟି ଅଟେ ଆତ୍ମଲିଙ୍ଗ
ଶକ୍ତି ବ୍ୟତିରେକ ତାର ନାହିଁ ଆନ ସଙ୍ଗ ।
ସେ ଲିଙ୍ଗ ଶକ୍ତି ସଙ୍ଗମୁସ୍ରବି ବ୍ରହ୍ମଧାତୁ
ତକ୍ଷଣେ ପୁତ୍ରେକ ଆସି ଜନ୍ମେ ଗର୍ଭଗର୍ତ୍ତୁ ।
ପୁତ୍ରକୁ ଚାହିଁଣ ଋଷି ସନ୍ତୋଷ ହୋଇଲେ
ଦୈବୀଚିହ୍ନ ଦେଖି ନାମ ଦୁର୍ବାସା ଯେ ଦେଲେ
ଏଥୁଅନ୍ତେ କେତେକାଳ ତହୁଁ ବହିଗଲା
ପୁଣି ଦିନେ ଅନୁସୂୟା ପାକାସ୍ପର୍ଶୀ ହେଲା ।
ଚତୁର୍ଥ ନିଶି ଯାଆନ୍ତେ ପଞ୍ଚମ ଦିନରେ
ପ୍ରାତଃକାଳୁ ଚଳିଗଲେ ସ୍ନାନ କରିବାରେ ।
ଚଳିଲେ କ୍ଷୀରସିନ୍ଧୁରେ ଯାଇ ଅନୁସୂୟା
ଏଥୁଅନ୍ତେ ମୁନି ଘରେ ନ ଦେଖିଣ ପ୍ରିୟା ।
ଖୋଜନ୍ତି ଆକୁଳ ହୋଇ ପୁର ଚଉକତି
ଗୃହରେ ଭେଟ ନ ପାଇ ପଦାକୁ ଯାଆନ୍ତି ।
ଲୋଡ଼ନ୍ତ ପୁର ବାହାର ମଧେ ଅନୁସୂୟା
ବୋଲନ୍ତି ଲୁଚି ରହିଲୁ କାହିଁ ଆଗୋ ପ୍ରିୟା ।
ତୁହି ଲୁଚିଲେ ନିସଖା ମୁହିଁ ହେବି ସିନା
ଏଣୁକରି ଶୀଘ୍ର ସଖୀ ଦେଖାଯାଉ କିନା ।
ଦୀନ ଦୁଃଖୀପ୍ରକାରେ ନ ସରେ ମୋରଦିନ
ତୁ କାମ କ୍ଷୁଧାକୁ ମୋର ଅଟୁ ସୁଧାପାନ ।
ଦେହେ ଯେହ୍ନେ ଥାନ୍ତି ଜୀବ ପରମ ଏ ଦୁଇ
ଜଣେ ଭକ୍ଷିଲେ ଆରେକ ସନ୍ତୋଷ ହୁଅଇ ।
ସଂସାରେ ଭର୍ତ୍ତାକୁ ଜାଣ ସେହିରୂପେ ପତ୍ନୀ
ଏକକୁ ଆରେକ ଥାନ୍ତି ସ୍ନେହ ଭାବ ଘେନି ।
ଏମନ୍ତ ବୋଲି ଚାହିଁଲେ ପୁଣି ଦଶଦିଗେ
ଆକୁଳ ହୋଇ ତାହାଙ୍କୁ ପଚାରନ୍ତି ବେଗେ ।

ଆହେ ଦିଗମାନେ ତୁମ୍ଭେ ଜାଣିଥିଲେ କହ
କେଣେ ମୋର ପ୍ରିୟାଗଲା ଅମୂଲ୍ୟ ତା ଦେହ
ତାର ଅଭାବେ ନ ପାରେ ମୁହିଁ ଦେହ ରଖି
ହେଲା ମୋର ତନୁକ୍ଷୀଣ ଚକ୍ଷୁରେ ନ ଦେଖି ।
ମୁଁ ତାହାର ଆତ୍ମା ସେହୁ ଅଟେ ପିଣ୍ଡମୋର
ପିଣ୍ଡ ନ ଥିଲେ ଆତ୍ମାର କି ସୁଖ ପ୍ରଚାର ।
ଏଣୁଟି ପତି ପତ୍ନୀ ଏ ଦେହେ ପିଣ୍ଡ ପ୍ରାଣ
ଦୁଇ ନ ଥିଲେ ଅଶୋଭା ଦିଶେ ଏହା ଜାଣ ।
ଏମନ୍ତ ବୋଲି ବୃକ୍ଷକୁ ପୁଣି ଋଷି ପୁଚ୍ଛି
ତୁମ୍ଭେମାନେ କହ ମୋର ପ୍ରିୟା କାହିଁ ଅଛି ।
ପ୍ରଭାତକାଳୁ ମୁହିଁ ନ ଦେଖି ନେତ୍ରଭାଗେ
ଘଡ଼ିକବେଳ ମୋତେ ତ ଲାଗିଲାଣି ଯୁଗେ ।
ଏମନ୍ତ ବୋଲି ପୃଥ୍ୱୀକି ଅତ୍ରିମୁନି ଚାହିଁ
ଭୋ ମାତା ବସୁଧା ଗୋ ତୁ ହେଲେ ଦିଅ କହି
କାହିଁ ଅଛି ସଖି ମୋର ତୋତେ ଥିବ ଜଣା
ଖଣ୍ଡେଦୂର ଅନ୍ତେ ଆମ୍ଭେ ହେଲୁ ପୁଣି ବଣା ।
ଶତେ କ୍ରୋଶ ବା ସହସ୍ର ଯୂଣେ ଥାଉ ତୁହି
ଯେ ତହିଁ ହଜିଲେ ତୋର ତହିଁ ଆନନାହିଁ ।
ଏଣୁ ତୁହି ବସୁଧା ଗୋ ଦେବୁ ତୋର ସଖା
ନୋହିଲେ ଆନରବଳେ କେ ନ ପାରେ ରଖି ।
ଏଣୁ ତୁହି ନ କହିଲେ ପାଇବୁଟି ଶାପ
ଏହା ଶୁଣି ବସୁମତୀ ହସିଲେ ଅଳପ ।
ମୁନିଙ୍କି କହିଲେ ଉଭାହୋଇ ମୃଦୁବାଣୀ
ଭୋ ମୁନି କେଣେ ଲୋଡୁଛ ଭାରିଯାକୁ ପୁଣି
ତୁମ୍ଭର ଘରଣୀ ଏବେ ପାକାସ୍ପର୍ଶ ହୋଇ
ଶୁଦ୍ଧସ୍ନାନ କରିବାକୁ ଯାଇଅଛି ନଈ ।
ସ୍ତିରୀଙ୍କୁ ହେଲେ ଏକଥା ସଙ୍କୋଚ ନୁହେଁ
ଗାଧୋଇବା କଥା କେହି ଭର୍ତ୍ତାକୁ କହେ
ସ୍ତିରୀବିଷୟ ସ୍ତିରୀଏ ସିନା ଜାଣିପାରୁଁ
ପୁରୁଷେ ଶୁଣିଲେ ତାହା ଲଜ୍ଜା କରି ମରୁଁ
ସହଜେ ଅଶୁଦ୍ଧ ସ୍ତିରୀ ପ୍ରଥମ ନ ଛୁଇଁ
ଦ୍ୱିତୀୟ ଦିନେ ଛୁଇଁଲେ ଆୟୁହାନି ହୋଇ
ତୃତୀୟେ ଛୁଇଁଲେ ହରେ ବାରବ୍ରତ ଯାଗ
ଚତୁର୍ଥେ ପାଣି ନ ପାନ୍ତି ତାର ପିତୃଲୋକ
ପଞ୍ଚମ ରାତ୍ରିରେ ପ୍ରିୟାପାଶେ ଚଳିଗଲେ
ତହିଁ କିଛି ଦୋଷ ନାହିଁ ପୃଥିବୀ କହିଲେ
ଏହି ବିଷୟ ତୁମ୍ଭଙ୍କୁ କିଛି ଜଣାନାହିଁ
ପ୍ରଭାତ ସ୍ନାନ ନିମନ୍ତେ ଯାଇଛନ୍ତି ନଈ ।
ଲୋଡୁଛ ଏଡ଼େ ଆକୁଳ ହୋଇ ଯେବେ ତୁ
ଦେଖିବ ଯା ତାକୁ କ୍ଷୀରସିନ୍ଧୁ ତୀରେ ତେ

ଏହାଶୁଣି ଅତ୍ରିମୁନି ହୋଇଲେ ହରଷ
ପୃଥିବୀ କହନ୍ତେ ଶୀଘ୍ର ଗଲେ ପ୍ରିୟାପାଶ ।
ସଖୀକି ଦେଖିଣ ହର୍ଷେ କୋଳରେ ଧରିଣ
କହନ୍ତି ମୁନି ଗଦଗଦେ ମଧୁର ବଚନ ।
କହ କହ ସଖି କେହ୍ନେ ଅଇଲୁ ତୁ ମୁର୍ଛି
ମୁଁ ତୋତେ ନ ଦେଖିଲେ ନପାରେ ଦଣ୍ଡେ ବଞ୍ଚି ।
ଅନୁସୂୟା ବୋଇଲେ ମୁଁ ନିସ୍ତରିଲି ତେବେ
ମୋ ଛାରକୁ ଏଡ଼େ ଦୟା କଲ ଆସି ଯେବେ ।
ସହଜେ ତ ଭାରିଯାର ପତି ଅଟେ ଗତି
ପୁଜ ନାଳ ଖଙ୍କାର ଏ ଦେହେ ଘାଣ୍ଟି ହୋନ୍ତି ।
ଏଡ଼େକ ପାପ ଶରୀରେ ସ୍ୱାମୀ ନ ରମିଲେ
ସ୍ତିରୀଏ ମୋକ୍ଷହୁଅନ୍ତେ କାହୁଁ କେହି ଦେଲେ ।
ସ୍ତିରୀମାନଙ୍କର ଏଣୁ ସ୍ୱାମୀ ଜାଣ ବିଷ୍ଣୁ
ରତି କରନ୍ତି ଯେ ପତିସଙ୍ଗେ ହୋଇ ବିଷ୍ଣୁ ।
ପତିଠାରେ ବିଷ୍ଣୁ ନାମ ଗୋଟି ପ୍ରବର୍ତ୍ତଇ
ପତ୍ନୀର ଅଙ୍ଗକୁ ପଶୁ ପତି ଯେ ରମଇ ।
ଆନଲୋକ ଛୁଇଁ ତାକୁ ପାରିବ କି ବଳେ
ଛୁଇଁଲେ ତା ମହତ୍ୱ କି ଥିବ ରବିତଳେ ।
ତହିଁପାଇଁ ଆସିଲି ମୁଁ ଛାମୁରେ ନ କହି
ତାହା ଏବେ ଜଣାଉଛି ଶୁଣ ମନ ଦେଇ ।
ଏହି ସ୍ନାନ ଯୋଗବଳେ ଭାଗ୍ୟଥିଲେ ମିଳେ
ମାତା କହିଥିଲେ ଶୁଣିଅଛି ବାଳକାଳେ ।
ଯୁବତୀ ରମଣୀମାନେ ହେଲେ ରଜୋବତୀ
ପ୍ରଥମୁଁ ଚତୁର୍ଥଯାଏ ନ ଛୁଇଁବେ ପତି ।
ପ୍ରଭାତରୁ ଉଠି ଚଳିଯିବ ଜଳଘାଟେ
ରବି ଉଦେ ନୋହୁ ସ୍ନାନେ ଯିବଅଛି ପାଠେ ।
ତେବେ ସେ ଯୁବତୀ କି ନଲାଗେ ଦୋଷାଦୋଷ
ସ୍ୱାମୀକି ଲଭେ ସେଦିନ ଯାଇ ନିଜ ବାସ ।
ତାହାର କୋଳେ ସୁପୁତ୍ର ନିଶ୍ଚେ ଜାତ ହୋଏ
ରବି ଉଦେ ସ୍ନାନ ଅଛି ନିଷେଧ ଯା କହେ ।
ଘରୁ ବାହାରି ସେ ଜଳେ ସ୍ନାନ କଲାଯାଏ
ସେହି ସ୍ତିରୀ ସେହି ବେଳା ଅତିଭାଗ୍ୟେ ପାଏ
ଉତ୍ତମ ଲଗ୍ନରେ ଗଲେ ସ୍ନାନଫଳ ଲଭେ
ସୁନ୍ଦର ସୁପୁତ୍ର ନିଶ୍ଚେଁ ଉପୁଜଇ ଗର୍ଭେ ।
ପଡ଼ଇ ଯେବେ ଉର୍ଦ୍ଧେ ଶୋଷଣୀର ମୁଖେ
ସେ ଯୁବକ ଗୋଟି ପୁତ୍ର ନ ଧରଇ କାଖେ ।
ସେହି ଉର୍ଦ୍ଧ ଶୋଷିଣୀ ସେ ଉର୍ଦ୍ଧେ ଭ୍ରମୁଥାଇ
ଯାହରା ଅଭାଗ୍ୟ ଥିବ ତା ମୁଖେ ପଡ଼ଇ ।
ପଡ଼ିଲେ ମଡ଼ିଛି ବନ୍ଧ୍ୟା ହୋଇ ବେଶ୍ୟାସ୍ତିରୀ
କେ ଅବା କୁଳଟା କେହୁ ହୁଅଇ ଦୋଚାରୀ ।
କେ ଅବା ବିଧବା କେହୁ ହୁଏ ରୋଗଗ୍ରସ୍ତ
ସମସ୍ତଙ୍କୁ ମିଳଇ କି ସ୍ନାନ ଶୁଭକୃତ୍ୟ ।
ଭଲମନ୍ଦ ଦୁଇକଥା ନ ଜାଣଇ ମୁହିଁ
ତେଣୁ ସକାଳୁ ଅଇଲି ଛାମୁରେ ନ କହି ।
ତଥାପି ଏ ଛାର ସ୍ନାନ କି ବୋଲି ଜଣାନ୍ତି
ସ୍ନାନ କଲା ଯାହା କାହା ମୁଖ ନ ଚାହାନ୍ତି ।
କୁତ୍ସିତା ରମଣୀ ସିନା ପୁରୁଷେ ଜଣାଏ
ସ୍ନାନ ଶୁଣି କେହି ପୁଣି ଧୀରେ ବସିଥାଏ ।
ଏ ଯେଉଁ ଦର୍ଶନ ମୋତେ ଏବେ ହୋଇ ଆସି
ସ୍ତିରୀଙ୍କୁ ନ ମିଳେ ଏ ଗଙ୍ଗାଜଳେ ଝାସି ।
ଶୁଣି ତାହା ଅତ୍ରିମୁନି ହୋଇଲେ ସନ୍ତୋଷ
ପ୍ରିୟାର ବୋଲେ କରିବା ଏଥେ କେଳିରସ ।
ଏକେ ଭୂମି ନିର୍ମଳ ଯେ ତଟ କ୍ଷୀରସିନ୍ଧୁ
ଏ ସ୍ଥାନେ ପୁତ୍ର ଜନ୍ମିଲେ ବୋଲାଇବ ଇନ୍ଦୁ ।
ତିରିଶ ଅହୋରାତ୍ରଟି ଯେବେ ହେବ କେଳି
ତେବେ ତୋ ପୁତ୍ର ହୋଇବ ସୁଧାଅଂଶୁମାଳି ।
ତେଣେ ତୋ ପୁତ୍ର ହୋଇବ ଛିଦ୍ରାକାୟ ବଳେ
ଏମନ୍ତ ଦିଶିଲା ସଖି ମୋତେ ଯୋଗବଳେ ।
ଶୁଣ ହେ ନାରଦ ସେହି ଅନୁସୂୟା ସତୀ
ପତିବ୍ରତା ସ୍ତିରୀ ବୋଲି ନ କଲେ ଯେ ନାସ୍ତି ।
ମୁନିଙ୍କର ହୃଦୟରେ ପୀଡ଼ିତ ଅନଙ୍ଗ
ବଚନ ମେଣ୍ଟିଲା ଦୁହେଁ ହେଲେ ଏକ ଯୋଗ ।
ପ୍ରାଣାଦି ପଞ୍ଚପବନ ଦୁହେଁ କରି ଏକ
ନିଶ୍ଚଳ କରିଣ ମନ କ୍ରୀଡ଼ନ୍ତି ଅନେକ ।
ମୁନିଙ୍କ କଳ୍ପନାରୁ ନ ଟଳେ ବ୍ରହ୍ମବୀର୍ଯ୍ୟେ
ଘନ ଘନ ବିନ୍ଧିଛି ଯେ କନ୍ଦର୍ପ ନାରାଚେ ।
ଏହି ମତେ ପଞ୍ଚଦଶ ଦିନ ଯାନ୍ତେ ବହି
ରମଣର ଚେଷ୍ଟା ସତୀ ନ ପାରିଲେ ସହି ।
ଲଜ୍ଜା ତ୍ୟକ୍ତ କରି ସ୍ୱାମୀ ଆଗେ ଜଣାଇଲେ
ଏଥର ମୋଗର୍ଭେ ବୀର୍ଯ୍ୟ ନପଡୁ ବୋଇଲେ ।
ଶରୀର ଅଶକ୍ତ ହେଲା କେଳି କରୁ କରୁ
ଖସିଲେ ତ ବିନ୍ଦୁ ସରିଯିବ ତେଣେ ଘରୁ ।
ଏ କଥାକୁ ବିଚାରିଣ ଦୟା କର ମୋତେ
ନୋହିଲେ ଜୀବନ ମୋର ନ ରହିବ ଗାତ୍ରେ
ମୁନି ବୋଇଲେ ନୋହିଲା ବ୍ରତ ଏବେ ପୁରା
ପୁତ୍ର ଜନ୍ମିବେ ଦିଶିବ ଛିଦ୍ରତନୁ ପରା ।
ପକ୍ଷେ କେଳି ହେବାହେତୁ ବଢ଼ିବ ସେ ପକ୍ଷେ
ଆରପକ୍ଷେ ଛିଡ଼ି ଛିଡ଼ି ଯିବ ଦେହଯାକେ ।
ଏହିରୂପେ ଏକପୁତ୍ର କରିବା ଉତ୍ପତ୍ତି
ନୋହୁ ପଛେ ବଳା ମୋର ନୋହୁ ଆଉ ରତି ।

ଭାରିଯା ଦୁଃଖ ପାଇଲେ ହେବ କିସ ମୋର
ତାହା ପାଞ୍ଚ ମୁନି କେଳି ତେଜିଲେ ସତ୍ୱର ।
ଚଳି ଯାଇଥିଲା ଯେଉଁ ରେତ ଲିଙ୍ଗଚକ୍ରେ
ତାହାକୁ ମୁନି ଉର୍ଦ୍ଧ୍ୱକୁ ଟେକିଦେଲେ ବକ୍ରେ ।
ବ୍ରହ୍ମରନ୍ଧ୍ର ଖସି ସେହି ଆସିଥିଲା ଝରି
ଲହରୀ ପ୍ରାୟ ଟେକିଲେ ତାକୁ ତପଚାରୀ ।
ଲେଉଟି ରଖିବା ତାକୁ ବିନ୍ଦୁ ଘରେ ନେଇ
ଏତେ ଭାଳି ନାଭିଚକ୍ରୁ ହୃଦଚକ୍ରେ ଯାଇ ।
କଣ୍ଠଚକ୍ରେ ଆଣି ତାର ରଖିଲେ ଲଲାଟେ
ତହିଁ ରହି ନ ପାରି ସେ ବହେ ଚକ୍ଷୁବାଟେ ।
ନେତ୍ରରୁ ବହନ୍ତେ ବୀର୍ଯ୍ୟ ଲୁହ ବୋଲାଇଲା
ଖସନ୍ତେ ବିନାଶ ନୋହେ ସମୁଦ୍ରେ ପଡ଼ିଲା ।
କ୍ଷୀରସିନ୍ଧୁ ଜଳେ ଝାସି ସଞ୍ଚରିଲେ ପିଣ୍ଡ
ଦ୍ୱିତୀୟା ଦିନରେ ଆସି ଜାତ ମହୀଖଣ୍ଡ ।
ଉଜ୍ୱଳ ଜ୍ୟୋତିକୁ ଧରି ବଢ଼େ ପକ୍ଷଯାଏ
ଲେଉଟି ସେଠାରୁ ପୁଣି ଛିଡ଼ିଯାଏ କାୟେ ।
କ୍ଷୟ ବୃଦ୍ଧି ଦେଖି ତାର ଅତ୍ରି ମନେ ପାଞ୍ଚି
ବୋଇଲେ ଦିନେ ଏ ବର୍ଣ୍ଣ ନ ଥିଲା ତ କିଛି ।
ପକ୍ଷେ ବୃଦ୍ଧି ଛିଦ୍ର ଦେଉଅଛି ପକ୍ଷେ କାୟେ
ଏମନ୍ତ ପାଞ୍ଚି ବସିଲେ ମୁନି ଯୋଗଲୟେ ।
କୁମର ଲକ୍ଷଣ ଯାକ ଚିହ୍ନି ଅନୁସରି
ଆପଣାର ପୁତ୍ର ବୋଲି ଜାଣି କୋଳକରି ।
ପ୍ରିୟାକୁ ବୋଇଲେ ସଖି କଲୁ ତ ଅନୀତି
କେଳିପୂର୍ଣ୍ଣ ହୋଇଥିଲେ ଦେଖନ୍ତୁ ଏ ମୂର୍ତ୍ତି ।
ପକ୍ଷେ ଏକ ଏକ ହେବ ବଢୁଅଛି ପକ୍ଷେ
ତେଣୁ କରି ଏହି କ୍ଷୟ ବୃଦ୍ଧି ହେଲା ଯାକେ ।
କେବଳ ଏତିକି ମୋତେ ଦିଶିଲା ଉତ୍ତମ
କୃଷ୍ଣ ଶୁକ୍ଳପକ୍ଷ ଜଣାଯିବ ପକ୍ଷମାନ ।
ଚେତନା ଦ୍ୱାରୁ ଜନ୍ମିଲା ଚନ୍ଦ୍ର ନାମ ହେଉ
ପକ୍ଷେକ ଅନ୍ଧାର ପକ୍ଷେ ଆଲୁଅ ବୋଲାଉ ।
ଅନୁସୂୟା ବୋଇଲେ ଏ କାହୁଁ ହେଲାଜାତ
ମୋର ଗର୍ଭେ ପଡ଼ିନାହିଁ ତୁମ୍ଭ ଗର୍ଭୁରେତ
ଅତ୍ରିମୁନି ବୋଇଲେ ଗୋ ଶୁଣ ପ୍ରାଣସଖୀ
ଯେବଣ ଧାତୁକୁ ନେଇ ଲିଙ୍ଗେ ଥିଲି ରଖି ।
ତୁମ୍ଭ ତ୍ରାସ ଦେଖି ମୁହିଁ ଟେକିଲି ଉର୍ଦ୍ଧ୍ୱକୁ
ନାଭି ଚକ୍ରରେ ପୂରାଇ ଆଣି ଲଲାଟକୁ ।
ବିନ୍ଦୁଘରେ ତାକୁ ପୁଣି ସମ୍ଭାଳି ରଖନ୍ତେ
ତହିଁ ନ ରହି ଉଛୁଳି ଗଲା ନେତ୍ରପ୍ରାନ୍ତେ ।
କ୍ଷୀରସିନ୍ଧୁ ମଧ୍ୟେ ପଡ଼ି ପ୍ରକାଶିଲା ତନୁ
ଶୁଣ ଅନୁସୂୟା ଭ୍ରମ ଫିଟିଗଲା ମନୁ ।

ପତିକୁ ବୋଇଲେ ଏବେ ପୁତ୍ରେ ଦେବାବର
ଯୁଗେ ଯୁଗେ ରହୁ ଏତ ହୋଇ ଅକ୍ରାମର
ଅତ୍ରି ମୁନି ଲୁହ ପଡ଼ି ଜନ୍ମିଲା ଏ ସିନ୍ଧୁ
ତେଣୁ ସ୍ୱାମୀ ହେଉ ଏହି ପୁତ୍ର ନାମ ଇନ୍ଦୁ ।
ନେତ୍ରରୁ ଯେବେ ସ୍ରବିଲା ଶଶୀ ନାମ ହେଉ
ସେ ତିଥି ଜନ୍ମ ସେ ତିଥି ଦ୍ୱିତୀୟା ବୋଲାଉ
ପକ୍ଷେ ବଢୁପଛେ ଛିଡୁ ଜାଣ ଏହି ପୁତ୍ର
ଗଗନରେ ଉଦେ ହୋଇ ପାଳୁ ଏ ସର୍ବତ୍ର ।
ନିଶାରେ ପ୍ରକାଶୁ ଆଉ ଏହି ଦିବ୍ୟଜ୍ୟୋତି
ଶୁକ୍ଳାମ୍ବର ରୂପେ ରାଜୁଥାଉ ଦେହ କାନ୍ତି ।
ସର୍ବସ୍ଥାନେ ସର୍ବ ଦିଶି ସୋମ ଦାମ ବହୁ
ନେତ୍ରୁ ଜନମିଲା ସର୍ବନେତ୍ରେ ଉଦେ ହେଉ
ଚନ୍ଦ୍ରବେଳେ ସର୍ବ ଯୋଗ ଯାତ୍ରାକରିଥାନ୍ତୁ ।
ବାର ରାଶିଯାକ ଆଉ ବାଧା ନ କରନ୍ତୁ ।
ବାର ରାଶିଯାକ ହେଉ ଚନ୍ଦ୍ରମୂଳେ ଭୋଗ
ମେଷ ବୃକ୍ଷ ମିଥୁନ ଯେ କରକଟ ସିଂହ ।
କନ୍ୟା ତୁଳା ବିଛା ଧନୁ ମକ୍ର କୁମ୍ଭ ମୀନ
କୀଟୁ ବ୍ରହ୍ମଯାଏ ଚଳୁ ରହିବାର ଲଗ୍ନ ।
ସତାଇଶ କନ୍ୟା ସଙ୍ଗେ ଏହା ଦିନ ସରୁ
ରାଶିକେ ଏ ନବପାଦ ଲେଖା ଭୋଗକରୁ ।
ଅଶ୍ୱିନୀ ଦ୍ୱିଜା ଏ ଦୁଇ କୃତ୍ତିକାର ପାଦେ
ଏହି ପ୍ରମାଣେ ଦେଖିଣ ଭୋଗ କରୁ ଆଦ୍ୟେ
ଏହାର ବିନୟ ହ୍ୱନ୍ତେ ଦିଗ୍ ଶୋଭା ପାଉ
ବ୍ରହ୍ମାଣ୍ଡ ଉପମା ଚନ୍ଦ୍ର ତୁଲ୍ୟ କିଛି ନୋହୁ ।
ପ୍ରିୟା କହନ୍ତେ ହେ ମୁନି ଅସ୍ତୁ ଅସ୍ତୁ କଲେ
ସେଠାରୁ ଯାଇ ଗଗନେ ଚନ୍ଦ୍ରଉଦେହେଲେ
ପ୍ରଜାପତି ଝିଅ ଯେଉଁ ଷାଠିଏ ଦୁହିତା
ତହୁଁ ସପ୍ତବିଂଶତ୍ତିରୀ ଦେଲେ ତାକୁ ପିତା
ଉଭା ହୋଇଣରହିଲେ ଶୂନ୍ୟେ ତାଙ୍କୁ ଘେନି
ସେ ଚନ୍ଦ୍ରକାଳେ ହରିଲେ ପୁଣି ଗୁରୁପତ୍ନୀ ।
ତାହା ବିସ୍ତାରି କହିବା ଆଜି ମଧ୍ୟ ତୋତେ
ଏବେ ଆଗ ଶୁଣ ଋଷିବଂଶ ହେଲେଯେତେ
ଶୁଣ ହେ ପରୀକ୍ଷ ରାଜା ଶୁକମୁନି କହି
ନାରଦକୁ ଏହିରୂପେ ବ୍ରହ୍ମା ଯେ ବୁଝାଇ ।
ଅତ୍ରି ମୁନିଙ୍କ ନେତ୍ରରୁ ଚନ୍ଦ୍ର ଉପୁଜିଲେ
ଶୁଣି ପରୀକ୍ଷ ମୁନିଙ୍କୁ ପୁଣି ପଚାରିଲେ ।
ଭୋ ମୁନି କୋକିଳ ଜନ୍ମ ହେଲେ ବ୍ରହ୍ମକନ୍ଧୁ
କହ ତାଙ୍କ ପୁତ୍ର କେହୁ ଉପୁଜିଲା ହୃଦୁଁ ।
ଏହା ତୁମ୍ଭେ ପାଶୋରି ନ କହିଯେବେଯାନ୍ତ
ଆମ୍ଭେ ଏହା ନ ପୁଚ୍ଛିଲେ ହୁନ୍ତୁ କୁପଣ୍ଡିତ

ରାଜାର ଏ ବାକ୍ୟ ଶୁଣି ହସି ଶୁକଜ୍ଞାତା
ବୋଇଲେତୋପରାକାହୁଁ ମିଳିବେହେଶ୍ରୋତା
ତୁ ଏବେ ଏଡ଼େକ ସନ୍ଧି ନପୁଚ୍ଛନ୍ତୁ ମୋତେ
ଆମେହେଲେହେଁ ଚିତୋଇକହନ୍ତୁବା କେତେ
ବ୍ରହ୍ମାଙ୍କଠାରୁ ନାରଦ ମୁନି ଶୁଣିବାରୁ
ତାହା ବକ୍ତା ହୋଇ କିଛି ତୁ ଯାହା ପଚାରୁ
ଶୁଣ ପରୀକ୍ଷ କୋକିଳ ଋଷିର ଯେ କଥା
ନାରଦ ମୁନି ପଚାରେ କହେ ଚଉମଥା ।
ବ୍ରହ୍ମାଏ ବୋଲନ୍ତି ବାବୁ ଶୁଣ ହେ ନାରଦ
ରହିଲା ତେବେ ଗାୟତ୍ରୀ ପୁତ୍ରଙ୍କ ସମ୍ବାଦ ।
ଶୁଣିଲ ତା ତିନିପୁତ୍ର ବଂଶ ଏହି ଲାଗେ
ଆଉ ପଞ୍ଚପୁତ୍ର ବଂଶ କହିବା ତୋ ଆଗେ ।
ଏ କୋକିଳ ଋଷି ହେଲେ ବ୍ରହ୍ମାଙ୍କର ବଳା
ଅନେକମତେ ଜାଣନ୍ତି ସେହୁ କାମକଳା ।
ନିଜ ଭାରିଯାକୁ ଘେନି କରନ୍ତେ ସୁରତି
ସେହି ପୁଣି ସମୟେକ ହେଲେ ଗର୍ଭବତୀ ।
ସୁକାନ୍ତି ନାମ ଅଟଇ ସେହି ରମଣୀର
ତାହାର ସଦୃଶ କନ୍ୟା ନାହିଁ ତିନିପୁର ।
କି କହିବି ତାର ରୂପ ଗୁଣ ଅନୁସରି
ଲକ୍ଷ୍ମୀଙ୍କୁ ଦିଅନ୍ତି ଲକ୍ଷ୍ୟ ସେ ଅଟନ୍ତି ଟେରୀ ।
ଉପମା ଦିଅନ୍ତି ଚନ୍ଦ୍ର ତୁଲେ ଅବା ନେଇ
ତହିଁରେ ଅଛି କଳଙ୍କ ସେହୁ ନ ଯୋଗାଇ ।
ପଦ୍ମ ପଟାନ୍ତର ଅବା ଦ୍ୟନ୍ତି ତାର ଲକ୍ଷ୍ୟ
କଣ୍ଟକ ଅଟେ ଘେନି ସେ ଉପୁଜିଛି ବୃକ୍ଷ ।
ଶାରଦା ସଙ୍ଗରେ ଲକ୍ଷ୍ୟ କରନ୍ତି ବା ମଧ
ତା ଅଙ୍ଗ ଧବଳ ପୁଣି ଧବଳ ତା ହୃଦ ।
ଶୁଣ ବାବୁ ନାରଦ ସେ ଏଡ଼େ ରୂପବତୀ
କୋକିଳ ଋଷି ଦେଖିଣ ମୂର୍ଚ୍ଛିନ ପାରନ୍ତି
ଦିନେ ଆପଣା ପ୍ରିୟାକୁ ବସାଇଣ ପାଶ
ସେ ମୁନି ପୁଙ୍ଗବ ମନେ ହୋଇଣ ହରଷ ।
ବୋଇଲେ ଉଦର ତୋର ସଖି ଦିଶେପୃଷ୍ଟ
କେତେ ମାସ ହେଲା ଗର୍ଭେ ରହିଲାଣି ଚାଟ
ଆଜିଯାଏ ସଖି ମୋତେ ନ କହିଲୁ କିଛି
ଏ କଥାରେ ପୁଣିଦୋଷକେତେକ ଯେଲେଖି
ସାତମାସ ଦୁଆଦଶ ଦିନ ପୂର୍ଣ୍ଣ ଯାଏ
ଏତେକ ଭିତରେ ରତି କରିବ ନିର୍ଭୟେ ।
ଏଣୁକରି ସଖି ଆରେ ପଚାରଇ ତୋତେ
ପତିମୁଖୁ ଶୁଣି ବାମା କହେ ସଜଳତେ ।
ଭୋ ସ୍ୱାମୀକରି ସ୍ତିରୀଙ୍କ ଶୁଦ୍ଧସ୍ନାନଠାରୁ
ଦିନ ଲେଖା ହୁଅଇଟି ଗର୍ଭ ହେଲେ ଗୁରୁ ।

ଏଣୁକରି ସ୍ୱାମୀ କହୁଅଛି ମୋର ସ୍ନାନ
ଲେଖନ୍ତେ ହୋଇଲା ଦୁଇଶତ ଦଶଦିନ ।
ଶୁଣିଣ କୋକିଳ ଋଷିମାସ ଲେଖା କଲେ
ଲେଖନ୍ତେ ସପତ ମାସ ସମ୍ପୂର୍ଣ୍ଣ ହୋଇଲେ
ବୋଇଲେ ତେବେ ଦ୍ୱାଦଶ ଦିନ ଆଉ ଅଛି
ଏ ବାରଦିନ ରମଣ କରିବାକୁ ପାଞ୍ଚି ।
ଏମନ୍ତ ବିଚାରି ମୁନି ଗଲେ ଯୋଗପଥେ
ଯହିଁ ଗଲେ ଗୃହେ ଆସି ମିଳନ୍ତି ଦିନାନ୍ତେ
ଏହିପରି ବାରଦିନ ପୂରି ଚଳିଗଲା
ଶୁଣ ବାବୁ ନାରଦ ଯେ କୋକିଳର ଲୀଳା
ସମ୍ପୂର୍ଣ୍ଣ ଯେ ପଞ୍ଚଦଶ ପକ୍ଷ ଦିନ ଋଷି
ପ୍ରିୟାକୁ ସ୍ନେହରେ ଧରି କୋଳ କରି ବସି
କରନ୍ତେ ଉରକୁ ଉର ଭିଡ଼ି ଆଲିଙ୍ଗନ
ଏମନ୍ତ ବେଳେ ହସିଲା ଗର୍ଭର ନନ୍ଦନ ।
ବୋଇଲା ନିୟମ ପୁଣି ପିତା କରିଥିଲ
ଏବେ ସେ କଥା ମନରୁ ପାଶୋରିଣ ଦେଲ
ଗର୍ଭ ଆଠମାସ ହେଲେ ନ ଛୁଇଁବ ନାରୀ
ଏହିକଥା ଗୋଟି ପିତା ଥିଲେ ସତ୍ୟକରି ।
ସେ ସତ୍ୟ ମୁନିର ଏବେ ହେଲା ପରା ମିଥ୍ୟା
କେବଳ ଚିରକାଳକୁ ଅଛି ମାତ୍ର କଥା ।
ପୁଣି ପାଞ୍ଚିଲା ସହଜେ ଗେରସ୍ତ ଭାର୍ଯ୍ୟାଙ୍କୁ
କେ ନାହିଁ କରିପାରିବ କେଳି କରିବାକୁ ।
ବାଳକ ମନରେ ମୁହିଁ ହସିଲି ନ ଜାଣି
ନପୁଣ ଚଳନ୍ତି ପିତା ମୋହ ହସ ଶୁଣି ।
ଚଳିଲେ ଚଳନ୍ତୁ ପଛେ ହସ୍ତ ରହୁନାହିଁ
ଏମନ୍ତ ବୋଲିଣ ପୁଣି କୁହାଟି ହସଇ ।
ପୁତ୍ର ଗର୍ଭେ ହସିବାର ଜାଣି ତପଚାରୀ
ପ୍ରିୟାକୁ ତେଜି ବସିଲେ ମୁନି ଲଜ୍ଜାକରି ।
ଗର୍ଭକୁ ଚାହିଁଣ ଶାପ ଦେଲେ କୋପ ବହି
ବୋଇଲେ ପାପିଷ୍ଠ ହେଲୁ କିରେ ଆଜ ବାଇ
ପତି ପତ୍ନୀର କ୍ରୀଡ଼ାକୁ ଥାନ୍ତା ତେବେଦୋଷ
କାହିଁକି ସଂସାରେ ଆଉ ଉପୁଜନ୍ତା ବଂଶ ।
ତଥାପି ମୁଁ ପଞ୍ଚଦଶ ପକ୍ଷଅନ୍ତେ ସିନା
ତେବେ ହେଲେହେଁ ରମଣ ନ କରିବି କି ନା
ତହିଁକି ନ କରିବି ତା କହୁଅଛି ମୁହିଁ
ଗର୍ଭେ ଝିଅ ଥିଲେ କନ୍ୟା ହରଣ ଲାଗଇ
ପୁତ୍ର ଯେବେ ଉଦରରେ ନିଶ୍ଚେ ଥିବ ରହି
ତେବେ ଚିହ୍ନି ରତିକଲେ କିଛି ଦୋଷନାହିଁ
ଅଷ୍ଟମାସୁ ତେଜିବ ଯେ ଚିହ୍ନି ନ ପାରିଲେ
ଚିହ୍ନିଛୁ ଗର୍ଭକୁ ଆସିଆମ୍ଭେ ତୋତେଭଲେ ।

ପୁଅ ତୁହି ହେଲୁ ବୋଲିଯୋଗରେ ଜାଣିଲୁ
ତେଣୁକରି ଆମ୍ଭେ ଏହି କର୍ମ କରୁଥିଲୁଁ ।
ତୁହି ଯେବେ ଜନ୍ମନୋହୁଁ ଚାଲିଲୁଣିମୋତେ
ହସିଲୁ ତୁନି ହୋଇ ପିତାମାତା କୃତ୍ୟେ ।
ଗର୍ଭେ ଆଠମାସୁ ତୋର ଏଡ଼େ ଅହଂଭାବ
ଅଷ୍ଟବକ୍ର ହୋଇ ଏଣୁ ହୁଅ ତୁ ପ୍ରସବ ।
ଏହିରୂପେ ମୁନି ଶାପଦ୍ୟନ୍ତେ କୋପବହି
ଅଷ୍ଟବକ୍ର ହେଲେ ପିତାଠାରୁ ଶାପ ପାଇ ।
ସେହି ଅଷ୍ଟବକ୍ର ଋଷି ନୁହନ୍ତିଟି ସାନ
ଅଷ୍ଟାଙ୍ଗ ଯୋଗରେ ବିଭା ହେଲେ ସାଧିଜ୍ଞାନ
ଏହିରୂପେ ଅଷ୍ଟବକ୍ର ମହିମା ବ୍ୟବସ୍ଥା
କୁମ୍ଭଋଷି ଜନ୍ମ ଏବେ କହିବା ଶୁଣିଥା ।
ଏକଦିନେ ପୁଣି ବ୍ରହ୍ମା ମନରେ ବିଚାରି
ତିନିପୁର ବୁଲିଗଲେ କମଣ୍ଡଳୁ ଧରି ।
ଇନ୍ଦ୍ର ବୃଷ୍ଟି ନୋହିଥିବ ଏମନ୍ତ ଯେ ଜଳ
ସେ ନୀର ଆଣିଲେ ମୋର ଆଚମନ ମୂଳ ।
ଏମନ୍ତ ଅଷ୍ଟ ବିଧାତା ବୁଲି ସବୁ ସ୍ଥାନ
ଯହିଁ ଚାହିଁଲେ ଦେଖିଲେ ଯମ ପୟମାନ ।
ସହଜେ ଇନ୍ଦ୍ର ବୃଷ୍ଟି ନ ପଡ଼ି ଜଳ ନାହିଁ
ବିଛୋଡ଼ା ଉଚ୍ଛିଷ୍ଟ ବୋଲି ସନ୍ଧ୍ୟା କରଇ
ସବୁ ଜଳ ଚିହ୍ନି ପୁଣି ଗଜ କ୍ଷୀର ସିନ୍ଧୁ
ତାହିଁ ପାଶେ ବସି ଧ୍ୟାନ କଲା ଜଗବନ୍ଧୁ ।
ନିର୍ଗୁଣ ନିରାକାରଙ୍କୁ ବସ୍ତୁ ଅନୁସରି
ବ୍ରହ୍ମା ମନ ଜାଣି ପ୍ରଭୁ ତହିଁ ବିଜେକରି ।
ପୁଛିଲେ କିହୋଧାତା ତୁ ଭ୍ରମୁ କିମ୍ପା ଏତେ
କେତେଲୋଡ଼ାହେବ ନୀର ମାଗିନିଅମୋତେ
ବିଧାତା ବୋଇଲେ ସ୍ୱାମୀ ନିସ୍ତରିଲି ଏବେ
ଭୃତ୍ୟ ନମାଗୁଣୁ ତୁହି ଯାଚିଦେଲୁ ଯେବେ
ମେଘ ଜଳ ନମିଶିବା ଜଳ କାହିଁ ଅଛି
ତହୁଁ ଲୋଡ଼ା ମୋତେ ତୁମ୍ଭେ ଦିଅଶିରୀବସ୍ତି
ତାହା ପାଇଲେ ବସିଣ ମୁହିଁ ସନ୍ଧ୍ୟାକରି
ଅନୁକ୍ଷଣେ କମଣ୍ଡଳେ ରଖିଥିବ ଭରି ।
ହରି ବୋଇଲେ କହିଲୁ ତୁତ ଅସମ୍ଭବ
ଇନ୍ଦ୍ର ବୃଷ୍ଟି ନୋହି ପାଣି ଅଛି କେଉଁଠାବ
ବ୍ରହ୍ମାଏ ବୋଇଲେ ତୁହି ଜାଣିବୁନା ତାହା
ମୋହର କଳ୍ପନା ଯାହା କହିବି କି ତାହା
ଶ୍ରୀହରି ବୋଇଲେ ତେବେ ନିଅ ସୁଧାତୁମ୍ଭେ
ସେ ଜଳ ମୋହରମେଘେ ନମିଶିବ କେବେ
ତ୍ରିକୂଟ ନାମରେ ଏକ ପୋଖରୀ ଅଛଇ
ସର୍ବଦା ତହିଁରୁ ଝର ଫୁଟି ବହୁଥାଇ ।

କ୍ଷୀରସିନ୍ଧୁରେ ସେ ଯାଇ ମିଶେ ଅନୁକ୍ଷଣ
ସେ ଜଣେ ସ୍ନାନ କରନ୍ତି ନିତ୍ୟ ତ୍ରିଲୋଚନ
ତହିଁରୁ ତୁ ଅମ୍ବୁ ଧରି ଚଳିଯା ମୋ ପୁରୁ
ଆଉ କମଣ୍ଡଳୁ ତୋର କେବେହେଁ ନସରୁ
ତୋର ଦେହ ଥିବାଯାଏ ଅକ୍ଷୟ ଏ ଥାଇ
ନାମ ତା ତ୍ରିବେଣୀ ହ୍ରଦ ଶୁଣ ଅଷ୍ଟବାହୁ
ସେହି ହ୍ରଦରେ ଇନ୍ଦ୍ରର ନ ପଡ଼ଇ ବୃଷ୍ଟି
ଶୁଣି ପିତାମହ ତହୁଁ ଚଳିଗଲେ ଉଠି ।
କମଣ୍ଡଳୁରେ ପୂରାଇ ଆଣି କିଛି ଜଳ
ମିଳିଲେ ଶୀଘ୍ରରେ ଆସି ଆପଣା ମନ୍ଦିର ।
ଆସନରେ ବସି ଚକ୍ଷୁ ପକାନ୍ତେ ବିରଞ୍ଚି
ଦେଖିଲେ କୁମ୍ଭରେ ଏକ ବାଳକ ଭାସୁଛି ।
ସେ ପୁତ୍ରକୁ ଦେଖି ବ୍ରହ୍ମାସନ୍ତୋଷ ହୋଇଲେ
କୁମ୍ଭରୁ ଜନ୍ମ ହୁଅନ୍ତେ କୁମ୍ଭ ନାମ ଦେଲେ ।
ସେ କୁମ୍ଭକୁ ପୁଣି ଏକ କନ୍ୟା କଲେ ବିଭା
କାମାକ୍ଷୀ ନାମେ ସୁନ୍ଦରୀ ଅଟେ ନବଯୁବା ।
ବ୍ରହ୍ମାର କର୍ଣ୍ଣଚକ୍ଷୁ ସେ ଜନ୍ମିଛି ଯୁକତେ
ପୂର୍ବେ ତାହାର କଥା ହେ କହିଥାଇଁ ତୋତେ
ପଦ୍ମିନୀ ଅଂଶକୁ ଘେନି ଅଯୋନିଜା ହେଲା
କୁମ୍ଭଋଷି ରମି ଏକ ପୁତ୍ର ପ୍ରସବିଲା ।
ପ୍ରତ୍ୟକ୍ଷରେ ସେହି ପୁତ୍ର ଅଟନ୍ତି ଅଚ୍ୟୁତ
ତେଣୁ ଅଗସ୍ତି ନାମକୁଦେଲେ ପିତାମାତ ।
ସେହି ଅଗସ୍ତି ସମୁଦ୍ର ଚଳୁ କରିଦେଲେ
ମହା କୁପିତ ହୋଇଣ ଗର୍ଭକୁ କ୍ଷେପିଲେ ।
ନାରଦ ଆଶ୍ଚର୍ଯ୍ୟାନ୍ୱିତ ହେଲେ ଶୁଣି ତାହା
ବ୍ରହ୍ମାଙ୍କୁ ବୋଇଲେ ଆଗକହ ମୋତେ ଏହା
କିମ୍ପାଇ ସେ ସମୁଦ୍ରକୁ ଚଳୁ କରିଦେଲେ
ଏଡ଼େ ଅଗାଧ ଜଳକୁ କ୍ଷଣକେ ପିଇଲେ ।
ଏହା ଶୁଣିଣ ବିଧାତା ହେଲେ ହସ ହସ
ବୋଇଲେ କହିବା ଶୁଣ ତେବେ ସେହୁରସ
ମକର ମାସରେ ପୁଣି ସୋମବାର ଦିନ
ଅମାବାସ୍ୟା ହୋଇବାରୁପଡ଼ିଲାକ ସ୍ନାନ ।
ମହତୀନାମରେ ଯୋଗ ମହାପୁଣ୍ୟ ବୋଲି
ବାହାରି ଋଷିଏ ଗଲେ ସମୁଦ୍ରକୁ ଚାଲି ।
ତୋକିଳ ଋଷି ପୁଙ୍ଗବ ଦଧୀଚି ଚ୍ୟବନ
ଆତ୍ରେୟ ଯେ ଅତ୍ରି ମୁନି ବଇଶମ୍ପାୟନ ।
ଦୁର୍ବାସା ଯେ ଭରଦ୍ୱାଜ ଲୋମଶ ଜୈମିନୀ
ନାରଦ ପୁଲହ ଆଉ ଗଉତମ ମୁନି ।
ସନତ ସେ ସନାତନ ସନକ ସୋନକ
ଭୃଗୁ ବଶିଷ୍ଠ ସରଯୁକ୍ରତୁ ସମ୍ବର୍ତ୍ତକ ।

ମରୀଚି କପିଳ କଣ୍ୱ ଆଦି ପଉଲସ୍ତି
ଏମାନେ ସମୁଦ୍ରେ ପଶି ସ୍ନାନ କରୁଛନ୍ତି ।
ଏମନ୍ତ ସମୟେ ଆସି ଅଗସ୍ତି ମିଳିଲେ
ତାହାଙ୍କୁ ଦେଖିଲାରୁ ଏ ଋଷିଏ ହସିଲେ ।
ପୁଙ୍ଗବ ଋଷି ବୋଇଲେ ଶୁଣ ହେ ମରୀଚି
କୁମ୍ଭରୁ ପରା ଏହାର ବାପ ଜନମିଛି ।
ବ୍ରହ୍ମାଙ୍କର କମଣ୍ଡଳୁ ମଧ୍ୟେ ଭାସୁଥିଲା
ବିଧାତା ଦେଖି ତାହାକୁ ପଦାକୁ କାଢ଼ିଲା
ନୋହିଲେ ସେହିଦିନ ସେ ବୁଡ଼ି ମରିଥାନ୍ତା
କୁମ୍ଭ ବୋଲିବା ନାମଟି ସଂସାରେ ନ ଥାନ୍ତା
ତାହାର ପୁଅ କି ବୋଲି ଆସେ ସମୁଦ୍ରକୁ
ଗୋଟିଏ ଲହରୀ ବାଜି ଭାସିଯିବ ବୁକୁ ।
ମରୀଚି ବୋଇଲେ ତାହାଶୁଣି ହୋଇହୋଇ
କି ବୋଲି ଆସୁଛି ସେ କଥା ନ ଚିତୋଇ ।
ବାପର ପରାୟ ତେବେ ଭାସିବ ଏ ଜଳେ
ଏତକ କହି ଋଷିଏ ହସିଲେ ସକଳେ ।
ହସନ୍ତେ ସମୁଦ୍ରଜଳେ ପଶି ଋଷିମାନେ
ଅଗସ୍ତି ଚାହିଁ ଜାଣିଲେ ତାହା ଯୋଗାସନେ
ବୋଇଲେଦେଖାଅ ଏଡ଼େଋଷି ମାନେହୋଇ
ଆମ୍ଭର ପରା ମୁନିଙ୍କି ହସୁଛନ୍ତି ଚାହିଁ ।
ବାପ ଯେ ମୋହର ପୁଣି ବ୍ରହ୍ମା କମଣ୍ଡଳେ
ବାଳକ ରୂପରେ ଜନ୍ମି ଭାସୁଥିଲେ ଜଳେ ।
ତାହାଦେଖିଣ ଏଯେବେମୋତେହାସ୍ୟକଲେ
ପାନ୍ତୁ ପରାଭବ ଶୋଷି ଦେବି ଜଳ ତୁଲେ
ଆମ୍ଭ କରାମତି ଜାଣି ନାହାନ୍ତି ସେ ପୁଣି
ବ୍ରହ୍ମାଣ୍ଡଯାକରେ କିଛି ନ ରହିବ ପାଣି ।
ସମୁଦ୍ରକୁ ଶୋଷି ଦେଲେ ସର୍ବେ ଶୁଖିଯିବେ
ନଦୀକୂଳ ପୋଖରୀ ବା କେହି ନ ରହିବେ
ଏତେକ ବୋଲି ଅଗସ୍ତି ସିନ୍ଧୁଯାକ ଆଣି
ଋଷି ସହ ଭରି କଲେ ଗଣ୍ଡୁଷେକ ପାଣି ।
ମହାକୋପ ବହି ତାହା ଗର୍ଭେକ୍ଷେପିଦେଲେ
ଏମନ୍ତ ସମୟେ ବ୍ରହ୍ମା ସନ୍ଧ୍ୟା କରୁଥିଲେ ।
ଦେଖିଲେକ କମଣ୍ଡଳେ କିଛି ନାହିଁ ପାଣି
ଚାହିଁ ପିତାମହ ଯୋଗେ ବସି ସେହିକ୍ଷଣି ।
ଅଗସ୍ତି ଶୋଷିଲେ ବୋଲି ଜାଣି ଧ୍ୟାନକରି
ଅଇଲେ ସେ ସେହିଲାଗେ ଗାୟତ୍ରୀ ସୁମରି ।
ଅଗସ୍ତି ପାଶରେ ଆସି ମିଳିଲେ ତତ୍କାଳେ
ଅଙ୍ଗୁଷ୍ଠିକି ଦେଇଛନ୍ତି ନାସା ଅଗ୍ରତଳେ ।
ଗାୟତ୍ରୀ ମନ୍ତ୍ର ଗୋଟିକ ପଢୁଛନ୍ତି ମାତ୍ର
ପାଣି ନ ପାଇ ନାସାରୁ ନ କାଢ଼ନ୍ତି ହାତ ।
ଆଚମନ ନ କଲେ ତ ହସ୍ତ ଶୁଦ୍ଧ ନୋହେ
ତେଣୁ ବ୍ରହ୍ମାଙ୍କ ଆଙ୍ଗୁଠି ଲାଗିଛି ସେଠାଏ ।
ମହୀକି ଚାହାନ୍ତି ଜଳ କାହିଁ ନ ଦେଖନ୍ତି
ସଂସାର ଗଲା ବୋଲି ସେ ଆକୁଳ ହୁଅନ୍ତି ।
କିପରି ଏ ବ୍ରହ୍ମାଣ୍ଡକୁ ରଖିବାକୁ ସୁଖେ
ପ୍ରଶଂସା କରନ୍ତି ଅଗସ୍ତିଙ୍କି ଚତୁର୍ମୁଖେ ।
ଧାତାଏ ବୋଇଲେ ବାବୁ ଧନ୍ୟରେଅଗସ୍ତି
ଧନ୍ୟ ତୋର ପିତା ମାତା ଧନ୍ୟତୋର ମୂର୍ତ୍ତି
କେତେ ବଡ଼ ଗର୍ଭ ତୋର ଅଟେବିଶ୍ୱଦେହୀ
ରଖିଲୁ ସମୁଦ୍ରଯାକ ପିଇ କହ କାହିଁ ।
ସଚରାଚର ଯେବଣ ଜଳ ଘୋଟିଥିଲା
ମହା ବିଷ୍ଣୁ ହରଙ୍କର ପ୍ରଳୟକୁ କଲା ।
ତାହା କିପରି ଗର୍ଭରେ ତୁହି ଅଛୁ ଥୋଇ
ଆମ୍ଭବୋଲେ ଦିଅ ଏବେ ପଦାକୁ ବୁହାଇ
ପିତାମହଙ୍କ ବଚନ ଶୁଣିଣ ଅଗସ୍ତି
ମନରୁ କ୍ରୋଧ ଛାଡ଼ିଣ ହେଲେ ଶାନ୍ତମୂର୍ତ୍ତି ।
ଉଠି ବ୍ରହ୍ମାଙ୍କର ପାଦେ କଲେ ନମସ୍କାର
କହିଲେ ଋଷିଏ ପରିହାସ କରିବାର ।
ପିତା ବୋଇଲେରେ ବାବୁ ନ ଧରତାମନେ
ଅଛନ୍ତି କହ କାହିଁ ସେ ଏବେ ଋଷିମାନେ ।
ଅଗସ୍ତି ବୋଇଲେ ଛନ୍ତି ମୋହରଗର୍ଭରେ
ସବୁଙ୍କୁ ଶୋଷି ଦେଇଛି ଜଳ ସଙ୍ଗତରେ ।
ବ୍ରହ୍ମାଏ ବୋଇଲେ କ୍ଳେଶପାଇଲେଣିକେତେ
ତୋତେ ନ ଚିହ୍ନିଲେ ଯେଣୁ ବୟସରଗର୍ବେ
ଆମ୍ଭର ବୋଲ ତୁ କରି କାଢ଼ ଏବେ ତାଙ୍କୁ
ଜଳତୁଲେ ମିଶି ସର୍ବେ ଆସନ୍ତୁ ପଦାକୁ ।
ତୋହର ରହିଲା ଏ କୀର୍ତ୍ତି ଚାରିଯୁଗେ
ବ୍ରହ୍ମାଣ୍ଡେକେ ଏହା କରିନାହିଁ ମଧ୍ୟ ସ୍ୱର୍ଗେ
ବ୍ରହ୍ମା ବିଷ୍ଣୁହର ଆଉ ଋଷିଛନ୍ତି ଯେତେ
କେହି ଏଡ଼େ କାର୍ଯ୍ୟକରି ନାହାନ୍ତି ଜଗତେ
ଏମନ୍ତ ବୋଲିଣ ବ୍ରହ୍ମା କରନ୍ତେ ପ୍ରଶଂସା
ଶୁଣି ଅଗସ୍ତିଙ୍କ ହୃଦୁ ଛାଡ଼ିଗଲା ହିଂସା ।
ବ୍ରହ୍ମାଙ୍କୁ ବୋଇଲେ ତେବେ କହ କେଉଁବାଟେ
ଛାଡ଼ିବି ଜଳକୁ ନେଇ ରଖିଅଛି ପେଟେ ।
ମୋତେ ତେବେ ଦଣ୍ଡେଆଉ ନ କହନ୍ତିକିଛି
ଜୀର୍ଣ୍ଣ କରି ଦିଅନ୍ତି ଯେ ମନ୍ତ୍ର ମୋର ଅଛି ।
ତାହା ଶୁଣିଣ ହସିଲେ ବ୍ରହ୍ମା ଯେ ଆପଣେ
ବୋଇଲେ ସେହିରୂପେକ ନୋହୁ ତୁହିଜଣେ
ଆମ୍ଭେ ଏବେ ବୋଲୁଅଛୁ କାଢ଼ସାତଦ୍ୱାରେ
ଚକ୍ଷୁ ନାସିକା ଶ୍ରବଣ ମୁଖର ଭିତରେ ।

ଅଗସ୍ତି ବୋଲେ କାଢ଼ିବିଯେବେ ଏତେଜଳ
ଅଶୁଦ୍ଧ କରିବେ ପରା ବ୍ରହ୍ମାଣ୍ଡେ ସକଳ ।
ବିଧାତା ବୋଇଲେଯେବେଡରିଲୁ ହୋତୁହି
ହୃଦୟକୁ ଟେକି ନିଅ ତ୍ରିବେଣୀରେ ଯାଇଁ
ଯେ ମଗରମୁହଁ ଅଷ୍ଟଦଳ ମଧ୍ୟେ ଅଛି ।
ସେଠାକୁ ଏ ସାତଦ୍ୱାର ଫିଟି ରହିଅଛି ।
ନିରଞ୍ଜନ ଦେବତା ଯେ ହୋଇ ଲିଙ୍ଗ ମୂର୍ତ୍ତି
ସେ ମଗର ମୁହଁ ତଳେ ଛନ୍ତି ଶିରପାତି ।
ତୁ ଯେବେ ନେଇପାରି ସେବାଟେଦେବୁଛାଡ଼ି
ସେ ପାଣି ଆସିବ ନିରଞ୍ଜନ ଶିରେ ପଡ଼ି ।
ମହାଶୁଦ୍ଧଜଳ ଯିବ ସାତଦ୍ୱାର ଯାକେ
ତେବେ ସେ ଅଶୁଦ୍ଧ କରି ନପାରିବେଲୋକେ
ଋଷି ବୋଇଲେ ମୁଁ ଯେବେ ଏଡ଼େକଷ୍ଟେନେବି
ସପତାଙ୍ଗରେ ପୁରାଇ ପୃଥ୍ୱୀ ବୁହାଇବି ।
ସାତ ସମୁଦ୍ର ହୋଇଣ ଜଳ ତେବେ ରହୁ
ଶୁଣିବିଧାତା ବୋଇଲେ ତାହାହେଉହେଉ
ଶୁଣି ନାରଦ ଅଗସ୍ତି ଋଷିଙ୍କ ପ୍ରତିଜ୍ଞା
ଅଗସ୍ତିଙ୍କି ପ୍ରଶଂସିଣ ଗଲେ ବେଦବ୍ରହ୍ମା ।
ଚୌରାଶୀ ସହସ୍ର ବାଆସ୍ତରୀ କୋଠି ନାଡ଼ି
ଦେଖ ତହିଁ ଜଳଯାକ ଯାଇ ଥିଲା ଜଡ଼ି ।
ଅଗସ୍ତି ଋଷିଙ୍କ ବାକ୍ୟମାତ୍ରେ ସେହି ପାଣି
ତ୍ରିକୂଟରେ ଯାଇଁ ଠୁଳ ହେଲା ସେହିକ୍ଷଣି ।
ନିରଞ୍ଜନ ଶିରେ ପଡ଼ି ବହି ସାତ୍‌ଦ୍ୱାରେ
ରହିଲା ସାତ ସମୁଦ୍ର ହୋଇ ବ୍ରହ୍ମାଣ୍ଡରେ ।
ହେଲା କ୍ଷୀର ଦଧି ଘୃତ ସୁରା ସୁଧା ମଧୁ
ଲବଣକୁ ମିଶାଇଲେ ହେଲା ସାତସିନ୍ଧୁ ।
ଏକ ସିନ୍ଧୁ ପାଣି ସାତ ସମୁଦ୍ର ହୋଇଲା
ସମୁଦ୍ର ପୂରନ୍ତେ ନଦୀ ପୋଖରୀ ପୁରିଲା ।
ବ୍ରହ୍ମାଙ୍କର କମଣ୍ଡଳେ ମିଳିଲା ସେ ପାଣି
ଶୁଣ ହେ ନାରଦ ଏଡ଼େ ଅଗସ୍ତି କରଣି ।
ଋଷିମାନେ ଯେତେ ସେହି ଗର୍ଭଥିଲେ ପଶି
ଅଇଲେ ଅସମ୍ଭାଳ ହୋଇ ସର୍ବେ ଭାସି ।
ବ୍ରହ୍ମାଏ ତାଙ୍କୁ ଦେଖି କୋଳକୁ ଆଣିଲେ
ଥୟହୁଅ ବୋଲି ତାଙ୍କୁ ହସ୍ତେ ଆଉଁସିଲେ ।
ବିଧାତାଙ୍କ କର ଲାଗି ସର୍ବେ ହେଲେ ସ୍ଥିର
ଗର୍ଭେ ପଶିବାରୁ ତାଙ୍କୁ ଛାଡ଼ିଲା ବିକାର ।
ବ୍ରହ୍ମାଙ୍କୁ ଦେଖିଣ ସର୍ବେ ନମସ୍କାର କଲେ
ବିଧାତା ତାହାଙ୍କୁ ଚାହିଁ ହସ ହସ ହେଲେ ।
ବ୍ରହ୍ମାଏ ବୋଇଲେ କହ ଏବେଋଷିମାନେ
ଋଷିଙ୍କି ଚାଳିବା ଫଳ ପାଇଲ କେସନେ ।
ସେ ଯେଉଁ ରୂପରେ ଆଜ ଦେଇଥିଲା ଗ୍ରାସି
ଜୀର୍ଣ୍ଣ ହୋଇଥାନ୍ତ ସିନା ନୋହିଥିଲେ ଋଷି
ଶୁଣି ଏହା ଋଷିମାନେ ବହୁ ଲଜ୍ଜା କଲେ
ମଥାମାନ ପୋତି ଯେଝା ପୁରେ ଚଳିଗଲେ
ବ୍ରହ୍ମା ଏ ସନ୍ଧ୍ୟା ସାରିଣ ଗଲେ ଯଶୋବନ୍ତି
ଶୁଣ ହେ ପରୀକ୍ଷ ରାଜା କହେ ଶୁକଯତି ।
ଏରୂପରେ ଯେ ଅଗସ୍ତି ଋଷିଙ୍କ ମହିମା
ଅଗସ୍ତିଙ୍କ ବଂଶ ଏବେ ଏଠାରୁ ଶୁଣିମା ।
ପୌଲସ୍ତିଙ୍କ ଜନ୍ମପରେ ପୌଲସ୍ତିଙ୍କ କଥା
ନାରଦ ବୋଇଲେ ମୋତେ କହ ଚଉମଥା
ଅଟନ୍ତି ପୌଲସ୍ତି ମହାମୁନି କାର ପୁଅ
ତାଙ୍କ ବଂଶକେ ହେଲେ ସେ କଥାମଧକହ
ନାରଦଠାରୁ ଏସନ ଶୁଣି ଚଉମଥା
ବୋଇଲେକ ଶୁଣ ତେବେପୌଲସ୍ତିକଥା
ଯେବେଣକାଳେ ଜନ୍ମିଲେ ବ୍ରହ୍ମା ପଦ୍ମମୂଳୁ
ଚଳନ୍ତେ ସେ ଆଦି ଭେଟି ବାହୁଡ଼ିଲେ ତଳୁ
ବସନ୍ତେ ପଦ୍ମରେ ପୁଣି ଆସି ହୋଇ ଏକା
କାହାକୁ ନଦେଖି ପାଶେ ହୋଇଲେତାଟକା
ପରମ ପୁରୁଷମାନେ ଚିନ୍ତିଣ ବସିଲେ
ସେହି ପରମରୁ ଜାତ ପୌଲସ୍ତି ହୋଇଲେ
ପୁତ୍ର କରି ଧାତା ତାଙ୍କୁ ପାଶେ ବସାଇଲେ
ତହିଁପରେ ସୃଷ୍ଟି ସରଜନା ପୁଣି କଲେ
ସେ ଯହୁଁ ଜନ୍ମିଲେ ତାହା କହି ଆସୁଥାଇ
ପୌଲସ୍ତିଙ୍କ ବଂଶ ଏବେ ଶୁଣ ମନଦେଇ ।
ହେମା ନାମେକନ୍ୟାକୁ ସେହୋଇଥିଲେବିଭା
ରମଣ କରନ୍ତେ ତାଙ୍କୁ ଜନ୍ମିଲେ ବିଶ୍ରବା ।
ବିଶ୍ରବାଙ୍କ ପୁତ୍ର ପୁଣି କୁବେର ହୋଇଲେ
କୁବେରଙ୍କଠାରୁ ନଳଗ୍ରୀବ ଉପୁଜିଲେ ।
ଶୁଣିଣ ନାରଦ ଋଷି ହୋଇଲେ ସନ୍ତୋଷ
ବୋଇଲେ କହନ୍ତୁ ଗାୟତ୍ରୀର ପୁତ୍ର ବଂଶ ।
ତିନିପୁତ୍ରେ ବଂଶ ହେଲେ ଶୁଣିଅଛି ପୂର୍ବେ
ଆଉ ପାଞ୍ଚପୁତ୍ର ବଂଶ କହ କେବେ ହେବେ
ବ୍ରହ୍ମା ବୋଇଲେ ପୁଲସ୍ତ୍ୟ କଥା ତେବେଶୁଣ
ସେ ଋଷିଙ୍କଠାରୁ ହେଲେ ତିନିପୁତ୍ର ଜାଣ ।
ପ୍ରଥମ ପୁତ୍ରର ନାମ କର୍ମିଷ୍ଠ ଅଟଇ
ଦ୍ୱିତୀୟ ପୁତ୍ରର ନାମ ଆଚାରୀ ବୋଲାଇ ।
ତୃତୀୟ ପୁତ୍ରର ନାମ ଶୁଚିମନ୍ତ ହେଲା
କର୍ମଶୁଚି ଆମ୍ଭର ସେ ଦିନ ପ୍ରବର୍ତ୍ତିଲା ।
ପୁଣ୍ୟବନ୍ତ ଲୋକଦ୍ୱାରେ ଥାଆନ୍ତି ସେ ଜାଣ
ଏବେ କ୍ରତୁ ଋଷିବଂଶ ନାରଦ ତୁ ଶୁଣ ।

ସେହି ମୁନିଙ୍କର ପତ୍ନୀ କ୍ରିୟାନାମ ଦେବୀ
ପତିବ୍ରତା ହୋଇ ନିତ୍ୟେ ଥାଇ ଭର୍ତ୍ତାସେବି
ଆପଣାର ସ୍ୱାମୀକି ସେ ମଣେ ନାରାୟଣ
ଚରଣାମୃତ ସେ ଧୋଇ ପିଏ ପ୍ରତିଦିନ ।
ପତି ବୋଲି ପାଳିଥାଇ ଗୁରୁବାକ୍ୟ ପ୍ରାୟେ
ଶରୀରକୁ ମଣିଥାଇ ଦାରୁବ୍ରହ୍ମ ମୟେ ।
ଘେନଇ ସେ ପ୍ରାତଃକାଳୁ ଉଠି ପାଦଧୂଳି
ଭୁଞ୍ଜଇ ନିର୍ମାଲ୍ୟ ପ୍ରାୟେ ଉଚ୍ଛିଷ୍ଟ ଉଗୁଳି ।
ଗୃହସ୍ଥର ମୁଖକୁ ଶ୍ରୀମୁଖ ବୋଲି ମଣେ
ଦର୍ଶନ କରିଣ ଅନ୍ନ ଭୁଞ୍ଜେ ପ୍ରତିଦିନେ ।
ନ ଦେଖଇ ଯେଉଁଦିନ ଅବା ସେହି ପତି
ସେହିଦିନ ଆଞ୍ଜାପାଣି ନ ଭୁଞ୍ଜଇ ସତୀ ।
ପତି ପାଦଦ୍ୱୟ ସେବାକରେ ଯେଉଁଦିନ
ମନେ ପାଞ୍ଚେ ଆଜ ମୁହିଁ କଲି ଗଙ୍ଗାସ୍ନାନ
ଓଷା ବାରବ୍ରତ ଯାତ୍ରା ଏହି ଏକା ମୋର
ଏହିକଥା ନ ମାନନ୍ତି କୁତ୍ସିତ ସ୍ତ୍ରୀ ଛାର ।
ସ୍ୱାମୀକି ନ ସେବି ଯେହୁ ଦେବସେବାକରେ
ସେହି ସ୍ତିରୀକିଦୋଚାରୀ ବୋଲି ଏସଂସାରେ
ଯାବତ ଯୁବତୀଙ୍କର ଦେବତା ଯେ ପତି ।
ପତି ସେବା କରୁଥିଲେ ଦେବ ବର ଦ୍ୟନ୍ତି
ଭରତାକୁ ଯେଉଁ ସ୍ତିରୀ ଭର୍ତ୍ସନା କରଇ
ଢମାଳୁଣୀ ଓଷାକରେ ଉପବାସେ ରହି ।
ଏମନ୍ତ ଯୁବତୀକି ଯେ ବୋଲି ପିଶାଚୁଣୀ
ମଲେ ନରକ ଗାମିନୀ ହୁଏ ସେ ତରୁଣୀ ।
ଏଣୁ ପତି ସେବା ମୋର ବିଷ୍ଣୁ ଭକ୍ତିଅଟେ
ପରିଚାରୀ ହୋଇ ସେବିଥାଇ ପାଦପୃଷ୍ଟେ ।
ଏମନ୍ତ ବୋଲିଣ ସତୀ ଭଜେ ଅନୁଦିନେ
ସ୍ୱାମୀଙ୍କି ଯେ ମଣିଥାଇ ଗୋବିନ୍ଦ ସମାନେ
ଶୁଣ ହେ ନାରଦ ସେହି ସ୍ତିରୀର ଯେଭାଗ୍ୟ
କାଳେ ତାକୁ ସୁପ୍ରସନ୍ନ ହୋଇଲେ ଶ୍ରୀରଙ୍ଗ
ସେ ମହାସତୀର ପତିବ୍ରତାପଣ ଦେଖି
ଆପଣେ ଆସି ବିଜୟେ କଲେ କଞ୍ଜ ଆଖି ।
ଗୋବିନ୍ଦ ବୋଇଲେ ଆଗେବର ବେଗେମାଗ
ଯାହା ପାଇବୁ ମାଗ ତୁ ଦେବି ଏହି ଲାଗ ।
ଭକତି ତୋହର ଦେଖି ଆସିଅଛି ମୁହିଁ
କଟାକ୍ଷେ କରୁଣା କଲି ମାଗିନିଅ ତୁହି ।
ଏମନ୍ତ ଆଜ୍ଞା ବିଷ୍ଣୁର ଶୁଣି ଋଷିବାମା
କର ପ୍ରସାରି ଜଣାନ୍ତି ଶ୍ରୀଚରଣ ସୀମା
ଆହେ ପ୍ରଭୁ ଅନ୍ତର୍ଯ୍ୟାମୀ ନାଥ କଞ୍ଜପାଣି
ମୁଁ କିସ ମାଗିବି ତୁମ୍ଭେ ମୋର ମନଜାଣି ।

ଆଣି ପୁଣି କହୁଅଛ ମୋତେ ଏହିପରି
ମୁହିଁତ ଅବଳା ଆହେ ଶଙ୍ଖଚକ୍ରଧାରୀ ।
ସ୍ତିରୀମାନଙ୍କର ଯେବେ ନଥିବଟି ପୁତ
ଶରୀର ଅନ୍ତେ ନ ପଡ଼େ ତାଙ୍କ ନାମଗୋତ୍ର
ଜୀବନ୍ତେ ଅପୁତ୍ରୀ ମଲେ ଅମୋକ୍ଷ ହୁଅଇ
ସଭାରେ ଗଣନା ତାକୁ ନ କରନ୍ତି କେହି ।
ଯାତ୍ରା ଅନୁକୂଳେ ତାର ମୁଖ ନ ଚାହାନ୍ତି
ସେ ଯହିଁ ବସେ ଭୂମିରେ ଅଶୁଦ୍ଧ ବୋଲନ୍ତି
ପଡ଼ଇ ତାହାର ପାଦରଜ ଯାହାଘରେ
ବିଷ୍ଣୁଙ୍କୁ ସୁମରିଲେ ସେ ଦୋଷ ଯାଇହରେ
ଅପୁତ୍ରିକ ସ୍ତିରୀଙ୍କର ପଣନ୍ତ ବାଜିଲେ
ସେ ଦୋଷ ହରଇ ପୁଣି ସ୍ନାନ ଯାଇକଲେ
ଏ ସକାଶୁ ପୁତ୍ରଦାନ ଦେବ ପ୍ରଭୁ ମୋତେ
ଏହା ମୁହିଁ ବ୍ରହ୍ମା ମୁଖୁଁ ଶୁଣିଛିବେଦାନ୍ତେ
ଏମନ୍ତ ବୋଲି ଜଣାନ୍ତେ ପ୍ରଭୁ ପଦ୍ମପାଦେ
ଶୁଣି ସେ ଦୟାସାଗର ଦୟାବଳେ ହୃଦେ
ବୋଇଲେଗୋ ସତୀଯାହା ମାଗିଲୁଗୋଆଜ
ଷାଠିଏ ସହସ୍ର ହେଉ ତୋହର ତନୁଜ ।
ପୁତ୍ରର ଯେବେ ତୋହର ଏଡ଼େକ୍ଷ ମୁହାଁସ
ଦୁଇ ଏକ ପୁତ୍ର ଦେଲେ ହୁଅନ୍ତା ବା କିସ ।
ଶୁଣିଣ ମହା ଉଷତ ହେଲେ ଋଷିଆଣୀ
ପଛରେ ଆଶ୍ଚର୍ଯ୍ୟ ପାଇ ଜଣାଇଲେ ପୁଣି ।
ହେ କୃପାଳୁ ନାରାୟଣ ସ୍ୱାମୀ ପଦ୍ମ ଆଖି
ଏତେ ପୁତ୍ର ଆଜ୍ଞାମୋତେ ହୋଇଲା କାହିଁକି
ସୁପୁତ୍ର ସିନା ଭୋ ପ୍ରଭୁ ଦିଅନ୍ତୁ ଗୋଟିଏ
ଅପାତ୍ରକ ପୁତ୍ର ଜନ୍ମିକି ହେବ କୋଟିଏ ।
ଏଥକୁ ଦେଉଛି ପ୍ରଭୁ ଶୁଣ ଉପଲକ୍ଷ୍ୟ
ଇତିହାସ ପୁରାଣେ ମୁଁ ଶୁଣିଛି ପ୍ରତ୍ୟକ୍ଷ
ଦେଖ ଆକାଶରେ ଏକା ଚନ୍ଦ୍ର ଉଇଁଛନ୍ତି
ପଦ୍ମେ ତରା ଫୁଟି ତାକୁ ସରି କି ହୁଅନ୍ତି ।
ଏକାକୀ ଯେବେ ଗୋବିନ୍ଦ ଜନ୍ମହେବେମଞ୍ଚେ
ସିନ୍ଧୁଏତ ଭୟ ଥିଲେ ନାଶନ୍ତି ଶ୍ରୀବତ୍ସେ
ଏକାକୀ ବାସବ ଯେବେ ବର୍ଷୁଥିବେ ଜଳ
କି ହେବ ପୃଥ୍ୱୀକି ବାନ୍ଧି କୋଟି ନଇନାଳ
ଏକ ଆଦିତ୍ୟ ଆକାଶେ ଥିବଯେବେ ଉଇଁ
କି ହେବ ଲକ୍ଷେ ପ୍ରଦୀପ ଦିବସେ ଲଗାଇ ।
ଏକା ଯେବେ କି ପବନ ବହୁଥିବ ଶୂନ୍ୟେ
କି ହେବ ଆଲଟ ବିଞ୍ଚି କୋଟିଏ ଗଗନେ ।
ଦୀପରେ ଜଳିବ ଏକା ଅଗ୍ନି ଯେବେ ରାତ୍ରେ
କି ହେବ ତା ପାଶେଥୋଇ ଝିଲିମିଲି ଶତେ ।

ଏକା ଯେବେ ଶ୍ରୀବିଷ୍ଣୁଙ୍କୁ ଭାଳୁଥିବ ଧାୟି
କିହେବ କୋଟିଏ ଶତ୍ରୁ ଉପଗତ ହୋଇ
ଏଣୁ ଦିଅନ୍ତୁ ସୁପୁତ୍ର ଏକ ସିନା ହରି
କି ହେବ ଅଯୋଗ୍ୟ ଲକ୍ଷ ପୁତ୍ରଜାତ କରି
ବଡ଼ ଭାରା ଲାଗିଲା ଏ କଥା ଆସି ମୋତେ
ଷାଠିଏ ସହସ୍ର ପୁତ୍ର ଜନ୍ମିବେ କେମନ୍ତେ
ଏମନ୍ତ ବୋଲି ସେ ସତୀ ଶ୍ରୀମୁଖକୁ ଚାହିଁ
ବେଦନାକୁ ଭୟ କରି ଛାମୁରେ ଜଣାଇ ।
ଶ୍ରୀଛାମୁରେ ଜଣାନ୍ତେ ତା ଶୁଣି ମହାପ୍ରଭୁ
ଅତି ଦୟାଯୁକ୍ତ ବାକ୍ୟ ପ୍ରସରିଲା ଗର୍ଭୁ ।
ଗୋବିନ୍ଦ ବୋଇଲେ ଆଜ୍ଞା ଗଲାଣି ତ ଫାଟି
ତାହାକୁ କେ ଆନ କରି ପାରିବ ଲେଉଟି ।
ମୂର୍ଖ ଲୋକର ବଚନ ସିନା ଆନ ହୁଏ ।
ଭେଳିକି ବାଦ୍ୟ ଗିଳାଇ କର୍ମଠ ପରାୟେ ।
ଅନ୍ନଗ୍ରାସର ପ୍ରାୟେଟି ସନ୍ଥଜନ ବାଣୀ
ନିଶ୍ଚିନ୍ତେ ରହଇ ଗର୍ଭେ ପଡ଼ିଲା ସେକ୍ଷଣି ।
ସେହି ଅନ୍ନ ପ୍ରାୟେ ଜାଣ ସୁଜନଙ୍କ ଭାଷା
କେତେବେଳେ ଆନ ତାର ନୁହଇସମସ୍ୟା
ତହିଁରୁ ଯେ,ଶତେଗୁଣ ଅଟେ ଆମ୍ଭ ଆଜ୍ଞା
କହିବା ଶୁଣ ତେବେ ତୋ ପୁତ୍ରଙ୍କ ପ୍ରତିଜ୍ଞା ।
ପ୍ରସବ କରିବାକୁ ତୁ ଯେବେ ଏଡ଼େ ଡରୁ
ଗର୍ଭେ ମାତ୍ର ଧର ସେହି ଜନ୍ମରୁ ଲୋମରୁ ।
ଏ ତୋହର ଶରୀରରେ ଅଛି ଯେତେଲୋମ
ସେ ଲୋମକୂପ ମୂଳରୁ ହୁଅନ୍ତ ଜନମ ।
ବାଛ ଜନ୍ମି ବୋଲାନ୍ତି ସେ ନାମ ବଲଖିଲ୍ୟା
ଲଭିବେକ ବସ୍ତ ଜଳୁ ତରି ଜ୍ଞାନକଳା ।
ସତୀ ବୋଇଲେ କାହାକୁ ବୋଲି ବସ୍ତଜଳ
ସେ ଜଳେକେମନ୍ତ ପଡ଼ି ତରିବେ ସେ ବାଳ
ଏ ଦୁଇକଥା ମୋ ଆଗେ କହ ନାରାୟଣ
ପ୍ରତ୍ୟକ୍ଷେ ତୁମ୍ଭଙ୍କୁ ଦେଖି ପଚାରୁଛି ଜାଣ ।
ଶ୍ରୀହରିବୋଇଲେ ଶୁଣ କହିବାଗୋ ତେବେ
ଏ ନିଗୂଢ଼ କଥା ବୁଝି ପୁଛିଲୁ ତୁ ଯେବେ ।
ସାକ୍ଷାତରେ ଶ୍ରୀଅକ୍ଷର ଗୋଟି କମଳିନୀ
ସେ କମଳକୁ ବକ୍ଷରେ ବହିଛି ମୁଁ ଆଣି ।
ବହିଲାରୁ ସଂସାର ମୁଁ ବହେ ମୁଣ୍ଡଶୃଙ୍ଗେ
ସେଶୃଙ୍ଗ ପ୍ରସବେ ବସ୍ତ ହୋଇ ସବୁଅଙ୍ଗେ
ବସ୍ତ ଶବଦଟି ସିନା ସୁତକୁ ଯେ କହି
ମୋର ପ୍ରସବିବା ପୁତ୍ର ନ ଜାଣନ୍ତି କେହି ।
ଏଣୁଟି ବନ୍ଧ୍ୟାପୁରୁଷ ଜାଣ ମୁହିଁ ଅଟେ
ବସିଛି ସ୍ତିରୀଙ୍କ ହୃଦେ ବହି ସବୁ ଘଟେ ।

ତେଣୁକରି ସେ ଶ୍ରୀବସ୍ତ ନାମ ଗୋଟି ମୋର
ବହୁଛି ଯେ ମୋର ପଦ୍ମପାଦୁ ଗଙ୍ଗାନୀର
ସେହି ନୀର ନିବୀଟିକି ବସ୍ତ ଜଳ ବୋଲି
ଏ ମହାସନ୍ଧି କଥା ମୁଁ ତୋ ଆଗେ କହିଲି
ବସ୍ତଜଳ ଅର୍ଥକୁ ଯେ ନ ଜାଣନ୍ତି କେହି
ତୁହି ବୁଝି ପଚାରନ୍ତେ ତୋତେଦେଲି କହି
ସେହି ଗଙ୍ଗାଜଳଟିକୁ ବୋଲି ବସ୍ତଜଳ
କଶ୍ୟପ ଯଜ୍ଞରେ କାଷ୍ଠ ବହିବେ ତୋବାଳ
ବସ୍ତାପାଦ ଜଳ ପଡ଼ି ଭାସନ୍ତେ ଅଗାଧେ
ତେତେବେଳେତାହାଙ୍କୁଟି ରଖିବେ ଗୋବିନ୍ଦେ
କହିବେଟି ବ୍ରହ୍ମଜ୍ଞାନ ରହିବେ ସେ ଚିନ୍ତି
ସେହିଠାରୁ ବୋଲାଇବେ ବାଲଖିଲ୍ୟା ଯତି ।
ଏ ଆମ୍ଭ ଆଜ୍ଞା ଗର୍ଭରେ ତାଙ୍କୁ ଜଣାହେବ
ଲୋମ ମୂଳରୁ ଜନ୍ମିବେ ବିଚାରି ସେ ସର୍ବ ।
ଏତେକ କହି ଶ୍ରୀହରି ହେଲେ ଅନ୍ତର୍ଦ୍ଧାନ
ଶୁଣିଣ ଆନନ୍ଦ ହେଲା ଋଷିଆଣୀ ମନ ।
ଆପଣାର ପତି ସେବା ନ ଛାଡ଼ନ୍ତି ବାରେ
ସେହି ମହାସତୀ ଗର୍ଭ ହେଲେ ସମୟରେ ।
ହରିଙ୍କର କଥା କେବେ ଅନ୍ୟଥା ନୋହିଲା
ଷାଠିଏ ସହସ୍ରରୂପ ଗର୍ଭରେ ଧରିଲା ।
ବଢ଼ିଲେକ କଳେବରମାନ ଋତୁ ଧରି
ବସିଲେ ଗର୍ଭେ ବାଳକମାନେ ସଭାକରି ।
ଯେଉଁପରି ବସି ପୋଏ କଲେକ ବିଚାର
ଶୁଣ ହେ ବାବୁ ନାରଦ କହେ ବେଦବର
କେହି ବୋଲଇ କେମନ୍ତେ ଜନ୍ମହେବା କହ
କହୁ କହୁ ଜନ୍ମ ହେଉଅଛି ସବୁ ଦେହ ।
ନବମାସ ପୂରିଯାଇ ଦଶମ ହେଲାଟି
ସମସ୍ତେ ଜନ୍ମିବା ଚାଲଯାଇ ଗୋଟିଗୋଟି
ଏମନ୍ତ ବୋଲି ହୁଅନ୍ତେ ଗର୍ଭେ କୁହାକୁହି
ଶୁଣି ସେ ସଭାରୁ ବାକ୍ୟ ଦେଲା ଜଣେତହିଁ
ବୋଇଲା ଶୁଣିମା ହେଉ ଗର୍ଭ ମହାଜନେ
ତହିଁରେ ତ ବଡ଼ ସାନହେବା ଆମ୍ଭେମାନେ
ଏକାଲଗ୍ନେ ଆସି ଆମ୍ଭେ ହେଲେ ଗର୍ଭଗତ
ତେଣୁ ସମାନ ଷାଠିଏ ସହସ୍ର ଯେ ଭ୍ରାତ
ଏମନ୍ତ ବୋଲନ୍ତେ ସେହୁ କହେ ଆଉଜଣେ
ବୋଇଲା ଏ ଭାଷା ତୁମ୍ଭେ ନଗଲା କହଣେ
ଗର୍ଭେ ଥିବାଯାକେ ସିନା ସମାନ ଅଟଇ
ଜନମ ନୋହିଲେ ଆମ୍ଭେ ବଡ଼ସାନହୋଇ
ସମସ୍ତଙ୍କ ଜନ୍ମ ଆଗ ପଛେ ହେଉଅଛି
ଦଇବି ସର୍ଜନାମାନ କେ ଆନ କରୁଛି ।

ଏମନ୍ତ କହିଣ ଗର୍ଭେ ହୁଅନ୍ତେ ସେ ତୁନି
ଆଉ ଜଣେ କହିଲାକ ବସ ଏହା ଘେନି ।
ପୁଣି ବୋଇଲେ ହେ ଭ୍ରାତତୁମ୍ଭେମାନେଶୁଣ
ଏକ କଥା ଦୃଶ୍ୟ ମୋତେ ହୋଇଲା ଏକ୍ଷଣ
ଷାଠିଏ ସହସ୍ରଯାକ ସର୍ବେ ଆମ୍ଭେ ସାଧୁ
ଗର୍ଭକୁ ଯେ ଆସିଥାଉଁ ଗୋବିନ୍ଦ ପ୍ରସାଦୁଁ ।
ଜନନୀଙ୍କ ଆଗେ ବିଷ୍ଣୁ କହିଛନ୍ତି ଆପେ
ସମସ୍ତେ ଯାଇଣ ଜନ୍ମହେବ ଲୋମକୂପେ ।
ଜନନୀ ଦେହରେ ଆସି ସର୍ବେ ଯିବା ବୁଲି
ଲୋମମୂଳ ମାନଙ୍କରେ ବାହାରିବା ପେଲି ।
ଏକାବେଳକରେ ଯାଇ ସର୍ବେ ପ୍ରସବିବା
ତେବେ ସାନବଡ଼ କେହି ସଂସାରେନୋହିବା
ମାତା ଗର୍ଭ ପଥେ ଅବା ଜନ୍ମ ହୁଅନ୍ତେଇ
ସେ ଦ୍ୱାର ସଂକୀର୍ଣ୍ଣ ଏକାବେଳନୋହି ଯାଇ
ଦିଶିଲା ଏ କଥାଗୋଟି ମୋତେ ଯୋଗବଳୁ
ତୁମ୍ଭ ଅବଧାନକୁ ଏ ଚଳୁ ବା ନ ଚଳୁ ।
ଏହିରୂପେ ତହୁଁ ଜଣେ କରନ୍ତେ ସନ୍ଦେଶ
ଶୁଣିଣ ଗର୍ଭ ବାଳକେ ହେଲେ ହଂସ ହସ ।
ବୋଇଲେ ଏହି ପ୍ରସଙ୍ଗ ପାଇଲା ମନକୁ ।
ଆସ ଏବେ ଗର୍ଭେ ଭ୍ରମି ଯିବା ଶରୀରକୁ ।
ଏତେ କହି ଦେହଯାକ ଗଲେ ସବୁ ବୁଲି
ଲୋମମୂଳମାନଙ୍କରୁ ବାହାରିଲେ ପେଲି ।
ଏକ ମୁହୂର୍ତ୍ତକେ ଆସି ଉପୁଜିଲେ ତଳେ
ଯେହ୍ନେଖସିପଡ଼େ ଶୂନ୍ୟମାର୍ଗେ ଟୋପିଜଳେ
ସେହିମତେ ବାଳକ ଯେ ପ୍ରକାଶିଲେ ଆସି
ଶୁଣ ବାବୁରେ ନାରଦ କହେ ପିତା ବସି ।
ଏ ରୂପରେ ବାଳଖିଲ୍ୟାଯତି ହେଲେ ଜନ୍ମ
କହିବା ବଶିଷ୍ଠ ଋଷି ବଂଶ ଏବେ ଶୁଣ ।
ତାହାଙ୍କ ଭାରିଯା ନାମ ଅଟେ ଅରୁନ୍ଧତୀ
ସେ ମୁନି ପ୍ରିୟାଗର୍ଭରୁ ଜନ୍ମିଲେ ଶକତି
ସେ ଶକତି ଋଷି ପୁଣି କେଳୁଣୀ ରମିଲେ
ପରାଶରେ ଋଷି ତାଙ୍କଠାରୁ ଜନମିଲେ ।
ସେହି ପରାଶର ମୁନି ବ୍ରହ୍ମର୍ଷି ସାକ୍ଷାତେ
ତାଙ୍କ ପତ୍ନୀ ଯେ ହୋଇଲା କହୁଅଛି ତୋତେ
ଦାସରାଜା ବୋଲି ଏକ କଇବର୍ତ୍ତ ଥିଲା
ସତ୍ୟବତୀ ନାମେ କନ୍ୟା ତାର ଉପୁଜିଲା ।
ପରାଶର ରମିଲେ ସେ କନ୍ୟା ପ୍ରିୟଭାବେ
ତହୁଁ ବେଦବ୍ୟାସଋଷି ଜନ୍ମିଲେ ତାଗର୍ଭେ
ସେହି ବ୍ୟାସ ପୁଣି ବିଭାହେଲେ ପ୍ରିୟାବତୀ
ଜନ୍ମିଲେ ସେ ପ୍ରିୟାବତୀ ଗର୍ଭୁ ଶୁକଯତି ।

ଭୃଗୁଋଷି ବଂଶ ଏବେ କହିବାକ ଶୁଣ
ବିବାହ ହୋଇଲେ ସେହି ଜୟଦିତି ଜାଣ
ଜୟଦିତିଙ୍କ କଥା ତ ବୁଝିଅଛୁ ପୂର୍ବେ
କହିବା ତାଙ୍କ ପୁତ୍ର ଯେ ହେଲା ଶୁଣ ଏବେ
ପ୍ରଥମେ ଜନମ ହେଲେ ଯମଦଗ୍ନି ଜାଣ
ଯମଦଗ୍ନି ପୁତ୍ରନାମ ହେଲେ ପର୍ଶୁରାମ ।
ପର୍ଶୁରାମ ଏକବିଂଶ ପୃଥ୍ୱୀ ଭ୍ରମିଗଲେ
କ୍ଷତ୍ରିକରି ଏକଗୋଟି କାହିଁ ନ ରଖିଲେ ।
ଲେଉଟି ଭୃଗୁଙ୍କଠାରୁ ପୁତ୍ରେ ଜାତକଲେ
ବିଧାତା ବୋଲିଣ ସେହି ପୁତ୍ରନାମଦେଲେ
ମୃକୁଣ୍ଡ ନାମେ ବିଧାତା ପୁତ୍ର ହେଲାପୁଣି
ମୃକୁଣ୍ଡଠାରୁ ଜନ୍ମିଲେ ମାରକଣ୍ଡ ମୁନି ।
ସେହି ମାରକଣ୍ଡ ଋଷି ନୁହନ୍ତିଟି ସାନ
ସାଧିଲେ ସେ ସାତକଳ୍ପ ଯାଏ ବ୍ରହ୍ମଜ୍ଞାନ ।
କଳ୍ପକେ ହୁଅଇ ବାଆସ୍ତରୀ ଗଣ୍ଡାଯୁଗ
ଲେଖିଛନ୍ତି ପୁରାଣରେ ଏହା ମୁନିବର୍ଗ ।
ଜନ୍ମିଲେ ଏହି ପ୍ରମାଣେ କେତେ ଋଷିକୁଳ
ତାହା କେ ପୁରାଣେ ଲେଖିପାରେ କରିଠୁଳ
ଠିକ ଠିକ କରିଣ ଯେ କହିଲୁ ଥୋକାଏ
ଋଷିଙ୍କ ଜନମ କେବେ ଅନ୍ତ କହି ନୁହେଁ ।
ଶୁଣ ହେ ପରୀକ୍ଷରାଜା କହେ ଶୁକଦେବ
ପିତାମହ ସମ୍ବାଦ ଏ ଅଟଇ ଅପୂର୍ବ ।
କହୁଛି ସେ ଅପୂର୍ବରୁ ଶୁଣ ପଦେ ପଦେ
ଶୁଣିଣ ପରୀକ୍ଷ ରାଜା ନମି ଶୁକପାଦେ ।
ବୋଇଲେ ତୁମ୍ଭପରାୟେ ନାହିଁକେ ତ୍ରିଲୋକେ
କହିଲା ସମସ୍ତ ଋଷି ଜନ୍ମି ଏକେ ଏକେ ।
ଅନ୍ୟଲୋକ କେତେବେଳେ ନା ପାରେୟାକହି
ଆପଣା କୃପା କରିଲେ ପୁଣି ଶୁଣିବଇଁ ।
ଚନ୍ଦ୍ର ହରିଲେକ ପରା ଗୁରୁଙ୍କ ପତ୍ନୀଙ୍କି
ତାହା ନ କହିଣ ମୋତେ ପାଶୋରିପକାକି
ଶୁଣି ହସିଣ ବୋଇଲେ କିମ୍ପା ପାଶୋରନ୍ତୁ
ଶୀଘ୍ରେ କହିଲେ ଜଟିଳ ଆମ୍ଭେ ସିନାହୋନ୍ତୁ
ତାହା କହିବା ଯେ ମନ ଦେଇ ଶୁଣ ରାଜା
ନାରଦ ଉଠିଣ ବ୍ରହ୍ମାପାଦ କଲେ ପୂଜା ।
ପିତାଙ୍କୁ ବୋଇଲେ ମୋତେ ଲାଗିଲାସନ୍ଦେହ
ଚନ୍ଦ୍ର କିପରି ହରିଲେ ଗୁରୁପତ୍ନୀ କହ ।
ବୁଝିଲେ ତାହାଙ୍କୁ କ୍ଷଣେ ଅବସର ନାହିଁ
ତାରା ତୁଳେ ପ୍ରୀତି କଲେ କେଉଁଦିନ ଯାଇଁ
ଆଗେ ଶୁଣିବୁ ବୋଲି ଯେ କହୁଥିଲ ପୂର୍ବେ
ତେଣୁକରି ଆପଣଙ୍କୁ ପଚାରୁଛି ଏବେ ।

ବିଧାତା ବୋଇଲେ ତେବେ କହିବା ତାଶୁଣ
ବଡ଼ ଗହନ ଗ୍ରନ୍ଥ ଏ ନୃସିଂହ ପୁରାଣ ।
କହିବା ଆଗରେବୋଲି ଯେତେ ଅଛୁ ଛାଡ଼ି
ଏହିଠାରୁ ଶୁଣ ଏବେ ସେ କଥା ପଚାରି ।
ଅତ୍ରିମୁନି ବୀର୍ଯ୍ୟରୁ ଯେ ଚନ୍ଦ୍ର ଉପୁଜିଲେ
ଦ୍ୱିତୀୟାଠାରୁ ଗଗନେ ଯାଇ ଉଦେହେଲେ
ଅଇଲେ ପୌର୍ଣ୍ଣମୀ ଯାଏ ସେହି ବଢ଼ି ବଢ଼ି
ଚତୁର୍ଦ୍ଦଶୀ ପରିଯନ୍ତେ ଗଲେ ପୁଣି ଛିଡ଼ି ।
ଅକ୍ଷୟ ହୋଇଣ ଚନ୍ଦ୍ର ରହିଲେକ ଶେଷ
ମନେ ପାଞ୍ଚିଲେ ରହିବି ମୁହିଁ କେଉଁ ଦେଶ
ଆକାଶେରହିଲେ ମୋତେସମସ୍ତେ ଦେଖିବେ
କିରୂପରେ ଅମାବାସ୍ୟା ତିଥି ଜଣାଯିବେ ।
ଏମନ୍ତ ରୂପେ ବିଚାର କରି ଚନ୍ଦ୍ରମନେ
ବୋଇଲେ ରହିବା ଏକା ଗୁରୁଙ୍କ ଭବନେ
ବୃହସ୍ପତିଙ୍କୁ କହିଣ ପାଠ ପଢୁଥିବି
ଅମାବାସ୍ୟା ପ୍ରତିପଦା ଅନ୍ତେ ଉଦେ ହେବି
ଏତେ ମନେ ପାଞ୍ଚି ଚନ୍ଦ୍ର ଚତୁର୍ଦ୍ଦଶୀ ଅନ୍ତେ
ପ୍ରବେଶ ହୋଇଲେ ଯାଇ ଗୁରୁଙ୍କ ଅଗ୍ରତେ
ବୃହସ୍ପତିଙ୍କି ଦେଖିଣ ବିନୟ ହୋଇଲେ
ମୋତେ ରଖଅମାବାସ୍ୟାପର୍ଯ୍ୟନ୍ତ ବୋଇଲେ
ପିତାଙ୍କର ବୋଲ ପାଳି ପକ୍ଷେକ ବଢ଼ିଲି
ଆରପକ୍ଷ ଛିଡ଼ି ଛିଡ଼ି ଏଠାକୁ ଆସିଲି ।
ଆଜ୍ଞାହେଲେ ମାସକରେ ଥରେ ଆସୁଥିବି
ଅମାବାସ୍ୟା ପ୍ରତିପଦା ଅନ୍ତେ ଉଦେହେବି
ତଥାପି ରହିଲେ ମଧ୍ୟେ ପଢ଼ିବଇଁ ପାଠ
ଏହି ଆଜ୍ଞା ହେଉ ମୋତେ ଅଙ୍ଗିରାଙ୍କ ଚାଟ
ଶୁଣି ବୃହସ୍ପତି ବୋଲେ ସୁଖେ ଏବେ ରହ
କାହାକୁହିଁ ଜଣାନୋହୁ ମୋରଘରେ ଥାଅ
ସବୁକାଳେ ଏ ବଚନ ମୋହର ଯେ ରହୁ
ଚନ୍ଦ୍ରଙ୍କୁ ଅମାବାସ୍ୟାରେ ନ ଦେଖନ୍ତୁ କେହୁ
ଏମନ୍ତ ବୋଲିଣ ଆଜ୍ଞାଦେଲେ ଯେଣୁ ଗୁରୁ
ରହିଲେ ସୁଖରେ ଚନ୍ଦ୍ର ଅଚିନ୍ତେ ସେଠାରୁ ।
ପଢ଼ିଲେକ ପାଠ ବସି ଗୁରୁମୁଖ ବେଦ
ଏ ଉତ୍ତାରେ ଆନ ବାଣୀ ଶୁଣ ହେ ନାରଦ ।
ଏମନ୍ତ ସମୟେ ତାରା ପୁର ମଧ୍ୟୁ ଆସି
ଜଳାକବାଟି ବାଟରେ ଚାହୁଁଥିଲେ ବସି ।
ଯେତେବେଳେ ଚନ୍ଦ୍ର ଆସି ଗୁରୁଙ୍କୁ ଭେଟିଲେ
ସେତେବେଳେ ତାରାତାଙ୍କୁ ଦେଖିଣ ରସିଲେ
ସୁକୁମାର ସଉନ୍ଦର୍ଯ୍ୟ ଯୁବାତନୁ ଦେଖି
ବିରହିଣୀ ହୋଇ ବାମା ବସିଛି ନିରେଖି ।
ପାଞ୍ଚଇ ଚନ୍ଦ୍ର ଏକାକୀ ହେବ ଯେତେବେଳେ
ନିଶ୍ଚେ ଧରି ବସିବଇଁ ଯାକୁ ଘେନି କୋଳେ
ଏ ଉତ୍ତାରେ ବୃହସ୍ପତି ଚନ୍ଦ୍ରେ ଆଜ୍ଞାଦେଲେ
ସ୍ନାହାନମଣୋହି ଏବେ ସାରଯାବୋଇଲେ
ଗୁରୁଙ୍କ ଆଜ୍ଞାରେ ଚନ୍ଦ୍ର ଉଠେ ଛାଡ଼ି ପାଠ
ଏକାକେ ହୁଅନ୍ତେ ବାଳୀ ଓଗାଳିଲେ ବାଟ ।
ପୁଣି ବେନିକର ଟେକି ଦୂରୁ ଉଭା ହେଲା
ହାସ ପରିହାସ କରି ଚନ୍ଦ୍ରଙ୍କୁ କହିଲା ।
କାମେ ଦ୍ରବିଭୂତ ହୋଇ କହେ ବଳେ କଥା
ଯେସନେ ପତିର ପାଶେ ସେବଇ ବନିତା ।
ଏହିପରି ବିନୟରେ ଚନ୍ଦ୍ର ପାଶେ ସତୀ
ବୋଇଲା ମୋ ପୁରେ ଯିବା ଚାଲ ନିଶାପତି
କି ଯୋଗେ ଦେଖିଲି ମୁହିଁ ତୁମ୍ଭ ଚନ୍ଦ୍ରମୁଖ
ଏ କାମ ବିଶିଖ ଭୟୁଁ ମୋତେ ଆଜି ରଖ ।
ଚନ୍ଦ୍ର ବୋଇଲେ ମୁଁ ଆସିଅଛି ଲୁଚିବାକୁ
ନ ଦେଖିବେ କେହି ଅମାବାସ୍ୟା ରଜନୀକୁ ।
ପ୍ରଘଟ ଏକଥା ତୁମ୍ଭେ ଏବେ କରିବ କି
ଜଣା ହେଲେ ଲୁଚି ଆଉ ନ ପାରିବି ବାକୀ ।
ତାରା ବୋଇଲା ଚନ୍ଦ୍ର ଯେ କାହାକୁ ଲୁଚିଲୁ
ଗୁରୁଙ୍କୁ ପ୍ରଥମେ ଆସି ତୁହି ଦେଖାକଲୁ ।
ବସିଲୁ ଯେ ଚାଟପିଲା ଘେନି ରାଟ ଟେକି
ଏତେ ପ୍ରକାରେ ସଂସାରେ ଜଣାନୋହିଲୁକି
ଗୁରୁଆଦି ଚାରିପୁତ୍ରେ ଦେଖିଲେ ଯେ ତୋତେ
ଏ ରୂପେ ଲୁଚିବାର କି କାର୍ଯ୍ୟ ହେବ ଏଥେ ।
ଲୁଚନ୍ତୁ ତୁ ଯେବେ ଦିନେ କେହିନ ଦେଖନ୍ତେ
ତେବେ ଅମାବାସ୍ୟା ବୋଲି ସଂସାରେ ଜାଣନ୍ତେ
ଲୁଚି ତୁ ରହିବୁ ଯେବେ ଏକଦିନ ଗୋପ୍ୟେ
ମୋର ବୋଲକରି ବସ ନୀବି ଭବକୂପେ ।
ଏହା ଅଗମ୍ୟ ସ୍ଥାନ ଯେ ନିର୍ଜନ ଦୁଆର
ସେହିଠାରୁ ଏବେ ଆସି ଲୁଚ ଶଶଧର ।
ଚନ୍ଦ୍ର ବୋଇଲେ ଏମନ୍ତ ସ୍ଥାନ ଯେବେ ଅଛି
ସବୁ ଅମାବାସ୍ୟାରେ ମୁଁ ପାରିବି କି ଲୁଚି ।
ତୁମ୍ଭେ ଯାହା କହିଲ ଏକଥା ହେଲେ ସତ
ଲୁଚି ପାରିଲେ ଏହା ମୁଁ ମଣିବି ଅମୃତ ।
ତାରା ବୋଇଲେ ଚନ୍ଦ୍ର ଯେ ଆମ୍ଭେ ସିନା ମୂଳ
ତୁ ଦିନେ ଲୁଚିଗଲାରୁ ଜାଣନ୍ତୁ ସକଳ ।
ଉଆଁସ ଦିସନ ରଖିବି ମୁହିଁ କଲି ସତ୍ୟ
ତୁମ୍ଭେ ଆମ୍ଭେ ରହିବା ଯେ ମିଶି ଦିବାରାତ୍ର ।
ଏତେ କହି ତାରା ଗଲେ ଚନ୍ଦ୍ରଙ୍କୁ ଯେ ଘେନି
ଏକାନ୍ତ ମନ୍ଦିରେ ଯାଇ ମିଳିଲେ ଯେ ବେନି ।

ଶୁଣ ହେ ନାରଦ ସ୍ତିରୀମାନଙ୍କର ମାୟା
ଏ ରୂପକୁ ଚାହିଁ କାର ନ ଟଳିବ କାୟା ।
ଗୁରୁପତ୍ନୀ ବୋଲି ଚନ୍ଦ୍ର କରୁଥିଲେ ଲାଜ
ବଳେ ତାକୁ ଧରିଲାରୁ ଟେକେ ମନସିଜ ।
ସହଜେ ଅନଳ ପାଶେ ରଖିଦେଲେ ଜଉ
ତରଳି ନ ଯାଇ କି କେ ପାରିବ ତା କହୁ ।
ଲବଣୀ ଭାଣ୍ଡକୁ ରଖିଦେଲେ ଅଗ୍ନି ପାଶେ
କଠିନ ହୋଇ କି ସେହି ରହିବ ନିମିଷେ ।
ଯୁବାକୁ ଯୁବତୀ ଯାଚି ବଳେ ଦେଲେ ସେହି
ଯେଢ଼େ ସେ ମାନୀ ହୋଇଲେ ପାରିବ କି ରହି ।
ତାରା ଯେବେ ଚନ୍ଦ୍ରମାକୁ ବସିଲାକ ହଟି
ବୁଝିଲେ ଶଶୀ କିମ୍ପାଇଁ ଛାଡ଼ି ଦିଅନ୍ତାଟି ।
ଆହେ ନାରଦ ଏ କଥା ମନଦେଇ ଶୁଣ
ବଳେ ସ୍ତିରୀ ଯାଚି ଯେବେ କରାଏ ରମଣ ।
ମାତାସରି ହେଲେ ଦୋଷ ନ ଲେଖିବ ତହିଁ
ବେଦ ଶାସ୍ତ୍ର ପୁରାଣରେ ଏହା ଅଛି କହି ।
ସହଜେ ନିଗମ ସ୍ଥାନ ଚନ୍ଦ୍ର ତ ପାଇଲା
ଗୁରୁପତ୍ନୀ ବୋଲି ଆଉ ମନେ ନ ଭାଳିଲା ।
ଲୁଚିକରି ସୁଖେ ବସି କଲା ସେ ପୀରତି
ଏକେ ତ ଯୁବା ବୟସ ଦୁହେଁ ଏକମତି ।
ଅମୀୟ ସ୍ନେହ ବଢ଼ିଲା ତେଣୁ ପରଦାରା
ଚନ୍ଦ୍ରଙ୍କର ଶୃଙ୍ଗାରରେ ବଶହେଲେ ତାରା ।
କ୍ରୀଡ଼ା କରୁ ଦୁହେଁ ଏକ ଜଡ଼ିତ ହୋଇଲେ
ଚନ୍ଦ୍ରମା ଯାଇତାରା ଦେହରେ ନିମଜ୍ଜିଲେ ।
ଜଡ଼ିଲା ବାସ୍ତରି ନାଡ଼ିଯାକ ଶିରେ ଶିରେ
ମିଳିଲେକ ଇନ୍ଦୁଯାଇ ତାରା ଲଲାଟରେ ।
ଏକ ଆତ୍ମା ପ୍ରାୟେ ଦୁହେଁ ମିଶି ଜଡ଼ିଗଲେ
ଜଡ଼ନ୍ତେ ପୁଲକମନା ତାରାଦେବୀ ହେଲେ ।
ପୁଲକିତ ହୁଅନ୍ତେ ବହିଗଲା ଚନ୍ଦ୍ରଧାତୁ
ସେ ବେଳେ ଗର୍ଭ ହୋଇଲେ ତାରା ରତେମାତୁ
ଅମାବାସ୍ୟା ଅନ୍ତେ ଚନ୍ଦ୍ର ଖସିଲେ ତ ଅଙ୍ଗୁ
ଲଲାଟରୁ ଖସିଗଲେ ନାସା ବାମଭାଗୁ ।
ତେଣୁ ସେହି ଇନ୍ଦୁ ଜାଣ ବାମେ ଉଦେହୁନ୍ତି
ଚନ୍ଦ୍ରକଳା ହୋଇ ପ୍ରାଣୀ ଦେହେ ପ୍ରକାଶନ୍ତି ।
ତାରା ବୋଲେ ଏବେ ଚନ୍ଦ୍ର ଚଳିଯାଅ ସୁଖେ
ପୁଣି ଦୁହେଁ ଭେଟହେବା ଯାଇ କୃଷ୍ଣପକ୍ଷେ ।
ହେଉ ବୋଲି ଚନ୍ଦ୍ର ତହୁଁ ଚଳିଲେ ତୁରିତେ
ମିଳିଲେ ପୁସ୍ତକ ଧରି ଗୁରୁଙ୍କ ଅଗ୍ରତେ ।
ବୃହସ୍ପତି ବୋଇଲେ ତୁ କାଲି କାହିଁ ଥିଲୁ
ଚତୁର୍ଦ୍ଦଶୀ ଅନ୍ତେ ପ୍ରତିପଦେ ଦେଖାଦେଲୁ ।
ଆଜଦିନ ଭୋଗକଲେ କାଲି ଉଦେ ହେବୁ
ଏହିରୂପେ ଆସି ଆଚ୍ଛା ପାଠ ତୁ ପଢ଼ିବୁ ।
ଚନ୍ଦ୍ର ବୋଲେ ମୁହିଁ ପାଠ ପଢ଼ି ଆସୁଥିଲି
ଗୁରୁପତ୍ନୀ କଥା ଶୁଣି ଲେଉଟି ଯେ ଗଲି ।
ଅନ୍ନପାକ କଲାବେଳେ ପୁଚ୍ଛିଲେ ସେ ବସି
ବୋଇଲେକ କାହିଁପାଇଁ ଆସିଥିଲୁ ଶଶୀ ।
ମୁଁ ବୋଇଲି ଆସିଥିଲି ଏଥେ ଲୁଚିବାକୁ
ତାହା ଶୁଣି କହିଲେ ସେ ହସିଣ ଆମ୍ଭଙ୍କୁ ।
ବୋଇଲେ ହେ ଚନ୍ଦ୍ର ତୁହି ଲୁଚୁ କେତେ ବେଳେ
ସବୁଙ୍କୁ ତୁ ଦେଖା ଦେଇ ବସି ଚାଟଶାଳେ ।
ଏଥେ ଲୁଚିବାକୁ ଯେବେ ଅଇଲୁଟି ତୁହି
ଅଗମ୍ୟ ସ୍ଥାନକୁ ଯାଅ ନ ଦେଖନ୍ତୁ କେହି ।
ମୁଁ ବୋଇଲି ଅଗମ୍ୟ ତ କହ କାହିଁ ଅଛି
ତହୁଁ ବୋଇଲେ ଗୋଲୋକେ ରହଯାଇ ଲୁଚି
ଏମନ୍ତ ବୋଲନ୍ତେ ସେହି ଗୁପତେ ରହିଲି
ଗୋଲକମଣ୍ଡଳେ ଯାଇ ରୂପ ଲୁଚାଇଲି ।
ଅମାବାସ୍ୟା ଦିନ ବଞ୍ଚି ଅଇଲି ଯେ ଖସି
ପ୍ରତିପଦ ଯାକ ଏବେ ପଢ଼ିବଇଁ ବସି ।
ଦ୍ୱିତୀୟା ହୋଇଲେ ପୁଣି ଯାଇ ଉଦହେବି
ତୁମ୍ଭ ମନକୁ ପାଇଲେ ଏରୂପେ ଆସିବି ।
ବୃହସ୍ପତି ବୋଇଲେ ମୋ ମନକୁ ପାଇଲା
ଗୋଲୋକ ତୋତେ ଯାହା ସେ ତାରା ଦେଖାଇଲା
ଅମାବାସ୍ୟା ଦିନେ ଆସି ଲଚିଥା ସେଠାରେ
ସେ ହେଲେ ଅଚମ୍ୟ ସ୍ଥାନ ଅଟଇ ସଂସାରେ
ଏମନ୍ତ ଶୁଣି ଚନ୍ଦ୍ର ଅଚିନ୍ତା ହୋଇଲା
ମିଛ ସତ ଦୁଇ କହି ନିର୍ଭୟେ ରହିଲା ।
ପ୍ରତିପଦ ଯାକ ରହି ପାଠ ପଢ଼େ ବସି
ଉଦୟ ହୁଅଇ ପୁଣି ଦ୍ୱିତୀୟାରେ ଆସି ।
କହନ୍ତି ଯେ ପିତାମହ ଶୁଣ ହେ ନାରଦ
ମାସକରେ ଦିନେ ଚନ୍ଦ୍ର ରହେ ତାରା ହୃଦ ।
ଏହିମତେ ଜାଣି ତାକୁ କେତେଦିନ ଗଲା
ଦଶମାସ ଅନ୍ତେ ଏକ ପୁତ୍ର ଜନମିଲା ।
ଗର୍ଭେ ପଡ଼ିଥିଲା ବୀର୍ଯ୍ୟ ଯେବଣ ତିଥିରେ
ବାଳକ ହୋଇଲା ଜାତ ସେ ତିଥି ବେଳାରେ ।
ଅମାବାସ୍ୟା ଛାଡ଼ିପ୍ରତିପଦା ଲାଗିବାକୁ
ନିଶାରାତି ଖସିଯାଇ ପୁତ୍ର ଜନ୍ମିବାକୁ ।
ଘଟିଲା ଏ ଚାରିଯାକ ଏକା ବେଳକରେ
ଦଇବୀ ଘଟନା କେହୁ ଆନ କରିପାରେ ।
ପୁତ୍ରକୁ ଦେଖିଣ ତାରା ବହୁଶ୍ରଦ୍ଧା କଲେ
ତନୁ ସଂସ୍କାର କରିଣ ଚନ୍ଦ୍ରେ ନେଇ ଦେଲେ ।

ପୁତ୍ରକୁ ଧରିଣ ଚନ୍ଦ୍ର ହସି ଗଦ ଗଦ
ବୋଇଲେ ଏହାର ନାମ ହୋଇଲାକ ବୁଧ ।
ନବଗ୍ରହ ତୁଲେ ଏହି ଜଣେ ଲେଖା ହେଉ
ପୁତ୍ରକୁ ପାଳନ କର ଆମ୍ଭେ ଏବେ ଯାଉ ।
ଏତେ କହି ଚନ୍ଦ୍ର ଚଳିଗଲେ ଗୁରୁପାଶେ
ପୁସ୍ତକ ଧରିଣ କରେ ପାଠପଢ଼ି ବସେ ।
ଏଥି ଉତ୍ତାରୁ ଚହଳ ଶୁଭେ ପୁତ୍ର ଜନ୍ମ
ଠାବେ ଠାବେ କୁହାକୁହି ହେଲେ ସର୍ବଜନ ।
ଭିତର ପୁରୁ ଆସିଣ ବୃହସ୍ପତି ଆଗେ
କହିଲା ଯୁବତୀ ଏକପୁତ୍ର ଜନ୍ମ ଶ୍ଳାଘେ ।
ଏହା ଶୁଣି ବୃହସ୍ପତି ଅତିଶ୍ରଦ୍ଧା ପାଇ
ଚନ୍ଦ୍ରଙ୍କ ସଙ୍ଗରେ ଘେନି ମିଳିଲେକ ତହିଁ ।
ଅନ୍ତୁଡ଼ିଶାଳରେ ଆସି ପ୍ରବେଶ ହୁଅନ୍ତେ
ପୁତ୍ରକୁ ଧରିଣ ଗୁରୁ ବିଚାରିଲେ ଚିତ୍ତେ ।
ଆମ୍ଭ ମୂର୍ତ୍ତି ପରାୟେ ତ ଦିଶୁନାହିଁ ବଳା
ଜାତକ ବୁଝିଲେ ମନେ ପାଞ୍ଚିହୋଇ ତ୍ୱରା ।
ଜାତକ ତନୟ ବୋଲି ଚିହ୍ନିଲେ ସେ ଚାଟ
ଲୋକ ନିନ୍ଦାକୁ ଡରିଣ ନ କଲେ ପ୍ରଘଟ ।
ଭାରିଯାକୁ ବୋଇଲେ ଲୋ ହେଲୁ ମନ୍ଦବାଟି
ଚନ୍ଦ୍ରଠାରେ ପ୍ରୀତି କଲୁ ହୋଇଲୁ ତୁ ନଷ୍ଟି ।
ଆମ୍ଭପରି ଭର୍ତ୍ତାକୁ ତୁ ପରିତ୍ୟାଗ କଲୁ
କୁଳ ନ ବିଚାରି କେହ୍ନେ ଲଜ୍ଜାକୁ ଛାଡ଼ିଲୁ ।
ବ୍ରହ୍ମସ୍ତିରୀ ହୋଇ ପର ପୁରୁଷେ ରସିଲୁ
ବାଳୁତ ପୁତ୍ରକୁ ଘେନି କ୍ରୀଡ଼ାରେ ମାତିଲୁ ।
କଟାଳ କରିଲୁ ଏଡ଼େ ଗର୍ବ ବହି ଦେହ
ସବୁ ଅମାବାସ୍ୟାରେ ତୁ ଚନ୍ଦ୍ରେ ଅଙ୍ଗ ଦିଅ ।
ତହିଁ ଉତ୍ତାରେ ଚାହିଁଣ ପୁଣ ମୃଗାଙ୍ଗକୁ
ବୋଇଲେ କେଡ଼େ ପାପୀ କଲୁ ରେ ତାହାକୁ
ଆମ୍ଭଙ୍କୁ ତୋହର ଟିକେ ନୋହିଲା ଯେ ଭୟ
ବ୍ରୀଡ଼ା ତେଜି କ୍ରୀଡ଼ା କଲୁ କଲୁ ପତ୍ନୀ ପ୍ରାୟ ।
ସହଜେ ତ ପରସ୍ତିରୀ ଛୁଇଁ ନ ଯୋଗାଇ
ତାହାଙ୍କର ନାମ ପୁଣ ପୁରାଣେ ଯା କହି ।
ଗୁରୁପତ୍ନୀ ରାଜପତ୍ନୀ ବ୍ରହ୍ମପତ୍ନୀ ତିନି
ପତିବ୍ରତା ଯେ ବିଧବା ବ୍ରାହ୍ମଣୀକୁ ଘେନି ।
ଏହି ପାଞ୍ଚ ପୃଥିବୀରେ ମାତାସମ ସରି
ଏହାକୁ ଲଙ୍ଘଇ ଯେ ନରହେ ପାଶେ ଡରି ।
ସେ ମୂର୍ଖର ମୁକ୍ତି ଆଉ ଅଛି କି ସଂସାରେ
ଗୁରୁ କେଉଁଠି ନିଷେଧ କଲେ ଶିଷ୍ୟଠାରେ ।
ଛାଡ଼ନ୍ତି ଶିଷ୍ୟକୁ ପୁତ୍ର ମଣି ମନୁ ଶଙ୍କା
ତାର ମୂଳେ ଗୃହେ ଯାଇ ସମର୍ପନ୍ତି ଏକା ।
ଶିଷ୍ୟ ଗୁରୁ ମନେ ଯେବେ ଅନ୍ତର ଧରନ୍ତେ
ସେ କିପାଇଁ ମୋକ୍ଷଦାତା ସଂସାରେ ହୁଅନ୍ତେ ।
ଶିଷ୍ୟ ଯେବେ ଗୁରୁଠାରେ ଘେନନ୍ତା ଅନ୍ତର
କେଉଁରୂପେ ହୁଅନ୍ତା ସେ ଶିଷ୍ୟ ଭବୁଁପାର ।
ଏଣୁ ଗୁରୁ ଶିଷ୍ୟଙ୍କର ନୁହେଁ ଭେଦାଭେଦ
ଏଥୁ ଆନ ଘେନିଲେ ନ ମିଳେ ମୋକ୍ଷପଦ ।
ଏଣୁ କରି ଚନ୍ଦ୍ରତୁଲେ ହୁଅ ମହାମୁଖ
ତୋର ଦେହେ ଆଜଠାରୁ ଉପୁଜୁ କଳଙ୍କ ।
ଶରୀର ଫୁଟି ତୋହର ଦିଶୁ ସଂସାରକୁ
ଏ ବାକ୍ୟ ଆମ୍ଭର ରହୁ ସର୍ବଦା କାଳକୁ ।
ଆବର ଅଇଲୁ ତୁ ଯେ ଚତୁର୍ଦ୍ଦଶୀ ଅନ୍ତେ
ପାଠ ପଢ଼ିବାକୁ ବସୁ ଆମ୍ଭର ଅଗ୍ରତେ ।
ଭଲିଲୁ ତହିଁରୁ ଫଳ ଆମ୍ଭେ ଏବେ ପୁଣି
ତୁହି ମଧ୍ୟ ମୂର୍ଖ କିବା ନୋହିଲୁ ସେକ୍ଷଣି ।
ଏଣୁ ଏହି ତିନିଦିନେ ଯେ ପଢ଼ିବେ ବିଦ୍ୟା
ତାହାଙ୍କୁ ଏ ଦୂରବାଧା ପଡ଼ିବ ସର୍ବଦା ।
ଚତୁର୍ଦ୍ଦଶୀରେ ପଢ଼ିଲେ ଶିଷ୍ୟେ ହେବ ଦୋଷ
ଅମାବାସ୍ୟାରେ ପଢ଼ିଲେ ଗୁରୁ ଯିବେ ନାଶ ।
ପ୍ରତିପଦାରେ ପଢ଼ିଲେ ପାଠ ନାଶଯାଇ
ତୋର ଘେନି ଏବେ ସେହି ତିଥି ଚିହ୍ନିଲଇଁ ।
ସବୁକାଳେ ଏହି ଦୋଷ ବହୁ ତିନି ତିଥି
ଏତେ କହି ସେ ସ୍ଥାନରୁ ଗଲେ ବୃହସ୍ପତି ।
ଚନ୍ଦ୍ରଶାପ ଦେଇ ପ୍ରତିପଦା ଅନ୍ତେ ଗଲେ
ଦ୍ୱିତୀୟାରେ ଗଗନରେ ଯାଇଉଦେ ହେଲେ
ଏହିରୂପେ ଚନ୍ଦ୍ରବୀର୍ଯ୍ୟୁ ବୁଧ ହେଲେ ଜାତ
ବୁଧଙ୍କଠାରୁ ହୋଇଲା ସୋମବଂଶ ଖ୍ୟାତ ।
ଏହିରୂପେ ନାରଦକୁ ବ୍ରହ୍ମା ଯେ ବତାଇ
ପରୀକ୍ଷ ଅଗ୍ରତେ ଏହା ଶୁକମୁନି କହି ।
ତାହାଶୁଣି ମହାରାଜ ହୋଇଣ ସନ୍ତୋଷ
ବୋଇଲେ କହନ୍ତୁ ଏବେ ମରୀଚିର ବଂଶ ।
ଚନ୍ଦ୍ରଙ୍କ ବିଷୟ ଅଟେ କେଡ଼େ ଗୂଢ଼ଭାବ
ଆପଣଙ୍କ ବିନା ଏହା କିଏ ବୁଝାଇବ ।
ବ୍ରହ୍ମାଣ୍ଡରେ ହେଲେ ଜଣେ ନ ଥିଲେ ରେ ଜାଣି
ବୁଝିଲେ ତୁମ୍ଭ ସକାଶୁ ଏବେ ସବୁପ୍ରାଣୀ ।
ଦେଖ ଏ ସଭାରେ ଯେତେ ଲୋକ ବସିଥାଇ
ଏହି ଚନ୍ଦ୍ରର ପ୍ରସଙ୍ଗ କୁହାକୁହି ହୋଇ ।
ବାଦକରି ବସୁ ମାତ୍ର ନ ପାରୁ କେ କହି
କେତେ ଦ୍ୱନ୍ଦ୍ୱ କଥା ଏବେ ଦେଲ ତୁମ୍ଭେ ଫେଇ
ରାଜାର ବଚନ ଶୁଣି ହସି ଶୁକଦେବ
ବୋଇଲା ପରା ମରୀଚି ଅନ୍ୟାୟ ବୁଝିବ ।

ସୁଖଦାକୁ ଏହି ଋଷି ବିଭା ହୋଇଥିଲେ
ନାରଦ ଏକଥା ଜାଣି ବ୍ରହ୍ମାଙ୍କୁ ପୁଚ୍ଛିଲେ ।
ବୋଇଲେ ହେ ଧାତା ତୁମ୍ଭେ ଗାୟତିରୀ ବଂଶ
କହ ମୋତେ ଏହିଠାରୁ ହୋଇଲେକ ଶେଷ
ଧାତା ବୋଇଲେ ମରୀଚି ଋଷିବଂଶ ଅଛି
ସେ ବଂଶ ଶୁଣିଲେ ପୃଥ୍ୱୀ ସର୍ଜ୍ଜନା କରୁଛି ।
ନାରଦ ବୋଇଲେ ପିତା ଆଜ୍ଞା କର ତେବେ
ଏ ବଡ଼ ରହସ୍ୟ କଥା ଶୁଣିବଇଁ ଏବେ ।
ନାରଦ ବଚନ ଶୁଣି ପିତାମହ ହସି
ବୋଇଲେ ଶୁଣ ତୁ ଏବେ ଏକଥା ବିଶେଷି ।
ଯେପରି ମରୀଚି ସୁଖଦାକୁ ବିଭାହେଲେ
ପୂର୍ବରୁ ଯେ ଯାହା ତୋତେ କହିଥାଇ ଭଲେ ।
ସୁଖଦାଗର୍ଭରୁ ଜାଣ ଜନ୍ମିଲେ କଶ୍ୟପ
ଜପିଲେ ଚୌରଶୀ ଗଣ୍ଡ ଜ୍ଞାନ ବିଷ୍ଣୁରୂପ ।
ତାହାଙ୍କୁ ଗୁଣଙ୍କ ଦେଖି ମିଳିଲେ ବିଧାତା
ପାଞ୍ଚିଲେ ଏ ମହାମତି ଅଟେ ବ୍ରହ୍ମବେତ୍ତା ।
ବିଷ୍ଣୁଙ୍କୁ ଭଜେ ଏ ଚଉରାଶୀ ଭଣ୍ଡ ଜ୍ଞାନେ
ସଂସାରର ଲୀଳା ଏତ ନ ଜାଣିଲା ଦିନେ ।
ଏମନ୍ତ ବୋଲି ବିଧାତା ଦକ୍ଷ ଦୁହିତାରୁ
ତେରକନ୍ୟା ଆଣିଦେଲେ ଷାଠିଏ ଭିତରୁ ।
କଶ୍ୟପଙ୍କୁ ବୋଇଲେ ତୁ ଯାଙ୍କୁ ବିଭା ହୁଅ
ପୁତ୍ର କଳତ୍ର ଅର୍ଜିତୁ ଜପ କରୁଥାଅ ।
ପିତାଙ୍କର ବୋଲ ଶୁଣି ମରୀଚି ନନ୍ଦନ
ବୋଇଲେ ତେବେ ମୋହର ଗଲା ଯତିପଣ
ଭାରିଯା ଗୁଡ଼ାକ ଯେବେ ଦେଲ ମୋତେ ଆଣି
କୁମତି ହୋଇବେ ଲୋକ ବିଭା ହେବାକ୍ଷଣି
ବିଧାତା ଏକଥା ଶୁଣି ହସିଲେ ଅଳପ
ବୋଇଲେ ଯତିକଥା ତୁ ଜାଣୁ ତ କଶ୍ୟପ ।
ଯତି ଯାହାକୁ ବୋଲି ତା କହିବା ତୁ ଶୁଣ
ବଂଶ ଉପୁଯାଇ ଯେହୁ ଭଜେ ନାରାୟଣ ।
ଆପଣାର ଆତ୍ମାରୁ ଯେ ଆତ୍ମା ଜାତ କରେ
ସେ ଆତ୍ମାକୁ ପୋଷିଲା ଯେ ପୁତ୍ରପରି ଘରେ ।
କୁଟୁମ୍ବ ଯାକ ଯେ ଏଣେ ପ୍ରତିପାଳି ଥାଇ
ସୃଷ୍ଟି ସଞ୍ଚରିଣ ବୋଲି ଏହା ନାମ କହି ।
ଯେତେକ ଲୋକ ଆତ୍ମାରୁ ଆତ୍ମା ସଞ୍ଚରନ୍ତି
ସେହି ଲୋକମାନଙ୍କୁ ଯେ ବୋଲି ମହାଯତି ।
ଭାରିଯା ଥିବା ଲୋକଙ୍କୁ ଯତି ବୋଲି ଜାଣ
କେବଳ ମୁଖେ ଭଜିବ ଏକା ହରିନାମ ।
ଯେବା ଦୟାକରି ପୁରାଣକୁ ଶୁଣୁଥିବ
ତାହାକୁ ସରି ନୁହନ୍ତି ନିର୍ବାଣି ବୈଷ୍ଣବ ।

ବୁଝିଲେ ନିର୍ବାଣି ପୁଣି ବୋଲନ୍ତି କୁଯତି
ମାଳା କରେ ଜପି ଦେଶେ ଦେଶେ ବୁଲୁଥାନ୍ତି ।
ଆତ୍ମାଜ୍ଞାନ ନ ଜାଣି ଯେ ବହି ଜଟା ମୁଣ୍ଡେ
ଆମ୍ଭେ ତପୀ ବୋଲି ପିନ୍ଧେକରପଟି ଖଣ୍ଡେ ।
ଭସ୍ମ ବିଲେପନ ହୋଇ ଦେଶ ଫେରୁଥାନ୍ତି
ତୀର୍ଥକୁ ଗଲୁ ବୋଲି ଯେ ଲୋକେ କହିହୁନ୍ତି ।
ଆତ୍ମାରାମ ନ ହୋଇଣ ନ ଚିହ୍ନନ୍ତି ଜୀବ
ଗୋବିନ୍ଦ ଭକ୍ତି ନ କରେ ରହେ ଅହଂଭାବ ।
ଭାରିଯା ବିଭା ନ କରି ଅର୍ଜନ୍ତି ଏ ସୁତ
ସେହିମାନେ ମଲେ ଜାଣ ହୁଅନ୍ତିଟି ଭୂତ ।
ବେଦମତ ଅକର୍ମରୁ ଅମେଧ ହୁଅନ୍ତି
ସେହିମାନଙ୍କୁ କଶ୍ୟପ ବୋଲିଟି କୁଯତି ।
ଗୃଧ୍ରଧର୍ମେ ଥାଇ ପଛେ ବିଷୟା ଯେ କର
ଗୋବିନ୍ଦେ ଭକ୍ତିରଖିଲେ ବେଳେ ବୈଷ୍ଣବର ।
ତୁ ଯେ ବୋଲୁଛୁ ଗୁଡ଼ାଏ ହୋଇଲେ କଳତ୍ର
କାହାର ତେବେ କହ ତ ନାହିଁ ପତ୍ନୀ ପୁତ୍ର ।
ବ୍ୟାସ ଯେ ବଶିଷ୍ଠ କଣ୍ୱ କପିଳ ଋଷିଏ
ଦେଖିଲୁଣି ସବୁରି ତ ଅଛି ଯୁବତୀଏ ।
ଭାରିଯା କଲେଟି ଯେବେ ଯତିପଣ ଯାନ୍ତା
ହର କାହିଁକି ଉମାକୁ ବିଭା ହୋଇଥାନ୍ତା ।
ମୋହଠାରୁ କହ ବଡ଼ ବୈଷ୍ଣବକେ ଅଛି
ସହସ୍ର ମୁଖରେ ମୁହିଁ ନାମ ଉଚ୍ଚାରୁଛି ।
ତେଣୁ ସେ ସହସ୍ର ନାମ ହୋଇଲା ପୁସ୍ତକ
ବ୍ରହ୍ମାଣ୍ଡଯାକେ ପୂରିଲା ରହିଲା ତ୍ରୈଲୋକ୍ୟ ।
ନାମ ଜପିବାରୁ ବଇଷ୍ଣବ ନୋହିଲେ କି
କାହିଁ ପାଇଁ ବିଭା ଆଉ ହେଲା ସାବିତ୍ରୀକି ।
ଏସବୁ କଥାକୁ ଚାହିଁ ମୋର ବୋଲ କର
କନ୍ୟାମାନଙ୍କୁ ତୁ ନେଇ କର ବେଗେ ଘର ।
ବହୁତ ପତ୍ନୀ ବୋଲି ନ ଭାଳ ମନେ କିଛି
ଏ ସୁନ୍ଦରୀମାନଙ୍କରେ ବହୁ କାର୍ଯ୍ୟ ଅଛି ।
ପୃଥ୍ୱୀ ସର୍ଜିବାକୁ ଏ ଅଛନ୍ତି ଅବତରି
ପୁତ୍ର ଉପୁଜାଇବେ ତୋ ସଙ୍ଗେ ଲୀଳାକରି ।
ଆବର ପଦେକ କଥା କହିଥିବା ତୋତେ
ହର ବ୍ରହ୍ମା ହରିଅଂଶେ ଜନ୍ମିଲେ ତ୍ରିସୁତେ ।
ଆଦିତ୍ୟ ଇନ୍ଦ୍ର ବରୁଣ ହୋଇ ଉପୁଜିବେ
ତୋ ପୁତ୍ର ହୋଇମାତ୍ର ଏ ସଂସାର ପାଳିବେ ।
ପବନ ମଧ ତୋହର ପୁତ୍ରହେବ ଜାଣ
ସବୁରି ହୃଦରେ ବସି ବୋଲାଇବ ପ୍ରାଣ ।
ଆହୁରି କଥାଏ ତୁ ହୋ ଶୁଣ ଆମ୍ଭଠାରୁ
ବସିବୁଟି ଯାଗକରି ଉପୁଜିବ ଚରୁ ।

ସେ ଚରୁ ନେଇ ତୋ ପତ୍ନୀମାନଙ୍କୁ ତୁ ଦେବୁ
ଭୁଞ୍ଜିବା ବେଳେ ଦିଶିବ ତାଙ୍କୁ ରୂପ ସବୁ ।
ଯାହା ଭାଗ୍ୟେ ଯାହା ନେତ୍ରେ ଦିଶିବ ଯେ ରୂପ
ସେମାନେଟି ତୋର ପୁତ୍ର ହୋଇବେ କଶ୍ୟପ ।
ତୋ ନାମ ମନ୍ତ୍ର କାଣ୍ଡିଏ ହେଉ ପୁଣି ଜାତ
କଶ୍ୟପସ୍ୟ ତ୍ରିୟୁସଂ ପଢ଼ିବେ ପୁରୋହିତ ।
ହୋମ କଲେ ବସୋର୍ଦ୍ଧାରା ଦେଇ ଉଚ୍ଚାରିବେ
ହରିଦ୍ରା ଲଗାଇ ଦେଇ ତୋତେ ସୁମରିବେ ।
ଶୁଣିଥା ମଧ ପତ୍ନୀଙ୍କ ନାମକୁ ତୋହର
ପ୍ରଜାପତିଙ୍କ ଦୁଲଣୀ ଅଟନ୍ତି ଏ ସାର ।
ଅଦୀତି ଦିତି ବିନତା କଦ୍ରୁଇଳା କ୍ରୋଧା
ଅନାଦି ଦନୁ କପିଳା ମନୁରିଷ୍ଟା ଶ୍ରଦ୍ଧା ।
ସିଂହିକାକୁ ମିଶାଇଣ ଦେଲୁ ତେର ତୋତେ
କଶ୍ୟପ ବୋଇଲେ ତେବେ ବିଭାକର ମୋତେ ।
ଶୁଣିଣ ହସିଲେ ହେଉ କହି ବେଦପତି
ସଂକଳ୍ପ ଉଚ୍ଚାରି କନ୍ୟାଗଣ ସମର୍ପନ୍ତି ।
ବେଦବାକ୍ୟ ବିଧାନରେ ବିଭା ବଢ଼ାଇଲେ
ଚତୁର୍ଥୀ ଉତ୍ସବ ସାତମଙ୍ଗଳା ହିଁ କଲେ ।
ବିଭା ସରନ୍ତେ କନ୍ୟାକୁ ପୁଚ୍ଛିଲେ କଶ୍ୟପ
ମେଲାଣି ହୋଇଣ ଚଳିଗଲେ ଜମ୍ବୁଦ୍ୱୀପ ।
ବହୁତ ଭାରିଯା ହୋଇବାରୁ ଭାଳି ମନେ
ପାଞ୍ଚିଲେ ରଚିବି ଗୃହ ଖଣ୍ଡେ କେଉଁସ୍ଥାନେ ।
ନିର୍ମଳ ଭୂମି ଦେଖିଣ ରହିବି ନିଶ୍ଚିନ୍ତେ
ଏତକ ପାଞ୍ଚି ପୁରକୁ ଗଲେ ତପୋବନ୍ତେ ।
ମିଳିଲେ ଉଦୟା ଚଳେ ତୀର୍ଥସ୍ଥାନ ଦେଖି
ରଚିଲେ ଦିବ୍ୟ ପୁରେକ ରହିଲେ ସୁମୁଖୀ ।
ତହିଁ ଉତ୍ତାରୁ କଶ୍ୟପ ବସିଲେ ଯାଗରେ
ଅନେକ ତପଚାରୀ ଯେ ମିଳିଲେ ସେଠାରେ
ଯାଗ ବିଷୟ ଶୁଣିଣ ପ୍ରବେଶିଲେ ଯେତେ
ସେମାନଙ୍କ ନାମ ଏବେ ଶୁଣ ଏକ ଚିତ୍ତେ ।
ବଶିଷ୍ଠ ମାର୍କଣ୍ଡ ଅତ୍ରି ଆତ୍ରେୟ ଯେ ମୁନି
କପିଳ କଣ୍ୱ ପୁଲକ ଭୃଗୁ ଜଇମିନି ।
ନାରଦ ମୁନି ଗୌତମ ବୃଦ୍ଧ ପରାଶର
ଅଗସ୍ତ୍ୟ ପୌଲସ୍ତ୍ୟ ଋଷି ଦୁର୍ବାସା ଆବର ।
ସନକ ଯେ ସଉନକ ବ୍ୟାସ ଅଙ୍ଗୀରସ
ମରୀଚି ଦଧିଚି ଆଉ ଶ୍ରମିକ ଲୋମଶ ।
ଚ୍ୟବନ ମୁନି ଆବର କୃପାଜଳ ଋଷି
କଶ୍ୟପଙ୍କ ଭୁବନରେ ମିଳିଲେକ ଆସି ।
ତାହାଙ୍କୁ କଶ୍ୟପ ମୁନି ଯଜ୍ଞରେ ବରିଲେ
ଚରଣ ପାଇ ସେମାନେ ହୋମରେ ବସିଲେ ।

ମକର ମାସରେ କୃଷ୍ଣପକ୍ଷ ଯେ ପଞ୍ଚମୀ
ହସ୍ତୀ ଋକ୍ଷରେ ଆରମ୍ଭ କଲେ ଯାଗଭୂମି ।
ବସିଲେ ମାହେନ୍ଦ୍ର ଯୋଗେ ବାରି ଭୃଗୁବାରେ
ଧଇଲେକ ଶୁଭଲଗ୍ନ ବେଳା ତଦୁତ୍ତାରେ ।
ଏକାଦଶେ ଶନି ପଞ୍ଚମରେ ବୃହସ୍ପତି
କିଂସ୍ତୁଘ୍ନ ନାମେ କରଣ ଲଗ୍ନ ଘରେ ସ୍ଥିତି ।
ବୁଧଙ୍କ ବେଳା ଧରିଣ ମରିଚି ନନ୍ଦନ
ମିଳିଲେ ଋଷିମାନଙ୍କୁ ଘେନି ଯଜ୍ଞସ୍ଥାନ ।
ବସିଲେକ ହସ୍ତେ କୁଶ ଧରି ମାରକଣ୍ଡ
ସର୍ଜିଲେ ଆପଣେ ମହାମୁନି ଯାଗକୁଣ୍ଡ ।
ବାରକାଠି ବିସ୍ତାର ତା ଦୀର୍ଘ ଅଟେ ଚାରି
ତିନିକାଠି ଗଭୀର ଯେ ଯାଗକୁଣ୍ଡ କରି ।
ଲକ୍ଷ ଲକ୍ଷ ବିପ୍ର ସଙ୍ଗେ ଘେନି ତପୋବନ୍ତେ
କୃଷ୍ଣାଜିନ ଛାଲ ପାତି ବସିଲେ ସମସ୍ତେ ।
ଲମ୍ବିତ ଜୁଡ଼ା ହୋଇଣ ତ୍ରିକଚ୍ଛ ବସନ
କରେ କୁଶବଟି ଶୋହେ ଦ୍ୱାଦଶ ଲକ୍ଷଣ ।
ସବୁ ବିପ୍ରଙ୍କୁ କଶ୍ୟପ ଆସନ ଯେ ଦେଇ
ବସିଲେ ଆପଣେ ଯଜ୍ଞେ କୁଶହସ୍ତ ହୋଇ ।
ବଶିଷ୍ଠ ବୋଇଲେ ଅଧିଷ୍ଠାତା ହୋମମୂଳେ
ଥୋଇଲେ ସୁବର୍ଣ୍ଣଘଟ ନେଇ ତୀର୍ଥଜଳେ ।
ପୁଷ୍କର ଦେବତା ତହୁଁ ଜଳ ଆଣିଦେଲେ
ଦେଶକାଳ ମହାବାକ୍ୟେ ସଂକଳପ କଲେ ।
ତହିଁ ଉତ୍ତାରୁ ବଶିଷ୍ଠ କାଷ୍ଠ କଲେ ଲୋଡ଼ା
ଅଗ୍ନି ଲାଗିଲାଣି କରିବାରୁ ଘୃତପୋଡ଼ା ।
କାଷ୍ଠ ତ ନ ପକାଇଲେ ଅଗ୍ନି ନ ଜଳିବ
ଅଗ୍ନି ତ ଜଳିଲେ କାହୁଁ ଚରୁ ଉପୁଜିବ ।
ଏଣୁ କରି କଶ୍ୟପ ହେ ଆଣ ହୋମକାଷ୍ଠ
ବସିଲେ କଶ୍ୟପ ଚିନ୍ତାକରି ଧରି ଓଷ୍ଠ ।
ବଶିଷ୍ଠଙ୍କୁ ବୋଇଲେ କି ରୂପେ ଥାନ୍ତି ଜାଣି
ଜାଣିଥିଲେ ଆଗୁ ଏହା ସଞ୍ଚିଥାନ୍ତି ଆଣି ।
ଏହିକ୍ଷଣି ଲୋଡ଼ିଲେ କେଦେବ ଏବେ ମୋତେ
ବଶିଷ୍ଠ ବୋଇଲେ ତେବେ କୃଷ୍ଣଚିନ୍ତ ଚିତ୍ତେ ।
ଗୋବିନ୍ଦଙ୍କୁ ଚିନ୍ତାକଲେ ମିଳିବେ ତୋ ଆଗେ
ଏହି ଏକା କାଷ୍ଠ ବହି ଆଣିବେଟି ଯାଗେ ।
ଏହି ଆମ୍ଭ କଳପନା ହେଲା ମନୋରଥେ
ବ୍ରହ୍ମା ହେଲେ ଆସି କାଷ୍ଠ ବହିବେ ଯେ ମାଥେ ।
ଶୁଣି କଶ୍ୟପ ବସିଲେ ମନେ ହରି ଚିନ୍ତି
ଗୋବିନ୍ଦଙ୍କ ପଦାମ୍ବୁଜେ ଦେଲେ ଚିତ୍ତମତି ।
ଆତ୍ମାକୁ ନିମଗ୍ନ କରି ବସନ୍ତେ ନିଶ୍ଚଳେ
ମିଳିଲେ ତକ୍ଷଣେ ଆସି ଆଗେ ବାଲଖିଲ୍ୟେ

ଆସନ୍ତେ ଷାଠିଏ ସସ୍ରଯାକ ଏକରୂପେ
ତାଙ୍କୁ ଦେଖି ଚମତ୍କାର ହୋଇଲେ କଶ୍ୟପେ ।
ଆସନମାନ ଆଣିଣ ପାରୁଶେ ଦିଅନ୍ତେ
ବଶିଷ୍ଠ ବୋଇଲେ ସେହୁ ବସିବେ କେମନ୍ତେ ।
ସେମାନେ ତ ଆସିଛନ୍ତି କାଷ୍ଠ ବହିବାକୁ
ତୁମ୍ଭେ ବସ ବୋଇଲେ କେ ବସାଇବ ତାଙ୍କୁ ।
କଶ୍ୟପ ବୋଇଲେ ଏହା କହିବି କେମନ୍ତେ
ମହା ବ୍ରହ୍ମଋଷି ଏ ତ ଅଟନ୍ତି ଜଗତେ ।
କେମନ୍ତେ ଏଡ଼େ କଥା ଅପ୍ରାଧ କରାଇବା
ନୋହୁ ପଛେ ଯାଗ ମୋର ବଶିଷ୍ଠ ଶୁଣିବା ।
ବଶିଷ୍ଠ ବୋଇଲେ ତେବେ ସତ୍ୟ କରିଥାଇ
କାଷ୍ଠ ନ ବହିଲେ ସେହୁ ଆଣିବ କେ ବହି ।
ହୁଅନ୍ତେ ଏସନ ଉଚ୍ଚବାଚ ଋଷି ବେନି
ହସିଲେ ସେ ବାଳଖିଲ୍ୟା ଯାକ ତାହାଶୁଣି ।
କଶ୍ୟପଙ୍କୁ ବୋଇଲେ ହେ କାହିଁକି ଡରୁଛ
ତୁମ୍ଭ ସକାଶରୁ ଆମ୍ଭେ ହୋଇବୁ ଯେ ମୋକ୍ଷ ।
ଯେଉଁରୂପେ ମୋକ୍ଷ ହେବୁ କହୁ ତାହା ଶୁଣ
ପରହିତେ ନ ଥିବାର ଲୋକ ବ୍ୟର୍ଥ ଜାଣ ।
ଗୋବିନ୍ଦରୁ ବଡ଼ ହୋଇଅଛି କେ କଶ୍ୟପ
ପରହିତେ ସେହି ପୁଣି ଧରେ ଜୀବରୂପ ।
ଜୀବ ନୋହିଲେ ତାଙ୍କୁ କେ କିସ କରନ୍ତାଟି
ପରହିତେ ଦେଖ କେତେ ବହିଛି ପୃଥ୍ୱୀଟି ।
ଏ ପୃଥ୍ୱୀ ନ ବହିଲେ କେ ଥାନ୍ତାବହି ଏବେ
ଜଳଦେଖ ପର ହିତେ ରହେ ଠାବେ ଠାବେ ।
ପରହିତେ ଦେଖେ କେତେ କଷ୍ଟମାନ ପାଇ
ଯାବତ ଘରେ ଗୋମାତା ଅଛନ୍ତି ଯେ ରହି ।
ପରହିତେ ଦେଖ ଏବେ ସୂର୍ଯ୍ୟ ଦେବତାଙ୍କୁ
ନିତ୍ୟେ ଉଦେ ହୁଅନ୍ତି ସେ ପୃଥ୍ୱୀ ପାଳିବାକୁ ।
ପରହିତେ ଦେଖ ଏହି ସ୍ତିରୀମାନେ ଜନ୍ମି
ପତ୍ନୀ ହୋଇ ବସିଛନ୍ତି ପୁରୁଷଙ୍କୁ ଭ୍ରମି ।
ଦେହ ଦେଇ ଯେତେ ସେହୁଗର୍ଭ ଦୁଃଖପାନ୍ତି
ସେ ଗର୍ଭର ଭାରା ଜାଣ କେହି ନ ଜାଣନ୍ତି ।
ରମଣ ସୁଖ ସାରିଣ ଉଠନ୍ତି ପୁରୁଷେ
କହିଲେ ସ୍ତିରୀକଷ୍ଟ ନ ସରେ ଦଶମାସେ ।
ଜାତ କରିବାକୁ ଜୀବ ଜନ୍ମିଛନ୍ତି ସ୍ତିରୀ
ବୁଝିଲେ ତାଙ୍କପରି କେ ନାହିଁ ଉପକାରୀ ।
ପରହିତେ ଦେଖ କେତେ ବୃକ୍ଷ ପଲ୍ଲବନ୍ତି
ଈଶ ଲଙ୍ଗଳ ଶକଟ ଗୃହ ପୀଡ଼ା ହୋନ୍ତି ।
ପରହିତେ ଅଗ୍ନି ଦେଖ ଅଛି ଯେତେ ସ୍ଥାନ
ପରହିତେ ବହୁଅଛି ଦେଖ ଯେ ପବନ ।

ଏବେ ଲୋକମାନେ ମଧ୍ୟ ସଂସାର ଭିତରେ
କରୁଛନ୍ତି ସେବା ରହିଂ ପର ଉପକାରେ ।
ଆମ୍ଭେ ଏଡ଼େ ଉପକାର କରି ପାରିବାକି
ବାକ୍ୟ ନ ପାଳିଲେ ଏବେ ହୋଇବାଟି ନର୍କୀ ।
ଏଣୁକରି ଆମ୍ଭଙ୍କୁ ଯେ ତୁମ୍ଭେ ଆଜ୍ଞା ଦିଅ
ତୁମ୍ଭର ବୋଲ ପାଳିଲେ ମୋକ୍ଷ ହେବ ଦେହ ।
ବୋଇଲେ କଶ୍ୟପ ତେବେ ଅବଧାନ କର
ମୋର ଦୋଷ ନାହିଁ ଏଥେ ବଶିଷ୍ଠ ବିଚାର ।
ପୁଣି ବାଳଖିଲ୍ୟେ ହେଉ ବୋଲି ତହୁଁ ଗଲେ
ସଜୀବ ବନରେ ଯାଇ ସମସ୍ତେ ମିଳିଲେ ।
ସେ ସଜୀବ ବନ କଥା କଳନା ନ ଯାଇ
କେତେବେଳେ ଜୀବ ତହିଁ ଛନ୍ତି ବୃକ୍ଷହୋଇ ।
ଯେତେବେଳେ ଯାହାକୁଟି ବିଷ୍ଣୁ ଆଜ୍ଞା ହୁଏ ।
ତେତେବେଳେ ବନୁ ଜୀବ ଦେହ ଏଥିବହେ
ଆଦିମୂଳୁ କଅଁଳ ସେ ତରୁ ବଲ୍ଲବନ୍ତି ।
ସଜୀବ କାନନ ଯାଏ ପୂରି ରହିଛନ୍ତି ।
ଏହା ନ ଜାଣିବା ଲୋକ ବୋଲେ ସଂଯମନୀ
ନୁହେଁ ସଂମମନୀ ବନ ସଜୀବ ଯେ ପୁଣି ।
ଯେତେ ଏ ପୃଥ୍ୱୀରେ ଜୀବ ମୃତ୍ୟୁକୁ ଲଭନ୍ତି
ତହୁଁ ସର୍ବେ ଯାଇ ସେହି ବନରେ ମିଳନ୍ତି ।
ସେ ବନରୁ ପୁଣି ଯେଉଁ ବୃକ୍ଷେ ଆଜ୍ଞା ହୁଏ
ସେହି ଏକା ପୃଥିବୀରେ ଆସି ଦେହ ବହେ ।
ଦେହ ଅନ୍ତେ ପୁନରପି ସେହିବନେ ଚଳେ
ତକ୍ଷଣେ ସମ୍ଭାଏ ଯାଇଁ ବୃକ୍ଷ ଆଦିମୂଳେ ।
ସେହି ଆଦିମୂଳ ବୃକ୍ଷ ସବୁ ବ୍ରହ୍ମମୟେ
ସେହି ବ୍ରହ୍ମ କ୍ଷରି ଦେହ ଅବିଦ୍ୟା ବୋଲାଏ ।
ଦେହେ ଅବିଦ୍ୟା ବିକାର ବ୍ରହ୍ମ ଅଟେ ଜାଣ
ସେ ବ୍ରହ୍ମ ପୁରିଅଛଇ ସଜୀବେ ଯାଇଣ ।
ସେ ସଜୀବ ବନେ ଯାଇ ମୂଳ ବାଳଖିଲ୍ୟେ
ଆଦିମୂଳୁଁ କାଷ୍ଠ ଭାଙ୍ଗି ଅଇଲେ ତତ୍କାଳେ ।
ବୋଝମାନ ଶିରେ ବହି ଆସନ୍ତେ ବାଳକେ
ବାଟେ ତୃଷା କଲା ଜଳ ନ ମିଳିଲା ଟିକେ ।
ଆକୁଳ ହୋଇଣ ଚିନ୍ତି ପ୍ରଭୁ ନାରାୟଣ
ବୋଇଲେ ହେ ମହାପ୍ରଭୁ ରଖ ଆମ୍ଭ ପ୍ରାଣ ।
ପର ଉପକାର ଏବେ ନ ପାରିଲୁ କରି
ବ୍ୟର୍ଥ ଆମ୍ଭ ଜୀବନ କି ହେବ ଦେହଧରି ।
ଶରୀର ବହି ନ ପାରେ ସେହି ପରହିତେ
ତାହାଙ୍କୁ ପଶୁ ସମାନେ ଲେଖି ଏ ଜଗତେ ।
ପ୍ରାଣୀମାନଙ୍କ ଅହିତେ ବଞ୍ଚେ ଦିନ ଯେହୁ
ତାହାଙ୍କର ମାଂସ ସବୁ ଗୃଧ୍ରପକ୍ଷୀ ଖାଉ ।

ଏଣୁକରି ଆମ୍ଭଙ୍କୁ ହେ ରଖ ଜଗନ୍ନାଥ
କାଷ୍ଠ ଦେଲାପରେ ପଛେ ପଛେ ସବୁ ଭ୍ରାତ ।
ଏହିକଥା ଚାହିଁ ରକ୍ଷାକର ଭଗବାନ
ସୁଦୟା କର ହେ ପ୍ରଭୁ ମିଳୁ ଜଳପାନ ।
ଏମନ୍ତ ବୋଲିଣ ଚିନ୍ତା କରୁ ବାଳ ପୋଏ
ମିଳିଲେ ତକ୍ଷଣେ ଆଗେ ଆସି ଦେବରାୟେ ।
ବୋଇଲେ ଏ ପୁତ୍ରଙ୍କର ମାତା ଆଗେ ଆମ୍ଭେ
କହିଥିଲୁ ପୂର୍ବେ ଯାହା ଫଳିଲା ଯେ ଏବେ ।
ପଡ଼ିବେ ଏ ବତ୍ସାପାଦ ଜଳେ ବୋଲିଥିଲି
ସେ ଜଳ ଏ ନ ପାଇଲେ ନ ପାରନ୍ତି ଚାଲି ।
ବହିବ ଏହାଙ୍କ ଯୋଗୁ ଗଙ୍ଗା ହୋଇ ନଦୀ
ତିନି ଧାର ହୋଇ ଫିଟିଯିବ ପୃଥ୍ୱୀ ଦେଦୀ ।
ପାଦ ନଖ କୋଣେ ମୋର ଅଛି ସିନାଲୁଚି
ଚରନ୍ତୁ ଏବେ ତା ଭକ୍ଷି କ୍ରତୁମୁନି ବତ୍ସି ।
ଏତେ ମନେ ପାଞ୍ଚିବିଷ୍ଣୁ ଦେଲେ ପାଦଟେକି
ବହିଲା ସେ ଗଙ୍ଗା ନଖ କୋଣରୁ ଭୂମିକି ।
କ୍ରତୁମୁନିଙ୍କର ପୋଏ ଦେଖି ତାହା ଡୋଳେ
ପଡ଼ିଲେ ମହା ଆତଙ୍କେ ଆସି ଗଙ୍ଗାଜଳେ ।
ଶ୍ରୀବତ୍ସ ପାଦରୁ ନୀର ଭକ୍ଷି ଜଳେ ବୁଡ଼ି
ବୋଇଲେକ କ୍ଷୁଧାତୃଷା ବିଷ୍ଣୁପାଦେ ପଡ଼ି ।
ବୋଇଲେକ ନାରାୟଣ ଶୁଏ ହେ ବାଳକେ
ଆମ୍ଭାକୁ ଗୋଚର କରି ପାରିଲେ କିକେ କେ ।
ତୁମ୍ଭେ ଯେସନେ ଆକୁଳ ହୋଇ ତୃଷା ଲାଗି
ଏହିରୂପେ ସବୁ ଆତ୍ମା ଚିହ୍ନ ହୃଦେ ଜଗି ।
ତୁମ୍ଭଙ୍କୁ କାଟିଲା ଯେହ୍ନେ ବାଧିବାରୁ ଅଙ୍ଗେ
ସବୁରି ଦେହରେ ଏହିପରି କ୍ଲେଶ ଲାଗେ ।
କୀଟୁ ବ୍ରହ୍ମ ପରିଯନ୍ତେ ସବୁ ଏକ ପ୍ରାଣ
ମାତ୍ରା ଅନୁସାରେ ମାତ୍ର କେହୁ ବଡ଼ ସାନ ।
ଏଣୁ ଆତ୍ମା ଚିହ୍ନଇ ଯେ ବିଷ୍ଣୁଙ୍କୁ ସେ ପାଇ
ବିଷ୍ଣୁଟି ସକଳ ଦେହେ ଜୀବ ଛନ୍ତି ହୋଇ ।
ସେ ଜୀବନକୁ ଶରୀରେ ଚିହ୍ନ କ୍ରତୁବାଳ
ଉଗ୍ରତପେ ଚିନ୍ତି ତୁହି ରହ ସର୍ବକାଳ ।
ଏତେ କହି ହରି ଗଲେ ବୈକୁଣ୍ଠକୁ ଚଳି
ତହିଁ ଉତ୍ତାରୁ ବାଳକେ କାଷ୍ଠ ଘେନି ମିଳି ।
କଶ୍ୟପର ଆଗେ ଆସି ହେଲେ ପରବେଶ
କାଷ୍ଠ ଥୁଅନ୍ତେ ଗୋବିନ୍ଦ ବୋଇଲେ ହେବତ୍ସ ।
ବାଳକ ବୋଇଲେ ଆଉ କି ରୂପେ ବସିବୁ
ଗୋବିନ୍ଦ ଦେଲେଣି ଆଜ୍ଞା ତପ କରି ଯିବୁ ।
କଶ୍ୟପଙ୍କ ଲାଗି ଆମ୍ଭେ ହେଲୁ ମୋକ୍ଷଗତି
ଭକ୍ଷିଲୁ ଶ୍ରୀବତ୍ସ ନୀର ଦେଖିଲୁ ଯେ ଜ୍ୟୋତି ।

ତୁମ୍ଭେ ଏବେ କରଯାଗ ଯାଉଁ ଆମ୍ଭେ ବେଗେ
ରହିବୁ ଯେ ଉଗ୍ରତପ ଚିନ୍ତି ବିଷ୍ଣୁ ଆଗେ ।
ଏତେ କହିବା ଚଳିଗଲେ ଯତି ବାଳଖିଲ୍ୟା
ଏବେ କହିବା ନାରଦ ଶୁଣ ଯଜ୍ଞଲୀଳା ।
ଚାରିବେଦରୁ ବରଣ କଲେ ବିପ୍ରଚାରି
ଋକ୍ ଯଜୁ ସାମ ଅଥର୍ବ ଏହି ବେଦ ବରି ।
ଆହୁତିର ହୋତା ହେଲେ ଋକବେଦୀବିପ୍ରେ
ଆଚାର୍ଯ୍ୟ ହେଲେ ସେ ଯାଗେ ଯଜୁର୍ବେଦୀ ବିପ୍ରେ
ସାମବେଦୀୟ ବ୍ରାହ୍ମଣ ହେଲେକ ଋତ୍ୱିଜ
ବ୍ରହ୍ମ ହୋଇଲେ ଅଥର୍ବବେଦୀ ଯେତେ ଦ୍ୱିଜ ।
ଏକ ଅକ୍ଷର ବ୍ରହ୍ମରେ ଟେକି ମନ୍ତ୍ର ସ୍ୱର
ଜାତକଲେ ଅକାରାଦି ଚଉଦ ଅକ୍ଷର ।
ସେହି ଚଉଦ ଅକ୍ଷର ଚୌଦସ୍ୱର ହୋନ୍ତି
ତହିଁର ପଞ୍ଚଅକ୍ଷର ମାତୃକା ବୋଲାନ୍ତି ।
ସେହି ସ୍ୱରମାନ ଦୀର୍ଘ ହ୍ରସ୍ୱ କୁହାଇଲେ
ପ୍ଳୁତାକ୍ଷରମାନେ ସବୁ ନାସା ବୋଲାଇଲେ
ତହିଁରୁ ଅର୍ଘ୍ୟ ଅକ୍ଷର ଆଣି ଉଚ୍ଚାରନ୍ତେ
କକାରାଦି ବର୍ଣ୍ଣଠାରୁ ମକାର ପର୍ଯ୍ୟନ୍ତେ ।
ପଞ୍ଚାଶ ଅକ୍ଷର ବର୍ଣ୍ଣେ ହେଲା ବର୍ଗ ପାଞ୍ଚ
ସେ ପାଞ୍ଚ ପଞ୍ଚମ ଗୁଣି ପୁଣି ପାଞ୍ଚ ପାଞ୍ଚ ।
ବିନ୍ଦୁ ଗୋଟିଏ ଯଦ୍ୟପି ଅକ୍ଷରେ ବସଇ
ତାହାକୁଟି ଅନୁସ୍ୱାର ବୋଲି ଜାଣ କହି ।
ସେହି ବିନ୍ଦୁ ଦୁଇ ଯେତେ ବସେ ହେଲା ପାଞ୍ଚ
ବିସର୍ଗ ନାମକୁ ବହି ପ୍ରକାଶଇ ମଞ୍ଚ ।
ବିସର୍ଗ ତିନି ରୂପରେ ବୋଲଇ ଅକ୍ଷରେ
ଗୋଛନ୍ଦଶୀ କଲେ ସେହି ଓଷ୍ଠ ନାମ ଧରେ ।
ଏକାକ୍ଷର ବ୍ରହ୍ମର ଏ ରୂପେ ଅଟେ ବାଣୀ
ପଞ୍ଚାଶ ବର୍ଣ୍ଣକୁ ଧରି ରହେ ପରିମାଣି ।
ପଞ୍ଚାଶବର୍ଣ୍ଣ ଅକ୍ଷର ଆକୃତି ଧଇଲେ
ଚବିଶାକ୍ଷର ଗାୟତ୍ରୀ ସେହୁ ବୋଲାଇଲେ ।
ସପତ ବ୍ୟାହୃତିରୂପେ ସଞ୍ଚରିଲେ ପୁଣି
ଦଶମ ପ୍ରବଣଯାକ ଅକ୍ଷରକୁ ଘେନି ।
ଗାୟତ୍ରୀ ସାବିତ୍ରୀ ଦୁଇ ଅକ୍ଷରରେ ସାର
ଗଣିତ ପ୍ରମାଣେ ଏହା ଷାଠିଏ ଅକ୍ଷର ।
ଏହି ଷାଠିଏ ଅକ୍ଷର ହେଲେ ତିନିମୂର୍ତ୍ତି
ଗାୟତ୍ରୀ ସାବିତ୍ରୀ ପୁଣି ଆଉ ସରସ୍ୱତୀ ।
କହନ୍ତି ଏ ତ୍ରିସନ୍ଧ୍ୟାରେ ଦିନମାନ ଭୋଗେ
ଋକ୍ ଯଜୁ ଅଥର୍ବ ଯେ ସାମ ବ୍ରହ୍ମ ଭାଗେ ।
ସେ ବ୍ରହ୍ମଭାଗକୁ ନେଇ ମନ୍ତ୍ରଭାଗ କଲେ
ସେ ମନ୍ତ୍ର ଏକଚାଳିଶ ଅଧ୍ୟାୟ ହୋଇଲେ ।

ସେ ମନ୍ତ୍ର ଚାଳିଶ ଅଧା ସମସ୍ତଙ୍କୁ ଲୋଡ଼ା
ତହୁଁ ମନ୍ତ୍ର ଉଚ୍ଚାରିଲେ ହୁଏ ଘୃତ ପୋଡ଼ା ।
ଶୁଣି ମନ୍ତ୍ରେ ପଞ୍ଚଭୂତ ସଂସ୍କାର କରିଲେ
ତେବେ ଯାଇ ପ୍ରତିଷ୍ଠିତ ହୋମ ହୁଏ ଭଲେ ।

ଶ୍ଲୋକ

ପରିସ୍ତରଣମାଘାରା ବାକ୍ୟଭାଗ ବନନ୍ତରଂ
ଭୁରାରିକଂରତୁର୍ବେଦ୍ ହୋମସ୍ଥାନଂ ପ୍ରଶସ୍ୟତେ
ବାଦ୍ୟଦଣ୍ଡେ ପରି ଶ୍ରେଷ୍ଠାନ୍
ଭୂତଗ୍ରାମନ୍ ପଦେ ପଦେ
ରତତ୍ରୋଦେବତାଇଷ୍ଟା ବିଷ୍ଣୁ ରୂପଂସଦାମତଂ
ଦୈତ୍ୟଦର୍ପ ହତଂ ଜ୍ଞାତ୍ୱା
ଘୃତଂଚଭକ୍ଷୟେତ୍ ସୁରାନ୍
ପ୍ରଜାପତିଂତ ଚନ୍ଦ୍ରାଞ୍ଚଅଗ୍ନି ସୋମତଥୈଚ
ଆଘ ରବି ଚକଦିକ୍ଷୁ ଭୂତଶାନ୍ତିଃ ପ୍ରଶସ୍ୟତେ
ରଘରେତୁପିଶ ଚାଂଶ୍ଚପର୍ଣ୍ଣି
ମେରାକ୍ଷ ସ୍ତ୍ୟାସ୍ତଥାଃ
ଦକ୍ଷିଣେତୁ ପ୍ରେତଗଣାଃପୂର୍ବେ ଗନ୍ଧର୍ବ ଏବଚ
ଅଗ୍ନିଃପଶ୍ଚିମ ଦିଗଭାଗେ
ଦକ୍ଷିଣେ ସୋମଏବଚ
ଚତୁର୍ଦ୍ଦିକ୍ଷୁ ଚତୁର୍ବେଦାମଧେ ଯଜ୍ଞପ୍ରଭାର୍ତ୍ତିତଂ
ଆହୁତିଂ ନଭକ୍ଷୟନ୍ତି ଯତୋବ୍ରହ୍ମାତୁ ଦକ୍ଷିଣେ
ପୂର୍ବେ ପ୍ରଜାପତିଦକ୍ଷଃ ପ୍ରଣିତାଉତ୍ତରେଯତଃ
ପଶ୍ଚାଉପାତ୍ରମାସ୍ୟାଦ୍ୟପ୍ରୋକ୍ଷଣୀଦକ୍ଷିଣତୁଯତ

ଗୀତ

ଏରୂପେ କାରିକା ସ୍ଥାପି ବଶିଷ୍ଠ ମହର୍ଷି
ହୋମେ ବସି ପଞ୍ଚାହୁତି ଦେଲେ ଅଗ୍ନି ତୋଷି ।
ଆବର ଦେବଙ୍କୁ ପୁଣ ସ୍ୱାହା ମନ୍ତ୍ର ଯେତେ
ଭଣେ ବିପ୍ର ପୀତାମ୍ବର ପଢ଼ିବେ ପ୍ରୋହିତେ ।
ସବ୍ରାହ୍ମଣମାନେ ଏହି କାରିକାକୁ ବୁଝି
ଯଜ୍ଞରେ ଆହୁତି ଦେବେ ଦେବମାନ ପୂଜି ।
ହୋମର ଦକ୍ଷିଣା ଦେଲେ ଫଳ ଯାଇ ହେବ
ଶୁଣ ବାବୁରେ ନାରଦ କହନ୍ତି ଦଇବ ।
କୁଶାଣ୍ଡି ବିଧି ନ ଜାଣି କରନ୍ତି ଯେ ହୋମ
ବଶିଷ୍ଠ ଋଷି କହିଲେ ଲାଗଇ ଅଧର୍ମ ।
ଏଣୁ ବଶିଷ୍ଠେ କୁଶାଣ୍ଡି ବିଧି ଆଚରିଲେ
ତହୁଁ ମନ୍ତ୍ର ପଢ଼ି ଯାଗେ ଆହୁତି ବିହିଲେ ।
ଘୃତ ପକାନ୍ତେ ଯେ ଜାଣ ଉପୁଜିଲା ଚରୁ
ଚରୁ ହୁଅନ୍ତେ ବଶିଷ୍ଠ କାଢ଼ିଲେ ହୋମରୁ ।
କଶ୍ୟପଙ୍କୁ ବୋଇଲେ ସେ ଯାଜ୍ଞୁ ଏବେ ଉଠ
ତୋର ପତ୍ନୀମାନଙ୍କୁ ଏ ଚରୁନେଇ ବାଣ୍ଟ ।
ସେମାନେ ଭକ୍ଷ କରିବେ ଯେଣୁ ତୋତେ ସେବା
ତେବେ ଯାଇ ତୋର ପୁତ୍ର ଉପୁଜିବେ ଅବା ।
ଯାଉଅଛୁ ଆମ୍ଭେମାନେ ଏବେ ଯେଝାପୁରେ
ହେଉ ବୋଲି କଶ୍ୟପ ଧଇଲେ ଚରୁ କରେ ।
ଚରୁ ଧରନ୍ତେ ଅଗ୍ନିକି ବିସର୍ଜନ କଲେ
ପୁଣି ଅଗ୍ନି ଶାନ୍ତି କରି ବଶିଷ୍ଠ ଚଳିଲେ ।
ଯାଆନ୍ତେ ବଶିଷ୍ଠ ସବୁ ଋଷି ଚଳିଗଲେ
କଶ୍ୟପ ଯାଇଣ ନିଜ ଗୃହେ ପ୍ରବେଶିଲେ ।
ଦେଖିଣ ଭାରିଯାମାନେ ପଚାରିଲେ ହସି
ବୋଇଲେ କି ଦ୍ରବ୍ୟ ଧରିଅଛ ମହାଋଷି ।
କଶ୍ୟପ ବୋଇଲେ ଏହି ଅଟେ ଚରୁଅନ୍ନ
ମୋତେ ଏକା ଦେଇଗଲେ ଆସି ଋଷିଜନ ।
ବୋଇଲେ ପତ୍ନୀମାନଙ୍କୁ ନେଇ ତୁମ୍ଭେ ଦିଅ
ଖାଇଲେ ଅବଶ୍ୟ ଏଥୁ ଉପୁଜିବ ପୁଅ ।
ପୁଣି ହସ ହସ ହୋଇ ସବୁ ଯୁବତୀଏ
ବୋଇଲେ ପରଷି ତେବେ ଦିଅତ ଋଷିଏ ।
ଜଣେ ତ ଖାଇବ ନାହିଁ ସମସ୍ତେ ଖାଇବୁ
ତୁମ୍ଭ କରୁଣାରୁ ଆମ୍ଭେ ପୁତ୍ରବତୀ ହେବୁ ।
କଶ୍ୟପ ବୋଇଲେ ଆଗେ ସର୍ବେ ତେବେ ବସ
ପରଷି ଦେବି ଅଚିନ୍ତେ କର ତୁମ୍ଭେ ଗ୍ରାସ ।
ତହୁଁ ପ୍ରଜାପତି ଝିଅ ସ୍ୱାମୀର ବଚନେ
ବସିଲେକ ଚରୁ ଭୁଞ୍ଜି ପୁତ୍ର ପାଞ୍ଚ ମନେ ।
କଶ୍ୟପ ଯେ ପରଷିଲେ ପ୍ରିୟାଏ ଭୁଞ୍ଜିଲେ
ଭୁଞ୍ଜୁ ଭୁଞ୍ଜୁ ତାଙ୍କ ନେତ୍ରେ ବାଳକ ଦିଶିଲେ ।
ଦଇବର ଘଟସୂତ୍ରକେ କରିବ ଆନ
ଦିଶିଲେ ଅଦିତିନେତ୍ରେ ଆସି ମଘବାନ ।
ଆବର ଯେ ଦିବାକର ଦିଶିଲେ ବରୁଣ
ଦୀତି ନେତ୍ରେ ଦେଖାଗଲା ଆସିଣ ପବନ ।
ଦିଶିଲେ କଦ୍ରୁର ନେତ୍ରେ ଅହିକୁଳ ଆସି
ବିନତା ନେତ୍ରେ ଗରୁଡ଼ ପୁଣିଗଲେ ଦିଶି ।
ଦନୁ କନ୍ୟାର ନେତ୍ରରେ ଦିଶିଲା ଦନୁଜ
ସିଂହିକା କନ୍ୟାକୁ ଦେଖାଗଲା ରାହୁ ତେଜ
ଦିଶିଲା ଅରାତି କନ୍ୟା ନେତ୍ରେ ଦିବ୍ୟଜ୍ୟୋତି
ସୁବିଜ୍ଞ ନାମରେ ହେବ ପୁତ୍ର ଉତପତ୍ତି ।
ମୁର ଦଇତ୍ୟର ସେହୁ ମନ୍ତ୍ରୀ ହେବ ଜାଣ
ଦିଶିଲେ କାଳିକାକନ୍ୟା ନେତ୍ରେ ମତ୍ସ୍ୟଗଣ ।
କ୍ରୋଧାନେତ୍ରେ କୁମ୍ଭୀର ଯେ କର୍କଟ ଦିଶିଲେ
ଶୁଣ ବାବୁରେ ନାରଦ ବିଧାତା କହିଲେ ।
ଦିଶିଲେ ଅରିଷ୍ଟାକନ୍ୟା ନେତ୍ରେ ଆସିଯେତେ
ବିଶେଷ କହୁଛି ତାଙ୍କ ନାମ ଶୁଣ ତୋତେ ।

ଶ୍ୟାମଳ ଯେ ଶ୍ୟେନପକ୍ଷୀ କାକ କ୍ଷୁଦ୍ରଚିଲେ
ଶୁକ ପିକ ମେଣ୍ଟୁଆ ଯେ କୁମ୍ଭାଟିଆ କୁଳେ ।
କପୋତ ଟିଟାଭ ପାରାବତ ହଂସ ଶାରୀ
ପାଣିକୁଆ ଗେଣ୍ଡାଳିଆ ପାରା ଯେ ଗୁଣ୍ଡାରୀ ।
ଚିତ୍ତିରୀ ତାମ୍ରଚୂଡ଼ ଯେ ଗଙ୍ଗାଇ ଡବାଇ
ଏ ଆଦି ଦିଶିଲେ ଆସି ଯାବତ ବଢ଼ାଇ ।
ରିଷ୍ଟ କନ୍ୟା ନେତ୍ରେଆସି ଦିଶିଲେକ ଯେତେ
ଶଙ୍ଖ ଶିବ କପର୍ଦ୍ଦ ଯେ କଚ୍ଛପ ସହିତେ ।
ଦିଶିଲେ କପିଳା କନ୍ୟା ନେତ୍ରେ ଗଜବାଜୀ
ଗୟଳ ହରିଣ ଗଣ୍ଡା ଗୋରୁ ପୁଞ୍ଜି ପୁଞ୍ଜି ।
ମଗର ଖର ଶଶକ ଶୂକର ଶମ୍ବର
ଶାହୋଳା ଅଜ ମେଷ ଯେ ଭଲ୍ଲୁକ କୁକୁର ।
ଖୁରାଣ୍ଟ ସୁରଭି ଓଧ ପୁଣି ଶିବା ହରି
ବ୍ୟାଘ୍ର ଆଦି ବଳୁଆ ଯେ ନକୁଳ ମଞ୍ଜରୀ ।
ଦିଶିଲେକ ଶ୍ରଦ୍ଧାକନ୍ୟା ନେତ୍ରେ ଯେତେପୁଣି
ସମସ୍ତ ସ୍ତିରୀ ପୁରୁଷ ଅଟେ ପରିମାଣି ।
ଚରୁ ଭୁଞ୍ଜି ଏ ପ୍ରକାରେ ଦିଶିଲେ ପ୍ରତିମା
ଆଚମ୍ଭିତ ହେଲେ ଦେଖି ପ୍ରଜାପତି ଜେମା ।
ସ୍ୱାମୀକୁ ଦେଖି ସମସ୍ତେ ପଚାରନ୍ତି ବସି
ବୋଲନ୍ତି ଆମ୍ଭଙ୍କୁ ଏତେରୂପ କିମ୍ପା ଦିଶି ।
କଶ୍ୟପ ବୋଇଲେ ତେବେ କହିବା ଗୋ ଶୁଣ
ସେହିମାନେ ତୁମ୍ଭର ଯେ ପୁତ୍ର ହେଲେ ଜାଣ
ଏହା ଶୁଣି ସତୀମାନେ ହୋଇଲେ ସନ୍ତୋଷ
ଏଥୁଅନ୍ତେ ନାରଦ ହେ ଶୁଣ କଥା ରସ ।
ଯେ ଯେତେ ରମିଲେ ବୀର୍ଯ୍ୟ ନପଡ଼ି ହେବକି
ନ ଜାଣିମା ଲୋକ ଓଷା ବ୍ରତ କଲେଟିକି ।
କୀଟୁ ବ୍ରହ୍ମଯାଏ ସବୁ ଅଟେ ବୀର୍ଯ୍ୟରୂପୀ
ଆତ୍ମା ସ୍ୱରୂପରେ ଅଛି ଜନ୍ତୁହୃଦେ ବ୍ୟାପି ।
ଯେତେ ଇଚ୍ଛା ତେତେ ମନ୍ତ୍ର ଜପ ଆଚରିଲେ
କଦାପି ନ ହୁଏ ସେହୁ ବୀର୍ଯ୍ୟନ ପଡ଼ିଲେ ।
ଯେତେବେଳେଟି କଶ୍ୟପ କରୁଥିଲେ ନେଇ
କନ୍ୟାଏ କନ୍ଦର୍ପ ମୋହିଲେକ ତାହା ଖାଇ ।
ସ୍ୱାମୀକୁ ମାଗିଲେ ତହୁଁ ସର୍ବେ ସହବାସ
କେ ବୋଲେ ଭୋ ପ୍ରଭୁ ମୋର ସଙ୍ଗେ ଆଗ ଆସ ।
ପତ୍ନୀଙ୍କ ଆକୁଳ ଦେଖି କଶ୍ୟପ ମହର୍ଷି
ପାଞ୍ଚିଲେ ସଂଶୟ ଏବେ ପଡ଼ିଲାକ ଆସି ।
ଏହାଙ୍କୁ ଆଜି ନିବୃତ୍ତ ନ କରିବି ଯେବେ
ଏହିକ୍ଷଣି ଗଣିକାର ପରାୟ ମାତିବେ ।
ବୋଇଲେ ଏତେକ ମନେ ପାଞ୍ଚି ରହ ରହ
ଏକ କଥା କହିବା ଗୋ ପାଳିବ କି କହ ।

କରିବ ଜଣକେ ଦିନେ ମୋତେ ଯେବେ ସେବ
ତେବେକ ତୁମ୍ଭଙ୍କୁ ଆମ୍ଭେ ସୁତନୟ ଦେବ ।
ଦିନେ ଦିନେ ଜଣେ ଜଣେ ଆସ ମୋର ପାଶ
ରାତ୍ରି ଯାପନ କରାଇ ହୁଅ ଗର୍ଭବାସ ।
ଏହା ଶୁଣି ଯୁବତୀଏ ହେଉ ବୋଲି କଲେ
କଶ୍ୟପଙ୍କ ବୋଲ ପାଳି ସର୍ବେ ଚଳିଗଲେ ।
ରହିଲେ ଯେ ଯାହା ପୁରେ ଯାଇ ତେରଜଣ
ଧାତା କହନ୍ତି ନାରଦ ଏଥୁଅନ୍ତେ ଶୁଣ ।
କନ୍ୟାମାନଙ୍କୁ କଶ୍ୟପ ନିବୃତ୍ତ କରାଇ
ଅନ୍ୟେ ଅଦୀତିଙ୍କଠାକୁ ଗଲେ ମନଦେଇ ।
ଯେ ଅଦୀତି ପ୍ରତ୍ୟକ୍ଷରେ ଅଟେ ଆଦିମାତ
ଇନ୍ଦ୍ର ସୂର୍ଯ୍ୟ ବରୁଣକୁ କରିବେକ ଜାତ ।
ହରିହର ବ୍ରହ୍ମାଅଂଶେ ହେବେ ତିନି ମୂର୍ତ୍ତି
ଏ ନିମନ୍ତେ ସେ ଅଦୀତି ଉପୁଜି ଅଛନ୍ତି ।
ସେ ଅଦୀତି ତୁଲେ ଋଷି କେଳି କରୁ କରୁ
ଖସିଲାକ ବ୍ରହ୍ମବୀର୍ଯ୍ୟ ବିନ୍ଦୁ ସରୋବରୁ ।
ତ୍ରିକୂଟ ମଣ୍ଡଳେ ଆସି ହୋଇଣ ସେ ଠୁଳ
ତିନିଗୋଟି ରୂପ ଧରି ରହିଲା ସେ ଜଳ ।
ବୋଇଲା ହେ ତାତ ଆମ୍ଭେ କିଏ ଶୁଣ କହୁ
ବୀର୍ଯ୍ୟରୂପେ ଏବେ ତୁମ୍ଭ ରେତୁ ବହିଯାଉ ।
ସଂସାର ପାଳିବା ପାଇଁ ଆସିଅଛୁ ତିନି
ବିଷ୍ଣୁଭବ ବହିଯିବୁ ତିନିଧାର ଘେନି ।
ଖସିବ ଯେ ଆଦିବିନ୍ଦୁ ଟୋପି ଇନ୍ଦ୍ରମୁନେ
ଇନ୍ଦ୍ର ନାମ ବହି ବିଷ୍ଣୁ ଜନ୍ମ ଦେବଗଣେ ।
ବ୍ରହ୍ମାଣ୍ଡଯାକ ପାଳି ସେ ବରଷିବେ ଜଳ
ଆପଣ ଆସିବେ ରାଜା ହୋଇ ସ୍ୱର୍ଗଆଳ ।
ତହିଁ ଉତ୍ତାରୁ ଖସନ୍ତେ ପୁଣି ବିନ୍ଦୁ ଟୋପି
ରୁଦ୍ରଦେବ ଜନମିବେ ହୋଇ ସୂର୍ଯ୍ୟରୂପୀ ।
ମହା ଶୁକ୍ଳରୂପୀ ସିନା ଅଟନ୍ତି ସେ କାଶୀ
ସେ ଜନ୍ମ ହେଲେ ଉଜ୍ଜ୍ୱଳ ଦିଗେ ଯିବ ଦିଶି ।
ଖସନ୍ତି ତୃତୀୟ ବିନ୍ଦୁ ଟୋପି ପୁଣ୍ୟ ଅଗ୍ରେ
ଜନ୍ମିବେ ବରୁଣ ଅଂଶେ ବ୍ରହ୍ମା ତୁମ୍ଭ ନଗ୍ରେ ।
ଏମନ୍ତେ ବୋଲି କହନ୍ତି ବୀର୍ଯ୍ୟ ଋଷି କର୍ଣ୍ଣେ
ତିନିଧାର ହୋଇ ଖସିପଡ଼ି ଇନ୍ଦ୍ରମୁନେ ।
ମାତା ରଜଠାରେ ଯାଇ ହୋଇଲେ ପ୍ରବେଶ
କଶ୍ୟପ ତା ବାକ୍ୟ ଶୁଣି ହୋଇଲେ ସନ୍ତୋଷ ।
ଅଦୀତିକୁ ବୋଇଲେ ଗୋ ଶୁଣ ଶୁଭ୍ରକେଶୀ
ଭବ ବିହି ବିଷ୍ଣୁ ତୋର ପୁତ୍ର ହେବେ ଆସି ।
ତୋହର ମୋହର ରତିରସ ସଙ୍ଗବେଳେ
ରଜମଧରେ ପ୍ରବେଶ ପ୍ରାଣ ବୀର୍ଯ୍ୟମେଳେ ।

ସେହି ରଜ ବୀର୍ଯ୍ୟରେ ଯେ ଆଶ୍ରୟ ହୋଇବ
ପ୍ରତ୍ୟକ୍ଷେ ସେ ତିନି ଆସି ରହିବ ତୋ ଗର୍ଭ ।
ଏହିକ୍ଷଣି ମୋତେ କହି ଉଦରେ ତୋଗଲେ
ସଂସାରକୁ ପାଳିବେ ସେ ଜନମ ହୋଇବେ ।
ଶୁଣିଣ ଅତି ହରଷ ହୋଇଲେ ଅଦୀତି
ଶୁକ୍ରଙ୍କର କଥା ଶୁଣି ତୁଷ୍ଟ କଲେ ମତି ।
ସଙ୍କେତ ସ୍ଥାନରୁ ଉଠି କଲେ କାର୍ଯ୍ୟମାନ
ଏହିପରି ଅତିକ୍ରମି ଗଲା କେତେ ଦିନ ।
ଦିନୁ ଦିନୁଁ ତାହାଙ୍କର ଗର୍ଭ ହୁଏ ଗରୁ
ଦଶମାସ ଅନ୍ତେ ଶିଶୁ ଜନ୍ମିଲେ ଉଦରୁ ।
ପ୍ରଥମରେ ଯେଉଁପୁତ୍ର ଜନମ ହୋଇଲା
ତାହାର ହସ୍ତ ପାଦରେ ପଦ ଦେଖାଗଲା ।
କୁଟିଳ କୁନ୍ତଳ ଅତି ସୁନ୍ଦର ଦିଶଇ
ବିକଶିତ ପଦ୍ମପ୍ରାୟେ ଦିଶେ ନେତ୍ର ଦୁଇ ।
ଅଧର ଗୋଟି ତା ଦିଶେ ବାଳସୂର୍ଯ୍ୟ ପରି
ଦିଶଇନାସିକା ଗୋଟି ତିଳପୁଷ୍ପ ସରି ।
ବଚନ ଶୁଭଇ ଯେହ୍ନେ ବାଜେ ବ୍ରହ୍ମବୀଣା
ବେନିକର୍ଣ୍ଣ ଦିଶେ ତାର ଅତି ସୁଘଟଣା ।
କଣ୍ଠ ତାସୁସଞ୍ଚ ହୃଦ ଅତି ଶୋଭାବନ
ନାଭିଗୋଟି ଦିଶେ ପଦ୍ମପତ୍ର ରସମାନ ।
ହସ୍ତୀର ଶୁଣ୍ଢ ପରାୟ ଦିଶେ ବାହୁ ଦୁଇ
ବେନି କରପଲ୍ଲବ ଯେ ଅମୂଲ୍ୟ ଅଟଇ ।
ଚମ୍ପାକଢ଼ି ପ୍ରାୟେ ଦିଶେ ତା ଅଙ୍ଗୁଷ୍ଠିମାନ
ଦ୍ୱିତୀୟା ଚନ୍ଦ୍ରମା ପ୍ରାୟ ନଖ ଦୀପ୍ତ ମାନ ।
କଟୀଭାଗ ଦିଶେ ତାର ଡମ୍ବରୁ ଆକାର
ସୁଲଚିତ ଜାନୁ ଦୁଇ ଅତି ମନୋହର ।
ଏରୂପେ ଜନ୍ମନ୍ତେ ବିଷ୍ଣୁ ଆସି ଚନ୍ଦ୍ରରୂପେ
ରୁଦ୍ର ପୁଣି ଜନମିଲେ ଆଦିତ୍ୟ ସ୍ୱରୂପେ ।
ଉପୁଜି ଅଇଲେ ରକ୍ତବର୍ଣ୍ଣ ପ୍ରାତଃକାଳେ
ଶୁକ୍ଳବର୍ଣ୍ଣ ହେଲେ ପୁଣି ଦିବସ ଅର୍ଦ୍ଧରେ ।
ସାୟଂକାଳେ ଶ୍ୟାମବର୍ଣ୍ଣେ ଅସ୍ତ ହେଲେ ପୁଣି
ମୋହିଲେ ସେ ତିନିରୂପ ନୁହନ୍ତା ଧରଣୀ ।
ବିଷ୍ଣୁରୂପୀ ରୁଦ୍ରରୂପୀ ବ୍ରହ୍ମରୂପୀ ହେଲେ
ସଂସାର ପାଳିବା ପାଇଁ ଏରୂପ ଧଇଲେ ।
ତିମିର ଅଇରି ହେଲେ ଗଗନରେ ରହି
ରବିବାରେ ଜନମିଲେ ରବିନାମ କହି ।
ପୁନରପି ଏକପୁତ୍ର ହୋଇଲା ଜନମ
ମାର୍ଗଶିର ଅମାବାସ୍ୟା ସୋମବାର ଦିନ ।
ମହା ନିରିମଳ ପୁଣି ନିର୍ବିକଳ୍ପ ଦେହୀ
ବ୍ରହ୍ମଅଙ୍ଗୁ ଜନ୍ମିବାରୁ ବରୁଣ ବୋଲାଇ ।

ଏରୂପେ ଜନ୍ମନ୍ତେ ତିନିପୁତ୍ର ତିନିଅଂଶେ
ତହୁଁ କଶ୍ୟପ ବ୍ରହ୍ମାଙ୍କୁ ଚିନ୍ତିଲେ ମାନସେ ।
ଚିନ୍ତିଣ ବ୍ରହ୍ମାଙ୍କୁ ପୁଣି ବିଷ୍ଣୁ ଚିନ୍ତାକଲେ
ବିଷ୍ଣୁ ଚିନ୍ତା କରି କରି ରୁଦ୍ର ସୁମରିଲେ ।
ଏ ରୂପେ ସ୍ମରନ୍ତେ ମିଳିଗଲେ ବ୍ରହ୍ମା ହରି
କପିଳାସୁ ପ୍ରବେଶିଲେ ଆସି ତ୍ରିପୁରାରୀ ।
ଆବର ଯେତେକ ଋଷି ବିପ୍ରେ ତହିଁ ଥିଲେ
କଶ୍ୟପ ପୁରେ ଆସିଣ ସମସ୍ତେ ମିଳିଲେ ।
ଶୁଭଇ ଯେ ଗହ ଗହ କଶ୍ୟପଙ୍କ ପୁରୀ
ବୃହସ୍ପତି ମିଳିଲେକ ପୋଥି କରେ ଧରି ।
କିନ୍ନରୀ ଅପ୍‌ସରୀ ମଧ ମିଳିଲେକ ଆସି
ଧର୍ମ ପ୍ରୋହିତ ଆସିଲେ ସାମବେଦ ଘୋଷି ।
ଦିଗପାଳ ମିଳିଲେକ ଯେଝାରୂପ ଘେନି
ପ୍ରବେଶିଲେ ନାନାଦ୍ରବ୍ୟ ଘେନି କମଳିନୀ ।
ଆଦିମାତା ଧରଣୀ ଯେ ଅନନ୍ତ ବାସୁକୀ
ଏମାନେ ଅଦୀତି ପୁତ୍ର ଆସିଛନ୍ତି ଦେଖି ।
ଏଥୁ ଅନ୍ତରେ ନାରଦ ଆନ ବାଣୀ ଶୁଣ
ପୁଚ୍ଛିଲେ କଶ୍ୟପଋଷି ବ୍ରହ୍ମାଙ୍କୁ ଚାହିଁଣ ।
ବୋଇଲେ ଭୋସ୍ୱାମୀ ମୋରହେବେ ତିନି ପୁଅ
ଏମାନଙ୍କୁ ସ୍ଥାନ ଖୋଜି ନାମ ବୁଝି ଦିଅ ।
ପୁଣି ଯାହାକୁ ଯେବଣ ଭୁବନେ ଯୋଗାଇ
ତାହା ତୁମ୍ଭେ ଖଞ୍ଜିକରି ଯାଅ ମୋତେ କହି ।
କଶ୍ୟପ ବଚନେ ତହୁଁ ପିତାମହ ହସି
ପ୍ରଥମେ ଶିଶୁକୁ କୋଳେ ଧଇଲେକ ବସି ।
ବୋଇଲେକ ଶନିବାରେ ଜନମିଲା ଏହୁ
ତେଣୁ ଏ ପୁତ୍ରର ନାମ ସୁରପତ ହେଉ ।
ସ୍ୱର୍ଗେପୁରେ ବସୁ ଯାଇ ଇନ୍ଦ୍ରପଦ ଘେନି
ବାସବ ନାମକୁ ବହୁ ବୋଲେ ପଦ୍ମଯୋନି ।
ବୋଇଲେ କଶ୍ୟପ ତେବେ ଅଭିଷେକକର
କୋଟିତୀର୍ଥ ମାନଙ୍କର ଆଣ ବେଗେ ନୀର ।
ବ୍ରହ୍ମା ବୋଇଲେ ଧରିଛୁ ଆମ୍ଭେ କମଣ୍ଡଳେ
ଇନ୍ଦ୍ରକୁ ଆମ୍ଭେ ତ ସ୍ନାନ କରାଇବା ଜଳେ ।
ଏତେ କହିଣ ବିଧାତା ଇନ୍ଦ୍ରଶିରେ ଆଣି
କଲେ ଅଭିଷେକ ଢାଳି କମଣ୍ଡଳୁ ପାଣି ।
ସ୍ନାନ କରାଇ ବାନ୍ଧିଲେ ଶିରେ ପାଟଜରି
ମୁକୁଟ ପୁଣି ବାନ୍ଧିଲେ ଲଲାଟରେ ଭରି ।
ଆପଣେ ପୁଣି ଗନ୍ଧର୍ବଗଣ କଲେ ଜାତ
ଆଜ୍ଞା ଦେଲେ ତାଙ୍କୁ ତୁମ୍ଭେ ସେବ ପୁରୁହୂତ ।
ତହୁଁ ସଭାସ୍ଥ ଲୋକଙ୍କୁ ଚାହିଁ ପିତାମହ
ବୋଇଲେ ଏ ବାସବକୁ ଦ୍ରବ୍ୟେ ଦ୍ରବ୍ୟେଦିଅ ।

ଘେନିଯାଇ ରାଜଶାଢ଼ୀ ବସୁ ସ୍ୱର୍ଗପୁରେ
ସଂସାର ଏ ପାଳୁଥାଉ ଆମ୍ଭର ବିଚାରେ ।
ବିଧାତା କହନ୍ତେ ଏହା ସର୍ବେ ହଉ କଲେ
ପ୍ରଥମେ ଶିବ ସିନ୍ଦୂର ଟୀକା ଆଗେ ଦେଲେ ।
ବେଦ ମନ୍ତ୍ରଭାଗ ଆଶୁ ଈଶାନ ପଢ଼ିଣ
ବାନ୍ଧିଲେକ ଅସରଳା ସୂତ୍ର ବିପ୍ରଗଣ ।
ଅମୃତ ଭାଣ୍ଡକୁ ଆଣି ଦେଲେ ଆଦିଶକ୍ତି
ଦେଲେ ଦିଗପାଳମାନେ ଧଳା ନୀଳ ଛତ୍ରୀ ।
ସୁଧର୍ମା ସଭାକୁ ଦେଲେ ଦେବତାଏ ଆଣି
ବସୁଧା ଜନନୀ ଦେଲେ ଇନ୍ଦ୍ର ନୀଳମଣି ।
ଐରାବତ ହସ୍ତୀ ଆଣି ବାସୁକୀ ଯେ ଦେଲେ
ବିପୁଳ ସମ୍ପତ୍ତି ଭାଗ୍ୟ ଲକ୍ଷ୍ମୀ ସମର୍ପିଲେ ।
ବୃହସ୍ପତି ରହିଲେ ତା ପାର୍ଶ୍ୱେ ଗୁରୁପଣେ
ସେବକୀ ପ୍ରାୟେ ରହିଲେ ଅପସରାଗଣେ ।
ବିଶ୍ୱକର୍ମା ନାମେ ଯେହୁ ପ୍ରଭାବସୁ ପୁଅ
ରଚ ସ୍ୱର୍ଗବୋଲି ତାକୁ କହେ ପିତାମହ ।
ଶୁଣି ବିଶ୍ୱକର୍ମା ଯାଇ ପୁର ନିର୍ମାଣିଲା
ଅମରାବତୀ ବୋଲି ସେ ନଗ୍ରନାମ ହେଲା ।
ଲକ୍ଷେକ ଯୋଜନ ପ୍ରତି କଲା ସ୍ୱର୍ଗପୁର
ଶତେ ଯୋଜନ ଅଟଇ ବାସବ ନଗର ।
ଆବର ଦେବଙ୍କ ପାଇଁ ଘର କଲା ଖଞ୍ଜା
ଓରାମାନ ବସିଅଛି ମାଣିକ୍ୟର ପଙ୍ଗା ।
ସ୍ଫଟିକ ବାଡ଼ କାନ୍ଥ ଯେ ସ୍ୱର୍ଣ୍ଣ ରୁଅ ଶ୍ରେଣୀ
ବଇଡୁର୍ଯ୍ୟ ଚାଳମାନ ମୁକ୍ତା ଝରାମଣି ।
ମର୍କତ ନୀଳା ପ୍ରବାଳ ବତା ବିରାଜଇ
ହୀରା କାଣ୍ଡରେ ମାରାଗ ମଣି ଅଛି ଛାଇ ।
ରହିଅଛି ଠାବେ ଠାବେ କୁମ୍ଭ ଯୋଡ଼ି ଯୋଡ଼ି
ଲାଗିଛି ମୁକୁତା ପାଟ ଗଣି ଧାଡ଼ି ଧାଡ଼ି ।
ଉପରେ ଚାନ୍ଦୁଆ ଦର୍ପଣର ବାଡ଼ ଟେରା
ଘରମାନଙ୍କ ପାବଚ୍ଛ ବ୍ରହ୍ମଜାତି ହୀରା ।
ସେ ପୁରର ଭୂମିଖଣ୍ଡ ସବୁହିଁ ସୁବର୍ଣ୍ଣ
ତେଣୁ ଦେବତାଙ୍କୁ ଲୋଡ଼ା ନୁହଇ ଆସନ ।
ବ୍ରହ୍ମା ହେଲେ ସେ ଭୂମିରେ ଯାଇ ଏକା ବସେ
ପ୍ରତି ଆସନ ଆଉ ତ କାହିଁ ସ୍ୱର୍ଗବାସେ ।
ଯେ ଯହିଁ ପାରଇ ତହିଁ ବସେ ଚକାମାଡ଼ି
କେ କାହାକୁ ତହିଁରେ ଯେ ଆସନ ନ ଲୋଡ଼ି ।
ଋଷି ଭଗବନ୍ତ ଧର୍ମ ରୁଦ୍ର ନାରାୟଣ
ବସିଲେ ସ୍ୱର୍ଗେ ସମସ୍ତେ ସଭାକରି ଜାଣ ।
ଏମନ୍ତେ ମହିମାବନ୍ତ ଅମର କଟକ
ପ୍ରବେଶ ହୋଇଲେ ତରିଯାନ୍ତି ପାପୀଲୋକ ।

କହିଲେ ନ ସରଇ ସେ ନଗ୍ରର ଯେ ଗୁଣ
ଯତ୍ନେ ଯାହା ବିଶ୍ୱକର୍ମା କରିଛି ନିର୍ମାଣ ।
ସେ ପୁରକୁ ବର୍ଣ୍ଣିବାକୁ କିସ ମୋର ବୁଦ୍ଧି
କେବଳ ଆଜ୍ଞା ଦେବାରୁ ପ୍ରଭୁ ଦୟାନିଧି ।
ଆହେ ସାଧୁଜନମାନେ ହୁଅ ସାବଧାନ
ମୁହି ଯେ ମୂର୍ଖ ମୋହର ଅପ୍ରାଧ ନ ଘେନ ।
ନ ଜାଣଇ ଶାସ୍ତ୍ର ମୁହିଁ ନୁହଇ ପଣ୍ଡିତ
ଲେଖି ନ ଜାଣଇ ବିଷ୍ଣୁ ମହିମା କେମନ୍ତ ।
ସୁଜନ ଗୋଷ୍ଠୀରେ କେଭେ ଦିନେ ବସିନାହିଁ
ବିପ୍ରଜାତ ବଇଷ୍ଣବ ଧର୍ମେ ଥାଏ ରହି ।
ଋଷିକୂଲ୍ୟା ତୀରେ ମୋର ନବର ଆଖଡ଼ା
ଶ୍ରୀକ୍ଷେତ୍ର ମଣ୍ଡଳକୁ ସେ ବାରଯୁଣ ଛଡ଼ା ।
ଭୂମି ବାଡ଼ି ବୃତ୍ତି ମୋର କିଛି ହିଁ ତ ନାହିଁ
କେବଳ ବିଷ୍ଣୁଙ୍କ ନାମ ସର୍ବଦା ଘୋଷଇ ।
ଦେଶ ବିଦେଶରେ ଭୂମି ଆଣଇ ବା କିସ
ଭୋଗ ନଦେଇ ସିଂହକୁ କରେ ତାହା ଗ୍ରାସ ।
ଏଥକୁ ପୁଚ୍ଛନ୍ତି ସାଧୁଜନେ ମୋତେ ହସି
ସେ କୃଷି ଗୋଟି କେମନ୍ତେ କହତା ବିଶେଷି ।
ସେ କୃଷିର ଆୟ କେତେ କହ ତାଙ୍କ ଦେଶେ
ସନ୍ତୋଷେ ଶୁଣିଣ ମୁହିଁ କହେ ତାଙ୍କ ପାଶେ ।
ଆହେ ସାଧୁଜନ ମୋତେ ପଚାରିଲ ଯାହା
ଯହିଁ କୃଷି କରୁଅଛି କହେ ଶୁଣ ତାହା ।
ଅଶେଷ ଜନଙ୍କ ଚିନ୍ତାମଣି ହୃଷୀକେଶ
ନିରତେ ତାହାଙ୍କ ପାଦପଦ୍ମେ ଆମ୍ଭ ଚାଷ ।
ସେ କୃଷି ଯେସନେ ବିଷ ହୁଏ ମୋର ଶୁଣ
ସାଧୁଜନେ ଯାହା ପାଇ କରଇ କର୍ଷଣ ।
ସେ କୃଷିରେ ଇନ୍ଦ୍ର କେଭେ ନ କରଇ ବୃଷ୍ଟି
ବୃଷ୍ଟି କଲେ ହେଁ ତଥାପି ନ ତିନ୍ତଇ ମାଟି ।
ସହସ୍ର କିରଣେ ସୂର୍ଯ୍ୟ ଥିବ ଯେବେ ଉଇଁ
ନ ଶୁଖଇ ସେହି ଭୂମି କୃଷି କଲେ ତହିଁ ।
ସେ ବୃତ୍ତିଖଣ୍ଡ ମୋହର ଅଟଇ ଅମାପ
ନଦିଏ କର ତହିଁ ନ ଥୋକେ କାର ଚୋପ ।
କୃଷ୍ଣ କରୁଣାଜଳେ ସେ କୃଷି କଅଁଳଇ
ନିତି ଭୂମି ତୋଳୁଥିଲେ ତିଳେ ନ ସରଇ ।
ଭୋଜନ କରି ସେ କୃଷି ଦିନ ଆମ୍ଭେ ହରୁ
ସମସ୍ତେ ସୁଖୀ ହୁଅନ୍ତୁ ବୋଲି ବାଞ୍ଛାକରୁ ।
ଏଥକୁ ସାଧୁଜନେ ନ ଘେନ ମୋର ଦୋଷ
ଶ୍ରୀହରି ଚରଣେ ମୁହିଁ ପୀତାମ୍ବର ଦାଶ ।



## ଶଚୀଦେବୀ ଜନ୍ମ ଓ ବିବାହ

ଏଥୁଅନ୍ତେ ବିଧାତାଙ୍କୁ ସେ ନାରଦ ମୁନି
ଇନ୍ଦ୍ରର କଥା ଲେଉଟି ପଚାରିଲେ ପୁଣି ।
ଭୋ ପିତା କହ ବାସବ ସ୍ୱର୍ଗେ ରାଜା ହେଲା
ତହୁଁ ଉତ୍ତାରୁ ପୁଣି କି କଥା ଉପୁଜିଲା ।
ବ୍ରହ୍ମାଯେ ବୋଇଲେ ତେବେ କହିବାତ ଆଦ୍ୟେ
ଇନ୍ଦ୍ରଙ୍କୁ ସ୍ୱର୍ଗେ ବସାନ୍ତେ ନେଇ ରାଜପଦେ ।
ନାରଦ ଥିଲେ ଯେ ତହିଁ ପାଞ୍ଚିଲେ କଥାଏ
ବୋଇଲେ କାହିଁକି ଇନ୍ଦ୍ର ଅଭିଷେକ ହୋଏ ।
ଭାରିଯା ନଥାଇ ଗୃହୀକେବେ କେହ୍ନେ ନାକେ
ନ ପିଅନ୍ତି ତା ହାତରୁ ପାଣି ପିତୃଲୋକେ ।
ଭାରିଯା ନଥାଇ ଯେହ୍ନୁ ଅଭିଷେକ ହୋଏ
ବିଧବା କନ୍ୟା ମଣ୍ଡିଲା ପ୍ରାୟେ ଶୋଭାପାଏ ।
ଏ କିମ୍ପା ପତ୍ନୀ ନ ଥାଇ ହେଲା ଅଭିଷେକ
ଏମନ୍ତ ପାଞ୍ଚି କହିଲେ ମୁନି ବେଦବାକ୍ୟ ।
ନାରଦ ଯା କହିବାରୁ ହସିଲେ ଈଶ୍ୱର
ବୋଇଲେ କହିଲ ସତ ସିନା ମୁନିବର ।
ପତ୍ନୀ ନ ଥିଲେ ଜନ୍ମରୁ ପୁତ୍ର ନ ଜନ୍ମଇ
ପୁତ୍ର ନ ଜନ୍ମିଲେ ତ ସେ ଅପୁତ୍ରିକ ହୋଇ ।
ପୁରୁଷ ହୋଇଣ ଯେବେ ଅପୁତ୍ରିକ ହ୍ୱନ୍ତି
ମହାପାପୀରେ ତାହାଙ୍କୁ ସଂସାରେ ଲେଖନ୍ତି ।
ଅପୁତ୍ରିକ ଲୋକ ଯେଉଁ ବଂଶେ ରହିଥାଇ
ସେ ବଂଶ ଲୋକ ଅବଶ୍ୟ କାଳେ ଦୁଃଖପାଇ
ଅପୁତ୍ରିକ ଲୋକ ଯାଇ ବସେ ଯେଉଁଠାରେ
ତାଳେ ପରିଯନ୍ତେ ପୃଥ୍ୱୀ ଅଶୁଦ୍ଧକୁ ଧରେ ।
ସେ ପୃଥ୍ୱୀ ଚଣ୍ଡାଳ ହାତେ ଖୋଳି ପକାଇବ
ଅନ୍ୟ ମୃତ୍ତିକା ଆଣିଣ ତହିଁରେ ଢାଳିବ ।
ତହିଁପରେ ଶତେଦିନ କରିବ ଆହୁତି
ତେବେ ଜାଣ ଶୁଦ୍ଧ ହୁଏ ସେହି ବସୁମତୀ ।
ଅପୁତ୍ରିକ ଲୋକଗୋଟି କେଉଁ ଦେଶେ ଥାଇ
ତାହାର ମୁଖକୁ ଜାଣ ଚାହିଁ ନ ଯୋଗାଇ ।
ତଥାପି ଅଜ୍ଞାନେ ଯେବେ ଚାହିଁବ ତାହାକୁ
ବ୍ରାହ୍ମଣ ମୁଖୁ ଶୁଣିବ ବସି ପୁରାଣକୁ ।
ସନ୍ତୋଷ କରି ଦକ୍ଷିଣା ଦାନ ତାଙ୍କୁ ଦେବ
ଅପୁତ୍ରିକକୁ ଚାହିଁବା ଦୋଷ ତେବେ ଯିବ ।
ଅପୁତ୍ରିକ ଲୋକଙ୍କର ହାତେ ହୋମ କଲେ
ସେହି ହବିଭାଗ ଅଗ୍ନି ନ ପାଆନ୍ତି ଭଲେ ।
ଅପୁତ୍ରିକ ହାତୁ ଯେବେ ଛୁଁଇବଟି ପାଣି
ଚଣ୍ଡାଳର ଜଳ ତୁଲେ ସେ ଜଳକୁ ଗଣି ।
ଏଣୁକରି ପୁତ୍ରଗୋଟି ଯାହାର ନ ଥାଇ
ଜୀବନ୍ତେ ଅମୋକ୍ଷ ସେହି ମଲେ ନର୍କଯାଇ ।
ବସିବ ସଭାରେ ଯେବେ ଅପୁତ୍ରିକ ଘେନି
ସେ ଦିନ ସେ ସଭାରେ ସୁକୃତ ହେବ ହାନି ।
ଅପୁତ୍ରିକ ଲୋକର ତ ସବୁ ପାପ ଲେଖା
ମୁଁ କିମ୍ପା ଏ ଦୋଷେ ଦେଲି ସିନ୍ଦୂରର ଟିକା ।
ବ୍ରହ୍ମା ହେଲେ ହେଁ କି ବୋଲି ଦେଲେ ତୀର୍ଥଜଳ
ବିଷ୍ଣୁ ଏକାହିଁ ନଦେଲେ ଜାଣେ ସେ ସକଳ ।
ଛଡାଇଣ ତେବେନେବା ଆମ୍ଭଦେବା ଦ୍ରବ୍ୟ
ଏମନ୍ତ ବୋଲିଣ ଗୋଳ ଲଗାଇଲେ ଶିବ ।
ଶିବ ନାରଦଙ୍କର ଏ ବଚନକୁ ଶୁଣି
ହସିଲେକ ନାରାୟଣ ମନେ ମନେ ଗୁଣି ।
ଗୋବିନ୍ଦ ବୋଇଲେ ଭଲ ବାଛୁ ସଦାଶିବ
କେମନ୍ତେ ନେବୁ ବୋଲୁଛୁ ଯାଚିଦେଲେ ଦ୍ରବ୍ୟ ।
ଆଜଯାଏ ଦେଇ କେହି ନେଇ ନାହିଁ ମାଗି
ନୋହିଲେ ବୋଲନ୍ତି ତତେ ତୁ ବ୍ରହ୍ମାଣ୍ଡ ଯୋଗୀ ।
ଯୋଗୀ ହେଲେ ନେବି ବୋଲି ନ ବୋଲନ୍ତା ତୁଣ୍ଡ
ଆଉ କିଛି ନାହିଁ ସିନ୍ଦୂରର ଟିକା ଖଣ୍ଡେ ।
ଏତେକ ଦ୍ରବ୍ୟ ବୋଲି କି ସଭାରୁହେ ନେବ
ଏମନ୍ତ କହି ହସିଲେ ତହିଁ ବସୁଦେବ ।
ନାରାୟଣ ହସନ୍ତେଣ କୋପିଲେ କାମାରି
ବୋଇଲେ ତୋହର ପ୍ରାୟେ ହୋଇବକି ହରି ।
ମହାପ୍ରଳୟ କଲେ ଯେ ମଧୁ ଦଇତ୍ୟକୁ
ସ୍ତିରୀ ରୂପକୁ ବହି ଯେ ଭୁଲାଇଲା ତାକୁ ।
ତୋ ମିଥ୍ୟାଯୋନି ଦେଖି ସେ ପ୍ରାଣ ବିସର୍ଜିଲା
ପୁରୁଷଟା ସ୍ତିରୀ ହେଲୁ ଲାଜ ନ ମାଡ଼ିଲା ।
ତୁ ଗୋବିନ୍ଦ ବୋଲି ଏହା ସଭା ମଧ୍ୟେ କହୁ
ସ୍ତିରୀରୂପେ ହେଲା ପ୍ରାୟ ନୁହଇଟି ଏହୁ ।
ସ୍ତିରୀର ରୂପ ଛାର ତ ପୁରୁଷକୁ ସଜ
ତଥାପି ହେଲୁ ସ୍ତିରୀ ଯେ କଲୁ କେଉଁକାର୍ଯ୍ୟ ।
ସ୍ତିରୀହୋଇ ସ୍ତିରୀଭୋଗ ନକରୁ ତୁ ଯେବେ
ସ୍ତିରୀ ପୁରୁଷ କାହାର ହେଲୁ ସିନା ତେବେ ।
ହରି ବୋଇଲେ ହର ତୁ ବ୍ରହ୍ମଜ୍ଞାନୀ ପରା
ସ୍ତିରୀ ପୁରୁଷରୁ କେହ୍ନେ ବାହାରିଲା ଭଲା ।
ଅଛିଦ୍ରରୂପେ ପବିତ୍ର ମୁଁ ତ ଅଛି ପୂରି
ତେଣୁ ସକଳେ ବୋଲନ୍ତି ଜଗନ୍ମୟ ହରି ।
ତୁହି ମୁହିଁ ଏହି ସେହି ଆବର ଯେ ଜାଣ
କୀଟରୁ ବ୍ରହ୍ମଯାଏ ତ ସବୁରି ମୁଁ ଜାଣ ।
ଅନ୍ତର ହୋଇଣ ତେବେ କାହିଁଅଛି କହ
ସ୍ତିରୀ ଯେ ପୁରୁଷ ଆଦି ସବୁ ମୋର ଦେହ ।

ଏ ହେତୁ ହେଲେ ବୋଲଇ ସିନା ସାଧୁଜନ
ସାଧିନୁ ତୁ ସାଚ କଚ୍ଛ ବସି କି କି ଜ୍ଞାନ ।
ଉପୁଜେ ଯେ ଯାହା ପୁଣ୍ୟବନ୍ତଁ ରଜବୀର୍ଯ୍ୟେ
ନଜାଣି ପ୍ରାଣୀଙ୍କୁ ଭିନ୍ନ କରୁଥାନ୍ତି ବାଳେ ।
ପାତ୍ର ଅନୁସାରେ ବାସ ସର୍ବଜୀବେ ମୁହିଁ
ସ୍ତିରୀ ପୁରୁଷ ବୋଲି ମୋ ଭିନ୍ନାଭିନ୍ନ ନାହିଁ ।
ହର ବୋଇଲେ ହରି ତୁ ଅଛୁ ଯୋଗେ ପୁରି
ଇନ୍ଦ୍ରଙ୍କୁ ଏଥେ ନ ଦେଲୁ କିମ୍ପା ଏକସ୍ତିରୀ ।
ନାରଦ ହେଲେ କାହିଁକି କହନ୍ତେ କଥାଏ
ତୁ ଦେଲେ କିନହୁଅନ୍ତା ନାମ ଦେବରାୟେ ।
ଦେଖିବା ସ୍ତିରୀଜଣେ ତ ଦେବୁ ଯେବେ ଆଜ
ତେବେ ହରି ବହିବୁ ତୁ ନାମ ଦେବରାଜ ।
ନଦେଲେ କି ଦେବକୁଳେ ଦେବରାଜ ହେବୁ
ହେଲେ ସିନା ଦେବେ ଦେବରାଜ ବୋଲାଇବୁ ।
ଦେବୀ ଏକ ଯେବେ ଦେଇପାରୁ ବାସବକୁ
ତେବେ ଦେବରାଜ ପଦ ବହିବୁ କାଳକୁ ।
ଏରୂପେ କହିଣ ଭବ ଲଗାନ୍ତେ ଭାବନା
ଭାବଗ୍ରାହୀ ବୋଇଲେ ଯେ ଦେବା ଏକକନ୍ୟା ।
ଈଶ୍ୱର କହିବା ବାଣୀ ଅନ୍ୟଥାହିଁ ନୋହୁ
ଅଙ୍କାର ଲାଗିହୋଇ କନ୍ୟା ଜାତ ହେଉ ।
ଏମନ୍ତ ବିଚାରି ହରି ଦନ୍ତେ ଉଠି ଘଷି
ତତକ୍ଷଣ ପଡ଼ିଲା ଯେ ମଳି ଅଙ୍ଗୁ କିସ ।
ସେ ମଳି ଗୋଟିକ ପ୍ରଭୁ ପିତୁଳା ଗଢ଼ିଲେ
ଯୁବତୀଏ ହୁଅ ବୋଲି ଜୀବନ୍ୟାସ କଲେ ।
ଶ୍ରୀହରିଙ୍କ କଳ୍ପନାରୁ ହେଲା ସେ ଯୁବତୀ
ଦିଶିଲାକ ଚନ୍ଦ୍ରମାକୁ ଜିଣି ରୂପକାନ୍ତି ।
ଅପୂର୍ବ ମଣି ତାହାକୁ ଦେବେଛନ୍ତି ଚାହିଁ
ଆଶ୍ଚର୍ଯ୍ୟ ହେଉଅଛନ୍ତି ହୋଇ କୁହାକୁହି ।
କେ ବୋଇଲା କାହୁଁ ଏ ତ ଅଇଲା ଅପୂର୍ବ
କିବା ଇଚ୍ଛିଲା ମୋହିବ ବ୍ରହ୍ମା ବିଷ୍ଣୁ ଶିବ ।
ଯୁବତୀକୁଳର ଏ ତ ଅଟଇ ଅଗ୍ରଣୀ
ଗୁଞ୍ଜାଫଳ ମଧ୍ୟେ ଯେହ୍ନେ ପଦ୍ମରାଗ ମଣି ।
ତେମନ୍ତ ଉପମା ଦିଶେ ଏ ସ୍ତିରୀରତନ
କୁଟିଳ କବରୀ ଭାର ନିନ୍ଦେ ନବଘନ ।
ନାସା ଘଟଣାକୁ ନାହିଁ ବ୍ରହ୍ମାଣ୍ଡର ଲକ୍ଷ୍ୟ .
ତିଳକୁସୁମ ହେଲେ ହେଁ ଦିଶିବ ଯେ ତୁଚ୍ଛ ।
କର୍ଣ୍ଣରେ ଲୁଳଇ କାପ ଯେବଣ ହାଟକ
ଫୁଟି ଦିଶୁଅଛି ଜ୍ୟୋତି ଜିଣି ଅଗ୍ନି ଅର୍କ ।
ଯୁବତୀ ନେତ୍ରେ ମଦନ ଅଛି ବିଜେକରି
କ୍ଷଣେ ଚାହିଁଲେ ପୁରୁଷ ଜୀବ ନେବ ହରି ।
ଡାଳିମ୍ବ ପୁଷ୍ପର ପ୍ରାୟ ଅଧର ତ ଦିଶେ
ବଚନ ଭାଷନ୍ତେ ଢଳି ପଡ଼ିବେ ତ୍ରିଦଶେ ।
କର୍ଣ୍ଣରେ ଯେବଣ ଚାପସରି ମାଳ ଘଞ୍ଚେ
ଏ ବିପୁଳ ହୃଦୟକୁ ପୀନସ୍ତନ ସଞ୍ଚେ ।
ହେମ ମୃଣାଳ ପରାୟ ଦିଶେ ରୋମ ଫୁଟି
ଉମ୍ଭରୁଠାରୁ ଅତ୍ୟନ୍ତ ଅଟେ ସୁରକଟି ।
ଧନ୍ୟ ଏ ଜାନୁ ଦୁଇକୁ ନାହିଁ କିଛି ଲକ୍ଷ୍ୟ
ଉଲଟ ରହିଛି କିବା ସ୍ୱର୍ଣ୍ଣ ରମ୍ଭାବୃକ୍ଷ ।
ତେମନ୍ତ ଶୋଭା ଦିଶଇ ଏହା ବେନି ଜାନୁ
ଚଳନ୍ତେ ଗଗନେ ଯେହ୍ନେ ନ ଥରଇ ଭାନୁ ।
ଆରକ୍ତ କାଞ୍ଚନ ପ୍ରାୟେ ଦିଶେ ପାଦତଳି
ଅଶୋକ କଳିକା ଜିଣି ତଳିପା ଅଙ୍ଗୁଳି ।
ମାଣିକ୍ୟ ମଧରେ ଯେହ୍ନେ ବ୍ରହ୍ମଜାତି ହୀରା
ତେସନେ ଅଙ୍ଗୁଳି ଅଗ୍ରେ ନଖ ଦିଶେ ତ୍ୱରା ।
ଏମନ୍ତ ହୋଇଣ ଉରୁଁ ଉପୁଜନ୍ତେ ବାଳୀ
ଉର୍ବଶୀ ବୋଲି ୟାନାମ ଦେଲେ ବନମାଳି ।
ସଭା ମଧରେ ନେଇଣ ଇନ୍ଦ୍ରେ ସମର୍ପିଲେ
ବିଧାତା ଦେଖିଣ ତାକୁ ମୋହିତ ହୋଇଲେ ।
ଅଙ୍ଗେ କାମ ଘାରିବାରୁ ନ ପାରିଲେ ସହି
ଚୁମ୍ବିଲେ ସେ କନ୍ୟା ମୁଖଗୋଟି ବ୍ରହ୍ମାଯାଇ ।
କ୍ରୀଡ଼ାକୁ ଯେ ଦୁଇକରି କ୍ରୀଡ଼ା ଆରମ୍ଭିଲେ
ଏକଥା ଶୁଣନ୍ତେ ପୁଣି ନାରଦ ପୁଚ୍ଛିଲେ ।
ବୋଇଲେ ପିତାକୁ ସ୍ୱାମୀ କେମନ୍ତ ଏ ହେଲା
ଇନ୍ଦ୍ରଦତ୍ତ କନ୍ୟା ନେଇ ବ୍ରହ୍ମା ଭୋଗକଲା ।
ବିଡ଼ୋଜାକୁ ତେବେ କନ୍ୟା କିପରି ସେ ଦେଲେ
ଏକଥା ଶୁଣି ସନ୍ଦେହ ଲାଗେ ମୋତେ ଭଲେ ।
ପୁତ୍ରର ବଚନ ଶୁଣି ହସି ପଦ୍ମଯୋନି
ବୋଇଲେରେ ତାହା ବାବୁ କହିବା ଏକ୍ଷଣି ।
ଇନ୍ଦ୍ରଦତ୍ତ କନ୍ୟାଯେଣୁ ବିଧାତା ହରିଲା
ସ୍ୱର୍ଗେ ଅପସରା ତେଣୁ ହୋଇ ସେ ରହିଲା ।
ପ୍ରଥମରୁ ତାକୁ ଯେଣୁ ଲାଗିଲା କଳଙ୍କ
ନୋହିଲେ ବାସବ ତାହା ସଙ୍ଗେ ଅଭିଷେକ ।
ଦେଖି ପିତାମହ ଏହା ଲଜ୍ଜିତ ହୋଇଲା
ତତକ୍ଷଣେ ଅନ୍ୟ ଏକ କନ୍ୟା ଲୋଡ଼ିଗଲା ।
ସକଳ ବ୍ରହ୍ମାଣ୍ଡ ଖୋଜି ନ ପାଇଲା କାହିଁ
ଚାରିଜାତି ଅଷ୍ଟାଦଶ ବର୍ଣ୍ଣଯାକେ ନାହିଁ ।
ଦନୁଜ କୁଳରେ ପୁଣି ଲୋଡ଼ି ପିତାମହ
ସ୍ତିରୀରତ୍ନ ନ ପାଇଣ ଆକୁଳିତ ଦେହ ।
କଥା ଏକ ମନ ମଧ୍ୟେ ପାଞ୍ଚେ ତହିଁ ବସି
ବୋଲେ ଯଜ୍ଞକଲେ ନିଶ୍ଚେ ମିଳିବ ସୁକେଶୀ ।

ସମସ୍ତେ ଦେଖୁଣ ଥିବେ ଇନ୍ଦ୍ରେ ଦେବି ନେଇ
ତେବେ ବଡ଼ପଣ ମୋର ରହିବଟି ଯାଇ ।
ପାଞ୍ଚିଣ ଏମନ୍ତ ବ୍ରହ୍ମା କଲେ ବସି ଯାଗ
ତିନିବେଦୁ ମନ୍ତ୍ରପଢ଼ି ଦେଲା ହବିର୍ଭାଗ ।
ହବି ଦେଇ ଦେଇ ଯହୁଁ ନୋହିଲା ଦୁହିତା
ଶୂନ୍ୟରୁ ଶବଦ ଶୁଭେ ଶୁଣ ଆହେ ଧାତା ।
ଯେଉଁ ହଂସକାଣ୍ଡି ମନ୍ତ୍ର ପଢ଼ିଲୁ ତୁ ବେଦେ
ସେ ମନ୍ତ୍ର ତ ଜୀବ ଜପୁଅଛି ସବୁ ହୃଦେ ।
ସେ ଜପକୁ ତୁମ୍ଭେ ଏବେ ମୂର୍ତ୍ତିମନ୍ତ କର
ସ୍ତ୍ରୀ ପୁରୁଷ ରୂପେ ଜାତ ହେବେ କନ୍ୟାବର ।
ହଂସ ଆବର ହଂସିନୀ ଅଟନ୍ତି ସେ ଦୁଇ
ହଂସ ପୁରୁଷ ଅଟଇ ହଂସିନୀ ଯେ ମାଇ ।
ସେ ହଂସ ହଂସିନୀ ଦୁଇ ବିଭାକରି ଦିଅ
ପତିପତ୍ନୀ ସ୍ୱରୂପେ ସେ ଉପୁଜାନ୍ତୁ ଝିଅ ।
ଇନ୍ଦ୍ରଙ୍କୁ ତୁ ସେ ଦୁହିତା ବିଭାକର ନେଇ
ଯଜ୍ଞରୁ ସେ ଜନ୍ମହେବ ଶୁଣ କହୁଥାଇ ।
ବୃକ୍ଷ ଗୋଟିଏ ଜନ୍ମିବ ଧନୁ କର ସୃଜ
ସେ ଧନୁରେ ବହୁତର ଉପୁଜିବ କାର୍ଯ୍ୟ ।
ଏସନ ଶୂନ୍ୟେ ଶୁଭନ୍ତେ ନିରାକାର ବାଣୀ
କଲେ ଯଜ୍ଞ ସମାପନ ବିଧାତା ସେ କ୍ଷଣି ।
ଯଜ୍ଞ ସମାପ୍ତ ହୁଅନ୍ତେ ଜନ୍ମିଲା ବାଉଁଶ
ସେ ବାଉଁଶ କଥା ତୋତେ କହିବା ରେ ଶିଷ୍ୟ ।
ହଂସ ହଂସିନୀର ବିଭା ଶୁଣ ଆଗେ ଭଲେ
ନିରାକାର ବାକ୍ୟେ ବ୍ରହ୍ମା ମୂର୍ତ୍ତିମନ୍ତ କଲେ ।
ତିନି ତୁହୁଡ଼ି ତ୍ରିକୁଟ ତ୍ରିମୁନାର ସ୍ଥାନେ
ବେନି ନାଳ ଖୋଲି ଦେହୀ ସ୍ଥାପିଲେ ଯତନେ ।
ଶ୍ୱେତବର୍ଣ୍ଣ ଅଟନ୍ତି ସେ ହଂସ ହଂସୀ ଦୁଇ
ବିଭାକଲେ ବ୍ରହ୍ମା ତାଙ୍କୁ ବେଦୀରେ ବସାଇ ।
ବସିଲେ ଜୀବ ପରମ ହୋଇ ବେଦୀ ମାଡ଼ି
ହସ୍ତଗ୍ରନ୍ଥି ଦେଲେ ତାଙ୍କୁ ଦୁଇହସ୍ତ ଯୋଡ଼ି ।
ବିବାହ ଶେଷରେ ବେନିହେଲେ ଏକଯୋଗ
ସଂସାର ମୁଣ୍ଡରେ ଜାତ କଲେ ବେନିଶୃଙ୍ଗ ।
ସେ ଶୃଙ୍ଗତଟରେ ହଂସ ହଂସିନୀକୁ ଘେନି
ଅନୁକ୍ଷଣେ କ୍ରୀଡ଼ାକଲା ଦିବସ ରଜନୀ ।
ହଂସ ରମନ୍ତେ ହଂସିନୀ ଗର୍ଭବତୀ ହେଲା
ସକାର ଜଠରେ ଯାଇ ହକାର ଜନ୍ମିଲା ।
ସକାରରୁ ଜନମିଣ ଧରନ୍ତେ ଶରୀର
ଶଚୀ ବୋଲି କରି ନାମ ହୋଇଗଲା ତାର ।
ପରମ ସ୍ୱରୁପ ଜନ୍ମ ହୃଦେ ଦିବ୍ୟରୂପ
ପୁଲୋମଜା ବୋଲି ନାମଦେଲେ ମାଆ ବାପ ।

ଏଥୁଉତ୍ତାରେ ନାରଦ କନ୍ୟା କଥା ଶୁଣ
ଜନ୍ମ ହୋଇ ପିତାକୁ ସେ ଜଣ୍ଣାଇଲା ପୁଣ ।
ବୋଇଲେ ଭୋ ହଂସ ମୋତେ କଲ କିମ୍ପା ଦୂର
କେତେ ତପେ ମିଶିଥିଲି ତୁମ୍ଭର ଶରୀର ।
ମୁଁ ତୁମ୍ଭର ଦେହ ତେଜି ନ ଯିବି ଗୋସାଇଁ
କି ହେବ କୁଟିଳ ହିଂସା ପାଦଦେହ ବହି ।
ଦେହ ବହି ପରହିତେ ଯେହୁ ନ ରହଇ
ତାହାର ଜୀବନ ଶ୍ୱାନ ସମାନ ଅଟଇ ।
ପର ଉପକାର କେବେ ନ କରଇ ଯେହୁ
ତାହାର ମାଂସକୁ କାକ ଗୃଧ୍ରପକ୍ଷୀ ଖାଉ ।
ଦେହ ବହି ପରକୁ ଯେ ପ୍ରାଣୀ ନ ଉଦ୍ଧରେ
ଅନନ୍ତେ ସେ ବୃଥା ମଲେ ପଡ଼େ ନରକରେ ।
ଦେହ ବହି ପରକୁ ସେ ନୁହେଁ ହିତକାରୀ
ସେ ଲୋକ ସଂସାରେ ଜାଣ ଜୀଉଁ ଜୀଉଁ ମରି ।
ମୁଁ ଏବେ ତୁମ୍ଭର ଦେହ ଛାଡ଼ି ଯେବେ ଯିବି
ଏ ଦେହ ବହି କାହାର କି ପୁଣ କରିବି ।
ହିଂସା ମିଛ ମାୟାରେ ଯେ ହେବ ସିନା ଘାଣ୍ଟି
ଏଣୁ କରି ଶ୍ରୀଛାମୁରେ ନ ଯିବି ମୁଁ ଫିଟି ।
କାହିଁକି ଏ ସୁଖ ତେଜ୍ୟା କରିଯିବି ମୁହିଁ
ଯା ଶୁଣି ପରମ ହଂସ ହସେ ତାକୁ ଚାହିଁ ।
ପୁଣି ଦୁହିତାକୁ ବୋଲେ ଶୁଣ ଗୋ ଦୁଲଣୀ
ଗଲେ ତୁହି ହେବ ସୃଷ୍ଟି ସର୍ଜ୍ଜନା ଏକ୍ଷଣି ।
ଇନ୍ଦ୍ର ତୋତେ ବିଭାହେଲେ କାମ ଜନ୍ମହେବ
ସେ କାମ ଯାଇଣ ସବୁଦେହେ ବିଶ୍ରାମିବ ।
ତେବେ ସଂସାରେ ଅନେକ ଜୀବ ଉପୁଜିବେ
ଛପନ କୋଟି ବର୍ଣ୍ଣରେ ରୂପ ପ୍ରକାଶିବେ ।
ଏଡ଼େ ଉପକାର ଯେବେ ଅର୍ଜ୍ଜିବୁ ତୁ ଯାଇ
ଏଥୁ ଅଧିକ କି ପୁଣ୍ୟ ଅଛି ଦେହ ବହି ।
ଏଣୁ ସତ୍ୱର ତୁ ଯାଅ ବ୍ରହ୍ମା ତୋତେ ନେଉ
ତୋହର ଏ ଯଶ ସ୍ୱର୍ଗେ ଯୁଗେ ଯୁଗେ ଥାଉ
ଏସନ ପ୍ରକାରେ ହଂସ ଶଚୀକୁ ତିଆରି
ବ୍ରହ୍ମା ଆଗେ ନେଇ ଦେଲା ସମର୍ପଣ କରି ।
କନ୍ୟାକୁ ଦେଖି ସନ୍ତୋଷ ହେଲେ ପରମେଷ୍ଠୀ
ତହିଁ ସ୍ୱର୍ଗେ ଚଳିଗଲେ ଘେନି ବିମ୍ବ ଓଷ୍ଠୀ
ସଭାମଧ୍ୟେ ନେଇ ତାକୁ ବାସବକୁ ଦେଲେ
କନ୍ୟା ପାଇ ହରଷିତେ ଇନ୍ଦ୍ର ବିଭାହେଲେ ।
ଶ୍ରୀନାରାୟଣଙ୍କ କୋଳେ ମହାଲକ୍ଷ୍ମୀ ଯେହ୍ନେ
ବାସବଙ୍କ କୋଳେ ଶଚୀ ଦିଶିଲେ ତେସନେ ।
ବୋଇଲେ ଈଶ୍ୱର ଏହୁ କେଉଁ କୁଳେ ଜାତ
କହିବା ହେଉ ହେ ବ୍ରହ୍ମା ଶୁଣିବା ସମସ୍ତ ।

ବିଧାତା ବୋଇଲେ ହର କହୁଁ ସର୍ବେ ଶୁଣ
ପରମହଂସ ଏ କନ୍ୟା ପିତା ଅଟେ ଜାଣ ।
ପରମରୁ ଜନ୍ମ ନାମ ବହେ ପୁଲୋମଜା
ଶଚୀ ବୋଲାଇଲା ହୋଇ ଇନ୍ଦ୍ରର ଭାରିଯା ।
ହସ୍ତେ ପଦ୍ମ ପାଦ ପଦ୍ମ ଅଛଇ ଏହାର
ସାକ୍ଷାତରେ ପଦ୍ମିନୀ ଏ ଅଟେ ସ୍ତିରୀସାର ।
ଶୁଣି ସଭାଜନମାନେ ସନ୍ତୋଷ ହୋଇଲେ
ମନୁଭ୍ରାନ୍ତି ଛାଡ଼ି ଇନ୍ଦ୍ରେ ବିଭା କରାଇଲେ ।
ଚହୁଁ ଶଚୀମହାଦେଈ ଘେନି ଇନ୍ଦ୍ର କୋଳେ
ସିଂହାସନେ ବସିଲେକ ଅମର ମଣ୍ଡଳେ ।
ଇନ୍ଦ୍ର ଇନ୍ଦ୍ରାଣୀ ରୂପେ ସେ ବହି ପୂର୍ବ ତପୁ
ଭୁଞ୍ଜିଲେ ସେ ସ୍ୱର୍ଗ ଭୋଗ ଯେ ଯାହାକଳପୁ ।
ଶୁଣ ହେ ନାରଦ ଇନ୍ଦ୍ର ବିବାହ ଏସନ
ଶଚୀ ଗର୍ଭୁ ଯେ ଜନ୍ମିଲେ ତାହା ଏବେ ଶୁଣ ।
ଅଙ୍ଗାର ପତ୍ନଗ ଚିତ୍ରସେନ ଚିତ୍ରବାହୁ
ଜଳଧର ଜଳ ଜଳ ସେ ସହସ୍ର ବାହୁ ।
ଦୃଷ୍ଟ ବାହନ ଯେ ଚିତ୍ରମୁଖ ଚିତ୍ରରଥ
ସୁଦେବ ସୁବାହୁ ପୁଣି ସୁବୀର ସୁରଥ ।
ଆବର ଯେ ଶଚୀକୋଳେ ଜନ୍ମିଲେ ଆମ୍ଭୁ
ତାର ରୂପ ଗୁଣ କିବା ନାରଦ ଶୁଣିବୁ ।
କରେ ପାଞ୍ଚବାଣ ବାମକରେ ଫୁଲଧନୁ
ରସାଣିଲା ହେମ ପ୍ରାୟେ ବିରାଜଇ ତନୁ ।
ରୂପିଲା ମର୍କତ ଜିଣି ଶୋହଇ କୁଣ୍ଡଳ
ପବିତ୍ର ସୁଗନ୍ଧ ବାସ ମାଥେ ଦିବ୍ୟଚୂଳ ।
ଶରତ ଚନ୍ଦ୍ରମା ପ୍ରାୟେ ତା ମୂର୍ତ୍ତି ମଣ୍ଡଳି
କଣ୍ଠେ ନବରତ୍ନମାଳା ବିରାଜଇ ଝଳି ।
ଶରୀର ତ ଭିନ୍ନ ବର୍ଣ୍ଣ ଲଲାଟ ସୁସଞ୍ଚ
ତିଳକୁସୁମ ପରାୟେ ଶୋହେ ନାସା ଘଞ୍ଚ ।
ବିକଶିତ ପଦ୍ମ ଜିଣି ନେତ୍ର ବିରାଜଇ
ବାଳଅର୍କ ପ୍ରାୟ ବେନି ଭ୍ରୁଲତା ଦିଶଇ ।
ଶତ ଶତ ମୁକ୍ତାମାଳା ଲମ୍ବେ ଦେହଯାକେ
ଯେମନ୍ତେ ନକ୍ଷତ୍ରପନ୍ତି ଦିଶେ ଅନ୍ତରୀକ୍ଷେ ।
ହସ୍ତୀ ଥୋରହସ୍ତ ପ୍ରାୟେ ଦିଶେ ଭୁଜଦଣ୍ଡ
ନ ଦିଶେ ଦଳିତ ଶିରାଗଣ୍ଠି ଏକଖଣ୍ଡ ।
ତାଡ଼ ତୋଡ଼ର ବାହୁଟି ଶୋହେ ବିଦମୁଦି
ଭାନୁ ହିମକର ଯେହ୍ନେ ନବରତ୍ନ ଭେଦି ।
ରକ୍ତ ପଦ୍ମପୁଷ୍ପ ପ୍ରାୟେ କରତାଳି ଶୋହେ
ବାଳଇନ୍ଦୁ ପ୍ରାୟେ ନଖରେଖା ଦେଖାଯାଏ ।
କ୍ଷୀଣକଟିମଝା ହର ଡମ୍ବରୁ ଯେସନ
ବସନ୍ତ ଖେଡ଼ରି ପାଟ ଦେହେ ଆଭରଣ ।
ପାଦରେ ସୁନା ଶିକୁଳି ରୁଣୁଝୁଣୁ ବାଜେ
ଆବର ତ ବେନି କନ୍ଧେ ତୂଣୀର ବିରାଜେ ।
ଏମନ୍ତ ସେ କାମଦେବ ନାମ ଏବେ ଶୁଣ
ଦୁଷ୍ଟ ସମ୍ବରକୁ ନାଶି ଶମ୍ବରାରି ନାମ ।
ଅଙ୍ଗନା ଅଙ୍ଗସଙ୍ଗରୁ ଅନଙ୍ଗ ବୋଲାଏ
ଆତ୍ମାରୁ କ୍ଷରି ଆତ୍ମାଭୁ ନାମକୁ ସେ ବହେ ।
ବୋଲାଏ କାମିନୀକୁଳ ରମି ପୂର୍ଣ୍ଣ କାମ
ମୈଥୁନକୁ ଭୋଗିବାରୁ ମନସିଜ ନାମ ।
ପୟୋଧର କୁନ୍ଦି ପୁଣି କନ୍ଦର୍ପ ହୋଇଲା
ସ୍ତିରୀଙ୍କୁ ସୁମୂର୍ତ୍ତି କରି ସ୍ମର ବୋଲାଇଲା ।
ଏରୂପେ ସେ କାମଦେବ ଇନ୍ଦ୍ରବୀର୍ଯ୍ୟୁ ଜାତ
ତେଣୁ ତାର ରୂପଗୁଣ ଲୋକେ ଅକଥିତ ।
କନ୍ଦର୍ପ ବିବାହ ମଧ କହିବା ଯେ ତୋତେ
ଶୁଣିଲୁତ ବାସବର ବଂଶ ହେଲେ ଯେତେ ।
ଏବେ ଆଗ ସୂର୍ଯ୍ୟଙ୍କର ମହିମା ତୁ ଶୁଣ
ବ୍ରହ୍ମା ଆଜ୍ଞାଦେଲେ ତାଙ୍କୁ ଏମନ୍ତ କହିଣ ।
କଶ୍ୟପ ତାହାଙ୍କୁ ଯେତେବେଳେ ସମର୍ପିଲେ
ଦେଖି ମହାଜ୍ୟୋତି ଧାତା ସୂର୍ଯ୍ୟ ନାମଦେଲେ ।
ବୋଇଲେ ତୁ ଗଗନରେ ବିଶ୍ରାମ କରିବୁ
ରତୁ ଘେନି ସଂସାରରେ ଉଦୟ ହୋଇବୁ ।
ସୁମେରୁର ପ୍ରଦକ୍ଷିଣେ ଦିନମାନ ଯାଉ
ଜଳଦାନ ଘେନି ତୋର ଚିତ୍ତଶାନ୍ତି ହେଉ ।
ପ୍ରାଣୀଙ୍କର ଦିବ୍ୟଚକ୍ଷୁ ତୁହି ବୋଲାଇବୁ
ପୁଣି ଦିନକାଳ ବୁଝି ଜୀବନ ହାରିବୁ ।
ନିରାକାର ନିରିମଳ ହେଉ ତୋର ଜ୍ୟୋତି
ଚତୁର୍ଦ୍ଦଶ ଭୁବନରେ ପ୍ରକାଶୁ ତୋ କାନ୍ତି ।
ତୋର ତଳେ ରହୁ ସବୁ ପରବତ ମାନ
ବ୍ରହ୍ମ କୀଟ ପରିଯନ୍ତେ କାଟୁଥାନ୍ତୁ ଦିନ ।
ତୋର କୁଳେ ବିଷ୍ଣୁ ନିଶ୍ଚେ ଜନମ ହୋଇବେ
ତେବେ ଯାଇ ସୂର୍ଯ୍ୟବଂଶୀ ରାମ ବୋଲାଇବେ ।
ଦଶରଥ ପୁତ୍ର ହୋଇ ରାବଣ ନାଶିବେ
ସେହିଠାରେ ରବିବଂଶ ସଂସାରେ ଜାଣିବେ
ଦିନକର ଏବେ ଯାଇ ଗଗନେ ତୁ ରହ
ବରଷେ ଦ୍ୱାଦଶାଦିତ୍ୟ ନାମକୁ ଯେ ବହ ।
ରାଶିକେ ମାସେ ଲେଖା ଏ ଉଦେ ହେବ ଆଦ୍ୟେ
ଦିନକେ ତିନିବର୍ଣ୍ଣ ତୁ ପ୍ରକାଶିବୁ ହୃଦେ ।
ପ୍ରଥମରେ ଭାସକର ନାମ ବୋଲାଇବୁ
ଦ୍ୱିତୀୟାରେ ଦିବାକର ନାମ ପ୍ରକାଶିବୁ ।
ତୃତୀୟାରେ ରବି ନାମ ହୋଇବ ତୋହର
ଚତୁର୍ଥରେ ସୂର୍ଯ୍ୟ ବୋଲି ବୋଲିବେ ଅମର ।

ତପଦ ତୋହର ନାମ ହୋଇବ ପଞ୍ଚମ
ଷଷ୍ଠରେ ହୋଇବ ତୋର ମାରକଣ୍ଡ ନାମ ।
ସହସ୍ରାଂଶୁ ନାମ ତୋର ହେବ ସପ୍ତମରେ
କଶ୍ୟପି ତୁ ବୋଲାଇବୁ ଜାଣ ଅଷ୍ଟମରେ ।
ନବମେ ସବିତା ନାମ ତୋହର ହୋଇବ
ଦଶମେ ଦିନନାୟକ ବୋଲି ବୋଲାଇବ ।
ଏକାଦଶେ ଅର୍କନାମ ଦ୍ୱାଦଶରେ ଭାନୁ
ଏରୂପେ ରାଶିକେ ନାମ ପ୍ରକାଶିବ ତନୁ ।
ପ୍ରାତେଃ ରକ୍ତ ମଧ୍ୟାହ୍ନରେ ଶୁକ୍ଳବର୍ଣ୍ଣ ହୋଇ
ସାୟଂକାଳେ କୃଷ୍ଣବର୍ଣ୍ଣେ ଉଦେ ହେବୁଯାଇ ।
ସହସ୍ର କିରଣ ଘେନି ପ୍ରକାଶିବୁ ତେଜ
ତେଣୁକରି ତୋର ନାମ ହେବ ଗ୍ରହରାଜ ।
ଏରୂପେ ତାହାଙ୍କୁ କହି କନ୍ୟା ଆଣିଦେଲେ
ତାର ନାମଗୋଟି ସଂଜ୍ଞା ଅଟେ ଜାଣ ଭଲେ ।
ଦକ୍ଷ ପ୍ରଜାପତିଙ୍କର ଅଟଇ ଦୁଲଣୀ
ସବିତାକୁ ବିଧାତାଏ ବିଭା ଦେଲେ ଆଣି ।
ଷାଠିଏ ଦୁହିତା ମଧ୍ୟୁ ଏକକନ୍ୟା ଦେଲେ
ପତି ପତ୍ନୀ ହୋଇ ସୂର୍ଯ୍ୟ ଆକାଶକୁ ଗଲେ ।
ଗଗନେ ଲିଙ୍ଗରୂପେ ସେ ଶୂନ୍ୟେ ବିହରିଲେ
କାଳେ ତାଙ୍କଠାରୁ ଦୁଇପୁତ୍ର ଜନମିଲେ ।
ତାହାଙ୍କର ନାମ ଯଶ ଶନୈଶ୍ଚର ହେଲା
ଧର୍ମକୁ ବିଧାତା ଆଣି ଦୁଇକନ୍ୟା ଦେଲା ।
କାଳୀ କରାଳୀ ବୋଲିଣ ଦକ୍ଷଙ୍କର ଜେମା
ଯମକୁ ବରିଲେ ତାକୁ ଆଣି ବେଦବ୍ରହ୍ମା ।
ସଞ୍ଜୀବନୀ ପୁରେ ନେଇ ରାଜା ତାଙ୍କୁ କଲେ
ଜନ୍ତୁଙ୍କର ପାପପୁଣ୍ୟ ବୁଝୁଥା ବୋଇଲେ ।
ପୁଣି ଶନୈଶ୍ଚର ମୁଖ ଚାହିଁ ବେଦବର
ବୋଇଲେ ରହ ତୁ ଯାଇ ହୋଇ ଗ୍ରହବର ।
ଧାତାଙ୍କ ବଚନେ ଗ୍ରହ ହେଲା ଯାଇ ଶନି
ଶୁଣ ବାବୁ ହେ ନାରଦ କହେ ପଦ୍ମଯୋନି ।
ବରୁଣର ପ୍ରସଙ୍ଗ ତୁ ବୁଝ ଏବେ ଭଲେ
ଯେଉଁପୁରେ ନେଇ ବ୍ରହ୍ମା ବାସତାଙ୍କୁ ଦେଲେ ।
ଅମ୍ବୁବତୀ ନଗ୍ରେ ନେଇ କଲେ ତାଙ୍କୁ ରାଜା
ବୋଇଲେ ତୁ ଶୁଭକାର୍ଯ୍ୟେ ପାଅ ଆଦ୍ୟେ ପୂଜା ।
କୁମ୍ଭରେ ସ୍ଥାପି କରିଲେ ତୋର ସେବା ଆଗ
ତେବେ ଯାଇ ପୁରୋହିତ ଦେବ ହବିର୍ଭାଗ ।
ଯେତେକ ଜୀବ ଅଛନ୍ତି ଜଳୁ ଅବତରି
ସମସ୍ତେ ହୁଅନ୍ତୁ ତୋର ଭୃତ୍ୟ ସେବାକାରୀ ।
ତୁ ପୁଣି ଦଶଦିଗରେ ହୋଇବୁ ଗଣିତ
କମଳା ତୋହର ଘରେ କାଳେ ହେବ ଜାତ ।

ନାମ ତୋର ସାଗର ଯେ ବାରାନିଧି ହୋଇ
ବିଷ୍ଣୁ ପିତା ବୋଲାଇବୁ କମଳାକୁ ଦେଇ ।
ଏ ହେତୁ ଜଳନଗରେ ରହ ଯା ହେ ନୃପ
ମହା ପ୍ରଳୟ ଯାଏ ତୋ ରହୁ ଏହି ରୂପ ।
ଏତେ କହି ବ୍ରହ୍ମା ଆଣି ଦକ୍ଷ ଦୁହିତାକୁ
ନୀରବତୀ ତାର ନାମ ଦେଲେ ବରୁଣକୁ ।
ବିଭାର ମଙ୍ଗଳ ସାରି ପୁଣି ଆଜ୍ଞା ଦେଲେ
ସର୍ବେ ତରିବେ ତୋ ଜନ୍ମତିଥି ସ୍ନାନ କଲେ ।
ଏ ମାସେ ଉଆଁ ସୋମବାରେ ଯେବେ ହେବ
ମହତୀ ନାମେ ଯୋଗେ ସେ ଦିନ ବୋଲାଇବ ।
ଯେତେ ଲୋକ ବାରିଧିରେ ଯେ ସ୍ନାନ କରିବେ
ବଞ୍ଛା ସିଦ୍ଧି ହେବ ସର୍ବ ପାପରୁ ତରିବେ ।
ଜନମ ଦିନରୁ ପାପ ଦେହେ ଯେତେ ଥିବ
ସମୁଦ୍ରରେ ସ୍ନାନ କଲେ ସର୍ବ କ୍ଷୟ ଯିବ ।
ଗତି ମୁକତି ଭକତି ଲଭିବେ ସେ ନର
ଏତେ କହି ବରୁଣକୁ ବ୍ରହ୍ମା ଦେଲେ ବର ।
ଆଜ୍ଞାପାଇ ଅମ୍ବୁନଗ୍ରେ ଚଳିଲେ ବରୁଣ
ରହିଲେ ସପତ ମୂର୍ତ୍ତି ଧରି ସମୁଦ୍ରେଣ ।
ଅବଧ୍ କଟକ ମାଡ଼ି ରହିଲେ ଆବୋରି
ଶୁଣ ହେ ବାବୁ ନାରଦ କହେ ମୁଖଚାରି ।
ଇନ୍ଦ୍ର ଚନ୍ଦ୍ର ବରୁଣକୁ ବ୍ରହ୍ମା ବରଦେଇ
ମିଳିଲେକ ପିତାମହ ନିଜ ପୁରେ ଯାଇଁ ।
ବ୍ରହ୍ମା ଚଳିଯାନ୍ତେ ଚଳିଗଲେ ଇନ୍ଦ୍ର ହର
ଋଷି ଭଗବନ୍ତ ଆଦି ଗଲେ ଯେଝାପୁର ।
ଏଥୁ ଅନନ୍ତରେ ବାଣୀ ଶୁଣ ହେ ନାରଦ
ଅଦୀତି ପୁତ୍ରଙ୍କୁ ଦେଖି ଦିତି କଲା ବାଦ ।
ଜ୍ୟେଷ୍ଠ ସପତଣୀର ଯେ ପୁତ୍ରମାନେ ହ୍ୱନ୍ତେ
ହିଂସାବହି ଚିନ୍ତା କରେ ସେହି ଅନୁବ୍ରତେ ।
ବୋଲଇ ମୋହର ପୁତ୍ର ଥାନ୍ତେ ଯେବେ ଜାଣ
କିମ୍ପାଇ ବସନ୍ତେ ଇନ୍ଦ୍ର ସୂର୍ଯ୍ୟ ରାଜପଣ ।
ଅପୁତ୍ରିକ ଲୋକ ଧରାଧାମୁ ଚାଲିଯାଉ
ଯେଣୁ ପଞ୍ଚଲୋକେ ଲେଖା ନ ହୋଇଲା ସେହୁ ।
ସାଂସାରିକ ମଧ୍ୟେ ପୁତ୍ର ଅଟେ ଏକାମୂଳ
ପୁତ୍ରଥିବା ଲୋକର ତ ସବୁରୂପେ ବଳ ।
ମୋଠାରୁ ଅଦୀତି ଏକା ଅଟେ କେତେ ଜ୍ଞାତ
ପୁତ୍ର ଥିବାରୁ ସେ ହେବ ଏବେ ରାଜମାତ ।
ପୁତ୍ର ଥିଲେ ସେହିରୂପେ ମୁହିଁ ନୁହଁନ୍ତି କି
ଯାଉଛି କହିବି ଏବେ ଦେଖିଲେ ସ୍ୱାମୀଙ୍କି ।
ଏମନ୍ତ ପାଞ୍ଚି ସୁନ୍ଦରୀ ଉଠି ଧାତିକାରେ
ସ୍ୱାମୀଙ୍କୁ ଭେଟିଲା ଯାଇ ଏକାନ୍ତ ମନ୍ଦିରେ ।

ମନୁ ଲଜ୍ଜା ଉପେକ୍ଷିଣ ଆଗେ ମିଳି ବାଳୀ
ଚରଣେ ଓଳଗି କଲା କରି ନିଉଛାଳି ।
ଦଣ୍ଡ ପ୍ରଣାମ କରିଣ କହେ ଆଗେ କଥା
ବୋଇଲା ତୁମ୍ଭଙ୍କୁ ବିଭା ହୋଇଲି ମୁଁ ବୃଥା ।
ଅଦୀତି ମୋଠାରୁ କହ ଅଟେ କେଡ଼େବଡ଼
ଲାଗିଲା କି ତୁମ୍ଭଙ୍କୁ ତା ଦେହ ଛେନାଗୁଡ଼ ।
କଷା ଚିତ୍ତ ଅଟଇ କି ଏ ମୋହର ଦେହ
ଏହାଶୁଣି କଶ୍ୟପ ଯେ ହସି ଟହ ଟହ ।
ବୋଇଲେ ବୃଥା ଆକୁଳ କିମ୍ପା ହେଉ ସହି
ବୁଝିଲେ ବୟସ ତୋର ଏବେ ସରିନାହିଁ ।
ସେଥିପାଇଁ ଏତେ ହିଂସା ବହୁ କାହିଁ ମନେ
ତେବେ ତୋର ପୁତ୍ରହୋଇ ଉପୁଜୁ ପବନେ ।
ଦିତି ବୋଇଲା କି ହେବ ପବନ ଜନମି
ସ୍ୱର୍ଗ ପୁରମାନ ଏବେ ଇନ୍ଦ୍ର ଦେଲେ ମୁନି ।
ସପ୍ତସମୁଦ୍ର ବରୁଣେ ନେଇ ସମର୍ପିଲେ
ଆକାଶମଣ୍ଡଳ ଗୋଟି ଆଦିତ୍ୟଙ୍କୁ ଦେଲେ ।
ଚାର ପୁତ୍ରଙ୍କୁ ଚ ଦେଲେ ସବୁଧନ ନେଇ
ଆଉ କି ରଖିଛି ସ୍ୱାମୀ ମୋର ପୁତ୍ରପାଇଁ ।
କଶ୍ୟପ ବୋଇଲେ ତୁ ଗୋ ଏ଼ଥେ କେତେ କରୁ
ତୋର ପୁତ୍ର ମହାବଳୀ ହେଉ ସବୁଠାରୁ ।
ପ୍ରାଣବାୟୁ ରୂପ ହୋଇ ବସୁ ସର୍ବଦେହେ
ସକଳ ବ୍ରହ୍ମାଣ୍ଡ ବ୍ୟାପୀ ବହୁ ଶୂନ୍ୟମୟେ ।
ଯଦ୍ୟପି ସେ ନ ବହିବ ନ ବର୍ତ୍ତିବେ କେହି
ତତକ୍ଷଣେ ପଡ଼ିଯିବେ ପ୍ରାଣ ହୀନ ହୋଇ ।
ତେଣୁକରି ସର୍ବଦେହେ ଜୀବନ ହୋଇବ
ପଞ୍ଚଭୂତେ ଗଣା ହୋଇ ସଂସାରେ ରହିବ ।
ଜନମୁ ମହାଶୀତଳ ମୂର୍ତ୍ତି ତୋର ଦେହେ
ଯଦ୍ୟପି ଏକଥା ହେଲା ଆଉ କି ସନ୍ଦେହେ ।
ଏହା ଶୁଣି ଦିତି ବୋଲେ ପ୍ରୀତି କଲେ ସିନା
ପୁତ୍ର ନେତ୍ରେ ଦେଖିକରି ପ୍ରତେ ହୁଏ କିନା ।
ଋଷି ବୋଇଲେ ମାହେନ୍ଦ୍ର ବେଳା ମୁହିଁ ଦେଖି
ରାତ୍ରେ ତୋ ପୁରକୁ ନିଶ୍ଚେ ଆସିବଇଁ ସଖି ।
କେବଳ ତୁ ଏକଗୋଟି ବ୍ରତ ପାଳିଥିବୁ
ଗର୍ଭବତୀ ହେଲାପରେ ମିଥ୍ୟା ନ କହିବୁ ।
ପ୍ରତିଦିନ ସ୍ନାନ ସାରି ପୂଜିବୁ ଶଙ୍କର
ନିର୍ମାଲ୍ୟ ସେବନ କରି ଭୁଞ୍ଜିବୁ ଆହାର ।
ଆପଣା କୁଟୁମ୍ବ ଯାକ ଥିବୁ ପ୍ରତିପାଳି
କଦାପି ତୁ ନ କରିବୁ ପରସଙ୍ଗେ କଳି ।
ଗୃହ ଭିତରକୁ ପାଦ ଧୋଇଣ ପଶିବୁ
ଉର୍ଦ୍ଧ୍ୱମୁଖ ହୋଇ ପ୍ରିୟା ନିଦ୍ରା ନ ଭଜିବୁ ।
ଗର୍ଭଣୀ ସ୍ତିରୀ ଯଦ୍ୟପି ଶୁଏ ହୋଇ ଚିତି
ଅବଶ୍ୟ ପ୍ରମାଦ ତାକୁ ପଡ଼େ ଜାଣ ଦିତି ।
ଏତେ କହିଣ କଶ୍ୟପ ଗଲେ ନିତ୍ୟକର୍ମେ
ଦିତି ଶୁଣି ହରଷିତ ହେଲେ ମନେ ମନେ ।
ଶରୀରକୁ ସଜାଇଣ ସୁବେଶ ହୋଇଲେ
ସ୍ୱାମୀ ଆସିବେ ବୋଲିଣ ଗୃହ ସମାର୍ଜିଲେ ।
ଖଟ ଦୋଳି ବାଙ୍କିଆରେ ଶେଜାଇଲେ ଶେଜ
ତହିଁପରେ ବିଞ୍ଛିଦେଲେ କର୍ପୁରର ରଜ ।
ନାନା ସୁବାସିତ ଫୁଲ ଶୟନ ମନ୍ଦିରେ
ବିଚିତ୍ର ବର୍ଣ୍ଣରେ ଗୁନ୍ଥି ଲମ୍ଭାଇଲେ କରେ ।
ଥୋକାଏ ନେଇଣ ଶେଯପରେ ପକାଇଲେ
ଚନ୍ଦନର ଛେରା ଘରବାଡ଼େ କାଛେଦେଲେ ।
କେତେ ଦ୍ରବ୍ୟରେ କନ୍ଦର୍ପ ପଲ୍ଲବିତ ହୋଇ
ତାହା ସବୁ କେଳି ଗୃହେ ରଖାଇଲେ ନେଇ ।
ଇନ୍ଦ୍ରଠାରୁ ଶତେଗୁଣେ ବାଳକ ମନାସି
ଆନନ୍ଦରେ ଦିତି ଦେବୀ ବେଶହୁଏ ବସି ।
ଏଥୁଅନ୍ତେ ଦିନ ଆସି ହୁଅନ୍ତେଣ ଶେଷ
ମିଳିଲେ କଶ୍ୟପ ଲଗ୍ନ ଘେନି ଦିତି ପାଶ ।
ବେଳ ମୁହୂର୍ତ୍ତ ଧରିଣ ପ୍ରିୟା କୋଳକଲେ
ଖଟ ଦୋଳି ବାଙ୍କି ଆରେ ଘେନି ପହୁଡ଼ିଲେ ।
ପହୁଡ଼ନ୍ତେ ପଲ୍ୟଙ୍କରେ ବାସ ଚହଟିଲା
ଦିତି କଶ୍ୟପଙ୍କ ଦେହେ ଯାଇ ଭେଦିଗଲା ।
ଭେଦନ୍ତେ ସୁରତି ରସ ଶେଷ କଲେ ରସ
ରହିଲା ପବନ ଠୁଳ ଘେନି ଗର୍ଭଦେଶ ।
ବାସନାରୁ ହୋଇଲାରୁ ବିଶ୍ୱସୂତ୍ର ଭୋଗୀ
ଆଘ୍ରାଣ କରିବେ ସବୁ ଘେନିଅଛି ଜାଗି ।
ବାସନାରୁ ଜନ୍ମିଲାରୁ ବାସନାକୁ ଚିହ୍ନେ
ଭଲ ମନ୍ଦ ଦୁଇକଥା ଘେନି ତତକ୍ଷଣେ ।
ଏମନ୍ତେ ପୁରୁଷ ଗୋଟି ଗର୍ଭେ ଦେହ ଧରି
ସଂସାର ଲୋକଙ୍କ ହିତେ ଆସେ ଅବତରି ।
ସେ ପୁରୁଷ ଦେଖ କେତେ କଷ୍ଟ ଲଭିଅଛି
ଅଣଚାଶ ରୂପ ହୋଇ ସଂସାରେ ଜନ୍ମିଛି ।
ନାରଦ ବୋଇଲେ ସ୍ୱାମୀ କେମନ୍ତେ ଏ ବାଣୀ
ଏକମୂର୍ତ୍ତି ହେଲା କେହ୍ନେ ଅଣଚାଶ ପୁଣି ।
ବ୍ରହ୍ମାଏ ହୋଇଲେ ବାବୁ କହୁଁ ତେବେ ଶୁଣ
ବଡ଼ ଗହନ କଥାଏ ନୃସିଂହ ପୁରାଣ ।
କଶ୍ୟପ ଋଷି ରାଜାର ଅଦିତି ଭାରିଯା
ଦିତି ଗର୍ଭ ହେଲା ଶୁଣି କଲା ସେ ତରିଯା ।
ମନେ ହିଂସା ଭାବ ଧରି ଇନ୍ଦ୍ରପାଶେ ଗଲା
କୂଟ କପଟ ପାଞ୍ଚିଣ ଯାବତ କହିଲା ।

ବୋଇଲାରେ ବାଳା ଏବେ ଶୁଣ ମୋର ବାଣୀ
ଦିତି ମୋତେ ବାଦ କରି ଗର୍ଭହେଲା ପୁଣି ।
ତୁମ୍ଭଙ୍କୁ ନେତ୍ରରେ ଦେଖି ସହି ନ ପାରିଲା
ସ୍ୱାମୀକି ସେ ବଳେ ଧରି ରତି କରାଇଲା ।
ଆଜକୁ ସପତମାସ ହେଲାଣି ତା ଗର୍ଭ
ତୁମ୍ଭଠାରୁ ବଡ଼ ହୋଇ ପୁତ୍ର ଉପୁଜିବ ।
ଇନ୍ଦ୍ର ବୋଇଲେ ମାଆଗୋ ଏଥେଁ ଏତେ ଡରୁ
ଆଜ ଯାଇ ତା ପୁତ୍ରକୁ ନାଶିବି ଗର୍ଭରୁ ।
ସାତମାସ ବୋଲି ଯେବେ କହିଲ ଗୋ ମାୟେ
ସପତ ଖଣ୍ଡ କରିଣ କାଟିବି ତା କାୟେ ।
ଏହିରୂପେ କାଟୁ ଯେବେ ନ ମରିବ ପିଣ୍ଡ
ପୁଣି ଖଣ୍ଡକ କରିବି ସାତ ସାତ ଖଣ୍ଡ ।
ଏମନ୍ତେ ଉନପଞ୍ଚାଶ ହୋଇବ ସେ ଗର୍ଭ
ମାଏ ବୋଇଲେ ଏ କଥା ବୁଝି ସିନା ଯିବ ।
କଶ୍ୟପ କହିଲାରୁ ସେ ବ୍ରତ ଅଛି ପାଳି
ତାହା ଦେଖି ଆସିଲେ ତୁ ବାବୁ ଯିବୁ ଚଳି ।
ଏତେକ କହି ଅଦିତି ଗଲେ ଦିତିପୁର
ଦେଖିଲେ କି ବ୍ରତ ହୋଇଅଛି ଯେ ତାହାର ।
ସେ ଦିନର ଯୋଗ ଦେଖି ଦଇବର କୃତ୍ୟ
ଖଣ୍ଡନ କଲା କଶ୍ୟପ ବହିବାର ବ୍ରତ ।
ଏ ରୂପେ ଅଙ୍ଗ ଆଳସ୍ୟ ହୋଇଣ ସେ ଦିତି
ଦେହ ଅମାର୍ଗରୁ ଶୋଇଅଛି ହୋଇ ଚିତି ।
ତାହା ଦେଖିଣ ଅଦିତି ଅଇଲେକ ଧାଇଁ
ଶୀଘ୍ର ହୋଇଣ କହିଲେ ଚନ୍ଦ୍ର ଆଗେ ଯାଇଁ ।
ଶୁଣି ପୁରୁହୂତ ଚଳିଗଲେ ଶସ୍ତ୍ରଧରି
ପଶିଲେ ରାତ୍ରରେ ଦିତି ଶୁଏ ଯେଉଁପୁରୀ ।
ମଶାରୂପ ଧରି ମୁଖବାଟେ ଚଳିଗଲେ
ଗର୍ଭେ ପଶି ବାଳକକୁ କାଟି ପକାଇଲେ ।
ସାତଖଣ୍ଡ କରନ୍ତେ ସେ ଶିଶୁ ନ ମରନ୍ତେ
ତାହାଦେଖି ଆଚମ୍ବିତ ହେଲେ ପୁରୁହୁତେ ।
ବୋଇଲେ ଏ ପୁତ୍ରକୁ ନ ହାଣିଲେ ନ ମଲା
ଆଉଥରେ କାଟି ତେବେ ଦେବି ପରା ଭଲା ।
ସାତଖଣ୍ଡଯାକ କରି ଦେବି ସାତ ସାତ
ତେବେ ଅବା ଏହିପୁତ୍ର ହେବ ମୃତ୍ୟୁଗତ ।
ଏତେକ ପାଞ୍ଚି ଲେଉଟି ଧଇଲେ ସେ କ୍ଷଣି
ସେହି ସାତଖଣ୍ଡ ଯାକ ପକାଇଲେ ହାଣି ।
ଲେଖା ପ୍ରମାଣେ ଖଣ୍ଡକୁ ସାତଖଣ୍ଡ କଲେ
ସେହି ସାତଖଣ୍ଡ ଯାକ ଅଣଚାଶ ହେଲେ ।
ତଥାପି କ୍ଷୟ ନୋହିଲା ସେହି ବାଳଶିଷି
ଇନ୍ଦ୍ରଙ୍କୁ ବୋଇଲା ମୋତେ କାଣୁ କିନା ବସି ।
କଶ୍ୟପ ଋଷିର ବୀର୍ଯ୍ୟ ନୁହଇକି ମୁହିଁ
ତୁହି ଯେତେ ହାଣୁଥିଲେ ମୋର କିସ ଯାଇ ।
ଏବେ ତ ଆସି ଗୋଟାକୁ ଅଣଚାଶ କଲୁ
ଏଇ ଯେବେ ହାଣିବୁ ତୁ ଜାଣ ନାଶ ଗଲୁ ।
ସବୁ ରୂପମାନ ଘେନି ମୁହିଁ ଏକାବେଳେ
ଶୁଣ୍ଟକୁ ତୋର ମୋଡ଼ିଣ ପକାଇବି ତଳେ ।
ଶୁଣିଣ ଇନ୍ଦ୍ର ଦେବତା ସତ ବୋଲି ପାଞ୍ଚି
ଗର୍ଭର ପୁତ୍ର କୋପନ୍ତେ ପଳାଇଲେ ଘୁଞ୍ଚି ।
ମାତାକୁ ଯାଇ କହିଲେ ଏସବୁ ବୃତ୍ତାନ୍ତ
ବୋଇଲେ ନ ମଲା ସେହି ଗର୍ଭର ବାଳୁତ ।
ଯେତେଖଣ୍ଡ କରନ୍ତେ ସେ ତେତେ ମୂର୍ତ୍ତି ହେଲା
ପଛବେଳକୁ ସେ ମୋତେ ମାରିବ ବୋଇଲା ।
ଶୁଣିକରି ସ୍ତମ୍ଭୀଭୂତ ହୋଇଲା ଅଦିତି
ବୋଇଲେକ କେଡ଼େଉଗ୍ର ହୋଇଲା ସେ ମୂର୍ତ୍ତି ।
ତୁ ଯେବେ ମାରୁ ମାରୁ ସେ ଗର୍ଭରେ ନ ମଲା
ତେବେ ଯେ ତାହାର ନାମ ମରୁତ ହୋଇଲା ।
ତୁ ଆଛା କଲୁ ଗର୍ଭରୁ ଅଇଲୁ ଯେ ଚଳି
ତୁ ଆସି ନ ଥିଲେ ମୁହିଁ ମରୁଥାନ୍ତି ଭାଳି ।
ଚାଲ ତୁ ଏବେ ରହିବା ଯାଇ ସୁଖେ ଘରେ
ତା ଭୋଗ ଘେନିସେ ଏବେ ଜନ୍ମୁ ମଞ୍ଚପୁରେ
କହି ଅଦିତି ଇନ୍ଦ୍ରକୁ ଗଲେ ସଙ୍ଗେ ଘେନି
ଶୁଣ ହୋ ବାବୁ ନାରଦ କହେ ପଦ୍ମଯୋନି ।
ପବନର କଥା ଶୁଣ ଏଥୁ ଅନନ୍ତରେ
ଜନମ ହୋଇଲା ଉନପଞ୍ଚାଶ ରୂପରେ ।
ପୁତ୍ରକୁ ଦେଖିଣ ଦିତି ସନ୍ତୋଷ ହୋଇଲେ
ସଂସ୍କାର କରି କଶ୍ୟପ କୋଳେ ନେଇ ଦେଲେ ।
ବୋଇଲେ ବଳାକୁ ମୋର ଦିବ୍ୟସ୍ଥାନ ଦିଅ
ଏହାର ଉପରେ ପୁଣି କାହାକୁ ନ ଥୁଅ ।
ଋଷି ବୋଇଲେ ବ୍ରହ୍ମାଣ୍ଡଯାକେ ତେଜେ ବହୁ
ଶୀତଳ ହୋଇ ସବୁରି ହୃଦ ମଧ୍ୟେ ରହୁ ।
ପ୍ରାଣ ପାନ ବ୍ୟାନୋଦାର ସମାନ ହୋଇଣ
କୀଟରୁ ବ୍ରହ୍ମଙ୍କ ହୃଦେ କରୁ ଏ ବିଶ୍ରାମ ।
ଏହିପରି କହି ଋଷି ଗଲେ ନିତ୍ୟକର୍ମେ
ସେହିଠାବରୁ ପବନ ରହିଲାଟି ଶୂନ୍ୟେ ।
ଏହିପରି ପବନଟି ଜନ୍ମ ହେଲା ଜାଣ
ଆଉ ଗୋଟିକର ବଂଶ କହିବା ହେ ଶୁଣ ।
କଦ୍ରୁ ବୋଲିକରି ନାମ ଅଟଇ ଯାହାର
ସେ ପାଞ୍ଚିଲା ଦିତି ପୁଅ ଜନ୍ମିଲା ସମୀର ।
ମୁଁ ଏବେ ସ୍ୱାମୀକି ଯେବେ ନ ରମିବି ଯାଇ
ସକଳେ ବୋଲିବେ ମୋତେ ବନ୍ଧ୍ୟା ଅଟେ ଏହି

ପତି ତୁଲେ ନ ଯିବାର କେହି ନ ଜାଣିବେ
ବନ୍ଧ୍ୟାହେଲା ବୋଲି ମୋତେ ନିନ୍ଦିବେଟି ସର୍ବେ ।
ରହିବି ଯେବେ ସ୍ୱାମୀଙ୍କି ମୁହିଁ ମାନକରି
କାର୍ଯ୍ୟ ନ ପାରଇବି ଯିବ ବୟସ ମୋ ସରି ।
ପତ୍ନୀ ଛାର ରୁଷିଲେ ବା ସ୍ୱାମୀର କି ଯିବ
କ୍ଷଣେ ମନେ କଲେ ଦଶ ପତ୍ନୀ ବିଭା ହେବ ।
ଏତେକ ପାଞ୍ଚି ଯେ କଦ୍ରୁ ସୁବେଶ ହୋଇଲେ
ଏକାନ୍ତ ବେଳ ବୁଝିଣ ସ୍ୱାମୀ ପାଶେଗଲେ ।
ଦେଖିଲେ ଶୋଇଅଛନ୍ତି ଯେ କଶ୍ୟପ ମୁନି
ରୂପକୁ ନିରେକ୍ଷି ସତୀ ବସିଲେ ବାହୁନି ।
ଜିହ୍ୱା ଓଷ୍ଠ ବୁଲାଇଣ କରେ ଚୁ ଚୁକାର
ବୋଇଲେ କେଡ଼େ ସୁନ୍ଦର ଅଟେ ସ୍ୱାମୀ ମୋର ।
ଏଡ଼େ ରୂପବନ୍ତ ଗୁରୁସ୍ତକୁ ବିଭାହୋଇ
ଦିନେ ମାତ୍ର ରତିରସ ନ ଜାଣିଲି ମୁହିଁ ।
ଦିତି ଅଦିତି ଏକା ସେ ଅର୍ଜିଥିଲେ ଭାଗ୍ୟ
ସ୍ୱାମୀକି ରମିଣ ଲାଭ କଲେ ପୁତ୍ର ଆଗ ।
ଏତେକ ବୋଲି କରନ୍ତେ ଜିହ୍ୱା ଲହ ଲହ
ଉଠିଲେ ନିଦ୍ରାକୁ ତେଜି ମରୀଚିର ପୁଅ ।
ଦେଖିଲେକ ଭାରିଯାର ଜିହ୍ୱା ବୁଲାଉଣି
ପଚାରିଲେ କେତେ କାର୍ଯ୍ୟେ ଅଇଲୁ ତରୁଣୀ ।
କଦ୍ରୁ ବୋଇଲେ ସ୍ୱାମୀ କି କହିବି ଛାମୁରେ
ବିବାହ ଦିନୁ ତୁମ୍ଭଙ୍କୁ ଭେଟି ନାହିଁ ଥରେ ।
ଏବେ କେଉଁ ଭାଗ୍ୟେ ଆସି ମିଳିଲି ଏକାନ୍ତ
କହିବି ମୁଁ ପଦେ ଆଜ୍ଞା ଦେଲେ ତପୋବନ୍ତ ।
ଦିତିକି ଯେ ଦୟାକଲେ ପୁତ୍ର ଜନମିଲା
ପବନ ନାମକୁ ବହି ସଂସାରେ ରହିଲା ।
ମୁନି ବୋଇଲେ ତୋହର ହେଉ ସ୍ନାନରତୁ
ଦେବା କାର୍ଯ୍ୟ ପୁତ୍ର ଜାତ ହେବାଗର୍ଭ ଗର୍ତ୍ତୁ ।
କଦ୍ରୁ ବୋଇଲା ମୋହର ସ୍ନାନକାଳ ଆଜ
ତୁମ୍ଭଙ୍କୁ ତ କହିବାକୁ ମାଡୁଅଛି ଲାଜ ।
ରଜୋବତୀ ହୋଇ ପାଞ୍ଚଦିନେ ସ୍ନାନ କଲି
ଏକାନ୍ତରେ ଦେଖିଲାରୁ ଛାମୁରେ ଅଇଲି ।
ଋଷି ବୋଲେ ମାନସ ମନମଧେ ବଳା
କଦ୍ରୁ ବୋଇଲେ ହୁଅନ୍ତୁ ନାମ ଅଷ୍ଟକୁଳା ।
ମହାବଳୀ ପବନ ହେ ହୋଇଛି ଜନମ
ପୃଥ୍ୱୀଯାକ ଭ୍ରମି ତାକୁ କରନ୍ତୁ ଭୋଜନ ।
କଶ୍ୟପ ବୋଇଲେ ତାର କିସ ଯିବ କ୍ଷୟେ
ଖାଇଣ ବଞ୍ଚିବେ ଦିନଯାକ ତୋର ପୋଏ ।
ପବନାହାରୀ କେବଳ ମାତ୍ର ବୋଲାଇବେ
ଯେଣିକି ଗଲେ ରସନା ବୁଲାଉଣ ଥିବେ ।

ଯେଣୁ ତୁହି ଜିହ୍ୱା କରୁଅଛୁ ଲହ ଲହ
ସେହି ଆସ୍ୟ ଧରି ଏବେ ଜନମନ୍ତୁ ପୁଅ ।
ଏତେ କହିଣ କଶ୍ୟପ କରି କ୍ରୀଡ଼ାରଙ୍ଗ
ତତକ୍ଷଣେ ବୀର୍ଯ୍ୟ ପଡ଼ି ଜନ୍ମିଲେ ଭୁଜଙ୍ଗ ।
ତାହାଙ୍କର ନାମମାନ ନାରଦ ତୁ ଶୁଣ
ଅନନ୍ତ ବାସୁକୀ ଆଉ କର୍କୋଟକ ଜାଣ ।
ଶଙ୍ଖପଦ୍ମ ମହାପଦ୍ମ କୁଳିକ ରକ୍ଷକ
ଏମନ୍ତ ଅଟନ୍ତି ଅଷ୍ଟକୁଳା ନାଗଯାକ ।
ବିଭାବ୍ରତ ଶୁଭକାର୍ଯ୍ୟେ ପଞ୍ଚବ୍ରୀହି ପାନ୍ତି
ଶୁଣିଲୁ ତ କଦ୍ରୁଙ୍କ ଯେ ହୋଇଲେ ସନ୍ତତି ।
ଏହା ଶୁଣି ନାରଦ ଯେ ହରଷିତ ହେଲେ
ଅବଶିଷ୍ଟ କନ୍ୟାଙ୍କର ପ୍ରସଙ୍ଗ ପୁଛିଲେ ।
ଭୋ ପିତା ଶୁଣିଲି ନିତି କନ୍ୟାଙ୍କର ବଂଶ
ଆଉ ଦଶକନ୍ୟାଠାରୁ ଉପୁଜିବେ କିସ ।
କଶ୍ୟପ ସର୍ଜନା ବଡ଼ ଅପୂର୍ବ ଏ କଥା
ନାରଦଙ୍କ ବାକ୍ୟ ଶୁଣି ହସି ଚଉମଥା ।
ବୋଇଲେରେ ବାବୁ ତୁହି କେତେ ପୁଛାକରୁ
ଆମ୍ଭେ ବଣାହେଉ ଯାହା ସଂଖ୍ୟା କରୁ କରୁ ।
ନିଶ୍ଚଳ ହୋଇ ଶୁଣିଲେ ସିନା ଜଣାଯାଇ
ମନକୁ ଚଞ୍ଚଳ କଲେ ଅହ୍ମେ ବଣା ହୋଇ ।
ଏଣୁ କହୁଅଛୁ ଆମ୍ଭେ ସ୍ଥିର ହୋଇ ବସ
ମନଦେଇ ଶୁଣ ଆଗେ ବିନତାର ବଂଶ ।
ନାଗକୁଳ ଜନ୍ମ ଦେଖି ସହି ନ ପାରିଲା
କଶ୍ୟପଙ୍କ ଆଗେ ଯାଇ ପ୍ରବେଶ ହୋଇଲା ।
ପତିକି ବୋଇଲା ସ୍ୱାମୀ ଜଣାଉଛି ଶୁଣ
ଭୁଜଙ୍ଗମ ବଂଶ ଲାଗି ସୃଷ୍ଟି ଗଲା ଜାଣ ।
ସେ ଯେବେ ଜନ୍ମିବେ ଏବେ ରହିବେ କି ପ୍ରାଣୀ
ମରଣ ଲଭିବେ ସର୍ବେ ଛୁଇଁଦେଲା କ୍ଷଣି ।
ଏଥିରୁ ଲୁଚାଏ କିମ୍ବା ଜନମ କରିଲ
ପ୍ରିୟାବାଣୀ ଶୁଣି ଋଷି ହସି ଖଳ ଖଳ ।
ବୋଇଲେରେ ସଖି କିମ୍ପା ମନେ ଭାଳୁଅଛୁ
ତେବେ ତୋର ପୁତ୍ର ଜନ୍ମି ତାଙ୍କୁ ଖାଇବଞ୍ଚୁ ।
ନାଗଙ୍କର ଶତ୍ରୁ ହୋଇ ରହୁ କାଳେ କାଳେ
ତାହାଙ୍କୁ ଦେଖି ଭୂମିରେ ଲୁଚନ୍ତୁ ସକଳେ ।
ବିନତା ବୋଇଲା ଯେବେ ମହୀରେ ରହିବେ
ତେବେ ଆଉ କି ସଂସାରେ ପ୍ରାଣୀ ଏ ବର୍ତ୍ତିବେ
କଶ୍ୟପ ବୋଇଲେ ପୁଣ ଶୁଣରେ ତରୁଣୀ
ପୃଥ୍ୱୀ ଛାଡ଼ି କାହିଁ ରହିଅଛି କେଉଁ ପ୍ରାଣୀ ।
ବୁଝିଲେତ ଏ ପୃଥିବୀ ନୁହଇ କାହାରି
ମୂର୍ଖ ନରାଧମ ଲୋକେ ବୋଲନ୍ତି ମୋହରି ।

ଦେଖ ଏ ପୃଥିବୀ ହରି ସର୍ଜିଲେ ଯେ କାଳେ
ସେହିକ୍ଷଣି ମୋର ବୋଲି ନ ବୋଇଲେ ବେଳେ
ଯାବତ ଜୀବମାନଙ୍କୁ ବାଣ୍ଟି ଦେଲେ ମହୀ
ଯେପରି ବିଭାଗ କଲେ ଶୁଣ ପ୍ରାଣସହି ।
ଜଣେ ଜଣେ ବେନିବେନି ପାଦ ମାପି ଦେଲେ
ଚଣ୍ଡାଳରୁ ବ୍ରହ୍ମଯାଏ ସର୍ବେ ଭୂମି ନେଲେ ।
କାହାକୁ ଅଧିକ ଆଉ ନାହାନ୍ତି ସେ ଦେଇ
ନୀଚଲୋକ ସିନା ପୃଥ୍ୱୀ ମୋହର ବୋଲଇ ।
ବୁଝିଲେ ତ ବେନିପାଦ ସବୁରି ଏ ଜାଣ
କେଡ଼େ ରାଜା ହେଲେ ଏଥେ ନକରଇ ଟାଣ ।
ଯଦ୍ୟପି ନୃପତି ବୋଲି ଉଠାଇଣ ଦେବ
ତଥାପି ତ ଦୁଇପାଦ ଭୂମି କିଏ ନେବ ।
ଏଠାରୁ ଗଲେ ସେଠାରେ ଯାଇ ଉଭା ହୋଇ
ଏଣୁ ଦ୍ୱିପାଦ ଭୂମିକି କାର ବଳ ନାହିଁ ।
ତୁମ୍ଭେ ବୋଲୁଅଛ କଦ୍ରୁ ପୁତ୍ରଙ୍କୁ ନ ରଖ
ଭୂମିରେ ନ ଥାଇ କହ ରହିଛି କେ ଲୋକ ।
ଏଣୁ କରି ସେମାନେ ତ ପୃଥିବୀରେ ଥିବେ
ବିନାଦୋଷେ କାହାର ସେ କିଛି ନ କରିବେ ।
ଯଦ୍ୟପି ଅନ୍ୟାୟ ବାକ୍ୟେ ଅରଜିବେ ମନ୍ଦ
ତେବେ ନର ଗରୁଡ଼କୁ ସୁମରିବେ ହୃଦ ।
ତୋ ପୁତ୍ର ନାମ ଧରନ୍ତେ ବିଷ ହରିଯିବ
ପୂର୍ବାର୍ଜିତ କର୍ମବଳୁ କେ ଅବା ମରିବ ।
ଏତେ କହିଣ କଶ୍ୟପ ବିନତାର ତୁଲେ
ନାନା ପରିବନ୍ଧେ ତହିଁ କେଳି ଆରମ୍ଭିଲେ ।
ହସୋଲ୍ଲାସେ କଉତୁକେ ଛାଡନ୍ତେ ସେ ବୀର୍ଯ୍ୟ
ତତକ୍ଷଣେ ରୂପ ଘେନି ଜନ୍ମେ ପକ୍ଷୀରାଜ ।
ବେନି ପାଦ ବେନି ଖଗ ମୁଖେ ଚଞ୍ଚୁ ଧରି
ସେ ରୂପ ଦେଖି ବିନତା ବୋଲେ ଛି ଛି କରି ।
ପୁଣି ବୋଇଲା ଭୋ ସ୍ୱାମୀ ତୁମ୍ଭେ ପରା ଋଷି
ହୋଇ ଏଡ଼େ ଅଯୋଗ୍ୟତା ମତେ ଦେଲେ ପୁଣି ।
ପକ୍ଷୀ ଲାଞ୍ଜ ଚଞ୍ଚୁରେ ତା ଶରୀର ନିର୍ମାଣି
ମୋର ଗର୍ଭ ବୋଲି ପରା ପ୍ରକାଶିଲି ଆଣି ।
କଶ୍ୟପ ବୋଇଲେ କିମ୍ପା ବାହୁନୁଛୁ ସେହି
ଦେଖିବୁ ବିଷ୍ଣୁ ବାହନ ହୋଇବ ଏ ଯାଇ ।
ଲକ୍ଷ୍ମୀ ନାରାୟଣଙ୍କୁ ସେ ରହିବ ନିରତେ
ଶ୍ରୀହରିର ଦାସ ହୋଇ ଭହିବ ଜଗତେ ।
ବିନତା ବୋଇଲା ସେହି ହେବ ପଛେ ଦାସ
ତୁମ୍ଭେ ସ୍ୱାମୀ ଆଉବାରେ କର ସହବାସ ।
ଏ ପୁତ୍ରରେ ମନ ମୋର ନୋହିଲା ତୃପତି
କର ଆଉ ପୋଏ ଜାତ ରହିବି ନିବର୍ତ୍ତି ।

ଋଷି ବୋଇଲେ ସଖିରେ ଏବେ ପ୍ରସବିଲୁ
ଶୋଣିତ ଦେହେ କି ରୂପେ ରମଣ ମାଗିଲୁ ।
ତଥାପି ତ ତୋର ତୁଲେ ଆଉ ପ୍ରୀତି ନାହିଁ
ଜଣକରେ ବେଳେ ପରା ସତ୍ୟ କରିଥାଇଁ ।
ମାସକରେ ଶୁଦ୍ଧସ୍ନାନ ପରେ ସିନା ରତି
ଆଉ ତୋହଠାରେ ମୋର ନ ବଳୁଛି ମତି ।
ତୁ ଯଦ୍ୟପି ଲୋଡ଼ାକରୁ ନିଅ ଦ୍ରବ୍ୟ ତେବେ
ଉତ୍ତମ ତନୟ ତୋର ଗର୍ଭୁ ଜନ୍ମୁ ଏବେ ।
ଏତେ କହି ଋଷି ଦେଲେ ମୃତ୍ୟୁଞ୍ଜୟ ମଞ୍ଜି
ବୋଇଲେ ବସିବୁ ଏହା ଗିଳି ଚକ୍ଷୁବୁଜି ।
ନବମାସ ପରିଯନ୍ତେ ଆଖି ବୁଜି ଥିବୁ
ତେବେ ଦୁର୍ଲ୍ଲଭ ବାଳକ ଉପୁଜିବ ଗର୍ଭୁ ।
ଶୁଣିଣ ବିନତା ସ୍ୱାମୀ ବଚନକୁ ପାଳି
ଚକ୍ଷୁବୁଜି ବସିଲାକ ମଞ୍ଜି ଗୋଟି ଗିଳି ।
ଏଥିଅନ୍ତେ ବହିଗଲା ଯହୁଁ ଦିନାକେତେ
ଚିଟା ହୋଇଣ ବିନତା ଭାଳେ ମାସ ସାତେ ।
ବୋଇଲା ମୁଁ ନେତ୍ର ବୁଜି କେତେ ଥିବି ବସି
ପୁତ୍ର କଷ୍ଟ ହୋଇଲାଣି ମୋର ଗର୍ଭେ ଆସି ।
ଜନମନ୍ତି ସପ୍ତମାସ ମଧ୍ୟେ ଜଣେ ଜଣେ
ଏହି ପଛେ ହେଉ ମୋର ସେହି ପରିମାଣେ ।
ଏତେମନେ ପାଞ୍ଚନେତ୍ର ଫେଡ଼ନ୍ତେ ସେବାଳି
ଆରକ୍ତ ବର୍ଣ୍ଣେ ଗର୍ଭରୁ ପଡ଼େ ପୁତ୍ର ଗଳି ।
ଯେଣୁ ଚକ୍ଷୁ ଫେଡ଼ି ବାଳୀ ଦେଖେ ରକ୍ତ ବର୍ଣ୍ଣ
ତେଣୁ କରି ପୁତ୍ରନାମ ହୋଇଲା ଅରୁଣ ।
ରଜନୀ ଶେଷରେ ଆସି ଜନମିଲା ବଳା
କଶ୍ୟପ କୋଳରେ ନେଇ ତାକୁ ସମର୍ପିଲା ।
ବୋଇଲା ଉତ୍ତମ ସ୍ଥାନେ ମୋ ପୁତ୍ରକୁ ରଖ
ଏହା ଶୁଣିଣ କଶ୍ୟପ କରିଣ ଯେ କାଖ ।
ପୁତ୍ରକୁ ବୋଇଲେ ଜନମିଲୁ ରଙ୍ଗବର୍ଣ୍ଣେ
ନିଶାନ୍ତେ ପ୍ରକାଶ ଏହି ଜ୍ୟୋତି ସବୁଦିନେ ।
ଆଜହୁଁ ଆଦିତ୍ୟ ରଥେ ସାରଥି ତୁ ହୁଅ
ଅନୁକୂଳ କରନ୍ତୁ ତୋ ସର୍ବେ ଦେଖି ମୋହ ।
ଅରୁଣ ବୋଲିଣ ନାମ ହେଉ ତୋର ଏଣେ
ଭାନୁରଥ ଘେନି ମେରୁ ବୁଲ ଅନୁକ୍ଷଣେ ।
ଏତେ କହିଣ କଶ୍ୟପ ସୂର୍ଯ୍ୟରଥେ ନେଇ
ରଖାଇଲେ ଅରୁଣକୁ ସାରଥି କରାଇ ।
ଶୁଣ ବାବୁରେ ନାରଦ କହେ ବେଦବର
ଏରୂପେ ବିନତାଠାରୁ ଜନ୍ମିଲେ କୁମର ।
ଭାନୁ କନ୍ୟାର ଯେ ବଂଶ ବୁଝ ଏବେ ଭଲା
କଶ୍ୟପଙ୍କ ଛାମୁକୁ ସେ ଦିବସରେ ଗଲା ।

ସପତଣୀମାନଙ୍କର ପୁତ୍ର ହେବା ଦେଖି
ସହି ନ ପାରିଣ ଯାଇ କହେ ଶଶୀମୁଖୀ ।
ବୋଇଲା ଭୋସ୍ୱାମୀ କେଡ଼େ ଅଭାଗୀ ମୁଁ ଅଟେ
ତୁମ୍ଭଙ୍କୁ ବିବାହ ହୋଇ ରହେ ପୁତ୍ରକଷ୍ଟେ ।
ତଥାପି ପତ୍ନୀକି ସିନା ପତି ପାଇ ଲୋଡ଼େ
ନିଜ କେଳିଗୃହେ ନେଇ ସୁଖରେ ପହୁଡ଼େ ।
ଆପଣଙ୍କୁ ନେଇ ପତ୍ନୀ ମିଳିବାର ଅବା
ତେଣୁକରି ମୋତେ ଲୋଡ଼ା ନ କରୁଛ କିବା ।
ଦେଖ ବିନତା ମୋ ଠାରୁ ଅଟେ କେଡ଼େ ବଡ଼
ପୁତ୍ରବତୀ ବୋଲାଇଲା ପ୍ରସବି ଗରୁଡ଼ ।
ଋଷି ବୋଇଲେ କିପାଇଁ ଭାଳୁଛୁ ତୁ କହ
ତାଙ୍କଠାରୁ ବଳୀ ହୋଇ ଜନ୍ମନ୍ତୁ ତୋ ପୁଅ ।
ଦନୁ ବୋଇଲାତ ବୀର୍ଯ୍ୟ ବିହୀନେ କି ହେବେ
କି କହିବି ଏ କଥାତ କହୁଅଛ ତୁମ୍ଭେ ।
ଏହା ଶୁଣିଣ କଶ୍ୟପ ହସ ହସ ହୋଇ
ବୋଇଲା ସନ୍ତାନ ଦେବା ନ ଭାଳ ଗୋସହି ।
ଏମନ୍ତ କହିଣ ଦନୁ ସଙ୍ଗେ ପ୍ରୀତି କଲେ
ମହାବଳିଷ୍ଠ କୁମରମାନେ ଜନମିଲେ ।
ଅସୁରଗଣ ହୋଇ ସେ ରହିଲେ'ତ୍ୟବ୍ୟାଦ
ସେ ପୁତ୍ରଙ୍କ ନାମ ଏବେ ଶୁଣରେ ନାରଦ ।
କାଳକେତୁ ଚନ୍ଦ୍ରମାଳି ହିରଣ୍ୟକ ବୀର
ମୁକୁନ୍ଦା କଙ୍କୋଳା ଜଳଘଣ୍ଟ ହେଳାସୁର ।
ଖଡ଼ିକା ବିରାଜକୃତ ସୁରମାଳୀ କେଶୀ
ବଜ୍ରମାଳି ସଉଦାସ ବୀରଘଣ୍ଟ ମିଶି ।
ଅଲୋପି ସଲୋପି ପୁଣି ହୟଗ୍ରୀବ ଦୈତ୍ୟ
ପ୍ରଜ୍ଜ୍ୱ ଯେ ଶରଜିତ ଆବର ବିକୃତ ।
ରଣଚୂଡ଼ ମୂଢ଼ାସୁର ବିପ୍ରଚିତ୍ତ ପୁଣ
ହଳି ଆବଳୀ ଆଜମ୍ବୁ ଜମ୍ଭ ହେଲା ଜନ୍ମ ।
ଏରୂପେ ଦନୁଠାରୁ ସେ ଜନ୍ମିଲେ ଅସୁର
ସମସ୍ତେ ବିଷ୍ଣୁଙ୍କ ହସ୍ତେ ହୋଇଲେ ସଂହାର ।
କିନ୍ତୁ ମୁର ଦଇତ୍ୟର ସେନାପତି ହେବେ
ଶୁଣ ବାବୁରେ ନାରଦ କହନ୍ତି ଦଇବେ ।
ଏରୂପେ ଦନୁର ପୁତ୍ରମାନଙ୍କର ନାମ
କ୍ରୋଧା କନ୍ୟା ବଂଶ ଏବେ କହିବାକ ଶୁଣ ।
କଶ୍ୟପ ମହର୍ଷି ପୂଜା ମଣୋହିକି ସାରି
ନିଶା ହୁଅନ୍ତେ ଶଯ୍ୟାକୁ ଗଲେ ନିଦ୍ରାକରି ।
ଭିତର ପୁରରେ ପଶି କିଳିଲେ ଦୁଆର
ବୋଇଲେକ ନ ଭେଟନ୍ତୁ ପତ୍ନୀ ଆଜମୋର ।
ନିତ୍ୟ ସ୍ତିରୀ ଭୋଗ୍ୟକଲେ ଦେହପାଏ ପୀଡ଼ା
କେବଳ ସ୍ତିରୀମାନଙ୍କ ପୁତ୍ର ଏହା ଲୋଡ଼ା ।
ସ୍ୱାମୀର ଯେ ଅଙ୍ଗପୀଡ଼ା ନ ଜାଣନ୍ତି କେହି
ରତିରେ ସରାଗ କରୁଥାନ୍ତି ଶ୍ରଦ୍ଧାବହି ।
ଏତେ ମନେ ପାଞ୍ଚି ଋଷି କବାଟ କିଳିଲେ
ଶ୍ରୀଗୋବିନ୍ଦ ନାମଭଜି ପଲ୍ୟଙ୍କେ ଶୋଇଲେ ।
ପରମରେ ଚିତ୍ତ ମଜ୍ଜି ପହୁଡ଼ିଲେ ଯହୁଁ
ଏଥୁଅନ୍ତେ କ୍ରୋଧାକନ୍ୟା ବାହାରିଲା ତହୁଁ ।
ସ୍ୱାମୀର ପାଶକୁ ରାତ୍ରେ ବେଗେ ଗଲା ଚଳି
ଦେଖେ ସ୍ୱାମୀ ଶୋଇଛନ୍ତି କବାଟକୁ କିଳି ।
ବାଟେ ନ ପାଇଣ ବାଳୀ ପଶେ ସିନ୍ଧିକରି
ରନ୍ଧ୍ରେ ଚଳିଯାଇ ବସେ ସ୍ୱାମିପାଦ ଧରି ।
ଚରଣ ଧରନ୍ତେ ମୁନି ବସେ ଚେତାପାଇ
ଦେଖିଲେ ଆସିଛି କ୍ରୋଧାନାରୀ ବେଶହୋଇ
ପଚାରିଲା କେଉଁଠାରେ ଲୁଚାଇଲୁ ବାଳି
କ୍ରୋଧାବୋଇଲା ଯେ ଆରକାନ୍ଥେ ସିନ୍ଧିଖୋଳି ।
ଦ୍ୱାରେ ଚାବି ପଡ଼ିଅଛି ନ ଡାକିଲି ଉଚ୍ଚେ
ନପୁଣ ଧାଇଁ ଆସନ୍ତି ଭଗ୍ନୀମାନେ ପଛେ ।
ଏହିକଥା ମନେ ପାଞ୍ଚି ଖାତ ମୁଁ ଖୋଳିଲି
ଆପଣଙ୍କୁ ରାତ୍ର କାଳେ ଆସିଣ ଭେଟିଲି ।
କୁହନ୍ତୁ ଭୋ ସ୍ୱାମୀ ତୁମେ ଅନ୍ୟାୟ ନୁହକି
ତନୟ ଦେଇ ରଖିଲ ଥୋକାଏ ସ୍ତିରୀଙ୍କି ।
ଥୋକାଏ ପତ୍ନୀଏ ପୁଣି ପାଖକୁ ନ ଗଲେ
ନିଶ୍ଚିନ୍ତେ କବାଟ କିଳି ଭିତରେ ଶୋଇଲେ ।
ମହାତ୍ମା ସୁଜ୍ଞାନୀ ପରା ସମଦର୍ଶୀ ତୁମ୍ଭେ
ତୋର କନ୍ୟାଯାକ ଏକମୂର୍ତ୍ତି ଅଟୁ ଆମ୍ଭେ ।
ବୁଝିଲେ ତ ଆମ୍ଭେ ଜୀବ ତୁମ୍ଭେଟି ପରମ
ଆମ୍ଭେ ଅଟୁ ତ୍ରିପୁରା ଯେ ତୁମ୍ଭେ ପରଂବ୍ରହ୍ମ ।
ଆମ୍ଭେ ଚନ୍ଦ୍ରକଳା ତୁମ୍ଭେ ସୂର୍ଯ୍ୟକଳା ସିନା
ଆମ୍ଭେ ବାମ ଚାଲୁ ତୁମ୍ଭେ ଦକ୍ଷିଣ ଗମନା ।
ତୁମ୍ଭେ ଆମ୍ଭେ ମିଶି ଏକ ଆସନେ ବସିଲେ
ନିମିଷେ ଲାଗଇ ଦିବାରାତ୍ର ଭୋଗକଲେ ।
ବୋଇଲେ କଶ୍ୟପ ଏହା ଶୁଣ ହୋଇ ହୋଇ
କେତେ ଜ୍ଞାନ ସଖି ତୁରେ ଗଲୁ ଏବେ କହି ।
ମୁହିଁତ ଚିଟା ହେଲିଣି ତୁମ୍ଭ ଜଞ୍ଜାଳରୁ
ରହିଲି କବାଟ କିଳି ନଭାରି ଗୃହରୁ ।
ତୁ ଯଦ୍ୟପି ଖାତଖୋଳି ପଶିଲୁ ମୋ ପୁରେ
ସେହି ଅଂଶ ଧରିବେଟି ତୋହର କୁମରେ ।
ମାଟି ଖୋଳି ଗର୍ତ୍ତେ ରହି ଲୁଚାଇବେ ରୂପ
କୁମ୍ଭୀର ମର୍କଟ ଗୋଧି ମଣ୍ଡୁକ ଯେ ସର୍ପ ।
ଏ ବର୍ଣ୍ଣମାନଙ୍କୁ ଧରି ଜନ୍ମିବେ ତୋ ପୋଏ
ତେଇଁ ଘୋଷାଡ଼ି ହାମୋଡ଼ି ଚାଲିବେ ସଭିଏଁ

ଶୁଣିଣ କ୍ରୋଧା ବୋଇଲା ହୁନ୍ତି ପଛେ ସେହୁ
ଯାହା ଇଚ୍ଛା ତା କରନ୍ତୁ ପୁତ୍ର ଆଂଗ ହେଉ ।
ଶୁଣିଣ କଶ୍ୟପ ଋଷି ହସ ହସ ହେଲେ
କ୍ରୋଧାକୁ କୋଳ କରିଣ ରତି ଆରମ୍ଭିଲେ ।
କାମକଳା ସରନ୍ତେଣ ଖସେ ଗର୍ଭେ ବିନ୍ଦୁ
ତତକ୍ଷଣେ ପୁତ୍ରମାନେ ଜନ୍ମିଲେ ସଇନ୍ଦୁ ।
ଶୁଣ ବାବୁ ନାରଦ ହୋ ଏଥୁ ଅନନ୍ତରେ
ପୁତ୍ରକୁ ଘେନିଣ କ୍ରୋଧା ଚଳିଲେ ନବରେ ।
ଆରଦିନ ଆଉ ଏକ କନ୍ୟା ସଜ ହେଲା
ସ୍ୱାମୀକି ସେ ଅନୁସରି ଜଗିଣ ବସିଲା ।
କାଳା ବୋଲିଣ ଯେ ନାମ ଅଟଇ ତାହାରି
ଭେଟ ନ ପାଇ ପତିକି ଗଲା ସ୍ନାନକରି ।
ସ୍ନାନ କରୁ କରୁ ଦେଖ ଦଇବର ଯୋଗ
କଶ୍ୟପ ମିଳିଲେ କାହୁଁ ଆସି ସେହିଲାଗ ।
କାଳା ତାହାଙ୍କୁ ଦେଖିଣ ଉଠିଲା ହରଷେ
ସ୍ୱାମୀକି ବଳେ ଧଇଲା ସେହି ଜଳ ପାଶେ ।
ଏକାନ୍ତ ସ୍ଥାନ ଦେଖିଣ ଛାଡ଼ି ଲଜ୍ଜାମାନ
ଧାଇଁଲା ନଦୀତଟରୁ ହୋଇ ବିବସନ ।
କଶ୍ୟପ ବୋଇଲେ ତାହା ଦେଖି ରହ ରହ
ପରପ୍ରିୟା ପ୍ରାୟେକ କି ସମର୍ପିବୁ ଦେହ ।
ଘରକୁ ଚାଲ ଯିବା ଗୋ ରାତ୍ର ହୋଇ ଯାଉ
ତେବେ ସେ ରତିରସ ସେ ଉପୁଜିବ ଦେହୁ ।
ସ୍ୱାମୀବାକ୍ୟ ଶୁଣି ହସି ସେହି କାଳା ଦେବୀ
ବୋଇଲା ତୁମ୍ଭଙ୍କୁ ମୁହିଁ ଆଉ କି ଭେଟିବି ।
ଭଗ୍ନିଏ ଜଗିଅଛନ୍ତି ମୋର କାଛେ କାଛେ
ଏହା ସେ ଜାଣିଲେ ଧାଇଁ ଆସନ୍ତେତ ପଛେ ।
ଏକଥାରେ କି ରାତ୍ର କି ଦିବସ ମୋହର
ପର ତୁଲେ ଗଲେ ଅବା ଲାଗୁଥାନ୍ତା ଡର ।
ଜାତିକୁଳ ମୋ ଲାଞ୍ଛନା ଯାନ୍ତ ସିନା କହି
ସ୍ୱାମୀ ରମୁଥିଲେ ପର କି କରିବ କହି ।
ନିଜ ପତ୍ନୀ ଗୁରୁସ୍ତର ଯେବେ ମନ ହେଲା
ଆନ ଲୋକ ହସୁଥିଲେ ଆମ୍ଭର କି ଗଲା ।
ତୁମ୍ଭେ ମହାଜ୍ଞାନୀ ମୁଁ କି କହିବି ବହୁତ
ଶୁଣି ବୋଇଲେ କଶ୍ୟପ ମୁନି ସତ ସତ ।
ପ୍ରିୟାକୁ ବୋଇଲେ ତୁହି କହିଲୁ ଯେ ସ୍ୱଚ୍ଛ
ଏସ୍ଥାନେ ପୁତ୍ର ଜନ୍ମିଲେ ହେବ ସିନା ମତ୍ସ୍ୟ ।
ଯାବତ ମୀନ ହୋଇଣ ସଞ୍ଚରିବେ ଜଳେ
ଏକଥା ଦିଶିଲା ସଖି ମୋତେ ଯୋଗବଳେ ।
କାଳା ବୋଇଲା ପଛକେ ହୁଅନ୍ତୁ ସେ ମତ୍ସ୍ୟ
ଏ ବେଳକ ସ୍ୱାମୀ ମୋର ଠାବରୁ ନ ଘୁଞ୍ଚ ।

ମତ୍ସ୍ୟ ଦରଶନେ ଶୁଭ ସଭିଙ୍କର ଅଛି
ଯାତ୍ରା ଅନୁକୂଳେ ଲାଭ ଦିଅନ୍ତୁ ମୋ ବଛି ।
କେବଳ ଆଉ ଅଲଭ୍ୟ ଏକା ଲେଖିଥିବ
କେ କାହିଁ ଗଲେ ଅବଶ୍ୟ ତାର ଶୁଭ ହେବ ।
ଏ ସକାଶୁ ଆଗ ମୋତେ କରିବ ରମଣ
ତୁମ୍ଭ ଆଜ୍ଞାରୁ ଜନ୍ମନ୍ତୁ ପଛେ ମତ୍ସ୍ୟଗଣ ।
ଏମନ୍ତ ବୋଲିଣ ସେ ବାଳା ଉଠି କୋଳ କଲା
ପିନ୍ଧିଲା ବାସଗୋଟିକ ପାଲଟିଣ ଦେଲା ।
ଜାନୁ ଯୌବନ ଦେଖନ୍ତେ ଋଷି ମୋହହୋଇ
ରହି ନ ପାରି ପୀରତି କଲେ ରସ ବହି ।
କଉତୁକ ଲଗାଇଣ କରନ୍ତେ ସେ ରତି
ଜନମିଲେ ଝସଗଣ ନାହିଁ ନାନାଜାତି ।
ଅନେକ ଗୁଡ଼ାଏ ମତ୍ସ୍ୟ ଉପୁଜନ୍ତେ ମହୀ
ତାହାଙ୍କୁ ଦେଖି କଶ୍ୟପ ନ ପାରିଲେ ସହି ।
ଭାରିଯାକୁ ବୋଇଲେ ତୁ ଶୁଣରେ ସୁନ୍ଦରୀ
ତୋର ପୋଏ ଅଳପକେ ଯିବେ ପରାମରି ।
ବହୁତ ବଂଶ ଯାହାର ବଢ଼ନ୍ତି ସଂସାରେ
ଅଳପକେ ଛିଡ଼ନ୍ତି ସେ ଚନ୍ଦ୍ର ପରକାରେ ।
ଗୁଡ଼ାଏ ହେଲାରୁ ବହୁ ଅଧର୍ମ କରନ୍ତି
ଅଧର୍ମ ଅନ୍ୟାୟ କରି ଅଳ୍ପକେ ମରନ୍ତି ।
ସଂସାରକୁ ସମାନରେ ଥିଲେ ସିନା ଭଲ
ବହୁତ ହେଲାରୁ ହୁନ୍ତି ପୃଥିବୀକି ଶଲ ।
ଗୁରୁ ଗଉରବ ମାନ୍ୟ କିଛି ନ ଜାଣନ୍ତି
ବୟସ ମଉଗର୍ବରେ ସଭିଙ୍କି ହରନ୍ତି ।
ଏଣୁ ତୋର ପୋଏ ଯେଣୁ ଅଲୋକିତ ହେଲେ
ଅବଶ୍ୟ ମରିବେ ସେହି ଧିବରଙ୍କ ଜାଲେ ।
ଯେତେ ବଢୁଥିଲେ ସେହି ତେତେ ଛିଡୁଥିବେ
ଏକଥା ନିଶ୍ଚୟ ଜାଣ ପ୍ରମାଣ ନ ହେବେ ।
ଏତେକ ବୋଲି କଶ୍ୟପ ହେଲେ ସ୍ନାନ ଶୁଚି
ଗୃହକୁ ଗଲେ ପୁତ୍ରକୁ ଜଳମଧେ ସଞ୍ଚି ।
ସଂସ୍କାର ହୋଇ ମିଳିଲେ ଗୃହେ ପତି ପତ୍ନୀ
ଶୁଣ ହେ ବାବୁ ନାରଦ କହେ ପଦ୍ମଯୋନି ।
ଆଉ ଗୋଟିଏ ପତ୍ନୀର ବୃଝ ବଂଶ ଏବେ
କଶ୍ୟପଋଷି ବୀର୍ଯ୍ୟରୁ ଜନ୍ମିଲେ ସେ ଭବେ ।
ଦିନେ ପୁଣି ତପ କରି ଯାଇଥିଲେ ଋଷି
ଜପ କରୁଥିଲେ ମହା ଅରଣ୍ୟରେ ପଶି ।
ଗୋବିନ୍ଦ ଚରଣେ ଦୃଢ଼େ ଚିତ୍ତବୃତ୍ତି ଦେଇ
ଲୟ କରି ବସିଲେ ସେ ଆତ୍ମା ଅନୁଧ୍ୟାୟୀ ।
ଏମନ୍ତ ସମୟେ ଆସି ମିଳିଲେ କପିଳା
ବସିଲା ସ୍ୱାମୀକି ଚାହିଁ ନ ପିଛାଡ଼ି ଡୋଳା ।

ପାଞ୍ଚଲାକ ଅଳି ଯେବେ ନ କରିବି ଆଜ
ମୋତେହିଁ କାହୁଁ ମିଳିବ ଆଉ ଏଡ଼େ କାର୍ଯ୍ୟ ।
ଏ ସମୟେ ଭଗ୍ନି ଆସି ନାହାନ୍ତି ତ କେହି
ସ୍ୱାମୀକି ଲଭିବି ଆଜ ନିଶ୍ଚେ ଦେହ ଦେଇ ।
ଏତେକ ଭାଳି କପିଳା ସୁବେଶ ହୋଇଲା
ନୟନକୁ ବକ୍ରକରି ନିରୀକ୍ଷି ଚାହିଁଲା ।
ବୋଇଲା ସ୍ୱାମୀ ପାଶୋରି ମୋତେ ଅଇଲକି
ତୁମ୍ଭେ ତପେ ବସିଲେ ମୁଁ ହେବି ଅପୁତ୍ରିକୀ ।
ସବୁ ପତ୍ନୀଙ୍କୁ ତୁମ୍ଭର ପୁତ୍ର ଦାନ ଦେଇ
ତାପରେ ବସନ୍ତ ଦେବେ ସିନା ତୁମ୍ଭେ ଯାଇ ।
ବାଦ ଲଗାଇଣ ତୁମେ ବନକୁ ଅଇଲ
ଥୋକେ ପୁତ୍ରବତୀ ଥୋକେ ଅପୁତ୍ରିକ କଲ ।
ସ୍ତିରୀମାନଙ୍କର ହିଂସା ନ ଜାଣ କି ସ୍ୱାମୀ
ତୁଚ୍ଛାକୁ କୂଟ କପଟେ ମରୁଥାନ୍ତି ଭ୍ରମି ।
ସାତ ପାଞ୍ଚ ଖଟିଥିବେ ଯେବେ ଏକାବେଳେ
ଇଣକର ପୁତ୍ର ହେଲେ ଜଣେ ତହିଁ ଭାଳେ ।
ବୋଲଇ କାହିଁକି ମୋର ଗର୍ଭ ନ ଫଳିଲା
ବିହି ପାଞ୍ଚ ଲୋକ ମୋତେ ହୀନିମାନ କଲା ।
ସାଙ୍ଗ ସଙ୍ଗୀ ସଙ୍ଗାତୁଣୀ ଥିଲେ ମୋର ଯେତେ
ତାହାଙ୍କର ହେଲେଣି ତ ତିନି ତିନି ପୁତ୍ରେ ।
ଏମନ୍ତ ବୋଲି ସ୍ତିରୀଏ ମରୁଥାନ୍ତି ଝୁରି
ତେଣୁ କରି ଶ୍ରୀଛାମୁକୁ ଆସେ ଅନୁସରି ।
ବେନିପୁତ୍ର ହେଲେ ମୁହିଁ ଯିବି ମନ୍ଦିରକୁ
ସଉତୁଣୀ ନ କହିବେ ଅପୁତ୍ରୀ ଆମ୍ଭଙ୍କୁ ।
ଏମନ୍ତ କହି ବସନ୍ତେ ଅଭିମାନୀ ହୋଇ
ଉଠି କଶ୍ୟପ ପ୍ରିୟାକୁ କୋଳ କଲେ ଯାଇ ।
କାମକଳା ହୃଦେ ଚାଳି ପଚାରିଲେ ଭାବେ
ବୋଇଲେ କହରେ ସତୀ କି ପୁତ୍ର ଜନ୍ମିବେ ।
କପିଳା କହିଲା ଆହେ ସ୍ୱାମୀ ତେବେ ଶୁଣ
ଚାରିପାଦ ଘେନି ପୋଏ ହୁଅନ୍ତୁ ଜନମ ।
ସବୁରୂପ ଦେଖିଲେ ଯେ ଦୁଇ ଦୁଇପାଦ
ଚାରିପାଦ ହୋଇ କେହି ଧରିନାହିଁ ହୃଦ ।
ଏଣୁ ମୋର ପୋଏ ଚାରିପାଦେ ଉପୁଜନ୍ତୁ
ତୃଣ ସଲିଳ ଖାଇଣ ସଂସାରେ ବର୍ତ୍ତନ୍ତୁ ।
ଋଷି ବୋଇଲେ ହୁଅନ୍ତୁ ଗଜ ଗୋରୁ ବାଜୀ
ଭୁଆଦି ହରିଣ ମୃଗ ସିଂହ ପୁଞ୍ଜି ପୁଞ୍ଜି ।
ଗୟଳ ବଳିୟା ଗଣ୍ଡା ବ୍ୟାଘ୍ର ଭାଲୁ ଯାଏ
ଏ ରୂପେ ଚତୁର ପାଦ ଜନ୍ମନ୍ତୁ ତୋ ପୋଏ ।
ଏତେ କହିଣ କଶ୍ୟପ କରୁ ସହବାସ
ଜନମିଲେ ଚାରିପାଦ କପିଳାର ଶିଷ ।

ପୃଥ୍ୱୀଯାକରେ ରହିଲେ କରି ପରିକ୍ରମା
ଶୁଣ ବାବୁରେ ନାରଦ କହେ ବେଦବ୍ରହ୍ମା ।
ଏରୂପେ କପିଳା ଗର୍ଭୁ ପୁତ୍ରମାନେ ହେନ୍ତେ
ଆଉ ଏକ କନ୍ୟା ଗଲା ଆରଦିନେ ଅନ୍ତେ ।
ଅନାଦି ବୋଲିଣ ନାମ ଅଟଇ ତାହାର
ପ୍ରତ୍ୟକ୍ଷରେ ଦୁହିତା ଯେ ପ୍ରଜାପତିଙ୍କର ।
ରାତ୍ରେ କଶ୍ୟପ ଛାମୁରେ ମିଳିଲେକ ଯାଇ
ଦେଖିଲା ପଲଙ୍କ ପରେ ସ୍ୱାମୀ ଛନ୍ତି ଶୋଇ ।
ତହୁଁ ତାଙ୍କ ଦେହଗୋଟି ନିରେଖି ଚାହିଁଲା
ବେନି ନେତ୍ର ବେଇ ଚନ୍ଦ୍ର ସୂର୍ଯ୍ୟ ଲକ୍ଷ୍ୟ କଲା ।
ଦୁଇ କର୍ଣ୍ଣକୁ ବୋଇଲା କୋଟିତୀର୍ଥ ଏହି
ପୁଣି ନାସା ପୁଟକୁ ସେ ବାଳୀ ଦେଲା ଚାହିଁ ।
ବୋଇଲା ଏଥିରେ ବ୍ରହ୍ମା ହୋଇଅଛି ଉଦେ
ତ୍ରିକୂଟ ସ୍ଥାନରେ ଚାଲିଆସେ ଏକାପାଦେ ।
ପରମରେ ମେଳ ହୋଇ ଜୀବ ଘେନି ଚଳେ
ପ୍ରବେଶ ହୁଅଇ ଯାଇ ଗୋଲୋକ ମଣ୍ଡଳେ ।
ତଦୁତ୍ତାରୁ ପୁନରପି ଚାହିଁ ରସନାକୁ
ବୋଇଲାଏ କେତେବେଳେ କହେ ସମସ୍ୟାକୁ ।
ହରିର ମହିମା ଯାକ କହି କରେ ଠୁଳ
ଧନ୍ୟ ରସନା ମହିମା ଅଟେ ଏଡ଼େ ମୂଳ ।
ପୁଣି କଣ୍ଠକୁ ଚାହିଁଣ ପାଞ୍ଚ ପାଞ୍ଚ ମନେ
ବୋଇଲା ସରସ୍ୱତୀତ ବସନ୍ତି ଏ ସ୍ଥାନେ ।
ଯାବତ କଣ୍ଠରେ ବସି ଦୟା ପ୍ରକାଶନ୍ତି
ଯାହାକୁ ଯା ଲୋଡ଼ା ବେଦ ବଚନ କହନ୍ତି ।
ବେନି କରକୁ ପୁଣି ସେ ବାଳୀ ଚାହିଁଦେଲା
ବଳିୟାର ଭୁଜ ବୋଲି ମନେ ବିଚାରିଲା ।
ଏହି ଭୁଜଲାଗି ଭୋଗ ଭୁଞ୍ଜୁଥାନ୍ତି ସର୍ବେ
ଭୁଜ ବାହୁବଳେ ଆସିମିଳେ ନାନା ଦ୍ରବ୍ୟେ ।
ହୃଦୟକୁ ଚାହିଁ ପୁଣି ପ୍ରଶଂସଇ ବାଳା
ବୋଲଇ ବସନ୍ତି ରଥେ ଶ୍ରୀହରି କମଳା ।
ସର୍ବ ହୃଦୟରେ ପାତ୍ର ଅନୁସାରେ ଥାନ୍ତି
ଯେତେକ ଭାଜନ ଯେହ୍ନୁ ତାକୁ ତେତେ ଦ୍ୟନ୍ତି
ତେଣୁକରି ଯେଝା ଶିରୀ ଭୁଞ୍ଜୁଥାନ୍ତି ପ୍ରାଣୀ
ଏତେ ବୋଲି ଜଠରକୁ ଚାହିଁଲା ତରୁଣୀ ।
ବୋଇଲା ଏ ଗର୍ଭଗୋଟି ପ୍ରତ୍ୟକ୍ଷେ ବାରିଧି
ଜୀର୍ଣ୍ଣ ହୁଏ ଏଥେ ଚତୁର୍ବିଧ ଅନ୍ନବିଧି ।
ଶୁଣନ୍ତୁ ସେ ଚତୁର୍ବିଧ ଅନ୍ନନାମେ ଜୀବେ
ପ୍ରାଣୀଙ୍କର ଭୋଗ ଅର୍ଥେ ସଞ୍ଚିଛି ଦଇବେ ।
କଞ୍ଚା ପାଚିଲା ଅସିଝା ସିଝା ସେ ଅଟଇ
ଏରୂପେ ଚାରିପ୍ରକାରେ ଅନ୍ନମାନ ହୋଇ ।

ବ୍ରହ୍ମାଣ୍ଡଯାକର ଭକ୍ଷ ଅଟଇ ସେ ଅନ୍ନ
ଉଦରେ ପଡ଼ିଲାକ୍ଷଣି ହୋଇଯାଏ ଜୀର୍ଣ୍ଣ ।
ସୁ ସୁସଞ୍ଚ ଜଠରର ଏଡ଼େ ବଡ଼ ପ୍ରଭା
ଏତେ କହିଣ ଜାନୁକୁ ଚାହେଁ ନବଯୁବା ।
ଉଲଟ ରମ୍ଭା ତରୁର ପରାୟେ ଦେଖିଲା
ମୁନି କଳେବର ଯାକ ବଞ୍ଚିଛି ବୋଇଲା ।
ଏ ବସିଲେ ପ୍ରାଣୀଙ୍କର ବଳ ଉଣା ଏଡ଼େ
ଦଣ୍ଡେ କ୍ଷଣେ ଚାଲି ଆଉ ନ ପାରଇ ଗୋଡ଼େ ।
ଏଣୁ କରି ଏ ଶରୀରେ ବଳୀ ଏକା ଜାନୁ
ଟିକେ ମାତ୍ର ପ୍ରାଣୀବସି ନ ପାରେ ତା ବିନୁ ।
ଏତେ ବୋଲି ପାଦତଳେ ଯାଇ ବସେ ବାଳି
ମାଆ ପରାୟେ ଧରିଣ ସମସ୍ତେ ଅଙ୍ଗୁଳି ।
ନାରାୟଣ ସୁମରି ସେ ଜପରେ ବସିଲା
ହୃଦୟରେ ଅଷ୍ଟାକ୍ଷର ମନ୍ତ୍ର ସେ ପଢ଼ିଲା ।
ନିଷ୍ଟିନ୍ତେ ବସନ୍ତେ ନାମ ସୁମରଣା କରି
ଉଠିଲେ କଶ୍ୟପେ ଋଷି ନିଦ୍ରା ପରିହରି ।
ଦେଖିଲେ ଚରଣ ତଳେ ବସିଅଛି ସତୀ
ମାଳା ପରାୟେ ଭଜୁଛି ପଦାଙ୍ଗୁଳିପନ୍ତି ।
ଭାରିଯାର ଭକ୍ତିଗୁଣ ଦେଖିଲେ କଶ୍ୟପ
ପୁଚ୍ଛିଲେ କିମ୍ପାଇଁ ତୁହି କରୁଅଛୁ ଜପ ।
ପୁଣି ପତ୍ନୀବୋଲେ ଆଜ୍ଞା ଦେଲେ ତ କହିବି
ତୁମ୍ଭଙ୍କୁ ଅନୁସରିଛି ପୁତ୍ର ଦେବ ନେବି ।
ଯାବତ କାଳକୁ ରହିଥିବ ଦେହ ବହି
ଏହା ଶୁଣି ହେଉ ବୋଲି ବସି ମୁନିଧ୍ୟାୟି ।
ବୋଇଲେ କାଳ ମୁହୂର୍ତ୍ତ ବୁଝି ହେବ ପୁଅ
ତାହାର ଲକ୍ଷଣମାନ କହୁ ଶୁଣିଥାଅ ।
ଏଥର ତୋହର ଗର୍ଭୁ ହେବ ଯେ ଉତ୍ପତ୍ତି
ମୁର ଦଇତ୍ୟର ସେହୁ ବୋଲାଇବ ମନ୍ତ୍ରୀ ।
ସେ ମୁର ବ୍ରହ୍ମାଙ୍କ ବୀର୍ଯ୍ୟୁ ଜନମ ହୋଇବ
ଆତ୍ମା ତେଜ ବ୍ରହ୍ମଜ୍ଞାନ ତାକୁ ଏ କହିବ ।
ଆତ୍ମାର ଗତିକୁ କହି ବିସର୍ଜିବ ପ୍ରାଣ
ଗୋବିନ୍ଦ ଶରୀରେ ଯାଇ ହୋଇଯିବ ଲୀନ ।
ସମୟରେ ଲେଉଟିଣ ହେବ ପ୍ରହଲାଦ
ଶୁଣ ପ୍ରିୟେ ତୋ ଆଗରେ କହିଲୁ ଏଭେଦ ।
ଏ ସୂତ୍ର କହିଣ ମୁନି ରମଣ କରିଲେ
ଲଗ୍ନ ମୁହୂର୍ତ୍ତକୁ ଧରି ଗର୍ଭେ ବୀର୍ଯ୍ୟ ଦେଲେ ।
ବହିବାରୁ ମହାବୀର୍ଯ୍ୟ ଅନାଦି ଉଦରେ
ସୁବିଜ୍ଞ ନାମକୁ ବହି ଜନ୍ମିଲା କୁମରେ ।
କହନ୍ତି ଯେ ବେଦବର ଶୁଣରେ ତନୟୀ
ମୁର ଜନ୍ମ ତୋର ଆଗେ କହିବା ବୁଝାଇ ।

ଏକେ ଆଉ ପତ୍ନୀଙ୍କର ଶୁଣ ତୁ ବୃତ୍ତାନ୍ତ
ସିଂହିକା ତନୟ ରାହୁ ହୋଇଲା ଯେମନ୍ତ ।
ଏକଦିନେ ସିଂହିକା ରଜସ୍ୱଳା ହୋଇ
ପଞ୍ଚମ ଦିବସେ ଅନ୍ତେ ଗଲା ମଥା ଧୋଇ ।
ଶୁଦ୍ଧସ୍ନାନ ସାରି ବାଳୀ ସୁବେଶ ହୁଅନ୍ତେ
ସ୍ୱର୍ଗରୁ ଏକ ପୁରୁଷ ମିଳିଲେ ତଦନ୍ତେ ।
ସିଂହିକାକୁ ବୋଇଲେ ତୁ ମୋତେ ଦେବୁ ଦେହ
ତୋ ରୂପକୁ ଦେଖି ମୁହିଁ ହୋଇଲଇଁ ମୋହ ।
ସଂସାରେ ଚୌରାଶୀ କାଠି ସ୍ତିରୀ ଛନ୍ତି ପୁଣି
ତିନିପୁର ଯାକେ ତାହା କେ ପାରିବ ଗଣି ।
ଦେଖ ମୋହର ଗର୍ଭରେ ରହିଣ ସମସ୍ତେ
କରନ୍ତି ବିଷୟ ମାନ ଜାଣନ୍ତି ଯେ ମୋତେ ।
ମୋତେ ଛାଡ଼ିଣ ସଂସାରେ ନ ପାରେ କେ ବଳି
ଯେ ଯହିଁକି ଗଲେ ମୋର ହୃଦ ଯାଏ ଚାଲି ।
ମୋତେ ଅନ୍ତର କରିକେ ଦ୍ରବ୍ୟ ନ ଥୁଅଇ
ଯେ ଯହିଁ ଥୋଇବ ମୁହିଁ ତହିଁ ଲାଗିଥାଇ ।
ଅନଳ ଭିତରୁ ଦ୍ରବ୍ୟ କାଢ଼ିଣ ଥୋଇଲେ
ଶୀତଳ କରଇ ଜାଣ ତାହା ମୁଁ ତତ୍କାଳେ ।
ନ ଜାଣିମା ଲୋକ ମୋତେ ଅରୂପ ବୋଲନ୍ତି
ବୁଝିଲେ ସବୁରୂପ ମୋ ଅଙ୍ଗୁ କ୍ଷରୁଛନ୍ତି ।
ପଞ୍ଚଭୂତ ରହିଛନ୍ତି ମୋର ଅଙ୍ଗେ ଅବା
ମୁଁ ପୁଣି ତାଙ୍କ ସଙ୍ଗରେ ଜଣେ ହୁଏ ଲେଖା ।
ଆମ୍ଭେ ବେନିଜଣ ଜାଣ ପ୍ରଳୟରେ ରହୁ
ତିନିଜଣ କ୍ଷୟ ଯାନ୍ତି ଶୁଣ ତୋତେ କହୁ ।
ସିଂହିକା ବୋଇଲା ତୁମ୍ଭେ କେବଣ ଦେବତା
ନାମ ନ କହିଲେ କେହ୍ନେ ଚିହ୍ନିବି କହ ତା ।
ଶୁଣି ସେ ପୁରୁଷ ବର ଦିଅଇ ଉତ୍ତର
ହେ ସତୀ ଆକାଶ ନାମ ଅଟଇ ମୋହର ।
ଆଉ ଦୁଇ ଚାରିଗୋଟି କହୁଅଛି ନାମ
ବୋଲନ୍ତି ଥୋକାଏ ଲୋକେ ମୋତେ ବ୍ୟୋମ ।
ନଭଃ ଅନ୍ତରୀକ୍ଷ ପୁଣି ଗଗନ ବୋଲନ୍ତି
ଶୂନ୍ୟ ନାମକୁ ମୋହର କେହି ଉଚ୍ଚାରନ୍ତି ।
ଶୂନ୍ୟକୁ ତ ସ୍ଥାପିଲେ କେ ଅଙ୍କ ଗଣିବ କି
ଏଣୁ କରି ଶୂନ୍ୟଗୋଟି ମୂଳ ଏ ପୃଥ୍ୱୀକି ।
ଶୂନ୍ୟପୁରୁଷ ଯଦ୍ୟପି ସଂସାରେ ନ ଥାନ୍ତା
ତକ୍ଷଣେ କେଡ଼େ ପଦାର୍ଥ ହେଲେ ମିଳିଯାନ୍ତା ।
ଫଳ ମୂଳ ଜୀବ ବୃକ୍ଷ ଧରନ୍ତା କେ ଦେହ
ସମସ୍ତେ ଯାଆନ୍ତେ ମିଳି କହିଲି ନିର୍ଣ୍ଣୟ ।
ପାଶାଣ୍ଡଲୋକେ ତ ସିନା ମୋତେ ନ ଚିହ୍ନନ୍ତି
ତେଣୁ ସ୍ୱରୂପ ଧରିଣ ଅଇଲି ତୋ କତି ।

ଦେଖି ତୋର ଛବି ରୂପ ବଳିଲା ଶରଧା
କି ବୋଲୁଛୁ କହ ମୋର ଯାଉ କାମବାଧା ।
ସିଂହିକା ବୋଇଲା ଏହା କି ରୂପେ କହିବି
ତୁମ୍ଭଙ୍କୁ ଶରୀର ଦେଲେ ଅଶୁଦ୍ଧ ହୋଇବି ।
କିପରି ହରିବ ଅବା ତୁମ୍ଭେ ପରନାରୀ
ଭୁଞ୍ଜିବ ସଂସାରେ ପାପ ଅର୍ଜି କେଉଁ ଶିରୀ ।
ପରଦାରା ହୃତଦୋଷ କାହିଁପାଇଁ ନୋହି
କୋଟିତୀର୍ଥ ଗଲେ କେଭେ ଅଙ୍ଗୁ ନ ଛାଡ଼ଇ ।
ପରଦାରାହାରୀ ଲୋକ ନର୍କେ ହୁଏ ଗତି
କୋଟି ଯଜ୍ଞ କଲେ ତହୁଁ ନ ହୁଏ ମୁକତି ।
ଯଜ୍ଞ ତୀର୍ଥ କଲେ ଯେବେ ପାପ ଛାଡୁଥାନ୍ତା
କ୍ଷୀରେ ଧୋଇଲେ ଅଙ୍ଗାର ଶୁକ୍ଳ କି ନୁହନ୍ତା ।
ଅଙ୍ଗାର କଦାପି ଶୁକ୍ଳ ବର୍ଣ୍ଣ ନ ହୁଅଇ
ସେହିପରି ପରଦାରା ପାପ ଦେହେ ଥାଇ ।
ବିଜ୍ଞ ହୋଇ ଏହା ତୁମ୍ଭେ ହୃଦେନ ପାଞ୍ଚିଲ
ଛାର ପରସ୍ତିରୀ ଦେଖି କିମ୍ପା ମନ କଲ ।
ଆକାଶ ବୋଇଲେ ତୁଗୋ ଶୁଣ ପ୍ରାଣ ସହି
ପୁରୁଷ ଲୋକର କିଛି ଆୟତ୍ତ ତ ନାହିଁ ।
ସୁନ୍ଦରୀ ସ୍ତିରୀ ଯଦ୍ୟପି ଦେଖେ ନୟନରେ
ଅବଶ୍ୟ ତା ତନୁ ଘାରି ହୁଏ କନ୍ଦର୍ପରେ ।
ଚାହିଁବା ମାତ୍ରକେ ତାକୁ କରେ ମନ ରତି
ବୋଲଇ ଏ କେଡ଼େ ବଡ଼ ଅଟେ ରୂପବତୀ ।
ଏ ପ୍ରିୟା ସଙ୍ଗରେ ଯେବେ ରହନ୍ତି ଆଜିକ
କି ଭୋଗ ଭୁଞ୍ଜନ୍ତି ଆଉ ଯାଇଣ ଗୋଲୋକ ।
ଏତେ ପାଞ୍ଚି ତାହାକୁ ସେ ରଖେ ମାନସିକେ
ଦେହ ନ ଛୁଇଁଣ ରତି କରେ ଚିତ୍ତ ଯାକେ ।
ଅପରିଚୟ ଲୋକଙ୍କ ଏସନ ଲକ୍ଷଣ
ପରିଚୟ ଲୋକକଥା କହୁଅଛି ଶୁଣ ।
ପରିହାସ ଲଗାଇଣ ସୁରତି କରନ୍ତି
ଚାଟୁ ରସ କଥା କହି ମନ ମୋହି ଦ୍ୟନ୍ତି ।
ନୋହିଲେ ଏକାକୀ ଦେଖି ବଳେ କେବା ଧରି
ଅତିଶୀଘ୍ରେ ଛାଡ଼ିଦିଏ ସଙ୍ଗେ ପ୍ରୀତିକରି ।
ସେ ରୂପେ ତୁହି ଏବେ ପଡ଼ିଛୁ ମୋ ଆଗେ
ନାହିଁ ବୋଲି କରିଗଲେ ଯିବୁ କେଉଁ ଦିଗେ ।
ମୁହିଁ ତ ଅଛିଦ୍ରେ ଅଛି ସବୁଠାରେ ପୂରୀ
ମନକଲେ ଯିବି ତୋତେ କ୍ଷଣେ ମାତ୍ର ହରି ।
ସିଂହିକା ବୋଲେ ବହିବି ମୁହିଁ କେତେ ଆଉ
ତୁମ୍ଭେ ଏଡ଼େଲୋକ ହୋଇନ ପାଞ୍ଚିଲ ଯହୁଁ ।
ଏଥିରେ ଯାଦୋଷା ଦୋଷ ତୁମ୍ଭଙ୍କୁ ତା ଲାଗେ
ଦିବା ଅନ୍ତେ ଆସ ପଛେ ରାତ୍ର ମୋର ସଙ୍ଗେ ।

ଆକାଶ ବୋଇଲେ ଏଥେ ଦୋଷ ନାହିଁ କିଛି
ତୋର ମୋର କେତେ ଅବା ପଦାର୍ଥ ସରୁଛି ।
ଏହାଶୁଣି ହସି ହସି ପଳାଇଲା ବାଳୀ
ଆକାଶ ପୁରୁଷ ମଧ ଶୂନ୍ୟେ ଗଲେ ଚଳି ।
ଏଥୁଅନ୍ତେ ଆନବାଣୀ ଶୁଣ ହେ ନାରଦ
ଦିବସ ସରିଲା ଆସି ହେଲା ନିଶିଅର୍ଦ୍ଧ ।
ତାହା ଦେଖିଣ ଆକାଶ ଶୂନ୍ୟ ବାହାରିଲେ
ସୁବେଶ ହୋଇ ସିଂହିକା ପାଶେ ପ୍ରବେଶିଲେ ।
ନାନାଦି ବିନୋଦେ ତହୁଁ କରିଲେ ରମଣ
ଏଥୁଅନ୍ତେ ଯାହା ହେଲା ନାରଦ ତୁ ଶୁଣ ।
କଶ୍ୟପ ମହର୍ଷି ଏଣେ ନିଦ୍ରା ଯାଇଥିଲେ
ମନ ଚଞ୍ଚଳିତ କରି ଉଠିଣ ବସିଲେ ।
ପାଞ୍ଚିଲେ ନବକନ୍ୟା ତ ହେଲେ ପୁତ୍ରବତୀ
ଆବର ଚାରିଙ୍କ ସଙ୍ଗେ କରିବା ପୀରତି ।
ପୁତ୍ର ନ ପାଇଲେ ସେହୁ ରହିବେ କି ଭକ୍ଷ୍ୟେ
ଦିବାରାତ୍ର ନମାନିଣ ଆସିବ ମୋ ତୁଲେ ।
ପୁତ୍ର ଦିଅ ବୋଲି ବଳେ ବିଛାଇବେ ଶଯ୍ୟା
ଏକଥା ଦେଖିଣ ମୋତେ ଲାଗୁଅଛି ଲଜ୍ଜା ।
ସେ ଯାହା ଆସିବେ ଆମ୍ଭ ଯିବାର ଉଚିତ
ଏତେ ମନେ ପାଞ୍ଚି ଚଳିଗଲେ ତପୋବନ୍ତ ।
ବିଚାରିଲେ ସିଂହିକାର ପାଶେ ଆଗେ ଯିବା
ଆବର ତିନି କନ୍ୟାଙ୍କୁ ପଛେ ପ୍ରବୋଧିବା ।
ଏମନ୍ତ ପାଞ୍ଚିଣ ମିଳି ପୁରମଧେ ଯାଇ
ଡାକିଲେ ସିଂହିକା ନାମ ଧରି ଦ୍ୱାରେ ରହି ।
କଶ୍ୟପ ଡାକିଲେ ଯେତେ ହୋଇବ ବା କିସ
ନରି ସିଂହିକାର ଲାଗି ଅଛି ରତିରସ ।
ସିଂହିକା ଆକାଶ ସଙ୍ଗେ ପ୍ରୀତି କରୁ କରୁ
ଆପଣାର ସ୍ୱାମୀ ଡାକ ଶୁଣି ଖଣ୍ଡେ ଦୂରୁ ।
ଆକାଶକୁ ବୋଲେ ଏବେ ଅଇଲେ ମୋ ସ୍ୱାମୀ
ଅତିଶୀଘ୍ର ଚଳିଯାଅ ତୁମ୍ଭେ ନିଜ ଭୂମି ।
ଏହା ଶୁଣିଣ ଆକାଶ ରେତ ତେଜି ଗର୍ଭେ
ନିମଜ୍ଜି ରହିଲେ ଶୂନ୍ୟେ ଯାଇ ଅତି ବେଗେ ।
ସିଂହିକା ଉଠିଣ ଯହୁଁ ଶୀଘ୍ର ଆସେ ଧାଇଁ
କେଶବାସ ଅସମ୍ଭାଳେ କବାଟ ଫିଟାଇ ।
ଦେଖିଲା ସ୍ୱାମୀଙ୍କୁ ଯହୁଁ ପଳାଇଲା ଲାଜେ
ସମସ୍ୟା ନ ଦେଇ ସିଏ ଶୁଏ ଆନ ଶେଯେ ।
ଜାଣିଲେ କି ପରବୋଲି ଭାଳୁଅଛି ମନେ
ଏମନ୍ତ ସମୟେ ଋଷି ମିଳିଲେ ଆସନେ ।
ପ୍ରିୟାର ନିକଟେ ଯାଇ ବସି ଉପଚାରୀ
ଝିଙ୍କିଲେକ ତହୁଁ ଏକ ଏକ କର ଧରି ।

ଉଠ ଉଠ ଆରେ ସଖି ଧରି କୋଳ କଲେ
କର ଅଙ୍ଗୁଳି ଫୁଟାଇ ଚାଟୁ ସେ କହିଲେ ।
ସ୍ନେହଭରେ ଦେହେ ନେଇ ପକାନ୍ତେ ସେ ହାତ
ଚାହିଁଲେ ଅଙ୍ଗରୁ ଝାଳ ହେଉଛି ସ୍ଖଳିତ ।
ବସ୍ତ୍ରଯାକ ତିନ୍ତିଅଛି ଦେଖି ତପଶୀଳ
ପାଞ୍ଚିଲେ କି ରୂପେ ଅବା ବହୁଅଛି ଝାଳ ।
ଆଶ୍ଚର୍ଯ୍ୟ ହୋଇଣ ଋଷି ପୁଚ୍ଛନ୍ତେ ପ୍ରିୟାକୁ
ହେ ସଖି ବିବର୍ଣ୍ଣ କିମ୍ପା ଦିଶେ ତୋର ବୁକୁ ।
ଆବର ଦେହେ ତ ନଖରେଖା ଫୁଟି ଦିଶେ
ଖୋଷାଗୋଟି ଉଲୁରିଣ ତଳକୁ ତ ଖସେ ।
କହ କିମ୍ପା ଦେହୁ ଝାଳ ବହୁଅଛି ସତେ
ତୋ ମୁଖରେ ଦନ୍ତମୁଦ୍ରା ଦେଲା କେହୁ ଏତେ ।
ଏଥିର କାରଣ ଫେଡ଼ି କହ ତୁ ଏକ୍ଷଣି
ନ କହିଲେ ଅଭିଶାପ ଲଭିବୁଟି ପୁଣି ।
ଏହା ଶୁଣି ସିଂହିକା ଯୋଡ଼ି ବେନିକର
ବୋଇଲା ଏଥିରେ ଦୋଷ ନାହିଁ ସ୍ୱାମୀ ମୋର ।
ଆକାଶ ଦେବତା ଆସି ବଳତ୍କାର କରି
ଏକାକୀ ଦେଖିଣ ମୋତେ ରମିଲାକ ଧରି ।
ସହଜରେ ଯୁବା ସ୍ତିରୀ ଏକା ରହଇ କି
ବଳେ ପୁରୁଷ ହରିଲେ କି କରି ପାରେ କି ।
ନ ଜାଣିବା ଲୋକ ସିନା ସ୍ତିରୀ ନିନ୍ଦା କରେ
ସ୍ୱାମୀର ଅଯୋଗ୍ୟପଣେ ପ୍ରିୟା ଆନ ହରେ ।
ସ୍ତିରୀଙ୍କର କି ବା ଦୋଷ ପୁରୁଷେ ବିନଷ୍ଟ
ଆପଣା କ୍ରିୟା ବୁଡ଼ାଇ ହୁଅନ୍ତି ଲମ୍ପଟ ।
ଜାତି ନ ବିଚାରି ଯେଣୁ ବଳରେ ହରନ୍ତି
ତେଣୁକରି ବଡ଼କୋପୀ ପୁରୁଷେ ଅଟନ୍ତି ।
ଏଥକୁ ବୁଝିଣ ସ୍ୱାମୀ କୋପ ତୁମ୍ଭେ କର
ସ୍ତିରୀଲୋକ ସିନା ମୁହିଁ କେତେକ ମାତର ।
ଏହା ଶୁଣି ଋଷି କ୍ଷଣେ ରହି ସ୍ତମ୍ଭୀଭୂତେ
ବୋଇଲେ ପାମରୀ ଆଲୋକହୁଁ ଶୁଣ ତୋତେ
ଆମ୍ଭେ ଯେଡ଼େ ରହସ୍ୟରେ ଆସିଥିଲୁ ଆଜ
ଅବଶ୍ୟ ତୋହର ଜାଣ ହୋଇଥାନ୍ତା କାର୍ଯ୍ୟ ।
ମୋର ସେ ରହସ୍ୟ ତୁହି ଭାଙ୍ଗି ଦେଲୁ ଯେଣୁ
ରାହୁ ନାମେ ବାଳକ ତୋ ଗର୍ଭୁ ଜନ୍ମୁ ତେଣୁ ।
ଆକାଶର ବୀର୍ଯ୍ୟ ମଧ ରହିଅଛି ଗର୍ଭେ
ଆମ୍ଭ ବୀର୍ଯ୍ୟ ଯାଇ ପୁଣ ରହିଲା ସେ ଠାବେ ।
ମିଶ୍ରିତ ହୋଇଣ ଯେଣୁ ଜଠରେ ରହିଲା
ତେଣୁ ତାର ଅଭିପ୍ରାୟ ଶୁଣିଥା ତୁ ଭଲା ।
ଆମ୍ଭ ରେତୁଁ ହେବ ରାହୁ ନଭ ରେତୁଁ କେତୁ
ଏକ ଶରୀର ବହିଣ ବେନି ଉପୁଜନ୍ତୁ ।
ଏମନ୍ତ କହିଣ ଋଷି ବାହୁଡ଼ନ୍ତେ ରାଗେ
ଛାଡ଼ି ନ ଦେଇଣ ବାଳୀ ଓଗାଳିଲା ଆଗେ ।
ଅତ୍ୟନ୍ତ ବିନୟୀହୋଇ ଯୋଡ଼ି ବେନିକର
ବୋଇଲା ବଳାକୁ ମୋର କର ପ୍ରତିକାର ।
କି ରୂପରେ ଏକ ଦେହ ବହି ହେବେ ଦୁଇ
ଏକଥା ସୁଦୟା କରି ଯାଇଥାଅ କହି ।
କଶ୍ୟପ ବୋଇଲେ ତୁହି ଅର୍ଜିଅଛୁ ଏହା
ପର ଆପଣାର ବୀର୍ଯ୍ୟ ମିଶାଇଲୁ ଯାହା ।
ବେନି ରେତରୁ ଜନମ ହେବ ଏକ ପୋଏ
ତାହାର ବିଧାନ ଶୁଣ କହିବା ଥୋକାଏ ।
ଏହି ସତ୍ୟଯୁଗେ ଦୈତ୍ୟ ଦେବଗଣେ ମିଳି
ମନ୍ଥିବେ ସମୁଦ୍ର ଯେତେବେଳେ ବାହୁ ତୋଳି ।
ସେହି ମନ୍ଥନୁ ଅପୂର୍ବ ଦ୍ରବ୍ୟ ଉପୁଜିବ
ଇନ୍ଦ୍ର ହରି ହର ତାହା ବାଣ୍ଟି ନେବେ ସର୍ବ ।
ସୁଧାପାଇଁ ଦେବେ ଦୈତ୍ୟ କଳିଲଗାଇବେ
ସେହିଠାରେ ଜଗନ୍ନାଥ ମୋହିନୀ ହୋଇବେ ।
ବୋଲିବେ କିପାଇଁ ତୁମ୍ଭେ ଲଗାଇଛ ଗୋଳ
ଆମ୍ଭେ ପରଷି ଦେଉଛୁ ଭୁଞ୍ଜ ବେନିକୁଳ ।
ଶୁଣିସେ ବଚନ ସର୍ବେ ବଶୀଭୂତ ହେବେ
ଦୁଇକୁଳ ବାଣ୍ଟିନେଇ ଭୁଞ୍ଜିଣ ବସିବେ ।
ତହୁଁ ଦେବଙ୍କୁ ଅମୃତ ପରଷିବେ ନେଇ
ଦୈତ୍ୟଙ୍କୁ ଅପରଦ୍ରବ୍ୟ ଭୁଲାଇବେ ଦେଇ ।
ଏମନ୍ତ ସମୟେ ତହିଁ ଥିବ ତୋର ପୁଅ
ଦେବଙ୍କ ସଙ୍ଗରେ ବସି ଭୁଞ୍ଜିବ ଅମୀୟ ।
ଦେବରୂପ ଧରି ଗୁପ୍ତେ କରନ୍ତେ ଭୋଜନ
ଚନ୍ଦ୍ରସୂର୍ଯ୍ୟ ବେନି ତାକୁ ଚିହ୍ନିବେ ବହନ ।
ନାରାୟଣ କର୍ଣ୍ଣେ ତହିଁ କହିଦେବେ ଯାଇ
ଦେଖ ମହାପ୍ରଭୁ ରାହୁ ସୁଧା ଗଲା ଖାଇ ।
ଅସୁରପନ୍ତିରୁ ଆସି ବସି ଆମ୍ଭ ସଙ୍ଗେ
ଆଚାର ଅଶୁଚି ହୋଇ ଗ୍ରାସକଲା ବେଗେ ।
ଚଳୁ ନ ଦେଇଣ ବୀର ନ ସିଞ୍ଚିଲା ତଳେ
ପାଦ ନ ଧୋଇଣ ଆଗ ଭୁଞ୍ଜିଲା ତତ୍କାଳେ ।
ଏହି ଆଭାସରୁ ତାକୁ ଚିହ୍ନିଲୁଟି ଆମ୍ଭେ
ତୁମ୍ଭେ ଅନ୍ତର୍ଯ୍ୟାମୀ ପ୍ରଭୁ ବୁଝ ଏହା ଏବେ ।
ଶୁଣି ନାରାୟଣ ଚନ୍ଦ୍ର ସୂର୍ଯ୍ୟଙ୍କର ବାଣୀ
ସୁଦର୍ଶନେ ଆଜ୍ଞା ଦେଲେ ରାହୁ ପକା ହାଣି ।
ବିଷ୍ଣୁ ବୋଲପାଇ ସୁଦର୍ଶନ ଚକ୍ରଯିବ
ରାହୁ ସୁଧା ଖାଉ ଖାଉ ମୁଣ୍ଡ ହାଣିଦେବ ।
ଛିଡ଼ିଯାନ୍ତେ ବେନିଗୋଟି ହୋଇବ ସେ ରାହୁ
ତାହା ଦେଖି ଚମତ୍କାର ହେବେ ମହାବାହୁ ।

ବୋଲିବେ ଅମୃତ ଭକ୍ଷି ହେଲା ଏ ଅମର
ମାରନ୍ତେ ଅଛଇ ପ୍ରାଣେ ଛିଡ଼ିଲା ଶରୀର ।
ବେନିଖଣ୍ଡ ହେଲେ ମଧ୍ୟ ନୁହେଁ ଯେବେ ମୃତ୍ୟୁ
ତେବେ ଏହି ବେନିଗ୍ରହ ହୋଇ ରହିଥାନ୍ତୁ ।
ଗଣ୍ଡି ଖଣ୍ଡ କେତୁ ହେଉ ମୁଣ୍ଡ ହେଉ ରାହୁ
କେତୁର ହୃଦୟେ ବେନି ଚକ୍ଷୁ ଦିଶୁଥାଉ ।
ଗ୍ରହଗଣେ ଥାଇ ଉଦେ ହେଉ ଏ ରଜନୀ
ଏ ହେତୁରୁ ସଂସାରରେ ନ ପାରୁ କେ ଚିହ୍ନି ।
ଯଦ୍ୟପି ଏ ନିଷ୍ଟେ ଚିହ୍ନା ପଡ଼ିବ ସଂସାରେ
ମରିବେ ପ୍ରାଣୀ ସକଳ ରୋଗ ଦୁର୍ଭିକ୍ଷରେ ।
ଯେବଣ ଦିଗେ ଦିଶିବ ଅବା କେଉଁ ଦେଶେ
ଲାଗଡ଼ତାର ନାମକୁ ବହିବ ଯେ ମାସେ ।
ଏହିରୂପେ ଏ ଗ୍ରହର ଅଟଇ ନିର୍ଣ୍ଣୟ
କହିବା ଶୁଣ ତୁ ଏବେ ରାହୁର ବିଷୟ ।
ଭାଗିଲେ ଏ ରାହୁ ଗ୍ରାସ ଯେହୁ ରବି ଶଶୀ
ଅମାବାସ୍ୟା ପୂର୍ଣ୍ଣିମାରେ ଖାଉ ତାଙ୍କୁ ଗ୍ରାସି ।
ତଥାପି ଯେବଣ ଦିନେ ଗ୍ରାସିବ ସେ ଯାଇ
ତହିଁର ଯେ ସନ୍ଧି ତୋତେ ପୁଣ ଥିବା କହି ।
ରବି ଉଦେ ଶଶୀ ଯେବେ ରହିବଟି ଆସି
ଆବର ହୋଇବ ଯେବେ ପଉର୍ଣ୍ଣମୀ ନିଶି ।
ସେହିଦିନ ରାହୁଯାଇ ଚନ୍ଦ୍ରକୁ ଗ୍ରାସିବ
ସୂର୍ଯ୍ୟଙ୍କ ପାଶକୁ ଏହି ଯୋଗ ଧରିଯିବ ।
ଅପର ଦିନେ ଛୁଇଁଲେ ମରିବ ଜାଣଟି
ମୋ ଆଜ୍ଞା ମେଣ୍ଟିଲେ ତାର ମୁର୍ଦ୍ଧା ଯିବ ଫାଟି ।
ଶୁଣରେ ସିଂହିକା ବୋଲି କଶ୍ୟପ କହନ୍ତି ।
ଏମନ୍ତ ଅଟଇ ତୋର ପୁତ୍ରଙ୍କର ରୀତି ।
ଶାସ୍ତ୍ରକୁ ଚାହିଁଣ ଏକା କହିଲଇଁ କିଛି
ତୁହି ପଥେ ଥାଅ ମୁହିଁ ସ୍ନାନକୁ ଯାଉଛି ।
ଏତେ କହିଣ କଶ୍ୟପ ଗଲେ ନିତ୍ୟକର୍ମେ
ନିତ୍ୟକର୍ମ ସାରିଆସି ମିଳିଲେ ଆଶ୍ରମେ ।
କେତେଦିନ ଅନ୍ତେ ପୁଣି ଜନମିଣ ରାହୁ
ଗ୍ରହ ମଧ୍ୟେ ଲେଖା ହୋଇ ରହିଲାଟି ସେହୁ ।
କହନ୍ତି ଯେ ପିତାମହ ଶୁଣରେ ନାରଦ
ଏ ରୂପେ ରାହୁ କେତୁଙ୍କ ଜନମ ସମ୍ବାଦ ।
ଆବର ଏକ କନ୍ୟାର କଥା ଶୁଣ ଏବେ
ଯେଉଁ ରୂପେ ଅରିଷ୍ଟାର ବାଳକେ ଜନ୍ମିବେ ।
ଭାଷା ପ୍ରବନ୍ଧରେ ତାହା କହୁଥାଇଁ ତୋତେ
ଚଳିଲା ଅରିଷ୍ଟା କନ୍ୟା ସ୍ୱାମୀର ଅଗ୍ରତେ ।
ଦଶ ଭଗ୍ନିମାନଙ୍କର ବଂଶ ହୋଇଲାରୁ
ଅରଜୋବତୀ ହୋଇଣ ବାହାରିଲା ଘରୁ ।
ପ୍ରଥମରୁ ରଜସ୍ୱଳା ହୋଇନାହିଁ ସେହି
ତଥାପି ସେ ସ୍ୱାମୀ ସଙ୍ଗେରମିବାକୁ ଯାଇ ।
କି ରୂପରେ ବଂଶ ଆଗ ହେଉ ବୋଲିକରି
ପତିକି ଯାଇଣ ରତି ମାଗିଲାକ ନାରୀ ।
ଏହି କଥା ଗୋଟି କଶ୍ୟପଙ୍କୁ ଜଣାତାହିଁ
ପତ୍ନୀର ନିମନ୍ତେ ବସିଅଛନ୍ତି ସେ ତହିଁ ।
ମିଳିଯାଏ ଯେଉଁଦିନ ଆସି ଯେଉଁ ସତୀ
ଅବଶ୍ୟ ତା ସଙ୍ଗେ ମୁନି କରନ୍ତି ପୀରତି ।
ଏହି ରଜୋବତୀ ପ୍ରାୟ ନୁହେଁ ବୋଲି କରି
କିପରି ବା ଜାଣିବେ ତ ସେହି ତପଚାରୀ ।
ସୁବେଶ ହୋଇଣ ଯହୁଁ ଅରିଷ୍ଟା ଅଇଲା
କାମେ ଋଷିଙ୍କର ମନ ମୋହିତ ହୋଇଲା ।
ବାହୁପାଶେ ବାନ୍ଧି କୋଳ କରନ୍ତେଣ ମୁନି
ଯୁବତୀର ଚିହ୍ନ କିଛି ନ ପାରିଲେ ଜାଣି ।
କଶ୍ୟପ ବୋଇଲେ ସଖି କେମନ୍ତେ ଏ ରୀତି
ଅରିଷ୍ଟା ବୋଲେ ନୋହିଛି ମୁହିଁ ପୁଷ୍ପବତୀ ।
ପୁଣି କଶ୍ୟପ ବୋଇଲେ କେଡ଼େ କର୍ମକଲୁ
ରଜୋବତୀ ନ ହୋଇଣ କେମନ୍ତେ ଅଇଲୁ ।
ପତ୍ନୀମାନେ ଶୁଣି ମୋର କି ପାଞ୍ଚିବେ ଚିତ୍ତେ
ଏହି କଥା ବଡ଼ ଲଜ୍ଜା ହୋଇଲାକ ମୋତେ ।
ଏଣୁକରି ପ୍ରିୟା ଆରେ କହୁ ତୋତେ ଶୁଣ
ବୀର୍ଯ୍ୟତ ଜଠରେ ତୋର ପଡ଼ିଲାଣି ଜାଣ ।
ଗର୍ଭ ହେଲୁ ବୋଲି ଏବେ କେହି ନ ଜାଣନ୍ତୁ
ବିଂଶତି ଦିନାନ୍ତେ ଡିମ୍ବ ଜନମ କରନ୍ତୁ ।
ପୁଣି ସେ ଡିମ୍ବ ସକଳ ଉଷୁମ କରିଲେ
ତେବେ ଯାଇ ତୋ ବାଳକେ ଉପୁଜିବେ ଭଲେ ।
କିନ୍ତୁ ଡିମ୍ବୁ ଯେତେ ଜୀବ ଉପୁଜିବେ ତୋର
କର୍ଣ୍ଣ ଦ୍ୱାର ପଲ୍ଲବିତ ନ ଥିବ ବାହାର ।
କେବଳ ସେ ରନ୍ଧ୍ରଥିବ ଶବ୍ଦ ଶୁଣୁଥିବେ
ସବୁଦିନେ ତୋର ବଂଶ ଡିମ୍ବୁ ଉପୁଜିବେ ।
କଶ୍ୟପ ମୁଖରୁ ବାଳୀ ଏ ବଚନ ଶୁଣି
ପଚାରଇ ପୁନରପି ଯୋଡ଼ି ବେନିପାଣି ।
ବୋଲେ ସ୍ୱାମୀ ଡ଼ିମ୍ବୁ ପଛେ ଜନମନ୍ତୁ ପୋଏ
କିମ୍ପାଇଁ ନୋହିବ କର୍ଣ୍ଣ କହ ତାଙ୍କ ଦେହେ ।
କଶ୍ୟପ ବୋଇଲେ ସଖି କହୁ ଶୁଣ ତେବେ
ଡିମ୍ବ ସକାଶୁ ଶ୍ରବଣ ନ ହୋଇବ କେବେ ।
ଦଶମାସ ଗର୍ଭେ ଧରି ଯେବେ ଉପୁଜାନ୍ତୁ
ତେବେ ତୋର ପୁତ୍ରଙ୍କର ଶ୍ରବଣ ଦେଖନ୍ତୁ ।
କର୍ଣ୍ଣଦ୍ୱାର ପଲ୍ଲବିଣ ପଦାକୁ ଦିଶନ୍ତା
ଡିମ୍ବ ଜନ୍ମ ହୋଇବାରୁ ନ ବଢ଼ିବ ପିତା ।

ଗର୍ଭରୁ ଯେତେକ ଜୀବ ପ୍ରସବ ହୁଅଇ
ସବୁରି ଦେଖ ତୁ ସଖି ଶ୍ରବଣ ଅଛଇ ।
ତୁହିତ ଲୋଡ଼ିଲୁ ରତି ନୋହି ପୁଷ୍ପବତୀ
ସେ ଦୋଷରୁ ନ ଦିଶିବ ତାଙ୍କ କର୍ଣ୍ଣ ପନ୍ତି ।
ଏତେ କହିଣ କଶ୍ୟପ ଗଲେ ନିତ୍ୟ କର୍ମେ
ସ୍ନାନସାରି ପ୍ରବେଶିଲେ ଆସି ନିଜାଶ୍ରମେ ।
ଅରିଷ୍ଟା ମଧ ପତିର ବଚନକୁ ପାଳି
ଡିମ୍ବ ପାତି ଉଷୁମାଇ ବସିଲା ସେ ବାଳୀ ।
ପୂର୍ବେ ତାହାକୁ କଶ୍ୟପ କହିବା ପ୍ରମାଣେ
ଜନମିଲେ ଡିମ୍ବମଧୁ ସବୁ ପକ୍ଷୀଗଣେ ।
ରହିଲେକ ଠାବେ ଠାବେ ଜମ୍ବୁଦ୍ୱୀପ ସୀମା
ଶୁଣ ବାବୁରେ ନାରଦ କହେ ବେଦବ୍ରହ୍ମା ।
ଏଗାର କନ୍ୟା ଏବେ ତ ହେଲେ ପୁତ୍ରବତୀ
ଆବର ଏକ କନ୍ୟାର ଶୁଣ ତୁ ସନ୍ତତି ।
ଆବର କନ୍ୟାର ବଂଶ ଦେଖି ରିଷ୍ଟା ନାରୀ
ଧରିଲା ସ୍ୱାମୀଙ୍କୁ ବଳେ ଯାଇ କୋଳକରି ।
ଲଜ୍ଜାକୁ ଯେ ତ୍ୟାଗକରି ଶଯ୍ୟା ସଜାଇଲା
ପତି ମୁଖ ଚାହିଁ ସତୀ ଆକୁଳିତ ହେଲା ।
ତାକୁ ଦେଖିଣ କଶ୍ୟପ ହସିଣ ଅଳପ
ପ୍ରିୟାକୁ ବୋଇଲେ ସଖି ପୁତ୍ର ଦେଗେକଳ୍ପ ।
ଏହା ଶୁଣି ରିଷ୍ଟାବୋଲେ ପୁତ୍ର ହେବ ଯେବେ
ତାଙ୍କୁ ଦେଖିଲା ମାତ୍ରକେ ଲୁବ୍‌ଧ ହେବେ ସର୍ବେ
ଯାବତ ମନୁଷ୍ୟମାନେ ମୋହି ହେବେ ଚାହିଁ
ଅନୁକ୍ଷଣେ ମୋ ପୁତ୍ରକୁ ହୃଦେ ଥିବେ ବହି ।
ଭୂଷଣ ହୋଇ କରିବେ ସର୍ବେ ଆୟବ୍ୟୟେ
ରହିବେ ସଂସାର ଯାକେ ବ୍ୟାପି ସବୁଠାଏଁ ।
ଆବର ଯାହାକୁ ନେତ୍ରେ ଚାହିଁଲେ କିଞ୍ଚିତେ
ଧନେ ଗରିଷ୍ଠ ହୋଇ ସେ ରହିବ ଜଗତେ ।
ସବୁରି ମୋ ପୁତ୍ରଠାରେ ଶ୍ରଦ୍ଧା ଜାତ ହେବ
ଭୋ ସ୍ୱାମୀ ଏ ରୂପେ ମୋତେ ପୁତ୍ର ଦାନ ଦେବ ।
କଶ୍ୟପ ବୋଇଲେ ତେବେ ଜନ୍ମୁ ଅଷ୍ଟରତ୍ନ
କାଂଶ ତାମ୍ର କପର୍ଦ୍ଦ ଯେ ଆବର ସୁବର୍ଣ୍ଣ ।
ସିପ ସିଂସକ ଖପର ରୂପା ରସ ଯାଏ
ଏ ଆଦି ଦ୍ରବ୍ୟ ସକଳ ହୁଅନ୍ତୁ ତୋ ପୋଏ ।
ଏତେ କହିଣ କଶ୍ୟପ କଲେ କ୍ରୀଡ଼ା ଭାବ
ସେହିରୂପେ ଜନମିଲେ ଗର୍ଭୁ ସବୁ ଦ୍ରବ୍ୟ ।
ରିଷ୍ଟାକନ୍ୟା ଦେଖି ତାଙ୍କୁ ଆନନ୍ଦିତ ହେଲେ
ପୁଣି ଦ୍ରବ୍ୟ ବୋଲାଇ ସେ ବ୍ରହ୍ମାଣ୍ଡେ ରହିଲେ
ସକଳ ପ୍ରାଣୀଙ୍କୁ ସେହି କଲେ ବଶୀଭୂତ
ନାରଦଙ୍କ ଆଗେଏହା କହନ୍ତି ବିଧାତ ।

ପୁତ୍ରଜାତ କରି ଋଷି ତହୁଁ ଗଲେ ଚଳି
ତୀର୍ଥେ ସ୍ନାନକରି ପୁଣି ଗୃହେ ଆସି ମିଳି ।
ଦେବ ପୂଜା ଶେଷକରି ମଣୋହି ସେ କଲେ
ରଜନୀ ହୁଅନ୍ତେ ପୁଣି ସନ୍ଧ୍ୟା ସୁମରିଲେ ।
ଏଥୁଅନ୍ତେ ଆନକଥା ଶୁଣହେ ନାରଦ
କହିବା ତୋ ଆଗେ ମନୁ କନ୍ୟାର ସମ୍ବାଦ ।
ପ୍ରଜାପତି ଦୁହିତା ସେ ଋଷି ସାନ ପତ୍ନୀ
ଦେଖିଲା ସେ ପୁତ୍ରବତୀ ହେଲେ ବାର ଭଗ୍ନୀ
ମନେ ପାଞ୍ଚେ ଆଉ ଏକ ଅଛି ସିନା ମୁହିଁ
ସ୍ୱାମୀପାଶେ ଯାଇ ଏକ ପୁତ୍ର ମାଗିବଇଁ ।
ଏତେ ବିଚାରି ସୁନ୍ଦରୀ ଅଙ୍ଗ ହେଲା ମାଁଠି
ଆପଣା ନଗରୁ ଚଳିଗଲା ଶୀଘ୍ରେ ଉଠି ।
ରଜନୀ ଅର୍ଦ୍ଧେ ସଜନୀ ସଜ ହୋଇଗଲା
ପ୍ରତ୍ୟକ୍ଷରେ ଲକ୍ଷ୍ମୀଦେବୀ ପ୍ରାୟେକ ଦିଶିଲା ।
ତାର ତୁଲେ ବାଳୀ ଆଉ ତିନିପୁରେ ନାହିଁ
ନାରଦଙ୍କ ଆଗେ ଏହା ବେଦବର କହି ।
ପାର୍ବତୀଠାରୁ ଅଧିକ ସୁନ୍ଦରୀ କେ ଆଉ
ତହୁଁ ଦ୍ୱିଗୁଣ ସୁନ୍ଦରୀ ମରୀଚିର ବୋହୂ ।
ସାବିତ୍ରୀଠାରୁ ଦିଶଇ ଚାରିଗୁଣେ ଶୋଭା
ରତିଠାରୁ ଷଡ଼ଗୁଣେ ଅଟେ ନବଯୁବା ।
ଶାରଦାରୁ ଆଠଗୁଣେ ରୂପ ତା ପ୍ରକାଶେ
ରମାଠାରୁ ଦଶଗୁଣେ ସୁନ୍ଦରୀ ଅଟେ ସେ ।
ଉର୍ବଶୀ ମେନକା ଆଉ ରୋହିଣୀ ଇନ୍ଦ୍ରାଣୀ
ଯାଙ୍କଠାରୁ ଶତେଗୁଣ ସୁନ୍ଦରୀ ସେ ପୁଣି ।
ଏଥୁ ଆନ ସ୍ତିରୀ ଯେତେ ଅଛନ୍ତି ଜଗତେ
ମନୁଠାରୁ ରୂପବତୀ ନ ଦିଶେ କେ ମୋତେ ।
ଚନ୍ଦ୍ର କୋଟି ଗୁଣେ ମୁଖ ବିରାଜଇ ତାର
ସୁବେଶ ହୋଇ ମିଳିଲା ଆସି ସ୍ୱାମୀପୁର ।
ପୁତ୍ର ମନାସିଣ ହୃଦୁ ସଂଶୟକୁ ଛାଡ଼ି
କଶ୍ୟପ ଆଗରେ ବସି କହେ କରଯୋଡ଼ି ।
ଆହେ ପତି ପ୍ରାଣପତି ମୋ ବଚନ ଶୁଣ
ଅନୁକ୍ଷଣେ ପୀଡୁଅଛି ଦେହେ ପଞ୍ଚବାଣ ।
ବୁଝିଲେ ତୁମ୍ଭର ବହୁ ଭାରିଯା ଅଛଇ
ତେଣୁକରି ଛାମୁରେ ମୁଁ ଖଟି ନ ପାରଇ ।
ଦଇବେ ଅଟଇ ମୋର ଯୌବନ ବୟସ
ସୁକର୍ମରେ ଆସି ଏବେ ଭେଟିଲେକ ପାଶ ।
ଯଦ୍ୟପି ଭାରିଯାଠାରେ ଭର୍ତ୍ତା ସ୍ନେହ ଥାଇ
କିସ କରିବେ କୁଟୁମ୍ବଯାକ ଖଳ ହୋଇ ।
ଦିଅର ନଣନ୍ଦ ଶାଶୁ ଶ୍ୱଶୁର ଗଞ୍ଜିଲେ
ଏ ତାପ ନକାଟେ କେଭେ କାନ୍ତ ଦୟା ଥିଲେ ।

ପ୍ରିୟା ବାଣୀ ଶୁଣି ଋଷି ଅଳପ ହସିଲେ
ବୋଇଲେ ସଖିରେ ତେବେ ରହ କିଛି କ୍ଷଣ ।
ଶୁଭଲଗ୍ନ ବୁଝି ଜାତ କରିବା କୁମର
ଜନ୍ମନ୍ତୁ ମାନବ ଦେହ ବହି ପୁତ୍ରେ ତୋର ।
ଏମନ୍ତ କହିଣ ମୁନି ଧରି ପ୍ରିୟା ହାତ
ଚଳିଲେ କ୍ରୀଡ଼ା ମନ୍ଦିରେ ହୋଇ ହରଷିତ ।
ଚକ୍ର ଆକାରେ କଶ୍ୟପ କରନ୍ତି ଯେ କ୍ରୀଡ଼ା
ଉଲ୍ଲାସ ଚାଟୁପଟଳେ ତ୍ୟାଗକରି ବ୍ରୀଡ଼ା ।
ଦୁହିଁଙ୍କର ବେନିଅଙ୍ଗ ଦିଶେ ଏକ ପ୍ରାୟେ
ଶୁଣ ବାବୁରେ ନାରଦ କହନ୍ତି ଧାତାଏ ।
ସୁରତି କରିଲେ ଯେଣୁ ମଦନରେ ମଜ୍ଜି
ତେଣୁ ମନୁଷ୍ୟ ସକଳ ଅଇଲେ ଉପୁଜି ।
କେହୁ କୃଷ୍ଣ ବର୍ଣ୍ଣ କେହୁ ଗୌରବର୍ଣ୍ଣ ହେଲେ
ଦୁର୍ଲ୍ଲଭ ଶରୀର ବହି ସଂସାରେ ଜନ୍ମିଲେ ।
ଯେତେ ପ୍ରକାରେ ବିହାର କଲେ ରସେ ମୁନି
ଏହି ଭାବେ କ୍ରୀଡ଼ା ଏବେ ହୁଏ ନରଯୋନି ।
ଅଧମ ଯେ ପୀତାମ୍ବର ଦାସ ଉଦାସୀନ
ଶ୍ରୀହରି ଭକତି ବିନା ନ ଜାଣଇ ଆନ ।



## ଲକ୍ଷ୍ମୀଜନ୍ମ

ଶ୍ରୀବିଷ୍ଣୁଙ୍କ ଚରିତ ଏ ସୁଧା ରସ କଥା
ମୁଁ ଛାର ତାହା କି ବଳେ କହି ସାମରଥା ।
ନ ପାରି ଏବେ ସାହସ କଲେ ମୂଢ଼ମତି
ଶୁଣ ଆହେ ପରୀକ୍ଷିତ କହେ ଶୁକଯତି ।
ଅଜଳିତ କଶ୍ୟପଙ୍କ ସୃଷ୍ଟି କରିବାକୁ
ବିଧାତା ବୋଲି କହନ୍ତି ଏହି ନାରଦଙ୍କୁ ।
ତାହା ଆମ୍ଭେ ପୁରାଣରେ ତୋତେ ଶୁଣାଇଲୁ
ଲକ୍ଷ୍ମୀର ଜନମ ଏବେ ପଡ଼ିଲା କହିଲୁ ।
ସୂଚୀ ପ୍ରମାଣରେ ଯାହା କହିଥିଲୁ ପୂର୍ବେ
ବିସ୍ତାରିଣ ତାହା ପୁଣି କହୁଅଛି ଏବେ ।
ନାରଦଙ୍କ ଆଗେ ବସି ବୁଝାନ୍ତି ଯା ବ୍ରହ୍ମା
ସାବଧାନ ହୋଇ ତୁମ୍ଭେ ସେ କଥା ଶୁଣିମା ।
ବ୍ରହ୍ମାଣ୍ଡେ ଯାବତ ଜୀବ ଜନ୍ତୁ ଉପୁଜନ୍ତେ
ପୁନରପି ପଚାରିଲେ ନାରଦ ତଦନ୍ତେ ।
କରଯୋଡ଼ିଣ ବୋଇଲେ ଶୁଣ ହେ ନାରଦ
କଶ୍ୟପ ଋଷି ସର୍ଜନା କଲେ ଏତେ ଜୀବ ।
ଏ ଜୀବମାନଙ୍କୁ କହ ଆଧାର କେ ଦେଲା
କାହାର ସକାଶେ ଅନ୍ନ ସଂସାରେ ମିଳିଲା ।
ଏହାଶୁଣି ବ୍ରହ୍ମା ବୋଲେ ଦେଲେ ମହାଲକ୍ଷ୍ମୀ
ଅଟନ୍ତି ସେ ବିଷ୍ଣୁପ୍ରିୟା ପରଂବ୍ରହ୍ମ ଲକ୍ଷ୍ମୀ ।

ସେ ମାତାଙ୍କ କରୁଣାରୁ ସର୍ବେ ପାନ୍ତି ଗ୍ରାସ
ତେଣୁ ପ୍ରାଣୀଏ ବ୍ରହ୍ମାଣ୍ଡେ ଖାଇ ହୋନ୍ତି ତୋଷ
ନାରଦ ବୋଇଲେ ତେବେ ପୁଣ ପିତାମହ
ପ୍ରଥମରୁ ଜନମିଲେ ଲକ୍ଷ୍ମୀ କାହୁଁ କହ ।
ଜନମ ହେବାରୁ ସିନା ଜନମିଲେ ପୁଣ
ଦୟାକରି ଆଦ୍ୟଜନ୍ମ କହନ୍ତୁ ଆପଣ ।
ବ୍ରହ୍ମା ବୋଇଲେରେ ବାବୁ ଶୁଣ ତପଚାରୀ
ପ୍ରଥମେ ଭୃଗୁଙ୍କଠାରୁ ଜନମିଲେ ଶିରୀ ।
ଯେଉଁ ରୂପେ ଜନ୍ମ ହେଲେ ଶୁଣ ସେ ବିଧାନ
ବସିଲେ ବାଳକକାଳେ ଭୃଗୁ ସାଧି ଜ୍ଞାନ ।
ପାଞ୍ଚିଲେ ଏତେକ ଜୀବ ସରଜିଲେ ସର୍ବେ
କେହି ଅନ୍ନ ତାଙ୍କ ପାଇଁ ନ ଖଞ୍ଜିଲେ ଏବେ ।
ସରଜନା ସିନା ସର୍ବ ଋଷିଏ କରିଲେ
ବ୍ରହ୍ମାଙ୍କ ବଚନ ପାଳି ଯେଝା ପୁରେ ଗଲେ ।
ଆମ୍ଭେ ଏବେ ଶିରୀଙ୍କି ଯେ ବସିବାକୁ ଧାୟି
ଜନକ ହୋଇଣ ମାତା ପାଳିଲେ ଏ ମହୀ ।
ଏତେ ବୋଲି ଭୃଗୁଋଷି ଧ୍ୟାନରେ ବସିଲେ
ପରମ ବ୍ରହ୍ମରେ ନେଇ ଲୟ ଲଗାଇଲେ ।
ତହୁଁ ତାଙ୍କୁ ଦେଖାଇଲେ ବ୍ରହ୍ମ ଏକ ଜ୍ୟୋତି
ଏମନ୍ତ ଦେଖିଣ ଭୃଗୁଋଷି କଲେ ସ୍ତୁତି ।
ବୋଇଲେ ଭୋ ବ୍ରହ୍ମା ଏବେ ବେନିଅଙ୍ଗ ବହ
ସ୍ତିରୀ ପୁରୁଷ ଉପରେ ଦେହ ଧରି ରହ ।
ଏହି ଶରୀର ମଧ୍ୟରୁ ଶିରୀ ଜାତକର
ବ୍ରହ୍ମାଣ୍ଡଯାକରେ ମିଳୁ ପ୍ରାଣୀଙ୍କୁ ଆହାର ।
ନୋହିଲେ ତ ଏହିକ୍ଷଣି ପ୍ରଳୟ ହୋଇବ
ଆହାର ନ ପାଇ ମରିଯିବେ ସବୁ ଜୀବ ।
ଏହା ଶୁଣି ପରଂବ୍ରହ୍ମ ତହୁଁ ଆଜ୍ଞା ଦେଲେ
ତୋ ନାମେ ଅକ୍ଷର ବେଦୁ ପ୍ରକାଶ ହୋଇଲେ ।
ସେ ଅକ୍ଷର ମାନ ଛନ୍ଦି ଗାୟତ୍ରୀର କର
ସେ ମନ୍ତ୍ର ଜପିଲେ ଲକ୍ଷ୍ମୀ ଜନ୍ମିବେ ସତ୍ୱର ।
ଏହି ରୂପେ ପରଂବ୍ରହ୍ମ କହନ୍ତେ ଭୃଗୁଙ୍କୁ
ତହୁଁ ସେ କାଢ଼ିଲେ ବେଦୁ ଅକ୍ଷର ଯାକଙ୍କୁ ।
ଓଁ ଭୂ ର୍ଭୁବଃ ସ୍ୱଃ ବୋଲିଣ ମନ୍ତ୍ର ତାକୁ କଲେ
ପୁନରପି ସେ ଚବିଶ ଅକ୍ଷର ହୋଇଲେ ।
ସେ ଅକ୍ଷର ଆଣି ପୁଣି ଛନ୍ଦରେ ଚୌଷଠି
ତେଣୁ ହେଲେ ଚତୁଷ୍ପଦା ଗାୟତ୍ରୀ ମାତାଟି ।
ବ୍ରାହ୍ମଣ କୁଳକୁ ସେହୁ ଅଟେ ଇଷ୍ଟମନ୍ତ୍ର
ସ୍ନାନ ସାରିଣ ଭଜିଲେ ହୋଇବ ପବିତ୍ର ।
ଗାୟତ୍ରୀ ନ ପଢ଼ିବା ବ୍ରାହ୍ମଣ ଅଶୁଦ୍ଧି
ଶୂଦ୍ରଲୋକ ସମାନରେ ଲେଖି ତାର ବୁଦ୍ଧି ।

ସେହି ବିପ୍ରଙ୍କୁ ଓଳଗି କରି ନ ଯୋଗାଇ
କଲେ ବିସର୍ଜନ ହାଣ୍ଡି ପ୍ରାୟେ ମାନ୍ୟ ଯାଇ ।
ପୁଣି ସବୁ ନମସ୍କାର ଫଳ ନାଶ ଯାଏ
ଶୁଣ ବାବୁରେ ନାରଦ କହନ୍ତି ଧାତାଏ ।
ଏହିରୂପେ ପରଂବ୍ରହ୍ମ ଭୃଗୁଙ୍କୁ କହନ୍ତେ
ତହୁଁ ସେ ଗାୟତ୍ରୀ ମନ୍ତ୍ର ଭଜିଲେ ନିରତେ ।
ଲକ୍ଷେକ ଚରଣ ପୂରିଗଲା ଯେତେବେଳେ
ବ୍ରହ୍ମ ଶରୀରରୁ ଶିରୀ ଖସିଲେ ସେ କାଳେ ।
ବ୍ରହ୍ମାଙ୍କୁ ପୁଛିଲେ ବ୍ରହ୍ମ ଜନ୍ମି ପରଂବ୍ରହ୍ମୀ
ବୋଇଲେ ମୋତେ କିମ୍ପାଇ ଜାତ କଲ ସ୍ୱାମୀ ।
ପ୍ରଥମରେ ଏକବ୍ରହ୍ମ ହୋଇ ରହିଥିଲି
ଏବେ କହନ୍ତୁ କିମ୍ପାଇଁ ବେନି ମୂର୍ତ୍ତି ହେଲି ।
ପରଂବ୍ରହ୍ମ ବୋଇଲେକ ତହୁଁ ତେବେ ଶୁଣ
ତୁମ୍ଭେ ହେଲ ଲକ୍ଷ୍ମୀ ଆମ୍ଭେ ହେବୁ ନାରାୟଣ ।
ଆମ୍ଭେ ଦୁହେଁ ଏଥୁ ଯାଇ ଜନ୍ମ ହେଉଥିବା
ପ୍ରଳୟ କାଳରେ ଏହି ବ୍ରହ୍ମରେ ମିଶିବା ।
ପୁନରପି ଏହି ବ୍ରହ୍ମୁ ଯାଇ ହେବା ଜାତ
ମଞ୍ଚେ ଅବତୀର୍ଣ୍ଣ ହୋଇ ପାଳିବା ଜଗତ ।
ଭୃଗୁଙ୍କର କୋଳେ ଆଗେ ଜନ୍ମ ହୁଅ ଯାଇ
ଜୀବଗଣେ ଭୋଗଦିଅ ଭାର୍ଗବୀ ବୋଲାଇ ।
ଏମନ୍ତ ଯେ ପରଂବ୍ରହ୍ମ ଶିରୀଙ୍କୁ କହନ୍ତେ
ଆସିଣ ମିଳିଲେ ଲକ୍ଷ୍ମୀ ଭୃଗୁଙ୍କ ଅଗ୍ରତେ ।
ଶୁକଳ ଦଶମୀ ବିଛାମାସ ଗୁରୁବାରେ
ଉପୁଜିଲେ ମହାଲକ୍ଷ୍ମୀ ସୁଦଶା ବ୍ରତରେ ।
ବସିଲେ ଭୃଗୁଙ୍କ କୋଳେ ଯାଇ ଦେହଧରି
ତଦପରେ ସବୁପ୍ରାଣୀ ଭୋଗକଲେ ଶିରୀ ।
ବିଧାତା ଭୂମିରେ ଯେତେ ଫଳ ସର୍ଜିଥିଲେ
ସେ ଫଳମାନଙ୍କୁ ମହାଲକ୍ଷ୍ମୀ ଚାହିଁଦେଲେ ।
ଅମୃତ ସଦୃଶ ରସ ସ୍ରବିଲାକ ତହୁଁ
ଆବର ଧନ୍ୟାଦି ଯେତେ ଉତପନ୍ନ ତହୁଁ ।
ଆଦ୍ୟେ ବାର୍ତ୍ତାକୀ ପଟୋଳ ପୁଣି ରାମତିଳା
କାର୍ପାସ ଗୁବାକ ତୁମ୍ବା ମୁଗ ବ୍ରୀହି ମୂଳା ।
କୋଳଥ ଚଣା କନ୍ଦୁଳ ଲତା ଫଳ ତିଳ
କନଡ଼ା ହରଡ଼ କାଙ୍ଗୁ ଚିନା କନ୍ଦମୂଳ ।
କୁହୁଡ଼ି ତିହୁଡ଼ି ଇକ୍ଷୁ ଗହମ ସୋରିଷ
ଏ ବିଧିରେ ଉତପନ୍ନ କଲେ ସବୁ ଗ୍ରାସ ।
ସମସ୍ତେ ଭୁଞ୍ଜିଲେ ଠାବେ ଠାବେ କୃଷି କରି
ସର୍ବଦା ସଞ୍ଚିଲେ ଜୀବପାଇଁ ଏହା ଶିରୀ ।
ବ୍ରହ୍ମ କୀଟ ପରିଯନ୍ତେ ଖାଇ ହେଲେ ତୋଷି
ଲକ୍ଷ୍ମୀଙ୍କୁ ପୁଛିଲେ ଯେବେ ଯାଇ ବ୍ରହ୍ମଋଷି ।

ବୋଇଲେ ଗାୟତ୍ରୀ ମନ୍ତ୍ର ଜପୁଥିଲି ଜଳେ
ତୁମ୍ଭେ ତ ବସିଲ କାହୁଁ ଆସି ମୋର କୋଳେ ।
ବସିବା ଦେଖିଲି ଆସିବାର ନ ଦେଖିଲି
ସେହି ସ୍ଥାନେ ନ ଦେଖିଣ ତୁମ୍ଭଙ୍କୁ ପୁଛିଲି ।
ଏହା ଶୁଣି ମହାଲକ୍ଷ୍ମୀ ବୋଇଲେ ଭୋ ତାତ
ଅଗମ୍ୟକୁ ଆଣି ମୋତେ କଲ ତୁମ୍ଭେ ଜାତ ।
ଆପଣ ଯେଉଁ ବ୍ରହ୍ମକୁ ବସିଥିଲେ ଚାହିଁ
ଅଇଲି ସେଇ ବ୍ରହ୍ମରୁ ଅଧେ ଜାଣ ମୁହିଁ ।
ଆବର ଅଧେକ ବ୍ରହ୍ମ ପୁରୁଷ ହୋଇଲେ
ଘେନିଣ ତୋତେ ଯାବତ ଶରୀରେ ବସିଲେ ।
ତେଣୁକରି ଶିରୀବତ୍ସ ବୋଲାଅନ୍ତି ସେହୁ
ସକାରଟି ଶିରୀ ଅଟେ ସେ ଯେ ମହାବାହୁ ।
ହକାର ପରମହଂସଟି ଅଟଇ ଶକତି
ସମସ୍ତ ଜୀବରେ ବସି ତହିଁ କ୍ଷରୁଛନ୍ତି ।
କହିଲେ ଶ୍ରୀବତ୍ସ ନାମ ପ୍ରଭୁ ଜାଣ ଏଣୁ
ଅବତାର ହେଲେ ଶୁଣି ମୋହର କଷଣୁ ।
ବୋଲେ ଭୃଗୁ ଋଷିମାଗୋ କହ ତେବେ ଯାହା
କି ପ୍ରକାରେ ଅବତାର ହେବେ ଚଉବାହା ।
ମହାଲକ୍ଷ୍ମୀ ବୋଇଲେ ହୋ ଶୁଣ ତେବେ ତାତ
ତିନିଯୁଗେ ଚାରିଜନ୍ମ ହେବେ ଜଗନ୍ନାଥ ।
ନୃସିଂହ ବାମନ ରାମକୃଷ୍ଣ ମୂର୍ତ୍ତି ହେବେ
ମାନବ ଶରୀର ଧରି ବ୍ରହ୍ମାଣ୍ଡେ ଜନ୍ମିବେ ।
ମୋହର ଜନମ ମଧ ଶୁଣ ଆହେ ପିତା
ପ୍ରଥମରେ ହେବି ଲକ୍ଷ୍ମୀ ଦ୍ୱିତୀୟରେ ସୀତା ।
ତୃତୀୟରେ ଯାଇ ପୁଣି ହୋଇବି ରୁକ୍ମିଣୀ
ଭୋ ପିତା ଏତିକି କଥା ତୁମ୍ଭେ ଥାଅ ଶୁଣି ।
ଶ୍ରୀ ନୃସିଂହ ମହାପ୍ରଭୁ ଯେବେ ଜନମିବେ
ମୁରକୁ ମାରିଣ ଜାଣ ମୋତେ ବିଭା ହେବେ ।
ସମୟରେ ଭୋଗକରି ଚଳିଲେ ବୈକୁଣ୍ଠ
ପୁଣି ହିଁ ଜନ୍ମିବେ ମୁର ଦାରୁଣ ଦର୍ପିଷ୍ଟ ।
ହିରଣ୍ୟ ଯେ ହିରଣାକ୍ଷ୍ୟ ନାମ ଦୈତ୍ୟ ହେବେ
ସେ ନୃସିଂହ ପୁନରପି ପ୍ରକାଶିବେ ସ୍ତମ୍ଭେ ।
ଅସୁରଙ୍କୁ ବିନାଶିବେ ମହାକୋପ ହୋଇ
ସେହି ସମୟେ ଦେବତା ଦେବେ ମୋତେ ନେଇ ।
ବିଷ୍ଣୁଙ୍କର କୋଳେ ଯାଇ ବସିବି ମୁଁ ଜାଣ
ମୋତେ ଦେଖିଣ ସନ୍ତୁଷ୍ଟ ହେବେ ନାରାୟଣ ।
ମହାଶାନ୍ତ ହୋଇଯିବେ ବଇକୁଣ୍ଠେ ଚଳି
ମୋତେ କୋଳେ ଧରି ନିଦ୍ରାଯିବେ ବନମାଳି
ପୁଣି ସମୟେକ ହେବ ବାମନ ମୂରତି
ବାଳୀକୁ ପାତାଳେ ରଖି ଯିବେ ଶିରୀପତି ।

ମୋତେ କୋଳେ ଘେନି ପୁଣ ହେବେ କ୍ଷୀରଶାୟୀ
ଲେଉଟି ଯେ ଜନମିବେ ସେହି ଦୈତ୍ୟ ଦୁଇ ।
ରାବଣ ଯେ କୁମ୍ଭକର୍ଣ୍ଣ ହୋଇ ଉପୁଜିବେ
ଦେବତାମାନଙ୍କୁ ଯେ ବହୁତ ଦୁଃଖ ଦେବେ ।
ତାହାପାଇଁ ହରି ପୁଣି ଜନ୍ମ ହେବେ ଯାଇ
ଶ୍ରୀରଘୁନାଥ ମୂରତି ହେବେ ଭାବଗ୍ରାହୀ ।
ଜନମିବି ମୁହିଁ ଯାଇଁ ଜନକ ଗୃହରେ
ଜାନକୀ ନାମକୁ ବହିଥିବି ମିଥିଳାରେ ।
ମୋତେ ବିଭାହୋଇ ସ୍ୱାମୀ ନେବେ ବନବାସ
ଏଥିଉତ୍ତାରୁ ଆସିଣ ରାବଣ ରାକ୍ଷସ ।
ରଥେ ବସାଇଣ ମୋତେ ଘେନିଯାନ୍ତେ ଧରି
ଶ୍ରୀରାମ ଯାଇଣ ତାକୁ ପକାଇବେ ମାରି ।
ମୋତେ ତହୁଁ ଆଣି ନାଶକରି ଲଙ୍କାପାଳ
ତହିଁ ଉତ୍ତାରୁ ବୈକୁଣ୍ଠ ଯିବେ ଆଦିମୂଳ ।
ପୁନରପି ମୋତେ ଘେନି ହେବେ କ୍ଷୀରଶାୟୀ
ଏହିରୂପେ ଆସୁଁ ବ୍ରହ୍ମ ଶିରୀହରି ହୋଇ ।
ଆସିବାର ସ୍ଥାନମୋର ପୁଛିଲେ ଯେ ତାତ
ତେଣୁକରି କହିଲଇଁ ପୁଣ ଏ ସିଦ୍ଧାନ୍ତ ।
ଭୃଗୁ ବୋଇଲେ ମାତାଗୋ ନିସ୍ତରିଲି ମୁହିଁ
ପ୍ରମାଣଟି ବ୍ରହ୍ମାହେଲେ ବେନିଭାଗ ହୋଇ ।
ଭାଗେ ଶିରୀ ଭାଗେ ହରି ପ୍ରତ୍ୟକ୍ଷ ଏ କଥା
ଫିଟିଗଲା ସନ୍ଧିପରେ ସବୁ ମନୋବ୍ୟଥା ।
ଏବେ କହ କାହିଁ ମାଗୋ କରିବୁ ତୁ ବିଜେ
ଆଜ୍ଞା ଫିଟିଲେ ମୁଖରୁ ଟେକିନେବି ଭୁଜେ ।
ଯହିଁ ବୋଲିବ ସେଠାରେ ଆସିବଇଁ ଛାଡ଼ି
ଏମନ୍ତ ବୋଲିଣ ଭୃଗୁ କହେ କର ଯୋଡ଼ି ।
କମଳିନୀ ବୋଇଲେକ ଶୁଣହେ ଜନକ
ବରୁଣ ଗୃହରେ ନେଇ ମୋତେ ଏବେ ରଖ ।
ଆପଣ ସକାଶେ ମୁହିଁ ରୂପ ପ୍ରକାଶିଲି
ଭୃଗୁ କୋଳେ ଜନ୍ମହୋଇ ଭାର୍ଗବୀ ହୋଇଲି ।
ସାଗରର ନବରରେ ପଢ଼ିବଇଁ ଯାଇଁ
ଶ୍ରୀକୃଷ୍ଣ ଜନମି ମୋତେ ନେବେ ବିଭା ହୋଇ ।
ଅନ୍ୟସ୍ଥାନ ମୋତେ ଆଉ ନ ରୁଚଇ ତ ତ
ସଂସାରରେ ଅନାଚାରୀ ଅଛନ୍ତି ବହୁତ ।
ଆଚାର ବିହୀନ ଲୋକ ଯେଉଁଘରେ ଥାଇ
ନିମିଷେ ତାହାର ଘରେ ଲକ୍ଷ୍ମୀ ନ ରହଇ ।
ପୁରୁଷ ଲୋକ ଯେବେଟି କରେ ଅନାଚାର
ମହାଦରିଦ୍ର ହୋଇଣ ମରେ ସେହୁ ନର ।
ଜନ୍ମ ଜନ୍ମାନ୍ତରେ ସେହୁ ହୁଏ ଜାଣ ରଙ୍କ
କେତେବେଳେ ଅନ୍ନତାକୁ ନ ମିଳେ ବେଳେକ ।

ତଥାପି ତ ପୁରୁଷକୁ କେତେ ପାର ଯାଇ
ସ୍ତିରୀ ଆଚାର ନ କଲେ ଶିରୀଚ୍ୟୁତ ହୋଇ ।
ସେହି ଅନାଚାର କଥା କହେ କିଛି ଶୁଣ
ପରପୁରୁଷକୁ ଯେବେ କରଇ ରମଣ ।
ଦାନ୍ତ ଅଘଷାରେ ଅନ୍ନ ଭୋଜନ ଯେ କରେ
ପାଦ ନ ଧୋଇଣ ପଶେ ଯାଇ ରୋଷଘରେ ।
ବେନି ପାକ ମିଶାଇଣ ଖାଏ ଯେହୁ ଅନ୍ନ
ଆମିଷ ଗୃହରେ ପୋଡ଼ି ଭୁଞ୍ଜେ ନିତିଦିନ ।
ମଳ ମୂତ୍ର ତ୍ୟାଗକରି ନ ଘେନେ ଯେ ପାଣି
ଅଭକ୍ଷ ଦ୍ରବ୍ୟକୁ ଭକ୍ଷେ ପ୍ରତିଦିନ ଆଣି ।
କଳି କରିବାକୁ ସେହୁ ଘୋଟେ ରାହୁ ପ୍ରାୟ
ମନନୀୟ ଲୋକଠାରେ ଛାଡ଼େ ଲାଜଭୟ ।
ଶାଶୁ ଶ୍ୱଶୁରଙ୍କୁ ଯେହୁ ନ ମାନଇ ତିଳେ
ଗୁରସ୍ତ ତା ତିଆରିଲେ ଉଠେ କୋପାନଳେ ।
ପକାଏ ଗୃହରେ ଛେପ ଖଙ୍କାର ଯେ ବାଡ଼େ
ଭୋଜନ ଉଚ୍ଛିଷ୍ଟ ଯେହୁ ଆଡ଼ିଆଏ ଗୋଡ଼େ ।
ବ୍ରତ ଉପବାସ ସଦା ନିନ୍ଦାକରେ ଯେହୁ
ଶ୍ରୀଗୋବିନ୍ଦ ନାମ ବେଳେ ନ ଭାବେ ଯା ଦେହୁ ।
ଅଲକ୍ଷଣ କଥାରେ ହେଉଥାଏ ଶ୍ରଦ୍ଧା
ମଳିନ ବସନ ପୁଣି ପିନ୍ଧଇ ସର୍ବଦା ।
ଦେହ ମଇଳା ଗୃହ ଯୋବରା ଦିଶେ ଯାର
ପୁରୁଷଙ୍କୁ ଦେଖି ଯେହୁ ହସେ କର କର ।
ଯାବତ ଜାତିକୁ ଛୁଇଁ ପଶଇ ଯେ ଘରେ
ବସନ ନ ଧୋଇ ପୁଣି ଭୋଜନ ଯେ କରେ ।
ଆବର ଅଗ୍ନିଙ୍କୁ ପୂଜା ନକରେ ଯେ ନିତ୍ୟ
ଏତେ ସ୍ଥାନେ ମହାଲକ୍ଷ୍ମୀ ନ ରହନ୍ତି ତାତ
ଇନ୍ଦ୍ରତୁଲ୍ୟ ଧନୀ ହେଲେ ତୁଟେ ତାର ଶିରୀ
ସୁସ୍ତିରୀ ଲକ୍ଷଣ ପୁଣି କହୁଛି ଆହୁରି ।
ପ୍ରଭାତୁ ଉଠିବ ଶ୍ରୀ ଗୋବିନ୍ଦ ନାମ ଭଜି
ଗୃହ ବିଷୟ କରିବ ଆଳସ୍ୟକୁ ତେଜି ।
ପଦ୍ମଦଳ ପ୍ରାୟ ମୁଖ ଦିଶୁଥିବ ନିତ୍ୟେ
ଅନ୍ନହାରେ ଆନନ୍ଦିତ ହେଉଥିବ ଚିତ୍ତେ ।
ସବୁବେଳେ କହୁଥିବ ମଧୁର ବଚନ
ତଣ୍ଡୁଳ ନ ଥିଲେ ଅନ୍ନ ଦେଉଥିବ ଦାନ ।
ପଦାର୍ଥକୁ ସଞ୍ଚୁଥିବ ଲକ୍ଷ୍ମୀର ପରାୟେ
ଦାନଦୟା କରୁଥିବ ସବୁ ଜୀବଠାଏ ।
ଗୁରୁପ୍ରାୟେ ସ୍ୱାମୀ ଆରାଧନା ଯେହୁ କରେ
ମିଥ୍ୟାଭାଷୀ ନୋହି ଯେହୁ ଥାଏ ସତ୍ୟାଚାରେ ।
ଅନୁକ୍ଷଣେ ବିଷ୍ଣୁଙ୍କର ମହିମା ଯେ ଶୁଣେ
ସଦାପ୍ରାର୍ଥୀ ଲୋକଙ୍କୁ ଯେ ଦିଏ ପୋଷେମାଣେ ।

ଗୁରୁଙ୍କୁ ଯେ ସେବାକରେ ଅକପଟ ଚିତ୍ତେ
ପରରେ ହିଂସା ନ ଥାଇ ଯାର କଦାଚିତ୍ତେ ।
ଦେବତା ବ୍ରାହ୍ମଣ ଆରାଧନା କରେ ନିତି
ଏତେ ଲକ୍ଷଣ ଥିଲେଟି ବୋଲି ତାକୁ ସତୀ ।
ସ୍ତିରୀକୁଳଯାକରେ ସେ ଅଟେ ସୁଲକ୍ଷଣୀ
କେବେ ତେଜି ତାହାକୁ ନ ଯାନ୍ତି କମଳିନୀ ।
ଏଣୁକରି ଆହେ ତାତ କହିଲି ମୁଁ ଏତେ
ବରୁଣ ଗୃହରେ ନେଇ ଛାଡ଼ିଆସ ମୋତେ ।
ଏହା ଶୁଣି ଭୃଗୁ ବୋଲେ ପ୍ରମାଣ ଏ କଥା
ଆନ ଲୋକ ତୋତେ ରଖି ନପାରେ ସର୍ବଥା ।
ବିଧିରେ ତ ବରୁଣର ଅଟେ ବଡ଼ଘର
ଚଉରାଶି କାଠି ଲେଖା ଅଟଇ ଗଭୀର ।
ଗୃହର ଓସାର କେତେ କହିବି ତା ଶୁଣ
ବଖରା ଗୋଟି ତେପନ କୋଟିଯୂଣ ଜାଣ ।
ଏ ପ୍ରକାରେ ସାତଗୋଟି ବଖରା ତାହାର
ତେଣୁ କରି ଲୋଡୁଅଛୁ ମାଗୋ ସେହି ଘର ।
ଶ୍ରୀ ମହାଲକ୍ଷ୍ମୀ ବୋଇଲେ ନୁହଇ ଏମନ୍ତ
ଗୁପତେ କହୁଛି ମୋତେ ଘେନିଯାଅ ତାତ ।
ବରୁଣ ଭାରିଯା ହୋଇଅଛି ଜାଣ ଗର୍ଭ
ହେଲାଣି ଦଶମ ମାସ ଆଜି ପ୍ରସବିବ ।
ପୁତ୍ର ଜନ୍ମକରି ମୋତେ ପଡ଼ିଥିବ ବାଳୀ
ଏମନ୍ତ ସମୟେ ତୁମ୍ଭେ ରାତ୍ରେ ଯିବ ଚଳି ।
ଦଶଘଡ଼ି ଅନ୍ତେ ତହୁଁ ରୋହିଣୀର କାନ୍ତ
ପଶ୍ଚିମରେ ଅସ୍ତହେବେ ମୋତେ ନେବ ତାତ ।
ନୀରବତୀ ପୁତ୍ର ଆଣି ମୋତେ ଥୋଇଦେଇ
ସମୁଦ୍ରେ ପକାଇ ଦେବ ନ ଜାଣିବେ କେହି ।
ଦୁହିତା ହୋଇଲେ ବୋଲି ଜାଣିବେ ସମସ୍ତେ
ବରୁଣର ଜେମା ବୋଲି ଡାକିବେ ଜଗତେ ।
ଜଳରେ ପଡ଼ିବା ପୁତ୍ର ନାମ ଶୁଣ ଏବେ
ଜଳନ୍ଧର ବୋଲି କରି ହୋଇବେ ଦାନବେ ।
ଏହା ଶୁଣି ଭୃଗୁଋଷି ଆନନ୍ଦିତ ହେଲେ
ଲକ୍ଷ୍ମୀଙ୍କୁ କନ୍ଧରେ ବହି ସମୁଦ୍ରକୁ ଗଲେ ।
ବରୁଣ ପୁରେ ଯାଇଣ ପଶି ମହାମୁନି
ଦେଖିଲେ ନୀରବତୀର ପୁତ୍ର ଅଛି ଜନ୍ମି ।
ବାଳକେ ପ୍ରସବି ପଡ଼ିଅଛି ମୋହଯାଇ
ଏମନ୍ତ ସମୟେ ଋଷି ଲକ୍ଷ୍ମୀ ଥୋଇଦେଇ ।
ନୀରବତୀ କୋଳୁଁ ଧରି ତନୟକୁ ଟୋଳି
କେହି ନ ଜାଣୁ ନବରୁ ଗଲେ ଶୀଘ୍ର ଚଳି ।
ଧରିବା ଶିଶୁକୁ ଜଳେ ପକାଇଣ ଦେଲେ
ତହିଁପରେ ବ୍ରହ୍ମା ଆଳେ ସେ ଯାଇ ମିଳିଲେ ।

ଶୁଣ ହେ ନାରଦ ଏଥିଉତ୍ତାରୁ କାହାଣୀ
ଏ ରୂପେ ମହାଲକ୍ଷ୍ମୀର ଆଦ୍ୟଜନ୍ମ ବାଣୀ ।
ବାଳକ ସ୍ୱଭାବେ ତହିଁ ଧରି ଲୋକମାତ
ରୋଦନ୍ତି ଭୂମିରେ ପଡ଼ି ପିଟି ଗୋଡ଼ହାତ ।
କାନ୍ଦନ୍ତି ପୁର ମଧରେ ପଡ଼ିଲା ଚହଳ
ବସନ୍ତ କାଳରେ ଯେବେ ଭାଷନ୍ତି କୋକିଳ ।
ପ୍ରସବିଣ ନୀରବତୀ ମୋହ ଯାଇଥିଲେ
ଲକ୍ଷ୍ମୀଙ୍କ ବିଳାପ ଶୁଣି ଚେତିଣ ଉଠିଲେ ।
ପୋଇଲୀ ପରିବାରୀ ଯେ ଧାଇଁଗଲେ ସର୍ବେ
କହିଲେ ଦୁହିତା ଦେଖି ଧାଇଁ ରାଜାଠାବେ ।
ଆହେ ଦେବ ସାଗର ହେ ଶୁଣ ଶୁଭକାର୍ଯ୍ୟ
ଆପଣଙ୍କ ନୀରବତୀ ପ୍ରସବିଲେ ଆଜ ।
ଅଛନ୍ତି ଉତ୍ତମ କନ୍ୟା ଏକ ଜାତ କରି
ପ୍ରତ୍ୟକ୍ଷେ ଆମ୍ଭଙ୍କୁ ଦିଶୁଅଛି ପ୍ରାୟେ ଶିରୀ ।
ହସ୍ତେ ପଦ୍ମ ପାଦେ ପଦ୍ମ ଦିଶୁଅଛି ଫୁଟି
ନ ହୋଇବେ ବଦନକୁ ସରି ଚନ୍ଦ୍ରକୋଟି ।
ଗଜ କପାଳ ପରାୟେ ଦିଶଇ ଲଲାଟ
ତିଳ କୁସୁମ ପରାୟେ ଦିଶେ ନାସା ପୁଟ ।
ରକତ ପଦ୍ମ ପରାୟେ ଦିଶେ ଚକ୍ଷୁବର୍ଣ୍ଣ
ଗୁରୁ ଶୁକ୍ରଙ୍କ ପରାୟ ଦିଶେ ବେନିକର୍ଣ୍ଣ ।
ମୁକୁତା ପନ୍ତି ପରାୟେ ଦିଶେ ଦନ୍ତପନ୍ତି
ଡ଼ାଳିମ୍ବ ପୁଷ୍ପପରାୟେ ଦିଶେ ଓଷ୍ଠଜ୍ୟୋତି ।
କଜ୍ଜ୍ୱଳ କଳା ପରାୟେ ଦିଶେ ଶିରୋରୁହ
ଗଉର ଚରଣ ପ୍ରାୟେ ଦିଶେ ଫୁଟି ଦେହ ।
ହେମକଳିକା ପରାୟେ ଅଙ୍ଗୁଷ୍ଠି ତା ଦିଶେ
ବାଳୁତ ରବି ପରାୟେ ଶରୀର ପ୍ରକାଶେ ।
ହର ଡମ୍ବରୁ ପରାୟେ ଦିଶେ କଟିମଝା
ଏତେ ଗୁଣେ ଜନ୍ମିଅଛି ଶୁଣ ମହାରାଜା ।
ଶରୀର ଯାକରେ ତାଙ୍କ ଦିଶେ ଗୋଟାଯାଇ
ପ୍ରତ୍ୟକ୍ଷରେ ମହାଲକ୍ଷ୍ମୀ ଜନ୍ମିଛନ୍ତି ସେହି ।
ଶୁଣି ବରୁଣ ବୋଇଲେ ଶୁଣ ମୁହୁସୁଲୀ
ତୁମ୍ଭେ କହିବାରୁ ମୁହିଁ ପ୍ରତ୍ୟକ୍ଷେ ଚିହ୍ନିଲି ।
ସାକ୍ଷାତେ କମଳା ଦେବୀ ଅଛନ୍ତି ଜନମି
ତାଙ୍କୁ ଏବେ ପାଳନା ଲୋକର ମନଘେନି ।
ଏହା ଶୁଣି ମୁହୁସୁଲୀ ଗଲେ ଅନ୍ତଃପୁର
ପ୍ରବେଶ ହୋଇ କାଟିଲେ ନାଭି କମଳାର ।
ଘୁଟି ଚଟାଇଣ ଆଣି ବୋଳିଲେ ଦେହରେ
ବିକାଶିଲା ଲକ୍ଷ୍ମୀରୂପ ଅଧିକ ତେଜରେ ।
ସୁବାସ ଜଳରେ ଧୋଇ ଛଡ଼ାଇଲେ ମଳି
ତହୁଁ ଅନ୍ତୁଡ଼ି ଲଗାଇ ସେକିଲେ ସେ ବାଳି ।

ଅନୁକୂଳି ଲଗାଇ ସର୍ବେ ହୁଳହୁଳି ଦେଲେ
ଶଯ୍ୟା ସଜାଇଣ ତାଙ୍କୁ ନେଇ ଶୁଆଇଲେ ।
କାଂସ୍ୟପାତ୍ର ଆଣି ଚହୁଁ ବଜାଇଲେ ବାଦ୍ୟ
ନାଚନ୍ତି ଆସିଣ ଚହୁଁ ଅପସରୀ ବୃନ୍ଦ ।
ଦୁଇପାଖେ ଗୁଆଘୃତେ ଜାଳି ଦୀପାବଳି
ପଢ଼ନ୍ତି ପୁରାଣମାନ ଦ୍ୱିଜଗଣ ମିଳି ।
ଏମନ୍ତ ପଞ୍ଚମ ରାତ୍ରେ ଯାନ୍ତେ ଦିନକର
ଉଠିଆରୀ କରି ପୂଜା କଲେ ଷଠିଘର ।
ଉତ୍ସବ କରନ୍ତି ତହିଁ ସର୍ବେ ପ୍ରତିଦିନ
ଏମନ୍ତ ହୋଇଲା ଆସି ଏକୋଇଶ ଦିନ ।
ଚହୁଁ ଦ୍ୱିଜମାନେ ଆସି କଲେ ବେଦଧ୍ୱନି
ସାମ ଯଜୁ ଗାୟନରେ ପୁରେ ପୁର ତିନି ।
ନାରୀସ୍ତିରୀ ବ୍ରହ୍ମସ୍ତିରୀ ଦେବସ୍ତିରୀ ଯେତେ
ଶ୍ରୀମହାଲକ୍ଷ୍ମୀଙ୍କୁ ଦେଖି ଆସନ୍ତି ସମସ୍ତେ ।
ସେବନ୍ତି ଅକ୍ଷତମାନ ଦେଇ ଲକ୍ଷ୍ମୀପାଦେ
ପ୍ରଶଂସା କରନ୍ତି ନୀରବତୀଙ୍କୁ ଆନନ୍ଦେ ।
ବୋଲନ୍ତି ହେ କେଡ଼େ ଭାଗ୍ୟବତୀ ରାଜନାରୀ
ଶ୍ରୀମହାଲକ୍ଷ୍ମୀର ଏହୁ ହେଲା ଗର୍ଭଧାରୀ ।
ଦୁହିତା କରିଣ ଦେଖ ପାଳନ୍ତି ନବରେ
ଏମନ୍ତ ବୋଲି ଅକ୍ଷତ ଦେଲେ ଲକ୍ଷ୍ମୀଶିରେ ।
କରେ କୁଙ୍କୁମ କର୍ପୂର ହଳଦୀକୁ ଧରି
ବୋଲନ୍ତି ଶ୍ରୀକମଳିନୀ ଅଙ୍ଗେ ଦେବନାରୀ ।
ଚରଣ ପଖାଳି କେହୁ ଶିରେ ବୋଳିଦ୍ୟନ୍ତି
ଖେମଟା ବଜାଇ କେହୁ ବସି ଗୀତ ଗାନ୍ତି ।
ଏଥୁଅନ୍ତେ ବିଧାତା ଯେ ବୃହସ୍ପତି ରାଇ
ବରୁଣ ପୁରକୁ ତାଙ୍କୁ ଦେଲେ ପଠିଆଇ ।
ନାମକରଣ ଲକ୍ଷ୍ମୀଙ୍କ ଜାତକ ଯେ ବୁଝ
ନାମକରଣ କରିଣ ଆସ ଶୁକ୍ରାଚାର୍ଯ୍ୟ ।
ପୁଣି ବରୁଣ ରାଜାଙ୍କୁ କହିବ କଥାଏ
ଲକ୍ଷ୍ମୀଙ୍କୁ ପାଳ ନୃସିଂହ ଦେବ ଜନ୍ମଯାଏ ।
ଜନମିଲେ ମହାପ୍ରଭୁ ଦେବ ତାଙ୍କୁ ବିଭା
ତେବେ ତାଙ୍କ ଅବତାର ଦିଶିବ ଯେ ଶୋଭା ।
ବ୍ରହ୍ମା ଏମନ୍ତ କହିଣ ତାଙ୍କୁ ପେଶିଦେଲେ
ତଦନ୍ତେ ଗୁରୁ ବରୁଣ ପୁରରେ ମିଳିଲେ ।
ଦେଖି ସାଗର ନୃପତି ବହୁ ପୂଜାକରି
କନ୍ୟାଦେଖାଇଲେ ତାଙ୍କୁ ନେଇ ଅନ୍ତଃପୁରୀ ।
ବୋଲନ୍ତି ଦୁଲଣୀ ଏକ ହୋଇଛି ଜନମ
ଆସିଣ ଜାତକ ବୁଝିଦିଅ ତାର ନାମ ।
ବିଧିରେ ତ ଏକୋଇଶ ରାତ୍ରେ ଅଛ ଆସି
ମୁଁ କିସ କହିବି ତୁମ୍ଭେ ଅଟ ପାଟଯୋଷୀ ।
ମାର୍ଗଶିର ଶୁକ୍ଳ ଦଶମୀ ଗୁରୁବାରେ
ସେହିଦିନ ଏ ଦୁହିତା ଜନ୍ମିଛି ମୋ ଘରେ ।
ଏମନ୍ତେ ଗୁରୁଙ୍କୁ କହି ବରୁଣ ରାଜନ
କୁମାରୀ ସ୍ୱରୂପ ନେଇ କରାଏ ଦର୍ଶନ ।
ତାଙ୍କୁ ଦେଖି ବୃହସ୍ପତି ଚାହିଁଲେ ନିରେଖି
ବୋଇଲେ ନିଶ୍ଚୟ ଏ ତ ଅଟେ କମଳାକ୍ଷୀ ।
ନାମ ଯେ ପଚାରୁଅଛ କି କହିବି ମୁହିଁ
ଶ୍ରୀବ୍ରହ୍ମା ଆସିଲେ ଏକ ଭାଗ ଦେହ ବହି ।
ଏଣୁକରି ଏହାଙ୍କର ନାମ ହେଲା ଶିରୀ
ଭାର୍ଗବୀ ବୋଇଲେ ପୁଣି ଭୃଗୁଅଂଶ ଧରି ।
ଅଶ୍ୱିନୀ ନକ୍ଷତ୍ରେ ଜାତ ହୋଇଲେ ଏ ଯେଣୁ
ଲକ୍ଷ୍ମୀ ନାମଗୋଟି ଏହି ବୋଇଲେକ ତେଣୁ ।
କମଳ ଚରଣ ବହି କମଳା ହୋଇଲେ
ପାଦରେ ପଦ୍ମ ଥିବାରୁ ପଦ୍ମା ବୋଲାଇଲେ ।
ଅଶେଷ ଲୋକଯାକଙ୍କୁ ଦିଶେ ରୂପ ଜିଣି
ତେଣୁ ଏ ରମା ନାମକୁ ବହୁ କମଳିନୀ ।
ସମସ୍ତ ଜୀବଯାକଙ୍କ ଜୀହ୍ୱାଇନ୍ଦ୍ରି ତୋଷି
ଇନ୍ଦିରା ଏ ବୋଲାଇଲେ ଅମୃତ ବରଷି ।
ସେହି ଅମୀୟକୁ ଭୁଞ୍ଜି ଲୋକେ ହୁଅନ୍ତି ସୁସ୍ଥ
ତେଣୁ କରି ମହାଲକ୍ଷ୍ମୀ ହେଲେ ଲୋକମାତ ।
ପରମ ବ୍ରହ୍ମରୁ ଯେଣୁ ପ୍ରକାଶିଲେ କାୟା
ପରମଲକ୍ଷ୍ମୀ ନାମକୁ ବହୁ ପଦ୍ମାଳୟା ।
ଶୁଣିଲ ଆହେ ସାଗର କହନ୍ତି ପଣ୍ଡିତେ
ଲକ୍ଷ୍ମୀଙ୍କର ନାମ ଜାଣ ଏତିକି ଯେ ମୋତେ ।
ଅନନ୍ତ ଲକ୍ଷ୍ମୀ ନାମଟି ଅଟଇ ଯାହାର
ତା ନାମ ଅନ୍ତ କରିଣ କହିବ କେ ନର ।
ତୁମ୍ଭେ ମାତ୍ର ପୁଛିଲାରୁ କହିଲି ଥୋକାଏ
ଏହା ଶୁଣି ବରୁଣକୁ ଲାଗିଲା ଯେ ଭୟେ ।
ଗୁରୁଙ୍କୁ ବୋଇଲେ ଏ ଶ୍ରୀମହାଲକ୍ଷ୍ମୀ ଯେବେ
କାହାକୁ ପ୍ରଦାନ ମୁହିଁ କରିବଇଁ ତେବେ ।
ବୃହସ୍ପତି ବୋଇଲେକ ଶୁଣତୁ ସାଗର
ବିଷ୍ଣୁଙ୍କର ବିନା ଆନ ଛୁଇଁବ କେ ନର ।
ଜାଣିବ ଜନ୍ମିବେ ଯେତେବେଳେ ଆସି ହରି
ବରିବ ପ୍ରଭୁଙ୍କୁ ସେହି କାଳେ ତୁମ୍ଭ ଶିରୀ ।
ବରୁଣ ବୋଇଲେ ତାଙ୍କୁ ଚିହ୍ନିବ କେମନ୍ତେ
ସକଳ ଘଟେ ସେ ବସିଅଛନ୍ତି ଜଗତେ ।
ଶଙ୍ଖ ଚକ୍ର ଗଦା ପଦ୍ମ ଚାରିରୂପ ଧରି
ବୁଝିଲେ କୀଟ ହୃଦୟେ ଛନ୍ତି ବିଜେକରି ।
ବୃହସ୍ପତି ବୋଇଲେ ହୋ ନୁହଇ ଏମନ୍ତ
ସଂଶୟ ଯଦ୍ୟପି କଲ ଶୁଣ ସେ ବୃତ୍ତାନ୍ତ ।

କରିବେ ବିଧାତା ବେନି ଗୋଟି ଦୈତ୍ୟଜାତ
ତାଙ୍କପାଇଁ ଅବତାର ହୋଇବେ ଅଚ୍ୟୁତ ।
ଯୋନି ସମ୍ଭୂତ ହୋଇଣ ନୃସିଂହ ଜନ୍ମିବେ
ହୋଇଲେ ଅନନ୍ତ ମହାପ୍ରଭୁ ଶେଷ ଦେବେ ।
ବଙ୍ଗଦେଶେ ମହାପ୍ରଭୁ ଥିବେ ଜନ୍ମ ହୋଇ
ସେହି ବେନି ଦୈତ୍ୟଙ୍କୁ ନାଶିବେକ ଯାଇ ।
ଏମନ୍ତ ବେଳରେ ତୁମ୍ଭେ ଲାଖୁ ନିର୍ଭାଇବ
ସପତଦ୍ୱୀପ ରାଜାଙ୍କୁ ତହିଁ ଅଣାଇବ ।
ପ୍ରଥମେ ଆସିବେ ଜମ୍ବୁଦ୍ୱୀପେ ଏକଲକ୍ଷ
ସେମାନଙ୍କ ମଧ୍ୟେ ଥିବେ ସେ ପୁଣ୍ଡରୀକାକ୍ଷ ।
ଆବର ଆସିବେ ପ୍ଲକ୍ଷ ଦ୍ୱୀପଲକ୍ଷ ତିନି
ଚାରିଲକ୍ଷ ଆସିବେକ ଶାଲ୍ମକୀର ପୁଣି ।
ଆସିବେକ କୁଶଦ୍ୱୀପୁ ଆଠଲକ୍ଷ ଜାଣ
ବାରଲକ୍ଷ କ୍ରୌଞ୍ଚଦ୍ୱୀପ ଆସିବେ ରାଜନ ।
ପୁଷ୍କର ଦ୍ୱୀପରୁ ପଞ୍ଚଦେଶ ଲକ୍ଷ ନୃପ
ଆସିବେ ସପତଲକ୍ଷ ଯେ ଶାକଲ୍ୟ ଦ୍ୱୀପ ।
ଏରୂପେ ଷାଠିଏ ଲକ୍ଷ ଆସିବେକ ରାଜା
ସେମାନଙ୍କୁ ତ ଆପଣ ଦେବେ ବଳିଭୋଜା ।
ଏତେ ରାଜା ମଧ୍ୟୁ ଲାଖ ବିନ୍ଧିବେ ଯେ ଜାଣ
ବୁଝିବ ଅଟନ୍ତି ସେହି ଏକା ନାରାୟଣ ।
ବରୁଣ ବୋଇଲେ ଆହେ ଶୁଣ ବୃହସ୍ପତି
କିରୂପେ ଜାଣିବା କହ ତେବେ ଲାଖପ୍ରତି ।
ବୁଝି ଦୃଢ଼କରି ତୁମ୍ଭ ବାକ୍ୟଥିବା ପାଳି
ନ ବିନ୍ଧିଲେ ନ ଦେବା ତ ହେଲା ବ୍ରହ୍ମାଭଳି ।
ବୋଇଲେକ ବୃହସ୍ପତି ତହୁଁ ଶୁଣ ତେବେ
ଦ୍ୱାଦଶ ତାଳ ଉଚ୍ଚରେ ସ୍ଥାପି ଏକ ଖମ୍ଭେ ।
ସେ ଖମ୍ଭଅଗ୍ରେ ଚକ୍ରେକ ନେଇ ବସାଇବ
ପ୍ରତିକ୍ଷଣେ ସେହି ଚକ୍ର ଉପରେ ବୁଲିବ ।
ଆମ୍ଭ ନବଗ୍ରହମାନେ ହୋଇ ଭାଗକୋଟି
ସେ ଚକ୍ରେ ବସିବୁ ସବୁଲୋକେ ଦେଇ ଦୃଷ୍ଟି ।
କେତୁ ଯେ ମଙ୍ଗଳ ଦୁଇ ଶନୈଶ୍ଚର ରାହୁ
ସେ ମୃଗର ଚାରିପାଦ ହୋଇବଟି ସେହୁ ।
ବୁଧଗ୍ରହ ତାହାର ଯେ ହେବ ଶରୀରଟି
ରବି ଚନ୍ଦ୍ରମା ଏ ଦୁହେଁ ହେବେ ବେନିଦୃଷ୍ଟି ।
ଶୁକ୍ର ବୃହସ୍ପତି ତାର ହେବେ ବେନି କର୍ଣ୍ଣ
ନବଗ୍ରହେ ଏହିରୂପେ ମୃଗ ହେବେ ଜାଣ ।
ସେ ଚକ୍ର ଉପରେ ବସି ବିଞ୍ଚୁଥିଲେ ଲାଞ୍ଜ
ସେ ଲାଞ୍ଜ ଧରିପାରି ଯେ ବିନ୍ଧିବ ନାରାଚ ।
ଯେବେ ସେ ନାରାଚ ପଡ଼ି ମୃଗ ବାମପାଦେ
ଡାହାଣ କର୍ଣ୍ଣରେ ଗଳିଯିବ ନେତ୍ର ମଧ୍ୟେ ।

ତେବେ ଜାଣିବ ଅଟନ୍ତି ସେହି ଭଗବାନ
ଆପଣେ ବୋଲାନ୍ତି ଗ୍ରହରୂପ ଜନାର୍ଦ୍ଦନ ।
ବିଷ୍ଣୁ ବ୍ୟତିରେକ ମୃଗ ନୁହେଁ ଆନ ସାଧ
ତେଣୁକରି କହିଲଇଁ ଶୁଣ ପ୍ରତିବୋଧ ।
ବିଷ୍ଣୁଙ୍କୁ ଡରନ୍ତି ଏକା ଜାଣ ନବଗ୍ରହ
ନୋହିଲେ ମାଡ଼ି ବସନ୍ତେ ସମସ୍ତଙ୍କ ଦେହ ।
କୀଟୁ ବ୍ରହ୍ମ ପରିଯନ୍ତେ ଯେତେ ଲୋକ ଛନ୍ତି
ଦ୍ୱାଦଶ ରାଶି ମଞ୍ଚରେ ସର୍ବେ ଗଣାହୁନ୍ତି ।
ବୁଝିଲେ ତ ରାଶିଯାକ ଗ୍ରହଣ ଭୋଗାଦି
ଭକତଜନଙ୍କୁ ଏକା ନ ପାରନ୍ତି ବ୍ୟାଧି ।
ଏଣୁ କରି ଶ୍ରୀବିଷ୍ଣୁଙ୍କୁ ଭଜନ୍ତି ଯେ ନିତ୍ୟେ
ସେମାନଙ୍କୁ ଗ୍ରହପୀଡ଼ା ନାହିଁ କଦାଚିତେ ।
ଆଉ ମଧ କହୁଅଛୁ ଶୁଣ ଶାସ୍ତ୍ରଭାଷା
ଗୋବିନ୍ଦଭକ୍ତ ଲୋକଙ୍କ କରନ୍ତି ଯେ ହିଂସା ।
ନବଗ୍ରହ ସେମାନଙ୍କୁ ବହୁପୀଡ଼ା ଦ୍ୟନ୍ତି
ବ୍ୟାଧିରୂପେ ଆସି ତାଙ୍କୁ ଶରୀରେ ବସନ୍ତି ।
ପୀଡ଼ିତ କରାନ୍ତି ନାନା ମତେ କଷ୍ଟ ଦେଇ
ଚଉଷଠି ରୋଗଯାକ ଦେହରେ ପକାଇ ।
ସେହି ରୋଗ ନାମ କିଛି କହୁଅଛି ଶୁଣ
ଜ୍ୱର ଅତିସାର ପୁଣି ଗ୍ରହଣୀ ଅଜୀର୍ଣ୍ଣ ।
ଗୁଳ୍ମ ଉଦବର୍ତ୍ତ ଆଉ ଅରଶ ହୃଦ୍ରୋଗ
ଅଶ୍ମରୀ ଯେ ମୂତ୍ରକୃଚ୍ଛ୍ର ମୂତ୍ରାଘାତ ରୋଗ ।
ପ୍ରମେହ ପୀଡ଼ିକା ମେହ ମଧୁମେହ ଶୋଥ
ଗଳଗଣ୍ଡ ଗଣ୍ଡିମାଳା ଅର୍ବୁଦ କଥିତ ।
ସୋମ ରୋଗ ଶୁକ୍ରରୋଗ କୁଷ୍ଠରୋଗ କହି
ନାସା ରୋଗ ଶୁକ୍ରରୋଗ ନାଡ଼ିବ୍ରଣ ହୋଇ ।
ଶୀଳପଦ ଦୁବଂଶ ବିସ୍ଫୋଟକ ଭଗନ୍ଦର
ଅରୁଚି ଯେ କ୍ଷୁଦ୍ରରୋଗ ବିଦ୍ରଧି ଆବର ।
ବିସୁଚିକା ବିମଳିକା ପାଣ୍ଡୁ ଯେ କାମଳ
ହିଳିମିକ ହିକ୍କା କାଶ ଉନ୍ମାଦ ଯେ ଶୂଳ ।
କ୍ଷୁଦ୍ରରୋଗ କୃମିଦାହ ରୋଗ ଯେ ଉଦର
ଅରୁଚି ଯେ ସ୍ୱର ଭେଦ ଆବର ପ୍ରଦର ।
ଆମବାତ ରକ୍ତପିତ୍ତ ଉରୁସ୍ତମ୍ଭ ସତ୍ତ
ଅପସ୍ମାର ରାଜଯକ୍ଷ୍ମା ଅନ୍ତକୋଷ ଆଦି ।
ଏହିରୂପେ ଗ୍ରହମାନେ ରୋଗ ହୋଇକରି
ଯାବତ ପାପୀ ଲୋକଙ୍କୁ ପକାନ୍ତି ଯେ ମାରି ।
ବିଷ୍ଣୁଭୃତ୍ୟ ଲୋକଙ୍କୁ ଯେ ସର୍ବଦା ନିନ୍ଦନ୍ତି
ତାଙ୍କପାଇଁ ଗ୍ରହରୂପୀ ମୁରାରୀ ହୁଅନ୍ତି ।
ଶୁଣ ସାଗର କହୁଅଛନ୍ତି ବୃହସ୍ପତି
ନିଶ୍ଚେ ନବଗ୍ରହମାନେ ହେବେ ମୃଗମୂର୍ତ୍ତି ।

କରିବେ ଲାଖ ଉପରେ ବସି ବିଷ୍ଣୁ ହାତେ
ସେହିଠାରେ ଗ୍ରହ ହୋଇ ରହିବେ ଜଗତେ ।
ବରୁଣ ବୋଇଲେ ସେହୁ କିମ୍ପା ହେବେ ମୃଗ
ବହିବେ ପ୍ରତ୍ୟକ୍ଷେ ଦେହ ଛାଡ଼ି ପଶୁଅଙ୍ଗ ।
କେବଣ ଦୋଷକୁ ଅର୍ଜି ଲଭିବେ ଏ ଗତି
ଏ କଥା ଶୁଣିଣ ଆଗେ କହ ବୃହସ୍ପତି ।
ବରୁଣ ବଚନ ଶୁଣି ହସି ସୁରାଚାର୍ଯ୍ୟ
ବୋଇଲେ ଆଛା କଥାତ ପୁଛାକଲ ଆଜ ।
ସେ ଗ୍ରହ ବିଷୟ କହୁଅଛି ଶୁଣ ଏବେ
ରୋମାଞ୍ଚ ନାମେ ମହର୍ଷି ଶାପ ଦେଲେ ଯେବେ
ଯେ ନିମନ୍ତେ ଅଭିଶାପ ଦେଲେ ଜାଣି ତାକୁ
ସେହିଠାରୁ କଥା ଆମ୍ଭେ କହୁଛୁ ତୁମ୍ଭଙ୍କୁ ।
ରୋମାଞ୍ଚ ନାମେ ମହର୍ଷି ମେରୁ କ୍ରୋଡ଼େବସି
ଭଜନ୍ତି ଗୋବିନ୍ଦ ଚିତ୍ତ ରଖି ବ୍ରହ୍ମରାଶି ।
ସଂସାରର ଆତ୍ମାରୂପେ ଯେତେ ଜୀବଛନ୍ତି
ସମସ୍ତେ ଶ୍ରୀବିଷ୍ଣୁ ବୋଲି ମନେ ବିଚାରନ୍ତି ।
ଯାବତ ସ୍ତିରୀଙ୍କୁ ନିଜ ଜନନୀ ପରାୟ
ଜ୍ଞାନ କରୁଥାନ୍ତି ସଦା ଶୁଣ ମହାରାୟ ।
ଘେନନ୍ତି ବଇରୀ ମିତ୍ର ଭ୍ରାତ ଏକପରି
ଆନନ୍ଦ ହୁଅନ୍ତି ମନେ ଦେଖି ପରଶିରୀ ।
ପରମହଂସ ଜଗିଣ ବସିଥାନ୍ତି ଧାୟି
ଏକଦିନେ ପୁରନ୍ଦର ମିଳିଲେକ ତହିଁ ।
ଋଷିଙ୍କ ତପସ୍ୟା ଦେଖି ସହି ନ ପାରିଲେ
ମନରେ ପାଞ୍ଚିଲେ ଶତ୍ରୁ ଆମ୍ଭରଏ ହେଲେ ।
ଶ୍ରୀବିଷ୍ଣୁଙ୍କଠାରୁ ଯେବେ ବର ମାଗିକରି
ଇନ୍ଦ୍ରଏ ହୋଇବ ସରିଯିବ ଆମ୍ଭ ଶିରୀ ।
ଏତେ ପାଞ୍ଚି ଗ୍ରହରାଜା ରାଇଲେ ବହନ
ବୋଇଲେ ଋଷିଙ୍କ ତପ କରଯାଇ ଭଗ୍ନ ।
ଆମ୍ଭ ବିନାଶ ହେତୁରେ ଅଛନ୍ତି ସେ ବସି
ଯାଇଣ ଋଷିଙ୍କୁ ତୁମ୍ଭେକର ବେଗେକ୍ଳେଶୀ ।
ଶୁଣି ନବଗ୍ରହମାନେ ଗଲେ ସଜ ହୋଇ
ମିଳିଲେ ଇନ୍ଦ୍ରଙ୍କ ବୋଲେ ଋଷି ପାଶେଯାଇ ।
ଦେଖିଲେ ତାଙ୍କର ଲାଗିଅଛି ତପଯୋଗ
ତହୁଁ ବିଚାରିଲେ ଗ୍ରହେ ଆସ ହେବା ମୃଗ ।
ଏହାଙ୍କୁ ପିଠି ଉପରେ ବହି ଘେନିଯିବା
ଲୟ ନ ଭାଙ୍ଗିଲେ ସର୍ବରୋଗ ପେଶିଦେବା ।
ବେଦନା ହୋଇଲେ ଋଷି ନ ପାରିବେ ଉଠି
ଏତେ ପାଞ୍ଚି ନବଗ୍ରହେ ହେଲେ ମୃଗ ଗୋଟି ।
ଆସନୁ ଋଷିଙ୍କୁ ଟେକି ବହି ଘେନିଗଲେ
ପବନର ଆଘାତରେ ପୃଥିବୀ ଭ୍ରମିଲେ ।
ଦଶଦିଗ କ୍ଷେପଣ ସେ ବୁଲି ଜଗତକୁ
ପିଠି ଉପରୁ ପକାଇ ଦେଲେ ସେ ଋଷିଙ୍କୁ ।
ତହୁଁ ସବୁ ରୋଗଯାକ ଶୋଷି ଦେଲେ ଅଙ୍ଗେ
ଚାହିଁଲେ ଅଶକ୍ତ ହୋଇ ଋଷି ଭଗ୍ନ ଯୋଗେ ।
କୋପବହି ଗ୍ରହରାଙ୍କେ ଅଭିଶାପ ଦେଲେ
ଏହିରୂପେ ମୃଗ ହୋଇ ଥାଅରେ ବୋଇଲେ ।
ଆସି ଦଣ୍ଡଦେଲ ମୋତେ ତୁମ୍ଭେ ନ ଚିହ୍ନିଣ
ଏହି ଦୋଷ କଷ୍ଟ ପାଅ ଅଜ୍ଞାନୀ ହୋଇଣ ।
ବିଷ୍ଣୁ ଭକ୍ତ ଜନ ବୋଲି ନ ମାନିଲ ଟିକେ
ରୋଗଙ୍କୁ ପେଷିଲ ଛାର ବାସବର ବାକ୍ୟେ ।
ଦେଖିବି ମୁହିଁ ତ ଏହି ଦେହେ ବସିଥିବି
ଯେତେ ଇନ୍ଦ୍ରଗଲେ ତେବେ ରୋମ ଉପାଡ଼ିବି ।
ଏହିରୂପେ କେତେ ଇନ୍ଦ୍ର ଯାଉଥିବେ ମରି
ଆମ୍ଭେ ଏହିରୂପେ ଥିବୁ କଳେବର ଧରି ।
ତୁମ୍ଭବୋଲେ ରୋଗଛାର କି କରିବେ ମୋତେ
ଜ୍ୱରକୁ ମାତ୍ର ରଖିଲୁ ଥାଉ ଦିନା କେତେ ।
ତାର ଭୋଗ ସରିଗଲେ ସେହି ମଧ ଯାଉ
ଆମ୍ଭର କହିବା କଥା ଯୁଗେ ଯୁଗେ ଥାଉ ।
ଏମନ୍ତ କହିଣ ମନ୍ତ୍ର ପଢନ୍ତେ ସେ ଋଷି
ତତକ୍ଷଣେ ରୋଗମାନେ ପଳାଇଲେ ଘୁଞ୍ଚି ।
ଦେଖି ନବଗ୍ରହମାନେ ଡରି ଅନ୍ତରାଳେ
ରୋମାଞ୍ଚ ଋଷିଙ୍କ ପାଦେ ପଡ଼ିଲେ ତତ୍କାଳେ ।
ଉଠି ତହୁଁ ଉଭା ହୋଇ ଜଣାଇଲେ ବସି
ବୋଇଲେ ଆମ୍ଭର ଦୋଷ କ୍ଷମାକର ଋଷି ।
ଆଜଠାରୁ କହୁଅଛୁଁ ଶୁଣ ଏବେ ତୁମ୍ଭେ
ଶ୍ରୀକୃଷ୍ଣ ଭକ୍ତଲୋକଙ୍କୁ ନ ଦଣ୍ଡିବୁ କେଭେ ।
ଯଦ୍ୟପି ଦୋଷ କରିବେ ଦଣ୍ଡିବୁ ତାହାଙ୍କୁ
ଅଳ୍ପକେ ଉଶ୍ୱାସ କରିଦେବୁ ରୋଗଯାକୁ ।
ଏହି କଥା ସତ୍ୟ ସତ୍ୟ ହୋଇଲା ଆମ୍ଭର
ଏହା ଶୁଣି ମନେ ମନେ ହସି ମୁନିବର ।
ବୋଇଲେକ ତହୁଁ ତେବେ ଶୁଣ ଆହେ ଗ୍ରହେ
ଆମ୍ଭେଦେବା ଶାପଆନ ନୁହଇ କେବେହେଁ
ତୁମ୍ଭର ଆକୁଳ ଦେଖି କହୁଅଛୁ ଶୁଣ
ଲକ୍ଷ୍ମୀଙ୍କ ନିମନ୍ତେ ଲାଖ କରିବେ ବରୁଣ ।
ଦ୍ୱାଦଶ ତାଳ ଉଚ୍ଚରେ ସ୍ଥାପି ମଣିସ୍ତମ୍ଭ
ସେ ସ୍ତମ୍ଭ ଉପରେ ନେଇ ଚକ୍ରେ ବସାଇବ ।
ବସିଣ ତହିଁ ଉପରେ ତୁମ୍ଭେ ମୃଗ ହୋଇ
ଆସିବେ ସପତଦ୍ୱୀପୁଁ ରାଜାମାନେ ତହିଁ ।
ସେ ଲାଖେ ତୁମ୍ଭଙ୍କୁ କେହି ଜିଣି ନ ପାରିବେ
କେବଳ ତୁମ୍ଭଙ୍କୁ ତହିଁ ବିଷ୍ଣୁ ସଂହାରିବେ ।

ଯେଉଁ ମାର୍ଗରେ ନାଶିବେ କହୁ ତାହା ଶୁଣ
ଧରିବେ ତୁମ୍ଭର ପୁଚ୍ଛ ଯାଇ ନାରାୟଣ ।
ତେତେବେଳେ ବାମପାଦ ତୁମ୍ଭେ ଦେବ ଟେକି ।
ଦକ୍ଷିଣ କର୍ଣ୍ଣମୂଳରେ ରଖିବ ସଳଖି
ବିନ୍ଧିବେ ତୁମ୍ଭର ସେହି ପାଦ ବନମାଳୀ
ତହୁଁ ଆସିବେ ନାରାଚ ବାମନେତ୍ରେ ଗଳି ।
ଦକ୍ଷିଣ କର୍ଣ୍ଣରେ ପଶି ନେତ୍ରେ ବାହାରିବ
ସେହିଠାକୁ ତୁମ୍ଭେ ଅଭିଶାପୁଁ ମୁକ୍ତ ହେବ ।
ଏବେ ଯେଝା ଦେହ ଧରିଥାଅ ଗ୍ରହଗଣେ
ସେହିଦିନ ମୃଗ ତୁମ୍ଭେ ହୋଇଟି ଆପଣେ ।
ବରୁଣ ଚିନ୍ତିଲେ ଯେବେ ନୋହିବ ମୃଗଟି
ତେତେବେଳରେ ତୁମ୍ଭର ମୁର୍ଦ୍ଧାଯିବ ଫାଟି ।
କହିଲ ଯେ ମୋତେ ମୃଗ ହୋଇ ବୁଲି ବୁଲି
ତେଣୁ ଚକ୍ରେ ବୁଲି ମର ଏହି ବର ଦେଲି ।
ଏହା ଶୁଣି ଗ୍ରହଗଣେ କଲେ ହେଉ ହେଉ
କାହାକୁ ଏ କର୍ମାର୍ଜିତ ଫଳ ଦେବୁ ଆଉ ।
ବସିବୁ ବରୁଣ ସୁମରିଲେ ଲାଖେ ଯାଇ
ଏହି ହେଲା ଆମ୍ଭ ସତ୍ୟ ଯାଉଅଛୁ କହି ।
ଯାଅ ବୋଲି କହି ଋଷି ଧ୍ୟାନରେ ବସିଲେ
ତହୁଁ ନବଗ୍ରହ ମୃଗଦେହ ତ ଛାଡ଼ିଲେ ।
ରହିଲେ ଗ୍ରହମଣ୍ଡଳେ ଯାଇ ନବ ମୂର୍ତ୍ତି
ଶୁଣ ରତ୍ନାକର କହୁଛନ୍ତି ବୃହସ୍ପତି ।
ଏମନ୍ତେ ଗ୍ରହମାନଙ୍କୁ ହୋଇଅଛି ଶାପ
ତୁମ୍ଭେ ଚିନ୍ତା କଲାକ୍ଷଣି ହେବେ ମୃଗରୂପ ।
ତହୁଁ ବରୁଣର ଫିଟିଗଲା ମନଭ୍ରାନ୍ତି
ଲାଖର ବିଧାନ ଶୁଣି ହେଲା ତୃପ୍ତମତି ।
ଲାଖର ବିଧାନ ଶୁଣି ଆନନ୍ଦିତ ହନ୍ତି.
ଏଥିରେ ବହୁତ କାର୍ଯ୍ୟ ହେବ ବିଚାରନ୍ତି ।
ଯାଅବୋଲିଣ ଗୁରୁଙ୍କୁ ମେଲାଣି କରିଲେ
ଲକ୍ଷ୍ମୀଙ୍କୁ ପାଳ ବୋଲିଣ ରାଣୀଙ୍କୁ କହିଲେ ।
ଏଥୁ ଅନନ୍ତରେ ଶ୍ରୀୟା ବଢ଼େ ଦିନୁଦିନ
କହୁଁ କହୁଁ ହେଲା ଆସି ବରଷ ସମ୍ପୂର୍ଣ୍ଣ ।
ମହୋତ୍ସବ କରାଇଲେ ବରୁଣ ପୁରରେ
ସ୍ୱନକ୍ଷତ୍ରେ ବନ୍ଦାପନା କଲେ ଲକ୍ଷ୍ମୀଶିରେ ।
କାଢ଼ିଲେ ପିଷ୍ଟକ ଆଦି ତହୁଁ ନୀରବତୀ
ପୁରି ନାଡ଼ି ମନୋହର ଅପମାଲୁ କାନ୍ତି ।
ଶାକର ଢାଳିମ୍ବ ଖଣ୍ଡ ଝିଲି ସରପୁଲି
ଖଜା ଗଜା ପାରିଜାତ ଲଡୁ ଅଟକାଳି ।
ଦଧି ଦୁଗ୍ଧ ଘୃତ ଛେନା ପେଡ଼ା ତାଳସଜ
ଥୁଅନ୍ତି ଲକ୍ଷ୍ମୀଙ୍କୁ ଦେଇ ଗୃହରେ ମୁରୁଜ ।
ଲକ୍ଷ୍ମୀଙ୍କୁ ବସାଇ ସିଂହାସନେ ନୀରବତୀ
ପୁଣି ଜାନୁରେ ବସାଇ ଦେହ ନିରେଖନ୍ତି ।
ବୋଲନ୍ତି ସଂସାରେ ଆମ୍ଭେ ଯେତେ ଅଛୁ ସ୍ତିରୀ
କମଳାଙ୍କ ଲକ୍ଷଣକୁ ନୋହୁ କେହି ସରି ।
ଏହିଠାରେ ଦେଖୁଅଛୁ ଆମ୍ଭେ ଯେତେ ଲୋକ
ଚନ୍ଦ୍ରମା ପାଶରେ ଯେହ୍ନେ ଦିଶେ ତାରାଯାକ ।
ଆମ୍ଭେମାନେ ସେହି ରୂପେ ଲକ୍ଷ୍ମୀ ପାଶେ ପଶୁ
ଦିବସ ଅଣ୍ଟଇ ନାହିଁ ରୂପ ଘୋଷୁ ଘୋଷୁ ।
ତ୍ରିପୁର ଖୋଜିଲେ ଏହି ରୂପ ଦେଖାନାହିଁ
କାହା କପାଳେ ଏ କନ୍ୟା ବିହି ଅଛି ଲିହି ।
ଈଶ୍ୱରଙ୍କ ଲୀଳା ଅଟେ ଏସବୁ କୌତୁକ
ତାଙ୍କ ବିନା ଛୁଇଁ ନ ପାରନ୍ତି ଆନ ଲୋକ ।
ସେ ପ୍ରଭୁ ଯଦ୍ୟପି ଆସି ଏକ୍ଷଣି ମିଳନ୍ତେ
ପ୍ରଦାନ କରନ୍ତି ମୁହିଁ ନିଶ୍ଚେ ତାଙ୍କ ହସ୍ତେ ।
ଏରୂପେ ପାଞ୍ଚନ୍ତେ ମନ ମଧ୍ୟେ ନୀରବତୀ
ବିଷ୍ଣୁ ମାୟା ଦେଖି ପ୍ରବେଶିଲେ ପଶୁପତି ।
ବ୍ରହ୍ମା ବିଷ୍ଣୁ ସଦାଶିବ ଏକମୂର୍ତ୍ତି ଯେଣୁ
ଦଇବୀ ମାୟାରେ ହର ବିଜେକଲେ ତେଣୁ ।
ପ୍ରତ୍ୟକ୍ଷରେ ମହାଦେବ ସ୍ୱରୂପକୁ ଧରି
ଆସିଲେ ସୁବେଶ ହୋଇ ବୃକ୍ଷ ଚଢ଼ିକରି ।
ନୀରବତୀଙ୍କର ମନ ବିଢ଼ିବାର ପାଇଁ
ଈଶ୍ୱର ସ୍ୱରୂପ ଧରିଗଲେ ଉମାସାଇଁ ।
ଶରୀର ଯାକରେ ପ୍ରଭୁ ବିଭୂତି ଚଢ଼ାଇ
ଗଳେ ଅସ୍ଥିମାଳ ପୁଣି ଲମ୍ୱାଇଲେ ନେଇ ।
କର୍ଣ୍ଣରେ ତାମ୍ର କୁଣ୍ଡଳ ପଞ୍ଚଶିରେ ଜଟା
ହସ୍ତରେ ତାଡ଼ ଡମ୍ବରୁ କଟିରେ ଲେଙ୍ଗଟା ।
ପାଚିଲା ଦାଢ଼ି ଯେ ଲମ୍ବିଅଛି ପାଞ୍ଚମୁଖେ
ବ୍ୟାଘ୍ର ଚର୍ମ ଏକ ଖଣ୍ଡ ଯାକିଛନ୍ତି କାଖେ ।
ଶ୍ରୀଦଶଭୁଜେ କଙ୍କଣ ପୟରେ ତୋଡ଼ର
ଏରୂପେ ସୁବେଶ ହୋଇ ପ୍ରବେଶିଲେ ହର ।
ବୃଷଭ ଉପରେ ମହାପ୍ରଭୁ ଛନ୍ତି ବସି
ବରୁଣ ରାଣୀ ଆଗରେ ପ୍ରବେଶିଲେ ଆସି ।
ଦେଖି ନୀରବତୀ ରାଣୀ ଆଚମ୍ଭିତ ହେଲେ
କେବଣ ଦିଗରେ ଯୋଗୀ ବୋଲି ପଚାରିଲେ ।
ବହିଛନ୍ତି ଦଶନାମ ଯେତେଗୋଟି ଯୋଗୀ
ଜଣେ କି ଆସିଛ ତୁମ୍ଭେ ତହୁଁ ଭିକ୍ଷା ମାଗି ।
ଦଣ୍ଡୀକି ସନ୍ନ୍ୟାସୀ ଗିରି ପୁରୀ ଅବା ଅଟ
ତେଣୁ କରି ଆପଣ ତ ବାନ୍ଧିଅଛ ଜଟ ।
ନାମ ଲୋଭ ମୋହ ତ ନଥିଲା ପ୍ରାୟ ଦିଶେ
ତେଣୁ ଅବା ପୃଥ୍ୱୀରେ ଭ୍ରମ କୃଷ୍ଣ ଆଶେ ।

ମୁହି ଛାର ଆପଣଙ୍କୁ ପାରିବି କି ଚିହ୍ନି
ଏବେ ଦେବି କିଛି ଦ୍ରବ୍ୟ ଯାଅ ଭିକ୍ଷା ଘେନି
ହର ବୋଇଲେ ମୋହର ଦ୍ରବ୍ୟେ କିସ କାର୍ଯ୍ୟ
ତୁମ୍ଭେ ଚିନ୍ତା କରିଲାରୁ ଆସିଲିଟି ଆଜ ।
ରାଣୀ ବୋଇଲେ ଆପଣ କେଉଁ ପୁରୁଷ କି
ଯୋଗୀଜନର ସ୍ୱରୂପେ ଆସିଛ କାହିଁକି ।
ଶିବ ବୋଇଲେ ଆମ୍ଭର ନାମ ଅଟେ ହର
ଦକ୍ଷଙ୍କ କୁଆଁରୀ ଆମ୍ଭେ ପାର୍ବତୀଙ୍କ ବର ।
ସେ ପାର୍ବତୀ ତୁମ୍ଭର ତ ଅଟନ୍ତି ବହେଣୀ
ତେଣୁ ଗୋ ଆମ୍ଭର ତୁମ୍ଭେ ଶାଳୀ ହେଲ ପୁଣି ।
ଈଶ୍ୱର ପୁରୁଷ ମୁହିଁ ସ୍ୱୟଂ ଅଛି ଆସି
ତୁମ୍ଭେ ନ ଚିହ୍ନିଣ ଭିକ୍ଷାଶୀ ମୋତେ ବୋଲୁଛି
ଏହା ଶୁଣି ନୀରବତୀ ମୁରୁକି ହସିଲେ
ଈଶ୍ୱରଙ୍କୁ ଚାହିଁ ଶାଳୀ ପରିହାସ କଲେ ।
ବୋଇଲା ଏଡ଼େକ ବୃଦ୍ଧ ଛଦ୍ମମ ରଷିଙ୍କି
ଜାଣୁ ଜାଣୁ ପିତା ଦେଲେ ଆମ୍ଭ ପାର୍ବତୀଙ୍କି ।
ଏଡ଼େକ ତପସ୍ୟାବନ୍ତ ଯୋଗୀକୁ କି ବୋଲି
ବୋଲୁଥିଲେ ପାର୍ବତୀଙ୍କୁ ଭଲ ବରେ ଦେଲି
ବୁଝିଲେ ଆପଣ ଦେଲେ ସବୁହିଁ ଉତ୍ତମ
ସ୍ତିରୀଭୋଗ କଥା ଏକା ତୁମ୍ଭଙ୍କୁ ବିଷମ ।
ଉମା ସମାନ ଝିଅକୁ ପିତା ମୋର ଦେଲେ
ଯୋଗୀର ଭାରିଯା ସିନା ଯୋଗିଆଣୀ ହେଲେ ।
ଭସ୍ମ ଲୁଚାଏ ଦେହରେ ଘେନିଅଛ ଏବେ
କଣ୍ଠେ ଅସ୍ଥିମାଳ ବହି ଭ୍ରମୁଛ ତ୍ରୈଲୋକ୍ୟେ ।
ଏଡ଼େକ ଅବର୍ଣ୍ଣ ଦିଶୁଅଛି ତୁମ୍ଭ ଗାତ୍ର
ପାଞ୍ଚଗୋଟା ମୁଖେ ପାଞ୍ଚଦଶଗୋଟା ନେତ୍ର ।
ଶରୀରେ ଦଶଟା ଭୁଜ ଦିଶେ ଗୋଟାଗୋଟା
ପାଞ୍ଚଗୋଟା ଶିରେ ପୁଣି ଅଛି ପାଞ୍ଚଜଟା ।
ଭୂଷଣ କରିଛ ପଞ୍ଚମୁଖେ ପଞ୍ଚବାଡ଼ି
କଟିତଟେ ଡୋର ପିନ୍ଧି ବୃଷେ ଅଛ ଚଢ଼ି ।
ଧରିଅଛ ବ୍ୟାଘ୍ର ଚର୍ମ ପୃଥ୍ୱୀକୁ ଅପୂର୍ବ
ବାବନାଭୂତ ପରାୟ ଲାଗୁଛି ଏ ଭାବ ।
ବୁଝିଲେ ତ ଭୋଳାଲିଙ୍ଗ ତୁମ୍ଭେ ଅଟ ପୁଣି
କି ବୋଲି ତୁମ୍ଭଙ୍କୁ ଦେବି ମୋର କମଳିନୀ ।
ଦିଗମ୍ବର ଲୋକଙ୍କୁ କି ଲୋଡ଼ା ଗୃହ ବାସ
ବୁଝିଲେ ଯୁବତୀମାନେ ତୁମ୍ଭଙ୍କୁ ତ ବିଷ ।
ହସିଣ କହନ୍ତେ ଏହି ରୂପେ ନୀରବତୀ
ଏହା ଶୁଣି ମନେ ମନେ ପାଞ୍ଚେ ପଶୁପତି ।
ବୋଲନ୍ତି ଆମ୍ଭଙ୍କୁ କେବେ ନ ହେବ ଏ ବାଳୀ
ପ୍ରଥମରୁ ନ ବୁଝିଲ କହେ ଏତେ ଚାଳି ।
ସାକ୍ଷାତେ ଈଶ୍ୱର ବେଦ ଦେଖି ହାସ୍ୟକଲା
ବରଦାତା ପୁରୁଷ ଏ ବୋଲି ନ ପାଞ୍ଚିଲା ।
ଯେ ଯାହା ମାଗଇ ତାହା ଦେଉ ଆମ୍ଭେ ଯାଚି
ସେ କଥା ନୀରବତୀକୁ ଜଣାନାହିଁ କିଛି ।
ଆମ୍ଭଙ୍କୁ ଏ ଦିଗାମ୍ବର ବୋଲିକରି ଜାଣେ
ବୁଝିଲେ ଆମ୍ଭର ଶିରୀ ଭୁଞ୍ଜୁଛନ୍ତି ଜନେ ।
ଏହା ପାଞ୍ଚି ସଦାଶିବ ରାଣୀଙ୍କୁ କହିଲେ
ଆମ୍ଭ ସକାଶରୁ ସର୍ବେ ରହିଛନ୍ତି ଭଲେ ।
ସକଳ ପ୍ରାଣୀଙ୍କୁ ଆମ୍ଭେ ପୁରମାନ ଦେଇ
ରହିଅଛୁ ମହାସୁଖେ କଇଳାସେ ଯାଇ ।
ସେ ପୁରମାନଙ୍କ କଥା ଶୁଣ ନୀରବତୀ
ବିପୁଳ ଭୋଗ ଭୁଞ୍ଜନ୍ତି ଯେ ଯହିଁରେ ବର୍ତ୍ତି ।
ପ୍ରଥମେ ବୈକୁଣ୍ଠପୁର ମାଗିନେଲେ ହରି
ଦ୍ୱିତୀୟେ ବିଧାତା ନେଲେ ଯଶୋବନ୍ତପୁରୀ ।
ତୃତୀୟରେ ସ୍ୱର୍ଗ ଇନ୍ଦ୍ରପୁର ଘେନିଗଲେ
ଚତୁର୍ଥରେ ଅଦ୍‌କାପୁର କୁବେର ଯେ ନେଲେ ।
ଏହି ଅସ୍ଥି ମାଳ କଥା କହୁ ଏବେ ଶୁଣ
ଅଷ୍ଟରତ୍ନ ମାଳାଯାକ ନେଲେଟି ବରୁଣ ।
ତେଣୁ ଏହି ଅସ୍ଥିମାଳ କଲି ମୁଁ ଭୂଷଣ
ମୋ ପାଞ୍ଚମୁଖର କଥା କହୁଥାଇ ଶୁଣ ।
ପୂର୍ବେ ମୁହିଁ ଏକମୁଖେ ବିଷ୍ଣୁଙ୍କୁ ଭଜିଲି
ସେ ବିଷ୍ଣୁ ମହିମା କେଭେ ଅନ୍ତ ନ ପାଇଲି ।
ଅନ୍ତ ଯହୁଁ ନ ପାଇଲି ପାଞ୍ଚିଲି କଥାଏ
ପଞ୍ଚମୁଖ ହୋଇ ଆଜ ଧରିବି ଯେ କାୟେ ।
ଏକମୁଖେ ତିନି ତିନି ନେତ୍ରେ ଚାହୁଁଥିବି
ତେବେ ଯାଇଁ ବିଷ୍ଣୁ ରୂପଅନ୍ତ ମୁଁ ପାଇବି ।
ଏହି ସକାଶରୁ ଜାଣ ପଞ୍ଚମୁଖୀ ହେଲି
ତେବେ ହେଁ ଶ୍ରୀବିଷ୍ଣୁ ରୂପ ଅନ୍ତ ନ ପାଇଲି ।
ଏହିରୂପେ ବିଷ୍ଣୁ ଭଜି ହେଲି ବ୍ରହ୍ମଜ୍ଞାନୀ
ବିଭୂତି ବଢ଼ାଇ ଅଙ୍ଗେ ପିନ୍ଧେ କଉପୁନି ।
ଏଥକୁ କେତେ ତୁ ହାସ କଲୁ ମୋତେ ରାଣୀ
ପ୍ରତ୍ୟକ୍ଷେ ଆସିଛୁ ଦେଖ ଆମ୍ଭେ ଶୂଳପାଣି ।
ତୁମ୍ଭର ଦୁହିତା ଗୋଟି କାହାକୁ ଯେ ଦେବ
ଶୁଣିଲେ ଏ କଥା ମୋର ସଂଶୟ ଫିଟିବ ।
ଏହିରୂପେ କାଷ୍ଟ କରି ପୁଚ୍ଛନ୍ତେ ଶଙ୍କର
କହିଲେ ଲେଉଟି ପୁଣି ନୀରବତୀ ଗିର ।
ବୋଇଲେ ହେ ସଦାଶିବ ତୁମେ ଶୁଣିଥାଅ
ଶ୍ରୀମହାପ୍ରଭୁଙ୍କୁ ନିଶ୍ଚେ ଦେବି ମୋର ଝିଅ ।
ଶ୍ରୀଗୋବିନ୍ଦ ବ୍ୟତିରେ ଆନନୁହେ ଯୋଗ୍ୟ
ଏହା ଶୁଣି ମହାକ୍ରୋଧେ ଉଠିଲେ ସର୍ବଜ୍ଞ ।

ବୋଇଲେକ ଆମ୍ଭେ ସିନା ଅଟୁ ମହାପ୍ରଭୁ
ଆଉ କେ ଅଛଇ ପ୍ରଭୁ ତାହା ଦେଖାଇବୁ ।
ନୋହିଲେ ତୋହର ଶୁଭ କରିବି ଦହିର୍ଯ୍ୟ
କେଉଁ ପ୍ରଭୁ ଭଲା ଆସି ରଖିବ ତ ଆଜ ।
ଦେଖ ତୋର ଦୁହିତାକୁ ଏହିକ୍ଷଣି ନେବି
ମୋତେ ମନେ ଚିନ୍ତା କରିବୋଲୁ ଆନେଦେବି
ଦେଖି ଦେଖି କେତେ ତୋର ପ୍ରଭୁଛନ୍ତି କାହିଁ
ଏହା ଶୁଣି ନୀରବତୀ ଚିନ୍ତେ ଭାବଗ୍ରାହୀ ।
ପଂରବ୍ରହ୍ମ ପୁରୁଷକୁ ଧାୟିଣ ବସିଲେ
ଆହେ ହର ହର କୋପୁ ରଖ ଆସି ବୋଲେ ।
ସମ୍ଭାଳ ନିଜ ପତ୍ନୀକୁ ଆସି ଏତେବେଳେ
ନୋହିଲେ ଘେନିଯିବଟି ସଦାଶିବ ବଳେ ।
ପଡ଼ିଛୁ ସ୍ତିରୀ ବାଳିକା ଦୁଇ ତାଙ୍କ ଆଗେ
ରଖ ରଖ ନାରାୟଣ ଦେଖାଦେଇ ବେଗେ ।
ଆପଣ ତ ନ ରଖିଲେ ହୋଇବୁ ଅନାର୍ଥ
ଏ ସଙ୍କଟୁ ତାରିବାକୁ ଆନ କେ ସମର୍ଥ ।
ଏହିରୂପେ ନୀରବତୀ ଚିନ୍ତୁ ପଦ୍ମପାଦ
ଜାଣିଲେ ହୃଦପଦ୍ମରେ ଏହା ଶ୍ରୀଗୋବିନ୍ଦ ।
ବିଚାରିଲେ ରାଣୀଙ୍କୁ ମୋ ବିପଦ ପଡ଼ିଲା
ନୋହିଲେ ଆତୁରେ କିମ୍ପା ମୋତେ ସୁମରିଲା ।
ଏହିରୂପେ ମନମ୍ଧେ ବିଚାରିଣ ହରି
ରାଣୀ ଆଗରେ ମିଳିଲେ ଦିବ୍ୟରୂପ ଧରି ।
ଦେଖିଣ ସେ ନୀରବତୀ ନାରାୟଣ ଜ୍ୟୋତି
ମହା ଆନନ୍ଦିତା ହୋଇ ସେବେ ଲକ୍ଷ୍ମୀପତି ।
ବୋଇଲେ ଭାଗ୍ୟ ଦିଶିଲା ମୋର ଦୁହିତାର
ପ୍ରତ୍ୟକ୍ଷରେ ବିଜେକଲେ ଆସିଣ ଈଶ୍ୱର ।
ଏମନ୍ତ ପ୍ରଭୁ ଥାଉଁ କି କନ୍ୟା ଦ୍ୟନ୍ତି ରୁଦ୍ରେ
ମହାଲକ୍ଷ୍ମୀ ପଛେ ମୋର ଥାଆନ୍ତେ ସମୁଦ୍ରେ ।
ଏରୂପେ ବୋଲିଣ ନାରୀ କରେ ଧରି ଅର୍ଘ୍ୟ
ବିଷ୍ଣୁ ପାଦପଦ୍ମେ ଢାଳି କଲେ ଦୁଃଖ ତ୍ୟାଗ ।
ଗୋବିନ୍ଦ ପାଦରେ ବନ୍ଦୀ ଲକ୍ଷ୍ମୀଦେଖାଇଲେ
ତାଙ୍କୁ ଦେଖି ନାରାୟଣ ଆନନ୍ଦିତ ହେଲେ ।
ଏହା ଦେଖି ମହାରୁଦ୍ର ହୋଇ କୋପାନଳ
ବୋଇଲା ଲୋ ରାଣୀଏବେ ପୁରିଲା ତୋ କାଳ ।
ମୋତେ ନ ସେବିଣ ଆଗେ ସେବୁ ଚତୁର୍ଭୁଜ
ଦେଖିବା କେମ୍ଭେ ରଖିବ ହରି ତୋତେ ଆଜ ।
ଏହିରୂପେ କହି କୋପକଲେ ଉମାବର
ଏହାଦେଖି ନୀରବତୀ ପଶେ ଅନ୍ତଃପୁର ।
ଲକ୍ଷ୍ମୀଙ୍କୁ ଲୁଚାଇ ଘରେ କବାଟ କିଳିଲେ
ଈଶ୍ୱର ଆଗରେ ଏକା ଶ୍ରୀହରି କହିଲେ ।

ସେ ସଦାଶିବଙ୍କ କୋପ ଦେଖି ହୃଷୀକେଶ
ମନରେ ପାଞ୍ଚନ୍ତି ଏବେ କରିବି ମୁଁ କିସ ।
ତୁଚ୍ଛା କଥାକୁ କାହାକୁ କଲେ ଏଡ଼େ ହଟ୍ଟା
ମୁଁ ତେବେ ହୋଇବି ପରା ପରସ୍ତିରୀ ଗୋଟା ।
ଯୁବତୀ ସ୍ୱରୂପ ଦେଖି ମୁଗ୍ଧ ହୋନ୍ତୁ ହର
ଲକ୍ଷ୍ମୀଙ୍କୁ ପାଶୋରି ମୋତେ ଗୋଡ଼ାନ୍ତୁ ଈଶ୍ୱର ।
ଏମନ୍ତ ପାଞ୍ଚି ଗୋବିନ୍ଦ ମାୟାସ୍ତିରୀ ହେଲେ
ମୋହିନୀ ସ୍ୱରୂପ ହୋଇ ହରେ ଦେଖାଇଲେ ।
ସେ ମୋହିନୀ ରୂପକୁ ବା କି ଦେବା ଉପମା
ଶୁଣ ବାବୁରେ ନାରଦ କହନ୍ତି ଯେ ବ୍ରହ୍ମା ।
ସହସ୍ର ବାର ସୁବର୍ଣ୍ଣ ଜମ୍ବୁନଦୁ ଆଣି
ଜାଣିବ ଯେ ନିଷ୍କଣ୍ଟକେ ଦେଇ କ୍ଷୀର ପାଣି ।
ଏ ଦୁହିଁଙ୍କୁ ସମକରି ଅନଳେ ଦହିଲେ
ଦିଶିବ ମଳିନ ନିଶ୍ଚେ ମୋହିନୀର ତୁଲେ ।
ଷୋଡ଼ଶକଳା ସମ୍ପୂର୍ଣ୍ଣେ ଚନ୍ଦ୍ର ଯେହ୍ନେ ଦିଶି
ତହୁଁ ଶତଗୁଣେ ଜଗନ୍ମୋହିନୀ ପ୍ରକାଶି ।
ଆରକ୍ତ ପଦ୍ମ ପରାୟେ ଦିଶେ ମୁଖଶୋଭା
ତିଳ କୁସୁମ ପରାୟେ ଦିଶେ ନାସାପ୍ରଭା ।
ନୀଳେନ୍ଦ୍ରୀଦଳ ସଦୃଶ ଦିଶେ ବେନି ନେତ୍ର
ମୁକୁଳିତ ପ୍ରାୟ ଦିଶେ ଅଳଙ୍କାର ଚିତ୍ର ।
କୃଷ୍ଣବର୍ଣ୍ଣ ମେଘପ୍ରାୟ ଦିଶେ ଶିରୋରୁହ
ଶୁଣ ବାବୁରେ ନାରଦ କହେ ପିତାମହ ।
ମୁକୁତାପନ୍ତି ପରାୟେ ଦିଶଇ ଦଶନ
ଶମ୍ଭୁର ଆକୃତି ପ୍ରାୟ ଦିଶେ ବେନିସ୍ତନ ।
ଅତ୍ୟନ୍ତ ସୁସଞ୍ଚ ପରି ଦିଶଇ ଉଦର
ହେମ ମରାଳ ପରାୟେ ଦିଶେ ବେନିକର ।
କନକ କଢ଼ି ପରାୟେ ଦିଶେ କରାଙ୍ଗୁଳି
ବାଳୁତ ଶଶୀ ପରାୟେ ଦିଶେ ନଖ ଝଳି ।
ହର ଡମ୍ବରୁ ପରାୟେ ଦିଶେ କଟୀଭାଗ
ମନ୍ଦାର ରମ୍ଭାକୁ ଜିଣି ତାର ଜାନୁ ଯୁଗ ।
ମନ୍ଦାର କୁସୁମ ପ୍ରାୟେ ପାଦତଳ ଦିଶେ
ଏହିରୂପେ ସ୍ତିରୀରୂପ ହେଲେ ଜଗଦିଶେ ।
କ୍ଷଣକେ ଯେ ରୂପ ହେଲେ ମୁଖେ କହିନୁହେ
ବ୍ରହ୍ମାଦି ଶଙ୍କର ଦେବେ ଅଦୃଶ୍ୟ ଯା ହୁଏ ।
ବିଷ୍ଣୁଙ୍କ ମୋହିନୀ ବେଶ କେ ପାରିବ କହି
ପଣ୍ଡିତମାନେ ପୁରାଣେ ଯାହାଛନ୍ତି କହି ।
ତପନକୁ ତେଜ ପୁଣି ଅନଳ ଦେବତା
ମୋହିନୀ କନ୍ୟାପାଦରେ ହୋଇଲେ ଅଳତା ।
ଯାବତ ତୀର୍ଥ ଘେନିଣ କ୍ଷେତ୍ରାଦି ପୁଷ୍କର
ରହିଲେ ନଖକୋଣରୁ ହୋଇ ଗଙ୍ଗାନୀର ।

ଅଶେଷ ପୁରଯାକରେ ଯେତେ ଦ୍ରବ୍ୟ ଥିଲା
ଅଙ୍ଗୁଳିମାନଙ୍କେ ଜାଣି ମୁଦ୍ରିକା ହୋଇଲା ।
ତେତିଶକୋଟି ଦେବତା ଶରୀରରେ ଆସି
ବସିଲେ ରୋମ ହୋଇଣ ସ୍ୱର୍ଣ୍ଣପ୍ରାୟ ଦିଶି ।
କୋଟିଏ କାମକୁ ଘେନି କନ୍ଦର୍ପ ଯେ ପୁଣି
ଆସିଣ ରହିଲେ ଜାଣ ଯାଙ୍କ କୁଚ ଘେନି ।
ବାସୁକୀ ବସିଲେ ତାଡ଼ ହୋଇ ଭୁଜମୂଳେ
ଚାପସରି ହେଲେ କଣ୍ଠେ ଦଶଦିଗପାଳେ ।
ବୃଇକରେ ଚନ୍ଦ୍ର ସୂର୍ଯ୍ୟ ଆସିଲେକ ଚୂଡ଼ି
ଲକ୍ଷ୍ମୀଶାରଦା ନୂପୁର ହେଲେ ଯୋଡ଼ି ଯୋଡ଼ି ।
ଅନନ୍ତ ମାୟା ଅଟଇ ମୋହିନୀ ବିଷ୍ଣୁର
କେ କହିପାରିବ ଅନ୍ତ ମାୟାଟି ତାହାର ।
ହରଙ୍କର ତେଡ଼େବଡ଼ କୋପ ଗଲା କାହିଁ
ଉଠିଲେ ଶ୍ରୀସଦାଶିବ କାମେ ଭୋଳ ହୋଇ ।
ଧରିବେ ବୋଲି ମୋହିନୀ ରୂପୀ କୃଷ୍ଣ କୋଳେ
ଲକ୍ଷ୍ମୀଙ୍କି ପାଶୋରି ଧାଇଁଗଲେ ଅସମ୍ଭାଳେ ।
ଧରିବ ବୋଲନ୍ତେ ହର ପ୍ରଭୁ କଲେ ମାୟା
ବିଜୁଳି ପରାୟେ ଅଗ୍ରେ ଦେଖାଇଲେ କାୟା ।
ଶଙ୍କରକୁ ମୋହିବାକୁ ମୋହିନୀ ହୋଇଲେ
ନକ୍ଷତ୍ରକୁ ବକ୍ରକରି ଅପାଙ୍ଗେ ଚାହିଁଲେ ।
ସେ ବକ୍ର ଚାହାଣି କାମ ଲହରି ହୋଇଲା
ହରଙ୍କର ଦେହେ ବାଜି କନ୍ଦର୍ପ ଘାରିଲା ।
ମଦନରେ ଭୋଳ ହୋଇ ହର ଛନ୍ତି ଧାଇଁ
ଦିଅନ୍ତି ଜାନୁରୁ ବସ୍ତ୍ର ଟୋଳି ଭାବଗ୍ରାହୀ ।
ହସ୍ତରୁ କନ୍ଦୂଳଶର ହରି ଧରିଥିଲେ
ବେଗରେ ପଳାନ୍ତେ ହସ୍ତୁ ଖସିଣ ପଡ଼ିଲେ ।
ଇଙ୍ଗିକରି ବୀଣାଦଣ୍ଡ ଧରନ୍ତେ ବହନ
କୁଚଯୁଗ୍ମ ଦେଖିକରି ହେଲେ ହତଜ୍ଞାନ ।
ଶ୍ରୀହସ୍ତରେ ଧରୁ ଧରୁ ପୁଣି ଖସିଯାନ୍ତେ
ଖଣ୍ଡେଦୂରେ ରହି ପୁଣି ଝଟକି ଦିଅନ୍ତେ ।
ଏହିମତେ ମହାରୁଦ୍ର କେତେ ଗୋଡ଼ାଇଲେ
ମୋହିନୀରୂପୀ ବିଷ୍ଣୁଙ୍କୁ ଧରି ନ ପାରିଲେ ।
କବିର ପୀରତି ବୋଲି ଧାମନ୍ତି ସାହସୀ
ତରଳି ଅଙ୍ଗରୁ ରେତ ବେଗେ ଗଲା ଖସି ।
ରେତ ଖସି ପଡ଼ନ୍ତେଣ ଗଲା କାମରସ
ପୃଥ୍ୱୀରେ ପଡ଼ିଣ ବୀର୍ଯ୍ୟ ହେଲା ଭୂମିରସ ।
ରହିଲେ ମଞ୍ଜି ସ୍ୱରୂପେ ହୋଇ ପୃଥ୍ୱୀଯାକେ
ବୃକ୍ଷର ଅଂଶକୁ ଘେନି ଫଳିଲେ ତ୍ରୈଲୋକ୍ୟ ।
ସେ ଫଳରସକୁ ଭୁଞ୍ଜିଜୀବେ ହୁନ୍ତି ବୋଧ
ବ୍ରହ୍ମାଙ୍କ ଶ୍ରୀମୁଖ ବାଣୀ ଅଟଇ ପ୍ରସିଦ୍ଧ ।

ବୁଝିଲେ ତ ଭୂମିରସ ବୀର୍ଯ୍ୟ ଏକା ଜାଣ
ବୀର୍ଯ୍ୟରସୁଁ ବଳି ଆଉ ନାହିଁ ତ୍ରିଭୁବନ ।
ଏଣୁ କରି ଭୂମିରସୁଁ ଅଟେ ବୀର୍ଯ୍ୟଧାତୁ
ପିଣ୍ଡର ସର୍ବସ୍ୱ ଟେକି ଦେଲେ ନାମତତ୍ତ୍ୱ ।
ଏଣୁ ପିଣ୍ଡ ବ୍ରହ୍ମାଣ୍ଡର ଅଟେ ଏକାଅର୍ଥ
ବୁଝିଲେକ ଭୂମିରସୁ ବିନ୍ଦୁ ପରମାର୍ଥ ।
ସେହି ବ୍ରହ୍ମ ବିନ୍ଦୁଜାଣ ଅଙ୍ଗୁଯାନ୍ତେ ବହି
ମହାଦେବ ବସିଲେକ ସଙ୍କୁଚିତ ହୋଇ ।
ଈଶ୍ୱରଙ୍କୁ ଲଜ୍ଜା ହେଲା ଜାଣି ନାରାୟଣ
ମୋହିନୀ ସ୍ୱରୂପ ଗୋଟି ତେଜିଲେ ତକ୍ଷଣ ।
ଶଙ୍ଖ ଚକ୍ର ଗଦା ପଦ୍ମ ଚତୁର୍ଭୁଜ ହୋଇ
ତିମିରଙ୍କହଳି ଆଗେ ଆସି ଭାବଗ୍ରାହୀ ।
ବିଷ୍ଣୁଙ୍କର ନିଜରୂପ ଦେଖି ସଦାଶିବ
ବୋଇଲେ ହେ କେଡ଼େମାୟା କଲୁ ବାସୁଦେବ ।
ବୁଝିଲେ ତ ଆମ୍ଭେ ସିନା ଆସିଥିଲୁ ଆଗ
ଆମ୍ଭଙ୍କୁ ବରିବା ପାଇଁ ଧରିଥିଲା ଅର୍ଘ୍ୟ ।
ପଛେ ତୁମ୍ଭେ ଆସି ତାହା ଭଗନ କରିଲ
ଏତେକ ସେ କନ୍ୟାରତ୍ନ ଘେନିଣ କି ଗଲ ।
ଶ୍ରୀନାରାୟଣ ବୋଇଲେ ଶୁଣ ହେ ସୁବଳେ
ମୁହିଁତ ଅର୍ଘ୍ୟ ମାଗି ନଥିଲି ତାଙ୍କୁ ବଳେ ।
ତୁମ୍ଭଙ୍କୁ ଦେଖିବା ପାଇଁ ଆସିଥିଲି ହାଦେ
କି ପାଞ୍ଚି ମନରେ ଅର୍ଘ୍ୟ ଦେଲା ମୋର ପାଦେ ।
ଏଠାରେ ଆପଣେ ବସିଅଛ କନ୍ୟା ସ୍ନେହେ
ଏକଥା ମନକୁ ମୋର ନ ପାଏ କେବେହେଁ ।
ଆବର କିଛି କଥା ଯେ ଶୁଣ ରୁଦ୍ରସ୍ୱାମୀ
ପିତାଦତ୍ତ କନ୍ୟା ସିନା ରାଜଦତ୍ତ ଭୂମି ।
ଗୁରସ୍ତ ଥାଉଁ ଯଦ୍ୟପି ଭାର୍ଯ୍ୟା ବୋଲେ ଚଳେ
ସେ ପୁରୁଷ ଅବିବେକ ବୋଲିଟି ଶୟଳେ ।
ବୁଝିଲେ ସ୍ତିରୀ ସମାନ ବଣିଜ ଯେ କରେ
ସେହି ଲୋକ କାଳେଜାଣ ହାରେଟି ସଭାରେ ।
ଏଡ଼େ ପ୍ରଭୁ ହୋଇ ତୁମ୍ଭେ କହିଲେ ନ ବୁଝ
ସ୍ତିରୀଲୋକ ସଙ୍ଗେ ଆସି ଲଗାଅ ପହିଜ ।
ଏହା ଶୁଣି ମହାଶାନ୍ତ ହେଲେ ଭୋଳାନାଥ
ମନେ ପାଞ୍ଚିଲେ ଏ କଥା ଅଟଇ ଯଥାର୍ଥ ।
ବୁଝିଲେ ଅଟନ୍ତି ଅବିବେକୀ ସ୍ତିରୀଲୋକ
କହନ୍ତି ଉଚିତ କୁହା ହୋଇ ନାନାବାକ୍ୟ ।
ଭଲମନ୍ଦ ଦୂଇରୁ ଯେ ବାହାର ହୁଅନ୍ତି
ସର୍ବଦା ମନ ଚଞ୍ଚଳେ କରି ପ୍ରବର୍ତ୍ତନ୍ତି ।
ଜିହ୍ୱା ଲହ ଲହ କରି କଥା କହୁଥାନ୍ତି
ଅବରଣେ ଯାଚିହୋଇ ମଧ୍ୟସ୍ଥ ହୁଅନ୍ତି ।

ଶ୍ରୀହରି କହିବା କଥା ଅଟଇ ପ୍ରମାଣ
ଏହା ପାଞ୍ଚି ଆନନ୍ଦିତ ହେଲେ ପଞ୍ଚାନନ ।
ତହୁଁ ହରହରି ଉଠିଗଲେ ତୋଷ ହୋଇ
ବରୁଣ ରାଜା ଆଗରେ ଉଭା ହେଲେ ଯାଇ ।
ତାଙ୍କୁ ଦେଖିଣ ସାଗରୀ ବୋଇଲେ କେ ତୁମ୍ଭେ
କହନ୍ତି ଯେ ହରି ହର ଆସିଅଛୁ ଆମ୍ଭେ ।
ତୁମ୍ଭ ଦୁହିତାଙ୍କ ହୋଇଅଛୁଁ ଦୁହେଁ ବର
କାହାକୁ ଦେବ ତ ତୁମ୍ଭେ କହନ୍ତୁ ସାଦର ।
ଶ୍ରୀହରିଙ୍କୁ ଦେବ କିବା ଶିବେ ଦେବ କହ
ଆପଣଙ୍କଠାରୁ ଶୁଣି ଫିଟିବ ସନ୍ଦେହ ।
ତୁମ୍ଭଙ୍କୁ ମୁଁ ଚିହ୍ନି ନାହିଁ ବୋଇଲେ ବରୁଣ
ମାୟାବୀ ପରାୟେ ଦିଶୁଅଛ ବେନିଜନ ।
କି ବୋଲିଣ ଆପେ ଆପେ ଆସ ବରହୋଇ
ମହାଜନ ପନ୍ଥା ଏହି କଥା ଆସୁନାହିଁ ।
ଆମ୍ଭର ଯେ ସତ୍ୟକଥା ଶୁଣିନାହଁ ତୁମ୍ଭେ
ଯେ ଲାଖ ବିନ୍ଧିବ କନ୍ୟା ତାଙ୍କୁ ଦେବୁ ଆମ୍ଭେ
ବୃହସ୍ପତି କହିଛନ୍ତି ମନୋରଥେ ମୋତେ
ବୋଇଲେ ଲାଖ ବିନ୍ଧିବେ ଏକା ଜଗନ୍ନାଥେ ।
ସେହି କଥା ଶୁଣି ମୁହିଁ ଅଛି ଦୃଢ଼ କରି
ଆନ ପୁରୁଷକୁ ଯୋଗ୍ୟନୁହେଁ ମୋ କୁମାରୀ ।
ଏହି କଥା ଶୁଣି ବିଷ୍ଣୁ ଗଲେ ତାଙ୍କୁ ଚିହ୍ନି
ବୋଇଲେ ଆମ୍ଭର ଏହି ଅଟେ ନିଜ ପତ୍ନୀ ।
କଥାର ତର୍କ ବୁଝିଣ ହୋଇ ହସ ହସ
ସଦାଶିବଙ୍କୁ ବୋଇଲେ ତେବେ ଯିବା ଆସ ।
ଏ ଲାଖ କଲା ଉତ୍ତାରୁ ଆସି ସିନା ଆମ୍ଭେ
ଆନ ଲୋକ ଲାଖ ବିନ୍ଧି ନ ପାରିବବ କେବେ ।
କି କହ ଏଠାରେ ଦେଖାଇଲେ ବସି ପୁଣ
ଯେଝା ଗଉରବ ରଖି ଚାଲ ଏବେ ଶୁଣ ।
ଏହା ଶୁଣି ମହାଦେବ ହୋଇଲେ ସନ୍ତୋଷ
ଚଳିଲେ ବିଷ୍ଣୁର ଆଜ୍ଞା ପାଇ ନିଜ ଦେଶ ।
ଈଶ୍ୱର ଚଳିଯିବାରୁ ଚଳିଲେ ଶ୍ରୀହରି
ଲମ୍ୱାଇଲେ କଉସ୍ତୁଭ ମଣି ହୃଦେ ଧରି ।
ମିଳିଲେ କ୍ଷୀରବୈକୁଣ୍ଠେ ଯାଇ ନାରାୟଣ
ବିପ୍ର ପୀତାମ୍ବର ଦାଶ ସେ ପାଦେ ଶରଣ ।



## କଉସ୍ତୁଭମଣି ବୃତ୍ତାନ୍ତ

ଶୁଣ ବାବୁରବେ ନାରଦ କହଇ ଯେ ବ୍ରହ୍ମା
ଏହି ରୂପେ ଭୃଗୁ ଋଷି ପ୍ରକାଶିଲେ ରମା ।
ତୃତୀୟ ସାଗରେ ଯାଇ ପଚାରିବୁ ମୋତେ
ଲକ୍ଷ୍ମୀ ନାରାୟଣ ବିଭା କହିବି ମୁଁ ତୋତେ ।
ନାରଦ କହିଲେ ପରେ ବିଭାକଥା କହ
କଉସ୍ତୁଭ ମଣି କଥା ଏକ୍ଷଣି ଶୁଣାଅ ।
ଲମ୍ୱିଲା ହରି ଶରୀରେ କାହୁଁ ସେହି ଆସି
କହିଲେ କି ଗୁଣ ଚିହ୍ନି ତାକୁ ହୃଷିକେଶୀ ।
ତଥାପି ସେ ପୂର୍ବକାଳେ ଥିଲା କିସ ହୋଇ
ଲଭିଲା କି ଜପ ତପ କରି ବିଷ୍ଣୁ ଦେହୀ ।
ଏହି ମଣି କଥା ହେଲେ ସର୍ବେ ପୁଚ୍ଛୁଥାନ୍ତି
ପୁରାଣରେ ଥିବା କଥା ଜାଣି ନ ପାରନ୍ତି ।
ତରିଯିବା ଏବେ ତାହା ତବ ମୁଖୁଁ ଶୁଣି
ଅଛ ଭକତ କି ସେହୁ କଉସ୍ତୁଭ ମଣି ।
ନାରଦ ପୁଚ୍ଛନ୍ତେ ଏହା କହନ୍ତି ଯେ ବ୍ରହ୍ମା
ବୋଲନ୍ତିରେ ବାବୁ ଶୁଣ ଅପୂର୍ବ ମହିମା ।
ଜୀବକୁ ତ ସାରସ୍ୱତ ଅଟଇ ଏ ବାଣୀ
ହୁଅଇ ପିଣ୍ଡର ଗତି ପାରିଲେ ଯା ଶୁଣି ।
ପୂର୍ବେ ବ୍ରାହ୍ମଣ ଅଂଶରେ ଥିଲା ଏକ ରାଜା
କଣ୍ୱଶାଖା ଯଜୁର୍ବେଦ ଅଟେ ବ୍ରହ୍ମଦ୍ୱିଜା ।
ଦଇବେ କାଳକାଳରୁ ଅଟେ ବିଷ୍ଣୁଭକ୍ତ
ବେଦଶାସ୍ତ୍ର ପୁରାଣାଦି ପଢ଼ଇ ଯେ ନିତ୍ୟ ।
ଯାବତ ଗ୍ରନ୍ଥ ପୁରାଣେ ଅଟଇ ନିର୍ଜିତା
କଉଶିକ ନାମ ଗୋଟି ବହେ କୁଳଜ୍ଞାତା ।
ପୁତ୍ରସମ ପ୍ରଜାପାଳି ପାଳେ ବନ୍ଧୁ ଇଷ୍ଟ
ଦୀନଦୁଃଖୀ ଦରିଦ୍ରରେ ଦୟାଳୁ ଗରିଷ୍ଠ ।
ଅତିଥି ବ୍ରାହ୍ମଣ ସାଧୁ ଦେଖି ସେବାକରେ
ସର୍ବଘଟେ ହରି ବୋଲି କହଇ ସଂସାରେ ।
ଏହିମତେ କେତେ କେତେ କାଳ ବହିଗଲା
ବିଷ୍ଣୁ ଭଜନରେ ତାର ଭକ୍ତି ପ୍ରକାଶିଲା ।
ନାରଦ ରାଜାର ଜ୍ଞାନ ଦେଖି କଲେ ବିଜେ
ଦଣ୍ଡ କମଣ୍ଡଳୁ ବୀଣା ଧରିଛନ୍ତି ଭୁଜେ ।
କପିଳା ମଳର ଭସ୍ମ ଲେପି ହୋଇଛନ୍ତି
କଷା ବାସ ପିନ୍ଧି ରାଜା ଛାମୁକୁ ଆସନ୍ତି ।
ପଞ୍ଚବର୍ଣ୍ଣ ମଳଯାକ କଣ୍ଠେ ଛନ୍ତି ଭରି
ମିଳିଲେ କୌଶିକ ପାଶେ ଆସି ତପଚାରୀ ।
ଦେଖି ବିପ୍ରରାଜା ତାଙ୍କୁ ଦଣ୍ଡବତ କଲେ
ମୁନିଙ୍କର ପାଦ ଧୋଇ ଦେହେ ସିଞ୍ଚି ହେଲେ ।
ନାରଦ ମହାମୁନିଙ୍କୁ ଆଶ୍ରମେ ବସାଇ
ବୋଇଲେ କୃତାର୍ଥ ଏବେ ହୋଇଲି ଯେ ମୁହିଁ ।
ଆଜ ମୋହର ଭାଗ୍ୟରେ ଥିଲା ପୁଣ୍ୟ ଯେତେ
ନାରଦ ଗୋସାଇଁଙ୍କୁ ମୁଁ ଦେଖିଲି ଅଦ୍ଭୁତେ ।
ଏହିଠାରେ ଶୁଭଦଶ ପାଲଟିଲା ମୋର
ଆପଣଙ୍କଠାରୁ ଜ୍ଞାନ ଶୁଣିବି ଏଥର ।

ଏହା ଶୁଣିଣ ନାରଦ ବୋଇଲେ ତୁ ଧନ୍ୟ
ଶୁଣିବି ବୋଲୁଛୁ ଯେଣୁ ମହାବ୍ରହ୍ମଜ୍ଞାନ ।
ଏ ସଂସାର ଯାକ ବୁଲି ଦେଖିଲିଣି ଯେତେ
ତୋର ପରା ସାଧୁ କେହି ନ ମିଳେ ଜଗତେ ।
ତରିବି ମୁଁ କହି ତୁହି ଶୁଣି ମୋକ୍ଷ ହେବୁ
ଆମ୍ଭେ ଦୁହେଁ ବିଷ୍ଣୁଭକ୍ତି ଲଭିବାରେ ବାବୁ ।
କଉଶିକ ବୋଇଲେ ମୁଁ ସାଧୁଙ୍କ ଭକ୍ତିକି
ତାଙ୍କ ଚରଣ ରେଣୁକୁ କେବେହେଁ ସରିକି ।
କେବଳ ଏତିକି ମାତ୍ର ଦେଖିଲି ତୁମ୍ଭଙ୍କୁ
ହେଲା ମୋ ପରମଲୋଭ ଶୁଣିବି ଜ୍ଞାନକୁ ।
ବୁଝିଲେ ତ ଏହି ଦେହ ଅଟେ ମାୟାପାଶ
କୁଟୁମ୍ବ ସମ୍ପତ୍ତି ପୁତ୍ର ବନ୍ଧୁ ଦାରା ଦାସ ।
ସମସ୍ତଙ୍କୁ ବୋଇଲେ ମୁଁ ମୋହର ମୋହର
ବୁଝିଲେ ଗଲାବେଳକୁ ନୋହେ କେ କାହାର ।
କେବଳ ମୁଁ ଲୋଭ ମୋହ ମାୟା ଜଡ଼ିଆଇ
ବିଷୟା ବନ୍ଧରେ ପଡ଼ି ବିଷ୍ଣୁ ନ ଭଜଇ ।
ଗୋବିନ୍ଦର କଥା ଋଷି ଏଣୁ ମୋତେ କହ
ଶୁଣିବା ମାତ୍ରକେ ମୋର ମୋକ୍ଷହେବଦେହ
କୌଶିକ ପୁଚ୍ଛନ୍ତେ ଏହିରୂପେ ରାଣପଦ
ଶୁଣିଣ ନାରଦ ତାହା ହୋଇଲେ ଆନନ୍ଦ ।
ବୋଇଲେକ ଶୁଣ ତେବେ ରାମରସ ବାଣୀ
ପିତାଙ୍କ ମୁଖରୁ ପୂର୍ବେ ଯାହା ଅଛି ଶୁଣି ।
ସେହି ଜ୍ଞାନ ତୋତେ କହୁଅଛୁ ପରା ଏବେ
କେବଳ ହେତୁ କରିଣ ଶୁଣିବୁ ତୁ ଯେବେ ।
ବିଧାତା ନାରଦ ବେନି ଗଙ୍ଗା ନୀଦକୂଳେ
ତ୍ରିବେଣୀ ବଟମୂଳରେ ସ୍ନାନ କରୁଥିଲେ ।
ଏମନ୍ତ ସମୟେ ବ୍ୟାଧ ମିଳି ତରୁପାଶେ
ଦେଖି ଏକ କ୍ରୌଞ୍ଚପକ୍ଷୀ ବୃକ୍ଷଶିଖେ ବସେ ।
ଲୟ ଲଗାଇ ଲଗାନ୍ତେ ତାକୁ ନଳକାଠି
ରା ଅକ୍ଷର ଧରି ପକ୍ଷୀ ପଡ଼େ ମହୀ ଲୋଟି ।
ପୁନରପି ମ ଅକ୍ଷର ପଛେ ରାବ ଦେଲା
ସେ ଦୁଇ ଅକ୍ଷର ରାମ ଶବଦ ହୋଇଲା ।
ସେ ଶବଦ ଆସି ମୋର ଶ୍ରବଣେ ବାଜନ୍ତେ
ତେଣୁ ପଚାରିଲି ମୁହିଁ ବ୍ରହ୍ମାଙ୍କ ଅଗ୍ରତେ ।
ବିଧାତା ବୋଇଲେ ତେବେ କହିବାତା ଶୁଣ
ସେ ଯେଉଁ ଶବଦ କଲା ଅଟେ ନାରାୟଣ ।
ତେଣୁ ସେହି ନାରାୟଣ ସର୍ବ ଦେବଗତେ
ବିଜୟ କରିଅଛନ୍ତି ବ୍ରହ୍ମଜ୍ଞାନ ମତେ ।
ସେହି ବ୍ରହ୍ମଜ୍ଞାନ ଚାରିବେଦେ ଅଗୋଚର
ପାଇଲେ ଈଶ୍ୱର କିଛି ବାସନା ତାହାର ।
ସଦାଶିବ ସଂସାରରେ ତେଣୁ ହେଲେ ଯୋଗୀ
ନୋହିଲେ ଅପର ଲୋକେ ଗଲେ କେଣେ ଭୋଗି ।
ସେ ଶବ୍ଦ ଆଦ୍ୟ ଅକ୍ଷର ଜାଣି ଭୂଷଣ୍ଡଟି
ରଖିଲା ଅଜରାମର କରି ପିଣ୍ଡଗୋଟି ।
ଦ୍ୱିତୀୟ ଅକ୍ଷର ଗୋଟି ତଳେ ନ ପକାଇ
ପ୍ରଥମ ଅକ୍ଷର ଜପି ବସେ ହେତୁ ଦେଇ ।
ରାମଙ୍କ ମହିମା ଅଗୋଚର ଏ ପ୍ରକାର
ଗାଉଛନ୍ତି ମରୁଛନ୍ତି ସଂସାରର ନର ।
ସେ ରାମ ଶବଦକୁ ଯେବେ ପାରିବୁ ତୁ ଘୋଷି
ଆଦ୍ୟ ଅକ୍ଷରକୁ ଜୀବ ଆତ୍ମାରେ ନିବେଶି ।
ମକାରକୁ ପରାତ୍ମାରେ ନେଇ ନିଯୋଗିବୁ
ଏହିରୂପେ ଜାଣିଲେ ତୁ ଅମର ହୋଇବୁ ।
ସେ ରାମର ମହିମାଟି ଏମନ୍ତ ଅଟଇ
ଯେ ପାରଇ ହେତୁ ରଖି ସେ ନିଶ୍ଚେ ତରଇ ।
ଏମନ୍ତ ବୋଲିଣ ମୋତେ କହିଥିଲେ ବ୍ରହ୍ମା
ସାରବେଦ ସାର ଏହି ରାମର ମହିମା ।
ଏବେ ସେହି ରାମ ପଦ କହିବା ତୋ କର୍ଣ୍ଣେ
ସେ ପଦକୁ ହେତୁକରି ଭଜ ପ୍ରତିଦିନେ ।
ଏତେ ବୋଲିଣ ଦକ୍ଷିଣ କର୍ଣ୍ଣମୂଳେ ବସି
ଶ୍ରୀରାମ ତାରକ ମନ୍ତ୍ର କହିଲେକ ଋଷି ।
ଶୁଣି କଉଶିକ ରାଜା ଦଣ୍ଡବତ କଲେ
ତହୁଁ ନାରଦ ମହର୍ଷି ଅନ୍ତର୍ଦ୍ଧାନ ହେଲେ ।
ରାମ ରାମ ଭଜି ରାଜା ବସେ ସେହିଠାରୁ
କ୍ଷଣେ ନ ପାଶୋରେ ତାହା ହୃଦୟ ଭିତରୁ ।
ସ୍ନାନ ଦେବାର୍ଚ୍ଚନେ ଆଉ ଭୋଜନେ ଶୟନେ
ଉଚ୍ଚସ୍ୱରେ ରାମ ରାମ ଭଜେ ଅନୁକ୍ଷଣେ ।
ଯେଣେ ଗଲେ ତେଣେ ହୃଦ ଭଜେ ଚକ୍ରପାଣି
ଆନନ୍ଦ ହୁଅନ୍ତି ସର୍ବେ ରାଜା ମୁଖୁଁ ଶୁଣି ।
ଥୋକେ ଯାଇ ନ ଜାଣବା ଲୋକକୁ କହନ୍ତି
ଦେଖ ଆମ୍ଭ ରାଜା ରାମ ନାମକୁ ଭଜନ୍ତି ।
ଜାଗ୍ରତ ସ୍ୱପନକାଳେ ନିଦ୍ରା ଗଲା ବେଳେ
ଭଜନ୍ତି ରାମ ରାମ ପଦ ତ୍ରିନିକାଳେ ।
ଏହିପରି କହି ଲୋକେ ହୁଅନ୍ତି କୁହାକୁହି
ସେ ରାଜାର କଥା ଏବେ ଶୁଣ ମନଦେଇ ।
ଏହିମତେ କେତେଦିନ ରାମଙ୍କୁ ସେ ଭଜି
ସଂସାର ବିଷୟ ଯେତେ ସବୁ ଦେଲେ ତେଜି ।
ଯୁବତୀମାନଙ୍କ ଭୋଗ ପୁତ୍ରଙ୍କର ଭୋଗ
ଧନର ସରାଗ ଆଉ ପ୍ରଜା ଶସ୍ୟଭୋଗ ।
ଆବର ଯେ ରାଜନୀତି ଲୋକଙ୍କ ପୀରତି
ଲୋକାଚାର ରୀତି ଧର୍ମ ସଂସାର କୀରତି ।

ବେଶଭୂଷା ଆଦି ରତ୍ନଚୂଡ଼ି ପିନ୍ଧା ଖଦି
ଭଜିଲେ ସକଳ ଛାଡ଼ି ରାମନାମ ଭେଦି ।
ଯାତନା ତେଜ୍ୟା କରି ସେ ସମସ୍ତଙ୍କୁ ରାଇ
ବୋଇଲେ ମୁଁ ଆଜିଯାଏ ଥିଲି ନୃପହୋଇ ।
ଏବେ ଏହିଠାରୁ କହୁଅଛି ମୁହିଁ ଶୁଣ
ପୁତ୍ରକୁ କରିବି ମୋର ରାଜ୍ୟେ ନୃପରାଣ ।
ତୁମ୍ଭଙ୍କୁ ଦେଉଛି ଏବେ କହି ରାଜଶାଢ଼ୀ
ବସ ଏହି ସିଂହାସନେ ରାଜାସନ ମାଡ଼ି ।
ଏ ରୂପେ କହି ସେ ଜ୍ୟେଷ୍ଠପୁତ୍ରେ ଅଣାଇଲେ
ଶୁଭଲଗ୍ନ ବୁଝି ରାଜପଣେ ଶାଢ଼ୀ ଦେଲେ ।
ପୁତ୍ରକୁ କହିଲେ ମୋର ରାଜ୍ୟେ ହୁଅ ରାଜା
ଯାବତ ଲୋକଙ୍କୁ ପାଳି ତୋଷିବୁ ଏ ପ୍ରଜା ।
ନିନ୍ଦାବାଣୀ ଏ ଦେହକୁ କେଭେ ନ ଆଣିବୁ
ରାମଙ୍କ ପରାୟ ମାତାମାନଙ୍କୁ ମାନିବୁ ।
ଶ୍ରୀମହାମନ୍ତ୍ରକୁ ଜପ କରିଥିବୁ ନିତି
ସଂସାରେ ଅର୍ଜିବୁ ଅନୁକ୍ଷଣେ ଯଶକୀର୍ତ୍ତି ।
ସୁବେଦୀ ବିପ୍ରଙ୍କ ପାଦ ସଦା ଥିବୁ ସେବି
ବିପ୍ରରେ ଭୋଜନ ପୂଜୁଥିବୁ ଦେବାଦେବୀ ।
ଗୁରୁଙ୍କର ଅପରାଧୀ ନ ହେବୁ ତୁ କେବେ
ଗୁରୁଟି ଅଟନ୍ତି ସ୍ୱୟଂ ବ୍ରହ୍ମା ବିଷ୍ଣୁ ଶିବେ ।
କୁଟୁମ୍ବ ସୁହୃଦ ଭାଇ ବନ୍ଧୁଛନ୍ତି ଯେତେ
ଆରେ ବାପ ଏମାନଙ୍କୁ ପାଳୁଥିବୁ ନିତ୍ୟେ ।
ପରସ୍ତିରୀକୁ ମଣିବୁ ଜନନୀ ପରାୟେ
ଯାଚକ ଲୋକଙ୍କୁ ଦେଖି ନୋହିବୁ ନିର୍ଦ୍ଦୟେ ।
ସ୍ନାହାନ ସାରିଣ ପୂଜା କରିବୁ ଶଙ୍କର
ଭଜିବୁ ନୃସିଂହ ନରହରି ନିରାକାର ।
ଶ୍ରୀବିଷ୍ଣୁ ପ୍ରୀତ୍ୟାର୍ଥେ କରୁଥିବୁ ସବୁ କର୍ମ
ବିବେକପଟେ ରହିବୁ ନୋହି ମତିଭ୍ରମ ।
ଖଟୁଆ ଲୋକଙ୍କୁ କେବେ ପାଶେ ନ ରଖିବୁ
ମିଥ୍ୟାଭାଷୀଙ୍କୁ ଛାମୁରୁ ନିଶ୍ଚେ କାଢ଼ିଦେବୁ ।
ଯେତେ ଦୋଷ କଲେ ମଧ ସ୍ତ୍ରୀମାନଙ୍କୁ ଜାଣ
କେତେବେଳେ ନ ଦଣ୍ଡିବୁ ଶୁଣରେ ନନ୍ଦନ ।
ଲୋକଙ୍କୁ କରଜ ଦେଉଥିବୁ ଧର୍ମ ନ୍ୟାୟେ
ଆଶାକାରୀ ଲୋକଆଗେ ଦେବୁଟି ତନୟେ ।
ପାଞ୍ଚପଚିଶ ଲୋକଙ୍କୁ ପଛେ ମାପିଦେବୁ
ଏହି କଥା ସଂସାରରେ ବହୁଧର୍ମ ବାବୁ ।
ଆବର ତୋଳିବୁ ଗ୍ରୀଷ୍ମକାଳେ ଧର୍ମଶାଳା
ବିଦେଶୀ ପ୍ରବାସୀ ରହିଥିବେ ଅସଂଖୋଳା ।
ଦିନକରେ ବେନି ଥର ଗୁହାରି ଶୁଣିବୁ
ପ୍ରଭାତୁ ବୈଦ୍ୟକୁ ନିତ୍ୟେ ନାଡ଼ି ଦେଖାଇବୁ ।
ନାଟିକାର ଗୁଣ ବୁଝି ଭୁଞ୍ଜିବୁ ଔଷଧ
ଏମନ୍ତ ଥିଲେଟି ରୋଗ ନ ଆସଇ ହୃଦ ।
ମଣୋହି କରିବୁ ନିତ୍ୟେ ସୂର୍ଯ୍ୟବେଳ ଚିହ୍ନି
ଏମନ୍ତ ଦ୍ରବ୍ୟ ଭୁଞ୍ଜିବୁ ନୋହିବୁ ମନ୍ଦାଗ୍ନି ।
ପର ଯୁବତୀକି କେତେବେଳେ ନ ହରିବୁ
ଆପଣା ସ୍ତିରୀକୁ ଭୋଗ ସର୍ବଦା କରିବୁ ।
ପଟୁଆର ଅନୁକୂଳେ ବେଶ୍ୟା ଡକାଇ
ଛୁଇଁଲେ ତାହାକୁ ପାପ ଦେହେ ଘୋଟେ ଧ୍ରୁବ ।
କୁତ୍ସିତ ପୁରୁଷଲୋକ ରସେ ବେଶ୍ୟାନାରୀ
ଅଳପକେ କ୍ଷୟଯାଏ ତା କନ୍ଧରୁ ଶିରୀ ।
ସେହୁ ନୀଚ ସ୍ତିରୀଙ୍କର ପାଦତଳେ ଖଟି
ମୃତ ପୁରୁଷ ଦୁଆରେ ମରେ ହୋଇ ଘାଣ୍ଟି ।
ଗୋବିନ୍ଦ ନାମକୁ ଛାଡ଼ି ବେଶ୍ୟା ମେଳେ ବଢ଼େ
ତାର ତୁଲେ ରମି ରଉରବ ନର୍କେ ପଡ଼େ ।
ଏଣୁ ଗଣିକା ସ୍ତିରୀଙ୍କୁ କେଭେ ନ ଛୁଇଁବ
ଛୁଇଁଲେ ନିଶ୍ଚୟ ଜାଣ ଅଳ୍ପାୟୁ ହୋଇବ ।
ବେଶ୍ୟାସ୍ତିରୀ ସଙ୍ଗେ ଯେହୁ କରଇ ପୀରତି
ତାର ହସ୍ତେ ପିତୃଦେବ ପାଣି ନ ପାଆନ୍ତି ।
ତୋତେ ଆମ୍ଭେ ଏହି ରାଜ୍ୟେ କରି ଦଣ୍ଡଧାରୀ
ଯାଉଛୁରେ ପୁତ୍ର ଏବେ ବିଷ୍ଣୁ ପୂଜା କରି ।
ଏହା ଶୁଣି କରଯୋଡ଼ି କହେ ରାଜପୁତ୍ର
ଆପଣ ତ ସାକ୍ଷାତରେ ଅଟ ପୁଣ୍ୟ କ୍ଷେତ୍ର ।
ଆବର ନୃପତି କୁଳଯାଇ ଅଟ ସୂର୍ଯ୍ୟ
ବୋଲାଅ ବ୍ରାହ୍ମଣ କୁଳେ ପୃଥ୍ୱୀ ଦ୍ୱିଜରାଜ ।
ମନୁଷ୍ୟ କୁଳେ ପ୍ରତ୍ୟକ୍ଷେ ଅଟେ ବିଷ୍ଣୁ କଳା
ବୋଲାଅ ତପସ୍ୱୀ କୁଳଯାକେ ବରମାଳା ।
ବଇଷ୍ଣବ କୁଳଯାକେ ଅଟ ମୋକ୍ଷଦାତା
ବୋଲାଅ ସମ୍ପଦ ଧରି ମଧ୍ୟେ ହର୍ତ୍ତା କର୍ତ୍ତା ।
ସଂସାରେ ଅଛନ୍ତି ସ୍ତିରୀ ପୁରୁଷାଦି ଯେତେ
ସମସ୍ତଙ୍କ ପିତା ମାତା କହିବି ତା କେତେ ।
ଭକତି ଭଣ୍ଡାର ମଧ୍ୟେ ତୁମ୍ଭେ ଜ୍ଞାନସିନ୍ଧୁ
ଏରୂପେ କହିଲେ ରାଜପୁତ୍ର କଥା ସ୍ୱାଦୁ ।
ଏହା ଶୁଣି କଉଶିକ ଆନନ୍ଦିତ ହେଲେ
ପୁତ୍ରକୁ କଲ୍ୟାଣ କରି ତପସ୍ୟା କରିଲେ ।
ନଗ୍ର ପୂର୍ବ କୋଣେ ବସି ଆରମ୍ଭିଲେ ତପ
ରାମ ନାମ ଗୋଟି ହୃଦମଧ୍ୟେ କଲେ ଜପ ।
ବସିଲେ ପୂର୍ବମୁଖରେ ପଦ୍ମାସନ ମାଡ଼ି
ବିଭୂତି ଅଙ୍ଗରେ ବୋଳି କଷାବସ୍ତ୍ର ଭିଡ଼ି ।
ସ୍ନାନ ପାନ ନିଦ୍ରା ସବୁ ତ୍ୟାଗ କଲେ ରାଜା
କେବଳ କରନ୍ତି ପଦ୍ମୀମାନେ ଆସି ପୂଜା ।

ଯାବତ ନିତ୍ୟ କରମ କରି ଚଳିଯାନ୍ତି
ତପସ୍ୟା ଯୋଗୁଁ ରାଜା ଯେ କଥା ନ ଜାଣନ୍ତି ।
ହୋଇଲା ନୋହିଲା ଦୁଇ ଦୁଃଖ ସୁଖ ଯେତେ
ସବୁ ସମଘେନି ନାମ ଭଜୁଥାନ୍ତି ନିତ୍ୟେ ।
ସତ୍ୟ ଅସତ୍ୟ ଭାବାର୍ଥ ଭାବ ଯେତେ କହି
ସକଳ ସମ ଘେନନ୍ତି ରାମ ନାମ ଧାୟି ।
ଏହିରୂପେ ଦିନ କାଳ କେତେ ବହିଯାନ୍ତେ
ତାହା ଜାଣିଲେ ବୈକୁଣ୍ଠେ ଥାଇ ଲକ୍ଷ୍ମୀ କାନ୍ତେ ।
ମନରେ ପାଞ୍ଚିଲେ ମୋର ଭକ୍ତ ଅଟେ ପ୍ରାଣ
ଭକତ ହିତେ ସଂସାରେ ମୁହିଁ ନାରାୟଣ ।
ଯେତେ ପ୍ରକାରେ ଭକତ କରେ ମୋତେ ସେବା
ମୁଁ ତାହାର ଋଣ ସୁଝି ନ ପାରଇ ଅବା ।
ଏଣୁ କରି ଭକ୍ତ ମୋର ତହୁଁ ଅଟେ ବଡ଼
ନ ଜାଣିବା ଲୋକେ ଦଣ୍ଡ ଦ୍ୟନ୍ତି ଯୋଗାରୁଢ଼ ।
ନିନ୍ଦା କରନ୍ତି ମୋ ଭକତକୁ ଯେତେ ପ୍ରାଣୀ
ତାର ଶିରୀ ଚ୍ୟୁତ ମୁହିଁ କରେ ସେହିକ୍ଷଣି
ଏବେ ଯେ କୌଶିକ ବସିଅଛି ମୋତେ ଧାୟି
ଯାଇଣ ଆସିବି ଏବେ ବର ତାକୁ ଦେଇ ।
ଦାମୋଦର ଅବତାର ହୋଇ ଦେଖାଇବି
ଭକତକୁ ବର ଦେଇ ହୃଦେ ଲମ୍ଭାଇବି ।
ଏମନ୍ତ ପାଞ୍ଚି ମନରେ ଆସି ଆଦିମୂଳ
ଆରକ୍ତ ବରଣ ଦେହ ଶିରେ ଦିବ୍ୟଚୁଳ ।
ଚୂଳ ମଧ୍ୟେ ସେବତୀର ଫୁଲଗଭା ଶୋଭା
ଗଭା ମୂଳରେ ଚନ୍ଦନ ବିନ୍ଦୁର ଯେ ପ୍ରଭା ।
କର୍ଣ୍ଣରେ କୁଣ୍ଡଳ ବେନି ଦିଶେ ଝଟଝଟ ।
ଗଜମୋତି ମୁକୁତାରେ ଶୋହେ ନାସାପୁଟ ।
କଣ୍ଠେ ସରି ସରି ପଡ଼ି ଶୋହେ ସୁନା ମୂତା
କନ୍ଧେ ବ୍ରହ୍ମ ଗଣ୍ଠି ହସ୍ତେ ଧରିଛନ୍ତି ଛତା ।
ହୃଦୟରେ ହୀରାପଦ ବାହେ ବାଜୁବନ୍ଧ
କଟିରେ ସୁନାର ଘଣ୍ଟି ଲମ୍ଭାଇ ଗୋବିନ୍ଦ ।
ଝୁମୁକି କଳା ପାଦରେ ଶୁଭେ ରୁଣୁ ଝୁଣ
ରତନ ପାଦୁକା ଚଢ଼ି ଆସି ନାରାୟଣ ।
ସେ ପାଦପଦ୍ମ ଭକ୍ତକୁ ଚିହ୍ନାଇବା ପାଇଁ
ଲାବଣ୍ୟ ମୂରତି ଧରି ବିଜେ କଲେ ତହିଁ ।
ଆସିଲେ କ୍ଷୀରବଧି ବଇକୁଣ୍ଠ ରୂପ ଧରି
ରାଜାର ଆଗେ ମିଳିଲେ ଦେବ ନରହରି ।
ଦେଖିଲେ ସେ ବିପ୍ରରାଜା ବସି ଯୋଗଧ୍ୟାନେ
ରାମଙ୍କର ନାମ ଗୋଟି ଭଜେ ଅନୁକ୍ଷଣେ ।
ସଂସାର ବିଷୟ ଗୃହକର୍ମ ଲୋଭ କାଟି
ମୁଖରେ ପଢ଼ଇ ରାମନାମ କୋଟି କୋଟି ।

ତା ଦେଖି ଗୋବିନ୍ଦ ହୃଦେ ବସିଲାକ ଦୟା
ବୋଇଲେ କରିବି ସିଦ୍ଧି ଆଜ ତୋର କାୟା ।
ମାଗ ଆହେ କଉଶିକ ଦେବି ତୋତେ ବର
ସ୍ୱୟଂ ବିଷ୍ଣୁ ଆମ୍ଭେ ଆସିଅଛୁ ତୋର ପୁର ।
ତୁ ଯାହା ମାଗିବୁ ତାହା ନିଶ୍ଚେ ଆଜ ଦେବୁ
ଏହି ରୂପେ କହି ବର ଯାଚି ମହାପ୍ରଭୁ ।
କଉଶିକ ଗୋବିନ୍ଦଙ୍କ ମୁଖୁଁ ଶୁଣି ବାଣୀ
କାମରେ ମନକୁ ରଖି ପୁଚ୍ଛେ ଚକ୍ରପାଣି ।
ବୋଇଲେ ଆପଣ କିଏ ଆସିଛ ତ କହ
ମୁଁ ଲୋଡୁଛି ଦେଖିବାକୁ ଗୋବିନ୍ଦର ଦେହ ।
ଶ୍ରୀହରି ବୋଇଲେ ଆମ୍ଭେ ଗୋବିନ୍ଦ ଯେ ଏକ
ଆସିଛୁ ତୋ ପାଇଁ ବଇକୁଣ୍ଠ ଛାଡ଼ି ଦେଖ ।
କୌଶିକ ବୋଲେ ଆସିଛ କିମ୍ପା ହୋଇଶ୍ରମୀ
ମୁହିଁ ମୂଳଲାଗି ତ ନ ଥିଲି ଅନ୍ତର୍ଯ୍ୟାମୀ ।
ତୋତେ ଯେ କାମନା କରି ଭଜୁଥିବ ହରି
ତାହାର ବର୍ତ୍ତନ ଦେବ ତୁମ୍ଭେ ଲେଖିକରି ।
ସେ ମୂଲିଆ ଗୁଣ ବୁଝି ଦେବ ତାକୁ ମୂଲ
ତେବେ ସେ ମୂଲିଆ ହେବେ ସଂସାରେ ଭଲ ।
ମୁଁ ତୁମ୍ଭର ମୂଲ ମାଗି ନ ଥିଲି ହେ ପ୍ରଭୁ
ମୁହିଁ ନ ମାଗୁ ବର୍ତ୍ତନ ତୁହି କିସ ଦେବୁ ।
ଯେବଣ ମୂଲ ମାଗିବି ଆହେ ଚକ୍ରଧର
ନିଶ୍ଚୟ ତା ବେଗେ ଦେବଆଗେ ସତ୍ୟକର ।
ଏରୂପେ କହନ୍ତେ କଉଶିକ କଥା ରସ
ଶୁଣିଣ ତା ଅନ୍ତର୍ଯ୍ୟାମୀ ହୋଇଲେ ହରଷ ।
ବୋଇଲେ ଆମ୍ଭେ ସବୁରି ମନ କଥା ଜାଣୁ
ମନକୁ ତାହାର ଚିହ୍ନି ମୁକତି ବଖାଣୁ ।
ତାହାର ମନ ଗୋଟିକ ବୁଝି ସିନା ଆମ୍ଭେ
ଅଭୟବର ଯାଚୁଛୁ ତେଣୁ ସିନା ଏବେ ।
ଏହା ଶୁଣି କଉଶିକ ଯୋଡ଼ି ବେନି ହସ୍ତେ
ବୋଇଲେ ଅଭୟ ବର ଦେବୁ ଯେବେ ମୋତେ ।
ମୁଁ ଯାହା ମାଗିବି ତାହା ଦେବୁକିନା କହ
ନ ଦେବୁ ବୋଇଲେ ବେଗେ ବାହୁଡ଼ିଣ ଯାଅ ।
ନାମକୁ ହେଲେ ହେଁ ମୁହିଁ କେଭେ ନାହିଁ ଛାଡ଼ି
ତୋ ଚରଣ ତଳେ ମନ ରଖିଅଛି ପଡ଼ି ।
ଶ୍ରୀହରି ବୋଇଲେ ତୋର ମନେ ଅଛି ଯାହା
ଦେବଇଁ ତା ନିଶ୍ଚେ ମୁହିଁ ମାଗ ବେଗେ ତାହା ।
ଭକତ ଡାକିଲେ ରହି ନ ପାରେ ମୁଁ ଟିକେ
ଅନବରତ ମୁଁ ଥାଇ ଭକତର ବାକ୍ୟେ ।
ଯାହା ବଚନେ ବୋଲଇ କରଇ ମୁଁ ତାହା
ତେଣୁ ଭକ୍ତବନ୍ଧୁ ବୋଲାଇ ମୁଁ ଚଉବାହା ।

ଭକ୍ତକୁ ଘେନି ପାଳନା କରଇ ଜଗତ
ଭକ୍ତ ମୋର ଆତ୍ମା ମୁହିଁ ଭକ୍ତଜନ ମିତ ।
ଭକ୍ତ ମୋର ହୃଦୟରେ ଅଟେ ମଣିମାଳା
ମାଗହୋ କୌଶିକ କେତେ କରୁଅଛ ହେଳା ।
ବଇକୁଣ୍ଠ ଆଦି ମୋର ଅଧିକାର ଯେତେ
ମାଗିଲେ ତାହା ଦେବଇଁ ଆଗ ମୁହିଁ ତୋତେ ।
ଏହିରୂପେ କହି ଆଜ୍ଞା ଦ୍ୟନ୍ତେ ନାରାୟଣ
କୌଶିକ ବୋଇଲେ ମାଗୁଅଛି ତେବେ ଶୁଣ ।
ଏ ଦେହେ ଚରଣ ବେନି ଜନମରୁ ଅଛି
ଚାଲି ଚାଲି ଭ୍ରମି ଭ୍ରମି ସଂସାରେ ମରୁଛି ।
ପ୍ରକୃତିଗଣେ ଚଳାନ୍ତି ମୋତେ ବଳିଆଇ
ଅନୁକ୍ଷଣରେ ଚାଲନ୍ତି ଆଗଭର ହୋଇ ।
ଚାଲି ଚାଲି ଶରୀରକୁ ଦିଅନ୍ତି ଏ ପୀଡ଼ା
ସଂସ୍କାର ବା ଅସଂସ୍କାର ନାହିଁ ତାଙ୍କ ଲୋଡ଼ା ।
ଏଣୁ ଏ ମୋହର ଜାଣ ଚରଣ ଦୁହିଁଙ୍କି
ଛେଦି ପକାଅ ମାଗୁଛି ଏହୁ ବର ଡାକି ।
ଏହି ବର ମାଗୁଅଛି ଦିଅ ଦେବ ହରି
ନୋହିଲେ ବୈକୁଣ୍ଠପୁର ଯାଅ ବିଜେ କରି ।
ଆଉ ଆନ ବରେ ମୋର କିଛି କାର୍ଯ୍ୟ ନାହିଁ
ନାମ ବ୍ରହ୍ମ ଏକମୂଳ ଶୁଣ ଭାବଗ୍ରାହୀ ।
ଏତେ କହି କଉଶିକ ନାମରେ ନିମଜ୍ଜି
ପାଦପଦ୍ମେ ମନ ଦେଲେ ଦୁଇ ଚକ୍ଷୁ ବୁଜି ।
ଭକ୍ତର ମୁଖରୁ ପ୍ରଭୁ ଏ ବଚନ ଶୁଣି
ସ୍ଥକିତ ହୋଇ ରହିଲେ କ୍ଷଣେ ଚକ୍ରପାଣି ।
ପାଞ୍ଚିଲେ ଭକ୍ତର ବୋଲ ନ କରିବା ଯେବେ
ସଂସାରେ ପ୍ରଭୁ ବୋଲିଣ କେହି ନ ମାନିବେ ।
ତାହା ବୋଲି ହେଉ ଆମ୍ଭ ବୋଲ ଯାଉନଷ୍ଟ
ଏତେ ପାଞ୍ଚି ମହାପ୍ରଭୁ ଚଳିଲେ ବୈକୁଣ୍ଠ ।
ଚକ୍ରକୁ ହକାରି ଆଜ୍ଞା ଦେଲେ ବୈକୁଣ୍ଠରୁ
ଛେଦି ଆସ ଯାଇ କୌଶିକର କଟିଠାରୁ ।
ଚଳିଗଲା ସୁଦର୍ଶନ ପ୍ରଭୁ ଆଜ୍ଞା ପାଇ
କୌଶିକ ରାଜାର ଗାତ୍ରେ ବାଜିଲାକ ଯାଇ ।
ତତକ୍ଷଣେ ବେନିଖଣ୍ଡ କରି ଚଳିଗଲା
କୃଷ୍ଣର ଦକ୍ଷିଣ କରେ ଯାଇଣ ମିଳିଲା ।
ଏଥୁଅନନ୍ତରେ ଶୁଣ କୌଶିକ ରାଜନ
କଟୀ ଛିଡ଼ିଗଲା ମୁଖେ କରଇ ଭଜନ ।
ହୃଦୟରୁ ଆତ୍ମା ତାର ନୋହିଲା ବାହାର
ଉଚ୍ଚସ୍ୱରେ ରାମନାମ ପଢ଼େ ନିରନ୍ତର ।
ଏଥୁଅନ୍ତେ ଯାହା ହେଲା ଆସି ରାଣୀଗଣ
ଦେଖିଲେ ରାଜାର ଦେହ ନାରଦ ହୋ ପୁଣ ।
କଟିଠାରୁ ଛିଡ଼ି ପଡ଼ିଅଛଇ ଭୂମିରେ
ହୃଦୟ ଖଣ୍ଡ ନାମକୁ ପଢ଼େ ଉଚ୍ଚସ୍ୱରେ ।
ବିରୂପ ଦେଖି କାନ୍ଦନ୍ତି ଉଚ୍ଚେ ରାଣୀଗଣ
ବୋଲନ୍ତି ହା ନାଥ ତୁମ୍ଭେ ଅଟ ଆମ୍ଭ ପ୍ରାଣ ।
କାହିଁକି ସୁନ୍ଦର ଦେହ ବେନି ଖଣ୍ଡ କଲ
ଆମ୍ଭମାନଙ୍କୁ ଅନାଥ କରି କିମ୍ପା ଗଲ ।
ନୃପତି ବୋଇଲେ ଶୁଣ ମୋର ପ୍ରିୟାଗଣ
ଏଥିପାଇଁ ତୁମ୍ଭେମାନେ ନ କର ରୋଦନ ।
ଅନାଦି ଅନନ୍ତ ସ୍ୱାମୀ ମୋତେ କୃପାକଲେ
କାମନା ଛେଦି ଅଭୟବର୍ ମୋତେ ଦେଲେ ।
ପ୍ରତ୍ୟକ୍ଷରେ ସୁଦର୍ଶନ ଚକ୍ର ଦେଲେ ପେଷି
ସେ ଚକ୍ର ଦେଖି ଲଭିଲି ମୁହିଁ ବ୍ରହ୍ମରାଶି ।
ଏତେ ବୋଲି ମହାରାଜା ରାଣୀଙ୍କ ଆଗରେ
ରାମ ନାମ ଶବ୍ଦ ପାଠ କଲେ ଉଚ୍ଚସ୍ୱରେ ।
ସେ ନାମ ଶବଦ ଶୁଣି ରାଣୀ ଗଲେ ତରି
ବୈକୁଣ୍ଠେ ବିଜୟ କଲେ ରାମ ନାମ ଧ୍ୟାନ କରି ।
ସ୍ୱାମୀଙ୍କର ମୁଖପଦ୍ମୁ ରାମ ନାମ ଶୁଣି
ମୋକ୍ଷ ହୋଇଗଲେ କଉଶିକ ରାଜାରାଣୀ ।
ସକଳେ ସ୍ୱାମୀର ହୃଦପଦ୍ମେ ନିମଜ୍ଜିଲେ
ଏ ଭାଗ୍ୟ ପାଇବ କେଉଁ ସ୍ତିରୀ ତପକଲେ ।
କଉଶିକ ରାଜାଙ୍କର ନାମ ସୁମରିଣ
ଏକ ପ୍ରାଣ ହୋଇ ମିଶିଗଲେ ରାଣୀଗଣ ।
ଛେଦିଲେ ଛିନ୍ନ ନୋହିଲା ସେ ରାଜାର ହୃଦ
ବିଷ୍ଣୁର ମହିମା ଏଡ଼େ ଶୁଣ ହେ ନାରଦ ।
ଲେଉଟି ଏତେ କାଳରେ ନାରାୟଣ ଆସି
କଉଶିକ ମୁଖ ଚାହିଁ କହନ୍ତି ଯେ ହସି ।
କିହୋ ଭକ୍ତ କହ ଆଉ କି କି ବରମାଗୁ
ମୋହର ନାମ ଧରିଣ ସର୍ବ ପରିତ୍ୟାଗୁ ।
ଆଉ କି ବାଞ୍ଛା ଅଛଇ କହ ତାହା ମୋତେ
ନିର୍ବାଣ ଅକ୍ଷୟ ପଦ ଦେବି ଆଉ ତୋତେ ।
ମୁହିଁଟି କରୁଣାସିନ୍ଧୁ ଅଟଇ ହୋ ଜାଣ
ତୋତେ ବର ଦେବାକୁ ମୁଁ ଆସିଅଛି ପୁଣ ।
ଆସିଲୁ ବୈକୁଣ୍ଠପୁରୁ ଆମ୍ଭେ ଦେବରାଜ
ଅଭୟବର ଯେ ତୋତେ ଦେବୁ ଜାଣ ଆଜ ।
କୌଶିକ ରାଜା ବୋଇଲେ କୃପାସିନ୍ଧୁ ଯେବେ
ଭକ୍ତକୁ ଉଦ୍ଧାର କରି ଯିବା ସିନା ତେବେ ।
ମୁହିଁ ସ୍ମରିବାରୁ ମୋର ପାଶେ ବିଜେ କର
ତୁମ୍ଭଙ୍କୁ ବିଚିତ୍ର ନୁହେ ଏହା ଚକ୍ରଧର ।
ଯେସନେ କୀଟ ଭ୍ରମର ଗୃହ କରିଥାଇ
ପୁତ୍ର ପୌତ୍ର ଦାସ ଦାସୀ ଅଚିନ୍ତେ ପାଳଇ ।

ଆଉ କାହାରି ହିତରେ ନଥାଇ ସେ ଜାଣ
ତାହାର ବଂଶକୁ ସେହୁ କରଇ ପାଳନ ।
ସେହି ରୂପରେ ତୁମ୍ଭର ହୋଇଲା ସେ ବୁଦ୍ଧି
କେମନ୍ତେ ବୋଲାଅ ତୁମ୍ଭେ କରୁଣାବାରିଧି ।
ତୁମ୍ଭରି ନାମ ଶୁଣି ଯେ ମଣେ ବିଷପ୍ରାୟେ
ନୟନେ ଯେ ଦେଖଇ ନ କରଇ ଧାୟେ ।
ତୁଣ୍ଡରେ ଯେ ନ ବୋଲଇ କିଛି ତୁମ୍ଭ ନାମ
ସ୍ୱପ୍ନରେ ହେଲେ ତୁମ୍ଭଙ୍କୁ ନକରେ ପ୍ରଣାମ ।
ତାହାକୁ ଉଦ୍ଧାରିଲେ ବୋଲାଇ କୃପାସିନ୍ଧୁ
ସାର୍ଥ ହୋଇବ ତୁମ୍ଭର ନାମ ଦୀନବନ୍ଧୁ ।
ମୋତେ ଉଦ୍ଧାରି କରୁଣାସିନ୍ଧୁ ହୁଅ ହରି
ତୁମ୍ଭ ଭୃତ୍ୟର ଭୃତ୍ୟ ମୁଁ ଅଟେ ସେବାକାରୀ ।
ଶ୍ରୀହରି ବୋଇଲେ ଶୁଣ ଆହେ ମୋର ଭକ୍ତ
ସଂସାର ଯାକ ସବୁ ମୁଁ ପୂରିଛି ସବତ୍ର ।
ଅଷ୍ଟନିଧି ଅଷ୍ଟସିଦ୍ଧି ମୋ ଭକ୍ତ ଚରଣେ
ସେ ମିଳିଲେ ତୁଚ୍ଛକରି ଘେନେ ତାକୁ ମଣେ ।
ତୁହି ମୋହର ଭକତ ମୁହିଁ ତୋର ଆତ୍ମା
ଅଭୟବର ଗୋ ମାଗ ଦେବଇଁ ମହାତ୍ମା ।
କୌଶିକ ବୋଲେ ଶୁଣିମା ହେଉ ମହାପ୍ରଭୁ
ଅକ୍ଷୟ ଅଭୟ ବର ଯେବେ ମୋତେ ଦେବୁ ।
ମୁଁ ଯାହା ମାଗିବି ତାହା ନ କରିବୁ ନାହିଁ
ମାଗିଲା ମାତ୍ରକେ ଏକା ନିଶ୍ଚେ ଦେବୁ ତୁହି ।
ଏ ଉଦର ଜ୍ୱାଳା ପ୍ରଭୁ ନ ପାରଇ ସହି
କ୍ଷୁଧା ଲାଗି ମୋର ପେଟ ବିକଳ ହୁଅଇ ।
ଏହି ହୃଦଖଣ୍ଡ ମୋର ଦିଅ ପ୍ରଭୁ କାଟି
ମୁଖରେ କେବଳ ଭଜୁଥିବି ନାମ ଗୋଟି ।
ଶୁଣି ନାରାୟଣ ଅତି ଆଶ୍ଚର୍ଯ୍ୟ ହୋଇଲେ
ଧନ୍ୟ ଧନ୍ୟ କଉଶିକ ବୋଲି ପ୍ରଶଂସିଲେ ।
ବୈକୁଣ୍ଠପୁରକୁ ପ୍ରଭୁ ଗଲେ ସେହିକ୍ଷଣି
ଚକ୍ରକୁ ରାଉଣ ଆଜ୍ଞାଦେଲେ ଚକ୍ରପାଣି ।
ବୋଇଲେ କୌଶିକ ରାଜା ମାଗେ ଯେଉଁ ବର
ଯାଅ ସୁଦର୍ଶନ ଛେଦ ତାହାର ଶରୀର ।
ଶୁଣିଣ ଶ୍ରୀହରି ଚକ୍ରଗଲା ସେହିକ୍ଷଣି
କୌଶିକ ରାଜା ଉଦର ଛେଦିଲା ତକ୍ଷଣି ।
ଶିରଗୋଟି ତଳେ ପଡ଼ି ବୋଲେ ରାମ ରାମ
ଅନାଦି ଅନନ୍ତ ଆଦିକନ୍ଦ ପରଂବ୍ରହ୍ମ ।
କେଶବ ଗୋବିନ୍ଦ କୃଷ୍ଣ ହରି ଜଗନ୍ନାଥ
ନାମରେ ନିମଜ୍ଜି ରାବେ କେଡ଼େ ବିଷ୍ଣୁପଥ ।
ଯେତେ ହେଁ ଛେଦିଲେ ସେହି ନୋହିଲା ନିର୍ଜୀବ
ଅଧିକାରେ ରାମ ନାମ ଦିଏ ଉଚ୍ଚେ ରାବ ।
ଏହି ମତେ କେତେକାଳ ପୁଣି ବହିଯାନ୍ତେ
ଦୁର୍ବାସା ମହର୍ଷି ଦିନେ ବୈକୁଣ୍ଠ ଆସନ୍ତେ ।
ଦେଖିଲେ ତ ତଳେ ପଡ଼ିଅଛି ଶିରଗୋଟି
ମୁଖେ ରାମ ନାମ ପଢ଼େ ଲକ୍ଷ ଲକ୍ଷ କୋଟି ।
ଚାହିଁଲେ ଋଷି ଆଶ୍ଚର୍ଯ୍ୟ ହୋଇ ଦଣ୍ଡେ ତାକୁ
ବୋଇଲେ କହିବି ମୁହିଁ ଯାଇ ଗୋବିନ୍ଦକୁ ।
ମୋତେ ହେଲେ ହେଁ ଅଗମ୍ୟ ଲାଗୁଛି ଏକଥା
ଧରୁଅଛି ରାମନାମ ଛିଡ଼ି ପଡ଼ି ମଥା ।
ଏମନ୍ତ ପାଞ୍ଚି ଦୁର୍ବାସା ଗଲେ ବୈକୁଣ୍ଠକୁ
କହିଲେ ତହିଁ କୌଶିକ କଥା ଗୋବିନ୍ଦଙ୍କୁ ।
ବୋଇଲେ ମୁଁ କାଲି ଯାଇଥିଲି ମଧୁପୁର
ଅପୂର୍ବ କଥା ଗୋଟିଏ ଦେଖିଲି ସେଠାର ।
କଣ୍ଠଠାରୁ ଛିଡ଼ି ପଡ଼ିଅଛି ଏକଖଣ୍ଡେ
ଅନୁକ୍ଷଣେ ରାମନାମ ବୋଲୁଅଛି ତୁଣ୍ଡେ ।
ଶରୀର କର ଚରଣ କିଛି ତାର ନାହିଁ
ମୁଖରେ ସେ ରାମନାମ କୁହାଟି ଡାକଇ ।
କେବଳ ମସ୍ତକ ଗୋଟି ଭୂମିରେ ପଡ଼ିଛି
ଉଚ୍ଚସ୍ୱରେ ରାମନାମ ଶବଦ ବୋଲୁଛି ।
ଦୁର୍ବାସା ମୁନିଙ୍କ ମୁଖୁ ଏ ବଚନ ଶୁଣି
ହସ ହସ ହୋଇ ଉଠି ବସି ଚକ୍ରପାଣି ।
ଋଷିଙ୍କୁ ବୋଇଲେ ସେହୁ ଅଟେ ମୋର ଭକ୍ତ
ଚାଲ ଯିବା ତାକୁ ଆଜି କରିଦେବା ମୁକ୍ତ ।
ଏମନ୍ତ କହି ଋଷିଙ୍କୁ ଘେନି ତହୁଁ ଗଲେ
ଲୀଳା ଗତିରେ ବୈକୁଣ୍ଠପୁରୁ ବିଜେ କଲେ ।
ଦେଖିଲେ ପଡ଼ିଛି ଶିର ଗୋଟି ଛିଡ଼ି କ୍ଷିତି
ବିଶୁଦ୍ଧ ସୁବର୍ଣ୍ଣ ପ୍ରାୟ ବିରାଜଇ ଜ୍ୟୋତି ।
ମନେ ବିଚାରନ୍ତି ଯେବେ ଯାଚି ଦେବି ବର
ବୋଲିବ ତ ପୁଣି ମୋତେ ବେନିଫାଳ କର ।
ଏତେ କ୍ଳେଶରେ ଭକ୍ତି କେ କରି ନାହିଁ ମୋତେ
ଏହାକୁ ବହିବି ଏବେ ଆଣି ହୃଦଗତେ ।
କଉସ୍ତୁଭ ମଣି ହୋଇ ହୃଦେ ମୋର ଲମ୍ବୁ
ଏତେ ଭାଳି ଶ୍ରୀହସ୍ତରେ ଧରି ମହାପ୍ରଭୁ ।
ଚତୁର୍ଭୁଜେ ଟେକି ଆଣି ହୃଦେ ଲମ୍ବାଇଲେ
ଦେଖି ଋଷିମାନେ ମୁଖେ ଜୟ ଜୟ କଲେ ।
ବୋଇଲେ ଅଟଇ କେଡ଼େ ଭକ୍ତ ଏହୁ ଜାଣ
ରହିଲା ଶ୍ରୀହରି ଲକ୍ଷ୍ମୀ କ୍ରୀଡ଼ା ମଧ୍ୟରେଣ ।
ଲମ୍ବିଲା ବିଷ୍ଣୁଙ୍କ ହୃଦେ ମଣିମାଳା ହୋଇ
ଗାଇଲା ରାମତାରକ ମନ୍ତ୍ର ଏକା ରହି ।
କଣ୍ଠରେ ଲମ୍ବିଲେ ହେଲେ ନାମନାହିଁ ଛାଡ଼ି
ପରମହଂସରେ ଚିତ୍ତ ଦେଉଅଛି ଜଡ଼ି ।

ଏମନ୍ତ ବୋଲି ଋଷିଏ ଧନ୍ୟ ଧନ୍ୟ କଲେ
ବିଷ୍ଣୁଙ୍କୁ ମେଲାଣି ମାଗି ଅନ୍ତର୍ହିତ ହେଲେ ।
ଶ୍ରୀ ବୈକୁଣ୍ଠେ ବିଜେ କଲେ ପ୍ରଭୁ ଶିରୀବତ୍ସେ
ବିପ୍ର ପୀତାମ୍ବର ଚିତ୍ତ ଗଲା ପଛେ ପଛେ ।
ବୈକୁଣ୍ଠ ପୁରଯାକ ତ ଦେଖି ବାହୁଡ଼ିଲା
ସାଧୁଙ୍କ କୃପାରୁ ଏଡ଼େ ବିଶ୍ୱାସ ମୋ ହେଲା ।
ଏ ଜଞ୍ଜାଳୁ ତରିବାକୁ ନାହିଁ ମୋ କର୍ତ୍ତବ୍ୟ
ମୋଠାରେ କରୁଣାକର ସାଧୁ ବଇଷ୍ଣବ ।
କାଟନ୍ତି ତ୍ରିକାଳ ବସି ଗୋବିନ୍ଦ କୀର୍ତ୍ତନେ
ଏହି ଅନୁଗ୍ରହ କର ସାଧୁ ସନ୍ଥଜନେ ।
ମୁହିଁତ ତହିଁକି ଚାହିଁ ଗୋଡ଼ାଇବି ଯେବେ
ଶୂନ୍ୟକୁ ଫିଙ୍ଗିଲେ ରହିବ କି ଟେକା କେବେ ।
ଏ କାରଣୁ ମୁହିଁ ସାଧୁଜନ ଚରଣକୁ
ଆଶ୍ରୟ କରୁଛି ଘୋର ଭବୁ ତରିବାକୁ ।
ଆହେ ସାଧୁଜନେ ମୋର ନ ଘେନିବ ଦୋଷ
ବିପ୍ର ହୀନ ପୀତାମ୍ବର ପୀତାମ୍ବର ଦାସ ।



## ଚାରି ସମ୍ପ୍ରଦାର ଜନ୍ମ ବୃତ୍ତାନ୍ତ

ଜୟ ଜୟ ଜଗନ୍ନାଥ ଜଗତର ବନ୍ଧୁ
ମୋହଠାରେ କୃପାକର ଆହେ କୃପାସିନ୍ଧୁ ।
ଲେଖିବି ଜନଙ୍କ ହିତେ ନୃସିଂହ ପୁରାଣ
ତେଣୁ ନାରାୟଣ ତବ ଚରଣେ ଶରଣ ।
ଏଥୁ ଅନନ୍ତରେ ପୁଣି ପରୀକ୍ଷିତ ରାଜା
ଶୁକଦେବଙ୍କ ଚରଣେ କଲେ ଦିବ୍ୟପୂଜା ।
କୃତ୍ୟ କୃତ୍ୟ ହୋଇ ପୁଛାକଲେ ପୂର୍ବଭକ୍ତି
ବୋଇଲେ ଭୋ ମୁନି କହ ବୈକୁଣ୍ଠ ସୁଖ୍ୟାତି ।
କେମନ୍ତେ ସେହି କ୍ଷେତ୍ରରୁ ଭକ୍ତି ହୁଏ ଉଦେ
ଧାମକ୍ଷେତ୍ର ଧର୍ମଶାଳା ମଧ୍ୟୁ ପ୍ରାଣୀବୃନ୍ଦେ ।
କେହି ବୋଲେ ଏହି ଧର୍ମଶାଳା କି ତୁମ୍ଭର
କେହି କେହି ବା ପୁଛାନ୍ତି ଭ୍ରମେ ବାରମ୍ବାର ।
କାହାର ବା ଯେଉଁ ରସ ଭକ୍ତିର କି କଥା
ଅବିଦ୍ୟାରେ ଭ୍ରମି ପୁଚ୍ଛୁଥାନ୍ତି ହୋଇ ବୃଥା ।
ବୁଝିଲେ ଏହି ସଂସାର ଏକ ଭଗବାନ
କାହିଁକି କରନ୍ତି ଭିନ୍ନ ଭିନ୍ନ ଉପାସନ ।
ସବୁରି ହୃଦରେ ପରକାଶ ନରହରି
ନ ଚିହ୍ନି ପ୍ରାଣୀଏ ହସନ୍ତି ଯେ ବାଦ କରି ।
ଅନ୍ୟାୟ କଥାରେ ବହୁ ଜନ ପ୍ରବର୍ତ୍ତନ୍ତି
ଜ୍ଞାନୀଙ୍କି ନିନ୍ଦା କରିଣ ମୁଖେ ପ୍ରଶଂସନ୍ତି ।
କହିବା ହେଉ ସୁପଥ ଏଣୁ ଶୁକଦେବ
ତବମୁଖୁ ଶୁଣେ ବଇକୁଣ୍ଠ ଧର୍ମଭାବ ।

ଏରୂପେ ପରୀକ୍ଷ ପୁଚ୍ଛାକଲେ ଧର୍ମବାଣୀ
ପୁଲକିତ ହୋଇଲେ ଯେ ଶୁକମୁନି ଶୁଣି ।
ବୋଇଲେ ଧନ୍ୟ ହେ ରାଜା ଜୀବନ ତୋ ସଚ୍ଚା
କେଡ଼େ ଅଗମ୍ୟ କଥାକୁ ଆଣିକଲୁ ପୁଚ୍ଛା ।
ଯାହାଙ୍କୁ ଦେବତାମାନେ କରୁଛନ୍ତି ସ୍ତୁତି
ନ ପାଇଣ ଆଦିଅନ୍ତ ମହିମା ପୁଚ୍ଛନ୍ତି ।
ଯାହାକୁ ଧ୍ୟାୟି ଅଛନ୍ତି ପୁଣି ଭବବିହି
ତାହାଙ୍କ ମହିମା ଅନ୍ତ ନ ପାନ୍ତିଟି ସେହି ।
ଆବର ଲୋକରେ ଅଛି କିବା ପ୍ରୟୋଜନ
ହରି ମହିମା ନୃସିଂହ ପୁରାଣକୁ ଶୁଣ ।
ଚାରି ସମ୍ପ୍ରଦା ପ୍ରକାଶ ହୋଇଲେଟି ଯହୁଁ
ନିଷ୍ଟଳେ ଶୁଣ ତା ଆମ୍ଭେ ପ୍ରତ୍ୟକ୍ଷରେ କହୁଁ ।
କଉସ୍ତୁଭ ମଣି ହସ୍ତେ ଘେନି ଯେତେବେଳେ
କଣ୍ଠେ ବହି ବୈକୁଣ୍ଠକୁ ଗଲେ ଆଦିମୂଳେ ।
ନାରଦ ମୁନି ବ୍ରହ୍ମାଙ୍କ ମୁଖୁ ତାହା ଶୁଣି
ପୁଣି ପୁଚ୍ଛନ୍ତି ନୃସିଂହ ପୁରାଣର ବାଣୀ ।
ବୋଲନ୍ତି ହୋ ସାବଧାନେ ଶୁଣ ବେଦବର
କହ ଚାରି ସମ୍ପ୍ରଦାର ଶୁଣେ ଧର୍ମସାର ।
ବିହି ବୋଇଲେ କହିବା ତାହା ତେବେ ଆଜି
ଏହିଠାରୁ ପ୍ରାଣୀମାନେ ମୋକ୍ଷହେବେ ବୁଝି ।
ଗୁରୁଙ୍କର ମୁଖୁ ଶୁଣି ଭବୁ ତରିଯିବେ
କହିବା ଚାରି ସମ୍ପ୍ରଦା କଥା ଶୁଣ ଏବେ ।
ସୃଷ୍ଟି ସର୍ଜିଲେ ଯେବଣ କାଳେ ସୁରଜ୍ୟେଷ୍ଠ
କଲେକ ପିଣ୍ଡ ବ୍ରହ୍ମାଣ୍ଡ ଚଉଦ ବୈକୁଣ୍ଠ ।
ବୈକୁଣ୍ଠ ଯାକରେ ସାର ଅଟେ ସେହୁ ପୁଣି
ତା ତତ୍ତ୍ୱ ନ ପାଇ ବ୍ରହ୍ମ କରନ୍ତି ଭ୍ରମଣି ।
ଏଣେ ପୁଣି ପୂରିଛନ୍ତି ହରି ସର୍ବଘଟେ
ଘଟରେ ନ ଚିହ୍ନି ବ୍ରହ୍ମା ଖୋଜନ୍ତି ବୈକୁଣ୍ଠେ ।
ବୁଝିଲେ ବୈକୁଣ୍ଠ କ୍ଷେତ୍ର ସର୍ବ ଦେହ ସିନା
ଚିହ୍ନି ପାରନ୍ତି ଏ କ୍ଷେତ୍ରେ ଏକା ଜ୍ଞାନୀଜନା ।
ବେଦରେ ଶରୀର ଅଟେ ଶରୀରଟି ବେଦ
ବେତର ତତ୍ତ୍ୱକୁ ଏକା ଜାଣନ୍ତି ଗୋବିନ୍ଦ ।
ଗୋବିନ୍ଦକୁ ଚିହ୍ନିଲୋକ ବୈକୁଣ୍ଠକୁ ଚିହ୍ନି
ସଂପ୍ରଦାର ଜ୍ଞାନ ଏହି ହେ ନାରଦ ମୁନି ।
ବୈକୁଣ୍ଠ ଯାକରେ ସାର ଅଟେ ଏହୁ ଜାଣ
ସଉନିଧି ବୈକୁଣ୍ଠରେ ଛନ୍ତି ନାରାୟଣ ।
ସେହି ବ୍ରହ୍ମ ବୈକୁଣ୍ଠକୁ ଖୋଜେ ପିତାମହ
ନ ଜାଣି ଭଜନ୍ତି ବେଦ ମନ୍ତ୍ରେ ହୋଇ ମୋହ ।
ନାମରେ ତତ୍ତ୍ୱ ନ ଜାଣି ଭଜିଲେ କି ପାଇ
ଜପକୁ ମୂଳ କରିଣ ଦିନ ହରୁଥାଇ ।

ନାମର ଚନ୍ଦ୍ର ଭୂଷଣ କାକ ପାଇବାରୁ
ଅମର କରି ରଖିଛି ତନୁ ତପସ୍ୟାରୁ ।
ଜନମରୁ ବୈକୁଣ୍ଠକୁ ଧାତା ନାହିଁ ଦେଖି
ଦେଖିବେ ବୋଲି ବସିଲେ ଏବେ ବୁଜି ଆଖି ।
ମନକୁ ନିଶ୍ଚୟ କରି ବସି ପଦ୍ମଯୋନି
ଜ୍ୟୋତିରେ ଲୟ ରଖିଲେ ବୁଜି ନେତ୍ର ବେନି ।
ଚକ୍ଷୁ ବୁଜନ୍ତେ ସେ ଜ୍ୟୋତି ଦିଶିଲା ନିର୍ମଳ
ବ୍ୟାପିଛନ୍ତି ବୈକୁଣ୍ଠଯାକ ଆଦିମୂଳ ।
ସେ ବୈକୁଣ୍ଠ କଥା ଶୁଣ କହିବା ନାରଦ
ଅକଳିତ ଅଟେ ତହିଁ ବିଷ୍ଣୁର ସମ୍ପଦ ।
ଚଳନ୍ତି ଯେ ହଂସ ଦୁଇ ସିଂହଦ୍ୱାର ବାଟେ
ନିମିଷ ମାତ୍ରକେ ବୁଲି ପଶନ୍ତି ବୈକୁଣ୍ଠେ ।
ପ୍ରକାଶ ପାଇଣ ଏକ ପାଦେ ଚାଲୁଥାନ୍ତି
ବୈକୁଣ୍ଠ ବୁଲି ପରମ ପାଦେ ବିଳସନ୍ତି ।
ପ୍ରତ୍ୟକ୍ଷେ ପରମବ୍ରହ୍ମ ପ୍ରଭୁ ପୂର୍ଣ୍ଣାନନ୍ଦ
ସେ ବୈକୁଣ୍ଠେ ବିଜେ କରି ଅଛନ୍ତି ଗୋବିନ୍ଦ ।
ସେ ବୈକୁଣ୍ଠର ବର୍ଣ୍ଣନା କରିବି ଯେ ମୁହିଁ
କୋଟି କୋଟି ରବି ଚନ୍ଦ୍ରଛନ୍ତି ଉଦେ ହୋଇ ।
ଚାରିଦିଗରେ ପାଚେରୀ ଦର୍ପଣର ବାଡ଼
ହୀରା ଆଦି ଅଷ୍ଟରତ୍ନ ହୋଇ କୁଡ଼ କୁଡ଼ ।
ମର୍କତ ସ୍ତମ୍ଭେ ମାଣିକ୍ୟ ପୁଞ୍ଜ ବିରାଜଇ
ନୀଳାରେଚ କୁଣ୍ଡିରେ କି ମୁକ୍ତା ଅଛି ଛାଇ ।
ସୁବର୍ଣ୍ଣ କଳସ ଲାଗିଅଛି ମୋତି ଝରା
ସ୍ଫଟିକ ବାଙ୍କରେ ଦିଶେ ବଇଡୁର୍ଯ୍ୟ ତୋରା ।
କାଚର ପାବଚ୍ଛେ ବସେ ରସାଣ ଛାଉଣି
ଅଷ୍ଟଦିଗେ ବିରାଜଇ ନବଗ୍ରହ ଶ୍ରେଣୀ ।
ଅରୁଣ ପାଟର ଝୁମ୍ପା ଖଞ୍ଜା ଗୋଟି ଗୋଟି
ନକ୍ଷତ୍ରଗଣଯାକ କି ପୁଷ୍ପରୂପେ ଫୁଟି ।
ରକ୍ତବର୍ଣ୍ଣ ହୋଇ କିବା ମେଘଗଣ ଲମ୍ବେ
ପ୍ରତିମା ବସିଛି ଲକ୍ଷ ଲକ୍ଷ ସ୍ତମ୍ଭେ ସ୍ତମ୍ଭେ ।
ଖମ୍ବ ଗୋଟିକେ ନିର୍ମାଣ ଚଉଷଠି ପାଟ
ପାଟକେ ଆଲେଖ ନବରତ୍ନ ଝଟ ଝଟ ।
ଅଷ୍ଟଦିଗେ ଅଷ୍ଟଖମ୍ବ କିଏ ଅଷ୍ଟଗିରି
ମାଡ଼ି ବସିଛି କି ଅଷ୍ଟଦିଗେ ବସୁନ୍ଧରୀ ।
ସଂସାରରେ ନାନାବର୍ଣ୍ଣେ ଅଟନ୍ତି ଯେ ଜୀବ
ସ୍ତମ୍ଭକେ ବସିଅଛନ୍ତି କୋଟି ଖର୍ବ ଖର୍ବ ।
ଦଶଦିଗରେ ଭୂଷଣ ଦଶଦିଗପାଳ
କାହିଁ ଅବତାର ଲେଖା ହୋଇ ମାଳ ମାଳ ।
କାହିଁରେ ମତ୍ସ୍ୟ ମୂରତି କାହିଁରେ କଚ୍ଛପ
କାହିଁରେ ବରାହ କାହିଁ ନରସିଂହ ରୂପ ।
କାହିଁ ବାମନ ମୂରତି ଅଛି ଲେଖା ହୋଇ
କାହିଁରେ ପରଶୁରାମ ତିନିପୁର ମୋହି ।
କାହିଁରେ ଶ୍ରୀରଘୁନାଥ ଛନ୍ତି ଉଭା ହୋଇ
କାହିଁରେ ଶ୍ରୀକୃଷ୍ଣ ରୂପ ମତ୍ସ୍ୟରୂପ କାହିଁ ।
କାହିଁରେ ବଉଦ୍ଧରୂପ କାହିଁରେ କଲକୀ
କାହିଁ ହରିହର ରୂପ ଅଛନ୍ତି ଯେ ଲେଖି ।
କେଉଁଠାରେ ବିରାଜନ୍ତି ଲକ୍ଷ୍ମୀ ନାରାୟଣ
କାହିଁ ଇନ୍ଦ୍ରଚନ୍ଦ୍ର ସୂର୍ଯ୍ୟ ଅରୁଣ ବରୁଣ ।
କାହିଁରେ ଯମ ମରୁତ କାହିଁରେ ନୈର୍ଋତ
କାହିଁ ବୈଶ୍ୱାନରେ କାହିଁ କୁବେର ଦୈବତ ।
କାହିଁ ବାସୁକୀ ଅନନ୍ତ ମୂର୍ତ୍ତି କାହିଁ ଲେଖା
ଯେଉଁ ବୈକୁଣ୍ଠ, ବଇଠା ବିଷ୍ଣୁଙ୍କର ଚକା ।
ସେ ବିଷ୍ଣୁ ନାସା ନିଃଶ୍ୱାସ ବାୟୁ ବହିଯାନ୍ତେ
ବ୍ରହ୍ମାର ଆୟୁଷ ଭୋଗ ହୋଇଥାଏ କେତେ ।
ନିଃଶ୍ୱାସ ଗୋଟିକ ପୁଣି ଜାତ ପରମେଷ୍ଠୀ
ପ୍ରଳୟ ସରଇ ଶୁଣି ଜାତ ପରମେଷ୍ଠୀ ।
ଏମନ୍ତ ସେ ବୈକୁଣ୍ଠରେ ଗୋବିନ୍ଦ ମହିମା
ବସିଅଛନ୍ତି ସେ ପ୍ରଭୁ କୋଳେ ଧରି ରମା ।
ଶଙ୍ଖ ଚକ୍ର ଗଦା ପଦ୍ମ ବିରାଜଇ କରେ
ଶ୍ରୀବତ୍ସ ଲାଞ୍ଛନା ଫୁଟି ଦିଶେ ହୃଦୟରେ ।
କଟିତଟେ ପୀତବାସ ଜଗଜ୍ଜନ ମୋହେ
କଉସ୍ତୁଭ ମଣିଗୋଟି ବକ୍ଷସ୍ଥଳ ଶୋହେ ।
କଣ୍ଠତଟେ ରତ୍ନମାଳା ଦିଶେ ସରି ସରି
କଣ୍ଠଦେଶେ ବିରାଜଇ ସ୍ୱର୍ଣ୍ଣପାଟ ଝରି ।
ଶରୀରଯାକରେ ନାନା ପୁଷ୍ପ ଆଭରଣ
କରରେ ସଜୀବ ମଣି ବାଜେ ରୁଣ ଝୁଣ ।
ଅରୁଣ ଜ୍ୟୋତିକି ପାଦ ପଦ୍ମ ଦୁଇ ଗଞ୍ଜେ
ସୁଶୀତଳ ମଧୁଧରା ବହେ ପଦକଞ୍ଜେ ।
ପ୍ରକାଶି ଛତ୍ର ପରାୟ ପାଳେ ସର୍ବଦେହୀ
ସେ ପାଦ ଚିହ୍ନିଲେ ଭବଅବ୍ଧି ତରିଯାଇ ।
ବହି ପୁଣି ପୁରିଆସେ ଉର୍ଦ୍ଧ୍ୱେପାଦ ଟେକି
ସେହି ମକରନ୍ଦ ପାନେ ସାଧୁଥାନ୍ତି ଟାକି ।
ପାଦରୁ ସେ ମକରନ୍ଦ ଗଳିଲା ବେଳକୁ
ଅତି ସୁଶୀତଳ ହୋଇ ବହଇ ତଳକୁ ।
ତଳକୁ ବହି ସେ ପୁଣ ଟେକେ ପାଦମୂଳେ
ଅମର ସେ ମକରନ୍ଦ ତେଣୁ ସବୁବେଳେ ।
ଏମନ୍ତ ସେ ମକରନ୍ଦ ଗଳେ ପଦକଞ୍ଜେ
ଜାଜ୍ୱଲ୍ୟମାନ ହୋଇଣ କଳେ ପ୍ରଭୁ ବିଜେ ।
ଏହାଙ୍କୁ ସେ ଦେଖାଦେଇ ବୈକୁଣ୍ଠକୁ ଗଲେ
ଏ କାରଣୁ ସେ ପଥକୁ ଦେବତା ଜାଣିଲେ ।

ସ୍ୱର୍ଗପୁରକୁ ଦେବତା ଅଟେ ଜାଣ ଯେତେ
ଦ୍ୱାଦଶ କାଠି ପ୍ରମାଣ କହନ୍ତି ପଣ୍ଡିତେ ।
ବିଷ୍ଣୁଙ୍କ ସଙ୍ଗେ ଗଲାରୁ ଜାଣିଲେ ସେ ପଥ
ନୋହିଲେ ସେ ମହାଶୂନ୍ୟ ଅଟେ ଅକଳିତ ।
ଅକଳିତ ହେଲେ ପୁଣି କଥା ଅଛି ତହିଁ
ସେ ପଥଯାକ ମଳୟ ବାତ ବହୁଥାଇ ।
ସେହି ପବନ ଲାଗିଲେ ପଲ୍ଲବଇ ଦେହ
ଦେହକୁ ସଙ୍ଗରେ ଘେନିଯାନ୍ତି ପିତାମହ ।
ସେ ପଥରେ ନ ଲାଗଇ କ୍ଷୁଧା ତୃଷା ଜାଣ
ତେଣୁ ଆସୁଥାନ୍ତି ଯେବେ ଆରୋଗ୍ୟ ହୋଇଣ ।
ସାଧୁଙ୍କୁ ହୁଅଇ ଏକା ସେ ପନ୍ଥାଟି ଜଣା
ନୋହିଲେ ଆନଲୋକେ ନ ଚିହ୍ନିହ୍ୱନ୍ତି ବଣା ।
ଏବେ ଶୁଣ ହେ ନାରଦକଥା ତୋତେ କହୁ
ବ୍ରହ୍ମାଙ୍କୁ ଘେନି ବୈକୁଣ୍ଠେ ଗଲେ ମହାବାହୁ ।
ତାହାଙ୍କ ସଙ୍ଗରେ ଗଲେ ସୁର ଇନ୍ଦ୍ର ମୁନି
ମରୀଚୀ ଭୃଗୁ ବଶିଷ୍ଠ ଦକ୍ଷ ତପୋଧନୀ ।
ଅଙ୍ଗିରା କପିଳା ପଉଲସ୍ତ୍ୟ ମହାଯତି
ସନକ ସନନ୍ଦ ବଢୁ ଆସୁରି ଅଗସ୍ତି ।
ନାରଦ ଦୁର୍ବାସା ବ୍ୟାସ କଣ୍ୱ ବିଭାଣ୍ଡକ
ଜନକ ଜୈମିନୀ ଶୁକ ମୁନି ଉଦ୍ଦାଳକ ।
ଲୋମଶ ଚ୍ୟବନ ଗର୍ଗ ଋଷି ପରାଶର
ସ୍ଥୂଳ କୃପାଜଳ ମେରୁ ଶୃଳ ଯେ ଆବର ।
ବିଦଭର୍ଣ୍ଣ ଆତ୍ରେୟ ଦତ୍ତାତ୍ରେୟ ବିଶ୍ୱାମିତ୍ର
ପୁଣ୍ୟକ୍ଷେତ୍ର ଅଷ୍ଟବକ୍ର ଦଧିଚି ସୁମିତ୍ର ।
ବ୍ରହ୍ମଭେଦି ନାମଭେଦି ଜ୍ଞାନଭେଦି ଆଦି
ବୈଶମ୍ପାୟନ ଆବର ଋଷି ସନକାଦି ।
ତୁଙ୍ଗଋଷି କ୍ରତୁଋଷି ଭରଦ୍ୱାଜ ଋଷି
ଶ୍ରମିକ ଯେ ବେଦଗର୍ଭ ଅସିତ ମହର୍ଷି ।
ଋଷିବୃନ୍ଦ ହୋଇ ଯେତେ ଲେଖେଟି ପୁରାଣେ
ସମସ୍ତେ ଆସି ଅଛନ୍ତି ବ୍ରହ୍ମାଙ୍କ ଗହଣେ ।
ଏହାଙ୍କ ମୂଳେ ଦେବାଧିଦେବ ପୁଣି ଯେତେ
ତାର ବାର ଚନ୍ଦ୍ର ସୂର୍ଯ୍ୟ ବରୁଣ ସହିତେ ।
ମରୁତ ନୈଋତ ଯୋଗ କରଣ ଯେ ଗଲେ
ବ୍ରହ୍ମାଙ୍କ ସଙ୍ଗେ ବୈକୁଣ୍ଠେ ଯାଇ ବିଜେ କଲେ ।
ଉମାଙ୍କୁ କୋଳରେ ଘେନି ଈଶ୍ୱର ପୁରୁଷ
ତହିଁ ଗଲେ ସଙ୍ଗେ ନେଇ କାର୍ତ୍ତିକ ଗଣେଶ ।
ଶୁଣ ମହାରାଜା ଚାରି ସଂପ୍ରଦାର କୀର୍ତ୍ତି
ଏ ଗ୍ରନ୍ଥରେ ନାରଦଙ୍କୁ ବିଧାତା କହନ୍ତି ।
ବିଧାତା ବୋଇଲେ ଋଷି ନାରଦ ହେ ଶୁଣ
ବିଷ୍ଣୁ ଛାମୁରେ ମିଳିଲେ ଯାଇ ଦେବଗଣ ।

ସମସ୍ତଙ୍କୁ ଘେନି ବ୍ରହ୍ମା ଜଣାଇଲେ ବସି
ବୋଇଲେ ଭୋ ପ୍ରଭୁ ଶୁଣ କହୁଛି ମୁଁ ଆସି ।
ତୁମ୍ଭରି ଆଜ୍ଞାରେ ଆମ୍ଭେ ସୃଷ୍ଟି ସରଜିଲୁ
ସମସ୍ତଙ୍କୁ ସଙ୍ଗେ ଘେନି ଛାମୁକୁ ଆସିଲୁ ।
ବୈକୁଣ୍ଠରେ ଦରଶନ ପାଇଲୁ କୃଷ୍ଣଙ୍କୁ
ଶ୍ରୀପାଦପଦ୍ମ ସେବୁଛୁ କିଛି କହିବାକୁ ।
କୀଟୁଁ ବ୍ରହ୍ମ ପରିଯନ୍ତେ ଯେତେ ଅଛୁ ଜନ୍ମି
ସର୍ବେ ଆସିଛୁ ଅମେଧ ହୋଇ ଦେବସ୍ୱାମୀ ।
ଗୁରୁ ନ କରିଣ ଯେହୁ ମରନ୍ତି ବ୍ରହ୍ମାଣ୍ଡେ
ସେମାନେତ ଉପୁଜନ୍ତି ଯାଇ ନର୍କକୁଣ୍ଡେ ।
ଜୀବ ଥିବାଯାଏ ତାଙ୍କୁ ପଶୁ ମଧ୍ୟେ ଲେଖି
ତେଣୁ ଆମ୍ଭଙ୍କୁ ହେ ମୋକ୍ଷ କର ପଦ୍ମ ଆଖି ।
ଆମ୍ଭଙ୍କୁ ସଂପ୍ରଦା କଥା ନ ଥିଲେ ଗୋଚର
ବେଦରେ ବୁଝିଲ ସେହି ବୋଲେ ଗୁରୁକର ।
ତେଣୁକରି ଶ୍ରୀଛାମୁକୁ ଆସିଛୁ ସମସ୍ତେ
ଶ୍ରୀଗୁରୁଙ୍କ ଧର୍ମପନ୍ଥା ଶୁଣିବା ନିମନ୍ତେ ।
ଏହିରୂପେ ବୋଲି ବ୍ରହ୍ମା ଜଣାନ୍ତି ଛାମୁରେ
ପୁଣି ନାରାୟଣ ପ୍ରଭୁ ପାଞ୍ଚିଲେ ମନରେ ।
ବୋଇଷଲ କହିଲ ସତ୍ୟକଥା ଆସି ବିହି
ସଂପ୍ରଦା ନକଲେ ମୋତେ ନ ଚିହ୍ନିବେ କେହି ।
ଆମ୍ଭେ ପ୍ରଭୁ ବୋଲାଇଣ ରହିଲୁ ବୈକୁଣ୍ଠେ
ସଂସାରେ ମୋର ନାମକୁ ତେଜିବେକ ନଷ୍ଟେ ।
ଏମନ୍ତ ପାଞ୍ଚି ବ୍ରହ୍ମାଙ୍କୁ ବିଷ୍ଣୁ ଦେଲେ ଆଜ୍ଞା
ବୋଇଲେ ବୁଝ ମୋହର ସଂପ୍ରଦା ପ୍ରତିଜ୍ଞା ।
ସତ୍ୟ ଧର୍ମ ଦୟା ଜ୍ଞାନ ବୋଲି ଯେଉଁ ଚାରି
ଚାରି ଭୁଜଯାକେ ଆସି ଲାଗିଲେ ମୋହରି ।
ଲାଗି ସେ ହୋଇଲେ ଶଙ୍ଖ ଚକ୍ର ଗଦା ପଦ୍ମ
ସେହି ଚାରି କରସ୍ଥଳେ ସବୁଙ୍କରି ହୃଦ ।
ସତ୍ୟ ନାମରେ ପୁରୁଷ ହେଲେ ଶଙ୍ଖପାଣି
ଚକ୍ର ସ୍ୱରୂପରେ ଧର୍ମ ଲାଗିଲା ସେକ୍ଷଣି ।
ଦୟା ନାମଗୋଟି ସେହି ଗଦା ହେଲା ଜାଣ
ପଦ୍ମକର ହୋଇଲାତ ଫୁଟିଲେ ଆସିଣ ।
ଚାରିକରି ଆସି ଚାରିଭକ୍ତ ଲାଗିଲାରୁ
ତେଣୁ ଆମ୍ଭେ ଚତୁର୍ଭୁଜ ସ୍ୱରୂପ ଯେ ଧରୁ ।
ସେ ଭକ୍ତମାନଙ୍କୁ ଏବେ ଦେଖ ପ୍ରକାଶିବା
ଯେବଣ ଭୁଜକୁ ଯେହୁ କରିବ ଯେ ସେବା ।
ତେବେ ସଂପ୍ରଦା ବିଚାରି ଦେବା ଆମ୍ଭେ କହି
ଯେ ଯାହାର ଧର୍ମକ୍ଷେତ୍ର ଯିବ ଜଣା ହୋଇ ।
ଏ ରୂପେ ପାଞ୍ଚିଣ ବିଷ୍ଣୁ ପ୍ରକାଶିଲେ ଭୁଜ
ଦେଖାଇଲେ ଶଙ୍ଖ ଚକ୍ର ଗଦା ପଦ୍ମ ତେଜ ।

ତାହା ଦେଖି ବ୍ରହ୍ମା ରୁଦ୍ର କଲେ ଜୟ ଜୟେ
ଚାରିଆଡ଼କୁ ଓଳଗି ପଡ଼େ ପଦ୍ମପାୟେ ।
ଦେଖନ୍ତେ ଅପୂର୍ବ ଭୁଜମାନ ପ୍ରଭୁ କାଢ଼ି
ଉଠିଲେ କମଳା ଦେବୀ ପାଦ ସେବା ଛାଡ଼ି ।
ଶ୍ରୀକରପଦ୍ମକୁ ଯାଇ ଲକ୍ଷ୍ମୀସେବା କଲେ
ବ୍ରହ୍ମା ତାହା ଦେଖି ଅତି ଚମତ୍କାର ହେଲେ ।
ବୋଇଲେ ସେବା କରିବା ଆମ୍ଭେ ଚକ୍ର ହସ୍ତ
ଏହି ଚକ୍ର ଗୋବିନ୍ଦର ଅଟେ ଆତ୍ମତତ୍ତ୍ୱ ।
ଆତ୍ମାକୁ ଚିହ୍ନିଲେ ସିନା ଜ୍ଞାନକୁ ପାଇବା
ଜ୍ଞାନ ଉଦେ ହେଲେ ସଂସାରକୁ ତରିଯିବା ।
ଏହିରୂପେ ପାଞ୍ଚ ବ୍ରହ୍ମା ଆତ୍ମାକର ଗୋଟି
ଉଠି ସେବାକଲେ ଆନନ୍ଦରେ ପରମେଷ୍ଠୀ ।
ପ୍ରଥମରେ ଲକ୍ଷ୍ମୀ ଦ୍ୱିକେ ବ୍ରହ୍ମା ସେବା ଦେଖି
ଉଠିଲେ ସନକଋଷି ଚାହିଁ ପଦ୍ମ ଆଖି ।
ଗଦାକରକୁ ସେବିଲେ ଯାଇ ସେହି ମୁନି
ଈଶ୍ୱର ଉଠିଲେ ତାହା ଦେଖି ଭକ୍ତିଘେନି ।
ଶଙ୍ଖକରକୁ ସେବିଲେ ଯାଇ ବୃଷଧ୍ୱଜ
ଧନ୍ୟ ମହିମା ସେ ପ୍ରଭୁଙ୍କର ଚତୁର୍ଭୁଜ ।
ଅନେକ ଚପର ବଳେ ଦେଖି ନେତ୍ରେ ଯାହା
ଉଲ୍ଲାସେ ଦେଖିଲେ ବ୍ରହ୍ମା ରୁଦ୍ର ଆସି ତାହା ।
ସତ୍ୟ ଧର୍ମ ଦୟା ଜ୍ଞାନ ଯେଉଁ ଚାରିମୂର୍ତ୍ତି
ପ୍ରକାଶିଲେ ଚତୁର୍ଭୁଜ ଲାଗି ଦିବ୍ୟଜ୍ୟୋତି ।
ଅନୁକ୍ଷଣେ ବିଷ୍ଣୁଆଗେ କଲେ ସେ ଭାଷଣ
ଏ ରୂପରେ ନ ବର୍ଣ୍ଣିଲେ ନୁହଇ ପୁରାଣ ।
ଅଶୋଭା ଦିଶଇ ପଦ୍ମକଳେ କବି ବନ୍ଦି
ଶ୍ରୀଗୋବିନ୍ଦର ମହିମା ଅଗୋଚର ହୃଦି ।
ଶଙ୍ଖ ଚକ୍ର ଗଦାପଦ୍ମ ଏରୂପେ ପ୍ରକାଶି
କହନ୍ତି ଯେ ପରମେଷ୍ଠୀ ଶୁଣନ୍ତି ଯେ ଋଷି ।
ଶ୍ରୀବ୍ରହ୍ମା ସନକ ରୁଦ୍ର ସେବନ୍ତେ ସେ ବାହା
ଦେଲେ ତାଙ୍କୁ ଦୀକ୍ଷା ପ୍ରଭୁ ଯାହା ସଜ୍ଞାଯାହା ।
ମହାଲକ୍ଷ୍ମୀଙ୍କ ଲଲାଟେ ଦେଲେ ଏକ ବିନ୍ଦୁ
କହିଲେ ରାମ ତାରକ ମନ୍ତ୍ର ବିଷ୍ଣୁ ହୃଦୁ ।
ଶ୍ରୀଜ୍ୟୋତିର ସୀମା ଜାଣ ଜନ୍ମିଛି ଅଛିଦ୍ରେ
ଜ୍ଞାନୀ ଚାହିଁଲେ ତ୍ରିକୁଟ ସ୍ଥାନ ଦିଶେ ରନ୍ଧ୍ରେ ।
ଦୀପ ଅନେକ ପ୍ରାୟେ ସେ ଜ୍ୟୋତି ଜଳୁଅଛି
ନ ଜାଣି ମରନ୍ତି ମୂର୍ଖଲୋକ ଧର୍ମ ବାଛି ।
ସେ ଜ୍ୟୋତିର ପ୍ରାୟେ ଶିରୀ ସନ୍ତଦା ତିଳକ
ଧର୍ମର ମାତ୍ର ଉପରେ ପ୍ରକାଶଇ ଟେକ ।
କୀଟୁ ବ୍ରହ୍ମ ପରିଯନ୍ତେ କେତେ ଦେହ ଧରି
ସେହି ଜ୍ୟୋତି ଲିଭିଗଲେ ସର୍ବେ ଯାନ୍ତିମରି ।

ସଂପ୍ରଦା ପ୍ରକାଶି ଏହି ରୂପେ ନାରାୟଣ
ଦେଖିଲେ ଚକ୍ରରେ ସେତା ବ୍ରହ୍ମାର ନିପୁଣ ।
ଯେବଣ ଚକ୍ର ଦ୍ୱାଦଶ ଶବ୍ଦ ପ୍ରକାଶଇ
ଷଡ଼ଚକ୍ର ଭେଦି ନାଦ ଉଠେ ଘୁମୁରଇ ।
ତାଳୁର ଉପରେ ନେଇ ଦେଲେ ବିନ୍ଦୁମୁଦ୍ରା
ଶଙ୍କର ଅଛନ୍ତି ତହିଁ ଭିଡ଼ିଧରି ମୁଦ୍ରା ।
ସେ ହରଙ୍କ ଶିରେ ବହିପଡ଼େ ଯେଉଁ ଜଳ
ଅଟେ ଯେ ଯମୁନା କାଳିନ୍ଦୀର ହ୍ରଦ ନାଳ ।
ତହିଁରେ କଦମ୍ବ ତରୁ ଉଲଟି ଅଛଇ
ବେଣୁ ବଜାନ୍ତି ସେ ବୃକ୍ଷେ ବସି ଭାବଗ୍ରାହୀ ।
ଯେବଣ ରାଧା ନାମର ବଂଶୀନାଦ ଡାକେ
ସେ ରାଧାଙ୍କୁ ଚିହ୍ନି କେହି ନ ପାରନ୍ତି ଲୋକେ ।
ସେ ରାଧା ଅକ୍ଷର ବେନି ପ୍ରତ୍ୟକ୍ଷରେ ବ୍ରହ୍ମ
ତେଣୁ ମୁରଲୀ ବ୍ରହ୍ମରେ ଲଗାଇଛି ପ୍ରେମ ।
ସେ ମୁରଲୀର ଶବଦ ବୋଲେ ରାଧା ରାଧା
ରାଆଟି ଜୀବ ଅଟଇ ଧାଆ ପରମଦା ।
ସେ ଜୀବ ପରମ ଦୁଇ ବେଣୁ ରନ୍ଧ୍ର ଅଗ୍ରେ
କ୍ଷଣକେ ଆସଇ ହୋଇ ଧାଇଁଆସେ ବେଗେ ।
ସେ ଦୁଇ ରାଧା ଅକ୍ଷର ବସେ ସର୍ବ ଘଟେ
ତେଣୁ ସେହି ରାଧା ନାମ ରାସକ୍ରୀଡ଼ା ଅଟେ ।
ଭୂଷଣ୍ଡ ରାଆକୁ ଧରି ଟେକନ୍ତେ ସର୍ବଦା
ତେଣୁ ରାଧା ଶବଦଟି ହେଲା ଜାଣ ରାଧା ।
ରାଆ ଅକ୍ଷରର ଟେକିଥାଏ ଯେତେଦିନ
ଶରୀରେ ବସି ପ୍ରକାଶେ ଆତ୍ମା ସ୍ଥିତିରେଣ ।
ରା ଅକ୍ଷର ଛାଡ଼ି ନାମ ଧରି ତରିଯାଇ
ପିଣ୍ଡରୁ ଗଲେ ସେ ଆତ୍ମା ବ୍ରହ୍ମ ପ୍ରକାଶଇ ।
ବ୍ରହ୍ମଶବ୍ଦୁ ଜୀବ ଶରୀରରେ ଆତ୍ମା ଜାଣ
ଆତ୍ମା ଶରୀରରୁ ଗଲେ ବ୍ରହ୍ମେ ମିଶେ ପୁଣ ।
ବ୍ରହ୍ମେ ଏକ ନାରାୟଣ ନାରାୟଣ ବ୍ରହ୍ମ
ଏହା ନ ଚିହ୍ନି ମରନ୍ତି ନରେ ହୋଇ ଭ୍ରମ ।
ଚକ୍ରଗୋଟି ବ୍ରହ୍ମରୂପେ ବ୍ରହ୍ମା ଚକ୍ର କହି
ସେ ବ୍ରହ୍ମ ଚିହ୍ନି ସେବିଲେ ବ୍ରହ୍ମା ଚକ୍ରଯାଇ
ବ୍ରହ୍ମାର ସେବା ଦେଖିଣ ପ୍ରଭୁଦେଲେ ଦୀକ୍ଷା
ନାସାଅଗ୍ରେ କେଶଯାଏ ତିଳକର ଶାଖା ।
ହରି ମନ୍ଦିର ଯେ ତିଳକର ନାମ ଦେଲେ
ହକାର ଅକ୍ଷର ଆଣି ମନ୍ତ୍ର ଶୁଣାଇଲେ ।
ଏଥି ସଉାରୁ ଚାହିଁଲେ ପୁଣି ଗଦାହସ୍ତ
ସନକ ଋଷି ସେ ହସ୍ତ ସେବାରେ ଯେ ରତ ।
ସେ ସନକ ଋଷିଙ୍କର ଭକ୍ତିଗୁଣ ଚିହ୍ନି
ନାସା ଅର୍ଦ୍ଧରୁ ତିଳକ ଦେଲେ ଚକ୍ରପାଣି ।

ରାଧା ଅଟେ ବ୍ରହ୍ମ ଏକ ବ୍ରହ୍ମା ରାଧା ଜାଣ
ଜୀବଯାକଙ୍କ ଭଜନ ଅଟେ ଏ ପ୍ରମାଣ ।
ବୁଝିଲେ ସନକ ଋଷି ଅଟେ ବ୍ରହ୍ମଜ୍ଞାନୀ
ରାଧା ବ୍ରହ୍ମ ବୋଲି ସେ ନ ପାରିବାରୁ ଚିହ୍ନି ।
ରାଧାତତ୍ତ୍ୱ ପାଇ ଆଶ୍ରା କଲେ ସେହି ଗଦା
ତେଣୁ ନାମ ଦେଲେ ପ୍ରଭୁ ସନକ ସଂପ୍ରଦା ।
କୃ ଅକ୍ଷରେ ଆଣି ନାମ ମନ୍ତ୍ର ଶୁଣାଇଲେ
ସନକଙ୍କୁ ଶିକ୍ଷାଦେଇ ରୁଦ୍ରଙ୍କୁ ଚାହିଁଲେ ।
ଦେଖିଲେ ଶଙ୍ଖକୁ ଆଶ୍ରା କରିଛନ୍ତି ଶିବ
ଯେଉଁ ଶଙ୍ଖ ନାଭିରୁ ପ୍ରକଟୁଅଛି ଜୀବ ।
ଯତ୍ର ଜୀବ ତତ୍ର ଶିବ ଆତ୍ମା ଏକ ଅଟେ
ଆତ୍ମାରେ ସ୍ଥାଣୁ ପୂରଣ ଅଛି ସର୍ବଘଟେ ।
ବୁଝିଲେ ସେ ବ୍ରହ୍ମା ବିଷ୍ଣୁ ଶିବ ଅଟେ ଏକ
ଏ ଘେନି ଶଙ୍ଖକୁ ଆଶ୍ରା କଲେ ତ୍ରିଅମ୍ବକ ।
ସଦା ଶିବଙ୍କର ଭକ୍ତି ଦେଖି ଭାବଗ୍ରାହୀ
ଭୁରୁର ମଧ୍ୟେ ତିଳକ ବିନ୍ଦୁ ଦେଲେ ନେଇ ।
ମନେ ପାଞ୍ଚିଲେ ତିଳକ ତିନିଗୋଟି ସିନା
ନାସା ଅଗ୍ରନାସା ମଧ୍ୟନାସା ଆଦ୍ୟେବାନ ।
ଏହି ତିନିସ୍ଥାନରୁ ତ ଚାରିସ୍ଥାନ ନାହିଁ
ଚିହ୍ନିଲେ ସ୍ଥାନକୁ ବିନ୍ଦୁ ବସାଇଲେ ନେଇ ।
ଏହି ତିନିସ୍ଥାନରୁ ଉଦେ ହୋଇଅଛି ଯାହା
ଜ୍ଞାନୀକୁ ଗୋଚର ଦୁଇ ଅଜ୍ଞାନୀଙ୍କୁ ତାହା ।
ଏହା ଚିହ୍ନି ନ ପାରନ୍ତି ଲୋକେ କହି କହି
କରନ୍ତି ଅନେକ ଧର୍ମମତେ କେହି ରହି ।
ଏମନ୍ତେ ପାଞ୍ଚି ତିଳକେ ତିନି ପ୍ରକାଶିଲେ
ମହାମନ୍ତ୍ର କରି କଥା ଏକ ବିଚାରିଲେ ।
ରାମ କୃଷ୍ଣ ଅଙ୍ଗ ହରି କରୁଁ ଅହୋରାତ୍ରେ
ତେଣୁ କରି ଆଠନାମ ଦେବେ ମହାମନ୍ତ୍ରେ ।
ମନେ ହେତୁ ରଖି ଏକ ବୁଝିଲେ ଯତନେ
ସେ ମନ୍ତ୍ର ସନ୍ଧି ଜାଣିବେ ତେବେ ସାଧୁଜନେ ।
ହରି ଶରୀରୁ ରାମକୃଷ୍ଣ ଜନମନ୍ତି
ହରିରେ ନିମଜ୍ଜି ଚାରି ଚାରି ନାମ ହୁନ୍ତି ।
ରାମ ନାମ ଚାରି ଅଟେ କୃଷ୍ଣ ନାମ ଧରି
ହରେ ନାମ ଆଠଗୋଟି ହେଜ ମନେ ଧରି ।
ଆଦ୍ୟରେ ହରି ହରନ୍ତେ ପ୍ରାନ୍ତେ ସଂହରନ୍ତେ
ତେଣୁ ହରି ଆଠନାମ ବସେ ମହାମନ୍ତ୍ରେ ।
ଏମନ୍ତେ ସେ ଷୋଳନାମ ଷୋଳରେ ବତିଶ
ଲୋକ ପରିତ୍ରାଣ ଅର୍ଥେ କଲେ ଜଗଦୀଶ ।
ହରେ ରାମ କୃଷ୍ଣ ଖଞ୍ଜି ନେଲେ ମନ୍ତ୍ରକରି
ରୁଦ୍ରଙ୍କୁ ସଂପ୍ରଦା କରି ଶୁଣାଇଲେ ହରି ।

ଚାରି ଆୟୁଧ ସଂପ୍ରଦା ଧରିଣ ପଶିଲେ
ଚାରିଦ୍ୱାର ଚାରିଧାମ କ୍ଷେତ୍ରେ କୁହାଇଲେ ।
ଏ ଚାରି ସଂପ୍ରଦାଙ୍କର ଅଟେ ଏକା ଭକ୍ତି
ସ୍ମରଣ ଭଜନ ଏକା ଏକା ଗତି ମୁକ୍ତି ।
ଏକା ଜ୍ଞାନ ଏକା ଲୟ ଏକା ମହାପ୍ରଭୁ
ହୋଇଛନ୍ତି ଏହି ଚାରିନାମ ଏକ ଗର୍ଭୁ ।
ଏକ ମନ ଏକ ପ୍ରାଣ ଏକ ଅଟେ ଧ୍ୟାନ
ଏକା ହୃଦୁଁ ଜୀବ ବହି ହେଲେ ଚାରିନାମ ।
ଏଥକୁ ଉପାୟ ଏବେ କହୁଛି ଶୁଣିମା
ଏହି ଚାରି ସମ୍ପ୍ରଦାର ଯେମନ୍ତ ମହିମା ।
ହରେ ରାମ ହରେ କୃଷ୍ଣ ଯେଉଁ ନାମ କହି
ବିପ୍ର ଏକା ଭଜେ କି ଚାଣ୍ଡାଳ ନ ଭଜଇ ।
ଦ୍ୱାଦଶ ଗୁଣେ ବ୍ରାହ୍ମଣ ଜନ୍ମ ହୋଇ ଜାଣ
କୃଷ୍ଣ ନ ଭଜିଲେ ତାର ନାହିଁ ପରିତ୍ରାଣ ।
ଅଠର ବର୍ଣ୍ଣ ଜାତିରେ ବିପ୍ର ମାନ୍ୟ ହୋଇ
ତାହାର ଆତ୍ମା ଉଦ୍ଧରି ନ ପାରନ୍ତି ସେହି ।
ଚାଣ୍ଡାଳ ଜନ୍ମମୋର ଯେ ଭଜେ ବିଷ୍ଣୁପାଦେ
ସେ ତହିଁ ତରିଯାଏଟି ଏ ସଂସାର ମଧ୍ୟେ ।
ଏଣୁ ସବୁଙ୍କର ବିଷ୍ଣୁ ଅଟେ ଏକା ଜାଣ
ଭକତିକୁ ଚାହିଁ ଗତି ଦ୍ୟନ୍ତି ନାରାୟଣ ।
ପୁଣି ଚାରିଦ୍ୱାରେ ଜଗମୋହନକୁ ଗଲେ
ଏକ ଜଗନ୍ନାଥ ସେବା ନ କରି କି ଭଲେ ।
ଗୁଡ଼ ପିତୁଳା ଗୋଟିଏ ନିର୍ମାଣ କରିବ
ଯେ ଯେଉଁଠାରେ ଭୁଞ୍ଜିଲେ ଏକମୂର୍ତ୍ତି ନେବ ।
ଏରୂପେ ଅଟଇ ଚାରି ସମ୍ପ୍ରଦାର ଗୁଣ
କେ ମୁଖେ ଭଜଇ କେହୁ ଭଜଇ ଚରଣ ।
ଚକ୍ଷୁନାସା ଶ୍ରବଣକୁ ସାର ସେହୁ ଘେନି
ଏ ମୋହର ବୋଲି କେହି ଭଜେ ହୋଇ ତୁନି ।
ବିଚାରିଲେ ପାଦକୁ ତ ନୁହେଁ ସେହି ସରି
କେଉଁ ପାଦ ନଖକୋଣୁ ବହେ ଗଙ୍ଗାବାରି ।
ଯା ପାଦଲାଗି ଅହଲ୍ୟା ନାରୀ ତରିଗଲା
ଯେଉଁ ପାଦେ ବଳିରାଜା ଶରଣ ପଶିଲା ।
ଯେଉଁ ପାଦଲାଗି ଶୁକ ସନକ ଯେ ଜ୍ଞାନୀ
ମୁଁ କିସ ଦେଖିବି ତାହା ଜନ୍ମି ନରଯୋନି ।
କେବଳହିଁ ବିପ୍ରକୁଳେ ହେଲି ଆସି ଜନ୍ମ
ନାମ ପୀତାମ୍ବର ଦାସ ବୁଝିଲେ ଅଧମ ।
ମୁଁ ଛାର କି ଲେଖିବଇଁ ସଂପ୍ରଦା ମହିମା
ଶୁଣ ହେ ନାରଦ ବୋଲି କହେ ବେଦବ୍ରହ୍ମା ।
ଯେଉଁ ଋଷି ଯେଉଁ ସଂପ୍ରଦାର ଶିଷ୍ୟ ହେଲେ
ସେମାନଙ୍କ ନାମ ଶୁଣ କହୁଅଛି ଭଲେ ।

ବଶିଷ୍ଠ ମରୀଚି ମୁନି ଅଙ୍ଗିରା ଯେ ଦକ୍ଷ
ଲଲାଟେ ବଢ଼ାଇଶିରୀ ହୋଇଲେ ଯେ ମୋକ୍ଷ ।
ଜାବାଲି କଶ୍ୟପ ଋଷି ବାମଦେବ ମୁନି
ଏ ଘେନିଲେ ଏ ମନ୍ତ୍ରଟି ସଂପ୍ରଦାକୁ ଚିହ୍ନି ।
କପିଳ ଯେ କଣ୍ବ ଭୃଗୁ ଶୌନକ ପୌଲସ୍ତି
କବି ହବି ଆବର ଯେ ଋଷ୍ୟଶୃଙ୍ଗ ଯତି ।
ଜୈମିନି ଯେ ଅଷ୍ଟବକ୍ର ଯାଜ୍ଞବଲକ୍ୟ ଆଦି
ଏମାନେ ଅଟନ୍ତି ଶ୍ରୀଧର୍ମର ମନ୍ତ୍ରଭେଦି ।
ମହାଲକ୍ଷ୍ମୀ ସଂପ୍ରଦାର ବଇଷ୍ଣବ ସେହି
ବ୍ରହ୍ମା ନାରଦ ସମ୍ବାଦ ଶୁକମୁନି କହି ।
ଶୁଣ ପରୀକ୍ଷିତ ବ୍ରହ୍ମ ସମ୍ପ୍ରଦାର ଶିଷ୍ୟ
ନାରଦ ଆସୁରୀ ପଞ୍ଚଶିଖ ବେଦବ୍ୟାସ ।
ଅଗସ୍ତି ଯେ ଗଉତମ ପୁଣି ପରାଶର
ଲୋମାଞ୍ଚ ପୁଣି ଚ୍ୟବନ ମହର୍ଷି ପ୍ରବର ।
ସୁକରଷି କୃପାଜଳ ଦତ୍ତାତ୍ରେୟ ମୁନି
ବସିଲେ ବୈଶମ୍ପାୟନ ଆସି ମନ୍ତ୍ର ଘେନି ।
ନାସା ଅଗ୍ର କେଶଯାଏ ଘେନିଲେ ତିଳକ
ସମସ୍ତେ ଅଟନ୍ତି ମହାଜ୍ଞାନୀ ଏକୁଁ ଏକ ।
ଶ୍ରୀପରମହଂସ ଦୀକ୍ଷା ଭଜନ ସବୁରି
ସମାନ ଲୋଡ଼ନ୍ତି ସର୍ବ ଆତ୍ମା ଏକାକରି ।
ବ୍ରହ୍ମରେ ନିର୍ଗୁଣ ପୁଣି ଯୋଗେ ମହାଜ୍ଞାତା
ସାଧୁ ମହାଜ୍ଞାନୀ ସମଦରଶୀ ପଣ୍ଡିତା ।
ସକଳ ଦେହରେ ନାରାୟଣଙ୍କୁ ଚିହ୍ନନ୍ତି
ପ୍ରାଣୀକୁ ମୋକ୍ଷ କରିଣ ଜ୍ଞାନୀ ପ୍ରକାଶନ୍ତି ।
ମନ ସଂଯମ କରିଣ ଟେକନ୍ତି ଓଁକାର
ଲୋକମାନଙ୍କୁ ବତାଇ ଦ୍ୟନ୍ତି ଦଶଦ୍ୱାର ।
ମୂର୍ଦ୍ଧନୀ ଉପରେ ପ୍ରାଣ ପୂରାଇ ତୁରିତେ
ଏକଲୟ କରି ବ୍ରହ୍ମ ଚିନ୍ତନ୍ତି ହୃଦଗତେ ।
ସେହି ବ୍ରହ୍ମ ପୁରୁଷର ଏମନ୍ତ ବିଧାନ
ସବୁରୁ ହୃଦପଦ୍ମରେ ହେଉଛି ଭଜନ ।
ଏ ଜପକୁ ଥିଲେ ସର୍ବେ ସ୍ୱଦେହରେ ଧରି
ସେ ତପକୁ ଛାଡ଼ିଦେଲେ ଦେବ ହେଲେ ମରି ।
ଏହି ଜପକୁ ବୁଝଟି ଜପେ ବ୍ରହ୍ମଜ୍ଞାନୀ
ଏ ଜପ ବୁଝି ଭଜିଲେ ସନକାଦି ଗଣି ।
ସନକ ସମ୍ପ୍ରଦା ଶିଷ୍ୟ ଶୁଣ ବାବୁ ଏବେ
ଦୁର୍ବାସା କ୍ରଉଞ୍ଚମୁନି ଲୋମଶ ଗାର୍ଗବେ ।
ମୁଣ୍ଡକ କୋକିଳ ତୁଙ୍ଗ ବିଭାଣ୍ଡକ ଋଷି
ଏମାନେ ହେଲେ ସନକ ସମ୍ପ୍ରଦାର ଶିଷି ।
ସୁଦେବ ଉଶନ ଭରଦ୍ୱାଜ କାଳିଞ୍ଜନ
ସନକ ଲକ୍ଷଣ ଗ୍ରଜ ଋଷି ସନାତନ ।
ଦେବଗର୍ଭ ପୟଋଷି ଯତି ଉଦ୍ଦାଳକ
ଗଉତମ ମନ୍ଦକର୍ଣ୍ଣ ସୁତ ପୌରାଣିକ ।
ଶ୍ରୁତିକି ଯେ କୃଷ୍ଣାତ୍ମକ ଜ୍ଞାନାତ୍ମକ ଘେନି
ଦଦ୍ଧୁଋଷି ଯେ ବାଲ୍ମୀକ ସମ୍ପୂର୍ଣ୍ଣକ ମୁନି ।
କୁମ୍ଭ କଶ୍ୟପ ଗାଲବ ସତ୍ୟାନନ୍ଦ ଯାଏ
ସନକ ଧର୍ମର ଶିଷ୍ୟ ଅଟନ୍ତି ଏ ପୋଏ ।
ଘେନନ୍ତି ଏମାନେ ତାଳୁମାରେ ବିନ୍ଦୁଟୋପି
ନାସାରୁ ହରିମନ୍ଦିର ତିଳକକୁ ରୋପି ।
ମହାବୈଷ୍ଣବରେ ଗଣ୍ୟ ଅଟନ୍ତି ଏମାନେ
ଜୀବ ପରମକୁ ଧ୍ୟାନକରି ଅନୁଧ୍ୟାନେ ।
ପରମହଂସକୁ ଚିହ୍ନିକରି ଯୋଗଲୟେ
ଘେନନ୍ତି ଆତ୍ମାକୁ ଏକ କୀଟୁ ବ୍ରହ୍ମଯାଏ ।
ଷଡ଼ଚକ୍ର ଭେଦି ଯେଉଁ ଶବ୍ଦ ଧ୍ୱନି କରେ
ପଞ୍ଚାଶ ପାଖୁଡ଼ା ଫୁଟି ଶରୀରେ ଘୁମୁରେ ।
ସେ ଶବଦ ଶୁଭେ ଜାଣ ଦ୍ୱାଦଶ ପ୍ରକାର
କେବଳ ଏହି ଋଷିଏ କରନ୍ତି ଗୋଚର ।
ଚିଢ଼ିଚିଢ଼ି କିଣି କିଣି ଶଙ୍ଖ ଭେରୀ ନାଦ
ତାଳ କଂସାଳ ମୃଦଙ୍ଗ ବଇଁଶୀ ଶବଦ ।
ଘଣ୍ଟି ଘଣ୍ଟାରେ ଘାଗୁଡ଼ି ବୀଣ ଯନ୍ତ୍ର ବାଜେ
ଏ ବାରଧ୍ୱନିର ବାଦ୍ୟ ଗୋଲାହାଟେ ବିଜେ ।
ବସନ୍ତି ଯେ ଶବଦକୁ ଜଗି ବ୍ରହ୍ମମୁନି
ସବୁଦେହ ଶୁଭେ ତାହା ନ ପାରେକେ ଚିହ୍ନି ।
ତଥାପି ଗୋଲକ ହାଟ ଚିହ୍ନିତ ନ ପାର
ତେଣୁ ଏ ଶବଦ ଗୋଟି ହରିତ ଗୋଚର ।
ଚିହ୍ନିଲେ ସେବାଟି ତେବେ ସନକ ସମ୍ପ୍ରଦା
ଏ ଧର୍ମକୁ ଆଶ୍ରେ କଲେ ଦିଶେ ଜ୍ଞାନପଦ ।
ଏମନ୍ତ ମହିମା ଜାଣ ଏସନକ ପନ୍ଥା
ଶୁଣ ଆହେ ପରୀକ୍ଷିତ କହେ ଶୁକଜ୍ଞାତା ।
ଏବେ ରୁଦ୍ର ସମ୍ପ୍ରଦାର ବହୁ ଶିଷ୍ୟମାନ
ବାଲ୍ମୀକି ଦଧୀଚି ଋଷି ବିଷ୍ଣୁ ନିରଞ୍ଜନ ।
କନ୍ତମୁନି ଯଜ୍ଞଶକ୍ତି ବିଶ୍ରବା ଯେ ମୁନି
ମାର୍କଣ୍ଡ ମୁକୁଣ୍ଡ ପିଣ୍ଡ ପନ୍ଦର ଏ ତିନି ।
ଦେବଋଷି ରାଜଋଷି ବ୍ରହ୍ମଋଷି ମାନେ
ସୁହଂସୀ ପରମହଂସୀ ହଂସୀ ସିଦ୍ଧଜନେ ।
ଆବର ପବନ ଇନ୍ଦ୍ର ଚନ୍ଦ୍ର ବୈଶ୍ୱାନର
ବରୁଣ ଯମ ନୈର୍ଋତ ଦେବ ଦିବାକର ।
ବାସୁକୀ ଯେ ବସୁମତୀ ବାର ବୃହସ୍ପତି
ଯୋଗ ଗ୍ରହ କରଣ ଯେ ସର୍ବେ ଶିଷ୍ୟ ହୁନ୍ତି ।
କଳା କାଷ୍ଠା ନିମେଷାଦି ରୁଦ୍ର ଉପାସକ
ଭ୍ରୁରୁର ମଧ୍ୟେ ଏ ବିନ୍ଦୁ ଘେନିଲେ ତିଳକ ।

ଏମନ୍ତ ଏ ଚାରିକର୍ମ ଜାତି କରି ପ୍ରଭୁ
ବ୍ରହ୍ମାଙ୍କୁ ଗୋଚରେ ନେଇ ସମର୍ପିଲେ ସବୁ ।
ବୋଇଲେ ଏ ଧର୍ମ ନେଇ ରଖି କଳିଯୁଗେ
ଏମନ୍ତ ଘେନି ପ୍ରାଣୀଏ ମୋକ୍ଷହେବ ଆଗେ ।
ହରେ ରାମ କୃଷ୍ଣ ଚାରି ସମ୍ପ୍ରଦାର ତତ୍ତ୍ୱ
ଶୁଣିଲେକ ପ୍ରାଣୀମାନେ ହୋଇବେ ମୁକତ ।
ବ୍ରହ୍ମାଏ ବୋଇଲେ ପ୍ରଭୁ ଶୁଣିମା ଭୋ ଦେବ
ହରେ ରାମ କୃଷ୍ଣ କେହ୍ନେ ଜାଣିବେ ମାନବ ।
ନାରାୟଣ ବୋଇଲେକ ତହୁଁ ତେବେ ଶୁଣ
ହରେ ଶବ୍ଦ ନୃସିଂହରେ ପ୍ରବର୍ତ୍ତଇ ଜାଣ ।
ସତ୍ୟଯୁଗେ ଜନ୍ମ ହେବୁ କଳେବର ବହି
ବଦରିକା ଆଶ୍ରମରେ ତପେ ହେବୁ ଦାହି ।
ତହୁଁ ଅବତାର ଯାଇ ହେବୁ ପରଂବ୍ରହ୍ମ
ଛାଡ଼ିବୁ ସେକାଳେ ଆମ୍ଭେ ବଇକୁଣ୍ଠ ଧାମ ।
ପିତା କୃଷ୍ଣବଲ୍ଲଭ ଯେ ମାତା ଭଗବତୀ
ତାଙ୍କ ଗର୍ଭେ ଜନ୍ମ ଯାଇ ହେବୁ ବେନିମୂର୍ତ୍ତି ।
ଶ୍ରୀନୃସିଂହ ଶେଷ ନାମେ ବେନିଭ୍ରାତ ହେବୁ
ଏ ଅବତାରରେ ମୁର ଦାରୁଣ ମାରିବୁ ।
ବୈକୁଣ୍ଠରେ ଦ୍ୱାରୀ ଜୟ ବିଜୟ ଏ ଦୁଇ
ପ୍ରଥମ ଜନ୍ମରେ ମୁର ଦାରୁଣ ଯେ ହୋଇ ।
ମୁରକୁ ମାରି ମୁରାରି ଆମ୍ଭେ ବୋଲାଇବୁ
ଦାରୁଣ ଦୈତ୍ୟର ଶେଷ ହାତେ ମରାଇବୁ ।
ଏହି ଅବତାର ସାରି ଆସିବୁ ବୈକୁଣ୍ଠ
ଲେଉଟି ଆମ୍ଭର ଲୀଳା ଶୁଣ ସୁରଜ୍ୟେଷ୍ଠ ।
ହିରଣ୍ୟ ଅସୁର ମୁରଦୈତ୍ୟ ମରି ହେବ
ପରକାଳେ ପ୍ରହଲାଦ ଜନମ ହୋଇବ ।
ଜନ୍ମ ହୋଇ ନୃସିଂହଙ୍କୁ ଚିନ୍ତି ସବୁବେଳେ
ଯେ ନାମ ଶୁଣି ହିରଣ୍ୟ ଉଠି କୋପାନଳେ ।
କାହିଁ ତୋ ନୃସିଂହ ବୋଲି ପୁଚ୍ଛିବ ପୁତ୍ରକୁ
କହିବ ସ୍ତମ୍ଭରେ ଛନ୍ତି ବୋଲି ହିରଣ୍ୟକୁ ।
ଏମନ୍ତ ବୋଲନ୍ତେ ଆମ୍ଭେ ପ୍ରକାଶ ହୋଇବୁ
ସ୍ତମ୍ଭ ଭିତରୁ ବାହାରି ହିରଣ୍ୟ ମାରିବୁ ।
ନରସିଂହ ମହାପ୍ରଭୁ ଜନ୍ମ ହେଲାକ୍ଷଣି
ବସିବ ହରି ତା ସ୍ୱରମନ୍ତ୍ରେ ବ୍ରହ୍ମ ଶୁଣି ।
ଏଥୁଅନନ୍ତରେ ଶୁଣ ସତ୍ୟଯୁଗ ଯିବ
ଏହି ହିରଣ୍ୟ ଲେଉଟି ରାବଣ ହୋଇବ ।
ସେ ରାବଣ ଉଗ୍ରଭାବ ନ ପାରନ୍ତେ ସହି
ଆମ୍ଭେ ଏକା ତ୍ରେତାଯୁଗେ ରାମ ହେବୁ ଯାଇ ।
ମାରି ରାବଣ ଆସିବୁ ପୁଣି ନିଜପୁରେ
ତେବେ ଜାଣ ରାମ ଯାଇ ମିଶିବ ତହିଁରେ ।
ହରିରେ ରାମ ମିଶିଣ ବହନ୍ତେ ଧରଣୀ
ସେହି ରାବଣ ହେବେଟି ଶିଶୁପାଳ ପୁଣି ।
ସେ ଶିଶୁପାଳଙ୍କୁ ବଇକୁଣ୍ଠ ଯାଇ ହରି
ଆସିବୁ ଶ୍ରୀକୃଷ୍ଣ ରୂପେ ଜନ୍ମି ତାକୁ ମାରି ।
ହରେ ରାମରେ ମିଶିବ କୃଷ୍ଣ ତେବେ ଯାଇ
ରହିଁବେ ସେ ସବୁକାଳେ ମହାମନ୍ତ୍ର ହୋଇ ।
ଏଠାରୁ ରହିଲା ହରିନାମ ପୃଥ୍ୱୀଯାକେ
ଘେନିବେ ତିଳକ କରି ସଂସାରର ଲୋକେ ।
ପୁଚ୍ଛିବାକୁ ମୋର ନାମ ଶୁଣି ପ୍ରତି ପ୍ରତି
ତୁମ୍ଭେ ଜନ୍ମ ନୋହୁଁ ହେଲା ମଣିମୟ ମୂର୍ତ୍ତି ।
ମୋ ନାମ ବିଧାତ କାହିଁ ପାଇବ ସେ ଅନ୍ତ
ତୁମ୍ଭ ଜନ୍ମଗୋଟି ଏବେ ଗଲା ଏହି ମତ ।
ଶ୍ରୀହରି ଶ୍ରୀରାମକୃଷ୍ଣ ସଦାକାଳେ ମରି
ସାଧୁଙ୍କର ହିତେ ଆମ୍ଭ ବଇକୁଣ୍ଠ ପୁରୀ ।
ଦୁଷ୍କୃତମାନଙ୍କୁ ନାଶି ଧର୍ମ ପ୍ରତିପାଳୁ
ଉପୁଜିଣ ଯୁଗେ ଯୁଗେ ବଇକୁଣ୍ଠ ଚଳୁ ।
ସତ୍ୟ ଅନ୍ତେ ତ୍ରେତୟା ଦ୍ୱାପର କଳି ହେବ
ଆଗତକୁ କହୁଁ ଏବେ ଶୁଣ ହେ ଦଇବ ।
ଗୁରୁ କରିଣ ଶୁଣିବ ଯେବେ ମହାମନ୍ତ୍ର
ତେବେ ଯାଇ ପ୍ରାଣୀମାନେ ହୋଇବେ ପବିତ୍ର
ଏ କଥା ଶୁଣିଣ ବ୍ରହ୍ମା ଜଣାଇଲା ପୁଣି
ବୋଇଲେ କହନ୍ତୁ ମୋତେ କଳିଯୁଗ ବାଣୀ ।
ଏ ଚାରିସଂପ୍ରଦା ପ୍ରାଣୀ କିରୂପେ ଜାଣିବେ
କେବଳ ଧର୍ମକୁ କେଉଁ ଗୁରୁ ଦେବ ହେବେ ।
କେଉଁଦ୍ୱାର କେଉଁ ଧାମ ବୋଲାଇବେ କେହ୍ନୁ
ବୁଝିବା ଏ ବିଧାନଟି କହ ମହାବାହୁ ।
ନାରାୟଣ ବୋଇଲେ ହେ ଶୁଣ ତେବେ ବ୍ରହ୍ମା
ଭବିଷ୍ୟତେ ଶୁଣ ତୁମ୍ଭେ କଳିର ମହିମା ।
ଯେଉଁ ସଂପ୍ରଦାକୁ ଯେହୁ ହୋଇବେ ଯେ ଗୁରୁ
ତାହାଙ୍କର ନାମମାନ ଶୁଣ ମୋ ମୁଖରୁ ।
ଆଦ୍ୟ ମଧ ପ୍ରାନ୍ତ ମୋତେ ସଦାକାଳେ ସ୍ମରି
ତୁମ୍ଭେ ସିନା ଜନ୍ମ ହୋଇ ଯାଇଥାଅ ମରି ।
ନନ୍ଦ ଚଇତନ ରୂପ ପ୍ରକାଶ ହେ ରୂପ
ଚାରି ଧର୍ମର ଅଟନ୍ତି ଜାଣ ଏହୁ ବାପ ।
ଏହି ଚାରିରୂପ ଚାରିଶୂନ୍ୟ ଆବୋରିଲେ
ଚାରିଦ୍ୱାର ଚାରିଧାମ କ୍ଷେତ୍ର କୁହାଇଲେ ।
ଏ ଚାରି ଶେଷରେ ଚାରି ବେଦଟି ପ୍ରମାଣ
ଶୁଣ ବେଦବ୍ରହ୍ମା କହୁଛନ୍ତି ନାରାୟଣ ।
ଯେଉଁ ସଂପ୍ରଦାକୁ ଯେଉଁ ଗୁରୁଟି ହୋଇବ
ତାହାଙ୍କର ନାମମାନ କହେ ଶୁଣ ଧ୍ରୁବ ।

ରାମାନନ୍ଦ ହେବେ ପୁଣି ଶ୍ରୀସମ୍ପ୍ରଦା ଗୁରୁ
ବ୍ରହ୍ମା ସମ୍ପ୍ରଦାରେ ଯେ ମାଧବାନନ୍ଦ ଗୁରୁ ।
ସନକ ସମ୍ପ୍ରଦାଗୁରୁ ନିତ୍ୟାନନ୍ଦ ହେବେ
ରୁଦ୍ର ସମ୍ପ୍ରଦାରେ ଶ୍ୟାମନନ୍ଦ ବୋଲାଇବେ ।
ଏ ଚାରି ପଣ୍ଡିତେ ଚାରି ସମ୍ପ୍ରଦାଧିକାରୀ
କରିବେ ପ୍ରାଣୀଙ୍କୁ ମୋହି ସଂସାରେ ଦ୍ୱତୁରୀ ।
ନାମବ୍ରହ୍ମ ମହାମନ୍ତ୍ର ସମସ୍ତଙ୍କୁ ଦେବେ
ତାହିହେଁ ବୈକୁଣ୍ଠେ ଚାରିଦ୍ୱାର ଆବୋରିବେ ।
ଶ୍ରୀରାମାନନ୍ଦୀର ବ୍ରହ୍ମ ଅଟେ ପୂର୍ବଦ୍ୱାର
ମାଧବାନନ୍ଦୀର ଜାଣ ପଶ୍ଚିମ ଦୁଆର ।
ଉତ୍ତର ଦୁଆର ନିତ୍ୟାନନ୍ଦୀଙ୍କର କହି
ଦକ୍ଷିଣ ଦୁଆର ଶ୍ୟାମନନ୍ଦୀଙ୍କର ହୋଇ ।
ଏ ଚାରି ପଣ୍ଡିତେ ଚାରି ଦ୍ୱାରକୁ ଧାରଣା
କହନ୍ତି ଏକା କୃଷ୍ଣର ଭକ୍ତି ଅକଳନା ।
ଚାରି ଆଚାର୍ଯ୍ୟଙ୍କର ନ ଥାଇ ହୃଦେ ଛନ୍ଦ
ନ ଜାଣିଣ ପାପୀମାନେ କରୁଥାନ୍ତି ଦ୍ୱନ୍ଦ ।
ଶ୍ରୀବଇକୁଣ୍ଠ ମୋହର ଚାରିଦ୍ୱାର ସରି
ଯେ ଯେଉଁଦ୍ୱାରେ ସେବିଲେ ଏକାନରହରି ।
ଘର ଏକ ଘରଦ୍ୱାର ସିନା ଭିନ୍ନ ଭିନ୍ନ
ଏକଥା ପାଞ୍ଚନ୍ତି ମନେ ସୁପଣ୍ଡିତ ଜନ ।
ବୋଲନ୍ତି ଜଗମୋହନ ଘର ପ୍ରାୟେ ସବୁ
ବୈକୁଣ୍ଠକୁ ହେଲେ ଆସୁଅଛି କେଉଁଠାବୁଁ ।
ପଶି ଚାରିଦ୍ୱାରେ ଜଗମୋହନକୁ ଗଲେ
ଏକ ଜଗନ୍ନାଥ ସେବାକରି ସିନା ଭୁଲେ ।
ସେହିରୂପେ ଅଟେ ଚାରି ସମ୍ପ୍ରଦା ଧାରଣା
ଭିନ୍ନ ନାମ କହି କଳିଯୁଗେ ହେବ ଜଣା ।
ଶ୍ରୀରାମନନ୍ଦଙ୍କ ଗୁରୁ ପନ୍ଥା ଶୁଣ ତେବେ
ସଂସାରର ଲୋକହିତ ପଚାରୁଛ ଯେବେ ।
ତ୍ରୈଲୋକ୍ୟର ମହାପ୍ରଭୁ ଯେଉଁ ନାରାୟଣ
ଯାବତ ଶବଦେ ବସିଛନ୍ତି ଜଗତେଣ ।
ସେ ଶବଦ ସମସ୍ତଙ୍କ ଦେହେ ଟେକେ ଧ୍ୱନି
ସେହି ଧ୍ୱନି ଓଁକାରକୁ ବ୍ରହ୍ମା ବୋଲି ଜ୍ଞାନୀ ।
ଜ୍ଞାନୀବିନା ଆନ କେ ନ ପାରେ ଚିହ୍ନି ପିଣ୍ଡେ
ବୁଝିଲେ ସବୁରି ବ୍ରହ୍ମ ପୂରିଛି ବ୍ରହ୍ମାଣ୍ଡେ ।
ଟେକିଲେ ଅଛିଦ୍ରେ ଯେହ୍ନେ ଶୈଳଧାରା ବହେ
ଶୁଭିଲା ନାନାଦି ବାଦ୍ୟଯେହ୍ନେ ଏକ ପ୍ରାୟେ ।
ଶ୍ରୀବ୍ରହ୍ମ ଅଛିଦ୍ରେ ସେହିରୂପେ ଅଛିପୂରି
ନିମଜ୍ଜିଣ ସବୁଦେହେ ଅଛି ଧ୍ୱନି କରି ।
ସର୍ବତ୍ର ପୂରିଣ ବ୍ରହ୍ମ ଶବ୍ଦରୂପୀ ହେଲା
ଅଷ୍ଟଧାତୁ ପାଷାଣନ୍ତ କାଷ୍ଠ ଲୌହ ଶିଳା ।

ଗୁଣାଦି ଜନ୍ତୁଙ୍କୁ ଘେନି ଯେବେ ବ୍ରହ୍ମଭେଦ
ବଜାନ୍ତେ ସବୁ ସ୍ଥାନରେ ବସି ଟେକେ ନାଦ ।
ସେ ନାରଦ ଶିଶୁବେଦ ଜାତ ହୋଇଲାଟି
ଶିଶୁବେଦୁଁ ବାହାରିଲା ଅକ୍ଷର ଦ୍ୱିଗୋଟି ।
ବେନି ଅକ୍ଷରଯାକରୁ ଚକୋର ଚଢ଼ାଇ
ଭଜିଲେ ପାଦରେ ରୂପକାରୀ ନ ପକାଇ ।
ପାଦରେ ନ ପକାନ୍ତେ ସେ ହେଲା ରାମବାଣୀ
ଭଜିଲେ ଭୁଷଣ୍ଡ ସେହି ମହିମାକୁ ଶୁଣି ।
ଆଦ୍ୟଅକ୍ଷରକୁ ସେହି ବସାନ୍ତେ ନିଷ୍ଠଳେ
ପ୍ରାଣଅପରକୁ ସେ ନ ମାନେ କେତେବେଳେ ।
ବୋଇଲା ରାଆ ପାଇଲା ମୁହିଁ ନ ଧରିବି
ଭଜିଲା ଦିନ ତାହାକୁ ମାରି ସିନା ଯିବି ।
ମା ଅକ୍ଷର ତୁ ଭଜୁଟି ହେବ କି ମୋହର
ଏତେ ପାଞ୍ଚି ରାଆ ଟେକି ରଖିଲା ଶରୀର ।
ଶରୀରକୁ ରଖି ଷଡ଼ଚକ୍ରେ ଭେଦି ଦେଲା
ଜୀବଛନ୍ଦା ଦ୍ୱାରେ ନେଇ ଉଦୟକୁ କଲା ।
ଉଦୟ କରିଣ ପୁଣି ଟେକି ବ୍ରହ୍ମ ରନ୍ଧ୍ରେ
ରନ୍ଧ୍ରରେ ସେ ଟେକିବାରୁ ରହିଯାବଚ୍ଚନ୍ଦ୍ରେ
ଚୌରାଶି ମନୁ ଗଲାଣି ତାହାର ଯେ ଖେଢ଼
ଆପଣଙ୍କୁ ବୋଲି ସିନା କହିଲି ଏ ଗୂଢ଼ ।
ଏହିମତେ ପ୍ରଳୟ ଯେ କେତେ ହେଉଥିବ
ସମସ୍ତେ ମରିବେ ଏକ ଭୁଷଣ୍ଡେ ରହିବ ।
ଏ ଘେନି ଭୁଷଣ୍ଡ ପକ୍ଷୀ କେଭେ ନୁହେଁ ସାନ
ଭୁଷଣ୍ଡ ଶରୀର ଯାକ ବ୍ରହ୍ମଜ୍ଞାନେ ପୂର୍ଣ୍ଣ ।
ରାମ ତ ଅଜରାମର ଭୁଷଣ୍ଡ ମରେ କି
ଭୁଷଣ୍ଡ ମଲେ ରାମଙ୍କୁ ନ ପାରେ ସେ ଟେକି ।
ଏଣୁ କରି ଭୁଷଣ୍ଡେ ଯେ ରାମ ଶରୀରହିଁ
ରାମନାମ ଭୂଷଣ୍ଡ ଏ କେଭେ ନ ମରଇ ।
ଭୂଷଣ୍ଡ ସକାଶୁ ଜାତ ହେବ ରମବାଣୀ
ଜନମ ହୋଇଲେ ସେହୁ ପୂରିବ ଧରଣୀ ।
ଧରଣୀରେ ପୂରିବାର ସ୍ୱଚ୍ଛନ୍ଦେ ଜାଣିବେ
ଭୂଷଣ୍ଡକୁ ଗୁରୁ କରି ଉପଦେଶ ନେବେ ।
ଉପଦେଶ ଘେନି ପୁଣି ଜାଣିବେ ଆତ୍ମାକୁ
ଆତ୍ମାର ଭେଦ ଜାଣିଣ ଦେବେ ଗୋରେଖକୁ ।
ଗୋରେଖ ସେ ମନ୍ତ୍ରପାଇ ହେବେ ମହାଯତି
ଷଡ଼ଯତିରେ ଲେଖା ହୋଇରହିବେ ସେ କ୍ଷିତି ।
ସେ ଯତିମାନଙ୍କ କଥା ଶୁଣିଥାଅ ବ୍ରହ୍ମା
ଗରୁଡ଼ ଲକ୍ଷ୍ମଣ ମୁର କାର୍ତ୍ତିକ ମହାତ୍ମା ।
ହନୁ ରୋରେଖ ମିଶି ଏ ରୂପେ ଷଡ଼ଯତି
ରାମର ମହିମା ଗୋଟି ଏହି ସେ ଜାଣନ୍ତି ।

ସେହି ଗୋରେଖଙ୍କ ଶିଷ୍ୟ କହିବା ହେ ଶୁଣ
ଭବିଷ୍ୟତ କଥା ପୁଚ୍ଛା କଲୁ ଯେବେ ଜାଣ ।
ଅଜାଣ ନାମରେ ପୂର୍ବେ ଥିଲେ ସାଧୁଜଣେ
ତାହାଙ୍କ କରଣିମାନ ଶୁଣ ଏ ପୁରାଣେ ।
ବେଦନାବନ୍ତ ଲୋକଙ୍କୁ ଦେଖି ଯେବେ ନେତ୍ରେ
ନାହିଁ ବୋଇଲେ ତା କ୍ଳେଶ ନ ଥାଇ ଗାତ୍ରେ ।
ବେନି ଅଙ୍ଗୁଳି ପୁଟରେ ନ ଥାଇ ବେଦନା
ଏଡ଼େ ସିଦ୍ଧ ଦେଖ ସାଧୁ ଗୋସାଇଁ ମହିମା ।
ଏହି ବୈଷ୍ଣବ ଦେବଟି ଗୋରେଖଙ୍କ ଶିଷ୍ୟ
ଜନକ ପତ୍ନୀଙ୍କୁ ସେହି ଦେବେ ଉପଦେଶ ।
ସେ ଜନକ ପତ୍ନୀ ପୁଣି ଗୋବର ବାବାଙ୍କୁ
ମହାମନ୍ତ୍ର କହି ଚେଲା କରିବେ ତାହାଙ୍କୁ ।
ଗୋବର ବାବାଙ୍କ ତହୁଁ ବୃନ୍ଦାବନ ଜାତ
ଶିଷ୍ୟ ହୋଇ ଶିଷ୍ୟ ସେହୁ କରିବେ ଭାରତ ।
ଭାରତଙ୍କ ଶିଷ୍ୟ ପିତା ଆଭୁର୍ଯ୍ୟ ହୋଇବେ
ଶ୍ରୀସଂପ୍ରଦାରେ ସେ ଆଉ ମନ୍ତ୍ର ନ କହିବେ ।
ରଖିବେ ସେ ଗୋପ୍ୟକରି ମହିମାକୁ ତହିଁ
ସହଜେ ତ ରାମନାମ ଅଲୋକ୍ୟ ହୁଅଇ ।
ଅଲୋକ୍ୟ ହେବା ସକାଶୁ ନ ଜାଣନ୍ତି ଜନ
ତେବେ ଯାଇ ରାମାନନ୍ଦ ହେବେ ଅବତୀର୍ଣ୍ଣ ।
ସାକ୍ଷାତେ ସେ ବିଷ୍ଣୁ କଳା ଘେନି ଜାତ ହେବେ
ଶ୍ରୀମହାବ୍ରତ ସଂପ୍ରଦା ସେହି ପ୍ରକାଶିବେ ।
ରାମାନନ୍ଦୀ ଧର୍ମବୋଲି ଭବେ ଯିବେ ଥୋଇ
ପ୍ରାଣୀମାନଙ୍କ କର୍ଣ୍ଣରେ ମନ୍ତ୍ରଦୀକ୍ଷା ଦେଇ ।
ତୁଳସୀ ଦାସ ସେ ରାମାନନ୍ଦ ଶିଷ୍ୟ ହେବେ
ତୁଳସୀ ରାମାୟଣକୁ ଭବେ ପ୍ରକାଶିବେ ।
ଶ୍ରୀରାମ ପ୍ରତିମା ବିନୁ ଯେ ତୁଳସୀ ଦାସ
ଯେତେ ମୂର୍ତ୍ତି ହେଲେ ମଥା ନ ନୁଆନ୍ତି ପାଶ ।
ତାହାଙ୍କ ମହିମା କିଛି ଶୁଣ ବେଦପତି
କୃଷ୍ଣ ଅବତାର ଯେଉଁ ଗୋପୀନାଥ ମୂର୍ତ୍ତି ।
ଦେବ ଆଳୟେ ସେ ପ୍ରଭୁ ବିଜେ କରିଥିବେ
ରାମମୂର୍ତ୍ତି ବୋଲି ସେହୁ ଦର୍ଶନକୁ ଯିବେ ।
ଗୋପୀନାଥଙ୍କୁ ନୋହିବେ କେଭେ ଦଣ୍ଡବତ
ପଚାରିବେ କୋଦଣ୍ଡ ତ ନାହିଁ ସ୍ୱାମୀ ହସ୍ତ ।
ତୁହି ଯେବେ ରାମନାଥ କୋଦଣ୍ଡକୁ ଧର
ତୁଳସୀ ଦାସ ସେବିବେ ତେବେ ତୋପୟର ।
ଏମନ୍ତ ବୋଲିଣ ଡୁହା ପଢ଼ନ୍ତେ ଗୋଟିଏ
ହେବେ ସେହି ଗୋପୀନାଥ ରାମନାଥ ପ୍ରାୟେ ।
ଧନୁଶର କମାଣକୁ କରେ ଥିବେ ଧରି
ଶ୍ରୀରଘୁନାଥ ସ୍ୱରୂପ ପ୍ରକାଶିବେ ହରି ।

ତେବେ ସେ ପାଦରେ ଯାଇ ସେବିବି ତୁଳସୀ
ଶୁଣ ଆହେ ପିତାମହ କହେ ବ୍ରହ୍ମରାଶି ।
ପୁଲକ ଦାସେ ହୋଇବେ ତାଙ୍କ ଅଧିକାରୀ
ପୂଜନ୍ତି ସର୍ବଆତ୍ମା ସେ ଶାଳଗ୍ରାମ କରି ।
ଯେତେବେଳେ ଯାହା ଆସି ମିଳେ ଯେଉଁ ଦ୍ରବ୍ୟ
ଜୀବମାନଙ୍କ ମୁଖରେ କହନ୍ତି ତା ଚବ୍ୟ ।
ତେବେଯାଇ ସେ ପୁଲକଦାସେ ତୋଷହୁନ୍ତି
ଆତ୍ମା ବ୍ୟତିରେକ ଆନ ଦେହ ନ ମାନନ୍ତି ।
ତାହାଙ୍କର ପରିବାର ଇଷ୍ଟ ପଞ୍ଚବଟୀ
ରାମ ତାରକା ଶୁଣିବେ ତା ମୁଖୁ ଚର୍ପଟି ।
ଏମନ୍ତ ଅଟନ୍ତି ଶିରୀ ସଂପ୍ରଦା ବୈଷ୍ଣବେ
ତାହାଙ୍କ ମହିମା ଧାମ କ୍ଷେତ୍ର ଶୁଣ ଏବେ ।
ପରମ ଶୂନ୍ୟଟି ମହାଲକ୍ଷ୍ମୀଙ୍କ ସଂପ୍ରଦା
ଶାଖା ଶ୍ରୀଅନନ୍ତ କହି ପ୍ରବର ନର୍ମଦା ।
ବେଦ ସାମବେଦ ପଞ୍ଚସହସ୍ର ଯେ ଜଣା
ଏହି ବେଦର ଚଳନ ଅଙ୍ଗୁଷ୍ଠିର ଭିଣା ।
ଗୋତ୍ରଯେ ଅଚ୍ୟୁତ ଦୀକ୍ଷା ସେ ବେଦରହଂସ
ଗମନ ଯେ ଶୂନ୍ୟଚକ୍ର ନିର୍ମାଲ୍ୟ ପ୍ରକାଶ ।
ହରି ନାରାୟଣ ଉପାସନା ଯେ ଭଜନ
ଓଁକାର ଯେ ମୂଳମନ୍ତ୍ର ରାମନାମ ଧାମ ।
ଚିତ୍ରକୂଟ ବିଳାସ ଅଯୋଧ୍ୟା ଧର୍ମଶାଳା
ମନ୍ଦାଗ୍ନି ଯେ କ୍ଷେତ୍ର କହି ହରିନାମ ମେଳା ।
ପଞ୍ଚବଟୀ ପରିକ୍ରମା ଧାନୁକୀ ତୀର୍ଥଟି
ରାମ ଉପାସକ ତପୋନିଷ୍ଠ ବଶିଷ୍ଠଟି ।
ଗୋଦାବରୀ ଆଚମନ ଶ୍ରୀବିନ୍ଦୁ ତିଳକ
ଦେବତା ଯେ ହନୁମାନ ଭକତି ସାତ୍ତ୍ୱିକ ।
ଶ୍ରୀରାମ ଗୋତ୍ରୀ ନାମ ଯେ ଆଖୁଡ଼ାଟି ଜାଣ
ଶବଦ ଦ୍ୱାରା ପରମହଂସ କହି ଧ୍ୟାନ ।
ଏବେ ଅଷ୍ଟ ସଖୀଙ୍କର ଶୁଣ ନାମ ପ୍ରଜ୍ଞା
ଲକ୍ଷଣା ସଖୀ ଶ୍ୟାମଳ ସୁହଂସୀ ସୁଭଗା ।
ଆବର ସୁସିଦ୍ଧା ପୁଣି ତେଜରୂପା ଜାଣ
ଚିରରେଖା ଚନ୍ଦ୍ରାବଳୀ ଅଟେ ଏ ପ୍ରମାଣ ।
ଶ୍ରୀରଘୁନାଥଙ୍କୁ ସେବିଥାନ୍ତି ଅଷ୍ଟସଖୀ ।
ଏକଥା ଅନ୍ତକରି କେ ନ ପାରଇ ଲେଖି ।
ଶ୍ରୀ ସଂପ୍ରଦାକୁ ଆଶ୍ରୟ ହେଲେ ରାମାନନ୍ଦୀ
ସମସ୍ତେ ଏ ସଂପ୍ରଦାକୁ ଏହିଠାରେ ବନ୍ଦି ।
ଏରୂପେ ଯେ ରାମାନନ୍ଦୀ ସଂପ୍ରଦା ଲକ୍ଷଣ
ମାଧବାନନ୍ଦୀର ଧର୍ମ କହିବା ହୋ ଶୁଣ ।
ପ୍ରଥମୁଁ ଏହି ସଂପ୍ରଦା ଅଟେ ଧ୍ୟାନଯନ୍ତ୍ର
ଓଁକାର କରି ଶ୍ରୀହରି ନାମ ମହାମନ୍ତ୍ର ।

ଆଦ୍ୟରୁ ବୈକୁଣ୍ଠନାଥ ସ୍ୱାମୀଙ୍କ ମୁଖରୁ
ଏକାକ୍ଷର ପ୍ରକାଶିଲେ ଶରୀର ଭିତରୁ ।
ସେ ଅକ୍ଷରକୁ ଶ୍ରୀହରି ତ୍ରିଅକ୍ଷର କଲେ
ଅନନ୍ତରୁ ନେଇଣ ସେ ଉପଦେଶ ଦେଲେ ।
ଅନନ୍ତ ସେ ଅକ୍ଷରକୁ ଧରି ଅନ୍ତର୍ଗତେ
ଚବିଶ ଅକ୍ଷର କରି କହିଲେ ବିଧାତେ ।
ସେ ଅକ୍ଷରକୁ ବିଧାତା ଚାରିଶ୍ଳୋକ ଭଣି
ଶ୍ରୀନରନାରାୟଣଙ୍କୁ ଶୁଣାଇବେ ଆଣି ।
ତାହା ଶୁଣି ନାରାୟଣ ନାରଦଙ୍କ ଆଗେ
ସେ ଦଶ ଶ୍ଳୋକରେ ବୁଝାଇଲେ ଅନୁରାଗେ ।
ସେ ଦଶ ଶ୍ଳୋକ ନାରଦ କର୍ଣ୍ଣପଥେ ଶୁଣି
ବ୍ୟାସ ଦେବଙ୍କୁ କହିବେ ପରଶ୍ଳୋକ ପୁଣି ।
ନାରଦଙ୍କ ଦୀକ୍ଷାପାଇ ବେଦବ୍ୟାସ ଋଷି
ଅଠର ସହସ୍ର ଶ୍ଳୋକ କହିବେ ସେ ବସି ।
ସେ ଶ୍ଳୋକ ବ୍ୟାସ ବିଚାର କରି ହୃଦଗତେ
ସୁପ୍ରସନ୍ନ ହୋଇ ଦେବେ ଶୁକଦେବ ହସ୍ତେ ।
ମହାବ୍ରହ୍ମ ପରମ ସେ ବ୍ୟାସଙ୍କର ସୁତ
କହିବେ ତା ମୁଖାଗ୍ରତ କରି ଭାଗବତ ।
ପରୀକ୍ଷ ରାଜା ଆଗରେ ଶୁଣାଇବେ ନେଇ
ଶ୍ରୀଭାଗବତର ତତ୍ତ୍ୱ କର୍ଣ୍ଣେ ଦେବେ କହି ।
ପରୀକ୍ଷିତ ଶୁଣିଲାରୁ ପ୍ରାଞ୍ଜଳିଲା ଫୁଟି
ଶୁଣ ହେ ବିଧାତା ସମ୍ପ୍ରଦାର ପୁଣ ଗଣ୍ଠି ।
ବ୍ରହ୍ମା ସମ୍ପ୍ରଦାର ଏବେ ଧାମ କ୍ଷେତ୍ର ଶୁଣ
ବୁଝି ନ ପାରିବା ଜନ ଗୋଟି ଗୋଟି ଗଣ ।
ଶ୍ୱେତଦ୍ୱୀପ ଧର୍ମଶାଳା ଧାମ ବଦରିକା
କ୍ଷେତ୍ର ଶ୍ରୀପୁରୁଷୋତ୍ତମ ନୃସିଂହ ସେବିକା ।
ରାହାସ ପଞ୍ଚମବେଦ ବେଦ ଋକବେଦ
ଦ୍ୱାରିକା ନାସିକା କହି ଆଚାର୍ଯ୍ୟ ନାରଦ ।
ଦେବତା ଶ୍ରୀଜଗନ୍ନାଥ ଇଷ୍ଟ ମହାଲକ୍ଷ୍ମୀ
ଶାଖା ସେ ଅନନ୍ତ ଗୋତ୍ର ଶ୍ରୀଅଚ୍ୟୁତ ସ୍ୱାମୀ ।
ମନ୍ତ୍ର ଅଟେ ମନ୍ତ୍ରରାଜ ହରିନାମ ମାଳା
ଅଜପା ବ୍ରହ୍ମଗାୟତ୍ରୀ ଜପା ଯୋଗଲୀଳା ।
ତୀର୍ଥ ଅଟେ ତୀର୍ଥରାଜ ଧ୍ୟାନ ପରଂବ୍ରହ୍ମ
ନଦୀ ନାମ ଗଙ୍ଗାବହି ଆନନ୍ଦ ଯେ ବ୍ରହ୍ମ ।
ଆଜ୍ଞା ଆତ୍ମା ଜ୍ଞାନ ସେବା ପବନ ଆଲଟ
ଜ୍ଞାନ ବେଦାନ୍ତର ବହି ବୃକ୍ଷ କଳ୍ପବଟ ।
ଭକ୍ତିର ସ୍ମରଣ ମୁକ୍ତି ରାଜସ ପ୍ରକାଶି
ରସ ଅଟେ ସୂର୍ଯ୍ୟ ରସ ଭାବ ସମଦର୍ଶୀ ।
ମଣୋହି ନିର୍ମାଲ୍ୟ ସେବା ପରମ ରହସ୍ୟ
ବିହାର ବୈକୁଣ୍ଠ ଆସନ ଯେ ନନ୍ଦିଘୋଷ ।

ଅଷ୍ଟ ସଖୀଙ୍କର ନାମ କହିବା ହେ ପୁଣି
ସୁକାନ୍ତି ସୁଲଗ୍ନ ଶ୍ୱେତରୂପୀ ସୁଲକ୍ଷଣୀ ।
ସୁଦୁର୍ଗା ସୁବ୍ରହ୍ମା କହି ସୁରତ ସୁଲେଖା
ଏହିରୂପେ ଅଷ୍ଟସଖୀ ଅଟନ୍ତି ଯେ ଲେଖା ।
ହରେ ରାମ ମହାମନ୍ତ୍ର ସର୍ବ ମୋକ୍ଷଦାତା
ଘେନନ୍ତି ତିଳକ ହରିମନ୍ଦିର ଯେ ଚିତା ।
ନାସାଅଗ୍ର କେଶଯାଏ ତିଳକ ପ୍ରକାଶେ
ହରିମନ୍ଦିର ଯେ ବ୍ରହ୍ମା ସଂପ୍ରଦାର ବସେ ।
ମୃତ୍ୟୁକାଳେ ଏ ତିଳକ ଗୋଟି ଯେବେ ମୋର
ଘେନିଥିଲେ ନ ପଶନ୍ତି ଯମର କିଙ୍କର ।
ସର୍ବଭୂତେ ନାରାୟଣ ଏ ଧର୍ମର ହେତୁ
ଏହା ନ ଜାଣି ମରନ୍ତି ଧରି ବାଦ କିନ୍ତୁ ।
ସମ୍ପ୍ରଦା ନ ଚିହ୍ନି ବାଦ ଲଗାନ୍ତି ଅଜ୍ଞାନେ
ବୈଷ୍ଣବ ଧର୍ମ ନିନ୍ଦନ୍ତି ମୁଖେ ମୂଢ଼ପଣେ ।
ଆପେ ଧର୍ମ ମୂଳ ବୋଲି ଆପେହ୍ୱନ୍ତି ବଡ଼
ନ ବୋଲନ୍ତି ଏହି ସିନା ବିଷ୍ଣୁଙ୍କର ଖେଡ଼ ।
ଯେ ଯେଉଁ ଭାବେ ଭଜିଲେ ଏକା ନରହରି
ଏହା ନ ପାଞ୍ଚି ବସନ୍ତି ମନେ ବାଦ ଧରି ।
ଆଦ୍ୟରୁ ଅଟନ୍ତି ଅପଣ୍ଡିତ ଯେତେ ଲୋକ
ନିନ୍ଦନ୍ତି ସଂପ୍ରଦାକୁ ସେ ହୋଇ ଅବିବେକ ।
ସନକର ଧର୍ମପନ୍ଥା କହିବା ହେ ଶୁଣ
ଏ ଧର୍ମ ନ ସେବିଲେଟି ପିଣ୍ଡ ଅକାରଣ ।
ନିମାନନ୍ଦୀ ସଂପ୍ରଦାର ଶୁଣ ଏବେ ଭେଦ
ବୈକୁଣ୍ଠ ନାଥଙ୍କ ମୁଖୁଁ ଜାତ ଚାରିବେଦ ।
ସେ ଚାରିବେଦର ତତ୍ତ୍ୱ ଏକତ୍ୱ ହୋଇଲା
ଏକତା ହୁଅନ୍ତେ ରାମ ଶବଦ ଟେକିଲା ।
ରାମ ଶବ୍ଦ ଶୁଣି ଧାଇଁଗଲେ ସନକାଦି
ରାମକୁ ଚିହ୍ନି ରାଧାକୁ ଚିହ୍ନି ହୃଦେ ଭେଦି ।
ରାଧାର ଯେହୁ ମହିମା ପାଇ ସେହୁ ଭେଦ
ରାଜାକୁ ଜୀବ କଲେ ଧାଟି ପରମ ସେ ପଦ
ଏ ଧାକୁ ସେ ରା କାଳେ ନିତ୍ୟସ୍ଥଳେ ଘେନି
ଭ୍ରମୁଛନ୍ତି ଅନୁକ୍ଷଣେ ଦିବସ ରଜନୀ
ସେ ରାଧାକୁ ଅନୁକ୍ଷଣେ ମୁରଲୀ ସ୍ୱରରେ
ତାହାର ନାମକୁ ଧରି ଜପନ୍ତି ସ୍ୱରରେ ।
ରାଧାକୁ ଏତେ ଲୟ ସେ ଶ୍ରୀକୃଷ୍ଣର ଯେଣୁ
ଜୀବଙ୍କ ହୃଦେ ଭଜନ ହେଉଅଛି ତେଣୁ ।
ସେହି ଭଜନ ଗୋଟି ଯେ ଅଟେ ବ୍ରହ୍ମଜ୍ଞାନ
ବେନି ଅୟୁତ ଷୋଡ଼ଶ ଆମ୍ଭର ଭଜନ ।
ଦିନକୁ ଏତିକି ଲେଖା ଭଜନ ଯେ କରୁ
ସଂସାରେ ଜନମ ହେଉ ଶରୀରକୁ ଧରୁ ।

ଲଗାନ୍ତି ଯେ ଭଜନକୁ ଚିହ୍ନ ଲୋକ ଗୋଳ
ବୋଲନ୍ତି ଆମ୍ଭର ରାଧା ନାମ ଏକା ମୂଳ ।
ସେହି ରାଧା ସମସ୍ତଙ୍କ ଶରୀରେ ରହିଛି
ଏହି ରାଧା ପୁନରପି ବ୍ରହ୍ମ ବୋଲାଉଛି ।
ରାଧା ଭଜନ ଚିହ୍ନିଲେ ସଂସାରରୁ ତରି
ନୋହିଲେ ଦଦରା ନାବେ ପ୍ରାୟ ବସି ମରି
ଏମନ୍ତ ଅଟଇ ରାଧା ଶବଦ ମହିମା
ରା ଅର୍ଥେ ଜୀବ ଧା ପରମରେ ପରିକ୍ରମା ।
ଏହି ରାଧା ଶରୀରକୁ ବ୍ରହ୍ମାଦି ଶଙ୍କର
ଭଜନ୍ତି ଜୀବ ପରମ କରି ନିରନ୍ତର ।
ଏହି ଜୀବ ପରମଟି ସବୁ ହୃଦେ ସ୍ଥିତି
ଯେ ଚିହ୍ନି ଭଜନ ତାକୁ କରଇ ମୁଁ ଗତି ।
ଏ ଜୀବ ପରମ ହୃଦ ମଧ୍ୟେ ଆମ୍ଭେ ଘେନି
ମଞ୍ଚରେ ଯାଇଁ ଜନମ ହେଉ ନର ଯୋନି ।
ସେ ହୃଦ ରହିଛି ରାଧା ବହେ ମୁଁ ତା ହୃଦେ
ପ୍ରକାଶୁ ନିମଜ୍ଜି ଜୀବରୂପେ ଆତ୍ମାପାଦେ ।
ଏହିମତି ରାଧାକୁ ମୁଁ ଅନୁକ୍ଷଣେ ରମେ
ମୁଁ ରମୂ ଲୋକେ କରନ୍ତି ମୋର ପ୍ରିୟନାମେ
ରାଟି ପଦ୍ମାଳୟା ଧାଟି କରମ ଈଶ୍ୱର
ଏହିରୂପେ ରାଧା ନାମ ଦୁଇଟି ଅକ୍ଷର ।
ରାଧା ବେନି ଅକ୍ଷରଟି ପ୍ରତ୍ୟକ୍ଷରେ ବ୍ରହ୍ମ
ନ ଜାଣିଣ ଭୁଲି ପ୍ରାଣୀ ହେଉଛନ୍ତି ଭ୍ରମ ।
ସନକ ଯେବଣ ରାଧା ବେନି କର୍ଣ୍ଣ ଘେନି
ଉପଦେଶ ନେବେ ଯାଇଁ ମନ୍ତ୍ର କର୍ଣ୍ଣେ ଘେନି
ସନକ ସମ୍ପ୍ରଦା ବୋଲି ରହିବେ ଜଗତେ
ରଖିଲେ ପ୍ରାଣୀମନେଯେଚିହ୍ନିବେଟି ମୋତେ
ନ ଚିହ୍ନିବା କଥା ଶୁଣ କହିବା ହେ ବିହି
ନାମର ତତ୍ତ୍ୱ ଯେ ଆତ୍ମା ପିଣ୍ଡେ ଚିହ୍ନଯାଇଁ ।
ଶ୍ରୀରାଧା କୃଷ୍ଣ ନାମଟି ପିଣ୍ଡ ସିନା ମୋର
ସେ ପିଣ୍ଡରେ ଆତ୍ମା ତହିଁ ଅଟେ ତତ୍ତ୍ୱସାର ।
ପିଣ୍ଡକୁ ଭଜନ୍ତି ମୋର ଆତ୍ମା ନ ଭଜନ୍ତି
ଆତ୍ମାକୁ ନଭଜି ନରେ ବ୍ୟର୍ଥେ ମରିଯାନ୍ତି ।
ମୋତେ ନ ଚିହ୍ନି ମଲାରୁ ହେବ ଅବା କିସ
ତେଣୁଟି ଆମ୍ଭେ ଭକ୍ତକୁ କରିବୁ ପ୍ରକାଶ ।
ଯେମନ୍ତେ ଯେ ଭଜେ ବ୍ରହ୍ମ ଜାଣ ଉପୁଜିବ
ଆମ୍ଭର ଅନେ ପ୍ରକାଶି ଶରୀରେ ଭଜିବ ।
ଦଶମାସ ଗର୍ଭଗତେ ଗୌରବର୍ଣ୍ଣ ହୋଇ
ନିମମୂଳେ ଜନ୍ମି ନାମ ବହିବ ନିମାଇଁ ।
ଜୀବ ପରମରେ ନେଇ ରଖନ୍ତେ ଚୈତନ୍ୟ
ତେଣୁଟି ଚୈତନ୍ୟ ନାମ ବହିବେ ସେଦିନ
ଏହି ଏକା ନିତ୍ୟସ୍ଥଳ ରାହାସ ଜାଣିବ
ଚଇତନ୍ୟ ଧର୍ମହୋଇ ସଂସାରେ ଥୋଇବ ।
ସେ ନିମାନନ୍ଦୀ ମୋହର ସାକ୍ଷାତରେ ଦେହୀ
ମହାମନ୍ତ୍ର ସାଧୁଙ୍କ କର୍ଣ୍ଣେ ଦେବେ କହି ।
ପ୍ରାଣୀମାନଙ୍କ ମଧ୍ୟରେ ଦୁର୍ଜ୍ଜନ ଯେ ଥିବେ
ତାହାଙ୍କୁ ଦର୍ଶନ କରି ସର୍ବେ କ୍ଷୟ ଯିବେ ।
ସମସ୍ତେ ସୁଜ୍ଞାନ ପାଇ ହୋଇବେ ଆନନ୍ଦ
ଧନ୍ୟ ସମ୍ପ୍ରଦା ମହିମା ଧନ୍ୟ ନିମାନନ୍ଦ ।
ଏହି ନିମାନନ୍ଦଙ୍କର ପାରିଷଦ ଗଣ
ରୂପ ସନାତନ ଦୁଇ ସେବିବେ ଖଟିଣ ।
ଆବର ଚେଲା ତାଙ୍କରହେବେ ଶୁଣଯେତେ
କହିବା ଶୁଣ ହେ ବ୍ରହ୍ମତାହା ଭବିଷ୍ୟତେ ।
ଗଦାଧର ପଣ୍ଡିତ ଯେ ହେବେ ଆଦିଶିଷ୍ୟ
ଭଜିଲେ ମହା ବ୍ରାହ୍ମଣ ହୋଇ ଶ୍ରୀନିବାସ ।
ତାହାଙ୍କର ଶିଷ୍ୟ ହେବେ ମଥୁରାମଙ୍ଗଳେ
ଶ୍ରୀଗୋବିନ୍ଦଙ୍କ ଚରଣ ଭଜିବେ ନିଶ୍ଚଳେ ।
ଗୋପାଳଆଚାର୍ଯ୍ୟହେବେ ତାଙ୍କସେବାକାରୀ
କରିବେ ସେ କୁଞ୍ଜବିହାରୀଙ୍କି ଅଧିକାରୀ ।
ତାହାଙ୍କର ଶିଷ୍ୟ ମଧୁମଙ୍ଗଳ ହୋଇବେ
ସନନ୍ଦ ଆଚାର୍ଯ୍ୟଙ୍କୁ ସେ ଶିଷ୍ୟ କରିନେବେ ।
ସେ ଆଚାର୍ଯ୍ୟଙ୍କର ଶିଷ୍ୟହେବେ ରସାନନ୍ଦ
ରସାନନ୍ଦଙ୍କର ଶିଷ୍ୟ ହୋଇବେ ବିନୋଦ
ବିନୋଦଙ୍କ ଶିଷ୍ୟ ପୁଣିନିତ୍ୟାନନ୍ଦ ହେବେ
ରାସ ମଣ୍ଡଳେ ସମ୍ପ୍ରଦା ସେହୁ ପ୍ରକାଶିବେ ।
ତାହାଙ୍କର ଶିଷ୍ୟ ପୁଣି ହେବେ ବ୍ରଜବାସୀ
ଶ୍ୟାମଗୋରାକୁ କରିବେ ସେହି ଶିଷ୍ୟ ଆସି
ସେହିଠାରେ ଶ୍ୟାମକୁଣ୍ଡ ବୋଲିବେକଲୋକ
ଗାଇବେ ତାଳ ମୃଦଙ୍ଗ ବାଇ ପୃଥ୍ୱୀଯାକ ।
ଏରୂପେ ଅଟନ୍ତି ଶିଷ୍ୟ ପୁଣି ନିମାନନ୍ଦୀ
ବ୍ରହ୍ମଜ୍ଞାନ ବ୍ୟତିରେକେ ଆନକୁ ନ ବନ୍ଦୀ ।
ଏ ସମ୍ପ୍ରଦାର ଶୁଣିବା ଏବେ ଜ୍ଞାନ କ୍ଷେତ୍ର
ପଢ଼ିଲେ ମୋକ୍ଷ ଅଟଇ ଶୁଣିଲେ ପବିତ୍ର ।
ବ୍ରହ୍ମେ ଚିତ୍ତକୁ ଚୈତନ୍ୟ କର୍ମ ବୋଲି କହି
ତେଣୁ ସେହି ନିମାନନ୍ଦ ଅଟେ ବ୍ରହ୍ମଧ୍ୟାୟୀ ।
ପ୍ରଥମ ଆସନ ବୁଦ୍ଧ ଅଟେ ମନ୍ତ୍ରଶୂନ
ଓଁକାର ଆଦିମୂଳ ଶ୍ରୀମହାମନ୍ତ୍ର ଧ୍ୟାନ ।
ସନକ ଧର୍ମେ ପରମହଂସ ଅଟେ ଦିକ୍ଷା
ହରିମନ୍ଦିର ଯେ ନାସା ଅର୍ଦ୍ଧଅଟେ ଶିଖା ।
ସୁଖ ମହତ୍ତ୍ୱ ମଥୁରା ତାର ଧର୍ମଶାଳା
ବିଳାସ ଶ୍ରୀବୃନ୍ଦାବନ ହରିନାମ ମାଳା ।

ଗୋକୁଳ କ୍ଷେତ୍ର ଗୋମତୀ ତୀର୍ଥରେ ଯେନାମ
ଗୋବର୍ଦ୍ଧନ ପରିକ୍ରମା ଦ୍ୱାରକା ଯେ ଧାମ ।
କୃଷ୍ଣ ଉପାସକ ପୁଣି ରକ୍ମିଣୀ ତୋ ଇଷ୍ଟ
ବେଦ ଅଟେ ଯଦୁର୍ବେଦ କଦମ୍ବ ଯେ ବଟ ।
ଗରୁଡ଼ ଦେବତା ଚକ୍ଷୁଦ୍ୱାର ତାକୁ କହି
ନାରଦ ଆଚାର୍ଯ୍ୟ ଗୋତ୍ର ଅଚ୍ୟୁତ ଅଟଇ ।
ଗୋପାଳ ଗାୟତ୍ରୀ ବଂଶୀ ଗୋପାଳ ଭଜନ
ଗୋପିକାରେ ଭାବ ଗୋପୀ ତିଳକଚନ୍ଦନ ।
ଦୁର୍ବାସା ନାମେ ଯେ ଋଷି ମଠ ବଇକୁଣ୍ଠ
ଆଦିମାତା କମଳା ଯେ ସ୍ୱର୍ଗ ମୁନିଶ୍ରେଷ୍ଠ ।
ଶ୍ୟାମକୁଣ୍ଡ ରାଧାକୁଣ୍ଡ ଅଟଇ ସେ ସ୍ୱର୍ଗ
ନବଧା ଭକ୍ତି ସ୍ମରଣ ପୂଜା ଅଙ୍ଗ ଯୋଗ ।
ସାରୂପ୍ୟ ଯେ ମୁକ୍ତି କହି ରସ ପ୍ରେମ ଜାଣ
ଅଷ୍ଟ ସଖୀଙ୍କର ନାମ କହିବା ହୋ ଶୁଣ ।
ତୃଙ୍ଗବିଦ୍ୟା ବିଶାଖା ଯେ ଚମ୍ପକଲତିକା
ରଙ୍ଗଦେବୀସୁଦେବୀ ଯେ ଆଦ୍ୟ ଇନ୍ଦୁରେଖା ।
ଲଳିତାକୁ ମିଶାଇ ଯେ ଆଠ ଚିତ୍ରରେଖା
ଦାମ ସୁଦାମ ଯେ ମଧୁମଙ୍ଗଳ ଏ ସଖା ।
ରସମଞ୍ଜରୀକୁ ପ୍ରେମମଞ୍ଜରୀ ଯେ କହି
ନବ ଅନଙ୍ଗମଞ୍ଜରୀ ଯୁଗଳରେ ମୋହି ।
ଶ୍ରୀଗୋବର୍ଦ୍ଧନ ଯେ ପୂଜା ନିର୍ମାଲ୍ୟ ଯେ ଭୋଗ
ଅଷ୍ଟପ୍ରହରରେ ଅଷ୍ଟନାୟିକାଙ୍କ ଯୋଗ ।
ଗୋବିନ୍ଦ ଶ୍ରୀମୁଖେ ଲାଗି କରନ୍ତି ଏ ନିତି
ଏ ସଂପ୍ରଦାୟର ମହିମା ଅଟେ ବିଷ୍ଣୁଭକ୍ତି ।
ଶ୍ରୀକୃଷ୍ଣଙ୍କୁ ଅନାଇ ଯେ ଭକ୍ତି ଉପୁଜାଇ
ସେମାନଙ୍କୁ ଏ ସଂସାରେ ସାଧୁ ବୋଲିକହି
ଏମନ୍ତ ସମ୍ପ୍ରଦା ଏ ଯେ ଅଟଇ ଅଲୋକ୍ୟ
ବ୍ରହ୍ମା ପୁଣି କହନ୍ତି ଏ ଅଟେ ପୁଣ୍ୟଶ୍ଳୋକ
ପୁଣ୍ୟଶ୍ଳୋକ ତୁମ୍ଭ ପାଦେ ମନ ରହୁ ମୋର
ବିପ୍ର ପୀତାମ୍ବର ଦାସ ସଦା ପରିଚାର ।
ଶ୍ରୀନୃସିଂହ ପୁରାଣରେ ଏ ଅପୂର୍ବ କଥା
ଶୁଣିଲେ ତ ଏକମନେ ତୁଟେ ଭବବ୍ୟଥା ।
କହନ୍ତେ ତ ଅଗୋଚର ପଢ଼ନ୍ତେ ଗହନ
ସଂକ୍ଷେପି ମୁଁ କାହାବଳେ କରିବି ଲେଖନ ।
ସାଧୁ ଜନମାନେ ମୋର ନ ଘେନିବ ଦୋଷ
ଲେଖିବାବେଳେ ବୟସ ମୋର ସତାଇଶ ।
ନାରଦାଦି ମୁନିଙ୍କି ତ ନୁହଇ ଏ ଜଣା
ମୁଁ କିସ ଲେଖିବି ତାହା ଅଟେଅକଳଣା ।
କିଞ୍ଚିତ କରୁଣା ମୋତେ କଲେ ଜଗନ୍ନାଥ
ତେଣୁ ମୁଁ ଜନଙ୍କ ହିତେ ବଖାଣଇ ଗୀତ ।

ଜ୍ଞାନୀଜନଙ୍କୁ ପରମତତ୍ତ୍ୱ ଏହି ବାଣୀ
ପାପୀଙ୍କୁ ଲାଗିବ ବଜ୍ରପ୍ରାୟେ ଏହା ଶୁଣି ।
ସୁପଣ୍ଡିତ ଜନେ ମୋର ଘେନିବା ଭକତି
ଏ ସମ୍ପ୍ରଦା କହିବାକୁ କିସ ମୋର ଶକ୍ତି ।
ଏ କଳିକାଳ ହସ୍ତରୁ ପାଇବ ନିସ୍ତାର
ବିଷ୍ଣୁର ମହିମା ଶୁଣି ପାପ କର ଦୂର ।



## ଶ୍ୟାମାନନ୍ଦୀ ଦୀକ୍ଷା କଥନ ଓ ବ୍ରହ୍ମାଣ୍ଡ ପ୍ରଶଂସା

ପରୀକ୍ଷ ରାଜା ପଚାରେ କହେ ଶୁକମୁନି
ସଂସାର ଜନଙ୍କ ହିତେ ଏ ପୁରାଣ ବାଣୀ ।
ଏଥୁଅନନ୍ତରେ ପୁଣି ବିଧାତା ପୁରୁଷ
ପଚାରନ୍ତି ପରଂବ୍ରହ୍ମ ବିଷ୍ଣୁଙ୍କର ପାଶ ।
ବୋଲନ୍ତି ସେ କହ ପ୍ରଭୁ ଶ୍ୟାମାନନ୍ଦୀ ଦୀକ୍ଷା
ତବ ମୁଖରୁ ଶୁଣିଲେ ହେବ ପ୍ରାଣ ରକ୍ଷା ।
ଏରୂପେ ଛାମୁରେ ବସି ପୁଚ୍ଛେ ଚଉମଥା
କହନ୍ତି ଶ୍ରୀନାରାୟଣ ଶ୍ୟାମାନନ୍ଦୀ ପନ୍ଥା ।
ବୋଲନ୍ତି ହେ ସାବଧାନେ ଶୁଣ ବେଦବର
ବ୍ରାହ୍ମଣ ଅଙ୍ଗୁ ଜନ୍ମିବ ଶ୍ୟାମାନନ୍ଦୀ ମୋର
ଏଣୁ ଏହି ବ୍ରାହ୍ମଣଟି ସର୍ବବର୍ଣ୍ଣେ ଗୁରୁ
ବ୍ରାହ୍ମଣ ପ୍ରାଣୀଙ୍କି ତାର ସର୍ବ ଆପଦରୁ ।
ବ୍ରାହ୍ମଣଠାରେ ଯେ ପ୍ରାଣୀ ଦୋଷ ପ୍ରକାଶଇ
ବିଷ୍ଣୁର ଦୋରେହା ସେହିପ୍ରତ୍ୟକ୍ଷେ ଅଟଇ
ବ୍ରାହ୍ମଣ ବୋଲି ଯେବଣ ତିନୋଟି ଅକ୍ଷର
ପ୍ରତ୍ୟକ୍ଷ ଅଟନ୍ତି ବ୍ରହ୍ମା ବିଷ୍ଣୁ ମହେଶ୍ୱର
ଏଣୁ ବିପ୍ର ପାଦରଜ ଘେନନ୍ତି ସେ ନିତି
ତାହାଙ୍କ ଅରିଷ୍ଟ ନିଶ୍ଚେ ଖଣ୍ଡନ ହୁଏଟି ।
ବ୍ରାହ୍ମଣ ମୁଖେ ଦିଅଇ ନିତ୍ୟେ ଯେହୁ ଗ୍ରାସ
ତାହା ଭୁକ୍ତ ପାଦ ବିଷ୍ଣୁ କରନ୍ତି ଅବଶ୍ୟ
ବ୍ରାହ୍ମଣ ବାକ୍ୟରେ ହରିଥାନ୍ତି ନିଶ୍ଚେ ଜାଣ
ସେ ଯାହା ବୋଲନ୍ତି ବିଷ୍ଣୁ କଇନ୍ତି ତକ୍ଷଣ ।
ବ୍ରାହ୍ମଣ ସନ୍ତୋଷ ହେଲେ ବିଷ୍ଣୁ ତୋଷହୁନ୍ତି
ବ୍ରାହ୍ମଣଙ୍କୁ ନିନ୍ଦାକଲେ ବିଷ୍ଣୁ ନ ସହନ୍ତି ।
ବିଷ୍ଣୁ ନାମ ଲକ୍ଷେ ଜପେକଲେ ଫଳଯେତେ
ଏକେ ବ୍ରାହ୍ମଣର ନିତ୍ୟ ସେବାଫଳତେତେ
ସହସ୍ରେକ ଶିବଲିଙ୍ଗ ପୂଜିଲେ ଯେ ଭକ୍ତି
ଏକ ବ୍ରାହ୍ମଣକୁ ପୂଜା କଲେକେତେ ମୁକ୍ତି ।
ସହସ୍ରେକ ଶାଳଗ୍ରାମ ପୂଜିଲେ ଯେ ପୁଣ୍ୟ
ତହୁଁ ସହସ୍ର ଅଧିକ ବ୍ରାହ୍ମଣ ଭୋଜନ ।

ବ୍ରାହ୍ମଣ ଯେ ଦ୍ରବ୍ୟ ଭୁଞ୍ଜେ ବିଷ୍ଣୁତା ଭୁଞ୍ଜଇ
ଏଣୁ ବ୍ରାହ୍ମଣ ବିଷ୍ଣୁର ପ୍ରାଣଟି ଅଟଇ ।
ବ୍ରାହ୍ମଣର ଥିବାସ୍ଥାନ ପବିତ୍ର ଯେ ଅଟେ
ବ୍ରାହ୍ମଣ ସଂସ୍କାର କଲେ ଜାଣ ସବୁ ଘଟେ ।
ବ୍ରାହ୍ମଣର ବାକ୍ୟଯାକ ସ୍ୱୟଂ ବିଷ୍ଣୁଜାଣ
ସମସ୍ତ ଜାତିର ଶ୍ରେଷ୍ଠ ଅଟଇ ବ୍ରାହ୍ମଣ ।
ବ୍ରାହ୍ମଣ ଅନଳ ଦୁହେଁ ଅଟନ୍ତି ସମାନ
ହୋ ମସ୍ଥାନେ ବ୍ରାହ୍ମଣଙ୍କୁ କରିବ ବରଣ ।
ହୋମ ଯଜ୍ଞ ସ୍ଥାନରେ ଯେ ଘୃତ ଥିବ ବଢ଼ି
ତହୁଁ ଚଉଠେ ବ୍ରାହ୍ମଣ ନେବେ ବେଦପଢ଼ି
ବ୍ରାହ୍ମଣ ଭକ୍ଷିଲେ ଅଗ୍ନି ହୁଅନ୍ତି ସନ୍ତୋଷ
ଏଣୁ ବ୍ରାହ୍ମଣ ଅନଳ ଦୁହେଁ ଏକ ଅଂଶ ।
ଅନଳ ସମାନ ଜାଣ ଦ୍ୱିଜ ଜଠରାଗ୍ନି
ବ୍ରାହ୍ମଣ ସନ୍ତୋଷ ହେଲେ ସନ୍ତୋଷଯେବହ୍ନି
ବ୍ରାହ୍ମଣ କରନ୍ତି ଯାହା ଆଶୀର୍ବାଦ ମୁଖେ
ଶ୍ରୀବିଷ୍ଣୁ ବଚନ ବୋଲି ମଣିବ ପ୍ରତ୍ୟକ୍ଷେ ।
ବ୍ରାହ୍ମଣର ଗର୍ଭଯାକ ବିଷ୍ଣୁଗର୍ଭ ଅଟେ
ବ୍ରାହ୍ମଣର ଦେଲା ଗ୍ରାସ ଭାଗ ବଇକୁଣ୍ଠେ ।
ଏଣୁ ବ୍ରାହ୍ମଣକୁ କେହି ନ କର ଅଶ୍ରଦ୍ଧା
ବ୍ରାହ୍ମଣଟି ବିଷ୍ଣୁଙ୍କର ଅଟନ୍ତି ସମ୍ପ୍ରଦା ।
ବ୍ରାହ୍ମଣକୁଳେ ଉତ୍ତମ ଜାଣ ଭକ୍ତ ମୋର
ଜନମିବେ ଶ୍ୟାମାନନ୍ଦୀ ବୋଲି ବିପ୍ରବର ।
ରୁଦ୍ର ଧର୍ମରେ ହୋଇବେ ସେହୁ ଅଧିକାରୀ
ତେବେ ମହାମନ୍ତ୍ର କର୍ଣ୍ଣେ ଲୋକଙ୍କୁ ଉଦ୍ଧାରି ।
ସାକ୍ଷାତରେ ବିଷ୍ଣୁକଳା ଘେନି ଜାତହେବେ
ପ୍ରାଣୀଙ୍କୁ ଘେନିଣ ରୁଦ୍ର ଧର୍ମଦୀକ୍ଷା ଦେବେ ।
କରିବେ ବିଷ୍ଣୁ ନାମକୁ ଯେଣୁ ପ୍ରତିକାର
ତେଣୁ ନାମ ବିଷ୍ଣୁ ଶ୍ୟାମ ହେବ ସମ୍ପ୍ରଦାର
ସେହି ବିଷ୍ଣୁ ଶ୍ୟାମଶିଷ୍ୟ ସତ୍ୟାନନ୍ଦ ହେବେ
ସତ୍ୟାନନ୍ଦ ଶିଷ୍ୟ ନିତ୍ୟଚାରୀ ପଦ୍ମନାଭେ ।
ସେ ପଦ୍ମନାଭଙ୍କ ଶିଷ୍ୟ ଗୋକୁଳ ପଣ୍ଡିତ
ଗୋକୁଳ ପଣ୍ଡିତ ଶିଷ୍ୟ ଅଟେ ଯଶୋବନ୍ତ ।
ଯଶୋବନ୍ତଙ୍କର ଶିଷ୍ୟ ହୋଇବେ ବିଭୂତି
ବିଭୂତିଙ୍କ ଶିଷ୍ୟ ହେବେ ସଦାନନ୍ଦ ଯତି ।
ତାହାଙ୍କ ଶିଷ୍ୟ ଲକ୍ଷ୍ମଣାଗ୍ରଜ ବୋଲାଇବେ
ତାହାଙ୍କର ଶିଷ୍ୟ ଲକ୍ଷ୍ମୀ ସାଗରେ ବୈଷ୍ଣବେ
ଲକ୍ଷ୍ମୀସାଗର କରିଣ କହି ନ ସରଇ
ଗୋଟାଏ ହେଲେହେଁ ଶୁଣ ଦେଇଥିବାକହି
ସେ ସାଧୁ ମଠରୁ ଜାଣ ବାହାରିବେ ଯେବେ
ନିଶାଣ କରନ୍ତି ଅନୁକୂଳେ ତେବେ ଶୁଭେ ।
ଯହିଁ ଗଲେ ସେ ନିଶାଣ ବଜାଇ ଯାଆନ୍ତି
କହନ୍ତି ସେ ଆଦିମୂଳ ଶୁଣ ବେଦପତି ।
ଏରୂପେ ମିଳନ୍ତେ କ୍ଷେତ୍ରମଧ୍ୟେ ସାଧୁ ଆସି
ନିଶାଣ ବଜାଉ ବଡ଼ଦାଣ୍ଡେ ଯାନ୍ତେପଶି ।
ତାହା ସଙ୍ଖୋଳିବେ ଜାଣ ଗଜପତି ରାଜା
ବୋଲିବେ କାହିଁର ଏହି ଅଟେ ବାଇରାଜା
ବୋଲିବେ ଲୋକେ ମଣିମା ବଇଷ୍ଣବ ଜଣେ
ବଜାନ୍ତି ଯେ ନିଶାଣିକି ଏବେ ସାଧୁପଣେ ।
ରାଜା ବୋଲିବେ ଏହାକୁଦେଲାକେ ତାହାକୁ
ଏହି ବାଦ୍ୟ ଶୋଭାପାଏ ଆମ୍ଭ ରହଣକୁ ।
ନୃପତିଙ୍କୁ ସିନା ଏହି ବାଦ୍ୟ ଶୋଭାପାଇ
କାହିଁକି ବଜାନ୍ତି ବେଗେ ସଙ୍ଖୋଳ ତ ଯାଇ
ରାଜା ଆଜ୍ଞା ପାଇ ତହୁଁ ଧାଇଁଗଲେ ଲୋକେ
ମିଳିଲେ ସେ ଯାଇଁ ସାଧୁ ମହନ୍ତଙ୍କ ପାଖେ ।
ବୋଲିବେ ଆହେ ଗୋସାଇଁ ରଖଏବାଜଣା
ଶ୍ରୀମହାରାଜା ଏ କରୁଅଛନ୍ତି ବୋଲଣା ।
ସେ ବଇଷ୍ଣବ ବୋଲିବେ ଶୁଣ ତେବେଦୂତେ
ରାଜାଏ ତେବେ ବାକ୍ୟକୁ ଅଟକିଲେ ସତେ
ନ ବାଜୁରେ ନ ବାଜୁରେ କାହାର ନିଶାଣି
ପଛରେ ଗୁହାରି କଲେ ନ ବାଜିବ ପୁଣି ।
ପିଟିଲେ ଯେ ଯେତେ ମତେ ନ ଶୁଭିଲାନାଦ
ଏହା ଶୁଣି ସଭାଲୋକେ ହୋଇଲେ ସ୍ତବଧ ।
ଆଶ୍ଚର୍ଯ୍ୟ ହୋଇ ବଷ୍ଣେବ ପାଶେରାଜାଯିବେ ।
ବହୁତ କାର୍ପଣ୍ୟ ହୋଇ ଦଣ୍ଡବତ ହେବେ ।
ବୋଇଲେ ନିଶାଣ କାହିଁକି ଯେ ନ ବାଜଇ
ଏଥକୁ କହୁଛି ଦୟାକର ଆଜ୍ଞା ହୋଇ ।
ଗୋସାଇଁ ବୋଲିବେ ଆଜ୍ଞା ହୁଅନ୍ତାକିଅନ୍ୟ
ଆପଣା ନାହିଁ କଲାରୁ ନ ବାଜେ ସେ ଜାଣ
ଗୁରୁ ଆଜ୍ଞା ବିଷ୍ଣୁ ଆଜ୍ଞା ରାଜାଆଜ୍ଞା ତିନି
ଏ ତିନି ଆଜ୍ଞାକୁ ସର୍ବେ ଜଗତରେ ମାନି ।
ଶ୍ରୀ ଗଜପତି ରାଜାର ମେଣ୍ଟନ୍ତା କେ ବାକ୍ୟ
ଆମ୍ଭ ନ ବାଜିବାରୁ ନ ବାଜେ ବାଦ୍ୟଯାକ
ଶୁଣି ଗଜପତି ରାଜା ହୋଇ ହସ ହସ
ବୋଲିବେକ ଆଜ୍ଞାକର ବାଜୁ ବାଦ୍ୟଘୋଷ
ବୋଲିବେ ପୁଣି ମହନ୍ତ ସାଧୁ ବାଜୁ ବାଦ୍ୟ
ବାଜିବେ ବୋଲନ୍ତେ ବାଜୁବାଜୁ ଘଣ୍ଟନାଦ
ଇତ୍ୟାଦି ବାଦ୍ୟ ବାଜନ୍ତେ ସର୍ବେଯିବେବାଜି
ସାଧୁଙ୍କ ମହିମା ଏଡ଼େ ମୂର୍ଖେଟି ନ ବୁଝି ।
ଶୁଣ ହେ ବିଧାତା ଏବେ ଏ ଧର୍ମର ଆଣ୍ଟ
ତାଙ୍କ ପରିବାର ହେବେ ନାରାୟଣ ଭଣ୍ଟ ।

ନାରାୟଣଙ୍କର ଶିଷ୍ୟ ମଥୁରାମଙ୍ଗଳ
ମଥୁରାମଙ୍ଗଳ ଶିଷ୍ୟ ମୋହନ ଗୋପାଳ ।
ମୋହନ ଗୋପାଳ ଶିଷଞ୍ଜ ଶ୍ରୀମନ୍ତ ମହନ୍ତ
ଶ୍ରୀମନ୍ତ ମହନ୍ତ ଶିଷ୍ୟ ଗୌତମ ପଣ୍ଡିତ ।
ସେହି ଗଉତମ ଶିଷ୍ୟ ହେବେ ଜୟଦେବ
ସେହିଟି ଗୀତଗୋବିନ୍ଦ କରିଯିବେ ଭବ ।
ଶ୍ୟାମାନନ୍ଦ ସମ୍ପ୍ରଦାୟ ଗୁରୁ ଏ ରୁପରେ
ସମସ୍ତହିଁ ବିଷ୍ଣୁଖେଳ କହିଲେ ନ ସରେ ।
ବିଷ୍ଣୁଖେଳ ପାଦେ ସେବା କରନ୍ତି ଏମାନେ
ମହାଲକ୍ଷ୍ମୀ ବ୍ୟତିରେକେ ନମାନନ୍ତି ଆନେ
କେଡ଼େ ଶାନ୍ତି ଏହୁ ସମ୍ପ୍ରଦାୟର ଧାମ ଗୁଣ
ଶ୍ୟାମାନନ୍ଦ ସମ୍ପାଦର ଧାମ ଶାନ୍ତି ପୁଣ ।
କ୍ଷୀର ଶାୟୀ ଧର୍ମଶାଳା ନାମେ ବଇକୁଣ୍ଠ
ଗୋଲକକ୍ଷେତ୍ର ଦ୍ୱାରକାହାର ଗୋଲାହାଟ
ଓଁକାରଟି ମୂଳଯନ୍ତ୍ର ଧାରଣ ଯେ ବ୍ରହ୍ମ
ସାଯୁଜ୍ୟ ମୁକୁତି କହି ମୁଖବେଣୀ ନାମ ।
ଗୋତ୍ର ସୂର୍ଯ୍ୟାତ୍ମକ ଦେବ ଅଥରବ ବେଦ
ଗଉତମ ନାମେ ଋଷି ଆଚାର୍ଯ୍ୟ ନାରଦ ।
ପରମହଂସ ଧରମ ପରଂହଂସ ଧ୍ୟାୟୀ
ବ୍ରହ୍ମ ବଡ଼ଦାଣ୍ଡ ଆତ୍ମା ବଜାରଟି କହି ।
କରନ୍ତି ଅଧାତ୍ମ ଜ୍ୟୋତି ବ୍ରହ୍ମ ପ୍ରାଣଛନ୍ଦା
ଧନ୍ୟ ଏ ଶ୍ୟାମାନନ୍ଦୀର ମହିମା ସମ୍ପଦା
ତିନି ଚିହ୍ନଡ଼ି ତ୍ରିକୁଟ ବୋଲି ଯେଉଁଠାରେ
ବିନ୍ଦୁଘର ଚିହ୍ନବିନ୍ଦୁ ଘେନନ୍ତି ତହିଁରେ ।
ଅମୀୟରସ ଯେ ପାନ ହରିନାମ ମାଳ
ଶୁକ୍ଳାମ୍ବର ବିଷ୍ଣୁକହି ରାହସଟି ସ୍ଥଳ ।
ଶ୍ରୀ ପରମହଂସ ଭକ୍ତି ବାଞ୍ଛା କଳ୍ପବଟ
କମଳା ଆଦି ଜନନୀ ମଠ ବଇକୁଣ୍ଠ ।
ପଦ୍ମ ଆସନେ ଗାୟତ୍ରି ଷଡ଼ପଦ୍ମ କୋଶ
ବିଳାସ ସେ ପଦ୍ମାସନ ସ୍ମରଣ ଶ୍ରୀବତ୍ସ ।
ସେବା ଆଇଟ ପବନ ରସ ଭୂମିରସ
ଜନମନ୍ତି ଜୀବାଦି ଭୂବ୍ରହ୍ମା ପଦ୍ମରସ ।
ଆବର କହିବା ଶୁଣ ନାମ ଅଷ୍ଟସଖୀ
ପଦ୍ମିନୀ ପାବନୀ ପଦ୍ମନେତ୍ରୀ ପଦ୍ମମୁଖୀ ।
ପିତୁଳା ପିଙ୍ଗଳା ପଦ୍ମତୋଳା ପରିମଳା
ଏହିରୂପେ ଅଷ୍ଟସଖୀ ଅଟନ୍ତି ଅବଳା ।
ଏଥୁ ଏହି ଧର୍ମପନ୍ଥା ପଦେ ପ୍ରବର୍ତ୍ତଇ
ଯାବତ ପଦ୍ମତୋଷରୁ ଦେହ ପ୍ରକାଶଇ ।
କେବା ଭାଗ୍ୟ ବଳୁ କେଉଁରୂପେ ଭୋଗଭୁଞ୍ଜେ
ସର୍ବେ ପ୍ରକାଶି ଆସନ୍ତି ଦେଇ ନାଭିକଞ୍ଜେ ।

ସବୁ ଲୋକର ମୂଳଟି ଏଣୁ ପଦଚକା
ବସିଣ ଭୁଞ୍ଜନ୍ତି ସର୍ବେ ନିରିମାଲ୍ୟ ଏକା ।
ଆତ୍ମା ଲିଙ୍ଗ ନାଭି ଜାଣ ହୃଦ କଣ୍ଠଯାଏ
ଲଲାଟ ଚକ୍ରକୁ ଭେଦି ଭିଜେ ପଦଯାଏ ।
ଏମନ୍ତ ମହିମା ଏହୁ ସମ୍ପ୍ରଦାର ଧର୍ମ
ପ୍ରଥମରୁ ଶିଷ୍ୟ ପନ୍ଥା ହେଲେ ବିଷ୍ଣୁଶ୍ୟାମ ।
ଏଣୁକରି ସମ୍ପ୍ରଦାକୁ ବିଷ୍ଣୁ ଶ୍ୟାମକହି
ଏହିରୂପେ ଚାରିଘର ବୋଲି ବେନିଭାଇ ।
ଶ୍ରୀରାମାନନ୍ଦୀ ମାଧବାନନ୍ଦୀ ନିମାନନ୍ଦୀ
ଶ୍ୟାମାନନ୍ଦୀ ମିଶାଇ ଚାରିଧର୍ମ ବନ୍ଦି ।
ଏ ଚାରି ଧର୍ମ ଉପରେ ଆଉ ଯେତେ ଦୀକ୍ଷା
ସମ୍ପ୍ରଦାରେ ନଗଣି ଏ ସେବାକାରୀ ଶିକ୍ଷା ।
ଆଉ ଯେତେ ତିଳକ ଏ ଚାରିଧର୍ମ ତଳ
ନ ବୁଝିବା ଲୋକମାନେ କରୁଥାନ୍ତି ଗୋଳ
ତିଳକ ନ ଚିହ୍ନି ସମ୍ପ୍ରଦାକୁ ନ ଜାଣନ୍ତି
ଆତ୍ମ ଧର୍ମ ମୂଳ ବୋଲି ଲୋକେ କହିହ୍ୱନ୍ତି ।
ସ୍ୱର୍ଣ୍ଣଘଟୀ ତାମ୍ର ଘଟୀ ଧରି ଗୁରୁପଣେ
ସ୍ଫଟିକ ମାଳାକୁ ଭଜି ଯାନ୍ତି ବିହରଣେ ।
ବସନ୍ତି ତିଳକମାନ ବରାହ ସେ କାଟି
ଛଦ୍ମେ ବୈଷ୍ଣବ ହୋଇ ସଂସାରକୁ ଜଟି ।
ଦେଖନ୍ତେ ପରସ୍ତ୍ରୀ ପରଦ୍ରବ୍ୟ ଭଲ ଯହିଁ
ଏ ଦୁହିଁଙ୍କି ହରନ୍ତି ଏ ସାଧୁଗୁଣ ବହି ।
କରନ୍ତି ସର୍ବଦା ଧର୍ମନିନ୍ଦା ମୁଖେ ପୁଣ
ତହିଁରେ ଯେତେକ ପାପ କହିବା ତା ଶୁଣ
ସମ୍ପ୍ରଦା ନିନ୍ଦୁକ ଲୋକ ଯେଉଁ ପାପଲଭେ
ସେହି ଦୋଷମାନ ବ୍ରହ୍ମା ତହୁଁ ଶୁଣ ଏବେ ।
ଶିବ ଦର୍ଶନ ନକରି ଭୁଞ୍ଜନ୍ତି ଯେ ଅନ୍ନ
ଶକ୍ତି ଅନୁକ୍ରମେ ଯେହୁ ନ ଦିଅନ୍ତି ଦାନ ।
ଆପଣା ସ୍ୱକର୍ମେ ଯେହୁ ନ ବଞ୍ଚନ୍ତି କାଳ
ଜୀବକୁ ପୋଷିଣ ଘରେ ନାଶେ ଯେ ଚାଣ୍ଡାଳ
ଧନ ଘେନି ସ୍ତିରୀକି ଯେ କରେ ପର ରତି
ଆପଣାର ଧରମକୁ ଯେ ପରେ ବିକନ୍ତି ।
ଦୁଃଖ ଦେଖି ପ୍ରାଣୀଙ୍କୁ ନ କରନ୍ତି ଦୟା
ବିଶ୍ୱାସୀ ହୋଇଣ ଯେହୁକରେ ଲୋକମାୟା
ବ୍ରାହ୍ମଣର ପ୍ରତିଆଶା ଭାଙ୍ଗେ ଯେଉଁ ପ୍ରାଣୀ
ସାଧୁଙ୍କୁ ଯେ ନିନ୍ଦାକରି କହେ କଟୁବାଣୀ ।
ଗୁରୁଙ୍କୁ ନ ମାନି ଯେହୁ ଦକ୍ଷିଣା ନଦେଇ
ପର ପଦାର୍ଥକୁ ଯେହୁ ଚୋରିକରି ନେଇ ।
ଅଭିମାନୀ ସ୍ତିରୀକି ଯେ କରେ ରତି ବଳେ
ଶାସ୍ତ୍ର ଶୁଣି ଦାନ ଯେହୁ ନ ଦିଏ ତତ୍କାଳେ ।

ଦାନ ବୃତ୍ତି ମାନଙ୍କୁହିଁ ହରନ୍ତି ଯେ ଜନ
ଭାଙ୍ଗେ ପର ଧର୍ମ ଯେହ୍ନେ କହି କୁବଚନ ।
ଯେଉଁଜନ ଏକସୂର୍ଯ୍ୟେ ବେନିଥର ଭୁଞ୍ଜେ
ଭାରିଯାକୁ ପ୍ରତିପାଳି ପିତାମାତା ଗଞ୍ଜେ ।
ଆପଣାର ସ୍ତିରୀ ଥାଉଁ ରମେ ପରନାରୀ
ପ୍ରକୃତି ଉଦୟ ଅସ୍ତେ ଯେଉଁ ସଙ୍ଗ କରି ।
ବ୍ରାହ୍ମଣ ହୋଇ ଯଦ୍ୟପି ନକରେ ସ୍ୱକର୍ମ
ଦେହ ଅନ୍ତେ ପୁଣି ସେହି ଲଭେଶୂଦ୍ର ଜନ୍ମ ।
ବିଧବା ବ୍ରାହ୍ମଣୀ ଯେହ୍ନେ ରମଣ କରଇ
ମାତୃହରଣର ଦୋଷ ତାହାକୁ ଲାଗଇ ।
ବ୍ରାହ୍ମଣର ଦାନବୃତ୍ତି ହରନ୍ତି ଯେ ପ୍ରାଣୀ
ତାହାର କରନ୍ତି ବଂଶକ୍ଷୟ ଯଦୁମଣି ।
କୁଜନ ସଙ୍ଗରେ ମିଳେ ଯେ ନିଶି ଦିବସେ
ଅତିଥି ନପାଇ ଘରୁ ଚଳଇ ନିରାଶେ ।
ବିଶ୍ୱାସୀ ଜନଙ୍କଠାରୁ ଅବିଶ୍ୱାସ ହୋଇ
ଆତ୍ମଘାତୀ ହୋଇ ଯେହ୍ନେ ପ୍ରାଣୀଟି ମରଇ ।
ବ୍ରାହ୍ମଣ ହୋଇ ହରେ ଯେ ଶୂଦ୍ରର ତରୁଣୀ
ନ ନ୍ୟନ୍ତି ଯେ ପିତୃଗଣ ତା ହସ୍ତରୁ ପାଣୀ ।
ଦୋଷ ଅଜାଣ ସାହସ ନିୟମ ଯେ କରେ
ତାହାର ଶରୀରେ ମହାବ୍ୟାଧି ଜାଣ ଧରେ ।
ବେଶ୍ୟା ଯୁବତୀମାନଙ୍କୁ କରନ୍ତି ଯେ ରତି
ପିତୃଲୋକେ ହସ୍ତଜଳ ଶୋଣିତ ମଣନ୍ତି ।
ପରସ୍ୱରଣସ୍ତିରୀଙ୍କୁ କରନ୍ତି ଯେ ରତି
ବଡ଼ଶୀ ପକାଇ ଯେହ୍ନେ ମାଛଙ୍କୁ ମାରନ୍ତି ।
ଭୁଞ୍ଜାଇ ବସାଇ ବିଷ ଦିଅନ୍ତି ଯେ କୂଟେ
ରାତ୍ରକାଳରେ କଣ୍ଟକ ପକାନ୍ତି ଯେ ବାଟେ ।
ପଞ୍ଚାଶ ଦିନ ଲେଖି ଯେ ନପିଅନ୍ତି ବଷା
ଶରଣ ପଶିଲେ ଯେହ୍ନେ ନ କରନ୍ତି ରକ୍ଷା ।
ଶ୍ରେଷ୍ଠଜାତି ହୋଇ ଯେହ୍ନେ କରେ ସୁରାପାନ
ମୃତ୍ତିକା ନଘେନି ଯେହ୍ନେ ପ୍ରକୃତିର ସ୍ଥାନ ।
କଉଡ଼ି ଘେନି ବଣିକ ମାପେ କେଉଁ ଛିଦ୍ର
ବ୍ରତ ନିଷ୍ଠାକରି ଯେହ୍ନେ ନ ବସେ ଉନ୍ନିଦ୍ର ।
ଶ୍ରୀଗୁରୁ ଗୋସାଇଁଠାରେ କରଇ ଯେକ୍ରୋଧ
ପୁତ୍ର ହୋଇ ଯଦ୍ୟପି ନ କରେ ପିତୃଶ୍ରାଦ୍ଧ ।
ସୁବେଦୀ ବ୍ରାହ୍ମଣଙ୍କୁ ଯେ ଅମାନନା କରେ
ବଇଷବ ସାଧୁଦ୍ରବ୍ୟ ଯେଉଁ ପ୍ରାଣୀ ହରେ ।
ଗୃହସ୍ଥର ବଚନକୁ ଭାଙ୍ଗେ ଯେଉଁ ପ୍ରିୟା
ପର ପୁରୁଷରେ ନେଇ ସମର୍ପଇ କାୟା ।
ଶ୍ରୀଗୁରୁ ଗୋବିନ୍ଦ ନାମ ଭଜେ ତ ଯେ ନିତି
ବିଷ୍ଣୁ ପୁରାଣକୁ ଶୁଣି ବିଷପ୍ରାୟେ ହୋନ୍ତି ।

ଦେବା ଦ୍ରବ୍ୟକୁ ହରଣ କରଇ ଯେ ପାପୀ
ତୁଳସୀ ବୃକ୍ଷକୁ ଯେ ନଥାଏ ଗୃହେ ସ୍ଥାପି ।
ବାଳକ ଦେହରୁ ଯେହ୍ନେ ଦ୍ରବ୍ୟ ନିଏ ଫେଇ
ବେଶ୍ୟାସଙ୍ଗତରେମାତେହୋଇଗୁରୁଦ୍ରୋହୀ
ବିଭାହୋଇବ କନ୍ୟାକୁ ଛାଡ଼େଅଦୋଷରେ
ଅନିମିତ୍ତେ ଖଚ ସଦା କହଇ ରାଜାରେ ।
ବିଷ୍ଣୁଭକତ ଜନଙ୍କୁ ଅଦୋଷେ ଯେ ଦଣ୍ଡେ
ହରିନାମ ଏକଥର ନ ବୋଲନ୍ତି ତୁଣ୍ଡେ ।
ଉଚ୍ଚହୋଇବି ବୋଲି ଯେ ଛାଡ଼େ ନିଜଜାତି
ପରର ଗୃହରେଯେହ୍ନେ ପାଶୋହୋଇ ଗୋତ୍ରୀ
ଯେଉଁ ପାପୀ ଦାନ ଘେନି ବଞ୍ଚନ୍ତି ସର୍ବଦା
ଏତେକ ପାତକ ଲେଖି ସମ୍ପ୍ରଦାର ନିନ୍ଦା ।
ସମ୍ପ୍ରଦାର ଦୋଷିଲୋକ ଅଟେ ବଡ଼ପାପୀ
ମଲେ ସେ ନିଶ୍ଚେ ନର୍କେ ପଡ଼ଇ ଅଦ୍ୟାପି ।
ଶୁଣ ଆହେ ପିତାମହ ଆହେ ଆଦିମୂଳ
ଏଚାରି ସମ୍ପ୍ରଦା ମୋରଅଙ୍ଗୁ ହେଲେ ଠୁଳ
ବ୍ରହ୍ମାମନରୁ ସଂଶୟ ଶୁଣି ଗଲା ଛାଡ଼ି
ଶୁଣିଲେ ସେ ଶ୍ରୀମୁଖକୁ ଚାହିଁ ପାଦେ ପଡ଼ି ।
ଉଠି ପୁଣି ଉଭାହୋଇ ବହୁସ୍ତୁତି କଲେ
ହରେ ରାମ କୃଷ୍ଣ ତିନିପଦ ଉଚ୍ଚାରିଲେ ।
ଏହି ତିନି ନାମରୁ ଯେ ସବୁ ନାଜ ଜାତ
ତେଣୁ ପ୍ରଭୁନାମ କେ ନ କରିପାରେ ଅନ୍ତ ।
ପ୍ରଭୁଙ୍କର ନାମ ନିତି ପଢ଼େ ଯେଉଁ ନର
ସେଜନର ମୁଖ ଗୋଟି ସଂସାରରେ ସାର ।
ଯେବଣ ପ୍ରାଣୀ ହସ୍ତରେ ବିଷ୍ଣୁକର୍ମ କରେ
ସେ ହସ୍ତକୁ ସାରସ୍ୱତ ବୋଲିଟି ସଂସାରେ ।
ଯେହ୍ନେ ବିଷ୍ଣୁ ଧ୍ୟାନକରି ନେତ୍ରେ ନେଇରଖେ
ସେ ନେତ୍ରକୁ ଦିବ୍ୟଚକ୍ଷୁ ବୋଲି ନରଯାକେ
ବିଷ୍ଣୁ ପୁରାଣକୁ କର୍ଣ୍ଣେ ଯେଉଁ ପ୍ରାଣୀ ଶୁଣି
କର୍ଣ୍ଣଯାକେ ସେ କର୍ଣ୍ଣକୁ ସାର ବୋଲି ଜାଣି
ନମଇଁ ବିଷ୍ଣୁପାଦରେ ଯାହା ଶିର ଗୋଟି
ସଂସାର ମଧ୍ୟରେ ସାର ଅଟେ ସେ ଶିରଟି ।
ସଂସାରରେ ବିଷ୍ଣୁଭକ୍ତ ଅଟନ୍ତି ଯେ ଲୋକ
ତାହାଙ୍କୁ ଛୁଇଁଲେ ପ୍ରାଣୀ ଲଭେ ତୀର୍ଥଯାକ ।
ଦଶ ଅବତାର ମୂର୍ତ୍ତି ଆପଣେ ସେ ଏକ
ମତ୍ସ୍ୟରୂପୀ ମୋକ୍ଷ କରେ ଜଗତର ଲୋକ ।
କୂର୍ମ ଅବତାର ହୋଇ ପୃଥ୍ୱୀଭାରା ବହି
ବରାହ ରୂପକୁ ଧରି ଦୈତ୍ୟବଳ ଦହି ।
ନୃସିଂହାବତାରେ ସାକ୍ଷାତରେ ବିଷ୍ଣୁରୂପୀ
ନମସ୍ତେ ବାମନ ରୂପୀ ବଳି ହୃଦ ଚାପି ।

ନମସ୍ତେ ପରଶୁରାମ ମହୀରକ୍ଷାକାରୀ
ନମସ୍ତେ ଶ୍ରୀରଘୁନାଥ ରାବଣ ବଇରୀ ।
ନମସ୍ତେ ଶ୍ରୀକୃଷ୍ଣ ମୂର୍ତ୍ତି କଂସ ଦର୍ପ ଦଳି
ନମସ୍ତେ ବଉଦ୍ଧରୂପ ବିଜେ ନୀଳଗିରି ।
କଳ୍କୀ ରୂପକୁ ଧରି ମ୍ଳେଚ୍ଛଙ୍କୁ ସଂହାର
ନମସ୍ତେ ଶ୍ରୀଦାମୋଦର ଲକ୍ଷ୍ମୀଦେବୀ ବର ।
ନମସ୍ତେ ଶ୍ରୀନନ୍ଦବାଳ ଗୋପୀନାଥ ମୂର୍ତ୍ତି
ନମସ୍ତେ ଶ୍ରୀବନମାଳୀ ମଦନ ମୂରତି ।
ନମସ୍ତେ ଅନନ୍ତ ମୂର୍ତ୍ତି ପ୍ରଭୁ ଚଉବାହା
ନମସ୍ତେ ନମସ୍ତେ ପ୍ରଭୋ ରୁକ୍ମିଣୀର ନାହା ।
ଶିଶୁପାଳ ନାଶକାରି ନମୋ ବନମାଳୀ
ନମୋନମୋ ଗୋବିନ୍ଦ ଶ୍ରୀବୃନ୍ଦାବନ କେଳି
ନମୋ ନମୋ ସହସ୍ରେକ ଚକ୍ଷୁ ବେନିବାହୁ
ସହସ୍ରେ ଶିର ନାସିକା ସସ୍ରପାଦ ହେଉ ।
ନମୋ ନମୋ ବଇକୁଣ୍ଠ ପ୍ରଭୁ ଆଦିକନ୍ଦ
ଅଛିଦ୍ରରେ ପୂରିଅଛ ତୁମ୍ଭେ ପୂର୍ଣ୍ଣାନନ୍ଦ ।
ସକଳ ଜୀବ ହୃଦରେ ଆପେ ଆତ୍ମା ଏକା
ପୁରାଣ ମଧ୍ୟେ ବୋଲାଅ ଚାରିବେଦ ଟୀକା ।
ଶିଳାଙ୍କ ମଧରେ ନରସିଂହ ଶାଳଗ୍ରାମ
କ୍ଷେତ୍ରର ମଧ୍ୟେ ବୋଲାଅ ବଦରିକାଶ୍ରମ ।
ଦେବତାମାନଙ୍କ ମଧ୍ୟେ ଆପେ ଏକା ଇନ୍ଦ୍ର
ମନୁଷ୍ୟମାନଙ୍କ ପରେ ବୋଲାଅ ନରେନ୍ଦ୍ର ।
ବୋଲାଅ ସପ୍ତସମୁଦ୍ର ମଧ୍ୟେ କ୍ଷୀରସିନ୍ଧୁ
ନକ୍ଷତ୍ରମାନଙ୍କ ମଧ୍ୟେ ଆପେ ଅଟ ଇନ୍ଦୁ ।
ବୋଲାଅ ଯେ ଗିରିଙ୍କର ମଧ୍ୟେ ମେରୁଗିରି
ପକ୍ଷୀଙ୍କ ମଧରେ ତୁମ୍ଭେ ଗରୁଡ଼ଙ୍କ ପରି ।
ଯାବତ ନଦୀ ମଧରେ ଗଙ୍ଗାନଦୀ ଅଟ
ପ୍ରୟାଗ ବୋଲାଅ ତୀର୍ଥଯାକେ ହୋଇ ଶ୍ରେଷ୍ଠ
ଅଠାଶୀ ସହସ୍ର ଯାଏ ମହାଋଷି ଗଣ
ତାହାଙ୍କ ମଧ୍ୟେ ନାରଦ ବୋଲାଅ ଆପଣ ।
ବେଦେ ବ୍ରହ୍ମଭାଗ ତୁମ୍ଭେ ପ୍ରଭୁ ଅନ୍ତର୍ଯ୍ୟାମୀ
ଜ୍ଞାନୀଙ୍କ ମଧରେ ତୁମ୍ଭେ ଅଟ ଆତ୍ମଜ୍ଞାନୀ ।
ଗୋମାତାଙ୍କ ମଧ୍ୟେ ତୁମ୍ଭେ ଅଟ କାମଧେନୁ
ବୋଲାଅ ଯାବତ ଦେହଯାକେ ଶକ୍ତି ତନୁ ।
ଧାତୁମାନଙ୍କ ମଧରେ ଅଟ ତୁମେ ହେମ
ପୁଷ୍ପର ମଧ୍ୟେ ତୁମର ତୁଳସୀ ଯେ ନାମ ।
ଯାବତ ପ୍ରାଣୀଙ୍କ ମଧ୍ୟେ ଦ୍ୱିଜ ତୁମ୍ଭେ ଅଟ
ବ୍ରାହ୍ମଣମାନଙ୍କ ମଧ୍ୟେ ଆଦିତ୍ୟ ପ୍ରକଟ ।
ସୁବ୍ୟବହାର କଥାରେ ସତ୍ୟବାକ୍ୟ ତୁମ୍ଭେ
ଚଞ୍ଚଳ ମଧରେ ତୁମ୍ଭେ ଥାଅ ବାୟୁଭାବେ ।

ପ୍ରପିତାମାନଙ୍କ ମଧ୍ୟେ ପ୍ରତ୍ୟକ୍ଷରେ ଅଗ୍ନି
ଅଷ୍ଟାଙ୍ଗ ଯୋଗ ମଧରେ ନିଜେ ଏକ ଜ୍ଞାନୀ ।
ଗୋବିନ୍ଦ ନାମକୁ କୋଟି ବ୍ରତ ନୁହେଁ ସରି
ବିଷ୍ଣୁପାଦ ପଙ୍କଜେ ଯେ ନିତି ସେବାକରି ।
ବ୍ୟାଧି ଛାର ରହିବ କି ତାହାର ଶରୀରେ
ଯେ ନାମ ଭଜଇ ତାକୁ ଲେଖନ୍ତି ସାଧୁରେ
ଯେଉଁଜନ ଅନୁକ୍ଷଣେ କରେ ବିଷ୍ଣୁଧ୍ୟାନ
ଜୀବନ ଗୋଟି ତାହାର ଅଟେ ମହାପୁଣ୍ୟ ।
ଶଙ୍ଖ ଚକ୍ରାଙ୍କିତ ଚିତା ଥିବ ଯାର ହୃଦେ
ସେ ପ୍ରାଣୀମାନଙ୍କୁ ଲେଖି ବଇଷ୍ଣବ ପଦେ ।
ବିଷ୍ଣୁଙ୍କର ନିରିମାଲ୍ୟ କରନ୍ତି ଯେ ସେବା ।
ତାହାଙ୍କ ପୁଣ୍ୟକୁ ସରି ନୁହନ୍ତିଟି ଦେବା ।
ଶ୍ରୀବିଷ୍ଣୁଙ୍କୁ ଶାଳଗ୍ରାମେ ପୂଜେ ଯେହୁଘରେ
ଜଳତୁଳସୀ ଦେଇ ଯେ ନଇବେଦ୍ୟ କରେ
ଚାଣ୍ଡାଳରୁ ବ୍ରହ୍ମଯାଏ ଯେହୁ ପୂଜାକରି
ସେହିମାନଙ୍କର ପୂଜା ବହେ ବସୁନ୍ଧରୀ ।
ଗୁରୁପୂଜା ବିପ୍ରପୂଜା ବଇଷ୍ଣବ ପୂଜା
ଗୃହସ୍ଥଙ୍କୁ ସଦା ପୂଜେ ଯେବଣ ଭାରିଯା ।
ଆବର ତ ଏକାଦଶୀ କରନ୍ତି ଯେ ଜନ
ଏ ପାଞ୍ଚଜନର ହୃଦେ ବିଜେ ଭଗବାନ ।
ଏମାନଙ୍କୁ ଯେଉଁ ପ୍ରାଣୀ ପ୍ରଭାତୁଁ ଛୁଇଁବ
ଅବୁଦେକ ପାପ ଥିଲେ ଅଗ୍ନକ୍ଷୟ ଯିବ ।
ଶଙ୍ଖ ଚକ୍ର ଗଦା ପଦ୍ମ ଧନ୍ୟ ଚାରି ଭୁଜ
ଏ ଚାରି ଭୁଜରୁ ଚାରି ସଂପ୍ରଦାକୁ ଭଜ ।
ଆବର ମୂହୂର୍ତ୍ତେ କ୍ଷଣେ ଦଣ୍ଡେ ଯେହୁ ବସି
ଶ୍ରୀଗୋବିନ୍ଦ ଚରଣକୁ ଚିନ୍ତେ ଅହର୍ନିଶି ।
ଜନମଧ୍ୟେ ତାର ଆତ୍ମା ଶାଳଗ୍ରାମେ ଲେଖି
ସେ ଯେଉଁ ଗ୍ରାମେ ଥାଏସେ ଗ୍ରାମ ବଡ଼ସୁଖି
ଏହିରୂପେ ସ୍ତୁତିକରି ବିଧାତା ପଢ଼ନ୍ତେ
ଚାହିଁଲେ ସନ୍ତୋଷ ହୋଇ ପ୍ରଭୁ ପଦ୍ମ ନେତ୍ରେ
ବ୍ରହ୍ମାଙ୍କୁ ବୋଇଲେ ତୁମ୍ଭେକର ଯେବେସ୍ତୁତି
ସମସ୍ତ ସ୍ତୁତି ଉପରେ ହେବ ଫଳଶ୍ରୁତି ।
ଅପୁତ୍ରିକ ପୁତ୍ରୀ ହେବ ପଢ଼ିବାର ମାତ୍ରେ
କ୍ୱରରୋଗ ପ୍ରମାଦଟି ନ ରହିବ ଗାତ୍ରେ ।
ତାହାର ଗୃହରୁ ଶିରୀ ନୋହିବ ଯେ କ୍ଷୟେ
ନବଗ୍ରହ ପୀଡ଼ା ଆଦି ନ ଲାଗିବ ଆୟେ ।
ତୀର୍ଥବ୍ରତ ଦାନ ତପ ଆଦି ଭକ୍ତି ଲଭେ
ମୂର୍ଖମାନେ ପଢ଼ିଲେଯେ ପଣ୍ଡିତହୋଇବେ
ପଢ଼ିଲେ ବଂଶରେ ଥିବା ପାପକ୍ଷୟ ଯିବ
ଚଉବର୍ଗ ମୁକତି ଯେ ଅଙ୍ଗେ ପ୍ରକାଶିବ ।

ଏହି ପୃଥିବୀ ପବିତ୍ର ହୋଇଥିବା ଯାକେ
ବସିବ ଦେହ ଅନ୍ତରେ ଯାଇ ବିଷ୍ଣୁଲୋକେ
ଶତେ ପୁରୁଷ ପବିତ୍ର ହେବ ତାର ଘରୁ
ସତ୍ୟ ଏ ବଚନ ମୋର ଫିଟିଲା ମୁଖରୁ ।
ଭୋ ପିତାମହ ସମ୍ପ୍ରଦା ଏବେ ଘେନିଯାଅ
ଜନ ଲୋକରେ ଶୁଣାଇ ଗତିମୁକ୍ତି ଦିଅ ।
ଶୁଣି ବ୍ରହ୍ମଋଷି ଦେବେ ହୋଇଲେସନ୍ତୋଷ
ମେଲାଣି ହୋଇ ଚଳିଲେ ଯେ ଯାହାରଦେଶ
ବ୍ରହ୍ମାଣ୍ଡ ଚାରିସଂପ୍ରଦା ଯାକ ଜାତ କଲେ
ଶୁଣି ବିପ୍ରମାନେ ସାଧୁ ବଇଷବ ହେଲେ ।
ସେହି ସାଧୁମାନଙ୍କର ଚରଣ ସେବାରୁ
ମୁହିଁ ଶିଷ୍ୟ ହୋଇଅଛି ବ୍ରହ୍ମ ସଂପ୍ରଦାରୁ ।
ମାଧବାନନ୍ଦୀ ଯେ ବ୍ରହ୍ମ ସମ୍ପ୍ରଦାରୁ ସିନା
ଜଗତମୋହନ ଧର୍ମ ନୃସିଂହୋପାସନା ।
ତିଳକ ହରିମନ୍ଦିର ନାସୁଁ କେଶ ଯାଏ
ଶରଣ ପଶଇ ପୀତାମ୍ବର ପଦ୍ମପାୟେ ।
ପୀତାମ୍ବରକୁ ନୃସିଂହ ଦେବ ଉଦ୍ଧାରିବେ
ପରମ ହୀନକୁ ପଦ୍ମ ଚରଣେ ରଖିବେ ।
ପ୍ରଥମ ସାଗର ଏହି ନୃସିଂହ ପୁରାଣ
ଶାରଦା ଆଜ୍ଞାରେ ମୁହିଁ କରୁଛି ଲେଖନ ।
ସୁପଣ୍ଡିତ ଜନକୁ ନ ଥାଇ ମୋର ଭୟେ
ମୂର୍ଖକୁ ଦେଖିଲେ ମୁହିଁ ତହୁଁ ଘୁଞ୍ଚିଯାଏ ।
ଏଣୁକରି ସୁଜନେ ନ ଘେନ ମୋର ଦୋଷ
ଦୋଷ ବୁଝିଣ ପ୍ରାଣୀଙ୍କୁ କରିବଟି ରୋଷ ।
ମାତା ପିତା ଶ୍ରୀଗୁରୁ ଯେ ଦେବତା ବ୍ରାହ୍ମଣ
ଏହାଙ୍କୁ ଦଣ୍ଡିବ ନାହିଁ ଦୋଷ କଲେ ଜାଣ ।
ଏହାଙ୍କ ଉତ୍ତାରେ ଆଉ ଯେତେ ଲୋକଥାଇ
କହିବା ତାହାଙ୍କ ଦଣ୍ଡ ପୁରାଣକୁ ଚାହିଁ ।
ଭୃତ୍ୟପଣେ ଦୋଷ ଯେବେ କରିବ ନ ଜାଣି
ନୀଚଲୋକ ହାତେ ଦଣ୍ଡ ଦେବ ତାକୁ ହାଣି ।
ପୋଇଲି ଦୋଷ କରିଲେ କାଟିବ ତାବାଳ
ବନ୍ଧୁ ଦୋଷ କଲେ ବାକ୍ୟ ନ ଦେବ କେବଳ ।
ଭାଇ ଯଦି ଦୋଷ କରେ ଭିନ୍ନ କରିଦେବ
ଭାରିଯା ଦୋଷ କରିଲେ କଥା ନ କହିବ ।
ଦୁହିତା ଦୋଷ କରିଲେ ନ ଚାହିଁବ ମୁଖ
ଶାଳକ ଦୋଷ କରିଲେ ନ ରଖିବ ପାଖ ।
ପଡ଼ିଶା ଦୋଷ କଲେ ଯେ ପ୍ରଶଂସା କରିବ
ପୁତ୍ର ଦୋଷ କଲେ ତାକୁ ଆପଣେ ଦଣ୍ଡିବ ।
କର୍ତ୍ତବ୍ୟେ ଯେ ଅବହେଳେ କାଢ଼ିଦେବ ଘରୁ
ନ ମାରିଣ ଉଞ୍ଚାଇବ ଦୋଷ କଲେ ଗୋରୁ ।
ପରଜା ଦୋଷ କରିଲେ ବାସନ୍ଦିବ କୃଷି
ଜନନୀ ଦୋଷ କରିଲେ ନ କହିବ ହସି ।
ଜ୍ଞାତି ଲୋକମାନେ ଯେବେ କରିଲେ ଟି ଦୋଷ
ତାହାଙ୍କୁ ଗୃହେ ନ ଦେବ ଜାଣ ଅନ୍ନ ଗ୍ରାସ ।
ଶ୍ୱଶୁର ଦୋଷ କରିଲେ ନ କରିବ ମାନ
ଏତେକ ଦଣ୍ଡ ତାହାଙ୍କୁ ହୁଅଇ ସେଦିନ ।
ନିଯୋଗ ଦୋଷ କରିଲେ ସେବା ଛଡ଼ାଇବ
ପାତ୍ର ଯଦି ଦୋଷ କରେ ଦ୍ୱାରବାସନ୍ଦିବ ।
କୁଳବଧୂମାନେ ଯେବେ କରିବେଟି ଦୋଷ
ପ୍ରଘଟ ନ କରିବ ତ ସହିବ ଅବଶ୍ୟ ।
ଊଣାଧିକେ କଲେ ଦାଣ୍ଡେ ଲଜ୍ଜା ହୁଏ ପୁଣି
ସମ୍ବନ୍ଧି ଦୋଷ କଲେ ନଦେବ ପିଢ଼ାପାଣି ।
ଯଦ୍ୟପି ସୁଆରମାନେ କରିବେ ଟି ଦୋଷ
ତାଙ୍କ ହସ୍ତଭୋଗ ଦ୍ରବ୍ୟ ନ କରିବ ଗ୍ରାସ ।
କରିବ ଅର୍କ୍ଷିତ ଲୋକ ଯେବେ ଗାଢ଼ ଦୋଷ
ନ ମାରିଣ ଦେଖାଇବ ତାକୁ ମହାତ୍ରାସ ।
କରଣ ଦୋଷ କରିଲେ ଜୀବିକା ହରିବ
ଭାଷା ହୁଡ଼ିଲା ଲୋକକୁ ସଭାରୁ ତଡ଼ିବ ।
ମିତ୍ର ଦୋଷ କରିଲେ ନ କରିବ ଆଦର
ଦୋଷୀ ମହାରଣା ହଳ ଆଖେନ୍ଦିବ ତାର ।
ମାତୁଳ ଦୋଷ କଲେ ନ କର ନିମନ୍ତ୍ରଣ
ଏତେକ ଆଦର ଊଣା ହୁଏ ବିଡ଼ମ୍ବନ ।
ଭଣ୍ଡାରି ଦୋଷ କରିଲେ ଗୃହ ବାସନ୍ଦିବ
ଗଉଡ଼ ଦୋଷ କରିଲେ ଦୁଧ ଛଡ଼ାଇବ ।
ଯଦ୍ୟପି କରିବେ ତନ୍ତୀକୁଳ ଲୋକ ଦୋଷ
ତାହାଙ୍କର ତୁଳକାଷ୍ଠ କାଢ଼ିବ ଅବଶ୍ୟ ।
ଧୀବର ଦୋଷ କରିଲେ ଚିରିବ ତା ଜାଲ
ବୋଧିବ ବାଳକ ଦୋଷ କଲେ କରି ଗେଲ ।
ଆବର ଯେତେକ ଜାତି ଅଛନ୍ତି ସଂସାରେ
ସେ ଦୋଷ କଲେ ବା ମାରି ଚଦିବ ବାକ୍ୟରେ ।
କବି ଯଦି ଦୋଷ କରେ କହିବ ନ ଚାଳି
ନ ହେଲା ବୋଲି କହିଲେ ବସଇ ସେ ଭାଳି ।
ଏଥିରୁ ପାରି କରିବ ମୋତେ ଚକ୍ରପାଣି
ବିପ୍ର ପୀତାମ୍ବର ଦାଶ ଗୀତରେ ଯେ ଭଣି ।



## ପାର୍ବତୀଙ୍କ ବିବାହ

ଏଣୁକରି ସୁଜନେ ନ ଘେନ ମୋର ଦୋଷ
କହୁଅଛି ପାର୍ବତୀଙ୍କ ବିବାହ ଯେ ରସ ।
ମହାମୁନି ନାରଦ ଯେ ଏଥୁ ଅନନ୍ତରେ
ନମିଲେ ଦଇନୀ କରି ବ୍ରହ୍ମାଙ୍କ ପାଦରେ ।

ଅତିଶୟ ଶ୍ରଦ୍ଧା ବହି ପଚାରନ୍ତି ଭାବେ
ବୋଇଲେ ପାର୍ବତୀ ବିଭା କହ ପିତା ଏବେ ।
ପୂର୍ବେ କହିଛନ୍ତି ମୋତେ ଯେବେ କଥା ସୂଚୀ
କହିବାକୁ ତାହା ଏବେ ଶୁଣିମା ବିରଞ୍ଚି ।
ବ୍ରହ୍ମାଏ କହିଲେ ତେବେ ଭଲ କରି ଶୁଣ
ମହାପବିତ୍ର ଅଟଇ ନୃସିଂହ ପୁରାଣ ।
ଯେତେବେଳେ ଦକ୍ଷଘରେ ଜନ୍ମ ହେଲେ ଗୌରୀ
ମନ ଇଚ୍ଛାରେ ବରିଲେ ବର ତ୍ରିପୁରାରି ।
ଯେଉଁରୂପରେ ବରିଲେ କହିବା ତା ଶୁଣ
ଇନ୍ଦ୍ରକାକୁଁ ତପେ ବସିଥିଲେ ଉଲଗ୍ନେଣ ।
ବାଳକ ସ୍ୱଭାବ ଘେନି ତପେ ଥିଲେ ବସି
ନ ଜାଣନ୍ତି ଦିବାରାତ୍ର ଯୋଗେ ମନ ରସି ।
ଏମନ୍ତେଣ ତପକରି ବସନ୍ତେ ପାର୍ବତୀ
ଦ୍ୱାଦଶ ବରଷେ ଦେବୀ ହେଲେ ରଜୋବତୀ ।
ତେବେହେଁ ଭବାନୀଙ୍କର ବସ୍ତ୍ର ନାହିଁ ଅଙ୍ଗେ
ଏମନ୍ତବେଳେ ମିଳିଲେ ଆସି ସୁଢ଼ଳାଙ୍ଗେ ।
ଦେବୀଙ୍କର ଜାନୁସ୍ଥଳ ଦେଖି ହେଲେ ମୋହି
ଛୁଇଁ ନ ପାରି କରନ୍ତି ନୃତ୍ୟ ଢ଼େଇଁ ଢ଼େଇଁ ।
ଈଶ୍ୱର ନୃତ୍ୟ କରନ୍ତେ ହେଲେ ଜାଣ ଭୋଳ
କଟିରୁ ଫିଟିଣ ତଳେ ପଡ଼ିଲା ଅଞ୍ଚଳ ।
ଉଲଗ୍ନ ହେଲେ ବସନ ଖସିବାରୁ ହର
ତଥାପି ଡେଉଁ ଅଛନ୍ତି ଲଜ୍ଜା କରି ଦୂର ।
ନବଲକ୍ଷ ଡମ୍ବରୁ ଯେ ବାଉଛନ୍ତି ହସି
ତାଣ୍ଡବର ଗୀତ ପଞ୍ଚ ବଦନରେ ଘୋଷି ।
ଚୁମ୍ବନ୍ତି ମର୍ଦ୍ଦଳ ଘନ ଘନ ସିଂହନାଦ
ଖେମଟା ନାଟେ କରନ୍ତି ଝଞ୍ଜାଳ ଶବଦ ।
ହୁଗୁ ହୁଗୁ ବୋଲି କରି ନାଚୁଛନ୍ତି ରଙ୍ଗେ
ତାଟକା ତାଟକା ବୋଲି ଡେଉଛନ୍ତି ରଙ୍ଗେ
ଚଞ୍ଚପୁଟ ଚାରିପୁଟ ଥିଙ୍ଗି ଥିଙ୍ଗି
ମୃଗ ମୃଗ ଚାରିନାଦ ଖୁଦି ଖୁଦି ଖୁଦି ।
ପାଦରେ ନୂପୁର ବେନି ବାଜେ ଝୁମ ଝୁମ
ଧେଇ ଧିନା କଟ କଟ ନାଚି ଉମା ଛାମୁ ।
କମ୍ପିଲା ଯେ ତିନିପୁର ଭାଙ୍ଗିଗଲା ଯୋଗ
ଦେଖିଲେ ନୃତ୍ୟ କରନ୍ତି ଆଗେ ସୁଢ଼ଳାଙ୍ଗ ।
ଉଲଗ୍ନ ହୋଇ ନାଚନ୍ତି ହର ଡେଇଁ ଡେଇଁ
ମହାଶୁକଳ ସ୍ୱରୂପ ରୂପ ବିରାଜଇ ।
ହସ୍ତରେ ଅକ୍ଷୟ ତୂଣ ପାଶୁପତ ସାଜେ
ଶରୀର ଯାକରେ ଫୁଟି ବିଭୁତି ବିରାଜେ ।
ପଞ୍ଚ ପ୍ରକାରରେ ମାଳ କଣ୍ଠ ଆଭରଣ
ପଢ଼ନ୍ତି ରୁଦ୍ର ସଂହିତା ପାଠ ମୁଖରେଣ ।

ପାର୍ବତୀଙ୍କୁ ବୁଲି ଡେଉଁ ଅଛନ୍ତି ଈଶ୍ୱର
ନାନାମତେ ଲାଗି ଯୋଗ ଭାଙ୍ଗେ ଗଉରୀର ।
ଯୋଗ ଭାଙ୍ଗନ୍ତେଣ ଦେବୀ ଚାହିଁଲେ ଚୌଦିଗେ
ଦେଖିଲେ ନାଚୁ ଅଛନ୍ତି ଆଗେ ସୁଢ଼ଳାଙ୍ଗେ ।
ଚାହିଁଲେ ଉଲଗ୍ନେ ବସିଛନ୍ତି ପଦ୍ମନେତ୍ରୀ
ହସିଣ ବୋଲନ୍ତି ବର ମାଗ ଜଗଦ୍ଧାତ୍ରୀ ।
ବୋଲନ୍ତି ଯେ ଦେବୀ ବର ଘେନ ଶୂଳପାଣି
ଘେନିଲେ ତଳହସ୍ତରେ ଦେବି ଏହିକ୍ଷଣି ।
ଈଶ୍ୱର ବୋଇଲେ ଦେବୀ ଦିଅ ତେବେ ନୀର
ଶଙ୍ଖରେ ଜଳ ତୁଳସୀ ଭରି ପଦ୍ମକର ।
ହସ୍ତେ ହସ୍ତମାଏ ତୋଳିଦେଲେ ସେହି ଜଳ
ପୁଣ୍ୟାହବାଚନ କରି ଘେନିଲେ ସୁଢ଼ଳ ।
ହସ୍ତଜଳ ଘେନି ହର ଛାଡ଼ି ଅଙ୍ଗ ଲଜ୍ଜା
ବୋଇଲେ ସଖିରେ ମୋର ତୁ ହେବୁ ଭାରିଯା ।
ମୁହିଁ ଦେଖି ମୁର୍ଚ୍ଛି ତୋତେ ନ ପାରିଲି ସଖି
କାମରେ ଘାରି ହେଲି ତୋ ଜାନୁସ୍ଥଳ ଦେଖି ।
ବିଧିରେ ଦେଖି ଉଲଗ୍ନ ଦୁହେଁ ହୋଇଥାଇ
ପତି ପତ୍ନୀର ସଙ୍ଗମ ସମୟ ଯା କହି ।
ସେହି ମତେ ଦେଖ ଏବେ ଦୁହିଁଙ୍କର ଦେହ
ଯେବେ ତୋ ବଚନ ସତ୍ୟ ଏହି ବରଦିଅ ।
ଶୁଣି କ୍ଷଣେ ରହିଲେତ ଦେବୀ ଆଚମ୍ବିତେ
ପାଞ୍ଚିଲେ ମାଗିଲେ ଏହୁ ଭଲା ବର ମୋତେ ।
ନ ଦେଲେ ହେଁ ସତ୍ୟହାନି ହେଉଛି ବଚନ
ଆଉ ଛାର କଥାରେ କି ଅଛି ପ୍ରୟୋଜନ ।
ସଂସାରେ ନିନ୍ଦା କରିବେ ମୋତେ ଜାଣ ବାଛି
ବୋଲିବେ କି ଭଲ ବର ଦେଲଉମା ଯାଚି ।
ମୁଁ ପୁଣ ଇଚ୍ଛାଏ ଯାଚି ଦେଉଅଛି ବର
ଥିଲା ଦ୍ରବ୍ୟମୋତେ ସିନା ମାଗିଲେକ ହର ।
ଏ କଥାରେ ଈଶ୍ୱରଙ୍କ ଦୋଷ ନାହିଁ କିଛି
ହୋଇବ ମହାଦେବର ନିଶ୍ଚୟ ମୃଗାକ୍ଷୀ ।
ସଂସାର ତଥାପି ଅବା ମୋତେ ନିନ୍ଦୁଥାନ୍ତା
ସବୁରି ବନିତା ମୁହିଁ ସମସ୍ତଙ୍କ ମାତା ।
ମାୟାରେଣ ବୁଲାଉଛି ପୃଥ୍ୱୀଯାକ ମୁହିଁ
ଲୋଭ ସ୍ୱରୂପେ ସବୁରି ହୃଦେ ବସେ ଯାଇ ।
ଅଷ୍ଟରତ୍ନ ହୋଇ ମୁହିଁ ସାଧୁଘରେ ଅଛି
କଉଡ଼ି ରୂପହର ଜଗତକୁ ଭୁଲାଉଛି ।
ରାଜାଙ୍କ ଘରେ ରାଣୀ ମୁଁ ସ୍ତିରୀଙ୍କ ନାୟିକା
କହୁଛି ଜଳ ରୂପେ ମୁଁ ଗଙ୍ଗାଦେବୀ ଏକା ।
ମୁଁ ସିନା ସଂସାରେ କଲି ସ୍ତିରୀରୂପେ ଜାତ
ପ୍ରଳୟ କାଳରେ ମୁହିଁ ରଖଇ ଜଗତ ।

ତେଣୁକରି ଈଶ୍ୱରଙ୍କ ହୋଇବି ଭାରିଯା
ଏତେ ପାଞ୍ଚିଣ ଶିବଙ୍କୁ କହିଲେ ଗିରିଯା ।
ଈଶ୍ୱରେ ମାଳା ପାଇଣ ଧରୁ କୋଳକରି
ଉମା ବୋଇଲେ ଏମନ୍ତ ନୁହେ ତ୍ରିପୁରାରୀ ।
ମାଳା ଦେଇଣ ବରିଲି ସିନା ଆପଣଙ୍କୁ
ବିବାହ ନୋହିଲେ ଲଜ୍ଜା ହୋଇବ ଆମ୍ଭଙ୍କୁ ।
ଶୁଣିଣ ବୋଇଲେ ସଦାଶିବ ହୋଇ ହୋଇ
ପାଞ୍ଚିଲେ ତ ଗିରିଜା ଯେ ସତ୍ୟକଥା କହି ।
ବିବାହ ନୋହି ରମିଲେ ଆୟୁ ହୁଏ ହାନି
ଏହି ସକାଶରୁ ନାହିଁ କଲେଟି ମୃଡ଼ାନୀ ।
ପାର୍ବତୀଙ୍କୁ ସଙ୍ଗେ ଘେନି କଇଳାସ ଯିବା
ଦେବତାଙ୍କୁ ବସାଇଣ ହୋଇବାକ ବିଭା ।
ଏତେ ପାଞ୍ଚି ବସ୍ତ୍ରଲାଗି ହୋଇଲେ ଈଶ୍ୱର
ଅଙ୍ଗେ ଶାଢ଼ୀଲାଗି ଉମା ହୋଇଲେ ତତ୍ପର ।
ସୁବେଶ ବେଶ ହୋଇଣ ଗଲେ କଇଳାସ
ଶ୍ରୀମହାଦେବ ଶରଣ ପୀତାମ୍ବର ଦାସ ।
ବେଦୀରେ ବସିଲେ କନ୍ୟା ଘେନିଯାଇ ହର
ଏଥୁଅନ୍ତେ ପହଞ୍ଚିଲେ ତହିଁ ବେଦବର ।
ବ୍ରହ୍ମା ଆସନ୍ତେ ବିଜୟେ କଲେ ନାରାୟଣ
ଲକ୍ଷ୍ମୀ ଠାକୁରାଣୀଙ୍କୁ ସେ କୋଳରେ ଘେନିଣ ।
ସ୍ୱର୍ଗରୁ ବାସବ ଆସି ତହିଁ ବିଜେକରି
ଅଛନ୍ତି ସଙ୍ଗରେ ଘେନି ଶଚୀ ଅପସରୀ ।
ଆଉ ମଧ୍ୟ ଆସିଲେଟି ଦଶଦିଗ ପାଳେ
ଅକ୍ଷତ ଧରି ମିଳିଲେ ଶିବଙ୍କର ଆଳେ ।
ଯାବତ ମହର୍ଷି ବୃନ୍ଦ ପ୍ରବେଶିଲେ ଆସି
ମରୀଚି ବେଦବ୍ୟାସ ଯେ ନାରଦ ମହର୍ଷି ।
ପୁଲକ ଅଗସ୍ତି ଗଉତମ ଅତ୍ରୀ ମୁନି
ଅୟୁତେଜ ଶିଷ୍ୟ ସେହି ସଙ୍ଗତରେ ଘେନି ।
ଉତ୍ତମ ଜଇମିନି ଯେ ବିଭାଣ୍ଡକ ଋଷି
ବଶିଷ୍ଠ ଜାବାଳି କ୍ରତୁ ଅଙ୍ଗିରା ତପସ୍ୱୀ ।
ଜଣକର ଲକ୍ଷ ଲକ୍ଷ ଛନ୍ତି ଚେଲା ଶିଷ୍ୟ
ସମସ୍ତେ ପଢ଼ନ୍ତି ମନ୍ତ୍ରଭାଗ ପଉରୁଷ ।
ସନକ କ୍ରତୁ ଆସୁରି ପଞ୍ଚଶିଖ ତୁଲେ
ଲକ୍ଷ ଲକ୍ଷ ଶିଷ୍ୟ ଘେନି କଇଳାସେ ଗଲେ ।
ଆବର ଯେତେକ ଋଷି ପ୍ରବେଶିଲେ ଆସି
ଯେ ଯାହା ଆସନ ଘେନି ଦେବୀ ପରେ ବସି ।
ଋଷିଙ୍କର ପତ୍ନୀମାନେ ଯେତେ ଆସିଥିଲେ
ଈଶ୍ୱର ପାର୍ବତୀଙ୍କୁ ସେ ବେଶ କରାଇଲେ ।
ବେଦୀପରେ ପରବେଶ ସାଜିଲେକ ଶିବ
ପଢ଼ନ୍ତି ମଙ୍ଗଳାଷ୍ଟକ ସର୍ବ ଋଷି ଦେବ ।

ବଶିଷ୍ଠ ସେ ପୁରୋହିତ ହୋଇ ତହିଁ ବସି
ବିଭାବିଧି ପର୍ବରେ ସେ ବେଦମନ୍ତ୍ର ଘୋଷି ।
ଆଦ୍ୟରେ ବରୁଣ ପୂଜା ଯେ ସ୍ୱସ୍ତି ବାଚନ
ବିଧିପୂର୍ବକ କରନ୍ତି ତହିଁ ତପୋଧନ ।
ସଂକଳ୍ପ କରିଣ ସେହୁ ବିଷ୍ଣୁ ବିଷ୍ଣୁ ବୋଲି
ମହାବାକ୍ୟ ଉଚ୍ଚାରନ୍ତି ଋତୁକାଳ ଧରି ।
ଶୁକ୍ଳାମ୍ବର ଗୋତ୍ରୀ ଈଶ୍ୱର ଯେ ମହାଦେବ
କୈଳାସ ପର୍ବତେ ପାର୍ବତୀର ବିଭାରମ୍ଭ ।
ବିଷ୍ଣୁ ସୁରଶ୍ରେଷ୍ଠ ଦେବମାନଙ୍କ ସନ୍ନିଧ
ଏମନ୍ତ ବୋଲିଣ ବାକ୍ୟ କରନ୍ତି ପ୍ରସିଦ୍ଧ ।
ଶୁଣ ହେ ନାରଦ କହନ୍ତି ଯେ ସୁରଶ୍ରେଷ୍ଠ
ଏ ରୂପରେ ମହାବାକ୍ୟ ପଢ଼ିଲେ ବଶିଷ୍ଠ ।
ବିଭାକୁ ମନ୍ତ୍ର ଲୋଡ଼ା ଯେ ଚଉଷଠି କାଣ୍ଡି
ବଶିଷ୍ଠ ପଢ଼ନ୍ତି ମନ୍ତ୍ର ଲାଗେ ଖଣ୍ଡି ଖଣ୍ଡି ।
ଶ୍ରାଦ୍ଧ ଆରୋପଣ ତହିଁ କଲେ ବ୍ରହ୍ମଋଷି
ହରିଦ୍ରାଧିବାସ ଗନ୍ଧାଅଧିବାସ ମିଶି ।
ଅଷ୍ଟକୁଳ ନାଗକୁ ସେ କଲେ ଉଚ୍ଚାରଣ
ପୂଜିଲେ ଆସନେ ପାଦାସନେ ତାଙ୍କୁ ପୁଣ ।
ଦକ୍ଷ ପ୍ରଜାପତି ଘେନି ବସିଲେ ଉମାଙ୍କୁ
ଅନାଦି ନାଥେ ବସିଲେ ଧରି ଈଶ୍ୱରଙ୍କୁ ।
ଅନେକ ତୀର୍ଥ ଯାକରୁ ଅଣାଇଲେ ଜଳ
ହର ପାର୍ବତୀଙ୍କ ପାଦେ ଢାଳିଲେ ସକଳ ।
ଦୁଧ ଯେ ପଇଡ଼ ପାଣି ମିଶାଇ ଧୋଇଲେ
ଚରଣ ଖଡୁଆ ଦେଇ ଉଦକ ଧଇଲେ ।
ସିଞ୍ଚିଲେ ଯେ ଜଳ ନେଇ ଶିରେ ମୁନିମାନେ
ତେଣୁ ସେହି ଚିରଜୀବୀ ହେଲେ ସର୍ବଜନେ ।
ଏଥୁଅନନ୍ତରେ ଶୁଣ ବିଭାର ବିଧାନ
ଆନନ୍ଦେ କରନ୍ତି ପୁଷ୍ପବୃଷ୍ଟି ବିଦ୍ୱଜନ ।
ଅମଳାନ ବସ୍ତ୍ର ଦେଲେ ବଶିଷ୍ଠ ଯେ ମନ୍ତ୍ରି
ପିନ୍ଧିଲେ ପାର୍ବତୀ ତାହା ଆବରଣେ ଯନ୍ତ୍ରି ।
ମୁକୁଟ ଶିରେ ବାନ୍ଧିଣ ହୋଇଲେ ପ୍ରବେଶ
ବିଭା ପାଞ୍ଚି ପିନ୍ଧିଲେକ ପ୍ରଭୁ ବ୍ୟୋମକେଶ ।
ବୃଦ୍ଧା ଶ୍ରଦ୍ଧା କରି ଶିରେ ମୁକୁଟ ଯେ ଧରି
ବେଦୀ ଉପରେ ବସିଲେ ଯାଇଁ ତ୍ରିପୁରାରି ।
ଅନାଦି ନାଥ କରନ୍ତି ବର ସମର୍ପଣ
ବଶିଷ୍ଠ କହନ୍ତି ବେନି ଗୋତ୍ର ଉଚ୍ଚାରଣ ।
ଦକ୍ଷ ପ୍ରଜାପତି କୋଳେ ବସିଛନ୍ତି ଉମା
ବଶିଷ୍ଠ ବୋଇଲେ ଗୋତ୍ର ପ୍ରବର ମହିମା ।
ଶୁଣିଲେ ତୁମ୍ଭ ପ୍ରବର ଗୋତ୍ର ବୁଝାଯିବ
ଶୁଣି କହନ୍ତି ଯେ ଶିବ ଗୋତ୍ର ମହାଦେବ ।

ବୋଲଇରେ ଆମ୍ଭ ପ୍ରବର ଅଟେ ଲିଙ୍ଗମୂର୍ତ୍ତି
ସର୍ବଘଟେ ଆତ୍ମାଲିଙ୍ଗ ହୋଇଛନ୍ତି ସ୍ଥିତି ।
ଏଣୁ ମୋର ଆତ୍ମାଲିଙ୍ଗ ଅଟଇ ପ୍ରବର
ପରମହଂସ ଯେ ଶାଖା ଗୋତ୍ର ଶୁକ୍ଲାମ୍ବର ।
ଅନାଦି ଅଟନ୍ତି ପରଂପିତାମାତା ବେନି
ଚହୁଁ ବ୍ରହ୍ମାବିଷ୍ଣୁ ହର ଜନ୍ମିହେଲୁ ତିନି ।
ସେହି ଯେ ଆଦି ଅନାଦି ଶୁକ୍ଲାମ୍ବର ବିଷ୍ଣୁ
ତେଣୁ ଶୁକ୍ଲାମ୍ବର ଗୋତ୍ର ଅଟଇ ଶ୍ମଶାନୁ ।
ବଶିଷ୍ଠ କହିଲେ ଆଚ୍ଛା କହିବ ତ୍ରିନେତ୍ର
କହନ୍ତୁ ସେ ଦକ୍ଷ ପ୍ରଜାପତି ତାଙ୍କ ଗୋତ୍ର ।
ହର ଉମାଙ୍କର ବାନ୍ଧି ଦେବା କୁଶଗ୍ରନ୍ଥି
ଶୁଣିକରି ଗୋତ୍ର ତାଙ୍କୁ କହିଲେ ନୃପତି ।
ଦକ୍ଷପ୍ରଜାପତି ବୋଲେ ଶୁଣ ହେ ବଶିଷ୍ଠ
ପିତାମହ ଗୋତ୍ରୀ ଆମ୍ଭେ ଅଟୁକୁଳ ଶ୍ରେଷ୍ଠ ।
ସ୍ୱୟମ୍ଭୁ ବିଷ୍ଣୁ ନାଭିରୁ ବ୍ରହ୍ମା ହେଲେ ଜାତ
ତେଣୁ ସେ ଆତ୍ମାଭୁ ନାମ ବହିଲେ ବିଧାତ ।
ବିଷ୍ଣୁଙ୍କ ନାଭିରୁ ଜନ୍ମ ଚତୁର୍ମୁଖ ହେଲେ
ଅନ୍ୟ ରକବେଦ ବ୍ରହ୍ମା ମୁଖେ ଉଚ୍ଚାରିଲେ ।
ତେଣୁ ସେହି ରକବେଦ ଅଟଇ ଯେ ଶାଖା
ଗୋତ୍ର ମୋ ସ୍ୱୟଂଭୁ ପ୍ରବର ଯେ ଚତୁର୍ମୁଖ ।
ଅଗ୍ନି ହୋତ୍ରୀ ବିପ୍ର ମୋର ନାମ ଦକ୍ଷବ୍ରହ୍ମା
ଷାଠିଏ କନ୍ୟାରେ ଜ୍ୟେଷ୍ଠ ଅଟେ ମୋର ଉମା
ଶୁଣିଣ ବଶିଷ୍ଠ ରଷିବହୁ ପ୍ରଶଂସିଲେ
ବେନି ଗୋତ୍ର ଉଚାରିଣ ବିଭାରେ ବସିଲେ ।
ମାଧବଗଣ ଶଙ୍ଖ ଯେ ବଜାନ୍ତି ଫୁକାରି
ବସିଲେ ବଶିଷ୍ଠ ରଷି କର୍ମାରମ୍ଭ କରି ।
ବଶିଷ୍ଠ ଯେ ମଧୁପର୍କ କରାଇଲେ ଆଣି
ସ୍ୱର୍ଣ୍ଣପାତ୍ର ଆଚମନ କରେ ବାସପାଣି ।
ଦେଶକାଳ ମହାବାକ୍ୟେ ଶଙ୍ଖେ ଜଳ ଦେଲେ
ପାର୍ବତୀଙ୍କ କରଗୋଟି ବଶିଷ୍ଠ ଧଇଲେ ।
ପାର୍ବତୀଙ୍କ କରେ ନେଇ ଦେଲେ ହସ୍ତଗୋଟି
ପଢ଼ି ମନ୍ତ୍ରକାଣ୍ଡି ସେ ବାନ୍ଧିଲେ କୁଶଗଣ୍ଠି ।
ଦକ୍ଷ ପ୍ରଜାପତି ପୁଣି ଶଙ୍ଖେ ଜଳଦେଲେ
ପାର୍ବତୀଙ୍କୁ ନେଇ ଶିବ କରେ ସମର୍ପିଲେ ।
ଆବର ରଷିପତ୍ନୀଏ ଦ୍ୟନ୍ତି ହୁଳହୁଳି
ବନ୍ଦାଇଲେ ଶଚୀଦେବୀ ଆଣି ଅର୍ଘ୍ୟସ୍ଥାଳୀ ।
ସାବିତ୍ରୀମାଏ ଦେଲେକ ଶିରେ ଦୁର୍ବାକ୍ଷତ
ସରସ୍ୱତୀ ଯେ ମଙ୍ଗଳନାଦେ ଗାଇ ଗୀତ ।
ଆକାଶରେ ଥାଇ ଦେବେ ସିଞ୍ଚିଲେ କୁସୁମ
ଶୁଣ ମହାରାଜ କହନ୍ତି ଯେ ଶୁକ ବ୍ରହ୍ମ

ଏଥୁଅନନ୍ତରେ ଶୁଣ ହେଲା ଯେଉଁ ରୀତି
ଅର୍ଘ୍ୟ ବନ୍ଦାଇଲେ ମିଳି ସକଳ ଯୁବତୀ ।
ବାଉନ କୋଟି ଭଣ୍ଡାରେ ଥିଲା ଯେତେ ଦ୍ରବ୍ୟ
ସଦାଶିବ ଗୋଚରରେ ତା ଦେଲେ ବାସୁଦେବ ।
ନାନାଦି ବର୍ଣ୍ଣର ରତ୍ନ ଆଦି ଭିନ୍ନ ଜାତି
ଖଟ ସିଂହାସନ ଦୋଳିଦେଲେ ଗଜମୋତି ।
ଅଙ୍ଗୁଳିକି ମୁଦ୍ରିକା ଯେ ହସ୍ତକୁ କଙ୍କଣ
କର୍ଣ୍ଣକୁ କୁଣ୍ଡଳ ଜାଣ କର୍ଣ୍ଣେ ନବରତ୍ନ ।
ହୃଦୟକୁ ନାନା ହାର ବିଚିତ୍ର ପଦକ
ଏହିମତି ବ୍ରହ୍ମାଏ ଯେ ଦେଲେ ଯଉତୁକ ।
ତଦୁତ୍ତାରୁ ପୁଣି ଯାହା କଲେ ପ୍ରଜାପତି
ଠାଆ ସଜ କରି ସେହୁ ବହୁ ପରଷନ୍ତି ।
ତାହାଙ୍କ ନାମ କହିବା ତୁମ୍ଭଙ୍କୁ ଥୋକାଏ
ବରକନ୍ୟା ଦୁହିଁଙ୍କି ସେ ଦ୍ୟନ୍ତି ବାପମାଏ ।
ନାନାବିଧ ଉପହାର କହିବା ବା କିସ
ଶୁଣ ହେ ନାରଦ ମୁନି କହନ୍ତି ଲୋକେଶ ।
ଗଡୁସୁନା ଗରିଆ ନାକୁଆ ଖୋରାକାମ
କଡ଼କି କଂସା ଥାଳି ଯେ ପାଛୋଟି ପଲମ ।
ତାଳହିଁ ଚିତାଝରୀ ଯେ ସ୍ୱର୍ଣ୍ଣ କୁଣ୍ଡଳାଦି
ମର୍କତରେ ଲକ୍ଷେ ହୀରା ଦେଲେ ରତ୍ନମୁଦି ।
ମୁକୁତା ଲକ୍ଷେକ ମାଳାଅର୍ବୁଦେକ ନୀଳା
ଶିରେ ଅର୍ବୁଦ ଦେଲେ ଦସୁରଙ୍ଗ ପୋହଳା ।
ଶ୍ରୀମୁଖକୁ ଦେଖିବାକୁ ଦରପଣ ଦେଲେ
ଲକ୍ଷ କୋଟି ବୀଣା ନେଇ ପାଶେ ସମର୍ପିଲେ ।
ତହିଁ ଉତ୍ତାରେ ଧରିଲେ ଲକ୍ଷ୍ମୀ ହସ୍ତେ ଶାଢ଼ୀ
ହର ଉମା ହୃଦେ ଦେଲେ ଗଣ୍ଡିଆଳ ପାଢ଼ି ।
ହସ୍ତରୁ ଫିଟାଇ ଦେଲେ ବନ୍ଧାକୁଶଗ୍ରନ୍ଥି
ଶିବଙ୍କ ଦକ୍ଷିଣ ପାଶେ ବସିଲେ ପାର୍ବତୀ ।
ପୂର୍ବରେ ନିର୍ମିତ ଯେତେ ଅଛି ମନ୍ତ୍ରପାଠ
ତହିଁରୁ ମାତ୍ରା ନ ଛାଡ଼ି ପଢ଼ିଲେ ବଶିଷ୍ଠ ।
ବିଭାର ସ୍ଥାନକୁ ଲୋଡ଼ା ଚଉଷଠି କାଣ୍ଡି
ଅକ୍ଷର ନ ଛାଡ଼ି ଉଚ୍ଚାରିଲେ ଖଣ୍ଡି ଖଣ୍ଡି ।
କୁଶାଣ୍ଡି ସ୍ଥାପି ବସିଲେ କରି ବିଭା ହୋମ
ଶ୍ରୀକରେ ଯେ ଗୁଆ ଘୃତ ଲାଗି ହୁତାଶନ ।
ଏ ବିଧି ହୋମ କରିଣ ଅଗ୍ନି ବିସର୍ଜିଲେ
ଏ ରୂପରେ କର୍ମକରି ବିଭା ବଢ଼ାଇଲେ ।
ପୂର୍ଣ୍ଣାହୁତିକି କରିଣ ବଶିଷ୍ଠ ଯେ ମୁନି
ଦକ୍ଷିଣା ମହାଦେବଙ୍କଠାରୁ ନେଲେ ପୁଣି ।
ଶ୍ୱଶୁରଙ୍କୁ ବିଭାକରି ସେ ବଶିଷ୍ଠ ବସି
ସେହିଠାରେ ବୋଲାଇଲେ ମହାବ୍ରହ୍ମ ରଷି

ବିପ୍ରମିଠା ଜାଣି ଅଛେ ସନ୍ତୋଷ ହୋଇଲେ
କବିତା ମିଠା ଜାଣିବ ଅର୍ଥସଙ୍ଗେ ଥିଲେ ।
ବାଣିଜ୍ୟ ମିଠା ଜାଣିବ ହେଲେ ଦ୍ରବ୍ୟବେଢ଼ି
ସାହୁର ମିଠା ଜାଣିବ ସୁଧ ଯେବେ ଛାଡ଼ି ।
ଚାଣକ୍ୟ ମିଠା ଜାଣି ନ ଥିଲେ ଦ୍ରବ୍ୟ ଇଚ୍ଛା
ତପସ୍ୟା ମିଠା ଜାଣିବ ନଥିଲେ ଫଳବାଞ୍ଛା
ପିଠାର ମିଠା ଜାଣିବ ରୁଚକ ହୋଇଲେ
ତିଉଣ ମିଠା ଜାଣିବ ଭଲ ସିଝିଥିଲେ ।
ପୁରୁଷ ମିଠା ଜାଣିବ ହୋଇଥିଲେ ଯୁବା ।
ତେବେଟି ସୁରତି ସୁଖ ହୁଏ କଲେ ଅବା ।
ବୁଝିଲେତ ଗୋପୀମାନଙ୍କର ଯୁବାକାଳ
କିରୂପେ ବାଳକ କୃଷ୍ଣ ସଙ୍ଗେ ହେବ ମେଳ
ଭଜନକୁ ସେ ଗୋବିନ୍ଦ ନାମ ସିନା ତ୍ରାହି
ରମଣ ଯେ ରତୁକାଳ ନୋହିଲେ କିହୋଇ
ଅଷ୍ଟବରଷେ ରମନ୍ତେ କୃଷ୍ଣ ଯେବେ ସ୍ତିରୀ
ଭକ୍ତିମନ୍ତ ଲୋକେ ଆସି ରସନ୍ତେ କିପରି ।
ଅଛନ୍ତି ତ ବିଜେ କରି ହରି ସର୍ବ ଲୋକେ
ଅଷ୍ଟବରଷେ ପୁତ୍ର କି ରସିଲେଣି କେ କେ
ଏକଥାଗୋଟି ସଂସାରେ ଦେଖି ନାହିଁ କେହି
ଷୋଳ ବରଷରେ ସିନା ବୀର୍ଯ୍ୟ ଉଛୁଳଇ ।
ପଚିଶ ବରଷେ ସିନା ହୁଏ ରତି ଚିନ୍ତା
ଏକଥା ସଂସାରେ ଅବା ଲିହିଛି ବିଧାତା ।
ଏଣୁ କରି ଶ୍ରୀକୃଷ୍ଣଙ୍କୁ ଲୋକମାର୍ଗ ଚାହିଁ
ରତି କରୁଥିଲେ ହରି ରେତ ନ ପକାଇ ।
ନିରତ ରତୁ କୃଷ୍ଣର ନ'ଦେଖି ଚନ୍ଦ୍ରାବଳୀ
ନ ମାନିବାର ରୁଷିବେ ପ୍ରଭୁ ବନମାଳୀ ।
ପୃଥ୍ୱୀଭାଗ ନାଶିବାକୁ କୃଷ୍ଣଜନ୍ମ ହେବେ
ବୈକୁଣ୍ଠକୁ ଯିବା ବୋଲି ମନେ ବିଚାରିବେ
ପ୍ରଭୁ ଏହା ପାଞ୍ଚନ୍ତେ ମୁଁ ବୁଝ ଏହି ତତ୍ତ୍ୱ
ହୁଅନ୍ତୁ ପଛେ ବାଳକ ଉଛୁଳି ଯେ ରେତ ।
ଲୋକଙ୍କର ସହିତେ ଶ୍ରୀକୃଷ୍ଣ ହେବେ ସରି
କନ୍ଦର୍ପକୁ ଅଛନ୍ତି ସେ ସ୍ୱାମୀ ଜାତ କରି ।
ବିଜେ କରିଛନ୍ତି ସେହି ହରି ସର୍ବଘଟେ
ବିଷ୍ଣୁଙ୍କୁ ନ ଚିହ୍ନି ଭିନ୍ନ କରନ୍ତି ଦର୍ପିଷ୍ଟେ ।
ବ୍ରହ୍ମାଆଦି ଶିବଯାଏ ଛନ୍ତି ଯେତେ ଲୋକେ
କେ ହେବ ବିଷ୍ଣୁଙ୍କୁ ସରି ସେହେତୁ ଅଲୋକେ
ଏମନ୍ତ ବିଚାରି ବ୍ରହ୍ମା ମନେ ପୁଣ ହେଜି
ବୋଇଲେ ସଂସାରେ ଆଉ କଥାଥିବା ସର୍ଜି
ମୋହନ ବଂଶୀ ସଜାଡ଼ି ମୁହିଁ ରଖିଥିବି
ଧଇଲାକ୍ଷଣି ଅଙ୍ଗରୁ ବୀର୍ଯ୍ୟ ଯିବ ସ୍ରବି ।

ସେ ବଂଶୀ ବଜାଇଲେଗୋପୀମୋହହେବେ
ତରଳ ହୋଇ ପଡ଼ିଣ କୃଷ୍ଣଙ୍କୁ ଭଜିବେ ।
କିରୂପେ ରମିବା ବୋଲି ହେବେ ଛନ୍ନଛନ୍ନ
ଏରୁପେ ପାଞ୍ଚି ରଚିଲେ ବ୍ରହ୍ମା ବଂଶୀସ୍ୱନ ।
ମୋହନ କାଉଁରୀକି ସଜାଡ଼ି କରେ ଧରି
କଲେ ସେହି ମୁରଲୀକି ସପ୍ତସ୍ୱର କରି ।
ସେ ରନ୍ଧ୍ରମାନଙ୍କ ନାମ ଶୁଣ ସାବଧାନେ
ତହିଁରେ ବିହାର କରି ବସିଲେ ଯେମାନେ ।
ବସିଲେ ପ୍ରଥମ ରନ୍ଧ୍ର ମୂଳେ ସରସ୍ୱତୀ
ବସିଲେ ଦ୍ୱିତୀୟ ରନ୍ଧ୍ର ଦ୍ୱାରେ ଜାଣ ରତି
ବସିଲେ ତୃତୀୟ ରନ୍ଧ୍ରେ ଶିବଙ୍କର ବାମା
ବସିଲେ ଚତୁର୍ଥ ରନ୍ଧ୍ର ମୂଳେ ବିଷ୍ଣୁ ବାମା ।
ବସିଲେ ପଞ୍ଚମ ରନ୍ଧ୍ର ମୂଳେ ଜଗଦାତ୍ରୀ
ଷଷ୍ଠରନ୍ଧ୍ର ମୂଳରେ ଯେ ବସିଲେ ସାବିତ୍ରୀ ।
ବସିଲେ ସପ୍ତମ ରନ୍ଧ୍ର ମୂଳେ କାମଦେବ
ଶୁଣ ହେ ନାରଦ ମୁନି ଅପୂର୍ବ ଏ ଭାବ ।
ମୋହିନୀମାନେ ବସିଲେ ଯହୁଁ ରନ୍ଧ୍ରେ ଆସି
ତେଣୁ ନାମ ବୋଲାଇଲା ମୋହନ ବଇଁଶୀ
କୋଡ଼ିଏ ଯୁଗରେ ତାଙ୍କୁ ସର୍ଜିଲେକ ବ୍ରହ୍ମା
ତା ନାମ ଧରି ଚୁମ୍ବିଲେ ଆସିବେଯେବାମା
ଏ ରୂପେ ସଜାଡ଼ି ବଂଶୀ ଗୋଟି ବେଦପତି
ଭଣ୍ଡାରେ ନେଇ ତାହାଙ୍କୁ ରଖିଲେ ସାଇତି
ଯାହାକୁହୋଇବଯେତେବେଳେ ଲୋଡ଼ାଯାହା
ନେବେସେମାନେ ଆସିଯେଦେବେ ଅଷ୍ଟବାହା
ଏ ରୂପେ ଧନ୍ୟ ସେ ବଂଶୀ ବ୍ରହ୍ମାକଲେଜାତ
ନୃସିଂହ ପୁରାଣେ ଏହା ହୋଇଛି ଲିଖିତ ।
ବିପ୍ର ପୀତାମ୍ବର ଦାସ ସାଧୁଙ୍କର ମୁଖେ
ଏ ଗ୍ରନ୍ଥର ଅର୍ଥ ଶୁଣି ପତ୍ରରେ ତା ଲେଖେ ।
ସତ୍ୟଯୁଗରୁ ଏ ଗ୍ରନ୍ଥ ବେଦବ୍ୟାସ କୃତ
ଅଷ୍ଟାଦଶ ପୁରାଣେ ଏ ଗ୍ରନ୍ଥ ଅଟେ ଉକ୍ତ ।



## କନ୍ଦର୍ପଙ୍କ ବିବାହ

ଶୁଣ ଆହେ ପରୀକ୍ଷିତ କହେ ଶୁକ୍ରମୁନି
ରଖିଲେ ଧନୁ ମୁରଲୀ ସାଜି ପଦ୍ମଯୋନି ।
କନ୍ଦର୍ପର ବିଭା ଏବେ ଶୁଣ ମନ ଦେଇ
ନାରଦଙ୍କ ଆଗେ ଯାହା ଛନ୍ତି ଧାତା କହି ।
ପରୀକ୍ଷ ବୋଇଲେ ତୁମ୍ଭେ କହ ତପୋବନ୍ତ
ରତି କନ୍ଦର୍ପର ବିଭା ହୋଇଲା କେମନ୍ତ ।
କେବଣ ଯୁଗରେ କାମ ରତି ହେଲେ ବିଭା
ଏକଥା ମୋତେ ସଂକ୍ଷେପି ଆପଣ କହିବା ।

ଏରୂପେ କହନ୍ତେ ପରୀକ୍ଷିତ ଶାସ୍ତ୍ରବାଣୀ
ଆନନ୍ଦ ମନେ କହନ୍ତି ସେ ବାଦରାୟଣି ।
ବୋଲନ୍ତି ହେ ସାବଧାନେ ଶୁଣ ନୃପନାଥ
ନାରଦ ଋଷିଙ୍କୁ ଯାହା କହିଲେ ବିଧାତ ।
ସେ କଥା ପ୍ରାଞ୍ଜଳ କରି କହୁଛି ତା ଶୁଣ
ବାସବର ପୁତ୍ର ସିନା କାମଦେବ ଜାଣ ।
ସେ କାମଦେବର ଜନ୍ମ ଶୁଣିଅଛୁ ପୂର୍ବେ
ଯେତେବେଳେ ଶଚୀ ଗର୍ଭୁ ଜନ୍ମି ପୁତ୍ରସର୍ବେ
ସେହି ସମୟରେ ସ୍ୱର୍ଗେ ମିଳି ତ୍ରିପୁରାରି
ଆବର ମଧ ପ୍ରବେଶ ହେଲେ ଆସି ହରି ।
ଯାବତ ଋଷିଙ୍କୁ ଘେନି ବ୍ରହ୍ମା ବିଜେ କଲେ
ସୁଧର୍ମା ସଭାରେ ଯାଇ ସମସ୍ତେ ବସିଲେ
ତେତିଶ କୋଟି ଦେବଙ୍କୁ ଘେନିଣ ମଘବା
କନ୍ଦର୍ପକୁ କୋଳେ ଧରି ବିଜେ କଲେ ସଭା
ଏସମୟେ କନ୍ଦର୍ପକୁ ଦେଖିକରି ପିତା
ରତିକନ୍ୟାକୁ ମନରେ ବସିକଲେ ଚିନ୍ତା ।
ବ୍ରହ୍ମା ସୁମରନ୍ତେ ବିଜେ କଲେ ରତିଦେବୀ
ପିତାର କୋଳରେ ଆସି ବସିଲେ ବୈଷ୍ଣବୀ
ପୁରନ୍ଦର ହରିହର ଆଦି ସର୍ବଦେବେ
କନ୍ୟାର ରୂପକୁ ଦେଖି ମୋହଯାନ୍ତି ସର୍ବେ
କେ ବୋଲଇ କମଳା କି ପାର୍ବତୀ ବା ଏହୁ
ଏହିରୂପେ ଏହା ଜ୍ୟୋତି ଦିଶେ ଦାଉଦାଉ
କେ ବୋଲଇ ନୁହନ୍ତି ସେ ରତିଦେବୀ ଏକା
ରତିଦେବୀ ହେଲାରୁ ଏ ତେଜିଲାକ ଶଙ୍କା ।
ଧାତାଙ୍କ ସୁତା ନୋହିଲେ କାହିଁକି ବସନ୍ତା ।
ଭଲା ଏ କୁମାରୀ ଜାତ କରିଛି ବିଧାତା ।
ଯାହାର ଭାଗ୍ୟରେ ଥିବ ଏକନ୍ୟା ସେନେବ
ଏରୂପେ ଭାଳନ୍ତି ସଭା ମଧେ ବସି ସର୍ବ ।
ସବୁଙ୍କର ମନଚିନ୍ତା ଜାଣି ନାରାୟଣ
ସମସ୍ତଙ୍କୁ ଚାହିଁ ପୁଣି କହନ୍ତି ଆପଣ ।
ବୋଲନ୍ତି ଆମ୍ଭଙ୍କୁ ଏକା ଏ କନ୍ୟାଟି ଯୋଗ
ଅନ୍ୟ ଲୋକଙ୍କୁ ଏକଥା ନୁହେ କେଭେଭୋଗ
ପ୍ରଭୁଙ୍କ ମୁଖରୁ ଶୁଣି ହର କଲେ କୋପ
ବୋଲନ୍ତି ଆମ୍ଭଙ୍କୁ ଏକା ଦେବ କନ୍ୟା ବାପ
ଏରୂପେ ହରଙ୍କ ମୁଖୁ ଶୁଣି ଋଷିମାନେ
ସଭାରେ ନ୍ୟାୟ କରନ୍ତି ବସି ଜଣେ ଜଣେ ।
ବୋଲନ୍ତି ଜନ୍ମ କରନ୍ତି କନ୍ୟା ବାପମାଏ
ଆନ କେ ନେଇ ପାରଇ ଦାନ କଲାଯାଏ
ବିଭାଯାଏ ପିଅରର କନ୍ୟା ଯେ ଅଟଇ
ଯାହାକୁ ଦିଅଇ ସେହୁ କରେ ଭୋଗ ନେଇ
ଦୁହିତାକୁ ବୋଲାଯାଏ ପିତାମାତାମୂଳ
ସମର୍ପିଲେ ରଖି ନ ପାରନ୍ତି ଦିଗପାଳ ।
ଦେବତାଏ ବୋଇଲେ ଏ କଥାଗୋଟି ସତ
ଯାହାର ଭାଗ୍ୟ ଥିବ ସେ ଧରିବ ଯା ହସ୍ତ
ଇନ୍ଦ୍ର ବୋଇଲେ ସ୍ୱର୍ଗରେ ମୁହିଁ ନୃପମଣି
ଆମ୍ଭର ଏ କୁଳବଧୂ ହୋଇବ ତରୁଣୀ ।
ଶିବ ବୋଇଲେ ଇନ୍ଦ୍ରରୁ ଏଡ଼େ କଥା ଭାବି
ଆମ୍ଭେମାନେ ବୋଲୁଅଛୁ କନ୍ୟାକୁ ମୁଁ ନେବି
ବୁଝିଲେ ଏହି ସଂସାରେଯାକେ ସିନା ପ୍ରଭୁ
ଦେଖିବା କିରୂପେ ଏହିଠାରୁ କନ୍ୟାନେବୁ
ଏମନ୍ତ ବୋଲିଣ ହର ଉଠିଲେ ପ୍ରଜ୍ୱଳି
ତା ଦେଖି ହସି କହନ୍ତି ପ୍ରଭୁ ବନମାଳୀ ।
ବୋଲନ୍ତି ଶୁଣ ହେ ଦେବ ଶଙ୍କର ଦେବତା
କି ରୂପେ ନେବ ଯେ ତୁମ୍ଭେ ବ୍ରହ୍ମାର ଦୂହିତା
ବାସବର କଥା ଶୁଣି ଏଡ଼େ କୋପୀ ହୁଅ
ତୁମ୍ଭ ଇଛାରେ କି ଘେନିଯିବ ଏହା କହ ।
ବଡ଼ପଣ ବହି କରୁଅଛ ଯେ ସରାଗ
ଏ ରତିକନ୍ୟା ତୁମ୍ଭଙ୍କୁ ନୋହେକେଭେଭୋଗ
ଶିବ ବୋଇଲେ କିମ୍ପାଇଁ ଭୋଗନୁହମୋତେ
ସେ ସନ୍ଧି ଶୁଣିଲେ ସିନା ଯିବି ମୁଁ ପରତେ
ପରିହାସ କଲେ ମୁହିଁ ମାନିବି କି କେଭେ
ତୁଚ୍ଛାକୁ ହଚ୍ଚା କରୁଛ ତୁମ୍ଭେ ବାସୁଦେବେ ।
ବିଷ୍ଣୁ ବୋଇଲେ କହିବା ତେବେ ହରଶୁଣ
ବ୍ରହ୍ମା ବିଷ୍ଣୁ ଶିବ ଆମ୍ଭେ ତିନିଭାଇ ଜାଣ ।
ଧାତା ଦୁହିତା ବଶିଷ୍ଠ ଋଷିର ଭଗିନୀ
ଦୂହିତାକୁ ନେଲ ତୁମ୍ଭେ କହୁଛ କି ପତ୍ନୀ ।
ହର ବୋଇଲେ ବାରଣକଲମୋତେଯେବେ
ତୁମ୍ଭର ଏ କନ୍ୟାଝିଅ ଲେଖା ହେଲା ତେବେ
ବିଷ୍ଣୁ ବୋଇଲେ ବ୍ରହ୍ମାଙ୍କୁ ଏହା ତେବେପୁଛ
ସେ ତୁମ୍ଭଙ୍କୁ ବୁଝାଇଣ ଦ୍ୟନ୍ତୁ ଉପଦେଶ ।
ବିଷ୍ଣୁ ବୋଇଲେନକର ଗୋଳ ତୁମ୍ଭେ କେହି
ବୁଝିବେ ତ ବ୍ରହ୍ମା, ବିଷ୍ଣୁ ଶିବ ଏକା ହୋଇ
ଆଦିନାରୀଠାରୁ ଆମ୍ଭେ ହୋଇ ଥାଇ ଜନ୍ମ
ବ୍ରହ୍ମା ବିଷ୍ଣୁ ଶିବ ବୋଲି ବହିଲଇଁ ନାମ ।
ଯେଣୁକରି ପ୍ରତ୍ୟକ୍ଷରେ ଆମ୍ଭେ ଏକ ମୂର୍ତ୍ତି
ଏଣୁ ତୁମ୍ଭ ଦୁହିତା କି ନୋହିଲା ଏ ରତି ।
ଶିବ ବୋଇଲେ ଆମ୍ଭର ହେଲା ତ ଦୁହିତା
ବିଷ୍ଣୁ କାହିଁକି ନେବାକୁବୋଇଲେହେ ଧାତା
ଗୋବିନ୍ଦର ଝିଅ ତେବେ ନୋହିଲାକ ସେହୁ
କାହିଁକି ରତିକି ନେବି ବୋଇଲେ ସେ କହୁ ।

ବ୍ରହ୍ମା ବୋଇଲେ ଭୋ ସ୍ୱାମୀ ଶୁଣ ବିଶ୍ୱସାଇଁ
ବିଷ୍ଣୁ ମୋହର ବୋଇଲେ ଚଳାଇବା ପାଇଁ
ଏ ରତି କନ୍ୟାର କଥା କହୁଅଛି ତେବେ
ବର ମନାସି ଅଛଇ କେତେ ଦିନ ପୂର୍ବେ ।
ଅହଲ୍ୟା ଯେ ସରସ୍ୱତୀ ଜନ୍ମିଲେ ସେ କାଳେ
ତାଙ୍କୁ ସଙ୍ଗୁ କନ୍ୟା ରହିଅଛି ତପବଳେ ।
ଏ କନ୍ୟାର ପତି ଏକା ଅଟଇ କନ୍ଦର୍ପ
ତାଙ୍କୁ ନ ଦେଖିଲା ଯାଏ କରୁଥିଲା ତପ ।
ଅରଜୋବତୀ ହୋଇ ଏ ମୋରି ଗୃହେ ଥିଲା
ସ୍ୱାମୀର ଜନମ ଶୁଣି ରଜୋବତୀ ହେଲା ।
ଶଚୀ ଗର୍ଭେ ଇନ୍ଦ୍ର ବୀର୍ଯ୍ୟେ ଜନ୍ମନ୍ତେ ତାପତି
ତେଣୁ ଏ ରତିକନ୍ୟାର ପ୍ରକାଶିଲା ଜ୍ୟୋତି
ତେଣୁ ବାସବ ବୋଇଲା ଏ କନ୍ୟାମୋହର
ପୁତ୍ରକୁ ତାହାର ବିଭା ହେବ ପୁରନ୍ଦର ।
ଇନ୍ଦ୍ରର ଯେ କୁଳବଧୂ ହେବ ମୋର ଜେମା
ତେଣୁକରି ନେବା ମନେ କଲେଟି ସୁତ୍ରାମା
ଶିବ ବୋଇଲେ ବିଷ୍ଣୁଙ୍କୁ ଦେଲେ ହେବକିସ
କିମ୍ପାଇ କହିଲେ ବୋଲ ତେବେ ଆମ୍ଭପାଶ
ବ୍ରହ୍ମା ଯେ ବୋଇଲେ ସ୍ୱାମୀଶୁଣତେବେତାହା
ବିଷ୍ଣୁ ପାଞ୍ଚିଲେ ଅନେକ କାଳକଥା ଯାହା ।
ଏବେ ଏହି କନ୍ୟାକୁ ତ କାମ ବିଭା ହେବ
ତହିଁ ଉତ୍ତାରେ ତେପନ ସତ୍ୟଯୁଗ ଯିବ ।
ବିଧାତା ଲେଖିଛି ଯାହା କରିବି ଗୋବଧ
ପୁରାଣକୁ ଚାହିଁ ଆମ୍ଭେ କରିଛୁ ପ୍ରସିଦ୍ଧ ।
ଗୋ ହତ୍ୟା କରି ବସିବ ତୁମ୍ଭେ ଜ୍ଞାନ ସାଧି
ନାଶିବି ପଞ୍ଚଇନ୍ଦ୍ରିୟ ଷଡ଼ଚକ୍ର ଭେଦି ।
ରହିବ ଏକାମ୍ର ବନ ମଧ୍ୟେ ତୁମ୍ଭେ ଯାଇ
ପାର୍ବତୀ ଆଦି ସବୁଙ୍କୁ ପାଶୋରି ଯେ ଦେଇ
ଏଥି ଉତ୍ତାରେ ଅସୁରଙ୍କର ହେବ ଜନ୍ମ
ତାରକାସୁର ବୋଲିଣ ହେବ ତାର ନାମ ।
ଅନେକ ସେ ଉପଦ୍ରବ କରିବ ତ୍ରିପୁରେ
ତାହାକୁ କେହି ମାରି ନ ପାରିବେ ସଂସାରେ
କାହାରି ହସ୍ତରେ ମୃତ୍ୟୁ ନାହିଁ ଦାନବକୁ
ତଥାପି ତୁମ୍ଭର ପୁତ୍ର ମାରିବେ ତାହାକୁ
ଜନ୍ମିଲେ ତୁମ୍ଭର ପୁତ୍ର ଜନ୍ମ ହୋଇଥିବ
ମହା ବଳିଷ୍ଠ ସେ ତେଣୁ ଦାନବ ହୋଇବ
ଦେବତାଏ ତାର ଭାର ନ ପାରିବେ ସହି
କହିବେ ଉମାଙ୍କ ଆଗେ ତୁମ୍ଭ ଭେଟ ନୋହି
ବୋଲିବେ ଗୋ ମାତା ତୁମ୍ଭେପୁତ୍ରଆଜ୍ଞାକରେ
ପୃଥିବୀ ଗଲାଣି ନାଶ ମାର ଏ ଅସୁରେ ।

ଉମା ବୋଲିବେ ପୁତ୍ର କିଦେଖିଲମୋ ଏବେ
ହେଲାଣି ଲକ୍ଷେକ ଯୁଗ ନାହାନ୍ତିଟି ଶିବେ ।
ପତି ନ ରମିଲେ ପୁତ୍ର କେଉଁ ହୋଇଛି କି
ମୁହିଁ ବୋଲି ମୂର୍ଚ୍ଛିଯାଇ ରହିଛି ସ୍ୱାମୀକି ।
ଦେବେ ବୋଲିବେ ଗୋ ମାତ ତେବେ ଚାଲଯିବା
ତୁମ୍ଭଙ୍କୁ ଶିବଙ୍କ ପାଶେ ଭେଟ କରାଇବା ।
ତୁମ୍ଭ ତାଙ୍କ ସଂଯୋଗରୁ ଜାତ ହେବ ବଳା
ବ୍ରହ୍ମାଣ୍ଡ ରକ୍ଷା କର ନ କର ମାତ ହେଳା ।
ଉମା ବୋଲିବେ ଭାଙ୍ଗିବ କହକେସେଯୋଗ
ଦେବେ ବୋଲିବେ ପେଷି ବାକନ୍ଦର୍ପକୁଆଗ
ସେ କାମ ଯାଇ ବିନ୍ଧିବ ଶର ଯେତେବେଳେ
ଉଠିଣ ସେ ସଦାଶିବ ବସାଇବେ କୋଳେ
ଦେବତାଙ୍କ ବୋଲେହେଉବୋଲିବେପାର୍ବତୀ
କନ୍ଦର୍ପକୁ ନେଇ ଚଳିଯିବେ ତୁମ୍ଭ କତି ।
ଏକାମ୍ର ବନରେ ଯାଇ ମିଳିବେ ସରାଗେ
କନ୍ଦର୍ପକୁ ନେଇ ରଖିଦେବେ ତୁମ୍ଭ ଆଗେ
କାମଦେବ ପଛେ ପଛେ ପାର୍ବତୀ ଯେ ରହି
ବିନ୍ଧିବ ମଦନ ବାଣ ସଦାଶିବେ ଚାହିଁ ।
ସେ ବାଣ ବାଜି ତୁମ୍ଭର ଅଙ୍ଗ ପଲ୍ଲବିବ
ଚାହାଁନ୍ତେ ଚକ୍ଷୁକୁ ମେଲି କାମ ଭସ୍ମଯିବ ।
ଏଥୁଅନନ୍ତରେ ତୁମ୍ଭେ ରମିବ ଉମାଙ୍କୁ
କାର୍ତ୍ତିକ ଜନ୍ମି ମାରିବେ ତାରକ ଦୈତ୍ୟକୁ
ଏ କାମଦେବ ସେଠାରେ ଯିବ ଭସ୍ମ ହୋଇ
ସେଠାରୁ ରତି ରହିବ ମୋର ପୁରେ ଯାଇଁ
ରହିବ ତେପନ ଯୁଗଯାଏ କାଳ ବଞ୍ଚି
ଦ୍ୱାପର ଯୁଗରେ ପୁଣି ଜନ୍ମିବେ ଶ୍ରୀବତ୍ସି ।
ଦେବକୀ ମାତାର ଗର୍ଭେ ବସୁଦେବ ବୀର୍ଯ୍ୟେ
ଜନମ ହୋଇଣ ପ୍ରଭୁ ଲୁଚିବେ ସେ ବ୍ରଜେ
ନାଶିବେ ଅଷ୍ଟବରଷେ ରହି କଂସକେଶୀ
ତହିଁ ଉତ୍ତାରୁ ଦ୍ୱାରକା ଯିବେ ବ୍ରହ୍ମରାଶି ।
ଅଷ୍ଟପାଟବଂଶୀକି ଯେ ପ୍ରଭୁ ହେବେ ବିଭା
ତେବେ ଦିଶିବ ସେ ଅବତାର ମହାଶୋଭା
ଭୀଷ୍ମକ ରାଜାର ଝିଅ ରୁକ୍ମିଣୀର ଗର୍ଭେ
ପ୍ରଦ୍ୟୁମ୍ନ ଜନ୍ମ କରିବେ ପ୍ରଭୁ ବାସୁଦେବେ ।
ଏ କାମ ପ୍ରଦ୍ୟୁମ୍ନ ନାମ ଧରି ଉପୁଜିବ
ଶମ୍ବରାସୁରକୁ ମାରି ଶମ୍ବରାରି ହେବ ।
ସେଠାରେ ଭୋଗ କରିବ ଏହି ରତିକନ୍ୟା
ଶ୍ରୀକୃଷ୍ଣର ପାଟବଧୂ ହେବ ମୋର ଜେମା ।
ତେଣୁ ଗୋବିନ୍ଦ ବୋଇଲେ ଏହାନେବିମୁହିଁ
ଶୁଣିଣ ରହିଲେ ସଦାଶିବ ତୁନିହୋଇ ।

ବ୍ରହ୍ମା ଏ କଥା କହନ୍ତେ ସର୍ବେହେଲେବୋଧ
ଆଗତ ଶାସ୍ତ୍ରର ବାଣୀ ଅଟଇ ପ୍ରସିଦ୍ଧ ।
ଶୁଣି ସକଳ ସଂଶୟ ମନୁ ଗଲା ଛାଡ଼ି
ନୃସିଂହ ପୁରାଣ ବ୍ରହ୍ମା ବୁଝାଇଲେ ଫେଡ଼ି ।
କହିବା ଏବେ ହୋ ଶୁଣ କନ୍ଦର୍ପର ବିଭା
ବ୍ରହ୍ମାଯେ ବୋଇଲେବେଦୀ ଇନ୍ଦ୍ରକର ନିଭା
କାମଦେବକୁ ଯେ ବରବେଶ କରି ଆଣ
ବିଭା କରି ଯିବୁ ଆମ୍ଭେ ସମସ୍ତେ ଥାଇଣ ।
ବ୍ରହ୍ମାଙ୍କର ଏ ବଚନ ଶୁଣି ପୁରନ୍ଦର
ବେଶକରି ମଦନକୁ ନେଲେ ସ୍ୱର୍ଗପୁର ।
ଯୁବତୀମାନେ ମିଳିଣ ଦେଲେ ହୁଳହୁଳି
ବିବାହ ବିଧିରେ ଦେବୀ ମଧ୍ୟେ ଆସି ମିଳି ।
ଆପଣେ ଯେ ପିତାମହ ବର ଯାଇ ବରି
କନ୍ୟା ସମର୍ପିଣ ଦେଲେ ମଙ୍ଗଳ ଉଚ୍ଚାରି ।
କାମଦେବର କରକୁ ରତିଦେବୀ କର
ଦେଇ କୁଶଗ୍ରନ୍ଥି ବାନ୍ଧିଦେଲେ ବେଦବର ।
ଶଙ୍ଖରେ ଦୁବ ଅକ୍ଷତ ଜଳ ପୁଷ୍ପ ଧରି
ଦୁହିତାକୁ ସମର୍ପିଣ କହନ୍ତି ତିଆରି ।
ଧାତାବୋଇଲେ ମାଗୋ ଏକାମତୋରପତି
ତୁ ରତି ସତୀ ତାହାର ସଦା ପ୍ରିୟବତୀ ।
ଆଜିଯାଏ ମୋର ଘରେ ଥିଲୁ ସୁଲକ୍ଷଣୀ
ଯାହାର ଦ୍ରବ୍ୟ ତାହାକୁ ଦେଲି ଏବେ ଜାଣି
ଇନ୍ଦ୍ରର ପ୍ରାୟ ଶ୍ୱଶୁର ଶଚୀ ପ୍ରାୟ ଶାଶୁ
ପାଇଲୁ କନ୍ଦର୍ପ ପ୍ରାୟ ପତି ଭାଗ୍ୟବଶୁଁ ।
ସମାନଅଟ ଯେ ତୁମ୍ଭେ ପତି ପତ୍ନୀ ଘେନି
ତୁମ୍ଭର ଭାବ କ୍ରୀଡ଼ାରୁ ଯାବଜ୍ଜୀବ ଜନ୍ମି ।
ଆମ୍ଭର ଆୟୁଷ ଘେନି ସଦାକାଳେ ଥାଅ
ସ୍ତିରୀ ପୁରୁଷଙ୍କ କ୍ରୀଡ଼ା ଗୃହେ ଉଦେ ହୁଅ
ଯୁବତୀର ଅଙ୍ଗେ ରତି ପୁଂସ ଅଙ୍ଗେ କାମ
ଏରୂପେ ବସି ଅଶେଷ ଜୀବ ଅଙ୍ଗେ ଭ୍ରମ ।
ପ୍ରାଣୀଙ୍କ ତୃତୀୟ ଚକ୍ରେ କର ତୁମ୍ଭେ ବାସ
ନ ଯିବ ଏକା ସିଦ୍ଧାନ୍ତ ପୁରୁଷର ପାଶ ।
ଏତେ କହିଣ ବ୍ରହ୍ମା ଜଳ ଦେଲେ ତୋଳି
ଯୁବତୀମାନେ ଦିଅନ୍ତି ଶୁଭ ହୁଳହୁଳି ।
ସକଳ ଋଷି ମିଳିଣ କଲେ ଜୟେ ଜୟେ
ଏଥୁଅନନ୍ତରେ ବ୍ରହ୍ମା ଯଉତୁକ ଦିଏ ।
ଅନେକ ଧନ ରତନ ବସ୍ତ୍ର ଅଳଙ୍କାର
ବର କନ୍ୟାକୁ ଦିଅନ୍ତି ତୋଷେ ବେଦବର
ବିଭାର ବିଧାନମାନ ସାରି କୁଶପାଣି
ହୋମ ଅଗ୍ନି ବିସର୍ଜନ କଲେ ତତକ୍ଷଣି ।
ଦେବସ୍ତିରୀଙ୍କୁ ବୋଇଲେ ଖେଳା ନେଇଜୁଅ
ବରକନ୍ୟାକୁ ଉଠାଇ ଅନ୍ତପୁରେ ନିଅ ।
ସ୍ୱର୍ଣ୍ଣ କଉଡ଼ିରେ ଜୁଆ ଖେଳାଇ ଯୁବତୀ
ଭିତର ପୁରକୁ ନେଇ ଅନ୍ନ ପରଷନ୍ତି ।
ଭୁଞ୍ଜି କରି ବର କନ୍ୟା ହୋଇଲେ ସନ୍ତୋଷ
ଏଥୁଅନନ୍ତରେ ରାତ୍ର ହୋଇଲା ପ୍ରବେଶ ।
ମଧୁଶଯ୍ୟାପୁରେ ବିଜେ କଲେ କାମ ରତି
ନାନା ବିନୋଦ ଭାବରେ ପୁହାଇଲେ ରାତି
ସରିଲା ସେ ବିଭାରସ ଗଲେ ଯେଝାପୁର
ବୈକୁଣ୍ଠକୁ ଗଲେ ହରି ନୌକାରେ ଶଙ୍କର
ଯଶୋବନ୍ତୀ ପୁରେ ବ୍ରହ୍ମା ଗଲେଦେବସ୍ୱର୍ଗେ
ଚଳିଗଲେ ମୁନିମାନେ ଯେଝାପୁର ଲାଗେ ।
ଅଧମ ସେ ହୀନ ବିପ୍ର ପିତାମ୍ବର ଦାଶ
ପାଶୋରିଲା ଜଞ୍ଜାଳରେ ପଡ଼ି ହରି ରସ ।
ଲୋକାଇତ ମାର୍ଗେ ଏବେ ଗୋଡ଼ାଇଅଛଇ
ସାଧୁଙ୍କର କୃପାହେଲେ ତରିଯିବି ମୁହିଁ ।
ପ୍ରଥମ ସାଗର ସୃଷ୍ଟି ସର୍ଜନା ବୃତ୍ତାନ୍ତ
ଏ ନୃସିଂହ ପୁରାଣରେ ହୋଇଛି ଉକତ ।
ଯେତେକ ଦୃଶ୍ୟ ହେଲା ମୁଁ ଲେଖିଲିସେତକ
କେ ଆନ କରିପାରିବ ଶାରଦାଙ୍କ ବାକ୍ୟ ।
କଳାକ ସେ ମୁରଦୈତ୍ୟ ଯେତେ ଉପଦ୍ରବ୍ୟ
ମାନବ ମାତ୍ରକେ ତାହା କେ ଲେଖି ପାରିବ
ଶାରଦା ଯାହା କହନ୍ତି ପ୍ରବନ୍ଧ ପ୍ରାକୃତେ
ଶ୍ରୀମୁଖେ ଆଜ୍ଞା ଦିଅନ୍ତି ଲେଖଇ ମୁଁ ହସ୍ତେ ।
ପ୍ରାକୃତବନ୍ଧେ ତେଣୁ ଏ ପୁରାଣକୁ ପୁଣି
ପୀତାମ୍ବର ଦାଶ ଜଗଜ୍ଜନ ହିତ ମଣି ।



## ମୁର ଓ ଦାରୁଣ ଦୈତ୍ୟ ଜନ୍ମ ବୃତ୍ତାନ୍ତ

ଏଥୁ ଅନନ୍ତରେ ପୁଣି ପରୀକ୍ଷ ନୃବର
ଶ୍ରୀଶୁକମୁନି ଚରଣେ କଲେ ନମସ୍କାର ।
କନ୍ଦର୍ପର ବିଭା ଶୁଣି ସନ୍ତୁଷ୍ଟ ହୋଇଲେ
ଲକ୍ଷେ ସୁବର୍ଣ୍ଣ ଦକ୍ଷିଣା ନେଇ ତାଙ୍କୁଦେଲେ
ବୋଇଲେ ମୁର ଦାରୁଣ କଥାକହ ତୋଷେ
କିରୂପେ ବ୍ରାହ୍ମଣ ବୀର୍ଯ୍ୟେ ଜନ୍ମିଲେ ରାକ୍ଷସେ
କେଉଁ ମାତା ଗର୍ଭରୁ ହେଲେ ଉତପତ୍ତି
ଏକଥା କହ ହେ ଆଗ ଫିଟୁ ମନଭ୍ରାନ୍ତି ।
ଆଗକୁ କହିବି ବୋଲି ରଖାଇଲ ମୋତେ
ପ୍ରାଞ୍ଜଳ କରିଣ ତାହା କହ ମୋ ଅଗ୍ରତେ ।

ସେ ଯାହାକୁ ବୋଲିବେ ସେ ହେବ ଋଷିଗଣ
ଏହି ପୁରସ୍କାର ତାଙ୍କୁ ଦେବେ ଦେଲେ ପୁଣ ।
ବ୍ରହ୍ମାବିଷ୍ଣୁ ମହେଶ୍ୱର ଏହା ସିଦ୍ଧି କଲେ
ସେହିଠାରୁ ମହାବ୍ରହ୍ମ ଋଷି ସେ ହୋଇଲେ ।
ମହାଲକ୍ଷ୍ମୀ ଦେବୀ ଆଣି ଖେଳାଇଲେ ଲୁଅ
ବନ୍ଦାଣ ସାରି ଅନ୍ନରେ ପରଷିଲେ ଘିଅ ।
ଘିଅର ଉପରେ ପୁଣି ଲୁଣଗୁଣ୍ଡା ଦେଲେ
ଖଣ୍ଡି ଖଣ୍ଡି କରି ନେଇ ଅଦା ପରଷିଲେ ।
ଅଦାର ଉପରେ ଦେଲେ ଲେମ୍ବୁରସ ଦୋର
ପରଷନ୍ତି କମଳା ସେ ଭୁଞ୍ଜନ୍ତି ତା ହର ।
ସିଝା ଯେ ନିରୁତା କ୍ଷୀର ଦ୍ୟନ୍ତି ପୁଣି ଆଣି
ବିବିଧ ବ୍ୟଞ୍ଜନ ପରଷନ୍ତି କମଳିନୀ ।
ମୁକପଇତି ଶର୍କରା ପ୍ରତି ପ୍ରତି ହୋଇ
କାହିଁଗୁଡ଼ କାହିଁ ପୟ କାହିଁ ହେଙ୍ଗୁ ଦେଇ ।
ତହିଁ ଉତ୍ତାରଣ ପୁଣ ଦେଲେ ସରକୋରା
ପୁରୀ ନାଡ଼ି ମନୋହର ଶାକର କାକରା ।
ଖଣ୍ଡ ନବାତ ଛେନା ଯେ ଗଜା ଲଡୁ ରସ
ଡାଳିମ୍ବ କମଳା ଆମ୍ବ କଦଳୀ ପଣସ ।
ଗଙ୍ଗାଜଳେ ପୂରାଇଣ ଦେଲେ ସାଚିପଣା
ଭାସୁଛି ମରିଚ ପୁଣ ପଡ଼ି ଦୁଧ ଛେନା ।
ଅମୃତ ପାଣି କଦଳୀ ଫଳ ପାଚିଥିଲେ
ପଣାରେ ପୁରାଇ ତାହା ଈଶ୍ୱରଙ୍କୁ ଦେଲେ ।
ଆବର କାନ୍ତି ଲଡୁ ଯେ ଝିଲି ପାରିଜାତ
ସରପୁଲୀ ଗଜାମୁଗ ନଡ଼ିଆ ସଂଯୁତ ।
ତାରପରେ ଦେଲେ ନେଇ ନବାତ ଯେପଣା
ଗଙ୍ଗାବାଣ ନଡ଼ିଆ ଯେ ଦ୍ୟନ୍ତି ନେଇ ରମା ।
ଏହି ପ୍ରକାରେ ମଣୋହି କଲେ କାଶୀବାସୀ
ଆବର ଭୁଞ୍ଜିଲେ ବ୍ରହ୍ମା ବିଷ୍ଣୁ ସର୍ବ ଋଷି ।
ଯହିଁରେ ପରମଲକ୍ଷ୍ମୀ ଛନ୍ତି ବିଜେକରି
ତହିଁ କେଉଁ ଦ୍ରବ୍ୟ ଅବା ଅପୂର୍ବ ବିଚାରି ।
ଏହି ରୂପେ ଭୁଞ୍ଜି ସର୍ବେ ଆଚମନ କଲେ
ଶ୍ରୀମୁଖ ପୋଛି ତାମ୍ବୁଳମାନ ଲାଗି ହେଲେ ।
ଋଷିଙ୍କର ପତ୍ନୀମାନେ ଭୁଞ୍ଜିଲେ ଏ ମତି
ଏଥୁଅନନ୍ତରେ ଆସି ପ୍ରବେଶିଲା ରାତି ।
ମଧୁଯଶ୍ୟାକୁ ବିଜୟ କଲେ ବୃଷଧ୍ୱଜ
ଗଜଦନ୍ତ ପଲ୍ୟଙ୍କରେ ପଡ଼ିଅଛି ଶେଯ ।
ଶେଯ ଉପରେ ପଡ଼ିଛି ସେବତୀ ପାଖୁଡ଼ା
ପାଖୁଡ଼ା ପରେ ହୋଇଛି କର୍ପୂର ସିଞ୍ଚଡ଼ା ।
କଳାମେଘୀ ପାଟରେ ଯେ ଚାନ୍ଦୁଆ ଅଛଇ
ମୁକୁତାର ଡ୍ରୋଣମାନ ଲମ୍ବିଛନ୍ତି ତହିଁ ।
ତାର ଚାରିପାଖେ ଜଳୁଅଛି ଦୀପାବଳୀ
ଦିବସରୁ ଅଧିକ ଯେ ଦିଶେ ରାତ୍ରେ ଝଳି ।
ସୁବେଶ ବେଶ କରିଣ ସର୍ବ ଦେବନାରୀ
ଗୌରବ କରି ଆଣିଣ ମଧୁଶଯ୍ୟା ପୁରୀ ।
ପରିହାସ ହୋଇକରି ଆସନ୍ତି ଅବଳା
ଉମାକୁ ବୋଲନ୍ତି ଧନ୍ୟ ତୁମ୍ଭ କର୍ମ କଲା ।
ସାକ୍ଷାତ ଈଶ୍ୱରଙ୍କୁ ତୁ ପାଇଅଛୁ ବର
ନାନାରସେ ଏ ରଜନୀ କର ଗୋ ବିହାର ।
କାଲି ପ୍ରଭାତରେ ଆମ୍ଭ ପାଶକୁ ଆସିବୁ
ଏବେ ଏ ଅଙ୍ଗକୁ ମହାଦେବେ ସମର୍ପିବୁ ।
ମଧୁଶଯ୍ୟାରେ ଉମାକୁ କଲେକ ପ୍ରବେଶ
ସର୍ବ ସତୀଏ ମିଳିଲେ ଯେ ଯାହାର ବାସ ।
ପଲ୍ୟଙ୍କ ତଳରେ ଉଭା ହେଲେ ଯାଇଁ ବାଳୀ
ଲଜ୍ଜାରେ ଚରଣକୁ ସେ ନ ପାରନ୍ତି ଚାଳି ।
ଆସ ଆସ ସଖି ବୋଲି ବୋଲନ୍ତି ଈଶ୍ୱରେ
ନେଇଣ ବସାଇଲେ ସେ ପଲ୍ୟଙ୍କ ଉପରେ ।
କୋଳକରି ମହାଦେବ ଦିଅନ୍ତି ଚୁମ୍ବନ
ତୁହି ସିନା ଅଟୁ ସଖୀ ମୋହର ଜୀବନ ।
ଏସନ ବୋଲିଣ ହର କହନ୍ତି ସୁରତି
ନାନା ବିନୋଦ କରିଣ ହରି ତାଙ୍କ ମତି ।
ଅନେକ କ୍ରୀଡ଼ା କରିଣ ନିଶି ପୁହାଇଲେ
ଅନ୍ତପୁରେ ପାର୍ବତୀ ଯେ ଯାଇ ବିଜେକଲେ ।
ଏହିରୂପେ ପାର୍ବତୀଙ୍କ ଅଟେ ବିଭାରସ
ସମସ୍ତ ଦେବେ ଚଳିଲେ ଯେ ଯାହାର ବାସ ।
ଶିବଙ୍କୁ ମେଲାଣି ମାଗି ସର୍ବେ ଚଳିଯାନ୍ତି
ଯଥା ଅନୁରୂପେ ଦଣ୍ଡେ ପ୍ରଣାମ କରନ୍ତି ।
ନିଜ ନିଜ ପତ୍ନୀ ଘେନି ଋଷିଏ ଚଳିଲେ
ଶଚୀକି କୋଳେ ଧରିଣ ପୁରନ୍ଦର ଗଲେ ।
ଶ୍ରୀଲକ୍ଷ୍ମୀଙ୍କୁ ଘେନି ବିଜେକଲେ ହୃଷିକେଶ
ସେ ପାଦେ ଶରଣ ବିପ୍ର ପୀତାମ୍ବର ଦାଶ ।
ଜୟ ଜୟ ଜଗନ୍ନାଥ ଦୟାକର ମୋତେ
ଜୟ ଜୟ ଜଗନ୍ନାଥ ଲକ୍ଷ୍ମୀଦେବୀ କାନ୍ତେ ।
ଜୟ ଜୟ ଜଗନ୍ନାଥ ପୁଣ୍ଡରୀକ ମୁଖ
ଜୟ ଜୟ ଜଗନ୍ନାଥ କଷ୍ଟୁ ମୋତେ ରଖ ।
ପଦ ଦୃଶ୍ୟକର ପ୍ରଭୁ କରିବି ଲିଖନ
ମହାକଷ୍ଟ ଅଟଇ ଏ ନୃସିଂହ ପୁରାଣ ।
ସାଧୁଜନେ ମୋହର ଯେ ନ ଘେନିଣ ଦୋଷ
ମୁହିଁ ବିପ୍ର ପୀତାମ୍ବର ଲକ୍ଷ୍ମୀଧର ଶିଷ୍ୟ ।
ସାଧୁଙ୍କର ଆଶୀର୍ବାଦେ ହେଲି ଜଗଜ୍ଜିତା
ଏଣୁ ଏ ପୁରାଣ ବାନ୍ଧି କରି କହି ପୋଥା ।

ସଂସ୍କୃତ ପଢ଼ା ମୋହରି କେଭେ ନାହିଁଜାଣ
ସାଧୁଙ୍କ କଲ୍ୟାଣରୁ ମୁଁ ଅଟେ ବଡ଼ପଣ ।
ସାଧୁଙ୍କ ଚରଣ ସେବି ମାଗନ୍ତେ ମୁଁ ଭିକ୍ଷା
ଅଜ୍ଞାନ ପାପ ନାଶିଣ ଦେଲେ ଜ୍ଞାନ ଦୀକ୍ଷା ।
ସେ ଜ୍ଞାନ ପାଇଣ ମୁହିଁ ହେଲି ସୁପଣ୍ଡିତ
ତେଣୁ ଏହି ପୁରାଣକୁ ବାନ୍ଧିକଲି ଗୀତ ।
ଅଦ୍ୟାବଧି ଏହୁ ଗୀତ ଥିଲା ଗୁପ୍ତ ହୋଇ
ପ୍ରଭୁଙ୍କ ଆଜ୍ଞାରେ ଏବେ ଲେଖିଲି ତା ମୁହିଁ ।
ଶୁଣିବା ଲୋକ ପବିତ୍ର ହେବେ ନିଶ୍ଚେ ଜାଣ
ଅଜ୍ଞ ଲୋକମାନେ ପାପ କରିବେ ଖଣ୍ଡନ ।
ଲଭିବେ ତୀର୍ଥ ନ କଲା ଲୋକତୀର୍ଥ ଧର୍ମ
ଲଭିବେ ବ୍ରତ ନ କଲା ଲୋକେ ବ୍ରତକର୍ମ ।
ଅଭକ୍ତ ଲୋକମାନେ ଯେ ଭକ୍ତିକି ଲଭିବେ
ଅସାଧୁ ଲୋକମାନେ ଯେ ସନ୍ଥ ବୋଲାଇବେ ।
ନ ବୁଝିଲେ ଲୋକମାନେ ଶୁଣି ହେବେ ମୋକ୍ଷ
ମୁଖେ ଶୁଣିଲେ ଗତି ସେ ଲଭିବେ ପ୍ରତ୍ୟକ୍ଷ ।
ବିପ୍ର ପୀତାମ୍ବର ଦାସ ସାଧୁଙ୍କ କୃପାରୁ
ପ୍ରଥମ ସାଗର ଏହୁ ଲେଖେ ପୁରାଣରୁ ।
ପନ୍ଦର ସହସ୍ର ଶ୍ଲୋକ ନୃସିଂହ ପୁରାଣ
ବ୍ୟାସଙ୍କ ମୁଖରେ ହୋଇଅଛି ଉଚ୍ଚାରଣ ।
ଶାରଦାଙ୍କ ଆଜ୍ଞାରେ ମୁଁ କରେ ପରାକୃତ
ବ୍ରହ୍ମା ମୁଖୁ ଶୁଣନ୍ତି ନାରଦ ତପୋବନ୍ତ ।
ତାହାଟି ସେ ଶୁକଯତି ପରୀକ୍ଷଙ୍କ ଆଗେ
ପ୍ରାଞ୍ଜଳ କରିଣ କହୁଛନ୍ତି ଅନୁରାଗେ ।



## ଧନୁ ଓ ବଂଶୀର ଜନ୍ମ ବୃତ୍ତାନ୍ତ

ଏଥୁଅନ୍ତେ ସେ ନାରଦ ମହାମୁନି ପୁଣି
ପିତାଙ୍କ ପାଦରେ ପଡ଼ି କରଇ ଦଇନି ।
ପାର୍ବତୀ ବିଭାଅନ୍ତେ ସେ ପଚାରନ୍ତି ବସି
ବୋଲନ୍ତି ଜନ୍ମିଲେ ଧନୁମାନେ କାହୁଁ ଆସି ।
ଆବର କି ରୂପେ ବଂଶୀ ଗୋଟି ହେଲା ଜାତ
ଶୁଣିବ ଆଗରେ ବୋଲି କହୁଥିଲେ ତାତ ।
ତେଣୁ ପଚାରୁ ଅଛଇ ଏବେ ମୁହିଁ ତାହା
ଶୁଣି କହନ୍ତି ଧନୁର କଥା ଇଷ୍ଟବାହା ।
ଧାତା ବୋଇଲେ ନାରଦ ଶୁଣ ସେ ନିର୍ଣ୍ଣୟ
ପୂର୍ବେ କହିଥିଲୁ ତୁମ୍ଭ ଆଗେ ସେ ବିଷୟ ।
ସେହିଯୋଗେ ମୁନି ଚଉବିଂଶ ଜାଣ ଥିଲେ
ପୂର୍ବେ ତାହା ତୋତେ ପୁଣି କହିଥିଲୁ ଭବେ ।
ନିର୍ମଳ କରି ସେ ବୃକ୍ଷ କଥା ଏବେ ଶୁଣ
ଯେମନ୍ତେ ପ୍ରକାଶ ହେଲା ଧନୁବଂଶୀ ଜାଣ ।
ଯଜ୍ଞ କରନ୍ତେ ଦୁହିତା ପାଇଁ ଲୋକଈଶ
ତା ମଧ୍ୟରୁ ଉପୁଜିଲା ଉତ୍ତମ ବାଉଁଶ ।
ସେ ବଂଶୀ ମହିମା ଦେବେ ତାହାକୁ ବା ଲକ୍ଷ୍ୟ
କୋଟିଏ ସୂର୍ଯ୍ୟ ଜ୍ୟୋତି ଦିଶଇ ପ୍ରତ୍ୟକ୍ଷ ।
ସେ ବୃକ୍ଷ ଜ୍ୟୋତିରେ ଲୋକେ ହୁଅନ୍ତି ମୋହିତ
ବିଧାତା ସର୍ଜନା ଶୁଣ ଆହେ ତପୋବନ୍ତ ।
ମୂଳ ତୀକ୍ଷ୍ଣ ବାର ପବ ଧରି ବେଦବର
ଗଣ୍ଡିକି ଛେଦିଣ ଚାହିଁ କଲା ତାକୁ ଶର ।
ଶତତ୍ରିଂଶ ପବ ଘେନି ପ୍ରକାଶ ବାଉଁଶ
ପାଞ୍ଚଖଣ୍ଡ ପାଞ୍ଚମନେ କଲେ ଲୋକଈଶ ।
ସମାନ ତାହାର ଅଗ୍ର ମୂଳ ଏକ ଭାଗ
ପ୍ରଥମ ଖଣ୍ଡକ କଲେ ଏକାଦଶ ପଦ ।
ନବରତ୍ନରେ ନିର୍ମାଣ ଧନୁ ଏକ କଲେ
ଶ୍ୱେତଗଣ୍ଡି ପୁଣ ଧରି ମନକୁ ପାଞ୍ଚିଲେ ।
ଷୋହଳ ଚନ୍ଦ୍ରମା ଜାଣେ ହୋଇଲା ଉଦୟେ
ମହା ଅନ୍ଧାରେ ଦିଶିଲା ସେ ଆଲୁଅମୟେ ।
ସେ ଧନୁ ମହିମା କିସ କହିବା ନାରଦ
ବାଆସ୍ତରି ଯୁଗେ ଧାତା କଲେ ତାକୁ କୁନ୍ଦ ।
ମନେ ପାଞ୍ଚି ଗୁଣ ଦେଲେ ଧନୁହୁଳ ଟେକି
ତେଣୁ ସେ ଧନୁରନାମ ଦେଲେକ ପିନାକି ।
ତିନିକୋଟି ବଳ ବହେ ଯେଉଁ ଶରାଶନ
ତ୍ରିପୁରା ମାରିବେ ତାକୁ ବହି ତ୍ରିଲୋଚନ ।
ଏହି ସତ୍ୟ ଯୁଗରେଟି ଦୈତ୍ୟ ଉପୁଜିବ
ଯୁଦ୍ଧ କରିଣ ମାରିବେ ତାକୁ ସଦାଶିବ ।
ଏଥିପୂର୍ବେ ସଞ୍ଚି ଧନୁ ରଖିଲେ ସାଇତି
ପୁଣି ଦ୍ୱିତୀୟ ଖଣ୍ଡକୁ ଧରି ବେଦପତି ।
ସେ ଧନୁ ମହିମା ଗୁଣ ଶୁଣ ହେ ନାରଦ
ନବ ପବ ମାପି ବସି ବସାଇଲେ କୁନ୍ଦ ।
ଖଞ୍ଜିଲେ ସେ ହୀରା ନୀଳା ମାଣିକ୍ୟ ଯେ ଆଣି
ଗଣ୍ଠି ଗୋଟିକେ ବାନ୍ଧିଲେ ଲକ୍ଷ ଲକ୍ଷ ମଣି ।
ମୁଖେ ପୋଛିଲେ ଖଞ୍ଜି ପୁଞ୍ଜ ଚାରିପାଖେ
ଧନୁ ଧରି ଟେକନ୍ତେ ସେ ବାଜେ ଝମ ଝମ
ପ୍ରବାଳ ଖଞ୍ଜିଲେ ପୁଞ୍ଜ ପୁଞ୍ଜ ଚାରିପାଖେ
ମୁକ୍ତାକେରି କେରି ଲମ୍ବେ ତାର ଚଉପାଖେ ।
ଧନୁର ବେନି ହୁଳରେ ବୈଦୂର୍ଯ୍ୟ ଛାଏଣି
ଦିଶଇ ଶାୟକ ଧୂମ୍ର ଶୂନ୍ୟ ଅଗ୍ନିଜାଣି ।
ନାରାଚେ ସାରଙ୍ଗ ପକ୍ଷୀ ଖଞ୍ଜି ଦେଲେ ଯୋଖି
ଷାଠିଏ ଯୂଣ ସେ ଧନୁ ଉଠିଲା ସଲଖି ।
ତେଣୁ ସେ ଧନୁର ନାମ ସାରଙ୍ଗ ଯେ ଦେଲେ
ଏ ଧନୁକୁ କାଳେ ଇନ୍ଦ୍ର ଧରିବେ ବୋଇଲେ ।

ଜମ୍ଭୁ ଦୈତ୍ୟକୁ ଯେ ସେହୁ ମାରିବେ ଅବଧି
ନାମ ଗୋଟି ବହିବେ ସେ ଯେଣୁ ଜମ୍ଭଭେଦୀ ।
ବେନି କୋଟି ବଳ ବହେ ସେହି ଧନୁଗୋଟି
ଲେଉଟି ଧଇଲେ ଆଉ ଖଣ୍ଡେ ପରମେଷ୍ଠୀ ।
ସାତପବ ମାପି ପୁଣି ଧନୁ ଏକ କଲେ
ନାନା ପରକାରେ କୁନ୍ଦି ସୁନା ରସାଣିଲେ ।
ଖଞ୍ଜିଲେକ ମାରଗର ଚୁନି ପୁଞ୍ଜି ପୁଞ୍ଜି
ଧଇଲେ ହରଇ କ୍ଷୁଧା ତୃଷା ଧନୁ ସାଜି ।
ହିମକାଳେ ସେ ଧନୁରୁ ଉଷ୍ମ ହୁଏ ଜାତ
ଗ୍ରୀଷ୍ମ କାଳରେ ଧଇଷଲ ବହଇ ବସନ୍ତ ।
ବରଷାକାଳେ ଧଇଲେ ସୁଧା ଅଙ୍ଗୁ ଝରି
ତେଣୁ ଅଜଗବ ନାମ ଦେଲେ କୁଶଧାରୀ ।
ମୁଦିଲେ ମୁଦ ହୁଅଇ ଟେକିଲେ ସଳଖ
ପଚାଶ ଯୁଗରେ ଉଭା କଲେ ସେ ସାୟକ ।
ସେ ଧନୁର ଶତଶୃଙ୍ଗ ଗିରି ପରାକ୍ରମ
ସେ ଧନୁ ଗୋଟି ବହିବେ ଜାଣ ପର୍ଶୁରାମ ।
ସହସ୍ରାର୍ଜ୍ଜୁନଙ୍କୁ ମାରି ବ୍ରହ୍ମାଣ୍ଡ ରଖିବେ
ଆବର କହିବା ଧନୁ କଥା ଶୁଣ ଏବେ ।
ପାଞ୍ଚପବ ମାପି ପୁଣି ଧନୁ ଏକ କଲେ
ଅଗ୍ନିଅର୍କ ଜିଣି ମହାଜ୍ୟୋତି ପ୍ରକାଶିଲେ ।
ସହସ୍ରେକ ରୋହିମାଛ କମ ଦେଲେ ଗୁଞ୍ଜି
ବାନ୍ଧିଦେଲେ ଅର୍ବୁଦେକ ହୀରା ପୁଞ୍ଜି ପୁଞ୍ଜି ।
ନୀଳାଭାରେକ ଛାଉଣୀ କଲେ କେରା କେରା
ବସାଇଲେ ବେନିଲକ୍ଷ ହିଙ୍ଗୁଳର ଗିରା ।
ପବକେ ମାଣିକ୍ୟରେଖା କମ ଲକ୍ଷ ଲକ୍ଷ
ସହସ୍ରେ ପୋହଳା ବାନ୍ଧି ଦେଲେ କୋଟିଶଙ୍ଖ ।
ସୁନାସୂତା ପାଟେ ଗୁନ୍ଥି ବାନ୍ଧିଲେ ଘାଗୁଡ଼ି
ନବଲକ୍ଷ ବଳ ଧନୁ ନବରତ୍ନେ ଜଡ଼ି ।
ଟେକନ୍ତେ ମହାପ୍ରଚଣ୍ଡ ହୁଏ ଧନୁପିଣ୍ଡ
ତେଣୁ ସେ ଧନୁର ନାମ ଅଟଇ କୋଦଣ୍ଡ ।
ମନେ ପାଞ୍ଚିଲେ ଏ ଚାପେ ହେବ ବଡ଼କାର୍ଯ୍ୟ
ତ୍ରେତାଯୁଗରେ ଜନମ ହେବେ ଦେବରାଜ ।
ସୂର୍ଯ୍ୟବଂଶେ ଦଶରଥ କୋଳେ ଅବତାର
ପତ୍ନୀ ହରଣେ ଲଙ୍କାକୁ ଯିବେ ରଘୁବୀର ।
ସେ ଅବତାରେ ଶ୍ରୀରାମ ଧରିବେ କୋଦଣ୍ଡ
ଛେଦିବେ ଲଙ୍କାଗଡ଼ରେ ପଶି ଦଶମୁଣ୍ଡ ।
ଅସୁର ବଳ ନିବାରି ପ୍ରଭୁ ରାବଣାରି
ଆସିବେକ ଅଯୋଧ୍ୟାକୁ ସୀତାକୋଳେ ଧରି
ପଞ୍ଚମ ଖଣ୍ଡର କଥା ଶୁଣ ଏବେ ଭଲେ
ତିନିପବ ଛେଦି ପୁଣି ଧନୁ ଏକ କଲେ ।

ସେ ଧନୁର କଥା ପୁଣି ଅତି ଅଗୋଚର
ଦୃଷ୍ଟିରେ ଦେଖିଲା ମାତ୍ରେ ହୁଅନ୍ତି କାତର ।
ପ୍ରଳୟ କାଳରେ ଯେହ୍ନେ ସମୁଦ୍ର ଲହରୀ
ସେ ରୂପେ ଡରନ୍ତି ଧନୁ ଦେଖି ତିନିପୁରୀ ।
ସେ ଧନୁକୁ ଘେନି ଯେବେ ଯିବେ ସଂଗ୍ରାମର
ଦେଖିଲେ କରିବ ଭୟ ତାକୁ ପୁରନ୍ଦର ।
କୋଟିଏ ସୂର୍ଯ୍ୟକୁ ଜିଣି ଦିଶେ ତାର ଜ୍ୟୋତି
ତିରିଶ ଯୁଗେ ସର୍ଜିଲେ ତାକୁ ବେଦପତି ।
ସମୁଦ୍ର କଲ୍ଲୋଳ ପ୍ରାୟ ହୁଅଇ ଉଦିତ
ସେ ଧନୁକୁ କଛ ନାହିଁ ତିନିପୁର ଚିତ୍ତ ।
ଦିଶେ ଜ୍ୟୋତି ତାର ଯୁଦ୍ଧ ସ୍ଫଟିକର ପ୍ରାୟେ
କରେ ଥିଲେ କ୍ଷୁଧା ତୃଷା ନଲାଗଇ କାୟେ ।
ବହଇ ଯେ ଧନୁ ଲକ୍ଷେବଳ ପରାକ୍ରମ
ଗାଣ୍ଡିବ ବୋଲି ତାହାର ଦେଲେ ଧାତା ନାମ ।
ପାଞ୍ଚିଲେ ଦ୍ୱାପର ଯୁଗେ ଜନ୍ମିବେ ପାଣ୍ଡବେ
ସେହି କାଳରେ ଧନୁକୁ ଅର୍ଜ୍ଜୁନ ବହିବେ ।
ଏମନ୍ତ ପାଞ୍ଚି ତାହାକୁ ରଖିଲେ ଭଣ୍ଡାରେ
ଅଗ୍ରପବକୁ ଧଇଲେ ପୁଣି ବେନିକରେ ।
ମନେ ପାଞ୍ଚିଲେ ନୋହିବ ଏତ ଧନୁହୁଳ
ରଖିବା ଏ ପବ ବଂଶୀକରି ରବିତଳ ।
ଏ ବଂଶୀଥିଲେକ କାଳେ ହେବ ବଡ଼କାର୍ଯ୍ୟ
ଦ୍ୱାପର ଯୁଗେ ଜନମ ହେବେ ଦେବରାଜ ।
ଦେବକୀ ଗର୍ଭରୁ ଜନ୍ମି ଗୋପକୁ ଆସିବେ
ଅଷ୍ଟ ବରଷ ଉତ୍ତାରେ କଂସ ନିବାରିବେ ।
ସେ ଅଷ୍ଟବରଷ ମଧ୍ୟେ ଯେତେ ଲୀଳାଭାବ
ବୁଝିଲେ ଶାସ୍ତ୍ରରେ ତାହା ଅଟଇ ଦୁର୍ଲ୍ଲଭ ।
ଷୋଳସହସ୍ର ଗୋପୀ ଗୋପେ ହେବେ ଜାତ
ତାହାଙ୍କୁ ଦେଖି ଶ୍ରୀହରି ହୋଇବେ ମୋହିତ ।
କିରୂପେ ରମିବି ବୋଲି ପାଞ୍ଚିବେ ଗୋପାଳ
କଦମ୍ବ ମୂଳେ ରହିବେ ଯମୁନାର କୂଳ ।
ପରସ୍ତିରୀ ରମିବାର କଠୋର ନୁହେକି
କୁଳ କୁଟୁମ୍ବକୁ ଛାଡ଼ି ଆସି ପାରଇକି ।
ତେଣୁ ସେହି ପରଦାର ଅଟେ ବଡ଼ ଦୁଃଖ
କ୍ଷଣ ସୁଖ ପାଇଁ ଭୁଲି ମରନ୍ତି ଯେ ମୂର୍ଖ ।
ଦିନଯାକ ଅନୁସରି ଚାହିଁ ମରୁଥାନ୍ତି
ଝୁରି ଝୁରି ଶରୀରକୁ କଦର୍ଥ କରନ୍ତି ।
ସ୍ତିରୀ ଛାରକୁ ଯେ ଯେତେ ଥାନ୍ତି ଅନୁସରି
ହରିଙ୍କୁ ଭଜିଲେ ସେହି ରୂପେ ହନ୍ତେ ପାରି ।
ଯେସନେ ସୁରତି ସ୍ତିରୀଠାରେ କରିବାକୁ
ସେହିରୂପେ ଭଜି ଯେତେ ପାରନ୍ତା ବିଷ୍ଣୁଙ୍କୁ ।

ମରଣାନ୍ତେ ସେହୁ ନିଶ୍ଚେ ବୈକୁଣ୍ଠକୁ ଯାନ୍ତା
ସଂସାରେ କାହିଁକି ଏଡ଼େ ପାପେ ଘାଣ୍ଟି ହ୍ୱନ୍ତା ।
ପରସ୍ତିରୀ କଲା ଲୋକ ଜୀବନଟି ଧିକ
ଆପଣାର ସ୍ତିରୀ ପ୍ରାୟ ଲାଗେ କି କୌତୁକ ।
ନିଜସ୍ତିରୀ ପ୍ରାୟ କାହୁଁ ହେବ ପରପ୍ରିୟା
ନ ଜାଣିବା ଲୋକେ ଭୁଲି ଦିନ୍ତୁଥାନ୍ତି କାୟା ।
ଏକେ ତ ଚଞ୍ଚଳ ମତି ଅଟନ୍ତି ଯେ ନାରୀ
ଚାହାନ୍ତି ସେ ରସିକକୁ ନେତ୍ର ବକ୍ର କରି ।
ଶିରେ ବେନିକର ଲଦି କ୍ଷଣେ ଉଭା ହ୍ୱନ୍ତି
ହସିଦେଇ ନେତ୍ରେ ଠାରି ଗୃହେ ଚଳିଯାନ୍ତି ।
ରସିକ ଲୋକ ଯେ ଝୁରି ମରେ ଚାହିଁ ଏଣେ
ନପାଇ ସେ ନାଗରୀକୁ ଭୁଲେ ଅକାରଣେ ।
ସ୍ନାନ ଖାଦ୍ୟ ବିଷ ମଣି ଭ୍ରମେ ଚକ୍ରପ୍ରାୟେ
ସର୍ବଦା ତା ଚିତ୍ତ ପତି ପ୍ରିୟାଠାରେ ଥାଏ ।
ଏହିରୂପରେ ଶ୍ରୀକୃଷ୍ଣ ଗୋପୀଙ୍କୁ ଚାହିଁଣ
ଚକ୍ଷୁ କର୍ଣ୍ଣ ଭ୍ରୂଲତାର ସୌନ୍ଦର୍ଯ୍ୟ ଦେଖିଣ ।
ହରିବେ ବୋଲି ଲୁଚିବେ ଯାଇଁ କାନ୍ଥବାଡ଼େ
କଦମ୍ବ ତରୁର ମୂଳେ ବୃନ୍ଦାବନ ଝାଡ଼େ ।
ଗୋପୀମାନଙ୍କୁ ଯେ ସେହି ନ ପାରିବେ ରମି
ଅନେକ ରୂପ ଧରିବେ ତହିଁ ଅନ୍ତର୍ଯ୍ୟାମୀ ।
ସ୍ତିରୀଭୋଗ ବିଷୟରେ ଥିବଟି ତରକି
ଶିବ ଭୁଲି ଅଛନ୍ତିଟି ଦେଖି ମୋହିନୀଙ୍କି ।
ମାନବେ ଯେବେ ଯେ ବିଷ୍ଣୁ ଅବତାର ହେବେ
ଗୋପୀଙ୍କି ସେହି କାହିଁକି ଦେଖି ନ ଭୁଲିବେ ।
ଗୋପାଳ ପୁଅକୁ ସଖା ପାଇଥିବେ ହରି
ବନସ୍ତରେ ବୁଲୁଥିବେ ନାନା କ୍ରୀଡ଼ା କରି ।
ସର ଲବଣୀ ଖୁଆଇଥିବେ ଗୋପ ପୋଏ
କୁହାପୁଚ୍ଛାରୁ ଶିଖିବେ ସବୁ ଦେବରାୟେ ।
ଶିଖାଇଥିବେ ଗୋପାଳପୁଏ ଏଣେ ସବୁ
ଗୋରୁରଖା ବାଳକଙ୍କୁ କେ ଜିଣିବ ବାବୁ ।
ଜନ୍ମରୁ ବାସନା ଘେନିଯାଣ ଏକେ ଏକେ
ବୃଦ୍ଧଙ୍କଠାରୁ କଥା ସେ କହନ୍ତି ଅଧିକେ ।
ଶ୍ରୀକୃଷ୍ଣଙ୍କୁ ସଙ୍ଗେ ଘେନି ବୁଲୁଥିବେ ବନ
ଜାଣିବେ ତହୁଁ ବିରହ କଥା ଭଗବାନ ।
ଶିଖିଲେହେଁ କି ହେବ ବା ଶିଶୁମତି ସିନା
ଯୁବତୀବର ଅଟନ୍ତି ସର୍ବ ଗୋପାଙ୍ଗନା ।
ମାତାଙ୍କକୋଳରେଯେହ୍ନେକ୍ଷୀର ଆଶେପାଏ
ପିବନ୍ତି ସେହି ଭୁଲିଣ ବାଳକ ସମୟେ ।
ସେହିରୂପେ ହେବ ସିନା ଗୋବିନ୍ଦର କ୍ରୀଡ଼ା
ସେକଥା ଦେଖି ଗୋପୀଏପାଇବେଯେବ୍ରୀଡ଼ା

ସହଜେ ସ୍ତିରୀମାନେ ତ ଅଟନ୍ତି ଅଶାନ୍ତି
ବିନ୍ଦୁ ନ ପଡ଼ିଲେ ଗର୍ଭେ ନୁହନ୍ତି ନୃପତି ।
ସେ ଘଡ଼ି ଲାଗେ ତାହାଙ୍କୁ ମରିବାର ପ୍ରାୟେ
ବିନ୍ଦୁ ନ ଥିଲେ ପାଷାଣ କରିଦ୍ୟନ୍ତି କାୟେ
ଅଷ୍ଟବରଷେ କିରୂପେ ହେବ ଅବା ବିନ୍ଦୁ
ଖସିବ ବୋଲି ପ୍ରତ୍ୟୟ କରିବ କି ହିନ୍ଦୁ
ଆଠ ବରଷେ କରନ୍ତେଯେହ୍ନେବିନ୍ଦୁତେଜ୍ୟା
ନ ରହନ୍ତେ ସମସ୍ତେ କି ଅଙ୍ଗୁଛାଡ଼ି ଲଜ୍ଜା ।
ଆମ୍ଭେ ନିଜେ ସୃଷ୍ଟିକର୍ତ୍ତା ହୋଇ ଏକଦିନେ
ଅଷ୍ଟ ବରଷରେ ରମିନାହୁଁ ସ୍ତିରୀଜଣେ ।
ଏଣୁ ଅଷ୍ଟବରଷରେ ସବୁଲୋକ ସରି
ବିଷ୍ଣୁ ହେବାର ସେ କଥା ଯିବେ ଅବା କରି
ତଥାପି ଯୁବାକାଳରେ ଆଦି ରସ ମିଠା
ପ୍ରେମ ମିଠା ନ ଜାଣିଲେ ସବୁ ହୁଏ ଖଟା ।
କାମର ମିଠା ଜାଣିବ ଚୁମ୍ବ ସରାଗରୁ
ଯୁବତୀ ମିଠା ଜାଣିବ ଶଯ୍ୟା ବ୍ୟବସ୍ଥାରୁ ।
କଥାର ମିଠା ଜାଣିବ ହେଲେ ମୃଦୁଭାଷୀ
ଶରୀର ମିଠା ଜାଣିବ ପ୍ରେମ ଯେବେ ମିଶି ।
ଦାତାର ମିଠା ଜାଣିବ ଦୟା ଯେବେ ମିଶି ।
ପଣ୍ଡିତ ମିଠା ଜାଣିବ ସଂଶୟ ଛେଦଇ ।
ରାଜତ୍ୱ ମିଠା ଜାଣିବ ରାଜ୍ୟ ଯେବେ ପାଳେ
ମନ୍ତ୍ରୀର ମିଠା ଜାଣିବ ବଚନ କୋମଳେ ।
କରଣ ମିଠା ଜାଣିବ ଖଡ଼ି ଆଣ୍ଟ ଥିଲେ
ସଭାର ମିଠା ଜାଣିବ ଧର୍ମ ନ୍ୟାୟ କଲେ ।
ବନ୍ଧୁର ମିଠା ଜାଣିବ ଯେବେ ମିଠା ହସେ
ପୁତ୍ରର ମିଠା ଜାଣିବ ପିତାକୁ ଯେ ପୋଷେ
ଭାରିଯା ମିଠା ଜାଣିବ ସ୍ୱାମୀ ସେବା କଲେ
ଭ୍ରାତାର ମିଠା ଜାଣିବ ବଚନେ ଭାଷିଲେ
ପଣ୍ଡିତେ ମିଠା ଜାଣିବ ସୁପଣ୍ଡିତ ବୁଦ୍ଧି
ସେବକେ ମିଠା ଜାଣିବ ରଣେ କାର୍ଯ୍ୟସିଦ୍ଧି
ନୟନ ମିଠା ଜାଣିବ ଚାହାଣୀ ଯେ ଶୋଭା
କୀର୍ତ୍ତି ମିଠା ଜାଣିବ ନହଲେ ଯେବେଜିହ୍ୱା
ଭୋଜନ ମିଠା ଜାଣିବ ଯେ କରି ପାରେଜୀର୍ଣ୍ଣ
ପୋଷିବା ମିଠା ଜାଣିବ ଯେ ଅର୍ଜିପାରେଧନ
ସୁରତି ମିଠା ଜାଣି ସୁଶୀଳ ହେଲେ ସ୍ତିରୀ
ସାଙ୍ଗର ମିଠା ଜାଣି ସେ ହସେ ଥିରି ଥିରି ।
ଶୃଙ୍ଗାର ମିଠା ଜାଣିବ ସ୍ୱାମୀ ସେବା କଲେ
ଯୁବତୀ ମିଠା ଜାଣିବ ଦୃଢ଼ କୁଚ ହେଲେ ।
ବୁଦ୍ଧି ମିଠା ଜାଣିବ ଯେ କଲେ ସାଧୁସେବା
ଭକ୍ତିର ମିଠା ଜାଣିବ ବିଷ୍ଣୁ ପାଦ ସେବା ।

ମୂଷକ ବେଣ୍ଟକୁ କଲ ବାରଣ ଗହନ
ପିମ୍ପୁଡ଼ି ମୁଣ୍ଡରେ ଦେଲ ଗନ୍ଧମାରଦନ ।
କାକ ଆଖିରେ ତପତ ପାଣି ଦେଲ ଢ଼ାଳି ।
ଶିମିଳୀ ତୁଳା ଛାରକୁ ଦେଇ ଅଗ୍ନି ଜାଳି ।
ତୁମ୍ଭ ଦୁହିତାକୁ ମାତ୍ର ଦେଲେ ତୁମ୍ଭେ ଦୁଃଖ
ମୁଁ ଦୈତ୍ୟ ହେଲେ ପାଇବକାହୁଁ ସେହିସୁଖ
ଏଥକୁ ଚାହିଁଣ ପିତା ଦୟା କର ମୋତେ
ବିଧାତାର ବିନା ତ୍ରାହି ନାହିଁ କେ ଜଗତେ
ଏମନ୍ତ ବୋଲି ମଦନ ଚରଣେ ପ୍ରଣମି
ବିପ୍ର ପିତାମ୍ବରକୁ ହେ ରଖ ଦେବ ସ୍ୱାମୀ ।
କଳପ ବିନୟ ବାଣୀ ଶୁଣି ପିତାମହ
ହୃଦୟରୁ କ୍ରୋଧ ଛାଡ଼ି ଶାନ୍ତ କଲେ ଦେହ ।
ମଦନକୁ ବୋଇଲେ ତୁ ଶୁଣ ମୋର କଥା
ବିଧାତା ଲିଖିତ ବାଣୀ ନୁହଇ ଅନ୍ୟଥା ।
ରତି ନାମକୁ ଚିତୋଇ କହିଲୁ ତୁ ମୋତେ
ତିନିଥର ଯାଇ ଦୈତ୍ୟ ହେବୁ ତୁ ଜଗତେ
ଆଦ୍ୟରେ ମହିଷାସୁର ରୂପ ପ୍ରକାଶିବୁ
ଦୁର୍ଗାଙ୍କ ହସ୍ତେ ମରିଣ ନେଉଟି ଜନ୍ମିବୁ ।
କାଳନେମି ନାମେତୋରହେବ ଜନ୍ମଗୋଟି
ସେଜନ୍ମେତୋତେମାରିବେ ତୋହରପୁତ୍ରେଟି
ତୃତୀୟେ କଂସ ହୋଇଣ ଦ୍ୱାପରେ ଜନ୍ମିବୁ
ଅନେକ ଉପଦ୍ରବେ ତୁ ଲୋକଙ୍କୁ ନାଶିବୁ ।
ବିଷ୍ଣୁଙ୍କୁ ଚିନ୍ତିବୁ ରିପୁ ବୋଲି ଅନୁକ୍ଷଣେ
ରଙ୍ଗ ସଭାରେ ବସିଣ ଚାହିଁବୁ ନୟନେ ।
ମଞ୍ଚା ଉପରେ ଉଠିଲେ କୃଷ୍ଣ ଯାଇଁ ବେଗେ
ଚାହିଁଲା କ୍ଷଣି ପଶିବ ପ୍ରାଣ କୃଷ୍ଣ ଅଙ୍ଗେ ।
ପଡ଼ିବାକ୍ଷଣି କୃଷ୍ଣର ଅଙ୍ଗରେ ମିଶିବୁ
ମୁଁ ତୁମ୍ଭର ପୁତ୍ର ହେବି ବୋଲିଣ ବୋଲିବୁ ।
ଏ ତୋହର କଥା ଶୁଣି ବୋଲିବେ ଶ୍ରୀରଙ୍ଗେ
ଜନ୍ମିବୁ ପ୍ରଦ୍ୟୁମ୍ନ ହୋଇ ଥାଇମୋରଅଙ୍ଗେ
ରୁକ୍ମିଣୀ ଦେବୀର ଗର୍ଭେ ହେବୁ ଅବତାର
ମୀନକେତନ ନାମକୁ ବହିବୁ ସେ ଥର ।
ଏମନ୍ତ କହି ମଞ୍ଚାରୁ ତୋତେ ନେବ ଧରି
ରଙ୍ଗ ସଭାତଳେ କୃଷ୍ଣ ପକାଇବେ ମାରି ।
ଏ ତୋହର ଶରୀରରୁ ପ୍ରାଣ ଯିବାବେଳେ
ଶ୍ରୀକୃଷ୍ଣଙ୍କ ରୂପ ଧ୍ୟାନ କରିବୁ ସେ କାଳେ ।
ଶ୍ରୀକୃଷ୍ଣ ବୀର୍ଯ୍ୟେ ଜନ୍ମିବୁ ଦିବ୍ୟରୂପ ଧରି
ରତିକନ୍ୟା ବିଭା ହେବୁ ଶମ୍ବରକୁ ମାରି
ଏହି ତିନିଜନ୍ମ ଅନ୍ତେ ହେବୁ କାମଦେବ
ଶାପ ଯିବାଯାଏ ରତି ଘରେ ମୋର ଥିବ

ଏରୂପ ବର ଦିଅନ୍ତେ ତାକୁ ପଦ୍ମଯୋନି
ଶୁଣି ମନ୍ମଥ ବସିଲା ହୋଇ ତହିଁ ତୁନି ।
ଅସୁର ରୂପକୁ ଧରି ହୋଇଲା ବାହାର
ଉର୍ବଶୀ ପୁତ୍ରର କଥା ଶୁଣିବା ଏଥର ।
ମହାବଳବନ୍ତ ହୋଇ ଜନ୍ମନ୍ତେ ବାଳକ
ଟୋଳି ନ ପାରନ୍ତି ତାକୁ ଦୁଇ ଏକ ଲୋକ
ଗୋଟିଏ ପୁତ୍ରକୁ ଏକାଦଶ ନରନାରୀ
ଟେକନ୍ତି ସ୍ୱର୍ଗରୁ ଆସି କିନ୍ନରୀ ଅପ୍ସରୀ ।
ଭୂମିରୁ ଟୋଳିଣ କଷ୍ଟେ ଆସନକୁ ଆଣି
ଧୁଅନ୍ତି ହଳଦୀ ବୋଳି ଢ଼ାଳି ଉଷ୍ମ ପାଣି ।
ସୁଗନ୍ଧେ ଜଡ଼ାଇ ମଳି ପଖାଳନ୍ତି ଦେହ
ଭିନ୍ନ ଭିନ୍ନ ଶେଯେ ନେଇ ଶ୍ରାନ୍ତି ବେନିପୁଅ
ଶୁକ୍ଳ ନେତ ଶେଯ ପରେ ଅନ୍ତୁଡ଼ି ଉଠାଇ
ତହିଁର ପାଶେ ଅନ୍ତୁଡ଼ି ଲଗାଇଲେ ନେଇ ।
ଚନ୍ଦନ ଦାରୁ କାଠରେ ଅଗ୍ନି ଦେଲେଜାଳି
ସୁବାସ ତଇଳ ନେଇ ପୁତ୍ର ଅଙ୍ଗେ ବୋଳି
ସେବନ୍ତି ତାକୁ ଅନ୍ତୁଡ଼ିଶାଳେ ସର୍ବେ ବସି
ସେବନ କରନ୍ତେ କ୍ଷୀର ଦିଅନ୍ତି ଉର୍ବଶୀ ।
ସୁବର୍ଣ୍ଣର ଶାମୁକାରେ ନେଇ ତୁଣ୍ଡେ ଭରି
ଦିଅନ୍ତେ ସେ କୁମରଙ୍କ ଉଦର ନ ପୂରି ।
କ୍ଷୁଧା ନ ଭାଜନ୍ତେ ପୁଣି କାନ୍ଦନ୍ତି କୁହାଟି
ଜାଣିଣ ଗୋକ୍ଷୀର ମାଏ ଦିଅନ୍ତି ଲେଉଟି
କନକ ରତନ ଭାଣ୍ଡେ ପୁଣି କ୍ଷୀର ଟୋଳି
ପୁତ୍ରଙ୍କ ମୁଖରେ ନେଇ ଦ୍ୟନ୍ତି ମାଏ ଭରି
ବାଳକେ ପିଅନ୍ତି କ୍ଷୀର ପାଇ ମନ ଜାଣି
ସମୁଦ୍ରେ ଯେସନେ ଯାଇ ପଶେ ନଦୀପାଣି
ଦିନକ ମଧେ ପିଅନ୍ତି ପୋଏ ଲକ୍ଷେ ଭାର
ଏକ ପୁତ୍ରକୁ ଯେ ଖଞ୍ଜା ପାଞ୍ଚଶତ ଭାର ।
ଏ ସକଳ କ୍ଷୀର ଖଞ୍ଜି ଦେଲେ ପରମେଷ୍ଠୀ
କାମଧେନୁ ଥିବାରୁ ଯେ କ୍ଷୀର ଯାଏ ଅଣ୍ଟି
କ୍ଷଣକରେ ଶତବାର ପିଅନ୍ତି ସେ ବାଳ
ଏହିପରି କହୁ କହୁ ବଞ୍ଚିଗଲେ କାଳ ।
ପାଳଇ ଉର୍ବଶୀ ସେହି ପୁତ୍ର ଅତି ସ୍ନେହେ
ବିକ୍ରମ ରୂପକୁ ଧରି ବଢୁଛନ୍ତି ଦୁହେଁ ।
ଦିନକୁ ଦିନ ଆସଇ ଆନ ଆନ ମୂର୍ତ୍ତି
ବିଂଶରାତ୍ର ନୋହୁଣୁ ଯେ କୁମରେ ଚାଲନ୍ତି ।
ଉର୍ବଶୀ ପୁଅଙ୍କ ଛବି ଦେଖି ମନେ ପାଞ୍ଚି
ବ୍ରହ୍ମାଙ୍କ କୋଳରେ ନେଇ ଦେଲାବଳେଯାଚି
ବୋଇଲା ପୁତ୍ରଙ୍କୁ ମୋର ଚିହ୍ନିଥିବ ଭଲେ
ପାଶୋରି ନଯାଅ ପୁଣି ଏଥୁ ଉଠିଗଲେ

ଜାତକମାନ ବୁଝିଣ ନାମମାନ ଦିଅ
କେହି ନ ବୋଲନ୍ତୁ ଜାର ଜାତକର ପୁଅ ।
ହସିଲେ ଉର୍ବଶୀ ବାକ୍ୟ ଶୁଣିପାରମେଷ୍ଠୀ
ସେ ପୁତ୍ରଙ୍କୁ ଧରି ନାମଦେଲେ ଗୋଟି ଗୋଟି
ସୁମୂର୍ତ୍ତି ଦେଖି ଯାଆନ୍ତି ପୁଣି ନିଜ ହୃଦେ
ବୋଲନ୍ତି ଏ ଦୁଷ୍ଟଜାତ ହେବେ ନିରାପଦେ
ବ୍ୟର୍ଥେ ପାଇବେ ଏହାଙ୍କ ଲାଗି ଦେବେକଷ୍ଟ
ଯାବତ ଜୀବକୁ ଦୁଃଖ ଦେବେ ଏହି ନଷ୍ଟ ।
ଆମ୍ଭେ ତ ଲୋଡୁ ନଥିଲୁ ଏହି ପାପିଷ୍ଠଙ୍କୁ
କି ନିମନ୍ତେ ଜନ୍ମିଲେ ଏ କେଉଁ ଅଭାଗ୍ୟକୁ
ଏଥକୁ ଶ୍ରୀନାରାୟଣ କରିବେ ବା ଭଲ
ନାଶିବେ ସେ ଅବତାରହୋଇ ପୃଥ୍ୱୀ ସଲ
ଏମନ୍ତ ବୋଲି ପ୍ରଥମ ପୁଅକୁ ଧରିଲେ
ତୋର ନାମମୁରଦୈତ୍ୟହୋଇଲାବୋଇଲେ
ଦେବଙ୍କ ସଭାରେ ଆମ୍ଭେ କଲୁ ଯେବେ ରତି
ଏହି ଦୋଷରୁ ତୁ ହେଲୁ ଅସୁର ପ୍ରକୃତି ।
ବ୍ରହ୍ମାପରା ପୁରୁଷକୁ ପୀଡ଼ିଲା ସେ ଶର
ତେଣୁ ହୋଇଲା ତୋହର ନାମ ମୁରାସୁର ।
ତୋତେ ମାରି ବୋଲାଇବେ ଶ୍ରୀହରି ମୁରାରି
ଏହାଶୁଣିଥା କହିଲୁ ଆମ୍ଭେ ଯୋଗ ଧରି ।
ଚାରିଯୁଗ ଯାଏ ସଂସାରରେ ଉପୁଜିବ
ମୁର ହିରଣ୍ୟ ରାବଣ ଶିଶୁପାଳ ହେବ ।
ଏ ଚାରିଜନ୍ମ ଅନ୍ତେ ଆସିବ ବଇକୁଣ୍ଠେ
ହୋଇବ ଜୟ ବିଜୟ ସିଂହଦ୍ୱାର ବାଟେ ।
କନିଷ୍ଠ ପୁତ୍ରର କଥା ଶୁଣ ଗୋ ଉର୍ବଶୀ ।
ଦାରୁଣ ଲଜ୍ଜାକୁ ମୋତେ କାମ ଦେଲା ଆସି
ତେଣୁ ଏ ପୁତ୍ରର ନାମ ଦାରୁଣ ଯେ ହେଉ
ଅନନ୍ତଶେଷ ହାତରେ ଏହା ପରମାୟୁ ।
ଅନ୍ୟଲୋକ ହସ୍ତେ ଏହୁ ନୋହିବ ନିଧନ
ଅଦୃଷ୍ଟକୁ ଚିହ୍ନି ଆମ୍ଭେ କହୁଛୁ ଶକୁନ ।
ଏହିରୂପେ କହି ପିତା କହନ୍ତି ସେ ପୁଣି
ଚୂଡ଼ାକର୍ମର ବିଧାନ କରାଇବା ଆଣି ।
ତହିଁଉତ୍ତାରୁ ସେ କୁଳଧର୍ମ ବିଧି କଲେ
କନ୍ଧରେ ପବିତ୍ର ଯଜ୍ଞସୂତ୍ର ପିନ୍ଧାଇଲେ ।
ଶ୍ରୀଗାୟତ୍ରୀ ମନ୍ତ୍ର ପୁଣି ଶୁଣାଇଲେ କର୍ଣ୍ଣେ
ଘେନଇ କି ନଘେନଇ ଦୁଷ୍ଟ ବୃଷ୍ଟି ମନେ
ସ୍ୱଭାବେ ଅସୁର ପ୍ରକୃତି ଯେ ବଡ଼ମନ୍ଦ
ପୂର୍ବରୁ ଯା ଅର୍ଜିଛନ୍ତି ସେହିଟି ପ୍ରାରବଧ ।
ଯେ କଥାଗୋଟି ବାଳକେ କରିବେଭୋଗାଦି
ଭଲକଥା କହିଲେ କି ହୋଇବ ସୁବୁଦ୍ଧି ।

ଯେଝା କର୍ମ ମାର୍ଗେ ପ୍ରକୃତିକୁ ଭୋଗ କରେ
ମୂର୍ଖ ବା କାହୁଁ ସୁବୁଦ୍ଧି ହେବ ସୁବିଚାରେ
ଚଳିଲେ ଏରୂପେ କହି ତହୁଁ ବେଦବର
ସେ ପାଦେ ଶରଣ ଦାସ ବିପ୍ର ପୀତାମ୍ବର ।
ଏଥିରୁ ପାରିକରିବେ ମୋତେ ନାରାୟଣ
କହିବି ଅର୍ଥ ସଙ୍ଗତେ ନୃସିଂହ ପୁରାଣ ।
ସୁଜନେ ପଣ୍ଡିତମାନେ ଶୁଣ ମନଦେଇ
ପୁରାଣରେ ଗାନ କଲେ କହି ନ ପାରଇ ।
ବୁଝିଲେ ଅଜ୍ଞାନ ମୁହିଁ ଅଟଇ ଯୁକତେ
ତେଣୁ କହି ଆଖପାଖ ନ କରଇ ମୋତେ
ସ୍ୱଭାବେ ତ ସଦାମୂର୍ଖ ଅଟଇ ମୁଁ ଜାଣେ
ଦିନେ ମୁହିଁ ବସି ନାହିଁ ସାଧୁ ବିହରଣେ ।
ସଂସ୍କୃତ ବିଦ୍ୟା ମୋହରକେଭେନାହିଁପଢ଼ା
କେବଳ ପରାକୃତରେ କରେ ପଦଯୋଡ଼ା ।
କୁଟୁମ୍ବ ପୋଷିବା ଅର୍ଥେ ଭ୍ରମି ନାନାଦେଶ
ପେଟର ଛଟପଟରେ ଲୋଡ଼େ ବୁଲି ଗ୍ରାସ ।
ଅନ୍ନ ବ୍ୟାକୁଳେ ନ ପାରେ ମୁହିଁ କୃଷ୍ଣ ଭଳି
ଦାତା ଅନୁସରି ନିତ୍ୟେ ମାଗୁଥାଇ ଭୋଜି ।
ଶ୍ରୀହରି ପସରା ଘେନି ବାଣିଜ୍ୟରେ ବିକେ
ସନ୍ତୋଷ ଘେନନ୍ତି ତାହା ସୁଜ୍ଞସାଧୁଲୋକେ
ଶ୍ରୀହରି ବାଣିଜ୍ୟେ ମିଳି ବଜାରରୁ ଯାହା
ଆନନ୍ଦେ ବସିସୁଖରେ ଭୁଞ୍ଜଇ ମୁଁ ତାହା ।
କେବଳ ମୋ ଗ୍ରାସ ଅନ୍ନପାଣି ହୃଷୀକେଶ
ସ୍ନାନସାରି ଭୁଞ୍ଜେ ମୁଁ ଶ୍ରୀହରି ସୁଧାରସ ।
ଦାତା ଦେଲା ଦ୍ରବ୍ୟ ମୋର ଅଟେ ଧର୍ମପଢ଼ି
ତାହାଦିଏ ଚକ୍ରୁ ମୁହିଁ ହରିପଦେ ପଡ଼ି ।
ତେବେ ସେହି ପ୍ରସାଦ ମୁଁ ଭୁଞ୍ଜଇସନ୍ତୋଷେ
ଗାଏ ମୁଁ ଶ୍ରୀହରି ନାମ ରଜନୀ ଦିବସେ ।
ସୁପଣ୍ଡିତେ ଶୁଣି ତାହା ହୁଅନ୍ତି ଆନନ୍ଦ
ବିପ୍ର ପୀତାମ୍ବରକୁ ଯେ ରଖିବେ ଗୋବିନ୍ଦ ।



## ମୁରର ପୂର୍ବ ବୃତ୍ତାନ୍ତ

ଏଥୁ ଅନନ୍ତରେ ପୁଣି ବଖାଇଣ ଯାହା
କହନ୍ତି ନାରଦ ଋଷି ଆଗେ ଅଷ୍ଟବାହା ।
ଶୁକକୁ ତାହା ପରୀକ୍ଷ ରାଜା ପଚାରନ୍ତି
ମୁରଦୈତ୍ୟ ଜନ୍ମ ଶୁଣି ମନେ ପାଇ ଭ୍ରାନ୍ତି
ବୋଇଲେ ଏଥିରେ ମୋତେ ଲାଗିଲାସନ୍ଦେହ
ବ୍ରହ୍ମାବୀର୍ଯ୍ୟୁ ଜନ୍ମି କିମ୍ପା ଦୁଷ୍ଟ ହେଲେଦୁହେଁ
କେବଣ ଯୋଗରୁ ସେହି ହେଲେ ଏଡ଼େମନ୍ଦ
ବ୍ରହ୍ମାର କହିବା କଥା ନ ଘେନିଲେ ହୃଦ ।

ପୂର୍ବକାଳରେ ସେ ଦୁଷ୍ଟ ଥିଲେ କିସ ହୋଇ
ସେ କଥା କହ ଶୁଣିବା ଏବେ ମନଦେଇ ।
ଏମନ୍ତ ବୋଲିଣ ରାଜା ଶିରେ କରଯୋଡ଼ି
ଶୁକଦେବଙ୍କ ଚରଣ ଯୁଗ ତଳେ ପଡ଼ି ।
ରାଜାର ଅଭିଜ୍ଞପଣ ଦେଖି ମହାଋଷି
କହନ୍ତି ସେ ଆଶୀର୍ବାଦ କରି ମନ୍ଦେ ହସି ।
ବୋଲନ୍ତି ସେ ମହାରାଜା ଜୀବନ ତୋ ଧନ୍ୟ
ଶ୍ରୀହରି କଥାରେ ଭଲା ରଖିଛୁ ଚୈତନ୍ୟ ।
ନୃସିଂହ ପୁରାଣ ହେଲେ ଆଲୋକ ସାଗର
ଆକାଶର ପ୍ରାୟେ ଅଟେ ଅତି ଅଗୋଚର ।
ସେ କଥାକୁ ଅନ୍ତକରି ନ ପାରେ କେ କହି
ଶୁଣିବାକୁ ଏ ପୁରାଣ ଅପୂର୍ବ ଅଟଇ ।
ମୁର ଦାରୁଣ ବିଷୟ ଶୁଣିବାକୁ ଏବେ
ତାଙ୍କ ପୂର୍ବଜନ୍ମ କଥା ଶୁଣି ବିଧି ପୂର୍ବେ ।
ଆଦ୍ୟରେ ସେ ମନୁବଂଶେଥିଲେ ଜାତହୋଇ
ଚଣ୍ଡ ପ୍ରଚଣ୍ଡ ବୋଲିଣ ବହି ନାମ ଦୁଇ ।
ଅନେକ ପାପ ଅର୍ଜି ସେ କିଛି ପୁଣ୍ୟକଲେ
ସେହୁ ପୁଣି ଆସି ଜୟ ବିଜୟ ହୋଇଲେ ।
ବୈକୁଣ୍ଠ ସିଂହଦ୍ୱାରରେ ରହି ହେଲେ ଦ୍ୱାରୀ
ତାହାଙ୍କର କଥା ଏବେ ଶୁଣ ଦଣ୍ଡଧାରୀ ।
ନାରଦ ମୁନି ପଚାରେ କହେ ବେଦବ୍ରହ୍ମା
ବୋଲନ୍ତି ହେ ସାଧବମାନେ ଶୁଣ ମହାତମା ।
ଶିବ ସତ୍ୟଯୁଗର ଯେ ଅଟେ ଏହୁ କଥା
ଆଜକୁ ହେଲାଣି ପାଞ୍ଚ ମନୁର ବ୍ୟବସ୍ଥା ।
ଶାକଲ୍ୟ ଦ୍ୱୀପର ରାଜା ମନୁ ନରପତି
ଶତେକ ଯୋଜନ ଯାଏ ଅଟଇ ତା ପୃଥ୍ୱୀ ।
ଅଷ୍ଟାଦଶ ମନୁରୁ ସେ ଅଟଇ ଯେ ଜଣେ
ଚାକ୍ଷୁଶମନୁ ବୋଲିଣ ତାର ନାମ ଭଣେ ।
ଚାକ୍ଷୁଷମନୁର ପୁତ୍ର ଦଣ୍ଡ ନାମେ ମନୁ
କହିବାକ ଶୁଣ ଏବେ ତାହାଙ୍କ ବଂଶାନୁ ।
ଦୁର୍ଦ୍ଦଣ୍ଡ ଦଣ୍ଡରପୁତ୍ର ପ୍ରଚଣ୍ଡ ଯେ ଚଣ୍ଡ
ତାଙ୍କ ଅଧିକାରେ ଥିଲା ଏହି ମହୀଖଣ୍ଡ ।
ଧର୍ମରେ ପାଳଇ ସେହୁ ସର୍ବଜନ ପ୍ରଜା
ଦୁର୍ଦ୍ଦଣ୍ଡ ମନୁ ବୋଲିଣ ଅଟେ ଯେଉଁ ରାଜା
ଅସତ୍ୟ କଥାକୁ ସେ ନଯାଇ କେତେବେଳେ
କେବଳ ଘଟକୁ ସାଧି କୁଟୁମ୍ବ ସମ୍ଭାଳେ ।
ଅନେକ ନଗର ପେଣ୍ଠ ବସାଇଲେ ହାଟ
ଦାନେକ ଶତେ ସୁନିଆ ସାଧଇ ଯେ ଘାଟ
ଟଙ୍କାକୁ ଚୌଷଠି କଡ଼ା ଅଣାକୁ ଗଣ୍ଡାଏ
ଏରୂପେ ଲେଖିଣ ରାଜା ଘେନେଧର୍ମନ୍ୟାୟେ
ଏମନ୍ତ କରନ୍ତେ ତେକେକାଳ ମହୀ ଭୋଗ
କହୁଁ କହୁଁ ସେ ରାଜାର ହେଲା ବୃଦ୍ଧ ଅଙ୍ଗ
ପ୍ରଚଣ୍ଡ ଚଣ୍ଡ ବୋଲିଣ ଯେଉଁ ପୁତ୍ର ଦୁଇ
ଜ୍ୟେଷ୍ଠ ପୁତ୍ରକୁ ଆଣିଲେ ପାଶେ ହକାରଇ ।
ବସାଇ ସିଂହାସନରେ ଶିରେ ଦେଲେଶାଢ଼ୀ
ବୋଇଲେ ପ୍ରଚଣ୍ଡ ଏବେ ବସ ରାଜ୍ୟ ମାଡ଼ି
ଆମ୍ଭର ବଳ ବୟସ ଏବେ ହେଲା ଶେଷ
ତୁମ୍ଭେ ସୁଖେ ରାଜା ହୋଇପାଳ ରାଜ୍ୟଦେଶ
ଏମନ୍ତ ବୋଲି ବସାଇ ପୁତ୍ରେ ପାତ୍ର ପାଶେ
ପ୍ରଚଣ୍ଡ ଶିରେ ବାନ୍ଧିଲେ ଶାଢ଼ୀ ହସ୍ତେହର୍ଷେ
ତହିଁ ଉତ୍ତାରୁ ସେ ରାଜା କେତେଦିନ ଅନ୍ତେ
ମୃତ୍ୟୁଗତ ହୋଇଣ ସେ ଗଲା ସ୍ୱର୍ଗ ପଥେ ।
ପିତା ଅବସାନେ ନୃପ ହେଲା ସେ ପ୍ରଚଣ୍ଡ
ମହାଗର୍ବ ବହି ଦେଲା ଲୋକଙ୍କୁ ସେ ଦଣ୍ଡ ।
ଅତହିଁ ଅନ୍ୟାୟ କଲା ଧର୍ମ ନ ବିଚାରି
ହରିଲା ପରର ଦ୍ରବ୍ୟ ପାପକୁ ନ ଡରି ।
ଦାସ ବାଣିଜାର ଯେତେ ହାଟୁଆ ପାଟକ
ଦ୍ୱିଗୁଣ ସାଧିଲା ତାଙ୍କଠାରୁ କରଯାକ ।
ସୁନ୍ଦରୀ ଯୁବତୀ ସ୍ତିରୀ ଦେଖେ ଯେଉଁ ଘରେ
ତାହାଙ୍କୁ ନେଇ ସୁରତି କରେ ବଳାତ୍କାରେ
ଖାଇଣ ମାଦକ ଦ୍ରବ୍ୟ ହୋଇ ମତ୍ତଭୋଳ
ସୁବେଦୀ ବିପ୍ରଙ୍କୁ ଦେଖି ହସେ ଅନର୍ଗଳ ।
ସୁଜନ ସୁଜ୍ଞ ପଣ୍ଡିତ ସାଧୁ ବ୍ରାହ୍ମଣଙ୍କୁ
ପରିହାସ କରି ଗର୍ବେ ଚଳାଇ ତାହାଙ୍କୁ ।
ଦୀନ ଦୁଃଖୀ ଲୋକଙ୍କୁନକରେ କେଭେଯୋଗ
ନ ଦିଏ ପ୍ରଜାମାନଙ୍କୁ କେଭେ ସୁଖଭୋଗ ।
ଆପେ ଘାଟ କଉଡ଼ିକି ସାଧି ଆପେ ପୁଣ
ଦଣ୍ଡିଆଣୀ ଲୋକଙ୍କର ଛଡ଼ାଇଲା ପଣ ।
ବୋଇଲାରେ ଆଜିଯାଏ ଖାଉଥିଲ ସୁଖେ
ହାଟ ବାଟ ପାଟଣାରୁ ଅଟକିଲ ମୁଖେ ।
ଏବେହେଁ ମୋହର ମୂଳେ ତାହାବୁଝାଯାଉ
ଟଙ୍କାକରେ ଲୋକ ଦୁଇଅଣା ଲାଗି ଦେଉ ।
ନୋହିଲେ ମୋହରରାଜ୍ୟେ ନଚାଲୁସେ ବାଟ
ଏତେ ବୋଲି ମହାରାଜା ଅଟକିଲା ଘାଟ ।
କାହାକୁ ସେ କେତେବେଳେକୋମଳକହଇ
ପରର ପ୍ରମାଦେ ଅନୁବ୍ରତେ ଚିନ୍ତୁଥାଇ ।
ପ୍ରତିଦିନ ଜୀବ ବଧି ମାଂସ କରେ ଭକ୍ଷ
ହାରଜିଣ ନ ବୁଝିଣ କରେ ଅରି ପକ୍ଷ ।
ଦେବତା ବିପ୍ର ନସେବେ ନ କରେସେଦୟା
ସାଧୁସଚ୍ଛ ପ୍ରାଣୀଠାରେ କରେ କୂଟ ମାୟା ।

ବିଷୁବାର ତିଥିରେ ସେ ଖାଏ ପୋଡ଼ାବଳି
ହୃଦେ ତିଳେ ମାତ୍ର ଦୟା ନ ଥାଏ ତାହାରି ।
ପରଶିରୀ ଦେଖି ନିତ୍ୟେ କାତର ହୁଅଇ
ଋଣ ଦେଲେ ଲେଖି ଯୋଖି ଦ୍ୱିଗୁଣ ନିଅଇ
ଗଛରେ ଯେବେ ମାପଇ କରେ ଦରପରା
ସୁବେଦୀ ବିପ୍ରଙ୍କଠାରୁ ହରେ ବସୁନ୍ଧରା ।
ସେବାକାରୀ ଲୋକଙ୍କର ବର୍ତ୍ତନ ନ ଦିଏ ।
ଯାଚକ ଲୋକ ଦେଖିଲେ ଦ୍ୱାର ରୋଧିଦିଏ
ଶୋଷୀ ଭୋଖୀରଙ୍କୀଦୁଃଖୀଯେବେକେହିଆସି
ତାହାକୁ ନଗ୍ର ବାହାର କରେ ଲୋକପେଷି
ଏହି ପ୍ରକାରେ ସେ ପାପ ଅର୍ଜନ୍ତେ ବହୁତ
କିଛିଦିନେ ସେହିରାଜା ହେଲା ରୋଗଗ୍ରସ୍ତ ।
ଦିନକୁ ଦିନ ଦୁର୍ବଳ ହୁଅନ୍ତେ ଶରୀର
ଉଠି ଚାଲିବୁଲି ଆଉ ନ ପାରେ ନୃବର ।
ଏରୂପେ ପଡ଼ନ୍ତେ ମାସେ ପକ୍ଷେ ନୃପମଣି
ଅଇଲେ ରାଜାର କଷ୍ଟ ଦେଖି ଲୋକ ପୁଣି ।
ନୃପତିର ଏ ଦୁର୍ଦ୍ଦଶା ଶୁଣି ଲୋକମାନେ
ଦାନଦିଅ କହିଲେ ସେ ନୃପତିର କାନେ ।
ସମସ୍ତ ଲୋକଙ୍କ ମୁଖୁ ଶୁଣିଲେ ସେ ରାୟେ
ଦ୍ରବ୍ୟ ସରିବ ବୋଲି ସେ ହେଲା ବିଷପ୍ରାୟେ
ବୋଇଲ ବହୁତ ଆଚ୍ଛା କଥା ଆସି ସର୍ବ
କାହିଁପାଇଁ ହରବର କରୁଛ ମୋ ଦ୍ରବ୍ୟ
ସହି ନ ପାରି କହୁଛ ମୋତେ ହିଂସା ବହି
ବୁଝିବି ସବୁରି ମନ ଭଲ ହେଲେ ମୁହିଁ ।
ଦାନ ଦେଇ କେଉଁମାନେ ଗଲେଣି କି ତରି
ତୁମ୍ଭର ଉପର ବଂଶେ ଯେତେ ଛନ୍ତି ମରି ।
ମୋହର ପଦାର୍ଥ ମାତ୍ର ନାଶ ଯିବା ପାଇଁ
ଦାନଧର୍ମ କର ବୋଲି କହ ହିଂସା ବହି ।
ଶୁଣ ହୋ ନାରଦ ସେହି ରାଜାର କାହାଣୀ
ମରିବାଠାବେ ସେ ଲୋଭ ନ ଛାଡ଼ିଲା ପୁଣି ।
ମୂର୍ଖ ଲୋକଙ୍କୁ ସୁଜ୍ଞାନ କହିଲେ ଶୁଣେ କି
ପାଷାଣ୍ଡ ପ୍ରାଣୀ ସୁଜ୍ଞାନୀ କେବେ ହୋଇବ କି
ହେବ କି ଅସୁର ଅଂଶ ଲୋକକେଭେଦାତା
ଦୁର୍ଜ୍ଜନ ହେବ କି କେବେ ସଭାସଦଜ୍ଞାତା ।
ମନ୍ଦ ପ୍ରକୃତି ଅଟନ୍ତି ଯେତେ ଯେତେ ପ୍ରାଣୀ
ସେ କେଭେ ବସିଛନ୍ତି କି ଧର୍ମଶାସ୍ତ୍ର ଶୁଣି ।
ଅଜ୍ଞାନୀ ପ୍ରାଣୀ ସୁଜ୍ଞାନୀ କେଭେ ହୋଇଛି କି
ଅଜାତି ଲୋକ ମଲେ କି ହୁଏ ଜାଣ ନର୍କୀ
କହିବା ଶୁଣ ପ୍ରଚଣ୍ଡ ରାଜାର ଯେ ବାଣୀ
ମହାରୋଗ ବ୍ୟାଧିଗ୍ରସ୍ତ ହେଲା ନୃପମଣି ।
ସେ ରାଜାର ପାତ୍ର ମନ୍ତ୍ରୀ ସେ ଯେବଡ଼ଲୋକ
ପ୍ରଧାନ ଛାମୁକରଣ ବିଶୋଇ ନାୟକ ।
ଏମାନେ ସକଳ ଆସି ରାଜାପାଶେ ବସି
ପରମାର୍ଥ କଥା କହି ବୁଝାନ୍ତି ବିଶେଷି ।
ବୋଲନ୍ତି ଶୁଣ ଶାକଲ୍ୟଦ୍ୱୀପ ନରଈଶ
ମୃତାହ ପଞ୍ଚମ ଦାନ କରି ସ୍ୱର୍ଗବାସ ।
ପ୍ରଥମରେ ଅନ୍ନଦାନ ଭୂମିଦାନ ଦିଅ
ସୁବର୍ଣ୍ଣ ଯେ ଶାଳଗ୍ରାମ ଗୋଦାନ କରାଅ ।
ସବୁରି ମୁଖରୁ ରାୟେ ଶୁଣି ଧର୍ମକଥା
ପାଞ୍ଚିଲା ଦ୍ରବ୍ୟ ନାଶିବେ ସିନା ଆସି ବୃଥା
ନ କଲେ ନିନ୍ଦା କରିବେ ସିନା ପୁଣମୋତେ
ଏମନ୍ତ ପାଞ୍ଚି ଡରିଲା ରାଜା ଲୋକାୟତେ ।
ନିର୍ବଳ ହୋଇ ଯେବଣ ଗାଈ ଗୋଟି ଥିଲା
ଗୋଗୋଷ୍ଠରୁ ଖୋଜାଇ ସେତାହାକୁ ଆଣିଲା
ଉତ୍ତମ ବ୍ରାହ୍ମଣ ହସ୍ତେ ଦେଲା ତାକୁ ଦାନ
ପରମାର୍ଥ କହିଲେ ସେ ନ ଶୁଣଇ କର୍ଣ୍ଣ ।
ଏଥୁଅନନ୍ତରେ ବାଣୀ ଶୁଣ ହେ ନାରଦ
କହିବା ଏବେ ରାଜାର ଶୁଣ ହେ ମୃତ୍ୟୁ ଭେଦ
ବିପ୍ରକୁ ଡକାଇ ଦାନ ଦିଅନ୍ତେ ଗୋବତ୍ସା
ତହୁଁ ଉତ୍ତାରେ ବାନ୍ଧିଲା କାଳ ତାଙ୍କ ଇଚ୍ଛା
ପ୍ରଚଣ୍ଡ ମରନ୍ତେ ତହୁଁ ଚଣ୍ଡ ଜାଣ ମଲା
ଏ ଦୁଇ ଭାଇ ଏକତ୍ର ଅଟନ୍ତିଟି ଭଲା ।
ଦୁଇଭାଇଙ୍କ ମରଣ ଦେଖି ବେନି କାଳ
ଆପଣେ ବାନ୍ଧି ତାହାକୁ ନେଲେ ଯମଆଳ
ତପ୍ତ ବୈତରଣୀ ନଦୀ ଅନଳର କୁଣ୍ଡ
ବାଟେ ନେଉ ନେଉଦେଲେଅନେକଯେଦଣ୍ଡ
କରନ୍ତେ ତାଙ୍କୁ ଯମର ଆଗେ ନେଇ ଉଭା
ପୁଚ୍ଛିଲେ ଶମନ କେଉଁ ନଗର ଏ ବାବା ।
ଶୁଣିଣ କହନ୍ତି ଯମ ଆଗେ ବେନି ମନ୍ତ୍ରୀ
ମନୁବଂଶରେ ଏ ରାଜା ଅଟନ୍ତି ତ କ୍ଷତ୍ରୀ ।
ଶାକଲ୍ୟ ଦ୍ୱୀପରେ ଥିଲେ ଏହୁ ରାଜାହୋଇ
ଏହାଙ୍କର କଥା ମୁହିଁ ଛାମୁରେ କହଇ ।
ଦିନକରେ ଲକ୍ଷେ ପାପ ଅର୍ଜି ଏ ପାରନ୍ତି
ତିଳାର୍ଦ୍ଧେ ଏ ପୁଣ୍ୟ କଥା କର୍ଣ୍ଣେ ନ ଶୁଣନ୍ତି
ଘାଟୁଆଳ ହୋଇ ନିତି ସାଧୁଥାନ୍ତି ଘାଟ
ଅଦୋଷୀ ଲୋକଙ୍କୁ କେତେ ଦେଉଥାନ୍ତିକଷ୍ଟ
କରନ୍ତି ଆଶିଷ ଯେବେ ବିପ୍ରେ ଆସି ମୁଖେ
ବିଷ ପ୍ରାୟେ ଚାହାନ୍ତି ତାହାଙ୍କୁ ଆଡ଼ବାଙ୍କେ ।
ଦ୍ୱେଷ ଲଗାଇଣ ପ୍ରଜା ଦଣ୍ଡ ନ୍ୟନ୍ତି ବହି
ମାତନ୍ତି ଏ ବେଶ୍ୟାତୁଲେ ଦ୍ରବ୍ୟମାନ ଦେଇ

ଏହାଶୁଣି ବୋଇଲେ ସେ ଶୁକ ତପୋବନ୍ତ
ଏହିଠାରୁ ଶୁଣ ଏବେ ଦୈତ୍ୟଙ୍କ ବୃତ୍ତାନ୍ତ ।
ମୁର ଦାରୁଣ ବୋଲିଣ ଯେଉଁ ଦୁଇଭାଇ
ବ୍ରହ୍ମାଙ୍କର ବୀର୍ଯ୍ୟରୁ ସେ ଜାତହେଲେ ଯାଇ
ଯେବଣ ରୂପେ ଜନ୍ମିଲେ ଶୁଣ ସେ ସମ୍ବାଦ
ବିଧାତା ଯେ କହୁଛନ୍ତି ଶୁଣ ହେ ନାରଦ ।
ସ୍ୱର୍ଗରେ ବସନ୍ତେ ଇନ୍ଦ୍ର ଆସି ସଭା କରି
ତେତିଶକୋଟି ଦେବତା ଛନ୍ତି ସଙ୍ଗେ ଧରି ।
କହିବା ଶୁଣ ହେ ଦେବ ଲୋକଙ୍କର ନାମ
ଆଦିତ୍ୟ ଚନ୍ଦ୍ର ବରୁଣ ଅଗ୍ନି ବାୟୁ ଯମ ।
ଗନ୍ଧର୍ବ କିନ୍ନର ଯକ୍ଷ ରକ୍ଷ ପଞ୍ଚାବୃନ୍ତ ।
ଶ୍ରୀବ୍ରହ୍ମା ବିଷ୍ଣୁ ମହେଶ ଋଷି ତପୋବନ୍ତ ।
ଯୋଗକରଣ ନକ୍ଷତ୍ର ବାର କଳା ତିଥି
ଭୌମରାହୁଶନୈଶ୍ଚର ଶୁକ୍ର ବୃହସ୍ପତି ।
କିନ୍ନର ଗନ୍ଧର୍ବୀ ଅପସରୀ ବିଦ୍ୟାଧରୀ
ଗଣିକା ଗଣ ବସିଲେ ତହିଁ ସଭାକରି ।
ଅମର ସିଂହାସନରେ ବସିଲେ ସେ ଆସି
ସଭା ଦେଖିଣ ନାରଦ ଇନ୍ଦ୍ରଙ୍କୁ ପ୍ରଶଂସି ।
ବୋଇଲେ ଯେ କେଡ଼େଭାଗ୍ୟଅଟେବାସବର
ସଭାମଧ୍ୟେ ବିଜେ କରିଛନ୍ତି ଦାମୋଦର ।
ବିଧାତା ବଳେଣ ଋଷି ଦେବଗଣ ଆଦି
ମହା ସମ୍ଭ୍ରମରେ ବିଜେ ଶିବ ସନକାଦି ।
ଆବର କିନ୍ନରବୃନ୍ଦ ଅପସରା ଗଣେ
ଏ ସଭାରେ ଶୋଭା ପାଉଛନ୍ତି ଜଣେ ଜଣେ
ଧନ୍ୟ ଏ ଅମରାବତୀ ଧନ୍ୟ ସୁରପୁର
ଦ୍ୱିତୀୟ ବୈଇକୁଣ୍ଠ ଭୋଗକରେ ପୁରନ୍ଦର ।
ଏରୂପେ ମନରେ ପାଞ୍ଚି ନାରଦମହର୍ଷି
ବାସବ ପୁରକୁ ଚାହିଁ କହନ୍ତି ପ୍ରଶଂସି ।
ବୋଲନ୍ତି ଆହେ ବାସବ ଧନ୍ୟ ତୋର ସଭା
ଦେଖି ବସିଛନ୍ତି ଏଥେ କେତେ ନବଯୁବା ।
ଏଡ଼େ ସୁନ୍ଦରୀ ସୁନ୍ଦର ପଣ ଥାଉଁ ଥାଉ
ବ୍ୟର୍ଥେ ବସିଛନ୍ତି ନୃତ୍ୟ କିମ୍ପା ନ କରାଉ ।
ଆମ୍ଭେ ସମସ୍ତେ ବୃକ୍ଷଙ୍କ ପ୍ରାୟେ ଅଛୁ ବସି
ମିଟି ମିଟି ଚାହୁଁଛୁ ନ ସରେ ଦିବାନିଶି ।
ଏରୁପେ କୌତୁକ କରି କହନ୍ତେ ନାରଦ
ହସିଲେ ନାଗରୀମାନେ ହୋଇଣ ଆନନ୍ଦ ।
ସ୍ତିରୀଏ ହସନ୍ତି ହାସ୍ୟ କଲେ ସଭାଯାକ
ସଭାଜାନେ ହସନ୍ତେ ହସିଲେ ଦେବଲୋକ ।
ହସିଲେ ଦେବଙ୍କ ହସ ଦେଖି ହରିହର
ହରିହର ହସ ଦେଖି ହସେ ପୁରନ୍ଦର ।
ହସିଲେ ବାସବ ହସ ଦେଖି ସର୍ବଋଷି
ଋଷିଏ ହସନ୍ତେ ହାସ୍ୟକଲେ ପାଟଯୋକ୍ଷୀ ।
ଆବର ସଭାରେ ବସିଥିଲେ ଯେତେଲୋକ
ସେମାନେ ରହସ୍ୟ ଶୁଣିକରନ୍ତି କୌତୁକ
ଏରୂପେ ହୁଅନ୍ତେ ସଭାମଧ୍ୟେ ହସ ସୃଷ୍ଟି
ନ ହସି ବସି ଅଛନ୍ତି ଏକା ପରମେଷ୍ଠୀ
ଈଶ୍ୱର ତାହା ଦେଖିଣ ଚମତ୍କାର ହେଲେ
କାହିଁକି ବ୍ରହ୍ମା ନ ହସିରହିଲେ ବୋଇଲେ ।
ମନ ମଧ୍ୟେ କିଛୁ କହ ଇନ୍ଦ୍ରେ କରି ରୁଷ୍ଟ
ବୋଇଲେ ଆଜ ମଗାଅ ବେଗେ ଏଥି ନାଟ
ଅପସରୀଏ କହିଲେ ମନେ ମନେ ହସି
ସଖୀକୁ ବୋଇଲେ ନୃତ୍ୟକର ଶୁଭ୍ରକେଶୀ
ଶୁଣି ସେ ସ୍ତିରୀଏହେଲେନୃତ୍ୟରେ ଯେ ବଶ
ଅଳପେ ରାଗ ଟେକିଲେ ହୋଇ ହସ ହସ ।
ତାଳ କଂସାଳ ମର୍ଦ୍ଦଳ ଚୁମ୍ବିଲେ ବଇଁଶ
ଅପାଙ୍ଗ ଅଧାରେ ବୀଣା ବାଇ ନାଦ ଘୋଷି
ବଜାଇଲେ ସେ ଡମ୍ବରୁ ଆଦି ନାନା ବାଦ୍ୟ
ଅନେକ ରହସ୍ୟ ନୃତ୍ୟ କଲେନାରୀବୃନ୍ଦ ।
ଚିତ୍ରସେନ ଗନ୍ଧର୍ବ ଯେ ଧରି ତହିଁ ତାଳ
ବଜାଇଲେ ବିଶ୍ୱାବସୁସେଠାରେ କଂସାଳ ।
ମର୍ଦ୍ଦଳ ଧରି ଅଙ୍ଗାର ପନ୍ନଗ ଯେ ପିଟି
ଡମ୍ବରୁ ବିପଞ୍ଚି ବାଦ୍ୟ ବଜାଇ ଚହଟି ।
ସୁରସେନ ଗନ୍ଧର୍ବ ଯେ ଟେକେ ବେଣୁ ନାଦ
ଚାଳଇ ସେ ଜୟସେନ ବୀଣା ମନ୍ତ୍ର ବାଦ୍ୟ ।
ବଜାଇଲା ମେଘନାଦ ସୁସ୍ୱର ବାଜେଣି
ଆଖିଛଟା ମାରି ନାଚ ନାଚନ୍ତି ତରୁଣୀ ।
ଆଉ ଯେତେକ ଗନ୍ଧର୍ବ ଧରି ପଡ଼ି ତାଳ
ଗାନ୍ଧାର ନିଶାରେ ରାଗ ଟେକନ୍ତି ମୃଦୁଳ
ସୁସ୍ୱର ଧ୍ୱନି ସପତ ମାର୍ଗେ ବୀଣା କଲେ
ଚଞ୍ଚପୁଟ ଚାଞ୍ଚପୁଟ ଶୁଭେ ନିରନ୍ତରେ ।
ବସିଲେ ଛଅଣ ଛୟାଣୋଇ କରି ତାନ
ବୟାଳିଶ ତାଳକରେ ଟେକେ ରାଗମାନ ।
ଆଖି ଲତିକା ତେପନ ବାଆସ୍ତରୀ ଭଙ୍ଗୀ
ଚୌରାଣି ଚାହାଣୀ ପ୍ରେମେ ଚଉରାଶୀ ଲାଗି
ଚଉବନ ଆଳାପରେ ଖଞ୍ଜି ପଞ୍ଚଧାତୁ
ଏକାଦଶୀ ରସନାରେ ବୟାଣୋଇ ତତ୍ତ୍ୱ
ତିନିଶତ କାଛେଣିରେ ଛତିଶ କବାଟ
ବାଆସ୍ତରୀ ବସାଣରେ ଶତ ପରିପାଟ ।
ଏମନ୍ତ ରହସ୍ୟ ମାର୍ଗେ ଭାବେ ଗଲେ ନାଚି
ଭଉଁରୀକି ଚାହାଣି କି ଚାହିଁଲେ ମୋହୁଛି ।

ଏ ଅଂଶରେ ଆଉ ଲୋକେ ନାଚି ନପାରନ୍ତି
ଦିଗ୍‌ପାଳ ଆଦି ବ୍ରହ୍ମାଣ୍ଡେଯେତେକ ଅଛନ୍ତି
ହର ଏକା ସେ ତାଣ୍ଡବ ନୃତ୍ୟଖଣ୍ଡି ଜାଣେ
ଇନ୍ଦ୍ରକୁ କହି ମନାଇ ଅଛନ୍ତି ଆପଣେ ।
ଏତେକ ସ୍ୱର୍ଗ ସୁଧର୍ମା ସଭା ସେହି ଅଟେ
ତହିଁରେ ନାଗରୀ ପଶି ଅଛନ୍ତି ଯେ ନାଟେ ।
କିନ୍ନରୀ ଅପସରୀ ଆଦି ଯେତେ ନବଯୁବା
ସବୁହୁଁ ଶତ ଗୁଣରେ ଉର୍ବଶୀ ଯେ ଶୋଭା ।
ଏକ ଦୃଷ୍ଟିରେ ସମସ୍ତେ ଥାନ୍ତି ତାକୁ ଚାହିଁ
ଉରୁଜାନୁସ୍ତନ ଦେଖି ହେଉଥାନ୍ତି ମୋହି ।
ସବୁହୁଁ ଶ୍ରେଷ୍ଠ ଅଟଇ ଉର୍ବଶୀର ନାଟ
ଅନେକ ମାର୍ଗରେ ତାଳଧରିବାର ଶ୍ରେଷ୍ଠ ।
ନିରୀକ୍ଷି ଚାହିଁ ଅଛନ୍ତି ସଭାଯାକ ତହିଁ
ଚକ୍ଷୁ ପଲକ ନ ଚଳି ନିଶ୍ଚଳେ ଅଛଇ ।
ଠାବ ନ ପାଇଣ ଥୋକେ ବସିଛନ୍ତି ତଳେ
କେବେନିପାବଛେକେହିଚାହେଁ ନୃତ୍ୟେଭୋଳେ
କାଛ ବାଡ଼ରେ ଆଉଜି ଦେଖୁଛନ୍ତି ଜନେ
କେ କାହାର ପଛେ ରହି ଚାହାନ୍ତି ନୟନେ
ଅପୂର୍ବ ପ୍ରାୟ ତା ମଣି ଚାହାନ୍ତି ସକଳେ
ହେ ନାରଦ ମୁନି ଶୁଣ ଏଥୁ ଅନନ୍ତରେ ।
କାମଦେବ ସଭାମଧ୍ୟେ ନ ଥିଲେ ଯେ ମିଳି
ସେ ମଧ ବାରତା ପାଇ ଶୀଘ୍ର ଆସେ ଚଳି
ଦେଖିଲା ପୂରିଲା ସଭାମଧ୍ୟେ ଛନ୍ତି ବସି
ତିଳ ପଡ଼ିବାର ସ୍ଥାନ ସେଠାରେ ନ ଦିଶି ।
ପଥ ନପାଇ ନ ପାରେ ବସି କାମ ତହିଁ
ରହିଲା ସେ ଖଣ୍ଡେଦୂର ସଭାଯାକ ଚାହିଁ ।
କାମ ଆସିବାର କାହିଁ କାହାରିକୁ ଜଣା
ସମସ୍ତେ ସେ ନୃତ୍ୟ ଦେଖି ହୋଇଛନ୍ତିବଣା
କନ୍ଦର୍ପକୁ କେହି ଚାହିଁ କହୁନାହିଁ କଥା
ଏ ଘେନି ତାହାର ଅଙ୍ଗ ପାଇଲାକ ବ୍ୟଥା ।
କେହିବସବୋଲିମୁଖେନବୋଲେସେବେଳେ
କାମ ଅଙ୍ଗୁଝାଳ ବହି ପଡୁଅଛି ତଳେ ।
ପିନ୍ଧିବା ଅଞ୍ଚଳେ ପୋଛିଦିଏ ଅଙ୍ଗୁସ୍ୱେଦ
କୋପଭରେ କମ୍ପୁଅଛି କନ୍ଦର୍ପର ହୃଦ ।
ମନେ ବିଚାରଇ ଏହା ଜଣା ତ ନ ଗଲା
କେବେହେଁ ବସବୋଲିତକେହିନବୋଇଲା
ବୁଝିଲେତ ଘାରିହୁଏ ସବୁଙ୍କର ପ୍ରାଣ
ରତିଜିତ ହ୍ୱନ୍ତି ପୁଣି ମୋହରି ବଳେଣ ।
ଏହିକ୍ଷଣି ସମସ୍ତଙ୍କୁ ଦହିପାରେ ମୁହିଁ
ବିନ୍ଧିଦେଲେ ପାଞ୍ଚବାଣ ହୋଇଯିବେ ମୋହି
ମଦନେ ତରଳ ହୋଇ ପଳାଇଛେ ଘୁଞ୍ଚି
ଦେଖଣାହାରୀ ଲୋକଙ୍କୁ ମାଇଲେ କେ ଅଛି ।
ଆବର କରନ୍ତି ଅବା ଦେବତାଙ୍କୁ କୋପ
ପୁରାତନ ଦେହ ସେତ ନୁହନ୍ତି ସ୍ୱରୂପ ।
ଋଷିମାନଙ୍କୁ ବା ବାଣ ବିନ୍ଧନ୍ତି କଟାକ୍ଷ
ବସିଅଛନ୍ତି ଯେ ଭଲପଣେ ହୋଇ ସାକ୍ଷ ।
ଦିଗପାଳଙ୍କୁ ବିନ୍ଧନ୍ତି ବାଣ ଅବା ଧରି
ସେ ଅଟନ୍ତି ମୋର ବିଡ଼ୋଜାର ସେବାକାରୀ
ବାସବଙ୍କୁ କି ବୋଲିବି ଅଟନ୍ତି ମୋ ବାପ
ସମ୍ପତ୍ତି ଭୋଳରେ ମାତି ସ୍ୱର୍ଗେ ହୋଇନୃପ
ସଭାରେ ସ୍ତିରୀ ଗୁଡ଼ାଙ୍କୁ ଆଣି ନଚାଉଛି
ଲାଜ ସରମ ତାହାଙ୍କ ଦେହେ ନାହିଁ କିଛି ।
ଲୋକନିନ୍ଦାକୁ ତାଙ୍କର ନାହିଁ କିଛି ଡର
ଦେଖି ଯୁବତୀଙ୍କ ଛବି ହସେ କର କର ।
ପିତା ନୋହିଥିଲେ ଆଜି ବୁଝନ୍ତି ତା ଭାବ
ଏକବାଣ ବିନ୍ଧିଦେଇ କରନ୍ତି ତ ଦ୍ରବ ।
ପିତାଙ୍କୁ ଲଘୁ କରିଲେ ଏ ସଭାରେ ମୋତେ
ନିନ୍ଦା କରିବେ ଆବର ସକଳ ଜଗତେ ।
ତାଙ୍କର ବୀର୍ଯ୍ୟରୁ ମୁହିଁ ହୋଇଅଛି ଜାତ
ତାହାଙ୍କୁ ଲଘୁ କରିଲେ ସରିବ ମହତ୍ୱ ।
ତଥାପି ସଂସାର ଯେତେ ମୂର୍ଖ ପୁତ୍ରଛନ୍ତି
ପିତାର ବୋଲ ନ ମାନି ବ୍ୟର୍ଥେ ନାଶଯାନ୍ତି
କିବୋଲି ବାପକୁ ମନ୍ଦ ପାଞ୍ଚିବି ଏଥିରେ
ସେହି ସିନା ହେଲେ ଭୋଳ ସମ୍ପଦ ମଦରେ
ପ୍ରାଣୀଙ୍କି ସମ୍ପଦମଦ ଅନ୍ଧ କରଇ କି
ଲାଗି ଲାଗି ଲୋକପ୍ରାୟ ପଳାଏ ସେ ଝିଙ୍କି
ପଦାର୍ଥ ଘେନି ଅଟଇ ସେହି ବଡ଼ପଣ
ସତ୍ୟ ଅସତ୍ୟ ସେ କିଛି ନ ଜାଣଇ ପୁଣ ।
ରାଜଦ୍ୱାରେ ଶାଢ଼ୀ ବାନ୍ଧି କରେ ବଡ଼ପଣ
ବୋଲେ ଆମ୍ଭେ ପୃଥିବୀରେ ବଡ଼ ଏକାଜାଣ
ଦେବତା ବ୍ରାହ୍ମଣ ସାଧୁସୁବୁଦ୍ଧି ଜନଙ୍କୁ
କେତେ କେତେ ବଚନ ନକହେ ମାନିତାଙ୍କୁ
ଆପଣାର ଗୁଣ କହି ଆପେ ହୁଏ ଟେକି
ନାଶଇ ମୂର୍ଖପଣକୁ ଦହି ସେ ପ୍ରାଣୀଙ୍କି ।
ଉଶ୍ୱାସ ବୁଦ୍ଧିରେ ସେହୁ ଅଚ୍ଛେ ଯାଇ ନାଶ
ନଲାଗନ୍ତି ସ୍ତିରୀ ତୁଲେ ପଣ୍ଡିତ ପୁରୁଷ ।
ସେ ବାସବ ବସ ବୋଲି ବୋଲିବ କାହିଁକି
ଏତେବୋଲି ସଭାକୁ ସେ ଚାହିଁଲା ନିରେଖି ।
ଯୁବତୀମାନଙ୍କୁ ଚାହିଁ ବଶ ପୁଣି ହେଲା
ପୁଣି ଶାନ୍ତଗୁଣେ ଚାହିଁ ମନେ ବିଚାରିଲା ।

ବୋଇଲା ଭେକ ପ୍ରାୟେ ଏ ମରୁଛନ୍ତି ଡେଇଁ
ମୁଁ ନିଶ୍ଚେ ବିନ୍ଧିଲେ ବାଣ ହେବ କାମେଦହିଁ
ଗଣିକା ତୁଲେ ତ ଲେଖା ଅଟନ୍ତି ଏମାନେ
ଯେ ଧନ ଦିଏ ଖଟନ୍ତି ତାଙ୍କୁ ପ୍ରତିଦିନେ ।
ଦେହ ସମର୍ପି ଧରନ୍ତି ତାଙ୍କୁ କୋଳକରି
ବସନ୍ତି ଚାଟୁ କହିଣ ଅଲକ୍ଷିତେ ମାରି ।
ଛାର ପଦାର୍ଥ ନିମନ୍ତେ ପରେ ଦେହ ଦ୍ୟନ୍ତି
କୁଜନ ତୁଲରେ ଭ୍ରମି ପରେ ଘାଣ୍ଟିହୋନ୍ତି ।
ଏ ଛାର ଲୋକଙ୍କୁ କୋପକଲେ ଦେବ କିସ
ନ ଲାଗନ୍ତି ସ୍ତିରୀତୁଲେ ପଣ୍ଡିତ ପୁରୁଷ ।
ଏ ରୂପେ ମନରେ ପାଞ୍ଚି ରତିର ରମଣ
ଦେଖିଲେ ସଭାରେ ବସିଛନ୍ତି ନାରାୟଣ ।
ହୃଦରେ ପାଞ୍ଚିଲେ ଆଜି ମୋରକେଡ଼େଭାଗ୍ୟ
ଶ୍ରୀବିଶ୍ୱନାଥଙ୍କର ମୁଁ ଦେଖିଲି ଶ୍ରୀଅଙ୍ଗ ।
ଅଶେଷ ଚିନ୍ତାର ମଣି ଯେଉଁ ବନମାଳୀ
ସେ ପୁଣି ନୃତ୍ୟରେ ଭୁଲି ଦେଖେ ଢଳିଢ଼ଳି
ଯାବତ ଜୀବ ସ୍ୱରୂପ ଯାର ହୃଦୁ ଜାତ
କ୍ଷଣକେ ପ୍ରଳୟ କରି ସଞ୍ଚଇ ଜଗତ ।
ହେଉ ବୋଲନ୍ତେ ଯାହାର ହୁଏ ନବସୃଷ୍ଟି
ମୁହୂର୍ତ୍ତକରେ ବ୍ରହ୍ମାଣ୍ଡଗଢ଼େ କୋଟି କୋଟି
ଯେଉଁ ନିତ୍ୟସ୍ଥଳେ ଅଛି ରାସ ଯଜ୍ଞ ବେଦୀ
ଦର୍ଶନ ନ ପାନ୍ତି ତାହା ଋଷି ସନକାଦି ।
କରନ୍ତି ଚୌଷଠି ସସ୍ର କନ୍ୟା ଯହିଁ ନୃତ୍ୟ
ତାହା ଛାଡ଼ି ଦେଖ ଏଥେ ଅଛନ୍ତି ଅଚ୍ୟୁତ ।
ଯେଉଁ ପ୍ରଭୁର ସର୍ଜିଲା ଅଟେ ମୋର ଦେହୀ
ବସବୋଲି ମୋତେସେହୁବୋଲିବେକିମ୍ପାଇଁ
ଏହିରୂପେ ମନେ ମନେ ପାଞ୍ଚି କାମଦେବ
ଦେଖିଲା ବସିଅଛନ୍ତି ନୃତ୍ୟେ ମହାଦେବ ।
ବୋଇଲା ବିନ୍ଧନ୍ତି ଏହି ପ୍ରଭୁଙ୍କୁ ମୁଁ ବାଣ
ମହାମତ୍ତ ଭୋଳାନାଥ ଅଟେ ଏ ଆପଣ ।
ପତ୍ନୀକୁ ଏ କୋଳେ ଘେନି ଅନୁକ୍ଷଣେ ଥାନ୍ତି
କ୍ଷଣେ ନ ଦେଖିଲେ ବଣା ହୁଅନ୍ତି ପାର୍ବତୀ ।
ସେ ଅଙ୍ଗ ଛାଡ଼ି କି ରୂପେ ଏବେ ମହାଦେବ
ଏ ନୃତ୍ୟେ ବସିଅଛନ୍ତି ଏ ତ ଅସମ୍ଭବ ।
ଏହାଙ୍କୁ ବା କୋପ କଲେ ହେବମୋରକିସ
ଏତେ ବୋଲି କରେ ଧରି ଆଉଁଷିଲା ନିଶ
ଦେଖିଲା ସଭାରେ ବସିଛନ୍ତି ବେଦବର
ପାଞ୍ଚିଲା ଏହୁ ଅଟନ୍ତି ମୋହର ଶ୍ୱଶୁର ।
ଦେଖି ଏଡ଼େ ପୁରାତନ ପୁରୁଷ ଯେ ଆସି
ସ୍ତିରୀଲୁଚା ଘେନି ନୃତ୍ୟ କରୁଛନ୍ତି ବସି ।
ବ୍ରହ୍ମାପରା ପୁରୁଷ ଏରୂପ ଯେବେ ହେଲା
ଯୁବତୀବୃନ୍ଦଙ୍କୁ ଦେଖି ମୋହିତ ହୋଇଲା ।
ଉର୍ବଶୀକୁ ଦେଖି ବସିଅଛି ଏକା ହଟି
ପାଚିଲା ନିଶକୁ ମୋଡ଼ି ଚାହେଁ ମିଟି ମିଟି ।
ସୁରତିକୁ ଏହାଙ୍କର ବଳିଅଛି ମନ
ତେଣୁକରି ଏହୁ ମୋତେ ନ ଦେଲେଆସନ
ତଥାପି ସେ ବସବୋଲିନବୋଇଲେ ବଳେ
କେତେବେଳୁଁ ଉଭା ମୁହିଁ ହୋଇଅଛି ତଳେ
ଭଲ ଆଦର କରନ୍ତି ମୋତେ ବେଦବର
କେମନ୍ତେ ବୋଲିବେଟି ଏ ମୋହର ଶ୍ୱଶୁର
ଏ ସ୍ଥାନେ ତାହାଙ୍କୁ ଲଜ୍ଜା ଦ୍ୟନ୍ତି ସିନା ମୁହିଁ
ମିଟିମିଟି ଚାହାନ୍ତି ପାଚିଲା ଥୋଡ଼ ବହି ।
ଏତେ ପାଞ୍ଚି ମହାକ୍ରୁଦ୍ଧ ହୋଇଣ କନ୍ଦର୍ପ
ଆମଞ୍ଚନ କଲା ଖରେ ବହି ଫୁଲଚାପ ।
ଆକର୍ଷି ପାଞ୍ଚବାଣକୁ ପୁରାଇଲା ଆଣି
ବିନ୍ଧିଲା ସେ ବିଧାତାଙ୍କୁ ତାଙ୍କ ମନ ଜାଣି ।
ଭେଦିଲା ସେ ପଞ୍ଚଶର ବ୍ରହ୍ମାଅଙ୍ଗେ ଯାଇ
ଉଠିଲେ ତହୁଁ ବିଧାତା କାମେ ମତ୍ତହୋଇ
ଆଚାର ବିଚାର ନିନ୍ଦା ସବୁ କଲେ ତେଜ୍ୟା
ଦିବସ କାଳ ବୋଲି ନ କଲେ ମନେ ଲଜ୍ଜା
ଉଠିଲେ ବିହ୍ୱଳ ହୋଇ କାମ ଅସମ୍ଭାଳେ
ଯାଇ ଉର୍ବଶୀକୁ ବଳେ ଧଇଲେସେକୋଳେ
ଯେତେ ଭାବେ ସୁରପତି କ୍ରୀଡ଼ା ଥିଲା ସଞ୍ଚ
ତେତେ ପ୍ରକାରେ ସେ କ୍ରୀଡ଼ାକଲେପିତା ସଞ୍ଚ
କ୍ରୀଡ଼ା ଶେଷେ ଜାତହେଲେବେନିଯେତନୁଜ
ସଇନ୍ଦୁ ସେ ପୁତ୍ର ବେନି ବହି ମହାତେଜ ।
ଧାତାଙ୍କଠାରୁ ଜନମ ହେଲେ କିସ ହେବ
ଅଶୁଭ ଲଗ୍ନ ବେଳାରୁ ହେଲେ ସେଦାନବ
ଆଷାଢ଼ ଶୁକଳପକ୍ଷ ପଞ୍ଚମୀ ତିଥିରେ
ଜନ୍ମିଲେ କୁମର ବେନି ଉର୍ବଶୀ ଉଦରେ ।
ଉତ୍ପତ୍ତି ଦ୍ୱାରେ ପ୍ରକାଶି ପଡ଼ନ୍ତେ ଭୂମିର
କାନ୍ଦନ୍ତେ କୁହାଟିହୋଇ ଉଚ୍ଛୁଳେ ତ୍ରିପୁର ।
କମ୍ପିଲା ପ୍ରଥମ ରଡ଼ିଘାତେ ସ୍ୱର୍ଗଯାକ
ଦ୍ୱିତୀୟ ରଡ଼ିର ଘାତେ କମ୍ପେ ମର୍ତ୍ତ୍ୟଲୋକ ।
ତୃତୀୟ ରଡ଼ିର ଘାତେ ମେଦିନୀ କମ୍ପିଲା
ଦଶଦିଗ ଦ୍ୟାପି ଧୂମମୟ ଦେଖାଗଲା ।
ସପତସାଗର ଆଦି ମେରୁଗିରି ଯାଏ
ବିକଟ ନାଦରେ ସବୁ କମ୍ପମାନ ହୁଏ ।
ପବନ ଯେ ଥମିଯାଇ ରହିଲା ଆକାଶେ
ଭୂମିରେ ନିର୍ଜୀବ ହୋଇ ପଡ଼ିଲେ ମନୁଷ୍ୟେ

ଯାବତ ଦିଗପାଳେ ଢ଼ଳି ପଡ଼ିଲେକ ସ୍ଥାନୁ ।
ଯୋଗାଧିପୁରୁଷେ ଟଳି ପଡ଼ିଲେ ଆସନୁ ।
ଗର୍ଭେ ରହିଥିବା ପୋଏ ପଡ଼ିଲେ ଗର୍ଭରୁ
ଚେତନା ଯେ ବୁଡ଼ିଗଲା ସଭିଙ୍କ ଶରୀରୁ ।
ପୃଥିବୀ ସହି ନ ପାରି କରଇ ରୋଦନ
ଦିଗପାଳମାନେ ହୋଇଗଲେ ଜ୍ୟୋତିହୀନ
ଜନ୍ମିଗଲେ ପୁତ୍ରକୋଳେ ଦେଖି ପରମେଷ୍ଠୀ
ମନେ ଭୟ କରି ବୁଜିଲେକ ବେନି ଦୃଷ୍ଟି ।
ଚକ୍ଷୁମେଲିଣ ପୁଣିହିଁ ଚାହାନ୍ତେ ନିରୋଳି
ଦେଖିଲେ ପିଙ୍ଗଳ ଦିଶେ ଦେହେରୋମାବଳି
କଳାମେଘ ପ୍ରାୟେ କଳାଦିଶେଦେହଗୋଟା
ଅଗ୍ନିଯୁକ୍ତ ଗିରିପ୍ରାୟେ ଦିଶେ ଅତି ମୋଟା ।
ପର୍ବତର ଖୋଳପ୍ରାୟ ଦିଶଇ ନୟନ
ମେରୁର ସଦୃଶ ଦିଶେ ତାଙ୍କ ବେନି କର୍ଣ୍ଣ ।
ତାଳବୃକ୍ଷ ପ୍ରାୟ ଦୀର୍ଘ ଦିଶେ ନାସା ଗୋଟି
ସିନ୍ଧୁ ଗରଜନ ପ୍ରାୟେ ନିଃଶ୍ୱାସ ପ୍ରକଟି ।
ପ୍ରସବ ହେବା ମାତ୍ରକେ ଦିଶେ ଦନ୍ତ ଦୀର୍ଘ
ଲଙ୍ଗଳ ପତ୍ର ପରାଏ ଦିଶେ ଜିହ୍ୱା ଅଗ୍ର ।
ପ୍ରଚଣ୍ଡ ରଡ଼ି ଛାଡ଼ିଣ ରୋଦନ ତନୁଜ
କାଳଦଣ୍ଡ ପ୍ରାୟେ ଦିଶେ ତାର ବେନି ଭୁଜ
ଓସାର ହୃଦ ବିସ୍ତାର ଦିଶେ ତଳି ପେଟ
କୁକ୍ଷି ଆବୋରି ଅନ୍ତର ଅତ୍ୟନ୍ତ ବିକଟ ।
ଯମ ଅର୍ଗଳି ପରାୟେ ଦିଶେ ବେନି ଜାନୁ
କୁଣ୍ଡଳ ବେନି ଦିଶଇ ଯେହ୍ନେ ଗିରିସାନୁ ।
ମୂଷଳର ପ୍ରାୟ ଦେଖାଯାଏ ପାଦମାନ
ଖଡ଼୍ଗ କୁନ୍ତ ପରାୟେ ଦିଶେ ନଖ କର୍ଣ୍ଣ ।
ଅତିହିଁ ଉଗ୍ର ହୋଇଣ ଜନ୍ମିଲେ ବାଳକ
ବ୍ରହ୍ମାଙ୍କ ମନରେ ଶଙ୍କା ଲାଗିଲା ଅନେକ ।
ପାଞ୍ଚିଲେ ଏ ପୃଥିବୀକି ହେବେ ନିଶ୍ଚେ ଭାରା
ସାଧୁ ସନ୍ଥଙ୍କ ଅନ୍ତକ ହେବେ ଏହି ପରା ।
ଏମନ୍ତ ହୃଦ ମଧ୍ୟରେ ପାଞ୍ଚି ବେଦବର
ଲେଉଟି ପୁତ୍ରେକ ଜନ୍ମ ହେଲା ତତପର ।
ଏକ ପୁତ୍ରେ ପୃଥିବୀ ତ ହୋଇଥିବା ଗୁରୁ
ଦ୍ୱିତୀୟ ପୁତ୍ରକୁ ଦେଖି ନ ସହିଲା ମେରୁ ।
ଗଗନୁ ନିର୍ଘାତ ତଳେ ପଡ଼ିଲା କି ଖସି
ଚନ୍ଦ୍ରମା ମଣ୍ଡଳୁ ଜାଣ ତପନ ବରଷି ।
ଆଦିତ୍ୟ ମଣ୍ଡଳଯାକ ଦିଶିଲାକ କଳା
ପବନ ଅଙ୍ଗୁ ବହିଲା ଜାଣ ଅଗ୍ନିଜ୍ୱାଳା ।
ଦିବସରେ ଦେଖାଗଲେ ତାରା ପନ୍ତିପନ୍ତି
ନଭୋମଣ୍ଡଳୁ ରୁଧିର ଧାରା ବରଷନ୍ତି ।

ନଦୀ ନାଳ ପୋଖରୀଏ ନିର୍ଜ୍ଜଳ ଦିଶିଲେ
ପଳାଇ ଜଳଜନ୍ତୁଏ ସିନ୍ଧୁରେ ଲୁଚିଲେ ।
ଅଗ୍ନିତେଜ ଜାଣ ଦେଖାଗଲା ଜ୍ୟୋତିହୀନ
ଜନ୍ତୁଏ ଅନ୍ତର ରହି ହୁନ୍ତି ଛନ୍ନ ଛନ୍ନ ।
ଯେ ଯହିଁ ଥିଲେ ରହିଲେ ତହୁଁ ଚକ୍ଷୁ ବୁଜି
ଏରୂପେ ଦୁଷ୍ଟ ଦନୁଜ ଆସିଲେ ଉପୁଜି ।
ପୁତ୍ରଙ୍କୁ ଦେଖି ଉର୍ବଶୀ ହୋଇଲା ଆନନ୍ଦ
ଏଥୁଅନନ୍ତରେ ବାଣୀ ଶୁଣ ହେ ନାରଦ ।
ସଭାରେ କରନ୍ତେ ବେଦବର ଅନାଚାର
ତାହାଦେଖି ଦେବେ ଚଳିଗଲେ ଯେଝାପୁର
ଈଶ୍ୱର ରହିଲେ ଖଣ୍ଡଦୂରେ ଏକା ବସି
ଶେଷରେ ଧାତା ମୁଖକୁ ଚାହିଁ ହସି ହସି ।
କହିଲେକ କରତାଳି ମାରି ବଳେ କଥା
ସଭାରେ ହସୁ ନ ଥିଲେ ପରା ଚଉମଥା ।
ଯେତେବେଳେ ସଭାଯାକ ହସୁଥିଲୁ ଆମ୍ଭେ
ତୁମ୍ଭେ ପରା ବସିଥିଲ ତହିଁ ଚିଉଦମ୍ଭେ ।
ସେ ଦମ୍ଭପଣ ଦିଶିଲା ଏବେ ବେଦବର
ପୁତ୍ରକୁ ଲୁଚାଇ କାହିଁ ରଖିବୁ ଯେ ତୋର ।
ଲୋକଲଜ୍ଜା ନାହିଁ ଯାଅ ଯାଅ ଏବେ ଘେନି
ନୋହିଲେ ଦାଣ୍ଡରେ ହଟାହେବପଦ୍ମଯୋନି
ଏରୂପେ ବୋଲି ହସିଲେ ହୋଇ କରକର
ଶୁଣିଣ ବସିଲେ ଲଜ୍ଜା ପାଇ ବେଦବର ।
କୋପ ବହି କନ୍ଦର୍ପକୁ ଦେଲେ ମହାଶାପ
ବୋଇଲେ ଆରେ ପାପିଷ୍ଠ ହୁଅ କଉଣପ ।
ଏ ଦେବସଭାରେ ମୋତେ ଏମନ୍ତ ତୁ କଲୁ
ଦିବସରେ ଦୋଷ ବୋଲିମନେ ନ ପାଞ୍ଚିଲୁ
ଶ୍ୱଶୁର ବୋଲି ମୋତେ ନ କଲୁ ଉପରୋଧ
ଏଡ଼େ ମୂର୍ଖ ହୋଇ ତୁହି ଅର୍ଜିଲୁ ଅପ୍ରାଧ ।
କି ବୋଲି ଏ ଅପରାଧ କଲୁ ପଞ୍ଚଶର
ତୋହର ତୁଲେ ସେଦୈତ୍ୟ ଯାନ୍ତୁରବିତଳ
ଏରୁପେ କାମକୁ ଦ୍ୟନ୍ତେ ବ୍ରହ୍ମା ଅଭିଶାପ
ଶୁଣି ମନ୍ମଥ ବସିଲା ପାଇ ମନସ୍ତାପ ।
କରଯୋଡ଼ି ଜଣାଇଲା ପୁଣି ଭୟଚିତ୍ତେ
ଏବେ ମୋକ୍ଷକର ଲୋକ ପିତାମହ ମୋତେ
ଏହି ଛାର କଥାକୁ ଯେ କଲ ମୋତେକୋପ
ଜାଣୁଜାଣୁଧାତା ମୋତେଦେଲକେଡ଼େଶାପ
ଏଡ଼େକ ଦେବସଭାରେ ଶାପ ଯେବେଦେଲ
ମୋହର ଛାର ଲୋକକୁ ତ ଏ ଦଣ୍ଡ ବିହିଲ
ମଶାହୃଦେ ଆଣି ଲଦିଦେଲ ମେରୁଦଣ୍ଡ
ବିନ୍ଧିଲ ରମ୍ଭା ବୃକ୍ଷକୁ ପାଶୁପାତ କାଣ୍ଡ ।

ଏହାଙ୍କ ଯେବା ମାଗନ୍ତି ଆସି ରଙ୍କି ଭୋଖି
ରାଗରେ ତାହାଙ୍କୁ ନେଇ ବନ୍ଦୀଘରେ ରଖି ।
ଭାଗ୍ୟରେ ଯେତେକ ଧନ ଅର୍ଜିଥିଲା ନର
ଦୋଷ ଲଗାଇଣ ବହି ନ୍ୟନ୍ତି ନିଜପୁର ।
ପ୍ରଭାତରୁ ଜୀବ ବଧି ଭୋଜନ କରନ୍ତି
ଅସୁର ଲକ୍ଷଣେ ଏହୁ ସର୍ବଦା ବର୍ତ୍ତନ୍ତି ।
ସୁଜନ ସାଧୁ ଲୋକଙ୍କୁ ନ କରେ ଆଦର
ଦାନ ବୃତ୍ତି ଲୋଭରେ ଏ ହରଇ ତତ୍ପର ।
ପରମ ଯୁବା ସ୍ତିରୀକି ଦେଖିଲେ ଏ ନେତ୍ରେ
ତାଙ୍କଘରେ ବଳେ ପଶି ହରେ ଦିବା ରାତ୍ରେ
ପାପ କଥାମାନଙ୍କୁ ଏ ଭଲ ବୋଲି ମଣେ
ପ୍ରାଣୀଙ୍କର ଦୁଃଖ ଦେଖି ହସେ ଅନୁକ୍ଷଣେ ।
ଏହିରୂପେ ମହାଦୋଷୀ ଏ ରାଜା ଅଟଇ
କହିଲେ ଏହାର ପାପ ଜାଣ ନ ସରଇ ।
ପୁଣି ପଚାରିଲେ ଯମରାଜା ପୁଣି ହସି
ବୋଇଲେ ଏ ମୂଢ଼ଯେବେଅଟେବଡ଼ଦୋଷୀ
କହିଲେ ଏ ଯେତେ ପାପ କଲା ମଞ୍ଚପୁରେ
ଧରି କରି ନାହାନ୍ତି କି କିଛି ଏ ସଂସାରେ ।
ମରିବା ସମୟେ କିଛି ଦେଇଛ କି ଦାନ
ଏ କଥାକୁ ବୁଝି ଭଲେ କହ ପାପ ପୁଣ୍ୟ ।
ଏସନକ ବାକ୍ୟ ଧର୍ମରାଜା ମୁଖୁ ଶୁଣି
କହନ୍ତି କାଳ ବିକାଳ ଆଜ୍ଞା ପରମାଣି ।
ଏତିକି ପୁଣ୍ୟ ମାତ୍ରକ ଦେଖିଛୁ ଗୋସାଇଁ
ଶୁଣି ଧର୍ମରାଜା ଚିତ୍ରଗୁପତଙ୍କୁ ରାଇ ।
ଶୁଣିକରି ଦୁହେଁ ଧାଇଁ ଅଇଲେ ତତ୍ପରେ
ପାଞ୍ଜି ବିଡ଼ାମାନ ଧରି ଅଛନ୍ତି ହସ୍ତରେ ।
କହିଲେ ଧର୍ମରାଜାଙ୍କ ଆଗେ ଦୁହେଁ ଆସି
ଶ୍ରୀଛାମୁରେ କରଯୋଡ଼ି ପଚାରନ୍ତି ବସି ।
ଶମନ ବୋଇଲେ ଆହେ ଶୁଣ ଚିତ୍ରଗୁପ୍ତେ
ମଞ୍ଚପୁରୁ ବେନି ପ୍ରେତ ଆଣିଛନ୍ତି ଦୂତେ ।
ଏହାଙ୍କର ପାପ ପୁଣ୍ୟ ବୁଝିଯାଅ କହି
ଦୋଷ ଶୁଣିଲେ ଯେ ଦଣ୍ଡ ଦେବି ତାଙ୍କୁ ମୁହିଁ
ନାହାନ୍ତି ଏ ପୁଣ୍ୟକରି ଜନ୍ମ ମଲାଯାଏ
ତୁମ୍ଭେ ତ ଚିତ୍ରଗୁପତ ବୁଝ ସବୁ ନ୍ୟାୟେ ।
ପିତୁଳା ହୋଇ ପ୍ରାଣୀଙ୍କ ଚକ୍ଷୁରେ ଯେ ବସ
ପାପ ପୁଣ୍ୟ ବୁଝିକରି ପୁଣି ଏଥେ ଆସ ।
ରାତ୍ରେ ପ୍ରାଣୀ ନିଦ୍ରାଗଲେ କହ ଆମ ପାଶ
ପୁଚ୍ଛୁଛୁଁ ତେଣୁ ତୁମ୍ଭଙ୍କୁ ଏଥିର ସନ୍ଦେଶ ।

ଧର୍ମ ମାତ୍ରକ କରିଛି ଏ ରାଜା ଗୋଟିଏ
ତାହା ନ ବୁଝିଲେ ହେବ ଆମ୍ଭର ଅନ୍ୟାୟେ
ମୃତ୍ୟୁକାଳେ ଦେଇଅଛି ଏକ ଗୋରୁ ଦାନ
ଏଥକୁ ଏହାର କେତେ ହୋଇଅଛି ପୁଣ୍ୟ ।
ତହିଁକି ଚାହିଁ କହିବା ଆମ୍ଭେ ଦଣ୍ଡଆଣି
ଶୁଣିଣ ଚିତ୍ରଗୁପତ ଯୋଡ଼ି ବେନିପାଣି ।
ବୋଇଲେ ଶୁଣ ଭୋ ସ୍ୱାମୀ ଆମ୍ଭପାଞ୍ଜିବିଡ଼ା
ପ୍ରଥମେ କହୁଛି ଶୁଣ ଏହା ପାପ ପୀଡ଼ା ।
ଧର୍ମଶାସ୍ତ୍ର ପ୍ରମାଣରେ କହୁଅଛି ନ୍ୟାୟେ
ଲକ୍ଷେ ଯୁଗ ଗଲେ ମୋକ୍ଷ ନୁହଁନ୍ତି ଏ ଦୁହେଁ
ଆବର ଶୁଣ ପୁରାଣ ଶାସ୍ତ୍ରର ଏ ବାଣୀ
କହନ୍ତି ଚିତ୍ରଗୁପତ ଯୋଡ଼ି ବେନିପାଣି ।
ସେ କଥାକୁ ସାବଧାନେ ଶୁଣ ଜନ୍ତୁନାଥ
ପାଞ୍ଜିରେ ଲେଖା ହୋଇଛି ଆମ୍ଭରଯେମନ୍ତ
ମୃତ୍ୟୁକାଳେ ଏହା ଯାହାଦେଇଛି ଗୋଦାନ
ତହିଁରେ ବୁଝିଲେ ପୁଣ୍ୟ ହେଲା ତେରଦିନ
ତେରଦିନ ଭୋଗକଲେ ନରକେ ବିହାର
ଏଥର ବୁଝିଣ ଦଣ୍ଡ ଦିଅ ନୃପବର ।
ଶୁଣିକରି ଜନ୍ତୁରାୟେ ଅଳପ ଯେ ହସି
ମଧୁର କୋମଳେ ବାକ୍ୟେ କହନ୍ତି ଆଶ୍ୱାସି ।
ବୋଲନ୍ତି ଶୁଣ ଶାକଲ୍ୟ ଦେଶ ନରସାଇଁ
ବୁଝିଲୁ ତୋହାର ପାପ ଅନେକ ଅଛଇ ।
ପୁଣ୍ୟ ଅଇଛ ଅଳପ ମାତ୍ର ତେର ଦିନ
ପାପ ହେଲା ଅକଳନ ନ ଯାଇ ଲିଖନ ।
ଦେଲେ କାଳଦଣ୍ଡ ତୋର ହୋଇବ ତୃପତି
ଏହିପରି ସତ୍ୟକଥା କହି ଜନ୍ତୁପତି ।
ବୋଇଲେ ପାପ ଭୋଗ କି ଆଗପୁଣ୍ୟଭୋଗ
କରିବୁ ଯାହା ମାଗିବୁ ଦେବି ନିଶ୍ଚେ ଆଗ ।
ଏ ମୋହର ସତ୍ୟ ସତ୍ୟ ତିନିବାର ସତ୍ୟ
ତାହା ଶୁଣି ଶ୍ରଦ୍ଧା ହେଲା ଘଟୁଆଳ ଚିତ୍ତ ।
ପାଞ୍ଚିଲା ଦଶା ମୋହର ହୋଇଛି ସୁଫଳ
ନୋହିଲେ ଦୟା କରନ୍ତେ କାହୁଁ ଧର୍ମପାଳ
ନରକରେ ନ ପକାଇ ପଚାରିଲେ ଭଲ
ମାଗିବି ଆଗ ଉତ୍ତମ କଥା ତହୁଁ ହେଲା ।
ଭଲ ଯାତୁ ଯାତୁ ଯେବେପାପକୁ ମୁଁ ଯିବି
ପାପରେ ପଡ଼ିଲେ ପାପ ଲେଉଟି କରିବି ।
ପାପ ପୁଣ୍ୟ ଦୁଇମତ ଜଣା ତ ଗଲାଣି
ପୁଣ୍ୟକୁ ଆଗ ଭୁଞ୍ଜିବି ଯାଇଣ ମେଦିନୀ ।

ପୁଣ୍ୟରୁ ପୁଣ୍ୟ ଅବଶ୍ୟ ପ୍ରକାଶ ପାଇବ
ପାପରେ ପଡ଼ିଲେ ପାପ ଅଧିକ ବଢ଼ିବ ।
ଏମନ୍ତେ ପାଞ୍ଚ ରହନ୍ତେ ପ୍ରେତ ତୁନି ହୋଇ
ଲେଉଟି ପୁଛିଲେ ତାକୁ ସଂଯମନୀ ସାଇଁ ।
ବୋଇଲେ ଶୁଣ ଶାକଲ୍ୟ ଦ୍ୱୀପ ମହାରାଜା
କିସ ମାଗୁଛ ମାଗିଣ ଏଥୁ ବେଗେ ଯାଯା ।
ତଥାପି ପାପ କରିବୁ ଆଗ ଯେବେ ଭୋଗ
ପ୍ରାନ୍ତେ ପୁଣ୍ୟ ଭୋଗକରି ବସିବୁ ତୁ ସ୍ୱର୍ଗ ।
ପୁଣ୍ୟକୁ ଆଦ୍ୟରୁ ଯେବେ ଭୁଞ୍ଜିବୁବୋଲିବୁ
ପୁଣ୍ୟ ସରିଗଲେ ଆସି ନର୍କରେ ପଡ଼ିବୁ ।
ମାଗିବୁ ଏଥକୁ ଭଲେ କରି ଯାହା ମୋତେ
ନିଶ୍ଚୟ ଦେବଇଁ ମୁହିଁ ତାହା ଜାଣ ତୋତେ
ଏ ମୋର ତ୍ରିବାର ସତ୍ୟ ସତ୍ୟ ସତ୍ୟବାଣୀ
ତୁ ଯାହା ମାଗିବୁ ତୋତେ ଦେବଇଁ ଏକ୍ଷଣି
ପ୍ରଚଣ୍ଡ ବୋଇଲା ଯେବେ କୃପାହିଁ କଲଟି
ଯାହା ମାଗିବଇଁ ତାହା ଅବଶ୍ୟ ଦେବଟି ।
ଏତେ ବୋଲିଣ ପ୍ରଚଣ୍ଡ ଯୋଡ଼ି ବେନିକର
ବୋଲଇ ନୃପତି ଶାଢ଼ୀଦିଅମୋତେତୋର
ତେରଦିନ ରାଜା ମୁହିଁ ହେବି ଏ ସଂସାରେ
ରହୁ ଆପଣଙ୍କ କୀର୍ତ୍ତି ଯୁଗ ଯୁଗାନ୍ତରେ ।
ଏତେ ସତ୍ୟକରି ଯେବେ ଦେଲେ ଜନ୍ତୁପତି
ଦିଅ କାଳଦଣ୍ଡ ତୋର ହୋଇବି ନୃପତି ।
ଏ ସଂସାରେ ତେରଦିନ ହୋଇବି ମୁଁ ଯମ
ତୁମ୍ଭ ଲାଗି ଯୁଗେ ଯୁଗେ ରହୁ ମୋର ନାମ
ଶୁଣିକରି ଜନ୍ତୁପତି ହୋଇଲା ଚକିତ
ବୋଇଲା ମାଗିଲା ଭଲାଭୋଗ ମୋତେ ପ୍ରେତ
ଆମ୍ଭେ ତ ଯାଚିଣ ବର ଦେଲୁ ହସି ହସି
ମୁଖରୁ ବଚନ ଗୋଟା ଗଲାଣି ତ ଖସି ।
ତାହାର ବୁଝିଲେ ଦୋଷ ଏଥି ନାହିଁ କିଛି
ରଙ୍କକୁ ଆମ୍ଭେ ତ ସୁଧା ଦେଲ ବଳେ ଯାଚି
ନ ଦେଲେ ତ ସତ୍ୟ ହାନି ହେଉଛି ଆମ୍ଭର
ସଂସାରରେ ଶୁଣି ନିନ୍ଦା କରିବେ ଅପାର ।
ନିନ୍ଦାକୁ ବିଷ୍ଣୁ ପୁରୁଷ ଅଛନ୍ତି ଯେ ଡରି
ଆମ୍ଭେ ତାଙ୍କଭୃତ୍ୟ ସିନା ଅଟୁ ସେବାକାରୀ
ତେରଦିନ ସିନା ମୋର ନୋହୁ ରାଜପଣ
ଆମ୍ଭ କରିବାର ସତ୍ୟ ନୋହୁ ଅକାରଣ ।
ଏରୂପେ ମନେ ମନେ ପାଞ୍ଚଣ ନାଶକର
କାଳଦଣ୍ଡ ଛତ୍ର ନେଇ ହେଲେ ତାର କର
ସୁଖେଣ ଅକ୍ଷତ ଶାଢ଼ୀ ଦେଲେ ତାରମାଥେ
ବାହନ ସହିତେ ନେଇ ଦେଲେ ଜନ୍ତୁନାଥେ
ବୋଇଲେକ ଆଜିଠାରୁ ତେରଦିନଯାଏ
ନୂଆ ଯମପଦ ବୋଲି ହେଉ ସବୁଠାଏଁ ।
ଏହିରୂପେ ବର ଦେଇ ଗଲେ ଧର୍ମନିଧି
ଦେଖ ସେହି ଘାଟୁଆଳ କଲା କେତେ ବୁଦ୍ଧି
ଏଣୁ ସେ ଘାଟୁଳଆକୁ କି ଯିବି ପରତେ
କେଡ଼େ ବଡ଼ପଣ ସେହି ଅର୍ଜିଲା ଅଦ୍ଭୁତେ ।
ଏହିରୂପେ ଯମରାଜା ହେଲା ଯେ ପ୍ରଚଣ୍ଡ
ମହିଷ ଗୋଟିଏ ଚଢ଼ି ଧରି କାଳଦଣ୍ଡ ।
ଖଟିଲେ କାଳ ବିକାଳ ଆସି ସନ୍ନିଧିରେ
ବସିଲେ ଚିତ୍ରଗୁପତେ ପାଞ୍ଜି ଧରି କରେ ।
ଯମର ଯେ ଦେହଲାଗି ପରିଚାର ଜଣେ
ପ୍ରଚଣ୍ଡ ନିକଟେ ଆସି ସେବିଲେ ସେମାନେ
ଚାମର ଧରିଲା କେହୁ ଧରିଲା ଚିରାଳ
କେ ଛତ୍ର ଟେକିଲା କେହୁ କାନ୍ଧେ ଫୁଲମାଳ
କେ ପାଦ ଚାପିଲା କେହୁ ନିଜେ ଦେଲା ପାନ
କୁଙ୍କୁମ ଲେପିଲା କେହୁ ଲେପିଲା ଚନ୍ଦନ ।
କେହୁ ଆଜ୍ଞାକାରୀ କେହୁ ଧରେ ଛୁରୀ ଖଣ୍ଡା
କେହୁ ତରାଶ ଧଇଲା କେ ଧଇଲା ଧଣ୍ଡା ।
କଡ଼ାନ୍ତି କେ ଆଗୁଆଗ ହୋଇ ଆଗେ ବାଟ
ଏମନ୍ତ ପ୍ରଚଣ୍ଡ ମାଡ଼ିଆସେ ଯମରାଷ୍ଟ୍ର ।
ଦ୍ୱିଜମାନେ ଦେବାର୍ଚ୍ଚନ ସମୟକୁ ଜଗି
କରିଣ ସେ ଆଶୀର୍ବାଦ ଯାନ୍ତି ଆଜ୍ଞା ମାଗି ।
ଚାଳନ୍ତି ଚାମରେ ଚୋପଦାରେ ଦେଇ ଟୋପି
ବୀର କାହାଳୀ ନାଦରେ ସଂଯମନୀ କମ୍ପି ।
ଶୁଣ ନାରଦ ପ୍ରଚଣ୍ଡ କରିଲାକ ଯେତେ
ଗୋଦାନ ମହିମା ଜାଣ ଅଟଇଟି ଏତେ ।
ଏତେ ପାପକରି ଜାଣୁଥିଲା ପୁଣ୍ୟ ଟିକେ
କେଡ଼େପଣ ପାଇ ରାଜା ହେଲା ପୃଥ୍ୱୀଯାକେ ।
ଏଣୁକରି ହେ ନାରଦ ପୁଣ୍ୟ ଏକ ମୂଳ
ପୁଣ୍ୟକଲା ପ୍ରାଣୀଙ୍କୁ ଯେ ରଖେ ଆଦିମୂଳ ।
ଅଜ୍ଞାନୀ ମୂରୁଖ ମୂଢ଼ ଅଟନ୍ତି ଯେ ଲୋକ
ସେହିମାନେ ଦ୍ରବ୍ୟ ରଖି ଅଛନ୍ତି ଅନେକ ।
ସୁବେଳରେ ନ ଖାଇଣ ପାତ୍ରେ ନ ଦିଅନ୍ତି
ମୃତ୍ୟୁକାଳେ ଦ୍ରବ୍ୟ ଖାଇ ବ୍ୟର୍ଥେ ମରିଯାନ୍ତି ।

ପାଷାଣ ପରାୟ ପାପୀଙ୍କର ଦ୍ରବ୍ୟ ଜାଣ
କହିବା ନୂଆ ଯମର କଥା ଏବେ ଶୁଣ ।
ନାଶକର ଦେବତାର ଥିଲା ଦ୍ରବ୍ୟ ଯେତେ
ପ୍ରଚଣ୍ଡ ଛାମୁରେ ଆସି ମିଳିବେ ତୁରିତେ ।
ତାହାଙ୍କର ନାମମାନ ଶୁଣ ତପଶୀଳ
କାଳ ବିକାଳ ସୁକାଳ ମହାକାଳ କାଳ ।
ତ୍ରିକାଳ ଯେ ହେତୁକାଳ ଧୂମ୍ର କାଳାନ୍ତକ
ବାତପାଙ୍ଗୁଳ ଯେ ପିତ୍ତପାଙ୍ଗୁଳ ଶୁଚିକ ।
ଭଇରବ ଧମକାଳ କାଳମଲ୍ଲ କାଲ
ଚର ଅଚର ଗୋଚର ନିଶାଚର ବଳ ।
ବିଧାତୁ ଯେ ଅଣକେତୁ ଧାତୁ ମାତୁ ନାତୁ
ମତ୍ତ ମାତଙ୍ଗ କୃତାନ୍ତ ମୃତ୍ୟୁ ଅପମୃତ୍ୟୁ ।
କାଶ ଶ୍ୱାସ ହିକ୍କା ଆଉ ଅଜୀର୍ଣ୍ଣ ଘୁଙ୍ଗୁଡ଼ି
ଆସିଲେ ଏ ଆଦି କାଳଗଣ ସର୍ବେ ମାଡ଼ି ।
ଏ ରଥୀମାନଙ୍କ ମୂଳେ ଷଷ୍ଠି ପଦ୍ମବଳ
ସର୍ବେ ସେବାକଲେ ଆସି ପ୍ରଚଣ୍ଡ ପାଦର ।
ବାଜିଲା ଶଙ୍ଖ ମହୁରୀ ଦାଉଣ୍ଡିଡ଼ିଣ୍ଡିମ
ସଂଯମନୀ ନଗ୍ର ମାଡ଼ିବସେ ନୂଆ ଯମ ।
ମନେ ପାଞ୍ଚିଲା ଅଛି କେ ମୋତେ ଆଉ ସରି
ବୁଝିଲେ ତ ଧର୍ମରାଜା ବୋଲି ତିନିପୁରୀ ।
ଏ ଯମକୁ ଆଜ ଯେବେ ନ କରିବ ବନ୍ଦୀ
ପଶ୍ଚାତେ ମରିବି ସିନା ଝୁରି ଝୁରି କାନ୍ଦି ।
ତେରଦିନ ଭୋଗ ଯିବ ଅଳପକେ ସରି
ପାଇବି କି ଏହି ରାଜପଣ କେବେ କରି ।
କେତେବେଳେ ସିନା ମୋତେ ଦେବ ନର୍କ ଭୋଗ
ମୁଁ ଯେବେ ଯମକୁ ନେଇ ପକାଇବି ଆଗ ।
ବେଳହୁଁ ଉପାୟ ଯେବେ ନ କରିବ ଜାଣି
କି ରୂପେ ରାଜା ପ୍ରତିଜ୍ଞା ଜଣାଯିବ ପୁଣି ।
ଯଶ ଅର୍ଜି ଶତ୍ରୁକୁ ନ ପାରେ ଯେବେ ମାରି
ତାରଠାରୁ ଅଧର୍ମୀ ଯେ ନାହିଁ ତିନିପୁରୀ ।
ପଦାର୍ଥ ଅଜାଣ ଯେହୁ ନ କରଇ ଦାନ
ମହାପାପୀ ମଧ୍ୟେ ଲେଖା ଅଟଇ ସେ ଜନ ।
କୁଟୁମ୍ବ ଅର୍ଜିଣ ଯେବେ ନ ପାରିଣ ପୋଷି
ତାହାଠାରୁ ସଂସାରେ କେହି ନାହିଁ ଆଉ ଦୋଷୀ
ବେଦପଢ଼ି ତଥ୍ୟଯେବେ ନ ଜାଣେ ବ୍ରାହ୍ମଣ
ଦ୍ରବ୍ୟବିପାକ ପରାୟ ଅଟଇ ସେ ଜାଣ ।
ପୁତ୍ର ହୋଇ ପିତାକୁ ନ କରେ ଯେହୁସେବା
ପତ୍ନୀ ହୋଇଣ ପତିର ପାଦେ ନ ଖଟିବା ।
ପଣ୍ଡିତ ହୋଇ ନ କହେ ଯେବେ ମୃଦୁଭାଷା
ଯତି ହୋଇଣ ରତିକୁ ଯେବେ କରେ ଆଶା ।
ଦରିଦ୍ର ହୋଇଣ ଯେବେ ବହେ ମତ୍ତଗର୍ବ
ନୃପତି ହୋଇଣ ଯେବେ ହୁଏ ଅଦାତବ୍ୟ ।
ଦାତା ବୋଲାଇଣ ଯେବେ ହୋଇବ କପଟୀ
ସେବକ ହୋଇ ସାମନ୍ତ ବୋଲେ ଯେ ନଖଟି ।
ବ୍ରହ୍ମଚାରୀ ହୋଇ ଯେ ନ କହେ ସତ୍ୟବାଣୀ
ବ୍ରାହ୍ମଣ ହୋଇଣ ସତ୍ୟ ନ କହେ ଯେ ପୁଣି ।
ଶୂଦ୍ର ହୋଇଣ ଯଦ୍ୟପି ବ୍ରହ୍ମସ୍ତିରୀ ହରେ
ମରିଲେ ଏମାନେ ଯାଇ ପଡ଼ନ୍ତି ନର୍କରେ ।
ଆମ୍ଭେ ତ ଧରମରାଜା ଦେଲୁ ଏବେ ଆସି
ରାଜନୀତି ବିଧାନ ଯେ କହିବାକୁ ବସି ।
ଏହିରୂପେ ମନେ ମନେ ପାଞ୍ଚି ନୂଆଯମ
କାଳ ବିକାଳ ବେନିଙ୍କୁ ରାଇଲା ପାଶେଣ ।
ଆଜ୍ଞାପାଇ ବେନିମନ୍ତ୍ରୀ ଆସିଲେକ ଧାଇଁ
ଛାମୁରେ ଉଭା ହୋଇଲେ ମୁଣ୍ଡେ ହାତଦେଇ ।
ନମସ୍କାର କରି ପାଦେ ପଚାରନ୍ତି ପୁଣି
ବୋଲନ୍ତି କହନ୍ତୁ କିସ କରିବୁ ଏକ୍ଷଣି ।
ଆଜ୍ଞା ହେବ ଯାକୁ ବାନ୍ଧି ଆଣିବୁଟି କାଲି
ଶ୍ରୀମୁଖୁ ଶୁଣିଲେ ପୃଥ୍ୱୀଯିବୁ ଆମ୍ଭେ ବୁଲି ।
ଆପଣ ଘେନିଲେ ଯେତେବେଳୁ ରାଜଶାଢ଼ୀ
ଆମ୍ଭେ ପାଞ୍ଚିଲୁଣି ଏବେ ଦୁଃଖ ଗଲା ଛାଡ଼ି ।
ରାଜା ପରଜା ପ୍ରଧାନ ଆନ ହେଉଥିଲେ
ଏକଥା ତ ବଡ଼ ସୁଖ ବିଧାତା ହିଁ କଲେ ।
ଏହିରୂପେ ହୋଇଥିଲୁ ସବୁକଥା ଭଲ
ଆମ୍ଭେ ପାଞ୍ଚିଲୁଣି ଯମରାଜ କଲେ ସଲ ।
ମିଳିବ ସବୁଙ୍କୁ ସୁଖେ ଏବେ ଖଞ୍ଜାବାଡ଼ି
ଏହା ଜାଣି ନୂଆଯମ ହସେ ନିଶ ମୋଡ଼ି ।
ମନେ ପାଞ୍ଚେ ରାଜାପଣ ଅଟେ କେଡ଼େ କଥା
ମୋତେ କହିଲେ ଆଣିବା ଲୋକେ ନଇଁ ମଥା ।
ମଞ୍ଚରୁ ବାନ୍ଧିଣ ମୋତେ ଆଣିଲେ ଯେ କାଳେ
ଖଟାଇଲେ ଆଣି ପୁଣି ମୋତେ ପାଦତଳେ ।
ଧନ୍ୟ ରାଜଶାଢ଼ୀ ଧନ୍ୟ ଏହି କାଳଦଣ୍ଡ
ନୋହିଲେ କି ଯମ ବୋଲେ ଚଳନ୍ତା ବ୍ରହ୍ମାଣ୍ଡ ।
ଏହିରୂପେ ହୃଦଗତେ ପାଞ୍ଚେ ନୂଆଯମ
କାଳ ବିକାଳଙ୍କୁ ବୋଲେ କର ମୋର କାମ ।

ଆମ୍ଭ ଆଜ୍ଞା ଘେନି ଶୀଘ୍ର ତୁମ୍ଭେ ଏବେ ଚଳ
ବାନ୍ଧି ଘେନିଆସ ତୁମ୍ଭ ପୂର୍ବ ଯମବାଳ ।
ଶୁଣିଣ ଧାଇଁଲେ ବେନି ମନ୍ତ୍ରୀ ତଡ଼ବେଗେ
ମିଳିଲେ ଶୀଘ୍ରରେ ଯାଇ ଯମ ରାଜ ଆଗେ ।
ଶୁଣିଲେକ ନମସ୍କାର କରି ପାଦେ ପଡ଼ି
ଉଭା ହୋଇଣ କହନ୍ତି ଶିରେ କରଯୋଡ଼ି ।
ବୋଲନ୍ତି ହେ ସାବଧାନେ ଶୁଣ ଧର୍ମରାୟେ
ଅତି ବିଡ଼ମ୍ବନ କଥା ଏବେ ଶୁଣିବାହେ ।
ଅତି ଆଶ୍ୱାସି ପୋଷିଲ ତୁମ୍ଭେ ଶ୍ୱାନ ଛାର
ସେ ଏବେ ଚୁମ୍ବନ ଦେଲା ତୁମ୍ଭର ଅଧର ।
ନ ଜାଣି ପୁରାଣେ ଋଷି ଅଛନ୍ତି କି ଲେଖି
ଏ ଲୋକମାନଙ୍କୁ ସ୍ୱାମୀ ପାଶରେ ନ ରଖି ।
ଦୁଷ୍ଟଜନ ଖଳ ମୂର୍ଖ ଯେବଣ ବ୍ରାହ୍ମଣ
ପ୍ରଥମୁଁ ପୁରାଇ ତାକୁ ନ ଦେବ ଗୃହେଣ ।
ଦୋଚାରୁଣୀ ଭାରିଯାଟି ହେବ ଯେଉଁ ନାରୀ
ନ ଚାହିଁବ ତାର ମୁଖ ଦେବ ତ୍ୟାଗକରି ।
ଅକୁଳ ଅମୁଳ ଆଉ ଅଜ୍ଞକୁଳ ଯେତେ
ଏହାଙ୍କୁ ପାଖ କତି ନ କରି କଦାଚିତେ ।
ଅଜ୍ଞାନୀ ଅଛବ ଅନାଚାରୀ ଅପଣ୍ଡିତ
ଅଣାଉପ୍ରୋଧ ନ କରି କପଟିଆ ମିତ୍ର ।
ଅଭାବ ଅଚିନ୍ତା ବିପଣ୍ଡିତ ଲୋକ ଯେତେ
ଅସଦମାର୍ଗେ ନର ନ ଯିବ କଦାଚିତେ ।
ଅସାଧୁ ଯେ ଅବିବେକୀ ଅବିଶ୍ୱାସୀ ପ୍ରାଣୀ
ଅତ୍ୟନ୍ତ କୋପୀ ହୋଇଣ କହେ କଥାଟାଣି ।
ଅତି ତପୋବନ୍ତ ଯୋଗୀ ଅଧର୍ମ ଦେବତା
ଆସନ ଦେଇଣ ସେହୁ କରଇ ଅହନ୍ତା ।
ଉଚିତ କୁହେ ଯେ ପ୍ରାଣୀ ଆଉ ଅପାଣ୍ଡୁକ
ଠାରି କହିଲେଣି ଯେହୁ ନ ବୁଝଇ ତର୍କ ।
ଆଚମ୍ବିତ କରି ଯେହୁ ପ୍ରାଣୀ ନାଶ କରେ
ରାଜାଙ୍କର ଭୃତ୍ୟ ହୋଇ ରାଜୁତି ଯେ ହରେ ।
ତଥାପି ତ ଜାତି ଗୋତ୍ର ନ ଜାଣି ତା କିଛି
ଏତେଲୋକଙ୍କୁ ସ୍ୱାମୀ ଯେ ବେଳୁ ଥିବ ମୁର୍ଚ୍ଛି ।
ନ ବୁଝିଣ କଥା ତାକୁ ଦେଲା ରାଜଶାଢ଼ୀ
ବସିଲା ତୁମ୍ଭର ବ୍ୟର୍ଥେ ସିଂହାସନ ମାଡ଼ି ।
ଆମ୍ଭଙ୍କୁ ବୋଲେ ଯମକୁ ବେଗେ ଘେନିଆସ
ବେକରେ ଲଗାଇଥିବ ତାର କାଳଫାଶ ।
ଆମ୍ଭେ ରାଜା ହୋଇବାରୁ ଦଣ୍ଡଛତ୍ର ଟେକି
ତୁଚ୍ଛା ବରତନ ଖାଉଥିବ ସେ କାହିଁକି ।

ରହିବାର ଇଚ୍ଛାହେଲେ ମୋତେ ସେବାକରୁ
ନୋହିଲେ ସେ ଘର ଛାଡ଼ି ପଳାଉ ଏଠାରୁ ।
ଏତେ ବୋଲିଣ ନଷ୍ଟ ଯେ ହେଉଅଛି ତମ
ତୁମ୍ଭେ ଅନ୍ତର୍ଯ୍ୟାମୀ ଅଟ ପ୍ରତ୍ୟକ୍ଷରେ ଧର୍ମ ।
ପ୍ରାଣୀଙ୍କର ପାପ ପୁଣ୍ୟ ତୁମ୍ଭ ବ୍ୟତିରେକେ
ଆନ ଛାର ବୁଝିକେ ନ ପାରଇ ତ୍ରୈଲୋକ୍ୟେ ।
ତୁମ୍ଭର ଯେ ରାଜଶାଢ଼ୀ ଅଛି ଯେଣୁ ବହି
ତାହା ଛାରବୋଲେ ଦେବ ଅଇଲି ମୁଁ ଧାଇଁ ।
ଆମ୍ଭ ଦୋଷ କ୍ଷମାକର ଆହେ ଜନ୍ତୁପତି
ଆବର କଥାଏ କହୁଅଛୁ ବେନି ମନ୍ତ୍ରୀ ।
ଏଠାରୁ ଭୋ ଧର୍ମରାଜା ବେଗେ ଯାଅ ଚଳି
ତେର ଦିନ ଅନ୍ତେ ତାକୁ ଦେବା ବିଶାବଳି ।
ଯେଉଁସ୍ଥାନେ ଜାତ ହୁଏ ଅବିଚାର କଥା
ସେଠାକୁ ନ ଯାନ୍ତି ଜାଣ ପଣ୍ଡିତେ ସର୍ବଥା ।
କୁପୁରୁଷ ସେ ସ୍ଥାନକୁ ମନେ ମନେ ଝୁରେ
ଗଞ୍ଜି ହେଉଥାଏ ସଦା ମହତ୍ତ୍ୱଟି ସରେ ।
ଏହାଶୁଣି ଧର୍ମରାଜା ବୋଲେ ସତ୍ୟ ସତ୍ୟ
ପାଞ୍ଚିଲେ ଯେତେକ ସରି ହେଲା ଆସି କୃତ୍ୟ ।
ଆମ୍ଭେ ନିଜେ ବଳେ ଯାଚି ଦେଇଥାଉ ବର
ତାହାକୁ ବୋଲିବା ସବୁ ଦୋଷ ତ ଆମ୍ଭର ।
ହେ କାଳ ବିକାଳ ତୁମ୍ଭେ ଆମ୍ଭ ବୋଲ ଘେନ
ସେ ନଷ୍ଟକୁ ତେଜି ତୁମ୍ଭେ ଯାଅ ତେରଦିନ ।
ଏ ତେର ଦିନ ଆଣିବ ମଞ୍ଜୁ ଯେତେ ପାପୀ
ଆମ୍ଭର ଛାମୁକୁ ଘେନି ନ ଯିବ ଅଦ୍ୟାପି ।
ପାପୀ ଲୋକମାନଙ୍କୁ ଯେ ନର୍କେ ପକାଇବ
ପୁଣ୍ୟବନ୍ତ ଲୋକଙ୍କର ପାଶକୁ ନ ଯିବ ।
ସେ ଲୋକମାନଙ୍କୁ ଘେନି ଯେବେ ବିଷ୍ଣୁଗଣ
ଆମ୍ଭେ ବା କିସ କହିବୁ ତୁମ୍ଭେ ସବୁ ଜାଣ ।
ଏରୂପେ କହିଣ ଯମ ହେଲେ ଅନ୍ତରାଳ
ମନେ ମନେ ଭୟ କରି ଗଲେ ସ୍ୱର୍ଗଆଳ ।
ସମସ୍ତ ଦେବଙ୍କୁ ଘେନି ବିଜେ ସୁନାସୀର
ଏମନ୍ତ ସମୟେ ଆସି ମିଳେ ନାଶକର ।
ଯମରାଜାଙ୍କ ବିମାନ ଦେଖି ମଘବାନ
ଅତ୍ୟନ୍ତ ଗୌରବ କରି ପୁଚ୍ଛିଲେ ବଚନ ।
ବୋଇଲେ ଅଇଲେ କିସ ଅର୍ଥେ ଜନ୍ତୁସାଇଁ
ଏତେ ବୋଲିଣ ଆସନ ଇନ୍ଦ୍ର ଦେଲେ ନେଇ ।
ଯମ ବୋଇଲେ ବାସବ କହିବା ହୋ ଶୁଣ
ତେରଦିନ ମୋତେ ରଖି ପାରିବ କି ଜାଣ ।

ବାସବ ବୋଇଲେ ତେବେ ଭଲକରି କହ
ରୋଗୀ ଲୋକପ୍ରାୟେ ଥରୁଅଛି ତୁମ୍ଭ ଦେହ ।
କି ଅବା ମିଳିବ ଶତ୍ରୁ ତୁମ୍ଭଙ୍କୁ ଯେ ଆସି
ବାତୁଳ ଲୋକ ପରାୟ ହେଉଛ ବିଶେଷି ।
ବୁଝିଲେ ସଂସାର ଯାକେ ଆମ୍ଭେମାନେ ରାଜା
ଆମ୍ଭେ ତ ପାଳିଲେ ସୁସ୍ଥ ହୁଅନ୍ତି ଜନପ୍ରଜା ।
ଆମ୍ଭେ ନ ପାଳିଲେ କହ କେହି ବର୍ତ୍ତିବେକି
ତେରଦିନକୁ ତୁମ୍ଭେ ତ ଡରୁଛ କାହିଁକି ।
ଦଶଦିଗପାଳେ ମୋର ଥାଆନ୍ତେ ସହାୟେ
ଯୁଗେ ଯୁଗେ ରଖିପାରେ ତୁମ୍ଭର କି ଭୟେ ।
ବାସବ ମୁଖୁଁ ଭରସା ପାଇ ଜନ୍ତୁପତି
ପ୍ରଚଣ୍ଡର କଥାଯାକ କହିଲେ ତଡ଼ତି ।
ତାର ଉପଦ୍ରବ ଜାଣି କମ୍ପିଲେ ବିଡ଼ୋଜା
ବୋଇଲେ ଏଥକୁ ଡର କେତେ ଯମରାଜା ।
ଦେଖ ଏବେ ଆଜ ତାକୁ ମାରିବି ଯେ ମୁହିଁ
ତେରଦିନ ଯାଏ ଆଉ ଥିବ କି ସେ ରହି ।
ଏତେକ ବୋଲି ବାହନ ଚଢ଼ି ସୁନାସୀର
ପୁତ୍ରମାନଙ୍କୁ ଡକାଇ କରିଲେ ବିଚାର ।
ବୋଇଲେ ସଜ ହୁଅହେ ଯେଝା ଶସ୍ତ୍ର ଧରି
ବେଗେ ଯାଇଣ ଆସିବା ନୂଆ ଯମ ସାରି ।
ଆଣିଛି ସେ କେତେ ସୈନ୍ୟ ଦେଖିବା ତା ବଳ
ବୁଝିଲେ ଯମର ଭୃତ୍ୟ ଅଟେ ସିନା କାଳ ।
ସେ କାଳ ତ ଅପସରି ରହିବେ ଆମ୍ଭଙ୍କୁ
ଚାଲ ସକଳେ ମାରିବା ବେଢ଼ି ପ୍ରଚଣ୍ଡକୁ ।
ପୁଣି ପୁତ୍ରେ ରଣ କରିବାକୁ ହେଲେ ସଜ
ଚଉଷଠି କୋଟି ତୁଲେ ଯେତେକ ତନୁଜ ।
ଅଇଲେ ଆବର ଦିଗପାଳେ ସ୍ୱର୍ଗ ଛାଡ଼ି
ଯେ ଯାହାର ଶସ୍ତ୍ରଧରି ଯାନମାନ ଚଢ଼ି ।
ଏଥୁ ଅନନ୍ତରେ ଶୁଣ କଳିପ୍ରିୟ ଋଷି
ନୂଆ ଯମର ପାଶକୁ ଦେଲେ ଚାର ପେଷି ।
ବୋଇଲେ ହୋ ସାବଧାନେ ଶୁଣ ଜନ୍ତୁମଣି
ତୋତେ ଡରି ପୂର୍ବ ଯମ ପଳାଇଲା ପୁଣି ।
ଶୁଣିଣ ଅଳପ କରି ଉଠି ନୂଆ ଯମ
ସୈନ୍ୟଙ୍କୁ ବୋଇଲା ଚାଲ କରିବା ସଂଗ୍ରାମ ।
କେଉଁ ସ୍ଥାନରେ ରହିବ ମତେ ଲୁଚିକରି
ଯହିଁ ଥିଲେ ଆଣିବି ମୁଁ ତାର ବାଳ ଧରି ।
ଏତେବୋଲି ଆରୋହିଲା ମଇଁଷି ବାହନ
ହସ୍ତରେ ତା କାଳଦଣ୍ଡ ଦିଶଇ ଶୋଭନ ।

ଆବରହିଁ କାଳଚକ୍ର କାଳ ମୁଦ୍‌ଗର
କାଳ ଆଭରଣ ଫଳା ଧରି ବାମକର ।
ରାଜା ବିଜେ ଦେଖି ଚଳିଗଲେ ସର୍ବ ସୈନ୍ୟ
ଚଳିଲେ କାଳ ବିକାଳ ଆପଣା ଭବନ ।
ଷାଠିଏ ସେନାର ମୂଳେ ଷାଠିଲକ୍ଷ ହସ୍ତୀ
କାଳ ବିକାଳ ଏ ବେନି ଆଗରେ ଚଳନ୍ତି ।
ଏତେ ସୈନ୍ୟ ସଙ୍ଗେ ଘେନି ନୂଆଯମ ଚଳି
ବାଟରେ ଯାଇଁ ଦେଖିଲା ଅଛି ଇନ୍ଦ୍ର ମିଳି ।
ସନ୍ତ୍ରମେ ପ୍ରଚଣ୍ଡ ତହୁଁ ଚଳାଇଲା ଥାଟ
ବର ପାଇଣ ବାସବ ଜଗିଛନ୍ତି ବାଟ ।
ମଧ୍ୟେ ବେନି ବଳପାଇ ହୁଅନ୍ତେ ହେ ଏକ
ନୂଆଯମ ବୋଇଲା ହୋ ଶୁଣ ଯମଲୋକ ।
ମୋତେ ସୂର୍ଯ୍ୟପୁତ୍ର ଆଣି ଯମପଦ ଦେଲା
କାହିଁକି ଡ଼ରିଣ ମୋତେ ପଳାଇଣ ଗଲା ।
ତୁମ୍ଭେ ଅବା ଦେଖିଥିଲେ କହିଦିଅ ତାକୁ
ପଡ଼ିଲେ ତା ହସ୍ତ ବାନ୍ଧି ନେବି ନବରକୁ ।
ଏମନ୍ତ ସେ ନୂଆ ଯମ କହେ ଗର୍ବବାଣୀ
ପୁଣି ମହାକୋପ କରି ଉଠି ବଜ୍ରପାଣି ।
ବୋଇଲେ ପାପିଷ୍ଠ ନିଶ୍ଚେ ମଲୁ ତୁହି ଆଜ
ଯମ ଥାଉଁ ଥାଉଁ ଯମ ହେଲୁ ତୁ ନିର୍ଲ୍ଲଜ ।
ତୋର ପୂର୍ବବଂଶେ ରାଜାଥିଲେ କିକେ ହୋଇ
କେଡ଼େ କୁଳ ବୁଡ଼ାଇଲୁ ରେ ପାପିଷ୍ଠ ତୁହି ।
ଆସରେ ପୁତ୍ରେ ଫିଙ୍ଗିବା ଧରି ୟାରମାଂସ
ଏ ଛାରକୁ ଗଢ଼ଇ କି ଯମ ରାଜା ବେଶ ।
ଯମ ଧର୍ମ ପଦଗୋଟି କି ବୋଲି ରହିଛି
ଏ ପାପୀଠାରୁ ନିର୍ଲ୍ଲଜ ସଂସାରେ କେ ଅଛି ।
ବାପ ଦେଲା ନାମଗୋଟି ବୁଡ଼ାଇ ଏ ନଷ୍ଟ
ମୁହିଁ ଯମ ହେଲି ବୋଲି କହୁଛି ପାପିଷ୍ଠ ।
ଏହି ଲୋକମାନେଟି ହୋ କୁଳକୁ କଳଙ୍କ
ଉଡ଼ା ବୁଡ଼ା ଘରବୁଡ଼ା ଅଟେ ଅପୁତ୍ରିକ ।
ଇନ୍ଦ୍ରପଣକୁ ନେବାକୁ ସଂସାରେ କେ ଅଛି
କି ବୋଲି ଏ ଅଲାଜୁକ ଯମ ବୋଲାଇଛି ।
ବ୍ରହ୍ମାପଦ ନେବାକୁ କେ ଅଛଇ ଭାଜନ
ଏହି ପାମରକୁ ଏଥେ ଅଛି ହିଁ ସମ୍ମାନ ।
ବିଷ୍ଣୁ ବ୍ୟତ୍ରକେ ବୈକୁଣ୍ଠେ ବିଷ କେ ଦେଲା କି
କି ବୋଲି ସଂସାରେ ଯମ ହେଲା ଏ ପାତକୀ ।
ବୁଝିଲେ ଈଶ୍ୱର ସିନା ପାର୍ବତୀଙ୍କ ପତି
ଆନ ଲୋକ ପାରଇ ହୋଇକି ରୁଦ୍ର ମତି ।

ଏତେ ବୋଲିଣ ବାସବ ଉଠେ ତଡ଼ବଡ଼ି
ଚଉଷଠି କୋଟି ପୁତ୍ର ଦେଲେ ସିଂହରଡ଼ି ।
କେ ବଜ୍ର ଧଇଲା କେହୁ ଧଇଲା ନିର୍ଘାତ
କେ ମହା ଶକ୍ତି ଧଇଲା କେହୁ ପାଶୁପତ ।
ଯୁଝିଲେ ନବୀନ ଯମ ସଙ୍ଗେ ସର୍ବେ ଯାଇ
ଦେଖି ଉଠିଲା ଯେ ନୂଆଯମ କ୍ରୁଦ୍ଧ ହୋଇ ।
ତେର ଦିନକୁ ଯେ ବରପାଇଅଛି ତତ୍ତ୍ୱ
ବ୍ରହ୍ମା ବିଷ୍ଣୁ ହର ଦେଇ ନ ପାରଇ ମୃତ୍ୟୁ ।
ଆଜ୍ଞା ଦେଇ କାଳ ବିକାଳକୁ ଚାହିଁ ପୁଣ
ଯେ ଯାହାର ଶସ୍ତ୍ର ଧରି ମାର ସୁରଗଣ ।
ଶୁଣି ଧାଇଁଲେ ବିକାଳ କାଳ ମହାକାଳ
ପ୍ରଚଣ୍ଡ ବିଧୂମ କାଳଧୂମ ବିକରାଳ ।
ଏ ବିଧି ଯମର ସୈନ୍ୟ ପଡ଼ିଲେକ ଧାଇଁ
ବାସବ ପୁତ୍ରମାନଙ୍କୁ ଓଗାଳିଲା ଯାଇଁ ।
ଇନ୍ଦ୍ରକୁ ମନରେ ଯାହା ପାଞ୍ଚୁଥିଲେ ପୁଣ
ସେ ପ୍ରବୋଧ ଛାଡ଼ି ଯୁଦ୍ଧ କଲେ କାଳଗଣ ।
ଯୁଦ୍ଧରେ ପେଶିଲେ ପିତା ପୁତ୍ରକୁ ଯେ ମାରି
ଏ କଥା ଧର୍ମଶାସ୍ତ୍ରରେ ପ୍ରମାଣ ସବୁରି ।
ହସ୍ତ ଫିଟିଲେ ତାହାକୁ ଶସ୍ତ୍ର ନ କାଟେ କି
ଇନ୍ଦ୍ରର ପୁତ୍ର ବୋଲି ସେ ଡ଼ରି ରହନ୍ତା କି ।
ପେଷିଲେ କାଳ ବିକାଳ କାଳାନଳ ଶର
ବାଜନ୍ତେଣ ମୋହେ ପଡ଼ି ଗଲେ ବିଦ୍ୟାଧର ।
ଅଙ୍ଗାରପନ୍ନଗ ଚିତ୍ରସେନ ଗଲେ ମୂର୍ଚ୍ଛା
କୋପେ ପିଟନ୍ତି ବିକାଳେ କାଳେ ମନଇଚ୍ଛା ।
ସୁତୀର କନ୍ଦର୍ପସେନ ବୀର ବୀରସେନ
ଜୟ ବିଜୟ ଅଜୟସେନ ଯେ ଦୁର୍ମନ ।
ଅନ୍ତକେତୁ ଚନ୍ଦ୍ରକେତୁ ସୁଚନ୍ଦ୍ର ରାଜେନ୍ଦ୍ର
ମହାବାହୁ ମହାଚନ୍ଦ୍ର ସୁବାହୁ ମହୀନ୍ଦ୍ର ।
ସତ୍ୟକୃତ ଶତଜିତ ନିବୃତ ସୁକୃତ
ଜୀମୂତ ଯେ କାଳଜିତ ଅତି ସୁପଣ୍ଡିତ ।
ଏମନ୍ତ ଯେ ଚଉଷଠି ଗୋଟି ବିଦ୍ୟାଧର
ରଣେ ସେହି ଇନ୍ଦ୍ରପୁତେ ଦେଲେ ଅପହାର ।
ବିଧାମାରି କାହାକୁ ହେ କଚାଡ଼ି ଭୂମିରେ
କାହାକୁ ଲୋଡ଼ିଲେ ପିଞ୍ଜି ଛେଦିଦ୍ୟନ୍ତିକରେ ।
ଏକକୁ ଧରି ଆରେକ ପରେ ଦ୍ୟନ୍ତି ଛେଚି
କେ କାହା ଉପରେ ବିନ୍ଧିଦ୍ୟନ୍ତି ଶରଯୋଚି ।

ଲାଙ୍ଗିଆ ଶାବେଳି ଛେଲି କୁନ୍ତ ଘେନି ପିଟି
କେ କାହାକୁ ମାରି ଧରେ କେ କାହାର ତୋଟି ।
ମୁଥାମାରି କେହି ହିଆ ଦେଇ ଦିଏ ପେଲି
କେ ଧରି ଭୁଷନ୍ତେ କେହୁ ବୋଲେ ମଲିମଲି ।
ଏମନ୍ତେ ଯେ ଯୁଦ୍ଧ କଲେ ଯମଦୂତଗଣ
ସପତ ଦିନ ଯାଏ ସେ କଲେ ଘୋର ରଣ ।
ଶୁଣ ହେ ନାରଦ କହୁଛନ୍ତି ବେଦବର
ସତ୍ୟକରି ବର ଯାଚିଦେଲେ ନାଶକର ।
ଧର୍ମ ଯାଇ ସାହାପକ୍ଷ ହେଲା ଜାଣ ତାକୁ
ଜିଣିଲା ସେ ଦିଗପାଳ ଇନ୍ଦ୍ର ଆଦିତ୍ୟଙ୍କୁ ।
ବିଷ୍ଣୁର ଶାର୍ଙ୍ଗୀକୁ ଫେଡ଼ିଦେଲେ ଯେଣୁ ମାଥେ
ତେଣୁ ସେ ପ୍ରଚଣ୍ଡ ହେଲା ଦ୍ୱିତୀୟ କୃତାନ୍ତେ ।
ନୂତନ ବୟସ ନାଶି ବାସବର ପୋଏ
କାଳ ବିକାଳର ହାତେ ପଡ଼ିଗଲେ ମୋହେ ।
ଦିଗପାଳମାନେ ମିଶି ଯୁଦ୍ଧ କରୁଥିଲେ
କାଳବିକାଳଙ୍କୁ ଦେଖି ଡରି ପଳାଇଲେ ।
ଏଥିଉତ୍ତାରୁ ସେ ଇନ୍ଦ୍ରପୁତ୍ର ମୋହ ଦେଖି
ଅମୃତଶର ବିନ୍ଧିଲେ ମନ୍ତ୍ରେ ଧରି ଫୁଙ୍କି ।
ଭେଦିଲା ସେ ଶର ଯାଇଁ ପୁତ୍ରଙ୍କ ଶରୀରେ
ଉଠିଲେ ତକ୍ଷଣେ ଚେତା ପାଇ ଧାତିକାରେ ।
ସମର ଭୂମିକୁ ଛାଡ଼ି ପଳାଇଲେ ଡରି
ପଶିଲେ ଅମରପୁରେ ରଣ ତେଜ୍ୟାକରି ।
ପୁତ୍ରମୁଖ ଦେଖି ହର୍ଷ ହେଲେ ପୁରୁହୁତ
ଯମକୁ ବୋଇଲେ ଶୁଣ ଏବେ ହୋ କୃତାନ୍ତ ।
ମୋତେ ତ ଅଥୟ ଆସି କଲା ନୂଆ ଯମ
ଏଠାରୁ ଲୁଚି ପଳାଇ ଯାଅ ନିଜ ଗ୍ରାମ ।
ନ ଜାଣିଣ ତେରଦିନ ଯାଚିଦେବେ ବର
ସେ କାଳଦଣ୍ଡକୁ ଭୟ ଲାଗିଲା ମୋହର ।
ଆମ୍ଭର ହସ୍ତରେ ମୃତ୍ୟୁ ନାହିଁ ତାକୁ ଜାଣ
ତା ମୃତଭେଦ ଜାଣିବେ ଏକା ନାରାୟଣ ।
ଏବେ ମୁଁ ସପତ ଦିନ ରଖିଲି ଯେ ତୋତେ
ଆନଠାରୁ ଲୁଚିରହି ଯାଅ ଯା ଗୁପତେ ।
ଶୁଣିଣ ସେ ଯମରାଜା ଉଠି ଅନ୍ତରାଳେ
ଡ଼ରେ ପଳାଇ ପଶିଲେ ଯାଇ ନିତ୍ୟସ୍ଥଳେ ।
ସାଗରର ପାରୁଶରେ ମିଳନ୍ତେ ସେ ଯାଇ
ଦେଖି ବରୁଣ ଆସନ ଦେଲେ ତାଙ୍କୁ ନେଇ ।

ବୋଇଲେ କିସ ମନେ ଏ ସ୍ଥାନେ ବିଜେକରି
ଶୁଣିଣ କହନ୍ତି ଜନ୍ତୁରାଜା ଅପସରି ।
ଦଶଦିଗପାଳରେ ମୁଁ ଅଟେ ଜାଣ ସାର
ମୋହ ଯୋଗରୁ ହୋଇଲି ମୁଁ ଯେ ନାରଖାର ।
ବଚନ ହୁଡ଼ିବାରୁ ମୁଁ ହେଲି ଏତେ ସରି
କହୁଛି ତୁମ୍ଭେ ରଖିବ ମୋତେ ବୋଲିକରି ।
ମୋର ବର ଦେବା କଥା ତୁମ୍ଭେ ବୁଝିଅଛ
ପ୍ରେତ ବୀର ହୋଇ ମୋର ଗୋଡ଼ାଇଛି ପଛ ।
ଇନ୍ଦ୍ର ହେଲେ ହେଁ ଘୋଡ଼ାଇ ରଖିଥିଲେ ମତେ
ଏହା କିସ କହିବି ମୁଁ ତୁମ୍ଭର ଅଗ୍ରତେ ।
ଆପଣ ରଖିବ ମୋତେ ଏବେ ଷଡ଼ଦିନ
ତହିଁ ଉତ୍ତାରୁ ମୁଁ ସୁଖେ ହୋଇବି ରାଜନ ।
ବରୁଣ ବୋଇଲେ ଶୁଣ ଆହେ ଜନ୍ତୁପତି
ତୁମ୍ଭଙ୍କୁ ଦେଖିଣ ମୁହିଁ କରେ ମନେ ଭୀତି ।
ଚିଉରେ ପାଞ୍ଚିଲା ମୁହିଁ କେଡ଼େ କର୍ମ ହେଲା
ଏଡ଼େ ଧର୍ମରାଜାଙ୍କୁ ଏ ବୁଦ୍ଧି କେହୁ ଦେଲା ।
ଆମ୍ଭେତ ଇନ୍ଦ୍ରଙ୍କ ସଭାମଧ୍ୟେ ବସିଥିଲୁ
ସପ୍ତଦିନ ଅନ୍ତେ ଆମ୍ଭେ ବାହାରି ଅଇଲୁ ।
ଯହିଁରେ ଇନ୍ଦ୍ରହିଁ ତୋତେ ନ ପାରିଲେ ରଖି
ଆମ୍ଭେ କି ସମ୍ଭାଳି ପାରୁ ତେଡ଼େ ନଷ୍ଟ ଦେଖି ।
ଅଭାଗ୍ୟରୁ ତୁମ୍ଭେ ଆମ୍ଭେ ଅକାର୍ଯ୍ୟକୁ କରି
ଆପଣଙ୍କ ବର ପାଇ ହେଲ ଅକ୍ରାମରି ।
ପଚାରିଲେ ମୋତେ ଯେବେ ଦିନେ ଦିନେ ରହି
ବୁଲ ତୁମ୍ଭେ ପାଞ୍ଚଦିନ ନ ଜାଣନ୍ତୁ କେହି ।
ଶୁଣି ଧର୍ମରାଜ ସତ୍ୟ ବୋଲି ମନେ ପାଞ୍ଚି
ଯାଇ ଗ୍ରହଙ୍କ ମନ୍ଦିରେ ରହିଲେକ ଲୁଚି ।
ଏଥୁ ଅନନ୍ତରେ ଯମ ସ୍ୱର୍ଗ ଯିବା ଶୁଣି
ଡଗର ଆସି କହିଲେ ତାକୁ ତଥ୍ୟବାଣୀ ।
ଜନ୍ତୁପତି ପଛେ ପଛେ ଚଳଇ ପ୍ରଚଣ୍ଡ
ବସନ୍ତି ମଇଁଷି ପୃଷ୍ଠେ ଧରି କାଳଦଣ୍ଡ ।
ନବଗ୍ରହ ସଙ୍ଗେ ଯମ କଥା ହେଉ ହେଉ
ନବୀନ ଯମକୁ ଦେଖି ପଳାଇଲେ ସେହୁ ।
କୁବେର ପୁରରେ ଯାଇ ପଶିଲା ତକ୍ରାଳ
ପ୍ରଚଣ୍ଡର କଥା କହି ହୁଅନ୍ତେ ଆକୁଳ ।
କୁବେର ବୋଇଲେ ତୁମ୍ଭେ କହୁଛ ହୋ ତାହା
ନୂଆଯମ ତୁଲେ ଲାଜ ଯାଇ ସୁରନାହା ।

ତୁମ୍ଭେ ହେଲେହେଁ ସେ କଥା ଅନ୍ଧ କରିଛକି
ପ୍ରେତ ଛାରକୁ ରାଜଦ୍ୱପଣ ଦେଲ ଡାକି ।
ଏବେ ତୁମ୍ଭ ପଛେ ଆସୁଅଛି ବେଗେ ଧାଇଁ
ତୁମ୍ଭେ ତ ବଳ ହେବାରୁ ଆମ୍ଭ ବଳ ନାହିଁ ।
ତଥାପି ତ ଉପ୍ରୋଧରେ ରଖିଲେ ତୁମ୍ଭଙ୍କୁ
ମରିବାରୁ ଲଘୁ ହେଲେ ସଂସାର ଜନଙ୍କୁ ।
ଏମନ୍ତେ କୁବେର ଜାଣ କହନ୍ତେ ବତାଇ
ମିଳିଲେକ ଯମରାଜା ଅଗ୍ନି ପୁରେ ଯାଇ ।
ଶମନ ବୋଇଲେ ଶୁଣ ହେ ବଡ଼ବାନଳେ
ସମ୍ଭାଳି ରଖ ମୋତେ ଏ କଷଣରୁ ବେଳେ ।
ଅଗ୍ନି ପୁରୁଷ ବୋଇଲେ ହରାଇଛ ରାଜ୍ୟ
ତୁମ୍ଭଙ୍କୁ ରଖିବାକୁ କେ ଜଣେ ଅଛି ଆଜ ।
ଆମ୍ଭେ ତ ସ୍ୱର୍ଗପୁରରେ ଯୁଦ୍ଧେ କାଲି ଥିଲୁ
ଯମଙ୍କ ବିଷୟ ସବୁ ସେଠାରେ ଦେଖିଲୁ ।
ସେଠାରୁ ଘୁଞ୍ଚି ଆସିଛୁ ଆମ୍ଭେ ଏହିକ୍ଷଣି
ତୁମ୍ଭଙ୍କୁ ନ ଦେଖିପାରେ ସେହୁ ଜନ୍ତୁମଣି ।
ଏଥକୁ ବୁଦ୍ଧିଏ କର କହୁଛି ଉପାୟେ
ବେଗେ ଚଳିଯାଅ ବ୍ରହ୍ମାଙ୍କର ନଗ୍ରଯାଏ ।
ତୁମ୍ଭଙ୍କୁ ସେହୁ ରଖିବେ ଜାଣ ଗୁପ୍ତକରି
ସବୁ ଭରସା ଅଟନ୍ତି ସେହୁ ମୁଖଚାରି ।
ବୈଶ୍ୱାନର ଏହିରୂପେ ଦ୍ୟନ୍ତେ ବତାଇଣ
ଶୁଣି ତହୁଁ ବେଗେ ଚଳି ଗଲେ ଜନ୍ତୁରାଣ ।
ବ୍ରହ୍ମାଙ୍କ ପୁରେ ମିଳିଲେ ଯାଇ ଅନ୍ତରାଳେ
ପ୍ରଣାମ କଲେକ ଯମ ପିତା ପାଦତଳେ ।
ବ୍ରହ୍ମା ବୋଇଲେ ରେ ବାବୁ ଶୁଣ ନାଶକର
କାହିଁକି ତୁ ଅସମ୍ଭାଳେ ପଶିଲୁ ମୋ ପୁର ।
କାଳଦଣ୍ଡ ଖଡ଼ଗତ ଧରିନାହୁଁ ହସ୍ତେ
ଏତେକାଳେ ଯେଉଁ ଶତ୍ରୁ ଲାଗିଲାକି ତୋତେ ।
ଯମ ବୋଇଲେ ଭୋ ଦେବ ପଡ଼ିଲା ସଙ୍କଟ
ପୁଛିବି କଥାଏ ମୋତେ କହ ବୁଦ୍ଧିବାଟ ।
ମଞ୍ଚପୁରୁଁ କାଳଗଣ ଆଣିଲେ ଯେ ପ୍ରେତ
ବୁଝିଲେ ପାପ ତାହାର ହେଲା ଅପ୍ରମିତ ।
କିଞ୍ଚିତରେ ପୁଣ୍ୟମାତ୍ର ଥିଲା ଦିନ ତେର
ତହିଁକି ଭୋଳରେ ମୁହିଁ ଯାଚିଦେଲି ବର ।
ଏଥର ସନ୍ଧି ମୁଁ ଦେବ ନ ପାରିଲି ଜାଣି
ମାଗିଲା ସେ କାଳଦଣ୍ଡ ଦେଲି ତାକୁ ପୁଣି ।

ତେରଦିନକୁ ସେ ମୋତେ ସତ୍ୟ କରାଇଲା
ଯାନ ସିଂହାସନ ଆଦି ମାଡ଼ିଣ ବସିଲା ।
ତେଣୁ ହୋଇଲା ତାହାର ଏଡ଼େ ବଡ଼ପଣ
ଏଥକୁ ହେ ପିତା ମୋତେ କହିବା କାରଣ ।
ଶୁଣିକରି ହସ ହସ ହେଲେ ବେଦବର
ବୋଇଲେ ସେ ଆଛାବର ହେଲେ ନାଶକର ।
ଯେତେବେଳେ ବର ତାକୁ ଦେଲୁଣି ତୁ ଯାଚି
ସେ ବରକୁ ଖଣ୍ଡିବାକୁ ସମର୍ଥ କେ ଅଛି ।
ତୋତେ ରଖି ପାରିବାକୁ ନାହିଁ ଆମ୍ଭ ବଳ
ତୋ ବର ପାଇ ହେଲାଣି ସେହି ଜନ୍ତୁପାଳ ।
କାଳ ଦଣ୍ଡ ଧରି ଯେବେ ଆସୁଛି ସେ ବାହି
ଆମ୍ଭେ ତ ଯୁଦ୍ଧର ଭଳି ଏଥି ନାହୁଁ କେହି ।
ନ ଜାଣୁ କି ଆମ୍ଭର ପ୍ରାକର୍ମ ନାଶକର
ଚାପୁଡ଼େ ପ୍ରହାରି ମଥା ଛିଡ଼ାଇଲେ ହର ।
ଏବେ ଅସମର୍ଥ ପୁଣି ଅଟେ ଆମ୍ଭ କାୟା
ବିଧାତା ବୋଲି ସବୁରି ମାତ୍ର ଥାଇ ଦୟା ।
କାଳଦଣ୍ଡ ଯେ ଲଦିବ ଯେବେ ଆଣିବେକେ
ହସିବେ ତାଳି ମାରିଣ ସଂସାରର ଲୋକେ ।
ତାହାକୁ ହେ ମୃତ୍ୟୁ ନାହିଁ ତେରଦିନ ଯାଏ
ଆମ୍ଭଙ୍କୁ କରିବ ଅବା କାହିଁକି ସେ ଭୟେ ।
ଯେ ରଖି ପାରିବ ତୋତେ କହିବା ତା ଶୁଣ
ବୈକୁଣ୍ଠ ଗଲେ ଫେଡ଼ିବେ ଦୁଃଖ ନାରାୟଣ ।
ଦର୍ଶନ ମାତ୍ରେ ରଖିବେ ତୋତେ ପଦ୍ମଆଖି
ନୋହିଲେ ସଂସାରେ ଆଉ ନ ପାରିବେ ରଖି ।
ଦୁଃଖୀଙ୍କ ସୋଦର ସେହୁ ଦୀନଜନ ବନ୍ଧୁ
ବିପତ୍ତିନାଶନ ପ୍ରଭୁ ସେହୁ କୃପାସିନ୍ଧୁ ।
ସେ ପ୍ରଭୁ ଦୁଃଖ ନାଶିବେ ତୋର ଜାଣିଥାଅ
ବୈକୁଣ୍ଠ ପୁରକୁ ପୁଣି ବେଗେ ଚଳିଯାଅ ।
ଦେଖ ସଭାରେ ଅଛନ୍ତି ଋଷିଗଣ ପୂରି
ଭାଙ୍ଗିବେ ଯେ ଏହିକ୍ଷଣି ଦେଖି ତାକୁ ଡରି ।
ପିତାଙ୍କ ମୁଖରୁ ଯମ ଏହି ବାକ୍ୟ ଶୁଣି
ପ୍ରଣାମ କରିଣ ଶୀଘ୍ର ଗଲା ସେହିକ୍ଷଣି ।
ବୈକୁଣ୍ଠ ପୁରରେ ଯାଇ ହୋଇଲା ପ୍ରବେଶ
ଦେଖିଲା ରତ୍ନ ଆସନେ ବିଜେ ଜଗଦୀଶ ।
ସେ ପ୍ରଭୁଙ୍କ ପାଦତଳେ ବେଗେ ମିଳିଯାଇ
ରହିଲା ଚରଣେ ନମି ଉଠି ଉଭାହୋଇ ।

ଶ୍ରୀମୁଖକୁ ଚାହିଁ ପୁଣି କଲା ବହୁ ସ୍ତୁତି
ଜୟ ଜୟ ନାରାୟଣ ଲକ୍ଷ୍ମୀଦେବୀ ପତି ।
ଜୟ ଜୟ ନାରାୟଣ କଳ୍ମଷ ନାଶନ
ଜୟ ଜୟ ନାରାୟଣ ବିପତ୍ତି ଖଣ୍ଡନ ।
ଜୟ ଜୟ ନାରାୟଣ ସର୍ବଜନ ବନ୍ଧୁ
ଜୟ ଜୟ ନାରାୟଣ ପ୍ରଭୁ କୃପାସିନ୍ଧୁ ।
ଜୟ ଜୟ ନାରାୟଣ କଳ୍ମଷ ନାଶନ
ଜୟ ଜୟ ନାରାୟଣ ବିପଦ ମୋଚନ ।
ଜୟ ଶରଣ ରକ୍ଷକ ପ୍ରଭୁ ପଦ୍ମମୁଖ
ଶରଣ ପଶିଲି ପାଦପଦ୍ମେ ମୋତେ ରଖ ।
ଜୟ ଚତୁର୍ଦ୍ଧା ମୂରତି ଦେବ ଚକ୍ରଧାରୀ
ଭକ୍ତକୁ ରଖୁ ତୁ ଦେବ ଦୁର୍ଜ୍ଜନ ସଂହାରି ।
ଜୟ ନାରାୟଣ ତ୍ରୈଲୋକ୍ୟର ଚିନ୍ତାମଣି
ଅଶେଷ ଜୀବ ଜୀବନ ମୋକ୍ଷ ଚକ୍ରପାଣି ।
ହେ ନାରାୟଣ ଅଶେଷ ଲୋକଙ୍କର ପାଳ
ନାରାୟଣ ଅନନ୍ତ ତୁ ଅଟୁ ଆଦିମୂଳ ।
ମହା ଆତଙ୍କ ପଡ଼ିଲା ସ୍ୱାମୀ ମୋତେ ରଖ
ତୁମ୍ଭ ପାଦରେ ଶରଣ ରଖ ବା ନ ରଖ ।
ନାରାୟଣ ଶରଣ ମୁଁ ପୀତାମ୍ବର ଦାସ
ଏ ଘୋର ସଙ୍କଟୁ ମୋତେ ରଖ ପୀତବାସ ।
ଏ ରୂପେ କରନ୍ତି ଯମ ପଦ୍ମପାଦେ ସ୍ତୁତି
ଯମ ଆତଙ୍କ ଜାଣିଲେ ପ୍ରଭୁ ଜଗଜ୍ୟୋତି ।
କାଳକୁଣ୍ଠ ଧରି ଯେଣୁ ଶରଣ ଫୁକାରି
ଉଠିଲେ ବସିଲେ ପ୍ରଭୁ ଦେବ ଦଇତ୍ୟାରି ।
ଯମର ଦୁଃଖ ପୁଛନ୍ତି ପ୍ରଭୁ ଭାବଗ୍ରାହୀ
ବୋଇଲେ ଏବେ ଜଣାଉଁ କିମ୍ପା ଜନ୍ତୁସାଇଁ ।
କାଳଦଣ୍ଡ ଖଡ଼ଗତ ନାହିଁ ତୋର ହସ୍ତେ
ମୁଖକୁ ବିରସ କରି ରହିଲୁ କାକୁସ୍ଥେ ।
ଜନ୍ତୁପତି ବୋଇଲେ ହୋ ଶୁଣ ପୀତବାସ
କହିବି ଛାମୁରେ ତୁହି କ୍ଷମାକଲେ ଦୋଷ ।
ମଞ୍ଜପୁରର ବାରତା ଅଟଇ ହେ ଦେବ
ଶାକଲ୍ୟ ଦ୍ୱୀପରେ ଥିଲା ଏକ ନରଦେବ ।
ପ୍ରଚଣ୍ଡ ଚଣ୍ଡ ନାମରେ ଅଟେ ମହାଖଳ
ମରନ୍ତେ ବାନ୍ଧି ଆଣିଲେ ତାକୁ ମୋର କାଳ ।
ପୁରାଣେ ବୁଝନ୍ତେ ପାପ ନ ପାରିଲି ଅନ୍ତ
କେବଳ ଥିଲା କି ପୁଣ୍ୟ ଦେଖନ୍ତେ କିଞ୍ଚିତ ।

ମରଣ ସମୟେ ଦେଇଅଛି ଗୋରୁଦାନ
ତେଣୁକରି ପୁଣ୍ୟ ତାର ହେଲା ଚିରଦିନ ।
ସେ କଥାକୁ ରହସ୍ୟେ ମୁଁ ନ ପାରିଲି ଜାଣି
ପୁଚ୍ଛିଲି କିସ ଭୁଞ୍ଜିବୁ ଆଗେ ନୃପମଣି ।
ସେ କଥା ମାଗି ରାଜନ ବେଗେ ଭୋଗକର
ସତ୍ୟକରି କହୁଅଛୁ ଆମ୍ଭେ ଦେବୁ ବର ।
ପୁଣି ବୋଇଲା ପ୍ରଚଣ୍ଡ ମୋତେ ଯାହା ତାହା
ସଙ୍କୋଚ ଲାଗେ ଛାମୁରେ କହିବାକୁ ତାହା ।
ସତ୍ୟ କରାଇ ମାଗିଲା ମୋତେ ରାଜଭୋଗ
ସୁହୃଦ ମନେ ଦେବଇଁ ହୋଇ ବୁଦ୍ଧି ଭଙ୍ଗ ।
ମୁହିଁ ବର ଯାଚିଦେଇ ଅଛଇ ନ ଜାଣି
ଅର୍କ୍ଷିତ ପ୍ରାୟ ବୁଲୁଛି ଏବେ ଚକ୍ରପାଣି ।
କେତେଠାରେ ଶରଣ ମୁଁ ପଶିଲି ମୁରାରି
କେହି ନ ପାରିଲେ ସ୍ୱାମୀ ମୋତେ ରକ୍ଷାକରି ।
ଏବେ ଆସି ପାଦପଦ୍ମ ପଶିଲି ଶରଣ
ଏ କାଳଦଣ୍ଡ ଭୟରୁ ରଖ ନାରାୟଣ ।
କହିଲେ ଯମର ବାକ୍ୟ ଶୁଣି ଦାମୋଦର
ଏଥକୁ ହେ ଜନ୍ତୁପତି କିମ୍ପା ଏତେ ଡର ।
ସୁଦର୍ଶନ ଚକ୍ରତଳେ ବସ ଆସି ମୋର
କି କରି ପାରବ ନୂଆ ଯମ ଯେ ତୋହର ।
ତା ହେଲେ ହେଁ ଏଡ଼େ କର୍ମ କାହିଁପାଇଁ କଲ
ଗୋରସ ମନ୍ଦିରେ ମଞ୍ଜାରିକି ଲୁଚାଇଲ ।
ରସିକ କରେ ରଖିଲୁ ଯୁବତୀକି ନେଇ
ଶୂକର ମୁଖରେ ଦେଲ ଅମୃତ ପିଆଇ ।
କହିଲୁ ମୂର୍ଖ ପାଷାଣ୍ଡ କର୍ଣ୍ଣେ ବ୍ରହ୍ମଜ୍ଞାନ
ବାଳୁତ ହସ୍ତରେ ଦେଲୁ ତୁ ଅଷ୍ଟ ରତନ ।
ଚଣ୍ଡାଳ ଭାଲରେ ହରି ମନ୍ଦିରର ଚିତା
କର୍କଟ କନ୍ଧରେ ଦେଲୁ ସୁବର୍ଣ୍ଣ ପଇତା ।
ସୁମାର୍ଗ ରାଜପଥକୁ କଲୁ ତୁ ଅମାର୍ଗ
ଛାର ନୀଚ ଲୋକହସ୍ତେ ଦେଲୁ ରାଜଭୋଗ ।
ରାଜାର ଉପରେ ରାଜା ସଂସାରରେ ନାହିଁ
କି ବୋଲି ତୋ ରାଜପଦ ଦେଲୁ ତାକୁ ତୁହି ।
ଏତେ କହି ଚକ୍ରହସ୍ତ ଦେଲେକ ବିସ୍ତାରି
ଯମକୁ ରଖିଲେ ତହିଁ ତଳେ ଦୟାକରି ।
ସୁଦର୍ଶନ ଚକ୍ରତଳେ ବସନ୍ତେ ସେ ଯାଇ
ମହାଭୟଯାକ ତାର ଗଲା ଦୂର ହୋଇ ।

ଅଚିନ୍ତା ହୋଇ ରହନ୍ତେ ଯମ ହସ୍ତତଳେ
ପୁଚ୍ଛିଲେ ସଂସାର ଯାକ କଥା ଆଦିମୂଳେ ।
ବୋଇଲେ ଆହେ ଯମ ତୁ ପୁଣି ଅଳପକେ
ମନୁଷ୍ୟମାନଙ୍କୁ ଯାଇ ମାରୁଛୁ ତ୍ରୈଲୋକ୍ୟେ ।
ନରମାନଙ୍କୁ ଆୟୁଷ ଶତେ ବର୍ଷଯାଏ
ବିହି ଲେଖିବା କଥାରେ କରୁଛୁ ଅନ୍ୟାୟେ ।
ତଥାପି ସେ ଦଶ ପାଞ୍ଚ ସାତ ଯାଇ ଥାଇ
ତାକୁ ନ ଲୋଡ଼ି ପୁତ୍ରକୁ ତାର ଆଣୁଯାଇ ।
ଏହା ବୁଝିଲେ ତୁମ୍ଭର ଦୋଷ ନୁହଇକି
ଏହାର ସକାଶୁଁ କ୍ଲେଶ ପାଇଲୁ ତହିଁକି ।
ନୋହିଲେ କାହିଁକି ରାଜପଦ ତୋର ଯାନ୍ତା
ଏହି କଥାକୁ ଖଣ୍ଡନ ନ କଲା ବିଧାତା ।
ରାଜା ହୋଇଣ ଅନ୍ୟାୟ ଯେବେ ଆଚରଇ
ତାହାକୁ କାଳେ ବିଧାତା ଜାଣ ଦଣ୍ଡ ଦେଇ ।
ନାଶକର ବୋଲେ ପ୍ରଭୁ ଶୁଣିମା ଶ୍ରୀହରି
ଏକଥାରେ ମୁହିଁ କେଭେ ନାହିଁ ଦୋଷକରି ।
ପ୍ରାଣୀମାନେ ପାପ ଅର୍ଜି ଯାଉଛନ୍ତି ନାଶ
ତାହାର ସନ୍ଧି କହିବା ଶୁଣ ପୀତବାସ ।
ମାତା ରଜେ ପିତା ବୀର୍ଯ୍ୟେ ଉପୁଜେ ସନ୍ତତି
କେତେବେଳେ ଘଟସୂତ୍ର ଯେ ବଳ ଆକୃତି ।
ଅବିଚାରେ ଅବେଳାରେ ପକାଏ ଯେ ରେତ
ଆପେ ଆପେ ହୋଇ ମରେ ମରେ ସେହି ସୁତ ।
ଅଶୁଦ୍ଧବନ୍ତ ସ୍ତିରୀର ଛୁଅଇଁ ଯେ ଅଙ୍ଗ
ସେ ପ୍ରାଣୀ ଅଙ୍ଗରେ ମନବ୍ୟାଧି ହୁଏ ଭୋଗ ।
ଅମୃତ ପ୍ରାୟ ଯେ ନର ଯୋନି ଦ୍ୱାର ମଣି
ଯୋଗ ଅଯୋଗରେ ବୀର୍ଯ୍ୟ ଢାଳନ୍ତି ନ ଜାଣି ।
ନ ଜାଣି ନାଶ କରନ୍ତି ନରେ କାଳବେଳା
ମୁହୂର୍ତ୍ତକୁ ଛିଦ୍ର କରି ଶୃଙ୍ଗାରରେ ଭୋଳା ।
ତେଣୁ ସେହି ନରେ ଅଳ୍ପଦିନେ ହୁଅନ୍ତି ନାଶ
ଆବର ମଧ କହିବା ତହିଁର ସନ୍ଦେଶ ।
ରାତ୍ର ଯେ ଅଟଇ ସ୍ୱାମୀ ପଞ୍ଚଦଶ ଘଡ଼ି
ତହିଁରେ ଯେ ଭଲ ମନ୍ଦ କହୁଅଛି ଫେଡ଼ି ।
ଶୃଙ୍ଗାରର ମେଳ ରାତ୍ର ଆଦ୍ୟ ପାଦୁ ହେଲେ
ଶତେ ସୟମ୍ବର ଜୀବ ପୁତ୍ର ଉପୁଜିଲେ ।
ରାତ୍ର ଆଦ୍ୟଘଡ଼ି ମଧ୍ୟେ ରମଣ ଯେ କରି
ଜନ୍ମ ହେଲାକ୍ଷଣି ସେହି ପୁତ୍ର ଯାଏ ମରି ।

ଅଥବା ସେ ପୁତ୍ର ଯେବେ ରହିବଟି ବର୍ତ୍ତି
ବୁଦ୍ଧି ମନ୍ଦ ହୁଏ ତାର ଅସୁର ପ୍ରକୃତି ।
ବେନିଘଡ଼ି ମଧ୍ୟେ ଯେବେ ରମଣ କରଇ
ସନ୍ତତି ହେଲେ ସେ ପାଞ୍ଚବର୍ଷେ ମରିଯାଇ ।
ତଥାପି କିରୂପେ ଅବା ବର୍ତ୍ତେ ଯେବେ ସେହୁ
ଅବଶ୍ୟ ମଧପାତ୍ର ସେ ହେବ କହୁଁ କହୁଁ ।
ତୃତୀୟ ଘଡ଼ିରେ ଯେବେ ରମଣ କରଇ
ତହୁଁ ପୁତ୍ର ଜନମିଲେ ସେ ଦୋଷୀ ହୁଅଇ ।
କୁଳାଙ୍ଗାର ହୋଇଣ ସେ ସର୍ବଲୋକନାଶେ
ଅଲାକୁକ ହୋଇ ପୁଣ ନିଜ ବଂଶେ ଧ୍ୱଂସେ ।
ଚତୁର୍ଥ ଘଡ଼ିରେ ଯେବେ ହେବ ସିନା ମେଳ
ପୁତ୍ର ହୋଇଲେ ଚବିଶ ବର୍ଷ ପୂରେ କାଳ ।
ତଥାପି ସେ ମୃତ୍ୟୁ ବଞ୍ଚି ରହିଲେ ଲେଉଟି
ସଚ ମିଛ କହି ପୁଣ କାଟେ ପର ତୋଟି ।
ପଞ୍ଚମ ଘଡ଼ି ମଧରେ ମିଳେ ତାର ତୁଲେ
ତିରିଶ ବର୍ଷେ ମରଇ ପୁତ୍ର ଉପୁଡ଼ିଲେ ।
ତଥାପି ରହିବ ଯେବେ ସେହିକାଳ ବର୍ତ୍ତି
ପରକୁ ବିନାଶ କରି ଅର୍ଜେ ଅପକୀର୍ତ୍ତି ।
ଆଦ୍ୟପାଞ୍ଚ ଘଡ଼ିରେ ଏରୂପେ ହୁନ୍ତି ଜନ୍ମି
ମଧ ପାଞ୍ଚ ଘଡ଼ି କଥା ଶୁଣ ଏବେ ସ୍ୱାମୀ ।
ଯେ ପାଞ୍ଚଘଡ଼ି ମଧରେ ଲଗ୍ନ ବୁଝିଥିଲେ
ଶତେ ବତ୍ସର ଜୀଆଇଁ ସେହି ଉପୁଜିଲେ ।
ଲଗ୍ନରେ ଆଦ୍ୟ ପଦରେ ଯେ ରେତଢାଳିବ
ଶତେବର୍ଷ ଊଣାହେଲେ ମୋତେ ନିନ୍ଦା ହେବ ।
ପତି ପତ୍ନୀ ଦୁହିଁଙ୍କର ସଙ୍ଗମ କାଳକୁ
ଲଗ୍ନ ଏକା ମୂଳ ଜାଣ କେବଳ ଆୟୁକୁ ।
ଏଥକୁ ଯେ ଉପଲକ୍ଷ୍ୟ ହେଉଛି ହେ ଦେବ
ପଥ ଚାଲିବା ପରାୟେ ଅଟଇ ଏ ଭାବ ।
ଉଦୟରେ ସେହି ଚାଲିଯାଏ ଦଶ କୋଶ
ବେନି ପହର୍‌ରେ ଗଲେ ହେବ କି ବା ପ୍ରାସ ।
ଅର୍ଦ୍ଧେ ଦୂରରୁ ସେ ରହିଯାଏ ତାର ସାଥେ
ଏହି ପରକାର ଲଗ୍ନ ଅଟେ ଜଗନ୍ନାଥେ ।
ଲଗ୍ନର ଶେଷ ପଡ଼ିଲେ ଆୟୁ ଶେଷ ହୋଇ
ଏ କଥା ଗୋଚର କରି ନ ପାରନ୍ତି କେହି ।
ପ୍ରାନ୍ତ ପାଞ୍ଚ ଘଡ଼ିରେ ସେ ବିଷୟକୁ ଶୁଣ
ତହିଁ ପୁତ୍ର ଜନ୍ମି ହୁଏ ଯେମନ୍ତେ ସେ ପୁଣ ।

କୁଜା ଛୋଟା ଟେରା କିବା ବଧିର ହୁଅନ୍ତି
ଚଉର୍ଯ୍ୟପଣ କରିଣ ସଂସାରେ ରହନ୍ତି ।
କୃପଣ ମୂର୍ଖ କି ଅବା ହୋନ୍ତି ଅବିବେକ
କେହୁ ହୁଏ ଦାନଶୀଳ ହେତୁ ଅଲାଜୁକ ।
ଲଗ୍ନ ଶୋଧିତ ହୋଇଲେ ପଣ୍ଡିତ୍ କେ ହୁଏ
ଦେବତା ବିପ୍ରଙ୍କୁ ସେହୁ ପୂଜେ ବିଷ୍ଣୁ ପ୍ରାୟେ ।
ଆବର ତତ୍ତ୍ୱ କହିବା ଶୁଣ ଦେବ ହରି
ରତି କରିଥାନ୍ତି ନରେ ଲଗ୍ନକୁ ନ ଧରି ।
ଲଗ୍ନ ପୂରି ଚାରିପାଦ ଷୋଳକଳା କହିଁ
କଳାଏ ତହୁଁ ଛିଡ଼ନ୍ତେ ରତି ଯେବେ ହୋଇ ।
ଶତ ବରଷକୁ ଷଡ଼ ବରଷ ଯେ ତୁଟେ
ଆବର ତହୁଁ ଉଗୁଳି ତିନିମାସ ଅଟେ ।
ବେନି କାଳରେ ସେ ବାରବର୍ଷ ବାରପକ୍ଷ
ଏ କଥା ନିଶ୍ଚୟ ଜାଣ ଅଟଇ ପ୍ରତ୍ୟକ୍ଷ ।
ତିନିକାଳରେ ଅଠର ବରଷକ ମାସ
ଚାରି କଳାରେ ଛାଡ଼ଇ ବରଷ ପଚିଶ ।
ସେହି ପରକାରେ ପ୍ରାଣ ଲଗ୍ନ ଶେଷଯାଏ
ଯେ ଯାହାର ଭାଗ୍ୟ ଘେନି ଉପୁଜୟକାୟେ ।
ଆବର କଥାଏ ଶୁଣ କହିବା ଛାମୁରେ
ନ ଜାଣିମା ପାଦଦୋଷ ପ୍ରାୟଶ୍ଚିତ୍ତ ହରେ ।
ସେହି ଦୋଷ ମାନ ଶୁଣ ଆହେ ବାସୁଦେବ
ବ୍ରହ୍ମହତ୍ୟା ଦୋଷକଲେ ଅନ୍ନଦାନ ଦେବ ।
ଗୋହତ୍ୟା ଦୋଷ ଗୋଟିକ କରେ ଯେଉଁ ପ୍ରାଣୀ
କୋଟିଏ ଗୋଦାନ ଦେଲେ ତରଇ ସେ ପୁଣି ।
ସ୍ତିରୀହତ୍ୟାରେ କରିବ ତୀର୍ଥେ ଯାଇ ବାସ
ତେବେ ସେ ପାପରୁ ଜାଣ ତରିବ ଅବଶ୍ୟ ।
ନ ଜାଣି ମାନିବା ସ୍ତିରୀ ହରନ୍ତି ଯେ ଜନ
ସେ ଦୋଷ କ୍ଷୟ ଯାଏଟି ସାଧି ବ୍ରହ୍ମଜ୍ଞାନ ।
ଗର୍ବିତ ରାଜସ୍ତିରୀଙ୍କି ହରନ୍ତି ଯେ ନଷ୍ଟ
ସେ ଦୋଷ କ୍ଷୟ ଯାଇଟି ହେଲେ ମୁଣ୍ଡକାଟ ।
ପର ଯୁବତୀକି ବଳେ ଯେ ଜନ ହରନ୍ତି
ତୀର୍ଥସ୍ଥାନେ ଷଣ୍ଢଦାନ ଦେଲେ ସେ ତରନ୍ତି ।
ପର ପଦାର୍ଥ ଆଣନ୍ତି ଯେହୁ ଚୋରିକରି
ବିପୁଳ ଦାନ ଦେଲେ ଯେ ଦୋଷ୍ର ଯାଏ ତରି ।
ବ୍ରାହ୍ମଣର ଦାନ ବୃତ୍ତି ହରନ୍ତି ଯେ ପ୍ରାଣୀ
ସେ ଦୋଷ ଯାଏଟି ଖୋଳାଇଲେ ପୁଷ୍କରିଣୀ ।

ତୁଳା ମେଷ ମାସେ ମୀନ ମାରନ୍ତି ଯେ ନର
ଲକ୍ଷେ ବିପ୍ରେ ଅନ୍ନ ଦେଲେ ହୁଅଇ ସେ ପାର ।
ମୀନ ଗୋଟିକେ ବ୍ରାହ୍ମଣ ଗୋଟିଏ ଭୋଜନ
ତେବେ ସେ ତାର ପାତକ ହୁଅଇ ବହନ ।
ବିଶ୍ୱାସରେ ହୁଅନ୍ତି ଯେ ପ୍ରାଣୀ ଅବିଶ୍ୱାସୀ
ସେ ଦୋଷ ଯାଏଟି କ୍ଷୟ ପ୍ରୟାଗରେ ଝାସି ।
ଆତ୍ମାଘାତକୀ ହୋଇଣ ଯେଉଁ ନର ମରେ
ତାହାରି ଭୋଗ ଯାଏଟି କେବଳ ନର୍କରେ ।
ପୋଷିବା ଜୀବକୁ ଯେଉଁ ପ୍ରାଣୀ ମାରିଥାଇ
ବ୍ରାହ୍ମଣ ବିଭା କରାଇ ସେ ଲୋକ ତାରଇ ।
ଯେବଣ ପ୍ରାଣୀ ଭୋ ଦେବ ହୁଏ ବ୍ରହ୍ମଦ୍ୱେଷୀ
ଭୁବନେଶ ମନ୍ତ୍ର ଲକ୍ଷେ ଜପକଲେ ବସି ।
ତେବେ ସେ ପାପୁ ତାରନ୍ତି ତାକୁ ହୃଷୀକେଶ
ନୋହିଲେ ବଂଶ ତାହାର ଅନ୍ତେ ଯାଇ ନାଶ ।
ବିବିଧ ବ୍ରାହ୍ମଣୀ ହରେ ଯେବଣ ମାନବ
ଇନ୍ଦ୍ର କାଟିଲେ ଜାଣ ସେ ଦୋଷକ୍ଷୟ ଯିବ ।
ତାହା କରି ନ ପାରିଲେ ସ୍ୱର୍ଣ୍ଣ ଦାନ ଦେବ
ତେବେ ସେହି ପ୍ରାଣୀ ଜାଣ ଦୋଷୁ ତରିଯିବ ।
ସଭାରେ ବସି ଯେ ଲୋକ କହେ ଜାଣ ମିଥ୍ୟା
ସେ ପାପ ଯାଇଟି ସେବା କଲେ ପଞ୍ଚମଥା ।
ଧନ ଘେନି କରାଏ ଯେ ପତ୍ନୀପରେ ରତି
ସେ ପୁରୁଷକୁ ସଂସାରେ ଭାରଦା ବୋଲନ୍ତି ।
ସେ ଦୋଷକୁ ପାଣିପଣା ଅନ୍ନଦାନ ଦେଲେ
ତେବେସେ ପାତକରୁ ସେ ପ୍ରାଣୀତରେ ଭଲେ ।
ଆପଣାର କଲାକର୍ମ ପରକୁ ଯେ ବିକେ
ଜନମେ ଜନମେ ସେହୁ ପଡ଼ଇ ନରକେ ।
ସେହି ଦୋଷ କ୍ଷୟପାଇଁ ଗୋରୁଦାନ ଦେବ
ତେବେ ସେହି ପାତକରୁ ସେ ଲୋକ ତରିବ ।
ଗୁରୁଠାରେ ଅପରାଧୀ ଯେଉଁ ଲୋକ ହୁଏ
ଜନମଇ ସର୍ପ ହୋଇ କୋଟି ଜନ୍ମଯାଏ ।
ନୋହିଲେ ସେ ଦୋଷ ପାଇଁ କର ଯେବେ ଯାଗ
ତେବେ ସେହି ପାପୁ ତରିଯିବ ତାର ଅଙ୍ଗ ।
ଗୋପନ ବିବୃତିକୁ ହରନ୍ତି ଯେ ପ୍ରାଣୀ
ତାହାଙ୍କର ପାପ ଜାଣ କର୍ଣ୍ଣେ ନୁହେଁ ଶୁଣି ।
ତହିଁକି ତୁଳା ଦାନଟି ଯେ ପ୍ରାଣୀ କରିବ
ତେବେ ସେହି ପାତକରୁ ସେ ଅବା ତରିବ ।

ପିତାମାତଙ୍କୁ ନ ପୋଷେ ଜାଣ ଯେଉଁ ପୁତ୍ର
ସହସ୍ରେକ ଜନ୍ମପାଏ ଲଭେ ଗୃହଧାତ୍ର ।
ନୋହିଲେ ସେହି ଦୋଷକୁ କନ୍ୟା ଦାନ ଦେଲେ
ତେବେ ସେହି ପାତକରୁ ତରିଯାନ୍ତି ଭଲେ ।
ଦେବତା ଗୁରୁ ଅନଳ ଏହାଙ୍କ ଛାମୁରେ
ଯେ ପ୍ରାଣୀ ନିୟମ କରେ ଜାଣ ଅଦୋଷରେ ।
ତାହାର ବଂଶରେ ଜାଣ ଯେତେଜନ ଥାଇ
ତେତେଦିନ ଯାଏ ତାଙ୍କ ଦେହ ଜଳୁଥାଇ ।
ସେ ଦୋଷକୁ ଗୋରୁ ବିପ୍ର ଚରଣ ସେବିବ
ଶିବଙ୍କ ଉପରେ ଗୋରୁଦୁଧ ଢଳାଇବ ।
ତେବେ ସେହି ପାତକରୁ ସେ ଅବା ତରିବ
ଅଛିଦ୍ରେ ତାହାର ବଂଶ ଜାଣ ଯେ ବଢ଼ିବ ।
ଯେ ପ୍ରାଣୀ ଅନବରତେ ପରହିଂସା କରେ
ସେହୁ ମଲେ ନିଶ୍ଚେ ଜାଣ ପଡ଼ଇ ନର୍କରେ ।
ନୋହିଲେ ସେହି ଦୋଷକୁ ଭୂମି ଦାନ ଦେଲେ
ତେବେ ସେ ସଂସାରୁ ତରିଯାନ୍ତି ପ୍ରାଣୀଭଲେ ।
ଗୁରସ୍ତର ବଚନକୁ ଭାଙ୍ଗେ ଯେଉଁ ନାରୀ
ଶତେ ଜନ୍ମଯାଏ ସେହି ଗୃଧ୍ରରୂପ ଧରି ।
ଯେବଣ ଲୋକଟି ଜାଣ ହୁଏ ଅପୁତ୍ରିକ
ନାମବ୍ରହ୍ମ ଭଜିଲେ ସେ ଖଣ୍ଡଇ ପାତକ ।
ଅପୁତ୍ରିକ ଦୋଷ ନ ଲାଗଇ ଯମଧର୍ମେ
ଭକ୍ତରେ ସେ ଲେଖା ହୋଇ ବୈକୁଣ୍ଠକୁ ଗମେ
ଯେବଣ ଶିଷ୍ୟ ଗୁରୁଙ୍କୁ ଜାଣି ବାହୁଡ଼ାଇ
ଦକ୍ଷିଣା ନ ଦିଅଇ ଯେ କଷ୍ଟ କରୁଥାଇ ।
ସେ ପ୍ରାଣୀଟି ମଲେ ଜାଣ ନର୍କେ ଯାଇପଡ଼େ
ଲେଉଟି ଜନମ ହେଲେ ହୁଏ କାଳଜଡ଼େ ।
ସେ ଦୋଷକୁ ପ୍ରାୟଶ୍ଚିତ୍ତ ଯେବେ କରିପାରେ
ଲକ୍ଷେ ବଇଷ୍ଣବ ସେବା କରଇ ତୀର୍ଥରେ ।
ଆତଙ୍କ କାଳେ ଶରଣ ପଶେ ଯେହୁ ଯାଇ
ତାହାକୁ ଯେବଣ ଜନ ରକ୍ଷା ନ କରଇ ।
ସେ ଦୋଷରୁ ବ୍ରାହ୍ମଣର ମୁଖରୁ ଯେ ବସି
ଭାଗବତ ପୁରାଣକୁ ଶୁଣିବ ସନ୍ତୋଷି ।
ଦ୍ୱାଦଶ ଦଣ୍ଡ ପର୍ଯ୍ୟନ୍ତେ ଗୋରୁଙ୍କୁ ବାହିବ
ତହିଁ ଉତାରୁ ଆହାର ପାଣି ପୁଣି ଦେବ ।
ନୋହିଲେ ବୁହାଇ ବଳିଆର ଦଣ୍ଡ ଦେଇ
ଯେତେ ଅର୍ଜିଲେ ତାହାକୁ ଅନ୍ନ ନଅଣ୍ଟଇ ।

ନୋହିଲେ କରିବ ଦୋଷ ପାଇଁ ବିପ୍ରସେବା
ଚତୁର୍ମାସ୍ୟାରେ ଅତିଥି ରଖି ଦାନ ଦେବା ।
ତେବେଜାଣ ସେ ଦୋଷରୁ ସେହି ପାରେ ତରି
ଶ୍ରୀହରିଙ୍କ ପାଶେ କହେ ଯମ ଦଣ୍ଡଧାରୀ ।
ଉଚ୍ଚ ହେବ ବୋଲି ଯେହୁ ଛାଡ଼ି ନିଜ ଜାତି
ସେ ଦୁଇକୁଳକୁ ବର୍ଣ୍ଣସଙ୍କର କହନ୍ତି ।
ତଥାପି ଜାଣ ନୁହଇ ବଂଶ ବର୍ଦ୍ଧମାନ
ଆପଣାର କୁଳେ ରହି ଦେବ ସ୍ୱର୍ଣ୍ଣଦାନ ।
ସଂସାରେ ଦେବାକୁ ଦୟା ଯେ ଜନ କରନ୍ତି
ସର୍ବଜୀବମାନଙ୍କୁ ସେ ସମାନ ମଣନ୍ତି ।
ତାହାର ଯେ ଧନଜନ ସଦା ପ୍ରକାଶଇ
ନୋହିଲେ ସେ ପ୍ରାଣୀ ଯେବେ ଗୋବିନ୍ଦ ଭଜଇ
ସଂସାରରୁ ତରିଯାଇ ମୁକତି ଲଭଇ
ଗୋବିନ୍ଦ ମନ୍ଦିରେ ରହେ ଅନ୍ତଃକାଳେ ପାଇ ।
ଜ୍ଞାନେ ବା ଅଜ୍ଞାନେ ଯେବେ ପାପ ଅରଜିବ
ଶ୍ରୀନୃସିଂହ ଗ୍ରନ୍ଥ ଶୁଣି ସେ ଅବା ତରିବ ।
ଲୋଡ଼ିଲେ ସକଳ ତୀର୍ଥ ଫଳ ଏଥେ ଯାଇ
ପ୍ରଭୁଙ୍କ ଆଗରେ ଯମ ଦେବତା ଯେ କହି ।
ଏ ଗ୍ରନ୍ଥ ଶୁଣି ଦକ୍ଷିଣା ତୋଷେ ଯେହୁଦେବ
ତାକୁ ଦଣ୍ଡି ଏକା ମୁଁ ନ ପାରେ ବାସୁଦେବ ।
ସଭାତୀର୍ଥ ସ୍ନାନଫଳ ସାଗରରେ ଅଛି
ଆୟୁ ପୁତ୍ର ଧନ ସଞ୍ଚିବାର ଏଥେ ଅଛି ।
ଗଙ୍ଗା ଗୟା ଯମୁନା ଯେ ସରୟୁ ଗୋମତୀ
ଗଣ୍ଡୁକୀ ଯେ କୃଷ୍ଣବେଣୀ ନଦୀ ସରସ୍ୱତୀ ।
କାବେରୀ ଯେ କଉଶିକୀ ସୁକାନ୍ତି କୁନ୍ତଳା
ନିତ୍ୟରୂପା ତୁଙ୍ଗଭଦ୍ରା ବିମଳା ନିର୍ମଳା ।
ନର୍ମଦା ପାତାଳଗଙ୍ଗା ସତୀ ଭାନୁମତୀ
ନାରାୟଣ ବୈତରଣୀ ନଦୀ ଭାଗିରଥୀ ।
ଦ୍ୱିଗଙ୍ଗା ଯେ ଗୁପ୍ତଗଙ୍ଗା ଆଦି ଶ୍ୱେତଗଙ୍ଗା
ରାମବେଣୀ ରୁଦ୍ରବେଣୀ ଫଲଗୁ ଇନ୍ଦ୍ରଭାଗା ।
ସିପ୍ରା ବ୍ରହ୍ମଭାଗ ମଣିକର୍ଣ୍ଣିକା ଯେ ବ୍ରାହ୍ମୀ
ଋଷିକୂଲ୍ୟା କାଶୀକ୍ଷେତ୍ର ପ୍ରୟାଗ ଗୌତମୀ ।
ଶ୍ରୀନୃସିଂହଗ୍ରନ୍ଥ ଶୁଣି ତୋଷେ ଦାନ ଦେବ
ଏ ଯେତେକ ତୀର୍ଥଫଳ ପ୍ରତ୍ୟକ୍ଷେ ଲଭିବ ।
ବିପ୍ର ପୀତାମ୍ବର ଦାଶ ପାତକକୁ ଡରି
ଶରଣ ପଶେ ନୃସିଂହ ପୁରାଣକୁ କରି ।

ଶୁଣ ହେ ନାରଦ ଋଷି ଏଥୁ ଅନନ୍ତରେ
ଏ ରୂପେ କହିଲେ ଯମ ପ୍ରଭୁଙ୍କ ଛାମୁରେ ।
ରହିଲେ ଯେ ମହାପ୍ରଭୁ ଶୁଣି ତୁନି ହୋଇ
ଯମକୁ ବୋଇଲେ ବୁଝି ଦଣ୍ଡ ଦିଅ ତୁହି ।
ଏଣୁ ସୁଜନେ ବିଚାରି କର ସବୁ କାର୍ଯ୍ୟ
ଲଗ୍ନମାନ ବୁଝି କର ସଂସାରର କାର୍ଯ୍ୟ ।
ଯମକୁ ଆଉ ଯେ ନିନ୍ଦା ନ ଦିଅ ସଂସାରେ
ଯେ ଯାହା ଅଣ ହେତୁରୁ ପୁତ୍ର ଜନ୍ମିମରେ ।
ଏହିରୂପେ ଯମ ହରି କରନ୍ତେ ବିଚାର
ଦ୍ୱାଦଶ ଦିବସ ଆସି ପୂରିଗଲା ତାର ।
ଏଥୁଅନନ୍ତରେ ଶୁଣ ନୂଆ ଯମ କଥା
ପ୍ରଥମ ଯମକୁ ଖୋଜୁ ଗଲା କାଳ ବୃଥା ।
ଆକାଶ ମଞ୍ଚ ପାତାଳ ସକଳ ଯେ ପୁର
ଖୋଜୁ ଖୋଜୁ ଭ୍ରମୁ ଭ୍ରମୁ ଗଲା ଦିନ ବାର ।
ଯେତେ ପୁର ନଗ୍ର ବୁଲି ନ ପାଇଲା ଭେଟ
ଦେଖିଲା ଆସନ୍ତି ଆଗେ ବ୍ରହ୍ମାଙ୍କର ଚାଟ ।
ଅଛନ୍ତି ମନପବନଯାନେ ବିଜେ କରି
ଦେଖିଣ ପ୍ରଚଣ୍ଡ ପୁଚ୍ଛେ ମୁନିପାଦ ଧରି ।
କରଯୋଡ଼ି ନୂଆ ଯମ ପଚାରଇ ଆଗେ
ବୋଲଇ ପ୍ରଥମ ଯମ ଗଲା କେଉଁ ଦିଗେ ।
ତୁମ୍ଭଙ୍କୁତ ତିନିପୁର କଥା ଥାଏ ଜଣା
ମାୟାରେ ପଡ଼ି ହେଉଛୁ ଆମ୍ଭେ ସିନା ବଣା ।
ତେରଦିନ ମୋତେ ସେ ଦେଲାରାଜଭୋଗ
ଏବେ ଦ୍ୱାଦଶ ଦିବସ ଗଲା ଆସି ଭୋଗ ।
ଆବର ଦିନେକ ଗଲେ ସରିଲା ମୋ ନାଟ
ଏଥର ବୁଝ ଆପଣ ଫେଡ଼ିବ ସଙ୍କଟ ।
ନୂଆ ଯମର ବିନୟ ଶୁଣିଣ ନାରଦ
ବୋଇଲେ କହିବା ଶୁଣ ତେବେ ତହିଁଭେଦ ।
ଶ୍ରୀବୈକୁଣ୍ଠ ବୋଲିଣ ଯେ ବିଷ୍ଣୁ ନିଜପୁର
ସେଠାରେ ଲୁଚି ରହିଛି ଯାଇ ନାଶକର ।
ସେହି ବୈକୁଣ୍ଠକୁ ଗଲେ ଦେଖିବୁ ଯମକୁ
ସୁଭାଗ୍ୟ ଥିବାରୁ ତୋର ଭେଟିଲୁ ଆମ୍ଭଙ୍କୁ ।
ଶୁଣିଣ ମୁନିଙ୍କୁ ପଦେ ପଡ଼ଇ ପ୍ରଚଣ୍ଡ
ବୋଇଲା ତରିଲା ଏବେ ଆସି ମୋର ପିଣ୍ଡ ।
ଯାହାକୁ ସୁଦରଶନ ଅଛି ରକ୍ଷା କରି
ପ୍ରଚଣ୍ଡର ବଳେ ତାକୁ କିସ କରିପାରି ।

କେବଳ ତରିବା କଥା ପାଞ୍ଚେ ହୃଦଗତେ
ବୋଲଇ ଏ ପୁରେ ହରିରଖିଦେବା ମୋତେ ।
ବୈକୁଣ୍ଠକୁ ପଶିଲାରୁ କି ଅଛି ଆଉ ଭୟେ
ଯମବଳ କିସ ତରି ପାରିବ ଏ ଠାଏ ।
ଏ ବୈକୁଣ୍ଠ ମୋତେ ଆଉ ଅଛିକି ସଙ୍କଟ
ଫେଡ଼ିବେ ପ୍ରଭୁ ମୋହର କୋଟି ଜନ୍ମ କଷ୍ଟ ।
ଶୁଣି ନାରଦ ବିଚିତ୍ର ସେହି ରସବାଣୀ
ତେରଦିନ ସତ୍ୟ ପୂର୍ଣ୍ଣ ହେଲା ଆଣି ପୁଣି ।
ସୁଦର୍ଶନ ଚକ୍ରଗୋଟି ନେଲେ ପ୍ରଭୁ କାଢ଼ି
ତକ୍ଷଣେ ଯେ ଯମରାଜା ଉଠି କରଯୋଡ଼ି ।
କୃତାନ୍ତ ବୋଇଲେ ଶୁଣ ଆରେ ପାପୀପ୍ରେତ
ତୋହର ଭୋଗ ହୋଇଲା ଆସି ସମାପତ ।
ଏ ଆମ୍ଭର ରାଜନୀତି ଦିଅ କାଳଦଣ୍ଡ
ଆଜ ଦେବୀ ପୂଜା ତୋଷେ କରିବା ପ୍ରଚଣ୍ଡ ।
ଶୁଣିଣ ସେ ନୂଆ ଯମ ହେଲା ଥରହର
ଛଡ଼ାଇ ଧଇଲେ କାଳଦଣ୍ଡ ନାଶକର ।
ଧର୍ମରାଜ ବୋଇଲେ ରେ ଶୁଣ ପାପୀ ମୂର୍ଖ
କେତେ ଭକ୍ତିକରି ନେଲୁ ମୋର ରାଜ୍ୟସୁଖ
ତୋର ପରା ଉପକାରୀ ମିଳଇ କି ମୋତେ
ଆମ୍ଭେ ତ ନ ଜାଣିବାରଯାଚିଦେଲୁତୋତେ
ଧର ହେ କାଳ ବିକାଳ ଏ ପାପୀକି ବାନ୍ଧି
ବୈକୁଣ୍ଠୁ ବାହାରକରି ଦିଅ ଶିର ଛେଦି
ରାଜାର ଆଦେଶ ପାଇ ଧଇଲେ ତା ବାଳ
ଦେଖିଣ ନବୀନ ଯମ ହୋଇଲା ଆକୁଳ ।
ବିନୟୀ ହୋଇ ବୋଲଇ ଶୁଣ ଜନ୍ତୁପତି
ମୁଁ ତୁମ୍ଭର ହୋଇଲଇଁ ଏବେ ବଶବର୍ତ୍ତୀ ।
ପଦେ ମୁଁ କହିବା ଯାଏ କ୍ଷମାକର ଦୋଷ
ତହିଁ ଉତ୍ତାରୁ ଲଗାଅ ପୁଣି କାଳପାଶ ।
ପ୍ରଚଣ୍ଡ ବିକଳ ବାକ୍ୟ ଶୁଣି ଭଗବାନ
ବୋଇଲେ ଆମ୍ଭର ତହୁଁ ଶୁଣ ହେ ଶମନ ।
ସେ ଯାହା ବୋଲନ୍ତି ପଦେଶୁଣିବା ସେ ଭାବ
କାଳଗଣେ ବାନ୍ଧିଲେଣି ବସ ପରେ ନେବ ।
କହୁ ସେ ଶୁଣିବା ଆଗ ବିନୟ ବଚନ
ଶ୍ରୀମୁଖରୁ ଶୁଣି ଯମ ହୋଇଲେ ମଉନ ।
ଶ୍ରୀହରି ବୋଇଲେ ଏବେ କହ ତୋରକଥା
ଏହା ଶୁଣି ନୂଆଯମ ନୁଆଁଇଲେ ମଥା ।

ହରି ବୋଲିଣ ଯୋଡ଼ଇ ସେହି ବେନିକର
ରାମ ନାମ ବୋଲିଣ ସେ ଗଡ଼ଇ ଭୂମିର ।
ଶ୍ରୀକୃଷ୍ଣ ଶ୍ରୀକୃଷ୍ଣ ବୋଲି ପୁଣିହିଁ ଉଠଇ
ଶିରେ ବେନିକର ଯୋଡ଼ି ପୁଣିହିଁ ଲୋଟଇ ।
ନିସ୍ତରିଲି ବୋଲି ସେ ଯେ ଶୁଏ ଗଡ଼ଘାଲି
ଉଠି ଆଗେ ଉଭାହୋଇ କହେ କରଯୋଡ଼ି
ବୋଲଇ ଭୋ ଜଗନ୍ନାଥ ଶୁଣ ପଦ୍ମନେତ୍ର
ତୋତେ ଭଜି ପାପୀମାନେ ତରନ୍ତି ସତତ ।
ଏହି ମୋକ୍ଷ ଭୁବନ ଏ ବଇକୁଣ୍ଠ ପୁରୀ
ଏହିଠାରୁ ଯମ ଦେଖ ନେଉଅଛି ଧରି ।
ତରନ୍ତି ତୁମ୍ଭର ନାମ ଭଜି କେତେ ଲୋକ
ଏବେ ମୋତେ ତୁମ୍ଭ ପାଶୁ ନିଏ କୃତାନ୍ତକ
ଆହେ ଦେବ ନାରାୟଣ ଶୁଣ ନରହରି
ତୋର ନାମ ଧରି ପାପୀଗଲେ କେତେତରି
ତୋତେ ଭଜି କେତେଭକ୍ତ ହୋଇଛନ୍ତି ମୋକ୍ଷ
ସେବାକରି କେତେ ତରିଛନ୍ତି କୋଟି ଲକ୍ଷ ।
ନାମ ଶୁଣି କେତେ ଭକ୍ତ ହୋଇଲେନିସ୍ତାର
ସୁମରିଣ କେତେ ଭକ୍ତ ହୋଇଛନ୍ତି ପାର ।
ପାଦ ଲାଗି କେତେ ଭକ୍ତ ହେଲେ ପୁଣ୍ୟମୟ
ସର୍ବହୋଇ କେତେ ଭକ୍ତ ହୋଇଲେଅକ୍ଷୟ
ମିତ୍ର ହୋଇ କେତେ ଭକ୍ତ ହୋଇଲେ ସୌଭାଗୀ
ତେତେ ଶତ୍ରୁ ତରିଗଲେ ପଦ୍ମ କର ଲାଗି ।
ଡାକିକରି କେ କେ ଅବାଛନ୍ତି ନାଶି
ପଦ୍ମମୁଖ ଦେଖିଣ ମୁଁ ଯାଉଅଛି ଭାସି ।
ପଣ୍ଡିତମାନେ କହନ୍ତି ନାମେ ପାପ ନାଶ
ବଚନ ଶୁଣିଣ ମୋର ଥିବ କି କଲ୍ମଷ ।
ଯେଉଁପୁରେ ବ୍ରହ୍ମା ଇନ୍ଦ୍ର ପଶି ନୁହେଁ କ୍ଷମ
ଯେ ପୁରୁ ବାନ୍ଧିଣ ମୋତେ ନେଉଅଛି ଯମ
କହିଲେ ଯେବଣ ରୂପ ଭଜି ମୁନି କଣ୍ଠ
ସେହିରୂପେ ଦରଶନେ ଅଛି କି ମୋ ପାପ
ଯେବଣ ନାମ ଗୋଟି ଯେ ପାପକୁ କତୁରି
ନେବ କି ସେ ରୂପ ଦେଖୁ ଦେଖୁ ଯମପୁରୀ
ଭୋ ନାରାୟଣ ନରଖୁ ଆଜଯେବେମୋତେ
ଦୁର୍ଜନ ନାଶ ବାନାକୁ ବହିବୁ କେମନ୍ତେ ।
ନାମରେ ଯାହାର ସର୍ବପାପ ହୁଏ ନାଶ
ବଚନ ଶୁଣିଲେ ମୋର ଅଛି କି କଲ୍ମଷ ।

ଯେଉଁପୁରେ ସୁଦର୍ଶନ ଅଛଇ ଆବୋରି
ତହିଁରେ କେତେ ପାତକ ଗଲାଣି ମୋହରି
ଶଙ୍ଖ ଚକ୍ର ଗଦା ପଦ୍ମ ଚିହ୍ନ ଅଷ୍ଟାଦଶ
ଏହା ଦେଖିଲା ରୁ ମୋର ଗଲାଣି କଳୁଷ ।
ଯେଉଁଠାରେ ପାପୀ ତପୀ ଅଟେ ଏକପ୍ରାୟେ
ସେ ସ୍ଥାନରେ ମୋହର ଯମକୁ କି ଭୟେ ।
ଏହି ଯମ କାଳଦଣ୍ଡ ଲାଗିଛି ମୋ ଗାତ୍ରେ
ପଦ୍ମରୂପ ଦେଖିକରି ତାରନ୍ତେ ସେ ମୋତେ
ଏତେବୋଲି ପଦ୍ମପାଦେ ଶୋଇଲାକ ପଡ଼ି
ଦଣ୍ଡ ପ୍ରଣାମ କରିଣ ଉଠେ କରଯୋଡ଼ି ।
ଅଙ୍ଗରୁ ପଡୁଛି ଝର ଝର ହୋଇ ସ୍ୱେଦ
ଆଖି ଥନ ଥନ କରେ କଣ୍ଠ ଗଦ ଗଦ ।
ନବୀନ ଯମର ବାଣୀ ଶୁଣି ନାରାୟଣ
ଆପଣା ହୃଦ ପଦ୍ମରେ ବିଚାରିଲେ ପୁଣ ।
ବୋଇଲେ ତ ଭଲକଥା କହିଲା ଏମୋତେ
ନୋହିଲେ କି ଯମପଣେ ବୁଲିଲା ଜଗତେ ।
ଏହାକୁ ଯଦ୍ୟପି ଆଜ ନ କରିବା ମୁକ୍ତ
ବୈକୁଣ୍ଠପୁରକୁ ସିନା ନିନ୍ଦିବେ ମୋ ଭକ୍ତ ।
ଯେବଣ ବୈକୁଣ୍ଠପୁରେ ସମଦର୍ଶୀ ଭାବ
ସମସ୍ତେହିଁ ଏକା ଜାଣ ସର୍ବେ ଏକା ଜୀବ ।
ଯେଉଁଠାରେ ଶତ୍ରୁ ମିତ୍ର ଦୁଇକଥା ନାହିଁ
ଶରଣ ବୋଲି ଯମ ଏ ସ୍ଥାନେ ଆସି ରହି ।
ଶରଣ ଯେ ଅଶରଣ ସର୍ବେ ଯହିଁ ତରି
ଏ ପୁରରେ ଅଛଇ କି ଭେଦ ମିତ୍ର ଅରି ।
ନିତ୍ୟେ ଯେହୁ ଭଜଇ ସେ ତରେ ସେହିସୁଖେ
ଅଶରଣ ଲୋକଟିକୁ ଶରଣ ଯେ ରଖେ ।
ଯମକୁ ବୋଇଲେ ଆହେ ଶୁଣ ଦଣ୍ଡଧାରୀ
କଥା ଏକ କହୁଅଛି ଶୁଣ ହେତୁ କରି ।
ଅଜାମିଳ ବ୍ରାହ୍ମଣ ଯେ ମୋର ନାମ ଧରି
ତେଡ଼େ ପାପୀ ମୋକ୍ଷକରି ଆଣିଲି ଏ ପୁରୀ
କେତେଦୂରେ ଗଜ ଡାକିତରିଛି ତୁରିତେ
ହରିଣୀ ଆତଙ୍କ ମୁହିଁ ଫେଡ଼ିଛି ବନସ୍ତେ ।
ଭବାର୍ଣ୍ଣବ ତାରଣକୁ ମୋର ନାମ ନାବ
ପତିତପାବନ ବାନା ବୁଡ଼ି ସିନା ଯିବ ।
ବଇକୁଣ୍ଠପୁରୁ ଯାକୁ ନେଲେ ତୁହି ଧରି
ମୋହର ନାମକୁ ନିନ୍ଦା କରିବେ ତ୍ରିପୁରୀ ।

ମୋହର ନାମକୁ ଧରି ତରିଛି ଜଗତ
ଆମ୍ଭ ମୁଖ ଦେଖି କେହ୍ନେ ନେବୁତ କୃତାନ୍ତ
ବୈକୁଣ୍ଠ ଭକତ ଜନେ ନିନ୍ଦିବେ ମୋହର
ଏହାକୁ ତୁହି ସୁଦୟା କର ନାଶକର ।
ଯେତେ ଦୋଷାଦୋଷ ତୋର କରିଛିପ୍ରଚଣ୍ଡ
ଆମ୍ଭ ଆଜ୍ଞା ହେଲା ଆଉ ନ ଦିଅ ଯେ ଦଣ୍ଡ
ଯେ ନାମ ଧରି ସଂସାରୁ ତରୁଛନ୍ତି ପ୍ରାଣୀ
ତାହାଙ୍କୁ ପ୍ରତ୍ୟକ୍ଷେ ଦରଶନ କଲା ପୁଣି ।
ଶ୍ରୀପ୍ରଭୁଙ୍କ ଶ୍ରୀମୁଖରୁ ଆଜ୍ଞା ଶୁଣି ଯମ
କରଯୋଡ଼ି ପାଦପଦ୍ମେ ହୋଇଣ ପ୍ରଣାମ ।
ବୋଇଲା ଯାହା ଆଜ୍ଞାରେ କୋଟି ବସୁନ୍ଧରୀ
ବଚନ ମାତ୍ରକେ ଟଳିଯିବ ତିନିପୁରୀ ।
ସେହି ଆଜ୍ଞା ଟାଳିବାକୁ ଶକ୍ତି କାର ଅଟେ
ଯାହାର ବୋଲେ ପୃଥିବୀ ବହେ କୂର୍ମପୃଷ୍ଟେ
ଯାର ବୋଲେ ଉଦେ ହେଉଛନ୍ତି ରବିଶଶୀ
ଯାର ବୋଲେଇନ୍ଦ୍ର ଦେବ ପାଳେ ମେଘବକ୍ଷ
ଯାହାଙ୍କର ଆଜ୍ଞାରେ ଚଳଇ ନବ ସୃଷ୍ଟି
ଯାହା ଆଜ୍ଞାରେ ସିନ୍ଧୁ ନ ଲଙ୍ଘେ ପୃଥ୍ୱୀଗୋଟି
ଯାହାର ଆଜ୍ଞାରେ ବ୍ୟାପିଅଛି ହୁତାଶନ
ଯାହାର ଆଜ୍ଞାରେ ପୁଣି ବହୁଛି ପବନ ।
ଯାହାର ଆଜ୍ଞାରେ ମେରୁ ବହେ ବସୁନ୍ଧରୀ
ସେ ପ୍ରଭୁ ବଚନ କେହୁ ଆନ କରିପାରି ।
ଏମନ୍ତ ବୋଲିଣ ଯମ ସେବେ ଲକ୍ଷ୍ମୀପତି
ସେ ପାଦେ ଶରଣ ବିପ୍ର ଲକ୍ଷ୍ମୀଧର ନାତି ।
ଜାତିକେ ବ୍ରାହ୍ମଣ ମୁହିଁ ଅଟେ ମହାମୂର୍ଖ
ମଣ୍ଡୁକୀ ହୋଇ ପଡ଼ିଛି ଘୃତକୁଣ୍ଡେ ଦେଖ ।
ପିମ୍ପୁଡ଼ି ହୋଇ ନିର୍ବଳ ଲୋଡ଼େ ମେରୁଟାକି
ହସ୍ତ ବଢ଼ାଇଣ ଚନ୍ଦ୍ର ସୂର୍ଯ୍ୟ ଲୋଡ଼େ ଧରି
ଯେବଣ ଆକାଶ ଗୋଟି ଅଟେ ଅପ୍ରମିତ
ତାହାକୁ ମୁଁ ମାଗୁଅଛି ହେବ କେତେ ହାତ
ଗଙ୍ଗାବୋଲି ଗଣିବାକୁ ବସେ ଖଡ଼ିଧରି
ଯବ ଅଙ୍ଗୁଳି ପକାଇ ମାପେ ବସୁନ୍ଧରୀ ।
ଯେଉଁ ଶାରଦା ଭଣ୍ଡାର ଅଟେ ଅପ୍ରମେୟେ
ତାହା ମୁହିଁ ଲେଖୁଅଛି ବାଲ୍ୟଜନ ପ୍ରାୟେ ।
ଶୁଣ ଆହେ ସୁପଣ୍ଡିତ ନ ଘେନି ମୋଦୋଷ
ତୁମ୍ଭ ମୁଖ ବାକ୍ୟ ଏହି ଅଟଇ ଅବଶ୍ୟ ।

ସାଧୁମାନଙ୍କ ଆଜ୍ଞାରେ ହେଉଛି ପୁରାଣ
ବିପ୍ର ପୀତାମ୍ବର ଦାଶ ଶ୍ରୀହରି ଶରଣ ।
ବଦୟନ୍ତି ବେଦବ୍ରହ୍ମା ଶୁଣ ହେ ନାରଦ
ପ୍ରଚଣ୍ଡର କଥା ଏବେ ଶୁଣ ମୋକ୍ଷପଦ ।
ତତକ୍ଷଣେ କାଳପାଶ ଦେଲେ ପ୍ରଭୁ ଫେଇ
ରଖିଲେ ଯମର କାଳଦଣ୍ଡ ମୁକୁଳାଇ ।
ଏଡ଼େ ଭାଗ୍ୟ କଥାଟିଏ ପାଇବ ଯେ ପ୍ରାଣୀ
ରଖିଲେ ପାଶରେ ତାକୁ ଶଙ୍ଖ ଚକ୍ରପାଣି ।
ତେଣୁ ଏ ଗତି ପାଇଲା ନୂଆ ଯମ ଜାଣ
ବିଚାରିଣ ଦୟା ତାକୁ କଲେ ନାରାୟଣ ।
ସାଧୁଜନମାନଙ୍କର ଦରଶନ ମାତ୍ରେ
ତତକ୍ଷଣେ ଦୂରିତ ଯେ ନ ରହଇ ଗାତ୍ରେ ।
ଏମନ୍ତ ଅଟଇ ସାଧୁ ଦରଶନ ଫଳ
କହନ୍ତି ହେ ବେଦବ୍ରହ୍ମା ଶୁଣ ତପଶୀଳ ।
ଚଳିଲେ ଯେ ଯମରାଜ ବିଷ୍ଣୁ ଆଜ୍ଞା ମାଗି
ସଂଯମନୀ ପୁରେ ଯାଇ ହେଲେ ରାଜଭୋଗୀ
ଏଥୁ ଅନନ୍ତରେ ବାଣୀ ଶୁଣ ସୋମଗୋତ୍ର
ସେ ବୈକୁଣ୍ଠରେ ପ୍ରଚଣ୍ଡ ହେଲା ରାଜପୁତ୍ର ।
ଭାଇକି ସଙ୍ଗରେ ଘେନି ବସେ ଦ୍ୱାରମାଡ଼ି
ଜୟ ବିଜୟ ବୋଲିଣ ଦେଲେ ତାକୁ ଶାଢ଼ୀ
ରହିଲେ ବୈକୁଣ୍ଠସିଂହଦ୍ୱାରେକାଳେକାଳେ
ଏରୂପେ କାକୁ ଭାଗ୍ୟ ନମିଳେକେତେବେଳେ
ସେହି ଭାଗ୍ୟ କଥା ପୁଣି କହୁ ଶୁଣ ଏବେ
ଅମୃତ ଅଂଶେ ଜନ୍ମିଲେ ସର୍ବେ ଭୋଗଲୋଭେ
ସେ ଉତ୍ପତ୍ତି ଅଂଶ କାହୁଁ ଶୁଣ ଏକେ ଏକେ
ପୁରାଣରେ ଲେଖି ଯାହା ଛନ୍ତି ମୁନିବାକ୍ୟେ
କନ୍ଦର୍ପ ଅଂଶେ ଜନ୍ମିଲେ ଦିଶଇ ସୁନ୍ଦର
ଗନ୍ଧର୍ବ ଅଂଶେ ଜନ୍ମିଲେ ସୁଖୀ ହୁଏ ନର ।
ଅସୁର ଅଂଶେ ଜନ୍ମିଲେ ହୁଏ ଅସନ୍ତୋଷୀ
ପର୍ଶୁରାମ ଅଂଶ ହେଲେ କ୍ଷତ୍ରୀ ବିଦ୍ୟ ଦିଶି ।
ଗଣେଶ ଅଂଶୀହୋଇଲେକୋଟି ବିଦ୍ୟାପାଇ
କୁବେର ଅଂଶ ହୋଇଲେ ବହୁଲକ୍ଷ୍ମୀ ହୋଇ
ମୁନିଅଂଶେ ଜନମିଲେ ପାରେ ଶାସ୍ତ୍ର ବାନ୍ଧି
ହନୁଅଂଶେ ଜନମିଲେ ହୁଏ ମହା ଯୋଦ୍ଧା ।
ବୃହସ୍ପତି ଅଂଶୀ ହେଲେ ସବୁ ବୁଦ୍ଧି ଦିଶେ
ପ୍ରହଲାଦ ଅଂଶୀ ହେଲେ ଦାନ ପରକାଶେ ।

ନାରଦଅଂଶୀ ହୋଇଲେ ହୁଏ ଜ୍ଞାନ ଭୋଗୀ
ଗୋରେଖା ଅଂଶୁ ଜନ୍ମିଲେ ହୁଏମହାଯୋଗୀ
ବିଷ୍ଣୁ ଅଂଶେ ଜନମିଲେ ହୁଏ ନୃପନିଧି
ରାହୁଅଂଶେ ଜନମିଲେ ହୁଏ ମହାକ୍ରୋଧୀ ।
ଅପ୍ରକାର ଅଂଶେ ହେଲେ ହୁଏ ଅପ୍ରକାର
ଯାବତ ନିନ୍ଦାକୁ ଅର୍ଜିଲଭେ ମୁକ୍ତିଦ୍ୱାର ।
ଶୁଭଅଂଶେ ଜନମିଲେ ଏ ରୂପେ ଭୋଗଇ
ଉତ୍ତମ ଲଗ୍ନେ ଜନ୍ମିଲେ ଏହୁ ଦୁଇଭାଇ ।
ରହିଲେକ ଦ୍ୱାରୀ ହୋଇ ବିଷ୍ଣୁ ସିଂହଦ୍ୱାରେ
ସେହି ପୁଣି ଚାରିଥର ଜନ୍ମିବେ ସଂସାରେ ।
ମୁର ହିରଣ୍ୟ ରାବଣ ଶିଶୁପାଳ ହେବେ
ସାଧୁଙ୍କର ଦ୍ରୋହକାରୀ ହୋଇବେ ଦାନବେ
ଋଷିଙ୍କ ମୁଖରୁ ଶାପ ପାଇ ବେନିଭାଇ
ଦ୍ୱିତୀୟଖଣ୍ଡେ କହିବି ତାହା ସିନା ଯାଇ ।
ପ୍ରଥମ ସାଗର ହେଲା ସମ୍ପୂର୍ଣ୍ଣ ଏ ଜାଣ
ବିପ୍ର ପୀତାମ୍ବର ଦାସ ପଶିଲା ଶରଣ ।
ଆହେ ସୁଜ୍ଞଜନମାନେ ନ ଘେନମୋ ଦୋଷ
ନୃସିଂହ ପୁରାଣ କଥା ଅଟଇ ଅଶେଷ ।
ସୁପଣ୍ଡିତ ଜନ ମୁଖୁଁ ପାଇ ଅର୍ଥବାଣୀ
ତାହା ମୁହିଁ ପଦକରି ଲେଖେ ଶାସ୍ତ୍ର ଆଣି ।
ବ୍ରହ୍ମା ଆଉ ନାରଦଙ୍କ ସମ୍ବାଦ ଏ ଭାବ
ସେ କଥା ପରୀକ୍ଷିତଙ୍କୁ କହେ ଶୁକଦେବ ।
ନମୋ ନମୋ ଶ୍ରୀ ନୃସିଂହ ହରି ଭଗବାନ
କେଶବ ଶ୍ରୀକୃଷ୍ଣ ଦାତା ଅଶେଷ ଜୀବନ ।
ଗୋବିନ୍ଦ ବୈକୁଣ୍ଠ ନାରାୟଣ କ୍ଷୀରବାସୀ
ଅଭୟ ଶ୍ରୀମୁଖ ଚକ୍ରପାଣି ବ୍ରହ୍ମରାଶି ।
ଯାବତ ଜୀବନଯାକ ଅଟ ପୁଣ୍ୟଦାତା
ଭକ୍ତ ଉଦ୍ଧାରଣ କର୍ମ ଅକର୍ମ କରତା ।
ଜଗତ୍ ବନ୍ଦନ ପ୍ରଭୁ ଜଗନ୍ନଜନବାସୀ
ପରମ ନିରାକାର ଯେ ସର୍ବ ଗୁଣରାଶି ।
ଦୁର୍ଜ୍ଜନ ନାଶନ ପ୍ରଭୁ ଅଟି ପୁଣ୍ୟ ନାମ
ଭାବଗ୍ରାହୀ ବୁଧଜନଙ୍କର ପୁଣ୍ୟଧାମ ।
ଶ୍ରୀବିଷ୍ଣୁର ବଲ୍ଲଭୀ ଶାରଦା ଠାକୁରାଣୀ
କିଞ୍ଚିତରେ ଆଜ୍ଞା ମୋତେଦେଲେ ଗୋସାମଣି
ତାହାଙ୍କ ଶ୍ରୀମୁଖୁ ବାକ୍ୟ ପ୍ରକାଶଇ ଯାହା
ଗୋଚର କରିଣ ମୁହିଁ ଲେକେ ପତ୍ରତାହା

ଯେ ଯାହାର ହେତୁ ଦେଇ ଶୁଣ ହେ ସୁଜନ
ବୈକୁଣ୍ଠେ ନେଇ ରଖିବେ ତାକୁ ଭଗବାନ
ଉତ୍ତମକୁଳେ କରିବେ ପ୍ରଭୁ ତାକୁ ଜାତ
ବଢ଼ିବ ସମ୍ପଦ ଧନ ଜନ ଅପ୍ରମିତ ।
ପଢ଼ନ୍ତେ ଶୁଣନ୍ତେ ଗତି ମୁକତି ହୋଇବ
ହୃଦୟରେ ରୋଗ ବ୍ୟାଧି କେଭେ ନ ପଶିବ
ରାଜଭୟ କାଳଦଣ୍ଡ ସବୁଠାରୁ ତାରି
ବସିବ ସେ ଦେହଅନ୍ତେ ଯାଇ ବିଷ୍ଣୁପୁରୀ ।
ପ୍ରଥମ ସାଗର ନାମ ଏ ପୁସ୍ତକ ଅଟେ
ଲେଖିଲି ମୁଁ ଏହିଗ୍ରନ୍ଥ ଋଷିକୂଲ୍ୟା ତଟେ ।
ଶ୍ରୀନୃସିଂହ ପୁରାଣ ଏ ସୁଧାରସ ବାଣୀ
ସମ୍ପୂର୍ଣ୍ଣ କଲି ପ୍ରଥମ ସାଗରକୁ ଆଣି ।
ବିଧାତା ସୃଷ୍ଟି ରଚନା ଯେତେଯେତେକୃତ
ଶ୍ରୀ ବେଦବ୍ୟାସଙ୍କଠାରୁ ହୋଇଛି ଉକତ ।
ଜନ୍ମିବେ ନୃସିଂହ ନାମ ବହି ବିଷ୍ଣୁ ଜାଣ
ଶେଷଦେବଙ୍କୁ ସଙ୍ଗରେ ଘେନିଣ ଆପଣ ।
କୃଷ୍ଣବଲ୍ଲଭଙ୍କ ବୀର୍ଯ୍ୟେ ଭଗବତୀ ଗର୍ଭୁ
ଆଦ୍ୟରେ ଏ ଅବତାର ହେବେ ମହାପ୍ରଭୁ ।
ଆଦ୍ୟରେ ନୃସିଂହ ଜନ୍ମ ଦ୍ୱିତୀୟେ ବାମନ
ତୃତୀୟେ ଶ୍ରୀ ରଘୁନାଥ ଚତୁର୍ଥରେ ଶ୍ୟାମ ।
ଏଣୁ ଆଦ୍ୟ ଅବତାର ନୃସିଂହକୁ କହି
ନୃସିଂହରୂପେ ହିରଣ୍ୟ ମାରିବେ ଏ ଯାଇ ।
ମୁର ଦଇତକୁ ମାରି ମୁରାରୀ ହୋଇବେ
ଏହି ଅବତାରେ ମାରି ବୈକୁଣ୍ଠେ ଆସିବେ
କରୁଣା ସାଗର ଏହୁଁ ଭକ୍ତ ଗୁଣନିଧି
ଅଶେଷ ଜନମୋହନ ଯୋଗମାର୍ଗେ ସିଦ୍ଧି
ଶାରଦାର ପ୍ରାଣପତି ତୁଳସୀର କାନ୍ତ
ଲକ୍ଷ୍ମୀଙ୍କର ପ୍ରାଣନାହା ଦେବ ସାରସ୍ୱତ ।
ମାଧବ ଶ୍ରୀ ମଧୁରିପୁ ଜୟ ହୃଷୀକେଶ
ଦେବଙ୍କର ଦେବରାଜ ଦୟାଳୁ ପୁରୁଷ ।
ବ୍ରହ୍ମାଣ୍ଡର ଅଧିକାରୀ ଜଗନ୍ନାଥ ହରି
ଜୟ ନାରାୟଣ ତୁ ଅନନ୍ତ ରୂପଧାରୀ ।
ଛପନକୋଟି ସଞ୍ଚିତ ଆଦି ଚାରିବର୍ଣ୍ଣ
ରତିପତିର ଯେ ପିତା ଅଟ ବ୍ରହ୍ମଜ୍ଞାନ ।
ଅଗତିର ନିସ୍ତାରଣ ଦୁଃଖୀଲୋକ ବନ୍ଧୁ
ଶରଣ ପଞ୍ଜର ଆହେ ପ୍ରଭୁ କୃପାସିନ୍ଧୁ ।
କୃପାକର କୃପାଳୁ ହେ ପ୍ରଭୁ କୁଞ୍ଜପାଣି
ସୁଜନମାନେ ବସି ଏ ଗ୍ରନ୍ଥ ତେବେ ଶୁଣି ।
ଏଥୁ ପ୍ରଥମ ସାଗର ହୋଇଲା ସମ୍ପୂର୍ଣ୍ଣ
ଦ୍ୱିତୀୟ ସାଗରେ ଏବେ ବଳୁଛି ମୋ ମନ
ଶ୍ରୀନୃସିଂହ ପ୍ରଭୁଙ୍କର ଅଭୟ ଚରଣ
ବିପ୍ର ପୀତାମ୍ବର ଦାଶ ପଶିଲା ଶରଣ ।

**- ପ୍ରଥମ ଭାଗର ସମାପ୍ତ -**

ବିପ୍ର ପୀତାମ୍ବର ଦାସଙ୍କ ବିରଚିତ

# ନୃସିଂହ ପୁରାଣ

## ଦ୍ୱିତୀୟ ସାଗର

(ନୂତନ ମୁଦ୍ରଣ)

ପ୍ରକାଶକ :

ଧର୍ମଗ୍ରନ୍ଥ ଷ୍ଟୋର



ପ୍ରାପ୍ତିସ୍ଥାନ :

ଧର୍ମଗ୍ରନ୍ଥ ଷ୍ଟୋର

ପରିଚାଳକ -

ଶ୍ରୀ ବିଦ୍ୟାଧର ସାହୁ

ଅଲିଶା ବଜାର, କଟକ - ୨

ଫୋନ: (୦୬୭୧) ୨୫୦୮୨୯୬

ମୂଲ୍ୟ : ଷାଠିଏ ଟଙ୍କା ମାତ୍ର

# ନୃସିଂହ ପୁରାଣ ଦ୍ୱିତୀୟ ସାଗର

## ସୂଚୀପତ୍ର



ନୃସିଂହ ପୁରାଣ ଦ୍ୱିତୀୟସାଗରର ସୂଚିପତ୍ର ସମାପ୍ତ

# ନୃସିଂହ ବନ୍ଦନା

## ଦ୍ୱିତୀୟ ସାଗର

ଆସୀନଂ କମଳାସନେ କମଳୟା ବକ୍ଷସ୍ଥଳାସୀନୟା,
ବିଦ୍ୟୁଦ୍ଦ୍ୟୋତସଟାସମୂହବିଲସଦ୍ ସୌମ୍ୟନନାମ୍ଭୋରୁହଂ ।
ଜାନ୍ୱୋରର୍ପିତଯୋଗପଟ୍ଟମୁଭୟୋର୍ବାହ୍ୱୋ ଦୃଢ଼ା ବାୟତୌ,
ହସ୍ତାଭ୍ୟାଂ ଧୃତଶଙ୍ଖଚକ୍ରମନିଶଂ ଲକ୍ଷ୍ମୀନୃସିଂହ ଭଜେ ।୧।
ନାରାୟଣଂ ନମସ୍କୃତ୍ୟଂ ନରଂ ଚୈବ ନରୋତ୍ତମଂ ।
ଦେବୀଂ ସରସ୍ୱତୀଂ ବ୍ୟାସଂ ତତୋଜୟ ମୁଦୀରୟେତ୍ ।୨।
ବେଦେ ରାମାୟଣେ ଚୈବ ପୁରାଣେ ଭାରତେ ତଥା ।
ଆଦ୍ୟେ ଚାନ୍ତେ ଚ ମଧ୍ୟେ ଚ ହରିଃ ସର୍ବତ୍ର ଗୀୟତେ ।୩।
ତଂ ବେଦଶାସ୍ତ୍ର ପରିନିଷ୍ଠିତଂ ଶୁଦ୍ଧବୁଦ୍ଧିଂ, ଚର୍ମାମ୍ବରଂ ସୁରମୁନୀନ୍ଦ୍ରନୁତଂ କବୀନ୍ଦ୍ରଂ ।
କୃଷ୍ଣତ୍ୱିଷଂ କନକପିଙ୍ଗଜଟାକଳାପଂ ବ୍ୟାସଂ ନମାମି ଶିରସା ତିଳକଂ ମୁନିନାଂ ।୪।
ନାହଂ ତିଷ୍ଠାମି ବୈକୁଣ୍ଠେ ଯୋଗୀନାଂ ହୃଦୟେ ନ ଚ ।
ମଦ୍ଭକ୍ତା ଯତ୍ର ଗାୟନ୍ତି ତତ୍ର ତିଷ୍ଠାମି ନାରଦ ।୫।

### ବନ୍ଦନା

ନମସ୍ତେ ନମସ୍ତେ ନାଥ ଛାୟାଦେବୀ କାନ୍ତ
ଆପଣ ବିଷ୍ଣୁ ହୋଇଣ ପାଳ ଏ ଜଗତ ।
ସହସ୍ରେକ ରଶ୍ମି ଘେନି ନଭେ ଉଦେ ହୁଅ
ଯାବତ ତେଜ ଧରିଣ ପ୍ରକାଶିଛ ଦେହ ।
ନମସ୍ତେ ହେ ମହାରୌଦ୍ର ମୂରତି ଭାସ୍କର
ସଂସାରେ ବୋଲନ୍ତି ତୁମ୍ଭେ ବନ୍ଧୁ କମଳାର ।
ନମସ୍ତେ ହେ ଦିବାକର ଶରଣ ତୋହର
ନମସ୍ତେ ହେ ଦିବାକର ଉଦ୍ଧରିଣ ଧର ।
ନମସ୍ତେ ଦିବାକର ତୋ ଦେହଯାକ ଚକ୍ଷୁ
ନମସ୍ତେ ତୁ ଦିବାକର ସର୍ବ ଦେଖୁଅଛୁ ।
ନମସ୍ତେ ହେ ଦିବାକର କର୍ଣ୍ଣେ ତୋ କୁଣ୍ଡଳ
ନମସ୍ତେ ହେ ଦିବାକର ସର୍ବଲୋକପାଳ ।
ନମସ୍ତେ ହେ ଦିବାକର ଶୂନ୍ୟେ ଉଦେହେଉ
ସତ୍ୟଦେବ ପୁରୁଷ ତୁ ସିଦ୍ଧ ମହାବାହୁ ।
ଦିନକର ନାଥ ମୁହିଁ ଶରଣ ତୋ ପାଦେ
ପ୍ରଭାକର ପୁରୁଷ ହେ ନମସ୍ତେ ନମସ୍ତେ ।
ଆହେ ପ୍ରଭୁ ରଖ ମୋତେ ତମ ନାଶକର
ଶ୍ରୀଆଦିତ୍ୟ ଶରଣ ମୁଁ ବିପ୍ର ପୀତାମ୍ବର ।
ଏ ପବିତ୍ର ଗଙ୍ଗାଜଳ ପୁରାଣ ଗହନ
ଶ୍ରୀଗୋବିନ୍ଦର ମହିମା ଯେତେକ କୀର୍ତ୍ତନ ।
ସତ୍ୟଯୁଗେ ଶ୍ରୀନୃସିଂହ ରୂପ ହରି ହୋଇ
ଭକତକୁ ତାରିବାକୁ ନାନାରୂପ ବହି ।
କହିବାକୁ ସେ କଥା ମୁଁ ନୁହେଁ ସାମରଥ
କହ ବୋଲି ଆଜ୍ଞାଦେଲେ ମୋତେ ଜଗନ୍ନାଥ
ବାଳୁତ ଲୋକ ପରାୟେ ଚଞ୍ଚଳ ମୋ ମତି
ନ ଜାଣେ ମୁଁ ପାଠଶାଠ ଆଉ ଶାସ୍ତ୍ରବୃତ୍ତି ।
ବିଷ୍ଣୁ କୀର୍ତ୍ତି କହିବାକୁ କିସ ମୋର ହେତୁ
ଗୋବିନ୍ଦ ପ୍ରସାଦୁଁ ପାଇଲଇଁ ଦିବ୍ୟ ତତ୍ତ୍ୱ ।
ଯୁକତେ ପାଇଛି ନର ଦେହ ଏ ଜଗତେ
ଏହି ଯେ ମୋହର ମନ ଅନାୟତ୍ତ ମୋତେ
କହୁଁ କହୁଁ ପିଣ୍ଡରୁ ଯେ ଛାଡ଼ିଯିବ ପ୍ରାଣ
ଏ ଧନ ଜନ ଜୀବନ ସବୁ ଅକାରଣ ।
ଶରୀରକୁ ବହିଲେ ଯେ ଅବଶ୍ୟ ତ ମରି
ଏଣୁ ଛାର ମରଣକୁ କିମ୍ପା ମୁହିଁ ଡରି ।

ଜନ୍ମ ହେଲେ ମରଣ ତ ହୁଅଇ ନିକଟ
ମରିବା କ୍ଷଣି ପୁଣି ସେ ଚିନ୍ତେ ଆନ ଘଟ ।
ଯୋକପରି ସିନା ଏହି ଜୀବର ଆହ୍ଲାଦ
ଏକ ପାଦକୁ ଛାଡ଼ିଲେ ଧରେ ଅନ୍ୟ ପାଦ ।
ଜୀବଟି ସେହି ରୂପରେ ସଞ୍ଚରଇ କର୍ମୁ
ଜନମ ମରଣ ନାମ ବହଇ ପ୍ରଥମୁଁ ।
ମଲେ ପୁଣି ଲେଉଟି ସେ ରଜ ବୀର୍ଯ୍ୟେ ଚଳେ
ଜନ୍ମିଲେ ପୁଣି ପାଶୋରେ ତାହା ମାୟାବଳେ
ବୁଝିଲେ ତ ନାରାୟଣ ସବୁ ହୃଦେ ସ୍ମରି
ଅଛନ୍ତି ସକଳ ଘଟପଦ୍ମେ ବିକେକରି ।
ଯେବଣ ରୂପେ ଅଛନ୍ତି ଶୁଣିବା ସେ ଲକ୍ଷ୍ୟ
ସହସ୍ରେ ଜଳଭାଣ୍ଡକୁ ଥୋଇବା ପ୍ରତ୍ୟକ୍ଷ ।
ତାକୁ ଚାହିଁଲେ ସହସ୍ରେ ରୂପ ଯେହ୍ନେ ଦିଶେ
ଲେଉଟି ଚାହିଁଲେ ଏକ ହୋଇଣ ପ୍ରକାଶେ ।
ଏହିରୂପେ ସବୁକାଳେ ଦିଶେ ତାହା ଘୋଟି
ବୁଝିଲେ ତ ଏକ ଆତ୍ମା ଗୋବିନ୍ଦ ରୂପଟି ।
ଆକାଶରୁ ଅଟଇ କି ସ୍ନେହୁ କେବେ ଭିନ୍ନ
ଜାଣିପାରିଲେତ ନାଶ ନୁହେଁ ଘଟମାନ ।
ଏହି ରୂପରେ ଏ ଆତ୍ମା କରେ କଉତୁକ
ଜାଣନ୍ତି ଆତ୍ମର ଭାବ ଏକା ଜ୍ଞାନୀଲୋକ ।
ହରିନାମ ନାବ ଭକ୍ତ ବାହକ ଯେ ହୋଇ
ମହାମୋହ ସଂସାରୁ ସେ ତେବେ ତରିଯାଇ
ନ ଜାଣି ସଂସାରେ ପ୍ରାଣୀମାନେ ହୋନ୍ତି ବଣା
ନ କରନ୍ତି ଲୋଭେ ପଡ଼ି ବିଷ୍ଣୁ ସୁମରଣା ।
ବିଷ୍ଣୁ ସିନା ସଂସାରରେ ଦ୍ୟନ୍ତି ଗତି ମୁକ୍ତି
ବିଷ୍ଣୁ ସିନା ହୋଇଛନ୍ତି ନାନା ବିଷ୍ଣୁ ମୂର୍ତ୍ତି ।
ପରମ ପୁରୁଷ ସେହି ଠୁଳ ବ୍ରହ୍ମରାଶି
ଏକବାର ଦରଶନେ ପାପରାଶି ନାଶି ।
ଏକମାତ୍ର ରୂପ ରେଖ ଶୂନ୍ୟ ନାରାୟଣ
ଅଖିଳ ବ୍ରହ୍ମାଣ୍ଡ ନାଥ ଅନାଦି କାରଣ ।
ଅବ୍ୟୟ ଗୁଣନିଧାନ କରୁଣାର ସିନ୍ଧୁ
ଆରତ ଜନରକ୍ଷକ ଦୁଃଖୀଜନ ବନ୍ଧୁ ।
ସେହି ପଙ୍କଜ ଚରଣେ ପଶିଲି ଶରଣ
ପାମର ପୀତାମ୍ବରକୁ ରଖ ନାରାୟଣ ।



## ଜୟ ବିଜୟଙ୍କ ଶାପ ବିବରଣ

ଏଥୁ ଅନନ୍ତରେ ପରୀକ୍ଷିତ ନାମେ ରାଜା
ଶୁକମୁନି ପାଦତଳେ କଲେ ଦିବ୍ୟ ପୂଜା ।
ବୋଇଲେ ଭୋ ମୁନି କହ ନୃସିଂହ ଚରିତ
ମୂରଦୈତ୍ୟ ଜନ୍ମିବାରୁ ହେଲା କି ବୃତ୍ତାନ୍ତ ।
ଯମ ପ୍ରସାଦୁ ବୈକୁଣ୍ଠେ ଚଣ୍ଡ ଯେ ପ୍ରଚଣ୍ଡେ
ବାନ୍ଧିଲେ ଜୟ.ବିଜୟ ନାମେ ଶାଢ଼ୀମୁଣ୍ଡେ ।
ତଦୁତ୍ତାରୁ ବ୍ରହ୍ମବୀର୍ଯ୍ୟେ ସେହୁ ଜନମିଲେ
ମୁର ଦାରୁଣ ବୋଲିଣ ଧାତା ନାମ ଦେଲେ
ସେ ମୁର ଦାରୁଣଙ୍କର ତଥା ଏବେ କହ
ଶୁଣିଣ ହସନ୍ତି ପୁଣ ହୋଇ ଟହ ଟହ ।
ବୋଲନ୍ତି ହେ ଶୁଣ ଶକ୍ତି ବଂଶ ମହାରାଜା
ସେ ଅସୁରଙ୍କର କିସ ଶୁଣିବ ପରଜା ।
ସେ କଥା ନାରଦ ଋଷି ବ୍ରହ୍ମାଙ୍କ ଛାମୁରେ
ପଚାରି ଶୁଣନ୍ତି ଗ୍ରନ୍ଥଯାକ କୋମଳରେ ।
ତାହାଙ୍କର କଥାଯାକ କହୁଅଛି ଶୁଣ
ଶ୍ରୀ ବ୍ରହ୍ମା ନାରଦଙ୍କର ସମ୍ବାଦ ଏ ଜାଣ ।
ଦକ୍ଷିଣା ପୂର୍ଣ୍ଣ ଦେଇଣ ନାରଦ ମହର୍ଷି
ପ୍ରଥମ ଅନ୍ତେ ଦ୍ୱିତୀୟ ଖଣ୍ଡ ପୁଛେ ବସି ।
ନାରଦ ବୋଇଲେ ସ୍ୱାମୀ ଶୁଣ ପିତାମହ
କାହିଁକି ଜୟ ବିଜୟ ଦୈତ୍ୟ ହେଲେ କହ
ବ୍ରହ୍ମା ବୋଇଲେ ପ୍ରକୃତି ମନ୍ଦ ଯହୁଁ ହେଲା
ଦୁର୍ବାସା ଋଷି ଯେ କୋପୀ ହୋଇ ଶାପଦେଲା
ଲକ୍ଷ୍ମୀଦେବୀଙ୍କୁ ସେ ମଧ ଦେଲେଟି କଷଣ
ଯହିଁ ଯାହା କଲେ ତାହା କହିବା ହୋ ଶୁଣ
ଦୁର୍ବାସା ଋଷି ବୈକୁଣ୍ଠେ ଯାନ୍ତେ ଦର୍ଶନକୁ
ସେହି ଦୁହେଁ ନ ଛାଡ଼ିଲେ ତାଙ୍କୁ ଭିତରକୁ ।
ଲକ୍ଷ୍ମୀର କଥା କହିବା କ୍ଷଣେ ଆଉ ଗଲେ
ଦୁର୍ବାସା ଋଷି ପ୍ରସଙ୍ଗ ଶୁଣ ଆଗ ଭଲେ ।
ତେଡ଼େ ବ୍ରହ୍ମ ଋଷିଙ୍କି ନ ଦେଲେ ଦ୍ୱାର ଛାଡ଼ି
ଉଗାଳିଲେ ପକାଇଣ ଆଗେ ବେତବାଡ଼ି ।
ନ କଲେ ତାଙ୍କ କଥାକୁ ମୁନି ଅପମାନ
ପଣ୍ଡିତ ଗୁଣକୁ ବହି କହିଲେ ଏସନ ।
ବୋଇଲେ ଜୟ ବିଜୟ ଶୁଣ ତୁମ୍ଭେ ଦୁଇ
ଦ୍ୱାର ଛାଡ଼ ବିଷ୍ଣୁଙ୍କୁ ଯେ ସେବୁ ଆମ୍ଭେ ଯାଇଁ
ଆସିକୁ ଗୋବିନ୍ଦ ସେବା କରି ଏହିଲାଗେ
ଚଳିବୁ ଦର୍ଶନ ଲାଭ ପାଇଁ ଯୋଗମାର୍ଗେ ।
ତୁମ୍ଭ ଦୟା ବିନା ସିନା ନିଷ୍ଫଳେ ଯେ ବାବୁ
ଏଥିବୁ ଯେ ସୀଉକାର ଲର ମୋତେ ଯିବୁ
ଏତେକ କହି ଦୁର୍ବାସା ଭିତରକୁ ଯାନ୍ତେ
ମାଇଲେ ଗଳଥା ଯେ ନଛାଡ଼ି ବେନିଭ୍ରାତେ ।
ବାହାର ସିଂହ ଦୁଆରେ ଆଣି ଛାଡ଼ିଦେଲେ
ଚକ୍ଷୁତରାଟି ଋଷିଙ୍କ ସଙ୍ଗେ କଳି କଲେ ।
ବୋଇଲେ ତୁମ୍ଭର ଏ ତ କେଉଁ ଅବିଚାର
ଛାମୁରେ ନ କହି ପଶୁଅଛ ବଳାତ୍କାର ।

ଦିନେ କି ରାଜସଭାରେ ତୁମ୍ଭେ ନାହିଁ ବସି
ମୂଢ଼ଲୋକ ପ୍ରାୟ ଯାଉଅଛ ବଳେ ପଶି ।
ତଥାପି ଏଣେ ଆସିଛ ଏକବସ୍ତ୍ର ହୋଇ
ପିନ୍ଧିଛ ଖଣ୍ଡେ ମାତର ପାଛୋଡ଼ା ତ ନାହିଁ ।
ଦେବ ଇଷ୍ଟ ଦରଶନେ ଯିବ ଯେବେ ପ୍ରାଣୀ
ଏକବର୍ଗ ଗଜେ ଗଲେ ହୋଏ ତାର ହାନି
ପଣ୍ଡିତଙ୍କ ବିଚାରକୁ ନୁହେଁ କଥା ଭଲ
ଛାଲ ତୁମ୍ୱା ବହିକରି ଅହର୍ନିଶି ବୁଲ ।
ବିଚାରିଲେକ ତୁମ୍ଭଙ୍କୁ ଶାସ୍ତ୍ର ସିନା ଲୋଡ଼ା
ନ ଫଳେ କହିଲା କଥା ନଥିଲେ ଦୋଷଡ଼ା ।
ଏକବସ୍ତ୍ର ଦେବସ୍ଥାନେ ଗଲେ ମହାଦୋଷ
ଦର୍ଶନ କଲାର ଫଳ କାଳେ ଯାଏ ନାଶ ।
ଜାଣିବା ଲୋକ ଆଚାରହୀନ ଯେବେ ହୋଏ
ତାହାକୁ ଦେବତା କେବେ ସୁପ୍ରସନ୍ନ ନୋହେ
ଏମନ୍ତ ଭର୍ତ୍ସନାବାକ୍ୟ କହନ୍ତେ ସେ ଦ୍ୱାରୀ
ଦୁର୍ବାସାଙ୍କ ମୁଖୁ ଆଉ ବଚନ ନସ୍ଫୁରି ।
ସ୍ତମ୍ଭୀଭୂତ ହୋଇ ଦ୍ୱାରେ ରହିଲେ ଯେ ବସି
ମନେ ପାଞ୍ଚିଲେ ଅଟନ୍ତି ସେହୁ ବଡ଼ ଦୋଷୀ ।
କପଟ ଛଦ୍ମ କଥା ରାଗ ହିଂସା କ୍ରୋଧ
ଯେଣେଟି ନ ଥାଇ ବିଷ୍ଣୁପୁରେ ହିଂସାବାଦ ।
କ୍ରେତା ଅଇରି ଦୁହେଁ ଅଟନ୍ତି ଯହିଁ ଯମ
ତହିଁରେ ମୋତେ ନ ପଶି ଦେଲେ ଦୁରାତମ
ଏହି ଦୋଷେ ତୁମ୍ଭେ ଦୁହେଁ ଦୈତ୍ୟରୂପହୁଅ
ମର୍ଧପୁରେ ଜାତ ହୋଇ ଅଭକ୍ଷ୍ୟକୁ ଖାଅ ।
ଏତେବୋଲି ସେ ଦୁର୍ବାସା ଋଷିହେଲେ ତୁନି
ଏଥି ଉତ୍ତାରୁ ମିଳିଲେ ଲକ୍ଷ୍ମୀ ଦାସୀ ଘେନି ।
ପଶିଯାନ୍ତେ ସିଂହଦ୍ୱାରେ ବାଟ ଭିତରକୁ
ଜୟ ବିଜୟ ଛାଡ଼ି ନ ଦେଲେ କମଳାକୁ
ଋଷିଙ୍କି ଉଗାଳି ରଖିଥିବା ସକାଶରୁ
ଦ୍ୱାର ନିରୋଧିଲେ ଦୁହେଁ ସଙ୍ଗ ଦୁର୍ବାଦରୁ ।
ତାହାଙ୍କର ମୂର୍ଖପଣ ଦେଖି ଦେବୀ ଶିରୀ
ଆଚମ୍ଭିତ ହୋଇ ହାସେ ବସିଲେ ପଚାରି ।
ବୋଇଲେ ସେ ଆରେଆରେ ଶୁଣ ଦୁଷ୍ଟମତେ
ଏହିରୂପେ କରୁଛ କି ସେବା ବିଷ୍ଣୁପାଦେ ।
ପ୍ରଭୁଙ୍କର ପତ୍ନୀବୋଲି ନ କଲଟି ଲୟେ
ଉଗାଳି ରଖିଲ ମୋତେ ଭଲା ଏ ଦ୍ୱାରୀଏ ।
ଏ ତୁମ୍ଭର ବିଚାରକି ଠାକୁରଙ୍କ ମନା
ଦର୍ଶନ କଲେ ଏ କଥା ବୁଝିବାଟି ସିନା ।
ଭୃତ୍ୟଛାର ହୋଇ ତୁମ୍ଭ ଗାରିମା ଯେ ଏଡ଼େ
ଦୁର୍ବାସା ମହାଋଷିଙ୍କୁ ରଖିଲ ଅଖଡ଼େ ।

ବୋଇଲେ ଜୟ ବିଜୟ ଶୁଣ ଦେବମାତ
ଭିତରେ ପଶନ୍ତେ ନୋହି ଛାମୁରେ କି ଜ୍ଞାତ
ବ୍ରାହ୍ମଣ ଋଷି ବୋଲିଣ ସେହି ଯାନ୍ତେ ଚଳି
ତୁମ୍ଭେତ ଭାରିଯା ବୋଲି ପଶନ୍ତି ଉଗାଳି ।
ଆମେ ତେବେ କି ରୂପରେ ହୁଅନ୍ତୁ ଦୁଆରୀ
ଶୁଣିଲେ ପ୍ରଭୁ ଦିଅନ୍ତେ ବାହାର ତ କରି ।
ଆମ୍ଭେ ନାହିଁ କରୁ ତୁମ୍ଭେ ବଳେ ଯାନ୍ତଯେବେ
ଛାମୁରେ ପଡ଼ିଲେ ଲଘୁହବୁ ସିନା ଆମ୍ଭେ ।
ଶାସ୍ତ୍ର କହିବା କଥା କି ଅଟେ ଅପ୍ରମାଣ
ସେ କଥା ଶୁଣିବା ଏବେ କମଳା ଗୋ ଶୁଣ
ଯଦି ଯୁବତୀ ବାଳକ ଦ୍ୱିପଦିଆ ଲୋକ
ଏ ଚାରିଙ୍କ କଥାରେଟି ପଡ଼େ ଅବିବେକ ।
ବିଶ୍ୱାସ ନ ଯିବ ଯାଙ୍କୁ ଜାଣ କେତେବେଳେ
ଅଟନ୍ତି ଏ ମହା ଅବିଶ୍ୱାସୀ ରବିତଳେ ।
ପଡ଼ନ୍ତି ଏହାଙ୍କ ବୋଲେ ଜାଣ ଯେବେପ୍ରାଣୀ
ସଂସାର ମଧ୍ୟେ ତାହାଙ୍କୁ କୁପୁରୁଷେ ଗଣି ।
ଯତିମାନଙ୍କର ସ୍ଥିର ନୁହେଁ ବୁଦ୍ଧି ଗୋଟି
ଅଧେ ଦିନ ଯତି ଅଧେ ହୁଅନ୍ତି ଲମ୍ପଟୀ ।
ସ୍ତିରୀମାନଙ୍କର ବୁଦ୍ଧି ଅଟେ ନିରପେକ୍ଷ
ପିଶାଚୀ ପ୍ରାୟ ସାହସୀ ହୁଅନ୍ତି ପ୍ରତ୍ୟକ୍ଷ ।
ବୁଝିଲେ ତ ବାଳୁତରୁ ବୁଦ୍ଧି ଅଟେ ବାଇ
ଯେତେ ଭଲ କହିଲେ ସେ କେବେ ନ ଶିଖଇ
ଦ୍ୱିପାଦିଆ ଲୋକ ଅଟେ ଜାଣ ବଡ଼ ଦୋଷୀ
କ୍ଷଣକରେ ପ୍ରୀତି ହୁଡ଼ି ହୁଅନ୍ତି ଅବିଶ୍ୱାସୀ ।
ନିବର୍ତ୍ତ କରାଇଲେ ଏ ନ ରହନ୍ତି ସ୍ଥିରେ
ସ୍ତୁତି ନିନ୍ଦାକୁ ନ ମାନି ଯାନ୍ତି ବଳାତ୍କାରେ ।
ଯାହା ମନରେ ପାଆନ୍ତି କରନ୍ତି ସେ କଥା
ଏଣୁ ତାଙ୍କ ବୁଦ୍ଧି ନୋହେ ପଣ୍ଡିତ ବ୍ୟବସ୍ଥା
ଆପଣ ବଡ଼ ହେଲେ ତ ବୁଦ୍ଧି ନୋହେଗୁରୁ
କହିଲେ ନ ବୁଝି ଯେଉଁ କଥା ନାସ୍ତି କରୁ ।
ଏବେ ଗୋ ଏଠାରେ ଦଣ୍ଡେମାତ୍ର ରହିଥାଅ
ଛାମୁରେ ଆସିଲେ କହି ଭିତରକୁ ଯାଅ ।
ଏମନ୍ତ କହନ୍ତେ ବେନି ତାଙ୍କୁ ମର୍ମବାଣୀ
ଶୁଣିଣ କ୍ରୋଧେ ବୋଇଲେ ଦେବୀ କମଳିନୀ
ଶତକଳ୍ପ ପରିଯନ୍ତେ ଦୈତ୍ୟ ହୋଇ ଜନ୍ମ
ତହିଁ ଉତ୍ତାରେ ଲଭରେ ଶୁଭାଶୁଭ କର୍ମ ।
ସେବେନି ଭାଇଙ୍କି ଶାପଦେଲେ କ୍ରୁଦ୍ଧହୋଇ
ବୋଇଲେ ତୁମ୍ଭେ ଅସୁର ହୁଅ ମର୍ତ୍ତ୍ୟେ ଯାଇ
ଏଡ଼େବଡ଼ ପୁଣ୍ୟସ୍ଥାନେ ଯତି ନିନ୍ଦାକଲ
ଦ୍ୱିପାଦିଆ ନିନ୍ଦି ପୁଣି ବାଳୁତ ନିନ୍ଦିଲ ।

ମୋତେ ମିଶାଇ ସ୍ତିରୀଙ୍କି ପୁଣି କଲ ନିନ୍ଦା
ଏହି ଚାରିଲୋକ ଯୋଗୁ ହେଉ ମୃତ୍ୟୁ ବାଧା ।
ଏ ପବିତ୍ର ସ୍ଥାନେ ତୁମ୍ଭେ କ୍ଷଣେହେଁ ନ ରହ
ମଧ୍ୟପୁରରେ ଜନମି ଅସୁର ହେ ହୁଅ ।
ଶାପ ଦେଇ ଲକ୍ଷ୍ମୀଗଲେ ବଇକୁଣ୍ଠ ଆଳେ
ବସିଲେ ଅସୁର ହୋଇ ବେନି ଦ୍ୱାରପାଳେ ।
ତତକ୍ଷଣେ ଗଲା ତାଙ୍କ ବିଷ୍ଣୁ ତେଜ ହଜି
ଯେସନେ ରାହୁ ଗ୍ରାସନ୍ତେ ଚନ୍ଦ୍ର ତେଜ ଭାଜି ।
ଅଶୋଭା ଦିଶିଲେ ସେହିରୂପେ ବେନିଭାଇ
ଶୁଣ ବାବୁ ନାରଦ ଯେ ଧାତା ଏହା କହି ।
ଏମନ୍ତେ ଲକ୍ଷ୍ମୀ ଆସନ୍ତେ ବହି ମହାତପ
ଅନ୍ତର୍ଯ୍ୟାମୀ ପୁରୁଷ ଯେ ଜାଣି ପ୍ରିୟାକୋପ
ଦୁର୍ବାସା ମହର୍ଷି ବନ୍ଦି ହୋନ୍ତେ ସିଂହଦ୍ୱାରେ
ତାହା ମହାପ୍ରଭୁ ମଧ ଜାଣିଲେ ମନରେ ।
ଶାରଦାଙ୍କୁ ବୋଇଲେ ଗୋ ଥାଅକ୍ଷଣେ ବସି
କହିଲେ ଶୁଣିବା କିସ କମଳିନୀ ଆସି ।
ଦ୍ୱାରିକି ଶାପ ଦେଇଣ ଆସିଛି ବୈରାଗେ
ଦୁର୍ବାସା ବସିଅଛନ୍ତି ଦ୍ୱାରେ ଅତି ରାଗେ ।
ଏବେ ଯାଇଣ ନ କଲେ ଆମ୍ଭେ ଆଶ୍ୱାସନା
ଋଷିଙ୍କର ବେଶୀ କ୍ରୋଧ ଜାତ ହେବ ସିନା
କମଳା କଥାକୁ ଆଗ ବୁଝିଯିବା ପଛେ
ଶୁଣ ତୁମ୍ଭେ ବସିଣ ମୁଁ ଶୋଇଅଛି ମିଛେ ।
ଏମନ୍ତ ବୋଲି ଗୋବିନ୍ଦ ତାଙ୍କ ଚକ୍ଷୁ ମୁଦ୍ରା
ଭାବ ବୁଝିବାକୁ ଗଲେ ପଲ୍ୟଙ୍କରେ ନିଦ୍ରା ।
ଏମନ୍ତେ ଆସନ୍ତେ ହରିପ୍ରିୟା କୋପଭରେ
ଶାରଦାଙ୍କୁ ଦେଖିଲେ ଯେ ଅଛନ୍ତି ଛାମୁରେ ।
ମୋତେ ପାଞ୍ଚିଲେ ଜଞ୍ଜାଳି ଏ ତ ସପତଣୀ
ଆଗହୋଇ କେତେବେଳୁ ଆସିଅଛି ବାଣୀ ।
ନିତି ଏବେ ବସିଥାଇ ସୀମସ୍ଥାନ ତଳେ
ମୁହିଁ ବସି ସେବୁଥାଇ ହୃଦୟ କମଳେ ।
ଦେଖିଲେ ମୋତେ ତ ହରି ହୁଅନ୍ତି ହରଷ
ତାଙ୍କୁ ଦେଖିଲେ ହୁଅନ୍ତି ପ୍ରଭୁ ହସ ହସ ।
ମୁହିଁ ତେବେ ଦେଖି ଆଜ ସ୍ୱାମୀଙ୍କି ମନାଇଁ
ଶ୍ରୀଅଙ୍ଗକୁ ଶ୍ୟାମଳିବି ଗନ୍ଧ ପୁଷ୍ପ ଦେଇ ।
ଶାରଦା ଜିଣିବ ନିକି ମୋତେ ସମସ୍ୟାରେ
ରଞ୍ଜିବି ମୁଁ ପଞ୍ଚମନ ଆଜି ହରିଠାରେ ।
ମୋତେ ନିକି ସମାନ ଏ ଧାତାର ଦୁଲଣୀ
ମୁହିଁ ସେ ସବୁରି ଲୋକମାତା ଠାକୁରାଣୀ ।
ଏହି ସଂସାରରେ ମୁହିଁ ଅଟେ ଆଦିମାତା ।
ଅଟନ୍ତି ମୋହର ସ୍ୱାମୀ ବ୍ରହ୍ମାଣ୍ଡ କରତା ।

ମୁହିଁ ସେହି ପ୍ରଭୁଙ୍କର ଅଟେ ଅଙ୍ଗ ଦେହ
ମରାଳ ବାହିନୀ ଅଟେ ବିଧାତାର ଝିଅ ।
ସର୍ବଦା ବସଇ ମୁହିଁ ବିଷ୍ଣୁ ବକ୍ଷସ୍ଥଳେ
ପୂଜଇ କମଳ ଘେନି ଚରଣେ କମଳେ ।
ଆଜଦିନ ବୁଝାଯିବ କେ ବଡ଼ କେ ସାନ
ଏତେ ବୋଲି କମଳା ଯେ ବିଜେ ସନ୍ନିଧାନେ,
ଏମନ୍ତ ବିଚାର ଲକ୍ଷ୍ମୀ କରନ୍ତି ହୃଦରେ
ବ୍ରହ୍ମାଣ୍ଡ କରତା ତାହା ଜାଣିଲେ ମନରେ ।
ବିଚାରିଲେ ମନେ ଗର୍ବ କଲେ କମଳିନୀ
ହାରିବ କଥାରେ ଆଜ ସିନ୍ଧୁର ଦୁଲଣୀ ।
ଏହାଙ୍କର କଉତୁକ ବୁଝିବା ନା ଦେଖି
କି ରୂପରେ ଉଚ୍ଚବାଚ ହେବେ ବେନିସଖୀ ।
ଏତେକ ପାଞ୍ଚି କପଟେ ନିଦ୍ରା ଗଲେ ହରି
ଲକ୍ଷ୍ମୀ ମିଳିଲେକ ଯାଇ ଗନ୍ଧପୁଷ୍ପ ଧରି ।
ବିଷ୍ଣୁପାଦ ସେବି ମାତ ବସନ୍ତେ ସେ ଦଣ୍ଡେ
ଦେଖିଲେ ଶାରଦା କରେ ଅତି ପୋଥିଖଣ୍ଡେ
ବୋଇଲେକ ମହାଲକ୍ଷ୍ମୀ ପାଇଲଇଁ ଭେଦ
ଦେଖିବା କେମନ୍ତେ ଜିଣିବ ଲଗାଇଣ ବାଦ ।
କମଳା ବୋଇଲେ ଶୁଣ ଆଗୋ ମହାମାଣି
କେବଣ ଗାୟକର ଗୋ ଅଛି ତୁମ୍ଭେ ପତ୍ନୀ ।
ପୋଥି ଗୋଟିଏ ଧରିଣ ଆସିଅଛ ଗୋଇ
କେ ଦେବ ଭିକ୍ଷାଗୋ ଏଥେ ନାହାନ୍ତିତ କେହି
ସରସ୍ୱତୀ ବୋଇଲେ ଏ ଅଟନ୍ତି ଜଞ୍ଜାଳୀ
ଲଗାଇଲା ପରା ଆଜ ମୋର ତୁଲେ କଳି ।
ମନ୍ତ୍ରଭାଗ ପୋଥି ମୁଁ ଯେ ଅଛି କରେ ଧରି
ତେଣୁ ଏ କହୁଛି ମୋତେ ଆଡ଼ଭଙ୍ଗ କରି ।
ଆସିଅଛି ଗନ୍ଧପୁଷ୍ପ ଧରି ହୋଇ ସଜ
ତହିଁକି କଥାଏ ମୁହିଁ କହିବି ତ ଆଜ ।
ଏମନ୍ତ ବିଚାରି ମନେ ମନେ ବାକ୍ୟଦେବୀ
କହନ୍ତି ପ୍ରସ୍ତାବ ସଦୃଶ୍ୟରେ ବାକ୍ୟଭାବି ।
ସରସ୍ୱତୀ ବୋଇଲେ ଗୋ ଶୁଣ ମହାଲକ୍ଷ୍ମୀ
କେଉଁ ମାଳୀ ବାପୁଡ଼ାର ଅଟ ତୁମ୍ଭେ ପତ୍ନୀ ।
ଫୁଲ ଚନ୍ଦନ ଘେନିଣ ଆସିଛ ଯେ ଏଥେ
କେ ଫୁଲ ଘେନିଣ ଶୋଇଛନ୍ତି ଜଗନ୍ନାଥେ ।
ବିଚାରିଲେ ମହାଲକ୍ଷ୍ମୀ ଜିଣିଲା ଏ ମୋତେ
ଉଘାଇଲା ଫୁଲକୁ ଏ ଦେଖି ମୋର ହସ୍ତେ ।
ଏହାକୁ ତ ସହଜେ ମୁଁ ନ ପାରିଲି ଜିଣି
କି କରିବି ଏବେ କିସ କହିବି ମୁଁ ପୁଣି ।
ଏମନ୍ତ ବୋଲି ପାଞ୍ଚନ୍ତେ ଲକ୍ଷ୍ମୀ ହୃଦଗତେ
ଦେଖିଲେ ଅଛଇ ବୀଣା ଶାରଦାର ହସ୍ତେ ।

ମହାଲକ୍ଷ୍ମୀ ବୋଇଲେ ଗୋ ଶୁଣ ଧାତାସୁତ
ଭାର ବହିବାକୁ ସିନା ହୋଇଛୁ ଯୋଗ୍ୟତା
ତୁମ୍ଭାଭାର ଗୋଟିଏ ଯେ କାନ୍ଧେ ଅଛୁ ବହି
କି ଅବା କହିବି କିବା ମୂଳେ ଯିବ ଦେଇ ।
ଶୁଣି ଶାରଦା ଭାଳନ୍ତି ଏହା ମନେ ମନେ
ମୋ ବୀଣା ଶୁଣି ହରଷ ପ୍ରଭୁ ଭଗବାନ ।
ସକଳ ବିଦ୍ୟାରେ ମୁହିଁ ଅଟଇ କାରେଣୀ
ଏ କଥାକୁ ହାସ୍ୟ କେହ୍ନେ କରେ କମଳିନୀ ।
ଶାରଦା ବୋଇଲେ ଲକ୍ଷ୍ମୀ କହିଲ ତ ଭଲା
ମୋହର ବୀଣା ବାଦ୍ୟକୁ ତୁମ୍ଭର କି ଗଲା ।
ନାଚିବା ବେଶ୍ୟାର ପ୍ରାୟେ ଦିଶୁଅଛି ଜ୍ୟୋତି
ଯେଉଁ ନାଟୁଆର ତୁମ୍ଭେ ଅଟଗୋ ଯୁବତୀ ।
ଗାଇବି ଗୋ ବୀଣା ମୁହିଁ ନାଚ ବେଢ଼ାଚାରି
ଦେଖନ୍ତୁ ସ୍ୱାମୀ ମୋହର ଗଣିକାର ନାରୀ ।
ଲକ୍ଷ୍ମୀ ବୋଇଲେ ଅଇଲି ମୁହିଁ ବେଶ ହୋଇ
ତେଣୁ ଏମୋତେ ଦେଖିଲା ବେଶ୍ୟା ତୁଲେନେଇ
ଯାହାର ପ୍ରଭୁ ଶ୍ରୀହରି ବ୍ରହ୍ମାଣ୍ଡ ଠାକୁର
ତାହାକୁ ପୁଣିଏ ମୋଢ଼ୀ ବୋଲେ ନାଟ୍ୟକାର
ଏତେକ ପାଞ୍ଚି କମଳା କହିଲେକ ପୁଣି
ବୋଇଲେ ଶ୍ରୀହରିର ମୁଁ ଅଟଇ ଘରଣୀ ।
ଜନ୍ମେ ଜନ୍ମେ ଶ୍ରୀହରିଯେ ମୋର ପ୍ରାଣନାହା
ହରି ମୋର ପ୍ରଭୁ ମୋର ନାମ ହରିପ୍ରିୟା ।
ସରସ୍ୱତୀ ବୋଇଲେ ଗୋ ଶୁଣ କମଳିନୀ
ହରିଙ୍କୁ ଭରସା ଏବେ କଲ ତୁମ୍ଭେ ଆଣି ।
ହରି ଶବ୍ଦର ଅର୍ଥ ତ ନାନାବିଧ ଅଟେ
ବାୟସ ଭେକ ମର୍କଟ ସିଂହ ମୃଗେ ଖଟେ ।
ହରିରେ ହରି ଶବଦ ଶୁଭେ ଆଗ ମୁଖେ
ଗଜକୁ ହରି ବୋଲିଣ ବୋଲନ୍ତିତ ଲୋକେ ।
ଏତେ ଜନ୍ତୁଠାବେ ଜାଣ ପ୍ରବର୍ତ୍ତଇ ହରି
କେଉଁ ହରିଙ୍କୁ ଗୁରସ୍ତ ଅଛ ତୁମ୍ଭେ କରି ।
ବୋଇଲେ ଲକ୍ଷ୍ମୀ ମୁହିଁ ତ ପାରିଲି ଜିଣି
ବ୍ରହ୍ମାଣ୍ଡ ଠାକୁରଙ୍କୁ ଏ କପି କଲା ଆଣି ।
ଛାର ସିଂହ ଭେକ କାକ ସଙ୍ଗେ ଲକ୍ଷ୍ୟ କଲା
ଏହାର ତ ଅପରାଧ ମୋର କିସ ଗଲା ।
ବିଚାରିଲେ ତାର ମୋର ଅଟନ୍ତି ସେ ପ୍ରଭୁ
ସପତ୍ନୀ ହିଂସାରେ କରୁଅଛୁ ଆମ୍ଭେ ସବୁ ।
ଏତକ ପାଞ୍ଚି ବୋଇଲେ ଶୁଣ ଧବଳାଙ୍ଗ
ଗୋବିନ୍ଦ ହେଲେହେଁ ମୋର ଅଟନ୍ତି ଅର୍ଦ୍ଧାଙ୍ଗ
ମୁଁ ମହାଲକ୍ଷ୍ମୀ ବୋଲାଇ ସେହି ଲକ୍ଷ୍ମୀନାହା
ନ ଜାଣିଣ ମତ୍ତଗର୍ବେ ବୋଲ ତୁମ୍ଭେ ଏହା ।

ଶାରଦା ବୋଇଲେ ମୋର ଚଉମଥା ଦେଖି
ତେଣୁ ଧବଳାବୋଇଲା ମୋତେ କମଳାକ୍ଷୀ
ଶାରଦା ବୋଇଲେ ଆଗୋ ଲୁଣିଆର ଝିଅ
ପତିକରି ଗୋବିନ୍ଦଙ୍କୁ ସମର୍ଥ କି ଦେହ ।
ଗୋ ଶବଦ ବୁଝାଏ ଯେ ଶରୀରଯାକକୁ
ଶରୀରେ ବନ୍ଦିଲେ ସିନା ଜାଣି ଗୋବିନ୍ଦଙ୍କୁ ।
ସେ ଯେ ଶରୀରକୁ ଜାଣ ସର୍ବଦେହେ କହି
ଏମନ୍ତ ଗୋବିନ୍ଦ ତୁମ୍ଭ ଅର୍ଦ୍ଧଅଙ୍ଗ ହୋଇ ।
ଭାଳନ୍ତ ଶାରଦା କଥା ଶୁଣି କମଳିନୀ
ଭଲା ପାମରୀକୁ ମୁହିଁ ନ ପାରିଲି ଜିଣି ।
ଯେବଣ ଶ୍ରୀଗୋବିନ୍ଦ ଏ ସଂସାରର ସାର
ତାହାଙ୍କୁ ଚ ଲେଖା କଲା ଯାବତ ଶରୀର ।
ଗୋବିନ୍ଦ ବୋଲନ୍ତେ ଛାଇ ଦେହକୁ ବୋଇଲା
ଏହାର ତେବେ ଗୁରସ୍ତ ଆଉ କିଏ ହେଲା ।
ମୁହିଁ ବରୁଣର ଘରେ ଥିଲି ଦିନାକେତେ
ତେଣୁ ଏ ଲୁଣିଆଝିଅ ବୋଇଲା ଯେମୋତେ
ଏମନ୍ତ ପାଞ୍ଚି କହନ୍ତି ଲକ୍ଷ୍ମୀହୋଇ କ୍ରୋଧ
ବୋଲଇ ଛାର ଦେହକୁ ତୁମ୍ଭେ ତ ଗୋବିନ୍ଦ
ଗୋବିନ୍ଦ ପ୍ରଭୁ ଯେବେଗୋ ହୋଇଲେ ଶରୀର
ତେବେ ତୁମ୍ଭର ଗୁରସ୍ତ କେବଣ ନାଗର ।
ଶାରଦାବୋଇଲେ ସଖି ଟେରୀ ଯେତେ ଲୋକ
ତୁମ୍ଭର ପରା ନ ଚିହ୍ନି ପଚାରନ୍ତି ବାକ୍ୟ ।
ଆପଣ ସ୍ୱାମୀକୁ ମୋର ଯେବେ ଚିହ୍ନିନାହିଁ
ଦେଖ ତେବେ କମଳାଗୋ ସର୍ବଲୋକ ଦେହ
ଅଛନ୍ତି ସବୁରି ହୃଦଗତେ ବିକେକରି
ଶଙ୍ଖ ଚକ୍ର ଗଦା ପଦ୍ମ ଚାରିଭୁଜେ ଧରି ।
ଏରୂପେ ଯେବେ ନ ଚିହ୍ନ ଆନରୂପ ଦେଖ
କି କାଜ୍ଜ୍ୱଲ୍ୟମାନ ଜ୍ୟୋତି ନାରାୟଣ ମୁଖ ।
କୋଟି ଲାବଣ୍ୟ କୁମୁଦ ବନ୍ଧୁଙ୍କର ପ୍ରାୟେ
ପ୍ରକାଶ ହୋଇଅଛନ୍ତି କୀଟୁ ବ୍ରହ୍ମଯାଏ ।
ଏମନ୍ତ ସ୍ୱାମୀଙ୍କୁ ମୋର ନ ଚିହ୍ନ ଗୋ ଯେବେ
ଅନନ୍ତଶଯ୍ୟାରେ ଶୋଇଛନ୍ତି ବାସୁଦେବେ ।
ମୋହର ମହିମା ଜାଣ ସଂସାରେ ଦୁର୍ଲ୍ଲଭ
ତେଣୁ ବୋଲନ୍ତି ମୋ ସ୍ୱାମୀ ଭାରବୀବଲ୍ଲଭ
ଲକ୍ଷ୍ମୀ ବୋଇଲେ ଏଥର ନ ପାରିଲି ଜିଣି
ଲୁଣିଆଝିଅ ତ ମଧ୍ୟେ ବୋଲିଥିଲା ପୁଣି ।
ଏବେତ ହୋଇଲା ଟେରୀ ଅଲକ୍ଷଣୀ ମୋତେ
ମୋ ଠାରୁ କେଡ଼େ ସୁନ୍ଦର ଅଛନ୍ତି ଜଗତେ ।
ଏମନ୍ତ ଭାଳି କହିଲେ ଲକ୍ଷ୍ମୀ କୋପ ହୋଇ
କହିବି ଗୋ ଶୁଣ ସଖି ତୁମ୍ଭର ଯେ ଗୋଇ

ସମସ୍ତେ ବୋଲନ୍ତି ନୀଚଛୁଆ ସରସ୍ୱତୀ
ତାହାଙ୍କୁ କେମନ୍ତେ ହରି ପାଖରେ ବସାନ୍ତି ।
ନୀଚ କଣ୍ଠରେ ଆପଣ ବସ ତେବେ ସିନା
ସେହେତୁ ଲୋକେ ତୁମ୍ଭଙ୍କୁ କରନ୍ତି ଭାବନା ।
ଶାରଦା ବୋଇଲେ ବାଣୀ କହିଲା ତ ରଣି
ବିଧିରେ ମୋହର ନାମ ଅଟଇ ତ ବାଣୀ ।
ମୁଁ ଯେବେ ନ ଥାନ୍ତି ସମସ୍ତଙ୍କ ଜିହ୍ୱାଗ୍ରତେ
ଆଉ କି ଲୋକ ପାଳନ ହୁଅନ୍ତେ ଜଗତେ ।
ଏକଥା ନ ବୁଝି ଛୁଆଁ କହିଲା ଆମ୍ଭଙ୍କୁ
ନୋହିଲେ କି ବାରଲକ୍ଷ୍ମୀ ବୋଲନ୍ତି ଏହାକୁ
ଶାରଦା ବୋଇଲେ ତେବେ ଶୁଣଗୋକମଳା
ବେଶ୍ୟାଙ୍କୁ ହେଲେ ସରବେ ବୋଲନ୍ତିଚଞ୍ଚଳା
ବରୁଣ ଝିଅ ଚଞ୍ଚଳା ପରାୟେ ଯେ ହୋଇ
ଘର ଘର ସାଇ ସାଇ ବୁଲି ମରୁଥାଇ ।
ସବୁଙ୍କୁ ସମାନ କରଇ ନ ଦିଅଇ ଗ୍ରାସ
ଜଣକୁ ବଡ଼ କରି ଜଣକୁ ନିରାଶ ।
ଯାହାକୁ ଚାହିଁବ ସେହୁ ହୁଏ ଧନୀ ଭୋଗୀ
ବିନ ନସରେ ପଡ଼ିଶା ଘରେ ମୂଲ ଲାଗି ।
ଏଣୁ ଲକ୍ଷ୍ମୀକୁ ସରବେ ବୋଲନ୍ତି ବାତୁଳା
ଏକଥା ଭଲ କରିଣ ବୁଝ ଗୋ କମଳା ।
ଲକ୍ଷ୍ମୀ ବୋଇଲେ ଭଲା ଏ ଉଘାଇଲା ମୋତେ
ମୁଁ ଯେଣୁ ଲକ୍ଷ୍ମୀ ହୋଇଣ ବୁଲିଲି ଜଗତେ
ବସିଲି ସବୁରି କର୍ମମୂଳେ ଘେନି ଶିରୀ
ତେଣୁକରି ଚଞ୍ଚଳା ଏ ବୋଇଲା ପାମରୀ ।
ଏ ଛାର କଥାକୁ କିସ କରିବା ଶୋଚନା
ଆମ୍ଭେ ଦୁଃଖକଲେ ନାଶଯିବେ ଲୋକସିନା
ଏହିମତି ମନେ ମନେ ଭାଳି କମଳିନୀ
ଲେଉଟି କଥାଏ ପୁଣି ଉଚ୍ଚାରିଲେ ପୁଣି
ବୋଇଲେ ଶାରଦା ମାଗୋ ଶୁଣିମା ଏଥର
ତୁମ୍ଭର ବାପ ଅଟନ୍ତି ପରା ବେଦବର ।
ଅବିବେକ କଥା ତାର କହିଲେ ନ ସରେ
ଯୁବା ଯୁବତୀ ଲୋକଙ୍କୁ ବିଧବା ଯେ କରେ ।
ଜଣ ଜଣଙ୍କୁ ଆୟୁଷ ଦିଏ ଶଏ ଶଏ
ଆଉ ଥୋକେଲୋକଙ୍କୁ ଯେ କରେ ଗର୍ଭୁକ୍ଷୟେ
ତେଣୁକରି ବୋଲନ୍ତି ଯେ ତାକୁ ଅବିବେକୀ
ଶୁଣିକରି ଶାରଦା ଯେ ହସିଲେ ମୁରୁକୀ ।
ସରସ୍ୱତୀ ବୋଇଲେ ଗୋ ଏକଥା ସ୍ୱରୂପ
ତୁମ୍ଭର ବାପ ପ୍ରାୟ କି ହେବ ଆମ୍ଭ ବାପ ।
ମୋ ପିତା ତୁମ୍ଭ ବାପକୁ ଯେଣୁ ସର୍ଜିଲେଟି
ବରୁଣ ନାମକୁ ବାଛି ଦେଲେ ପରମେଷ୍ଠୀ ।
ତେଣୁ ତୋ ବାପ ଲୁଣିଆଁ ସମୁଦ୍ରରେ ଥାଇ
ଅହୋରାତ୍ର ସେ ବରୁଣ ଗର୍ଜି ମରୁଥାଇ ।
ମୋର କଥା ଯେବେ ମିଛ ବାପକୁ ଯେ ପୁଛ
ଶୁଣିକରି ଲକ୍ଷ୍ମୀମନେ ପାଇଲେ ସଙ୍କୋଚ ।
ମନେ ପାଞ୍ଚିଲେ ଏହାକୁ ନ ପାରିଲି ଜିଣି
କେଡ଼େ ଅନୀତି କହିଲା ମୋତେ ଯୋଗିଆଣୀ
କେଡ଼େ ବଡ଼କଥା ମୋତେ ଉଘାଇଲା ଆଣି
କି କହିବି ଏହାକୁ ଏ ମୋର ସପତଣୀ ।
କ୍ରୋଧେ କମଳା ବୋଇଲେ ଶୁଣ ଆଗୋସଖି
ମୋ ଅନ୍ନ ନ ଖାଇ ତୁମ୍ଭେ ଜୀଇଁବକି ଦେଖି
ମୋର ଅନ୍ନ ଯେ ଖାଇଲେ ସମସ୍ତେ ବର୍ଦ୍ଧିତ
କୀଟୁ ବ୍ରହ୍ମଯାଏ ଯେତେ ଅଛନ୍ତି ଜଗତ ।
ମୋ ଦ୍ରବ୍ୟ ଭୁଞ୍ଜି ଆପଣେ ଅଛ ସଦା ବର୍ତ୍ତି
ଭଣ୍ଡୁଅଛ ଜନମନ ଆଗୋ ସରସ୍ୱତୀ ।
ଶୁଣି ଶାରଦା ପାଞ୍ଚନ୍ତି ପୁଣି ମନେ ମନେ
ଏହାକୁ ବିଧାନ ଲକ୍ଷ୍ମୀ ବୋଲନ୍ତି ତ ଜନେ ।
ଏହାର ଅନ୍ନ ହେଲେହେଁ ସର୍ବଲୋକ ଖାଇ
ଦେଇ ପୁଣ ଉଘାଇଲେ ଘୋର ନର୍କେଯାଇଁ
ଦେବା ଦୟା ଆଦି ଧର୍ମ ସବୁ ବ୍ୟର୍ଥ ହୁଏ
ଏତେ ପାଞ୍ଚଣ ଶାରଦା କହିଲେ କଥାଏ ।
ସରସ୍ୱତୀ ବୋଇଲେ ଗୋ ଶୁଣ ବିଷ୍ଣୁରାଣୀ
ମୁଁ ହେଲେ ଏକବିଦ୍ୟା ଗୋଟିକେ ନାହିଁ ପୁଣି
ଅଭେଦ ବିଦ୍ୟାଯାକେ ଅଛି ମୁହିଁ ପୁରି
ତେଣୁ ମୋ ନାମ ଶାରଦା ବେଦରେ ଉଚ୍ଚାରି
ସେ ବିଦ୍ୟାମାନଙ୍କର ଗୋ ଶୁଣ ତେବେ ନାମ
ପ୍ରଥମେ ବିଦ୍ୟା ପାଷାଣ କାଷ୍ଟେ ଧାତୁକାମ ।
କାଂସ ଲୌହବିଦ୍ୟା ଯେହୁ କ୍ଷତ୍ରୀବିଦ୍ୟା ପୁଣି
ବୋନାଟକ ବିଦ୍ୟାଗୁଣ ଆଦି ବିଦ୍ୟା ଘେନି ।
ସକଳ ଶାସ୍ତ୍ର ଆବର ବିଦ୍ୟା କୃଷିକାର
ମୃତ୍ତିକା ଘଟଣ ବିଦ୍ୟା ଆଉ ରୋଷକାର ।
ଲୌହାଦି ବସ୍ତୁ ଚିତ୍ରପିତୁଳା ବିଦ୍ୟା ମଧ୍ୟେ
ଏ ଚଉଦ ବିଦ୍ୟାକୁ ମୁଁ ବହିଅଛି କନ୍ଧେ ।
ତିନିପୁରକୁ ସାର ଏ ଚତୁର୍ଦ୍ଦଶ ବିଦ୍ୟା
ଏହି ବିଦ୍ୟାଯାକ ବହି ମୋ ନାମ ଶାରଦା ।
ତୁହି ଗୋ କମଳା ଯାହା ବସିଅଛୁ ପିନ୍ଧି
ଶରୀର ଭୂଷଣ ନାନା ଅଳଙ୍କାର ବିଧି ।
ଏ ଘଟଣା ବିଦ୍ୟା ଯେବେ ନ ବହନ୍ତି ମୁହିଁ
କିସ ପିନ୍ଧି ଆସିଥାନ୍ତୁ କହ ସଜ ହୋଇ ।
ଏସନ ଉତ୍ତର ଯହୁଁ କଲେ ବାକ୍ୟଦେବୀ
ଶୁଣିକରି ବସିଲେ ଯେ ଲକ୍ଷ୍ମୀ ହୋଇ ସ୍ତମ୍ଭୀ ।

ସହଜେ ଚୌଦ ବିଦ୍ୟାରେ ପୃଥ୍ୱୀସବୁ ଗଲା
ଲକ୍ଷ୍ମୀ ଆଉ ପାଞ୍ଚନ୍ତେଣ ବାକ୍ୟ ନ ସ୍ଫୁରିଲା ।
ମନ ମଧ୍ୟେ ମହାଲଜ୍ଜା ପାଇ କମଳିନୀ
ଉଠି ଶାରଦାକୁ କୋଳ କଲେ ସେହିକ୍ଷଣି ।
ସେହିଠାରୁ ଦୁହେଁ ଯାକ ହେଲେ ହସାହସି
ମନରୁ ସନ୍ତାପ ଛାଡ଼ି ଏକତ୍ୱରେ ମିଶି ।
ମହାଲକ୍ଷ୍ମୀ ଶାରଦାର ହର୍ଷ ହେବା ଦେଖି
ଉଠିଲେକ ନାରାୟଣ ମଳି ବେନି ଆଖି ।
ବୋଇଲେ ଏହା ନକଲେ ଅସମ୍ଭବ ଯଶ
ଅବଶ୍ୟ କାଳେ କହିବି ଲକ୍ଷ୍ମୀ ମନେ ରୋଷ ।
ବିଚାରିବେ ଶାରଦାକୁ ଜିଣାଇଲେ ହରି
ମୋତେ ହରାଇଲେ ଏଡ଼େ ଏ କପଟ କରି ।
ପାଞ୍ଚିବ ଏ କଥା ଯାହା ମନେ ଧରି ତାପ
ତହିଁକି କଥାର ଆମ୍ଭେ କହିବା ପ୍ରସ୍ତାବ ।
ଏତେ ପାଞ୍ଚିଣ ବୋଇଲେ ଶୁଣ ବେନି ସହୀ
ଉଠିଲେ ମୁଁ ତୁମ୍ଭ କଳି ଶୁଣି ଚେତାପାଇ ।
କଳହ ଲଗାଅ କାହିଁପାଇଁ ଅନିମିତ୍ତେ
ନୀଚ ଲୋକଗୋଟି ମୂଳଲାଗି ଦିନ ବର୍ତ୍ତେ ।
ପାପୀ କୃପଣ ଚଣ୍ଡାଳ ଆଦି ଯେତେ ନରେ
ସେ ସିନା ମୁଁକାର ବହି ମରନ୍ତି ସଂସାରେ ।
ତୁମ୍ଭେ ମୋର ବେନିପ୍ରିୟା ସାଧୁଠାରୁ ଏକ
ତୁଚ୍ଛାକଥାରେ କିମ୍ପାଇଁ ଲଗାଇଲ ଗୋଳ ।



## ମନୁ ନାମକ ସାଧୁର କଥା

ଶୁଣ ଆରେ ବେନିସଖି ମୁଁକାର ବାରତା
ଶୁକ ସତ୍ୟଯୁଗେ ଥିଲେ ଏକଇ ସାଧୁତା ।
ମନୁ ବୋଲିଣ ଅଟଇ ତାହାଙ୍କର ନାମ
ନିଷ୍କଣ୍ଟକ ରାଜ୍ୟରେ ସେ ଅଟଇ ରାଜନ ।
ଅନ୍ନପୂର୍ଣ୍ଣା ନାମେ ଅଟେ ତାର ମନୋହାରୀ
ରମ୍ଭା ଉର୍ବଶୀର ତୁଲ୍ୟ ଶୋଭା ଯୁବାନାରୀ
ଧନରେ ବଡ଼ ଗରିଷ୍ଠ ଅଟେ ମହାଜନ
ପାଇଅଛି ପାଞ୍ଚପୁଅ ସଭା ମୋକ୍ଷପାନ ।
ପୁଣ୍ୟତୋୟା ନଦୀ ପାରୁଶରେ ତାର ବାସ
ଶତେଯୁଣ ଦୀର୍ଘ ପ୍ରତି ଅଟେ ତାର ଦେଶ ।
ଦାତବ୍ୟ ଅଂଶରେ ଜନ୍ମିଅଛି ମହାଜନ
ଧନଦ୍ରବ୍ୟ ପୂରିଅଛି ତାର ଗୃହମାନ ।
ଯାହାକୁ ସେ ଯେତେ ଧନ ଦେଇଥାଇ ଦେଢ଼ି
ପାଞ୍ଚପା ପ୍ରମାଣେ ନିଏ ଖନ୍ଦାରୁ ସେ କାଢ଼ି ।
ଏ ପ୍ରକାରେ ଅକଳଙ୍କ ଅଟଇ ସାଧୁତ
ଧରମବଳେ ବଢ଼ିଲା ତାର ବହୁବିତ୍ତ ।

ପଦାର୍ଥ ରଖିବାକୁ ନ ପାଇ ଗୃହେ ଜାଗା
କାହିଁ କେତେଦ୍ରବ୍ୟ ରହିଥାଏ ହୋଇ ପୁଙ୍ଗା ।
ଆହୁରି ତାର ବଢ଼ୁଛି କାହିଁ କେତେ ଧନ
ସାକ୍ଷାତେ ସାଧୁତ ଯେ ପନ୍ନଗ ନାରାୟଣ ।
ହସ୍ତେ ପଦ୍ମପାଦେ ପଦ୍ମ ଅଛଇ ତାହାର
ତେଣୁ ବଢ଼ିଛି ଅଚଳା ହୋଇ ଲକ୍ଷ୍ମୀ ତାର ।
ଗୃହ ମହିମା କହିବା ତୁମ୍ଭ ଆଗେ ଶୁଣ
ସୁବର୍ଣ୍ଣରେ ଖମ୍ବସବୁ ହୋଇଛି ନିର୍ମାଣ ।
ସୁବର୍ଣ୍ଣର ଗୁଅ ବତା ସୁନା ଶେଣି କରି
ବାନ୍ଧିଛି ଚାରିପାଖରେ ସୁବର୍ଣ୍ଣ ପାଚେରୀ ।
ଗୃହକୁ ଉଠି ଯିବାକୁ ସୁବର୍ଣ୍ଣ ପାବଚ୍ଛ
ଉପରେ ଚାନ୍ଦୁଆ ଅଛି ସୁବର୍ଣ୍ଣ ନିଘଞ୍ଚ ।
ସୁବର୍ଣ୍ଣ ପିଢ଼ା ଉପରେ ବସେ ମହାଜନ
ସୁବର୍ଣ୍ଣ ଥାଳି ଗିନାରେ କରଇ ଭୋଜନ ।
ଥାଳିର ଚାରି ପାରୁଶେ ସ୍ୱର୍ଣ୍ଣ ଦୀପାବଳି
ସୁବର୍ଣ୍ଣ ଗଡ଼ୁ ଧରିଣ ମୁଖକୁ ପଖାଳି ।
ସୁବର୍ଣ୍ଣର କରାଟରେ ଆଚମନ ନିତି
ସୁବର୍ଣ୍ଣ ଖଡ଼ିକାରେ ସେ ଖୁଣ୍ଟେ ଦନ୍ତପନ୍ତି ।
ସୁବର୍ଣ୍ଣ ଭାଣ୍ଡରେ ଅନ୍ନ ପଖାଳେ ତା ରାଣୀ
ସୁବର୍ଣ୍ଣ ଢାଳରେ ନିତି ସାରୁଥାଏ ପାଣି ।
ସୁବର୍ଣ୍ଣ କଠାଉ ମାଡ଼ି ଚାଲଇ ସାଧୁତ
ଏ ରୂପେ ଦ୍ରବ୍ୟ ତାହାର ହେଲା ଅପ୍ରମିତ ।
ଗୋରୁ ମଇଁଷି ଯେ କେତେ କଳନାତ ନାହିଁ
ପୋଢ଼ୁଅ ମେଷ ଛାଗଳେ ପୂରିଅଛି ମହୀ ।
ଧର୍ମବଳୁ ସଞ୍ଚିଣ ସେ ବହୁତ ଯେ ଧନ
ଏହିରୂପେ କଟାଏ ତା କାଳ ପ୍ରତିଦିନ ।
ଏଥୁଅନ୍ତେ ଏକଦିନେ କର୍ମର ଆୟତ୍ତ
ଦ୍ୱାରେ ସଭାକରି ବସିଥିଲା ସେ ସାଧୁତ ।
ଏମନ୍ତ ସମୟେ ରାତ୍ର ଯାମେ ହ୍ୱନ୍ତେ ଆସି
ପତ୍ନୀ ତାର ମେଢ଼ଫୁଲି ରାନ୍ଧିସାରି ବସି ।
ସମସ୍ତ ଯୋଗାଡ ସିଦ୍ଧ କଲାକ ତରୁଣୀ
ପୁତ୍ରକୁ ବୋଲେ ପିତାକୁ ଡାକିଆଣ ବେନି ।
ଉଛୁର ହେଉଛି ବେଗେ କରିବେ ମଣୋହି
ମାତା ବୋଲେ ପୁତ୍ର ପୁଣି ଗଲାବେଗ ହୋଇ
କୁମର ବୋଇଲା ତାତ ଆସ ଭିତରକୁ
ମାଏ ଡାକୁଛନ୍ତି ତୁମ୍ଭେ ଭୁଞ୍ଜି ବସିବାକୁ ।
ପୁତ୍ରବାକ୍ୟ ଶୁଣି ବାପ ଉଠିଲେ ତକ୍ଷଣ
ସୁବର୍ଣ୍ଣ କଠାଉ ଲାଗି ହୋଇଲେ ଆପଣ ।
ଗୃହେ ପଶନ୍ତେ ବା ଗୋବତ୍ସା ଅଛି ଶୋଇ
ଏକେ ତ ଅନ୍ଧାର ନିଶା ନ ଦିଶଇ ଭୂଇଁ ।

ସବୁକାଳେ ଗୋଶାଳାରେ ଜଳଇ ଦିହୁଡ଼ି
ଯୋଗେସେ ଦିନ ଲୋକେତ ନ ରଖିଲେ ହୁଡ଼ି
ଏଥିଉତାରୁ ସାଧୁତ ଗମନର ବେଳେ
ଗୋବତ୍ସା କଣ୍ଠେ କଠାଉ ପଡ଼ିଲାକ ହେଳେ ।
ସୁବର୍ଣ୍ଣ କଠାଉ ପଡ଼ି ଗୋବତ୍ସାର ଗଳା
ଦିନକର ବାଛୁରୀ ସେ ଫାଟିଲା ତା ନଳା ।
ସାଧୁ ତ ଦେଖୁ ଦେଖୁ ସେ ହାରିଲା ଜୀବନ
ଅପରାଧ ହେଲା ବୋଲି ଡାକି ମହାଜନ ।
ପାଞ୍ଚଇ ଗୋହତ୍ୟା ମୁହିଁ କଲଇଁ ପାମର
ଏତେ ବୋଲି ରାମନାମ ଧଇଲା ଅପାର ।
ପ୍ରଭାତେ ସ୍ନାନସାରି ସେ ବିପ୍ରେ ଦାନ ଦେଲା
ସକଳ ମନ୍ଦିରେ ଯାଇ ଦରଶନ କଲା ।
ଅନେକ ପ୍ରକାରେ ସେହୁ କଲା ଦାନ ଧ୍ୟାନ
ଏକୁ ଆରେକ ଶୁଣିଲେ ହେଲା କାନୁକାନ ।
ମର୍ତ୍ତ୍ୟମଣ୍ଡଳ ଯାକରେ ହୋଇଲା ବାରତା
କେ ବୋଲଇ ମହାଜନ କଲା ଗୋରୁହତ୍ୟା ।
ଗୋରୁବଧରେ ତ ପାପ ଲେଖିଛି ଅପାର
ଏ ପାପ ଏକା ନାଶଇ ସେବିଲେ ଶଙ୍କର ।
କେ ବୋଲଇ ଗଙ୍ଗାଗଲେ କିମ୍ବା ଗୋଦାବରୀ
ତହିଁରେ ସ୍ନାନ କଲେ ଏ ପାପୁ ଯିବ ତରି ।
କୋ ବୋଲଇ ବିଷ୍ଣୁ ନାମ ଜପୁ ମହାଜନ
ସେ ପାପ ତାର ଛେଦିବେ ପ୍ରଭୁ ଭଗବାନ ।
କୋ ବୋଲଇ ସେବିବ ସେ ଯେବେ ଗୁରୁ ସେହ୍ନେ
ଏ ପାପ ଛାର ତାହାର ରହିବ କି ଦେହେ
କେ ବୋଲଇ କେତେହେଁ ସେ କଲା ଦାନ ଧ୍ୟାନ
ଅବଶ୍ୟ ପାପ ତାହାର ନେଲେ ଭଗବାନ ।
ଏମନ୍ତରେ କୁହାକୁହି ହ୍ୱନ୍ତେ ଲୋକବର୍ଗ
ସେ କଥା ବୁଝିଲେ ଚିତ୍ରସେନ ଥାଇ ସ୍ୱର୍ଗ ।
ମର୍ତ୍ତ୍ୟକୁ ବୁଲି ଆସିଣ ଶୁଣିଲେ ସେ କଥା
ସୁଧର୍ମା ସଭାରେ ଯାଇ କହିଲେ ବାରତା ।
ବୋଇଲେକ ହେ ଶୁଣିବା ହେଉ ଏକବାଣୀ
ମର୍ତ୍ତ୍ୟୁ ଆଜି ବାରତାଏ ଅଇଲି ମୁଁ ଶୁଣି ।
ଜଣେ ମହାଜନ ପୁଣ କଲା ଗୋରୁହତ୍ୟା
ସମସ୍ତେତ କୁହାକୁହି ହୁଅନ୍ତି ସେ ବାର୍ତ୍ତା ।
ବୋଇଲେ ସାଧୁତ ଅରଜିଲା କେଡ଼େ ପାପ
ଥୋକାଏ ବୋଲୁଅଛନ୍ତି କଲା ବିଷ୍ଣୁ ଜପ ।
ଏହୁ ଦୁଇକଥା ଶୁଣି ଅଇଲି ସେଠାରୁ
ତୁମ୍ଭେ କହ ତ ମରମ ବୁଝିବା ବିଚାରୁ ।
ଦେବେ ବୋଇଲେ ତେବେ ହେ ଶୁଣ ଚିତ୍ରସେନ
ତାହାକୁ ବୋଇଲେ ଭଲ ଯେବେ ସର୍ବଜନ ।

ତେବେ ସେ ତାହାର ପାପ ନେଲେ ଚକ୍ରପାଣି
ସେ କଥାଟି ଧ୍ରୁବ ତେବେ କହିଲୁ ଯେ ପୁଣି ।
ଯାହାକୁ ବୋଇଲେ ମର୍ତ୍ତ୍ୟଲୋକେ ଜାଣ ଭଲ
ସେ ଲୋକଟି ଏ ସଂସାରେ ଲଭଇ କୈବଲ୍ୟ
ମହାଜନକୁ ବୋଇଲେ ଯେବେ ଭଲ ଜନ
ତେବେ ସେ ତାହାର ପାପ ନେଲେ ଭଗବାନ
ବ୍ରହ୍ମାଣ୍ଡେ ବୋଲନ୍ତି ଦେବରାଜ ଯେଣୁ ହରି
ତେଣୁ ସେ ଜନ ପାପକୁ ଖଣ୍ଡନ୍ତି ମୁରାରି ।
କୁମର ଯେତେକ ପାପ କରଇ ନ ଜାଣି
ତାର ବାପ ସେ ପାପର ହୁଅଇ କାରେଣୀ ।
କରନ୍ତି ରାଜ୍ୟର ଲୋକମାନେ ଯେତେ ପାପ
ସେ ପାପଯାକକୁ ଭୋଗ କରଇ ସେ ନୃପ ।
ନୃପତିର ପାପଭାର କରେ ପୁରୋହିତ
ପୁରୋହିତ ପାପ ଭୋଗ କରେ ଗଙ୍ଗାମାତ ।
ଜଳେ ବୁଡ଼ିଲେ ଶରୀରୁ ପାପ ଯାଏ ଛାଡ଼ି
ଗୁରୁଙ୍କୁ ସେବିଲେଟି ଶିଷ୍ୟ ପାପ ବଢ଼ି ।
ଭାରିଯାମାନେ କରନ୍ତି ପାପ ଯେତେଠାରେ
ଗୁରସ୍ତ ତାର ସେ ପାପକାର୍ଯ୍ୟ ଭୋଗକରେ ।
ସଭାରେ ବହନ୍ତି ପଣକରି ଯେତେ ଜନ
ସେ ପାପ ଯୋଗୁ ସମ୍ପତ୍ତି ହୁଏ ତାର କ୍ଷୀଣ ।
ପର ଯୁବତୀର ସଙ୍ଗେ କରେ ଯେହୁ ରତି
ସେ ପାପଯାକ ଭୋଗ ସେ କରଇ ଯେ ନିତି
ଯେଣୁ ସେହି ନାରାୟଣ ବ୍ରହ୍ମାଣ୍ଡ କାରଣ
ତେଣୁ ସେହି ଲୋକ ପାପ କରନ୍ତି ଖଣ୍ଡନ ।
ବୋଇଲେ ଏସନ ବୋଲି ଯହୁଁ ଦେବତାଏ
ତକ୍ଷଣେ ଲାଗିଲା ପାପ ଯାଇ ବିଷ୍ଣୁ କାୟେ ।
ଦିନୁଦିନ ଅଶକତ ହୋଇଲା ଶରୀର
ରୋଗୀଲୋକ ପ୍ରାୟ ଦେଖାଗଲେ ଦାମୋଦର ।
ଦେବତାମାନେ ନେଇଣ ଲଦିଲେକ ପାପ
ତେଣୁକରି ମହାପ୍ରଭୁ ହୋଇଲେ କୁରୂପ ।
ଯହିଁ ବସିଲେ ଚାହାଁନ୍ତି ସେ ଯେ ମିଟି ମିଟି
ଡାକିଲେ ଦଣ୍ଡକେ ଯାଇ ଶୁଣନ୍ତି ପାଲଟି ।
ଏହିରୂପେ ଅଶକତ ହୋଇ ଦୟାନିଧି
ବୈଦ୍ୟଡ଼କାଇ ବୋଇଲେ ବୁଝ ମୋର ବ୍ୟାଧି
ଯେତେ ଔଷଧ ଦିଅନ୍ତି ବୈଦ୍ୟମାନେ ଜାଣ
ସବୁ ଆଘ୍ରାଣ କରନ୍ତି ବଳେ ନାରାୟଣ ।
କାହାରି ଔଷଧେ ଭଲ ନୁହନ୍ତି ସେ ପ୍ରଭୁ
ବୈଦ୍ୟକୁ ବୋଇଲେ ଏବେ ଯାଅ ତୁମ୍ଭେ ବାବୁ
ଶୁଣିଣ ବଇଦମାନେ ଗଲେ ତହୁଁ ଚଳି
ଶୁଣ ବେନି ବାମା କହନ୍ତି ଯେ ବନମାଳୀ ।

ଏଥୁଅନ୍ତେ ପ୍ରଭୁ ଦିନେ ହେମନ୍ତ କାଳରେ
ପିଠିଦେଇ ବସିଛନ୍ତି କୁଆଁରୀ ଖରାରେ ।
ଦେହରେ ବେଦନା ପାଇ ବିସ୍ମୟ ଶ୍ରୀହରି
ଦେଖିଲେ ବାଟରେ ଯାଇଛନ୍ତି ଧନ୍ୱନ୍ତରୀ ।
ତକ୍ଷଣେ ଧନ୍ୱନ୍ତରୀକି ରାଇଲେ ମୋହନ
ବୋଇଲେକ ବୁଝ ଦେଖି ମୋର ଦେହଗୁଣ ।
ତହିଁକି ପ୍ରବଳ ହୋଇଲାକ ଏବେ ବ୍ୟାଧି
କେତେରୂପେ ଖାଇଲିଣି ପୁଣି ମହୌଷଧି ।
ଭଲ ନୋହିତ ଆବିଳ ହେଲା ସବୁବେଳେ
ଏହାକୁ ବୁଝି ଆପଣ କହିବ ତକ୍ଷଣେ ।
ଗୋବିନ୍ଦଙ୍କର ବିକଳ ଦେଖି ଧନ୍ୱନ୍ତରୀ
ନାଡ଼ୀଗୋଟି ଚିହ୍ନିଲେ ଶ୍ରୀପଦ୍ମ କର ଧରି ।
ତତକ୍ଷଣ ଗଲେ ଚିହ୍ନି ଦେହ ପରିଗୁଣ
ବୋଇଲେ ବ୍ୟାଧି ନୁହଇ ଏ ତ ନାରାୟଣ ।
ମଞ୍ଚେ ଯେଉଁ ମହାଜନ କଲା ଗୋରୁହତ୍ୟା
ପଡ଼ିଲା ଦେବଲୋକରେ ତାହାର ବାରତା ।
ଦେବେ ବୋଇଲେ ଜପିଲା ସେ ଯେ ବିଷ୍ଣୁନାମ
ତେବେ ତାର ପାପ ନେଲେ ପୁରୁଷ ଉତ୍ତମ ।
ଏହା ବୋଲନ୍ତେ ଲାଗିଲା ତୁମ୍ଭଙ୍କୁ ଯେ ଦୋଷ
ତେଣୁ ତୁମ୍ଭେ ଅଶକତ ହେଲ ପୀତବାସ ।
ପ୍ରଭୁ ବୋଇଲେ କେମନ୍ତେ ହେବ କହ ସୁଖ
ଧନ୍ୱନ୍ତରୀ ବୋଇଲେ ହୋ ଶୁଣ ପଦ୍ମମୁଖ ।
ହୋଇବ ଏ ପାପ ଏକା କଥାରେ ଦହନ
ସ୍ମରଣ କରିବ ଯେବେ ତୁମ୍ଭେ ତୁମ୍ଭ ନାମ ।
ତେବେ ଏ ଦୋଷ ତୁମ୍ଭର ନ ରହିବ ଦେହେ
ପର କଲା ପାପ ସିନା ଯିବ କ୍ଷଣେ କ୍ଷୟେ ।
ଆହେ ପ୍ରଭୁ ତୁମ୍ଭେ ସର୍ବ ପାପକର ଧ୍ୱଂସ
ତୁମ୍ଭ ଚରଣେ ଶରଣ ପୀତାମ୍ବର ଦାଶ ।



## ନୃସିଂହ କବଚ

ଶୁଣ ହେ ନାରଦ ମୁନି କହେ ବେଦବର
ନୃସିଂହ ପୁରାଣ ଶୁଣି ପାପ କ୍ଷୟ କର ।
ଏତେ କହି ଧନ୍ୱନ୍ତରୀ ହୋଇଲେ ଅନ୍ତର
ଆପଣାର ନାମଗୋଟି ପଢ଼ି ଦାମୋଦର ।
ଆପେ ମନ୍ତ୍ର କରିଣ ଦିଗବନ୍ଧନ କରି
ଅଙ୍ଗନ୍ୟାସ କରନ୍ୟାସ ତାଳି ତ୍ରୟ ମାରି ।
ରେଚକ ପୂରକ କୁମ୍ଭକାଦି ସେହୁ କଲେ
ଆପଣାର ନାମ ପ୍ରଭୁ ଆପଣେ ପଢ଼ିଲେ ।
ସୁମରନ୍ତି ପାଦ ମୋର ରଖନ୍ତୁ ଗୋବିନ୍ଦ
ରକ୍ଷା କରନ୍ତୁ ମୋ ଜାନୁଭାର ଆଦିକନ୍ଦ ।
କେଶବ ରକ୍ଷା କରନ୍ତୁ ମୋର ଉରସ୍ଥାନ
ସୁରକ୍ଷା କରନ୍ତୁ କଟିଭାଗ ଭଗବାନ ।
ବାମନ ମୂର୍ତ୍ତି ରଖନ୍ତୁ ମୋର ମଳଦ୍ୱାର
ନାଭିକି ଅଚ୍ୟୁତ ରକ୍ଷା କରନ୍ତୁ ମୋହର ।
ଶ୍ରୀପଦ୍ମନାଭ ମୋହର ଉଦର ରଖନ୍ତୁ
ପୃଷ୍ଠଭାଗକୁ ଶ୍ରୀହରି ସୁରକ୍ଷା କରନ୍ତୁ ।
ବାମଭାଗ ରଖନ୍ତୁ ଯେ ଶ୍ରୀବିଷ୍ଣୁ ମୋହର
ମଧୁସୂଦନ ରଖନ୍ତୁ ମୋର ଦକ୍ଷିଣ କର ।
ପୃଷ୍ଠଭାଗ ବରାହ ଯେ ହୃଦ ନାରାୟଣ
ମୁଖମଣ୍ଡଳ ରଖନ୍ତୁ ମୋର ଶଙ୍କର୍ଷଣ ।
ଶ୍ରବଣମୂଳ ସୁରକ୍ଷା କରନ୍ତୁ ମାଧବ
ରଖନ୍ତୁ ଗଣ୍ଡଯୁଗଳ ମୋର ବାସୁଦେବ ।
କର୍ଣ୍ଣତଟ ରଖନ୍ତୁ ମୋ ଶ୍ରୀପୁରୁଷୋତ୍ତମ
ନାସିକା ଦ୍ୱାର ରଖନ୍ତୁ ପ୍ରଭୁ ପରଂବ୍ରହ୍ମ ।
ଜିହ୍ୱା ସ୍ଥାନ ରଖନ୍ତୁ ଯେ ଭକତ ବତ୍ସଳ
ନେତ୍ର ମୋର ରଖନ୍ତୁ ଯେ ପ୍ରଭୁ ଆଦିମୂଳ ।
ଲଲାଟ ସ୍ଥାନ ରଖନ୍ତୁ ଦେବ ହୃଷୀକେଶ
କପୋଳ ଆବୋରି ରଖନ୍ତୁ ଯେ ପୀତବାସ ।
ପୂରୁବ ଭାଗ ପୁଣ୍ଡରୀକାକ୍ଷ ରକ୍ଷାକରୁ
ଅଗ୍ନି ଦିଗଗୋଟି ମୋର ଶ୍ରୀଧର ଉଦ୍ଧାରୁ ।
ଦକ୍ଷିଣ ଦିଗକୁ ରକ୍ଷା କରନ୍ତୁ ନୃସିଂହ
ଦାମୋଦର ରଖନ୍ତୁ ଯେ ନଇରତ ଭାଗ ।
ପଶ୍ଚିମ ଭାଗ ମୋହର ରଖନ୍ତୁ ମୁରାରି
ରଖନ୍ତୁ ବାୟବ୍ୟ ଭାଗଗୋଟି ଦଇତ୍ୟାରି ।
ରଖନ୍ତୁ ଉତ୍ତରଭାଗ ମୋର ଗଦାଧର
ଐଶାନ୍ୟ ରକ୍ଷା କରନ୍ତୁ ପରମ ଈଶ୍ୱର ।
ବ୍ରହ୍ମଭାଗ ସୁଦର୍ଶନ ରଖନ୍ତୁ ଆବୋରି
ଅଧୋଭାଗ ଜଗନ୍ନାଥ ରଖନ୍ତୁ ଉଦ୍ଧାରି ।
ଏମନ୍ତ ବୋଲିଣ ଦେଲେ ଶ୍ରୀଅଙ୍ଗ ଆଉଁଷି
ତକ୍ଷଣେ ଚଣ୍ଡାଳ ଦୋଷ ପଳାଇଲା ଖସି ।
ପୂର୍ବର ଦେହ ପରାୟ ହୋଇଲା ନୂତନ
ନିରାଲମ୍ବ ଶରୀର ଯେ ଦିଶିଲା ଶୋଭନ ।
ବିଷ୍ଣୁ ବୋଇଲେ ସଖିରେ ଶୁଣ ବେନିବାମା
ଏସନ ଅଟଇ ଜଗନ୍ନାଥର ମହିମା ।
ଆରୋଗ୍ୟ ହୋଇ ବସିଲେ ଆସି ଦେବରାଜ
ବିଚାରିଲେ ହୋଇଲା ଏ ନାମେ ବଡ଼କାର୍ଯ୍ୟ
ମୋହରି ନାମକୁ ମୁହିଁ କଲଇଁ ଭଜନ
ସଂସାର ଲୋକଙ୍କୁ ଏଣେ ହେବ ମହାପୁଣ୍ୟ ।
ଯେ ଅବା ଅଜ୍ଞାନ ପାପ କରିବ ନ ଜାଣି
ଲୋକଙ୍କୁ ହୋଇବ ଏହି ନାମ ତରଙ୍ଗିଣୀ ।

ଆଜ୍କୁଁ ବଢ଼ ହେଉ ପାପ ତାରକ ଏ ମନ୍ତ୍ର
ଅପୁତ୍ରିକ ଜପିଲେ ଯେ ହେବ ତାର ପୁତ୍ର ।
ବ୍ରହ୍ମହତ୍ୟା ସ୍ତିରୀହତ୍ୟା ଗୋହତ୍ୟା ଏମାନ
କ୍ଷୟଯିବ ପଢ଼ିବ ଏ ନାମ ଯେଉଁ ଜନ ।
ମୁହିଁ ପଢ଼ନ୍ତେ ଯେମନ୍ତେ ପାପଗଲା କ୍ଷୟ
ସେହିରୂପେ ମୋର ନାମେ ସର୍ବ ହେଉ ଜୟ
ସାତଥର ପଢ଼ି ଛୁଇଁ ଦେଲେ ଥାନମାନ
ଦିଶିଲା ସୁନ୍ଦର ଶୁକରୂପ ଦେହ ବର୍ଣ୍ଣ ।
ଏ ନୃସିଂହ କବଚକୁ ପଢ଼ିଲେ ନାରଦ
ପୀତାମ୍ବର ଦାଶକୁ ହେ ରଖ ଆଦିକନ୍ଦ ।



## ମନୁନାମକ ସାଧୁଗୃହକୁ ବିଷ୍ଣୁଙ୍କର ବିପ୍ରରୂପେ ଗମନ ଓ ତାହାର ମୋକ୍ଷ

ଶୁକମୁନି କହନ୍ତି ଯେ ଶୁଣ ପରୀକ୍ଷିତ
ନାରଦ ଶୁଣନ୍ତି ଯେ କହନ୍ତି ଲୋକତାତ ।
ସ୍ୱର୍ଗକୁ ଚାହିଁଣ ସ୍ୱାମୀ ବହେ ମହାକୋପ
ବୋଇଲେ ବଢ଼ାନ୍ତି ଦେବଗଣେ କେତେପାପ
ପାଷାଣ ଶୂନ୍ୟକୁ ଫିଙ୍ଗି ପାରନ୍ତି ଯେ ମୁଣ୍ଡ
ନ ଥିବା କଥାଯାକ ତ ଲଗାନ୍ତି ମୋ ପିଣ୍ଡ ।
କିଆବଣେ ଆଣିବଲେ ଦିଅନ୍ତି ଯେ ମାଡ଼ି
ଦଣ୍ଡ ପଡ଼ିଲେ ଆସନ୍ତି ମୋତେ ପୁଣି ଲୋଡ଼ି ।
କନ୍ଦଳ ବେଳେ ଆସନ୍ତି ମୋତେ ଲୋଡ଼ି ବୃଥା
ହେଲା ନୋହିଲା ବାଣୀକି ଲଗାନ୍ତି ମୋ କଥା
ଓଟାରି ବଳେ ଦେହକୁ ପେଲି ଆଣୁଥାନ୍ତି
ଅଜୟ ହେଲେ ମୋଠାକୁ ବଳେ ପୁଣିଥାନ୍ତି ।
ଦିବସ ନସରେ ବସି କରୁଥାନ୍ତି ସଭା
ନାନାକଥା ଅଳସୁଆ କରୁଥାନ୍ତି ନିର୍ଭା ।
କାହାରି କଥାକୁ କେତେ କରନ୍ତି କ୍ଷଣକେ
କ୍ଷଣେ ବଳ ଦ୍ୟନ୍ତି ଗଙ୍ଗା ଗଉତମ ଯାକେ ।
ଏମନ୍ତ ପାଞ୍ଚଣ କୋପ କଲେ ଦାମୋଦର
ବୋଇଲେ କରିବି ସୁରହୀନ ସ୍ୱର୍ଗପୁର ।
ପୁଣିହିଁ କୋପ ସଂହରି ଭଜିଲେକ ଶାନ୍ତି
ବୋଇଲେ ମଞ୍ଚକୁ ଆଜ ଯିବି ଏ ପାହାନ୍ତି ।
ତହିଁରେ ବୁଝିବି ଆଜି ମାନବଙ୍କ କଥା
କାହିଁକି ଏ ପାପ ମୋତେ ବିହିଲେ ବିଧାତା ।
ଏସନ ବିଚାରି ପ୍ରଭୁ ଉଠିଲେ ବହନ
ବ୍ରାହ୍ମଣ ରୂପ ଧରିଲେ ପ୍ରଭୁ ଭଗବାନ ।
ଧୋତି ଉତ୍ତରୀ ଯେ ଶ୍ରୁବ କୁଶ ଗଡୁ ଛତା
ଚଳିଲେ ମଞ୍ଚକୁ ଘେନି ଦ୍ୱାଦଶ ଯେ ଚିତା ।
ପୁଣ୍ୟତୋୟା ନଦୀ ପାରି ହୋଇଲେ ଅଚ୍ୟୁତ
ଯେଉଁ ଅକଣ୍ଟକ ରାଜ୍ୟେ ଅଛଇ ସାଧୁତ ।
ପୁଛି ପୁଛି ତା ଗୃହକୁ ଗଲେ ଭଗବାନ
ଏଥିଉତ୍ତାରେ କଥାଏ ପାଞ୍ଚ ମହାଜନ ।
ଦେଖିଲା ବସିଅଛନ୍ତି ଦ୍ୱାରେ ବିପ୍ରବର
ମନରେ ପାଞ୍ଚିଲା ବିପ୍ର ଅଟେ କେଉଁଠାର ।
ସାଧୁ ବୋଇଲେ ପଣ୍ଡାହେ ଥିଲ କେଉଁଠାରେ
ହରି ବୋଇଲେ ଆମ୍ଭର ଘର କ୍ଷୀରପୁରେ ।
ଅରବିନ୍ଦ ଶାସନେ ରହିଛି ଘର କରି
ବିଶ୍ୱମ୍ଭର ପଣ୍ଡା ନାମ ଅଟଇ ଆମ୍ଭରି ।
ସାଧୁତ ବୋଇଲା ଏଥେ କଲ କିମ୍ପା ବିଜେ
ହରି ବୋଇଲେ ସାଧୁହେ ବୁଲି ଭିକ୍ଷାକାର୍ଯ୍ୟେ
ତୁମ୍ଭେ ତ ବିବେକୀ ବୋଲି ଅଛୁ ଆମ୍ଭେ ଭେଟି
କଥାରୁ ଆନ ତୁମ୍ଭର ପୁଣ ଚିହ୍ନ ମାଟି ।
ଏ ପ୍ରକାର ମହାପ୍ରଭୁ ମହାଜନ ତୁଲେ
କଥା ହେଉ ହେଉ ତାର ପୁତ୍ରକୁ ଦେଖିଲେ ।
କେ ବାଇଶି ବର୍ଷୀୟ କେ ପନ୍ଦର ବର୍ଷୀୟ
କେ ସାତ ସତର କେହୁ ଅଟେ ନିରଂଶୀୟ ।
ବସନ୍ତେ ବାପର ଆଗେ ସାଧୁ ପୁତ୍ରେ ଆସି
ଶ୍ରୀହରି ବୋଇଲେ କାର ଅଟନ୍ତି ଏ ଶିଷି ।
ବିପ୍ର ଏ ବୋଲି ସାଧୁ ତ ଅଛି ସିନା ଜାଣି
କହିଲେ ମନେ ମୁଁ କାର ବହି କଥା ଟାଣି ।
ମାୟା କଥାକୁ ସାଧୁତ ନ କଲା ଗୋଚର
ବୋଇଲା ଏ ପୁତ୍ରମାନେ ଅଟନ୍ତି ମୋହର ।
ଏ ମାୟା ସଂସାରେ କାହିଁ ଭାଗ୍ୟବାନ ଜନ
ଶଚୀନନ୍ଦନ ପ୍ରାୟେ ତ ପାଇଛି ନନ୍ଦନ ।
ଏ ପୁତ୍ରମାନଙ୍କଠାରୁ କେତେ ବିପ୍ର ଆସି
ଖାଆନ୍ତି ଯେ ମାଗି ଯାଚିକରି ଅହର୍ନିଶି ।
ଏମନ୍ତ କଥା ବ୍ରାହ୍ମଣ ସଙ୍ଗେ ହେଉ ପୁଣି
ପୁରକୁ ବାହାର ହେଲା ସାଧୁର ଘରଣୀ ।
ନବର ମଧ୍ୟେ ତାହାକୁ ଦେଖିଲେ ଶ୍ରୀହରି
ସାଧୁ ତାକୁ ବୋଇଲେ ଏ ଅଟେ କାର ନାରୀ
ମହାଜନ ବୋଇଲା ଏ ଅଟଇ ମୋହର
କି କହିବି ଏ ଭାରିଯା ଗୁଣ ଦ୍ୱିଜବର ।
ଚାଲନ୍ତେ ସୁବର୍ଣ୍ଣ ଚମ୍ପା ଫୁଟେ ବେନିପାଦେ
କହନ୍ତେ ବଚନ ସାଧୁ ବହେ ମୁଖ ମଧ୍ୟେ ।
ହସିଣ କଥା କହନ୍ତେ ମୋର ଗେଲହୋଇ
କୋଟି ସ୍ୱର୍ଗ ଭୋଗୁଁ ସୁଖ ଅଧିକ ଲାଗଇ ।
ଯେତେବେଳେ ମୋ ପାଖରେ ବସେ ଆସିସୁଖୀ
କାମ ବିପଦରୁ ମୋତେ ରଖେ ଚନ୍ଦ୍ରମୁଖୀ ।

ଏ ପ୍ରିୟାର ଲକ୍ଷଣକୁ ଅଚଳା ମୋ ଶିରୀ
କେତେଲୋକ ଜୀଇଁକରି ମୋତେ ସେବାକରି
ହରି ପୁଣି ବୋଇଲେ ଏ ଆଚ୍ଛା ମହାଜନ
ପୁଚ୍ଛୁଥିଲେ ବୋଲୁଅଛି ମୋର ଦାରାଧନ ।
ଏହାକୁ ଆହୁରି କିଛି ପଚାରିବା ପରା
ଏତେ ପାଞ୍ଚି ବୋଇଲେ ଏ କାହା ବସୁନ୍ଧରା ।
ସାଧୁତ ବୋଇଲେ ଏ କାହା ବସୁନ୍ଧରା
ଶତେ ଯୁଣ ମଧ୍ୟରେ ମୁଁ ଅଛଇ ଯେ ରହି ।
ଅକଣ୍ଟକ ବୋଲି ଅଟେ ମୋର ରାଜ୍ୟ ନାମ
ଏ ରାଜ୍ୟେ କଣ୍ଟକ ବାଧା ନୁହେଁ କେବେଜନ
ଖରାକାଳରେ ବସନ୍ତ ବହେ ମୋର ଦେଶେ
ହେମନ୍ତ କାଳରେ ଏଥୁ ଉଷ୍ମ ପରକାଶେ ।
ବରଷା ଋତୁରେ ରାତ୍ରେ ହୁଏ ଜଳବୃଷ୍ଟି
ଦିବସରେ ଖରାକରେ ଅନ୍ଧକାର ଫାଟି ।
ମୋ ରାଜ୍ୟ ଲୋକ ସୁଖ କି କହିବା ପଣ୍ଡାଏ
କରନ୍ତି ଯେ ମୋର ଦ୍ରବ୍ୟ ସବୁ ଆୟବ୍ୟୟେ ।
ଦିନକୁ ଗୋରସ ଲକ୍ଷେ ହାଣ୍ଡି ହୁଏ ଯାହା
ରାଜ୍ୟରେ ଦେଉଛି ମୁହିଁ ଦିଏ ନିତ୍ୟ ତାହା ।
ଆବର ରାଜ୍ୟେ ମୋହର ଯେତେ ପ୍ରଜାଛନ୍ତି
ସବୁଙ୍କୁ ବିହନ ଦେଇ କରେ କୃଷିବୃତ୍ତି ।
ହାତୁ ବିହନ ଦେଇ ମୁଁ ଆଣେ ସରିଭାଗ
ତଣ୍ଡ ହଳବିନା ସେଠି ସବୁ ଛାଡ଼େ ଆଗ ।
ଏସନ ବାଣୀ ଶ୍ରବଣ କରି ଜଗନ୍ନାଥ
ବୋଇଲେ ବଡ଼ ମୁଁ କାର ଅଟଇ ସାଧୁତ ।
ଯେତେ ପଚାରୁଥିଲେ ନ ଛାଡେ ଦମ୍ଭପଣ
ପୁଛିଥିଲେ ବୋଲୁଅଛି ସବୁହିଁ ମୋ କାଣ ।
ଏମନ୍ତ ପାଞ୍ଚି ମନରେ ହସନ୍ତି ଶ୍ରୀହରି
କୌତୁକ କଥା ବୁଝନ୍ତି ପଚାରି ପଚାରି ।
ହସିଣ ଲେଉଟି ତାକୁ ପଚାରନ୍ତି ପୁଣ
ବୋଲନ୍ତି ଏ ଲୋକଯାକ ତୁମ୍ଭର କଅଣ ।
ସାଧୁତ ବୋଲେ ପଣ୍ଡାଏ କି ବିଚାର ଚିତ୍ତେ
ଅପାରହିଁ ସଙ୍ଖୋଳାତ କରୁଅଛ ମୋତେ ।
ମୋହର ବଂଶର କଥା ତୁମ୍ଭେ କି ଜାଣିବ
କେ ବନ୍ଧୁ ଅଟଇ କେହୁ ଅଟଇ ବାନ୍ଧବ ।
କେ ଭାଇ ପୁତୁରା ନାତି କେ ଶ୍ୱଶୁର ଅଜା
କେ ମିତ ଖୁଡୁତା ଅବା ଜେଡୁତା ଭଣଜା ।
ଏହିରୂପେ ବନ୍ଧୁ ମୋର ଅଛନ୍ତି ଅପାର
ଏଥି କି ଅନ୍ତ ପାଇବ ତୁମ୍ଭେ ଦ୍ୱିଜବର ।
ତୁମ୍ଭରି ପରା ହୋଇଣ କେତେ ବିପ୍ରମାନେ
ବଞ୍ଚନ୍ତି ମୋହର ବଂଶେ ମାଗି ଅବିଚ୍ଛିନେ ।

ହସିଲେ ସାଧୁର କଥା ଶୁଣି ପୀତବାସ
ବୋଇଲେ ଲାଗୁଛି ଏହା କଥା କେଡ଼େରସ ।
ପୁଚ୍ଛିଲେ ବୋଲୁଛି ସବୁ କଥା ମୋର ମୋର
ପୁଚ୍ଛିବା ଗୋବଧ କଥା ଏବେ ପରା ତାର ।
ତହିଁକି କିସ ବୋଲିବ ଶୁଣିବା ସେ ଭାବ
କଥା ମାର୍ଗରେ ବୁଝିଲେ ହେବ ପରାଭବ ।
ତହିଁକି ମୁଁ କାର ଏହୁ କେବେ କହେ ଲେଖି
ସତ୍ୟ କହିବ କି ନାହିଁ ଦେଖିବା ତା ଦେଖି ।
ଅଳସୁଆ ଦେବତାଏ ଏହା ନ ଜାଣନ୍ତି
ସବୁ ପାପ ନେଇ ମୋର ଦେହରେ ଲଗାନ୍ତି ।
ମୁଁ କାର ଲୋକକୁ କେବେ ପୃଥ୍ୱୀ ନ ସହଇ
ମୁଁ କାର ବଚନ ଏକା ମୋତେ ସେ ସାଜଇ ।
ଏହୁ ତ ବଡ଼ ମୁଁ କାର କହୁଛି ସାଧୁତ
ମୋହର ମାୟାରେ ପଡ଼ି ହୋଇଛି ମୋହିତ
ଭକତ ଦେଖିଲେ ଆମ୍ଭେ କ୍ଷଣକେ ଉଦ୍ଧରୁ
ମୁଁ କାର ବଚନ ମୋତେ ପର୍ବତରୁ ଗରୁ ।
ଏମନ୍ତ ପାଞ୍ଚି ପୁଚ୍ଛିଲେ ପୁଣି ଜଗନ୍ନାଥ
ବୋଇଲେ ତେବେ ତୁମ୍ଭରି ସବୁ ହେଲା ବ୍ୟର୍ଥ
କଲ ଯେ ସେଦିନ ତୁମ୍ଭେ ଗୋବଧ ପାପଟି
କାହାକୁ ଲାଗିବ ତାହା କହ ଶୁଣିମାଟି ।
ସେ କଥା ଶୁଣି ସାଧବ ବିପ୍ର ଆଗେ କହି
ବୋଇଲା ସେହୁ ପାପକୁ ନେଲେ ଭାବଗ୍ରାହୀ
ସର୍ବ ଉତପାତକୁ ଶ୍ରୀଗୋବିନ୍ଦ କାରେଣି
ମୁହିଁ ତ ତାହାଙ୍କ ନାମ ଧରିଲି ସେକ୍ଷଣି ।
ମୋହର ତହୁଁ ଶ୍ରୀହରି ପାପ ନେଲେ ପୁଣ
ଶୁଣିକରି ହସ ହସ ହେଲେ ନାରାୟଣ ।
ଶ୍ରୀହରି ବୋଇଲେ ତେବେ ଶୁଣ ମହାଜନ
ସବୁ ରଖିଲ ତୁମ୍ଭର କରି ଧନ ଜନ ।
ପାପକୁ ଅର୍ଜିଲ ନେଇ ପ୍ରଭୁଙ୍କ ଉପର
ପଦାର୍ଥ ପୁଚ୍ଛିଲେ ବୋଲ ମୋହର ମୋହର
ଏ କଥାଟି ସଂସାରକୁ ଗଲା କି ବୁଝନ୍ତେ
କାହିଁପାଇଁ ଏ ପାପକୁ ଗୋବିନ୍ଦ ଦିଅନ୍ତେ ।
ସାଧୁତ ବୋଇଲା ତେବେ ସେ ପାପ କେନେବ
ବିପ୍ର ବୋଲେ ତୁମ୍ଭ ପାପ ତୁମ୍ଭଙ୍କୁ ଲାଗିବ ।
ଏହିରୂପେ ଶ୍ରୀମୁଖରୁ ବାକ୍ୟ ଯାନ୍ତେ ଫିଟି
ତକ୍ଷଣେ ସାଧୁର ଦେହେ ଗଲା ପାପ ଘୋଟି
ଦେଖୁ ଦେଖୁ ସମସ୍ତହିଁ ଗଲେ ହୋଇ ମାୟା
ଧନ ଜନ ସମ୍ପତ୍ତି ଯେ ପୁତ୍ର ବନ୍ଧୁ ପ୍ରିୟା ।
ବିପ୍ର କହୁଁ ପାପ ଯାଇ ହୁଅନ୍ତେ ଉପଗତ
ସାଧୁତ ବୋଇଲା ଏହୁ ହୋଇଲା କେମନ୍ତ ।

ଏ ଦ୍ୱିଜ ପୁଛନ୍ତେ କେତେ ପାଇଲି ମୁଁ କ୍ଳେଶ
ବଡ଼ଲୋକ ଏଣେ କିବା ଅଇଲେ ମୋ ପାଶ
ମୁହିଁ ତ ମୂଢ଼ ବୁଦ୍ଧିରେ ନ ପାରିଲି ଜାଣି
ବ୍ରାହ୍ମଣ ସ୍ୱରୂପ ଅବା ଏହୁ ଚକ୍ରପାଣି ।
ବିନୟୀ ହୋଇ କହିଲି ମୁଁ ଯେ ବଡ଼ପଣ
ତେଣୁକରି ମହାପ୍ରଭୁ ବିହିଲେ କଷଣ ।
ସେହି ଏ ନୋହିଲେ ପାପ ପଡ଼ନ୍ତା କି ଧାଇଁ
ଏହି ଆଚଙ୍କୁ ଉଦ୍ଧରି ରଖିବେ ବା ଏହି ।
ଏତେକ ପାଞ୍ଚି ଧଇଲେ ବିପ୍ର ବେନିପାଦ
ଶରୀରେ ଲଦି କରଇ ଶୋକ ଗଦଗଦ ।
ବୋଇଲେ ହେ ବିପ୍ରମୋତେ ରକ୍ଷା ବେଗେ କର
ନୋହିଲେ ମୁଁ ଗଲି ଭାସି ସରିଲା ସଂସାର ।
କେବଣ ପୁରୁଷ ତୁମ୍ଭେ ନ ପାରିଲି ଜାଣି
କହିଲି ତୁକାର କରି ମୁଁ ମୁକାର ବାଣୀ ।
ଏ ଦୋଷ ନ ଘେନି ମୋତେକର ସ୍ୱାମୀଦୟା
ଏତେ ବୋଲି ପାଦେ ଶୁତି ତେଜିଲାକ ମାୟା
ଯେତେବେଳେ ମାୟା ହୃଦୁ ଛାଡ଼ିଗଲା ତାର
ଶଙ୍ଖ ଚକ୍ର ଗଦା ପଦ୍ମ ଦେଖେ ଚାରିକର ।
ଦେଖି ଚତୁର୍ଦ୍ଧାରୂପକୁ ସେହି ମହାଜନ
କରଇ ଅନେକ ସ୍ତୁତି ବିନୟୀ ହୋଇଣ ।
ଜୟ ତୁ ପାପନାଶନ ଶ୍ରୀହରି ଗୋବିନ୍ଦ
ଜୟ ତୁ ପାପନାଶନ ଶ୍ରୀକୃଷ୍ଣ ମୁକୁନ୍ଦ ।
ଜୟ ତୁ ପାପନାଶନ ବିଷ୍ଣୁ ଦଇତ୍ୟାରି
ଜୟ ତୁ ପାପନାଶନ ଶ୍ରୀବିଷ୍ଣୁ ମୁରାରି ।
ଜୟ ତୁ ପାପନାଶନ କାହ୍ନୁ ଶଙ୍କର୍ଷଣ
ଜୟ ତୁ ପାପନାଶନ ଶ୍ରୀମଧୁସୂଦନ ।
ଜୟ ତୁ ପାପନାଶନ ଶ୍ରୀକର ମାଧବ
ଜୟ ତୁ ପାପନାଶନ ସ୍ୱାମୀ ପଦ୍ମନାଭ ।
ଜୟ ତୁ ପାପନାଶନ ଜଗନ୍ନାଥ ସ୍ୱାମୀ
ଜୟ ତୁ ପାପନାଶନ ଅଟୁ ଅନ୍ତର୍ଯ୍ୟାମୀ ।
ଜୟ ତୁ ପାପନାଶନ ବ୍ରହ୍ମ ନିକେତନ
ଜୟ ତୁ ପାପନାଶନ ପତିତପାବନ ।
ଜୟ ତୁ ପାପନାଶନ ଶ୍ରୀପଦ୍ମ କମଳେ
ବିପ୍ର ପୀତାମ୍ବର ଦାଶେ ରକ୍ଷାକର ବଳେ ।
ଅନେକ ସ୍ତୁତି କରିଣ ବୋଲେ ମହାଜନ
ଉଦ୍ଧର ଭୋ ସ୍ୱାମୀ ଜଗନ୍ନାଥ ଭଗବାନ ।
ସାଧୁର ବିନୟ ବାଣୀ ଶୁଣି ଭାବଗ୍ରାହୀ
ବୋଇଲା ଚତୁର ବାହୁ ବିଚାରିଲା ଏହି ।
ଏତେ ସ୍ତୁତି କରୁ ଯେବେ ନ କରିବା ଭୀତି
ସଂସାରର ଭକ୍ତମାନେ ନିନ୍ଦିବେ ଶ୍ରୀପତି ।
ବୋଲିବେ ବିଷ୍ଣୁଙ୍କୁ କାହିଁପାଇଁ ବସି ଜପ
ସ୍ତୁତିକାରୀ ସାଧୁକୁତ କଲେ ଏତେ କୋପ ।
ଏହା ବୋଇଲେକ ନିନ୍ଦା ଉପୁଜିବ ମୋତେ
ଧରିଛି ଚରଣ ମୋର ପୁଣି ବେନି ହସ୍ତେ ।
ବିଚାର କଲେ ଏହୁ ନ ଅଟେ ନାରାୟଣ
ଶାପରୁ ଜନମ ସିନା ହେଲା ମହାଜନ ।
ପ୍ରଥମ ଜନ୍ମ ଏହୁ ତ ହୋଇଲା ସାଧୁତ
ଦ୍ୱିତୀୟ ଜନ୍ମରେ ପୁଣ ହେବ ସତ୍ୟବ୍ରତ ।
ମାନଗୋବିନ୍ଦ ତୃତୀୟ ଜନ୍ମେ ବୋଲାଇବ
ଭାରତେ ଏହାର ଯଶକୀର୍ତ୍ତି ଉପୁଜିବ ।
ଦେବକୀ ଛଳେ ଅଇଲି ସିନା ଏହା ପାଶ
ଦେଖିଲି ମୁଁ ସାଧୁର ତ କିଛି ନାହିଁ ଦୋଷ ।
ଏକମାତ୍ର କଥା ଏଥି ବୁଝିଲୁ ଅକୀର୍ତ୍ତି
କହିବାରୁ ପାଇଲି ମୁଁ ପଦ ଏତେ ଶାସ୍ତି ।
ଏମନ୍ତ ପାଞ୍ଚଣ ହରି ବୋଇଲେ ସାଧୁତେ
ମନ ଦେଇ ଶୁଣ ତୁହି କହୁଅଛି ତୋତେ ।
ମୁଁ କାର କଥା ଆଉ ନ ବୋଲ କେବେ ମୁଖେ
ବିଷ୍ଣୁ ନାମ ସ୍ମରଣ ତୁ କର ବସି ସୁଖେ ।
ଏମା ଠାରୁ ପାପତାରକ ମନ୍ତ୍ର ଏବେ ନିଅ
ଏ ମନ୍ତ୍ର ଜପିଲେ ତୋର ଯିବ ସବୁ ଭୟ ।
ବିଷ୍ଣୁ ପଞ୍ଜର ସେ ଏତେ ବୋଲି ଦେଲେ କହି
ସେଠାରୁ ବିଷ୍ଣୁ ପଞ୍ଜର ବ୍ରହ୍ମାଣ୍ଡରେ ରହି ।
ଏତେ କହି ମନ୍ତ୍ର ଦେଇ ଗଲେ ଭଗବାନ
ତତକ୍ଷଣେ ସାଧୁ ତାହା କଲାକ ପଠନ ।
ମନ ଶୁଦ୍ଧକରି ମନ୍ତ୍ର ଗ୍ରହଣ କରିଲା
ବିଷ୍ଣୁର ଆଦେଶେ ପାପ ଧ୍ୱଂସ ହୋଇଗଲା ।
ନିର୍ମଳ ଦିଶିଲା ଦେଖୁ ଦେଖୁ କଳେବର
ସେହି ଦାରା ପୁତ୍ର ଶିରୀ ମିଳିଲେ ତତ୍ପର ।
ମୁଁ କାର ପଦକୁ ସିନା କରିଥିଲି ମାୟା
ଶୁଣ ହେ ନାରଦ ହରି କହିଥିଲେ ଯାହା ।
କହିଲେ ଶ୍ରୀହରିଙ୍କି ଯେ ଏକା ଦେବତାଏ
ହେ ସୁଜ୍ଞଜନେ ଶୁଣିଏ କଥା କର ଲୟେ ।
ଦେହକୁ ମୁଁ କାର ବାକ୍ୟ ଗୋଟି ବଡ଼ ତୁଚ୍ଛ
ମୁଁ କାର ବଚନ ଏକା କହନ୍ତି ଶ୍ରୀବତ୍ସ ।
ନୃସିଂହ ପୁରାଣେ ଏହୁ ଅପୂର୍ବ ଆଖ୍ୟାନ
ନିରିମଳ ମନେ ବସି ଶୁଣ ସୁଜ୍ଞଜନ ।
ଶାସ୍ତ୍ରର ସଂଜ୍ଞାତେ ଭକ୍ତି ହୋଇଲାକ ଯେତେ
କେ କାହାକୁ ଅନ୍ତକରି ପାରିବ ଜଗତେ ।
ମୁହିଁ ଶିଶୁ ବୁଦ୍ଧି ପୁଣି ଅଟେ ଅପଣ୍ଡିତ
ଏହି ଗ୍ରନ୍ଥ ଲେଖିବାକୁ ମୁହିଁ କିବା ଶକ୍ତ ।

ମୋତେ ଅଗୋଚର ଏହି ପୁରାଣ ମହିମା
ସାମବେଦରୁ ଅଛନ୍ତି ସଞ୍ଚି ବେଦବ୍ରହ୍ମା ।
ବିଦ୍ୟା ନଗର ବାସିନୀ ପ୍ରସନ୍ନ ସୁଶୀଳା
ସେ ମୋହର ହୃଦୟରେ ତୁଳସୀର ମାଳା ।
ଏହାଙ୍କ କରୁଣାରୁ ମୁଁ ଲେଖୁଛି ଏ ଗ୍ରନ୍ଥ
ସଂସାରକୁ ଏ ଅଟଇ ଗତିମୁକ୍ତି ପଥ ।
ଅଭୟା ନିରାକୁଳା ଗୋ ଶୁଦ୍ଧ ଚାରୁହାସୀ
ସେ ଯୋଗାଭ୍ୟାସିନୀ ନାନାକଳିକାଳ ଧ୍ୱଂସି
ପରମ ଗତିକି କହିଦେଲେ ମୋତେ ବୁଦ୍ଧି
ତାଙ୍କ ଆଜ୍ଞାରେ ସାହସ ମୁହିଁ ଅଛି ବାନ୍ଧି ।
ବିକଶିତ ପଦ୍ମଦଳ ନୀଳେନ୍ଦ୍ରି ଲୋଚନୀ
ସୁଧାରସ ସୁପ୍ରସନ୍ନ ବଦନୀ ଜନନୀ ।
ଆହେ ସାଧୁଜନେ ଜାଣ ମୋର ଶକ୍ତି ନାହିଁ
ଶାରଳା ଆସିଣ ମୋତେ ରାତ୍ରେ ଦେଲେ କହି
ପ୍ରସନ୍ନା ମାହେଶ୍ୱରୀ ସେ ପରଦୁଃଖ ଦେଖି
ଭୃତ୍ୟକୁ ଅଦୃଶ୍ୟ ସେହୁ ମନ ଅଗୋଚର
ଏମନ୍ତ ଦେବୀ ନିଶାରେ ମୋତେ ଦେଲେ ବର
ଶ୍ରୀ ଶାରଳା ପାଦତଳେ ପଶିଲି ଶରଣ
ବିପ୍ର ପୀତାମ୍ବରକୁ ହେ ରଖ ନାରାୟଣ ।



## ଦୁର୍ବାସାଙ୍କ କ୍ରୋଧଶାନ୍ତି ନିମିତ୍ତ ବିଷ୍ଣୁଙ୍କର ଗମନ

ଶୁଣ ହେ ବାବୁ ନାରଦ କହନ୍ତି ଯେ ବିହି
ପଦ୍ମୀଙ୍କ ମୁଁ କାର କ୍ଷଣେ ନ ପାରିଲେ ସହି ।
ଆନ ଲୋକର ମୁଁ କାର କେତେମାତ୍ର ଅଟେ
ସ୍ରୋତ ଜଳରେ ଯେସନେ ଭାସେ ଛଣପଟେ
ସେହି ରୂପରେ ମୁଁ ପଦେ ଲୋକ ନାଶଯାଇ
ଶୁଣ ଆହେ ସୁଜ୍ଞଜନେ କଥା ମନ ଦେଇ ।
ମୂରୁଖ ପ୍ରାଣୀମାନେଟି କହନ୍ତି ମୁଁ ପଦ
ସବୁହିଁ ଲଭନ୍ତି ମୋର କରି ଅପ୍ରମାଦ ।
ସୁଜ୍ଞାନୀ ପଣ୍ଡିତ ବିନୁ ସାଧୁ ଯେତେ ଲୋକ
ଶ୍ରୀକୃଷ୍ଣରେ ସମର୍ପଣ କରନ୍ତି ଅନେକ ।
ଜପତପ ବାରବ୍ରତ ତୀର୍ଥ ଧର୍ମ ଯେତେ
ଅର୍ଥ ବିତ୍ତ ଦାରା ସୁତ ଦ୍ୟନ୍ତି ବିଷ୍ଣୁ ଅର୍ଥେ ।
ଅସୁରବଂଶୀ ଲୋକେ ତ ବହନ୍ତି ଯେ ଗର୍ବ
ଅଜ୍ଞକେ କରୁଥାନ୍ତି ମୁଁ ପଦ କହି ସର୍ବ ।
ଦେବତା ପିତା ଗୁରୁ ତ ନ ମାନନ୍ତି କାଳେ
ଶଫରୀ ପରି ପାଷାଣ୍ଡ ମାର୍ଗରେ ସେ ଚଳେ ।
କିଛି ବଡ଼ପଣ ପାଇ ହେଉଥାନ୍ତି ଟେକି
ମତ୍ତଗରବେ ନିନ୍ଦନ୍ତି ସୁଜନ ପ୍ରାଣୀକି ।

ଏଣୁ ହୁଅନ୍ତି ସେ ଲୋକମାନେ ଅଳ୍ପାୟୁଷ
ଶୁଣନ୍ତି ପରୀକ୍ଷ କହନ୍ତି ଯେ ବ୍ୟାସଶିଷ୍ୟ ।
ଲକ୍ଷ୍ମୀ ସରସ୍ୱତୀଙ୍କି ଏହି ରୂପେ ପ୍ରଭୁ କହି
ଦ୍ୱାରକାକୁ ଚଳିଯାନ୍ତି ଲୀଳାଗତି ହୋଇ ।
ଅଛନ୍ତି ବାମ ଦକ୍ଷିଣେ ଶାରଦା କମଳା
କୋଟି ଜୟଶଙ୍ଖ ଯେ ଶୁଭେ ଅଶୃଙ୍ଖଳା ।
ଦୁର୍ବାସା ଋଷିଙ୍କ ମନ କରିବା ଶାନ୍ତ୍ୟର୍ଥେ
ଆସନ୍ତି ହୃଦୟେ ଦୟା ଧରି ମର୍ତ୍ତ୍ୟଗତେ ।
ଅଭୟ ବର ଦ୍ୱାରରେ ମିଳିଗଲେ ହରି
ପ୍ରବଳ ମଣ୍ଡପ ମଧ୍ୟେ ଯାଇ ବିଜେ କରି ।
ଦିଶିଲା ଆଲୋକମୟ ଦଶଦିଗଯାକ
ଏକେ ତ କୃପାନିଧି ଯେ ଭୁବନ ଆଲୋକ ।
ସେ ଆଲୋକ ଭୁବନରୁ ପ୍ରଭୁ ଭାବଗ୍ରାହୀ
ଅଇଲେ ଧରିଣ ତାକୁ ମୂର୍ତ୍ତିମନ୍ତ ହୋଇ ।
ସେ ମୂର୍ତ୍ତି ଦୁର୍ବାସା ମୁନି ନେତ୍ରଯୁଗେ
ଆନନ୍ଦରେ ଗଦ ଗଦ ହୁଅନ୍ତି ଭକ୍ତିମାର୍ଗେ ।
ଚକ୍ଷୁ ନ ପିଛାଡ଼ି ମୁନି ଅଛନ୍ତି ଯେ ଚାହିଁ
ବୋଲନ୍ତି ନ ପୁଣ ପିଛା ପଡ଼ିଲେ ନ ଥାଇ ।
ମୋହର ମନର ତାପ ଜାଣି ଜଗନ୍ନାଥ
ଅଲଭ୍ୟରେ ମୋତେ ଦେଖାଦେଲେ ଆସିଏଥ
ଅଭୟ ପଦ୍ମପାଦକୁ ଦେଖିଲାକ ନେତ୍ରେ
ଆବର କଳୁଷ ଛାର ରହିବ କି ଗାତ୍ରେ ।
ଅବଶ୍ୟ ମୋହର ଅଙ୍ଗ ହେଲା ଆସି ମୋକ୍ଷ
ତେଣୁ ନେତ୍ରେ ପଦ୍ମନେତ୍ର ଦେଖିଲି ପ୍ରତ୍ୟକ୍ଷ ।
ଅଷ୍ଟାଦଶ ଚିହ୍ନ ଅଙ୍ଗେ ଅଛନ୍ତି ସେ ବହି
ଗୋଟିଏ ଚିହ୍ନକୁ କୋଟି ଗଙ୍ଗା ସରିନୋହି ।
କମଳ ଚରଣ ଶୋଭା ଚିହ୍ନ ଅଷ୍ଟାଦଶ
ଧ୍ୱଜ ପଦ୍ମ ବଜ୍ର ଆଉ ଅଙ୍କୁଶ କଳସ ।
ଇନ୍ଦ୍ର କୋଦଣ୍ଡ ଗୋଷ୍ପଦ ଜମ୍ବୁ ଶଙ୍କନଦା
ଚକ୍ର ସାରଙ୍ଗ ମୂଷଳ ଖଡ଼୍ଗ ଆଉ ଗଦା ।
ସାୟକ ଲଙ୍ଗଳ ପାଶ ଆୟୁଧ ତ ହୋଇ
ଦେଖିଲି ଅଠର ଚିହ୍ନ ଭାଗ୍ୟ ମୋର ଏହି ।
ଏମନ୍ତ ମନେ ବୋଲନ୍ତି ଅତ୍ରି ମୁନି ପୁଅ
ଶୁଣିଣ ଉଲ୍ଲାସ ହେଲା ଭାବଗ୍ରାହୀ ଦେହ ।
କମଳ ନେତ୍ରଙ୍କେ ଚାହିଁ ବଦନ୍ତି ଶ୍ରୀଅଙ୍ଗ
ବୋଲନ୍ତି ତ ଆହେ ଋଷି ମୋର ବଡଭାଗ୍ୟ ।
ପୁରୁଷଙ୍କ ମଣି ତୁମ୍ଭେ ଅଟ ପୁଣ୍ୟଦେହୀ
ସଂସାର ମୋକ୍ଷ ଅର୍ଥରେ ଭ୍ରମୁଅଛ ମହୀ ।
ତୁମ୍ଭଙ୍କୁ ଯେତେକ ଲୋକ ପାରନ୍ତିଟି ଚିହ୍ନି
ତାହାଙ୍କର ଜୀବନଟି ଧନ୍ୟ ଏ ମେଦିନୀ ।

ସୁପଣ୍ଡିତ ବୋଲି ତାଙ୍କୁ ଲେଖନ୍ତି ବିବୁଧ
ସେ ଯେଉଁ ଦେଶେ ଥାଇ ସେ ଦେଶେ ଜାଣ ଶୁଦ୍ଧ ।
ତୁମ୍ଭର ଏ ପାଦରଜ ପଡ଼େ ଯେଉଁ ଗୃହେ
ସେ ରେଣୁକୁ ମୋର ନାମଗୋଟି ସରିନୁହେଁ
ତେଣୁ ମୁଁ ବାନ୍ଧିଛି ଦେଖ ହୃଦେ ବିପ୍ରପାଦ
ଏ ପାଦଚିହ୍ନକୁ ସରିନୋହେ କୋଟିବେଦ ।
ଯେ ବିପ୍ର ଶବଦ ପ୍ରତ୍ୟକ୍ଷରେ ବେଦଦେହୀ
ବିପ୍ରବିନା ବେଦ ମୁଖେ ନପାରେ କେ କହି ।
ଏଣୁ ସେ ବେଦ ବିପ୍ର ନ କର ପରାଭିନ୍ନ
ବେଦଫଳ ବିପ୍ର ବିପ୍ର ପାବତଳ ପୁଣ ।
ମୋ ନାମ ଭଜନ ଯେବେ ଲକ୍ଷଥର କରି
ବିପ୍ରର ପାନରଜକୁ ନୋହେ ଏକାସରି ।
ବିପ୍ରଙ୍କର ଶରୀର ଯେ ଅଟେ ମୋର ଦେହୀ
ବିପ୍ରପାଦ ସେବାକଲେ ମୋତେ ନିଶ୍ଚେପାଇ
ମୁହିଁ ପୁଣି ବିପ୍ରଙ୍କର ଥାଇ ମୁଖାଗ୍ରତେ
ବିପ୍ରଙ୍କୁ ଦେଲେ ଗ୍ରାସ ମୁଁ ଭୁଞ୍ଜଇ ସୁଚିତେ ।
ବଚନେ ବିପ୍ର ବାଞ୍ଛନ୍ତି ମୋତେ ଯାହା ଯାହା
ସେହି ଫଳାଫଳ ଦିଏ ମୁହିଁ ଜାଣି ତାହା ।
ତୁମ୍ଭେ ଋଷିମାନେ ଯେତେ ଅଟ ବିପ୍ରଶ୍ରେଷ୍ଠ
ମୋର ଭକ୍ତ ପ୍ରୀତି ଅର୍ଥେ ଅଇଲ ବୈକୁଣ୍ଠ ।
ଜୟ ବିଜୟ ବୋଲିଣ ଯେଉଁ ମୋର ଦ୍ୱାରୀ
ଶାକଲ୍ୟଦ୍ୱୀପେ ଥିଲେ ଏ ଦୁହେଁ ଅବତରି ।
ସୁଭାଗ୍ୟବନ୍ତୁଁ ବୈକୁଣ୍ଠେ ଆସି ମିଳିଥିଲେ
ତୁମ୍ଭଙ୍କୁ ନ ଚିହ୍ନି ଏବେ ଅସୁର ହୋଇଲେ ।
ଏବେ ଏ କେମନ୍ତେ ହୋଇ ପାରିବ କାରଣ
ଏଥକୁ ମହାମୁନି ହେ କର ସୁକଲ୍ୟାଣ ।
ତୁମ୍ଭ ଦୟାରୁ ଲେଉଟି ମୋ ଦ୍ୱାରୀ ହୁଅନ୍ତୁ
ଶାପରୁ ମୋକ୍ଷ ହୋଇଣ ବୈକୁଣ୍ଠେ ରହନ୍ତୁ ।
ଏମନ୍ତ ଲାବଣ୍ୟବାଣୀ କହନ୍ତେ ଶ୍ରୀଧର
ଶୁଣି ହରଷ ହୋଇଲେ ମୁନି ବିପ୍ରବର ।
ପାଞ୍ଚିଲେ ଦ୍ୱାରୀଙ୍କୁ ମୁହିଁ ଦେଲି ଅଭିଶାପ
ନ କଲେ ଏଥକୁ ଭଲ ସ୍ୱାମୀମୋତେ କୋପ
ଏତେକ କୋମଳ କରି କହିଲେକ କଥା
ଏତେକ ପାଞ୍ଚି ଦୁର୍ବାସା ଛାଡ଼ିଲେକ ଚିନ୍ତା ।
ଆପଣା ଶିରରେ କର ଦେଇ ବ୍ରହ୍ମଯତି
କରନ୍ତି ଯେ ଶ୍ରୀମୁଖକୁ ଚାହିଁ ନାନା ସ୍ତୁତି ।
ବୋଲନ୍ତି ଶୁଣିମା ହେଉ ପ୍ରଭୁ ଚକ୍ରପାଣି
ତୁମ୍ଭର ସଞ୍ଚଳା ସିନା ଅଟେ ଚାରିଖାନି ।
ତୁମ୍ଭେ ସିନା ପ୍ରାଣୀଙ୍କର ଅଟ ଭଲମନ୍ଦ
ଅଦୃଷ୍ଟ ଚିହ୍ନାଇ ଭୋଗ କରାଅ ସମ୍ପଦ ।

କରିବା କରାଇବାର ଦୁଇ ମାର୍ଗ ଯାକ
ତୁମ୍ଭବିନା ଦୁଃଖ ନାଶିବାକୁ କେ ତ୍ରୈଲୋଗ୍ୟ
ପିତାମାତା ହୃଦେ ଥାଇ ପୁତ୍ର ପ୍ରତିଫଳ
ବାଳକ ହୋଇ ଜନନୀକୋଳେ ପୁଣି ଖେଳ ।
ଯାହାକୁ ଯେଉଁ ମାର୍ଗରେ ଦେଇଥା ପ୍ରକୃତି
ଦଇବ ହେଲେ ତା ଆନ କରି ନ ପାରନ୍ତି
ଆମ୍ଭେ ଯେ ବିପ୍ରକୁଳରେ ବିଷ୍ଣୁର ବୈଷ୍ଣବ
ଜାତିରେଶ୍ରେଷ୍ଠ ହେଲେହେଁ ପ୍ରକୃତି କିଯିବ
ସର୍ପପ୍ରାୟ ସିନା ଅଟେ ଆମ୍ଭର ପ୍ରକୃତି
ଅଳ୍ପକେ କ୍ରୁଦ୍ଧ ହୋଇଣ ଅର୍ଜ୍ଜୁ ମନ୍ଦଗତି ।
ଘେନି ତୁମ୍ଭ ଦୀକ୍ଷା ଆମ୍ଭେ ସଂସାରରେ ଫେରୁ
ଦେଖିଲେ ସନ୍ଥ ଲୋକଙ୍କୁ ଆଶୀର୍ବାଦ କରୁ ।
ତଥାପି ତ ମୂର୍ଖତାରେ ମିଳି ଅତ୍ୟନ୍ତରେ,
ତାର ମନ ମୋହୁ କହି ବିଷ୍ଣୁଭାବ ନରେ
ସେ ଭାବକୁ ଶୁଣି ଯେବେ ନୁହଇ ଯେ ବଶ
ତହିଁରେ ଆମ୍ଭର କ୍ରୋଧ ହୁଅଇ ଅବଶ୍ୟ ।
ତଥାପି କ୍ରୋଧ ହୋଇଲେ ନପାରୁ ସଂହାରି
ଆମ୍ଭର କ୍ରୋଧଟି ଜାଣ ବ୍ରହ୍ମଅଗ୍ନି ସରି ।
ସେ ବ୍ରହ୍ମଅଗ୍ନିରେ ଦେଖ ଚତୁର୍ବିଧ ବର୍ଣ୍ଣ
ପ୍ରାଣୀଙ୍କ ଜଠରେ ରହି କରେ ବିତପନ ।
ପବନ ହୋଇ ଯେମନ୍ତେ ହୋଇଥାଏ ଭସ୍ମ
ସେହି ମତି ମୂର୍ଖଙ୍କୁ ଯେ ହୁଏ କ୍ରୋଧେଭସ୍ମ
ଏଥକୁ ଗୋଟିଏ କଥା ଅଛଇ ଉପାୟେ
ମିଳଇ ଉତ୍ତମ ସାଧ ଯେବେ ମୂର୍ଖ ଠାଏ
ତେବେ ସେହି ମୂର୍ଖ ପଡ଼ି ତରେ ସାଧୁମେଳେ
ବ୍ରାହ୍ମଣର କ୍ରୋଧ ଜାଣନାଶେ ଅବହେଳେ ।
ଏରୂପେ ଦୁର୍ବାସା ଋଷି କହି କରଯୋଡ଼ି
ରହିଲେ ପଛକୁ ଘୁଞ୍ଚି ବିଷ୍ଣୁପାଦେ ପଡ଼ି ।
ମୁନିଙ୍କ ଲାବଣ୍ୟ ବାଣୀ ଶୁଣିଣ ଶ୍ରୀହରି
ପ୍ରସନ୍ନ ହୋଇଣ ପ୍ରଭୁ କଥାଏ ପଚାରି ।
ବୋଇଲେ ହେ ଋଷି ତୁମ୍ଭେ କହିଲ ଯା ଚାହିଁ
ଆନ ଛାରବଳେ କିତ ପାରେ ଏତେ କହି ।
ଜଠରେ ଯେବେ ବୋଇଲେଜଳେ ଅଗ୍ନିଅନ୍ନ
କେତେବେଳେ ନାଶକରେ ସେଦେହରବର୍ଣ୍ଣ
ଆବର ଦେଖ ଜଠରେ ପୁଣି ବୀର୍ଯ୍ୟ ପଡ଼େ
ଅନଳ ମଧ୍ୟେ ରହିଣ ଦଶମାସ ବଢ଼େ ।
ସେ ଅନଳ ପୁଣି ବାଳୁତକୁ ଜଠରେଣ
ରଖଇ ଉଦରେ ଥାଏ କୁଶଳ କରିଣ ।
ଅନ୍ନକୁ ଗ୍ରାସ କରିଲେ ଭସ୍ମ ହୋଇ ଖସେ
ପୃଥୀରେ ନିମଜ୍ଜି ସେହୁ ଜଳେ ଯାଇଁ ମିଶେ

ସେହି ଜଳ ବରଷନ୍ତେ ଫଳେ ନାନାଶସ୍ୟ
ଜୀବନ ଭୋଜନ ମାତ୍ରେ ପ୍ରାଣ ହୁଏ ପୋଷ୍ୟ
ଭୁଞ୍ଜନ୍ତି ଯେ ଯାହା ଶକ୍ତି ବଳେ ଜୀବଜନ୍ତୁ
ଏରୂପେ ଶାନ୍ତ ହୁଅନ୍ତି ଅଗ୍ନି ଅନ୍ନହେତୁ ।
ପିଣ୍ଡକୁ ସନ୍ତୋଷ କରେ ଯେଉଁପରି ଅନ୍ନ
ତୁମ୍ଭରହିଁ କୋପ ମୁନି ସେହିମତି କର୍ମ ।
କେବଳ ଜାଣ ବ୍ରାହ୍ମଣ ଏକା ନିନ୍ଦା କଲେ
ତାହାକୁ ନାହିଁଟି ପାର କୋଟିତୀର୍ଥ ଗଲେ ।
ସୁଜନ ସାଧୁଙ୍କୁ ନିନ୍ଦା କରଇ ଯେ ନିତି
ଦେବ ଦୟା ନକରି ଯେ ହରେ ପରକୀର୍ତ୍ତି ।
ପରନାରୀ ପରଧନ କରଇ ଯେ ଚୋରି
ଏ ଲୋକ ଜାଣ ହେ ମୁନି ଅନ୍ତେ ଯାନ୍ତି ମରି
ଯେ ଜନ ସାଧୁବିପ୍ରଙ୍କୁ ସୁମରଣା କରେ
ଏମାନେ ତୋଷ ହୋଇଲେ ଦୁର୍ଗତିରୁତରେ
ତୁମ୍ଭେ ଏହାକୁ କଲ୍ୟାଣ କର ତେଣୁ ଋଷି
ତୁମ୍ଭେ ଦୟାକଲେ ନୋହିବତ ବହୁକ୍ଳେଶୀ
ଏମନ୍ତ ବାକ୍ୟ ପ୍ରଭୁଙ୍କ ଶ୍ରୀମୁଖରୁ ଶୁଣି
କହନ୍ତି ଦୁର୍ବାସା ସୁକୋମଳ ମଞ୍ଜୁବାଣୀ
ବୋଲନ୍ତି ଶୁଣିମା ହେଉ ପ୍ରଭୁ ଜଗନ୍ନାହା
ଆପଣଙ୍କ ନାରୀ ବୃଥା ଅରଜିଲେ ଏହା ।
ଯାହାଙ୍କ ଦୁଷ୍ଟବୁଦ୍ଧିରୁ କୋପିଲେକ ଲକ୍ଷ୍ମୀ
ଅବଶ୍ୟ ଦୈତ୍ୟ ହୋଇବେ ଯାଇ ମର୍ତ୍ତ୍ୟଭୂମି
ହୋଇବ ଏହାଙ୍କ ପାଇଁ ତୁମ୍ଭେ ଚାରିଜନ୍ମ
ଅସୁର ମାରି ରଖିବେ କୀର୍ତ୍ତି ପରଂବ୍ରହ୍ମ ।
ଆମ୍ଭେ ଏ ଦୁହିଁଙ୍କୁ ଶାପ ଦେଉଅଛୁ ମଧ
ତେଣୁ ଆମ୍ଭ ବଂଶେ ଜନ୍ମ ହୁଅନ୍ତୁ ଅବଶ୍ୟ ।
ପ୍ରଥମରେ ବ୍ରହ୍ମାଙ୍କର ବୀର୍ଯ୍ୟେହେବେ ଜାତ
ମହାଦୁଷ୍ଟ ହୋଇ ମର୍ତ୍ତ୍ୟେ ବଢ଼ିବେ ଦଇତ୍ୟ ।
ମୁର ଦାରୁଣ ବୋଲିଣ ବହିବେ ସେ ନାମ
ତିନିପୁର ଲୋକେ ସରି ନୋହିବେ ବିକ୍ରମ ।
ଜିଣିବେ ଚଉଦପୁର ଯାକ ଭୁଜବଳେ
ଦେବ ମାନବ ଯେ ସରି ନୋହିବେ ଭୂତଳେ
ସାଧୁ ହତ କରି ହେବେ ପୃଥିବୀକୁ ଗରୁ
ମର୍ତ୍ତ୍ୟେ ଉପୁଜିବ ତୁମ୍ଭେ ସେହି ସକାଶରୁ ।
ହେ ଦୀନ ବାନ୍ଧବ ସ୍ୱାମୀ ମର୍ତ୍ତ୍ୟମଣ୍ଡଳରେ
ଜନ୍ମିବ ବଦରୀ ଦେଶେ ବଲ୍ଲଭର ଘରେ ।
ଅନନ୍ତ ମୂରତି ଘେନି ସଙ୍ଗତରେ ତୁମ୍ଭେ
ହେବ ଅବତାର ଯାଇ ଭଗବତୀ ଗର୍ଭେ ।
ମେଷ ମାସ ଶୁକ୍ଳପକ୍ଷ ଚତୁର୍ଦ୍ଦଶୀ ଦିନ
ନୃସିଂହ ନାମକୁ ବହି ହୋଇବ ଜନମ ।

ସେ ଅନନ୍ତ ସ୍ୱାମୀ ମୁର ଦାରୁଣ ଦଇତ୍ୟ
ସଙ୍ଗେ କେତେ ଯୁଝି କରି ନ ପାରିଲେ ହତ
ଧରିବେ ସହସ୍ରଫଣା ଏକା ଯେତେବେଳେ
ଦାରୁଣକୁ ନିବାରିଣ ନାଶିବେ ସେ କାଳେ ।
ତୁମ୍ଭର ଶରୀରୁ ପୁଣି ଜାତ ହେବେ ଯେତେ
ଶ୍ରୀନୃସିଂହଗଣ ନାମ ବହିବେ ଜଗତେ ।
ନାଶିବେକ ମୁରଦୈତ୍ୟ ସୈନ୍ୟ ଯୁଦ୍ଧକରି
ଆପଣ ମଧ୍ୟ ଆସିବେ ପୁଣି ମୁର ମାରି ।
ଯେଉଁରୂପେ ମାରିବ ହେ କଥା ଏବେ ଶୁଣ
ସହସ୍ରେକ ପାଦ ତହିଁ ହେବେ ନାରାୟଣ ।
ସେ ପାଦଯାକ ଧରିଣ ଦୈତ୍ୟ ପ୍ରହାରିବ
ତେବେ ସେ ବୁକୁ ଫାଟିଣ ମରିବ ଦାନବ ।
ସେ ପାଦକୁ ନିନ୍ଦା ଯେଣୁ କଲାଟି ରାକ୍ଷସ
ତେଣୁ ସେହି ପାଦ ଘାତେ ହେବ ଜାଣ ନାଶ
ନୋହିଲେ ଅନୁରୂପେ ସେ ଯେବେ ଯୁଦ୍ଧକଲେ
ବେନି ପାଦ ସମ ହେତୁ ଯେଣୁ ନ ବାଛିଲେ
ଏଣୁ ଆପଣେ ସହସ୍ର ପାଦ ନିଜେ ଧରି
ଅସୁରକୁ ନିବାରିବ ଚରଣ ପ୍ରହାରି ।
ଏ ରୂପେ ପ୍ରଥମ ଜନ୍ମେ ହୋଇବେ ସେମୋକ୍ଷ
ତେବେ ମୁରାରୀ ନାମକୁ ବହିବ ପଦ୍ମାକ୍ଷ ।
ସେହିଠାରୁ ଦୈତ୍ୟଙ୍କର ଆଦି ଜନ୍ମ ଯିବ
ଅନ୍ୟଜନ୍ମ କହୁଅଛି ଶୁଣ ବାସୁଦେବ ।
ପୁଣି ଲେଉଟି ଏ ଜନ୍ମ ହେବେ ମହୀଭାଗେ
କଶ୍ୟପ ଋଷିର ବୀର୍ଯ୍ୟେ ଦିତି ଯୋନିମାର୍ଗେ
ବହିବେ ହିରଣ୍ୟ ହିରଣାକ୍ଷ ନାମ ଦୁଇ
ବୁଲିବେ ସପତ ଲୋକେ ଜିଣିବେ ସେ ମହୀ
ପୃଥିବୀକି କଣ୍ଟକ ସେ ହେବେ ହିରଣାକ୍ଷ
ବରାହ ରୂପରେ ତୁମ୍ଭେ ମାରିବ ପ୍ରତ୍ୟକ୍ଷ ।
ତହିଁ ଉତ୍ତାରୁ ଯେ ପୁଣି ଜନ୍ମିବ ପ୍ରହ୍ଲାଦ
ଅନୁବ୍ରତେ ବସି ଧ୍ୟାନ କରିବ ଗୋବିନ୍ଦ ।
ତାହା ଶୁଣି ହିରଣ୍ୟ ଯେ ନ ପାରିବ ସହି
ମାରିବ ପୁତ୍ରକୁ ବୋଲି ଯିବ କ୍ରୋଧହୋଇ
ସୂତିକା ମନ୍ଦିରେ ପଶି ଧରିବ ପୁତ୍ରକୁ
ପିଶାଚୁଣୀ ଖାନ୍ତୁ ବୋଲି ନେବ ଶ୍ମଶାନକୁ ।
ଦେଖି ପିଶାଚୀ ଡାହାଣୀ ନ ଛୁଇଁବେ କେହି
ଶ୍ରୀହରିର ଭକ୍ତ ବୋଲି ଯିବେ ଆଡ଼ହୋଇ
ପ୍ରଭାତରୁ ଶୁକ୍ରଗୁରୁ ପ୍ରହ୍ଲାଦକୁ ନେବେ
ପ୍ରବୋଧିଣ ହିରଣ୍ୟକୁ ମାତାକୋଳେ ଦେବେ
ତହିଁ ଉତ୍ତାରୁ ଯେ ପୁଣି କେତେଦିନ ଅନ୍ତେ
ପୁତ୍ରକୁ ଡକାଇ ଆଣିବ ଯେ ତାରହାତେ ।

ଲକ୍ଷେ ତାଳ ଉଚ୍ଚେ ଥିବ ଜଗତୀରେ ବସି
ଆସିବ ସେଠାକୁ ପୁତ୍ର ହରିନାମ ଘୋଷି ।
ରାମ ରାମ ହରି ହରି କୃଷ୍ଣ କୃଷ୍ଣ ବୋଲି
ପିତାର କୋଳେ ବସିବ ଯାଇ ବଳେ ପେଲି
ତାହାଶୁଣି ହିରଣ୍ୟର କମ୍ପିବ ମସ୍ତକ
ମହାକୋପ ହୋଇ ଶୂନ୍ୟେ ଫିଙ୍ଗିବ ବାଳକ
ଲକ୍ଷେ ତାଳ ଉଚ୍ଚୁ ପୁତ୍ର ପଡ଼ିବ ଯେ ଖସି
ବସିବ ପଲ୍ୟଙ୍କେ ଥିଲା ପ୍ରାୟ ତଳେ ଆସି ।
ତେଡ଼େ ପ୍ରମାଦରେ ପୁଣି ନୋହିବ ମରଣ
ଅଧିକରେ ବୋଲୁଥିବ ହରି ନାରାୟଣ ।
ସେ ନାମକୁ ଶୁଣି ଦୈତ୍ୟ ଧରି କୁମରକୁ
ବୃକ୍ଷପରେ ଉଠି ଫିଙ୍ଗି ଦେବେ ସମୁଦ୍ରକୁ ।
ତେବେହେଁ ନୋହିବ ରୋମ କୁମରରବାଙ୍କ
ପୁଣିହିଁ ବନରେ ନେଇ ବାନ୍ଧିବ ବାଳକ ।
ବନ୍ଧନ ଫେଡ଼ିବ ସିଦ୍ଧରଷି ତାର ଆସି
ପିତା ନ ଆସୁଣୁ ପୁତ୍ର ଗୃହେ ଥିବ ବସି ।
ଦେଖି ହିରଣ୍ୟ ଅସୁର ଆଚମ୍ବିତ ହେବ
ପୁଣି ପୁତ୍ରର ଛାତିରେ ପର୍ବତ ଥୋଇବ ।
ତହୁଁ କୁମରକୁ ରଖିବେକ ଦାମୋଦର
ଆଉ ଦିନେ ବନକୁ ଯେ ନେବ ସେ ଅସୁର
ଶୂନ୍ୟମଣ୍ଡପ ବସାଇ ପୋତିବ ପାତାଳେ
ସେ କଷଣୁ ଜଗନ୍ନାଥେ ତାରିବେ ନିଶ୍ଚଳେ
ସେଠାରୁ କୁମର ଆସି ବନରେ ମିଳନ୍ତେ
ମରାଇବ ନାନା ଅସ୍ତ୍ର ବଳବନ୍ତ ହସ୍ତେ ।
କୃଷ୍ଣ କୃଷ୍ଣ ବୋଲନ୍ତେ ସେ ମାଡ଼ ନ କାଟିବ
ପୁଣିହିଁ ସେ ହସ୍ତୀଙ୍କର ଦନ୍ତେ ଚିରାଇବ ।
ତେବେ ପ୍ରହ୍ଲାଦକୁ ପ୍ରାସ ନୋହିବ ଯେ କିଛି
ଦୁର୍ବାସା କହୁଅଛନ୍ତି ଶୁଣନ୍ତି ଶ୍ରୀବସ୍ତି ।
ଅଷ୍ଟକୁଳ ନାଗଙ୍କର ମୁଖେ ଦେବ ପୁଣି
ପୁତ୍ର ଭକ୍ତି ଦେଖି ଡରି ପଳାଇବ ଫଣୀ ।
ପୁଣିହିଁ ପ୍ରହ୍ଲାଦକୁ ଯେ ଦେଖି ଅଗ୍ନିକୁଣ୍ଡେ
ଅନଳେ ପଡ଼ିଣ ହରି ବୋଲୁଥିବ ତୁଣ୍ଡେ
ହରିନାମ ଶୁଣି ଅଗ୍ନି ଲିଭିଯିବ ତହିଁ ।
କରିବ ଆହୁତି ପୁଣି ଶତେ ବିପ୍ର ରାଇ ।
କେବେହେଁ ଶିଶୁର ପ୍ରାଣ ନୋହିବ ଯେ କିଛି
ଭୋଜନରେ ବିଷଦେବ ସଙ୍ଗେ ମଧୁରୁଚି ।
ଶ୍ରୀହରି ପ୍ରସାଦେ ବିଷ ହୋଇବ ଅମୃତ
ପୁଣି କାଠ ମଡ଼ାଇବ ମାଲଙ୍କର ହସ୍ତ ।
ନିଦ୍ରାରେ କୁମର ତାହା ନ ଜାଣିବ କିଛି
କାଠମଡ଼ା ମାଲେ ମରିଯିବେ ହୋଇ ଛେଚି

ଏତେ କଷ୍ଟ ଦେଇ ଦୈତ୍ୟ ନପାରିବ ମାରି
ଲେଉଟି ବସିବ ପୁତ୍ର ଘେନି ସଭାକରି ।
କୁମରକୁ ବୋଲି ତାରେ ଶିବ ବିଦ୍ୟା ଛାଡ଼ି
ଭଜୁ ହରିନାମ କିମ୍ପା ଏତେ ଦୁଃଖେ ପଡ଼ି ।
ଏବେ ମୁଁ କହୁଛି ହରି ନାମକୁ ତୁ ତେଜ
ମୋକ୍ଷ ହୋଇବୁ ଯଦ୍ୟପି ଶିବ ପାଦେ ଭଜ
ପିତାର ମୁଖୁ ଏସନ ବାକ୍ୟ ସେହୁ ଶୁଣି
ବୋଲିଲା କପାଳେ କର ଦେଇ ପୁତ୍ରମଣି ।
ଆହେ ତାତ ଯାହା ମୋତେ ଅବଧାନ କଲ
ଶିବଙ୍କୁ ଭଜ ବୋଲିଣ ଆଜ୍ଞା ମୋତେ ଦେଲ
ଆପଣ ତ ଏ ପିଣ୍ଡର କର୍ତ୍ତା ମୋର ଅଟ
ମୁଁ କିସ କହିବି ତୁମ୍ଭ ଆଗେ ଜ୍ଞାନବାଟ ।
ଶିବଙ୍କୁ ଭଜ ବୋଲିଣ ବୋଇଲଯେମୋତେ
ସେ ଶିବ ଭଜନ୍ତି ଦେଖ ଗୋବିନ୍ଦଙ୍କୁ ନିତ୍ୟେ
ଗୋବିନ୍ଦ ନ ଭଜି କେ ଅଛ ଦେହ ଧରି
ସ୍ଥାବର ଜଙ୍ଗମ କୀଟ ପତଙ୍ଗାଦି କରି ।
ବ୍ରହ୍ମା ଚନ୍ଦ୍ରସୂର୍ଯ୍ୟ ଇନ୍ଦ୍ର ଆଦି ଦେବଗଣ
ଅଛନ୍ତି ଛପନ କୋଟି ଜୀବ ଯେତେ ଜାଣ ।
ମୁହିଁ ତୁହି ଏହି ସେହି ଯେତେଲୋକ ଥାଇ
ସମସ୍ତଙ୍କ ହୃଦରେତ ବିଜେ ଭାବଗ୍ରାହୀ ।
ଆତଙ୍ଗ ନାଶନ ସେ ଶ୍ରୀଜଗନ୍ନାଥ ମୂର୍ତ୍ତି
ଭକ୍ତଜନଙ୍କ ବିପତ୍ତି ବିନାଶ କରନ୍ତି ।
ତାହାଙ୍କର ନାମଧରି ବଞ୍ଚିଛି ମୁଁ କାଳ
ଆଉ କଥାମାନ ମୋତେ ବିଷମ ଜଞ୍ଜାଳ ।
ତୁମେହେ ମୋହର ଗୋଲକର ଦୈତ୍ୟସାଇଁ
ମିଶିଣ ଆସ ଭଜିବା ହୃଦେ ଭାବଗ୍ରାହୀ ।
ରଖିବେ ସକଳ ବିପଦରୁ ଦଇତ୍ୟାରୀ
ନାମ ଅଟଇ କେଶବ କୃଷ୍ଣ ଗିରିଧାରୀ ।
ସେବିଲେ ତାଙ୍କୁ ଆମ୍ଭର ଯିବ ସବୁ କଷ୍ଟ
ଶୁଣି ହିରଣ୍ୟ ରାଜାର କମ୍ପିଲା ମୁକୁଟ ।
ବୋଇଲେ ପାପିଷ୍ଠ ଆରେ ଦେଖାତୋରହରି
କାହିଁ ରହିଅଛି ମୋର ଭାଇର ବଇରୀ ।
ଏହିକ୍ଷଣି ଆଣି ମୋର ଆଗେ ଦେଖା ତାକୁ
ନୋହିଲେ ଏକ୍ଷଣି ତୋର ହାଣିବି ଶିରକୁ ।
ଏତେବୋଲି ପ୍ରହ୍ଲାଦର କେଶକୁ ଧରିବ
ଦକ୍ଷିଣ ଭୁଜରେ ଖଡ଼ଗ ଝଲକାଉ ଦେବ
ପିତାର ନିଷ୍ଠୁର ବାଣୀ ଶୁଣି ପ୍ରହଲାଦ
ତକ୍ଷଣେ ଚିନ୍ତିଲା ସେହୁ ବିଷ୍ଣୁ ପଦ୍ମପାଦ ।
ଯେଉଁ ଖମ୍ବେ ଆଉଜିଣ ବସିଥିବ ଦୈତ୍ୟ
ସେହି ଖମ୍ବରୁ ଭୋ ସ୍ୱାମୀ ହେବ ତୁମ୍ଭେଜାତ

ଭକ୍ତର ଦୁଃଖ ଦେଖିଣ ନ ପାରିବ ସହି
ହିରଣ୍ୟକୁ ବିଦାରିବ ଜାନୁରେ ପକାଇ ।
ଶିଶୁ ବାଳକକୁ ନିନ୍ଦା କଲା ପୁଣ୍ୟଜନ
ତେଣୁ ସେହି ଶିଶୁଲାଗି ମରିବ ହିରଣ୍ୟ ।
ଏରୂପେ ତା ଦୁଇଜନ୍ମ ଯିବ ସତ୍ୟଯୁଗେ
ତୃତୀୟ ଜନ୍ମର କଥା ଶୁଣ ଶାସ୍ତ୍ରମାର୍ଗେ ।
ତ୍ରେତାଯୁଗରେ ଜନ୍ମିବେ ପୁଣି ବେନିଭାଇ
ଏବେ ହୋ ସେ କଥା ଶୁଣ ଦେଉଛି ବତାଇ
ପୌଲସ୍ତ୍ୟ ଋଷି ନନ୍ଦନ ବିଶ୍ରବା ଯେ ଋଷି
ତାହାଙ୍କର ପତ୍ନୀ ପୁଣି ହେବେ ନଭକେଶୀ ।
ସୁମାଳି ଦଇତ୍ୟର ସେ ଅଟନ୍ତି ଦୁହିତା
ସୌନ୍ଦର୍ଯ୍ୟ ଦେଖି ରମିବେ ତାକୁ ମୁନିଜ୍ଞାତା
ରମନ୍ତେ ସେ ବେନିପୁତ୍ର ହେବେ ଉତପନ୍ନ
ଜ୍ୟେଷ୍ଠ ରାବଣ କନିଷ୍ଠ ନାମ କୁମ୍ଭକର୍ଣ୍ଣ ।
ଦେବ ଦୈତ୍ୟ ଆଦିକରି ନାଗଲୋକ ଯାଏ
ସ୍ୱର୍ଗ ମର୍ତ୍ତ୍ୟ ପାତାଳକୁ ଜିଣିବେ ଯେ ପୋଏ ।
ସକଳ ଲୋକ ସମ୍ପଦମାନ କ୍ରୂର କରି
ରହିବେ ସେ ସିନ୍ଧୁ ମଧ୍ୟେ ଲଙ୍କାନାମେ ପୁରୀ
ଖଟିବେ ସମସ୍ତ ଦେବତାଏ ଭୃତ୍ୟଭାବେ
ଜନ୍ମିବେ ତାହାଙ୍କ କଷ୍ଟ ଦେଖି ବାସୁଦେବେ
ତ୍ରିଲୋକ ଜନନୀ ନିଜେ ଯିବେ ବିଜେ କରି
ବିଦେହ ନୃପ କୁଳରେ ହୋଇବେ କୁମାରୀ ।
ଅଯୋନିଜା ଜନକର ସୁତା ସୀତା ହେବେ
ଆପଣ ପ୍ରକାଶହେବେ ଅଯୋଧ୍ୟାରେ ଭାବେ
ସୂର୍ଯ୍ୟବଂଶେ ଯାଇ ତୁମ୍ଭେ ଜନମିବ ଭଲା
ପିଅର ଦଶରଥ ଯେ ମାତା କଉଶଲ୍ୟା ।
ଯଜ୍ଞଚରୁ ଭକ୍ଷିବେ ସେ ଜନ୍ମ ହେବ ତୁମ୍ଭେ
ଚାରୋଟି ରୂପ ହୋଇବ ତିନିରାଣୀ ଗର୍ଭେ ।
ପ୍ରଥମରେ ରଘୁନାଥ ଦ୍ୱିତୀୟେ ଭରତ
ତୃତୀୟରେ ଲକ୍ଷ୍ମଣ ସେ ଶତ୍ରୁଘ୍ନ ଚତୁର୍ଥ ।
ଏହିପରି ଅବତାର ହେବେ ସୂର୍ଯ୍ୟବଂଶେ
ଆସିବେ ତୁମ୍ଭଙ୍କୁ ବିଶ୍ୱାମିତ୍ର ନେବା ଆଶେ ।
ଅଯୋଧ୍ୟା ଦେଶେ ପଶିଣ ମାଗି ଘେନିଯିବେ
ତୁମ୍ଭ ସାନୁଜ ଲକ୍ଷ୍ମଣ ସଙ୍ଗେ ଯାଇଥିବେ ।
ସେ ବିଶ୍ୱାମିତ୍ର ମୁଖରୁ ଧନୁବିଦ୍ୟା ଶିଖି
ମାରିବ ଅସୁରଗଣ ଆଗ ଯାଇଁ ରଖି ।
ମୁକତି କରିବ ଅହଲ୍ୟାକୁ ପାଷାଣରୁ
ଧନୁ ଭାଙ୍ଗି ସୀତା ନେବ ଜନକ ନବରୁ ।
ବାଟେ ଆସୁ ପର୍ଶୁରାମ ଦର୍ପ ନିବାରିବ
ଅଯୋଧ୍ୟା ପୁରରେ ଯାଇ କିଛିଦିନ ଥିବ ।

ଲେଉଟିଣ ବନେ ଯିବ ପିତୃ ସତ୍ୟ ପାଳି
ସଙ୍ଗେ ଥିବେ ସଉମିତ୍ରୀ ଜନକ ଦୁଲାଳୀ ।
ଯତିବେଶ ଧରି ତୁମ୍ଭେ ତିନିଜଣଯିବ
ପାଦଗତି ହୋଇକରି ବନେ ବୁଲୁଥିବ ।
ବୁଲିବ ପୃଥିବୀଯାକ ଶିଷ୍ଟଜନ ହିତେ
ସ୍ନାନଦାନ କରିବ ଯେ ପଶି ନାନାତୀର୍ଥେ ।
ଅସାଧୁ ସୁଜନ ଜନ ସୁପଣ୍ଡିତ ତୋଷି
ପୃଥିବୀ ପାଳନେ ହେବ ଦଣ୍ଡକ ନିବାସୀ ।
ଚିତ୍ରକୁଟ ପର୍ବତରୁ ଗୋଦାବରୀ ଯିବ
ପର୍ଣ୍ଣକୁଟୀମାନ ରଚି ପଞ୍ଚବଟୀ ଥିବ ।
ସେ ସ୍ଥାନକୁ ଆସିଣଯେ ରାବଣ ଭଗିନୀ
ତାହାକୁ ଦେଖି ଡରିବେ ଜନକ ନନ୍ଦିନୀ ।
ସୀତା ଡରନ୍ତେ ଲକ୍ଷ୍ମଣ ବେଗେ ଉଠିଯିବେ
ସୂର୍ପଣଖା ନାକ କାନ କାଟି ପକାଇବେ ।
ନାସାକର୍ଣ୍ଣ ଛେଦନ୍ତେ ସେ ତହୁଁ ପଳାଇବ
ଖରର ଆଗରେଯାଇଁ ସମସ୍ତ କହିବ ।
ଚଉଦ ସହସ୍ର ବଳ ଘେନି ଖରବୀର
ଘଡ଼ିଏଯାଏ ଯୁଝିବ ତୁମ୍ଭ ସଙ୍ଗତର ।
ସକଳେ ତୁମ୍ଭ ହସ୍ତରେ ଯିବେ ଯମପୁରୀ
ଦେଖି ପଳାଇବ ସୂର୍ପଣଖା ଲଙ୍କାପୁରୀ ।
ରାବଣେଶ୍ୱର ଆସିବ ପୁଣି ସେହିଲାଗେ
ମାରୀଚ ଦୈତ୍ୟକୁ ସେହୁ ଆଣିଥିବ ସଙ୍ଗେ ।
କରିବ ସେ ମାୟାମୃଗ ପ୍ରୀତିକଥା କହି
ପେଷିବ ତୁମ୍ଭ ଦୁଆର ଡେରିବ ସେ ଯାଇଁ
ଅଷ୍ଟରତ୍ନ ପ୍ରାୟ ତାର ପୃଚ୍ଛ ଦେଖାଯିବ
ଦେଖିଲେ ସୀତାଙ୍କ ମନେ ଲୋଭ ଜନମିବ ।
ଧାଇଁବ ଜାନକୀ ଶ୍ରଦ୍ଧା ଦେଖି ତୁମ୍ଭେ ଜାଣି
ଆସିବ କୋଦଣ୍ଡେ ଗୁଣ ଦେଇ ତାକୁ ହାଣି
ଡାକିବ ସେ ପ୍ରାଣ ଗଲାବେଳେ ଲକ୍ଷ୍ମଣକୁ
ଶୁଣି ସଉମିତ୍ରୀ ଯିବେ ଛାଡ଼ିଣ ସୀତାଙ୍କୁ ।
ଏଥି ଉତ୍ତାରୁ ରାବଣ ଛଗିଥିବ ଏକା
ପର୍ଣ୍ଣକୁଟୀରୁ ସୀତାଙ୍କୁ ଘେନିଯିବ ଲଙ୍କା ।
ତାହା ଜାଣି ସିନ୍ଧୁ ପୋତିଯିବ ତୁମ୍ଭେ ଡେଇଁ
ମାରିବ ସେ ରାବଣକୁ ଗୋତ୍ରଯାକ ଛେଇ ।
ନାଶିବ କୁମ୍ଭକର୍ଣ୍ଣକୁ ବାବଲ ଶରରେ
ବିଭୀଷଣକୁ ଯେ ରାଜା କରିବ ଲଙ୍କାରେ ।
ଯତି ଯୁବତୀଙ୍କୁ ନିନ୍ଦି ଅଛନ୍ତି ସେ ଦୁହେଁ
ଯତି ସତୀ ଲାଗି ଜାଣ ହୋଇବେ ଏ କ୍ଷୟେ ।
ସତୀ ହେବ ଲକ୍ଷ୍ମୀଦେବୀ ଯତି ହେବ ତୁମ୍ଭେ
ସତୀ ଚୋରିକରି ତୁମ୍ଭେ ମାରି ଯତିଭାବେ ।

ଲେଉଟି ଆସି ମିଳିବ ପୁର ଅଯୋଧାରେ
କିଛି ଦିନେ ଆସିବ ଏ ବଇକୁଣ୍ଠପୁରେ ।
ତହିଁ ଉତ୍ତାରୁ ପୁଣ ସେ ଅବତାର ଯିବ
ଦ୍ୱାପର ଯୁଗରେ ଜନ୍ମ ହେବ ବାସୁଦେବ ।
ଏ ଦୁଇଭାଇ ଜନ୍ମିବେ ଯାଇ ଚେଦିରାଜ୍ୟେ
ଉପୁଜିବେ ଦୁଷ୍ଟ ହୋଇ ଦମଘୋଷ ବୀର୍ଯ୍ୟେ
ଦନ୍ତଚକ୍ର ଶିଶୁପାଳ ବୋଲାଇବେ ନାମ
ତାହାଙ୍କୁ ମାରିବା ପାଇଁ ହେବ ତୁମ୍ଭେ ଜନ୍ମ ।
କେଉଁ କୁଳେ ଜନ୍ମ ହେବ କହିବା ତା ପୁଣ
ଉପୁଜିବ କୃଷ୍ଣ ବଂଶେ ହୋଇ କୃଷ୍ଣ ନାମ ।
ମଥୁରା ନାମ ଦେଶରେ ବାସୁଦେବ ବୀର୍ଯ୍ୟେ
ଦେବକୀ ଗର୍ଭରେ ଜନ୍ମି ଯିବ ଗୋପରାଜ୍ୟେ
କଂସର ଡରେ ଯଶୋଦା ପୁତ୍ର ବୋଲାଇବ
ଅଷ୍ଟବରଷରେ ଅଷ୍ଟମଲ୍ଲଙ୍କୁ ନାଶିବ ।
ନାଶିବ ଅଷ୍ଟମଲ୍ଲଙ୍କୁ ଗୋଟି ଗୋଟି କରି
ପୁତନା ତୃଣାବର୍ତ୍ତ ଯେ ବକା ବତ୍ସା ଚାରି ।
ଧେନକୁ ଅଘା ପ୍ରଳମ୍ବା ଯାମଳା ଅର୍ଜ୍ଜୁନ
ବିଡ଼ୋଜା ଗର୍ବ ନାଶିବ ଟେକି ଗୋବର୍ଦ୍ଧନ
ସୁରତି କରିଣ ଷୋଳସହସ୍ର ଗୋପୀଙ୍କି
ଉଦ୍ଧାରିଣ ଭକ୍ତଗଣ ରଖିବ ଯେ ଟେକି ।
କୁବେର ବେନି ପୁତ୍ରର ଶାପୂ ମୁକ୍ତକରି
ତହିଁ ଉତ୍ତାରୁ ମଥୁରାଯିବ ନରହରି ।
ନାଶିବ ଦୁଷ୍ଟଲୋକଙ୍କୁ ସଜ୍ଜନ ରଖି
ଧ୍ୱଂସକ ରଜତ ଗଜ କୁବ୍‌ଜା କରି ସୁଖୀ ।
ରଙ୍ଗସଭା ତଳେ ଯାଇ ଚାଣୁର ମୁଷ୍ଟିକ
ମୋଡ଼ିବ ମାଲଯୁଦ୍ଧରେ ଦୁହିଙ୍କର ବେକ ।
ମଞ୍ଚର ଉପରେ ଚଢ଼ି କଂସ ନିବାରଣ
ଦେଖୁ ଦେଖୁ ଅସୁରର ଛାଡ଼ିଯିବ ପ୍ରାଣ ।
ଯଦୁବଂଶେ ଉଗ୍ରସେନ ବନ୍ଧାଇବ ପାଟ
ପିତା ମାତାଙ୍କର ତୁଳେ ଫେଡ଼ି ସବୁ କଷ୍ଟ ।
ଅଷ୍ଟଦଶବାର ଜରାସନ୍ଧ ଦେଇ ଧାଡ଼ି
ପାଣ୍ଡବଙ୍କ ପାଇଁ ଦୁଃଖ ସହି ଦେବ ଛାଡ଼ି ।
ମୁଚୁକୁନ୍ଦ କୋପେ କାଳଦମନ ନିପାତି
ରଚିବ ପଶ୍ଚିମ ସିନ୍ଧୁ ମଧ୍ୟେ ଦ୍ୱାରାବତୀ ।
ସାତବଂଶ ଯାଦବଙ୍କୁ ସଙ୍ଗେ ଘେନିଯାଇ
ମଥୁରା ଛାଡ଼ି ଦ୍ୱାରିକା ରଖିବ ଗୋସାଇଁ ।
ସଙ୍ଗତରେ ଜ୍ୟେଷ୍ଠଭାଇ ବଳରାମ ଥିବେ
ତୁମ୍ଭଲାଗି ସାତବଂଶ ଯଦୁ ମୋକ୍ଷ ହେବେ ।
ଅଷ୍ଟ ପାଟବଂଶୀ ବିଭା ହୋଇବେ ନିଶ୍ଚିନ୍ତେ
କୁମ୍ଭସ୍ଥଳୀ କଟକରେ ରହି ଦିନାକେତେ ।
ଅର୍ଜ୍ଜୁନଙ୍କ ସଖା ହୋଇ ନନ୍ଦିଘୋଷ ଚଢ଼ି ।
ଖଣ୍ଡିବ ପୃଥ୍ୱୀର ଭାର ଦୁଷ୍ଟ ମୁଣ୍ଡମୋଡ଼ି ।
ଗୋସିଂହ ଲୋକସିଂହ ଯେ ବଜ୍ରସିଂହ ଦୈତ୍ୟ
ବାଣାସୁର ବଜ୍ରନାଭ ତାରକା ନିପାତ ।
କୁମ୍ଭ ନିକୁମ୍ଭ ହିଡ଼ିମ୍ବ ବକ ଯେ ଶମ୍ବରା
ଅମ୍ବା କଦମ୍ବା ପ୍ରଳମ୍ବା ପୁଣ୍ଡରୀକ ବୀରା ।
ରୁକ୍ମଣ ମୃଢ଼ାସୁର ହେ ଶାଲ୍ୱ ଶିଶୁପାଳ
ଦନ୍ତବକ୍ର ତୁଳେ ଧୃତରାଷ୍ଟ୍ର ଶତେବାଳ ।
କୀଚକଙ୍କୁ ଆଦିକରି ଯେତେ ଦୁଷ୍ଟ ଥିବେ
ସମସ୍ତଙ୍କୁ ବିନାଶିବ ଘେନିଣ ପାଣ୍ଡବେ ।
ଯୁଧିଷ୍ଠି ଧର୍ମରାଜାଙ୍କ ଯାଗ ସଭାମଧ
ପାପିଷ୍ଠପଣେ ଆସିବ ଶିଶୁପାଳ ମନ୍ଦ ।
ତାହାକୁ ଚକ୍ର ପେଶିଣ ନିବାରିବ ତହିଁ
ଭାଇର ଛଳେ ଆସିବ ଦନ୍ତବକ୍ର ଧାଇଁ ।
ଦ୍ୱାରକାରେ ପଶି ଯୁଦ୍ଧ କରନ୍ତେ ନାସ୍ତିକ
ଛେଦିବ ଚକ୍ରକୁ ପେଶି ତୁମ୍ଭେ ତାର ବେକ ।
ଶତେ ଜନ୍ମକୁ ଲକ୍ଷ୍ମୀ ଯେ ଶାପ ତାକୁଦେଲେ
ଚାରି ଜନ୍ମେ ମୋକ୍ଷ ତାଙ୍କୁ କର ତୁମ୍ଭେ ଭଲେ
ପ୍ରଥମ ଜନ୍ମେ ମରନ୍ତୁ ପାଇ ପାଦଘାତ
ଦ୍ୱିତୀୟ ଜନ୍ମେ ମରନ୍ତୁ ବାଜି ନଖକ୍ଷତ ।
ତୃତୀୟ ଜନ୍ମେ ମରନ୍ତୁ ବ୍ରହ୍ମଶର ପଡ଼ି
ଚତୁର୍ଥ ଜନ୍ମରେ ମୋହ ହ୍ୱନ୍ତୁ ଚକ୍ରେ ଛିଡ଼ି ।
ଆସନ୍ତୁ ସତେକ ଜନ୍ମ ଖଣ୍ଡ ଚାରିଜନ୍ମେ
ରହନ୍ତୁ ସେ ଦ୍ୱାରୀ ହୋଇ ବଇକୁଣ୍ଠ ଧାମେ ।
ଏମନ୍ତ ଦୁର୍ବାସା ଋଷି କହନ୍ତେ ଆଗତ
ବିଷ୍ଣୁହିଁ ମନେ ପାଞ୍ଚିଣ ବିଚାରିଲେ ସତ୍ୟ ।
ବୋଇଲେକ ମୁନି ଏହା ନିଶ୍ଚେ ଯେବେହେବ
ଯାଆନ୍ତୁ ଜୟ ବିଜୟ ହୁଅନ୍ତୁ ଦାନବ ।
ଏମନ୍ତବୋଲି ବୋଇଲେ ପ୍ରଭୁ ଯେତେବେଳେ
ଶୁଣିକରି କମ୍ପମାନ ହେଲେ ଦ୍ୱାରପାଳେ ।
ମହାଭୟ ପାଇ ବସିଲେକ ଚିନ୍ତାକରି
ଶ୍ରୀଜଗନ୍ନାଥଙ୍କୁ ଚାହିଁ କରନ୍ତି ଗୁହାରି ।
ବୋଇଲେ ଭୋ ପ୍ରଭୁ ତୁମ୍ଭେ ଶୁଣ ଆମ୍ଭଭକ୍ତି
କାହିଁକି ଛାମୁରୁ ଯାଇ ହେବୁ ଦୈତ୍ୟ ମୁନି
କି ଦୋଷକୁ ଏଡ଼େ କରୁଅଛ ହେ ବିଗ୍ରହ
ବିଷ୍ଣୁଙ୍କୁ ସେବି କିପାଇଁ ହେବୁ ଦୈତ୍ୟଦେହ
ଗୋବିନ୍ଦ ବୋଇଲେ ଶୁଣ କହିବା ହେ ତୁମ୍ଭେ
ପଡ଼ିଲେ ରେଣୁ ପ୍ରମାଣେ ବିଷ୍ଠା ସୁଧା କୁମ୍ଭେ
ସେହି ତେସନେ ଅମେଧ ହୁଏ କଲେ ଗ୍ରାସ
ଏହିରୂପେ କୋଟିପୁଣ୍ୟ ନାମେ ଅଳ୍ପଦୋଷ ।

ତୁମ୍ଭେ ଏଡ଼େ ଭକ୍ତି ଭଣ୍ଡାରରେ ଥାଇମୋର
ଜାଣୁ ଜାଣୁ ବ୍ରାହ୍ମଣଙ୍କୁ କଲ ତିରସ୍କାର ।
ଯେବଣ ପୁରର ଲୋକେ ପଣ୍ଡିତଙ୍କ ସମ
ତହିଁରେ କେହ୍ନେ ତୁମ୍ଭର ବ୍ରାହ୍ମଣଙ୍କୁ ତମ ।
ମୂର୍ଖ ବୁଦ୍ଧି ଘେନିକରି ଦ୍ୱିଜ ନିନ୍ଦା କଲେ
ତାହାକୁ ମୋକ୍ଷ ନାହିଁତ କୋଟିତୀର୍ଥ ଗଲେ
ବ୍ରାହ୍ମଣ ନିନ୍ଦୁକ ଲୋକ ଅଟେ ମହାମୂର୍ଖ
ଇହ ଲୋକରେ ଯାଇଣ ମଲେ ପଡ଼େ ନର୍କ
ବ୍ରାହ୍ମଣ ନିନ୍ଦୁକ ଲୋକେ ପୃଥିବୀକୁ ଗରୁ
ଯେ ବିପ୍ର ଶବଦ ସେହୁ ବଳଇ ମୋଠାରୁ ।
ବିପ୍ର ପାଦରଜ ଘେନିବେ ଯେ ଇଷ୍ଟକରି
କୋଟି ଶିବଲିଙ୍ଗ ପୂଜା ତାକୁ ନୁହେଁ ସରି ।
ଯେଉଁ ମୂର୍ଖ ଦୁଃଖ ଜାତ କରେ ବିପ୍ର ମନ
ସେ ବିପ୍ରକୁ ହରି କେବେ ନୁହନ୍ତି ପ୍ରସନ୍ନ ।
ପ୍ରସନ୍ନ ନୋହିଲେ ହୁଏ ସବୁରି ବଇରୀ
ବଇରୀ ବୋଇଲେ ତୁଟେ ତାର କନ୍ଧୁଶିରୀ ।
ଶିରୀ ତୁଟିଲେ ତାହାର ଆୟୁକ୍ଷୟ ହୋଇ
ଆୟୁଷ କ୍ଷୟ ଗଲେ ସେ ନର୍କରେ ପଡ଼ଇ ।
ସତେ କି ଯେବେ ତୁମ୍ଭର ଥାନ୍ତା ବିଷ୍ଣୁଭକ୍ତି
ଭକ୍ତିଥିଲେ ନିନ୍ଦନ୍ତି ସେ କିମ୍ପା ବ୍ରହ୍ମଯତି ।
ସହି ମୁଁ ପାରଇ ଜାଣ ସବୁ ନିନ୍ଦାବାଣୀ
ବ୍ରାହ୍ମଣର ନିନ୍ଦା କେବେ ନ ସହିବି ପୁଣି ।
କହିବା ଆରେ ଜୟ ବିଜୟ ତୁମ୍ଭେ ଶୁଣ
ଲକ୍ଷ୍ମୀ ସେ ଶାପ ତୁମ୍ଭଙ୍କୁ ଦେଲେ ଶତଜନ୍ମ ।
ତହିଁକି ଦୁର୍ବାସା ମୁନି ଏଡ଼େ ଦୟା କଲେ
ଶତେଜନ୍ମ ଖଣ୍ଡିକରି ଚାରିଜନ୍ମ ଦେଲେ ।
ଏଣୁ ତୁମ୍ଭେ ମଞ୍ଚପୁରେ ଯାଅ ବେନିଭାଇ
ଚାରିଥର ଉପୁଜିବ ଦୈତ୍ୟଦେହ ବହି ।
ତୁମ୍ଭଙ୍କୁ ମୋକ୍ଷ କରିବୁଁ ଆମ୍ଭେ ଚାରିଥରେ
ଏଥିନିମନ୍ତେ ଭାବନା ନକର ମନରେ ।
ତୁମ୍ଭ ସଙ୍ଗେ ଯେତେ ପାପୀଥିବେଟି ସଂସାରେ
ତୁମ୍ଭଲାଗି ମୋକ୍ଷହେବେ ମରି ସେ ମୋ କରେ
ଲକ୍ଷ୍ମୀ ଶାପକୁ ଦୁର୍ବାସା ଋଷି କଲେ ପାର
ନୋହିଲେ ହୁଅନ୍ତ ଜନ୍ମ ତୁମ୍ଭେ ଶତେବାର ।
ଆମ୍ଭେ ମଧ ଜନ୍ମ ଲଭି ହୁଅନ୍ତୁ ଯେ ଗଞ୍ଜି
ଏଥିପାଇଁ ଦୁର୍ବାସା ଏ ବୁଦ୍ଧି ଦେଲେ ଖଞ୍ଜି
ତୁମ୍ଭର ଖଣ୍ଡନ କରିଦେଲେ ଶତଜନ୍ମ
ସଂସାରରେ ସାର କଲେ ତୁମ୍ଭ ଚାରିଜନ୍ମ ।
ଏମନ୍ତ ବୋଲି କହନ୍ତେ ପ୍ରଭୁ ଦେବରାୟ
ତକ୍ଷଣେ ଗଲେ ବୈକୁଣ୍ଠ ସେ ଜୟ ବିଜୟ ।
ଦୁର୍ବାସାହିଁ ଗଲେ ସୁଖେ ଦରଶନ ପାଇ
ବୈକୁଣ୍ଠରୁ ବାହାରିଲେ ଅନ୍ତର୍ଦ୍ଧାନ ହୋଇ ।
ଶାରଦା ବିଷ୍ଣୁ ଲକ୍ଷ୍ମୀ ଯେ ଗଲେ ଅନ୍ତଃପୁର
ସେ ପାଦେ ଶରଣ ଦାସ ବିପ୍ର ପୀତାମ୍ବର ।
ଇତି ଶ୍ରୀ ଏ ପୁଣ୍ୟମୟ ନୃସିଂହ ପୁରାଣ
ଶୁଣିଲେ ସକଳ ପାପ କ୍ଷୟଯିବ ଜାଣ ।
ସଂକଳ୍ପ କରି ଶୁଣିଲେ ହୁଏ ଆୟୁବୃଦ୍ଧି
ନବଧା ଭକ୍ତି ଚୌରାଶି ମିଳେ ଯୋଗସିଦ୍ଧି
ଶ୍ରୀନୃସିଂହ ପୁରାଣ ଏ ଅତି ପୂଣ୍ୟବାଣୀ
ଇହ ପରଲୋକ ଗତି ଲଭିବ ଯା ଶୁଣି ।
ସତ୍ୟଯୁଗରେ ନୃସିଂହ ରୂପ ହରି ହୋଇ
ଭଗବତୀଙ୍କ ଉଦରେ ଜନ୍ମ ହେଲେ ଯାଇ ।
ସେ ବୃତ୍ତାନ୍ତ କହିବାକୁ ମୁଁ କି ସାମରଥ
କହବୋଲି ଆଜ୍ଞା ମୋତେ ଦେଲେ ଜଗନ୍ନାଥ
ବାଳୁତ ପିଲାଙ୍କ ପ୍ରାୟେ ଚଞ୍ଚଳ ମୋ ମତି
ନ ଜାଣେ ପାଠଶାଠ ନ ଜାଣେ ଶାସ୍ତ୍ରବୃତ୍ତି ।
କହିବାକୁ ବିଷ୍ଣୁଗ୍ରନ୍ଥ କିସ ମୋର,ହେତୁ
ପାଇଲି ଗୋବିନ୍ଦ ପ୍ରସନ୍ନରୁ ଦିବ୍ୟତତ୍ତ୍ୱ ।
ବୁଝିଲେ ବହିଛି ନରଦେହ ଅନିମିତ୍ତେ
ଏ ମୋର ମନ ଆୟତ୍ତ ନୁହଇ ତ ମୋତେ ।
କହୁଁ କହୁଁ ଏ ପିଣ୍ଡରୁ ଛାଡ଼ିଯିବ ପ୍ରାଣ
ଧନ ଜନ ଜୀବନହିଁ ସବୁ ଅକାରଣ ।
ଦାରା ପୁତ୍ର ଦୁହିତା ଯେ ନୁହନ୍ତି ତ କିଛି
ନ ଜାଣି ବୋଲନ୍ତି ପ୍ରାଣୀ ସବୁ ମୋର ଅଛି
ଆବର ପୃଥ୍ୱୀରେ ଜୀବ ହୋଇଛନ୍ତି ଯେତେ
ସବୁରି ଅହନ୍ତା ହୁଏ ସବୁଙ୍କୁ ଯେ ନିତ୍ୟେ ।
ସମସ୍ତ ମନୁଷ୍ୟଙ୍କର ସମସ୍ତ ବଇରୀ
ଏଣୁ ମୁଁ କହୁଛି ସମସ୍ତଙ୍କୁ ସ୍ତୁତିକରି ।
ସବୁରି ପାପପଦ୍ମରେ ଲୁଳୁ ମୋର ମାଥ
ବିପ୍ର ପୀତାମ୍ବରଙ୍କୁ ଯେ ଦିଅ ମୁକ୍ତିପଥ ।



## ମୁର ଓ ଦାରୁଣର ବାଳଲୀଳା

ପରୀକ୍ଷ ବୋଇଲେ ମୁନି ଏବେ ପ୍ରତେ ଗଲି
ଶୁଣି ନୃସିଂହପୁରାଣ ପାପ କ୍ଷୟ କଲି ।
ନାରଦଙ୍କ ଆଗେ ବ୍ରହ୍ମା ଛନ୍ତି ଯାହା କହି
ତାହା ମୋତେ କହ ପାପ ଯାଉ ତପିସାଇଁ ।
ଶୁକ ବୋଇଲେ ତେବେହେଁ ସାବଧାନେଶୁଣ
ଅଶେଷ ବାରାନିଧି ଏ ନୃସିଂହ ପୁରାଣ ।
ବାଲି ଫିଙ୍ଗିଲେ ସମୁଦ୍ର କାହିଁ ହେବ ପୋତା
ହସ୍ତଶୂନ୍ୟେ ବଢ଼ାଇ କେ ଧରିବ ସବିତା ।

ସ୍ୱର୍ଗକୁ ଗମିବ କେହୁ ନିଶୁଣୀରେ ଚଢ଼ି
ସୂକ୍ଷ୍ମରେଣୁ ଗଣିବ କେ ନରଦେହେ ବଢ଼ି
ଅଙ୍ଗୁଳିରେ ପୃଥ୍ୱୀ ମାପି କେ କରିବ ଅନ୍ତ
ସେହିରୂପେ ଅଟେ ହରିଯଶ ଅଲୋକିତ ।
ଗୋବିନ୍ଦ ଆଜ୍ଞାରେ ମୁହିଁ ଅଟେ ବଡ଼ଜଣେ
ତେଣୁ ଏ ନୃସିଂହ ଗ୍ରନ୍ଥ କହୁଛି ପୁରାଣେ ।
ଏତେକ ବୋଲିଣ ଶୁକ ଆନନ୍ଦେ ଗଦ ଗଦ
ଶ୍ରୀରାଜସଭାରେ ବସି ଉଚ୍ଚାରିଲେ ପଦ ।
ଦୈତ୍ୟଙ୍କର କଥା ଏବେ ଶୁଣ ନରନାହା
ବ୍ରହ୍ମା କହିଛନ୍ତି ନାରଦଙ୍କ ଆଗେ ଯାହା ।
ଅଭିଶାପ ପାଇ ଜୟ ବିଜୟ ଦନୁଜେ
ମୁର ଦାରୁଣ ନାମରେ ହେଲେ ବ୍ରହ୍ମାତ୍ମଜେ ।
ସେହି ମୁର ଦାରୁଣଙ୍କୁ ମାତା ପାଳେ ତାଙ୍କ
ବଢ଼ନ୍ତି ଯେ ବେନିପୋଏ ଯେସନେ ମୃଗାଙ୍କ
ବରଷା କାଳରେ ନଦୀ ବଢ଼େ ଯେହ୍ନେ ମାତି
ଘୃତ ପଡ଼ିଲେ ଟେକଇ ଯେହ୍ନେ ଅଗ୍ନିଜ୍ୟୋତି
ଦିନଶେଷେ ଅନ୍ଧକାର ଆସେ ଯେହ୍ନେ ଘୋଟି
ସେହିମତି ବଢ଼ନ୍ତି ସେ ଶିଶୁ ଦୁଇଗୋଟି ।
ଶୁଭେ ମେଘଧ୍ୱନି ପ୍ରାୟ କାନ୍ଦେ ଗଜବାର
ଶୁଣି ଠାବେ ଠାବେ ଜୀବେ ହୁଅନ୍ତି କାତର ।
କମ୍ପିଯାଏ ମେରୁଗିରି ବ୍ରହ୍ମାଣ୍ଡ ମେଦିନୀ
ପଳାନ୍ତି ପକ୍ଷୀଏ ବସା ଛାଡ଼ି ଦେହ ଘେନି ।
ଋଷି ବିପ୍ର ତପୀ କଲେ ଭୟ ଅପ୍ରମିତ
ବୋଲନ୍ତି ସଂସାରକୁ ଏ କଲେ ଆସି ହତ ।
ବ୍ରହ୍ମାଣ୍ଡଯାକ ରଖିବେ କାହିଁ ଦୁହେଁ ପରା
ଛପନକୋଟି ଜୀବଙ୍କୁ ହେବେ ଏହୁ ଭାରା ।
ଯେବଣ ସତ୍ୟଯୁଗରେ ଅଧର୍ମ ଗୁପତ
ନ ଥିଲା ଆଦିତ୍ୟରୁ ଆଜିଯାଏ ଉତପାତ ।
ସଂସାରେ ନ ରଖିଲେ ନିକି ସୁର ନର
କେଡ଼େ ଅଭାଗ୍ୟ ଜନ୍ମିଲା ଆସି ପ୍ରାଣୀଙ୍କର ।
ଏମନ୍ତ ବୋଲି କହି ସେ ହ୍ୱନ୍ତି ଯେଝା ତୁଣ୍ଡେ
କହୁଁ କହୁଁ ବୁଲିଲେ ସେ ଦୈତ୍ୟରାଜଦାଣ୍ଡେ
ବାଳଭାବ ଯାଇ ହେଲା ତରୁଣ ଯେ କାଳ
ଗ୍ରାମପୁର ନଗ୍ରଯାକ ବୁଲିଲେ ଯେ ବାଳ ।
ଏମନ୍ତ ଭ୍ରମୁ ଭ୍ରମୁ ଯେ ମିଳିଲେକ ମଞ୍ଚେ
ପଡ଼ିଲେ ଆଗରେ ଜନ୍ତୁ ଫିଙ୍ଗି ଦ୍ୟନ୍ତି ଉଚ୍ଚେ
ଲଗାଇ ଦ୍ୟନ୍ତି କେବଣ ପୁରେ ପଶି ଜୁଇ
ପଳାନ୍ତି ଯେ ଲୋକମାନେ ଦେଖି ଭୟପାଇ
ଛାଗଳ ମାର୍ଜାରୀ ଗଜ ବାଜୀ ମୂଷାଯାଏ
ସବୁଙ୍କୁ ଅଗ୍ନିରେ ପୋଡ଼ି ଭକ୍ଷୁଛନ୍ତି ଦୁହେଁ

ପଶନ୍ତି ସେ କହୁ ପୁଣି ଯାଇଁ ଅନ୍ୟ ଗ୍ରାମେ
ସୁନ୍ଦରୀ ସ୍ତିରୀଙ୍କୁ ଦେଖି ହରନ୍ତି ପ୍ରାକର୍ମେ ।
ସୁବେଦୀ ବିପ୍ର ପଣ୍ଡିତ ସାଧୁ ସୁଜ୍ଞଜନ
ଏମାନଙ୍କୁ ଦେଖି ଦଣ୍ଡେ ହ୍ୱନ୍ତି ଅବିଚ୍ଛିନ୍ନ ।
ବରାହ ମୃଗ ଖେଳନ୍ତି ଆସି ଯେତେ ଆଗେ
ତାହାଙ୍କୁ ବାନ୍ଧନ୍ତି ଧରିନେଇ ଗୃହମାର୍ଗେ ।
ନିଶିଥକାଳେ ପଶନ୍ତି ପୁଣି ପରଘରେ
ଯୁବତୀ ସ୍ତିରୀ ଚୋରାଇ ଆଣନ୍ତି ଅସୁରେ ।
ଆପଣା ଗୃହେ ରଖନ୍ତି ନେଇ ବନ୍ଦୀ କରି
ତାହା ଦେଖି ଉର୍ବଶୀ ଯେ କହନ୍ତି ତିଆରି ।
ବୋଲନ୍ତି ଏକଥା ବାବୁ ନୁହଇ ବିହିତ
କାହିଁକି ପରନାରୀକୁ ଘେନିଆସ ଏଥ ।
ବନଜନ୍ତୁ ଗୁଡ଼ାକ ତ ରଖିଅଛ ବାନ୍ଧି
ଏତେକ ଅନ୍ୟାୟ କଥା କରୁଅଛ ଛନ୍ଦି ।
ଏବେ ବୋଲିଣ ଉର୍ବଶୀ କହନ୍ତି ତିଆରି
ଶୁଣିଣ ହସନ୍ତି ପୁତ୍ରବେନି ଥିରିଥିରି ।
ପୁତ୍ର ବୋଇଲେ ମାତା ଗୋ ରହହୋଇ ତୁନି
ଚୋରାଇ ସିନା ଆଣିଲୁ ଏଥେ ନାହିଁ ହାନି ।
ପୁରାଣ କହୁଛି ଆଗ ମତ୍ସ୍ୟ ମୃଗ ସ୍ତିରୀ
ଏ ତିନି ପଦାର୍ଥ ଜାଣ ସବୁରି ବଇରୀ ।
ଏହାଙ୍କୁ ଦେଖିଲେ କେହି ନ ପାରନ୍ତି ମୂର୍ଚ୍ଛି
ବଳେ ହେଲେ ଏମାନଙ୍କୁ ଧରନ୍ତି ଯେ ଲୁଚି
ମାଏ ବୋଇଲେ ବାବୁରେ କହୁଥାଇ ଏବେ
ଏ ତିନି ଦ୍ରବ୍ୟର କଥା କହୁଅଛି ତେବେ ।
ମୃଗ ସଂସାରେ ନୁହଇ କାହାରି ବଇରୀ
ଅନୁକ୍ଷଣେ ବର୍ତ୍ତଇ ସେ ତୃଣ ଭକ୍ଷିକରି ।
ଅହୋରାତ୍ର ମତ୍ସ୍ୟ ଜଳ ପଙ୍କେ ରହିଥାଇ
ସ୍ତିରୀମାନେ ଥାନ୍ତି ନିଜ ସ୍ୱାମୀ ସେବାପାଇ ।
ଏ ତିନି ଜନେ ନୁହନ୍ତି କାହାରି ବଇରୀ
ପାପିଷ୍ଠ ଲୋକ ଏହାକୁ ସିନା ମନକରି ।
ତଥାପି ଏହାଙ୍କୁ ସେହୁ ବଳାତ୍କାର କରେ
ଜାଣ ସେ ଲୋକଟି ଅପମରଣରେ ମରେ ।
ଏତେ କହିଣ ପୁତ୍ରଙ୍କୁ ବୁଝାଏ ଉର୍ବଶୀ
ବୋଇଲାରେ ବାବୁ ଏହା କେବେ ନ କରସି
ପ୍ରାଣୀଙ୍କି ଦୁଃଖ ଦେଇ ହରିବ ଯେବେ ଶିରୀ
ନିଶ୍ଚେ ତୁମ୍ଭର ପିତାଙ୍କୁ ନିନ୍ଦିବେ ତ୍ରିପୁରୀ ।
ବୋଲିବେ ଯେ କେଡ଼େପାପୀ ପୁତ୍ରକଲେଜାତ
ଅଦୋଷୀ ଜୀବମାନଙ୍କୁ କରୁଛନ୍ତି ହତ ।
ଏ ରୂପେ ନିନ୍ଦିଲେ ନାହିଁ କାହାକୁ ସେ ଭଲ
କୁପୁତ୍ରେ ଶୁଣାନ୍ତି ପିତା ମାତାକୁ ଅଭଲ ।

ପର ଶିରୀ ପର ନାରୀ ହରଣେ ତ ଦୋଷ
ବଂଶକ୍ଷୟ କରିଣ ଯେ ହୁଏ ନର୍କ ବାସ ।
ଆବର ପ୍ରାଣୀଙ୍କି ବଧ କଲେ ହୁଏ ପାପ
ଏ କଥା ଦେଖି ଲାଗୁଛି ମୋତେ ବଡ଼ ତାପ
ଆଉ କେଭେ ତୁମ୍ଭେ ଏହା ନକରରେ ବଳା
ବାପ ଶୁଣିଲେ ହୋଇବ କୋପ ଅନର୍ଗଳା ।
ପୁତ୍ର ବୋଇଲେ ମାତା ଗୋ କାହିଁ ଆମ୍ଭବାପ
ତୁମ୍ଭଙ୍କୁ ନିତ୍ୟେ ଦେଖୁ ନଦେଖୁ ତାଙ୍କରୂପ
ସହଜେ ବାପ ବୋଲିତ ନ ଚିହ୍ନିଲୁ ଦିନେ
କି ନାମ ଗୋତ୍ର ତାଙ୍କର ନ ଶୁଣିଲୁ କର୍ଣ୍ଣେ
ରହିଲେ ସେ ପୁତ୍ର ପତ୍ନୀ ତେଜି ଯାଇ କାହିଁ
ଏମନ୍ତ ପିତାଙ୍କୁ ବଳେ ନିନ୍ଦା ଉପୁଜଇ ।
ତୁମ୍ଭେ ବୋଲି କହୁଛ ଗୋ ଗୁରସ୍ତକୁ ଟେକି
ଆନପତ୍ନୀ ହୋଇଲେ ନଯାଇ ଥାଆନ୍ତା କି ।
ପାପୀ ଲୋକମାନେ ସିନା ପୁତ୍ର ପତ୍ନୀ ତେଜି
ପେଟ ନିମନ୍ତେ ମରନ୍ତି ବୁଲି ହରି ଭଜି ।
ହରିଙ୍କି ନ ଭଜିଣ ଯେ ଆରେ ନୋହେପୋଷି
ଲଗାଏ କୁଳେ କଳଙ୍କ ହୋଇ ବଡ଼ ଦୋଷୀ
ଜୀବ ପରମ ଦୁହିଁଙ୍କି ନ ଚିହ୍ନଇ ପିଣ୍ଡେ
ବାତୁଳ ପ୍ରାୟେ ବୁଲିଣ ମରଇ ବ୍ରହ୍ମାଣ୍ଡେ ।
ଅତୀବ ପାଷାଣଠାରୁ ଗଢ଼ା ଯେତେ ମୂର୍ତ୍ତି
ଏହି ମୂର୍ତ୍ତି ଭଜିଲେ କି ଉପୁଜଇ ଭକ୍ତି ।
ସଜୀବ ଦେବତାଙ୍କୁ ତ ନ ଭଜନ୍ତି ମୂଢ଼େ
ଅଣହେତୁ ହୋଇ ଏ ଜୀବନ ତୁଲେ ବଢ଼େ ।
ଆପଣେ ଯେବେ ପରତେ ହେବ ଆପଣାକୁ
ନିଜେ ସ୍ୱାୟମ୍ଭୁବ ବିଷ୍ଣୁ ପୂଜିବ କାହାକୁ ।
ଉର୍ବଶୀ ବୋଇଲେ ଆରେ ଶୁଣ ମୋରପୁଏ
ଜନ୍ମଦାତା ଗୁରୁ ତାଙ୍କୁ ନିନ୍ଦୁଛ ଅନ୍ୟାୟେ
ପୁତ୍ର ଦାରା ତେଜି ଗଲେ କି ରୂପେଣ କହ
ବଶିଷ୍ଠ ଅଟନ୍ତି ବଡ଼ ଋଷି ତାଙ୍କ ପୁଅ ।
ଆସୁରି ପ୍ରଜାପତି ଯେ ପଞ୍ଚଶିଖ ମୁନି
ଏମାନେ ତୁମ୍ଭର ଭାଇ ଶାରଦା ଯେ ଭଗ୍ନୀ
ଆବର ସର୍ଜନା ଯେତେ ପୃଥିବୀରେ ଜାଣ
ବୁଝିଲ ତୁମ୍ଭ ପିତାର ଅଟଇ ଭିଆଣ ।
ଦାରୁପାଷାଣ ଯେବେ ସେ ନ କରନ୍ତେ ଖଞ୍ଜା
କିରୂପେ ପାଆନ୍ତେ ଭବେ ବିଷ୍ଣୁ ଆଉ ପୂଜା
ଶିବ ବିଷ୍ଣୁ ସ୍ୱରୁପକୁ ନ ଜାଣନ୍ତେ କେହି
ଅନିମିତ୍ତେ ମରୁଥାନ୍ତେ ଦୁଇଆଡ଼େ ଥାଇ ।
ନ ଚିହ୍ନନ୍ତେ ଜୀବକୁଳ ମୂର୍ତ୍ତି ନ ପୂଜନ୍ତେ
କିରୂପେ ଭୋଗ ମଣୋହି ବିଷ୍ଣୁ ଆଉ ପାନ୍ତେ

ଏ ହେତୁ ଦାରୁପାଷାଣ ଶିବ ବିଷ୍ଣୁ ମୂର୍ତ୍ତି
ସଂସାର ତାରିବାପାଇଁ ଛନ୍ତି ଧାତା ସ୍ଥାପି ।
ସମସ୍ତେ ହୃଦରେ ଚିହ୍ନି ପାରନ୍ତେ କି ଜୀବ
ତେଣୁକରି ପ୍ରତିମାକୁ ସ୍ଥାପିଲେ ଦଇବ ।
ସେ ଦଇବକୁ ନ ଚିହ୍ନି ନିନ୍ଦୁଛରେ ପୋଏ
ତେଣୁ ଯେ କହୁଛି ପିତା ନାମ ଶୁଣ ଦୁହେଁ
ସ୍ୱୟମ୍ଭୁ ବିଷ୍ଣୁର ନାଭିପଦ୍ମୁହନ୍ତେ ଜନ୍ମ
ତେଣୁ ଆମ୍ଭାଭୁ ବୋଲନ୍ତି ଜାଣ ବେଦବ୍ରହ୍ମ
ପରାପର ପାଳନେ ସେ ଅଟେ ପ୍ରଜାପତି
ବିଶ୍ୱ ସୃଷ୍ଟି ସର୍ଜିବାରୁ ବିରଞ୍ଚି ବୋଲାନ୍ତି ।
ଅବ୍‌କୁ ଉପୁଜନ୍ତେ ତାଙ୍କୁ ଅବ୍‌ଜଯୋନି କହି
ନାନାବିଧି ସଞ୍ଚିବାରୁ ଧାତା ନାମ ବହି ।
ମହୀ ସ୍ଥାପିବାରୁ ଯେ ବୋଲନ୍ତି ପିତାମହ
ଅଟନ୍ତି ଯେ ପରମେଷ୍ଠୀ ସତ୍ୟଘେନି ଦେହ ।
ପଦ୍ମରୁ ଉପୁଜି ବୋଲନ୍ତି ଯେ ପଦ୍ମ ଯୋନି
ବୋଲନ୍ତି ଯେ ଚତୁର୍ମୁଖ ସଞ୍ଚି ଚାରିଖାନି ।
ବେଦ ଉକ୍ତ କରିବାରୁ ବେଦବର ବୋଲି
ବହନ୍ତିତ ବିଧି ନାମ ବ୍ରହ୍ମଭାଗ ମେଳି ।
ସ୍ୱର୍ଗଲୋକ ଯାକେ ଯେଣୁ ଅଟନ୍ତି ଯେ ଶ୍ରେଷ୍ଠ
ତେଣୁ ବହନ୍ତି ସେ ନାମଗୋଟି ସୁରଶ୍ରେଷ୍ଠ ।
ଏହିମତେ କେତେ ନାମ କହିବିରେ ପୋଏ
ବ୍ରହ୍ମା ବିଷ୍ଣୁ ମହେଶ ଏ ତିନି ଏକ କାୟେ ।
ସତ୍ତ୍ୱ ବିଷ୍ଣୁ ରଜ ବ୍ରହ୍ମ ତମ ତ୍ରିପୁରାରି
ଏ ତ୍ରିଗୁଣ ତୁମ ପିତା ଗୁଣେ ଅବତରି ।
ତୁମ୍ଭ ଜନ୍ମଦିନୁ ରହିଲେକ ଯଶୋବନ୍ତୀ
ପିତାଙ୍କ ସର୍ଜନାବାବୁ ନକର ଅନୀତି ।
କୁମରେ ବୋଇଲେ ତେବେ ଶୁଣଗୋ ଜନନୀ
ପିତା ଆମ୍ଭର ଅଟନ୍ତି ଯେବେ ପଦ୍ମଯୋନି ।
ଯାହାଙ୍କ ପୁତ୍ର ଆମ୍ଭର କାହାକୁ ଯେ ଡର
ପିତାଙ୍କୁ ନିନ୍ଦିବେ ଆମ୍ଭେ ଥାନ୍ତେ କାହା ଛାର
ନିନ୍ଦିଲେ ସଂସାରେ ଥିବେ କି ସେ ଦେହଧରି
ରୁଦ୍ର ଇନ୍ଦ୍ର ଚନ୍ଦ୍ର ହେଲେ ପକାଇବୁ ମାରି ।
ଏମନ୍ତ ବୋଲି କହନ୍ତେ ପୋଏ ମୂର୍ଖପଣେ
ଉର୍ବଶୀ ବୋଇଲେ ମୁହିଁ ତୁମ୍ଭ ଜନ୍ମ ଜାଣେ
ସେ କଥା ଗୋଟି କହୁଛି ଜାଣ ଆରେ ଶିଷ୍ୟେ
ବ୍ୟାସ ମୁଖୁଁ ଶୁଣିଅଛି ମୁହିଁ ଇତିହାସେ ।
ମୁଁ ପୁଣି ସାକ୍ଷାତେ ଜାତ ହେଲି ବିଷ୍ଣୁଠାରୁ
ନରନାରାୟଣ କଲେ ପ୍ରକାଶ ଉରରୁ ।
ସ୍ୱର୍ଗକୁ ଆସିଣ ମୋତେ ବିଡ଼ୋଜାକୁ ଦ୍ୟନ୍ତେ
ଦେଖିକରି ବ୍ରହ୍ମା ମୋତେ ଭୋଳହୋଇଚିତ୍ତେ

ତତ୍‌କ୍ଷଣେ କରନ୍ତେ ଉଠି ଆସି କ୍ରୀଡ଼ାସୁଖ
ଜନମିଲେ ଗର୍ଭୁ ତାଙ୍କ ଯୋଗେ ଏଡ଼େମୂର୍ଖ
ବିଷ୍ଣୁ ପରା ହୃଦରୁ ଉର୍ବଶୀ ପରା ଝିଅ
ବ୍ରହ୍ମାପରା ବୀର୍ଯ୍ୟରୁ ଯେ ଜାତ ଏଡ଼େ ପୁଅ ।
କାହାକୁ କିବା ବୋଲିବା ଅଦୃଷ୍ଟ ଯେ ମୂଳ
ଯୋଗାନୁସାରେ ଜନ୍ମିବ ତୁମ୍ଭେ ଚାରିବେଳ
ଏ ବ୍ରହ୍ମାଙ୍କୁ ଆୟୁ ଭୋଗ ଦିନକ ଭିତର
ଚାରି ପ୍ରହରେ ଜନ୍ମିବ ତୁମ୍ଭେ ଚାରିଥର ।
ପ୍ରଥମ ପ୍ରହରେ ମୁର ଦାରୁଣ ହୋଇଲେ
କହିବା ଏଥର ତୋତେ ମୃତ୍ୟୁ କଥା ଭଲେ
ଶେଷେ ନୃସିଂହ ରୂପରେ ଜନ୍ମିବେ ଗୋବିନ୍ଦ
ସହସ୍ରେକ ପଦାଘାତ ତୁମ୍ଭ ମୃତ୍ୟୁଭେଦ ।
ତହିଁର ଉତ୍ତାରୁ ପୁଣି ଦ୍ୱିତୀୟ ପ୍ରହରେ
ହିରଣ୍ୟ ହରିଣାକ୍ଷ ଯେ ହେବ ଦୁଇବୀରେ ।
ଏହି ନରସିଂହ ରୂପେ ସ୍ତମ୍ଭରୁ ବାହାରି
ତୁମ୍ଭେ ଦୁହିଁଙ୍କୁ ନାଶିବେ ବିଷ୍ଣୁ ଅବତରି ।
ତୃତୀୟେ ତୁମ୍ଭେ ରାବଣ କୁମ୍ଭକର୍ଣ୍ଣ ହେବ
ଚୋରାଇ ସୀତାଙ୍କୁ ରାମ ହାତେ ନାଶଯିବ ।
ସେ ଅବତାର ଶେଷରେ ଚତୁର୍ଥ ପ୍ରହରେ
ଶିଶୁପାଳ ହୋଇ ନାଶଯିବ କୃଷ୍ଣକରେ ।
ଏରୂପେ ତୁମ୍ଭର ଜନ୍ମ ଯିବ ମୂର୍ଖପଣେ
ଭରତ କଥାକି ତୁମ୍ଭେ ଶୁଣିନାହଁ କର୍ଣ୍ଣେ ।
ତୁମ୍ଭର ପରାୟେ ସେହି ଜନ୍ମ ନୋହିଲା କି
ଜନମ ହେଲା ମାତ୍ରକେ ଭଜିଲା ହରିଙ୍କି ।
ଏରୂପେ କହେ ଉର୍ବଶୀ ପୋଏ ନାନାରୂପେ
ଭରତ ରାଜା କଥାକୁ କହିଲେ ପ୍ରସ୍ତାବେ ।
ଏହା ଶୁଣି ପୁତ୍ରମାନେ ହୋଇଲେ ବିସ୍ମୟେ
ନାରଦ ଆଗରେ ଏହା କହିଲେ ଧାତାଏ ।
ଶୁଣିଣ ହସିଲେ ଋଷି ହୋଇ ଟହ ଟହ
ବୋଇଲେ ଭରତ କଥା ଏବେ ମୋତେକହ
ପୂର୍ବେ କହିଥିଲ ମୋତେ ତାହା କହିବାକୁ
ଏବେ ମନେ ପଡ଼ିବାରୁ ପୁଚ୍ଛିଲି ତୁମ୍ଭଙ୍କୁ ।
ପ୍ରଥମ ଖଣ୍ଡ ଭାଷାରୁ ଏ ଯେ ଥିଲା ରହି
ଭରତର କଥା କହ ଶୁଣିବଇଁ ମୁହିଁ ।
କିରୂପେ ପୁତ୍ରଙ୍କ ଆଗେ ସେ ଉର୍ବଶୀ ବସି
ଭରତର କଥା ସବୁ କହିଲା ପ୍ରଶଂସି ।
ତାହା ଆପଣ କହିବା ହେଉ ଯେ କୀର୍ତ୍ତନ
ଆଚ୍ଛା ବୋଲି କହନ୍ତି ଯେ ଚତୁର ଆନନ ।
ବିଧାତା ବୋଇଲେ ବାବୁ ଭଲ ଚିତ୍ତୋଇଲୁ
କେବେଦୂର କଥା ଶୁଣି ଏଥି ପୁଚ୍ଛାକଲୁ ।
ଭରତର କଥା ଏବେ କହୁଅଛି ଶୁଣ
ପୁତ୍ରଙ୍କୁ ଯେ ତିଆରଇ ଉର୍ବଶୀ ଯେସନ ।

❑❑❑

## ଭରତ ରାଜାର ଚରିତ

ଉର୍ବଶୀ ବୋଇଲେ ବାବୁ ଶୁଣ ମୋର ସୁତେ
କାହିଁକି ଜୀବ ଜନ୍ତୁଙ୍କୁ ମାର ଅନିମିତ୍ତେ ।
ଯେଉଁ ଭକତକୁ ଦେଖ ଏଡ଼େହେଲା ଜ୍ଞାନୀ
ଜନ୍ମରୁ ହୃଦେ ଲଭିଲା ଗୋବିନ୍ଦଙ୍କୁ ଚିହ୍ନି ।
ତଥାପି ଘରୁ ପଦାକୁ ଯେବେ ବାହାରଇ
ପିମ୍ପୁଡ଼ି ମରିବେ ବୋଲି ଚାଲେ ଡେଇଁ ଡେଇଁ
ମୁର ବୋଇଲା କହିଲୁ ମାତା ଯେଉଁ ପ୍ରାଣୀ
ଭରତ ବୋଲିଣ ସେହୁ କାହା ପୁତ୍ର ପୁଣି ।
ବାଳକ ଦିନୁ ସେ କେହ୍ନେ ଲଭିଲା ହରିଙ୍କି
ଆଜି ପର୍ଯ୍ୟନ୍ତ ଆମ୍ଭେ ତ ନାହୁଁ କଥା ତର୍କି
ଉର୍ବଶୀ ବୋଇଲା ତେବେ ଶୁଣ ତାର କଥା
ଭରତର ପରିଗୁଣ ଯେବଣ ବ୍ୟବସ୍ଥା ।
ଯେଉଁକାଳେ ସୃଷ୍ଟି ସରଜିଲେ ବାସୁଦେବ
ବ୍ରହ୍ମାର ଅଙ୍ଗରୁ ଜାତ କଲେ ସ୍ୱାୟମ୍ଭୁବ ।
ସେ ସ୍ୱାୟମ୍ଭୁବର ପୁତ୍ର ହେଲା ପ୍ରିୟବ୍ରତ
ଅଗ୍ନିଧ୍ର ପ୍ରିୟ କୁମର ଅଂଶେ ହେଲା ଜାତ ।
ଅଗ୍ନିଧ୍ରଙ୍କର ବୀର୍ଯ୍ୟରୁ ହେଲେ ପୁଣ ନାଭ
ତାହାଙ୍କର ପତ୍ନୀ ପୁଣି ପ୍ରସବେ ଋଷଭ ।
ଋଷଭଙ୍କର ନନ୍ଦନ ହୋଇଲେ ଭରତ
ସେ ଭରତ ଭକ୍ତି ପୁଣ ହେଲା ଅଲୋକିତ ।
ଏ ପୃଥ୍ୱୀରେ ରାଜା ସେହି ହେଲା ଦିନାକେତେ
ଭାରତଖଣ୍ଡ ସେ ନାମ ଦେଲେ ମହୀପତେ ।
ସତ୍ୟଯୁଗରେ ପାଳଇ ସେହୁ ଜନପ୍ରଜା
କେବେ ସତ୍ୟ ନ ଛାଡ଼ଇ ସେ ଭରତ ରାଜା
ଦେବ ଇନ୍ଦ୍ର ଶିବ ବିଷ୍ଣୁ ସାଧୁ ବିପ୍ରଜନେ
ସମସ୍ତଙ୍କୁ ସେବା ସେହୁ କରେ ତୋଷମନେ ।
ଏମନ୍ତ କେତେକ ଦିନେ ଭାଗ୍ୟ ତାର ଦେଖ
ଗୋବିନ୍ଦଙ୍କ ଚରଣରେ ସେବିଲା ଅନେକ ।
କାଳେ ତାହାକୁ ସୁଦୟାକଲେ ଭଗବାନ
ଧ୍ୟାନେ ବସିଣ ଆସନ୍ତେ ଦେଲେ ଦରଶନ ।
ଶଙ୍ଖ ଚକ୍ର ଗଦା ପଦ୍ମ ଚତୁର୍ଭୁଜ ହୋଇ
କଣ୍ଠରେ ଯେ ବର୍ଣ୍ଣମାଳା କଉସ୍ତୁଭ ନାଇ ।
ସପତଶାଖା ମୁକୁଟ ଶିରେ ଦିଶେ ଶୋଭା
ଦରହାସ ମୁଖ ଦିଶେ ପଦ୍ମନେତ୍ର ଆଭା ।
ହୃଦେ କମଳା ଶ୍ରୀବତ୍ସ ଚିହ୍ନଗୋଟି ଶୋହେ
କଟୀରେ ପୀତ ବସନ ଜଗଜନ ମୋହେ ।

ଆରକ୍ତ ପଦ୍ମ ପରାୟେ ଦିଶେ ପାଦବେନି
ଏମନ୍ତ ଭରତେ ଦେଖାଇଲେ ରୂପ ଘେନି ।
ଗୋବିନ୍ଦଙ୍କ ରୂପ ଦେଖି ସେ ଭରତ ରାଜା
ମନେ ମନେ ନମିଣ ସେ କଲା ପାଦପୂଜା ।
ବୋଇଲା ବିଷ୍ଣୁଙ୍କୁ ବର ମାଗ ପାଞ୍ଚପୁତ୍ର
ତହୁଁ ଜ୍ୟେଷ୍ଠ ପୁଅକୁ ସେ ଦେଲା ଦଣ୍ଡଛତ୍ର
ଲକ୍ଷେବର୍ଷ ଯାଏ କଲା ରାଜପଣ ଭୋଗ
ତହିଁ ଉତ୍ତାରୁ ଯେ ପୁଣି ଜନ୍ମିଲା ବୈରାଗ୍ୟ ।
ସଂସାରରୁ କାମ ଲୋଭ ମୋହ ଦେଲା ଛାଡ଼ି
ରଖିଲା ସେ ଗୋବିନ୍ଦଙ୍କ ପାଦେ ଚିତ୍ତ ବଢ଼ି
ରାଜ୍ୟଭାର ତେଜିକରି ଚଳିଲା ଏକାନ୍ତେ
ବୁଲିଲା ଯାବତ ତୀର୍ଥଯାକ ଦିନାକେତେ ।
ବିଷ୍ଣୁଙ୍କୁ ସେବି ବ୍ରହ୍ମାଣ୍ଡଯାକ ପୁଣି ଭ୍ରମେ
ଆସି ପ୍ରବେଶ ହୋଇଲା ପୁଲହ ଆଶ୍ରମେ ।
ପାପରାଶି ବିନାଶଇ ଯେଉଁ ମହାତୀର୍ଥ
ବିଷ୍ଣୁଠାରୁ ଜନ୍ମି ପୃଥ୍ୱୀ କରଇ ପବିତ୍ର ।
ସେ ତୀର୍ଥେ ପୁଲହ ରହିଛନ୍ତି ଗ୍ରାମ ବାନ୍ଧି
ମହାନିର୍ମଳ ବୋଲିଣ ବହେ ଗଙ୍ଗାନଦୀ ।
ସେ ସ୍ଥାନ ଦେଖି ଭରତ ରହିଲେକ ସୁଖେ
ପୂଲହ ମୁନିଙ୍କ ଆଶ୍ରମର ପୂର୍ବମୁଖେ ।
ପୂଜିଲେ ବିଷ୍ଣୁ ପ୍ରତିମା ସ୍ଥାପି ମହୀପାଳ
ଲକ୍ଷେ ବର୍ଷଯାଏ ଭକ୍ଷ କରେ ଗଙ୍ଗାଜଳ ।
ସୁସ୍ୱାଦୁ ସୁପକ୍ୱ ଫଳ ମୂଳ ରସ ଯେତେ
ବିଷ୍ଣୁଙ୍କୁ ସମର୍ପିତାହା ଭକ୍ଷଇ ସେ ନିତ୍ୟେ
ସବୁଆତ୍ମା ସଂସାରରେ ଦେଖେ ସମକରି
ସଦାନନ୍ଦ ପୁରୁଷ ଯେ ଅଛି ତହିଁ ପୂରି ।
ଧରମ ପୁରୁଷଙ୍କୁ ଯେ ଦେଖିକରି ରାୟେ
ଜୀବ ଛନ୍ଦାଦ୍ୱାରେ ନେଇ ଜୀବନ ଥକାଏ ।
ମନ ଆଉ ପବନକୁ କରିଣ ଏକତ୍ୱ
ଗୋବିନ୍ଦଙ୍କୁ ଭଜିଣ ଯେ ରହିଲା ଭରତ ।
ତିନିଜନ୍ମ ପରିଯନ୍ତେ ବିଷ୍ଣୁ ଭଜୁଥିଲା
ତହିଁ ଉତ୍ତାରୁ ସୁଖରେ ବୈକୁଣ୍ଠକୁ ଗଲା ।
ଏହା ଶୁଣି ମୁରାସୁର ପୁଛିଲା ଲେଉଟି
ବୋଲେ କହ ଆଗ ଭରତର ପ୍ରସଙ୍ଗଟି ।
କିମ୍ପା ଭରତର ଜନ୍ମ ହେଲା ତିନିଥର
କେଉଁ ଜନ୍ମେ କିଏ ପିତା ଅଟଇ ତାହାର ।
ଉର୍ବଶୀ ବୋଇଲେ ବାବୁ କହିବା ତା ଶୁଣ
ପ୍ରଥମ ଜନ୍ମର ବୁଝିଲ ତ ପରିଗୁଣ ।
ଦ୍ୱିତୀୟ ଜନ୍ମର ତୁହୋ ଶୁଣ ଏବେ ବାଣୀ
ମୃଗୁଣୀ ଗର୍ଭରେ ଯାଇ ଜାତ ହେଲା ପୁଣି ।
କେଉଁରୂପେ ଜନ୍ମ ହେଲା ଶୁଣ ସେ ବିଧାନ
ଗଙ୍ଗାରେ ପଶି ଭରତ କରୁଥିଲା ସ୍ନାନ ।
ଗର୍ଭବାସ ହୋଇକରି ଏକଇ ମୃଗୁଣୀ
ତୃଷାତୁରେ ଆସିଥିଲା ପିଇ ନଦୀପାଣି ।
ସନ୍ତୋଷେ ପାଣି ପିଇଣ ପୂରାଇଲେ ଗର୍ଭ
ଏ ସମୟେ ବନରେ ଯେ ସିଂହ ଦେଲା ରାବ
ଡେଇଁଣ ଭକ୍ଷିଲା ପ୍ରାୟ ମଣି ମୃଗନାଭୀ
ଏବେ ଜଳଗ୍ରାସ ପୁଣି ହୁଏ ଗର୍ଭ ଭାରି ।
ଚମକି ପଡ଼ିଲା ସେହିଠାରେ ହୋଇ ଛନ୍ନ
ଗର୍ଭ ଫାଟିଣ ବାଳକ ହୋଇଲା ଉତ୍ପନ୍ନ ।
ତାହା ଦେଖି ଭରତ ଯେ ହୃଦେ ମହାଦୁଃଖୀ
ସ୍ନେହେ ମୃଗୁଣୀ ପିଲାକୁ ଧଇଲେକ ଟେକି
ଏତେକ ସେ ବିଷ୍ଣୁଭକ୍ତ ସର୍ବଜୀବେ ଦୟା
ତେଣୁ ସେହି ମୃଗପୁତ୍ରେ ବଳାଇଲେ ସ୍ନେହା
ଘେନିଣ ସେ ବାଳକକୁ ଆଶ୍ରମକୁ ଗଲେ
ଜଳ ତୃଣ ଦେଇକରି ଆଶ୍ୱାସୀ ପୋଷିଲେ
ଶୁଣ ଆରେ ମୁରାସୁର କହଇ ଉର୍ବଶୀ
ଦିନୁ ଦିନ ଭ୍ରତ ସଙ୍ଗେ ମୃଗ ମନ ମିଶି ।
ବିଷ୍ଣୁ ମାୟାରେ ସେ ପଡ଼ି ମୃଗେ ମନଦ୍ୟନ୍ତେ
କାଳେ ସେହି ମୃଗ ମରିଗଲା ଯେ କେମନ୍ତେ
ଭରତ ମୃଗର ମୃତ୍ୟୁ ଦେଖି ହତଜ୍ଞାନ
ଆସନ ଗମନବେଳେ କରନ୍ତି ରୋଦନ ।
ଆହା ଆହା ମୃଗ ବୋଲି ପଡ଼େ ଭୂମିଲୋଟି
ଉଠି ବସିକରି ପୁଣି କାନ୍ଦନ୍ତି କୁହାଟି ।
ଯହିଁକି ଚାହିଁଲେ ତହିଁ ଦିଶେ ମୃଗରୂପ
ମହାମନ୍ତ୍ର ପ୍ରାୟେ ତାକୁ କଲେ ସେହି ଜପ ।
ମୃଗ ମୃଗ ବୋଲି କଲେ ଅନେକ ସେ ଚିନ୍ତା
ଆହାର ନିଦ୍ରାଦି ତାକୁ ହେଲା ସବୁ ପିତା ।
ଚିନ୍ତାରେ ଯେ ଗଲା ତାଙ୍କ ତନୁଗୋଟି ସଢ଼ି
ଝୁରି ଝୁରିଣ ଭରତ ଗଲା ପ୍ରାଣ ଛାଡ଼ି ।
ଆତ୍ମାକୁ ସେ ତ୍ୟାଗକରି ମୃଗେ ଲୀନ ହେଲେ
କାଳେ ସେହି ମୃଗୁଣୀର ଗର୍ଭେ ଉପୁଜିଲେ
ବନରେ ଥାଇ ବଢ଼ିଲେ ସେହି ମୃଗପଲେ
କେବଳ ଜାଣନ୍ତି ପୂର୍ବଜନ୍ମ ଚିତ୍ତୋଇଲେ ।
ମନେ ପଡ଼ିଲେ ପାଞ୍ଚନ୍ତି ପୁଣି ମନ୍ଦ ବୋଲି
ବୋଲନ୍ତି ଅଭାଗ୍ୟରୁ ମୁଁ ପଶୁଜନ୍ମ ହେଲି ।
କେତେ ସୁଖ ଥିଲା ଗଲା ମୋର ପୂର୍ବକଥା
ଏବେ ତ ପଶୁ ଜନମ ହେଲା ଆସି ବୃଥା ।

ଦେଖତ ମୋହର କର୍ମ ହେଲା ଏଡ଼େ ବାମ
ଗୋବିନ୍ଦଙ୍କ ସେବା ଛାଡ଼ି ଭୁଞ୍ଜିଲି ଅକର୍ମ ।
ମୃଗେ ଯେଣୁକରି ମୁହିଁ କଲି ଏଡ଼େ ଆଶ
ତେଣୁ ପଶୁଜନ୍ମ ମୋତେ ଦେଲେ ପୀତବାସ
ଏବେ କେମନ୍ତେ ଲେଉଟି ହୋଇବି ମାନବ
ଏଥିପାଇଁ ଦୟା ଅବା କରିବେ ସେ ଦେବ
ଏମନ୍ତ ଭାଳି ମନରେ ପାଞ୍ଚି ଦିନୁ ଦିନୁ
ଆହାର ନ ଖାଇ କଲେ ଦୁର୍ବଳ ଯେ ତନୁ ।
ଦେହ କ୍ଷୀଣକରି କାଳେ ଲଭିଲେକ ମୃତ୍ୟୁ
ଲେଉଟି କହିବା ଶୁଣ ତାଙ୍କ ଜନ୍ମ ତତ୍ତ୍ୱ ।
ଶୁଣରେ ମୁର ଦାରୁଣ ଭରତ ମହିମା
ବିପ୍ରକୁଳେ ତହୁଁ ଜନ୍ମ ହେଲେ ମହାତମା ।
ଅଯୋଧ୍ୟା ନାମରେ ଦେଶ ଉତ୍ତର ପାରୁଶ
ଅଙ୍ଗିରା ପ୍ରବର ନାମ ବିପ୍ରଗୃହେ ବାସ ।
ତାର ବୀର୍ଯ୍ୟେ ଉପୁଜିଲେ ଛଅଗୋଟି ପୁତ୍ର
ପୁଣି ଶେଷେ ଯାଇଁ ଜନ୍ମ ହୋଇଲେ ଭରତ
ଏ ପ୍ରକାରେ ଛଅପୁତ୍ର ପାଳନ୍ତି ଯେ ଦ୍ୱିଜ
ବେଦ ବିଦ୍ୟାରେ ନିର୍ଜିତ ହୋଇଲେ ତନୁଜ
ଦେଖିଲେ କନିଷ୍ଠ କୁମରର ସାଧୁବୁଦ୍ଧି
ସୁଶୀଳ ଦୟାବନ୍ତ ସେ ଆତ୍ମାରେ ଅକ୍ରୋଧୀ
ସଦବୁଦ୍ଧି ଦେଖିକରି ପିତା ଭରତର
ଅନେକ ବିଦ୍ୟା ଶିଖାନ୍ତି ଆଣି ତତ୍ତ୍ୱସାର ।
ଚାରିବେଦ ଛଅଶାସ୍ତ୍ର ପୁରାଣାଦି ଯେତେ
ସବୁ ପଢ଼ନ୍ତେ ଭରତ କୃଷ୍ଣ ପ୍ରୀତି ଅର୍ଥେ ।
ପୁରାଣର ତତ୍ତ୍ୱଯାକ ମନେ ସବୁ ହେଜି
ବସିଲେ ସେ ଗୋବିନ୍ଦଙ୍କୁ ଅନୁବ୍ରତେ ଭଜି ।
ଜ୍ଞାନେ ରତ ହୋଇ କଲେ ନିବୃତ୍ତ ଯେ ମନ
ତେଜିଲେ ସେ ମୋହମାୟା ଇନ୍ଦ୍ରିୟ ଦମନ
ମାନ ଅପମାନ ଦୁଃଖ ସୁଖ ଅମରଷ
ଶୟନେ ଭୋଜନେ ମନେନାହିଁ କିଛି ତ୍ରାସ ।
ଜ୍ଞାନରସ ପାନହେଲା ପୁଣି ତାର ଦେହୀ
ଯେତେବେଳେ ଯାହାମିଳେ ତାହାସେଘେନଇ
ଏହିପରି କିଛିଦିନେ ମଲେ ତାଙ୍କ ପିତା
ଜଡ଼ଭରତ ପୁତ୍ରକୁ ଧଇଲେକ ମାତା ।
ଜ୍ୟେଷ୍ଠ ପୁତ୍ରଙ୍କର ପାଶେ ନେଇ ସମର୍ପିଲେ
ଭରତର କଥା ବାବୁ ଲାଗିଲା ବୋଇଲେ ।
ପତିବ୍ରତାପଣେ ଦେଲେ ସେ ଅନଳେ ଝାସ
ଏଥିଅନ୍ତେ ବାଣୀ ଶୁଣ ଭରତଙ୍କ ରସ ।
କିଛିଦିନେ ଭାଇମାନେ କଲେ ଅନାଦର
ବୋଇଲେ ଏହାର ଜଡ଼ ହୋଇଲା ଶରୀର ।

ଆନ କଥାମାନଙ୍କୁ ଏ ନ ପାରଇ ଆଉ
ବସି ବଟ ବୃକ୍ଷମୂଳେ କୃଷି ଜଗିଥାଉ ।
ଏମନ୍ତ ବୋଲିଣ ତାଙ୍କୁ ନେଲେ ଛଅଭ୍ରାତ
ବସାଇ ବଟମୂଳରେ ଜଗାଇଲେ କ୍ଷେତ ।
ମହତ ବୃକ୍ଷ ବିସ୍ତାର ଅଛି ସେହି ହୋଇ
ନାନା ପକ୍ଷୀ ବସାକରି ରହିଛନ୍ତି ତହିଁ ।
ତାଙ୍କୁ ଦେଖି ଭରତ ଯେ ନ କହନ୍ତି ଭାଷା
ପାଞ୍ଚନ୍ତି ଗୋବିନ୍ଦଙ୍କର ସର୍ବହୃଦେ ବସା ।
ଅଛନ୍ତି ଯାବତ ହୃଦୟରେ ବିଜେକରି
କୀଟରୁ ବ୍ରହ୍ମଯାଏ ତ ସର୍ବ ନରହରି ।
କ୍ରୀଡ଼ନ୍ତି ରେଣୁ ପ୍ରମାଣେ ବସି ନାନା ହୃଦେ
ଅଜ୍ଞାନ ସ୍ୱଭାବେ ତାହା ନ ଚିହ୍ନନ୍ତି ମନ୍ଦେ ।
କେ କାହାକୁ କି ବୋଲିବେ ସମସ୍ତେ ତ ହରି
ଧ୍ୟାନରେ ବସି ପରମଜ୍ଞାନ ଲୟ କରି ।
ଏମନ୍ତ ଭରତ ରହିଲେକ ସେହି ସ୍ଥାନେ
ପକ୍ଷୀ ବଧିବାକୁ ବ୍ୟାଧ ଆସେ ଏକଦିନେ ।
ଯୋଖିଲା ବୃକ୍ଷଶିଖାକୁ ଚାହିଁ ନଳକାଠି
ତାହା ଦେଖନ୍ତେ ଭରତ ଉର୍ଦ୍ଧ୍ୱେ ଦେଇଦୃଷ୍ଟି
ସେ ଦୁଷ୍ଟ ବ୍ୟାଧକୁ ଭ୍ରତ ନ ଦେଇ ସମସ୍ୟା
ପାଞ୍ଚିଲେ କି ରୂପେ ମୁହିଁ ଭାଙ୍ଗିବି ଯେ ଆଶା
ମାରିବା ତାରିବା ସବୁ କଥା ସେହି ହରି
କାହାକୁ ମାରଇ କିଏ କାହାକୁ ସେ ତାରି ।
ଏମନ୍ତ ବୋଲି ଭରତ ମଉନ ରହିଲା
ଶୁଣରେ ପୁତ୍ରେ ବ୍ୟାଧର ମୁର୍ଦ୍ଧନୀ ଫାଟିଲା ।
ଅଦୋଷୀ ଜୀବକୁ ହତ ଅଦୋଷେ ଯେ କରେ
କାଳେ ସେହି ଅପମୃତ୍ୟୁ ଲଭଇ ସଂସାରେ ।
ନୋହିଲେତ ସେହିକ୍ଷଣି ପତନ ହୁଅଇ
ଭରତଙ୍କ କଥା ଶୁଣି ପୁଣ କହୁଥାଇ ।
ସେ ଦେଶର ନରପତି କଲେ ଦେବୀ ପୂଜା
ଦୁର୍ଗାଙ୍କୁ ସେ ନିତ୍ୟେ ନେଇ ଦିଏ ବଳିଭୋଜା
ନର ଜନ୍ତୁ ଗୋଟିଏକ କରିଥାଇ ବନ୍ଦି
ଆଜିର କାଲି କାଲିର ପରଦିନ ଛେଦି ।
ଏହିରୂପେ ପ୍ରତିଦିନ ମାରେ ଜଣେ ନର
ଏକଦିନେ ଫିଟିଗଲା ବନ୍ଧାଜୀବ ତାର ।
କିରୂପେ ନିଶାରେ ଫିଟି ପଳାନ୍ତେ ବନ୍ଦିରୁ
ଦେଖିଣ ବ୍ୟାକୁଳ ରାଜା ହେଲା ପ୍ରଭାତରୁ ।
ପେଷି ଲୋକବର୍ଗ ଖୋଜାଇଲେ ଦଶଦିଶ
କନ୍ଦି ବିକନ୍ଦି କନ୍ଦର ଗିରିବନ ଦେଶ ।
ଏମନ୍ତ ଯେ ଖୋଜୁ ଖୋଜୁ ମିଳି ବଟମୂଳେ
ଦେଖିଲେ ବସିଛି ଜଣେ ମନର ନିଶ୍ଚଳେ ।

ନିର୍ଲ୍ଲୋଭୀ ଯେ ନିରାହାରୀ କଥା ନ କହଇ
ଯାହାକୁ ଦେଖିଲେ ବୋଲେ କୃଷ୍ଣ ଏକା ଏହି
ଶ୍ରୀହରିର ଆଶ୍ରା ପାଇ ବିଶାଳ ଏ ଦେହ
କେହି ତାକୁ ନିନ୍ଦୁଥିଲେ ହସେ ଟହ ଟହ ।
ଦେଖିକରି ଦୂତମାନେ ନେଲେ ତାକୁ ଧରି
ରାଜାର ଛାମୁରେ ନେଇ ଦେଲେ ବାନ୍ଧିକରି
ନରପତି ଆଜ୍ଞାଦେଲେ କାହିଁର ଏ ନର
ମିଳିଲା ଏବେ ଦୁର୍ଗାଙ୍କୁ ଆଚ୍ଛା ଉପହାର ।
ଏହାକୁ ନେଇଣ ବେଗେ ଦେବୀ ଆଗେ ଦିଅ
ଛାମୁରେ କଗାଇ ବୋଲି ବେଳାବେଳି ଖାଅ
ରାଜା ଆଜ୍ଞାପାଇ ଦୂତେ ନେଲେ ଧାଡିକାରେ
ଭ୍ରତକୁ ଭରିଲେ ନେଇ ଦେବୀ ଦେଉଳରେ
ନିର୍ବନ୍ଧେ ଭରତ ଚାରି ଚରଣକୁ ଛନ୍ଦି
ଦୁର୍ଗାଙ୍କର ଆଗେ ନେଇ ଦେବୀ ଦେଉଳରେ
ବୋଇଲେ ମାଗୋ ଏହାକୁ ତୁହିସୁଖେ ଖାଅ
ରାଜ୍ୟ ଜନମାନଙ୍କୁ ଗୋ ରକ୍ଷାକରି ଥାଅ ।
ଏତେ ବୋଲିଣ ଅର୍ଗଳି କିଳିଲେ ନିର୍ବନ୍ଧେ
ଯେ ଯାହା ରାଜ୍ୟକୁ ଚଳିଗଲେ ଚାରିବୃନ୍ଦେ ।
ଏଥିଉତ୍ତାରେ ଭରତ ଯହିଁ ଥିଲା ପଡ଼ି
ବିଷ୍ଣୁ ସ୍ମରନ୍ତେ ଦଉଡ଼ି ଗଲା ତାର ଛିଡ଼ି ।
ଏତକ କଥା ଗୋଚର ନାହିଁ ତାକୁ କିଛି
ମନକୁ ଯେ ବ୍ରହ୍ମରନ୍ଧ୍ରେ ନେଇ ପୂରାଇଛି ।
ପଦ୍ମ ଆସନରେ ବସି ବିଜେ ନାରାୟଣ
ସବୁ ଜୀବଙ୍କୁ ଗୋବିନ୍ଦ ବୋଲେ ଏକା ଜାଣ ।
ଏମନ୍ତ ପାଞ୍ଚ କରନ୍ତେ ବିଷ୍ଣୁଙ୍କୁ ସେ ଲୟ
ଦେଖିଣ ଲାଗିଲା ଚଣ୍ଡିକାକୁ ମହାଭୟ ।
ପାଞ୍ଚିଲା ଚଣ୍ଡିକା ଏତ ଅନାଦିର ଦାସ
ଏହାକୁ ବିନାଶି ମୁହିଁ ଅର୍ଜିବି କି ଯଶ ।
ଗୋବିନ୍ଦ ଭକ୍ତକୁ ନ ଚିହ୍ନିଣ ମୂର୍ଖଜନେ
ଖାଅ ବୋଲିଣ ସମର୍ପିଗଲେ ମୋତେକେହ୍ନେ
ଏଡ଼େ ଭକ୍ତକୁ ସେ ମନ୍ଦ ପାଞ୍ଚିଣ ପାମରେ
କିବୋଲି ସେ ଭକ୍ଷବୋଲି ଛାଡ଼ିଲେ ମୋଘରେ
ବିଷ୍ଣୁ ସେବକକୁ ଯେବେ ଚିନ୍ତିଲେକ ମନ୍ଦ
ନିଶ୍ଚୟ ମୃତ୍ୟୁ ବିହିଲେ ତାକୁ ଆଦିକନ୍ଦ ।
ଚଣ୍ଡିକା ଉଠିଲେ ଏତେବୋଲି କୋପାନଳେ
ଧାଇଁଲେ ଭୈରବୀଗଣ ଘେନି ବିକରାଳେ ।
ରାଜାର ଗୃହେ ପଶିଲେ ଯାଇ ମହାମାଈ
ପୁରଯାକ ଭସ୍ମକରି ଦେଲେ ସବୁ ଖାଇ ।
ଶୁଣରେ ମୁର ଦାରୁଣ ଭକ୍ତଗଣ ଏଡ଼େ
ନ ଜାଣି ଲାଗନ୍ତି ଭକ୍ତତୁଲେ ସଙ୍ଗେ ମୂଢ଼େ ।

ତେଡ଼େ ସଙ୍କଟୁ ରଖିଲେ ଦେବ ନାରାୟଣ
ଭରତ ବିଷୟ ପୁଣି କହୁଅଛି ଶୁଣ ।
ତହିଁ ସେହି ବଟମୂଳେ ବସିଲେକ ଆସି
ଶ୍ରୀହରିର ନାମ ଗୋଟି ହୃଦପଦ୍ମେ ଘୋଷି ।
ଏଥିଅନନ୍ତରେ ଶୁଣ ସୂର୍ଯ୍ୟବଂଶ ରାଜା
ରହୁରାଣ ନାମ ତାର ଦେଲେ ବେଗେ ସଜା
ପଶିଲେ ଜୀବ ମାରିବା ଯାଇ ଘୋରବନେ
ବିମାନ ବହି ତାହାର ନ ପାରିଲା ଜଣେ ।
ଭ୍ରମିଣ ସେ ଆସୁ ଆସୁ ମିଳି ବଟ ମୂଳେ
ଦେଖିଲାଜଡ଼ ଭରତ ବସିଛି ନିଶ୍ଚଳେ ।
ଗୋବିନ୍ଦଙ୍କ ମକରନ୍ଦ ରସ ଭୁଞ୍ଜି ଭ୍ରତ
ବଳିଷ୍ଠ ଦିଶୁଅଛନ୍ତି ଦେଖି ଭୋଇସୁତ ।
ମହା ସମର୍ଥ ବୋଲିଣ ନେଲା ତାଙ୍କୁ ଝିଙ୍କି
ରାଜାଙ୍କୁ ବୋଇଲା ଯାଙ୍କୁ ବୁହାଅ ପାଲିଙ୍କି ।
ଭରତଙ୍କୁ ଦେଖି ତୋଷ ହେଲେ ରହୁରାଜା
ବୋଇଲେ ଏହାକୁ ବେଗେ ଦିଅ ପଡ଼ି ଖଞ୍ଜା ।
ରାଜାଜ୍ଞା ଶୁଣି ହାନ୍ଦୋଳା ବହିଲେ ତ୍ୱରିତ
ଗୋବିନ୍ଦଙ୍କୁ ମନେ ସ୍ମରି ସେ ଜଡ଼ ଭରତ ।
ବିଧିରେ ଯେ ଦୁଃଖ ସୁଖ ଘେନେ ଏକକରି
ବିଚାର କରଇ କୀଟୁ ବ୍ରହ୍ମଯାଏ ହରି ।
ଯାବତ ଶରୀର ଅଟେ ଗୋବିନ୍ଦଙ୍କ ଦେହୀ
ଚିହ୍ନିଲା ଲୋକ ସଂସାରେ ଗତି ମୁକ୍ତିପାଇ ।
ଏମନ୍ତ ମନରେ ପାଞ୍ଚି ଯାନ ବହିଯାନ୍ତେ
ତଳରେ କ୍ଷୁଦ୍ରଜନ୍ତୁ ସେ ଦେଖିଲେ ଚାଲନ୍ତେ
ପଡ଼ିବ ଚରଣ ବୋଲି ମହାଭୟ ପାଇ
ବାଙ୍କବାଟ ହୋଇ ସେହୁ ଚାଲେ ଡେଇଁଡେଇଁ
ଚରଣ ଉଶ୍ୱାସି ପକାନ୍ତେ ସେ ଏଣେତେଣେ
ବିମାନ ଦୋହଲିଯାନ୍ତେ କମ୍ପେ ରହୁରାଣେ ।
ରାଜା ବୋଇଲେ ତୁମ୍ଭର ନାହିଁକିରେ ଜ୍ଞାନ
ଆମ୍ଭର ବିମାନ ଗୋଟି ଚଳେ ଆନୁଆନ ।
ଶୁଣିକରି ଭୃତ୍ୟମାନେ ଯୋଡ଼ି ବେନିକର
ବୋଇଲେକ ପାଲିଙ୍କି ଏହାଲାଗି ନୋହେସ୍ଥିର
ଏମନ୍ତ ବାକ୍ୟ ଭୋଇଙ୍କ ମୁଖରୁ ଯେ ଶୁଣି
ମନରେ ଯେ କ୍ରୋଧଭର ହୋଇ ନୃପମଣି ।
ବୋଇଲେକ ରହୁ ରାଜା ଭରତକୁ ଚାହିଁ
ଅତିଶୟ ବଳିଷ୍ଠତ ଅଟେ ତୋର ଦେହୀ ।
ବଳବନ୍ତପଣେ କେହି ନୋହିବେତ ସରି
ଏଡ଼େ ସାମର୍ଥ ହୋଇ ତୁ ଚାଲିଛୁ କିପରି ।
ଆମ୍ଭ କଥା ମାନିବହି ବିମାନକୁ ଧୀରେ
ଏଥୁଗଲେ ତେଡ଼େ ପଡ଼ି ଦେବି ମୁଁ ସତ୍ୱରେ ।

ଏମନ୍ତ କହି ବସିଲେ ରାଜା ହୋଇ ତୁନି
କୃଷ୍ଣ ଲୟ କରି ଚାଲେ ସେ ଭରତ ଜ୍ଞାନୀ ।
ରାଜାର କଥାଯାକ ନପଶେ ତାର କର୍ଣ୍ଣେ
ଚରଣ ପହୁଞ୍ଚାଇ ସେ ଚାଲେ ହରିଧ୍ୟାନେ ।
ଲେଉଟି ବିମାନ ତାର ହାନ୍ଦୋଳାନ୍ତେ ରାଜା
ହୃଦେ ବ୍ୟଥା ପାଇଣ ସେ କରଇ ତରିଯା ।
ରହୁରାଜା ବୋଇଲେରେ ଶୁଣ ମନ୍ଦବାଇ
ମୋର କଥା କି ତୋହର କର୍ଣ୍ଣେ ନ ପଶଇ
ସ୍ଥିରେଣ ଗମିବା ଛାଡ଼ି ଚାଲୁ ବାଙ୍କ ବାଙ୍କ
ଧୈର୍ଯ୍ୟବୃତ୍ତି ତୋର ନାହିଁ କି ଆରେ ମୂରୁଖ
ବାଳୁତ ପରାଏ ଦେଖାଯାଏ ତୋର କାମ
ହୃଷ୍ଟପୁଷ୍ଟ ହୋଇ ଏଡୁ ଅଛୁ ନିଜ ଧର୍ମ ।
ମୋର ବୋଲକରି ଧୀର ଧୀର ମାର୍ଗେ ଚଳ
ନୋହିଲେ ମୋଠାରୁ ପାଇବୁଟି ପ୍ରତିଫଳ ।
ରହୁରାଜା ମୁଖରୁ ଯେ ଏ ବଚନ ଶୁଣି
ସେ ଜଡ଼ ଭରତ ମନେ ବିଚାରନ୍ତି ପୁଣି ।
ବୋଲଇ ଦେଖ ଏପରି ବିଜ୍ଞ ରାଜା ହୋଇ
ଅଜ୍ଞାନୀ ଲୋକ ପରାୟେ ବଚନ କହଇ ।
ମୁଁ ଯେବେ ଏହାକୁ ଆଜ ନ କହିବି କଥା
ବ୍ୟାଧ ମଲା ପ୍ରାୟ ମରିବ ଏ ମହାରଥା ।
ଦେବୀଆଳେ ଦେଇମଲା ନରପତି ଯେହ୍ନେ
ସେହିପରି ରହୁଗାଜା ମରିବ ଅଜ୍ଞାନେ ।
ଏସନ ମନେ ପାଞ୍ଚଣ ସେ ଭରତ ଜ୍ଞାନୀ
କହନ୍ତି ରହୁରାଜାକୁ ଆସି ତତ୍ତ୍ୱବାଣୀ ।
କୋମଳ ଅମୃତ ସୁବଚନ ମୁଖେ ଭାଷି
ବୋଲଇ ସାବଧାନେ ହୋ ଶୁଣ ସୂର୍ଯ୍ୟବଂଶୀ
ଏଡ଼େବଡ଼ ରାଜା ତୁମ୍ଭେ ସୂର୍ଯ୍ୟବଂଶେ ଜନ୍ମି
ଅଜ୍ଞାନୀ ଲୋକ ପରାୟ ମର କିମ୍ପା ଭ୍ରମି ।
ଶୁଣିନାହଁ କି ହୋ କର୍ଣ୍ଣେ ମହିମା ହରିର
ହରିର ଭିଆଣ ଅଟେ ସମସ୍ତ ଶରୀର ।
ସକଳ ଆତ୍ମାରେ ସେହି ହରି ପୂର୍ଣ୍ଣ ଥାଏ
ଅଛନ୍ତି ସେ ବିଜେ କରି କୀଟୁ ବ୍ରହ୍ମଯାଏ ।
ସକଳ ହୃଦରେ ବସିଛନ୍ତି ଅନ୍ତର୍ଯ୍ୟାମୀ
ଏହା ନ ଜାଣି ତୁ ମାୟା ମୋହେ ମରୁ ଭ୍ରମି
ବିମାନ ଉପରେ ବସିଅଛୁ ମହାସୁଖେ
ବହୁଛି ଆତ୍ମାକୁ ଆତ୍ମା ନ ଜାଣୁ ବିବେକେ ।
ଚଞ୍ଚଳ ହୋଇବାରୁ ତୁ ପାଇଛୁ ବିମୁଖ
ବହିବା ଲୋକର କିଛି ନ ଘେନିଲୁ ଦୁଃଖ ।
ବିମାନ ଉପରେ ତୁହି କରୁଛୁ ବିଜୟେ
ବହିବା ଲୋକର ଦୁଃଖ ନ ଜାଣୁ ତ ରାୟେ ।
ବୁଦ୍ଧିମାନ ସୁପଣ୍ଡିତ ସାଧୁ ଯେତେ ଲୋକ
ସେହି ବୋଲନ୍ତି ସକଳ ଆତ୍ମା ଅଟେ ଏକ ।
ନିର୍ଦ୍ଦୟ ନିଦାରୁଣ ତ ଅଟେ ଯେଉଁ ନର
ସେ ସିନା ଏ ବ୍ରହ୍ମାଣ୍ଡରେ କରେ ଅବିଚାର ।
ରାକ୍ଷସ ପରି କିମ୍ପା ତୁ କରୁଛୁ ଅନୀତି
ମନେ ନ ବିଚାରି ସର୍ବଭୂତେ ହରିଛନ୍ତି ।
ଏମନ୍ତ ବୋଲି ଭରତ କହୁ ଜ୍ଞାନବାଣୀ
ଶୁଣିକରି ରହୁରାଜା ମନେ ତାହା ଗୁଣି ।
ହୃଦରେ ପାଞ୍ଚିଲେ ଏହୁ କେବଣ ପୁରୁଷ
ନ ଜାଣି ମୁଁ ଏହାଠାରେ ଅରଜିଲି ଦୋଷ ।
ଏସନ ମନେ ପାଞ୍ଚଣ ସୂର୍ଯ୍ୟବଂଶଧର
ବିମାନରୁ ଓହ୍ଲାଇ ସେ ପଡ଼ିଲା ସତ୍ୱର ।
ଦେଖିଲା ସୁବୁଦ୍ଧି ଅଙ୍ଗ ଅତି ଶୁଦ୍ଧକାୟେ
ଶଙ୍ଖ ଚକ୍ର ଆଦି ଚିହ୍ନ ବିରାଜଇ ଦେହେ ।
ଶତଦଳ ପଦ୍ମ ପ୍ରାୟେ ଉଲ୍ଲସେ ବଦନ
ହରିନାମ ଫୁଟି ଦିଶୁଅଛି ଦେହେ ବର୍ଣ୍ଣ ।
ନିରୀକ୍ଷି ସେ ରହୁରାଜା ଚାହେଁ ଧୀରକରି
ବିଷ୍ଣୁ ଚିହ୍ନ ଦେଖି ପ୍ରଣମିଲା ପାଦ ଧରି ।
ବୋଇଲା ସେ ବିପ୍ର ତୁମ୍ଭେ କେବଣ ମହାତ୍ମା
ଚିହ୍ନି ନ ପାରିଲି ମୁହିଁ ପାମର ଦୁରାତ୍ମା ।
କେବଣ ଦେଶେ ତୁମ୍ଭର ଅଟେ ନିଜ ବାସ
ଏଠାରେ କି ରୂପେ ଆସି ହୋଇଲ ପ୍ରବେଶ ।
ଅମୋକ୍ଷ ପିଣ୍ଡକୁ ତୁମ୍ଭେ କରିବାକୁ ତ୍ରାଣ
ତେଣୁ ଅବା ଏଥେ ଆସି ମିଳିଲ ଆପଣ ।
ତୁମ୍ଭେ ବିବେକ ପଣ୍ଡିତ ଏଡ଼େ ସାଧୁଜ୍ଞାନୀ
ପାଲିଙ୍କି ମୁଁ ବୁହାଇଲି ତୁମ୍ଭଙ୍କୁ ନ ଚିହ୍ନି ।
ଛାର ମାନବ ହେବାରୁ ନ ପାରିଲ ଜାଣି
ଏହା ଜାଣି ଦୟା କଲ ଆହେ ଜ୍ଞାନମଣି ।
ଏ ମାୟା ମୋହେ ପଡ଼ିଣ ଭ୍ରମେ ମୋରଦେହୀ
ପ୍ରାଣୀଙ୍କଠାରୁ ଏ ଭୋଗ ଶିଖିଅଛି ମୁହିଁ ।
ମୁହିଁ ତାହାଙ୍କ ସଙ୍ଗରେ ଗୃହକର୍ମେ ପଡ଼ି
ରହିଅଛି ଗୋବିନ୍ଦଙ୍କୁ ବହୁଦୂରେ ଏଡ଼ି ।
ଜାଣିଲି ଏବେ ଯେ ମୋର ଫିଟିଲା ସଙ୍କଟ
ଯେଣୁ ପାଇଲି ବ୍ରହ୍ମଣ୍ୟ ପୁରୁଷଙ୍କୁ ଭେଟ ।
ଆତ୍ମାର ଯେ ଗତାଗତ ତା କହିବା ହେଉ
ଆପଣଙ୍କ ମୁଖୁ ଶୁଣି ପାପକ୍ଷୟ ଯାଉ ।
ଏମନ୍ତ ବୋଲିଣ ରାଜା ଶୋକ ଗଦଗଦେ
ନମିଲେ ଯାଇଁ ଯେ ଜଡ଼ଭରତଙ୍କ ପାଦେ ।
ରାଜା ମୁଖରୁ ଏମନ୍ତ ଶୁଣିଣ ଭରତ
ବୋଇଲେ କହିବା ତେବେ ଶୁଣ ଜ୍ଞାନତତ୍ତ୍ୱ ।

ଆମ୍ଭାରେ ଦେଖ ଜଡ଼ିତ ମୋର ନିଜକାୟ
ସକଳ ଜୀବ ଦିଶନ୍ତି ମୋତେ ଏକପ୍ରାୟ ।
ଆଉ ଏକ କଥା ରାଜା କହୁଅଛି ପୁଣ
ବୁଝିଲେ ଗୋବିନ୍ଦ ଲୀଳା ସବୁକଥା ଜାଣ ।
ସଂସାରେ କେ ମରୁଛି କେ ମାରୁଅଛି କହ
ବସିବା ସବୁ କହିବା ଅଟେ ଏକ ଦେହ ।
କେ କାହାକୁ ଓଳଗଇ କେ କଲ୍ୟାଣ କରେ
କେହି ନମସ୍କାର କରୁ କେ ନମେ ଆଗରେ ।
କେ କାହାର ନିଜ ଅଟେ କେ କାହାର ପର
କେ କାହାର ଅନ୍ତର କେ ଅଟେ କାହାଘର
କେ କାହାର ବନ୍ଧୁ ଅଟେ କେ କାହାର ନାତି
କେ କାହା ଭାରିଯା ଅଟେ କେ କାହାର ପତି
ତୁ ଯେବେ ଆରାଧି ଲୋଡୁଅଛୁ ଗୋବିନ୍ଦକୁ
ଶରୀରରେ ଆଗ ଚିହ୍ନ ଦେଖ ତୁ ଆମ୍ଭାକୁ ।
ଆମ୍ଭାକୁ ତୁ ଯେବେ ଚିହ୍ନି ନପାରିବୁ ନିଶ୍ଚୟେ
ଦେଖିବୁ ଅଛନ୍ତି ଜଗନ୍ନାଥ ସର୍ବଦେହେ ।
ଯେବଣ ସୂତ୍ରେ ଅଛନ୍ତି କହିବା ତା ଶୁଣ
ସବୁ ଜୀବର ଲଲାଟ ଚକ୍ରେ ଛନ୍ତି ପୁଣ ।
ଶଙ୍ଖ ଚକ୍ର ଗଦା ପଦ୍ମ ଚାରିକରେ ଧରି
ପରମହଂସ ରୂପରେ ଶବ୍ଦ ଛନ୍ତି କରି ।
ଜାଣି ସେହି ଶବଦକୁ ଯେବେ ହେଜି ପାରୁ
ଅବଶ୍ୟ ହରିଙ୍କି ଚିହ୍ନି ତରିବୁ ସଂସାରୁ ।
କେବଣ ଏକା ବସିଣ ଶବଦେ ନିମଜ୍ଜି
ପରମହଂସ ଦ୍ୱାରରେ ମତି ନେଇ ଖଞ୍ଜି ।
ଷଡ଼ଚକ୍ର ଭେଦିଣ ଯେ ହାନ୍ଦୋଳେ ପବନ
ତୁ ତାହାକୁ ନାସାରନ୍ଧ୍ରେ କର ଅନୁମାନ ।
ଆବର ଗଙ୍ଗା ଯମୁନା ସରସ୍ୱତୀ ନୀରେ
ଅନୁକ୍ଷଣେ ବହୁଥାନ୍ତି ହିରକ ମଥାରେ ।
ପବନ ପକାଇ ଯେବେ ଟେକିବୁ ଉଜାଣି
ସେ ଧାର ବନ୍ଧନ ହୋଇ ରହିବ ତ୍ରିବେଣୀ
ସେ ତ୍ରିବେଣୀ ଉପରେ ଯେ ମାନସରୋବର
ସେ ସ୍ଥାନେ ଫୁଟିଛି ପୁଷ୍ପ କମଳ କେଶର ।
ସେ କେଶର ମଣିରେ ଯେ ଭ୍ରମର ଚୁମ୍ବୁଛି
ତହିଁରେ ପରମହଂସ ଚିହ୍ନ ବିରାଜୁଛି ।
ସେ ପରମହଂସ ଏହୁ ଚିହ୍ନ ମହାରାଜା
କାଳପଦ୍ମ ନିରଞ୍ଜନ ତୋତେ ହେବ ବୁଝା ।
ପ୍ରାଣପାନେ ଦାନ ବ୍ୟାନ ସମାନ ଏ କରି
ଜୀବ ସଂହରି ରଖ ତୁ ଅନାହତ ପୁରୀ ।
ଏବେ ତୋ କ୍ଷୁଧା ପିପାସା ଅଙ୍କୁଯିବ ତୁଟି
ଏ ବେନି ତୁଟିଲେ ମୃତ୍ୟୁ ନପାରିବ ଘୋଟି ।

ମୂଳ କମଳକୁ ଜପି ବସି ଅନୁଧ୍ୟାନେ
ରୋଧି ଦଶଦ୍ୱାର ଊର୍ଦ୍ଧ୍ୱମୁଖୀ ମୁଦ୍ରାସ୍ଥାନେ ।
ଏବନକୁ ଏକା ସୂତ୍ରେ ଯେବେ ବଳାଇବୁ
ତେବେ ତୁ ଅକ୍ଷୟ ହୋଇ ସଂସାରେ ରହିବୁ
ଶୁଣ ଆରେ ସୂର୍ଯ୍ୟବଂଶୀ ରହୁ ନରପତି
ଅର୍ଜିବୁ ଶ୍ରୀହରି ଆଶ୍ରେ ରହି ଯଶକୀର୍ତ୍ତି ।
ଏହି କଥାରେ ତୁ ମନଲଗା ମହାରାଜା
ଆମ୍ଭାକୁ ହୃଦରେ ଚିହ୍ନି କର ବିଷ୍ଣୁ ପୂଜା ।
ପୂଜାକଲେ ଶ୍ରୀଗୋବିନ୍ଦ କରିବେ କରୁଣା
କରୁଣା କଲେ ନୋହିବ କିଛି ତୋତେ ବଣା
ପୂର୍ବ ଜନ୍ମରେ ତୋହର ଥିଲା କିଛି ପୂଣ୍ୟ
ଭେଟିଲୁ ତେଣୁ ଆମ୍ଭଙ୍କୁ ଆହେ ନରରାଣ ।
ହେ ରାଜନ ସଂସାରେ ତୁ ଦେଖ ଦେହଗତେ
ଚକ୍ଷୁ ନାସା କର୍ଣ୍ଣ ଶିର ପାଦ ପାଣି ଯେତେ ।
ଏହାକୁ କହନ୍ତି ଭିନ୍ନ ଭିନ୍ନ ସର୍ବ ପ୍ରାଣୀ
ଆମ୍ଭାର ଗତାଗତକୁ ନ ପାରନ୍ତି ଜାଣି ।
କେବଣ ପ୍ରତ୍ୟକ୍ଷ ବ୍ରହ୍ମଜ୍ଞାନ ଜଗନ୍ନାଥ
ଭକ୍ତ ଉଦ୍ଧାର ଅଟଇ ଏ ନୃସିଂହ ଗ୍ରନ୍ଥ ।
ଏହା ଶୁଣି ରହୁ ରାଜା ହୋଇଲେ ଆନନ୍ଦ
ଉଠି ଭରତର ଯାଇଁ ଧଇଲେକ ପାଦ ।
ହୋଇଲି ମୁଁ ମୋକ୍ଷବୋଲି ପ୍ରଣାମ ଯେକଲେ
ଜଡ଼ଭରତ ସେଠାରୁ ଅନ୍ତର୍ଦ୍ଧାନ ହେଲେ ।
ତହିଁ ଉତ୍ତାରୁ ସେ ରାଜା ରାଜ୍ୟେ ଗଲେ ଚଳି
ଭଜିଲେ ପରମ ସୂତ୍ରେ ମଜ୍ଜି ବନମାଳୀ ।
ଆହେ ସାଧୁ ସୁଜ୍ଞଜନେ ହରିରସେ ରସ
ଶ୍ରୀହରି ଚରଣ ଭଜେ ପୀତାମ୍ବର ଦାସ ।



ଉର୍ବଶୀର ପୁତ୍ରଙ୍କୁ ଜ୍ଞାନମାର୍ଗ କଥନ

ଶୁଣରେ ମୁର ଦାରୁଣ ଭରତଙ୍କ ଗୁଣ
ତିନିଜନ୍ମେ ସାଧିଣ ସେ ଲଭି ନାରାୟଣ ।
ଶରୀର ଅନ୍ତେ ପଶିଲେ ପୁଣି ବିଷ୍ଣୁ ଦେହେ
ଏଣୁ ମୁଁ ତିଆରୁଅଛି ଶୁଣ ବେନି ପୋଏ ।
ଆପଣା କୁଳାଚାର ନ କଲେ ବିଧିପୂର୍ବ
ତାହାକୁ ମୂର୍ଖ ବୋଲିଣ ସଂସାରେ ଜାଣିବ ।
ଇହଲୋକ ସେହି ଲୋକ ପ୍ରଶଂସା ନପାନ୍ତି
ଅନ୍ତେ ମୃତ୍ୟୁହେଲେ ସେହି ନର୍କରେ ପଡ଼ନ୍ତି ।
ଏକଥା ସତ୍ୟ ହେ ବାବୁ ପୁରାଣର ବାଣୀ
ଯେ ଏହାକୁ ନ ମାନଇ କୁପଣ୍ଡିତ ଗଣି ।
ତୁମ୍ଭେ ଯେ ହୋଇଲ ଏବେ ବ୍ରହ୍ମଠାରୁ ଜନ୍ମ
ରଖ ବାପାଙ୍କର ସିଦ୍ଧି କରି କୁଳଧର୍ମ ।

ବେଦ ଶାସ୍ତ୍ରାଦି ପୁରାଣ ପଢ଼ି ଦିନ ହର
ଜପ ତପ କରି ବିଷ୍ଣୁପାଦେ ସେବା କର ।
ଶ୍ରୀନାରାୟଣ ଭକ୍ତିରେ ଅନୁକ୍ଷଣେ ରସ
ହବିର୍ଭାଗ ଦେଇକରି ଦେବତାଙ୍କୁ ତୋଷ ।
ସନ୍ଧ୍ୟା ତର୍ପଣ କରିଣ ପୂଜ ବୃଷଧ୍ୱଜ
ଅଗ୍ନିହୋତ୍ରୀ ହୋଇସେବା ଯେ ଉତ୍ତମଦ୍ୱିଜ
ଜଳେ ସୂର୍ଯ୍ୟ ତୋଷକର ବଇଷ୍ଣବେ ପୂଜ
ଏତେ ଗୁଣ ଥିଲେ ତାକୁ ବୋଲି ବ୍ରହ୍ମଦ୍ୱିଜ
ତୁମ୍ଭେ ଏବେ ମୋର ବୋଲ କର ପୁତ୍ରବେନି
ତୁମ୍ଭଙ୍କୁ କରିବେ ପୃଥ୍ୱୀଯାକ ଧନି ଧନି ।
ଏରୂପେ ଅନେକ ମତେ କହନ୍ତେ ଉର୍ବଶୀ
ଶୁଣିଣ ମୁର ଦାରୁଣ ଅଳ୍ପ ଅଳ୍ପ ହସି ।
ମାତାଙ୍କୁ ବୋଇଲେ ତୁମ୍ଭେକହିଲଗୋଯେତେ
ବ୍ରହ୍ମା ଆମ୍ଭ ପିତା ହୋଇ କିକଲେ ଜଗତେ
ତାହାଙ୍କ ନାତିମାନଙ୍କୁ ଦେଲେ ଭୂମି ବାଣ୍ଟି
ପଶ୍ଚିମେ ବରୁଣ ପୁଣି ପୂର୍ବେ ବାସବଟି ।
ଦକ୍ଷିଣରେ ନାଶକର ଉତ୍ତରେ କୁବେର
ଏମାନେ ଆମ୍ଭଠାରୁ କି ହେଲେ ବଳିୟାର
ଆପଣାର ପୁଅଥାଉ ନାତି କଲେ ଭୋଗ
କଶ୍ୟପ ପୁତ୍ରେ ତାହାଙ୍କ ହୋଇଲେ ସୁଆଗ
ଆମ୍ଭର ବଳ ବୀର୍ଯ୍ୟକୁ ଗୋଚର ନ କଲେ
ପଣନାତିମାନଙ୍କୁ ଯେ ଏ ସଂସାର ଦେଲେ ।
ମହାବୀରପଣକୁ ତ ଆମ୍ଭେ ବଳବନ୍ତ
ତେଣୁକରି ବୋଲୁଅଛୁଁ କରିବୁ ରାଜତ୍ୱ ।
ଉତ୍ତମ ସୁଖ ପାଇଣ ପାଳିବୁ ଯେ ମହୀ
ଏମନ୍ତ ବୋଲିଣ ପୋଏ ମାତାଆଗେ କହି
ପୁତ୍ରଙ୍କର ଦୁଷ୍ଟପଣ ଦେଖିଣ ଉର୍ବଶୀ
ମନେ ପାଞ୍ଚିଲା ଅଟନ୍ତି ଏହୁ ବଡ଼ ଦୋଷୀ ।
କେତେରୂପ ଜ୍ଞାନ ଯେତେ କହିଲି ମୁଁ ଆଣି
ପାଷାଣ ହେଲେ ତରଳି ଯାଆନ୍ତାଣି ପୁଣି ।
ମୂର୍ଖଙ୍କୁ କହିଲେ ଯେତେରୂପେ ବୁଝାଇ କି
ପଛବେଳକୁ ସେ ହିଂସା କରଇ ଅଧିକ ।
କହିଲେ ତ କଥାରେ ସେ ପ୍ରସଙ୍ଗ ନ ବୁଝେ
ଖର ପରାୟେ ହୋଇଣ ଚାଲେବହି ବୋଝେ
ପାଷାଣ୍ଡ ଲୋକ ଯେସନ ବେଦଶାସ୍ତ୍ର ନିନ୍ଦେ
ବସନ୍ତି ସେ କୁପୁରୁଷ ପଣ୍ଡିତଙ୍କ ବାଦେ ।
ସାଧୁଙ୍କୁ ନିନ୍ଦନ୍ତି ଖଳଲୋକେ ଅନୁବ୍ରତେ
କୁପୁରୁଷ ନ ଘେନନ୍ତି ପିତାକହେ ଯେତେ
ସୁପୁତ୍ର ସିନା ଶୁଣଇ ମାତା ପିତା ବୋଲ
ଏ କାହିଁକି ଶୁଣିବେ ବା କେଉଁକଥା ଭଲ

ଏତେକ ବୋଲି ଉର୍ବଶୀ କହେ କଥା ପୁଣି
ହେ ପୁତ୍ର ଶୁଣ ମୋହର ତିଆରିବା ବାଣୀ ।
ଧର୍ମ ନ ଅର୍ଜି ସମ୍ପଦେ ଇଚ୍ଛା ଯେହୁ କରେ
ତାହାକୁ ସେ ଦ୍ରବ୍ୟଭୋଗ ନୁହେଁ ମଞ୍ଚପୁରେ
ପର ଶିରୀ ଦେଖିଣ ଯେ ନ ପାରଇ ସହି
ସେ ମନ୍ଦ ଫଳରୁ ତାକୁ ମନ୍ଦ ଉପୁଜଇ ।
ଦୁଃଖରୁ ଅତି ଦରିଦ୍ର ହୁଅଇ ସେ ପ୍ରାଣୀ
ଦରିଦ୍ର ହେବେ ତାହାକୁ ପାପୀରେ ଯେ ଗଣି
ପାପୀ ହେଲାରୁ ଅର୍ଜନ୍ତି ପୁଣ ପୁଣ ପାପ
ଶୁଣରେ ମୁର ଦାରୁଣ ଏସନ ସ୍ୱରୂପ ।
ଏଣୁ ଆରେ ପୁତ୍ର ତୁମ୍ଭେ ଧର୍ମେ ଆଶ୍ରେକର
ଧର୍ମକୁ ପାଳିଲେ ବାବୁ ହୋଇବ ଅମର ।
ଅମର ହୋଇଲେ ଭୋଗ କରିବ ଯେ ଶିରୀ
ଶିରୀରୁ ପ୍ରାପତ ଜାଣ ହୁଏ ବସୁନ୍ଧରୀ ।
ଦୁଷ୍ଟପାପୀ ଲୋକଙ୍କୁ ନ ସହେ କେବେ ମହୀ
ନଦୀଜଳ ପୂରି ଯେହ୍ନେ ଛାଡ଼ିଯାଏ ବହି ।
ଦୁଷ୍ଟଜନେ ସେହିମିତି ସିନା ବସୁନ୍ଧରୀ
ମୂର୍ଖ କେବେ ନ ପାରଇ ରାଜପଣ କରି ।
କ୍ଷିତିପତି ହେବାକୁ ତୁ ଯେବେ ମନ କରୁ
ପାଳ ସୁଜନ ବୈଷ୍ଣବ ସାଧୁ ବିପ୍ରଗୁରୁ ।
ହିଂସାଗୁଣକୁ ନାଶିଣ ସତ୍ୟଗୁଣ ଘେନ
ସର୍ବଶାସ୍ତ୍ରକୁ ଅଭ୍ୟାସ କର ଦେଇ ମନ ।
ପ୍ରଭୁଙ୍କ ବରଣକରି ଭୋଜନ ଯେ ଦିଅ
ଅମୃତ ବାକ୍ୟ କହିଣ ଜନ ମନ ମୋହ ।
ନିଜ ବିଦ୍ୟା ବ୍ୟବସାୟେ ବଞ୍ଚ ନିରନ୍ତରେ
ଯଶ ଧନ ସଞ୍ଚିବାରୁ ପଦାର୍ଥ ପ୍ରକାରେ ।
ଅଧୈର୍ଯ୍ୟ ନୋହିବ କେବେ ବିପଦ ପଡ଼ିଲେ
ଗର୍ବପଣ ନ କରିବ ସମ୍ପଦ ବଢ଼ିଲେ ।
ବିଦ୍ୟା ପଢ଼ିଲେଟି ସ୍ଥିରହୋଇ ପୃଥ୍ୱୀପ୍ରାୟେ
ବନ୍ଧୁକୁ ଆଦର କରୁଥିବ ସର୍ବଦାଏ ।
ଯେବଣ ଲୋକର ଯେଉଁପରି ଶକ୍ତି ହେବ
ଦିନକେ ଷଡ଼ନିଃଶ୍ୱାସ ବେଳେ ଦାନଦେବ
ପୋଷେ ମୂଠାଏ ଅଣାଏ ଖଣ୍ଡେ ପଦିକାଏ
ପଣେ ମାଣେ କାହାଣେଟି ଦେବ ସର୍ବଦାଏ
ଦେଇ ଦିନଯାକ ଥାଇ ତା କନ୍ଧରେ ଶ୍ରୀୟା
ନ ଦେଲା ଦିନ ଅମେଧ ଅଟେ ତାର କାୟା
ଦେଲା ଲୋକର ସେଦିନ ଚଳେ ଜାଣ ସୁଖେ
ଉତ୍ତମ ବୋଲି ବୋଲନ୍ତି ତାହାକୁ ଜଗତେ ।
ଲୋକ ମୁଖରେ ପ୍ରଶଂସା ଯେଉଁ ପ୍ରାଣୀ ପାଇ
ତାହାଠାରୁ ପୁଣ୍ୟବନ୍ତ ସଂସାରେ କେ ନାହିଁ ।

ଦିନେ ହେ ସେ ଜୀଇଥିଲେ ସାର୍ଥକ ତା ପ୍ରାଣ
ମୂର୍ଖଲୋକ କି ହେବ ବା ଜୀଇଁ ଶତେଦିନ ।
ପଣ୍ଡିତ ଲୋକେ କରନ୍ତି ମଲେ ହାହାକାର
ପାପୀମଲେ ନ ଛାଡ଼ଇ ପଡ଼ିଶାର ଘର ।
ଏଣୁ ସକଳ ସ୍ଥାନରେ ପଣ୍ଡିତଙ୍କୁ ପୂଜା
ତୁମ୍ଭେ କି ପୁଣ୍ୟ ଅରଜି ହେବ ବାବୁ ରାଜା ।
ରାଜା ହୋଇଲେ ପରଜାମାନେ ସମ୍ଭାଳିବ
ପରଜାଙ୍କୁ ସମ୍ଭାଳିଲେ ପ୍ରଶଂସା ପାଇବ ।
ଯେବଣ ରାଜ୍ୟରେ ରାଜା ପାଳେ ଜନପ୍ରଜା
ତାହାର କନ୍ଧରୁ ଲକ୍ଷ୍ମୀ ନକରନ୍ତି ତେଜ୍ୟା ।
ରାଜାର ଭଣ୍ଡାର ଅଟେ ପ୍ରଜାଙ୍କର ଶିରୀ ।
ପରଜା ନାଶିବ ରାଜା ମୁଖେ ଲେଖାକରି ।
ପରଜାଙ୍କୁ ପାଳିଲେଟି ସବୁ ଧର୍ମ ପାଇ
ବିନାଦୋଷରେ ଦଣ୍ଡିଲେ ମହାପାପ ହୋଇ
ଯେତେକ ଆତ୍ମା ସଂସାରେ ସବୁ ନାରାୟଣ
ସର୍ଜ୍ଜନା କରଇ ବ୍ରହ୍ମା ସଂସାରେ ଈଶାନ ।
ଏମନ୍ତେ ଜଗତେ ତିନିବେଦ ଅଧିପତି
ଏହା ନ ଚିହ୍ନି ପ୍ରଭୁତ୍ୱପଣେ ସେହି ମାତି ।
ବଡ଼ିମାପଣ ବହିଣ ଜୀବ ବିନାଶଇ
ସେହୁ ଲୋକର ସମ୍ପଦ ଅକ୍ଷେ କ୍ଷୟ ପାଇ ।
ନିଜ ଆତ୍ମା ସହିତରେ ହୁଏ ବିନଶ୍ୟତି
ଏଥକୁ ଚାହିଁ ବାବୁରେ ଅଜ ଯଶ କୀର୍ତ୍ତି ।
ବାନ୍ଧି ଆଣିବା ଜୀବକୁ ଛାଡ଼ିଦିଅ ଯିବେ
ମୋ ବୋଲ କର ପାଇବ ଯଶ ସର୍ବଠାବେ ।
ଆବର ଯେତେ ଚୋରାଇ ଆଣିଅଛି ନାରୀ
ତାହାଙ୍କୁ ମନରେ ପାଞ୍ଚ ମୋର ତୁଲେ ସରି ।
ଜନନୀ ପରାୟେ ତାଙ୍କୁ ଆରାଧନା କର
ବନ୍ଦିରୁ ଦିଅ ମେଲି ସେ ଯାନ୍ତୁ ଯେଝାଘର ।
ନିଜ ସ୍ୱାମୀଠାରେ ପୂଜା କରନ୍ତୁ ସେମାନେ
କର ଏହା ତୁମ୍ଭେ ଯେବେ ପାଇବ ସମ୍ମାନେ ।
କହନ୍ତି ଏ ରୂପେ ପୁଣି ମାଏ ଧର୍ମଶାସ୍ତ୍ର
ପାଞ୍ଚନ୍ତି ଶୁଣିଣ ହୃଦଗତେ ବେନିପୁତ୍ର ।
ମାତା କଥାରେ ନୋହିବୁ ଆମ୍ଭେ ହେ ଆବଦ୍ଧ
ଅବଶ୍ୟ ତ ଜନନୀରେ ହେବ ଏବେ କ୍ରୋଧ ।
ଆପଣା ତୁଲେ ଦେଲେଣି ପ୍ରତିକୂଳ ଆଣି
ଏଥର ପଛକେ ଯାନ୍ତୁ ସକଳ ତରୁଣୀ ।
ଏତେ ପାଞ୍ଚ ସେହି ମୁର ଦାରୁଣ ଯେ ଦୁଇ
ବାନ୍ଧି ଆଣିବା ଜୀବଙ୍କୁ ଦେଲେ ବନ୍ଦୀଫେଇ ।
ତାହାର ବୋଲେ ଯୁବତୀଜନ କଲେ ତେଜ୍ୟା
ଚଳିଲେ ସେ ସ୍ତିରୀମାନେ ମନେ ପାଇ ଲଜ୍ଜା
ଉର୍ବଶୀ ଲାଗି ଗଲେ ଯେ ଯାହା ଜାତି ଘେନି
ଶୁଣ ନାରଦ କହନ୍ତି ଦେବ ପଦ୍ମଯୋନି ।
ମୁର ଦାରୁଣ ପ୍ରସଙ୍ଗ ବୁଝ ପୁଣି ଏବେ
ଗଦାଏ ଗଦାଏ ଘେନି ଚଳିଲେ ଦାନବେ ।
ପୁତ୍ରଙ୍କର ଯିବା ଦେଖି ଉର୍ବଶୀ ଯେ ପାଞ୍ଚି
ବୋଇଲେକ ପୁଣି କେଣେ ଯାଉଛ ରେ ବସି
ଏଥର ଯେବେ ଯାଉଛ ବାବୁ ତୁମ୍ଭେ ଚଳି
ଗଲେ ଏକା ନ ଲଗାଅ କାହାତୁଲେ କଳି ।
ଘେନିବ ସବୁରି ଲୋକମନ ଏକ ପ୍ରାୟେ
ଶତ୍ରୁ ମିତ୍ରଠାରେ ଭିନ୍ନ ନ ଘେନି ହୃଦୟେ ।
ଦେବତା ଶିବ ବିଷ୍ଣୁଙ୍କ ସ୍ଥାନେ ଯେବେ ଯିବ
ଏମାନଙ୍କୁ ମାନି ନମସ୍କାର କରୁଥିବ ।
ପରନାରୀ ପରଧନ ନ କରିବ ଚୋରି
ନମସ୍କାର କରୁଥିବ ବିପ୍ରପାଦ ଧରି ।
ବୟସାଧିକ ଲୋକଙ୍କୁ ନ ହୁଡ଼ିବ କ୍ଷଣେ
ଅଦୋଷୀ ଜୀବମାନଙ୍କୁ ନ ମାରିବ ରଣେ ।
ଦେବତାଙ୍କ ସଙ୍ଗତରେ ନୋହିବ ବଇରୀ
ବ୍ରାହ୍ମଣମାନଙ୍କ ବିତ୍ତ ନ ଆଣିବ ହରି ।
ମାନ୍ୟସ୍ତିରୀମାନଙ୍କୁ ହେ ନ କହିବ ଠେଲି
ପର ଗୃହକୁ ନ ଯିବ ନିଶାକାଳେ ବୁଲି ।
ବୈଷ୍ଣବ ବିପ୍ର ସାଧୁଙ୍କୁ ଦେଖିଲେ ସେବିବ
ସଭାରେ ବସି କେବେ ହେଁ ମିଥ୍ୟା ନ କହିବ ।
ସୁପଣ୍ଡିତ ଲୋକଙ୍କୁ ଯେ ନ କରିବ ହିଂସା
ଅନୁବ୍ରତେ କହୁଥିବ ସତ୍ୟାଚାର ଭାଷା ।
ଏ ରୂପେ ଥିଲେ କଦାପି ନୋହେ ଅପମୃତ୍ୟୁ
ତୁମ୍ଭେ ମୋର ଏକଥାକୁ ଘେନି ଚଳ ତତ୍ତ୍ୱ ।
ଶୁଣି ମୁର ଦାରୁଣ ହେଲେ ହସ ହସ
ମାତାଙ୍କୁ ବୋଇଲେ ତୁମ୍ଭେ କହୁଅଛ କିସ ।
କାହିଁକି ବୃଥାରେ ଆମ୍ଭେ ଲଗାଇବୁ କଳି
କେବଳ ସ୍ୱର୍ଗକୁ ଆମ୍ଭେ ଯାଉଅଛୁ ଖେଳି ।
ଆଗ ବାଳକମାନଙ୍କ ସଭାକୁ ଯେ ଯିବୁ
ଖେଳ ହୁଡ଼ ମାରି ତର୍କ ନ୍ୟାୟବଳେ ଥିବୁ ।
ପଶା ଶକଟା ଝିମାଣି ଖେଳିବୁ ଖେଳହିଁ
ଏ କଥାକୁ ମାତା ଗୋ ନକର ଚିନ୍ତା ତୁହି ।
ଏହା ଶୁଣି ଉର୍ବଶୀ ଯେ ହୋଇଲା ସନ୍ତୋଷ
ବୋଇଲା ଯାଅ ବାବୁରେ ଘେନି ମୋ ଆୟୁଷ
ଭବ ଜଳଧିରୁ ପାରିକର ପୀତବାସ
ଭଣଇ ଏ ପୁଣ୍ୟ ପୀତାମ୍ବର ଦାଶ ।



## ମୁରାସୁର ଓ ଚିତ୍ରସେନର ପଶାଖେଳ

ମାତାଙ୍କର ସନମତେ ପୁତ୍ର ବେନି ଚଳି
ଉର୍ବଶୀ ପୁର ପିଲାଙ୍କ ସଙ୍ଗେ ଯାଇ ଚଳି ।
ଦେବପୁତ୍ରଙ୍କ ସଙ୍ଗରେ ବେସି କଲେ ସଭା
ଯାବତ ଖେଳ ତହିଁରେ ରଚିଲେ ଦାନବା ।
ହକାହକି ହୋଇ ଦେବଙ୍କର ପୁତ୍ର ତୁଲେ
ପ୍ରଥମେ ଖେଳିବା ଆସ ବୋଲି ତୋଡ଼କଲେ
ଅଟନ୍ତି ମୂର୍ଖ ପଣରେ ଦୁହେଁ ସମସରି
ଅଲକ୍ଷଣା ଲୋକ ଆଗେ ଖେଳେ ଶ୍ରଦ୍ଧାକରି
କୁଳକଣ୍ଟକ ଲୋକ ଯେ ହୁଅନ୍ତି ଘଟୁଆଳ
ବହନ୍ତି ଯେ କୁପୁରୁଷ ଲୋକେ ଚଟିମାଳ ।
ମନୁଷ୍ୟ ମଧ୍ୟରେ ହୀନ ଅଟେ ଯେଉଁ ଜନ
ପରକୁ ରାନ୍ଧି ଦେଇଣ ପୋଷଇ ଜୀବନ ।
ରହନ୍ତି ଯେଉଁ ପୁରୁଷମାନେ ହୋଇ ଗୋତି
ଅଭବ୍ୟ ଲୋକମାନେ ଯେ ଛାଡ଼ନ୍ତି ସୁପାତି ।
ଠେସନ୍ତି ପଣ୍ଡିତ ଲୋକ କଥା ସଦା ମୂର୍ଖେ
ସଭାରେ ଆସନ ମାଡ଼ି ବସନ୍ତି ଦାମ୍ଭିକେ ।
ଏହି ପରକାରେ ସିନା ଅଟନ୍ତି ରାକ୍ଷସ
କାହିଁ ଶକଟା ପଶା ସେ ଖେଳନ୍ତି ବିଶେଷ ।
କାହିଁ ଜୁଆ ଖେଳି ବିବାଦରେ ହୁଅନ୍ତି ମେଳ
ନ୍ୟାୟବଳେ ଖେଳନ୍ତି ସେ କାହିଁ ଚଉଦୋଳ ।
କାହିଁରେ ଗଞ୍ଜପା କାହିଁ ଖେଳନ୍ତି ଝିମାଣି
କାହିଁରେ ଷୋଳହିଁ ଖେଳି ଦେବତାଙ୍କୁ ଜିଣି ।
କାହିଁରେ ଖେଳନ୍ତି ଘୁଲାଘୁଞ୍ଚା ଚଉରଙ୍ଗୀ
ସବୁ ଦେବଙ୍କୁ ସେ ଜିଣି ହୋଇଲା ଏକାଙ୍ଗୀ ।
କେହି ଜିଣି ତାଙ୍କ ଆଗେ ନୁହନ୍ତି ସେ ଉଭା
କହୁ କହୁ ଦୁହେଁ ଯାଇ ବସିଲେକ ସଭା ।
ସଭାରେ ବସିଣ ଡାକୁଛନ୍ତି ଏକ ଏକ
ସହି ନ ପାରି ପୁଚ୍ଛିଲେ ଦେବ ସଭାଯାକ ।
ଜଣକେ ଭିନ୍ନ ରଚିଲେ ଖେଳ ନବତନ
ତଥାପି କେହି ଜିଣିତା ନୋହିଲେ ଭାଜନ ।
ସକଳ ଦେବ ସଭାରୁ ହାରିଯାନ୍ତି ଉଠି
ସ୍ୱର୍ଗ ପୁରରେ ଚମକି ପଡ଼ିଲା ଲେଉଟି ।
ମୁରର ଖେଳରେ କେହି ନ ପାରନ୍ତି ଜିଣି
ଚିତ୍ରସେନ ଧାଇଁଲେକ କର୍ଣ୍ଣେ ତାହା ଶୁଣି ।
ଦେଖିଲା ସଭାରେ ବସିଛନ୍ତି ବେନିଭାଇ
ବିଧାତା ବର୍ଣ୍ଣ ପରାୟେ ଆକୃତି ଦିଶଇ ।
ସବୁଙ୍କର ହାର ଜିଣା ଦେଖି ଚିତ୍ରସେନ
ସହି ନ ପାରିଣ ଦେବଙ୍କର ଅପମାନ ।

ବୋଇଲା ହେ ସଭାଯାକ ବସ ଏବେ ସ୍ଥିରେ
ମୁହିଁ ଆଜି ଖଣ୍ଡ କେତେ ଖେଳିବି ଏଠାରେ ।
ସମସ୍ତେ ହାରିଲେ ଜିଣିଗଲେ ବେନିଭାଇ
ମୋତେ ଜିଣିଲେ ସିନା ଏ ନେବେ ଦ୍ରବ୍ୟ ବହି
କେ ଲକ୍ଷେ ହାରିଛି କେହି କେହି ବେନିଲକ୍ଷ
ଦେଖ ମୁହିଁ ତାହା ଆଜ ଜିଣିବି ପ୍ରତ୍ୟକ୍ଷ ।
କାହାର ପୁତ୍ର ଏ ବେନି ଅଇଲେ ଏଠାକୁ .
ସ୍ୱର୍ଗର ଧନ ଜିଣି ସେ ନିଅନ୍ତି ଗୃହକୁ ।
ଏ ଖେଳ ଭାଙ୍ଗିଣ ଏବେ ନବତନ ସଞ୍ଚ
ପଶା ଖେଳିବା ଆମ୍ଭର କର ଦଶପାଞ୍ଚ ।
ମୁର ବୋଇଲା ଖେଳିବା ଆମ୍ଭେ ଯେବେ ପଶା
ତୋହର କି ଦାନ କହ ଶୁଣିଥିବା ଭାଷା ।
ଚିତ୍ରସେନ ବୋଲେ ମୋର ହେଲା ଦଶଦାନ
ତୋର କି ଦାନ ଶୁଣନ୍ତୁ କହ ସଭାଜନ ।
ମୁର ବୋଇଲା ତୋ ତହୁଁ ମୋର ଅଧେଜାଣ
ପଞ୍ଚୁଆତି ବୋଲିଣ ସେ ଦାନ ନାମ ଶୁଣ ।
ଆବର ଏକା ବାକ୍ୟରେ ବୁଝିଯାଅ ସର୍ବ
ଯା ଦାନ ପଡ଼ିବ ନେବ ପୀଢ଼େ ଥିବା ଦ୍ରବ୍ୟ ।
ଚିତ୍ରସେନ ବୋଇଲା ହେ ଉତ୍ତମ ଉତ୍ତମ
ଏବେ ବୋଲି କୋଠି କାଟି ଇନ୍ଦ୍ରର ନନ୍ଦନ ।
ଥାପିଲେକ ଦଶଲକ୍ଷ ସ୍ୱର୍ଣ୍ଣପୀଢ କରି
ବୋଇଲାକ ପଶାକାଠି ପକା ଏବେ ଧରି ।
ଶୁଣିଣ ଧଇଲା ମୁରଦୈତ୍ୟ ପଶାକାଠି
ପଡୁ ମୋର ବାଜି ବୋଲି ଡାକିଲା କୁହାଟି ।
ଶୁଣ ନାରଦ କହନ୍ତି ପୁଣି ବେଦପତି
ମୁର ଚିନ୍ତିବା ମାତ୍ରକେ ପଡ଼େ ପଞ୍ଚୁଆତି ।
ଯେବେ ଉଚ୍ଚଲୋକ ନୀଚ ସଙ୍ଗରେ ଖେଳଇ
କହନ୍ତି ପୁରାଣେ ସେ ଯେ ଅବଶ୍ୟ ହାରଇ ।
ଜୁଆ ଶକଟା ଯେ ପଶାଖେଳେ ଯେବେ ରସି
ସେ ପଡ଼ଇ ଲକ୍ଷ୍ମୀ ତାର ପଡ଼େ କନ୍ଧୁ ଖସି ।
ଉଚ୍ଚ ଲୋକର କନ୍ଧରେ ନ ଲଦନ୍ତି ଶିରୀ
ଏ ଘେନି ଜିଣନ୍ତି ନୀଚଲୋକ ବସୁନ୍ଧରୀ ।
ବୁଝିଲେ ଇନ୍ଦ୍ରରାଜାର ପୁତ୍ର ଚିତ୍ରସେନ
ତେଣୁ ସେହି ଥୋଇଥିଲା ଦଶଲକ୍ଷ ଧନ ।
ମୁର ଦୈତ୍ୟର ପଡ଼ନ୍ତେ ଦାନ ପଞ୍ଚୁଆତି
ଦାରୁଣ ରଖିଲା ତାହା ନେଇ ତାକୁ କତି ।
ହାରିବାରୁ ଚିତ୍ରସେନ ଦେହେ ବସେ ମାନ
ପୁଣି ସେ ଥୋଇଲା ନେଇ ଦଶଲକ୍ଷ ଧନ ।
ଲେଉଟି ପକାନ୍ତେ ମୁରଦୈତ୍ୟେ ପଶାକାଠି
ପଡ଼ିଲାକ ପଞ୍ଚଦାନ ଦେଲେ ସର୍ବେ ଦୃଷ୍ଟି ।

ଦାରୁଣ ଥୋଇବା ଦ୍ରବ୍ୟଯାକ ଗଲା ଘେନି
ଶୁଣ ନାରଦ କହନ୍ତି ଦେବ ପଦ୍ମଯୋନି ।
ଇନ୍ଦ୍ର ପୁତ୍ର ଚିତ୍ରସେନ ମନେ ହୋଇ ରୁଷ୍ଟ
ବୋଇଲା ଦାନକୁ ଏବେ କରିବା ପାଲଟ ।
ମୋହ ଦାନ ପାଞ୍ଚ ହେଉ ତୋର ଦାନ ଦଶ
ଏହା ବିଚାରି ଥୋଇବା ଦୁହେଁ ଧନ ଆସ ।
ମୁର ବୋଇଲା ଉତ୍ତମ କଥା ତେବେ ହେଲା
ଦଶଦାନ ଦେଲୁ ମୋତେ ଭାଗ୍ୟ ଉପୁଜିଲା ।
ଏଥର ଥୋଇବା ଦ୍ରବ୍ୟ ଯାହା ଯାହା ହେଉ
ଏଠାକୁ ଆଣ ଆମ୍ଭଙ୍କୁ ତାହା ଜଣାଯାଉ ।
ଚିତ୍ରସେନ ବୋଲେ ପୀଢ଼ ଭଣ୍ଡାରକ ବୋଲି
ଯେତେ ଅଛି ଦ୍ରବ୍ୟ ତହିଁ ସମସ୍ତ ଅର୍ପିଲି ।
ଏତେ ଇନ୍ଦ୍ରଙ୍କର ପୁତ୍ର ଅଲିଅଲି ଯେନା
ପଶାଖେଳେ ସମର୍ପିଲା ଭଣ୍ଡାରକ ସୁନା ।
ଏଥି ଉତ୍ତାରେ ସେ ମୁର ମର୍ଦ୍ଦି ପଶାକାଠି
ପକାନ୍ତେଣ ଦଶଦାନ ପଡ଼ିଲା ଲେଉଟି ।
ଦେଖିଲାକ ଚିତ୍ରସେନ ପଡ଼ିଲାକ ଦଶ
ଜିଣିଲା ମୁର ହାରିଲା ବାସବର ଶିଷ୍ୟ ।
ଖେଳରେ ସେ ଅପମାନ ପାଇ ଶଚୀବଳା
ପୁଣିହିଁ ସୁବର୍ଣ୍ଣ ଆଣି ଥୋଇ ଲକ୍ଷେତୋଳା ।
ଚିତ୍ରସେନ ବୋଇଲା ମୁଁ କଲି ଏଡ଼େ ପୀଢ଼
ମୋର ଧନକୁ ଜିଣିବା ଦ୍ରବ୍ୟ ତୋର ଆଡ଼ ।
ହେଉ ବୋଲିଣ ଆନନ୍ଦ ହେଲା ମୁରଦୈତ୍ୟ
ପକାନ୍ତେ ଦଶଦାନ ଯେ ପଡ଼ିଲା ତୁରିତ ।
ଦେଖିଣ ସଭାରେ ସର୍ବେ ହୋଇଲେ ତାଟକା
ଦାରୁଣ ଜିଣିଲା ଦ୍ରବ୍ୟଯାକ ନେଲା ଏକା ।
ଦେଖିଣ ତା ଚିତ୍ରସେନ ହେଲା କ୍ରୋଧଭର
ବୋଇଲେ ଏଥର ମୋର ପୀଢ ସ୍ୱର୍ଗପୁର ।
ମୋ ପୀଢ଼କୁ ତୋର ସର୍ବଧନ ପୀଢ଼କର
ହେଉ ବୋଲିଣ ରହସ୍ୟ କଲା ଖେଳେ ମୁର
କୁରୁଳି କୁହାଟ ଦେଇ ଧରେ ପଶାକାଠି
ବୋଇଲା ଜିଣି ତୁ ଏବେ ଯିବୁ ସ୍ୱର୍ଗୁ ଉଠି ।
ଏମନ୍ତ ବୋଲିଣ କାଠି ପାରି କରେ ଡାକି
ପଡ଼ ଦଶଦାନ ସର୍ବେ ରହିଲେଣି ଶଙ୍କି ।
ସ୍ୱର୍ଗକୁ ଜିଣିଣ ମୁର ହସେ ଟହ ଟହ
ବୋଇଲା ଏଥର ଭାଇ ଆଣିବୁ କି କହ ।
କହୁଁ କହୁଁ ଜିଣିଲି ମୁଁ ତୋର ସ୍ୱର୍ଗପୁର
ଆଉ କେଉଁ ଦ୍ରବ୍ୟେ ଅଛି ତୋର ଅଧିକାର ।
ଶୁଣିଣ ଇନ୍ଦ୍ର ନନ୍ଦନ ହେଲା ହସ ହସ
ବୋଇଲ ମୋ ଦ୍ରବ୍ୟ ଅନ୍ତ ପାଇବୁ ତୁ କିସ ।
ସ୍ୱର୍ଗ ଭୁବନ ଭଣ୍ଡାର ଘର ଅବା ନେଲୁ
ଏହି ଛାର କଥାକୁ କି କାହିଁକି ହସିଲୁ ।
ବୁଝିଲେତ ଅଛି ମୋର କେତେ ଦ୍ରବ୍ୟ ଅଂଶ
ଅଇରାବତ ହସ୍ତୀ ଯେ ଉଚ୍ଚୈଃଶ୍ରବା ଅଶ୍ୱ ।
ସୁଧର୍ମା ସଭା ଯେ ଅଛି ସଭାଙ୍କ ପ୍ରଧାନ
ଆବର ଅମୃତ ଅଛି ସବୁରି ଜୀବନ ।
ଜାରଣ ମାରଣ ଅଛି ମୃତ ସଞ୍ଜୀବନୀ
ଅଛନ୍ତି ସେ ଅପସରା ଅମୃତ ଯୌବନୀ ।
ସ୍ତମ୍ଭନ ମୋହନ ଲୋପ୍ୟ ବଶ୍ୟ ଉଚ୍ଚାଟନ
ପାଦୁକା ଉପକରଣ ଗୋଟିକା ଅଞ୍ଜନା ।
ମାତୁଳ ନାଟକ ଅଷ୍ଟଧାତୁ ଆଦିକରି
ହାହା ହୁହୁ ଗନ୍ଧର୍ବ ଯେ କିନ୍ନର କିନ୍ନରୀ ।
ବସନ୍ତ ବାସବ ଯକ୍ଷ ରକ୍ଷ ଭାଗ ପୂଜା
ଏମାନେ ଜିଣିଲେ ସିନା ସ୍ୱର୍ଗେ ହେବୁ ରାଜା
ଶୁଣି ହସିଲା ଉଚ୍ଚାଟ ହୋଇ ମୁରଦୈତ୍ୟ
ବୋଇଲା ଏଥର ପୀଢ଼ କର ଐରାବତ ।
ଜିଣିଲେ ତୋର ସମସ୍ତ ବାହୁଡ଼ାଇ ନିଅ
ଶୁଣିଣ କମ୍ପିଲା ଚିତ୍ରସେନ ନିଜ ଦେହ ।
ଖେଳର ଭୋଳେ ହସ୍ତୀକୁ ଆଣିଦେଲା ହୁଡ଼ି
ତଦୁତ୍ତାରୁ ମୁର ଡାକି କାଠି ଦେଲା ଛାଡ଼ି ।
ପଡ଼ିଲାକ ଦଶଦାନ ହାରେ ଚିତ୍ରସେନ
ହସିଣ ନେଲା ଦାରୁଣ ଐରାବତ ଯାନ ।
ବ୍ରହ୍ମାନନ୍ଦନ ଉର୍ବଶୀ ଦେବୀର ସେ ପୁଅ
ସ୍ୱର୍ଗରେ ଜିଣିବାକୁ କେ ତାକୁ ଅଛି କହ ।
ମୁର ବୋଲେ ଭାଇ ସବୁ ଦ୍ରବ୍ୟ କରି ଆଡ଼
ଏ ମୋହର ଦ୍ରବ୍ୟକୁ ତୋ ସୁଧର୍ମାକୁ ଏଡ଼ ।
ଏଥର ଜିଣିଲେ ମୋର ପଦାର୍ଥକୁ ନିଅ
ଶୁଣି ବୋଇଲାକ ହେଉ ବୋଲି ଶଚୀପୁଅ ।
ପଶାକାଠିକୁ ମଞ୍ଜାଳି ଧରି ଚିତ୍ରସେନ
ତଳେ ଗଡ଼ାଇ ଦେଖନ୍ତେ ପଡ଼େ ଦଶଦାନ ।
ମୁର ବୋଇଲା ଭାଇ ହୋ ବୁଝିଲେ କି ଭାବ
କର୍ମରେ ଥିବାରୁ ମୋର ଜିଣୁଅଛି ସର୍ବ ।
ଉର୍ବଶୀଙ୍କ ଲେଖାରେ ତୁ ଅଟୁ ମୋର ଭାଇ
ମୁହିଁ ବ୍ରହ୍ମାଙ୍କ ପୁଅ ତୁ ଇନ୍ଦ୍ରଙ୍କ ତନୟୀ ।
ତେଣୁ ଭ୍ରାତ ହେଲଇଁ ଯେ ଆମ୍ଭେ ବେନିବଳା
ଭାଇ ଭାଗ ଦିଅ ଏବେ ଆମ୍ଭର ତ ହେଲା ।
ସେହି କଥା ଚିତ୍ରସେନ ନ ଶୁଣଇ କିଛି
ପୀଢ଼ରେ ଥୋଇଲା ଆଣି ଅପସରା ପାଞ୍ଚ ।
କରେଣ କାଠି ମର୍ଦ୍ଦିଣ ଧରି ଚିତ୍ରସେନ
ପକାନ୍ତି ପଡ଼େ ମୁରର ପୁଣି ଦଶଦାନ ।

ଉଚ୍ଚୈଃଶ୍ରବା ଅଶ୍ୱଯାନମାନ ହାରିକରି
ସ୍ତମ୍ଭନ ମୋହନ ବାଣ ସବୁ ଦେଲା ହାରି ।
ହାରିଣ ସେ ଚିତ୍ରସେନ ଚାହେଁ ଉପରକୁ
ବୋଇଲା ଏ ସବୁ ଦ୍ରବ୍ୟ ନେଲା ଜିଣି ମୁକୁ ।
କେବଳ ବୁଝିଲେ ଆଉ ଅଛି ସୁଧାକୁଣ୍ଡ
ତାହା ପ୍ରସାଦୁ ଜିଣିମା ଅବା ସ୍ୱର୍ଗ ଖଣ୍ଡ ।
ହାରିଲେ ଏତିକି ଅଛି ଜିତିଲେ ସେତିକି
ଏତେ ପାଞ୍ଚି ଚିତ୍ରସେନ ଧଇଲା କାଠିକି ।
ଏଥୁ ଅନ୍ତେ ବ୍ରହ୍ମାସୁତ ନାରଦ ମହର୍ଷି
ପଶାଖେଳ ଠାରେ ହେଲେ ପ୍ରବେଶ ସେ ଆସି
ଦେଖିଲେ ଅସୁର ଜିଣି ଘେନିଗଲା ସର୍ବ
ଚିତ୍ରସେନ ହାରିଥିଲା ଇନ୍ଦ୍ରର ଯେ ଦ୍ରବ୍ୟ ।
ଅମୃତ ଥୋଇଛି ତାହା ଦେଖି ମୁନିବର
ପାଞ୍ଚିଲେ ଏଥର ଏତ ସରିଲା ସଂସାର ।
ଅମୃତ କୁଣ୍ଡକୁ ଏବେ ହାରି ଯେବେ ଦେବ
ଅସୁର ଭୁଞ୍ଜିବେ ସର୍ବେ ହୋଇ ମତ୍ତଗର୍ବ ।
ଆମ୍ଭମାନଙ୍କର ମୃତ୍ୟୁ ଘଟିଲାଣି ଏବେ
ଅମୃତ ଖାଇଣ ଦୈତ୍ୟ ସବୁଦିନେ ଥିବେ ।
ଏହାଙ୍କୁ ମାରିବା ପାଇଁ କେ ହେବ ଭାଜନ
ବ୍ରହ୍ମା ବିଷ୍ଣୁ ହର ହେଲେ ତେଜିବ ଜୀବନ ।
ଏତେକ ପାଞ୍ଚି ନାରଦ ଗଲେ ଇନ୍ଦ୍ରପାଶ
ଦେଖିଲେ ଶଚୀ ପାଖରେ ଅଦତିର ଶିଷ୍ୟ
ମୁନିଙ୍କୁ ଦେଖିଣ ଇନ୍ଦ୍ର ହେଲେ କୃତ୍ୟକୃତ
ପାୟେ ପଡ଼ି ଶତବାର କଲେ ଦଣ୍ଡବତ ।
ଆସନ ଦେଇ ବସିଲେ ଇନ୍ଦ୍ର ମୁନି ଆଗେ
ବୋଇଲନ୍ତି ଦିତୀବ୍ରହ୍ମଙ୍କୁ ଭେଟିଲି ମୁଁ ଭାଗ୍ୟେ ।
ନାରଦ ବୋଇଲେ ବାବୁ ଶୁଣ ସୁରପତି
ଚିତ୍ରସେନ ପୁତ୍ର ତୋର ହାରିଲା ସମ୍ପତ୍ତି ।
ତୁହି ତ ଜାଣୁ ସଭାରେ ପିତା ଯେତେବେଳେ
ରମିଲେ ଉର୍ବଶୀ ସହିତରେ କାମଭୋଳେ ।
ମାନବେ ନଉବରଷ କରନ୍ତେଣ କେଳି
ତହିଁରୁ ଜନ୍ମିଲେ ଦୁଇ ଦୁଷ୍ଟ ମହାବଳି ।
ମୁର ଦାରୁଣ ବୋଲିଣ ଜାଣୁଅଛୁ ତୁହି
ତାଙ୍କ ତୁଲେ ତୋର ପୁଅ ଖେଳେ ପଶାଯାଇ
ଅଶ୍ୱ ରାଜ୍ୟ ସିଂହାସନ ଦଣ୍ଡଛତ୍ର ଆଦି
ଭଣ୍ଡାର ସୁଧର୍ମାସଭା ସ୍ୱର୍ଗପୁରେ ଭେଦି ।
ସବୁଦ୍ରବ୍ୟ ହାରି ଏବେ ଥୋଇଛି ଅମୃତ
ତୁ ତାହାକୁ ବେଗେ ଯାଇ ରଖ ପୁରୁହୂତ ।
ଏତେ କହିକରି ମୁନି ହେଲେ ଅନ୍ତର୍ଦ୍ଧାନ
ଶୁଣିକରି ଇନ୍ଦ୍ର ତହୁଁ ଚଳିଲେ ବହନ ।
ଐରାବତ ଚଢ଼ି ହେଲେ ପରବେଶ ଯାଇ
ଦେଖିଲେ ଥୋଇଛି ପୁତ୍ର ସୁଧାକୁଣ୍ଡ ନେଇ ।
ଇନ୍ଦ୍ର ବୋଇଲେ ବାପରେ କେଡ଼େ କର୍ମକଲୁ
ଅମୃତକୁଣ୍ଡକୁ କେହ୍ନେ ଖେଳରେ ହୁଡ଼ିଲୁ ।
ଆଉ ପଦାର୍ଥକୁ କେଡ଼େ ନକରି ଶୃଙ୍ଖଳା
ଅମୃତକୁଣ୍ଡ ଗଲେତ ବୁଡ଼ିବ ମୋ ଭେଳା ।
ତୁ ଖେଳ ଛାଡ଼ି ଅନ୍ତର ହୁଅ ଏବେ ତାକୁ
ଦେଖ ଆମ୍ଭେ ଖେଳରେ ଯେ ଏଥର ଜିଣିବୁ ।
ପିତାର ବାକ୍ୟ ଶୁଣିଣ ଉଠେ ଚିତ୍ରସେନ
କଦଳୀଗଛ ପରାୟେ କମ୍ପେ ଘନ ଘନ ।
ପୁତ୍ର ଆସନେ ବସିଲେ ଯାଇ ସୁରସାଇଁ
ବୋଇଲେକ ଅମୃତକୁ ହୁଡ଼ିଅଛୁ ତୁହି ।
ମୁରାସୁର ବୋଲେ ଦେବେ ଶୁଣ ହେ ବାସବ
ତୋର ସୁଧାକୁ ମୋହର ହେଲା ସବୁ ଦ୍ରବ୍ୟ ।
ତୁ ହାରିଲେ ସ୍ୱର୍ଗ ଛାଡ଼ିଯିବୁ ହୋ ବିଡ଼ୋଜା
ମୁହିଁ ଜିଣିଲେ ଅବଶ୍ୟ ହେବି ଏଥେ ରାଜା ।
ଏକଥାରେ ତୋର ମୋର ହେଲା ସତ୍ୟାସତ୍ୟ
ହେଉ ବୋଲି ମଙ୍ଗିଲେକ ଦେବ ପୁରୁହୂତ ।
ତହିଁ ଉତ୍ତାରୁ ଯେ ଦାନ ହେଲା ଚିହ୍ନାଚିହ୍ନି
ଇନ୍ଦ୍ର ପଞ୍ଚୁଆତି ମୁର ଦଶଦାନ ଘେନି ।
କରନ୍ତି ଦେଖଣାହାରୀମାନେ ଜୟେ ଜୟେ
ଧର୍ମକୁ ଯେ ସୁରମନ୍ତି ସର୍ବ ଦେବତାଏ ।
ନାରଦ ପବନ ଚନ୍ଦ୍ର ସୂର୍ଯ୍ୟ ନଇର୍ରତ
କୁବେର ବରୁଣ ପୁଣି ଈଶ ହିମବନ୍ତ ।
ଅନନ୍ତ ବାସୁକି ଚିତ୍ରସେନ ବୈଶ୍ୱାନର
ଏମାନଙ୍କୁ ଆଦିକରି ଅଶ୍ୱିନୀକୁମାର ।
ତାର ବାର ରଷ ତିଥି ଶୁକ୍ର ବୃହସ୍ପତି
ମଙ୍ଗଳ ଚନ୍ଦ୍ର ସୁତ ଯେ ଆଦିତ୍ୟ ସନ୍ତତି ।
ଗନ୍ଧର୍ବ କିନ୍ନର ଯକ୍ଷ ରକ୍ଷ ବିଦ୍ୟାଧର
ସବୁଙ୍କରି ମୁଖେ ଶୁଭେ ଜିଣୁ ପୁରନ୍ଦର ।
ଚତୁରାକ୍ଷ କରି ସର୍ବେ ଅଛନ୍ତି ଯେ ରହି
ହାରୁ ଏହି ମୂର୍ଖ ବୋଲି ଧର୍ମ ଛନ୍ତି ଚାହିଁ ।
ଅସୁର ଜିଣିଲେ ହେବ ସଂସାର ତ ହତ
ଏତେକ ବୋଲି ଧର୍ମକୁ ଚିନ୍ତିଣ ଦୈବତ ।
ସେହି ଧର୍ମ ପୁରୁଷଙ୍କୁ କରନ୍ତେ ସ୍ମରଣ
ତତ୍‌କ୍ଷଣେ ଧର୍ମ ଆସି ଇନ୍ଦ୍ରେ କଲେ ଜିଣ ।
ବାସବ ଦେବତାଙ୍କର ଦାନେ ବିଜେକଲେ
ଦାନପାଡି ମୁରବୋଲି ବିଡ଼ୋଜା ବୋଇଲେ
ଶୁଣିଣ ମୁରଦୈତ୍ୟ ଯେ ହୋଇଲା ହରଷ
ପୂର୍ବରୁ ଜିଣିଲା ପ୍ରାୟ କରିଥିଲା ଆଶ ।

ଇନ୍ଦ୍ରଙ୍କୁ ବୋଇଲେ ଯଶ ନଥିଲା ଏଠାରେ
ଅମୃତଲାଗି ଧରମ ହେଲେ ସାହା ବାରେ ।
ତାହା ଶୁଣିଣ ନାରଦ ବ୍ରହ୍ମାଙ୍କୁ ଯେ ପୁଚ୍ଛି
ଦେବତାଙ୍କୁ କାହିଁପାଇଁ ଦୈତ୍ୟ ଜିଣୁଅଛି ।
ଏଥିର କାରଣ ମୋତେ କହିବା ହେ ପିତା
ଶୁଣି ବିଧାତା କହିଲେ ଶୁଣ ଆରେ ଶ୍ରୋତା ।
ଦୈନିକ ନାମେ ପ୍ରଳୟ ହେଲା ଯେଉଁ ଯୁଗ
ତୋତେ ପୁଣି ସେହିଠାରୁ କହିବା ପ୍ରସଙ୍ଗ ।
ସେ ପ୍ରଳୟ ଅନ୍ତେ ପୁଣି ଅନାଦି ଅପର୍ଣ୍ଣା
ଅଙ୍ଗୁଜାତ କଲେ ତିନି ପୁତ୍ର ଏକ କନ୍ୟା ।
ସେ ତିନି ପୁତ୍ରଙ୍କ ନାମ କୁହେ ଶୁଣ ତୁହି
ପ୍ରଥମରେ ବ୍ରହ୍ମା ବିଷ୍ଣୁ ଆବର ଭବହିଁ ।
ଦୁହିତାର ନାମଗୋଟି ଅଟଇ ଅବଳା
ଅପର୍ଣ୍ଣାର କଥା ଶୁଣ କହିବାରେ ବଳା ।
ସେ ତିନି ପୁତ୍ରଙ୍କୁ ମାଏ ଗର୍ଭୁ ଜାତକରି
ବୋଇଲେ ବାବୁ ତ୍ରିଗୁଣ ରୂପ ରହ ଧରି ।
ସତ୍ତ୍ୱ ରଜ ତମ ହୋଇ ବ୍ରହ୍ମାଣ୍ଡକୁ ପାଳ
ସବୁରି ହୃଦେ କୀଟରୁ ବ୍ରହ୍ମାଯାଏ ଖେଳ ।
ମାତାର ବୋଲ ପାଳିଣ ଗଲେ ପୁତ୍ର ତିନି
ସବୁରି ହୃଦରେ ବସି ପାଳିଲେ ମେଦିନୀ ।
ବସନ୍ତେ ବ୍ରହ୍ମାଣ୍ଡଯାକ ସର୍ଜି ବକ୍ଷସ୍ଥଳେ
ଏଥିଉତ୍ତାରେ ମାଏ ଯେ ଉଠିଲେ ଚଞ୍ଚଳେ ।
ସଙ୍ଗତରେ ଦୁହିତାକୁ ଘେନି ବିଜେ କଲେ
ବାଟରେ ଯାଉଁ ହରକୁ ଏକା ଦେଖାଦେଲେ ।
ବସିଲେକ ଜଗଦ୍ଧାତ୍ରୀ ଲମ୍ବାଇଣ ପାଦ
ଟେକନ୍ତେ ଦିଶିଲା ବେନିଜାନୁ ନୀବିବନ୍ଧ ।
ଦେହରେ ପିନ୍ଧା ହୋଇଛି ଯେଉଁ ବାସଗୋଟି
ଯେ ଯାହା ସ୍ଥାନ ବାରଣ ଦିଶୁଅଛି ଫୁଟି ।
ଏକେତ ସେ ନବଯୁବା ଅମୃତ ଯୌବନ
ହର ଭୋଳାଲିଙ୍ଗ ବୁଝିଲେକ ବ୍ରହ୍ମଜ୍ଞାନ ।
ସବୁ କଥାରେ ଘେନନ୍ତି ସ୍ୱାମୀ ସଦଭାବ
ଦେଖି ଜଗନ୍ମୋହିନୀକି ହୋଇଲେ ଅଦମ୍ଭ ।
ବର୍ତ୍ତୁଳ ଉରଜ ଚାହିଁ ନ ପାରିଲେ ରହି
ଭାରିଯା ପ୍ରାୟ ରମିଲେ ତିଳେ ଲଜ୍ଜା ନାହିଁ ।
ମାତାର ଅସତୀପଣ ଦେଖିଲେ ଦୁହିତା
ବ୍ରହ୍ମା ବିଷ୍ଣୁ ଆଗେ ଯାଇ କହିଲା ବାରତା ।
ବୋଇଲେକ ଆହେ ଭ୍ରାତା ଶୁଣ ମୋର ବାଣୀ
ହରଙ୍କୁ ଘେନି ରମିଲେ ମାଏ ସେହିକ୍ଷଣି ।
ପ୍ରତ୍ୟକ୍ଷେ ଦେଖି ଅଇଲି ମୁହିଁ ତୁମ୍ଭ ପାଶ
ତୁମ୍ଭ ମନକୁ ନଇଲେ ଦେଖି ଯିବା ଆସ ।

ଏହା ଶୁଣି ବ୍ରହ୍ମା ବିଷ୍ଣୁ କର୍ଣ୍ଣେ ଦେଲେ ହସ୍ତ
ବୋଇଲେ ମାତା ହୋଇଣ କଲେ ଏଡ଼େକୃତ୍ୟ
କର୍ଣ୍ଣରେ ନ ଶୁଣି ଯାହା କହିଗଲା ଭଗ୍ନୀ
କେହୁ ଆନ କରିବଟି ଦଇବ ଲେଖନୀ ।
ଏମନ୍ତ ପାଞ୍ଚି ଉଠିଲେ କରି ମନେ ତାପ
ଭଗ୍ନୀକି ଘେନି ଆସନ୍ତି ହୋଇ ମହାତାପ ।
ମାତାଙ୍କୁ ଦେଖି ବାଟେ ନ କଲେ ନମସ୍କାର
ଧିକ୍‌କାରିଣ ଆଗେ ଆସି ସିଞ୍ଚାଡ଼ିଲେ କର ।
ବୋଇଲେ କିମ୍ପା ଅର୍ଜିଲା ଏଡ଼େ ଅପକୀର୍ତ୍ତି
ଜାତ କରିଣ ପୁତ୍ରକୁ କରାଇଲେ ରତି ।
ଧିକ ଧିକ ତୁମ୍ଭର ନ ଚାହୁଁ ଆମ୍ଭେ ମୁଖ
ଆଣିଲ ଦେହକୁ ତୁଚ୍ଛା ଅପଖ୍ୟାତି ଯାକ ।
ପୁଅଙ୍କର ନିନ୍ଦାଶୁଣି କ୍ରୋଧେ ଆଦିନାରୀ
ବୋଇଲେକ ଝିଅ ଏକା କଲା ଏତେ ସରି ।
ପୁତ୍ରଙ୍କ ଆଗେ କହିଲା ଯାଇଁ ନିନ୍ଦାବାଣୀ
ତେଣୁ ସିନା କୁମରେ ଏକଥା ଗଲେ ଜାଣି ।
ଏଣୁ ତୁହି ପାମରୀ ଲୋ ଘେନ ମୋର ଶାପ
ଆରଜନ୍ମେ ଜନ୍ମି ତୁହି ହେବୁ ନଟୀରୂପ ।
ପୁତ୍ରଙ୍କ କଟାକ୍ଷେ ପୁଣି ଚାହିଁଲେକ ନେତ୍ରେ
ବୋଇଲେ ମୋତେ କିମ୍ପାଇଁ ନିନ୍ଦିଲ ଜଗତେ
ତୁମ୍ଭେ ଯେତେ ଅଛ ଏବେ ଏଥି ଦେହଧରି
ବୁଝିଲେ ଦୋଷ ସବୁରି ଦେହେ ଅଛି ପୂରି ।
ସ୍ଥାବର ଜଙ୍ଗମ ଆଦି କୀଟୁ ବ୍ରହ୍ମଯାଏ
ବିଚାରିଲେ କଳଙ୍କିତ ଅଛି ସର୍ବକାୟେ ।
ଏ କଥା ନ ଚିହ୍ନି ଯେବେ ନିନ୍ଦିଲ ଆମ୍ଭଙ୍କୁ
ମୁହିଁ ତ ଅଟଇ ଆଦିମାତା ବ୍ରହ୍ମାଣ୍ଡକୁ ।
ସ୍ତିରୀରୂପେ ସଂସାରରେ ମୁଁ ଅଛି ଜନମି
ଆଦ୍ୟେ ବିଷ୍ଣୁ ବାମା ମୁହିଁ ଅଟେ ମହାଲକ୍ଷ୍ମୀ ।
ଦ୍ୱିତୀୟେକ ଈଶ୍ୱରଙ୍କ ଅଟେ ପ୍ରିୟା ମୁହିଁ
ତୃତୀୟେ ବ୍ରହ୍ମାଘରେ ମୁଁ ସାବିତ୍ରୀ ବୋଲାଇ ।
ଇନ୍ଦ୍ରର ଭାରିଯା ମୁହିଁ ଅଟେ ସଚିପ୍ରିୟା
ଆଦିତ୍ୟର ଘରେ ମୁହିଁ ଅଟେ ଜାଣ ଛାୟା ।
ମୁହିଁ ଯେ ଇନ୍ଦ୍ରଙ୍କ ଘରେ ଅଟଇ ରୋହିଣୀ
ବରୁଣ ଭାରିଯା ମୁହିଁ ଅଟେ ଗଙ୍ଗାପାଣି ।
ଅଙ୍ଗିରାଙ୍କ ଭାରିଯା ମୁଁ ଅଟେ ମହାସତୀ
ମୁହିଁ ଯେ ଅଟଇ ଜାଣ କନ୍ଦର୍ପର ରତି ।
ମୁହିଁ ଯେ ଯମର ପତ୍ନୀ ଅଟଇ କରାଳୀ
ଗଗନରେ ବୋଲାଏ ମୁଁ ଯେ ଆରର୍ଦ୍ରାବଳୀ ।
କୁବେରର ପତ୍ନୀ ମୁହିଁ ଅଟଇ ସେ ହାରା
ବୃହସ୍ପତିର ଭାରିଯା ଅଟେ ମୁହିଁ ତାରା ।

ପବନ ଭାରିଯା ମୁଁ ଯେ ଅଞ୍ଜନା ଅଟଇ
ମୁହିଁ ସେ ସ୍ୱର୍ଗରେ ଅଛି ଅପସରା ହୋଇ ।
ଆବର ପୁରୁଷେକ ମୁଁ ସ୍ତିରୀଏ ହୋଇଛି
ଧରା ବୋଇଲା ପୁଣି ମୁଁ ସବୁଙ୍କୁ କହୁଛି ।
ମୁହିଁ ସେ ଯେ ଅଷ୍ଟବଂଶୀ ସଂସାର ଅଟଇ
ରାଜାଙ୍କ ଘରେ ବୋଲାଇ ମୁହିଁ ମହାଦେଈ ।
ସବୁରି ଜନମଙ୍କୁ ମୁଁ ଅଟଇରେ ମାତା
ରଚି କାଳକୁ ମୁଁ ପୁଣି ଅଟଇ ବନିତା ।
ମୁହିଁ ସିନା ଆଦିମାତା ହୋଇଛି ବ୍ରହ୍ମାଣ୍ଡେ
ମୋ ତହୁଁ ଉବୁରି କେହି ନାହାନ୍ତି ବ୍ରହ୍ମାଣ୍ଡେ ।
ମୁଁ ସିନା ସଂସାରେ କଲି ପାପ ପୁଣ୍ୟ ଜାତ
ଏହା ନ ଚିହ୍ନି ନିନ୍ଦିଲ କିମ୍ପା ବେନିଭ୍ରାତ ।
ଏଣୁକରି ତୁମ୍ଭେ ଆରେ ଘେନ ମୋର ଶାପ
ପୃଥ୍ୱୀରେ ଜନମ ହରି ସତାଇଶ ରୂପ ।
ବ୍ରହ୍ମା ନିନ୍ଦାକଲେ ପୂଜା ସଂସାରେ ନା ନୋହୁ
ଏ ମୋହର ଶାପ ତାକୁ ଯୁଗେ ଯୁଗେ ରହୁ ।
ମାତାର ମୁଖୁ ଏସନ ଶାପ ପୁତ୍ରେ ଶୁଣି
ମନରେ ଭୟ କରିଣ ଯୋଡ଼ି ବେନିପାଣି ।
ବୋଇଲେ ଜନନୀ କିମ୍ପା ଦେଲ ଏଡ଼େ ଶାପ
ଜାତକଲା ପୁତ୍ରଠାରେ କଲ ଏଡ଼େ ଶାପ ।
ଆମ୍ଭର ତେବେ ଜନମ ହେଲା ଅକାରଣ
କାହିଁକି ଶ୍ରୀହରି ବ୍ରହ୍ମା ବୋଲି ଦେଲ ନାମ ।
ଏଡ଼େ ନାମ ବହି ଆମ୍ଭେ ଅଯୋଗ୍ୟ ତ ହେଲୁ
ଈଶ୍ୱରଙ୍କୁ ଘେନି ଯେବେ ଘର ଏକା କଲୁ ।
ଆପେ ଅର୍ଜିଲା ପୁତ୍ରକୁ କହିଲୁ ଅନ୍ୟାୟେ
ରହୁ ତୋ କୀର୍ତ୍ତି କାରଣକର ତେବେମାୟେ ।
କାହିଁକି ପୃଥ୍ୱୀରେ ହେବି ସତାଇଶ ରୂପ
ମାତା ବୋଇଲେ କହିବା ଶୁଣ ତେବେ ବାପ
ଆମ୍ଭର ଦେବାର ଶାପ ନୋହିବ ଅନ୍ୟଥା
କହିବା ଏ ଦୁହିତାର ଶୁଣ ଆଗ କଥା ।
ହରିଙ୍କ ଉଦରୁ ଏହୁ ଜନ୍ମିବ ଯେ କାଳେ
ବହିବ ଉର୍ବଶୀ ନାମ ଗୋଟି ରବିତଳେ ।
ଏହାକୁ ନେଇ ବରଣ ଇନ୍ଦ୍ର କରୁ କରୁ
ବ୍ରହ୍ମାଏ ମୋହିତ ହୋଇ ହରିବେ ବାଟରୁ ।
ବ୍ରହ୍ମାଏ ହରନ୍ତେ ଇନ୍ଦ୍ର ନ ଛୁଇଁବେ ଦେଖି
ଅମର ପୁରରେ ଅପସରା କରି ରଖି ।
ସବୁଙ୍କୁ ଦେଖନ୍ତେ ଅଙ୍ଗୁ ଛାଡ଼ିବ ସେ ବ୍ରୀଡ଼ା
ସବୁଙ୍କୁ ଜିଣିବ ସେ କରାଇ କାମପୀଡ଼ା ।
ନାଟକ ଶକଟା ପଶା ଖେଳ ରୂପେ ଯେତେ
କେ କାହାକୁ ଜିଣି ସମ ନୋହିବ ଜଗତେ ।
ଏଥିଉତ୍ତାରୁ କେବେହେଁ କାଳ ପୁଣ ଯିବ
ସ୍ୱର୍ଗପୁରେ ବାସବ ଯେ ନୃତ୍ୟ କରାଇବ ।
ସେ ନୃତ୍ୟଠାରେ ବସିଣ ଥିବେ ଆସି ବ୍ରହ୍ମା
ଏମନ୍ତବେଳେ ଉର୍ବଶୀ ମିଳିବ ସୁଧର୍ମା ।
ଯେତେକ ନୃତ୍ୟ କରିବ ସର୍ବେ ହେବେ ମୋହି
କାମଦେବ ଆସନ୍ତେ ଯେ ନ ଚାହିଁବ କେହି ।
ସଙ୍ଖୋଳା ନ କରନ୍ତେ ସେ କୋପେ ମନସିଜ
ବ୍ରହ୍ମାଙ୍କୁ ବିନ୍ଧିବ ତମ ବହି କାମରାଜ ।
ବାଜନ୍ତେଣ ଫୁଲଶର ବ୍ରହ୍ମାହେବେ ମୋହି
ରମିବେ ଉର୍ବଶୀ ସଭାମଧ୍ୟୁ ଉଠିଯାଇ ।
ପିତାଙ୍କ ରମଣୁ ଜନମିବେ ଦୁଇବାଳ
ମୁର ଦାରୁଣ ନାମ ସେ ହୋଇବ କେବଳ ।
ଏ ଦୈତ୍ୟଙ୍କ ଭାରା କେହି ନ ପାରନ୍ତି ସହି
ତେଣୁ କରି ହରି ତୁହି ଉପୁଜିବୁ ଯାଇଁ ।
ଶେଷ ନୃସିଂହ ରୂପେ ତୁ ହେବୁ ଅବତାର
ମୁର ଦାରୁଣ କାହିଁକି କରିବୁ ସଂହାର ।
ତୁ ସଂସାରେ ସତାଇଶ ରୂପ ଉପୁଜିବୁ
ପ୍ରଥମ ଜନ୍ମ କହିବା ଶୁଣ ତୋର ବାବୁ ।
ଆଦ୍ୟରେ ମତ୍ସ୍ୟ ଦ୍ୱିତୀୟେ ହେବୁ କୂର୍ମଅଙ୍ଗ
ତୃତୀୟେ ବରାହ ଚତୁର୍ଥରେ ନରସିଂହ ।
ପଞ୍ଚମେ ବାମନ ଷଷ୍ଠେ ପର୍ଶୁରାମ ହେବୁ
ସପ୍ତମେ ଶ୍ରୀରାମ ହୋଇ ରାବଣ ନାଶିବୁ ।
ଅଷ୍ଟମେ କୃଷ୍ଣ ନବମେ ହୋଇବୁ ବଉଦ୍ଧ
ଦଶମେ କଲ୍‌କୀ ହୋଇଣ ପ୍ରକାଶିବୁ ହୃଦ ।
ଏକାଦଶେ ହଂସ ଦ୍ୱାଦଶରେ ଚକ୍ରପାଣି
ତ୍ରୟୋଦଶେ ବ୍ୟାସ ଚତୁର୍ଦ୍ଦଶେ ଚୂଡ଼ାମଣି ।
ପଞ୍ଚଦଶଲେ ହେବୁ ଯେ ମୋହିନୀ ସ୍ୱରୂପ
ଷୋଡ଼ଶେ ହେବୁ ଯାଇଣ ନାରାୟଣ ରୂପ ।
ସପ୍ତଦଶକେ କପିଳ ସ୍ୱରୂପ ହୋଇବୁ
ପୃଥୁ ହୋଇ ଅଷ୍ଟାଦଶ ନଗର ପାଳିବୁ ।
ଊନବିଂଶେ ନାରଦ ତୁ ହେବୁ ଅବତାର
ବିଂଶ ଅବତାରେ ଦାମୋଦର ରୂପ ଧର ।
ଏକବିଂଶେ ଦତ୍ତାତ୍ରେୟ ଦ୍ୱାବିଂଶେ ଋଷଭ
ତ୍ରୟୋବିଂଶେ ଧନ୍ୱନ୍ତରୀ ହେବୁ ପଦ୍ମନାଭ ।
ଗୋମୁଖୀ କେଶବ ଚତୁର୍ବିଂଶେ ଦେବରାଜ ।
ପଞ୍ଚବିଂଶେ ତୋ ସ୍ୱରୂପ ହେବ ଚତୁର୍ଭୁଜ ।
ଷଡବିଂଶେ ହୋଇବୁ ତୁ ଶ୍ରୀମଧୁସୂଦନ
ହୋଇବ ପ୍ରକାଶ ସପ୍ତବିଂଶେ ଭଗବାନ ।
ଏମନ୍ତ ହୋଇଣ ତୁହି ଧରିଥିବୁ ରୂପ
ତୋତେତ ଅଯଶ ନାହି ଆମ୍ଭ ଦେଲା ଶାପ ।

ଲଭିବେ ସଂସାରେ ତୋତେ ଭଜି ମୋକ୍ଷଗତି
ତରିବେ ତୋ ନାମ ଧରି ହେଲେ ମୂଢ଼ମତି ।
ଅଗତିକି ଗତି ତୁହି ଦେବୁ ନାରାୟଣ
ଯେ ହେଲେ ତୋ ନାମଧରି ହେବେ ଉଦ୍ଧାରଣ
ହୋଇଣ ସେ ଉଦ୍ଧରିଣ ଭବୁ ହେବେ ପାରି
ଏଣୁ ତୋର ନାମ ହେବ ଅର୍ଘ୍ୟକୁ କତୁରୀ ।
ବ୍ରହ୍ମାଙ୍କୁ ବୋଇଲେ ଥାଉ ଅପୂଜା ହେ ହୋଇ
ଏବେ ଆଜ୍ଞାଦେଲେ ହେଉ ତୋ ଭଉଣୀ ସେହି ।
କଳିଯୁଗେ ଜନ୍ମି ତୋର ସଙ୍ଗେ ପୂଜାପାଉ
ଜଗନ୍ନାଥ ବଳଭଦ୍ର ମଧ୍ୟେ ରହିଥାଉ ।
ନୋହିଲେ ଏହାକୁ ଆନରୂପେ ନାହିଁ ପୂଜା
ବଦନ୍ତି ଆଦିମାତା ଯେ ଶୁଣିଲେ ଆତ୍ମଜା ।
ଦୁହିତାକୁ ଶାପଦେଲେ ଯହୁଁ ମୋର ହେଲେ
ଏକଥା ଭଲ ହୋଇବ ତାହା କାଳେ କାଳେ ।
ଯୁବତୀ କୁଳରେ ସେହି ହୋଇବ ଗଣନା
ସ୍ୱର୍ଗରେ ହୋଇକ ଉର୍ବ୍ବଶୀ ବାରାଙ୍ଗନା ।
ତାହାର ଗର୍ଭରୁ ଯେଉଁ ପୁତ୍ର ହେବ ଜାତ
ସବୁଠାରେ ଜିଣିବେ ସେ ହେବ ବଳବନ୍ତ ।
ଶୁଣ ହେ ନାରଦ ଏହା ଲେଖାଅଛି ପୂର୍ବେ
ତେଣୁ ଏ ମୂରକୁ ଜିଣି ନ ପାରନ୍ତି କେବେ ।
ଶୁଣିଣ ନାରଦ ମୁନି ହେଲେ ହସ ହସ
ଫିଟିଲାକ ମନୁଭ୍ରାନ୍ତି କହ ଖେଳ ରସ ।
ନାରଦ ବୋଇଲେ ପିତା ଶୁଣିମା ମୋ ବାଣୀ
କହ ମୁରକୁ ବାସବ ପାରିଲାକି ଜିଣି ।
ବିଧାତା ବୋଇଲେ ବାବୁ ଶୁଣ ତେବେ ତାହା
ଯେତେବେଳେ ଖେଳେ ଯାଇ ବସେ ଶଚୀ ନାହା ।
ଧର୍ମକୁ ଯେ ସୁମରଣା କଲା ସୁରପତି
କରେଣ ବସିଲେ ଘେନି ଦିବ୍ୟ ପଞ୍ଝୁଆତି ।
ମୁରକୁ ବୋଇଲେ ଦାନ ଚିହ୍ନିଥାଅ ତୁହି
ତୋର ଦାନଦଶ ମୋର ପଞ୍ଝୁଆତି ହୋଇ ।
ମୁରବୋଲେ ଇନ୍ଦ୍ର କେତେ କହୁଅଛ ତାହା
ପକାଇଲି ପଶାକାଠି ଦେଖ ଶଚୀନାହା ।
ସଭାଯାକକୁ ଚାହିଁଣ ଡାକେ ମୁରାସୁର
ବୋଇଲା ଯେ ଶୁଣୁଥାଅ ସମସ୍ତେ ଏଥର ।
ଯେ ହାରିବ ଏସ୍ଥାନୁ ସେ ଯିବ ଦୂର ହୋଇ
ଯେ ଜିଣିବ ନୃପହେବ ସେହି ସ୍ୱର୍ଗଭୂଇଁ ।
ଶୁଣିଣ ବୋଇଲେ ହେଉ ହେଉ ସ୍ୱର୍ଗଲୋକେ
ଇନ୍ଦ୍ରଜିଣୁ ବୋଲି ଚିନ୍ତୁଛନ୍ତି ସଭାଯାକେ ।
ଏଥିଉତ୍ତାରୁ ସେ ମୁର ପାଞ୍ଚ ମନେ ମନ
ବୋଲଇ ଜିଣିଲେ ଏବେ ହୋଇବି ରାଜନ ।
ସ୍ୱର୍ଗର ସମ୍ପଦ ଭୋଗ କରିବି ନିଶ୍ଚଳେ
ସମସ୍ତେ ଖଟିବେ ଆସି ମୋର ପାଦତଳେ ।
ଆଦିତ୍ୟ ବରୁଣ ଇନ୍ଦ୍ର ଚନ୍ଦ୍ର ଧନପତି
ମଙ୍ଗଳ ବୁଧ ଗୁରୁ ସେ ହେବେ ବଶବର୍ତ୍ତୀ ।
ମେଘମାନେ ଚଳିବେ ଯେ ମୋର ଆଜ୍ଞାଘେନି
ଆନନ୍ଦରେ ଜଳବୃଷ୍ଟି କରିବେ ମେଦିନୀ ।
ଶଚୀକୁ ଘେନି ବସିବି ମୁହିଁ ଇନ୍ଦ୍ର ପଦେ
ସକଳଦେବ ଖଟିବେ ଆସି ମୋର ପାଦେ ।
ଉତ୍ତମ ହେବ ବସିଲେ ଇନ୍ଦ୍ରସଭା କରି
ପୁତ୍ର ହାରିଲେ ପଛନ୍ତେ ମରୁଥାନ୍ତି ଝୁରି ।
ଏବେ ଆପେ ଆସିହାରିଯିବ ଯେବେ ମୋତେ
କାହାଠାରେ ନିନ୍ଦା ନଥିବ ଜଗତେ ।
ପୁତ୍ର ତାହାର ହାରିଲେ ନୁହନ୍ତା ତ ଭଲ
ପିତା ଆପେ ହାରିଲେ ତ ହେବ ସମତୁଲ ।
ଏହିରୂପେ ମୁର ବସି ପାଞ୍ଚନ୍ତେ ତା ମନ
ଦଇବ ପୁରୁଷ ତାହା କରିଦେଲେ ଆନ ।
ଧର୍ମ ଯେବେଟି ପ୍ରାଣୀଙ୍କୁ ହେବ ନିଶ୍ଚେ ସାହା
ଲକ୍ଷେଶତ୍ରୁ ହୋଇ କିସ କରିପାରେ ତାହା ।
ଏଥିଉତ୍ତାରୁ ସେ ମୁର ପକାଇଲା କାଠି
ପଡ଼ିଲାକ ପଞ୍ଝୁଆତି ଜିଣିଲା ଇନ୍ଦ୍ରଟି ।
ଶୁଭିଲାକ ଜୟ ଜୟ ଶବ୍ଦ ତିନିପୁରେ
କରନ୍ତି ସଙ୍ଗୀତ ଗୀତଧ୍ୱନି ସୁରନରେ ।
ଦେଖିଣ ଇନ୍ଦ୍ରଦେବତା ହୋଇଲେ ଉଷତ
ମୁର ଚହୁଁ ଛଡ଼ାଇଣ ଘେନିଲା ଯାବତ ।
ଯେତେକ ଦେବତାମାନେ ଦେଖୁଥିଲେ ମିଳି
ହସି ଉଠିଲେ ବଜାଇ ସର୍ବେ କରତାଳି ।
କେ ବୀଣା ବାଇଲା କେହୁ ଦେଲା ତାଳମାନ
କହି ହରି ହରି ଡାକଦ୍ୟନ୍ତି ଘନ ଘନ ।
ତୁମ୍ବୁରୁ ବଜାଇ ଧରି ମୃଦଙ୍ଗ କେ ପିଟି
ତାଳବେଣୀ ଶବଦ କେ ବଜାଇ ଅଧାଟି ।
ଏମନ୍ତ ଉସୁକ ତହିଁ ହେଲେ ଦେବତାଏ
ଶୁଣ ହେ ନାରଦ କହୁଅଛନ୍ତି ବ୍ରହ୍ମାଏ ।
ଏଥିଉତ୍ତାରେ ସେ ମୁର ଇନ୍ଦ୍ର ଜିଣା ଦେଖି
ଖେଳରେ ହାରିଣ ସବୁ ପଦାର୍ଥ ଉପେକ୍ଷି ।
ସାନୁଜ ଭାଇକି ତାର ଧଇଲା ଦାନବ
ବୋଇଲା ଏବେରେ ସେବ ଯାଇ ସଦାଶିବ
ଇନ୍ଦ୍ରର କଥା ସହିବି ଦେହେ ବଳଥିଲେ
ଏତେ ପାଞ୍ଚିଣ ଦାରୁଣ ମୁର ଉଠିଗଲେ ।
ଘରକୁ ନ ଯାଇ ସେହୁ ଗଲେ ତପକରି
ଚଳିଲେ ସେ ଗଙ୍ଗା ଗୟା ଆଦି ତୀର୍ଥହେରି ।

ନିଗମସ୍ଥାନ ଦେଖିଣ ଗଲେ କପିଳାସ
ତହିଁରେ କରିଅଛନ୍ତି ଶିବ ନିଜେ ବାସ ।
ପାର୍ବତୀ ଘେନି ଅଛନ୍ତି ତହିଁ ବିଜେକରି
ପାପନାଶନ ପୁର ସେ ଅଟେ ରାଜାସରି ।
ଦେଖନ୍ତି ସେ କପିଳାସ ସବୁ ଘରଦ୍ୱାର
ଦିଶଇ ସ୍ୱର୍ଗହୁଁ ଦ୍ୱିଗୁଣ ଯେ ପଟାନ୍ତର ।
ଝଲକଇ ଅଷ୍ଟରତ୍ନ ଜଗତୀର ପାଖେ
ଉଡ଼ନ୍ତେ ପତାକାମାନ ନଗରର ଶିଖେ ।
ସେ ପୁରଯାକକୁ ଘେରି ବୁଲନ୍ତି ଆଦିତ୍ୟ
ବହଇ ସର୍ବଦା ତହିଁ ମଳୟ ମରୁତ ।
ନବସହସ୍ର ଯୋଜନ ଅଟେ ପୂର୍ବଦ୍ୱାର
ନବକୋଟି ଶିବଗଣ ଅଛନ୍ତି ସେଠାର ।
ତହିଁ ପୂର୍ବଦ୍ୱାର ବାଟେ ବହଇ ତ୍ରିବେଣୀ
ନାମ ଯେ ଗଙ୍ଗା ଯମୁନା ସରସ୍ୱତୀ ତିନି ।
ନନ୍ଦୀ ମହାକାଳ ଦୁହେଁ ସେ ଦ୍ୱାରକୁ ଦ୍ୱାରୀ
ତହିଁ ଛନ୍ତି ବିଜେ କର୍ଣ୍ଣ କଟାରୀକୁ ଧରି ।
ଯୁଗ ଗୋଟିଏ ତାହାକୁ ହୁଅଇ ଦିବସେ
ବ୍ରହ୍ମାଙ୍କର ବରଷ ଯେ ତାଙ୍କୁ ଅଟେ ମାସେ ।
ସେ ଦ୍ୱାର ମୁର ଦାରୁଣ ଦେଖି ହେଲେ ମୋହି
ଦକ୍ଷିଣ ଦ୍ୱାରେ ପ୍ରବେଶ ହେଲେ ପୁଣି ଯାଇ ।
ସେ ଦ୍ୱାରକୁ ଦ୍ୱାରପାଳ ଅଟେ ବିନାୟକ
ଅଶୀ ସହସ୍ର ଯୋଜନ ଅଟେ ଦ୍ୱାରଯାକ ।
ଚଉଷଠି ଲକ୍ଷ ଶିବଗଣ ଛନ୍ତି ତହିଁ
ପାର୍ବତୀଙ୍କୁ ଖଟିଛନ୍ତି ସତ୍ୟପଣେ ରହି ।
ସପତ ସିନ୍ଧୁଙ୍କୁ ଘେନି ଆସେ ବାରାନିଧି
ସେବିଣ ହରି ଉମାଙ୍କୁ ଦ୍ୟନ୍ତି ରତ୍ନମୁଦି ।
ଆବର ବ୍ରହ୍ମା କୁବେର ଇନ୍ଦ୍ର ଦେବଗଣ
ମରୁତ ଅନଳ ଯମ ନଇରତ ପୁଣ ।
ଅନାଦି ନାରାୟଣଙ୍କୁ ଘେନି ଦେବସୁତ
ଖଟନ୍ତି ଆସି ସରବେ ଈଶ୍ୱରଙ୍କ ପୁତ୍ର ।
ତହିଁ ଉତ୍ତାରୁ ଅସୁରେ ମିଳିଲେ ପଶ୍ଚିମେ
ସେ ଦ୍ୱାରେ ଚଣ୍ଡ ପ୍ରଚଣ୍ଡଦ୍ୱାରୀ ବେନିଜନେ ।
ଅଠାଶୀ ସହସ୍ର ଯୁଣ ଦ୍ୱାର ବେଢ଼ାଗୋଟି
ନବଲକ୍ଷ କରଣକୁ ଖଟନ୍ତି ଭ୍ରୁକୁଟି ।
ମେଘର ସେ ସୈନ୍ୟମାନେ ଖଟନ୍ତି ଏଠାରେ
ଆବର୍ତ୍ତକ ସମ୍ବର୍ତ୍ତକ ଦ୍ରୋଣ ଯେ ପୁଷ୍କରେ ।
ଏ ମେଘର ସେନା ଅଷ୍ଟାଦଶ ମେଘମାଳ
ତାହାଙ୍କର ନାମମାନ ଶୁଣ ତପଶୀଳ ।
ଲୋହିତ ହରିତ ଶ୍ୱେତ ପୀତ ଶ୍ୟାମ କଳା
କଳଘଣ୍ଟା ଶ୍ୱେତବିନ୍ଦୁ ପଶ୍ଚୁ ମେଘ ଧଳା ।
ଗୋଚର ଯେ ଅଗୋଚର ନିଦାନ ଯେ ମେଘ
ଅଯୋଗ ସଂଯୋଗ ମେଘଯୋଗ ମହାଦୀର୍ଘ
ଅଲୋକିତ ଅଦନ୍ତ ପ୍ରଳୟ ମେଘଗଣ
ଶାନ୍ତି ଅଶାନ୍ତି ମେଘ ଯେ ଧୂମ୍ର ମେଘପୁଣ ।
ଏହାଙ୍କର ସୈନ୍ୟ ଅଷ୍ଟାଦଶ ପଦ୍ମ ମେଘ
ଖଟନ୍ତି ପଶ୍ଚିମଦ୍ୱାରେ କପିଳାସ ସ୍ୱର୍ଗ ।
କୃଷ୍ଣବେଣୀ ବ୍ରହ୍ମବେଣୀ ରୁଦ୍ର ବେଣୀ ନଦୀ
ବହନ୍ତି ପଶ୍ଚିମଦ୍ୱାରେ ସେ ତିନିହେଁ ଭେଦି ।
ସେହି ଦ୍ୱାରର ମହିମା ଅନ୍ତକରି ନୁହେଁ
ଏକସ୍ତରୀ ଗଣ୍ଡା ଯୁଗ ଦିନେ ଭୋଗ ହୁଏ ।
ଦେବନାଶନ ନାମରେ ଅଛି ଏକ ବଟ
ତହିଁ ତଳେ ଦେବେ ବସି ପକାନ୍ତି ଆଲଟ ।
ସେ ବଟର କ୍ଷୟ ବୃଦ୍ଧି କେଭେ ନ ଦେଖନ୍ତି
ପାର୍ବତୀ ଘେନି ତହିଁରେ ବିଜେ ପଶୁପତି ।
ଦେବତାଯାକ ମାରନ୍ତି ଗଲେ ସେହିଠାରେ
ଆନଠାରେ ନ ମରନ୍ତି ସଂସାର ଭିତରେ ।
ସେକଥା ଦେଖିଣ ଦୈତ୍ୟ ହୋଇଲେ ଆଶ୍ଚର୍ଯ୍ୟ
ସେ ଦୁଆର ମଧ୍ୟ ଦେଇ ଚଳିଲେ ଦନୁଜ ।
ଯାଇଁଣ ଭେଟିଲେ ଦୁହେଁ ଚଉଦ୍ୱାର କତି
ସତୁରି ଯୁଣ ବେଢ଼ା ସେ ଦ୍ୱାର ଦୀର୍ଘପ୍ରତି ।
ଜୟନ୍ତ ଅଜୟନ୍ତ ଯେ ତହିଁ ଦ୍ୱାରପାଳ
ଦିନେକ ବୁଲନ୍ତି ଲୋକ ଗିରି ତିନିବେଳ ।
ସାତ ଅରବୁଦ ତହିଁ ଛନ୍ତି ଶିବଗଣ
ସେ ଦୁଆର ନିରୋଧନ୍ତି ପ୍ରତିଜ୍ଞା ବହିଣ ।
କାବେରୀ ଗୋମତୀ ସରଯୁ ଯେ କୃଷ୍ଣାବେଣୀ
ସୁମତିଙ୍କୁ ଘେନି ଏହୁ ବସନ୍ତି ଯେ ପୁଣି ।
ଏ ପଞ୍ଚନଦୀ ମେରୁରେ ହୁଅନ୍ତି ମେଖଳୀ
ଦକ୍ଷିଣ ସିନ୍ଧୁ ସଙ୍ଗମ ଅତି ଶୁଦ୍ଧଶାଳୀ ।
ସେହି ବୀର ସୁଲକ୍ଷଣା ଅଟେ ନବଯୁବା
ତାଙ୍କର ନାମ ଶୁଣନ୍ତେ ପ୍ରତ୍ୟକ୍ଷେ କହିବା ।
ବ୍ରହ୍ମାଙ୍କର ପାଟରାଣୀ ଅଟନ୍ତି ସାବିତ୍ରୀ
ବରୁଣ ଭାର୍ଯ୍ୟା ସୁନ୍ଦରୀ ନାମ ନୀରବତୀ ।
ଆଦିତ୍ୟ ଦେବଙ୍କ ଛାୟା କୁବେରଙ୍କ ଦାରା
ଯମର କାଳୀ କରାଳୀ ବୃହସ୍ପତି ତାରା ।
ଶଶଧରଙ୍କର ପତ୍ନୀ ଅଟନ୍ତି ରୋହିଣୀ
ଅଞ୍ଜନା ଦେବୀ ଅଟନ୍ତି ପବନଙ୍କ ରାଣୀ ।
ଅଗ୍ନିଙ୍କର ସ୍ୱାହା ସୁଧା ଇନ୍ଦ୍ର ଶଚୀ ଦେବୀ
ଏ ରୂପେ ହରଙ୍କୁ ତହିଁ ଛନ୍ତି ସର୍ବ ସେବି ।
ତାହାଙ୍କୁ ମୁର ଦାରୁଣ ଦେଖି କଲେ ଶ୍ରଦ୍ଧା
ବୋଇଲେ ଏ ପ୍ରଭୁ ହରି ନେବ ଆମ୍ଭ ବାଧା ।

ଏତେବ ବିଚାରି ମୁର ଦାରୁଣ ଯେ ଭାଇ
ଶିବଗଣଙ୍କ ପାଶରେ ପ୍ରବେଶିଲେ ଯାଇ ।
ତାହାଙ୍କୁ ବୋଇଲେ ଆହେ ଶୁଣ ଆମ୍ଭ ବାଣୀ
କେଦଣ ଭୋଗେ ଭେଟିବୁ ଆମ୍ଭେ ଶୂଳପାଣି
ଶିବଗଣ ବୋଇଲେ ହେ ଶୁଣ ବେନିଭାଇ
ନିଶ୍ଚିନ୍ତ ହୋଇବ ଈଶ୍ୱରଙ୍କ ସେବାପାଇଁ ।
ଆମ୍ଭେମାନେ ସେହି ସଦାଶିବ ଭଜି ଭଜି
କଳ୍ପେ କଳ୍ପେ ହୋଇ ରହିଅଛୁ ଦେଖ ଆଜି ।
ସେହି ପ୍ରଭୁଙ୍କୁ ତୁମ୍ଭେରେ କର ଏବେ ଧ୍ୟାନ
ଧ୍ୟାନ ଦେଖିଲେ ସେ ସ୍ୱାମୀ ହୋଇବେ ପ୍ରସନ୍ନ
ଆମ୍ଭଙ୍କୁ ଆସି ପୁଛିଲ ଯେବେ ତୁମ୍ଭେ ଏବେ
ଏହି କଥା ହୃଦେ ଧରି ଧ୍ୟାନକର ତେବେ ।
ସୁଶୀଳା ବୋଲିଣ ଏକ ନଦୀ ବହୁଛନ୍ତି
ସେହିଠାରେ ଯାଇ ସ୍ନାନ କରନ୍ତି ପାର୍ବତୀ ।
ଅଷ୍ଟରତ୍ନ ବହିଯାଇ ସମୁଦ୍ରରେ ପଶେ
ତାହା ବରୁଣ ରଖନ୍ତି ନେଇ ଗୃହବାସେ ।
ସେ ନଦୀ ଉତ୍ତର ଭାଗେ ହରୋଦ୍ୟାନ ବନ
ବହନ୍ତି ସେହୁ ବନକୁ ଲାଗି ନଦୀମାନ ।
କୋଟିଏ ତୀର୍ଥ ଘେନିଣ କ୍ଷେତ୍ରାଧି ପୁଷ୍କର
ଖଟନ୍ତି ସବୁଙ୍କୁ ଘେନି କପିଳାସ ପୁର ।
ସେ ତୀର୍ଥେ ସଙ୍ଗମ ହୁନ୍ତି ଦକ୍ଷ ସିନ୍ଧୁ ତୀରେ
ତାହାଙ୍କ ନାମ କହିବା ଶୁଣ କିଛି ବାରେ ।
ଗଙ୍ଗା ଗୟା ଗୋଦାବରୀ ସୂର୍ଯ୍ୟ ସରସ୍ୱତୀ
ରୁଦ୍ରା ଭଦ୍ରା କୃଷ୍ଣାବେନୀ ଗଉରୀ ଗୋମତୀ ।
ନର୍ମଦା ପାପନାଶିନୀ କାବେରୀ ତ୍ରିବେଣୀ
ଦ୍ୟୁଗଙ୍ଗା ପାତାଳ ଗଙ୍ଗା ବ୍ରତୀ ବୈତରଣୀ ।
ସାବିତ୍ରୀ ଫଲଗୁ ବିକାଶୀ କାଶୀ କାଉଶିକୀ
ହର ତୁଙ୍ଗଭଦ୍ରା ବୀରଭଦ୍ରା ସଉନକୀ ।
ଉର୍ଦ୍ଧ୍ୱବେଣୀ ବିଷ୍ଣୁ ବେଣୀ ଶକୁନି କୁନ୍ତଳା
ଉତ୍ତରବାହିନୀ ଶ୍ୱେତଗଙ୍ଗା ପଦ୍ମତୋଳା ।
ବିମଳା ପିଙ୍ଗଳା ବୃଦ୍ଧମାତା ଲକ୍ଷ୍ମୀ ବେଣୀ
ତୁଳସୀ ଯେ ଚନ୍ଦ୍ରଭାଗା ଭୈରବୀ ରୁଦ୍ରାଣୀ ।
ଶାରଦା ଗଣ୍ଡୁକୀ ଭାଗୀରଥି ସିଦ୍ଧଶିଳା
ମାଧବୀ ସୁଛୁ ସାଗର ଚିତ୍ରଉତପଳା ।
ସତ୍ୟରୂପା ସିନ୍ଧୁ ରୂପା ଯୋଗରୂପା ନଦୀ
ବହନ୍ତି ଯମୁନା ତ୍ରିଯମୁନା ପୃଥ୍ୱୀଭେଦି ।
ବ୍ରାହ୍ମଣୀ ଯେ ସୁରନଦୀ ରୁଦ୍ରାଣୀ ଇନ୍ଦ୍ରାଣୀ
ବହନ୍ତି ମଧକର୍ଣ୍ଣିକା ଘେନି ସର୍ବେ ପୁଣି ।
ଏ ଆଦି କୋଟି ତୀର୍ଥକୁ ଘେନିଲା ପୁଷ୍କର
ରୁଦ୍ରପାଦେ ପଡ଼ି ବଳେ ହୁନ୍ତି ସିନ୍ଧୁତୀର ।

ମହା ଶୁଦ୍ଧ ହୁନ୍ତି ପାଦେ ପଡ଼ି ରୁଦ୍ରଙ୍କର
କପିଳାସ ଲାଗି ଶୁଦ୍ଧ ସର୍ବନଦୀ ନୀର ।
ଏହିପରି ଏହିଠାରେ ହୁନ୍ତି ସର୍ବେ ଶୁଦ୍ଧ
ଶୁଣ ହେ ମୁର ଦାରୁଣ କହନ୍ତି ବିବୁଧ ।
କେତେ ରତ୍ନ ଦେଖ ଏଥେ କୁଢ଼ ହୋଇଅଛି
ଗୁରୁଦେବ ବୋଲି କେହି ନ କହନ୍ତି କିଛି ।
ଏହି କପିଳାସପୁରେ ବର୍ଷ ମଧ୍ୟେ ଥରେ
ହୁଅଇ କନକ ବୃଷ୍ଟି ସମ ଦିବସରେ ।
ତେଣୁ ଏ ଅଚଳ ଲକ୍ଷ୍ମୀ ଦ୍ୟନ୍ତି ହରସ୍ୱାମୀ
ଲକ୍ଷେ ଯୋଜନକୁ ମାଡ଼ିପଡ଼େ ଜାଣ ଭୂମି ।
କହନ୍ତେ ନ ସରଇ ସେ କପିଳାସ ମହୀ
ନରଜନ୍ମେ କେ ମୁଖରେ ପାରିବ ତା କହି ।
ନିଶିରେ ଶାରଦା ମୋତେ ହୋଇଲେ ପ୍ରସନ୍ନ
ତେଣୁ ଏ ନୃସିଂହ ଗ୍ରନ୍ଥ କରଇ ଲେଖନ ।
ଶାରଦାଙ୍କ ପାଦତଳେ ନମୁ ମୋର ଶିର
ଶାରଦାଙ୍କବିନୁ ଆନେ ଆଶ୍ରା ନାହିଁ ମୋର ।
ଦରିଦ୍ର ଦୋଷରୁ ମୋତେ କରିବେ ଉଦ୍ଧାର
ଜନ୍ମେ ଜନ୍ମେ ସେବା ମୋର ଶାରଦା ପୟର



## ପୀତାମ୍ବର ଦାସର ପୂର୍ବଜନ୍ମ ବୃତ୍ତାନ୍ତ

ହେ ସାଧୁଜନେ ସଂକ୍ଷେପି ବୁଝ ମନେ ଏହା
କାଳେ କାଳେ ବିଷ୍ଣୁ ପୁଣି ହୁଅନ୍ତି ଯେ ଯାହା ।
ପୂର୍ବଜନ୍ମ ମୋର ଶୁଣ ହୋଇ ସାବଧାନେ
ଏକଥା ହ୍ରାସ ନକର ଘେନ କିଛି ମନେ ।
ଆଦିତ୍ୟ ସତ୍ୟଯୁଗରେ ବୈକୁଣ୍ଠରେ ହରି
ଶାକଲ୍ୟ ଦ୍ୱୀପ ନୃପଙ୍କୁ ଦ୍ୱାରୀ ଥିଲେ କରି ।
ଜୟ ବିଜୟ ବୋଲିଣ ତାଙ୍କ ନାମ ଦେଇ
ରହିଲେ ଭିତରେ ଯାଇ ମହାସୁଖ ପାଇ ।
ଲକ୍ଷ୍ମୀ ସରସ୍ୱତୀଙ୍କୁ ଯେ ସଙ୍ଗେ ପ୍ରଭୁ ଘେନି
ଖେଳନ୍ତି ଶକଟା ପଶା ତ୍ରିସନ୍ଧ୍ୟା ଯାମିନୀ ।
ଏମନ୍ତ କାଳେ ପ୍ରବେଶ ମନୁ ମହାଋଷି
ଗଲେ ସେ ବୈକୁଣ୍ଠ ବିଷ୍ଣୁ ଦରଶନେ ରସି ।
ଯାଇଣ ପଶନ୍ତେ ସିଂହଦ୍ୱାରେ ମହାମୁନି
ନ ଛାଡ଼ିଲେ ପଥ ଜୟ ବିଜୟ ସେ ବେନି ।
କଲ୍ୟାଣ କରିଣ ମୁନି କହନ୍ତି ଯେ ତାଙ୍କୁ
ବୋଲନ୍ତି ଯେ ଛାଡ଼ବାଟ ଦେଖିବି ବିଷ୍ଣୁଙ୍କୁ ।
ବହୁକାଳୁ ଦରଶନ କରିନାହୁଁ ହରି
ଏତେକ କହି ଭିତରେ ପଶୁ ତପଚାରୀ ।

ଜୟ ବିଜୟ ନଛାଡ଼ି ମାଇଲେ ଗଳଥା
ମୁଖମାଡ଼ି ପଡ଼ିଲେକ ମାଡ଼ଘାତେ ତଥା ।
ଅପରବେଳେ ସଚେତ ହୋଇ ପୁଣି ଉଠି
ଧୂଳି ଝାଡ଼ି ଶରୀରକୁ ଚଳନ୍ତି ଲେଉଟି ।
ସିଂହଦ୍ୱାରେ ଯାଇ ପୁଣି ହୋଇଲେ ପ୍ରବେଶ
ବେଦରୁ ପଢ଼ିଲେ କାଣ୍ଡ କେତେ ବ୍ରହ୍ମାଶିଷ୍ୟ ।
ଦୁର୍ଜ୍ଜୟ ଜନଙ୍କ ମନ ମୋହିବାକୁ ମୁନି
କର ପ୍ରସାରି କଲ୍ୟାଣ କରନ୍ତି ସେ ପୁଣି ।
ସେ ବେଦଧ୍ୱନି ତାଙ୍କର ନ ପଶନ୍ତେ କର୍ଣ୍ଣେ
ବଧିର ଆଗରେ ଜାଣ ଶବ୍ଦ କରେ ଯେହ୍ନେ ।
ଜ୍ଞାନ ଉଚ୍ଚାରିଣ ମୁନି ଭିତରେ ପଶନ୍ତେ
ପୁଣି ତାହାଙ୍କୁ ଗଳଥା ମାରୁ ବେନିଭ୍ରାତେ ।
ଧୋତି ଉତ୍ତରୀ ଆବର ଜଟା କୁଶବିଡ଼ି
ସମସ୍ତ ପକାଇ ପଡ଼ିଗଲେ ମୁଖମାଡ଼ି ।
ଅସମ୍ଭାଳ ହୋଇ ଋଷି ପଡ଼ି ମହାକ୍ରୋଧେ
ଦୁରାପଦ ଶାପ ତାଙ୍କୁ ଦେଲେ ମନ ଖେଦେ ।
ବୋଇଲେ ଏଡ଼େ ପାପିଷ୍ଠ ଆରେ ତୁମ୍ଭେ ଦୁହେଁ
ବିଷ୍ଣୁପୂଜା କରାଇ ନ ଦେଲ ପଶି ଗୃହେ ।
ଏତେରୂପେ କହି ମୋତେ ଦେଲ ପରାଭବ
ଏହି ଦୋଷ ହେତୁ ତୁମ୍ଭେ ଅସୁର ହୋଇବ ।
ବ୍ରହ୍ମାଙ୍କ ପୁଅ ବୋଲି ନକଲ ମନେ ଭୀତି
ମାଇଲ ବୟସ ମତ୍ତଗର୍ବେ ବ୍ରହ୍ମଯତି ।
ଜୟ ବିଜୟ ଡରିଲେ ଅଭିଶାପ ପାଇ
ମୁନିଙ୍କ ପାଦେ ପଡ଼ିଲେ ଦଣ୍ଡବତ ହୋଇ ।
କାର୍ପୁଣ୍ୟ ହୋଇଣ ସ୍ତୁତି କରନ୍ତି ସେ ଦ୍ୱାରୀ
ବୋଲନ୍ତି କାଣ ଏବେ କହ ତପଚାରୀ ।
ଦୁଷ୍ଟ ବୁଦ୍ଧିରେ ତୁମ୍ଭଙ୍କୁ ନ ପାରିଲୁ ଚିହ୍ନି
କହ କେବେ ଆସିବୁ ଏଦେହ ଆମ୍ଭେ ଘେନି ।
ଯେମନ୍ତେ ଆସିବୁ ଅଳ୍ପଦିନେ ବିଷ୍ଣୁଆଳ
ସେକଥା ଆମ୍ଭଙ୍କୁ କହ ଆଗୋ ତପଶୀଳ ।
ଋଷି ବୋଇଲେ ତୁମ୍ଭଙ୍କୁ ମାର କେ ବୋଇଲା
ମୋର ଗୋଡ଼ ଧରବୋଲି ଏବେ କେ କହିଲା
ଦ୍ୱାରୀ ବୋଇଲେ ତୁମ୍ଭର ଧରିଲେ ଚରଣ
ଆମ୍ଭର କି କେତେ ଉଣାହେଲା କହ ପୁଣ ।
ହସିଲେ କଥାର ମାର୍ଗ ଶୁଣି ମହାମୁନି
ହୃଦରେ ଶାନ୍ତି ବହିଣ କଲେ ଶୁଭ ଧ୍ୱନି ।
ବୋଇଲେ ରେ ତୁମ୍ଭେ ଦୁହେଁ ଅଟ କେଡ଼େତର୍କା
ଖଣ୍ଡିଲେ ଏ ଦୋଷ କଥା ପଦକରେ ଏକା ।
ଆଗଠାରୁ ନ ମାରନ୍ତି ଯେତେ ମୋତେ ହୁଡ଼ି
କାହିଁକି ରହନ୍ତି ଦୈତ୍ୟ ହୋଇ ଦ୍ୱାରଛାଡ଼ି ।
ତଥାପି ଆମ୍ଭର ବୋଲ ହେବ କି ଅନ୍ୟଥା
ମୁଖ ଫିଟି ଗଲାରୁ ତ ସରିଗଲା କଥା ।
ଏଣୁଟି ତୁମ୍ଭେ ବହୁତ ଜନ୍ମ ଯାହା ହ୍ୱନ୍ତ
ଚାରିଥରେ ରଖନ୍ତୁ ଯେ ଲକ୍ଷ୍ମୀଦେବୀ କାନ୍ତ ।
ପ୍ରଥମ ଜନ୍ମରେ ମୁର ଦାରୁଣ ଯେ ହୁଅ
ବ୍ରହ୍ମାର ବୀର୍ଯ୍ୟୁ ଉପୁଜି ଜମ୍ବୁଦ୍ୱୀପେ ରହ ।
ତାହା ଉତ୍ତାରୁ ଦ୍ୱିତୀୟେ ଜନ୍ମ ପୁଣ ପାଇ
ହିରଣ୍ୟ ହରିଣ୍ୟାକ୍ଷ ଯେ ହୁଅ ବେନିଭାଇ ।
ତୃତୀୟେ ଜନ୍ମ ବିଶ୍ରବା ଋଷିଙ୍କର ଘରେ
ରାବଣ କୁମ୍ଭକର୍ଣ୍ଣ ଯେ ହୁଅ ବେନିବୀରେ ।
ଚତୁର୍ଥ ଜନ୍ମରେ ହୁଅ ଦମଘୋଷ ପୁଅ
ଚାରିଜନ୍ମେ ମୋକ୍ଷହୋଇ ବୈକୁଣ୍ଠକୁ ଯାଅ ।
ଏମନ୍ତ ବୋଲି କଲ୍ୟାଣ କଲେ ମୁନି ଯହିଁ
ତକ୍ଷଣେ ଅସୁର ହେବେ ବେନିଦ୍ୱାରୀ ଯାଇ ।
ତହୁଁ ବିଷ୍ଣୁ ଦରଶନେ ଚଳିଲେ ତାପସ
ଯହିଁ ବିଜେ କରିଛନ୍ତି ପ୍ରଭୁ ହୃଷୀକେଶ ।
ସେହି ପୁରରେ ଭେଟିଲେ ଯାଇ ନାରାୟଣ
ଚରଣରେ ଶତେବାର ନମି ତତକ୍ଷଣ ।
ମୁନିଙ୍କୁ ଦେଖିଣ ବିଷ୍ଣୁ ହୋଇଲେ ଆନନ୍ଦ
ବାସ ବାଡ଼ିଘର ନେଇ ଦେଖାନ୍ତି ଗୋବିନ୍ଦ ।
ଘରଦ୍ୱାର ଯେ ପ୍ରାଙ୍ଗଣମାନ ଦେଖିଯାନ୍ତି
ମଣ୍ଡପ ଅଟାଳି କାନ୍ଥ ଦେଉଳ ଜଗତୀ ।
ଦୋମୁହିଁ ଆଡ଼ମୁହିଁ ଯେ ଲଙ୍କାମୁହିଁ ଓରା
ସବୁଠାରେ ଦିଶେ ଝରି ସ୍ୱର୍ଣ୍ଣମୋତି ଝରା ।
ମୁକ୍ତା ପୁଞ୍ଜି ପୁଞ୍ଜି ଶ୍ୱେତଗୁଞ୍ଜେ ଧାଡ଼ି ଧାଡ଼ି
ମର୍କତ ଶ୍ରେଣୀ ଦର୍ପଣ ବାଡ଼ ଅଛି ପଡ଼ି ।
କାହିଁ ନୀଳା ମାଣିକ୍ୟ ଯେ ଅଷ୍ଟରତ୍ନ ଖଞ୍ଜି
ବଇଡୁର୍ଯ୍ୟ ପନ୍ତି ପନ୍ତି ହୀରା ପୁଞ୍ଜି ପୁଞ୍ଜି ।
ଏହିରୂପେ ସବୁ ଦେଖି ମିଳି ସିଂହଦ୍ୱାରେ
ଚାହିଁଲେ ବେନି ଦୁଆରୀ ନାହାନ୍ତି ସେଠାରେ
ସେ କଥା ଜାଣି ପୁଚ୍ଛିଲେ ପ୍ରଭୁ ନାରାୟଣ
ବୋଇଲେ ଦ୍ୱାରୀଙ୍କୁ ମୋର କଲ ଅକଲ୍ୟାଣ
ସେ ଯେବେ ଜନ୍ମିବେ ଦୈତ୍ୟ ହୋଇ ମଞ୍ଚେ ଯାଇ
ଆମ୍ଭଙ୍କୁ ସିନା ଜଞ୍ଜାଳ କରାଇଲ ତହିଁ ।
ମୁଁ ଯେବେ ତାହାକୁ ମାରି ଜନ୍ମିବି ସଂସାରେ
ତେବେ ତୁମ୍ଭେ ଯାଇ ପୂଜାକର ମଞ୍ଚପୁରେ ।
ମୁଁ ତାହାଙ୍କୁ ଯେତେଥର ମାରିଥିବି ଯାଇ
ତୁମ୍ଭେ ତାହା ଲେଖୁଥିବ ମହାକବି ହୋଇ ।
ନବରୂପେ ଅବତରି ବାନ୍ଧି ତାହା ଗ୍ରନ୍ଥ
ସେ ଗ୍ରନ୍ଥକୁ ଲୋକେ ଶୁଣି ହୁଅନ୍ତୁ କୃତାର୍ଥ ।

ଆହେ ଜନେ ବିଷ୍ଣୁଙ୍କର ଏପରି ପ୍ରତିଜ୍ଞା
କେ ତାକୁ ଅମାନ୍ୟ କରି କରିବ ଅବଜ୍ଞା ।
ଏଥିରେ ଯେ ସିଦ୍ଧବାଣୀ କହୁଅଛି ଶୁଣ
ତାହା ଋଷିମାନେ ପୂର୍ବେ କରିଲେ ଲେଖନ ।
ଦେବତା ଅଂଶ ନଥିଲେ ନୁହେଁ ଦାତାଗୁଣ
ଗନ୍ଧର୍ବ ଅଂଶ ନଥିଲେ ନୁହେଁ ସୁଖୀଜନ ।
ମୁନି ଅଂଶ ନଥିଲେ ଯେ କବିତା ନ କରି
ବିଷ୍ଣୁର ଅଂଶ ନଥିଲେ ନୁହେଁ ଦଣ୍ଡଧାରୀ ।
ଏ ଘେନି ବିଷ୍ଣୁ ଆଜ୍ଞାରେ ହେଲି ମୁଁ ମନୁଷ୍ୟ
ଆଦି ଜନ୍ମେ ବୋଲାଇଲି ନାମ କାଳିଦାସ ।
ସେ ଜନ୍ମେ ପ୍ରସନ୍ନ ମୋତେ ହେଲେ ବାକ୍ୟ ଦେବୀ
ମହାକାବ୍ୟ ଲେଖିକରି ରଖିଗଲି ଭୁବି ।
ଦ୍ୱିତୀୟ ଜନ୍ମେ ହୋଇଲି ଜଗନ୍ନାଥ ଦାସ
ଶ୍ରୀ ଭାଗବତ ଗ୍ରନ୍ଥ ମୁଁ କଲଇଁ ପ୍ରକାଶ ।
ତୃତୀୟ ଜନ୍ମରେ ବଳରାମ ଦାସ ହେଲି
ରାମାୟଣ ଗ୍ରନ୍ଥ ମୋର ହୃଦୁଁ ପ୍ରକାଶିଲି ।
ଚତୁର୍ଥ ଜନ୍ମରେ ହେଲି ନାରାୟଣ ଦାସ
ବାନ୍ଧିଲି ପୁରାଣ ହରିବଂଶ ଗୀତରସ ।
ତହିଁ ଉତ୍ତାରେ ପଞ୍ଚମ ଜନ୍ମେ ଯାଇ ପୁଣ
ଶ୍ରୀ ଶାରଳା ଦାସ କବି ହେଲି ଜଗତେଣ ।
ଶ୍ରୀମହାଭାରତ ଯାକ ବାନ୍ଧିଲି ପ୍ରାକୃତେ
ଅଠର ଖଣ୍ଡ ହୋଇଣ ରହିଲା ଜଗତେ ।
ତହିଁ ଉତ୍ତାରେ ବାନ୍ଧିଲି ଚଣ୍ଡିକା ପୁରାଣ
ତଦନ୍ତେ କଲି ବିଲଙ୍କା ନାମେ ରାମାୟଣ ।
ଷଷ୍ଠ ଜନ୍ମେ ମହାଦେବ ଦାସ ହେଲି ମୁହିଁ
ବିଷ୍ଣୁ କେଶରୀ ଯେ ବିଷ୍ଣୁ ପୁରାଣକୁ ଲିହି ।
ଏ ଅନ୍ତେ ପଦ୍ମ ପୁରାଣ କରିଣ ଲିହିଲି
ଶ୍ରୀଗୋବିନ୍ଦ କୃପାରୁ ମୁଁ ପଦନିର୍ଭା କଲି ।
ସପ୍ତମ ଜନ୍ମ ଶୁଣିଣ ମୋର ସାଧୁଜନେ
ଗୋବିନ୍ଦ ସଞ୍ଚିଲେ ଆଣି ମୋତେ ବଡ଼ସ୍ଥାନେ
ମନେ ନ ଥିଲା ଶାରଦା ଏହା ଦେଲେ କହି
ଶିଶୁ ଅଜ୍ଞାନ ବୁଦ୍ଧି ମୁଁ ବାଳକ ଅଟଇ ।
ବିପ୍ରକୁଳେ ଜନ୍ମି ବୋଲାଇଲି ଯଜୁର୍ବେଦୀ
କଷ୍ଟେ ନୃସିଂହ ପୁରାଣ କରି ହଂସଭେଦୀ ।
ମାଧବାଚାର୍ଯ୍ୟ ଯେ ଜଗମୋହନଙ୍କ ଘର
ବ୍ରହ୍ମ ସଂପ୍ରଦା ତିଳକ ସେ ହରି ମନ୍ଦିର ।
ନୃସିଂହ ମନ୍ତ୍ର ବତ୍ରିଶ ଅକ୍ଷର ଭଜନ
ଏମନ୍ତ କୁଳରେ ପ୍ରଭୁ କଲେ ମୋତେ ଜନ୍ମ ।
ଜନ୍ମରୁ ବାଳୁତ ଭାବେ ବୁଦ୍ଧି ମୋର ଗଲା
ବୟସ ଲେଖନ୍ତେ ଦୁଇଅଙ୍ଗେ ସାତ ହେଲା ।

ଏ ସମୟେ ବଳଭଦ୍ର ଆଜ୍ଞାଦେଲେ ମୋତେ
ବୋଲେ ପୂର୍ବକଥା କିବା ପାଶୋରିଲ ଚିତ୍ତେ
ଯେଉଁଜନ୍ମେ ଯେଉଁଆଜ୍ଞା ଦେଲେ ମୋତେ ଜାଣ
ଏବେ ଆଜ୍ଞାଦେଲେ କର ନୃସିଂହ ପୁରାଣ ।
ଦେବୀ ଦାସଠାରେ ତୋର ଜନ୍ମହେବ ଶେଷ
ଦିନାକେତେ ରହି ପୁଣ ବୈକୁଣ୍ଠକୁ ଆସ ।
ଜାତ ସୃଷ୍ଟି ଆଦ୍ୟେ ମୁର ଦାରୁଣ ଏ ଦୁଇ
ସଂକଳନ କଲି ଏହା ବିଷ୍ଣୁ ଆଜ୍ଞାପାଇ ।
ଏମନ୍ତ ଆଜ୍ଞା ଯେ ତହୁଁ ଦେଲେ ବଳଦେବ
ଶୁଣିଲି ମୁଁ ସ୍ୱପନରେ ନିଦ୍ରାରେ ଶ୍ରୀଦେବ ।
ଉଠିଣ ସଚେତ ହୋଇ ଜଣାଇଲି ମୁହିଁ
କରଯୋଡ଼ି ବୋଇଲି ମୁଁ ଶୁଣିମା ଗୋସାଇଁ ।
ଶେଷଜନ୍ମ ବୋଲିଣ ଯେ ଆଜ୍ଞା ଦେବ ମୋତେ
ପୁତ୍ରଦାନ ଦେବା ମୋତେ ରହିଣ ଜଗତେ ।
ବଡ଼ଠାକୁର ବୋଇଲେ ପୁଣି ହେଉ ହେଉ
ପ୍ରଥମ ଗର୍ଭେ ବାଳକ ହୋଇ ତୋର ରହୁ ।
ଆମ୍ଭର ନାମଟି ଏକା ଦେବୁ ତାର ନାମ
ଏମନ୍ତ ବୋଲିଣ ଆଜ୍ଞା ଦେଲେ ବଳରାମ ।
ଏରୂପେ ସେ ମହାପ୍ରଭୁ ଆଜ୍ଞାଦେଲେ ମୋତେ
ପ୍ରତ୍ୟକ୍ଷେ ପୁତ୍ର ଜନମ ହୋଇଲା ଜଗତେ ।
ସେ ପୁତ୍ରର ନାମ ଦେଇ ବଳଭଦ୍ର ବୋଲି
ପ୍ରଭୁବାକ୍ୟ ପାଳି ଏହା ପୁରାଣେ କହିଲି ।
ଶୁଣ ସାଧୁଜନମାନେ ନ ଥିଲା ମୋ ଏହା
ପୁରାଣ କଲେ ଶ୍ରୀ ବାକ୍ୟଦେବୀ ମାତ ଯାହା
ହରିବଂଶ ରାମାୟଣ ଆଉ ଶ୍ରୀଭାରତ
ଦ୍ୱାଦଶ ଖଣ୍ଡ ଅଟଇ ଜାଣ ଭାଗବତ ।
ଏହାଙ୍କ ସଙ୍ଗତେ ସରି ନୃସିଂହ ପୁରାଣ
ଜନ୍ମେ ଜନ୍ମେ ଏ ପୁରାଣ କରିଲି ବଖାଣ ।
ଏକଧ୍ୟାନେ ବସି ଯେହୁ ସଂକଳ୍ପ କରିବ
ବିପ୍ରଙ୍କର ମୁଖୁ ପଞ୍ଚପୁରାଣ ଶୁଣିବ ।
ଅବଶ୍ୟ ଧନ ସମ୍ପତ୍ତି ପୁତ୍ର ହେବ ତାର
ତାକୁ ଲୟ କରି ନରେ ଶ୍ରୀହରି ସୁମର ।
ବଳଭଦ୍ର ସେବନରେ ଆୟୁ ଚିର ହେଉ
ବଳଭଦ୍ର ସେବନରେ ପାପ କ୍ଷୟ ହେଉ ।
ବଳଭଦ୍ର ସେବନରେ ଦୂର ହେଉ ବ୍ୟାଧି
ବଳଭଦ୍ର ସେବନରେ ଫିଟୁ ସର୍ବ ବନ୍ଦୀ ।
ବଳଭଦ୍ର ସେବନରେ ଅପମୃତ୍ୟୁ ହର
ବଳଭଦ୍ର ସେବନରେ ଦୂର ହେଉ ଜ୍ୱର ।
ବଳଭଦ୍ର ସେବାକର ଆପଦ ନ ପଡୁ
ବଳଭଦ୍ର ସେବାକର ଧନ ପୁତ୍ର ବଢୁ ।

ବଳଭଦ୍ର ସେବନରେ ସର୍ବବ୍ୟାଧି ନାଶ
ବଳଭଦ୍ର ସେବନରେ ବୃଦ୍ଧି କର ବଂଶ ।
ଅନନ୍ତ ଶେଷ ମୂର୍ତ୍ତି ହେ ଅଣାକାର ଗୋପ୍ୟ
ଆଉ ସର୍ବେ ଅଟନ୍ତି ଯେ ଅମୀୟ ସ୍ୱରୂପ ।
ଭୋ ଦେବ କାମପାଳ ହେ ରେବତୀରମଣ
ତୁମ୍ଭ ପାଦେ ରଖ ମୋତେ ପଶିଲି ଶରଣ ।
ଭୃତ୍ୟର ଯେ ଭୃତ୍ୟ ମୁହିଁ ଦାସର ଯେ ଦାସ
ମଧୁପ୍ରାୟେ ତୋର ପାଦପଦ୍ମେ ମୋର ଆଶ
ତୁମ୍ଭ ଆଜ୍ଞାପାଇ ଏହା କଲଇଁ ଲେଖନ
ବିପ୍ର ପୀତାମ୍ବରଙ୍କୁ ହେ ରଖ ଭଗବାନ ।



## ମୁର ଓ ଦାରୁଣ ଦୈତ୍ୟର ତପସ୍ୟା

ଏଥୁଅନ୍ତେ ଯେ ନାରଦ ଋଷି ମହାଜ୍ଞାତା
ବ୍ରାହ୍ମଣ କହିଲେ କହ ଦୈତ୍ୟଙ୍କର କଥା ।
ତପ କରିବେ ବୋଲି ସେ କପିଳାସେ ଗଲେ
ସଦାଶିବ ପୁରେ ଯାଇ ପ୍ରବେଶ ହୋଇଲେ ।
କେବଣ ସ୍ଥାନରେ ବସି ଆରମ୍ଭିଲେ ତପ
ଏ କଥା ବୁଝାଇ ମୋତେ କହିବା ସ୍ୱରୂପ ।
ବଦନ୍ତି ନାରଦ ମୁଖୁଁ ଶୁଣି ପିତାମହ
ଶୁଣ ଧୀରଚିତ୍ତେ ତାହା ମୁନି ମହାଶୟ ।
କୈଳାସପୁର ଉତ୍ତର ଦିଗଭାଗେ ଯାଇ
ପଶିଲେ ହରି ଉଦ୍ୟାନ ବନେ ବେନି ଭାଇ ।
ସେ ବନରେ ପଶି ତପ ଆରମ୍ଭିଲେ ଦୁହେଁ
ହରଙ୍କୁ ଧ୍ୟାନ କରନ୍ତି ବସି ଏକଲୟେ ।
କଷାବାସ କଉପୀନ କଟିତଟେ ଭିଡ଼ି
ବସିଲେ ଆସନ ଶୁଦ୍ଧି କରି ଜାନୁ ମାଡ଼ି ।
ଜଳ ତୁଳସୀର ଦଳ ଭକ୍ଷିଲେ ହରଷେ
ମୂଳକରି ପଞ୍ଚାକ୍ଷର ଭଜିଲେ ରାକ୍ଷସେ ।
ବାଲୁକା ଲିଙ୍ଗ ଆଣିଣ ପାରୁଶେ ସ୍ଥାପିଲେ
ତାଣ୍ଡବ ନୃତ୍ୟ ଯେ ଘଟ ଚାଞ୍ଚୁ ପୁଟେକଲେ ।
ଝିମି ଝିମି ଦ୍ରିମି ଦ୍ରିମି ଧାତିଙ୍କି ଧାତିଙ୍କି
ଏ ରୂପେ ବୁଲାନ୍ତି କର ପାଦେ କରି ଭଙ୍ଗୀ ।
ଘଣ୍ଟିକା ଆଗେ ଲଗାନ୍ତି ରସନାବୁ ନେଇ
ପବନ ଥକାନ୍ତି ବଳେ ନାସାରନ୍ଧ୍ର ଦୁଇ ।
କ୍ଷୁଧା ତୃଷା ନିଦ୍ରା କାମଲୋଭ ଦେଲେ ଛାଡ଼ି
ବୃଦ୍ଧ ଅଙ୍ଗୁଳିରେ ଉଭା ହେଲେ ଏକଗୋଡ଼ି ।
ଏ ରୂପେ ରହିଲେ ପଞ୍ଚଦଶ ବର୍ଷ ବୀରେ
ତେବେ ହେଁ ସେ ହରଚିହ୍ନ ନ ଦେଖିଲେ ଥରେ
ଲେଉଟି ସେ ବେନିଭାଇ ଆନ ତପ କଲେ
ଶିର କମଳ କାଟିଣ ଭୂମିରେ ପଡ଼ିଲେ ।
ତେବେ ସୁଦ୍ଧା ନ ଦେଖିଲେ ହର ବର୍ଣ୍ଣଭେଦ
ତପବଳେ ଶିରଯାଇ ଲାଗେ ତାଙ୍କ କନ୍ଧ ।
ଲେଉଟି ବେନି ଦୈତ୍ୟଙ୍କ ତପେ ମନ ଚଳି
ବାନ୍ଧିଲେ ବିଂଶ ଅଙ୍ଗୁଳି ଅଗ୍ରେ ଦୀପାବଳି ।
ତଇଳ ଢାଳି ତହିଁରେ ଦେଲେ ଅଗ୍ନିବତୀ
ଦିବ୍ୟ ଭୁବନ ପର୍ଯ୍ୟନ୍ତ ଲାଗିଲା ତପତି ।
ଏ ରୂପେ ଶତେ ବରଷ କଲେ ଘୋର ତପ
ବ୍ରହ୍ମର ପୟରେ ମନ ଥୋଇଣ କୁରୂପ ।
ତେବେ ହେଁ ନୋହିଲା ଦୈତ୍ୟଙ୍କର କିଛି ଯଶ
ପୃଥ୍ୱୀରେ ଧାରଣ କରି ପାରିଲେ କୁଳିଶ ।
ତହିଁରେ ରଜ୍ଜୁ ଲଗାଇ ଛନ୍ଦିଲେ ଚରଣ
ତଳେ ଅନଳ ଲଗାଇ ଦୋଳି କଲେ ପୁଣ ।
ମୁଖବାଟରେ ଗଳିଣ ପଡ଼ିଲା ରୁଧିର
ତେବେ ସୁଦ୍ଧା ଦେଖାନାହିଁ ନ ଦେଲେ ଈଶ୍ୱର
ପୁଣି ସେ ମୁର ଦାରୁଣ ପାଞ୍ଚିଲେ ମନରେ
ବୋଇଲେ ଏଡ଼େ ତପରେ ନ ଦେଖିଲୁ ଥରେ
ଏଥର ଆସ ଜୀବନ ଆମ୍ଭେ ଦେବା ଛାଡ଼ି
ଅଗ୍ନିରେ ସ୍ନାନ କରିବା ଦେହଯାଉ ପୋଡ଼ି ।
ଏତେ ବୋଲି ତାମ୍ର ଭାଣ୍ଡ ଆଣିଲେ ପାଶକୁ
ଦେଇଣ ତଳେ ଅନଳ ଆଉଟିଲେ ତାକୁ ।
ତହିଁରେ ପଶିଲେ ବୀରେ ଶିଶି ନାମ ବୋଲି
ପଡ଼ିଲେ ନିର୍ଜୀବ ହୋଇ ଅଙ୍ଗ ଗଲା ଜଳି ।
ପୋଡ଼ି ଯାଉଥାନ୍ତି ବୋଲୁଥାନ୍ତି ଶିବ ଶିବ
ଟଳଇ ଆସନ ଜାଣିଲେ ଯେ ମହାଦେବ ।
ରହି ନ ପାରି ସେ ସ୍ୱାମୀ ଶୀଘ୍ରେ ହେଲେ ସଜ
ଚଳିଲେକ ମହାଦେବ ଚଢ଼ି ବୃଷରାଜ ।
କଟିମେଖଳା ଅନନ୍ତ ନାଗ ଦେବ ପିନ୍ଧି
ଗିରିବର ନୂପୁରତୁ ପାଦଯୁଗେ ବାନ୍ଧି ।
ଶିରପରେ ଚୂଳରକ୍ତ ପିଙ୍ଗବର୍ଣ୍ଣ ଜଟା
କରେ ଆର୍ଦ୍ରାବଳି ଧନୁ କଟିରେ ଲାଙ୍ଗଟା ।
ଶୁକ୍ଳାମ୍ବର ଦେବ ଶୁଦ୍ଧ ସ୍ଫଟିକକୁ ଜିଣି
ହୃଦୟରେ ବିରାଜଇ ଇନ୍ଦ୍ର ନୀଳମଣି ।
ସିନ୍ଧୁ ଘୋଷ ପ୍ରାୟ କର୍ଣ୍ଣ ମହାବାତେ ଗର୍ଜି
ନବଲକ୍ଷ ଡମ୍ବରୁ ଯେ ଶୂନ୍ୟମାର୍ଗେ ଖଞ୍ଜି ।
ଲୋହିତ ପିଙ୍ଗଳ ଜାଣି କର୍କଶ ଲୋଚନ
ଚନ୍ଦ୍ର ବିରାଜିତ ମୌଳି ଦିଶେ ଶ୍ୱେତବର୍ଣ୍ଣ ।
କୋଳେ ଶୋହେ ହିମବନ୍ତ ନନ୍ଦିନୀ ଯେ ଉମା
କଟିତଟରେ ବରହୀ ମସ୍ତକେ ଚନ୍ଦ୍ରମା ।

ମଳୟ ପାଦୁକା ଘେନି ମଳୟ ବସୁଧା
ଶ୍ରୀ ଅଣାକାର ମୂରତି ମହା ଯୋଗସିଦ୍ଧା ।
ଭୋଳା ଲିଙ୍ଗ ନାଥ ସ୍ୱାମୀ ବୃଷଭ ବାହନେ
ନିଜରୂପ ଗୋଟି ଘେନି ବିଜୟ ଐଶାନ୍ୟେ
ଚଞ୍ଚୁ ପୁଟ ଚାଞ୍ଚପୁଟ ଡିମି ଡିମି ଶବ୍ଦ
ଆତଙ୍ଗ ଆତଙ୍ଗ ନାଦେ ବାଜେ ସିଂହନାଦ ।
ଦୁଦୁପୁ ଦୁଦୁପୁ ହୋଇ ବାଜଇ ଡମ୍ବରୁ
ଝଲକି ଝଲକି ଝଲକି ଶବ୍ଦ ଶୁଭେ ବାଜିବାରୁ
ଖୁନ୍ଦି ଖୁନ୍ଦି କିଙ୍କିଣୀ ଯେ କରେ ସିଂହନାଦ
ଡିମି ଡିମି ଡିମି ଡିମି ଗର୍ଜେ ଚାଙ୍ଗୁବାଦ୍ୟ ।
କିଳି କିଳି କୋଳାହଳ ବାଜଇ କୁଣ୍ଡଳ
ଝାଇଁ ଝାଇଁ ଝାଇଁ ଶବ୍ଦେ ବାଜେ କରତାଳ ।
ଏମନ୍ତ ବେଶରେ ଶିବ ପର ଦୁଃଖେ ଦୁଃଖୀ
ଆତଙ୍ଗ ନାଶନ ସ୍ୱାମୀ ଦଇତ୍ୟଙ୍କୁ ଦେଖି ।
ଧବଳାଙ୍ଗ ସ୍ୱରୂପ ଯେ ଭୟକାଳ ବାଞ୍ଛା
ପୃଥ୍ୱୀ ଚିନ୍ତାମଣି ନାଥ ଦିଗମ୍ବର ସଚ୍ଚା ।
ମଞ୍ଚେ ଚରଣ ଲାଗଇ ଆକାଶେ ମଉଳି
ଚନ୍ଦ୍ରଶେଖର ବାନା ସେ ଅଭୟ କପାଳୀ ।
ଜନ ଆରତକୁ ସାହା ଦୁଃଖୀ ଦୁଃଖ ଦେଖି
ସର୍ବ ପରିପୂର୍ଣ୍ଣ ନାଥ ସର୍ବ ଜନ ସୁଖୀ ।
ଶ୍ରୀସଦାଶିବ ଚରଣେ ନିତ୍ୟ ମୋର ସେବା
ବିପ୍ର ପୀତାମ୍ବରକୁ ଯେ ମୁକ୍ତି ଗତି ଦେବା ।
ଏମନ୍ତ ରୂପେ ମିଳିଲେ ସ୍ୱାମୀ ସଦାଶିବ
ଦେଖିଲେ ମୁର ଦାରୁଣ ଶରୀର ନିର୍ଜୀବ ।
ତାମ୍ରକୁଣ୍ଡ ପାଶେ ଯାଇ ମିଳିଲେ କପାଳୀ
ଦେଖିଲେ ଭସ୍ମ ହୋଇଣ ଯାଇଛନ୍ତି ଜଳି ।
ସେ ଭସ୍ମଯାକ ପିତୁଳା କଲେ ବ୍ୟୋମକେଶ
ପାଣି ମନ୍ତ୍ରି ସିଞ୍ଚଣ ସେ ଦେଲେ ଜୀବନ୍ୟାସ ।
ସଚେତ ହୋଇ ପୁଚ୍ଛିଲେ ଦୁହେଁ ପୁଣି ବସି
ବୋଇଲେ ଏଡ଼େକ ତପ ଭାଙ୍ଗିଲକ ଆସି ।
ହର ବୋଇଲେ କାହାର ଜପ ତୁମ୍ଭେ କର
ଦୈତ୍ୟ ବୋଇଲେ ଆମ୍ଭର ଦେବତା ଶଙ୍କର
ତାହାଙ୍କ ବିନା ଆମ୍ଭେ ନ ଜାଣୁ କିଛି ଆନ
ମାରୁ ତାରୁ ଠାକୁର ଯେ ସେହି ତ୍ରିଲୋଚନ ।
ଈଶ୍ୱର ବୋଇଲେ ଜାଣ ଆମ୍ଭେ ସେହି ଏକା
ଦୈତ୍ୟ ବୋଇଲେ ସ୍ୱରୂପ ଆମ୍ଭଙ୍କୁ ତ ଦେଖା
ଏହା ଶୁଣି ଭୋଳାନାଥ ଦେଖାଇଲେ କାୟ
ଶୁକଳ ସ୍ଫଟିକ ବର୍ଣ୍ଣ ଫୁଟି ଦିଶେ ଦେହ ।
ଶଙ୍ଖ ଶ୍ୱେତ ଗୋକ୍ଷୀର ଧବଳ ଚମ୍ପାବର୍ଣ୍ଣ
ବିରାଜଇ ଶ୍ରୀହସ୍ତେ ଅକ୍ଷୟ ବେନି ତୂଣ ।

ପଞ୍ଚବେଦ ଅଧ୍ୟୟନ କରି ପଞ୍ଚମୁଖେ
ପଞ୍ଚମାଳ ଆଭରଣ ହୋଇ କଣ୍ଠଯାକେ ।
ବିଭୂତି ଭୂଷଣ ହୋଇ ମିଳିଲେ କପାଳୀ
ଦେଖି ମୁର ଦାରୁଣ ଯେ ଶୁତି ଗଡ଼ଘାଲି ।
ହର ବୋଇଲେରେ ତେବେ ବରମାଗ ବାବା
ଯାହା ଆଜି ମାଗିବଟି ସେହି ବର ଦେବା ।
ଅସୁର ବୋଇଲେ ସ୍ୱାମୀ ଶୁଣିବା ହେ ଦେବ
ଅମର ହୋଇବୁ ଜିଣି ଆମ୍ଭେ ସର୍ବଦେବ ।
ବାସବ ଆଦିକରି ଯେ ଦଶଦିଗପାଳେ
ସମସ୍ତେ ଖଟିବେ ଆସି ଆମ୍ଭ ପାଦତଳେ ।
ପ୍ରଥମେ ସ୍ୱର୍ଗରେ ଯାଇ ହେବୁ ଆମ୍ଭେ ରାଜା
ନବଦ୍ୱୀପେ ଲାଗିବ ଯେ ଆମ୍ଭର ତରିଯା ।
ତିନିପୁର ଲୋକଯାକ ହେବେ ବଶବର୍ତ୍ତୀ
ସମରେ ନ ଜିଣିବେଟି ଚାରିଖାନି ଜାତି ।
ଚନ୍ଦ୍ର ସୂର୍ଯ୍ୟଙ୍କର ହାତେ କେବେ ନ ମରିବୁ
ଖଡ଼୍ଗେ ନ ଛିଡ଼ିବୁ ଅଗ୍ନି ମଧ୍ୟେ ନ ପୋଡ଼ିବୁ
ଜଳେ ନ ବୁଡ଼ିବୁ ବାତଘାତେ ନ ଉଡ଼ିବୁ
ବ୍ରହ୍ମା ବିଷ୍ଣୁ ହର ହସ୍ତେ କେଭେ ନ ମରିବୁ ।
ଅକ୍ଷୟ ପାଶୁପତ ଯେ ମେଘ ଜଳଫାଶୀ
ଆର୍ଦ୍ରାବଳ ନାରାୟଣ ଶିବଚକ୍ର ମିଶି ।
ବ୍ରହ୍ମଶକ୍ତି ରୁଦ୍ରଶକ୍ତି ବଜ୍ରଶକ୍ତି ଆଦି
ଅଜଗର କୋଦଣ୍ଡ ଯେ ବଜ୍ରଗିରି ଭେଦି ।
ବାବଲ ଅଗ୍ନିଶର ଯେ ଅଧାଚନ୍ଦ୍ର ନଳ
କୁବେରର ସୂର୍ଯ୍ୟାବର୍ତ୍ତ ରୁଦ୍ରଙ୍କ ତ୍ରିଶୂଳ ।
କାଳପାଶ ନାଗପାଶ ପବନ ବୈଷ୍ଣବୀ
ତ୍ରିଭଳା ନଇର୍ଋତ ଯେ ବରୁଣ ବୈଷ୍ଣବୀ ।
ଏ ଚକ୍ରମାନ ଆମ୍ଭର ଅଙ୍ଗେ ନ ଭେଦିବ
ପାଶୁ ସାବେଲୀ ଭୁଷଣ୍ଡୀ ପାଶ ନ କାଟିବ ।
ଯାହା ମନେ ପାଞ୍ଚିବୁ ହେବ ସେ ଆମ୍ଭର
ଜିଣିବୁ ବିଜୟ ରଥେ ବସି ତିନିପୁର ।
ରହିବୁ ବ୍ରହ୍ମ ପ୍ରଳୟଯାଏ ଦେହ ଧରି
ଏହି ବର ଆମ୍ଭଙ୍କୁ ହେ ଦିଅ ତ୍ରିପୁରାରି ।
ଶୁଣି କରି ଅସ୍ତୁ ଅସ୍ତୁ କଲେ ଶୂଳପାଣି
ବରଦେଇ କହିଲେକ ମୃତ୍ୟୁଭେଦ ବାଣୀ ।
ବୋଇଲେରେ ବାବୁ ତୁମ୍ଭେ ଶୁଣ ଆମ୍ଭ ତହୁଁ
ମଞ୍ଚରେ ଜନ୍ମି ଅବଶ୍ୟ ଜୀଇନାହିଁ କେହୁ ।
ତେଣୁ କହିବା ତୁମ୍ଭର ଜାଣ ମୃତ୍ୟୁଭେଦ
ବିଷ୍ଣୁଙ୍କର ତୁଲେ ଏକା ନ କରିବ ବାଦ ।
ଅଟଇ ଅଶେଷ ଚିନ୍ତାମଣି ବାସୁଦେବେ
ଦୁଷ୍ଟର ଗାରିମା ସେହି ନ ସହନ୍ତି କେବେ ।

ତାହାଙ୍କର ତୁଲେ ଯେବେ ଲଗାଇବ କଳି
ଲାଗିଲେ ଅବଶ୍ୟ ମାରିବେଟି ବନମାଳୀ ।
ଯେଉଁରୂପେ ସେ ମାରିବେ କହିବା ତା ଶୁଣ
ମଦ୍ରଦେଶେ ଅବତାର ହେବେ ନାରାୟଣ ।
କୃଷ୍ଣବଲ୍ଲଭ ରାଜାର ବୀର୍ଯ୍ୟେ ହେବେ ଜାତ
ଶ୍ରୀନୃସିଂହ ଶେଷ ନାମ ବହିବେ ଅଚ୍ୟୁତ ।
ତାଙ୍କତୁଲେ ତୁମ୍ଭେ ଯେବେ ଲଗାଇବ ବାଦ
ଅବଶ୍ୟ ମରିବ ଯେବେ ଲାଗେ ତାଙ୍କ ପାଦ ।
ତଥାପି ବେନି ପାଦରେ ନାହିଁ ମୃତ୍ୟୁ ତୋର
ସହସ୍ର ପଦାଘାତରେ ମରିବୁ ତୁ ବୀର ।
ନୋହିଲେ ଆନରୂପେ ନ ମରୁ କଦାଚିତେ
କହିବା ଦାରୁଣ ମୃତ୍ୟୁଭେଦ ଶୁଣ ତୋତେ ।
ଶେଷ ସପ୍ତଫଣା ଧରିଥିଲେ ଯେତେବେଳେ
ତେବେ ସେହି ଦାରୁଣକୁ ମାରିବେ ସେକାଳେ
ନୋହିଲେ ଆନରୂପେ ନ ମର ତୁମ୍ଭେ ଜାଣ
ଏତେକହି ଚଳିଗଲେ ପାର୍ବତୀ ରମଣ ।
କପିଳାସ ପୁରେ ଯାଇଁ ହୋଇଲେ ପ୍ରବେଶ
ଶ୍ରୀ ମହାଦେବ ଶରଣ ପୀତାମ୍ବର ଦାଶ ।

❑❑❑

## ଭୂମିକମ୍ପର କାରଣ

ବିଧାତା କହନ୍ତି ଶୁଣ ବାବୁ ହେ ନାରଦ
ଏହିରୂପେ ବରଦେଇ ଗଲେ ସଦାନନ୍ଦ ।
ଦୈତ୍ୟବର ପାଆନ୍ତେ ତା ଜାଣି ବସୁମତୀ
ମହାକଷ୍ଟ ହେଲା ବୋଲି ଶରୀର କମ୍ପାନ୍ତି ।
ବସୁଧା ବୋଇଲେ ଆଉ ନ ପାରେ ମୁଁ ସହି
ଏଡ଼େ ବଡ ବର ତାଙ୍କୁ ଦେଲ ଉମାସାଇଁ ।
ମରନ୍ତୁ ପ୍ରାଣୀଏ ଯିବି ପାତାଳେ ମୁଁ ପଶି
ଏତେ ବୋଲି ତଳକୁ ଯେ ଗଲେ ପୃଥ୍ୱୀ ଖସି ।
ବିଶାଶଏ ଅଙ୍ଗୁଳ ଯେ ପଶିଯାନ୍ତେ କ୍ଷିତି
ଶୁଣ ହେ ବାବୁ ନାରଦ ବିଧାତା କହନ୍ତି ।
ପୃଥ୍ୱୀଦେବୀ ଖସନ୍ତେ ସେ ମହୀ ପଡ଼େ ଟଳି
ମହୀ ଟଳିଲେ ପଡ଼ିବେ ସର୍ବ ପ୍ରାଣୀ ଢଳି ।
ସ୍ଥାବର ଜଙ୍ଗମ ମେରୁ ଆଦି କୀଟଯାଏ
ଠାବେ ଠାବେ ଚଳନ୍ତେ ତା ଜାଣିଲେ ସଭିଏଁ
ବସୁଧାକୁ ଖସିବାର ଜାଣି ଦେବଗଣେ
ସ୍ୱର୍ଗପୁରେ ଥାଇ ସ୍ତୁତିକଲେ ଜଣେ ଜଣେ ।
ବୋଲନ୍ତି ପୃଥିବୀ ମାଗୋ ଆମ୍ଭ ବାକ୍ୟ ଘେନ
କିଛିଦିନେ ସମାପତ ହେବ ଯାତୁଧାନ ।
ତୁହି ଆଦି ଦିନାକେତେ ଥାଅ ଦୁଃଖ ସହି
ଏଦୈତ୍ୟ ମଲେ କର୍ଦ୍ଦମ ହୋଇବ ତୋ ଦେହୀ
ସେ ରକ୍ତ ପଡ଼ି ହୋଇବ ତନୁ ତୋର ପୁଷ୍ଟ
ଏକଥା ବିଚାରି ମାଗୋ ସହୁଥାଅ କଷ୍ଟ ।
ନ ସହିଣ ଯେବେ ରସାତଳେ ଯିବୁ ତୁହି
ସଂସାରରେ ଜୀବଜନ୍ତୁ ନ ବର୍ତ୍ତିବେ କେହି ।
ଏମନ୍ତ ସ୍ତୁତି କଲେକ ଯହୁଁ ଦେବକୁଳ
ପୃଥ୍ୱୀ ଖସିଥିଲେ ବିଶାଶତେକ ଅଙ୍ଗୁଳ ।
ଦେବଙ୍କ ବାକ୍ୟରେ ପୃଥ୍ୱୀ ମନେକରି ପାଞ୍ଚ
ଲେଉଟି ହେଲେ ବିଶାଶେ ଅଙ୍ଗୁଳି ଯେ ଉଚ୍ଚ
ତଳ ଉପର ଟେକନ୍ତି ପୃଥ୍ୱୀଦେବୀ ହେଲେ
ତାହା ଭୂମିକମ୍ପ କରି ପୁରାଣେ ଲେଖିଲେ ।
ଏହା ଶୁଣିଣ ନାରଦ ବ୍ରହ୍ମାଙ୍କୁ ଯେ ପୁଚ୍ଛି
ବୋଇଲେକ ଭୂମିକମ୍ପେ କେଉଁଦୋଷ ଅଛି ।
ଏ କଥା ବୁଝାଇ ମୋତେ କହ ପିତାମହ
ତବ ମୁଖରୁ ଶୁଣିଲେ ଫିଟିବ ସନ୍ଦେହ ।
କହନ୍ତି ନାରଦ ବାକ୍ୟ ଶୁଣି ବେଦବର
ଶୁଣ ହେ ନାରଦ ଯେତେ ପୃଥ୍ୱୀକି ଅସାର ।
ସେ କଥା ଯାକ ବତାଇ କହିଥିବା ତୋତେ
ଅଦଭୁତେ ଅଗ୍ନି ଯେବେ ଜଳଇ ଜଗତେ ।
ଏକଥାଟି ବଡ଼ ଦୋଷ ସଂସାରେ ଟି ଜାଣ
ଆବର କହିବା ଦୋଷମାନ ମଧ ଶୁଣ ।
ଅଦ୍ଭୁତରେ ଯେଉଁ ରବ ଶୁଭଇ ଧରଣୀ
ଏକଥା ସଂସାରକୁ ଯେ ଦୋଷ ବୋଲି ଜାଣି
ରବି ଶଶୀ ଉଦେହେଲେ ଗଗନର ଶିଖେ
ତ୍ରିକୋଣେମଣ୍ଡଳ ଯେହ୍ନେ ଦିଶେ ଚାରିପାଖେ
ସେ କଥା ତ ସଂସାରକୁ ବଡ଼ଇ ପ୍ରମାଦ
ଆବର ଦୋଷକୁ ଶୁଣ କହିବା ନାରଦ ।
ନିର୍ଘାତ ଶବଦ ଯେବେ ଶୁଭିବ ମଞ୍ଚକୁ
ଏ କଥାଟି ବଡ଼ ଦୋଷ ହୁଏ ସଂସାରକୁ ।
ଆବର ଯେ କଥାମାନ ଶୁଣିବା ନାରଦ
ଯେତେବେଳେ ପୃଥ୍ୱୀ କମ୍ପି କରଇ ଶବଦ ।
ସମସ୍ତେ ହୁଅନ୍ତି ସବୁଠାରେ ଥରହର
ଏକଥା ତ ବଡ଼ ଦୋଷ ଅଟେ ପ୍ରାଣୀଙ୍କର ।
ଆବର ସିଦ୍ଧାନ୍ତେ ଦୋଷ କଥା ଅଛି କହି
ନିଶାକାଳେ ଇନ୍ଦ୍ରଧନୁ ଉଦେଯେବେ ହୋଇ ।
ଏ କଥା ମଧ ଦୋଷେ ହେ ଅଟଇ ନାରଦ
ପାଂଶୁପାଷାଣ ବୃଷ୍ଟି ଯେ କଲେ ବଡ଼ ବାଧ ।
ନଦୀର ଜଳ ବହିବ ଯେବେ କ୍ଷୀର ପ୍ରାୟେ
ଏ କଥାଟି ବଡ଼ ଦୋଷ ସଂସାରକୁ ହୁଏ ।
ରୁଧିର ପ୍ରାୟେ ଦିଶିବ ଯେବେ ଦଧି ଦୁଗ୍ଧ
ଏ କଥାଟି ସଂସାରକୁ ଅଟେ ବଡ଼ ବାଧ ।

ଲାଙ୍ଗୁଡ଼ା ତାରା ପଡ଼ିବ ଯେବେ ନିଶାକାଳେ
ଏ କଥାଟି ବଡ଼ ଦୋଷ ଅଟେ ଭୂମଣ୍ଡଳେ ।
ଦିବସରେ ଅର୍ଦ୍ଧେ ଯେବେ ଦିଶନ୍ତି ନକ୍ଷତ୍ରେ
ଏ କଥାଟି ବଡ଼ ଦୋଷ ହୁଅଇ ଜଗତେ ।
ଦେଶେ ଦେଶେ ଦୁର୍ଭିକ୍ଷ ଯେ ପଡ଼ଇ ଅବଶ୍ୟ
ନୋହିଲେ ଭୋଗନ୍ତି ପ୍ରାଣୀ ବହୁରୋଗ କ୍ଳେଶ
ନୋହିଲେ ଅବା କାନ୍ତାର ରାଜ୍ୟେରାଜ୍ୟେ ପଡ଼ି
ମରନ୍ତି ଜୀବ ଜନ୍ତୁଏ ଠାବେ ଠାବେ ଗଡ଼ି ।
ଚକ୍ରବର୍ତ୍ତୀ ରାଜା ଅବା ଲଭଇ ମରଣ
ଗୋଟି ଗୋଟି କରି ଏଡ଼େ ଦୋଷ ହୁଏ ଜାଣ
ଯେବେଟି ସଂସାରେ ଦୁଷ୍ଟଲୋକ ଜାତହୋଇ
ତାହାର ଭାରା ପୃଥିବୀ ନ ପାରଇ ସହି ।
ବହି ନ ପାରିଣ ଭୂମି କମ୍ପେ ଠାବେ ଠାବେ
ଏହି ସକାଶୁଁ ଦୁର୍ଜ୍ଜନ ମରଣଟି ଲଭେ ।
ଚକ୍ରବର୍ତ୍ତୀ ମଲାବୋଲି କହିଲି ଯା'ତୋତେ
ସେ ମୂରତି ଚକ୍ରବର୍ତ୍ତୀ ହୋଇଛି ଜଗତେ ।
ଏ ଘେନି ମୁର ଅସୁର ଅକ୍ରେ ଯିବ ନାଶ
ଶୁଣ ବାବୁ ହେ ନାରଦ କହନ୍ତି ଲୋକେଶ ।
ଭୂମିକମ୍ପନ ଦିନଟି ଉପବାସେ ରହି
ଶିବ ବିଷ୍ଣୁ ଆଳେ ହରି ଭଜିବେଟି ଯାଇଁ ।
ଶ୍ରୀହରି ଭଜନେ ରୋଗ ନ ପଡ଼ଇ କିଛି
ବ୍ରାହ୍ମଣେ କରିବ ଦାନ ଧ୍ୟାନ ମନ ମୂର୍ଚ୍ଛି ।
ଦେବଆଳମାନଙ୍କରେ ଦେବ ପଣାପାଣି
ନୋହିଲେ ପୂଜିବ ସାଧୁ ବିପ୍ର ଗୃହେ ଆଣି ।
ଭୋକୀ ଶୋଷୀ ଭିକ୍ଷାଶୀଙ୍କି ଦେବ ଅନ୍ନଦାନ
ଦେଖିବ ଦେହ ସମାନ କରି ସର୍ବଜନ ।
ଭଜନ କରିବ ମୁଖେ ପଦେ ରାମହରି
ତେବେ ତାହା ଅଙ୍ଗୁ ରୋଗ ପଳାଇବ ଡରି
ନବଗ୍ରହମାନେ ପୀଡ଼ା କରି ନ ପାରନ୍ତି
ଜ କାଣିବା ଲୋକେ ଅବା ଏ କଥା କରନ୍ତି ।
ବୁଝିବ ଯେ ଭୂମିକମ୍ପ ଦିନ ଚନ୍ଦ୍ରବଳ
ରାଶି ଉଣା ହେଲେ ଦାନ କରିବ କେବଳ ।
ନୋହିଲେ ବରଷଯାଏ ଲାଗଇଟି ଦୋଷ
ଏ କଥାଟି ହେଜି ଜାଣି ନ ପାରେ ମନୁଷ୍ୟ ।
ଏ କଥା ନୃପତିଗଣେ ବୁଝିବ ବିଧାନ
ବ୍ରାହ୍ମଣ ବରଣ କରି ଦେବ ଦାନପୁଣ୍ୟ ।
ଚଣ୍ଡୀ ଅପରାଜିତା ଯେ ଶୁଣାଇବେ ସ୍ତୋତ୍ର
ସହସ୍ର ନାମ ଗୁଣିବେ କରି ଅଗ୍ନି ହୋତ୍ର ।
ସଂସାରର ଲୋକେ ଦେବେ ଶକ୍ୟ ଅନୁସାରେ
ତେବେଟି ସେ ଭୂମିକମ୍ପ ଦୋଷ ହୋଇପାରେ
ଏ କଥାହିଁ ଶ୍ରୀନୃସିଂହ ପୁରାଣରେ ଲେଖେ
ଶୁଣ ବାବୁରେ ନାରଦ କହୁଛି ସମକ୍ଷେ ।



## ମୁରଦାରୁଣଙ୍କ ଦିଗ୍ ବିଜୟ

ମୁରାସୁର କଥା ଏବେ କହିବା ଯେ ତୋତେ
ଦୈତ୍ୟଙ୍କୁ ବର ଦେଇଣ ଗଲେ ଉମାକାନ୍ତେ ।
ତହିଁ ଉତ୍ତାରୁ ଅସୁର ମନରେ ବିଚାରି
ବୋଇଲେ ଆମ୍ଭଙ୍କୁ ଏବେ ହୋଇବ କେ ସରି
ଏକା ବିଷ୍ଣୁର ହସ୍ତରେ ଆମ୍ଭ ମୃତ୍ୟୁ ସିନା
ତଥାପି ସେହି ବିଷ୍ଣୁର ନାହିଁ ଜନ୍ମ ଜଣା ।
ମାରିବ ସିନା ସେ କେଉଁଦିନ ଜନ୍ମି କେବେ
ବ୍ରହ୍ମାଣ୍ଡ ବୁଲିବା ଆଗ ଆସ ଯାଇ ଆମ୍ଭେ ।
ଅଛି ତ ବିଷ୍ଣୁର ଜନ୍ମ କେବେ ଯାଇ ହେବ
ଆମ୍ଭେ ତା ସଙ୍ଗେ ଲାଗିଲେ ସେ ଅବା ମାରିବ
ଅଟଇ ଅପାର କାଳ କଥା ସିନା କେବେ
ଆସ ଆମ୍ଭେ କରିବାକ ଦିଗ୍‌ବିଜୟ ଏବେ ।
ବିଧିରେ ଆମ୍ଭର ଏବେ ନାହିଁ ରାଜ୍ୟଘୋଷ
ପୃଥୀ ବୁଲିଲେ ଜିଣିବା ସିନା ସବୁ ଦେଶ ।
ଏତେକ ବିଚାରି ମୁର ଦାରୁଣ ଯେ ଦୁଇ
ଅନୁକୂଳ କଲେ ସେ ଉତ୍ତରମୁଖ ହୋଇ ।
ଈଶ୍ୱର କହିବା ମନ୍ତ୍ର ସୁମରିଣ ମନେ
ପ୍ରବେଶହେଲେ ଶାଲ୍ମଳୀ ନାମେ ଏକବନେ
ସେ ବନେ ଅଛି ସୁବିଜ୍ଞ ନାମେ ଏକ ମନ୍ତ୍ରୀ
ତାହାକୁ ଦେଖିଣ ମୁର ଆଣିଲାକ ଯନ୍ତ୍ରି ।
ପଚାରିଲା କି ତୋହର ଅଟେ ନାମ ଗୋତ୍ର
ବୋଲାଉ କେବଣ ବଂଶ ଅଟୁ କାର ପୁତ୍ର ।
ସୁବିଜ୍ଞ ବୋଲଇ ତୁହି ଜାଣିବୁ କେମନ୍ତ
କଶ୍ୟପ ମୋହର ତାତ ଅଦିତି ମୋ ମାତ ।
ସୁବିଜ୍ଞ ମୋହର ନାମ ଅଟେ ମନ୍ତ୍ରୀ ଏଣେ
ତୁ କିମ୍ପା ଧରି ନେଉଛୁ ମୋତେ ଅକାରଣେ ।
ମୁର ବୋଇଲା ଅଟଇ ମୁହିଁ ରାଜା କ୍ଷତ୍ରୀ
ମୋର ସଙ୍ଗେ ଥିଲେ ହେବୁ କାଳେ ତୁହି ମନ୍ତ୍ରୀ
ଏତେକହି ଶାଢ଼ୀ ନେଇ ଦେଲା ମୁଣ୍ଡେ ତାର
ସେଠାବରୁ ସେ ସୁବିଜ୍ଞ ହେଲା ମନ୍ତ୍ରୀବର ।
ମନ୍ତ୍ରୀହୋଇ ମୁରକୁ ସେ କହେ କାର୍ଯ୍ୟାକାର୍ଯ୍ୟ
ବୋଇଲା ଜୟ କରିବା ଆସ ଏବେ ରାଜ୍ୟ ।
ପ୍ରଥମେ ପାରିବା ଯେବେ ଜମ୍ବୁଦ୍ୱୀପ ଜଣି
ତେବେ ସିନା ସଂସାରରେ ହୋଇବା କାରେଣି
ଆବର କେ ମାତୃ ଭାଇ କହିଛନ୍ତି ମୋର
ତାକୁ ଜିଣି ଆଣିଲେ ତୁ ହେବୁ ରାଜେଶ୍ୱର ।

କଟକ ସୁଖରେ ରଚି ଅଚିନ୍ତେ ରହିବୁ
ତିନିପୁରେ ରାଜା ହୋଇ ପରଜା ପାଳିବୁ ।
ମୁର ବୋଇଲା ଏହୁତ ଉତ୍ତମ ବିଚାର
ସୈନ୍ୟ ନ ଥାଇ ସତେ କି ହେବୁ ରାଜେଶ୍ୱର
ସୈନ୍ୟମାନେ ଥିଲେ ସିନା ରାଜା ଶୋଭାପାଇ
ଏତେ ପାଞ୍ଚ ମନ୍ତ୍ରୀ ଘେନିଗଲେ ବେନିଭାଇ ।
ପ୍ରଥମ ଦିନରେ କ୍ଷେପିଗଲେ ଶତେଯୁଣ
ମନ୍ଦର ପର୍ବତେ ବସି ସାରି ଜଳସ୍ନାନ ।
ଦିବାରାତ୍ରି ନ ବିଚାରି ଗଲେ ପୁଣି ଚଳି
ଦେଶ ବିଦେଶ ଅରଣ୍ୟ ଗିରି ତୀର୍ଥେ ମିଳି ।
ଜାହ୍ନବୀ ତୀରେ ରହିଣ ଗଲେ ବାରାଣସୀ
ସେହିଦିନ ରହି ତହିଁ ପୁହାଇଲେ ନିଶି ।
ସୌରାଷ୍ଟ୍ର ହୋଇ ସେଠାରୁ ଉଡ୍‌ରାଷ୍ଟ୍ର ଗଲେ
ନେପାଳ ଦେଶରେ ପଶି ବଙ୍ଗରେ ମିଳିଲେ ।
କାଞ୍ଚନ ଯେ ମରହଟ୍ଟା ଗଲେ କନାଉଜ
ଶୁଣ ହେ ନାରଦ କହିଛନ୍ତି କମଳଜ ।
ତୈଲଙ୍ଗ ଭୋଟ ତିହୁଡ଼ି ଦେଶେ ଗଲେ ମିଶି
ଗୌଡ଼ କଳିଙ୍ଗ ଦେଶରେ ପ୍ରବେଶିଲେ ଆସି
ବିରୋଜା ହୋଇ ଏରକାପୁରେ ଯାଇ ମିଳି
ପୂର୍ବରେ ସିନ୍ଧୁକୁ ଦେଖି ପଶ୍ଚିମେ ଯେ ଚଳି ।
ଏକମୁଖ ହୋଇଗଲେ ସେ ହସ୍ତିନା ଦେଶ
କୁରୁକ୍ଷେତ୍ରେ ରହିଲେ ସେ ଦଶଟି ଦିବସ ।
ସେ ବନେ ଛନ୍ତି ସମସ୍ତେ ଯୋଗିନୀ ଯେତେକ
ତାହାଙ୍କୁ ଚାହିଁ ମୁରକୁ ଲାଗିଲା କୌତୁକ ।
ପଚାରେ ତୁମ୍ଭେ ଲୋ ଏଥି କି କାରଣେ ଅଛ
ଏତେ ନିର୍ଜନ ସ୍ଥାନରେ ବି ହେତୁରେ ନାଚ ।
ସେହୁ ବୋଇଲେ ଭୋସ୍ୱାମୀ ଶୁଣ ଦୈତ୍ୟପତି
ଦ୍ୱାପର ଯୁଗେ ଭାରତ ହୋଇବ ଯେ ଏଥି ।
ତହିଁରେ ଯେତେ ପଡ଼ିବେ ଆସି ରଣମଧ୍ୟେ
ସେ ଲହୁ ମାଂସ ଭୁଞ୍ଜିବୁ ତାହାଙ୍କର ଆଦ୍ୟେ ।
ଏ ନିମନ୍ତେ ଆମ୍ଭେ ଅଛୁ ସ୍ୱାମୀ ଏଥେ ରହି
ସତ୍ୟ ତ୍ରେତୟା ଦ୍ୱାପର ଅନ୍ତେ ଏହା ହୋଇ ।
ଶୁଣିଣ ମୁରାସୁର ଯେ ଆଚମ୍ବିତ ହେଲା
ଥାଅ ଲୋ ଯୋଗିନୀ ବୋଲି ସେଠାରୁ ଚଳିଲା
ହସ୍ତିନାରୁ ବାହାରିଣ ଗଲେ ଗଙ୍ଗା ଡେଇଁ
ଚଳିଲେ ପୂର୍ବକୁ ଅଇଶାନ୍ୟ ମୁଖ ହୋଇ ।
ଯହିଁରୁ ଆସନ୍ତି ଉଦେ ହୋଇ ଅର୍କଶଶୀ
ସେଠାକୁ ବୋଲି ଦାରୁଣ ମୁର ଗଲେ ପଶି ।
ଅଖଣ୍ଡ ସ୍ଥାନ ଦେଖିଣ ବାହୁଡ଼ିଲେ ତହୁଁ
ବାୟବ୍ୟ କୋଣକୁ ରଥ ନେଲେ କହୁଁ କହୁଁ ।

ଅଯୋଧ୍ୟା ଦେଶରେ ଯେଉଁ ତପୋବନ ଭୂମି
ତହିଁକୁ ମୁର ଦାରୁଣ ଶୀଘ୍ର ଗଲେ ଗମି ।
ପଚିଶ ଯୋଜନ ଭୂମିଯାକ ସେହୁ କଳି
ତିନିଦିନ ରହି ପୁଣି ଗଲେ ତହୁଁ ଚଳି ।
ବାଟରେ ଯାଇ ମନ୍ତ୍ରୀକୁ ପୁଚ୍ଛଇ ଯେ ମୁର
ଆହେ ସୁବିଜ୍ଞ ଏଣିକି ଯିବା କେତେଦୂର ।
ଏବେ ତ କଲଇଁ ପୃଥ୍ୱୀଯାକ ପରିକ୍ରମା
ଆବର କାହିଁକି ଯିବା ଦେଖା ମୋତେ ସୀମା
ମନ୍ତ୍ରୀ ବୋଇଲା ଭୋ ଦେବ ଦକ୍ଷିଣକୁ ଚାଲ
ତୋହର ସମାନ ଲୋକେ ଛନ୍ତି ତହିଁ ଭଲ ।
ଆପଣାର ଜାତିକୁଳ ଦକ୍ଷିଣେ ଅଛନ୍ତି
ଦେଖିଲେ ତୋର ହୋଇବ ତହିଁ ସେନାପତି
ମୁର ବୋଇଲା ଲୋଡ଼ଇ ମୁଁ ତ ଏହାନିତ୍ୟେ
ଆଜିଯାଏ କାହିଁକି ନ କହିଲୁ ତୁ ମୋତେ ।
ଏତେ କହି ରଥ ଟେକିନେଲା ଦକ୍ଷିଣକୁ
ସିନ୍ଧୁପାର ହୋଇଗଲା ଲଙ୍କା ଭୁବନକୁ ।
ଲଙ୍କାପୁରେ ଥିଲା ରାଜା ବିଶ୍ୱଶ୍ରବା ବୋଲି
ତାହାଙ୍କୁ ଜିଣି ଦାରୁଣ ମୁର ଗଲେ ପେଲି ।
ବିଲଙ୍କା ନାମକ ପୁରେ ମିଳିଲେ ସେ ଯାଇଁ
ବୃକାସୁର ବୋଲି ତହୁଁ ରାଜାଏ ଅଛଇ ।
ସେ ରାଜା ନବରେ ଯାଇ ମିଳେ ମୁରାସୁର
ବୃକା ବୋଇଲା କାହିଁର ଅଟୁ ତୁହି ବୀର ।
କିମ୍ପାଇଁ ତୁ ଅକାରଣେ ପଶିଲୁ ମୋ ପୁରେ
ଶତ୍ରୁ ହୋଇ ଆସିଲେ ତ ଅବଶ୍ୟ ସେ ମରେ
ମାରିବ ବୋଲି ଅଇଲେ ମରଇ ସେ ଏଥି
ଏହା ଶୁଣି ହସିଲା ସେ ମୁରଦୈତ୍ୟ ମନ୍ତ୍ରୀ ।
ସୁବିଜ୍ଞ ବୋଲେ କହିଲ ତୁମ୍ଭେ ଯେତେକରି
ବୁଝିଲେ ମୁରକୁ ତୁମ୍ଭେ କେହି ନୁହ ସରି ।
ଜଗତ ଦହିବାକୁ ସେ ହୋଇଅଛି ଜାତ
ତୁ କିସ ଜିଣିବୁ ଏହୁ ଅଟେ ମୁରଦୈତ୍ୟ ।
ବ୍ରହ୍ମାବୀର୍ଯ୍ୟୁ ଜନ୍ମିଛି ଏ ବଇକୁଣ୍ଠ ଦ୍ୱାରୀ
ଦୈତ୍ୟଅଂଶ ହୋଇଅଛି ଶାପୁଁ ଅବତରି ।
ହରି ପଦାଘାତ ବିନା ନ ମରଇ କାହିଁ
ହୋଇଅଛି ଅମର ସେ ଶିବ ବର ପାଇ ।
ଏମନ୍ତ ବୋଲି କହିଲା ଯହୁଁ ମୁରମନ୍ତ୍ରୀ
ଶୁଣିକରି ବୃକାସୁର କଲା ମନେ ଭ୍ରାନ୍ତି ।
ତରସ୍ତ ହୋଇ ଭେଟିଲା ଆସି ମୁର ପାଶେ
ବୋଇଲା କୋପ ଆଉ ନକର ମୋର ବଂଶେ
ନ ଜାଣିବା ପଣେ ଦ୍ରୋହ ଅର୍ଜିଥିଲି ମୁହିଁ
ଏବେ ଆଶ୍ରେକଲି ମୋତେ ରଖି ଦୟାବହି ।

ନ ଜାଣିବା ଲୋକର ନ ଘେନିବଟି ଦୋଷ
ଶୁଣିଣ ସେ ମୁରାସୁର ହୋଇ ହସ ହସ ।
ଆପଣେ ଧରିଲା ଉଠିଯାଇ ତାକୁ କୋଳେ
ବୋଇଲା କିଛି ନ ପାଞ୍ଚ ରହ ଆମ୍ଭ ତଳେ ।
ମୁହିଁ ତ ତୁମ୍ଭର ତୁଲେ ଆସିନାହିଁ ଯୁଝି
ଜ୍ଞାତିକୁଳ ବୋଲି ମାତ୍ର ଯାଉଅଛି ବୁଝି ।
ଏଥକୁ ଏକା ପଦେ ମୁଁ କହେ ତାହା ଶୁଣ
ମୁହିଁ ଯେବେଟି ଲୋଡ଼ିବି ଯିବ ତୁମ୍ଭେ ପୁଣ ।
ବୃକାସୁର ବୋଲେ ତୋର ଆଜ୍ଞା ପରମାଣେ
ଯେତେବେଳେ ଲୋଡ଼ିବୁ ତୁ ଯିବି ମୁଁ ଆପଣେ
ଏମନ୍ତ ବୋଲି କହିଲା ବୃକା ଯହୁଁ ମାନି
ଚଳିଲେ ମୁର ଦାରୁଣ ବିଲଙ୍କାକୁ ଜିଣି ।
ଲଙ୍କା ବିଲଙ୍କା ହୋଇଣ ଆସୁ ଆସୁ ଏଣେ
ସିନ୍ଧୁ ପାରିହୋଇଗଲେ ନଇରତ କୋଣେ ।
କାଳନ୍ଦୀ ନାମରେ ତହିଁ ଅଛି ଏକ ଦେଶ
ତହିଁ ରାଜା ହୋଇଛି ଯେ ଦନୁଜର ଶିଷ୍ୟ ।
କାଳକେତୁ ଦୈତ୍ୟ ବୋଲିଅଟେ ନାମ ତାର
ସେହୁ ବାଟେ ଆସୁ ତହିଁ ମିଳେ ମୁରାସୁର ।
ନଗର ମଧ୍ୟେ ପଶିଣ ଆସନ୍ତେ ଧସାଇ
ନ ଭେଟିଲା କାଳକେତୁ ବଡ଼ପଣ ପାଇ ।
ଉଠିଲା ବେଭାର ହାନି ଦେଖି ମୁର ଗର୍ଜି
ଆତଙ୍କରେ ଗୋବିନ୍ଦକୁ ଚିନ୍ତେ ଲୋକେଭଜି
ଆସଇ ନିର୍ଦ୍ଦୟ ରୂପ ଧରି ଭାଙ୍ଗି ପୁର
ବାରଣ କେହି ନକଲେ କରେ ହୁରଜୂର ।
ପୁରେ ପୁରେ ପଶିକରେ ପଦାର୍ଥ ସେ ଜୂର
ନିରାଶେ ଉପାଡ଼ି ଭାଙ୍ଗି ଆଣନ୍ତି ସେ ପୁର ।
ଅନେକ କାଳରୁ କୀର୍ତ୍ତି ଥିଲା ଯେତେ ତହିଁ
ଏକସ୍ଥାନେ କଲେ ତାହା ସେ ଅସୁର ଦୁଇ ।
ଏମନ୍ତେ କରନ୍ତେ ପୁରଯାକ ସେହି ଜୂର
ଆତଙ୍କେ ଗୋବିନ୍ଦ ଚିନ୍ତା କଲେ ନାରୀନର ।
ନାରାୟଣ ସ୍ମରି ଉଚ୍ଚେ ପାଡନ୍ତି ସେ ବୋବି
ବୋଲନ୍ତି ଯେ ଆହେ ପ୍ରଭୁ ରଖ ଏ ପୃଥିବୀ ।
ନୋହିଲେ ବୁଝିଥାଅ ହେ ଗଲାଟି ସଂସାର
ଏ ପାପୀ ପ୍ରାଣୀମାନଙ୍କୁ କଷ୍ଟରୁ ଉଦ୍ଧର ।
ଦୈତ୍ୟଙ୍କୁ ବୋଲନ୍ତି କାହିଁପାଇଁ ନାଶ ପ୍ରଜା
ପୃଥିବୀକି ପାଳ ଯେବେ ହେଲ ଆସି ରାଜା
ଅନିମିତ୍ତେ କିମ୍ବା ତୁମ୍ଭେ ପରଜାଙ୍କୁ ନାଶ
ପ୍ରଜାସିନା ରାଜାଙ୍କର ଅଟେ ଲକ୍ଷ୍ମୀଅଂଶ ।
ପ୍ରଜାଙ୍କୁ ନ ସନ୍ତୋଳିଟି ରାଜା ହୁଏ ଯେହୁ
ତାହାଙ୍କୁ କି ପରାପତ ହୁନ୍ତି ଲକ୍ଷ୍ମୀ ଆଉ ।
ଲକ୍ଷ୍ମୀ ନ ଦେଲେ ଯେ ତାକୁ ଅଦାତାରେ ଗଣି
ଅଦାତା ଦୋଷରୁ ହୁଏ ଦରିଦ୍ରଟି ପ୍ରାଣୀ ।
ଦରିଦ୍ର ହୋଇଣ ଯେହୁ ଅର୍ଜେ ସବୁ ପାପ
ପାପରୁ ତ ପ୍ରାଣୀମାନେ ହୁନ୍ତି ଜାଣ ଲୋପ ।
ପୁନରପି ଜନମିଲେ ହୁଅଇ ସେ ପାପୀ
ଏ କଥା ବେଦ ବାକ୍ୟରେ ଅଛଇ ଯଦ୍ୟପି ।
ତୁ ଯେବେ ରାଜା ହୋଇଲୁ ପ୍ରଜା ତେବେ ପାଳ
ପ୍ରଜା ପାଳନ କଲେଟି ମିଳିବ ସକଳ ।
ରାଜାର କୀରତିଯାକ ପ୍ରଜା ସିନା ଅଟେ
ପରଜାମାନଙ୍କୁ ଲକ୍ଷ୍ମୀ ବୋଲି ସର୍ବଘଟେ ।
ଆପଣା ଜୀବନ ନୁହେଁ ତଥାପି ତ ଚିର
ପରକୁ କରୁଛୁ କିମ୍ବା ଏତେ ଅହଙ୍କାର ।
ପରର କ୍ଲେଶ ଘେନଇ ଯେହୁ ଅନୁବ୍ରତେ
ତାହାର ଜୀବନ ଗୋଟି ଧନ୍ୟ ଏ ଜଗତେ ।
ଦିନେ ହେଁ ସେ ଜୀଇଁଥିଲେ ସାର୍ଥକ ତା ପ୍ରାଣ
ମୂର୍ଖ ଜୀଇଁ କି ହୋଇବ ସସ୍ର କୋଟି ଦିନ ।
ଏମନ୍ତ ବୋଲି କହନ୍ତି ଲୋକେ ଶାସ୍ତ୍ର ବୁଝି
ନ ଶୁଣିଣ ମୁରାସୁର ଆସେ କୋପେ ଗର୍ଜି ।
ବେନିଆଖି ତରାଟି ସେ ଧାଏଁ ନିଶମୋଡ଼ି
ଭାଜିଲେକ ଲୋକମାନେ ଯେଝାପୁର ଛାଡ଼ି
ପୁରଲୋକେ ଭାଜିବାର ଦେଖି କାଳକେତୁ
ଯୁଦ୍ଧକୁ ଯେ ବାହାରିଲା ଉପେକ୍ଷିଣ ମୃତ୍ୟୁ ।
ସୈନ୍ୟଯାକ ଧରିଣ ଯେ ହୁନ୍ତେ ଆସି ଉଭା
ଦେଖିଲା ମୁରର ଦିଶେ କାଳନଳ ପ୍ରଭା ।
ପ୍ରଳୟ ଅନଳ ପ୍ରାୟ ପ୍ରକାଶିଛି ତେଜ
ଦେଖି କାଳକେତୁର ନ ଚଳେ ବେନିଭୁଜ ।
ପାଞ୍ଚିଲା ଏହାକୁ ରଣେ କେ ପାରିବ ଜିଣି
ସ୍ତୁତିରେ କହିଲେ ଅବା ତୁଷ୍ଟ ହେବ ଶୁଣି ।
ନ ଶୁଣିଲେ ପଛେ ମୁହିଁ ଯିବି ରାଜ୍ୟଛାଡ଼ି
ଏତେ ପାଞ୍ଚି କାଳାକେତୁ କହେ କରଯୋଡ଼ି ।
ବୋଇଲେ କି ଅର୍ଥେ ସ୍ୱାମୀ ଅଇଲୁ ମୋ ପୁର
ମୁହିଁ ବିଚାରିଲେ ଶତ୍ରୁ ନୁହଇ ତୁମ୍ଭର ।
ତୁମ୍ଭେ ତ ଆମ୍ଭ କୁଳକୁ ଅସୁର ମୁର୍ଦ୍ଧନା
ତେଣୁ ଆମ୍ଭେ ତୁମ୍ଭରଟି ଅପରିଚାର ସିନା ।
ଯେ ତୁମ୍ଭଠାରେ ଅସାଧ ତାହାକୁ ସଂହାର
ନିର୍ବଳ ଲୋକକୁ କୋପ କାହିଁକି ଯେ କର ।
ମୋ ରାଜ୍ୟେ ଯେବେ ପ୍ରବେଶ ହେଲ ତୁମ୍ଭେ ଆସି
କି ହୋଇବ ନାଶକରି ପ୍ରଜା ରାଜ୍ୟ କୃଷି ।
ତୁମ୍ଭେ ଭୋଗ କରନ୍ତ ବା ମୁଁ କରନ୍ତି ଭୋଗ
ପରଜାଙ୍କୁ ନାଶି କେହି ବସିଲାଣି ସ୍ୱର୍ଗ ।

ଏହି ରୂପେ କହନ୍ତେ ସେ ତୋଷ ହେଲା ମୁର
ଉଠିଯାଇ କୋଳକଲା କାଳକେତୁ ବୀର ।
ତାଙ୍କବୋଲେ ତୁମ୍ଭେମାନେ ଅଛ ଯେତେ ରାଜା
ଆଜିଠାରୁ ସର୍ବେ ଆସିକର ମୋତେ ପୂଜା ।
ହୋଇବ ଯେ ସେନାପତି ରହିବ ମୋ ସଙ୍ଗେ
ଏକଥା କହିଲି ମୋର ସତ୍ୟ ତୁମ୍ଭ ଆଗେ ।
ଏହା ଶୁଣି କାଳକେତୁ କଲା ସନମତ
ବୋଇଲା ଇଚ୍ଛାରେ ହେଲି ଆଜୁଁ ତୁମ୍ଭ ଭୃତ୍ୟ
ଏକେତ ତୁ ଦୈତ୍ୟରାଜ ଆମ୍ଭେ ଅଟୁ ତହିଁ
ଏଥୁ ଅଧିକ ଅର୍ଜିବୁ କିସ ଆଉ ଯାଇଁ ।
କେବଳ ତୁମ୍ଭର ଲୋଡ଼ାହେବ ଯେତେବେଳେ
ଆମ୍ଭଙ୍କୁ ଯେ ସୁମରିଲେ ମିଳିବୁ ତତ୍କାଳେ ।
ଏହା ଶୁଣି ଶ୍ରଦ୍ଧାକରି ଗଲା ମୁରଦୈତ୍ୟ
ଏଥି ଉତ୍ତାରେ ନାରଦ ଶୁଣ ଦେଇ ଚିତ୍ତ ।
ମୁର ଦାରୁଣ ଯେ ଦର୍ପେ ତହୁଁ ଗଲେ ଚଳି
ଯାଆନ୍ତେ ସେ ବନଗିରି କମ୍ପେ ମହୀସ୍ଥଳୀ
ବଢ଼ାଇ ସେ ସମାରୋହ ବାଜେ ବୀରତୂର
ମିଳିଲା ବିବର୍ତ୍ତ ଦେଶେ ଯାଇ ମୁରାସୁର ।
ମନ୍ତ୍ରୀକି ବୋଇଲା ଏଥି ରାଜା ନାମ କିସ
ସୁବିଜ୍ଞ ବୋଇଲା ଏହୁ ଦନୁଜର ଶିଷ୍ୟ ।
ଦନୁ କନ୍ୟାଠାରୁ ଜନ୍ମି ଦନୁଜ ହୋଇଲା
ତାଠାରୁ ଦନୁଜ ବଂଶ ପ୍ରକାଶ ପାଇଲା ।
ଏ ରାଜାର ନାମ ଗୋଟି ଅଟେ ବୀରଘଣ୍ଟ
ଏହିକ୍ଷଣି ଶୁଣିଲେ ଯେ ଦେବ ତୋତେ ଭେଟ
ଏ ପ୍ରକାର କଥା ଯେଣୁ ବୀରଘଣ୍ଟ ରାଜା
ବାରତା ପାଇବାରୁ ସେ ଆସି କଲା ପୂଜା ।
ମୁରର ମହିମା ଜନ୍ମକାଳୁ ଥିଲା ଶୁଣି
ତେଣୁ ସେ ରାଜା ଭେଟିଲା ଆସିବାକୁ ପୁଣି ।
ମୁରହିଁ ଦେଖି ତାହାକୁ କଲା ପଉରୁଷ
ପୁଚ୍ଛିଲାକ ତୁହି ପରା ଦନୁଜର ଶିଷ୍ୟ ।
ଆମ୍ଭର ଲେଖାରେ ତେବେ ହେଲୁ ଆସିନାତି
ତୁ କଶ୍ୟପ ପୁତ୍ର ଆମ୍ଭେ ବ୍ରହ୍ମାର ସନ୍ତତି ।
ତେଣୁ ଆମ୍ଭେ ବୁଝିଲେତ ହେବୁ ତୋର ଅଜା
ଏହିଠାରୁ ବାବୁ ଆରେ କର ମୋତେ ପୂଜା ।
ସେନାପତି ହୋଇଣ ତୁ ରହି ମୋର ପାଶ
ତୁମ୍ଭର ସାହା ପାଇଣ ଜିଣିବି ମୁଁ ଦେଶ ।
ଆଉ ଏଣିକି ଅଛନ୍ତି କେତେ ରାଜା କୁହ
ତାହାଙ୍କୁ ବରି ଆଣିଲେ ହୃଦ ହେବ ଥୟ ।
ବୀରଘଣ୍ଟ ବୋଇଲା ତୋ ଆଜ୍ଞା ପରମାଣେ
ରହିଲି ମୁଁ ସେନାପତି ଯିବି ଆଉ କେଣେ ।

ମୁହିଁ ଯାହା କଳ୍ପନାଟି କରୁଥିଲି ଚିତ୍ତେ
ସେହିପରି ରାଜା ଆସି ମିଳିଲାକ ମୋତେ ।
ଆଉ ଏଣିକି ଅଛନ୍ତି ଯେତେ ମହାରାଜ
ସମସ୍ତେ ବୋଲାଉଁ ଆମ୍ଭେ କଶ୍ୟପ ଆତ୍ମଜ ।
ଏକେ ଏକେ ଲେଖା ଆମ୍ଭେ ଅଟୁ ମହାବଳୀ
ମନକଲେ ବୁଲିପାରୁ ତିନିପୁର ଚଳି ।
ତୁମ୍ଭେ ଏବେ ଥାଇ ତାକୁ ନିମନ୍ତ୍ରିଣ ଆସ
ଆମ୍ଭେ ସମସ୍ତେ ରହିବୁ ହୋଇ ତୋର ଦାସ ।
ଏମନ୍ତ ଶୁଣି ହରଷ ହେଲା ମୁରାସୁର
ବୀରଘଣ୍ଟ ରାଜାକୁ ସେ ଦେଲା ପୁରସ୍କାର ।
ବୋଇଲା ତୁହି ମୋହର ଅଟୁ କୁଳଜ୍ଞାତି
ସୁବୁଦ୍ଧି ଗୁଣ ଘେନିଣ କରିଲୁ ଭକତି ।
ନିଶ୍ଚିନ୍ତ ହୋଇଣ ଏବେ ଥାଅ ତୁ ରାଜ୍ୟରେ
ମୁହିଁ ଯେବେ ସୁମରିବି ଯିବୁ ଧାତିକାରେ ।
ଏମନ୍ତ କହି ଅଭୟ ବର ତାକୁ ଦେଇ
ଚଳନ୍ତି ବୀର ନୈର୍ଋତ ମୁଖ ହୋଇ ସେହି ।
ଉଜାଣ ଦେଶରେ ଯାଇ ହୋଇଲା ପ୍ରବେଶ
ତହିଁରେ ଅଛଇ ରାଜା ନାମ ସଉଦାସ ।
ସଉଦାସ ତୁଲେ ପ୍ରୀତି ହୋଇଗଲା ଚଳି
ମାତଙ୍ଗ ଦେଶେ ମୂଢ଼ାକୁ ଭେଟିଲାକ ମିଳି ।
ସେହି ମୂଢ଼ାସୁର ରାଜା ମୁର ଗୁଣ ଚିହ୍ନି
ଦରଶନ କଲା ଆସି ସୈନ୍ୟବଳ ଘେନି ।
ସେ ରାଜାର ଶ୍ରଦ୍ଧା ଦେଖି ମୁର ଦୟା କଲା
ଆପେ ଉଠିଯାଇ ଗୁଆ ଅକ୍ଷତ ଯେ ଦେଲା ।
ବୋଇଲା ଆଜହୁଁ ତୋତେ ବରିଲିରେ ବାବୁ
ଆଗୁଆଣି ଥାଟେ ମୋର ସେନାପତି ହେବୁ
ଆବର ଅଛନ୍ତି ଯେତେ ଏ ଦେଶର ନୃପ
ଯାଉଅଛି ଆଣିବାକୁ ଜାଣ ଆରେ ବାପ ।
ମୂଢ଼ା ବୋଇଲା ଦେବ ତୁ କିମ୍ପା ଆଉ ଯିବୁ
ଏ ଦିଗ ରାଜା ଅଟନ୍ତି ମୋର ଭାଇ ସବୁ ।
ଦନୁଜ ଗର୍ଭରେ ଜନ୍ମି ଦକ୍ଷିଣେ ଯେ ଦାସ
ତେଣୁ ଆମ୍ଭର ପ୍ରକୃତି ହୋଇଲା ରାକ୍ଷସ ।
କଶ୍ୟପର ଅଂଶୁ ଜନ୍ମି ରକ୍ଷ ବୋଲାଇଲୁ
ତୁ କିସ ନଜାଣୁ ଆମ୍ଭେ ତୋ ଆଗେ କହିଲୁ ।
ମୁର ବୋଇଲା ବାବୁରେ ନବୋଲ ଏ ବାଣୀ
ମୁଁ ଦେଖ ବ୍ରହ୍ମାରୁ ଜନ୍ମ ରକ୍ଷ ହେଲି ପୁଣି ।
ଅସୁରକୁ ସାନ କିବା ବିଚାରୁଛୁ ତୁହି
ଯାର ବୋଲେ ଆଶ୍ରା ବ୍ରହ୍ମାଆଦି ଶିବହୋଇ
ତିନିପୁର ଲୋକଯାଏ ଥିବେ ଯହିଁ ମାନି
ଏଡ଼େ କଥାରେ ସଂଶୟ କିମ୍ପା ଅଛୁ ଘେନି ।

ଅସୁରର ଆଧିନାହିଁ ବ୍ରହ୍ମାଣ୍ଡରେ ଲକ୍ଷ୍ୟ
ଦୁଷ୍ଟପଣ କଲେ ତତକ୍ଷଣେ ହୋଇ ମୋକ୍ଷ ।
ମନୁଷ୍ୟ ଜନମ ହେଲେ ମନେ ହରି ଭଜି
ନ ପାରେ ସେ ମୋକ୍ଷ ହୋଇ ମନେ ତୁଚ୍ଛି ଗଞ୍ଜି
ସଭିହୁଁ ଏହି ଅସୁର ଜନ୍ମ ଶ୍ରେଷ୍ଠ କହି
ଥିବାଯାକେ ଭୋଗ ଭୁଞ୍ଜେ ମଲେ ମୋକ୍ଷ ହୋଇ ।
ଏଣୁ ଏ ଦୈତ୍ୟର ଜନ୍ମ ସଂସାରରେ ସାର
ଦେଖିଲା ମାତ୍ରେ ଆମ୍ଭଙ୍କୁ ସବୁରି ତ ଡ଼ର ।
ଏ ଜନ୍ମ ଅସାର ବୋଲି ନ ଘେନି ସଂଶୟେ
ଏବେ ତୋ ଭ୍ରାତାଙ୍କୁ ଲୋଡ଼ିଆଣ ଏହିଯାଏ ।
ଦେଖାଦେଇ ଆମ୍ଭଙ୍କୁ ସେ ଭେଟି ଦେଇଯାନ୍ତୁ
ନୋହିଲେ ସେନା ହୋଇଣ ପାଶେ ତୋର ଥାନ୍ତୁ ।
ଏ ରୂପେ ମୁର କହନ୍ତେ ମୂଢ଼ାସୁର ହସି
ଏଥୁଅନ୍ତେ ବାଣୀ ଶୁଣ ନାରଦ ମହର୍ଷି ।
ମୁର ଆଜ୍ଞାଦେଲେକ ଭ୍ରାତାଙ୍କୁ ଆଣ ଯାଇ
ଶୁଣି ମୁରାସୁର ଦେଲା ଚାର ପଠିଆଇ ।
ଦୂତେ ବୁଲି ତହୁଁ ସର୍ବେ ଅଇଲେକ ଉଠି
ମୁରର ପାଦେ ଦଇନି କଲେ ଆସି ଭେଟି ।
ବୋଇଲେ ମହିମା ତୋର ସିନା ଶୁଣୁଥିଲୁ
ଏବେ ପ୍ରତ୍ୟକ୍ଷେ ଦର୍ଶନ ବାରେ ଆସିକଲୁ ।
ଶୁଣିଥିଲୁ କର୍ଣ୍ଣେ ଯାହା ଦେଖିଲୁ ତାହାଟି
ଆମ୍ଭର କୁଳକୁ ରାଜା ଦ୍ୱିତୀ ପରମେଷ୍ଠୀ ।
ଶୁଣିଣ ମୁର ଅସୁର ଅନ୍ଧ ହୋଇ ହସି
ଚାହିଁକରି ସମସ୍ତଙ୍କୁ କହଇ ବିଶେଷି ।
ହେ ନୃପମାନେ ମହିମା ମୋର ତୁମ୍ଭେ ଶୁଣ
ବୈକୁଣ୍ଠର ଦ୍ୱାରୀ ମୁହିଁ ଅଟଇ ଟି ଜାଣ ।
ଚାରୋଟି ଜନ୍ମକୁ ମୋତେ ବ୍ରହ୍ମଶାପ ଦେଲା
ପ୍ରଥମେ ଏ ଜନ୍ମେ ମୁର ହେଲ ଜଣାଗଲା ।
ଦ୍ୱିତୀୟେ ପୁଣି ହିରଣ୍ୟ ହେବି ମହୀତଳେ
ତୁମ୍ଭେ ମଧ୍ୟ ସେନାମୋର ହେବ ସେହି କାଳେ
ଏ ଯେଉଁ ନାଗମାନଙ୍କୁ ବହିଅଛି ଏବେ
ଆରଜନ୍ମେ ହେବ ଆପଣତ ହୟଗ୍ରୀବେ ।
ନମୂଚି ବିପ୍ରଚିତ୍ତ ଯେ ଅଶିତ ଶମ୍ବର
ହୟଶିରା ମହାବାହୁ ଅଜେୟ ସେ ବୀର ।
ପୁଲମା ଯେ ଅଶ୍ୱଗ୍ରୀବ ତୁଚ୍ଛ କୁଛ ବେନି
ରହିବ ଏ ଆଦିନାମ ବହି ମୋତେ ଘେନି ।
ମୋହର ବୀର୍ଯ୍ୟରେ ପୁଣି ଜନ୍ମିବ ପ୍ରହ୍ଲାଦ
ହରିନାମ ଶୁଣି ତାରେ ଲଗାଇବ ବାଦ ।
ପିତା ପୁତ୍ର ବିବାଦରୁ ଜନମିବେ ହରି
ପ୍ରହଲାଦକୁ ରଖିବେ ମୋତେ ମାରିକରି ।

ତହିଁର ସଙ୍ଗେ ତୁମ୍ଭର ହେବ ପ୍ରାଣନାଶ
ଆବର ଜନ୍ମ ମୋହର ଶୁଣି ସେ ସନ୍ଦେଶ ।
ମୁଁ ପୁଣି ଲେଉଟି ଯାଇଁ ହୋଇବି ରାବଣ
ଜନ୍ମିବ ସେକାଳେ ଲଙ୍କାଗଡ଼େ ତୁମ୍ଭେପୁଣ ।
ଲଙ୍କାପୁରେ ରାଜପଦେ ବସିଥିବି ମୁହିଁ
ସୀତାଙ୍କୁ ହରି ଆଣିବି ଗୋଦାବରୀ ଡେଇଁ ।
ତହିଁର ଛଳେ ମାରିବେ ରାମ ଆସି ମୋତେ
ସୁବଳୟା ଗିରିପରେ ରହି ଦିନାକେତେ ।
ଲଙ୍କାପୁରେ ଥିବ ତୁମ୍ଭେ ସେନାମୋର ହୋଇ
ତୁମ୍ଭଙ୍କୁ ମାରିବେ ମୋର ତୁଲେ ଭାବଗ୍ରାହୀ ।
ମୁହିଁତ ପୁଣି ଲେଉଟି ହେବି ଶିଶୁପାଳ
ଚକ୍ର ପେଶିଣ ମାରିବେ ମୋତେ ଆଦିମୂଳ ।
ସେ ଜନ୍ମରେ ତୁମ୍ଭେ ମଧ୍ୟ ସଖା ମୋର ହେବ
ଜରା ଯେ ନାରକା ଦନ୍ତଚକ୍ର ବଜ୍ରନାଭ ।
ରକ୍ମ ରକ୍ମଣ ଯେ ଶାଲ୍ୱ ପୁଣ୍ଡରୀକ କହି
ତୁମ୍ଭ ଆମ୍ଭ ଜନ୍ମଟାହୋ ଏହିରୂପେ ହୋଇ ।
ଏକଥା ଜଣା ହୋଇଲା ମୋତେ ତପବଳୁଁ
ହର କହିଥିଲେ ମୋତେ ବର ଦେଲାବେଳୁଁ ।
ତୁମ୍ଭଙ୍କୁ କହି ଏବେ ମୁଁ ଯାଉଛିରେ ବାବୁ
ମୁହିଁ ଯେବେ ସୁମରିବି ଆସିବଟି ସବୁ ।
ଶୁଣି ଦନୁଜର ପୁତ୍ରେ ବହୁ ଶ୍ରଦ୍ଧା କଲେ
ବୋଇଲେ ସ୍ୱାମୀ ରହିଲୁ ଆଜ୍ଞୁ ତୋର ବୋଲେ ।
ଅବଶ୍ୟ ଆସିବୁ ସୁମରିଲେ ତୋର କତି
ଶୁଣିଣ ମୁର ଅସୁର ମନେ ହେଲା ଶାନ୍ତି ।
ଦକ୍ଷିଣ ଦିଗକୁ ଜିଣି ବାହୁଡ଼ିଲେ ଖରେ
ଆସୁ ଆସୁ ମିଳିଲେ ସେ କପିଳାସ ପୁରେ ।
ଦେଖିଲାକ ତପିଜପେ ଅଛନ୍ତି ଯେ ବସି
ପରଆତ୍ମାଙ୍କୁ ଧାୟି ମନରେ ନିବେଶି ।
ଚଉରାଶି ଖଣ୍ଡ ଜ୍ଞାନେ ଜପନ୍ତି ଅଜପା
ବ୍ରହ୍ମେ ନିର୍ଗୁଣ ଅଷ୍ଟାଙ୍ଗ ଯୋଗସିଦ୍ଧି ରୂପା ।
ଅବନା ଆଠ ଅକ୍ଷର ନିରନ୍ତରେ ଲୟେ
ଓଁ କାର କୂଟେ କି ମୂଳମନ୍ତ୍ର କରି ଧାୟେ ।
ଅଷ୍ଟଦଳକୁ ଯେ ଚିହ୍ନି କାୟ ବଳବନ୍ତ
ଅଛନ୍ତି ଯେ କ୍ଷୁଧା ତୃଷା ନାଶି ଦିବାରାତ୍ର ।
ଜ୍ଞାନରେ ମନ ଦେଇଣ ବସିଛନ୍ତି ଧ୍ୟାନେ
ଏମନ୍ତ ସମୟେ ମୁର ମିଳିଲା ସେ ସ୍ଥାନେ ।
ସେ ଯତିମାନଙ୍କୁ ଚାହିଁ ପୁଛାକଲା ତଥା
ବୋଇଲା କି କରନ୍ତି ଏକାଳେ ପଞ୍ଚମଥା ।
ଈଶ୍ୱରଙ୍କୁ ସେ ସମୟେ ପୁଛନ୍ତେ ସେ ମୁର
ନ ଦିଅନ୍ତି ଧ୍ୟାନମଗ୍ନ ଥାଇ ସେ ଉତ୍ତର ।

ତାହା ଦେଖି ମୁରାସୁର ହେଲା କୋପମୂର୍ତ୍ତି
ବୋଇଲା ତପୀଙ୍କୁ ଏବେ ସରିଲା ସମ୍ପତ୍ତି ।
ପାଞ୍ଚିଲା ଏହାର ଶିର ଛେଦିବି ମୁଁ ଆଜି
କି କରିବେ ମୋର ବସିଛନ୍ତି ଚକ୍ଷୁ ବୁଜି ।
ଏମନ୍ତ ବିଚାର ତାର ଜାଣିଲେ ଶଙ୍କର
ବୃଷ ଉପରେ ଆରୋହୀ ଅଇଲେ ସତ୍ୱର ।
ମନେ ପାଞ୍ଚିଲେ ଯେବେ ନ ଯିବି ମୁର କତି
ନ ପାଇବେ ପ୍ରାଣ କେହି ନାଶ ହେବ ଯତି ।
ଏମନ୍ତ ପାଞ୍ଚି ଆସିଲେ ସ୍ୱାମୀ ତନୁ ଘେନି
ଏକ ଏକ ମୁଖରେ ହେ ନେତ୍ର ତିନି ତିନି ।
ଶୁକ୍ଲାଭ ଶରୀର କଟିତଟେ ବ୍ୟାଘ୍ରାମ୍ବର
ମଥାରେ ଯେ ଅର୍ଦ୍ଧଚନ୍ଦ୍ର ଗଳେ ନାଗହାର ।
ସର୍ବାଙ୍ଗେ ବିଭୂତି ଫୁଟି ବିରାଜଇ ତେଜ
ଶୁଭୁଛି ଡମ୍ବରୁ ଶବ୍ଦ ଆସୁ ବୃଷଧ୍ୱଜ ।
ମହା ଯୋଗେନ୍ଦ୍ର ନାଥ ସେ ମୌଳି ଜଟାଭାର
ସେ ମୂରତି ଦେଖି ତୋଷ ହେଲା ମୁରାସୁର ।
ରଥରୁ ଡେଇଁ ଶୁତିଲା ତଳେ ଗଡ଼ଘାଲି
ଦେଖି ବିଶ୍ୱନାଥ ସ୍ୱାମୀ ଉଠ ଉଠ ବୋଲି ।
ପ୍ରସନ୍ନ ବଦନେ ତାକୁ ପୁଚ୍ଛନ୍ତି କାମାରି
ବୋଲନ୍ତି କାହିଁକି ଆସୁ ଏବେ କୋପକରି ।
ବୁଝିଲେ ଏ ସ୍ଥାନେ ଲୋକେ ସମସ୍ତେ ତ ଜ୍ଞାନୀ
ଶ୍ରୀହରିଙ୍କି ପୂଜୁଥାନ୍ତି ବସି ହୋଇ ତୁନି ।
ହିଂସା ମାୟା ମିଛ ସବୁ ନ ଜାଣନ୍ତି କିଛି
ବ୍ରହ୍ମରେ ଚିତ୍ତ ମଜାଇ ଚିନ୍ତନ୍ତି ଶ୍ରୀବତ୍ସି ।
ଦୁଷ୍ଟକୁ ବହୁତ ଡର ଥାଏ ଅନୁକ୍ଷଣେ
ନୁହନ୍ତି ଶସ୍ତ୍ରଧାରୀ ନ ଯାନ୍ତି ଯୁଝି ରଣେ ।
ଏମାନଙ୍କୁ ମାରି ତୁହି ଅର୍ଜିବୁ କି ଯଶ
ଆମ୍ଭ ବୋଲ ପାଳି ଏବେ ଯାଅ ଅନ୍ୟଦେଶ
ମୁର ବୋଇଲା ଶୁଣିମା ଦେବ ସଦାଶିବ
ମୁଁ ମାଗି ଆସିଛି ମୋତେ ନଗ୍ରେକ ଯେ ଦେବ
ଆବର କଥାଏ ସ୍ୱାମୀ ପଚାରୁଛି ଶୁଣ
ଜମ୍ବୁଦ୍ୱୀପ ଯାକ ମୁହିଁ କଲିଣି ଭ୍ରମଣ ।
ଏ ରୂପେ ଅନ୍ଧଗୁଡ଼ିଏ ନ ଦେଖିଲି କାହିଁ
ବସିଛନ୍ତି ଜଡ଼ ପ୍ରାୟେ ଜଳ ଜଳ ଚାହିଁ ।
କି ପାଇଁ ଚକ୍ଷୁମାନଙ୍କୁ ଅଛନ୍ତି ଏ ବୁଜି
କଳା କି ପିଙ୍ଗଳାବ୍ୟାଧି ଗଲା ଆମ୍ଭା ହଜି ।
କି ଅବା ଜଡ଼ା କାଲ ଏ ଜଳକା ଅଟନ୍ତି
ଭଲ୍ଲୁକ ପ୍ରାୟେକ ରହି କଥା ନ କହନ୍ତି ।
ତେଣୁ ଏହାଙ୍କୁ କୋପିଲା ଦେଖି ମନୋହର
ଶୁଣିଣ ମହାହରଷ ହେଲେ ଦିଗମ୍ବର ।
ବୋଇଲେ ମୂର୍ଖ ବାତୁଳ ନ ବୋଲନ୍ତି କିସ
ସାଧୁପ୍ରାଣୀଙ୍କି ଯେ କରୁଥାନ୍ତି ପରିହାସ ।
ଏ ମୋହର କେତେ ତପୀ ତପେ ଛନ୍ତି ବସି
ଏହାଙ୍କୁ ଏ ଅନ୍ଧକଣା ବୋଲେ ବଳେ ଆସି ।
ବୋଲୁ ସେ ପଛେ ଅନ୍ଧ ନ କଲା ଭଲା ନାଶ
ପଣ୍ଡିତେ ତା ନ ଘେନନ୍ତି ମୂର୍ଖଲୋକ ଦୋଷ ।
ଏମନ୍ତ ପାଞ୍ଚି କହନ୍ତେ ହରି ଶ୍ରଦ୍ଧାବହି
ବୋଇଲେ ବାବୁ ନଗ୍ରେକ ଅଛି ତୋହ ପାଇଁ ।
ବାୟବ୍ୟ କୋଣେ ମିଳିବ ତୋତେ ଏକ ପୁର
ସେ ରାଜ୍ୟରେ ସୂର୍ଯ୍ୟବଂଶୀ କର୍ଣ୍ଣାଟଈଶ୍ୱର ।
ତୋହର ଗଲାମାତ୍ରେ ସେ ଯିବ ରାଜ୍ୟ ଛାଡ଼ି
ବିଶାଶଏ ଯୁଣ ଭୂମି ବସିବୁ ତୁ ମାଡ଼ି ।
ମିଳିବ ଅନେକମତେ ଭୋଗ ତୋତେ ତହିଁ
ସକଳ ଦେବେ ଖଟିବେ ତୋର ପାଦେ ଯାଇଁ
ସେଠାବରେ ବ୍ରହ୍ମା ଶାଢ଼ୀ ବାନ୍ଧବ ତୋ ମୁଣ୍ଡେ
ସେହିଠାରୁ ବୁଲିବୁ ତୁ ସପତ ବ୍ରହ୍ମାଣ୍ଡେ ।
ତୋର ତୁଲେ ଲାଗି କେହୁ ନ ପାଇବେ ଯଶ
ବିଷ୍ଣୁ ଏକା ଜନ୍ମିଲେ ତୁ ଯିବୁ ପ୍ରାଣେ ନାଶ ।
ଆଗହୁଁ ଏକଥା ତୋତେ ଦେଉଛି ପ୍ରମାଣ
ମୋତେ ନ ପୁଚ୍ଛି କିମ୍ପାଇଁ କରୁଛୁ ଭ୍ରମଣ ।
ସେକଥା ଶୁଣିଣ ମୁର ହୋଇଣ ସନ୍ତୋଷ
ବୋଇଲା ଆଜ୍ଞା ଦେଲେ ମୁଁ ଯିବି ଦିଗବାସ ।
ଶଙ୍କର ବୋଇଲେ ବାବୁ ଯାଅ ଏହିଲାଗେ
ପଶ୍ଚିମ ମୂର୍ତ୍ତି ହୋଇଣ ବାୟବ୍ୟର ଦିଗେ ।
ମେଲାଣି ପାଇଣ ମୁର ହୋଇଲା ବାହାର
ସଙ୍ଗରେ ଅଛଇ ମନ୍ତ୍ରୀ ସାନ ଭାଇ ତାର ।
କର୍ଣ୍ଣାଟଦେଶେ ଯାଇ ସେ ହୋଇଲା ପ୍ରବେଶ
ଦେଖିଲେ ଦିବ୍ୟସ୍ଥଳି କି ଜିଣି ସ୍ୱର୍ଗଦେଶ ।
ବିଷାଶଏ ଯୁଣ ଭୂମି ସ୍ୱର୍ଣ୍ଣମୟ ଦିଶେ
କୌଶିକ ନାମରେ ନଦୀ ବହେ ତହିଁପାଶେ ।
ସେ ରାଜା ସେହି ନଦୀରେ ଧୁଅନ୍ତି ଶରୀର
ଏଥିଉତ୍ତାରେ କହିବା ଶୁଣ ଆନ ଗିର ।
ମୁର ଯେ ତହିଁ ଯାଇଣ ହୋଇଲା ପ୍ରବେଶ
ମନ୍ତ୍ରୀକି ବୋଲେ କରିବା କହ ଏବେ କିସ ।
ସିଂହାସନ ମାଡ଼ିକରି ବସିବା କି ଯାଇ
ନୋହିଲେ ଅନ୍ୟ ଉପାୟ ଥିଲେ କହ ତୁହି ।
ମନ୍ତ୍ରୀ ବୋଇଲା ବିଚାରି କର ତେବେ କାର୍ଯ୍ୟ
ନିମନ୍ତ୍ରିଲା ରାଜାଙ୍କୁ ଯେ ସୁମରିବା ଆଜ ।
ସେ ସମସ୍ତେ ଆସିଲାରୁ କରିବା ଉପାୟେ
ଶ୍ରୀମୁଖ ଲେଖା ଦେବାକ କର୍ଣ୍ଣାଟର ଯାଏ ।

ଶୁଣିଲା ମାତ୍ରେ ଭେଟିବ ରାଜା ଆସି ଯେବେ
ତୁହି ଏ ରାଜାର ଦୋଷ ନ ଘେନିବୁ କେବେ ।
ରାଜ୍ୟ ଖଣ୍ଡେ ଦେଇ ତାକୁ ରଖିବୁ ତୁ ଜାଣ
ଆବର ଖଣ୍ଡକେ ତୁହି ହେବୁ ନୃପରାଣ ।
ଶୁଣିଣ ବୋଇଲା ମୁରାସୁର ସତ୍ୟ ସତ୍ୟ
ସୈନ୍ୟ ନ ଥାଇ କେମନ୍ତ ହୋଇବ ରାଜତ୍ୱ ।
ଏମନ୍ତ ପାଞ୍ଚି ବସିଲା ରାଜା ଶୁଦ୍ଧମନେ
ଈଶ୍ୱର କହିବା ମନ୍ତ୍ର ସୁମରିଲା ଧ୍ୟାନେ ।
ରାଜାମାନଙ୍କର ନାମ ଧରି ଚିନ୍ତାକଲା
ଚିନ୍ତା କରନ୍ତେ ଆସନ ସବୁରି ଟଳିଲା ।
ଜାଣିଲେ ମୁର ଚିନ୍ତିଲା ବୋଲି ଯେଝା ମନେ
ଚଳିଲେ ରଥ ବାହନେ ଚଢ଼ି ଦରଶନେ ।
ଯେ ଯାହାର ସୈନ୍ୟ ଘେନି ପ୍ରବେଶିଲେ ଆସି
ସେ ରାଜାମାନଙ୍କ ଗୁଣ ଶୁଣ ତୁ ବିଶେଷି ।
ପ୍ରଥମେ ପ୍ରବେଶ ଆସି ଊିକାସୁର ହେଲା
ଦୁଇପଦ୍ମ ସୈନ୍ୟ ଘେନି ଦରଶନ କଲା ।
ତହିଁ ଉତ୍ତାରେ ମିଳିଲା କାଳକେତୁ ବୀର
ଆଠ ଅକ୍ଷୌହିଣୀ ବଳ ଅଛି ତା ସଙ୍ଗର ।
ବିଦର୍ଭ ଦେଶରେ ଥିଲା ବୀରଘଣ୍ଟ ରାଜା
ପାଞ୍ଚପଦ୍ମ ସୈନ୍ୟଘେନି କଲା ଆସି ପୂଜା ।
ଆଉ ରାଜା ମିଳିଲା ଯେ ନାମ ସଉଦାସ
ଭେଟିଲା ଅର୍ବୁଦେ ସୈନ୍ୟ ଘେନି ମୁରପାଶ ।
ବିରଳଚନ୍ଦ୍ରଦେଶର ପ୍ରଳମ୍ବ ଅସୁର
ତିନିଲକ୍ଷ ସୈନ୍ୟଘେନି ଭେଟିଲା ସେ ମୁର ।
ମୂଢ଼ାସୁର ଯେ ମାତଙ୍ଗ ଦେଶ ମହାରାଜା
ଲକ୍ଷେ ସୈନ୍ୟ ଘେନି କଲା ମୁର ପାଦେପୂଜା
ମୟଦେଶେ ଥିଲା ରାଜା ବୀର ନୃପବର
ଦଶପଦ୍ମ ସୈନ୍ୟ ଘେନି ଭେଟିଲା ସତ୍ୱର ।
କପାଳୀ ଦେଶର ରାଜା କଙ୍କାସୁର ରାୟେ
ଅୟୁତେକ ସୈନ୍ୟ ଘେନି ମୁରପାଶେ ଯାଏ ।
ଉପାୟନ ଦେଶେ ଥିଲା ଅଲୋପା ଯେ ରାଜା
ଲକ୍ଷେସୈନ୍ୟ ଘେନି କଲା ମୁରକୁ ସେ ପୂଜା
ମଦନ ଦେଶର ରାଜା ମଦନ ଯେ ବଳୀ
ତିନିପଦ୍ମ ସୈନ୍ୟ ଘେନି ଅଇଲା ସେ ଚଳି ।
ଶରଦ ଦେଶର ଥିଲା ସଲୋପି ନୃପତି
ସଙ୍ଗେ ଘେନି ଆଣିଥିଲା ଷଡ଼ଲକ୍ଷ ରଥି ।
ଜଳମ୍ଭା ଦେଶର ରାଜା ଅଟେ ଜଳଘଣ୍ଟ
ବଢ଼ାଇ ସମ୍ପର୍କେ ହେଲା ଆସି ସେହୁ ଭେଟ ।
ପାରାପୁର ଦେଶ ରାଜା ଲୋମାସୁର ବୀର
ଖର୍ବେ ସୈନ୍ୟଘେନି ଆସି ଭେଟିଲା ସେ ମୁର
ଇନ୍ଧନ ଦେଶର ରାଜା ଦୈତ୍ୟ ବକ୍ରମାଳି
ସାଗର ଯୋଦ୍ଧା ଘେନିଣ ଅଇଲା ସେ ଚଳି ।
ଅତୁଟ ଦେଶର ରାଜା ରଣ ଚୂଡ଼ବୀର
ସମଦଣ୍ଡ ଚଳାଇଣ ଅଇଲା ସତ୍ୱର ।
ଭୁମନ୍ୟୁ ଦେଶର ନରପତି ରଣକେଶୀ
ମୁରାସୁର ରାଜା ପାଶେ ଭେଟିଲା ସେ ଆସି
କୁନ୍ଦନ ଦେଶର ରାଜା ଦୈତ୍ୟ ଚନ୍ଦ୍ରମାଳି
ବେନିପଦ୍ମ ସୈନ୍ୟଘେନି ମୁର ପାଶେ ମିଳି ।
କୃତାନ୍ତକ ଦେଶ ରାଜା ନାମ କୃତକେଶୀ
ପାଞ୍ଚପଦ୍ମ ସୈନ୍ୟ ଘେନି ମିଳିଲାକ ଆସି ।
ଅନ୍ଧକ ଦେଶର ରାଜା ହିରଣ୍ୟ କବଚ
ତାହାର ତୁଲେ ଅଛନ୍ତି ସୈନ୍ୟ ବାରଲକ୍ଷ ।
କ୍ଷଉର ଦେଶର ରାଜା ଖଡ଼ିକାର ବୋଲି
ଅର୍ବୁଦେ ସଇନ୍ୟ ଘେନି ଅଇଲା ସେ ଚଳି ।
ଏହିରୂପେ ରାଜାମାନେ ପ୍ରବେଶିଲେ ଆସି
ଅଶୀଯୁଣ୍ଣ ପରିଯନ୍ତେ ସୈନ୍ୟ ସବୁ ମିଶି ।
ରାଜାଙ୍କୁ ଦେଖିଣ ମୁର କଲା ବଡ଼ ଶ୍ରଦ୍ଧା
ସବୁରି ମୁଣ୍ଡରେ ଶାଢ଼ୀ ଦେଲା ଥାଟ ପିନ୍ଧା ।
ପାଦଭରେ ପୃଥିବୀ ଯେ କମ୍ପୁଅଛି ହେଲେ
ଦେବେ ରହି ନ ପାରନ୍ତି ଆକାଶ ମଣ୍ଡଳେ ।

## କର୍ଣ୍ଣାଟେଶ୍ୱର ନିକଟକୁ ମୁରାସୁରର ଚିଟାଉ

କହନ୍ତି ବିଧାତା ଶୁଣ ହେ ନାରଦ ମୁନି
କର୍ଣ୍ଣାଟ ଦେଶେ ରହିଲା ମୁର ସୈନ୍ୟ ଘେନି ।
ସେ ଦେଶେ କର୍ଣ୍ଣାଶେଶ୍ୱର ନାମେ ମହାରାଜା
ଏକା ମୁରାସୁରକୁ ନ କଲା ଆସି ପୂଜା ।
ମୁର ଅସୁରର ମନ୍ତ୍ରୀ ଅଟଇ ସୁବିଜ୍ଞ
ଛତିଶ ଗୁଣରେ ସେହୁ ଅଟେ ମହାଭାଗ ।
ସୁବିଜ୍ଞ ମନ୍ତ୍ରୀକି ମୁର ରାଇଣ ପାଶକୁ
ବୋଇଲେ ଶ୍ରୀମୁଖ ମୋର ଦେଖ ଏ ରାଜ୍ୟକୁ
ତାଳପତ୍ର ଗୋଟିଏ ତୁ ସଜାଡ଼ି ଏ ଲାଗେ
କର୍ଣ୍ଣାଟେଶ୍ୱରକୁ ମୋର ଆଜ୍ଞା ଲେଖ ବେଗେ
ଏ କେଉଁ ଗାରିମା ପଣେ ଆସିନାହିଁ ଏଥେ
ସବୁ ରାଜା ଦରଶନ କଲେ ଆସି ମୋତେ ।
ଏବେ ତୁମ୍ଭେ ଆଜ୍ଞା ଲେଖ ମୋର ପତ୍ରାବଳୀ
ପ୍ରବେଶ ମାତ୍ରକେ ରାଜା ଆସୁ ବେଗେ ଚଳି
ଶୁଣି ସୁବିଜ୍ଞ ମନ୍ତ୍ରୀ ଲେଖିଲା ଶ୍ରୀମୁଖ
ବ୍ରହ୍ମାଙ୍କର ପୁତ୍ର ମୁର ଦାରୁଣ ଯେ ରକ୍ଷ ।
ଶିରୀ ଶିରୀ ମହାଦେବ ଚରଣେ ନମସ୍ତେ
ଶ୍ରୀ ପିତାମହ ଶ୍ରୀପାଦପଦ୍ମରେ ନମସ୍ତେ ।

ଶ୍ରୀ ବିଶ୍ୱନାଥ ପରମ ଆତ୍ମା ମୋର ଗୋତ୍ର
ଶ୍ରୀ ନିରାକାରଙ୍କ ନାଭିକମଳୁ ସମ୍ଭୃତ ।
ବ୍ରହ୍ମା ବିଷ୍ଣୁ ମହେଶ୍ୱର ଆଦି ଯେ ପ୍ରଦୀପ
ବ୍ରହ୍ମାଙ୍କ ପୁତ୍ର ଦାରୁଣ ମୁର କୁଳଦୀପ ।
ଶ୍ରୀ ଅନାଦି ନାଥଙ୍କର ମାଧୁର୍ଯ୍ୟ କୃପଣ
ପାପ ପରଶୁ ସେ ତୀକ୍ଷ୍ଣ ଖଡ଼ଗ ଧାରଣ ।
ସାଧୁବଳୀ ପୁରୁଷ ଯେ ଅଟେ ମହାମେରୁ
ଶ୍ରୀ ଧବଳାଙ୍ଗ ମୂରତି ଦେବଙ୍କର ଗୁରୁ ।
ଏ ଚଉଦ ଭୁବନକୁ ପରମ କରତା
ତ୍ରିଭୁବନ ପୁରକୁ ଯେ ମହା ବ୍ରହ୍ମାବେତ୍ତା ।
ଶ୍ରୀ ମହାଈଶ୍ୱର ମହାପ୍ରଭୁଙ୍କ ଆରାଧେ
ଶିରୀ ବିଶ୍ୱନାଥ ମହାଦେବଙ୍କ ପ୍ରସାଦେ ।
ଶ୍ରୀ ଜମ୍ବୁଦ୍ୱୀପ ପୃଥ୍ୱୀକି ଯେହୁ ଆଦି ପାଟ
ସଂସାରେ ଦୁଷ୍ଟଜନଙ୍କ କୁଳିଶ କପାଟ ।
ଏ ମହୀ ଭୁବନକୁ ଯେ ଅଟେ ଜଗଜ୍ଜିତା
ବୀରାଧି ବୀରବର ଯେ ପ୍ରାକର୍ମେ ଶକତା ।
ସକଳ ସ୍ତିରୀଙ୍କ ନେତ୍ରେ କମଳରଞ୍ଜନ
ରତିଶାସ୍ତ୍ରେ ବଳବନ୍ତ ଗରବଗଞ୍ଜନ ।
ଦେବ ନାଗଲୋକ ଯକ୍ଷ ଗନ୍ଧର୍ବ କିନ୍ନର
ଏମାନଙ୍କର ସହିତେ ଯେତେ ବିଦ୍ୟାଧର ।
ଗ୍ରହଗଣ ସିଦ୍ଧଗଣ ସାଧ୍ୟ ଯେ ସାଧକ
ରକ୍ଷ ଯେ ରାକ୍ଷସଗଣ ଯେ କାଳକଣ୍ଟକ ।
ବ୍ରାହ୍ମଣ କ୍ଷତ୍ରିୟ ବୈଶ୍ୟ ହିନ୍ଦୁ ଚାରିଜାତି
ଛପନ କୋଟି ଯେ ଜୀବଜନ୍ତୁ ଅଧିପତି ।
ଚଉଦପୁର ଉପରେ ଅଟେ ଅଧିପାଳ
ଭୂଲୋକ ଉପରେ ଯେହୁ ଅଟେ ମହାମଲ୍ଲ ।
ସ୍ୱର୍ଗଲୋକ ଭୂଲୋକ ଯେ ଆଉ ମହାଲୋକ
ଜନଲୋକ ତପଲୋକ ଆଉ ସତ୍ୟଲୋକ ।
ଆବର ବ୍ରହ୍ମଲୋକ ଯେ ଏହୁ ଆଦିକରି
ଏହି ସମସ୍ତ ଲୋକଙ୍କୁ ସ୍ଥାପନ ଯେ କରି ।
ଅମର ସ୍ୱର୍ଗପୁରକୁ ଯାହା ଧାଡ଼ି ଟେକ
ଭୂତ ଭବିଷ୍ୟତ ବର୍ତ୍ତମାନର ନାୟକ ।
ଏହି ତ୍ରିକାଳ ଭୁବନ ବଳିଷ୍ଠ ବୃକ୍ଷଣ
ଯେହୁ ରାକ୍ଷସଗଣଙ୍କ ମାନ ଉଦ୍ଧାରଣ ।
ଦେବଗୁରୁ ମନ୍ତ୍ରୀଗୁରୁ ଅସୁରଙ୍କ ଗୁରୁ
ଶାସ୍ତ୍ରଙ୍କର ଗୁରୁ ସୁରଗୁରୁ ଧନୁଗୁରୁ ।
ଯାବଚ୍ଚନ୍ଦ୍ର ସୂର୍ଯ୍ୟ ପରିପାଳଙ୍କର ଗୁରୁ
ଶ୍ରୀ ମହାଦେବ ପ୍ରସାଦେ ସର୍ବ କାର୍ଯ୍ୟହରୁ ।
ଜନ୍ତୁପତି ପରେ ବୀର ଶୂଳବାନା ସାଜେ
ଦ୍ୱିତୀଯମ ପୃଥ୍ୱୀ ମଧ୍ୟେ ଯେ ମଲ୍ଲ ବିରାଜେ ।

ଇନ୍ଦ୍ର ଯମ ନଇରତ ଅନଳ ବରୁଣ
ପବନ କୁବେର ଈଶାନର ସହିତେଣ ।
ଏ ଅଷ୍ଟ ଲୋକ ଉପରେ ରକ୍ଷକ ପାଳକ
ଶ୍ରୀ ମୁରାସୁର ଆଶ୍ରୟ ଦଶଦିଗ ଯାକ ।
ପ୍ରଥମରେ ଜମ୍ବୁଦ୍ୱୀପ ଯେ କରଞ୍ଚ ଦ୍ୱୀପ
କୁଶଦ୍ୱୀପ ପ୍ଲକ୍ଷଦ୍ୱୀପ ଶାକଲ୍ୟ ଯେ ଦ୍ୱୀପ ।
ଶାଲ୍ମଳୀ କ୍ରୌଞ୍ଚ ସହିତେ ଅଟେ ସାତଦ୍ୱୀପ
ଏବେ ଶୁଣ ସାତ ସମୁଦ୍ରର ନାମ ନୃପ ।
ଆଦ୍ୟେ ଲବଣ ସମୁଦ୍ର ଇକ୍ଷୁ ଯେ ସମୁଦ୍ର
ସୁରା ଘୃତ ଦଧି ମଧୁ ପୂରିତ ସମୁଦ୍ର ।
ସମସ୍ତଙ୍କ ମଧ୍ୟେ କ୍ଷୀର ସମୁଦ୍ର କାରେଣୀ
ସପ୍ତ ସମୁଦ୍ର ଉପରେ ଯେ ମଉଡମଣି ।
ସତ୍ୟ ଯେ ତ୍ରେତା ଦ୍ୱାପର ଯୁଗ କଳିଯୁଗ
ଏ ଚାରିଯୁଗକୁ ବୀର ମରଦନ ଭୋଗ ।
ଶତ୍ରୁ କୁଳଙ୍କର ଯେହୁ ଦରପଗଞ୍ଜନ
ଶ୍ରୀମୁର ଅସୁର ତିନିପୁରରେ ରାଜନ ।
ଯାହାର ଥାଟ ସଇନ୍ୟ ଅଛନ୍ତି ଅଲେଖ
ସେହୁ ମୁର ସେନାପତି ମହିମା ଅସଂଖ୍ୟ ।
ପ୍ରଥମରେ ବୃତ୍ରାସୁର କାଳକେତୁବୀର
ସୌଦାସ ପ୍ରଳମ୍ବାମୁର ମୁକୁନ୍ଦା ଅସୁର ।
ମୁଦ୍ଗା ବୀରଜା କଳପା ଅସୁର ଅଲୋପି
ଲୋହକାଳ ଜଳଘଣ୍ଟ ମଦନ ସଲେପି ।
ବକ୍ରମାଳି ରଣଚୂଡ଼ ବୀର ରଣକେଶୀ
ଚନ୍ଦ୍ରମାଳୀ ରଣଜିତ ସେ ହରିଣ୍ୟକେଶୀ ।
କୃତକେଶୀ ଖଡ଼ଗ ଯେ ବାରାନିଧି ବୀର
ବିନ୍ଧ୍ୟକେଶରୀ ଆଦି ଯେ ସୈନ୍ୟ ଅଗୋଚର
ବୀରମାନଙ୍କ ଉପରେ ଯେ ମଉଡ଼ମଣି
ଯୁଗାନ୍ତର ଯୁଗପତିଗଣଙ୍କ ଅଗ୍ରଣୀ ।
ମେରୁ ମଣ୍ଡଳ ପର୍ଯ୍ୟନ୍ତ ଯାହାର ଅଧୀନ
ସର୍ବଦେବ ଆଖଣ୍ଡଳ ମଣ୍ଡଳ ପାଳନ ।
ପଶୁପତି ଚୁଡ଼ଙ୍ଗ ଯେ ନେପାଳ ଭୂପାଳ
ଉଦେରାଷ୍ଟ୍ର କଉଶିକ ଯେ ବୀର ମଣ୍ଡଳ ।
ଗୋପାଳାଦି ଶାର୍ଙ୍ଗ ଅଙ୍ଗ ବଙ୍ଗ ଯେ କଳିଙ୍ଗ
ମହାମରହଟ୍ଟା ମିଶି ବଙ୍ଗଳା ତୌଳାଙ୍ଗ ।
ଡୁହୁଡ଼ି ମହେନ୍ଦ୍ର ଆଉ ମାଳବ ସୌରାଷ୍ଟ୍ର
ଶିଖାପୁର ମଲ୍ଲବାର ଉପକୂଳ ରାଷ୍ଟ୍ର ।
ବିଜୟ ନଗର ଆଦିକରି ଯେ ନଗର
ଏକା ମୁରାସୁର ରାଜା ଅଟେ ସଭିଙ୍କର ।
ତ୍ରୟବିଂଶ ଗୋଟି ପୁର ଛପନ ନଗର
ମଧ୍ୟରେ ମୁରା ଅସୁର କରେ ଅଧିକାର ।

ଏ ମର୍ତ୍ତମଣ୍ଡଳେ ଏକମାତ୍ର ରାଜା ସେହୁ
ଦୁଷ୍ଟ ମରଦନ ବୀରବର ମହାବାହୁ ।
ଶରଣ ରକ୍ଷକଙ୍କୁ ସେ ଅଟେ ମହାମେରୁ
ଯାହାର ନାମ ଶ୍ରବଣେ କମ୍ପୁଅଛି ମେରୁ ।
ସୁର ସାଧ ଉପରେ ସେ ଅଟେ ମହାମଲ୍ଲ
ସୁଜନ ଜନ ସୋଦର ଦୁଷ୍ଟ ଦର୍ପ ଦଳ ।
ଦେବାଧିଦେବଙ୍କ ପରେ ସେହୁ ଶିରୋମଣି
ରାଜାଧିରାଜେଶ୍ୱରଙ୍କ ଅଟେ ମୌଡ଼ମଣି ।
ସର୍ବଲୋକ ସ୍ଥାପନର ଅଟେ ଅଧିକାରୀ
ଅଭୟଯୋଗ ଈଶ୍ୱର ଜମ୍ବୁଦ୍ୱୀପ ଧାରୀ ।
ସକଳ ଯୁବତୀମାନଙ୍କର ମନସିଜ
ଶୃଙ୍ଗେ ବଳବନ୍ତା ସୁଧାନିଧିପୁର ରାଜ ।
ଶରଣ ଜନ ରକ୍ଷଣ ସେ ମହାଦେବତା
ଦେବାଧି ଦେବରାଜ ସେ ବୀରବର କର୍ତ୍ତା ।
ଚତୁର୍ମୁଖଙ୍କର ସେହୁ ଅଟେ ନିଜପୁତ୍ର
ଉର୍ବଶୀ ନାମେ ଅପ୍‌ସରା ଅଟେ ଯାର ମାତ
ଦୁଇ ସହୋଦର ମୁର ଦାରୁଣ ବୋଲିଣ
ଦେବଦୈତ୍ୟ ଗନ୍ଧର୍ବରେ କରେ ରାଜପଣ ।
କର୍ଣ୍ଣାଟ ଦେଶକୁ ତାର ଶ୍ରୀମୁଖ ଆଦେଶ
କର୍ଣ୍ଣାଟ ରାଜର ଶିରୀମୁଖ ପତ୍ର ରୋଷ ।
ତୋହର ସଇନ୍ୟ ସଖା ସଙ୍ଗତରେ ଘେନି
ଶ୍ରୀମୁଖ ପ୍ରବେଶ ମାତ୍ରେ ଆସ ଏହିକ୍ଷଣି ।
ବେଗେ ଉଠିଆସ ତୁମ୍ଭେ ବେଗେ ଉଠିଆସ
ଦେଖା ଦରଶନ ଘେନି ବେଗେ ଉଠିଆସ ।
ମୁରାସୁର ରାଜାଙ୍କର ଅଟେ ଏ ଆଦେଶ
ଯେହୁ ଅଟେ ବୀରବର ପୃଥିବୀର ଈଶ ।
ଶ୍ରୀମୁରାସୁର ରାଜାଙ୍କର ଚରଣେ ଶରଣ
ପଶ ବେଗେ ଆସି ତୁମ୍ଭେ କର୍ଣ୍ଣାଟ ରାଜନ ।
ସୁବିଜ୍ଞ ମହାମନ୍ତ୍ରୀଙ୍କ ଶ୍ରୀମୁଖ ଲେଖନ
ବିପ୍ର ପୀତାମ୍ବର ଦାଶ କରିଲା ବର୍ଣ୍ଣନ ।
ଏ ରୂପେ ଶ୍ରୀମୁଖ ପତ୍ର ଦେଲା ମୁରାସୁର
ଲେଖନକୁ ମୁଦ କଲେ କାଙ୍କୋଳା ଅସୁର ।
ଶ୍ରୀମୁଖ ଗୋଟି ସମ୍ପୂର୍ଣ୍ଣ ହେଲା ସଦା ଜୟେ
ବିପ୍ର ପୀତାମ୍ବର ଦାଶ ଶରଣ ସେ ପାଏ ।



## କର୍ଣ୍ଣାଟେଶ୍ୱର ନିକଟରେ ଦୂତର ପ୍ରବେଶ ଓ ପତ୍ରପାଠ

ବଦନ୍ତି ଯେ ବେଦବ୍ରହ୍ମା ଶୁଣ ହେ ନାରଦ
ଶ୍ରୀନୃସିଂହ ପୁରାଣ ଏ ଅଟେ ମୋକ୍ଷପଦ ।

ଏହିରୂପେ ମୁରାସୁର ଲେଖଇ ଶ୍ରୀମୁଖ
ଜମ୍ଭୁ ଅଜମ୍ଭୁ ଦୁହିଁଙ୍କୁ ଅଣାଇଲା ପାଖ ।
କାଙ୍କୋଳା ଦୈତ୍ୟର ସେନାପତି ସେ ଅଟନ୍ତି
ତାହାଙ୍କୁ ଯେ ମୁରାସୁର ଡକାଇଲା କତି ।
ଖଡୁ ଶାଢ଼ୀ ଦେଇ ତାଙ୍କୁ କହେ ମୁର ପୁଣି
ଶୃଙ୍ଖଳ ଦୈତ୍ୟର ପୁତ୍ର ଅଟନ୍ତି ଯେ ବେନି ।
ବୋଇଲାରେ ବାବୁ ତୁମେ ଯାଅ ଶୀଘ୍ର ହୋଇ
କର୍ଣ୍ଣାଟ ଦେଶକୁ ମୋର ଆଜ୍ଞାଦିଅ ନେଇ ।
ବୋଲ କେଉଁ ବଡ଼ପଣେ ରହିଛୁ ନଗରେ
ମୁରାସୁର ରାଜା ପଡ଼ିଅଛନ୍ତି ପଦାରେ ।
ସକଳ ଦେଶର ରାଜା ଚରଣେ ଖଟିଲେ
ଧରମ ନ ଛୁଡ଼ି ସେହୁ ଶ୍ରୀମୁଖ ଲେଖିଲେ ।
ଏହିକଥା କହି ମୋର ଆଜ୍ଞା ତାକୁ ଦିଅ
ସଙ୍ଗେ ଘେନିଆସ ତାକୁ ଦର୍ଶନ କରାଅ ।
ଶୁଣି ଜମ୍ଭୁ ଅଜମ୍ଭୁ ଯେ ଯୋଡ଼ି ବେନିକର
ଚଳିଲେ ଶ୍ରୀମୁଖ ଘେନି କର୍ଣ୍ଣାଟ ଦେଶର ।
ଅସୁର ଯେ ନାମରୂପୀ ଶୂନ୍ୟେ ଗଲେ ଉଡ଼ି
ତେୟାଶୀ ଯୋଜନଯାଏ କାୟା ଗଲାବଢ଼ି ।
ଉଡ଼ିବା ଘାତରେ ଶୂନ୍ୟେ କମ୍ପେ ଘୋର କାୟେ
ଜଗତୀ ଉପରେ ଦେଖେ ସେ କର୍ଣ୍ଣାଟ ରାୟେ
ମନ୍ତ୍ରୀକୁ ବୋଇଲେ ଆହେ ଦେଖ ଏହୁ କିସ
କି ଅବା ମେରୁ ମନ୍ଦର ବଢୁଛି ଆକାଶ ।
କି ଅବା ସପ୍ତସମୁଦ୍ର ଚଳିଲେ ଆକାଶେ
କି ଅବା ପ୍ରଳୟ ଘୋଟିଯିବ ଚଉଦିଗେ ।
ଏ କଥାତ ବିପରୀତ ଲାଗୁଅଛି ମୋତେ
ରାଜାର ବଚନେ ମନ୍ତ୍ରୀ ଚାହେଁ ଶୂନ୍ୟପଥେ ।
ନିରେଖି ଦେଖି ଚିହ୍ନିଲା ଦୈତ୍ୟଙ୍କର ମୂର୍ତ୍ତି
ମଥା ଉପରେ ଚିଟାଉ ବହି ସେ ଆସନ୍ତି ।
ଦୂତ ବୋଲିଣ ସେ ପାଞ୍ଚ ରାଜା ଆଗେ କହି
ଏଥିଉତ୍ତାରେ ଯେ ଶୂନ୍ୟୁ ଖସି ବେନିଭାଇ ।
ସଭାର ମଧ୍ୟରେ ଯାଇ ପ୍ରବେଶିଲେ ବୀର
ବିକ୍ରମସିଂହ ପରାୟେ ଦିଶଇ ଶରୀର ।
କର୍ଣ୍ଣାଟକୁ ଚାହିଁ ଜମ୍ଭୁ ଅଜମ୍ଭୁ ସେ ଦୁହେଁ
ଶ୍ରୀମୁଖ ଫେଡ଼ି କହନ୍ତି ଉଠ ଉଠ ରାୟେ ।
ନିଉଛାଳି ହୋଇ ବେଗେ ମଥାପରେ ଧର
ପାୟେ ପଡ଼ି ଶୋଇ ସିଂହାସନେ ପୂଜାକର ।
ଶ୍ରୀମୁରାସୁର ଅଛନ୍ତି ତୋତେ ଆଜ୍ଞା ଲେଖି
ଶ୍ରୀମୁଖେ ନ ଡରି କେଡ଼େ ଅଛୁ ମୁଣ୍ଡ ଟେକି ।
ଯାହାର ଆଜ୍ଞାକୁ ଶୁଣି କମ୍ପେ ମେରୁ ଗିରି
ତାହାଙ୍କୁ ନ ଭେଟି ତୁହି ରହିଛୁ କିପରି ।

ତୋ ରାଜ୍ୟକୁ ଆସୁ ଆସୁ କରୁ ହେଲା ଏତେ
ଦୂରରେ ଥିଲେ ଶାଖୋଳା କରନ୍ତୁ ତୁ କେତେ
ଧର୍ମ ରକ୍ଷାକରି ତୋତେ ଦେଲେ ସେ ସନ୍ଦେଶ
ଏଥକୁ ପାଞ୍ଚିଣ ବେଗେ ଶରଣ ଯା ପଶ ।
ତାହା ଶୁଣି କର୍ଣ୍ଣାଟର କମ୍ପିଲା ମୁକୁଟ
ଅଧର କାମୁଡ଼ି ବାକ୍ୟ କହେ କରି ଆଣ୍ଟ ।
ଖଡ଼ଗକୁ ଝମକାଇ ନିଶେ ହସ୍ତ ମାରେ
ରକ୍ତପଦ୍ମ ପ୍ରାୟେକ ଯେ ନେତ୍ର ବେନିକରେ
ବୋଇଲା କାହିଁର ତୁମ୍ଭେ ଅଟରେ ପାମର
ଭାଟଙ୍କ ପରାୟେ ବାକ୍ୟ କହୁଛ ନିଷ୍ଠୁର ।
କେଉଁ ଦେଶ ରାଜା ସେ ରେ ଅଟେ ମୁରାସୁର
ମୋତେ ଆଜ୍ଞା ଲେଖିବାକୁ କେତେକେ ମାତର ।
ସୂର୍ଯ୍ୟବଂଶୀ ବୋଲି ମୋତେ ନକଲା ସେ ଭୟ
ମୂର୍ଖପଣେ ଚିଟାଉକୁ ଲେଖିଲା ମୋ ପ୍ରାୟ ।
ଅକୁଳ ଅମୂଳ ପୁଣି ଅଯୋଗ୍ୟ ଯେ ଲୋକ
ଇଚ୍ଛାଏ ସେ ବଡ଼ହୋଇ କହୁଥାନ୍ତି ଟେକ ।
ଦୂତ ନୋହିଥିଲେ ତୁମ୍ଭେ ପାନ୍ତ ପରାଭବ
କହ ଯା ତୋ ବାପକୁ ସେ ମୋତେ କି କରିବ
ଇଚ୍ଛାଯେବେ ଅଛି ତାର ମୋତେ ଆସି ଭେଟୁ
ପାତ୍ରପଣେ ଶାଢ଼ୀ ଦେବି ପାଦେ ମୋର ଖଟୁ
ଜମ୍ଭୁ ଅଜମ୍ଭୁ ହସିଲେ ହୋଇ ଟହ ଟହ
ବୋଇଲେ ଆଚ୍ଛା ସମ୍ଭାଳି ଏବେ କିନା ରହ ।
ବ୍ରହ୍ମାଙ୍କର ପୁତ୍ର ବୋଲି ନ ଚିହ୍ନିଲୁ ତାଙ୍କୁ
ଆପଣେ ତୁକାର ଭାଷା ବୋଇଲୁ ମନକୁ ।
ଜମ୍ବୁଦ୍ୱୀପଯାକେ ସେ ଯେ ଅଟେ ମହାରାଜା
ଅମରଗଣ କରନ୍ତି ତାର ପାଦ ପୂଜା ।
କିଞ୍ଚିତରେ ଆଜ୍ଞା ଯେବେ ଥାନ୍ତା ପ୍ରଭୁଙ୍କର
ମୋଡ଼ିଣ ମୁଣ୍ଡ ଛିଣ୍ଡାଇ ଯାଆନ୍ତୁ ତୋହର ।
ବଡ଼ିମାପଣେ କହନ୍ତେ ଆଉ ହେବ କିସ
ଏତେ ବୋଲି କରି ଦୁହେଁ ଗମିଲେ ଆକାଶ ।



## କର୍ଣ୍ଣାଟେଶ୍ୱର ସହିତ ମୁରାସୁର ର ଯୁଦ୍ଧ

କର୍ଣ୍ଣାଟର ରାଜ୍ୟ ଦେଖୁ ଦେଖୁ ଗଲେ ଉଡ଼ି
ଶୁଡିଲେ ମୁରର ଆଗେ ଯାଇ ପାଏ ପଡ଼ି ।
ସବୁକୁ ଘେନିଣ ରାଜା କରିଅଛି ସଭା
ଏମନ୍ତ ସମୟେ ଯାଇ ଦୁହେଁ ହେଲେ ଉଭା ।
ଭୋ ଦେବ ମଣିମା ବୋଲି ଡାକନ୍ତି ଉଚ୍ଚରେ
ଖୁଣ୍ଟିଆ ଜଣାଏ ଯାଇ ରାଜାର ଛାମୁରେ ।
ବୋଇଲାତ ଗଲେ ଦୂତେ ଆସିଲେକ ବେଗେ
ଆଜ୍ଞା ହୋଇଲେ କହିବେ ଚାର ତୁମ୍ଭ ଆଗେ
ଶୁଣିଣ ସେ ମୁରାସୁର ଦୂତମୁଖ ଚାହିଁ
ବୋଇଲା କହ କର୍ଣ୍ଣାଟ ଅଛି କିସ କହି ।
ଦୂତ ବୋଇଲା ହେ ଦେବ ଗଲୁ ଆମ୍ଭେ ଚଳି
କହିଲୁ କର୍ଣ୍ଣାଟେଶ୍ୱର ଆଗେ ଯାଇ ମିଳି ।
ଦେଖି ହାସ୍ୟ କଲା ସେହୁ ତୁମ୍ଭ ଆଜ୍ଞା ଶୁଣି
କାହିଁର ରାଜା ବୋଲି ସେ କହିଲାକ ପୁଣି ।
ବୋଇଲା ଆମ୍ଭେ ସିନାରେ ଅଟୁ ରାଜସିଂହ
ସୂର୍ଯ୍ୟବଂଶକୁ ଧାରଣା କ୍ଷତ୍ରିକୁଳ ସିଂହ ।
ମୁରାସୁର ବୋଲି ସେହୁ କାହାର ଆତ୍ମଜ
ତୁଚ୍ଛାକୁ ତୁ ଆପେ ଆପେ ବୋଲାଉଛି ରାଜ ।
ଶୁଣି କମ୍ପିଲା ସେ ମୁରାସୁର ବେନିଭୁଜ
ମନ୍ତ୍ରୀକୁ ବୋଇଲା ମୋର ଥାଟ ଆଗେ ସାଜ
ଆଜି କର୍ଣ୍ଣାଟର ମୁଣ୍ଡ ପକାଇବି କାଟି
ମାଡ଼ିଣ ବସିବି ଯାଇ ସିଂହାସନ ଗୋଟି ।
ସେନାପତିମାନେ ମୋର ଯାନ୍ତୁ ଆଗୁଆଣି
ବେଢ଼ନ୍ତୁ ଚଉଦିଗେ ଯେ ଯାହା ସୈନ୍ୟଘେନି
ଏତେ ବୋଲି ମୁରାସୁର ଝମକାଇ ସୃଷ୍ଟି
କୁରାଳର ଚକ୍ରପ୍ରାୟ କରି ବେନି ଦୃଷ୍ଟି ।
ବିଜୟା ରଥକୁ ରାୟେ ସୁମରିଲା ବେଗେ
ହର ପ୍ରସାଦେ ସେ ଯାନ ମିଳିଲାକ ଆଗେ ।
ସେ ରଥେ ବସିଲେ ମୁରଦାରୁଣ ଯେ ବୀରେ
ମନରେ କହନ୍ତେ ରଥ ଚଳେ ଧୀରେ ଧୀରେ
ରାଜାର ଗମନ ଦେଖି ସରବ ଅମାତ୍ୟେ
ବୀରତୁର ବଜାଇଣ ଗଲେ ଯେଝାମତେ ।
ଆବର ବଜାଉଛନ୍ତି କଂସାଳ କାହାଳି
ଦୋସରା ମୃଦଙ୍ଗ ଝାଞ୍ଜ ବାଜା ରାମତାଳି ।
ଘୁମୁ ଘୁମୁ ଘୁମୁରା ଯେ ବାଜେ ଶଙ୍ଖ ଯୋଡ଼ି
ଦମାଲୁ ମର୍ଦ୍ଦଳ ଦୁଲୁ ଦୁଲୁ ଘିଡ଼ି ଘିଡ଼ି ।
ଦୋସରା ପଟହ କମ ଭେଟି ଏକ ପୁଡ଼ା
ଦୋପାଟିଆମହୁରୀ ଯେ ବାଜେ ଯୋଡ଼ ଯୋଡ଼ ।
ଢୋଲ ବୀଣା ନାଗରା ଯେ ବେଣୁ ଶିଙ୍ଗାଧ୍ୱନି
ଚଳିଲା ମୁର ଅସୁର ଦୈତ୍ୟ ସୈନ୍ୟ ଘେନି ।
ଦଳ ଦଳ ହୋଇଣ ଯେ କମ୍ପେ ତିନିପୁର
ଆଗୁଆଣି ହୋଇ ଥାଟେ ଚଳେ ବୃକାସୁର ।
ଆବର କାଳକେତୁ ଯେ ବକ୍ରମାଳି ଚଳେ
ରଣଚୁଡ଼ ଚନ୍ଦ୍ରହାସ ଏ ଦୁହିଁଙ୍କ ତୁଲେ ।
ମୁକୁନ୍ଦା ସଉଦାସ ଯେ କୃତ ବୀରଘଣ୍ଟ
ପ୍ରଳୟା ଯେ ବାହାରିଲା ମାରି ବାହାସ୍ଫୋଟ ।

ବିରାଜ ମଦନ ମୁଦ୍ରାସୁର ମହାବଳୀ
ଆଲୋପି ସିଲୋପି ଜଳଘଣ୍ଟ ସୁରମାଳି ।
କାଙ୍କୋଳୀ ଯେ ରଣକେଶୀ ବୀର କୃତକେଶୀ
ଖଡ଼ିବା ହିରଣ୍ୟକେଶୀ ଗଲେ ସର୍ବ ମିଶି ।
ଫଳିଫଳ ସାବେର୍ଣ୍ଣ ଯେ ଲଙ୍କିଆ ମୁଦ୍‌ଗର
ଯେ ଯାହା ବାହନ ଘେନି ଚଳିଲେ ଅସୁର ।
ଅଶୀଯୁଣ ମାଡ଼ି ସୈନ୍ୟଗଲେ ଚଉଦିଗେ
ବେଢ଼ନ୍ତେ କର୍ଣ୍ଣାଟେ ଦୂତ ଦେଖିଲା ତା ବେଗେ
ରାଜାର ଛାମୁରେ ଯାଇ କହିଲା ତପୂର
ବୋଲେ ସୂର୍ଯ୍ୟବଂଶୀ ଶୁଣ କର୍ଣ୍ଣାଟ ଈଶ୍ୱର ।
ଅନେକ ସୈନ୍ୟ ପଡ଼ିଲେ ଆସି ରାଜ୍ୟେ ମାଡ଼ି
ଏହିକ୍ଷଣି ଦେଖ ସ୍ୱାମୀ ଅଇଲି ମୁଁ ଛାଡ଼ି ।
ଜାଣି କର୍ଣ୍ଣାଟ ଈଶ୍ୱର ଉଠି ତଡ଼ବଡ଼େ
କି ସୈନ୍ୟ ବୋଲି ଚାହିଁଲେ ଜଗତୀର ବାଡ଼େ
ଦେଖିଲେ ସୈନ୍ୟ ଆସନ୍ତି ମାଡ଼ି କେତେବାଟ
ମନ୍ତ୍ରୀଙ୍କୁ ବୋଇଲେ ମୋର ସାଜ ବେଗେ ଥାଟ
ଦେଖୁ ଦେଖୁ ଚାଣ୍ଡାଳେ ମୋ ରାଜ୍ୟେ ଗଲେ ପଶି
ଯହିଁ ଦେଖିଲେ ମାରନ୍ତି ପ୍ରାଣୀଙ୍କୁ ନିଆଶ୍ରି ।
ଶୁଣି ମନ୍ତ୍ରୀବର ଚଳିଗଲା ରାଜା ବାକ୍ୟେ
ତିନିପଦ୍ମ ସୈନ୍ୟ ଘେନି ମିଳି ରାଜା ପାଖେ ।
ବୋଉଲାରେ ମୂର୍ଖ କିମ୍ପା ଆସିଅଛୁ ଧାଇଁ
ପରଦେଶ ବୋଲି ତୁମ୍ଭ ମନେ ଭୟ ନାହିଁ ।
ଆଜ ନିଶ୍ଚୟ ପୋଛିଲା ଯମ ତୁମ୍ଭ ପାଞ୍ଜି
ଏତେ ବୋଲିଣ ଉଠିଲା ମନ୍ତ୍ରୀ ସୈନ୍ୟସାଜି ।
ସେ ସୈନ୍ୟମାନଙ୍କ ନାମ ଶୁଣ ହେ ନାରଦ
ଇନ୍ଧନ ମହାବଳୀ ଯେ ବିକୃତ ଅକୁନ୍ଦ ।
କାରଣ ବିତରଣ ଯେ ମଦନ ସୂଦନ
ପରସନ୍ନ ପରାଭବ ପବନ ଭୁବନ ।
ଅଚଳ ବିଚଳ ସହିତରେ ମହାଖେଳ
ପାତାଳ ପଙ୍କତଳ ଯେ କୁଶଳ ଭୁଗୋଳ ।
କମ୍ବୁପଦ ରୁକ୍ଷଧ୍ୱଜ ଅନୁଜ ସାନୁଜ
ସରୋଜ ବିରୋଜ ମହାତେଜ ଯେ ପଙ୍କଜ ।
ହଳୟ ବଳୟ ଆଉ ନିଳୟ ମଳୟ
କୁବଳୟ ସୁବଳୟ ଜଳୟ କଳୟ ।
କଜ୍ଜଜିତ ସ୍ୱଜ୍ଜଜିତ ଅଜ୍ଜଜିତ ବହି
ଅରୁଣ ଦାରୁଣ କୃଷ୍ଣାରେଣ ଧ୍ରୁବ ଦେହୀ ।
ଏରୂପେ ଛତିଶ ରଥ ଘେନି ମନ୍ତ୍ରୀବର
ସୈନ୍ୟ ଘେନି ଓଗାଳିଲା ଅସୁର ଆଗର ।
ରଥିଙ୍କର ରଥିଙ୍କର ହେଲା ପରିତାଳ
ସେନାସଙ୍ଗେ ସେନା ଲଗାଇଲେ ରଣଗୋଳ

ରକତେ କର୍ଦ୍ଦମ ହୋଇଗଲା ବସୁମତୀ
ନିରନ୍ତରେ ପଡ଼ିଲେ ସେ ମଡ଼ା ଚଉକତି ।
ମହାବତାସେ ଯେସନେ ଭାଙ୍ଗେ ରମ୍ଭାବନ
ସମର ମଣ୍ଡଳଯାକ ଦିଶିଲା ତେସନ ।
କେ ପଡ଼ିଲେ ଜାନୁଭଗ୍ନ ହୋଇ ମହୀଲୋଟି
ଗୁରୁଜ ଘାତେ କାହାର ଅଙ୍ଗ ଗଲା ଫାଟି ।
ମହାଘୋର ସଂଗ୍ରାମ ଯେ ହେଲା ବେଳୁବେଳ
ନାରାଚେ ନାରାଚ ମୁନ ହୁଏ ପରିତାଳ ।
ରାଉତଙ୍କ ତୁଳେ ଯୁଦ୍ଧ ରାଉତ ଯେ କଲେ
ହସ୍ତୀଙ୍କର ତୁଳେ ହସ୍ତୀମାନେ ଯୁଦ୍ଧକଲେ ।
ପଦାତି ପଦାତି ଯୁଦ୍ଧ କଲେ ଅସ୍ତ୍ରଧରି
ଏରୂପେ ସଂଗ୍ରାମେ ବେନି ଥାଟ ମରାମରି ।
ପରିଘାଇ ସମର ଯେ ବାଜେ କୁତୂହଳେ
ଉଚ୍ଛାଏ କରନ୍ତି ଘୋରଯୁଦ୍ଧ ଅଙ୍ଗଛଳେ ।
ଗଦା ମୁଦ୍ଗର ଛେଲ ଶକତି କୋଦଣ୍ଡ
ଲଙ୍କିଆ କମାଣ ଯଷ୍ଟି ଅସିପତ୍ର ଦଣ୍ଡ ।
କୁନ୍ତ ଆବର ପରଶୁ ଖଡ୍‌ଗ ତୀକ୍ଷଣ ମୁନା
ଶାବେଳି ଯେ ଲୌହଦଣ୍ଡ ଆଦି ବଜ୍ରସେନା ।
ଲୌହ ବରଛା ବାଙ୍କେଡ଼ି ଚକ୍ର ଛୁରୀ କାତି
ଏକୁ ଆରେକର ଅଙ୍ଗେ ଦେଖାଇ ମାରନ୍ତି ।
ପେଷନ୍ତି ସେ ଅପ୍ରମିତ ଶସ୍ତ୍ର ଗରୁଟାଣ
ବିନ୍ଧନ୍ତି ଦୋକନା କେହୁ ଆର୍ଦ୍ରାବଳି ବାଣ ।
ଏକକୁ ଆରେକ ସେହି ହୋଇ ରୋଷଭର
ନାନାବିଧ ଅସ୍ତ୍ରମାରି କରନ୍ତି ସମର ।
ଘଡ଼ଘଡ଼ି ପ୍ରାୟେକ ଯେ ଶୁଭେ ଘୋରଧ୍ୱନି
ଡରେ ଥରହର ହୋଇ କମ୍ପଇ ମେଦିନୀ ।
ଭାଜିଲାକ ଅଖ ରଥ ନିମଜ୍ଜିଲେ ଘୋଡ଼ା
ଶତ ହସ୍ତ ପ୍ରମାଣରେ ପଡ଼ିଲେକ ମଡ଼ା ।
କାହାର ମୁଣ୍ଡ ଛିଡ଼ଇ ପଡେ ନିଜ ଦେହୀ
ଜାନୁଭଗ୍ନ ହୋଇ କେହୁ ପଡ଼େ ଲୋଟିଦେହୀ
କର ଚରଣ କାହାର ଭଗ୍ନ ଜାନୁ ଅଣ୍ଟା
ଗଦା ଆଘାତେ କାହାର ଗୋଡ଼ ହେଲା ଛୋଟା ।
ଗଜର ଉପରେ କେହୁ ପିଟେ ନେଇ ଯଷ୍ଟି
କୁମ୍ଭସ୍ଥଳ ବାଜି କାହା ମୁଣ୍ଡଗଲା ଫାଟି ।
କୁହୁକୁହୁ ନାଦେ ଚଉଷଠି ଯୋଗ୍ନୀ ଆସି
କିଳିକିଳା ନାଦ ଦେଇ ମିଳିଲେ ପିଶାଚୀ ।
କରନ୍ତି ଭୋଜନ ରକ୍ତମାଂସ ମନତୋଷେ
ନାଚନ୍ତି କବନ୍ଧ କୋଟି କୋଟି ଦିବାନିଶେ ।
ଦଇବେତ ମହାବଳୀ ଅଟେ ମୁରାସୁର
ପୁଣି ଅମର ବରକୁ ଦେଇଛନ୍ତି ହର ।

କର୍ଣ୍ଣାଟ ରାଜାକୁ ତାର ମନେ କିସ ଭୟ
ଗୋଡ଼ାଇ ପିଟିଲା ସୈନ୍ୟ ତାର ଯେଣ୍ଠାଠାଏ
ଭାଜିଣ କର୍ଣ୍ଣାଟ ସୈନ୍ୟ ଭୟରେ ପଳାନ୍ତି
କେଶବାସ ଅସମ୍ଭାଳେ ପଛେ ନ ଚାହାଁନ୍ତି ।
ତିନିଯୁଣ ଯାଏ ମଡ଼ା ପଡ଼େ ଦଶଦିଗେ
ଚାର ଜଣାଇଲା ଯାଇ କର୍ଣ୍ଣାଟର ଆଗେ ।
ବୋଇଲା ସାବଧାନେ ହୋ ଶୁଣ ସୂର୍ଯ୍ୟବଂଶୀ
ତିନିପଦ୍ମ ସୈନ୍ୟଯାକ ଗଲେ ଦୈତ୍ୟନାଶି ।
ଗୋଟିଏ ଉବୁରି ତହୁଁ ନ ଆସିଲେ କେହି
ଖଣ୍ଡେଦୂରୁ ଦେଖି ତାହା ଅଇଲି ପଳାଇ ।
ରାଜ୍ୟଛାଡ଼ି ସ୍ୱାମୀ ଏବେ ଯିବା ବେଗେ ଚାଲ
ଅସମ୍ଭାଳ ହେଲାଣି ତ ଆଉ ନାହିଁ ଭଲ ।
ପ୍ରାଣଥିଲେ ଏ ଶରୀର ସବୁ ଅର୍ଜିପାରି
ପ୍ରାଣଗଲେ ଅର୍ଥ ବିତ୍ତ ନୁହଇ କାହାରି ।
ଶୁଣି କର୍ଣ୍ଣାଟ ଈଶ୍ୱର ଉଠେ ମୋଡ଼ି ମୁଛ
ବୋଇଲା ଏ ଛାର କଥା ମୋତେ ତ କହୁଛ ।
ମରିବ ତ ଦିନେ ଆଉ କେତେ ଦିନ ବଞ୍ଚି
ଜନମ ହେଲେ ପ୍ରାଣୀତ ଅବଶ୍ୟ ମରୁଛି ।
ଦେହ ବହିଣ ଅମର ହେଲାଣି ତ କେ କେ
କୀଟରୁ ବ୍ରହ୍ମ ପର୍ଯ୍ୟନ୍ତେ ଛନ୍ତି ଯେତେ ଲୋକେ
ଯେ ଯାହା କର୍ମ ସରିଲେ ଲଭଇ ମରଣ
ମରଣ କଥାତ ସତ ସଂସାରରେ ଜାଣ ।
ମର୍ତ୍ତ୍ୟେ ଦେହ ବହି କଲେ ମରଣକୁ ଭୟ
ନିସତ ହୋଇ ରହିଲେ ନର୍କେ ପଡ଼େ କାୟ ।
ଜାତ ହୋଇଲେ ଅବଶ୍ୟ ଜୀବ ଯାଏ ମରି
ଆଗେ ଅର୍ଜିଲା କର୍ମକୁ ଭୟ କିମ୍ପା କରି ।
ନିରତେ ବ୍ରତୀ ହୋଇଲେ କେବେ ନୁହେଁ ସୁଖ
ଇହଲୋକ ଅପମାନ ପରଲୋକ ଦୁଃଖ ।
ଯୁକତେ କ୍ଷତ୍ରିୟ ଆମ୍ଭେ ଯୁଦ୍ଧ ଭୟ କଲେ
କୁମ୍ଭୀପାକ ନରକରେ ପଡ଼ିବି ମୁଁ ଭଲେ ।
କ୍ଷତ୍ରିହୋଇ ନିଶ୍ଚେ ଯେବେ ସଂଗ୍ରାମକୁ ଡରି
ବ୍ରାହ୍ମଣ ହୋଇଣ ଯେବେ ଆଚାର ନ କରି ।
ରୋଗୀ ହୋଇ ଔଷଧକୁ ଯେବେ ନିନ୍ଦାକରେ
ସେବକ ହୋଇଣ ଯେବେ ସ୍ୱାମୀକି ନ ଡରେ
ଭାର୍ଯ୍ୟା ହୋଇ ସ୍ୱଭର୍ତ୍ତାକୁ ଯେବେ ନ ମାନଇ
ପୁତ୍ରହୋଇ ଯେବେ ପିତାମାତା ନ ପୋଷଇ
ମନ୍ତ୍ରୀ ହୋଇଣ ରାଜାକୁ ନୋହେ ଯେବେ ପଛ
ମହତ ଲୋକ ସଭାରେ ଯେବେ କହେ ମିଛ
ଦାନୀ ହୋଇକରି ଯେବେ ପ୍ରାଣୀ ବଧକରେ
ଦେବା ଲୋକର ଧରମ ନାଶଇ ସଂସାରେ ।

ମିତ୍ର ହୋଇଣ ହରଇ ଯେବେ ମିତ୍ର ନାରୀ
ରାଜା ହୋଇଣ ଅନ୍ୟାୟ କଥା ଯେବେ କରି
ମାତା ହୋଇଣ କପଟ ବୁଦ୍ଧି ଯେବେ କରେ
କେମାଙ୍କ ଦ୍ରବ୍ୟ ଘେନିବ ଯେହୁ ଛଦ୍ମରେ ।
ପଣ୍ଡିତା ହୋଇଣ ଯେବେ ହୋଇବ ପାଷାଣ୍ଡୀ
ଘଟ ଆବୋରି ମାରଇ ଯେବେ ଲୋକଭଣ୍ଡି
ଶ୍ୱଶୁର ଘରେ ଜୁଆଇଁ ରହେ ଯେବେ ଗୋତ୍ରୀ
କୁଳସ୍ତିରୀ ହୋଇ ଯେବେ ହୋଇବ ଅସତୀ ।
ଗୁରୁଙ୍କର ଦକ୍ଷିଣା ନ ଦିଏ ଯେଉଁ ଶିଷ୍ୟ
ଏମାନେ ମଲେ କରନ୍ତି ନରକରେ ବାସ ।
ଆମ୍ଭେତ ସୂର୍ଯ୍ୟବଂଶରେ ଅଟୁ ମହାରାଜା
ଅସୁର ଛାରକୁ ଡରିବ କି ଆମ୍ଭ ମଜ୍ଜା ।
ପୂର୍ବେ ଆମ୍ଭର ବଂଶରେ ଯେଉଁ ରାଜା ଥିଲେ
ଦିଗବିଜୟ କରିଣ କୀର୍ତ୍ତି ରଖିଗଲେ ।
ନ ଥିବା କାଳକଯାକ ଆମ୍ଭେ ଦେହ ବହି
ଜଳବିମ୍ବ ପ୍ରାୟ ସବୁ ଶରୀର ଅଟଇ ।
ତଥାପି ଯେବେ ଦୈତ୍ୟକୁ ଆମ୍ଭେ ଯିବା ଜିଣି
ସୂର୍ଯ୍ୟବଂଶର ଗାରିମା ରଖିବ ଧରିଣୀ ।
ଏତେ ବୋଲି ନରପତି ହେଲେ ଆଗୁସାର
ହୁଁ କାର ନାଦେ ଧଇଲେ ଗଦା ବେନିକର ।
ସୈନ୍ୟ ଆଗକରି ଯାଇ ଯୁଦ୍ଧସ୍ଥାନେ ମିଳି
ମୁରଦୈତ୍ୟ ରଥେ ନେଇ ପିଟିଲେ ଶାବେଳି
ବାଜି ଗଦାବର ହୋଇଗଲା ଶତେ ଚୂନା
ଦେଖି ମୁର ଦୈତ୍ୟ ଶର ଧଇଲା ଦେକନା ।
ଭିଆଇ ନାରାଚକୁ ଯେ ପେଶିଲା ତୁହାଇ
ନିବାରିଲେ ତାହା ଦେଖି କର୍ଣ୍ଣାଟର ସାଇଁ ।
ବୃକ୍ଷେକ ଉପାଡ଼ି ରାଜା ଧଇଲେକ ବେଗେ
ପିଟିଲେ ସତ୍ୱରେ ନେଇ ମୁରଦୈତ୍ୟେ ଅଙ୍ଗେ ।
ବାଜିଣ ସେ ବୃକ୍ଷବର ହୋଇ ଖଣ୍ଡ ଖଣ୍ଡ
କ୍ରୋଧରେ ଧଇଲା ମୁର ପୁଣ ଲୌହଦଣ୍ଡ ।
ବୁଲାଇ ଫିଙ୍ଗନ୍ତେ ଦୂରୁ ନିବାରିଲେ ତାହା
ପୁଣି ଅଗ୍ନିଶର ପେଷିଲାକ ଦୈତ୍ୟନାହା ।
ସ୍ୱର୍ଗ ମର୍ତ୍ତ୍ୟ ଘୋଟି ଜଳିଆସେ ବହ୍ନିଶର
ମେଘାଶରେ ଛେଦିଲେ ତା କର୍ଣ୍ଣାଟ ଈଶ୍ୱର ।
ତାହା ଦେଖିଣ ମୁରର କମ୍ପଇ ଯେ ତନୁ
ଧଇଲା ଯେ ଧାତିକାରେ ଲୌହଶର ଧନୁ ।
ପଞ୍ଚସହସ୍ର ପର୍ବତ ବସାଇଲା ଗୁଣେ
କର୍ଣ୍ଣାଟେଶ ଉପରକୁ ବିନ୍ଧିଲା ତକ୍ଷଣେ ।
ତହିଁକି ଯେ ପ୍ରତିକଚ୍ଛ କଲେ ସୂର୍ଯ୍ୟବଂଶୀ
ବଜ୍ରଶର ପେଷି ଦୂରୁଁ ନାଶିଲେ ଆକର୍ଷି ।

ତାହା ଦେଖି ମୁରଦୈତ୍ୟ ଉଠିଲା ପ୍ରଜ୍ୱଳି
ଦଶଲକ୍ଷ ନାରାଚ ଯେ ଘେନି ମହାବଳୀ ।
ଗର୍ଜିଣ ବିନ୍ଧିଲା ଦୈତ୍ୟ ଆସେ ସବୁ ଶର
ପଡ଼ଇ ଶ୍ରବଣ ମାସେ ବରଷାର ନୀର ।
ତେସନକ ପ୍ରାୟେ ଦୈତ୍ୟ କରେ ଶରବୃଷ୍ଟି
ବିନ୍ଧନ୍ତେ ସଂସାରଯାକ ଅନେକ ଯେଘୋଟି ।
ପୁଣି ଅଶୀଲକ୍ଷ ବାଣ ବସାଇଲା ଗୁଣେ
ଘୋର ଗରଜନ କରି ପେଷିଲା ତକ୍ଷଣେ ।
ପ୍ରତିଜ୍ଞା ସାମରଥ ଯେ ଉର୍ବଶୀର ବଳା
ରଣଭଙ୍ଗ କୁତୂହଳେ କଲା ଶରଜ୍ୱାଳା ।
କୋଟିଏ ଇନ୍ଦ୍ର ଯାହାକୁ ରଣେ ନୁହେଁ ସମ
କର୍ଣ୍ଣାଟେଶ୍ୱର ତାହାକୁ ହେବ କି ସକ୍ଷମ ।
ଅନର୍ଯ୍ୟାପ୍ତ ବାଣ ବିନ୍ଧିଲାକ ମୁରଦୈତ୍ୟ
ଦେଖୁଁ ଦେଖୁଁ ସୂର୍ଯ୍ୟବଂଶୀ ହେଲେ ଅଶକତ ।
ବାଣ ବୃଷ୍ଟିରେ ସ୍ୱର୍ଗରୁ ଉଲକାପାତ ହୁଏ
ଆକାଶେ ଥାଇ ଶବଦ କଲେ ଦେବତାଏ ।
ବୋଇଲେକ ଶୁଣ ଆହେ କର୍ଣ୍ଣାଟ ଭୂପାଳ
ସମର ତେଜିଣ ଏବେ ଅନ୍ୟଦେଶେ ଚଳ ।
ତୁମ୍ଭର ବଳେ ମୁରକୁ ନୁହେଁ ଯୁଦ୍ଧେ ଜିଣି
ଈଶ୍ୱର ବରେ ପ୍ରତାପୀ ହୋଇଛି ସେ ପୁଣି ।
କୋଟିଏ ଇନ୍ଦ୍ର ନୋହିବେ ଯାକୁ ସମତୁଲ
ସମରକୁ ତେଜ୍ୟା କର ଘେନି ଆମ୍ଭ ବୋଲ ।
ପ୍ରାଣକୁ ଆଶା ଥିଲେ ଏ ରାଜ୍ୟ ତେଜ୍ୟାକର
ପ୍ରାଣଥିଲେ ପ୍ରାଣୀ ପୁଣି ଅର୍ଜେ ଘରଦ୍ୱାର ।
ପ୍ରାଣଥିଲେ ସିନା ଦାରା କୁଟୁମ୍ବ ଯେ ଅର୍ଜି
ପ୍ରାଣଥିଲେ ସିନା ବନ୍ଧୁ ବାନ୍ଧବଙ୍କୁ ସର୍ଜି ।
ଏମନ୍ତ ବୋଲି କହିଲେ ଶୂନ୍ୟେ ଦେବବାଣୀ
ପ୍ରାଣଥିଲେ ସିନା ଅର୍ଜେ ଧର୍ମ ଅର୍ଥ ପ୍ରାଣୀ ।
ଶୁଣିଲା କର୍ଣ୍ଣାଟେଶ୍ୱର ଦେବଙ୍କ ବଚନ
କୁହୁକମନ୍ତ୍ର କରିଣ ଚଳିଲେ ବହନ ।
ପାଦଗତି ହୋଇଯାଇ ପଶିଲେକ ପୁରେ
ପଦାର୍ଥଯାକ ପୂରାଇ ଥୋଇଲେ ରଥରେ ।
ବନ୍ଧୁ ବାନ୍ଧବ ଯେ ସଖା କରିଥିଲେ ପ୍ରୀତି
ତେଣୁ କରିଣ ଶରଣ ପଶିଲେ ନୃପତି ।
ମୁରାସରକୁ ଏଣେ ସେ ରାଜା ସୁଦର୍ଶନ
ରାଜାଙ୍କର ସଙ୍ଗେ କରିଥିଲା ଦରଶନ ।
ତେଣୁ ମୋ ପ୍ରାଣକୁ ଧରି ରହିଲା କର୍ଣ୍ଣାଟ
ଆବର ସୁଖେ ରହିଲେ ଦାରା ଦାସୀ ଚାଟ ।
ପିଅ ପିଅ ସୁଜ୍ଞଜନେ ଏ ପୁରାଣ ରସ
ଅନବରତରେ ପିଏ ପୀତାମ୍ବର ଦାସ ।

## କର୍ଣ୍ଣାଟେଶ୍ୱର ପଳାୟନ ଓ ମୁରାସୁରର ରାଜ୍ୟପ୍ରାପ୍ତି

ଶୁଣ ବାବୁରେ ନାରଦ କହନ୍ତି ବିଧାତ
ରାଜ୍ୟଭଗ୍ନ ଦେଖି ହର୍ଷ ହୋଇ ମୁରଦୈତ୍ୟ
କର୍ଣ୍ଣାଟଦେଶେ ପଶିଲା ସୈନ୍ୟସଙ୍ଗେ ଘେନି
ବସିଲାକ ସିଂହାସନେ କରି ଶଙ୍ଖଧ୍ୱନି ।
ମନ୍ତ୍ରୀ ବୋଇଲା ବେଗେ ଚରଚା ମୋର କର
ଦେଶଘୋଷ ପରଜାତ ସବୁହେଲା ମୋର ।
କହି ନ ବୋଲିବେ ମୋର କ୍ରୁରକଲା ବୋଲି
ନିନ୍ଦା ଉପୁଜିଲେ ଭଲେ ବୁଝିବାଟି କାଲି ।
ଏ ରାଜ୍ୟେ ନିଯୋଗୀ ଆମ୍ଭେ ହେଲୁ ରାଜ୍ୟପଦେ ।
ଏଥକୁ ଯେ ଲୟକରି ଥାଅ ଯେଝା ହୃଦେ ।
ଶୁଣିଣ ସୁବିଜ୍ଞ ମନ୍ତ୍ରୀ ଆଜ୍ଞା ପରମାଣେ
ଖୁଣ୍ଟିଆକୁ ଚାହିଁଣ ଯେ କହିଲେ ତକ୍ଷଣେ ।
ରାଜାଙ୍କର ଆଜ୍ଞା ମୋତେ ସୈନ୍ୟ ରକ୍ଷାକର
ଏ ରାଜ୍ୟରେ କେହି କିଛି ନ କରନ୍ତୁ କ୍ରୁର ।
କ୍ରୁର କଲେ କାହାକୁହିଁ ନାହିଁ ଭଲଦଶା
ମନ୍ତ୍ରୀ କହିଲା ଏ ରୂପେ ଖୁଣ୍ଟିଆକୁ ଭାଷା ।
ଶୁଣି ଖୁଣ୍ଟିଆ ସୈନ୍ୟକୁ ବେଗେ ଦେଲା ଡାକ
ରାଜା ଆଜ୍ଞାପାଇ କ୍ରୁର୍ ନକର କଟକ ।
ପର ଆପଣା ପାଳି ଯେ ଯାହା ସୁଖେ ରହ
ପଡ଼ି ନ ଅଣ୍ଟିଲେ ପଛେ ରାଜ୍ୟୁ ମାଗିନିଅ ।
ଏମନ୍ତ ଶୁଣି ସମସ୍ତେ ହୋଇଲେ ନିବର୍ତ୍ତ
ପୁରକୁ ଦେଖିଣ ମୁର ପ୍ରଶଂସେ ବହୁତ ।
ବୋଇଲେକ ଧନ୍ୟ ଧନ୍ୟ ଅଟେ ଏହୁ ନଗ୍ର
ବିଶ୍ୱକର୍ମା ସିଞ୍ଚିଲାକ ଆସି କେଡ଼େ ବ୍ୟଗ୍ର ।
ଧନ୍ୟ ହୀରା ନୀଳା ପ୍ରବାଳର ରୁଅ ଶ୍ରେଣୀ
କାହିଁ ଦର୍ପଣର ବାଡ଼ ସ୍ଫଟିକ ଛାଏଣି ।
କାହିଁ ମୁକୁତା କଳସ ଧାଡ଼ି ଯୋଡ଼ି ଯୋଡ଼ି
ମର୍କତ ଛାଏଣି ଝରା ପଡୁଅଛି ଝଡ଼ି ।
ଦୋମୁହିଁ ଆଡ଼ମୁହିଁ ଯେ ଲଙ୍କାମୁହିଁ କାହିଁ
ଚନ୍ଦ୍ରାତପ ଚାଳେ ଅଛି ମାଣିକ୍ୟ ଯେ ଛାଇ ।
କାହିଁ ରତନ ଜଡ଼ିତ ନୀଳାରେଖ ତୁଣ୍ଡି
ବ୍ରହ୍ମଜାତି ହୀରାରେ ଯେ ମଣ୍ଡଳ ଭୁମଣ୍ଡି ।
ପ୍ରବାଳ ଧାଡ଼ି ଧାଡ଼ି ଯେ ମୁକୁତା ପୁଞ୍ଜି ପୁଞ୍ଜି
ଚତୁର୍ଜ୍ୟାତକ ମାରାଗ ଅଛି ତହିଁ ଖଞ୍ଜି ।
ଜଗତୀ ଅଟାଳୀ ବାରୀ ଚୌପାଢ଼ୀ ଯେ ମେଲା
ଭଲା ସେହି ବିଶ୍ୱକର୍ମା କେହ୍ନେ ସଜକଲା ।
ବିଶାଶଏ ଯୋଜନ ତ ଅଟେ ଏହୁ ନଗ୍ର
ବିଧାତା ସର୍ଜିଲା ମୋର ପାଇଁ କେଡ଼େ ବ୍ୟଗ୍ର

ପ୍ରଶଂସା କରି ବୁଲଇ ନଗ୍ର ଚଉପାଶ
ଦେଖଇ ରାଣୀଙ୍କ ପୁର ପାତ୍ର ମନ୍ତ୍ରୀ ବାସ ।
ରାଜସିଂହାସନ ଗଜ ଅଶ୍ୱଙ୍କର ଘର
ଦେଖିଣ ତୋଷ ଅନେକ ହୁଏ ମୁରାସୁର ।
ରାଜ୍ୟଯାକ ବୁଲିଆସି ବସି ସିଂହାସନେ
ଯାହାକୁ ଯେଉଁ ଆଜ୍ଞା ସେ ଦେଲେ ରାଜପଣେ
ସେ ସାଧୁ ଖୁଣ୍ଟିଆ ପାତ୍ର ମନ୍ତ୍ରୀ ବଡ଼ଜେନା
ସାଆନ୍ତ ମାହୁନ୍ତ ରଥ ପଦାତି ଯେ ସେନା ।
ଯାହାକୁ ଯେପରି ଆଜ୍ଞା ଦିଏ ନୃପମଣି
ସେହି ଖଞ୍ଜରେ ଲାଗିଲେ ଲୋକ ସେବା ଜାଣି
ଏଥିଉତ୍ତାରେ ଯେ ବାଣୀ ଶୁଣ ହେ ମହାତ୍ମା
ମୁରର ପ୍ରତିଜ୍ଞା ଶୁଣି ଅଇଲେ ଯେ ବ୍ରହ୍ମା ।
ବାଳକାଳେ ବ୍ରହ୍ମା ସିନା ତାକୁ ଦେଖିଥିଲେ
ପ୍ରତିଜ୍ଞା ଶୁଣିଣ ତାର ଛାମୁକୁ ଅଇଲେ ।
ନେତ୍ରେକେବେ ତାହାକୁ ନ ଥିଲେ ଦିନେଦେଖି
ପ୍ରଣାମ କରିଲେ ପୁଣ ବ୍ରହ୍ମା ବୋଲି ତର୍କି ।
ବିବେକର ଦ୍ୱିଜ ବୋଲି ମୁର ଦୈତ୍ୟ ବୋଲେ
ଆସ୍ଥାନେ ବସି କଲ୍ୟାଣ ବାଞ୍ଛା ବ୍ରହ୍ମା କଲେ ।
ଗୌରବ ପାଇ ବସିଲେ ତହିଁ ପିତାମହ
ମୁରବୋଲେ ଆସିଲ ଯେ କାହୁଁ ତୁମ୍ଭେ କହ ।
ବିଧାତା ବୋଇଲେ ବାବୁ ଶୁଣରେ ଦୁଲାଳ
ମୁହିଁ ତୁମ୍ଭର ପିଅର ତୁମ୍ଭେ ମୋର ବାଳ ।
ଉର୍ବଶୀ ଗର୍ଭରୁ ତୁମ୍ଭେ ହୋଇଅଛ ଜାତ
ହରଙ୍କୁ ତୋଷି ପାଇଲ ବର ଅଲୋକିତ ।
ଆମ୍ଭର ନାମଟି ଜାଣ ଅଟେ ବେଦବ୍ରହ୍ମା
ଅଇଲୁଁ ଆସିଲୁ ଶୁଣି ତୁମ୍ଭର ମହିମା ।
ଜନ୍ମକାଳରୁ ନଥିଲୁ ତୁମ୍ଭ ଭେଟପାଇ
ତେଣୁ ଅଇଲୁ ତୁମ୍ଭଙ୍କୁ ଆମ୍ଭେ ଭେଟିଦେଇ ।
ପିତାଙ୍କ ମୁଖୁ ଏମନ୍ତ ଶୁଣି ମୁର ଦୈତ୍ୟ
ପାଦଧୋଇ ଲକ୍ଷେବାର କଲା ଦଣ୍ଡବତ ।
କନକର ଆସନରେ ବସାଇଲା ନେଇ
ଆର୍ଶୀବାଦ କଲେ ପିତା ଗଉରବ ପାଇ ।
ଯଶଶ୍ରୀ ଆୟୁଷ ପରାପତ ହେଉ ବାବୁ
ଅଇଶ୍ୱର୍ଯ୍ୟ ବିଳାସାଦି ଭୋଗ କର ସବୁ ।
ଶୁଣିଣ ମୁର ଦଇତ୍ୟ ଯୋଡ଼ି ବେନିକର
ବୋଇଲା ବୁଝିଲେ ମୋର ଆଦ୍ୟୁଁ ନାହିଁ ଘର
ପର ଭୂମିକି ଅରଲି ମାତ୍ର ବଳପଣେ
ହର ବର ପ୍ରସାଦରୁ ଜିଣିଲି ଯେ ରଣେ ।
ଇନ୍ଦ୍ରର କଥା କହିବି ଆଉ କିସ ମୁହିଁ
ପଣାରେ ଜିଣିବା ମାତ୍ରେ ଦେଲା ଘଉଡ଼ାଇ ।
ତୁମ୍ଭ ବୀର୍ଯ୍ୟରୁ ଜନମି ପାଇଲୁ ଯେ ଲଜ୍ଜା
କାହିଁରେ ଲେଖା ନୋହିଲୁ କାହିଁ ନୋହି ରାଜା
ଆମ୍ଭ ଉପାୟରେ ମାତ୍ର ଈଶ୍ୱର ତୋଷିଲୁ
ହର ବର ପାଇତହୁଁ ଅମର ହୋଇଲୁ ।
ତୁମ୍ଭଙ୍କୁ ଭେଟିଲୁ ଏତେକାଳେ ପଦ୍ମଯୋନି
ତୁମ୍ଭେ କି ଦେଇ ଯିବଟି ମୋତେ ଅବାମାନି ।
ବ୍ରହ୍ମାଏ ବୋଇଲେ ବାବୁ ମୋତେ କିସଦେବୁ
ହର ଖଞ୍ଜା କରି ଦେଇ ଅଛନ୍ତି ତ ସବୁ ।
ମୁର ବୋଇଲା ଏ କଥା ଅଟଇ ତ ସତ
ଆପଣଙ୍କୁ ଆମ୍ଭେ ଆଉ ମାଗୁନାହୁଁ ବିତ୍ତ ।
ଶାଢ଼ୀ ଖଣ୍ଡେ ଅଣ୍ଡି ଏକ ଦିଅ ମୋର ମୁଣ୍ଡେ
ରାଜା ହୋଇ ବୁଲିବି ମୁଁ ସପତ ବ୍ରହ୍ମାଣ୍ଡେ ।
ଏତକ ଦେଇଣ ପିତା ଦୟାକର ମୋତେ
ଚକ୍ରବର୍ତ୍ତୀ ହୋଇକରି ରହିବି ଜଗତେ ।
ମୁର ମୁଖୁଁ ଏହା ଶୁଣି ଚତୁର ଆନନ
ପାଞ୍ଚିଲେ ଈଶ୍ୱରବର ନୋହିବ ତା ଆନ ।
ଆମ୍ଭେ ତ ଶାଢ଼ୀ ନ ଦେଲେ ବହିବ ଏ ରୋଷ
ମନକୁ ରାଜା ହୋଇଲେ କରିବ ବା କିସ ।
ଏମନ୍ତ ବୋଲି ବିଧାତା ପାଞ୍ଚି ହୃଦଗତେ
ତକ୍ଷଣେ ନାରଦ ଆସି ମିଳିଲେ ଅଗ୍ରତେ ।
ପିତାଙ୍କର ପାଦେ ଯାଇ ନମିଲେ ନାରଦେ
କଲ୍ୟାଣ କରିଣ ପିତା କହନ୍ତି ଆନନ୍ଦେ ।
ବିଧାତା ବୋଇଲେ ବାବୁ ଶୁଣ ପୁତ୍ରମଣି
ଅମର ଭୁବନକୁ ତୁ ଯିବୁ ଏହିକ୍ଷଣି ।
ଆମ୍ଭର ଆଜ୍ଞା ବୋଲିଣ କହିବୁ ସଭିଙ୍କୁ
ବାରତା ପାଇ ଆସନ୍ତୁ ଦେବେ ଏ ଠାବକୁ ।
ମୁରକୁ ଏଠାରେ ଆମ୍ଭେ ଦେବା ରାଜଶାଢ଼ୀ
ନୋହିଲେ ଖାଇବ ପୃଥ୍ୱୀଯାକ ସିନାମୋଡ଼ି ।
ପ୍ରଥମେ ଦୁଷ୍ଟଜନଙ୍କୁ ଥିବା ବାବୁ ଡରି
ପଛେ ସାଧ କରିବା ନା ଉପାୟ ଯେ କରି ।
ତାହାର ବୋଲ ପାଳିଣ ଥିବ ତାର ତୁଲେ
ନୋହିଲେ ଭଲ ନାହିଁଟି ଏ କଥା ନକଲେ
ଏହିରୂପେ କହିକରି ଦେବତାମାନଙ୍କୁ
ଘେନିଆସ ନାରଦ ଏ କର୍ଣ୍ଣାଟ ଦେଶକୁ ।
ଶୁଣି ସେ ନାରଦ ମୁନି ପିତାଙ୍କ ବଚନେ
ମନପବନ ଚଢ଼ିଣ ଗଲେ ସ୍ୱର୍ଗସ୍ଥାନେ ।
ଇନ୍ଦ୍ର ଅନଳ ପବନ ଯମ ନଇର୍ରତ
ବରୁଣ କୁବେର ମିଶି ଈଶାନ ଅନନ୍ତ ।
ଯକ୍ଷ ରକ୍ଷ ଗନ୍ଧର୍ବ ଯେ ସୁର ସିଦ୍ଧମୁନି
ସମସ୍ତେ ଚଳିଲେ ପିତାଙ୍କର ଆଜ୍ଞାଘେନି ।

କର୍ଣ୍ଣାଟ ଦେଶରେ ଯାଇଁ ହୋଇଲେ ପ୍ରବେଶ
ବ୍ରହ୍ମାଙ୍କ ପାଦେ ନମିଲେ ସକଳ ତ୍ରିଦଶ ।
ମିଳିଲେ ଶିବଗଣଙ୍କୁ ଘେନି ପଶୁପତି
ନବଲକ୍ଷ ଡମ୍ବରୁ କେ ବଜାଇ ଆସନ୍ତି ।
ମିଳିଲେ ଯେ ବୃହସ୍ପତି ତାରାଗଣ ତୁଲେ
ବାରରାଶି କାଳବଳେ ଯୋଗଲଗ୍ନବେଳେ ।
ନବଗ୍ରହ ଚନ୍ଦ୍ର ସୂର୍ଯ୍ୟ ସପତ କରିଣ
ଯେ ଯାହା ଯାନ ଆରୋହୀ ମିଳିଲେଟି ଜାଣ
ମୁର ଶିରେ ଦଣ୍ଡଛତ୍ର ଟେକିବା ନିମନ୍ତେ
ଧାତା ସଙ୍ଗେ ସଭାକରି ବସିଲେ ସମସ୍ତେ ।
ବ୍ୟାସ ବାମଦେବ ଆଉ ପୁଲହ ପୌଲସ୍ତି
ନାରଦ କପିଳ କଣ୍ୱ ବଶିଷ୍ଠ ଅଗସ୍ତି ।
ଦୁର୍ବାସା ଭରଦ୍ୱାଜଙ୍କ ସହ ଯେତେ ମୁନି
ସକଳେ ମିଳିଲେ କରେ ପ୍ରୋକ୍ଷଣି ଯେ ଘେନି
ବ୍ରହ୍ମାଙ୍କର ପାଦତଳେ ମିଳିଲେ ସକଳେ
କଲ୍ୟାଣ କଲେକ ପିତା ବଚନ କୋମଳେ ।
ବିଧାତା ବୋଇଲେ ବାବୁ ଶୁଣ ଋଷିଯାକ
ଦଶଦିଗପାଳ ଆଦି ଅଛ ଯେତେ ଲୋକ ।
ସମସ୍ତେ ଥାଇ ମୁରକୁ ଦେବା ରାଜଶାଢ଼ୀ
କର୍ଣ୍ଣାଟ ଦେଶରେ ବସୁ ସିଂହାସନ ମାଡ଼ି ।
ନ ଦେଲେ ଏ ସ୍ୱର୍ଗଯାକ କରିବ ଯେ ନାଶ
ଦୁଷ୍ଟ ପ୍ରକୃତିକ ଅଂଶେ ଜନ୍ମିଛି ରାକ୍ଷସ ।
ପଶୁ ଈଶ୍ୱରଙ୍କ ବର ପାଇଛି ଦାନବ
ସ୍ୱଇଚ୍ଛାରେ ରାଜା ହେଲେ କିଏ ନିବାରିବ ।
ଏହିକଥା ବିଚାରିଣ ଦେବା ଶାଢ଼ୀ ମୁଣ୍ଡେ
କହିବାକୁ କଥା ଥିବ ସପତ ବ୍ରହ୍ମାଣ୍ଡେ ।
ଆମ୍ଭର ଯେ ବଡ଼ପଣ ରହୁ ସବୁକାଳେ
ଦେଖି କଟୁଭାଷା ମୁର ନ କହିବ ବଳେ ।
ଶୁଣିଣ ବୋଇଲେ ଦେବଗଣ ହେଉ ହେଉ
ପିତାମହଙ୍କ ବଚନ ଭାଙ୍ଗିବଟି କେହୁ ।
ଏମନ୍ତ ବୋଲନ୍ତେ ଧାତା ସର୍ବ ସନମତେ
ବସିଲେ ମୁରକୁ କୋଳେ ଘେନିତୋଷଚିତ୍ତେ
ଯେତେ ନିଯୋଗୀଲୋକ ତାପାରୁଶରେଥିଲେ
ଅଭିଷେକର ଯୋଗାଡ଼ ସର୍ବେ ନିର୍ଭାକଲେ
ମୁରକୁ ତୀର୍ଥ ଜଳରେ କଲେକ ମାଜଣା
ଦଇତ୍ୟର ଆନନ୍ଦ ଯେ ନୁହଇ କଳନା ।
ସୁବର୍ଣ୍ଣ ପାତ୍ରରେ ପୁରାଇଣ ଗଙ୍ଗୋଦକ
ମୁରକୁ କଲେ ତହିଁରେ ମୁର୍ଦ୍ଧା ଅଭିଷେକ
ରତ୍ନ ଅଳଙ୍କାରମାନ ମଣ୍ଡିଲେ ତା ଦେହେ
ଦିଶିଲାକ ମୁରଦୈତ୍ୟ କାମଦେବ ପ୍ରାୟେ ।

ବ୍ରହ୍ମା ଆଣିଦେଲେ ଶିରେ ସୁନାଜରି ପାଟ
ଶାଢ଼ୀଧରି ମୁଣ୍ଡେ ତାହା ବାନ୍ଧି ତାଙ୍କ ଚାଟ
ଗଳାରେ ଲମ୍ୱାଇଲେ ଯେ ନାନା ପୁଷ୍ପମାଳ
କପାଳରେ ଟିକାଦେଇ ପଢ଼ନ୍ତି ମଙ୍ଗଳ ।
ଶିରରେ ମୁକୁଟ ଦେଇ ଅସରଳା ସୁତା
କନ୍ଧରେ ଯଜ୍ଞସୂତ୍ର ଯେ ପୟରେ ଅଳତା ।
ଯେସନେକ ରାଜନୀତି ଅଭିଷେକ ବିଧି
ବ୍ରହ୍ମାଙ୍କ ବଚନେ ହେଲା ସେ ସକଳ ସିଦ୍ଧି ।
ବୃହସ୍ପତିଙ୍କୁ ପୁଚ୍ଛି ମାହେନ୍ଦ୍ର ଯୋଗ ଖୋଜି
ତାର ବାର ଋଷିଗଣ ବୁଝିଲେ ସେ ପାଞ୍ଜି
ମୁରକୁ ଯେ ମଘା ସିଂହରାଶି ଅଟେ ଏଣେ
ସିଂହକୁ ଅଛନ୍ତି ପାପଗ୍ରହ ଉଚ୍ଚସ୍ଥାନେ ।
ଏମନ୍ତ ଯୋଗରେ ବ୍ରହ୍ମାଦେଇ ମୁର ଶିରେ
ଟେକିଲେ କନକ ଦଣ୍ଡଛତ୍ର ନିଜ କରେ ।
ସିଂହାସନରେ ବସିଲା ମୁର ଋଷି ମେଳେ
ଦେବେ ଦେଲେ ଶାଢ଼ୀକରି ଯତ୍ନେ ପୁଷ୍ପମାଳେ
ସବୁରି ପୁଷ୍ପମାଳାକୁ ବାନ୍ଧିଲାକ ଚୁଳ
ବ୍ରହ୍ମା ଦେଲେ ପୁଣ ଦିଗବାରଣ ଚିରାଳ ।
ଅଲଭ୍ୟରେ ସେ ମୁରକୁ ସମସ୍ତ ମିଳୁଛି
ଶସ୍ତ୍ରମାନଙ୍କୁ ଆହୁରି ଦେବେ ଦେଲେ ଯାଚି
ବାବଲ ଯେ ପାଶୁପତ ପନ୍ନଗ ବୈଷ୍ଣବୀ
ଅର୍ଦ୍ଧଚନ୍ଦ୍ର ନାରାୟଣ ଅକ୍ଷୟ ଭୈରବୀ ।
ଜଳପାଶ ନାଗପାଶ କାଳପାଶ ଯାଏ
ଦେବଶର ବ୍ରହ୍ମଶର ଦେଲେ ଦେବତାଏ ।
ସମସ୍ତ ଶର ରଖିଲା ମୁର ଭଣ୍ଡାରରେ
ପାଟଗଜ ଉଭାକଲେ ରାଜାର ଆଗରେ ।
ଏଥିଉତ୍ତାରେ ମୁରକୁ ପହଣ୍ଡ ମଣାଇ
ଆସୁଛନ୍ତି ଭୃତ୍ୟମାନେ ବାହାନାଦ ଦେଇ ।
ବ୍ରହ୍ମାଏ ବୋଇଲେ ବାବୁ ରହୁବରେ ବସ
ନଗ୍ରଯାକ ବୁଲି ତହିଁ ଶୀଘ୍ର ହୋଇ ଆସ ।
ବ୍ରହ୍ମାଙ୍କର ଆଜ୍ଞା ପାଇ ଉଠିଲା ସେ ମୁର
ବିଜୟା ରଥରେ ଯାଇ ବସିଲା ସତ୍ୱର ।
ଢୋଲ ଦମା ଟମକ ଯେ ବାଜେ ନାନାବାଦେ
ପୃଥ୍ୱୀ ଚମକଇ ବୀର କାହାଳୀର ନାଦେ ।
ଚତୁରଙ୍ଗ ସୈନ୍ୟଛନ୍ତି ଚଉକତି ବେଢ଼ି
ନଗ୍ରଦାଣ୍ଡେ ମୁରଦୈତ୍ୟ ରହୁବର ଚଢ଼ି ।
ଚିରାଳ କରେ ଧରିଣ ଦାରୁଣ ଅସୁର
ଉଭାରିଲେ ରହୁବରେ ନୃପତି ଛାମୁର ।
କାଙ୍କୋଳ ଦୈତ୍ୟ ଚାମର କରେ ଧରିଢ଼ାଳି
ଧୀରେ ଧୀରେ ରହୁବର ଯାଉଅଛି ଚଳି ।

ଖଡ଼ିକା ଅସୁର ଆଦି ଯେତେକ ଦନୁଜ
ଅପୂର୍ବ ବେଶ ହୋଇଣ ଚଢ଼ିଯାନ୍ତି ଗଜ ।
ଦେଶ ଘୋଷ ଆଦି ଆସି ଭେଟିଲେ ନୃପତି
ତୁମ୍ଭ ପ୍ରଜା ଆମ୍ଭେବୋଲି ଛାମୁରେ ଜାଣନ୍ତି ।
ଶୁଣିଣ ହରଷମନ ହେଲା ମୁରାସୁର
ପ୍ରଜାକୁ ପ୍ରବୋଧ କଲା ଦେଇ ରତ୍ନହାର ।
ସମସ୍ତଙ୍କୁ ଚାହିଁ ରାଜା କହଇ ବଚନ
ବୋଲଇ ସୁଖେଣ ଭୁଞ୍ଜ ରହି ଧନଧାନ୍ୟ ।
ଅଚିନ୍ତାରେ ରାଜ୍ୟେ ରହି ସୁଖେ ଦିନ ନିଅ
କୁଶଳରେ ରଖି କୃଷି କରି ଭାଗ ଦିଅ ।
କର ଧାନ ଚିନ୍ତା ଦଣ୍ଡ ଆଉ ଏବେ ନାହିଁ
ସୁଖେ ଧନ ଭୁଞ୍ଜି ରହ ଦାରାପୁତ୍ର ନେଇ ।
ସେ ରାଜାକାଳେ ଯେତେକ କରୁଥିଲ ଭୋଗ
ଚହୁଁ ଶତଗୁଣରେ ମୁଁ ଦେବଇଁ ସଂଯୋଗ ।
କଷ୍ଟ ପ୍ରାପ୍ତ ହେଲୁବୋଲି ନ କହିବେ କେହି
ବାଟିକେ ଚିନାଏ ସଞ୍ଜା ଲେଖିଦେବି ମୁହିଁ ।
ତୁମ୍ଭେ ସୁଖେଥିଲେ ମୋର କୋଷପୁରେ ଜାଣ
ଏତେ କହି ବିଶୋଇକି ହେଲା ପରମାଣ ।
ଦେଇଣ ସେ ମୁରାସୁର ଗଲା ନିଜପୁରେ
ଅଛଇ ଦାରୁଣ ଭାଇ ତାହାଙ୍କ ସଙ୍ଗରେ ।
ଛେନା ବଡ଼ଛେନା ପାଟ ପାଇକ ଯେ ଭୋଇ
ସେନା ସମସ୍ତେ ଅଛନ୍ତି ଆଗେ ଉଭାହୋଇ ।
ଯାଇଣ ବସିଲା ରାଜା ସିଂହାସନ ପରେ
ଶୁଣ ହେ ନାରଦ କହନ୍ତି ଯେ ବେଦବରେ
ବ୍ରହ୍ମା ରୁଦ୍ର ଇନ୍ଦ୍ର ଆଦି ଯେତେ ଦିଗପାଳ
ମୁରକୁ ଦେଲେ ଆସିଣ ଆଶିଷ ତଣ୍ଡୁଳ ।
ପିତା ଆଜ୍ଞା ଦେଲେ ବାବୁ ଶୁଣ ମୁରାସୁର
ଆଛହୁଁ କନକାବତୀ ନାମ ଏ ନଗ୍ରର ।
ତୋହର ପାଇଁ ବିଧାତା ଏହା ଅଛି ସଞ୍ଚି
ସର୍ଜିଅଛି ବିଶ୍ୱକର୍ମା ସ୍ୱର୍ଣ୍ଣମୟ ରୁଚି ।
ଏବେ ମୁର ଏ ନଗ୍ରକୁ କର ତୁହି ଭୋଗ
ଆବର ମଧ କହିବା ଶୁଣ ରାଜମାର୍ଗ ।



## ବ୍ରହ୍ମାଙ୍କର ମୁରାସୁରକୁ ନୀତିଶିକ୍ଷା ଦାନ

ଯେତେକାଳ ଏଥେ ତୁହି ଥିବୁ ଦେହଧରି
ଶ୍ରୀବିଶ୍ୱନାଥଙ୍କ ତୁଲେ ନୋହିବୁ ବଇରୀ ।
ବୈରୀ ହେଲେ ବିନାଶିବେ ନିଜେ ଜଗନ୍ନାଥ
ନାନା ଅବତାର ହୋଇ କରନ୍ତି ନିପାତ ।
ଏତେକ ମାତର ତୁହି ହୃଦେ ରଖିଥିବୁ
ରଖିଲେ ତ ସଂସାରରେ ଅମର ହୋଇବୁ ।
ବସିବୁ ବିବେକ ଗୁଣ ଘେନି ସଭାକରି
ନ ଯିବୁ ତୁ ଅଧର୍ମକୁ ଅନ୍ୟାୟ ଆଚରି ।
ଯେ ମାର୍ଗେ ପ୍ରବେଶ ପୁତ୍ର କହୁଅଛି ତୋତେ
ଏମନ୍ତ କରି ଲୋକଙ୍କୁ ପାଳିବୁ ଜଗତେ ।
ରାଜା ଧନମାନ ବୁଝୁଥିବୁ ତିନିବେଳେ
ନିନ୍ଦାର କର୍ମକୁ ତୁ ନଯିବୁ କେତେବେଳେ
ଗରିଷ୍ଠ କୁଳରେ ଶ୍ରେଷ୍ଠ ଇଷ୍ଟ କଥା ଥିବ
ସେମାନଙ୍କୁ ଘେନି ବୁଦ୍ଧି ବିଚାରିବୁ ସର୍ବ ।
ମନକୁ ତୋ ଯୋଗବଳେ କଥାଥିବୁ ପାଳି
ଧୈର୍ଯ୍ୟଧରି ପୁଣି ଧର୍ମ ମାର୍ଗେ ଥିବୁ ଚଳି ।
ସୁବୁଦ୍ଧି ଭାବକୁ ଘେନି କରିବୁ ଯେ କାର୍ଯ୍ୟ
ଦାନରେ ସଜ୍ଜା ହୋଇଣ ଧରିବୁ ଧଇର୍ଯ୍ୟ
ସମସ୍ତ ଜୀବେ ରଖିବୁ ଦୟା ସମକରି
ବସିବୁ ବ୍ରହ୍ମରେ ଚିତ୍ତ ରଖି ଅନୁସରି ।
ଶ୍ରୀଗୁରୁ ବୈଷ୍ଣବେ ଆଉ ବ୍ରାହ୍ମଣେ ଭକତି
କେତେବେଳେ ଦିବସରେ ନ କରିବୁ ରତି
ଦୟାଧରି କୀର୍ତ୍ତିରେ ତୁ ଦେଇଥିବୁ ମନ
ଅପୁତ୍ରିକ ଅକାର୍ଯ୍ୟରେ ନ ବହିବୁ ଧନ ।
ପ୍ରଜାଙ୍କ ଗୁହାରି ଶୁଣୁଥିବୁ ସାବଧାନେ
ଦଣ୍ଡ ନ ବହିବୁ କାହିଁ ପିଶୁନ ବଚନେ ।
ଶକଟା ଦ୍ୟୁତ ଗଣିକା ନଟକାରୀ ମୂଳେ
ଏ ମାର୍ଗେ ଚିତ୍ତବୁଦ୍ଧି ନଦେବୁକେତେବେଳେ
ପରସ୍ତିରୀ ପରଧନ ପର ଭୂମିଦାନ
ଏ ତିନି କଥାରେ ବାବୁ ନ ଦେବୁ ତୁ ମନ
ପ୍ରାଣୀକୁ ବନ୍ଦୀ କରି ନଦେବୁ ଦୁଃଖ କେବେ
ଦୋଷ ବୁଝିଣ ବିହିବୁ ଦଣ୍ଡ ସର୍ବଜୀବେ ।
ଅବେଭାର କଥାରେ ତୁ ନ ପଶିବୁ କାହିଁ
କେତେବେଳେ ନରହିବୁ ଅଶଉଚ ହୋଇ ।
ଦେହେ କୂଟ ନ ରଖିବୁ ପ୍ରୀତି ଲୋକଠାରେ
ଅନ୍ୟାୟ ତ ନକହିବୁ ପ୍ରଜାମାନଙ୍କରେ ।
ରଥ ଗଜାଦି ପଦାତି ସୈନ୍ୟ ତୁରଙ୍ଗମ
ଏହାଙ୍କ ଚରଚା କରୁଥିବ ପ୍ରତିଦିନ ।
ପରଦେଶ ବାର୍ତ୍ତା ବୁଝୁଥିବୁ ଚାର ପେଷି
ପ୍ରଧାନ କରିଣ କାର୍ଯ୍ୟ ନିଯୋଗିବୁ ବସି ।
ଯେଅବା ଯେବଣମାର୍ଗେ ହୋଇବଯୋଗ୍ୟତା
ପେଷଣକାରକୁ ପେଷି ବୁଝିବୁ ସେ କଥା ।
କାର୍ଯ୍ୟରେ ହିତ ଦେଖିଲେ କରିବୁ ପୌରୁଷ
ବିଶୋଇ ନାୟକକୁ ଯେ ବାଣ୍ଟିଦେବୁ ଦେଶ

ଯାହାଠାରେ ଆୟମୂଳ ଯେବେ ଥିବୁ ଖଞ୍ଜି
ଭାଷା ଲେଖି ଆଣୁଥିବୁ ପଦାର୍ଥ ଯେ ବୁଝି ।
ଆଜ୍ଞାଭ୍ରଷ୍ଟ ରାଜାଙ୍କୁ ତ କୁପୁରୁଷେ ଗଣି
ଏଣୁ ବିଚଳିତ ଭାଷା ନ କହିବୁ ପୁଣି ।
ଗୋଷ୍ଠୀ ହୋଇ ନ ବସିବୁ ମୂର୍ଖଲୋକମେଳେ
ଉଲଗ୍ନ ହୋଇଣ ବାବୁ ନ ପଶିବୁ ଜଳେ ।
ଅଷ୍ଟ ଅବଧାନୀ ହୋଇ ବସିବୁ ଆସ୍ଥାନେ
ନିତ୍ୟେହିଁ ଶୁଚିହୋଇବୁ ସ୍ନାନ ଦେବାର୍ଚ୍ଚନେ
ଉତ୍ତମ ମଧମ ପ୍ରକୃତ ଏ ତିନିମାର୍ଗେ
କରୁଥିବୁ ରାଜନୀତି ଏମନ୍ତ ନିଯୋଗେ ।
ଶୁଣୁଥିବୁ ନିତ୍ୟେହେଁ ତୁ ପୁରାଣର ବାଣୀ
ଖଣ୍ଡିବୁ ଗ୍ରହଙ୍କ ରିଷ୍ଟ ସପତାଙ୍ଗ ଶୁଣି ।
ଦୁର୍ଗ୍ରହନାଶିବୁ ଦାନ ଦେଇ ବିପ୍ର ହସ୍ତେ
ଘୃତ ନେଇ ଅନଳକୁ ପୂଜିବୁ ନିରତେ ।
ମଣୋହି କରିବୁ ବାବୁ ସପ୍ତ ଘଡ଼ିଠାରେ
ତେବେଟି ବ୍ୟାଧି ପ୍ରବଳ ନୁହଇ ଶରୀରେ ।
ଅନ୍ନ ଦେଇ ଅତିଥିକୁ କରିବୁ ତୃପତି
ଭାସ୍କର ତୋଷିବୁ ଜଳ ଦେଇ ନିତି ନିତି ।
ବନ୍ଧୁ ବାନ୍ଧବ କୁଟୁମ୍ବ ସଖା ସହୋଦର
ନିତ୍ୟେହେଁ ମିଳିଲେ ଗୃହେ କରିବୁ ଆଦର
ରାଜ୍ୟରେ ହୋଇବେ ଯେବେ ଶତ୍ରୁ ଉପଗତ
କ୍ଷତ୍ରିୟଧର୍ମେ ଅଛି ଏହା କରିବୁ ନିପାତ ।
ନିର୍ଦ୍ଦୋଷୀ ଜୀବକୁ କେତେବେଳେ ନମାରିବୁ
ଶରଣ ପଶିଲେ ଶତ୍ରୁ ତାକୁ ସମ୍ଭାଳିବୁ ।
ଦୁର୍ଜନ ଦୁର୍ଗମ ଅତି ଦୁରାନ୍ତକ ଭୂମି
ଏଥକୁ ଥାଟ ଘେନି ନ ଯିବୁ କେବେ ଭୂମି
ରାଜ୍ୟକୁ ଶତ୍ରୁଥିଲେ ତୁ ପକାଇବୁ ମାରି
ଜିଣି ନପାରିଲେ କାହିଁ ନ କହିବୁ ହାରି ।
ଅପ୍ରିୟ ଜନ କଥାରେ ନ କରିବୁ ସାଧ
ପଣ୍ଡିତ ମଧସ୍ଥ କରି ଛିଣ୍ଡାଇବୁ ବାଦ ।
ଯୁଦ୍ଧ ଭାଙ୍ଗି ଶତ୍ରୁ ଯେବେ ଯିବ ପିଠିଦେଇ
ତାହାକୁ ତୁ ନ ମାରିବୁ ଶାସ୍ତ୍ର ଅଛି କହି ।
ସମରେ ପାରିଲେ ଏକ ଶତ୍ରୁ ରାଜ୍ୟେ ଜିଣି
ଏ କଥାର ପାପ ନାହିଁ ଭୋଗକଲେ ଆଣି
ରାଜପକ୍ଷ ଲୋକ ଜାଣ ନୋହିବେ କରଟୀ
ଏମାନ ବେଳହୁଁ ବାବୁଥିବଟି ଆକର୍ଟି ।
ସବୁରି ମନ ଘେନିଣ କରିବୁ ଚରଚା
ଶୁଣି ଅଲଙ୍ଘିତ ଭୃତ୍ୟେ ନକରିବେ ବାଚା ।
ଶାନ୍ତ ପଣ୍ଡିତ ନିର୍ଲ୍ଲୋଭ ଦେଖିବୁ ଯେ ନର
ତେମନ୍ତ ଲୋକର ମୂଳେ ଦେବୁ ତୁ ଭଣ୍ଡାର

ବୋଲକରା ଭୃତ୍ୟେ ଥିବେ ଆଜ୍ଞାକୁ ଯେ ଚାହିଁ
ଯହିଁ ଓଳଗିଲେ ଯିବେ ବାୟୁ ବେଗେ ବହି
ବାହାର ବାରତା ଘେନିଯିବେ ଅନ୍ତଃପୁରେ
ସୁବୁଦ୍ଧି ଲୋକ ରଖିବ ପଶ୍ଚିମ ଦୁଆରେ ।
ଉତ୍ତମ ପଦାତି ଗଜ ବାଜୀ ଦଳ ଯେତେ
ସିଂହଦ୍ୱାରେ ସଜହୋଇ ଥିବେ ଅବିରତେ ।
ଖଳଲୋକ କେଉଁ ରାଜ୍ୟେ ନ ରଖିବୁବାବୁ
ଯେତେହେଁ ଅର୍ଜନ ହେଲେ ଦୂର କରିଦେବୁ
ଉତ୍ତମ ପଣ୍ଡିତ ଇଷ୍ଟ ସାଧୁ ଯେତେ ଲୋକ
ସମର୍ପିବୁ ଏହାଙ୍କୁ ତୁ ରୋଷ ସଞ୍ଚାଯାକ ।
ନିର୍ମଳ ଗରିଷ୍ଟଶ୍ରେଷ୍ଟ ପୁଣ୍ୟମନ୍ତ ଦ୍ୱୀପେ
ଏମାନଙ୍କୁ ରଖାଇବୁ ମଢ଼ୁଫୁଲି କାର୍ଯ୍ୟେ ।
ଦକ୍ଷିଣ ମୁଖେ କେବେହେଁ ନ କରିବୁ ସ୍ନାନ
ନ ପଢ଼ି ବେଦଶାସ୍ତ୍ର ନ କରିବୁ ଭୋଜନ ।
ଶୁଭକର୍ମ ଆଦି ଯେତେ ନ କରିବୁ ବରି
କଲେ ଥରେ ଅବଶ୍ୟ ତୁ ହେବୁ ହତଶିରୀ ।
ଦୂତ ରଖିଥିବୁ ତୁହି ଗଜବାଜୀ ଶାଳେ
ସପ୍ତମାସୁ ଗର୍ଭନାରୀ ତେଜିବୁ ନିଶାରେ ।
ଗୁରୁଙ୍କୁ ନୋହିବୁ ଅପରାଧି କେତେବେଳେ
ଦକ୍ଷିଣାଦେଲେ ନମିବୁ ତାଙ୍କ ପାଦତଳେ
ନ ହରିବୁ ଗୋ ପଞ୍ଚା ଶାସନ ପରବୃତ୍ତି ।
ଦିବସରେ ସ୍ତିରୀସଙ୍ଗେ ନକରିବୁ ରତି
ଗୋରସ ଆମିଷ ଏକାବେଳେ ନ ଭୁଞ୍ଜିବୁ
ନିଶି ପ୍ରବେଶେ ଭୋଜନ ଦଧି ନ କରିବୁ ।
ସୁବେଦୀ ବ୍ରାହ୍ମଣ କରେ ପିତୃଶ୍ରାଦ୍ଧ ଦେବୁ
ଆପଣାର ବିଧିମତେ ବାକ୍ୟ ଉଚ୍ଚାରିବୁ ।
କେତେବେଳେ ନ ମେଣ୍ଟିବୁ ଶ୍ରୀଗୁରୁ ବଚନ
ଆମ୍ଭେ ପୃଥ୍ୱୀପତି ବୋଲି ନ କରିବୁ ମାନ
ରକ୍ଷା ଆଉ ନାହିଁ ଗୁରୁ ଅପରାଧି ହେଲେ
ମୂର୍ଖ ସିନା ଏ କଥାକୁ ନ କରଇ ଭଲେ ।
ବିଷ୍ଟି ବ୍ୟତିପାତ ଆଉ ବୈଧୃତି ଏ ତିନି
ସଂକ୍ରାନ୍ତିରେ ଯାତ୍ରା କଲେ ହୁଅଇଟି ହାନି ।
ଦଶମୀ ଯେ ଏକାଦଶୀ ଆଉ ପିତୃଶ୍ରାଦ୍ଧେ
ଏ ଦିନମାନଙ୍କେ ସ୍ତିରୀ ନ ଛୁଇଁବୁ ଆଦ୍ୟେ
ସ୍ନାନ ସାରି ନିତ୍ୟ ତୁହି ପୂଜିବୁ ଶଙ୍କରେ
ବିଷ୍ଣୁପ୍ରାୟ ମାନିବୁ ସୁବେତ୍ତା ବିପ୍ରବରେ ।
ମିଛୁଆ ଖଚୁଆ ଆଉ ଲାଞ୍ଛୁଆ ଯେ ଜନ
ଏହାଙ୍କୁ ରାଜ୍ୟେ ବାବୁ ନ ଦେବୁ କେବେସ୍ଥାନ
ପ୍ରାଣୀଙ୍କୁ କରନ୍ତି ନିଶ୍ଚେ ଏ ତିନିହେଁ ନାଶ
ଏଣୁକରି ଏହାଙ୍କୁ ନ ଦେବୁ ରାଜ୍ୟେବାସ ।

ଆବର କହିବା ଆରେ ବଳା ତୋତେ ଶୁଣ
କେତେବେଳେ ବ୍ରାହ୍ମଣେ ନ ଦେବୁ ରାଜପଣ
ବ୍ରାହ୍ମଣ ପଦ ପାଦରେ ନ ହେଜନ୍ତି ନର
ବୋଲନ୍ତି ଯେ ଆମ୍ଭେ ଏକା ପୃଥ୍ୱୀରେ ଈଶ୍ୱର
ଏକେ ବିପ୍ରେ ଆମ୍ଭେ ପୁଣି ହେଲୁ ପୃଥ୍ୱୀଗ୍ରାହୀ
ବୁଝିଲୁ ସେ କାର୍ଯ୍ୟ ଆମ୍ଭେ ରାଜପଣ ପାଇ ।
ଏତେକ ପାଞ୍ଚି ନଜରେ ଜନ ନ ଆଣନ୍ତି
କେହୁ ଅଦା ଓଳଗିଲେ ମଥାକୁ ହଲାନ୍ତି ।
ବିଚାରନ୍ତି ସବୁ ଜାତିଠାରୁ ଆମ୍ଭେ ଶ୍ରେଷ୍ଠ
ରାଜପଣ ପାଇ ଏଣେ ହୋଇବ ଗରିଷ୍ଠ ।
ଆଜିଯାଏ ଏଥି ଦାନ ଘେନିଥିଲୁ ସବୁ
ଏଥର କାହାକୁ କିମ୍ବା ଆମ୍ଭେ କିସ ଦେବୁ
ସକଳ ମନକୁ ସିନା ଆମ୍ଭେ ଅଟୁ ଯମ
ଏତେକ ପାଞ୍ଚି ନାଶନ୍ତି ଦୟା ଆଦି ଧର୍ମ ।
ଆପଣାର ସୁଖଗୋଟି ଘେନିଥାନ୍ତି ହୃଦେ
ପରକ୍ଳେଶ ନ ଶୁଣନ୍ତି ସେହୁ ପଦେ ପଦେ ।
କ୍ଷତ୍ରୀବଂଶ ଲୋକମାନେ ନରପତି ଯୋଗ୍ୟ
ଦେବତା ବିପ୍ରେ ପ୍ରଣମି କରନ୍ତି ଓଳଗ ।
ବିପ୍ର ବଇଷ୍ଣବ ବରି କରନ୍ତି ସେ ପୂଜା
ଏଣୁ କ୍ଷତ୍ରିକୁଳେ ଅଟେ ପ୍ରସିଦ୍ଧ ସେ ରାଜା ।
ରାଜପଦ ଦେହେ ଏକ ଶୂଦ୍ରକୁ ଯେ ଦେବା
ସୁବେଦୀ ବିପ୍ର ଦେଖିଲେ କରନ୍ତି ସେ ସେବା
ରାଜାର ପୃଥ୍ୱୀରେ ସିନା ସର୍ବ ଅବତରି
ଯେତେ ଯେ ପୂଣ୍ୟ କରିଲେ ରାଜାଲାଗି ତରି
ତରନ୍ତି ରାଜାର ବାହୁବଳେ ସର୍ବଜାତି
ରାଜା ଏକା ସଂସାରରେ ଅଟେ ଅଧିପତି ।
ଯେ ଯାହାର ଅନୁରୂପେ କରି ରାଜସେବା
ରାଜାର ଦେଲା ପଦାର୍ଥ ଅକ୍ଷୟ ଜାଣିବା ।
କର୍ମର ବଳେ କରିବେ ତାହା ଆଣି ଭୋଗ
ରାଜାଠାରେ ନୋହିବ କେବେ ବଇରାଗ
ରାଜାଠାରେ ଦ୍ରୋହ କଲେ ଧର୍ମ ନାଶଯାଇ
ବିଷ୍ଣୁଠାରେ ଅପରାଧ କଲେ ପାପ ପାଇ ।
ବିଷ୍ଣୁକଳା ନ ଥିଲେ ତ ରାଜା ନୁହେଁ ପ୍ରାଣୀ
ସେ ନିଜ ଆୟତ୍ତ କରି ପାରଇ ଧରଣୀ ।
ଆହୁରି କଥାଏ କହେ ଶୁଣ ଆହେ ବାବୁ
ଦ୍ୱାଦଶୀ ସଙ୍କରାନ୍ତିରେ ତିଳଦାନ ଦେବୁ ।
ସନ୍ଧ୍ୟାକାଳେ ଚାରିକଥା କରିବୁ ବର୍ଜନ
ବିଦ୍ୟା ଯେ ନିଦ୍ରା ଆହାର ଆବର ମୈଥୁନ
ବିଦ୍ୟାରେ ମୂର୍ଖ ହୁଅଇ ଖାଦ୍ୟ ରୋଗ ଜାତ
ନିଦ୍ରାରେ ଯେ ଲକ୍ଷ୍ମୀ କ୍ଷୟ ମୈଥୁନେ ନିହତ ।
ଗୁରୁଙ୍କୁ ଦର୍ଶନ ଶୂନ୍ୟହସ୍ତେ ନ କରିବୁ
ଯେବା ମିଳିବ ଆଗରେ ଥୋଇ ଓଳଗିବୁ ।
ଗୁରୁଙ୍କୁ ଦକ୍ଷିଣା ଶୂନ୍ୟ କରନ୍ତି ଯେ ପ୍ରାଣୀ
କୋଟି ଜନ୍ମଯାଏ ସେହୁ ଭୋଗେ ନର୍କ ଖଣି ।
ଆଦର କଥାଏ ତୋତେ କହୁଅଛି ବାଳ
ଏକମନ ହୋଇ ଶୁଣ ନ ହୋଇ ଚଞ୍ଚଳ ।
ସନ୍ଧ୍ୟାବେଳେ କେଶକେବେ ନୋହିବମୁକୁଳା
ଶୁଣିଣ ମୁର ଦଇତ ଅଳ୍ପ ହସିଦେଲା ।
ବୋଇଲା କହିଲଆହେ ପିତାମୋତେ ଯାହା
ଏ କଥାଗୋଟି ପାଳିଛି କେଉଁ ନରନାହା ।
ପୁଣିହିଁ ବୋଲଇ କେଶ ନୋହିବ ମୁକୁଳ
ମୁଣ୍ଡିତ ଲୋକ ପାଇବେ କାହୁଁ ଅବା ବାଳ
ଥୋକାଏ ଲୋକମାନେ ଯେ ରଖିଥାନ୍ତି ଚୁଟି
ସେମାନେ କି କରିବେ କଥା କହିବଟି ।
କେଶ ନ ଥିବାର ଲୋକ କି କରିବେ କହ
ଶୁଣି ସଭାରେ ହସିଲେ ହୋଇ ଟହ ଟହ ।
ଏକଥା ଶୁଣି ମନରେ ପାଞ୍ଚି ପରମେଷ୍ଠୀ
ବୋଇଲେ ମୂର୍ଖରେ କାହିଁ ହେବ ସଭ୍ୟଗୋଷ୍ଠୀ
କର୍ପୂରୁଲିପ୍ତେ ରସୁଣ ଗନ୍ଧ କି ଛାଡ଼ିବ
ଅଙ୍ଗାର ଧୋଇଲେ କ୍ଷୀରେ ଶୁକ୍ଳ କି ହୋଇବ
ବ୍ରହ୍ମାଏ ବୋଇଲେ ତାହା କହେ ଶୁଣ ତେବେ
ଚୁଟି ରଖିବା କଥା ତୁ ପଚାରିଲୁ ଯେବେ ।
ସେ ଲୋକମାନଙ୍କୁ ତେବେ ନ ଲାଗଇ ଦୋଷ
ସବୁବେଳେ ମୁକୁଳାଟି କଲେ ଯେଣୁ କେଶ
ଏ କଥାରେ କହି ପୁଣି ପଚାରିଲେ ବିଧି
ମୂର୍ଖ କେବେ ବୁଝଇ କି କହିଲେ ସୁବୁଦ୍ଧି
ନବାତରେ ମଛିଲେ କି ନିମ୍ବ ହେବ ମଧୁ
ମହାକାଳ ରାନ୍ଧିଲେ କି ହୋଇବ ସେ ସ୍ୱାଦୁ
ବନ୍ଧ୍ୟାକୁ କହିଲେ କି ସେ ଜାଣେ ଗର୍ଭକଷ୍ଟ
ଅଷ୍ଟରତନ କେବେ କି ଚିହ୍ନଇ ମର୍କଟ ।
ତୁଳସୀ ବୃକ୍ଷ ବୋଲଇ ଜାଣଇ କି ଶ୍ୱାନ
ବିଟପୀ ଜନ ବୁଝଇ କହିଲେ କି ଜ୍ଞାନ ।
ପାଷାଣ୍ଡ ଲୋକ କି ସାଧୁଜନ ବୋଲି ପାଳେ
କୁପୁରୁଷ ବସନ୍ତି କି ପଣ୍ଡିତଙ୍କ ମେଳେ ।
ଦାମ୍ଭିକ ଲୋକମାନେ କି ବିଷ୍ଣୁ ଭକତଙ୍କୁ
ମାରୁଥାନ୍ତି ଅନୁକ୍ଷଣେ ନିନ୍ଦିଣ ଯେ ତାଙ୍କୁ ।
ବାତୁଳ ଜାଣେ କି ପର ଆପଣାର ଗୋତ୍ର
ଏହିମତି ସିନା ଅଟେ ଏହୁ ମୁରଦୈତ୍ୟ ।
ଆମ୍ଭର କଥାକୁ କିଏ ଘେନନ୍ତା ମନକୁ
ନ ଘେନୁ ପଛେ ଆମ୍ଭର ଯୋଗ୍ୟ କହିବାକୁ ।

ମୂର୍ଖଜନଙ୍କୁ ଅବଶ୍ୟ ଦେଖିଲେ ପଣ୍ଡିତେ
ପରମାର୍ଥ ବୁଝାନ୍ତି ନ ମାନି କଦାଚିତେ ।
ଜ୍ଞାନୀମାନେ କହିବାର ନ ଘେନେ ଯେ ହିତ
ଅଳପ ଦିନରେ ତାର ହୁଏ ଶିରଚ୍ୟୁତ ।
ଏମନ୍ତ ପାଞ୍ଚଣ ବ୍ରହ୍ମା ମନେ ମନେ ଗୁଣି
ମୁରକୁ କହି ସେଠାରୁ ହୋଇଲେ ମେଲାଣି ।
ଆପଣା ଭୁବନେ ଯାଇ ହୋଇଲେ ପ୍ରବେଶ
ବ୍ରହ୍ମାର ଯିବାର ଦେଖି ଚଳିଲେ ତ୍ରିଦଶ ।
ନାରଦ ଆଦି ମହର୍ଷି ଯେତେ ଆସିଥିଲେ
ଯେ ଯାହାର ଆଶ୍ରମକୁ ସର୍ବେ ଚଳିଗଲେ ।
ଗୃହମାନଙ୍କରେ ଯାଇ ହୋଇଲେ ପ୍ରବେଶ
ସେ ପାଦେ ଶରଣ ବିପ୍ର ପୀତାମ୍ବର ଦାଶ ।



## ମୁରାସୁରର ସପ୍ତଦ୍ୱୀପ ଭ୍ରମଣ

ଏଥିଉତ୍ତାରୁ ପ୍ରସଙ୍ଗ ଶୁଣ ହେ ନାରଦ
ଶାଢ଼ୀ ମୁଣ୍ଡେ ବାନ୍ଧିଦୈତ୍ୟ ହୋଇଲା ଆନନ୍ଦ
ମନ୍ତ୍ରୀକି ବୋଇଲା ଏବେ ଅନୁକୂଳ ଖୋଜ
ଦିଗବିଜୟ କରିବା ସୈନ୍ୟବେଗେ ସାଜ ।
ଏହାଶୁଣି ହେଉବୋଲି କହେ ମହାମନ୍ତ୍ରୀ
ବୁଝିଲା ଜ୍ୟୋତିଷ ରାଇ ଦିନବାର ତିଥି ।
ମାଘମାସ ଶୁକ୍ଳ ଦଶମୀ ଯେ ରବିବାର
ମୃଗଶିରା ନକ୍ଷତ୍ର ଯେ ଅଟେ ସେ ଦିନର ।
ତୈତିଳ ନାମେ କରଣ ପ୍ରୀତି ନାମେ ଯୋଗ
ମକର ସଙ୍କରାନ୍ତିକି ଚୌଦଦିନ ଭୋଗ ।
ତୃତୀୟରେ ରାହୁ ଅଷ୍ଟମରେ ଶନୈଶ୍ଚର
ମଘା ସିଂହକୁ ପ୍ରଶସ୍ତ ନାମ ଅଟେ ତାର ।
ସପ୍ତମରେ ବୃହସ୍ପତି ଲାଭରେ ମଙ୍ଗଳ
ବୁଧ ବେଳାରେ କରିବେ ରାଜା ଅନୁକୂଳ ।
ସେଦିନ ମଘା ସିଂହକୁ ପାପଗ୍ରହ ନାହିଁ
ତାର ଚନ୍ଦ୍ର ବୁଝିଣ ଯେ ଜଉତିଷ କହି ।
ଏରୂପେ ସେ ସୁପଣ୍ଡିତେ ଦେଲେ ଅନୁକୂଳ
ହୋଇଛି ଅମୃତବେଳା ନାହିଁ କାଳବେଳ ।
ଏହା ସବୁ ବୁଝି ମନ୍ତ୍ରୀ ରାଜା ଆଗେ କହି
ବୋଇଲେ ଏଦିନ ଯାତ୍ରା କରୁ କିନା ତୁହି ।
ଯେଣେ ଗଲେ କାର୍ଯ୍ୟ ଲଭି ଆସିବୁ ଅବଶ୍ୟ
ଏମନନ୍ତ ବୋଲି କହିଲା ମନ୍ତ୍ରୀ ରାଜା ପାଶ ।
ଶୁଣିଣ ଅତି ଆନନ୍ଦ ହେଲେ ମହାରାଜା
ମଣୋହିରେ ବିଜେକରି ଖାଇ ଖଣ୍ଡଖଜା ।
ନବାତ ଦଧି ଦୁଧ ଯେ କଦଳୀ ଶାକର
ଦିଅନ୍ତି ସେ ସୂପକାରେ ଭୁଞ୍ଜେ ମୁରାସୁର ।
ସୁବର୍ଣ୍ଣ ପୀଢ଼ାରେ ବସି ସାରିଲା ମଣୋହି
ସୁବାସ ଜଳରେ ମୁଖ ପଖାଳିଲା ଯାଇଁ ।
ଆସ୍ଥାନକୁ ଗଲା ପୁଣି ପୋଛିଣ ଶ୍ରୀମୁଖ
ସେବକ ଆସି ବେଢ଼ିଲେ ତାର ଚାରିପାଖ ।
ମଣିମା ମଣିମା ବୋଲି ଶୁଭଇ ଶବଦ
ଧୀରେ ଧୀରେ ଜାଲେ ରାଜାଦେଇ ବାହାନାଦ
ସିଂହାସନର ଉପରେ ବସିଲା ଆଉଜି
ଭୁଞ୍ଜିଲାକ ଗୁଆ ପାନ ଚକ୍ଷୁ ଦୁଇ ବୁଜି ।
ଦାରୁଣ ଏହି ରୂପରେ ସାରିଲା ଭୋଜନ
ନିଦ୍ରାଭୋଗ କରି ରାତ୍ର ପୂହାଇଲା ଦିନ ।
ପାହାନ୍ତି ଅବକାଶରେ ହେଲା ଦିବ୍ୟବେଶ
ବାଜିଲା ଦାଉଣ୍ଡି ନାଗରା ଯେ ବିଜିଘୋଷ ।
ଦୋଷରୀ ପୋଦଟିଆ ଯେ କଂସାଳ କାହାଳୀ
ଘୁମୁ ଘୁମୁ ଘୁମୁରା ଯେ ବାଜେ ରାମତାଳି ।
ଦୁଲୁ ଦୁଲୁ ମର୍ଦ୍ଦଳ ଯେ ବାଜେ ଘିଡ଼ି ଘିଡ଼ି
ମୁର ଦିଗବିଜେ ଦେଖି ପୃଥ୍ୱୀପଡ଼େ ସଢ଼ି ।
ବିଜୟା ରଥକୁ ଭାଜା ସୁମରିଲା ଚିତ୍ତେ
ତତ୍‌କ୍ଷଣେ ସେ ଯାନ ଆସି ମିଳିଲା ଅଗ୍ରତେ
ସେ ରଥେ ମୂର ଦାରୁଣ ବସି ଭାଇ ବେନି
ସୁବିଜ୍ଞ ମହାମନ୍ତ୍ରୀଙ୍କୁ ସଙ୍ଗତରେ ଘେନି ।
ମନରେ କହନ୍ତେ ରଥ ଚଳେ ଧୀରେ ଧୀରେ
ଶତ୍ରୁ ମର୍ଦ୍ଦଳ ଚିରାଳ ଉଡ଼େ ଗଗନରେ ।
ବାର ତାର କାଳବେଳ ସକଳ ଉତୁରି
ବୁଧ ବେଳାରେ ଗମନ କରେ ଦଣ୍ଡଧାରୀ ।
ରାଜା ବାହାରନ୍ତେ ଗଜ ଅଶ୍ୱ ସୈନ୍ୟମାନେ
ଚଳିଲେ ଆଗ ପଛରେ ଯେ ଯାହା ବାହନେ
ସୌଦାସ ଅସୁର ବୃକାସୁର ମହାବଳୀ
ପ୍ରଳମ୍ବା ମଦନା ବୃକାସୁର ମହାବଳୀ ।
ରଣଚୂଡ଼ ଚନ୍ଦ୍ରମାଳି ବିରାଜ ବିକୃତ
ଅଳେପି ସଲୋପି କାଳକେତୁ ମୁରଜିତ ।
କାଙ୍କୋଳା ସୁମାଳୀ ଜଳଘଣ୍ଟ ଲୋହାସୁର
ହିରଣ୍ୟକେଶୀ ବିକୃତରଣ ମହାବୀର ।
ଖଡ଼କାସୁରକୁ ମିଶି ଏତେ ସେନାମାନେ
ଅଶୀଯୁଣ ସୈନ୍ୟମାଡ଼ି ଚଳିଲେ ଗହଣେ ।
ଜମ୍ବୁଦ୍ୱୀପ ଜିଣିଗଲେ ସେ କରଞ୍ଚ ଦ୍ୱୀପ
ମୋହନାସୁର ବୋଲି ଯେ ଅଛି ତହିଁ ନୃପ
ଅତିଶୟ ବିଚକ୍ଷଣ ଅଟେ ସେହୁ ରାଜା
ମୁର ପ୍ରତିଜ୍ଞା ଶୁଣିଣ କଲା ଆସି ପୂଜା ।
ସୁକ୍ଷୀନ ବସନ ସଙ୍ଗେ ଘେନି ଧନରତ୍ନ
ମୁରାସୁର ପାଦେ ଆସି ଦେଲା ଦରଶନ ।

ଦେଖିକରି ମୁରାସୁର ଶାନ୍ତିକି ଭଜିଲା
ଆଦର କରିଣ ତାକୁ ପାଟଶାଢ଼ୀ ଦେଲା ।
ଆପଣା ମନ୍ତ୍ରୀକି ଚାହିଁ ପଚାରଇ ବାଣୀ
କହ କେଉଁଠାର ଏହୁ ଅଟେ ନୃପମଣି ।
ଶୁଣିକରି କରଯୋଡ଼ି କହେ ମହାମନ୍ତ୍ରୀ
କରଞ୍ଜ ନାମେ ଦ୍ୱୀପର ଅଟଇ ଯେ କ୍ଷତ୍ରୀ ।
ତୁମ୍ଭ ସହିତରେ ପ୍ରୀତି କରିବା ନିମନ୍ତେ
ଦରଶନ ଘେନି ଆସି ଭେଟିଲାକ ତୋତେ ।
ଏ ଦିଗ ଗୋଟିକ ସ୍ୱାମୀ ହେଲା ତୋତେ ସାଧ
ଶୁଣିଣ ମୁରାସୁର ଯେ ହୋଇଲା ଆନନ୍ଦ ।
ମୋହନାସୁରକୁ ରାୟେ କଲା ସମ୍ଭାଷଣ
ବୋଇଲେ ଆଜୁଁ ରାଜା ତୁ ମୋର ପଞ୍ଚପ୍ରାଣ
ସେନାପତିଯାକରେ ତୁ ହେବୁ ଜଣେ ଲେଖା
ଏତେ ବୋଲି ତାରମାଥେ ଦେଲା ଶାଢ଼ୀଟୀକା
ମୋହନାସୁର ବୋଇଲା ଶୁଣ ଆହେ ସ୍ୱାମୀ
ଦିନେ ମାତ୍ରକ ରହିବା ହେଉ ମୋର ଭୂମି
କେବଳ ଅନ୍ନ ଭୁଞ୍ଜିଣ ଯିବା ଅନ୍ୟ ଦେଶ
ଶୁଣିକରି ମୁରାସୁର ହୋଇଲା ହରଷ ।
ସେଦିନ ତାହାର ଗୃହେ ସୈନ୍ୟ ଘେନି ରହି
ଉତ୍ତମରୂପେ ମଣୋହି କଲା ରାଜା ତହିଁ ।
ଆରଦିନ ସେଠାବରୁ ଆନନ୍ଦରେ ଗଲେ
ମୋହନାସୁରକୁ ଘେନି ଦିଗବିଜେ କଲେ ।
ଅତିଶୀଘ୍ର ସୈନ୍ୟ ହୋଇଲେକ ଦିବ୍ୟସଜ
ବାଜିଲା ନିଶାଣ ବୀର ତୂର ପଖାଉଜ ।
ଚରଣର ରେଣୁଘାତେ ତପନ ଅଦୃଶ୍ୟ
ପଞ୍ଚଶତ କୋଟି ଯୋଦ୍ଧା ପରାର୍ଦ୍ଧେ ରାକ୍ଷସ ।
ଯୋଦ୍ଧାମାନଙ୍କର ଗଜ ବରାହ ବାହନ
ସବୁରି ବରେ ନାରାଚ ଧନୁ ବିଦ୍ୟମାନ ।
ଶାବେଳି ଭୁଷଣ୍ଡି ଢେଲ କୁନ୍ତ ତୀକ୍ଷ୍ଣ ମୁନା
ଅସି ପରଶୁ ଗଦା କେ କରିବ ଗଣନା ।
ଅଙ୍କୁଶ ଫଳି ଦଉଡ଼ି ତ୍ରିଶୂଳ ଶକତି
ଏକକୁ ଆରେକ କେହି ବାରଣ ନ ଯାନ୍ତି ।
ଗଜ ଗହଣେ ସଇନ୍ୟ ଚାଲନ୍ତି ପଲାଣି
ପାଦଭରେ ଦଲ ଦଲ ହୁଅଇ ମେଦିନୀ ।
ସିନ୍ଧୁ କଲ୍ଲୋଳ ପରାୟେ ଚଳେ ଦୈତ୍ୟଥାଟ
ଦେବଙ୍କୁ ଦୁର୍ଲ୍ଲଭ ଶୁଭେ ମୁରାସୁର ଆଣ୍ଟ ।
ଏକ ଏକ ଦାନବ ଯେ କରି ଗୁରୁଟାଣ
କହନ୍ତି ପିତାହମ ଯେ ନାରଦ ହେ ଶୁଣ ।



## ମୁରାସୁରର କରଞ୍ଜ ଦ୍ୱୀପ ଯାତ୍ରା ଓ କଣ୍ଠ ବିକଣ୍ଠ ସହିତ ମିତ୍ରତା

ମକର ମାସରେ ମୁର ଅନୁକୂଳ କଲା
କରଞ୍ଜାରୁ ଯାଇ ପ୍ଳକ୍ଷଦ୍ୱୀପରେ ମିଳିଲା ।
ସେ ଦ୍ୱୀପର ରାଜା ଅଟେ ତ୍ରିମୁଣ୍ଡି ଯେନୃପ
ପାର୍ବତୀ ସେବି ସେ ବର ପାଇଛି ଅମାପ ।
ଯେତେକ ସୈନ୍ୟ ତାହାର ସବୁ ସ୍ତିରୀମୟେ
ଲେଖିଲେ ସଂଖ୍ୟାରେ ହୋଇ ଅଶୀପଦ୍ମ ଯାଏ
ମହାବଳବନ୍ତ ସେହି କାମେ ଗୁରୁହଂଯୀ
ଶତ୍ରୁଜୟ ନୋହିଲେ ସେ ଶୃଙ୍ଗାରଯେତୋଷି
ରେତ ସ୍ଖଳିତ ହୋଇଲେ ତାଙ୍କୁ ମାରିଦ୍ୟନ୍ତି
ହେ ବାବୁ ନାରଦ ଶୁଣ ବିଧାତା କହନ୍ତି ।
ସତର ଲକ୍ଷ ଯୋଜନ ପୃଥ୍ୱୀ ଆୟତନ
ତହିଁରେ ତିନିଲକ୍ଷ ଯେ ବସନ୍ତି ରାଜନ ।
ସମସ୍ତେ ସେବିଣଥାନ୍ତି ତ୍ରିମୁଣ୍ଡାସୁର ପାଦେ
ରାଜ୍ୟ ଆୟମୂଳ ଦେଇ ଅଛନ୍ତି ଆନନ୍ଦେ ।
ଦ୍ୱିତୀୟ ସ୍ୱର୍ଗ ଜିଣିଣ ଦିଶେ ସେହି ପୁର
ଥାଟ ଘେନି ସେ ରାଜ୍ୟରେ ମିଳିଲା ଯେ ମୁର
ଚାର ଯାଇ ଜଣାଇଲା ତ୍ରିମୁଣ୍ଡାର ଆଗେ
ଶୁଣିମାହେଉ ଭୋଦେବ କଥାଏ ତ ବେଗେ
କେଉଁ ଦେଶ ରାଜା ଆସି ପଶିଲେଣି ରାଜ୍ୟେ
ବହୁ ସୈନ୍ୟ ଘେନି କରି ଅଛି ଦିଗ ବିଜେ ।
ପ୍ରୀତି କିରବା କି ରଣ କରିବା ତା ସଙ୍ଗେ
ଏ ବେନି କଥାକୁ ବୁଝି କହିବା ପ୍ରସଙ୍ଗେ ।
ଦେଶାଉର ମୁଖୁଁ ଶୁଣି ଏସନକ ରାୟେ
ମନ୍ତ୍ରୀକି ଡକାଇ ଆଣି ତାକୁ ସବୁ କହେ ।
ବୋଲେ ଦେଖ ଶତ୍ରୁ ଆସିଅଛି ଏହି ଲାଗେ
ବହୁସୈନ୍ୟ ଘେନି ବେଢ଼ିଛିତ ଚଉଦିଗେ ।
ପ୍ରୀତି କରିବା କି ଅବା ସମର କରିବା
ଏ ବେନି କଥା ବୁଝିଣ ପ୍ରସଙ୍ଗ କହିବା ।
ମନ୍ତ୍ରୀ ଯେ ବୋଇଲା ତେବେ ଶୁଣ ମହାରାଜା
ମୂର୍ଖକୁ ଯାଇଣ ମୁହିଁ କରିବି କି ପୂଜା ।
କି ହେତୁ ପଶିଲା ଆଜ ଆମ୍ଭ ରାଜ୍ୟେ ଆସି
ଏ କଥା ବୁଝିଣ ଯାଇ କହିବା ବିଶେଷି ।
ଏମନ୍ତ ବୋଲି କହିଲା ଯହୁଁ ମନ୍ତ୍ରୀବର
ଯାଅବୋଲି କହିଲା ଯେ ତାକୁ ଦୈତ୍ୟେଶ୍ୱର
ପରିଘ ମନ୍ତ୍ରୀ ରାଜାର ଆଜ୍ଞା ପାଇଗଲା
ଭେଟି ନିମନ୍ତେ କେତେକ ପଦାର୍ଥ ଧଇଲା ।

ଏଥିଉତ୍ତାରେ ଥାଟରେ ଥିଲା ମୁର ମନ୍ତ୍ରୀ
ଶତେକ ମର୍ଭୁତ ସଙ୍ଗେ ଘେନିଣ ପଦାତି ।
ଅନେକ ଅଳଙ୍କାର ସେ ସଙ୍ଗେଛନ୍ତି ନାଇ
ଗାନ୍ଧର୍ବଗଣ ପରାୟେ ଦେହ ବିରାଜଇ ।
ଏସନ ସମୟେ ଯାଇ ଭେଟିଲେ ପରିଘ
ଦେଖା ଦରଶନୀ ଧନ ଥୋଇଦେଲା ଆଗ ।
ପ୍ରତିଯୋଗ ଦେଖି ତାର ସେ ସୁବିଜ୍ଞ ମନ୍ତ୍ରୀ
ପରିଘକୁ ବେଗେ ଘେନିଗଲା ମୁର କତି ।
ସୁବିଜ୍ଞ ବୋଲଇ ଦେବ ପରିଘ ମନ୍ତ୍ରୀଏ
ଉପହାର ଦ୍ରବ୍ୟ ଥୋଇ ହୋଇଛି ବିନୟେ ।
ଏହାକୁ ତ୍ରିମୁଣ୍ଡାସୁର ଦେଲାଟି ଯେ ପେଷି
ପ୍ରୀତି କରିବା ନିମନ୍ତେ ଅଛଇ ଯେ ଆସି ।
କହନ୍ତେ ମନ୍ତ୍ରୀ ଶୁଣିଲା ଯାଇ ମନ୍ତ୍ରୀବର
ଆଗେ ଦରଶନୀ ଥୋଇ କହଇ ଉତ୍ତର ।
ପରିଘ ବୋଇଲା ଦେବ ଶୁଣ ମୁରରାୟେ
ପେଷିଛି ତ୍ରିମୁଣ୍ଡାସୁର ମୋତେ ତବଯାଏ ।
ଆପଣେ ଦିନେ କରିବ ପୁଣି ଏହିଲାଗେ
ତ୍ରିମୁଣ୍ଡାସୁରକୁ ଦରଶନ ଦେବ ବେଗେ ।
ଶୁଣିକରି ମୁର ହେଲା ହରଷ ବିରସ
ମନ୍ତ୍ରୀକି ବୋଇଲେ ଯାଇ କହ ରାଜାପାଶ ।
ବୋଲେ ତୋହର ପୁରକୁ ଆସିଛି ସେ ନେଇ
କଣ୍ଠ ବିକଣ୍ଠକୁ ଦେଲେ ଯିବେ ଶ୍ରଦ୍ଧା ହୋଇ
ନୋହିଲେ ରାଜା ଯେବେ ନଦେବେ ବେନିଶିଷି
କାଲି ତେବେ ସମର ଯେ କରୁ ବେଗେ ଆସି
ଏତେ କହିଣ ଉଠିଲା ମୁର ହୋଇ କୋପୀ
ବିସ୍ତାର ହୋଇଲା ଶୂନ୍ୟ ପରିଯନ୍ତେ ବ୍ୟାପୀ
ଅଗ୍ନିଜଳିଲା ପରାୟେ ଦିଶିଲା ଯେ ନେତ୍ର
ତାହା ଦେଖି ପରିଘାର ଥରିଲା ତା ଗାତ୍ର ।
ମହାଭୟ କରିଣ ସେ ଉଠି ସେହି ଲାଗେ
ତକ୍ଷଣେ ମିଳିଲା ଯାଇ ତ୍ରିମୁଣ୍ଡାର ଆଗେ ।
ମୁର କଥାଯାକ ରାଜା ଆଗେ କହେ ବସି
ବୋଇଲା ଉତ୍ପାତ ଏବେ ପଡ଼ିଲାକ ଆସି ।
କହିବା ତାହାର ରୂପ ଗୁଣ କିସ ରାୟ
ଦେବତା ମନୁଷ୍ୟ ମୁଖ ଅସୁରଙ୍କ ପ୍ରାୟ ।
ମୋତେ ଯାହାମାଗିଲା ସେ ନୋହେ ତାହାକହି
ବୋଇଲା ରାଜାକୁ କହ ଦେଉ ପୁତ୍ର ଦୁଇ ।
ଦେଇ ରାଜା ତୋର ନିଶ୍ଚିନ୍ତରେ ଥାଉ ବସି
ନୋହିଲେ ସେ ମୋର ସଙ୍ଗେ ଯୁଦ୍ଧକରୁ ଆସି
ଏମନ୍ତ ବୋଲି କହିଲା ଯହୁଁ ମନ୍ତ୍ରୀ ବାର୍ତ୍ତା
ଶୁଣିଣ ତ୍ରିମୁଣ୍ଡାସୁର କଲା ବଡ଼ ଚିନ୍ତା ।

ବୋଇଲା ଏଡ଼େ କଥାକୁ ମାଗିଲା ପାପୀଷ୍ଟ
ପଦାର୍ଥ ମାଗିଲେ ଦେଇଥାନ୍ତି ହୋଇ ହୃଷ୍ଟ ।
ନୋହିଲେ ସୈନ୍ୟ ମାଗିଲେ ଅବାକେତେଦ୍ୟେନ୍ତି
କେମନ୍ତେ ମାଗିଲେ ଏଡ଼େ କଥା ହୀନଜାତି ।
ସେ ଯେବେ ପୁଅକୁ ମୋର ମାଗିଲା ଘଣ୍ଡାଳ
ଅବଶ୍ୟ ପୂରିଲଣ ତେବେ ତାର ଆସି କାଳ ।
ନିମିଷେ ସପତ ସିନ୍ଧୁ ପାରଇ ମୁଁ ଶୋଷି
ଏହା ଜାଣି ନଷ୍ଟ ଲୋକ ପଶିଲାକ ଆସି ।
ମୋର କଥାମାନ କି ସେ ଶୁଣିନାହିଁ କର୍ଣ୍ଣେ
ପ୍ଳକ୍ଷଦ୍ୱୀପ ରାଜା ମୁଁ ଯେ ଅଟେ ବିଦ୍ୟମାନେ
ଯୋଗ୍ନିଙ୍କ ମୁଖେ କରିବି ଆଜ ତାକୁ ପୂଜା
ସାଜ ମୋ ସଇନ୍ୟ ବୋଲି ଆଜ୍ଞାଦେଲେ ରାଜା
ତ୍ରିମୁଣ୍ଡାସୁର ମୁଖରୁ ଏ ବଚନ ଶୁଣି
ଘୋଷଣା ଶୁଭଇ ଥାଟ ଦୁଃସହ ପଲାଣି ।
ଜମ୍ବୁଦ୍ୱୀପ ରାଜା ଆସିଅଛି ଯୁଦ୍ଧ ମାଗି
ନୋହିଲେ ବୋଲୁଛି ଦେଉ ପୁତ୍ରଙ୍କୁ ସେବେଗି
ତାହା ଶୁଣି ରାଜା ଆମ୍ଭ କଲେକ ପହିଜ
ଏମନ୍ତ ବୋଲି ବଜାଇ ନଗ୍ରେ ପଖାଉଜ ।
ଉଚ୍ଚାଟମନା ହୋଇଲେ ଶୁଣି ନାରୀଗଣ
ଶୁଣ ନାରଦ କହିବା ଏଥୁଅନ୍ତେ ପୁଣ ।
ରାଜାର ଆଜ୍ଞାରେ ସୈନ୍ୟ ମନ୍ତ୍ରୀ କଲା ସଜ
ସବୁ କରେ ବିରାଜଇ ଅକ୍ଷୟ ନାରାଚ ।
କଣ୍ଠ ବିକଣ୍ଠ ବୋଲି ହେ ରାଜପୁତ୍ର ବେନି
ଅଶୀପଦ୍ମ ନାୟିକାଙ୍କ ମଧ୍ୟେ ଶିରୋମଣି ।
ତୀର କମାଣ ହୋଇଣ ଗଲେ ସର୍ବ ନାରୀ
କିଳିକିଳା ନାଦ ଦେଇ ଗଲେ ରଣ କରି ।
ବ୍ୟାଘ୍ର ବାହନ ଚଢ଼ିଣ ରାଜା ବେନି ବଳା
ଗଳେ ଲମ୍ବାଇ ଅଛନ୍ତି ଜବା ପୁଷ୍ପମାଳା ।
ଲୁହାର ଧନୁ କମାଣ ଧରିଅଛି ହସ୍ତେ
ପ୍ରତିଜ୍ଞା କରି କହନ୍ତି ପିତାର ଅଗ୍ରତେ ।
ବୋଲନ୍ତି କରୁଛ ଏଡ଼େ ଚିନ୍ତା କିମ୍ପା ମନେ
ତୋତେ କି ପୁଣ କହିବୁ ଥାଇ ଆମ୍ଭେମାନେ
କୁମର ଥାଉ ଯଦ୍ୟପି ପିତା ପାଏ ଦୁଃଖ
କୁମର ଥାଉଁ ପତ୍ନୀର ଯେବେ ନୋହେ ସୁଖ
ଧନ ଥାଉଁ ଜନ ଯେବେ ହୁଏ ଭିକ୍ଷାବାସୀ
ରାଜପଣ ଥାଉଁ ଯେବେ ପ୍ରାଣୀକି ନ ପୋଷି
ଜମି ଥାଉଁ ଥାଉଁ ଯେବେ ଧନ ଯାଏ ଚୋରୀ
ଦୋଷ ନ ଥାଇ ପରକୁ ଯେବେ ଦଣ୍ଡ ବରି ।
ସୁସାଧୁ ଥାଉଁ ଦୁର୍ଜ୍ଜନେ ଯେବେହେବେଗୋଷ୍ଠୀ
ପତ୍ନୀ ଥାଉଁ ହରଇ ଯେ ପର ଭାରିଜାଟି ।

ଗୁରୁ ଥାଇ ଯେବେ ଜନ କରେ ଆନ ଗୁରୁ
ବେନି ପାକ ମିଶାଇ ଯେ ଭୁଞ୍ଜେ ପରଘରୁ ।
ବେନି କଥା ହେଉ ଯେବେ ଆନଜନେ ଶୁଣେ
ଇଣେ ଧର୍ମ କରୁ ଯେବେ ଭାଙ୍ଗେ ଆନ ଜଣେ
ଭୂମି ଥାଉଁ ଯେବେ ବୃକ୍ଷ ପରେ ଲୋକ ବସେ
ଏ ଲୋକମାନଙ୍କୁ ସ୍ୱାମୀ ଲେଖି କୁପୁରୁଷେ ।
ଆମ୍ଭେ ତୋର ପୁତ୍ର କୁଳକୁ ଯେ ଅଟୁ ଶ୍ରେଷ୍ଠ
ଆଜ୍ଞା ଦେଲେ କରିବୁ ଯେ ଶତ୍ରୁ ମୁଣ୍ଡକାଟ ।
ପୁତ୍ରଙ୍କ ପ୍ରତିଜ୍ଞା ଶୁଣି ତ୍ରିମୁଣ୍ଡା ରାଜନ
ଚାଲ ତେବେ ବୋଲି ଆଜ୍ଞା କଲା ଅବଧାନ
ଆପେ ସେ ପୁତ୍ରକୁ ଘେନି ଯୁଦ୍ଧେ ହେଲା ସଜ
ବାଜିଲା ଟମକ ଭେରୀ ଢୋଲ ପଖାଉଜ ।
ରଣସ୍ଥାନେ ବେନିବାଳ ହେଲେ ଯାଇ ଏକ
ବିହରନ୍ତି ଦୈତ୍ୟ ତହିଁ ଘୋଟିଣ ତ୍ରୈଲୋକ୍ୟ
ଡିଅନ୍ତି ଧାମନ୍ତି କେହୁ ନାଚନ୍ତି ହସନ୍ତି
ଚୁମ୍ବୁର ବଜାଇ କେହି ପିଟନ୍ତି ଶକତି ।
ହାଣ ହାଣ ମାର ମାର ବୋଲେ ଧର ଧର
ଶ୍ୟାମଳ ମେଘରେ ଯେହ୍ନେ ବିଜୁଳି ପ୍ରଖର
ଯେରୂପେ ଧାମନ୍ତେ ମୁରଦୈତ୍ୟ ଗଦାତୋଳି
ଦେଖିଲେ ଅଛନ୍ତି ସ୍ତିରୀଗଣ ଯୁଦ୍ଧେ ମିଳି ।
ସ୍ତିରୀଙ୍କ ମୋହନ ମନ୍ତ୍ରେ ଜଗତ ଅନ୍ଧାର
ତେଣୁ ଆପେ ମରାମରି ହୋଇଲେ ଅସୁର ।
ପର ଆପଣା ବୋଲି ସେ ନ ପାରନ୍ତି ଜାଣି
ମରୁଛନ୍ତି ଅଖଡ଼େ ଯେ ହୋଇ ହଣାହଣି ।
ଏହିରୂପେ ମୁରସୈନ୍ୟ ଗଲେ ଥୋକେମରି
ହେମନ୍ତ ପ୍ରଳୟ କାଳେ ସମୁଦ୍ର ଲହରୀ ।
ଏମନ୍ତ ସମର ଗୋଟି ଦେଖି ସୈନ୍ୟମାନେ
ଇଣାଏ ଖଡ଼ିକା ଯାଇ ରାଜା ସନ୍ନିଧାନେ ।
ବୋଇଲା ଭୋଦେବ ସ୍ୱାମୀ ଶୁଣ ମୁରାସୁର
ଅଲୌକିତ କଥା ଆଜି ଦେଖିଲେ ସମର ।
ସ୍ତିରୀ ଗୁଡ଼ାଏ ସେ ରାଜା ଅଛି ସଙ୍ଗେ ଘେନି
କି କି ମନ୍ତ୍ର ମୋହିନୀ ସେ ଜାଣନ୍ତି କାମିନୀ ।
ତାଙ୍କୁ ଚାହିଁଲେ ଦିଶଇ ସୃଷ୍ଟି ଅନ୍ଧକାର
ତେଣୁ ଆପେ ମରାମରି ହେଲେ ସୈନ୍ୟତୋର
ଏହା ଶୁଣି ମୁରାସୁର ମନେ ମନେ ଭାଳି
ଅନେକ ସଇନ୍ୟ ଘେନି ଯୁଦ୍ଧେ ଗଲା ଚଳି
ଥାଟ ଭିତରେ ପଶିଲା ଯାଇ ରାଜା ବେଗେ
ଥିଲେ କଣ୍ଠ ବିକଣ୍ଠ ଯେ ମିଳିଗଲେ ଆଗେ ।
ତାହାଙ୍କୁ ଦେଖି ମୁରର କମ୍ପେ ଉରସ୍ଥାନ
ଦନ୍ତ ଚାପିଣ ଚାହିଁଇ ତରାଟି ନୟନ ।

ବୋଇଲେ ତୁମ୍ଭେରେ ଅଟ ରାଜାର କୁମର
ଅଦୋଷେ ସୈନ୍ୟଙ୍କୁ ତୁମ୍ଭେ ମାଇଲ ମୋହର
ଗାତ୍ରେ କୁରାଢ଼ି ପରାୟେ ଲାଗି ଆସିମୋତେ
ତୁମ୍ଭର ପ୍ରାଣ ନିଅନ୍ତି ତୀକ୍ଷ୍ଣ ମୁନାଘାତେ ।
କରିବି କେବଳ ସେନାପତି ନେଇ ଧରି
ଏଣୁ ତୁମ୍ଭଙ୍କୁ ପକାଉ ନାହିଁ ମୁହିଁ ମାରି ।
ଏତେ ବୋଲି ମୁରାସୁର ସଇନ୍ୟକୁ ଡାକି
ବୋଇଲେ ନମାର କେହି ସେ ଦୁଇ ଭାଇଙ୍କି
ପଡ଼ିଲେ ଜୀଅନ୍ତା ଧରି ଆଣିଦେବ ମୋତେ
ରଖିବି ବନ୍ଧନେ ବଳ ଭାଙ୍ଗିବା ପର୍ଯ୍ୟନ୍ତେ ।
ରାଜା ଆଜ୍ଞା ପାଇ ଦୈତ୍ୟ ଯାନ୍ତି ଧରି ଯଷ୍ଟି
ସେ ଯୁବା ସ୍ତିରୀଙ୍କୁ ଦେଖି ନ ପାରିଲେ ଉଠି
କେ ନିରେଖି ଚାହିଁଲା କେ ଦେଖେ ଯଉବନ
କେ ରତି କରିବ ବୋଲି ଉଚ୍ଚାଟିତ ମନ ।
କେ ନାରୀଙ୍କ ସ୍ତନ ଦେଖି ତାଡ଼ନ୍ତି ଭୂମିକି
କେ ମୁଖ ଦେଖିଲାକ୍ଷଣି ହୁଅଇ ଭେଳକୀ ।
କେ ମୋହେ ପଡ଼ଇ ଦେଖିକରି ବେନିଜାନୁ
କେହୁ ବକ୍ରେ ଚାହାଁନ୍ତେଣ କର୍ତ୍ତିହୁଏ ତନୁ ।
କେ ଉର ଦେଖିବା ମାତ୍ରେ ହୁଅଇ ବିହ୍ୱଳ
କେବଣ ନାରୀକୁ କେହୁକରେ ବଳେ କୋଳ
କେ ଭୁଞ୍ଜନ୍ତି ନିଅନ୍ତି କେ ହ୍ୱନ୍ତି ହତ ଜ୍ଞାନ
କେ କଟିକୁ ଅନାଇ ଯେ ଶୋଷିଲାକ ପ୍ରାଣ ।
ରତିକରୁ ରେତ ତରଳିଲା କାର ବଳେ
କେ ମାରିବ ବୋଲି ପଡ଼ିଯାଏ ଢଳି ତଳେ ।
କେ କାମେ ହେଲା ମୋହ କେହେଲା ମତ୍ତଗର୍ବ
ମାୟା ମୋହନ ସ୍ତିରୀ ସେ ଅଟନ୍ତି ଅପୂର୍ବ ।
କେ ଅଞ୍ଜନ ମୂରତି କେ ଯୁବା ମନୋହାରୀ
କେ ଚନ୍ଦ୍ର ବଦନୀ କେହୁ ସୁନ୍ଦରୀ ଅପ୍ସରୀ ।
କେ ଚନ୍ଦ୍ର ବଦନୀ କେହୁ ଅଟେ ପ୍ରେମଶାଳୀ
କେହୁଁ ଅଟେ ବାରଙ୍ଗନା କେ ତରୁଣୀବାଳୀ
କେ ନିତମ୍ବିନୀ ବାମା କେ ମୃଦୁ ଚାରୁହାସୀ
କେ ଯୁକତେ କାମିନୀ କେ ରାମା ଶୁଭ୍ରକେଶୀ
କେ ଷୋଡ଼ଶବରଷୀ କେ ତିଳପୁଷ୍ପନାକୀ
କେ ହସ୍ତିନୀ ଚିତ୍ରିଣୀ କେ ପଦ୍ମିନୀ କେ ସଖୀ
କେ କଳା ଶ୍ୟାମଳା ଗୌରବର୍ଣ୍ଣ ମହାମାୟେ
କେହୁ ଅଛି ରତ୍ନ ଖଞ୍ଜି ଶିରୁ ପାଦଯାଏ ।
ଏରୂପେ ସ୍ତିରୀଙ୍କୁ ଦେଖି ହ୍ୱନ୍ତି ଦୈତ୍ୟମୋହ
ପିଟିଲେକ ବ୍ରଜବାଣ ତ୍ରିମୁଣ୍ଡାର ପୁଅ ।
ଭାଜିଲେକ ମୁର ସୈନ୍ୟ ପଡ଼ି ଭୂମିଲୋଟି
ପ୍ରାଣ ଘେନି ଯିବାକୁ କେ ନ ପାରଇ ଉଠି

ରଣେ ବିହରନ୍ତି କଣ୍ଠ ବିକଣ୍ଠ ଯେ ଦୁଇ
ତାଙ୍କ ଆଗରେ ଅସୁରେ ନ ପାରନ୍ତି ରହି ।
ଏରୂପେ ସଂଗ୍ରାମେ ଯନ୍ତେ ମୁର ସୈନ୍ୟପଡ଼ି
କରନ୍ତି ସମର ଦୁହେଁ ଦେଇ ସିଂହରଡ଼ି ।
ଘଡ଼ିକ ମଧ୍ୟେ ପଡ଼ିଲେ ସୈନ୍ୟ ନବକୋଟି
ରକତରେ କରଦମ ହେଲା ମହୀଗୋଟି ।
କଠୋର ଯୁଦ୍ଧ ତାଙ୍କର ଦେଖି ମୁରଦୈତ୍ୟ
କଦଳୀପତ୍ର ପ୍ରାୟେଣ କମ୍ପେ ତାର ଗାତ୍ର ।
ହୁଁ କାର କରି ସମରେ ମୁର ଗଲା ଉଠି
ବିଜୟ ମନ୍ତ୍ର ସୁମରି କଲା ଶରବୃଷ୍ଟି ।
ନାରାଚ ପଡ଼ନ୍ତେ ଦୈତ୍ୟ ନ କରନ୍ତି ଭୀତି
ବ୍ରହ୍ମାଙ୍କୁ ସେବି ଅମର ସେହୁ ହୋଇଛନ୍ତି ।
ପାଷାଣୁ ବଡ଼ ଆଣ୍ଟ ଯେ ଅଟେ ତାଙ୍କଦେହୀ
ନାରାଚ ପଡ଼ନ୍ତେ ଅଙ୍ଗେ ନ ରହନ୍ତି କେହି ।
ହୁଂକାର ନାଦେ ଦୈତ୍ୟଙ୍କ ଶିରଦିଏ ମୋଡ଼ି
ଗର୍ଜିଣ କଣ୍ଠ ବିକଣ୍ଠ ଦ୍ୟନ୍ତି ସିଂହରଡ଼ି ।
ଅଲୋକିତ ସମର ଯେ କରନ୍ତି ସେ ଦୁଇ
ନିମିଷେକ ମର୍ତ୍ତ୍ୟେକେ ମଲେ ରଣଭୂଇଁ ।
ସେ ମଡ଼ା ଦେଖିଣ ମୁର ଲଜ୍ଜାପାଇ ଉଠି
ଶ୍ରାବଣ ଧାରା ପରାଏ ଶର କଲା ବୃଷ୍ଟି ।
ଦଶଦିଗରେ ଆସନ୍ତେ ଶରମାନ ପୁରି
ତା ଦେଖି ତ୍ରିମୁଣ୍ଡାସୈନ୍ୟ ରହିଲେ ଉଭାରି
କିଳିକିଳା ରାବରେ ଯେ ମିଳି ଏକେ ଏକେ
ତୁଣ୍ଡ ବିସ୍ତାରି ଗିଳିଲେ ଶର ଯେଝା ସୁଖେ ।
ଗର୍ଭରେ ନାରାଚ ପଡ଼ି ହେଲା ଭସ୍ମରାଶି
ତା ଦେଖି ମୁର ଅସୁର ଆଚମ୍ଭିତେ ବସି ।
ରାଣେ ଅସହଣି କଣ୍ଠ ବିକଣ୍ଠ ଯେ ବୀରେ
ପୁଣି ଅନେକ ଅସୁର ମାଇଲେ ସମରେ ।
ଦଶଲକ୍ଷ ଯୋଦ୍ଧା ରଥ ପଦ୍ମେକ ସଇନି
କଣ୍ଠ ବିକଣ୍ଠ ସମର ଲୋଟିଲେ ଧରଣୀ ।
ନେତ୍ରଛଟକେ ପିଟନ୍ତି ଦୁହେଁ ଗଦା ତୋଳି
ବାଜନ୍ତେ ସେ ମୁରସୈନ୍ୟ ହୋଇଯାନ୍ତି ଧୂଳି
ଶୋଣିତ ବହି କର୍ଦ୍ଦମ ହୋଇଲା ମେଦିନୀ
ପୁଣିହିଁ ମୁର ଧାଇଁଲା ବହୁସୈନ୍ୟ ଘେନି ।
ସେ ଦୁଇଜଣଙ୍କୁ ରାଜା ଓଗାଳିଲେ ଯାଇ
ଡାକଦେଲା ରହ ରହ ଆରେ ବେନିଭାଇ ।
ଏବେ ଯେ ମୃତ୍ୟୁ ତୁମ୍ଭର ହୋଇଲାରେ ଜାଣ
ତୁମ୍ଭେ ଦୁହେଁ ନମଲେ ମୁଁ ନ ଛାଡ଼ଇ ରଣ ।
ଆଖଡ଼େ ମୋହର ସୈନ୍ୟ ନାଶିଲରେ ଆସି
ଏତେବୋଲି ଦେଲା ରାଜା ଶକତିକୁ ପେଷି ।
ଦେଖିଲେ କଣ୍ଠ ବିକଣ୍ଠ ଆଡ଼ିଲେକ ମୁଣ୍ଡ
ବାଜିଣ ଶକତି ତାର ହେଲା ବେନିଖଣ୍ଡ ।
ଟହ ଟହ ହୋଇ ହସିଲେକ ବେନିବୀର
ଲାଜ ପାଇଣ ସମର ପଡ଼ିଲାକ ମୁର ।
ପାଞ୍ଚିଲା ତ ଏହାଙ୍କୁ ମୁଁ ନ ପାରିଲି ଜିଣି
ଉପାୟ କରିଣ ସାଧ କରିବି ଏକ୍ଷଣି ।
ଏତେ ବିଚାରି ହୋଇଲା ରାଜା ଶୂନ୍ୟହସ୍ତ
ତ୍ରିମୁଣ୍ଡାସୁର ପାଶରେ ମିଳିଲା ତୁରିତ ।
ଅନେକ ସ୍ତୁତି କରିଣ କହନ୍ତେ ସେ ମୁର
ତ୍ରିମୁଣ୍ଡା ଶୁଣିଣ ଶାନ୍ତ ହୋଇଲା ତପୃର ।
ମୁର ହୋଇଲା ଧନ୍ୟ ତୁ ଅଟୁ ହେ ତ୍ରିମୁଣ୍ଡା
ପାଇଛୁ ତେଡ଼େ ସମର୍ଥ କରି ପୁତ୍ରଷଣ୍ଡା ।
ଏଡ଼େକ ଶକତି ମୋର ପିଟନ୍ତେ ସେ ମେଣ୍ଟି
ସମର ଛାଡ଼ି ଅଇଲି ତେଣୁ ତୋତେ ଭେଟି ।
ଶୁଣିଣ ତ୍ରିମୁଣ୍ଡାସୁର ଉଠି କଲା ପୂଜା
ହସ୍ତ ଧରାଧରି ହୋଇଗଲେ ବେନି ରାଜା ।
ନବର ଭିତରକୁ ଯେ ଚଳିଗଲେ ବେଗେ
ସ୍ନାନ କରିଣ ମଣୋହି କଲେଯାଇ ଆଗେ
ନାନାଦି ଭୋଗ ସମ୍ପାଦି ଥିଲା ମହାରାୟେ
ପ୍ରାଣରୁ ଅଧିକ କହି ମୁରକୁ ତା ଦିଏ ।
ଭୋଜନ ସାରିଣ ଦୁହେଁ କଲେ ଆଚମନ
ଏହିରୂପେ ଖାଇ ତୋଷହେଲେ ସବୁ ସୈନ୍ୟ
ଆନନ୍ଦେ ମୁର ରହିଲା ତହିଁ ଦିନାକେତେ
କଣ୍ଠ ବିକଣ୍ଠ ଘେନିଣ ଖେଳଇ ନିରତେ ।
ଶକଟା ପଶା ଜୁତ ଯେ ନ୍ୟାୟବଳ ଆଦି
ହସଇ ବସଇ ମନ ମୋହେ କଥା ଛନ୍ଦି ।
ନାନାଦି ପ୍ରକାରେ ଗୀତ ବଢ଼ାଇ ତା ସଙ୍ଗେ
ରାଜ୍ୟତୁ ଯିବାକୁ ମନ କଲା ଉଦବେଗେ ।
ସେ ଦୁହିଁଙ୍କୁ ମନାଇ ଯେ ସଙ୍ଗେ ଘେନି ତାର
ତ୍ରିମୁଣ୍ଡାସୁରକୁ ଯାଇ କହେ ମୁରାସୁର ।
ବୋଇଲେ ରାଜ୍ୟକୁ ଆମ୍ଭେ ଯିବୁ ଏବେ ଚଳି
ନଜାଣି ତୋ ତୁଲେ ତୃଚ୍ଛା ଲାଗିଲା ଯେ କଳି
ଶୁଣିଣ ତ୍ରିମୁଣ୍ଡାସୁର ହୋଇଲା ହରଷ
ବୋଇଲା ଆଜଠାରୁ ଯେ ହେଲା ଅମରିଷ ।
ଏଥକୁ କିଛି ସନ୍ଦେହ ନାହିଁ ବାବୁ ଏଥେ
ରାଜ୍ୟକୁ ଗଲେଟି ବାବୁ ନିଅ ତୁ ପଦାର୍ଥେ ।
ମୁର ବୋଇଲା ଧନ କି ମୋତେ ଅପୂରୁବ
ଯାହା ମୁଁ ମାଗିବି ନିଶ୍ଚେ ଦେବୁ କହ ଧ୍ରୁବ
ତ୍ରିମୁଣ୍ଡା ବୋଇଲା ନିଶ୍ଚେ ମାଗିଲେ ମୁଁଦେବି
କହିଲି ସତ୍ୟକରି ମୁଁ ନାହିଁ ନ କରିବି ।

ମୁର ବୋଇଲା ପୁତ୍ରଙ୍କୁ ଦିଅ ତେବେ ତୋର
ସଙ୍ଗତେ ନେଲେ ରହିବେ ମୋର ସବୁଠାର
ଶୁଣି ତ୍ରିମୁଣ୍ଡା ଅସୁର ଶୋଚନା ନ କଲା
ପୁତ୍ର ଦୁହିଁଙ୍କୁ ବସାଇ ଯିବାକୁ ପୁଚ୍ଛିଲା ।
ମୁର ବିଜୟା ମନ୍ତ୍ରରେ ହୋଇଥିଲେ ବଶ
ପିତା ପୁଚ୍ଛନ୍ତେଣ ପୁଣ ହୋଇଲେ ସନ୍ତୋଷ
ପୁତ୍ରଙ୍କର ସନମତେ ତୋଷ ନୃପବର
ମୁରକୁ ମେଲାଣି କଲା ରାଜ୍ୟେ ଯାଅ ତୋର
ବୋଇଲା ପୁତ୍ରଙ୍କୁ ମୋର ଥିବୁ ଏକା ପାଳି
ସଙ୍ଗେ ଦେଉଛି ଚାଳିଶପଦ୍ମ ନିଅ ବଳୀ ।
ହେଉ ବୋଲିଣ ରାଜ୍ୟକୁ କଲଣ ମୁର ବିଜେ
କଟକେ ପଶନ୍ତେ ତାର ବୀର ତୁର ବାଜେ ।
ସିଂହାସନରେ ବସିଲେ ଯାଇ ମୁର ରାଜା
କଣ୍ଡ ବିକଣ୍ଡକୁ ନିଜ ତୁଲ୍ୟ କରି ପୂଜା ।
କନକାବତୀ ନଗରୁ ବାଣ୍ଟିଦେଲା ଅଧେ
ସୁଖ ପାଇ ବେନି ଭାଇ ରହିଲେ ଆନନ୍ଦେ ।
ଚଳିଲେ ତାହାଙ୍କ ବୋଲେ ସର୍ବ ପ୍ରଜାଜନ
ବୁଝନ୍ତି ଠାବ ଠାବରେ ନ୍ୟାୟ କୀର୍ତ୍ତିମାନ ।
ରହିଲେ କଣ୍ଡ ବିକଣ୍ଡ ମହାସୁଖ ପାଇ
ଶୁଣିମା ଏଥିଉତ୍ତାରୁ କଥା ମନ ଦେଇ ।
ଏହା କହିବାକୁ ମୋର ନୁହଇ ଆୟତ୍ତ
ଯାହା ଆଜ୍ଞାଦେଲେ ମୋତେ ଜଗତର ମାତ
ନ ଧର ହେ ସାଧୁଜନମାନେ ମୋର ଦୋଷ
ତୁମ୍ଭର ଶରଣ ମୁହିଁ ପୀତାମ୍ବର ଦାଶ ।



## ମୁରାସୁରର ଶାଲ୍ମଳୀଦ୍ୱୀପ ଯାତ୍ରା

ଜୟ ଜୟ ଜଗନ୍ନାଥ ଜଗଜ୍ଜନବନ୍ଧୁ
ଭକତବତ୍ସଳ ସ୍ୱାମୀ କରୁଣାର ସିନ୍ଧୁ ।
ଅଶେଷ ଲୋକଙ୍କର ଯେ ଅଟ ଚିନ୍ତାମଣି
ଅଶେଷ ମହିମାଗୋଟି କେ ପାରେ ବଖାଣି ।
ଦକ୍ଷିଣ ମହୋଦଧିରେ ନୀଳାଚଳେ ବାସ
ତିନିମୂର୍ତ୍ତି ଦାରୁ ହୋଇ ବିଜେ ହୃଷୀକେଶ ।
ଡାହାଣେ ହଳ ମୂଷଳ ବଳଭଦ୍ର ରହେ
ମଧ୍ୟରେ ସୁଭଦ୍ରାଦେବୀ ଜଗଜ୍ଜନ ମୋହେ ।
ସୁଦର୍ଶନ ଚକ୍ର ନାମ ଦକ୍ଷକରେ ସାଜେ
ବାମେ ପଞ୍ଚଜନ୍ୟ ଶଙ୍ଖ ଶାରଙ୍ଗ ବିରାଜେ ।
ନମାମି ନମାମି ନାରାୟଣ ଗୁଣମଣି
ନର୍କ ଉଦ୍ଧାରଣ ଦେବ ଶଙ୍ଖ ଚକ୍ରପାଣି ।
ଶ୍ରୀପୁରୁଷୋତ୍ତମ ନାଥ ନିରାକାର ଦେହୀ
ଶ୍ରୀୟାଦେବୀର ବଲ୍ଲଭ ଭକ୍ତ ଗୁଣଗ୍ରାହୀ ।
ମୁଁ ତୁମ୍ଭ ଦାସର ଦାସ ଭୃତ୍ୟର ଯେ ଭୃତ୍ୟ
ସର୍ବଦା ସେବା ମୋହର ଶ୍ରୀୟାଦେବୀ କାନ୍ତ
ବାଳକ ବୁଦ୍ଧିରେ ଏହା ନ ପାରଇ ଲେଖି
କେବଳ ଆଜ୍ଞା ଦେବାରୁ ଶାରଦା ସୁମୁଖୀ ।
ଜୟ ତୁ ଶ୍ୟାରଦା ମାଗୋ ଜଗଜ୍ଜନି ମାତା
ଯାହାକୁ ତୁ ଚାହୁଁ ତାର ହୁଏ ବିବେକତା ।
ଜୟ ତୁ ଶାରଦା ମାଗୋ ସର୍ବ ଗୁଣଗ୍ରାହୀ
ଜପ ଯନ୍ତ୍ର ମନ୍ତ୍ରେ ତୋତେ ନ ପାରନ୍ତି କେହି
ଜୟ ତୁ ଶାରଦାମାଗୋ ପଣ୍ଡିତେ ତୋ ମେଳ
ବୁଦ୍ଧ ଜନମାନଙ୍କର ଅଟୁ ତୁହି କାଳ ।
ମୁହିଁତୋର ପାଦେମାାଗୋ ଜନ୍ମେଜନ୍ମେସେବି
ଏ ଘୋର ଦୁର୍ଗମୁ ମୋତେ ଉଦ୍ଧାରବୈଷ୍ଣବୀ
କିରୂପେ ପୂରଣ ମାଗୋ କରିବି ଏ ଗୀତ
ଶେଷ ନୃସିଂହ ବୋଲିଣ ଜନ୍ମି ଲକ୍ଷ୍ମୀକାନ୍ତ ।
ଯେମନ୍ତେ ନାଶିବେ ମୁରାସୁର ଭାବଗ୍ରାହୀ
ଏ ପୃଥ୍ୱୀର ଭାରା ହରି ଉଦ୍ଧାରିବେ ମହୀ ।
ସହସ୍ର ପଦ ପ୍ରକାଶି ମାରିବେ ଦୈତ୍ୟକୁ
ଏହି କଥା ପୂର୍ଣ୍ଣକରି ଦେବ ମା ଆମ୍ଭଙ୍କୁ ।
ମୁହିଁ ତୋହର ସର୍ବଦା ଦାସ ଅଟେ ସିନା
ତୁ ବିପ୍ର ପୀତାମ୍ବରକୁ ରଖ ବିଷ୍ଣୁ ବାମା ।
ଏଥୁଅନ୍ତେ ଯେ ନାରଦ ମୁନି ମହାଜ୍ଞାତା
ପୁଣି ପଚାରିଲେ ସ୍ନେହେ ମୁରର ବାରତା
ଫେରିକରି ବିଧାତା ହେ ଜିଣି ବେନିଦ୍ୱୀପ
ତହିଁ ଉତ୍ତାରୁ ସେ କଲା କେବଣ ସ୍ୱରୂପ ।
ବ୍ରହ୍ମାଏ ବୋଇଲେ ତେବେ ଶୁଣସେ କାହାଣୀ
ବେନି ଦ୍ୱୀପ ଜିଣି ମୁର ରାଜ୍ୟେ ଯାନ୍ତେ ପୁଣି
ମିଥୁନମାସେ ଲେଉଟି ଦିଗବିଜେ କଲା
ସେଠାରୁ କଥା କହିବା ତୋତେ ସିନା ଭଲା
ହସ୍ତାନକ୍ଷତ୍ର ପଣ୍ଡିତବାର ବିଦ୍ୟମାନ
ଶୁକଳପକ୍ଷ ସପ୍ତମୀ ତିଥି ସେହିଦିନ ।
କନ୍ୟା ମାସେ ରାଶି ଶୁଭ ନାମେ ମହାଯୋଗ
ସେ ଦିବସେ ମୁର ଗଲା ଦକ୍ଷିଣ ଯେ ଦିଗ ।
ଢୋଲ ଦମା କଂସାଳ ଯେ ବାଜେ ବୀରତୁର
ଶୁଭଲଗ୍ନ ବେଳା ଘେନି ଚଳେ ମୁରାସୁର ।
ଅତି ସମାରମ୍ଭେ ସୈନ୍ୟ ଗଲେ ଯେଝାସୁଖେ
ସେନାପତିଏ ଚଳିଲେ ରାଜା ବେନିପାଖେ
ଆଗେ ଗମନ୍ତେ କଣ୍ଡ ବିକଣ୍ଡ ବେନିଭାଇ
କମ୍ପନ୍ତି ଯେ ଦେବଗଣ ସ୍ୱର୍ଗେ ତାହା ଚାହିଁ
ଦୈତ୍ୟଙ୍କର ପାଦଘାତେ କମ୍ପଇ ଧରଣୀ
ଦଇତ୍ୟବଳ ଲବଣସିନ୍ଧୁ ଗଲେ ଜିଣି ।

ସତରଲକ୍ଷ ଯୁଣ ଯେ ଘୃତ ସିନ୍ଧୁ ହୋଇ
ତହିଁ ସେପାଖେ ଶାଲ୍ମଳୀ ଦ୍ୱୀପ ନାମେ ମହୀ
ସେ ଦ୍ୱୀପେ ଯାଇ ମିଳିଲେ ମୁରର ସଇନ୍ୟ
ଅଭକ୍ଷ୍ୟ ପଦାର୍ଥ ସେହୁ କରନ୍ତି ଭକ୍ଷଣ ।
ଭାଙ୍ଗନ୍ତି ଯେ ଠାବେ ଠାବେ ପଶି ଘରଦ୍ୱାର
ଶାଳମଳୀ ଦ୍ୱୀପଯାକ କଲେ ନାରଖାର ।



## ମଦନାବତୀର ସ୍ୱୟମ୍ବର

ତହିଁର ନୃପତି ନାମ ଭୂପାଳ କେଶରୀ
ବିପ୍ରକୁଳ ରାଜା ସେହୁ ଅଟେ ବ୍ରହ୍ମଚାରୀ ।
ଭାରିଯା ନାମ ତାହାର ଅଟଇ ସୁକାନ୍ତି
ତା ଦୁହିତା ନାମ ଅଟେ ଯେ ମଦନାବତୀ ।
ସେ କନ୍ୟା ସମାନ ବର ନ ପାଇଲା କାହିଁ
ସ୍ୱୟମ୍ବର କଲା ରାଜା ସତ୍ୟ ମନେ ଧାୟି ।
ବଦୟନ୍ତି ବେଦବ୍ରହ୍ମା ଶୁଣ ହୋ ନାରଦ
ସେ ଦ୍ୱୀପେ ବସନ୍ତି ରାଜା ପାଞ୍ଚଲକ୍ଷ ପଦ୍ମ ।
ସ୍ୱୟମ୍ବର ନିମନ୍ତେ ସେ ବରଗିଲେ ଦୂତ
ବ୍ରହ୍ମ କ୍ଷତ୍ରୀ ବୈଶ୍ୟ ଶୂଦ୍ର ଅଇଲେ ସମସ୍ତ
ଭୈରବ ନାମେ ଭୂପାଳ କେଶରୀର ଦେଶ
ସେ ଦ୍ୱୀପେ ପ୍ରବେଶ ହେଲେ ସେହି ରାଜବଂଶ
ବଡ଼ ସାନ ଛୋଟା ଟେରା କୁଜା ଆଦିଯେତେ
କନ୍ୟାର ଲୋଭରେ ଧାଇଁ ଅଛନ୍ତି ସମସ୍ତେ ।
ସେ ରାଜାମାନଙ୍କ ନାମ ଶୁଣ ହେ ମହର୍ଷି
ବୁଭୁରୀକ୍ଷ ନାମ ନୃପ ଆଗେ ମିଳେ ଆସି ।
କେଶବୀ ନୃପ ଦେଶରେ ପ୍ରବେଶିଲା ଆସି ।
ତିନିପଦ୍ମ ସୈନ୍ୟ ତାର ସଙ୍ଗେ ଛନ୍ତି ମିଶି ।
ଅରବିନ୍ଦର ଅନନ୍ତସେନ ନାମେ ରାୟେ
ବେନିଲକ୍ଷ ସୈନ୍ୟ ଘେନି ସ୍ୱୟମ୍ବରେ ଆୟେ
ସୁରସେନା ଦେଶ ରାଜା ସୁବାହୁ ଯେ ବଳୀ
ସ୍ୱୟମ୍ବର ବାର୍ତ୍ତା ପାଇଁ ଅଇଲେ ସେ ଚଳି ।
କାଞ୍ଚନ ଦେଶର କାମଚଣ୍ଡେଶ୍ୱର ରାଜା
ବାରପଦ୍ମ ସୈନ୍ୟ ଘେନି ଆସି ପାଏ ପୂଜା
କାକୁସ୍ଥ ଦେଶର ରାଜା କମ୍ବାସୁର ରାୟେ
ସୈନ୍ୟଯାକ ଘେନି ସେହୁ ସ୍ୱୟମ୍ବରେ ଯାଏ
ପାର୍ଥିବ ଦେଶର ରାଜା ସୁରସେନ ବୋଲି
ତିନିପଦ୍ମ ସୈନ୍ୟ ଘେନି ଅଇଲେ ସେ ଚାଲି
ଗନ୍ଧର୍ବ ଦେଶର ରାଜା ବୈଶ୍ୟ ଚୂଡ଼ାମଣି
ସେହି ମିଳିଲା ଭୈରବ ଦେଶେ ଆସି ପୁଣି
ନୀଳେନ୍ଦ୍ରି ଦେଶ ନୀଳେନ୍ଦ୍ରି ରାଜା ଚକ୍ରବର୍ତ୍ତୀ
ସଙ୍ଗେ ଆଣିଅଛି ତାର ଅନେକ ପଦାତି ।

ଅଶ୍ୱିନୀ ନାମରେ ଅଟେ ସୂର୍ଯ୍ୟଦେଶ ରାଜ
ସପତ ମର୍ଭୁତ ଆଣିଅଛି ଅଶ୍ୱ ଗଜ ।
ଦାନବ ସେନା ଦୋଭାଗୀଦେଶର ଯେରାୟେ
ପାଞ୍ଚଲକ୍ଷ ସୈନ୍ୟ ଘେନି ସ୍ୱୟମ୍ବରେ ଆୟେ
କାମଳ ଦେଶ କନକ ରାଜା ବାଞ୍ଛାନିଧି
ଆଣିଛି ସୈନ୍ୟ ସଭାରେ ଦଶଖର୍ବ ଯୋଦ୍ଧା
ରୋହିତାକ୍ଷ ଦେଶର ଯେ ରୋହିତାଙ୍ଗ ନୃପ
ଆସିଲା ସଙ୍ଗତେ ଘେନି ସୈନ୍ୟ ଅସଂଖ୍ୟକ
ମାଳବ ଦେଶ ମଦାଙ୍ଗ ରାଜା ମହାବଳୀ
ତିନିଲକ୍ଷ ଯୋଦ୍ଧା ଘେନି ଅଇଲେ ସେ ଚଳି
ଅଙ୍ଗ ନାମ ରାଜା ଅଟେ ଆରଦ୍ରା ଦେଶର
ଅଇଲା ସାଗର ସୈନ୍ୟ ଘେନି ନୃପବର ।
ପୁନାଙ୍ଗ ଦେଶ ରାଜା ବାବନା ଜାନୁଘଣ୍ଟ
ମର୍ଭୁତେ ସୈନ୍ୟ ଘେନିଣ ଆସିହେଲାଭେଟ
ସାର ନାମେ ଦେଶ ରାଜା ଅଟେ ଚଉକେଶୀ
ଅନେକ ସୈନ୍ୟ ଘେନି ସେ ପ୍ରବେଶିଲା ଆସି
କୁନ୍ଦନ ଦେଶର ରାଜା କୁନ୍ଦନ କେଶରୀ
ଭୈରବୀ ଦେଶେ ଅର୍ବୁଦେ ସୈନ୍ୟଗଲା ଧରି
କୁମୁଦ ଦେଶର ନରପତି ରଣଜିତ
ଭଇରବ ଦେଶେ ଆସି ମିଳିଲା ତୁରିତ ।
ଜୀବନ୍ୟାସ ଦେଶେ ରାଜା ଅଟଇ ଯାମଳା
ସଙ୍ଗରେ ସଇନ୍ୟ ଘେନି ଆସେ ଅଶୃଙ୍ଖଳା ।
ହଳାୟୁଧ ଦେଶ ରାଜା ହଟ ଚକ୍ରବର୍ତ୍ତୀ
ସାତ ଖର୍ବ ସୈନ୍ୟ ଘେନି ଅଇଲା ତଡ଼ତି ।
ଚଣ୍ଡପୁରରୁ ସୁଚଣ୍ଡ ରାଜା ନାମେ ମାଝି
ପାଞ୍ଚକୋଟି ସୈନ୍ୟ ଘେନି ଅଇଲା ଯେ ସାଜି
କିଳିକିଳା ଦେଶରୁସେ ଆସେ ଚନ୍ଦ୍ରକଳା
ମଦନାବତୀ ଆଶାରେ ଘେନି ବନମାଳା ।
ଅଇଲେ ଭଦ୍ରଦେଶର ରାଜା ମଣିଭଦ୍ର
କନ୍ୟାର ଲୋଭରେ ଆସେ ହୋଇଣ ଉନ୍ନିଦ୍ର
ନୀଳଦେଶ ରାଜା ନୀଳମାଧବ ଯେ ରାୟେ
ବୃନ୍ଦେକ ସଇନ୍ୟ ଘେନି କରିଲା ବିଜୟେ ।
ସୁଶୀଳ ଦେଶର ରାଜା ଅଟେ ଶାମଦୀଘ
ସୈନ୍ୟ ଘେନି ସମାରମ୍ଭେ ମିଳିଲାକ ବେଗ ।
ବଜ୍ରାଙ୍ଗ ଦେଶର ରାଜା ଅଟେ ବଜ୍ରମାଳି
ପାଞ୍ଚକୋଟି ସୈନ୍ୟ ଘେନିଗଲା ସେହୁ ଚଳି ।
ବାସୁକୀ ଦେଶର ରାଜା ବସନ୍ତ କେଶରୀ
କେଶରୀ ରାଜ୍ୟକୁ ଗଲା ସୈନ୍ୟ ସାଜିକରି ।
ଆସିବାର ସଇନ୍ୟ ତ ଲେଖା ତହିଁ ନାହିଁ
ଶୁଣ ହେ ନାରଦ କହୁଛନ୍ତି ବିଧାତାହିଁ ।

ଏରୂପେ ଆସି ମିଳିଲେ ଜାଣ ରାଜାଗଣ
କନ୍ୟା ନିମିତ୍ତରେ କରିଅଛନ୍ତି ବରଣ ।
ଭୈରବ ଦେଶେ ମିଳିଲେ ଆସି ସର୍ବ ରାଜା
ଭୂପାଳ କେଶରୀ ତାଙ୍କୁ କଲେ ପାଦପୂଜା ।
ଯେଉଁ ରାଜ୍ୟକୁ ଯେମନ୍ତେ ଯୋଗାଇ ସେସଞ୍ଜା
କନ୍ୟା ନିମନ୍ତେ କରିଛି ରାଜା ସବୁ ସଞ୍ଜା ।
ପାତ୍ର ମନ୍ତ୍ରୀଙ୍କର ଘର ରାଜାର ନବର
ଯୋଦ୍ଧା ଅମନାତ୍ୟଙ୍କୁ ଯେ ଅନୁରୂପେ ପୁର ।
ଭୂପାଳ କେଶରୀର ଯେ ଭଇରବ ଦେଶ
ଭଦ୍ରନାମେ ନଦୀ ତହିଁ ବହେ ଚଉପାଶ ।
ସର୍ବଲୋକ କରନ୍ତି ସେ ତୀର୍ଥେ ସ୍ନାନପାନ
ଯେ ଯାହା ଇଚ୍ଛାରେ କରୁଛନ୍ତି ବିହରଣ ।
ଏମନ୍ତେ ମିଳିଲେ ସର୍ବ ରାଜା ତହିଁ ଆସି
ଠିକେ ଠିକେ କହିଲି ମୁଁ ସେହି ରାଜବଂଶୀ ।
ବିସ୍ତାର କିରଣ ଏହା ପାରିବ କେ କହି
ଅଞ୍ଜଳି ସମୁଦ୍ର ଘେନି କେ ପାରିବ ବାହି ।
ସଂକ୍ଷେପ କରିଣ ଏହା କେ ପାରିବ ଲେଖି
କେବଳ ସେଥିରୁ ବାକ୍ୟଦେବୀ ମୋର ସାକ୍ଷୀ
ଜୟ ତୁ ଭାରତୀ ଗୋ ଅଭୟା ଧବଳାଙ୍ଗୀ
ସଦାକାଳେ ଅଟୁ ତୁହି ବିଷ୍ଣୁ ସଉଭାଗୀ ।
ମୁହିଁ ଯେ ତବ ଚରଣେ ପଶିଲି ଶରଣ
ଏ ଅନର୍ଯ୍ୟାପ କଥାକୁ କରସି କାରଣ ।
ଯେଉଁ ଯେଉଁ ଗ୍ରନ୍ଥ ଆଦି ସତ୍ୟଯୁଗ ପାଠ
ସାମବେଦ ଆଖ୍ୟାନ ଏ ଅଟେ ବଡ଼ ଇଷ୍ଟ ।
ଶତକୋଟି ଗ୍ରନ୍ଥ ତୋର କିଞ୍ଚିତ ପ୍ରମାଣେ
ମୁଁ ତାହା ଲେଖି ନ ଜାଣେ ବାଳକ ଅଜ୍ଞାନେ
କେ ଅବା ଶୁଣି ବୋଲିବେ ବହୁତ ଯେ ପଦ
ତେଣୁକରି ଅଳପେ ମୁଁ କରଇ ସମ୍ବାଦ ।
କେ ବୋଲିବେ ମନୁଷ୍ୟକୁଳେ ଅଛି ଜନ୍ମି
ଜାଣିଲା ଶାଳ୍ମଳୀ ଦ୍ୱୀପ କଥା କେମ୍ନେ ପୁଣି ।
ଆପଣଙ୍କ ଆଜ୍ଞାରେ ମୁଁ ଅଟେ ବଡ଼ଜଣେ
ତେଣୁ ଶାସ୍ତ୍ର ବାନ୍ଧଇ ମୁଁ ସମୁଦ୍ର ପ୍ରମାଣେ ।
ଯେଉଁଦିନ ଯେତେ ପଦ ଦୃଶ୍ୟ ହୁଏ ଆସି
ତେତେକ ଲେଖନ ମୁହିଁ ଜଣେ ଲେଖିବସି ।
ଏଥକୁ ସାଧୁଜନେ ହେ ନଧର ମୋ ଦୋଷ
ବିପ୍ର ପିତାମ୍ବର ମୁହିଁ ବାଲୁକେଶ ଶିଷ୍ୟ ।
ବଦୟନ୍ତି ବେଦବ୍ରହ୍ମା ଶୁଣ ହେ ନାରଦ
ଭୈରବ ଦେଶେ ମିଳିଲେ ଆସି ରାଜାବୃନ୍ଦ ।
ଅସଂଖ୍ୟ ସଇନ୍ୟ ଘେନି ନୃପ ପାଞ୍ଚଲକ୍ଷ
ଦିଅନ୍ତି କେଶରୀ ମହାରାଜା ତାଙ୍କୁ ଲକ୍ଷ୍ୟ ।
ଫୁଲ ଚନ୍ଦନ କର୍ପୂର ପାଦ ଦେଇ ତୋଷି
ଆସନ ମାଡ଼ି ବସିଲେ ରାଜବଂଶୀ ଆସି ।
ସଭାରେ ରୁଣ୍ଡ ହୁଅନ୍ତେ ଆସି ଦଣ୍ଡଧାରୀ
ସବୁଙ୍କୁ ଚାହିଁ କହନ୍ତି ଭୂପାଳ କେଶରୀ ।
ଭୋ ରାଜାମାନେ ଶୁଣିମା ହେଉ ସାବଧାନେ
ମୁହିଁ ଏ ଉତ୍ସବ କଲି ଯେବଣ ବିଧାନେ ।
ତହିଁର କଥା ଶୁଣିମା ଏବେ ମନ ଦେଇ
ମଦନାବତୀ ନାମରେ ମୋର ଜେମାଦେଇ
ଯେତେ ପ୍ରକାରେ ତାହାକୁ ପାଳିଲି ମୁଁ ଜାଣ
ବ୍ୟାସ ଦେଲେ ମୋ ପତ୍ନୀକି ଆଣି ଚରୁଅନ୍ନ
ସେ ଚରୁର ପ୍ରସାଦରୁ ଜନ୍ମିଲା ଏ କନ୍ୟା
ତ୍ରିଭୁବନ ମୋହିନୀ ଏ ଅମୂଲ୍ୟ ଅଙ୍ଗନା ।
ଇନ୍ଦ୍ରାଣୀ ରୂପକୁ ଏ ସହସ୍ର ଗୁଣେ ଜିତି
ପ୍ରତ୍ୟକ୍ଷ ଲକ୍ଷ୍ୟ ଘଟଇ ସଞ୍ଜାତ ପାର୍ବତୀ ।
ଦୁହିତା ରୂପ ଦେଖି ମୁଁ ହୋଇଲି ତୃପତି
ତେଣୁ ତାର ନାମ ଦେଲି ମୁଁ ମଦନାବତୀ ।
ତାହାର ସଦୃଶ ବର ନ ପାଇଲି ଲୋଡ଼ି
ବ୍ରହ୍ମାଙ୍କର ଆଜ୍ଞା ମୋତେ ହୋଇଲା ବାହୁଡ଼ି
ବୋଇଲେ ଲାଖେରୋପିଯେ ଦେବ ବ୍ୟାସଋଷି
ତହିଁକି ତ ଲୟ କରିଥିବୁ ରଜାବଂଶୀ ।
ଏମନ୍ତ ବୋଲନ୍ତେ ବ୍ରହ୍ମା ରୋପିଲେ ଯେ ଲାଖ
ସ୍ୱମନ୍ତେ ତାହା ସତ୍ୱରେ ଯାଇ ଏବେ ଦେଖ
ଶୁଣିକରି ରାଜାମାନେ ହୋଇଲେ ତୃପତି
ବୋଇଲେ ଏ ଦ୍ୱୀପେ ତୁମ୍ଭେ ହୁଅ ଅଧିପତି ।
ତୁମ୍ଭେ ଯାହା କହିବ ସେ ଆମ୍ଭର ଧାରଣ
କି ରୂପରେ କରି ଲାଖ ଶୁଣିମା ପ୍ରମାଣ ।
ସ୍ୱରୂପ କରି ବୁଝାଅ ତାହା ଆମ୍ଭ ଆଗେ
ଶୁଣିଲେ ବିନ୍ଧିବା ଉଠିଯାଇ ଆମ୍ଭେ ବେଗେ
ସମସ୍ତ ରାଜାଙ୍କ ମୁଖୁଁ ଏସନକ ଶୁଣି
ଆନନ୍ଦେ କହଇ ପୁଣି ଭୂପାଳ ନୃମଣି ।
ବୋଇଲା ଏଥେ ଯେତେକ ଆସିଛ ରାଜନ
ଗଣିଲେ ସରି ହୋଇବ ପାଞ୍ଚଲକ୍ଷ ଜାଣ ।
ଆସିଛ ଆବର ବ୍ରହ୍ମା କ୍ଷତ୍ରୀ ବୈଶ୍ୟ ଶୂଦ୍ର
କୋନ୍ଦମୟ ଦେଶ ରାଜା କିରାତ ନରେନ୍ଦ୍ର ।
ଯେହୁ ଲାଖ ବିନ୍ଧିବ ସେ ନେବ କନ୍ୟାଗୋଟି
ନୋହିଲେ ନପାର ନେଇ ପ୍ରଳୟର ସୃଷ୍ଟି
ରାଜାର ଏ ଦୃଢ଼ ବାକ୍ୟ ଶୁଣି ନୃପମାନେ
ବୋଇଲେ ହେ କହ ଲାଖ ବିନ୍ଧିବା କେସନେ
ଶୁଣିଲେ ସିନା ଆମ୍ଭର ମନେ ନ ଯିବ ପ୍ରତେ
ନୋହିଲେ କାହିଁକି ଆଉ ଥିବୁ ଅନିମିତ୍ତେ ।

ରାଜାଙ୍କର ବଦନରୁ ଏହି ବାକ୍ୟ ଶୁଣି
କହନ୍ତି କେଶରୀ ରାଜା ଲାଖବିନ୍ଧା ବାଣୀ ।
ବୋଲନ୍ତି ଏ ଲାଖର ଯେ କଥା ଏବେ ଶୁଣ
ଅର୍ଦ୍ଧେକ୍ରୋଶଠାରେ ସ୍ତମ୍ଭ ହୋଇଛି ନିର୍ମାଣ ।
ସେ ସ୍ତମ୍ଭ ଉପରେ ଅଛି ମୃଗ ଶୃଙ୍ଗଗୋଟି
ଶୃଙ୍ଗର ଉପରେ ଅଛି ଗୁବାକ ଫଳଟି ।
ସେ ଗୁଆ ଉପରେ ଥୁଆ ଅଛି ଗୁଞ୍ଜଫଳ
ଗୁଞ୍ଜ ଉପରେ ବସିଛି ମୃଗ ହୋଇ ଠୁଳ ।
ମୃଗ ଉପରେ ସୋରିଷ ଅଛି ପୁଣି ରଖି
ସୋରିଷକୁ ଉହାଡ଼ ଯେ ଶକଟରେ ଚଳି ।
ଆଗରେ ଦର୍ପଣ ବଡ଼ ସ୍ଥାପିଅଛି ଆଣି
ବିନ୍ଧିବ ଯେ ଦର୍ପଣକୁ ଚାହିଁ ଲାଖ ପୁଣି ।
ଚାହିଁନ୍ତେ ପିଠି ହେବ ସେ ଶକଟ ତୁମ୍ଭଙ୍କୁ
ଦିଶିବ ସେ ତୁମ୍ଭ ମୁଖ ଲାଖ ଦର୍ପଣକୁ ।
ଦର୍ପଣକୁ ଚାହିଁ ପିଠି ଆଡ଼େ ଧନୁ ରଖି
ବିନ୍ଧିବ ସ୍ତମ୍ଭକୁ ଶର କୋଦଣ୍ଡରେ ଯୋଖି ।
ଦର୍ପଣ ଦେଖୁ ଦିଶିବ ଶକଟର ଗୁଳି
ବିକ୍ରମି ବିନ୍ଧନ୍ତେ ଅଖରନ୍ଧ୍ରେ ଯିବ ଚଳି ।
ସ୍ତମ୍ଭେ ନ ବାଜିବ ମୃଗଶୃଙ୍ଗ ନ ବାଜିବ ।
ଗୁବାକ ଗୁଞ୍ଜର ମୃଗ ସେହିରୂପେ ଥିବ ।
ସୋରିଷରେ ବାଜି ଏହା ହେବ ବେନିଫାଳ
ରୋପିଲେ ଏମନ୍ତ ଲାଖ ବ୍ୟାସ ରବିତଳ ।
ସେ ଲାଖ ଗୋଟିକ ବିନ୍ଧି ପାରିବ ଯେ ନର
ତେବେ ସେ ବିଭା ହୋଇବ ଦୁହିତାକୁ ମୋର
ଏରୂପେ ରୋପିଲେ ବ୍ୟାସମୁନି ଲାଖଜାଣ
ଭୋ ନୃପତିମାନେ ତୁମ୍ଭେ ସାବଧାନେ ଶୁଣ
ଏ ପ୍ରକାର ଲାଖଗୋଟି ବିନ୍ଧିବ ଯେ ଯୋଖି
ଅବଶ୍ୟ ତାକୁ ଦେବଇଁ ମୋର ଶଶୀମୁଖୀ ।
ସେହି ମାତ୍ର ପିଠି ଦେଇ ବିନ୍ଧିବ ଯେ ଲାଖ
ପ୍ରତିଜ୍ଞା କରି କହୁଛି କନ୍ୟା ଦେବି ଦେଖ ।
କେଶରୀ ରଜାର ମୁଖୁଁ ଏସନ ଶୁଣିଣ
ଲାଖ ଦେଖିବାକୁ ସର୍ବେ କଲେକ ଗମନ ।
ଏତେବୋଲି ଚଳିଲେକ ସର୍ବ ଦଣ୍ଡଧାରୀ
ଲାଖକୁ ଦେଖିଣ ସର୍ବେ ରହିଲେ ଉଭାରି ।
ଦେଖନ୍ତି ଥୋକାଏ ରାଜା ପେଲାପେଲି ହୋଇ
ଥୋକାଏ ରାଜାଙ୍କୁ ଦେଖି ବୁଦ୍ଧି ନ ସ୍ଫୁରଇ
ବୋଲନ୍ତି ଥୋକାଏ ରାଜା ଦେଖି ଧର ଚାପ
ଆଉ ତହିଁ କେତେ ରାଜା କରନ୍ତି ଆହବ ।
ପୁନଙ୍ଗଦେଶ ରାଜା ବାବନା ଜାନୁଘଣ୍ଟ
କେଶରୀକି ବୋଇଲା ତୁ କଲୁ ସର୍ବନଷ୍ଟ ।
କାହୁଁ ଏ ଲାଖ ଗୋଟିକୁ ଦେଖାଇଲୁ ଆଣି
ଅବିବାହୀ ହେବେ ନିଶ୍ଚେ ତୋହର ଦୁଲଣୀ ।
କେହୁ ହେଲେ ଏ ଲାଖକୁ ନ ପାରିବେ ବିନ୍ଧି
ହରିହର ବୋଇଲେ ତ ହାରିବେ ଅବଧି ।
ଏଡ଼େ ପ୍ରମାଦ ଲାଖ ତୁ କଲୁ କାହୁଁ ଠୁଳ
ନ ଦେଖି ସୋରିଷ କରିବ ଯେ ବେନିଫାଳ ।
ଆମ୍ଭେ ତ ରାଜାଏ ଦେଖି ହେଲୁ ହତଜ୍ଞାନ
ଏରୂପେ ଧନୁକୁ ବିନ୍ଧି ନପାରେ କେଜାଣ ।
କେ ଅବା ବିନ୍ଧନ୍ତେ ଦେଖି ଧନୁ କରେତୋଳି
ତହିଁକି ଉହାଡ଼ କଲା ଶକଟାର ଗୁଳି ।
ଗୁଳି ଅଖ ରନ୍ଧ୍ରେ ପୁଣି ଶର ଯେବେ ଯିବ
ସ୍ତମ୍ଭେ ନ ବାଜିବ ମୃଗ ଶୃଙ୍ଗେ ନ ବାଜିବ ।
ଦର୍ପଣ ବାଡ଼କୁ ପୁଣ ଥିବ ଏଣେ ଚାହିଁ
ସୋରିଷ ଗୋଟିଏ ଏକବେନିଫାଳ ହୋଇ ।
ଲାଖକୁ ପିଠି ଦେଇଣ ନ ପାରେ କେ ବିନ୍ଧି
ଆଉ କିଛି କଥା ଥିଲେ କହ ନୃପନିଧି ।
ଏରୂପେ ବୋଇଲେ ସେ ବାବନା ଜାନୁଘଣ୍ଟ
ଆଉ ରାଜାମାନଙ୍କର ନ ସ୍ଫୁରଇ କଣ୍ଠ ।
ସଭାରେ ବସିଲେ ଯାଇଁ ବେହରଣ କରି
ଅଛନ୍ତି ସେ ଦିବାରାତ୍ରେ ଲାଖ ଅନୁସରି ।
ଏଥି ଉତ୍ତାରେ ରାଜା ଯେ ମଣିଭଦ୍ର ଥିଲା
ସଭାରେ କେଶରୀକି ଯେ କଥାଏ କହିଲା ।
ମଣିଭଦ୍ର ବୋଲେ ଶୁଣ ଭୂପାଳ କେଶରୀ
ସଭାକୁ ଆଣ ତୁ ତେବେ ତୋହର କୁମାରୀ ।
ଦେଖିବୁ କନ୍ୟାର ରୂପପୁଣ ଆମ୍ଭେ ଡ଼ୋଳେ
ପାରୁନପାରୁଁ ବିନ୍ଧିବୁ ହେଲେ ବେଳେବେଳେ
ଶୁଣିଣ କେଶରୀ ରାଜା ହୋଇଲା ହରଷ
ପୁତ୍ରକୁ ବୋଇଲା ଘରୁ କନ୍ୟା ଘେନିଆସ ।
ଅମୂଲ୍ୟ କନ୍ୟାକୁ ମୋର ଦେଖନ୍ତୁ ରାଜନେ
ପିତାବୋଲ ପାଳି ପୁତ୍ରେ ଚଳିଲେ ବହନେ ।
ମଧୁମାଧବ ବୋଲି ଯେ ରାଜା ବେନି ଶିଷ୍ୟ
ମୁହୁସୁଲୀକି ବୋଇଲେ କନ୍ୟା କର ବେଶ
ହାନ୍ଦୋଳାରେ ବସାଇଣ ସଭାକୁ ଯେ ଆଣ
ପିତାଙ୍କର ଆଜ୍ଞା ଏବେ ହୋଇଛି ଏକ୍ଷଣ ।
ଶୁଣିକରି ମୁହୁସୁଲୀ ବେଗେ ଗଲେ ଚଳି
ମଦନାବତୀକି ବେଶ କଲେ ସର୍ବେ ମିଳି ।
ମଦନାବତୀର ସଖୀ ଅଟଇ ମୋହିନୀ
ବାଲ୍ୟକାଳରୁ ତାର ଖଟେ ମନଜାଣି ।
କେଶ କୁରୁଳି ବାନ୍ଧିଲା ଖୋଷା ବେନିକରେ
ବସାଇଲା ନବରତ୍ନ ଝୁମ୍ପା ତଥିପରେ ।

ଝୁମ୍ପା ମୂଳେ ଲମ୍ବେ ହୀରା ମାଣିକ୍ୟର ଗୋଟି
ଭାଇ ଯୁଣ ଚମ୍ପାଆଦି ବେଣୀତଳେ ଲୋଟି ।
ଚତୁଃସମ ମିଶାଇଣ ଦେଲା ଅଙ୍ଗେ ଲେପ
ମଧ୍ୟରେ ସିନ୍ଦୂର ଟୋପି ଆଦିତ୍ୟ ସ୍ୱରୂପ ।
ଅଗୁରୁ ଚନ୍ଦନ କଳା ନୟନେ ଅଞ୍ଜନ
କୃତ୍ତିକାପୁଞ୍ଜ ବସଣୀ ନାସାରେ ଶୋଭନ ।
ହୀରାର ଚାଟଙ୍କ ବେନି କର୍ଣ୍ଣମୂଳେ ସାଜେ
ପରିଗୁଣାକୁ ଲାଗିଣ ମୁକୁତା ବିରାଜେ ।
ଗଳାରେ ତ୍ରିସରି ଚାପସରି ଚଉସରି
ନାନାପଦରେ ପଦକ ହୃଦେ ଅଛି ଭରି ।
ବାହେ ରତ୍ନ ବାହୁଟି ମଗର ମୁହାଁ ଟେକ
ବିଦ ମୁଦି ରତ୍ନଚୂଡ଼ି ହୀରାରେ ଝଟକ ।
କର ମୂଳରେ କଙ୍କଣ ଯୋଡ଼ି ଯୋଡ଼ି ଖଞ୍ଜି
କଟା ସୁନା ସୁତା ମାଣିକ୍ୟର ପୁଞ୍ଜି ପୁଞ୍ଜି ।
ପାଦତଳେ ନୂପୁର ଯେ ବାଜେ ରୁଣୁଝୁଣ
ଚରଣରେ ଦିଶେ ଫୁଟି ଅଳତା କିରଣ ।
ପ୍ରଭାତ କାଳରେ ସୂର୍ଯ୍ୟ ପ୍ରକାଶେ ଯେଜ୍ୟୋତି
ତହିଁରୁ ଶତେକ ଗୁଣେ ସେ ମଦନାବତୀ ।
ମଣ୍ଡନେ ନାନାଦି ଅଳଙ୍କାର ତାର କାୟ
ଅନ୍ଧାରେ ଫୁଟି ଦିଶଇ ଜ୍ୟୋତି ଚନ୍ଦ୍ର ପ୍ରାୟ ।
ବ୍ୟାସଙ୍କର ଯୋଗୁ ହୋଇଅଛି ଉତପନ୍ନ
ତହିଁରେ ଖୋଜିଲେ ପାଇବ କେ ଅବିଗୁଣ
ତ୍ରୈଲୋକ୍ୟ ମୋହିନୀ ସେହିଶୋଭା ନବଯୁବା
ଛାମୁରେ କେ ଅଳାବେଣୀ ବାଜେ ବଂଶୀରବା
ଲକ୍ଷେକ ଯେ ପରିବାରୀ ଗାଉଛନ୍ତି ଗୀତ
ହୁଳହୁଳି ଶବ୍ଦେ ଉଛୁଳଇ ପୁର ଶତ ।
ମୋହିନୀର ଅଟେ ମଦନାବତୀ ଯେ ସଖି
ହାନ୍ଦୋଳା ଧରି ରହିଲା ପାଖେପାଖେ ଲାଗି
ପଲ୍ୟଙ୍କରେ ବସି ଧୀରେ କରନ୍ତେ ଗମନ
ରାଜହଂସ ଗତି ପ୍ରାୟ ଦିଶେ ଶୋଭାବନ ।
ବରଣ ରତନମାଳା ହସ୍ତେ ତାର ସାଜେ
ପଲ୍ୟଙ୍କୁ ଉଠି ସଭାରେ କଲା ଯାଇଁ ବିଜେ ।
କଳା ମେଘରେ ଯେସନେ ଝଟକେ ବିଜୁଳି
ତେସନେ ଦିଶିଲା ସଭା ମଧ୍ୟେ ସେହୁବାଳୀ ।
ତାକୁ ଚାହିଁ ରାଜାଙ୍କର ନ ଚଳଇ ଚକ୍ଷୁ
ଅନଙ୍ଗ ଘାରିଲା ସବୁ ଅଙ୍ଗେ ଦେଖୁ ଦେଖୁ ।
ଚିତ୍ରପିତୁଳା ପରାୟେ ଅଛନ୍ତି ଯେ ଚାହିଁ
ତା ରୂପକୁ ଲକ୍ଷ୍ୟ ସ୍ତିରୀ ସଂସାରରେ ନାହିଁ ।
କି ଅବା କମଳା କିବା ଅଟଇ ପାର୍ବତୀ
ନୋହିଲେକ ଏଡ଼େ ଲାଖ କରନ୍ତା ନୃପତି ।
ଏ କନ୍ୟାକୁ ଘେନି ଯେହୁ କରିବଇଁ ଭୋଗ
ତାହାର ଏହି ସଂସାରେ ଅଟେ ବହୁଭାଗ୍ୟ ।
ଆମ୍ଭେ ହୋଇଲେ ସକଳ ରାଜାପାଶେ ତାରା
ଆମ୍ଭ ମଧ୍ୟରେ ଏ ଦିଶୁଅଛି ଚନ୍ଦ୍ରପରା ।
କେଶ କୃଷ୍ଣ ଚାମରଟି ଏହା ମୁଖ ଚାହିଁ
ବନରେ ଲୁଚି ରହିଲା ମନେ ଲଜ୍ଜା ପାଇ ।
ଏହୁ ଯେବେ ଜଳେ ପଶି ପଖାଳିବ ଅଙ୍ଗ
ବସନ ଡିନ୍ତି ଦିଶିବ ଫୁଟି ଜାନୁ ଜଙ୍ଘ ।
ଏହାମୁଖ ଦେଖିବରି ଚନ୍ଦ୍ର ପଳାଇଲା
ଆକାଶେ ଯାଇ ଦ୍ୱିଲକ୍ଷ ଯୋଜନେ ରହିଲା ।
ଆଉ ଯେତେକ ଦ୍ରବ୍ୟକୁ ଲକ୍ଷ୍ୟଦେବା ଆଣି
ତାହାର ସଦୃଶ କେହି ନ ଦିଶଇ ପୁଣି ।
ଏ କନ୍ୟାର ନେତ୍ରଦ୍ୱୟ ଦେଖିଣ ଉତ୍ପଳ
ନୋହିବାରୁ ସମାନ ସେ ପଶିଲାକ ଜଳ ।
ଏ କନ୍ୟାର ନାସିକାକୁ ତିଳଫୁଲ ଦେଖି
ମଳିନ ଦିଶିବାରୁ ସେ ବୃକ୍ଷେ ଗଲା ଲାଖି ।
ଏ କନ୍ୟା ବର୍ଣ୍ଣକୁ ଅରୁଣ ଯେ ଦେଖିକରି
ସମାନ ନୋହିବାରୁ ସେ ପଳାଇଲା ଡରି ।
ଆଦିତ୍ୟ ରଥେ ଯାଇଣ ହୋଇଲା ସାରଥି
ଶୁଣନ୍ତି ନାରଦ କହୁଛନ୍ତି ବେଦପତି ।
କଣ୍ଠ ଦେଖିଣ ଦକ୍ଷିଣାବର୍ତ୍ତ ନାମେ ଶଙ୍ଖ
ସମାନ ନୋହି ସମୁଦ୍ରେ ଲୁଚଇ ବାଳକ ।
ପଦ୍ମ ମୃଣାଳ ଦେଖିଣ ଏହା ବେନି ଭୁଜ
ସମାନ ନୋହି ଲୁଚିଲା ଜଳେ ପାଇ ଲାଜ ।
ରତ୍ନ ଫରୁଆରେ କିବା ଅଛି ସୁଧା ଲାଇ
ତେସନ ଆକୃତି ଦିଶେ ତାଙ୍କ ସ୍ତନ ଦୁଇ ।
ମାତଙ୍ଗ ଫଳ ତାକୁ ବା ହୋଇଥାନ୍ତା ଲକ୍ଷ୍ୟ
ନ ଦିଶେ ପାଚିଲେ ସମବର୍ଣ୍ଣ ତାର ସଙ୍ଖ ।
ଉଦରକୁ ପଦ୍ମନେତ୍ର ନ ଦିଶଇ ଶୋଭା
ନାଭି ଶରୀରକୁ କିବା ପଟାନ୍ତର ଦେବା ।
କଟୀ ବିସ୍ତାରକୁ ଆଉ ଉପମା ନ ଖଟେ
ମନସିଜ ରାଜାର କି ସାହସ ନ ଘଟେ ।
ଜାନୁ ଦେଖିଣ ଉଲଟ ରମ୍ଭାଯାଏ ଡରି
ପ୍ରସରି ରହିଲା ଏ କଥାରେ ଲଜ୍ଜାକରି ।
ପାଦ ଅଙ୍ଗୁଳିକି ମୁହିଁ କି ଦେବି ଉପମା
ପୃଥ୍ୱୀଚିନ୍ତାଛାଡ଼ି କୁନ୍ଦ ତାକୁ କଲା ବ୍ରହ୍ମା ।
ପୁଞ୍ଜ ପୁଞ୍ଜ ହୋଇ ଦେହେ ଲୋକ ଯାହାଦିଶେ
ଚାହିଁଲା ଲୋକ ତରଳି ହେବେ କାମବଶେ ।
ଦିନ ନ ଅଣ୍ଟିବ ଚାହିଁଦେଲେ କନ୍ୟାଜ୍ୟୋତି
ଗଜ ମୋତିରୁ ଅଧିକ ଦିଶେ ଦନ୍ତପନ୍ତି ।

ହସି ଯେବେ ଚାହିଁବ ଏ କନ୍ୟା ବକ୍ରକରି
ମୃତ ଶବ ହୋଇଲେ ଉଠିବ ଦେହଧରି ।
ଲକ୍ଷଣ ବୁଝୁ ବୁଝୁତ ଗତ ହେବ କାଳ
ଲାଖ ନ ବିନ୍ଧି ମାତ୍ରକ ଯିବା ଯେଝା ଆଳ ।
ରହିବ ଏତିକି ବିଡ଼ମ୍ବନ ରାଜା କୁଳେ
ଏହା ବୋଲନ୍ତେ ଉଠିଲା ତହିଁ ମହୀପାଳେ ।
ଭୂମ୍ୟମନ୍ୟୁ ଦେଶର ରାଜା ନାମ ବିଭୁରିକ୍ଷ
ସେ ବୋଇଲା ଦେଖ ମୁହିଁ ବିନ୍ଧୁଛି ପ୍ରତ୍ୟକ୍ଷ
ଏରୂପେ ସେ ଆଣ୍ଠକରି ଲାଖେ ଦେଲା ପିଠି
ଗୁଣେ ଶରଯୋଚି ଟେକିଲାକ ବାମମୁଷ୍ଟି
ହୁଙ୍କାର ନାଦେ ନାରାଚ ବିନ୍ଧୁ ତଡ଼ବଡ଼ି
ଶକଟ ଚକ୍ରରେ ବାଜି ପଡ଼ିଲାକ ଝଡ଼ି ।
ଦେଖି ନୋହିଲା ବୋଇଲେ ସଭା ଜନମାନେ
ଅଭିମାନ ପାଇ ରାଜା ବସିଲା ଆସ୍ଥାନେ ।
ତାର ଅପମାନ ଦେଖି ଆନ ରାଜା ଉଠି
ପ୍ରତିଜ୍ଞା କରି ଧଇଲେ କରେ ଧନୁଗୋଟି ।
କାମଚଣ୍ଡ ବୋଲି ଅଟେ ସେ ରାଜାର ନାମ
କନ୍ୟାର ଭାଇକି ପୁଚ୍ଛା କଲେ ଲାଖ ଧର୍ମ ।
ଲାଖର ବିଧାନ ମଧୁ ମାଧବ ସେ କହି ।
ବୋଇଲେ ବୁଝ କହିବା ତୁମ୍ଭେ ମନଦେଇ
ପୂର୍ବକୁ ପିଠି କିରବ ପଶ୍ଚିମକୁ ମୁଖ
ଦର୍ପଣ ବାଡ଼କୁ ଆପେ ନିରେକ୍ଷିଣ ଦେଖ ।
ଦିଶଇ ଶକଟ ତୁମ୍ଭ ମଧ୍ୟେ ଲାଖ ଜାଣ
ଶିରରେ ବହିଣ ଧନୁ ଧରି ବିନ୍ଧ ବାଣ ।
ସେ ଶର ଶକଟଚକ୍ର ତୁମ୍ଭେ ଯିବ ଗଳି
ସ୍ତମ୍ଭେ ନ ବାଜିଣ ମୃଗ ଶୃଙ୍ଗରେ ନ ଝଳି ।
ଗୁଆରେ ନ ବାଜି ଗୁଞ୍ଜଫଳେ ନ ବାଜିବ
ମୃଗରେ ନ ବାଜି ସୋରିଷ ଯେ ଭାଜିଯିବ ।
ଅଠା ଲଗାଇଣ ବ୍ୟାସେ ଦେଇଛନ୍ତି ପୁଣ
ଦର୍ପଣକୁ ଚାହିଁ ଦେଖ ଏତେକ ଘଟଣ ।
ସେ ସୋରିଷ ଗୋଟି ଯେବେ ବେନିଫାଳହବ
ଫାଳେ ଶୃଙ୍ଗେ ଥିବ ଫାଳେ ଶରମୁନେ ଥିବ
ଏରୂପ ଲାଖ ବିନ୍ଧିଲେ ସିଦ୍ଧ ବୋଲି ଜାଣି
ନିଶ୍ଚୟ କନ୍ୟାକୁ ଦେବୁ କହୁ ସତ୍ୟବାଣୀ
ଲାଖର ବିଧାନଯାକ ବୁଝି ରାଜସୁତେ
ଉଠିଲାକ କାମଚଣ୍ଡ ଧନୁ ଧରି ହସ୍ତେ ।
ଶର ଉପରେ ଥୋଇଣ ଟେକି ବାମମୁଷ୍ଟି
ଲାଖକୁ ପିଠି କିରଣ ଦର୍ପଣକୁ ଦୃଷ୍ଟି ।
ରଖିଣ ପ୍ରାକର୍ମ ବହି ବିନ୍ଧନ୍ତେ କୋପରେ
ଚକ୍ରଦ୍ୱାରେ ଚଳି ଶର ଭେଦିଲା ସ୍ତମ୍ଭରେ ।
ନୋହିଲା ନୋହିଲା ବୋଲି ରାଜପୁତ୍ରେ କହି
କାକୁସ୍ଥ ଦେଶର ରାଜା ଉଠେ କୋପବହି ।
କଙ୍କାସୁର ବୋଲିକରି ଅଟେ ତାର ନାମ
ଲାଖ ବିନ୍ଧିବ ବୋଲି ସେ ହୋଇ ତମ ତମ ।
ଧନୁରେ ଯୋଚି ବିନ୍ଧିଲେ ଅତି ତୀକ୍ଷ୍ଣ ଶର
ଲାଖ ନ ବାଜି ପଡ଼ିଲା କୋଶକ ଅନ୍ତର ।
ଏସନ ରୂପରେ ଲାଖ ବିନ୍ଧିବାର ଦେଖି
ସଭାଲୋକମାନେ ସର୍ବେ ହସିଲେ ମୁରୁକି ।
ସବୁରି ମୁଖରେ ହର୍ଷ ଦେଖିଣ ନୃପତି
ସଭାରେ ବସିଲା ଲଜ୍ଜା ପାଇ ମଥାପୋତି ।
ତାର ଅପମାନେ ଆଉ ଏକ ରାଜା ଉଠି
ବକ୍ରମାଳି ବୋଲି ଅଟେ ତାର ନାମଗୋଟି
ସେ ବୋଇଲା ଏ ଅଛି ଲାଖକୁ ମୁହିଁ ସାଧି
ଏ ଛାର ଲାଖକୁ କେହି ତ ପାରିବେ ବିନ୍ଧି ।
ଦେଖ ମୁଁ ବିନ୍ଧିବି ଏହିକ୍ଷଣି ଏହି ଲାଖ
ଏ କନ୍ୟାକୁ ବିହି ମୋତେ ଦେଇଛି ପ୍ରତ୍ୟକ୍ଷ
ଏତେବୋଲି ଲାଖକୁ ସେ ରାଜା ଦେଲାପିଠି
ଦର୍ପଣେ ନିରେଖି ସେ ଧଇଲା ଧନୁଗୋଟି ।
ଗୁଣେ ଶର ଦେଇ ବିନ୍ଧିଦ୍ୟନ୍ତେ ତଡ଼ବଡ଼ି
ଦେହ ବୁଲାଇଲା ପଡ଼ିଗଲା ମୁଖମାଡ଼ି ।
ପାଶେ ଥିଲେ ମଧୁମାଧବ ଏ ବେନିଭାଇ
ବୋଇଲେ ଏ ରାଜାକୁ କି କଲା ପିତ୍ତ ବାଇ
ନୋହିଲେ ଏଡ଼େ ଆଣ୍ଠରେ କହୁଥିଲା ରାଜା
ସାଧିଲା ପରାୟେ ଏବେ ଦିଶିଲା ତରିଯା ।
କନ୍ୟାକୁ ନେଲା ପରାୟେ ଦିଶିଲାକ ବର୍ଣ୍ଣ
ଏତେବୋଲି କାଢ଼ି ତାକୁ ଦେଲେ ବେନିଜନ
ଲଜ୍ଜା ପାଇଣ ସେ ରାଜା ନ ଗଲା ସଭାକୁ
ଅଭିମାନ ପାଇ ଗଲା ଆପଣା ରାଜ୍ୟକୁ ।
ସେ ରାଜାଯିବା ଦେଖି ଆଉ ରାଜାଯେତେ
କେହି ଲାଜ କରି ଧନୁ ନ ଧଇଲେ ହସ୍ତେ ।
ନିଶବଦେ ବସିଲେକ ସର୍ବେ ସ୍ଥାନ ମାଡ଼ି
କନ୍ୟାର ରୂପ ଦେଖି ନ ଯାନ୍ତି କେହି ଛାଡ଼ି
କେହି ନ ଆସିଲେ ଯହୁଁ ଧନୁଶର କତି
ସଭାମଧ୍ୟେ ଯାଇଁ କହେ କେଶରୀ ନୃପତି ।
ବୋଇଲା ସାବଧାନରେ ଶୁଣ ନୃପମାନେ
ଏ ଲାଖ ଖଞ୍ଜିଥିଲି ମୁଁ ଯେବଣ ବିଧାନେ ।
ପଚିଶ ଦିବସକୁ ମୁଁ କଲି ବିଭାଯୋଗ
ଏବେ ଆସି ଉନବିଂଶ ଦିନ ହେଲା ଭୋଗ ।
ଆବର ଯୋଗ ରହିଲା ଷଡ଼ଦିନ ସରି
ଏତେକ ମଧ୍ୟରେ ଯେ ଲାଖହୁଁ ବିନ୍ଧିପାରି ।

ତାହାକୁ ନିଷ୍ଟେ ଦେବଇଁ ମୋର ଜେମା ମୁହିଁ
ବ୍ରାହ୍ମଣ କ୍ଷତ୍ରିୟ ବୈଶ୍ୟ ଶୂଦ୍ର ଯେହୁ ହୋଇ
ଚଣ୍ଡାଳୁ ଶୂଦ୍ରହିଁ ଯାଏ ସାନ ବଡ଼ ଲୋକ
ହେଉ କଣା ଛୋଟା ଟେଁରା ଅପାରଗ ବାକ୍ୟ
ଯେ ବିନ୍ଧିବ ଲାଖ ତାକୁ ଦେବଇଁ କୁମାରୀ
ଏ କଥା ତ୍ରିବାର ସତ୍ୟ ଅଟଇ ମୋହରି ।
କେଶରୀ ରାଜା ମୁଖରୁ ନିରାଧାର ଶୁଣି
ଲାଖ ବିନ୍ଧିବାକୁ ସଜହେଲେ ରାୟେ ପୁଣି ।
ସୁରସେନ ଦେଶର ସୁବାହୁ ବଂନମାଳୀ
ସେ ଧାଇଁ ଧଇଲା ବାମକରେ ଧନୁତୋଳି ।
ବିନ୍ଧନ୍ତେ ଦର୍ପଣେ ଦୃଷ୍ଟିଦେଇ ଦେବରାଜ
ମୃଗଶୃଙ୍ଗରେ ଯାଇଁଣ ପଡ଼ିଲା ନାରାଜ
ସଭାଜନମାନେ ଦେଖି ବୋଇଲେ ନୋହିଲା
ତାହା ଶୁଣିକରି ଆଉ ରାଜାଏ ଉଠିଲା ।
ଚନ୍ଦ୍ରଚୂଡ଼ ଦେଶର ଯେ ଚନ୍ଦ୍ରଚୂଡ଼ ମାଝି
ଧନୁଧରିବା ମାତ୍ରକେ ଗଲା ଚକ୍ଷୁ ବୁଜି ।
ଲୋକଙ୍କୁ ପଚାରେ କେଉଁଠାରେ ଅଛି ଲାଖ
ଦର୍ପଣେ ଦେଖନ୍ତେ ଦିଶୁଛନ୍ତି ସର୍ବଲୋକ ।
ହେ ମଧୁ ମାଧବ କହ ବିନ୍ଧିବ ଯେ ଦିଗେ
ସବୁ ତ ଅନ୍ଧାର ଦିଶୁଅଛି ମୋର ଆଗେ ।
କେଶରୀ ରାଜା ଶୁଣିଣ ହସି ଟହ ଟହ
ବୋଇଲେ ଲାଖକୁ ବିନ୍ଧିନେବ ଏମୋଝିଅ
ଭଲ କ୍ଷତ୍ରିପଣ ଏହୁ ଅଟଇ ସଂସାରେ
ଲାଖ ଦେଖି ବୋଲୁଛି ତ ଲୋକ ସବୁଠାରେ
ଭଲ ଏ ତ ଅନୁମାନ ପାରଇ ତ କରି
ବିନ୍ଧିବାର ଜଣାଗଲା ଯାଅ ଅପସରି ।
ଏହା ବୋଲନ୍ତେଣ ରାଜା ଥୋଇ ଧନୁତଳେ
ତରଛ ହୋଇ ପଳାଇ ଗଲା ଅସମ୍ଭାଳେ ।
ତାହା ଯିବାର ଦେଖିଣ ଆଉ ରାଜା ଉଠି
ବିରାଟ ଚନ୍ଦ୍ର ବୋଲିଣ ଅଟେ ନାମ ଗୋଟି
ସେ ଉଠି ବିନ୍ଧନ୍ତେ ଗଲା ନାରାଚ ଯେ ଚଳି
ସ୍ତମ୍ଭରେ ବାଜିଲା ଯାଇ ଚକ୍ର ତୁଟେ ଗଳି ।
ନୋହିଲାକ ଲାଖ ବୋଲି ବୋଇଲେ ରାଜନେ
ଶୁଣି ଆଉ ରାଜା ଏକ ଉଠିଲା ଆସ୍ଥାନେ ।
ନୀଳମାଧବ ବୋଲିଣ ଅଟଇ ତା ନାମ
ନୀଳେନ୍ଦ୍ରି ଦେଶର ସେହି ନୃପ ଅନୁପମ ।
ସେ ଯାଇ ପୂର୍ବକୁ ଧନୁ ଧରି କଲା ପିଠି
ପଶ୍ଚିମ ମୁଖରେ ଦେଇ ଦର୍ପଣରେ ଦୃଷ୍ଟି
କଥାରେ ଧନୁକୁ ଟେକି ବାଣ ଦ୍ୟନ୍ତେ ଛାଡ଼ି
ଲାଖେ ନ ବାଜି ନାରାଚ ଶୂନ୍ୟେ ଗଲା ଉଡ଼ି
ପାଶେ ଥିଲେ ତାର ମଧୁ ମାଧବ ଯେ ଦୁଇ
ରାଜାର ମଥାରୁ ଧନୁ ଦେଲେକ ଓହ୍ଲାଇ ।
ତାହା ଦେଖି ଆଉ ଏକ ରାଜା ହେଲା ଦେଖା
କାଞ୍ଚନ ଦେଶର ସେହୁ ଅଟେ ନୃପସଖା ।
ଖଣ୍ଡେଦୂରୁ ଡାକଦେଲା ରହ ରହ ଭାଇ
କାହିଁପାଇଁ ଧନୁ ଥୋଇଦେଲ ତଳେ ନେଇ
ମୋର କ୍ଷତ୍ରୀପଣ ତୁହି ଦେଖ ଆଜବୋଲେ
ଲାଖବିନ୍ଧି କନ୍ୟା ମୁହିଁ ନେବି ସଭାତଳେ ।
ବୋଇଲେ ମଧୁ ମାଧବ କେତେ ଅଛୁଦେଖି
ତୁମ୍ଭ ପ୍ରାୟ ବିନ୍ଧି କେ ନ ପାରେ ଲାଖ ଯୋଖି
ଆପଣ ତ ଆଡ଼ମ୍ବରେ ଆସିଲଣି ଉଠି
ପାର ବା ନ ପାର ଏବେ ଧର ଧନୁଗୋଟି
ଏତେ ବୋଲି ଧନୁଶର ଦେଲେ ତାର କରେ
ଶର ଯୋଚି ଧଇଲା ଯେ ରାଜା ଧନୁ କରେ ।
ହୁଙ୍କାର କରିଣ ଶରଦ୍ୟନ୍ତେ କରୁ ଛାଡ଼ି
ହସ୍ତୁ ଧନୁ ଖସି ପଡ଼ିଲାକ ବେକମାଡ଼ି ।
ମଧୁ ମାଧବ ଏ ଦୁହେଁ ପାଶେ ଗଲେ ଧାଇଁ
ରାଜାର ବେକରୁ ଧନୁ ଦେଲେକ ଓହ୍ଲାଇ ।
ହସିଲେକ କରତାଳି ମାରି ଟହ ଟହ
ବୋଇଲେ ବିନ୍ଧିଲା ହେଲେ ସମ୍ଭାଳିଣ ରହ
ଏତେବୋଲି ଭୁଜ ତାର ଧରି ଦେଲେକାଢ଼ି
ତା ଦେଖି ଉଠିଲା ରାଜା ଏକ ନିଶମୋଡ଼ି ।
କମଳ ଦେଶର ରାଜା ନାମ ବାଞ୍ଛାନିଧି
ସେ ବୋଇଲା ଲାଖ ପାରିବି ମୁଁ ଏକା ବିନ୍ଧି ।
ସମସ୍ତେ ଯେ ଲାଖ ବିନ୍ଧି ଆସୁଛ ପଳାଇ
ମୁଁ ଲାଖ ବିନ୍ଧିଲେ ଗୋଳ ନ କରିବ କେହି
ତେବେ ମୁଁ ଲାଖ ବିନ୍ଧିବି ଜାଣ ଏହିକ୍ଷଣି
ସକଳ ରାଜା କହିଲେ ଏହି ଦୃଢ଼ବାଣୀ ।
ବୋଇଲେତ ଲାଖ ବିନ୍ଧ ଆଗ ନୃପବର
ନବିନ୍ଧି ପ୍ରତିଜ୍ଞା ତେବେ କରୁଛ ଅପାର ।
ତୁହି ବେଳେଯାଇ ଏବେ ବିନ୍ଧିଆସ କିନା
ଯାହାକୁ ଯୋଗ ଥିବ ସେ ଲଭିବ ଏ କନ୍ୟା
ସମସ୍ତ ରାଜା ବୋଇଲେ ଏହା ହେଉ ହେଉ
ଲାଖ ବିନ୍ଧିଣ ଯେ ରାଜା ଏ କନ୍ୟାକୁ ନେଉ
ଏତେ ରାଜାଗୋଷ୍ଠୀ ଥାଇ ନକଲେ ଯେକାର୍ଯ୍ୟ
ଯେ ଲାଖ ବିନ୍ଧିବ ପଛେ ନେଉ କନ୍ୟା ଆଜ
ଏକା କନ୍ୟାକୁ ଏଥି ତ ନ ମିଳିଲା ରାଜା
ବୁଝିଲେ ତ ସମସ୍ତଙ୍କୁ ଲାଗୁଅଛି ଲଜ୍ଜା ।
ଯାଅ ହେ ନରେନ୍ଦ୍ର ବେଗେ ଆସି ଲାଖବିନ୍ଧ
ଭୂପାଳ କେଶରୀ ରାଜା ବାକ୍ୟ ହେଉ ସିଦ୍ଧ

ସବୁରି ସମୀପେ ରାଜା ପ୍ରତିଜ୍ଞା ଯେ କହି
ଆପଣା ଧନୁ ତୂଣକୁ ସ୍କନ୍ଧେ ଅଛି ବହି ।
ପୂର୍ବେ ପଛ କରି କଲା ପଶ୍ଚିମକୁ ମୁଖ
ଦର୍ପଣକୁ ଚାହିଁକରି ଅନୁସରି ଲାଖ ।
ବେନି ପୁତ୍ରଙ୍କୁ ପୁଚ୍ଛଇ ବିନ୍ଧିବ କାହାକୁ
ଶୁଣି କୁମର କହିଲେ ବିନ୍ଧ ସେ ତୁମ୍ଭକୁ ।
ସେ ରାଜା ବୋଲଇ ମୋତେଦିଶେଯାହାଯାହା
ତାହା କହୁଅଛି ଶୁଣ ଆହେ ନରନାହା ।
ପ୍ରଥମେ ଦିଶେ ଶକଟଚକ୍ର ପରିପାଟୀ
ସେ ଚକ୍ର ମଧ୍ୟେ ଅଛଇ ବିବର ଦ୍ୱାରଟି ।
ସେ ରନ୍ଧ୍ର ଦିଶେ ସ୍ଫଟିକମଣିର ଯେ ସ୍ତମ୍ଭ
ପ୍ରତି ପ୍ରତି କରି ତାହା କହେ ଶୁଣ ଜବ ।
ସ୍ତମ୍ଭର ଉପରେ ଶୃଙ୍ଗ ହୋଇଅଛି ଥୁଆ
ଶୃଙ୍ଗର ଉପରେ ବସିଅଛି ଜାଣ ଗୁଆ ।
ଗୁବାକ ଉପରେ ଗୁଞ୍ଜ ଗୁଞ୍ଜପରେ ମୁଗ
ମୁଗ ଉପରେ ସୋରିଷ ହୋଇଛି ସଂଯୋଗ
ତହିଁ ଉପରେ ମୋତେ ନ ଦିଶେ ଆଉ କିଛି
କାହାକୁ ବିନ୍ଧିବି କହ ହେ କେଶରୀ ବତ୍ସି ।
ଶୁଣିଣ ମଧୁମାଧବ ହୋଇଲେ ଆନନ୍ଦ
ବୋଇଲେ ଭୋ ରାଜା ଏକା ସୋରିଷକୁ ବିନ୍ଧ
ସମସ୍ତେ ଦେଖୁ ସୋରିଷ ଯିବ ଯେବେ ଭାଙ୍ଗି
ଫାଳେ ରହି ଫାଳେ ଯିବ ଶରମୁନେ ଲାଗି ।
ତେବେ ସେ ଲାଖ ପରୀକ୍ଷା ଜାଣ ଜଣାଯାଇ
ସଭାରେ ବସିଲେ ଏତେ କହି ବେନିଭାଇ ।
ଶୁଣିଣ ଧଇଲେ ବାଞ୍ଛାନିଧି ଧନୁ ଟୋନି
ଶର ଉପରେ ନାରାଚ ଦେଲେ ଟେକି ଟାଳି
ଦକ୍ଷିଣକୁ ଏକଦୃଷ୍ଟି କରିଛନ୍ତି ଚାହିଁ
ନାରାଚ ଛାଡ଼ନ୍ତେ ଶୃଙ୍ଗେ ବାଜିଲା ସେ ଯାଇ
ବାଞ୍ଛାନିଧି ବୋଇଲେକ ବିନ୍ଧିଲି ମୁଁ ଲାଖ
ଆହେ ସଭାଜନେ ତୁମ୍ଭେ ଯାଇଣ ପରଖ ।
ନୃପତିମାନେ ଚାହିଁଣ କଲେ ତହିଁ ଗୋଳ
ବୋଇଲେ ବିନ୍ଧିଲୁ ଲାଖ କେହ୍ନେ ମହୀପାଳ ।
କନ୍ୟା ନେବୁ ବୋଲି ତୁହି ଅଛୁ ଶ୍ରଦ୍ଧା ବହି
ସୋରିଷ ଗୋଟି ଉପରେ ଅଛି ଦେଖ ରହି ।
ସୋରିଷକୁ ଫାଳ ଯେବେ କରିଥାନ୍ତୁ ବିନ୍ଧି
ତେବେ କନ୍ୟାକୁ ନିଅନ୍ତୁ ସିନା ବାଞ୍ଛାନିଧି ।
ଏ କଥା ତୁମ୍ଭ ମନକୁ ନୁହେଁ ଯେବେ ପ୍ରତେ
ଆସି ତେବେ ଦେଖିଯିବା ରାଜା ଜାଣ କେତେ
ଥୋକାଏ ମିଳିଲେ ଯାଇ ସେହି ଲାଖତଳେ
ଗୁଆ ଗୁଞ୍ଜ ମୁଗକୁ ସେ ଦେଖିଲେ ନିଶ୍ଚଳେ ।
ସୋରିଷ ଗୋଟି ଉପରେ ଅଛି ମଧ୍ୟ ରହି
ନୋହିଲା ଏ ଲାଖବୋଲି ହେଲେ କୁହାକୁହି
ଏରୂପେ ଉଚ୍ଚେ ଶୁଭନ୍ତେ ସଭାମଧ୍ୟେ ବାଣୀ
ସେ ରାଜା ଲଜ୍ଜା ପାଇଣ ପଳାଇଲା ପୁଣି ।
କୁନ୍ଦନ ଦେଶର ରାଜା କୁନ୍ଦନ କେଶରୀ
ସେହି ନାରାଚକେ ବିନ୍ଧି ଗଲା ଅପସରି ।
ସେ ବାହୁଡ଼ନ୍ତେ କୁମୁଦ ଦେଶର ଯେ ରାୟ
ସେ ବୋଇଲା ଲାଖ ମୁହଁ ବିନ୍ଧିବି ନିଶ୍ଚୟ ।
ଏତେ ବୋଲି ନାରାଚ ସେ ବିନ୍ଧନ୍ତେ ତୁହାଇ
ଦର୍ପଣେ ଚାହାଁନ୍ତେ ମୁଖ ପଡ଼ିଲା ଢୁଳାଇ ।
ଧନୁ ଗୋଟିକ ତାହାର ହସ୍ତୁ ଗଲା ଖସି
ନୋହିଲା ଏ ବୋଲି ସର୍ବେ ବୋଇଲେକହସି
ଅଳାୟୁଧ ଦେଶ ରାଜା ସୁନ୍ଦ ଚକ୍ରବର୍ତ୍ତୀ
ସେ ରାଜା ମିଳିଲା କୋପ ବହି ଧନୁ କତି ।
ଲାଖେ ପିଠିକରି ଦେଲା ଦର୍ପଣକୁ ମୁଖ
ଓଟାରି ବିନ୍ଧନ୍ତେ ଧନୁ ପଡ଼ିଲାକ ବେଙ୍କ ।
ଲଜ୍ଜା ପାଇ ବେକୁ କାଢ଼ି ଦେଲା ଧନୁଗୋଟି
ସୁଶୀଳ ଦେଶର ସାମଦୀର୍ଘ ରାଜା ଉଠି ।
ଧନୁ ଧରି ବିନ୍ଧିଲାକ ବାଣ ଅତି ଖରେ
ଶକଟେ ବାଜି ପଡ଼ିଲା ଶର କୋପଭରେ ।
ଲୋହିତାକ୍ଷ ଦେଶ ରାଜା ଉଠିଲା ଅଙ୍ଗଦ
ସେ ବୋଇଲା ଲାଖର କେ ନ ପାଇଲେଭେଦ
ନେତ୍ର କେହୁ ସ୍ଥିରକରି ନ ରଖ ଦର୍ପଣେ
ଧନୁରେ ଯୋଖି ବିନ୍ଧୁଛ ଶର ଏଣେ ତେଣେ
କାର ଅନୁମାନ ନାହିଁ ଏ ସଭା ମଧ୍ୟରେ
କନ୍ୟାର ଲୋଭେ ବିନ୍ଧୁଛ ମାତ୍ର ଥରେଥରେ
ମୁଁ ଦେଖ ବଳେ ବିନ୍ଧଇ ଆଜି କିନା ଲାଖ
ଏତେକ ବୋଲି ଦର୍ପଣ ବାଟେ ନେଲା ମୁଖ
ଭୋଳ ହୋଇଣ ରାଜନ ଚାହେଁ ଏଣେତେଣେ
ଆପଣାର ଦେହଗୋଟି ଦେଖିଲା ଦର୍ପଣେ ।
ଲାଖର ଚିହ୍ନ ବର୍ଣ୍ଣ ସେ ନ ଦେଖିଲା କିଛି
ପଚାରଇ ସୋରିଷ ହୋ କେଉଁଆଡ଼େ ଅଛି ।
ସେ ରାଜା ଭୋଳ ହେବାର ଦେଖି ସଭାଜନ
ବୋଲନ୍ତି ଏହି ରାଜାର କେଡ଼େ ଅନୁମାନ ।
ପ୍ରଥମରେ କଲା ଆଣ୍ଟ ଗଲା ଏବେ କାହିଁ
ସୋରିଷ କାହିଁ ବୋଲି ଏ ପୁଣି ପଚାରଇ ।
ଏତେକ ଚିହ୍ନିଲୁ ଏହା ଲାଖବିନ୍ଧା ପଣ
ତଳେ ଥୋଇଆସ ଏବେ କରୁ ଧନୁ ତୂଣ ।
ସବୁରି ମୁଖରୁ ହାସ୍ୟ ପାଇ ନୃପବର
ସଭାରେ ବସିଲା ଲଜ୍ଜା ପାଇ ପୋତି ଶିର ।

ଏମନ୍ତେ କେତେ ଦେଶରୁ ରାଜାମାନେ ଆସି
କେହି ସେ ଲାଖ ବିନ୍ଧି ନ ପାରିଲେ ଭରସି ।
କେତେ ଯେ ପ୍ରକାର ଲାଖ ଅଛି ତିନିପୁରୀ
ଏ ଲାଖକୁ ଗୋଚର କେ ନ ପାରିଲେ କରି
ଧନ୍ୟ ସେହି ବ୍ୟାସକୂଟ ଲାଖର ମହିମା
ବ୍ରହ୍ମାଭଳି ଲୋକ ଲାଖ ବିନ୍ଧିନେବେ କନ୍ୟା ।
ଏ କଥା ବିଚାରି ବ୍ରହ୍ମା କହିଲେ ବ୍ୟାସଙ୍କୁ
ଏ କନ୍ୟା ଭୋଗ କରିବ ବୁଝିଲେ ମୁରକୁ ।
ହର ବରେ ଚିରଜୀବୀ ଜଗତେ ହୋଇଛି
ଦିଗବିଜେ କରି ଲାଖ ବିନ୍ଧିବ ସେ ଲକ୍ଷି ।
ଏସନ କରି ଲାଖକୁ ତୁମ୍ଭେ ନିର୍ଭାକର
ତେଣୁ ସେ ବ୍ୟାସ ରଚିଲେ ମଞ୍ଚେ ଅଗୋଚର
ବଦୟନ୍ତି ବେଦବର ଶୁଣ ହେ ନାରଦ
ତେଣୁ ସେ ଲାଖର କେହି ନ ପାଇଲେ ଭେଦ



## ମୁରାସୁର ଶାଲ୍ମଳୀ ବୃକ୍ଷ ଦର୍ଶନ ଓ ଭୂପାଳ ରାଜସଭାରେ ପ୍ରବେଶ

ଏଥୁ ଅନନ୍ତରେ ମୁର କଲା ଦିଗବିଜେ
ଡଗର ମୁଖେ ବାରତା ପାଇ ଦୈତ୍ୟରାଜେ
ସେ ଦିଗେ ଅଛି ଶାଲ୍ମଳୀ ନାମେ ଏକ ବୃକ୍ଷ
ପୃଥିବୀକୁ ଧାରଣା ସେ ଅଟଇ ପ୍ରତ୍ୟକ୍ଷ ।
ଦେଖିଲା ନାହାନ୍ତି ସେହି ଦ୍ୱୀପେ କେହି ରାଜା
ପୃଥ୍ୱୀଯାକ ଅଶୃଙ୍ଖଳ ସର୍ବଜନ ପ୍ରଜା ।
ତାହା ଦେଖିଣ ବିଚାର କରେ ମୁରରାୟେ
ବୋଇଲା ଡରିଣ କେହୁ ନ ମିଳିଲେ ଭୟେ ।
ଏତେକ ପାଞ୍ଚିଣ ଭ୍ରମି ଆସେ ଦୈତ୍ୟରାଜେ
ଶାଲ୍ମଳୀ ବୃକ୍ଷ ମୂଳରେ ଆସି କଲା ବିଜେ ।
ଶତ ଯୋଜନ ବିସ୍ତାର ଅଟଇ ସେ ତରୁ
ପାଞ୍ଚକୋଟି ଶାଖା ତାର ଏକେ ଏକେ ମେରୁ
ଉଚ୍ଚରେ ସେ ବୃକ୍ଷ ସ୍ୱର୍ଗଯାଏ ଅଛି ବେଢ଼ି
ଚାରିଦିଗେ ଚାରିଡାଳ ବ୍ରହ୍ମା ଅଛି ଗଢ଼ି ।
ଦିଗପାଳେ ଆସି ତହିଁ କରୁଥାନ୍ତି କେଳି
ସେ ବୃକ୍ଷ ମୂଳରେ ଯାଇ ମୁରାସୁର ମିଳି ।
ବୃକ୍ଷକୁ ଦେଖିଣ ରାଜା ହେଲା ଆଚମ୍ଭିତ
ମନ୍ତ୍ରୀକି ବୋଇଲା ଏହୁ କେବଣ ତରୁ ତ ।
ସୁବିଜ୍ଞ କହଇ ତେବେ ଶୁଣ ନୃପବର
ଏ ବୃକ୍ଷଗୋଟି ଦ୍ୱୀପକୁ ଅଟଇ ଧାରଣ ।
ଏ ଦ୍ୱୀପର ଅଧିପତି ଭୂପାଳ କେଶରୀ
ନୃପତିଯାକ ତାହାକୁ ଥାନ୍ତି ସେବାକରି ।
ତାଙ୍କୁ ଜିଣିଲେ ଆମ୍ଭର ହେବ କାର୍ଯ୍ୟସିଦ୍ଧି
ଏମନ୍ତ ବୋଲି ମନ୍ତ୍ରଣା ହେଲା ଯଥାବିଧି ।
ଶୁଣି ବସିଥିଲା ସେ ବୃକ୍ଷମୂଳେ ମୁରାସୁର
ଆଗରେ କଣ୍ଟ ବିକଣ୍ଟ ଛନ୍ତି ଯୋଡ଼ି କର ।
ବାମ ଦକ୍ଷିଣରେ ବସିଛନ୍ତି ପାତ୍ରମନ୍ତ୍ରୀ
ଆଗ ପଛେ ଅଛନ୍ତି ଯେ ସର୍ବ ସେନାପତି ।
ଆଡ଼ିକା ଖଡ଼ିକା ସୁର ଜାନୁଘଣ୍ଟ ବୀର
ବିରାଢ଼ ମୁଡ଼ାସୁର ଯେ କଳପା ଅସୁର ।
ମଦନ ଅଲୋପୀ ଜଳଘଣ୍ଟ ମହାବଳୀ
ରଣକେଶୀ ଯେ ବିକୃତକେଶୀ ବଜ୍ରମାଳୀ ।
ଚନ୍ଦ୍ରମାଳୀ ଲୋହାସୁର ଆଉ କୃତକେଶୀ
ପ୍ରଳମ୍ବା ଲୋହାସୁର ବୀରଘଣ୍ଟ ମିଶି ।
ବିରୋଜ ବିକୃତ ବାଳକୃତ ମହାକୃତ
ସୁରମାଳ ସହିତରେ ଯେତେ ସେନାଯୂଥ ।
ଅଶୀ ଯୋଜନ ମାଡ଼ିଣ ଚଳନ୍ତି ସେ ଥାଟ
ବସିଲେ ସକଳ ଯାଇ ବୃକ୍ଷଛାୟା ତଟ ।
ବୃକ୍ଷକୁ ଦେଖିର ମୁର ପ୍ରଶଂସା କରଇ
ଏଥି ଉତ୍ତାରେ ମିଳିଲେ ଚାର ଆସି କହି ।
ଯେଉଁଠାରେ ମୁର ବସି କରିଅଛି ସଭା
ଡଗର କହିଲା ତହିଁ ଆସି ହୋଇ ଉଭା ।
ବୋଇଲା ହେ ସାବଧାନେ ଶୁଣ ଦୈତ୍ୟରାଜ
ଭୂପାଳ କେଶରୀ ରାଜା ସ୍ୱୟମ୍ବର ଆଜ ।
ପାଞ୍ଚଲକ୍ଷ ରାଜା ଆସିଅଛନ୍ତି ରାଜନ
କେହି ଲାଖ ବିନ୍ଧିବାକୁ ନୋହିଲେ ଭାଜନ
କନ୍ୟା ଏକ ଅଛି ତାର ଅତି ରୂପବତୀ
ଯେ ଲାଖ ବିନ୍ଧିବ ତାକୁ ଦେବେ ସେ ଦୁହିତୀ
ଏ ପ୍ରକାର ଚତୁର୍ବିଂଶ ଦିନ ହେଲା ଭୋଗ
ପଚିଶ ଦିବସେ ଅଛି ତାକୁ ବିଭା ଯୋଗ ।
ଏମନ୍ତ ବୋଲି କହନ୍ତେ ଆସି ତହିଁ ଚାର
ସ୍ୱୟମ୍ବର କଥା ଶୁଣି ଉଠିଲା ସେ ମୁର ।
ଏକେ ତ ବିଧାତାଙ୍କର ଅଟଇ ତନୟ
ଈଶ୍ୱର ବର ପାଇଣ ହୋଇଛି ଅଜେୟ
ବିଜୟା ରଥରେ ଚଢ଼ି ଶୂନ୍ୟମାର୍ଗେ ରହି
ଯେତେ ମନାସିବ ଯାନ ତେତେଦୂର ଯାଇ ।
ବିଜୟା ରଥ ଆକାଶେ ରଖାଇ ଅସୁର
ଦେଖିଲା ସବୁ ନିରେଖି କନ୍ୟାର ସୁନ୍ଦର ।
ରାଜାଙ୍କର ଲାଖ ବିନ୍ଧା ନ ପାରିବା ଦେଖି
ସହି ନ ପାରି ପ୍ରଚଣ୍ଡ କଲା ମୁର ଆଖି ।
ପୁଣ ପାଞ୍ଚଇ ଏ କନ୍ୟା ମୋତେହେବ ଭୋଗ
ବୁଝିଲେତ ଏ ଲୋକଙ୍କ ନୁହଇ ଏ ଯୋଗ୍ୟ ।

ମୋତେଜାଣି ଯେବେ ରାଜା ଆଗୁଁ ବରିଥାନ୍ତା
ଏତେଦିନଯାଏ କିମ୍ବା କନ୍ୟା ରହିଥାନ୍ତା ।
ସହଜେ ଏହି ଦ୍ୱୀପର ନୋହୁ ଆମ୍ଭେ ନୃପ
ସେ ଘେନି ଆମ୍ଭର ନାହିଁ କେଶରୀ କିକୋପ
ଇଚ୍ଛାରେ ସେଠାକୁ ଆମ୍ଭେ ଯିବାର ଅଟଇ
ଏତେ ପାଞ୍ଚ ଶୂନ୍ୟ ରଥ ତଳମାର୍ଗେ ବାହି ।
ଧୀରେ ଧୀରେ ଗଗନରୁ ପଡ଼ିଲାକ ଖସି
ପ୍ରଭାତେ ଉଦୟ ଯେହ୍ନେ ଛାୟାକାନ୍ତ ଦିଶି ।
ବାଜଇ ଦୁନ୍ଦୁଭି ଶଙ୍ଖ ମହୁରୀ କାହାଳୀ
କଡ଼ା ମର୍ଦ୍ଦଳ ଦମାଲୁ ଝାଞ୍ଜ ରାମତାଳି ।
ଘେନି ସକଳ ସଇନି ସେନାଙ୍କୁ ସଙ୍ଗରେ
ବିଜେକଲା ମୁରାସୁର ସ୍ୱୟମ୍ବରଠାରେ ।
ଯେତେକରାଜା ସଭାରେ ହୋଇଥିଲେ ଗୋଷ୍ଠୀ
କିସ କିସ ବୋଲି ଚାହିଁଦେଲେ ସର୍ବେ ଉଠି
ଦେଖିଲେ ଅସୁରଥାଟ ଅପ୍ରମିତ ବଳ
ତାଙ୍କର କେଶ ଯେ ମୁଣ୍ଡ ମୁଖ ବିକରାଳ ।
ଏକକୁ ଆରେକ ଦୈତ୍ୟ ରଣେ ଜଗଛିଣା
ଆଗପଛ ଚାଲିଥାନ୍ତି ହୋଇଣ ଅରଣା ।
ଚନ୍ଦ୍ରଙ୍କୁ ଆସି କ୍ଷଣକେ ଘୋଟେ ଯେହ୍ନେ ରାହୁ
ସେହିରୂପେ ପ୍ରବେଶିଲା ମୁର କହୁଁ କହୁଁ ।
ଦେଖିକରି ରାଜାମାନେ ପଳାଇଲେ ଡରି
ପାଖେ ତାର ନ ରହିଲେ ମହାଭୟ କରି ।
ଶାନ୍ତ ରାଜାମାନେ ଦେଖି ପଳାଇଲେ ଭୟେ
ଦୁଷ୍ଟ ରାଜାମାନେ ମାତ୍ର ରହିଲେ ଥୋକାଏ ।
ଏମନ୍ତ ସମୟେ ମୁର ମିଳନ୍ତେ ସଭାରେ
ଦେଖିଲା ପଳାନ୍ତି ଲାଖ ଛାଡ଼ି ସର୍ବେ ଡରେ ।
ରାଜାଙ୍କ ଯିବାର ଦେଖି କେଶରୀ ଯେ ଉଠି
ସବୁଙ୍କୁ ମୁରାଟ କରି ରଖିଲେ ପାଛୋଟି ।
ବୋଇଲେମୋହର ଥାନ୍ତେପଳା କିମ୍ବା ଡରି
କେତେ ବିଚାର ବୁଝିବା ତାର ତଥ୍ୟ କରି ।
କେଶରୀ ବୋଲେ ରହିଲେ ସର୍ବେ ଦମ୍ଭହୋଇ
ଭିତରେ ଡରି ବାହାରେ ଅଛନ୍ତି ଅନାଇଁ ।
ସବୁଙ୍କର ଭୟ ଦେଖି ଭୂପାଳ ନୃପତି
ଅର୍ଘ୍ୟ ଘେନି ମିଳିଲେକ ମୁରାସୁର କତି ।
ଧୂପ ଦୀପ ଗନ୍ଧ ପୁଷ୍ପ ଦୁର୍ବାକ୍ଷତ ଦେଲେ
ଢୋଲ ଦମା ବଜାଇ ସେ ମୁରେ ପୂଜାକଲେ
ବିନୟ ଭାବରେ ରାଜା କହେ ମୃଦୁବାଣୀ
ବୋଲନ୍ତି କାହିଁର ଅଟୁ ତୁ ହୋ ନୃପମଣି ।
ମହାପ୍ରତାପୀ ପରାୟ ଦିଶୁଅଛୁ ତୁହି
ତୁହି ଅସତ୍ୟ କଲେ କି ଏ ସଂସାର ରହି ।

ଶୁଣିଣ ମୁର ଅସୁର ହେଲା ମହାଶାନ୍ତି
ସୈନ୍ୟଙ୍କୁ ଆଦେଶ ଦେଲା ରହରେ ନିବର୍ତ୍ତି ।
ରହିଲେ ରାଜାର ଆଜ୍ଞାପାଇ ସୈନ୍ୟଯାକ
ତହିଁ ଉତ୍ତାରୁ ସେ ମୁର କହିଲା ଏ ବାକ୍ୟ ।
ମୁର ଯେ ବୋଇଲା ଶୁଣ ହେ କେଶରୀ ରାଜା
ଜମ୍ବୁଦ୍ୱୀପ ପ୍ରଭୁ ଆମ୍ଭେ ଅଟୁ ବ୍ରହ୍ମଦ୍ୱିଜା ।
ଭୂତଙ୍କୁ ତୋଷିଣ ମୁହିଁ ହୋଇଛି ଅମର
ଜିଣିଲି ଦିଗବିଜୟ କରି ତିନିପୁର ।
ଆସିଲଇଁ ବେନିଦ୍ୱୀପ ଜିଣି ତୁମ୍ଭ ତହିଁ
ଦେଖିଲେ ଏଥୁ ଲାଖ ନ ପାରେ ବିନ୍ଧି କେହି
ତେଣୁକରି ଆସିଅଛି ବିନ୍ଧିବି ମୁଁ ଲାଖ
କନ୍ୟାକୁ ନେବି ସମସ୍ତେ ତୁମ୍ଭେ ସୁଖେ ଦେବ
ଆପଣଙ୍କ କଲା ଧର୍ମ ରଖିବି ଯେ ମୁହିଁ
ସତ୍ୟକର ଏ କନ୍ୟାକୁ ଦେବୁଟିକି ତୁହି ।
ମୁର ଦୈତ୍ୟର ମୁଖରୁ ଏହି ବାକ୍ୟ ଶୁଣି
କେଶରୀ ବୋଇଲା ତେବେ ଶୁଣ ନୃପମଣି ।
ଆମ୍ଭେ ନରରାଜା ତୁମ୍ଭେ ଅସୁରାଧିପତି
ଦୈତ୍ୟ ହୋଇ ହରିବ କି ମାନବ ଯୁବତୀ ।
ଶୁଣିଣ ହସିଲା ମୁର ଦୈତ୍ୟ ଟହ ଟହ
ବୋଇଲାକ ବଳେ ଘେନିଯାନ୍ତି ତୁମ୍ଭ ଝିଅ ।
ସତ୍ୟକରି ଲାଖଟିଏ ପୋତିଅଛ କିନା
ବଳେ କନ୍ୟା ନେଲେ ଧର୍ମହାନି ହେବ ସିନା
ଲାଖବିନ୍ଧି କନ୍ୟାନେଲେ ଦୋଷ ଯେବେହେଲା
ବରିଲୁ ଚାଣ୍ଡାଳୁ ବ୍ରହ୍ମଯାଏ କିମ୍ବା ଭଲା ।
କୁଳକୁ ଲଜ୍ଜା ତୁମ୍ଭର ଥିଲା ଯେବେ ପୁଣି
ଏଡ଼େ ଲାଖ କାହିଁପାଇଁ କଲୁ ନୃପମଣି ।
ସ୍ୱଜାତିରୁ ଆଣି ସିନା କରିଥାନ୍ତୁ ବିଭା
ଜାତିରୁ ଅଜାତି ଯାଏ କିମ୍ବା କନ୍ୟା ଦେବା
ସ୍ୱଜାତି ବନ୍ଧୁ ବାନ୍ଧବ ଆଦି ପରଜାତି
ଏତେ ଆଗୁ ପାଞ୍ଚ କରୁଥାନ୍ତି ନାସ୍ତି ।
ଏତେ କଥା ଜାଣିବା ଲୋକ କିରିପେ ଗଲୁ ହୁଡ଼ି
ସେକଥା ପାଞ୍ଚିଲେ ଆଉ କିଏ ଦେବ ଛାଡ଼ି ।
ମୁଁ ଯେବେ ଅନ୍ୟାୟ କରି ନ୍ୟନ୍ତି ତୁମ୍ଭ ଝିଅ
ତେବେ ବା ନିନ୍ଦା କରନ୍ତେ ମୋତେ ରାଜାପୁଅ
ଯେବେ ପରାକ୍ରମେ ମୁହିଁ ବିନ୍ଧିଲି ଏ ଲାଖ
ତହିଁକି ଶରଧା ନୋହି ହେଉଛ ବିମୁଖ ।
ନୋହିଲେ କେହୁ ପାରିବେ ବିନ୍ଧୁ ଆଜି ଶର
ମନୁ ମୁରୁଛି ଯିବି ମୁଁ ଆଜୁଁ ତୋର ପୁର ।
ଏମନ୍ତ ବୋଲି କହିଲେ ଯହୁଁ ମୁରଦୈତ୍ୟ
ଶୁଣିକରି ସବୁରାଜା ହୋଇଲେ ଉସତ ।

ବିଚାରି ବୋଇଲା ଏବେ ଦୈତ୍ୟ ଧର୍ମବାଣୀ
ବଳେ ନେଲେ ଏହାକୁ କି କରନ୍ତାଇଁ ପୁଣି ।
ମାନଦ କି ବିନ୍ଧିପାରେ ଏ ଅସାଧ ଲାଖ
ବିନ୍ଧିନେଲେ ଦେବକନ୍ୟା ବ୍ରହ୍ମାତ୍ମଜ ଲୋକ
ଯାଅ ହେ ନରେନ୍ଦ୍ର ଏବେ ବିନ୍ଧ ଲାଖଗୋଟି
କେଶରୀ ରାଜାର ସତ୍ୟ ସଦା ରହୁ ସୃଷ୍ଟି ।
କନ୍ୟା ନିଅ ପଛେ ପୁରୁ ରାଜାର ଯେ ବ୍ରତ
ଏତେ ବୋଲିକରି ସର୍ବେ କଲେ ସନମତ ।



## ମୁରାସୁରର ଲାଖବିନ୍ଧା ଓ ମଦନାବତୀର ବିଭା

ଶୁଣିଣ ଉଠିଲା ମୁରଦୈତ୍ୟ ଶିରଝୁଣି
ଆପଣା ଧନୁରେ ଗୁଣ ଚଢ଼ାଇଲା ଆଣି ।
ବିଜୟ ମନ୍ତ୍ର ଗୋଟିକ ପଢ଼ି ମନେ ମନେ
ମହାକାଳ ନାମେ ବାଣ ବସାଇଲା ଗୁଣେ ।
ହର ଏଣେ ବର ଦେଇଛନ୍ତି ପରିପୂର୍ଣ୍ଣ
ଯେବେ ମନାସିବ ତେବେ ହୁଏ ଶରମୁନ ।
ଯେଉଁମାର୍ଗେ ନୃପମାନେ ବିନ୍ଧିଥିଲେ ବାଣ
ସେହିରୂପେ ଚାହିଁ ଦର୍ପଣରେ କରି ମୁନ ।
ବେନି ନେତ୍ରରେ ନିରେଖି ଚାହିଁ ମହାରାୟ
ଲାଖବିନ୍ଧା ଦିଶେ ତାକୁ ପାଶେ ଥିଲା ପ୍ରାୟ ।
ଦେଖିଲା ଆଦ୍ୟେ ଶକଟ ପୁଣି ଚକ୍ରରନ୍ଧ୍ର
ରନ୍ଧ୍ର ସେ ପାଖରେ ଦିଶେ ଲାଖ ପରିବନ୍ଧ ।
ଖଞ୍ଜିଛି ସ୍ଫଟିକମଣି ସ୍ତମ୍ଭେ ଶୃଙ୍ଗ ଗୋଟି
ତହିଁପରେ ରହିଅଛି ଗୁବାକ ଫଳଟି ।
ସେ ଫଳରେ ଗୁଞ୍ଜଫଳ ପୁଣି ଅଛି ହୋଇ
ଗୁଞ୍ଜାପରେ ମୁଗ ଥୋଇଅଛି ଅଠା ଦେଇ ।
ମୃଗର ଉପରେ ପୁଣି ରହିଛି ସୋରିଷ
ଶୁଣ ନାରଦ କହନ୍ତି ପ୍ରଭୁ ଲୋକଈଶ ।
କାର୍ଯ୍ୟଗ୍ରାହୀକି ଚାହିଁଣ ପୁଚ୍ଛେ ମୁରାସୁର
ବୋଲଇ ଲାଖବିନ୍ଧିବା କହ କେହ୍ନେ ତୋର
ଆଗକୁ ବଦନ ଥିବ ପଛକୁ କିପରି
ପାଞ୍ଚଗୋଟି ଦ୍ରବ୍ୟ ଦିଶୁଅଛି ରନ୍ଧ୍ରେ ବାରି ।
ପ୍ରଥମେ ଶୃଙ୍ଗ ଦ୍ୱିତୀୟେ ଦିଶଇ ଗୁବାକ
ତୃତୀୟରେ ଗୁଞ୍ଜଫଳ ଚତୁର୍ଥେ ମୃଗେକ ।
ପଞ୍ଚମରେ ଦିଶୁଅଛି ସୋରିଷ ଆକୃତି
କାହାକୁ ବିନ୍ଧିବା କହ ଫେଡ଼ି ନରପତି ।
ଶୁଣିଣ କେଶରୀ ରାଜା ହେଲା ଚମତ୍କାର
ବୋଇଲା ଚିହ୍ନିଲା କେତେକ୍ଷଣି ଲାଖମୋର
କିବା ଇନ୍ଦ୍ର ଗୋବିନ୍ଦ ଏ ଅଟେ ଶୂଳପାଣି
ଅବା କେଉଁ ମହାରଷି ଅଟନ୍ତି ଏ ପୁଣି ।
ଏଡ଼େଭଳି ନୋହିଲେ କି ଜାଣନ୍ତା ଏ ଲାଖ
ନିଶ୍ଚେ କନ୍ୟାର ଫିଟିଲା ଏବେ ଜାଣ ଦୁଃଖ
ମୁଁ ପୁଣି ସତ୍ୟକରି ଚଣ୍ଡାଳୁ ବ୍ରହ୍ମଯାଏ
ଯେ ବିନ୍ଧି ପାରିବ ଲାଖ କନ୍ୟା ତାର ହୁଏ ।
ତଥାପି ଯେ ଲୋକ ହେଉ ବିନ୍ଧୁ କିବା ଲାଖ
ଅକୁଳୀନ ହେଲେ ସେହି ଅଟେ ବଡ଼ଲୋକ
ଏତେକ ପାଞ୍ଚି କେଶରୀ କହେ ଲାଖ ଗୁଣ
ବୋଇଲେ ସେ ସୋରିଷକୁ ବିନ୍ଧ ଯେ ଆପଣ
ଦର୍ପଣ ନିରେଖି ଦିଅ ଲାଖକୁ ଯେ ପିଠି
ଶକଟ ବକ୍ରେ ଗଳିବ ତୁମ୍ଭ ଶରଗୋଟି ।
ସ୍ତମ୍ଭରେ ଯେ ବାଜିବ ଶୃଙ୍ଗେ ନ ବାଜିବ
ଗୁବାକ ଗୁଞ୍ଜା ମୃଗ ଯେ ନିଶ୍ଚଳରେ ଥିବ ।
ତହିଁପରେ ସୋରିଷ ଯେ ଥିବ ଅଠା ଲାଗି
ସେ ସୋରିଷ ବାଜି ଯିବ ବେନିଫାଳ ଭାଙ୍ଗି
ଫାଳେ ଲାଗିଥିବ ଫାଳେ ଶରମୁନେ ଯିବ
ତେବେ ଲାଖ ବନ୍ଧିବାର ସଂଶୟ ଫିଟିବ ।
ଲାଖକୁ ପିଠି କରିଣ ଦର୍ପଣକୁ ଚାହିଁ
ଏରୂପେ ବିନ୍ଧିଲେ ନିଶ୍ଚେଁ ଦେବି କନ୍ୟା ମୁହିଁ
ଏମୋର ତ୍ରିବାର ସତ୍ୟ ସତ୍ୟ ସତ୍ୟ ବାଣୀ
ଏତେକ କହି ମଞ୍ଚାରେ ବସି ନୃପମଣି ।
ସକଳେ ରହିଲେ ଲାଖ ପରେ ଲୟ ରଖି
ଏ ଅନ୍ତେ ମୁର ବିନ୍ଧିଲା ଚାପେ ଶର ଯୋଖି ।
ଆପଣାର ମଥାପରେ ଧନୁକୁ ଦହିଲା
ଭ୍ରୂଲତା ମଧେ ଓଟାରି ନାରାଚ ଝିଙ୍କିଲା ।
କଟ କଟ ହୋଇ ଗର୍ଜେ ଧନୁହୁଳ ମୁଣ୍ଡ
କମ୍ପିଲା ଶବଦଘାତେ ମେରୁର ତ୍ରିଦଣ୍ଡ ।
ଦେବତାମାନେ ଅଇଲେ ସ୍ୱର୍ଗପୁର ଛାଡ଼ି
ଶୂନ୍ୟରେ ଥାଇ ଦେଖନ୍ତି ମୁର ତଡ଼ବଡ଼ି ।
ପାଦେକ ଲମ୍ବାଇ ପାଦେ ଦେଲା ଆଣ୍ଠୁଭାର
ତ୍ରିବିକ୍ରମ ରୂପ ପ୍ରାୟେ ଦିଶିଲା ଅସୁର ।
ନାରାଚକୁ ତିଆରିଲେ ଭେଦକୁ ସୋରିଷ
ଅଧେ ଲାଗିଥିବ ଅଧେ ଆଣ ଆମ୍ଭ ପାଶ ।
ସଭାରେ ଦେଖି ସରବେ ଆନନ୍ଦ ହୁଅନ୍ତୁ
ନୋହିଲା ଲାଖବୋଲିଣ କେହି ନ ବୋଲନ୍ତୁ
ଏରୂପେ ତିଆରି ହେଲା ଦର୍ପଣରେ ଦୃଷ୍ଟି
ଛଟକେ ଛାଡ଼ିଲା ମହାକାଳ ଶର ଗୋଟି ।
ବିଜୁଳି ଝଟକ ପ୍ରାୟେ ଝଟକିଲା ବାଣ
ଚାହୁଁ ଚାହୁଁ ସଭାଲୋକେ ବୁଜିଲେ ନୟନ ।

ତକ୍ଷଣେ ସେ ଶର ଚଳିଗଲା ଅନ୍ତରାଳ
ଚକ୍ରରେ ଗଳି ସୋରିଷ କଲା ବେନିଫାଳ ।
ଲାଖେ ଅଧେ ରଖି ଅଧେ ଅଇଲାକ ଧରି
ଲେଉଟି ତୂଣେ ପଶିଲା ସ୍ଥାନକୁ ଆବୋରି
ଦେଖିକରି ସାଧୁ ସାଧୁ କଲେ ସୁରଗଣ
ବୋଇଲେ ଧନ୍ୟ ତୋହର ଅଟେ କ୍ଷତ୍ରୀପଣ
ପାଞ୍ଚଲକ୍ଷ ରାଜାମୁଖେ ଲଗାଇଲୁ କାଳି
ଏତେ ବୋଲିଣ ପ୍ରଶଂସା କଲେ ଦେବମିଳି ।
ଦେବଙ୍କ ଶରଧା ଶୁଣି ଉଠିଲା ଅସୁର
ସଭାର ମଧ୍ୟେ ଧଇଲା ଯାଇ କନ୍ୟା ବର ।
ଦେଖିଣ ଲଜ୍ଜା ପାଇଲେ ସମସ୍ତ ରାଜନ
ଯେ ଯାହା ପୁରକୁ ଯିବାପାଇଁ କଲେ ମନ ।
ସନ୍ଥ ରାଜାମାନେ କଲେ ଜୟ ଜୟ ଧ୍ୱନି
ବୋଇଲେ ଏଲାଖ ବିନ୍ଧି ଯିବ କନ୍ୟାଘେନି ।
ବୋଇଲେ ପଣ୍ଡିତ ଋଷି ବିପ୍ରେ ଭଲା ଭଲା
କେତେ ଲାଖ ବିନ୍ଧି ଏହିନାରୀ ରତ୍ନ ନେଲା ।
ଦେଖିଲା ଲୋକେ ବୋଲନ୍ତି ରଖିଲା ଏ ସିଦ୍ଧି
ଏତେ ରାଜାଆସି କେହୁ ନ ପାରିଲେ ବିନ୍ଧି
ଜମ୍ବୁଦ୍ୱୀପୂ ଆସି ଦେଖି ନେଲା କନ୍ୟାଗୋଟି
ଏ ଭୂମିକି ଏହି କଲା ଗହି କଳଙ୍କଟି ।
ସାଧୁ ଏ ବୋଲନ୍ତି ଯୋଗ ଯାହାକୁ ଯା ଥିଲା
ବିଧାତା ଆଣି ତାହାଙ୍କୁ ବଳେ ଭେଟାଇଲା
ମଦନାବତୀ କର୍ମରେ ଅଛି ଯାହା ଆଣି
ସେ କଥା ଆନ କରି ନ ପାରେ ବ୍ରହ୍ମା ପୁଣି
ଏ ରୂପରେ କୁହାକୁହି ହେଲେ ରାଜାମାନେ
ଚଳିଲେ ମନ ମୁରୁଛି ଯେ ଯାହା ଭୁବନେ ।
ଭୂପାଳ କେଶରୀ ରାଜା ହୋଇଲେ ସନ୍ତୋଷ
ବୋଇଲା ଫିଟିଲା ମୋର କନ୍ୟା ବିଭାଦୋଷ
କେତେକାଳରୁ ସାଇତି ରଖିଥିଲି ଘରେ
ପାଞ୍ଚଲକ୍ଷ ରାଜା ଆସିଥିଲେ ସ୍ୱୟମ୍ବରେ ।
ପଞ୍ଚବିଂଶ ଦିନଯାଏ ସହିଲି ଆର୍ଦ୍ଦୋଳି
କେହି ଏଥେ ଲାଖ ବିନ୍ଧି ନ ପାରିଲେ ଚାଳି ।
କେବଣ ବଂଶର ଏହୁ ଅଟେ ରାଜବସି
କୁଳଗୋତ୍ର ବର୍ଣ୍ଣ ମାତ୍ର ନ ଜାଣିଲି କିଛି ।
କି ରୂପେ ବେଦୀରେ କନ୍ୟା କରିବି ପ୍ରଦାନ
ଏଥକୁ ଧରମ ମୋତେ ହୋଇବ ପ୍ରସନ୍ନ ।
ବ୍ୟାସଙ୍କ ପ୍ରମାଦୁଁ ମୋର ଜନ୍ମିଲା କୁମାରୀ
ଅଜାତି ଲୋକ ବରିବ କେହ୍ନେ ବିପ୍ରସ୍ତିରୀ ।
ବ୍ରାହ୍ମଣ କୁଳକୁ ଏହା ହେଲା ଅନାଚାର
ବେଦ ଯେବେ ସତ୍ୟ ତେବେ ମରୁ ଏ ଅସୁର

ବିଧବା ହୋଇଣ ପଛେ ଥାଉ ମୋର ଝିଅ
ଏତେକବୋଲି କେଶରୀ କଲା ମନେ କୋହ
ଶୁଣ ହେ ନାରଦ ହେଲା ମୁରକୁ ସେ ଶାପ
ଏଥିଉତ୍ତାରୁ ମିଳିଲେ ବ୍ୟାସ ମୁନି କହ୍ଣ ।
ଋଷିଙ୍କି ଦେଖିଣ ରାଜା ଶୁତି ପାଦତଳେ
ପାଦ ପଖାଳି ଆସନ ଗୋଟି ଆଣିଦେଲେ ।
ରାଜାର ମାନ ଦେଖିଣ କଲେ ବ୍ୟାସ ନାସ୍ତି
ବୋଇଲେ ଆମ୍ଭେ ଲେଖାରେହେଲୁ ତୁମ୍ଭନାତି
ଆମ୍ଭଙ୍କୁ ତୁମ୍ଭେ ଏବେ ନକର ମାନ୍ୟ ଧର୍ମ
କଲେ କାଳକୁ ନିଶ୍ଚୟ ହେବ ଏ ଅକର୍ମ ।
କେଶରୀ ବୋଇଲେ ତେବେ ଶୁଣ ମୁନିଜ୍ଞାତା
ମୋର ଅଭାଗ୍ୟକୁ ପରା କହିଲି ଏ କଥା ।
ମୁହିଁ ନରରାଜା ତୁମ୍ଭେ ଅଟ ବ୍ରହ୍ମଦେହୀ
ମୋର ମାନ୍ୟ ଦେଖି କିମ୍ପାକର ତୁମ୍ଭେ ନାହିଁ
ବ୍ୟାସ ବୋଇଲେ ହେ ତେବେ ଶୁଣ ନୃପବର
ତୁମ୍ଭ ସୁତାପତି ଅଟେ ବ୍ରହ୍ମାଙ୍କ କୁମର ।
ତେଣୁ ସେବ୍ରହ୍ମା ତୁମ୍ଭର ସମୁଧି ହୁଅନ୍ତି
ଆମ୍ଭେ ତ ସେ ବ୍ରହ୍ମାଙ୍କର ଅଟୁ ପଣନାତି ।
ତୁ ଯେଉଁ ଶାପ ବିହିଲୁ ଜାମାତାକୁ ତୋର
ଶୂଦ୍ର ହୋଇଲେ ଅବଶ୍ୟ ମରନ୍ତା ସତ୍ୱର ।
ଏ ଘେନି ଶ୍ୱଶୁରକୁ ନ କରି ଅମାନନା
ଯେ ଭାରିଯା ବାପ ସେହୁ ପତି ପିତା ସିନା ।
ଶୁଣିଣ କେଶରୀ ରାଜା ହେଲା ଆଚମ୍ବିତ
ବୋଇଲେ ମୁରକେମନ୍ତେ ବ୍ରହ୍ମାଙ୍କର ସୁତ ।
ଏ କଥା ଭୋ ମୁନି ମୋତେ ବୁଝାଇଣ କହ
ତେବେ ସିନା ଫିଟିଯିବ ମୋ ମନୁ ସନ୍ଦେହ
ବ୍ୟାସ ବୋଇଲେ ଅପାର କାଳର ଏକଥା
ଅନାଦି ରମିଲେ ଯେଉଁକାଳେ ଆଦିମାତା ।
ତହିଁରୁ ତିନି ସନ୍ତାନ ହୋଇଲେ ଜନମ
ବ୍ରହ୍ମାବିଷ୍ଣୁ ହରବୋଲି ଦେଲେ ତାଙ୍କ ନାମ
ରଜଗୁଣେ ବ୍ରହ୍ମା ଜାତ ତମଗୁଣେ ହର
ଜନ୍ମିଲେ ସାତ୍ତ୍ୱିକ ଗୁଣ ଘେନି ଦାମୋଦର
ଦିନୁ ଦିନ ତିନିପୁତ୍ରେ ବଳବନ୍ତ ହେଲେ
ଦୁଇ ଭାଇଙ୍କି ଛାଡ଼ି ଶ୍ରୀହରି ଖେଳିଗଲେ ।
ସେଦିନ ପ୍ରଭାତୁ ମାୟେ ରୋଷଶାଳେ ପଶି
ପୂରି ନାଡ଼ି ମନୋହର ସବୁ କଲେ ବସି ।
ଯୋଗାଡ଼ମାନ ସାରିଣ ଗୃହେ ଦେଲେ ଚାହିଁ
ଦେଖିଲେ ଅଛନ୍ତି ହରି ବ୍ରହ୍ମା ବେନିଭାଇ ।
ବିଷ୍ଣୁଙ୍କୁ ନଦେଖି ମାଏ ହୋଇଲେ ବିକଳ
ବୈକୁଣ୍ଠଯାକ ଖୋଜନ୍ତି ହୋଇ ଅସମ୍ଭାଳ ।

ମାୟେ ଖୋଜୁ ଖୋଜୁ ବେଳ ହେଲା ସାତଘଡ଼ି
ଗୃହେ ଥିବାପୁତ୍ରେ ଭୋକେ ଛାଡୁଛନ୍ତି ରଡ଼ି ।
ଆସ୍ଥାନୁ ଉଠି ଚାହାନ୍ତି ଦୁହେଁ ଚଉକତି
ଦେଖିଲେ ଗୃହରେ ମାତା ଗୋବିନ୍ଦ ନାହାନ୍ତି
ମାତାଙ୍କୁ ଖୋଜନ୍ତେ ପୁଣି ଦେଖିଲେ କୁମର
ବ୍ରହ୍ମାବୋଲି ଯେଉଁ ପୁତ୍ର ଉଠି ଧାତିକାରେ ।
ପୁଳାକେତେ ପୁରିବୁ ଯେ ନେଇ ତୁଣ୍ଡେ ଭରି
ଈଶ୍ୱର ମାଗିଲେ ତା'ହା ଦେଖି ବେଳଚାରି ।
କ୍ଷୁଧାର ଆକୁଳେ ବ୍ରହ୍ମା ନ ଶୁଣନ୍ତି ବାଣୀ
ଛଡ଼ାଇ ଧାତା ହସ୍ତରୁ ନେଇ ଶୂଳପାଣି ।
କାନ୍ଦି କାନ୍ଦି ବ୍ରହ୍ମା ହର ଦୁହେଁ କଲେ କଳି
ବୋଇଲେ କାହିଁକି ତୁରେ ଖାଇଲୁ ମୋ ପୁରି
ହର ବୋଇଲେ ମୋହର ଅଟେ ପଞ୍ଚମୁଖ
ମୋତେ ନ ଦେଇ କିମ୍ପା ତୁ କଲୁ ଆଗ ଭକ୍ଷ
ଏହା କହି ଛଡ଼ାଇଣ ଭୁଞ୍ଜନ୍ତେ କପାଳୀ
ତାହା ଦେଖିଣ ବିଧାତା ଉଠି ପରଜ୍ୱଳି ।
ବୋଇଲେ ତୁ ପଞ୍ଚମୁଖ ବୋଲି ଦେଲୁ କହି
ମୁହିଁ ପାଞ୍ଚମୁଖ କିମ୍ପା ନ ପାରିବି ହୋଇ ।
ଈଶ୍ୱର ବୋଇଲେ ତେବେ ଦେଖାଅତୋ ମୁଣ୍ଡ
ମୁଣ୍ଡ ନ ଥାଇ କିମ୍ପାଇଁ ହୋଇ ସରିତୁଣ୍ଡ ।
ବ୍ରହ୍ମା ବୋଇଲେ ତେବେ ତୁ ହେଲୁବଡ଼ଲୋକ
ବୁଝିଲେ ଏକା ବାପରୁ ତିନି ଭାଇ ଯାକ ।
ମାନ୍ୟକୁ ବଡ଼ ସିନା ତୁ ଅଟୁ ତ୍ରିପୁରାରି
ପ୍ରସଙ୍ଗ ବୁଝିଲେ ତିନି ହେବା ଆମ୍ଭେ ସରି ।
ପଞ୍ଚମୁଖ ହୋଇଲେ କି ପାରିବୁ ତୁ ମୋତେ
ବିଷ୍ଣୁ ଘେନି କାହାକୁ ମୁଁ ନ ମାନେ ଜଗତେ
ତାଙ୍କ ପ୍ରସାଦରୁ ମୁହିଁ ପାରେ ସବୁ ହୋଇ
ପାଞ୍ଚଗୋଟି ମୁଖ ହେବି ଦେଖ କିନା ତୁହି ।
ଏତେ ବୋଲି ବିଧାତା କ୍ରୋଧରେ ପରଜ୍ୱଳି
ତତକ୍ଷଣେ ଜାତକଲେ ଏକଇ ମଉଳି ।
ହରଙ୍କୁ ବୋଇଲେ ତେବେ ଦେଖ ଭଲକରି
ତୁମ୍ଭ ପାଞ୍ଚମୁଖକୁ ମୋ ପାଞ୍ଚମୁଖସରି ।
ଆହୁରି ମୁଖେକ ମଧ୍ୟ ହୁଅନ୍ତି ମୁଁ ପୁଣ
ତହିଁକି ବୋଲିଛି ମୁହିଁ ପାଞ୍ଚଟି ବଦନ ।
ଅନ୍ୟ ମୁଖ ଜାତ ଦେଖି ହରି ତୁନି ହୋଇ
ପାଞ୍ଚିଲେ ଏ କଥା କେବେ ଉଚିତ ନୁହଇ ।
ସାନ ବଡ଼ ହୋଇଲେଟି ହେଉ ସମସରି
ଆଉ କି ଚଳିବ ଜଗତରେ ମାନ୍ୟ ଧରି ।
ମୁହିଁ ସିନା ଜନ୍ମକାଳୁ ଅଟେ ପଞ୍ଚମୁଖ
ଚତୁର୍ମୁଖ ଲୋକ ଆସି ସରିହେଲା ଦେଖ ।
ଏ କଥା ନିବାଡ଼ ଯେବେ ନ କରିବା ଆମ୍ଭେ
ଏରୂପେ ସଂସାରେ ସିନା ସମସ୍ତେ ହୋଇବେ
ଏତେ ବୋଲିଣ ଈଶ୍ୱର ହୋଇଲେ ପ୍ରଚଣ୍ଡ
ଅଗ୍ନି ଝଲକିଲା ପ୍ରାୟ କୁପିଲେ ବ୍ରହ୍ମାଣ୍ଡ ।
ବ୍ରହ୍ମାର କୂଟ କଥା ସେ ନ ପାରିଲେ ସହି
ଜାତକଲା ମୁଣ୍ଡ ଛେଦି ପକାଇଲେ ସେହି ।
ମୁଣ୍ଡ ଛିଡ଼ନ୍ତେ ପୁରୁଷେ ହେଲେ ଅବତାର
ଦିଅ ବୋଲି ବ୍ରହ୍ମାଙ୍କୁ ସେ ମାଗିଲେ ଆଧାର
ତାହାର ଆକୁଳ ଧାତା ନ ପାରିଲା ସହି
ଦେଖିଲେତ ହରି ଆଗେ ଛନ୍ତି ଉଭାହୋଇ ।
ବିଧାତା ପୁଣି କ୍ରୋଧକୁ ସହି ନ ପାରିଲେ
ହରଙ୍କୁ ଖାଅ ବୋଲିଣ କୋପେ ଆଜ୍ଞାଦେଲେ
ସେ ବ୍ରହ୍ମ ରାକ୍ଷସ ଧାଇଁଗଲା ତଡ଼ବଡ଼ି
ଈଶ୍ୱର ଉପରେ ଧାଇଁଯାଇ ମାଡ଼ିପଡ଼ି ।
ଦେଖିକରି ମହାଦେବ ପଳାଇଲେ ଛାଡ଼ି
ଗୋବିନ୍ଦ ରଖ ବୋଲିଣ ଦେଲେ ଘୋରରଡ଼ି
ହର ଭୟ ଦେଖି ପ୍ରଭୁ ଅଇଲେକ ଚଳି
ସେହି ବ୍ରହ୍ମରାକ୍ଷସକୁ ରଖିଲେ ଓଗାଳି ।
ଅଚିନ୍ତା ହୋଇଣ ହର ରହନ୍ତେ ଆନନ୍ଦେ
ରାକ୍ଷସ ବୋଇଲା ତେବେ ଆସହେ ଗୋବିନ୍ଦେ
ଆହାର ମାଗିବା ଜାଣି ପ୍ରଭୁ ହୃଷୀକେଶ
ବୋଇଲେ ସମର କିରେ ମାଗୁଛୁ ରାକ୍ଷସ ।
ଦିନାକେତେ ନିଶ୍ଚିନ୍ତରେ ଥାଅ ତୁହି ରହି
ଯେତେବେଳେ ମଞ୍ଚେ ଜନ୍ମହେବୁ ଆମ୍ଭେଯାଇ
ସେତେବେଳେ ତୋର ମୋର ଲାଗିବ ସମର
ତାହା ଶୁଣିଣ ଲେଉଟି ପୁଛିଲା ଅସୁର ।
ବୋଇଲା ମୋତେ ରଖିଲ ଯେବେ ହୃଷୀକେଶ
କେଉଁ ସ୍ଥାନରେ ରହିବି ଦିଅମୋତେ ବାସ ।
ବିଷ୍ଣୁ ବୋଇଲେ ତୁ ଜନ୍ମହେଲୁ କେଉଁଠାରେ
ତହିଁ ଯାଇ ରହ ଏବେ ଆମ୍ଭର ଆଜ୍ଞାରେ ।
ରାକ୍ଷସ ବୋଇଲା ତେବେ ଶୁଣ ଦାମୋଦର
କଳିକାଳେ ବ୍ରହ୍ମାମୁଣ୍ଡ ଛେଦିଲେ ଅସୁର ।
ସେ ମୁଣ୍ଡ ମୋଡ଼ନ୍ତେ ମୁହିଁ ହୋଇଲି ଉତ୍ପତ୍ତି
କ୍ଷୁଧା ବିକଳେ ମୁଁ ଭକ୍ଷ ମାଗୁ ଦେବପତି ।
ସେ ମୋତେ ସଦାଶିବଙ୍କୁ ଦେଲେକ ଦେଖାଇ
ବୋଇଲେ ତୋଷ ହୁଅରେ ଏହାକୁ ତୁ ଖାଇ
ଅବଶ୍ୟ ତାହାଙ୍କୁ ହେଲେ ଖାଆନ୍ତି ମୁଁ ମୋଡ଼ି
ଆପଣଙ୍କ ସକାଶରୁ ଦେଲି ମାତ୍ର ଛାଡ଼ି ।
ଛାଡ଼ିଲି ଯେବେ ରହିବା ଜାଗା ମୋତେ ଦିଅ
ନାରାୟଣ ବୋଇଲେ ତୁ ଏଥୁଁ ତେବେ ଯାଅ

ମନୁ ବଂଶରେ ଶାକଲ୍ୟ ଦ୍ୱୀପେ ଯାଇଁ ଜନ୍ମ
ପ୍ରଚଣ୍ଡ ଚଣ୍ଡ ବୋଲିଣ ବହି ଦୁଇ ନାମ ।
ତହିଁ ଉତ୍ତାରୁ ଶମନପୁରେ ପୁଣି ଯାଅ
ଯମକୁ ବର ମାଗିଣ ଯମ ହୋଇ ରହ ।
ତେରଦିନ ଯମ ହୋଇ ବୈକୁଣ୍ଠକୁ ଆସ
ଚଣ୍ଡ ପୁତ୍ର ହୋଇ ମୋର ସିଂହଦ୍ୱାରେ ବସ
ଶାଢ଼ୀ ବାନ୍ଧି ବହି ଜୟ ବିଜୟ ହେ ନାମ
ବ୍ରହ୍ମାର ବୀର୍ଯ୍ୟେ ରୁକ୍ମଣୀ ହୁଅରେ ଜନମ ।
ବ୍ରହ୍ମା ମୁଣ୍ଡ ମୋଡ଼ନ୍ତେ ତୁ ହେଲୁ ଏବେଜାତ
ତେବେ ବ୍ରହ୍ମାଠାରୁ ଜନ୍ମି ହୁଅ ମୁରଦୈତ୍ୟ
ଈଶ୍ୱରଙ୍କ ବରପାଇ ହୁଅ ମହାକ୍ଷତ୍ରୀ
ଆମ୍ଭେ ମାରିବୁଟି ତୋତେ ଜନ୍ମିଲେ ଧରିତ୍ରୀ
ଶୁଣି ବ୍ରହ୍ମରାକ୍ଷସ ଯେ ଚଳିଲା ସନ୍ତୋଷେ
କେଶରୀକି ବୁଝାଇଣ କହନ୍ତି ସେ ବ୍ୟାସେ ।
ଏରୂପେ ଜାଣନ୍ତି ମୁର ବ୍ରହ୍ମାଙ୍କର ପୁଅ
ବୁଝିଲେ ଆମ୍ଭର ହେଲା ସେହି ପିତାମହ ।
ତୁହି ସିନା ମନେ ଭ୍ରାନ୍ତି କଲୁ ହେ ନ ଜାଣି
ଧାତା ଖଞ୍ଜିଅଛି ତୋର ଝିଅ ମୁଁରେ ପୁଣି ।
ବୁଝି ଭୂପାଳ କେଶରୀ ହୋଇଲେ ଆନନ୍ଦ
ବ୍ୟାସଙ୍କୁ ନମି ଧଇଲେ ପୁଣି ବେନି ପାଦ ।
ବୋଇଲେ ମୋର ଝିଅକୁ ତୁମ୍ଭେ ଥାଇକରି
ବିଭା କରି ଦେଇଯାଅ ଦେଖନ୍ତୁ ତ୍ରିପୁରୀ ।
ନୋହିଲେ ମୋହର ଜାଣ ନ ଯାଇ ସଂଶୟ
ଶୁଣି ହେଉ ବୋଲି ବୋଲେ ପରାଶର ପୁଅ ।
ନାରଦ ବୋଇଲେ ତେବେ ଶୁଣ ବେଦପତି
କେଶରୀ ମାନ୍ୟକୁ ବ୍ୟାସ କରୁଥିଲେ ନାସ୍ତି ।
ଲେଉଟି କିମ୍ପାଇ ରାଜା କଲା ମାନ୍ୟ ଧର୍ମ
ଏ କଥା ଭ୍ରାନ୍ତି ଲାଗିଲା ମୋତେ ମହାତମ ।
ବିହି ବୋଇଲେ ତୁ ଶୁଣ କହିବା ମହିମା
ବୁଝିଲେ ଋଷି ଅଟନ୍ତି ଜାଣ ଦ୍ୱିତୀ ବ୍ରହ୍ମା ।
ନଗର ମଧ୍ୟେ ରାଜା ତ କ୍ଷତ୍ରୀ ଶିରୋମଣି
ସେହି ନ ମାନି କିପରି ରହନ୍ତା ଧରଣୀ ।
ରହିଲା ରାଜାରକନ୍ଧେ ରହନ୍ତା କି ଶିରୀ
ଏଣୁ ସେ କେଶରୀ ରାଜା ମାନ୍ୟକଲେ ଡରି
ସଂସାରେ ଅଟନ୍ତି ଯେତେଲୋକ ମାନ୍ୟଯୋଗ
ତାହା ଶୁଣହେ ନାରଦ କହିବା ତୋ ଆଗ ।
ଋଷିପୁତ୍ର ଗୁରୁପୁତ୍ର ରାଜପୁତ୍ର ଜାଣ
ଗୋମାତା ସନ୍ନ୍ୟାସୀ ଆଦି ଭୂମାତାବ୍ରାହ୍ମଣ ।
ସୁଜନ ବୈଷ୍ଣବ ଆଉ ସାଧୁ ବିଜ୍ଞପ୍ରାଣୀ
ସଂସାରେ ଅଟନ୍ତି ଏତେ ଲୋକ ଶ୍ରେଷ୍ଠପୁଣି ।
କନିଷ୍ଠ ହୋଇଲେ ମଧ ମାନ୍ୟ ଏହି ନର
ଶୁଣ ବାବୁ ନାରଦ କହେ ବେଦବର ।
ଗୁରୁ ବୈଷ୍ଣବ ବୟସ ଏଣୁ ନୋହେଲେଖା
ସମସ୍ତ ଲୋକଙ୍କ ଇଷ୍ଟ ଅଟନ୍ତି ସେ ଏକା ।
ଶୁଣିଣ ନାରଦ ମୁନି ହୋଇଲେ ହରଷ
ବୋଇଲେକ କହ ଏବେ ବିଭାର ସନ୍ଦେଶ ।
ଲାଖ ବିନ୍ଧି ମୁରଦୈତ୍ୟ କନ୍ୟା ଘେନିଗଲା
କି ରୂପେ କେଶରୀ ରାଜା ବିଭା ତାକୁ କଲା ।
ସେ କଥାଗୋଟି ଆଗ କହିବା ମୋତେ ହେଉ
ଶୁଣ ଆଜ୍ଞାବୋଲି ବୋଇଲେକ ଅଷ୍ଟବାହୁ ।
କହନ୍ତି ନୃସିଂହଗ୍ରନ୍ଥ ପଢ଼ି କରି ସଭା
ଶୁଣ ହେ ନାରଦ ମଦନାବତୀର ଯେ ବିଭା ।
ଲାଖ ବିନ୍ଧି ମୁରଦୈତ୍ୟ କନ୍ୟା ନ୍ୟନ୍ତେ ଧରି
ବ୍ୟାସ ବଚନେ ବରଣ କଲେକ କେଶରୀ ।
ବିଭା ଉତ୍ସବ ମଙ୍ଗଳ ଯେତେ ବିଧିମାନ
କେଶରୀ ବୋଲେ ସକଳ ହୋଇଲା ନିର୍ମାଣ
ମଙ୍ଗଳ ମହୁରୀ ବାଜେ ଶଙ୍ଖ ଭେରୀ ବୀଣା
ପ୍ରୋହିତ ହୋଇ ବରିଲେ ବ୍ୟାସ ବରକନ୍ୟା
ପୁଣ୍ୟାହବାଚନ ବାକ୍ୟ ଆଦ୍ୟେ ଉଚ୍ଚାରିଲେ
କନ୍ୟା ପିତାକୁ ବସାଇ ବର ପୂଜାକଲେ ।
ଗଣପତିଙ୍କି ପୂଜିଣ ବରପାଦ ଧୋଇ
ଯଜ୍ଞୋପବୀତକୁ ଦେଲେ ଗନ୍ଧପୁଷ୍ପ ଦେଇ ।
ବସ୍ତ୍ର ଅଳଙ୍କାର ଆଣି କଲେ ଆଭରଣ
ଦେଶକାଳ ମହାବାକ୍ୟ ଉଚ୍ଚାରିଲେ ପୁଣ ।
ଗନ୍ଧାଧିବାସ ବୈଶାଳା ପୋତିସାରି କରି
ପଞ୍ଚବ୍ରୀହି ପକାଇଲେ ନାଗ ନାମ ଧରି ।
ଦ୍ୱିଜମାନେ ମନ୍ତ୍ର ପଢ଼ି ସପ୍ତମନ୍ତ୍ର ଗ୍ରନ୍ଥି
ନାନ୍ଦିମୁଖୀ ଶ୍ରାଦ୍ଧସାରି ବସୁଧାରା ଦ୍ୟନ୍ତି
ଏଥିଉତ୍ତାରେ କନ୍ୟାକୁ ନେଲେ ନବରକୁ
ଲବଣ ଚଉଁରୀ ଦେଲେ ବର ଉପରକୁ ।
ଆଚମନ କରାଇ ଯେ ବିଷ୍ଟୁ ଆଗ ବାଢ଼ି
ମଧୁପର୍କ ଭୁଞ୍ଜାଇଲେ ବେଦବାକ୍ୟ ପଢ଼ି ।
ବରମୁଖ ଚାହିଁ ଗଲେ ସକଳ ଯୁବତୀ
ହୁଳହୁଳି ନାଦେ ଗୀତ ସୁସ୍ୱରେ ଗାବନ୍ତି ।
ତହିଁଉତ୍ତାରୁ ପାଲଟା କନ୍ୟା ପିନ୍ଧାଇଲେ
ବରର ଯଜ୍ଞୋପବୀତ କନ୍ୟାକନ୍ଧେ ଦେଲେ ।
ଲଗ୍ନ ବିଶୁଦ୍ଧର ଋଷି ଖୋଜି ଅନୁକୂଳ
କଟମସିଣା ଗୋଟିକ ଆଣି ବେଦୀମୂଳ ।
ସେ କଟକେ ବସିଲେକ ବରକନ୍ୟା ବେନି
କେଶରୀ ରାଜାକୁ ଗୋତ୍ର ପଚାରିଲେ ମୁନି

କେଶରୀ ରାଜା ବୋଇଲେ ଆମ୍ଭେ ସୂର୍ଯ୍ୟବଂଶୀ
ତେଣୁସେ ମରାଳଗୋତ୍ର ଅଟଇ ହେ ଋଷି ।
ମୁରକୁ ପୁଣି ଗୋତ୍ର ଯେ ପଚାରନ୍ତେ ବ୍ୟାସେ
ମୁର ବୋଲେ ଆମ୍ଭଗୋତ୍ର ତୁମ୍ଭଙ୍କୁ ତ ଆସେ
ଆମ୍ଭେ ତ ବୋଲାଉ ପୁଣ ବ୍ରହ୍ମାଙ୍କର ସୁତ
ସେ ବ୍ରହ୍ମା ତ ଶୁକ୍ଳାମ୍ବର ବିଷ୍ଣୁ ତହୁଁ ଜାତ
ତେଣୁକରି ଆମ୍ଭଗୋତ୍ର ଅଟେ ଶୁକ୍ଳାମ୍ବର
ଶୁଣିକରି ହସନ୍ତି ସେ ବ୍ୟାସ କରଙ୍କର ।
ମୁରକୁ ପ୍ରଶଂସା କରି ଗୋତ୍ର ଉଚ୍ଚାରନ୍ତି
ବରକନ୍ୟା କର ଆଣି ବାନ୍ଧି କୁଶଗ୍ରନ୍ଥି ।
ପାଇଲେ ବାରତା ବ୍ରହ୍ମା ଏଥୁଅନନ୍ତରେ
ମୁରଦୈତ୍ୟ ବିଭାହେଲେ ଶାଲ୍ମଳୀ ଦ୍ୱୀପରେ
ସଙ୍ଗତରେ ଋଷିଗଣ ଘେନି ଋଷିବାଳ
କେଶରୀ ପୁରରେ ଆସି ମିଳିଲେ ସକଳ ।
ନାରଦ ଯେ ବିଶ୍ୱାମିତ୍ର ଅଗସ୍ତି ବାଲ୍ମିକ
ଲୋମଶ ଅଙ୍ଗିରା ପରାଶର ବିଭାଣ୍ଡକ ।
ବଶିଷ୍ଠ ଭୃଗୁ ପୁଲହ ମୁନି ଶତଭଙ୍ଗ
ରୋମାଞ୍ଚ ସେ ଅଷ୍ଟବକ୍ର ଅତ୍ରି ଋଷ୍ୟଶୃଙ୍ଗ ।
ସନକ ସନନ୍ଦ ସନାତନ ସମ୍ବର୍ତ୍ତକ
କପିଳ କଣ୍ୱ ଗୌତମ ଋଷି ଦତ୍ତାତ୍ରିକ ।
କଶ୍ୟପ ମରୀଚ କାତ୍ୟାୟନ ମହାଋଷି
ମିଳିଲେ ମୁରର ବିଭାସ୍ଥାନେ ସର୍ବେ ଆସି ।
କନକ ବେଦୀ ଉପରେ ବ୍ରହ୍ମା ବିଜେକଲେ
ବେଦଗାୟନ କରନ୍ତି କେହି ଋଷି ବେଳେ ।
ଦେଖିଣ କେଶରୀ ରାଜା ଉଠିଲେ ଆନନ୍ଦେ
ଦଣ୍ଡବତ କଲେ ଯାକ ପିତାଙ୍କର ପାଦେ ।
ସକଳ ଋଷିଙ୍କ ପାଦେ ପ୍ରଣାମ ଯେ କଲେ
ବସିବା ନିମନ୍ତେ ଆଣି ଆସନ ସେ ଦେଲେ ।
ତହିଁ ଉତ୍ତାରୁ ସେ ରାଜା ଯୋଡ଼ି ବେନିକର
ବୋଇଲେ ଭାଗ୍ୟେ ମିଳିଲେ ଆସି ବେଦବର
ଦୁହିତାର ପୁଣ୍ୟ ମୋର ବିକଶିଲା ଆସି
ବିଭା ଉତ୍ସବେ ମିଳିଲେ ଆସି ସର୍ବଋଷି ।
ଏମନ୍ତ ବୋଲିଣ ସ୍ତୁତି କଲେ ମହାରାଜା
ବ୍ରହ୍ମା ବୋଇଲେ କନ୍ୟାକୁ ଏବେ ସମର୍ପଯା ।
ପୂର୍ବକାଳୁ କେଡ଼େ ଭାଗ୍ୟ ଥିଲୁ ତୁହି କରି
ଆମ୍ଭଙ୍କୁ ପାଇଲେ ବନ୍ଧୁପଣେ ଦଣ୍ଡଧାରୀ ।
ତୋ ଝିଅର ଭାଗ୍ୟ କହିଲେ ତ ନ ସରଇ
ଉତ୍ତମ ବର ପାଇଲା ଈଶ୍ୱରଙ୍କୁ ଧ୍ୟାୟି ।
ଏମନ୍ତ ବୋଲି ବିଧାତା ପ୍ରଶଂସା କରନ୍ତି
ତହିଁ ଉତ୍ତାରୁ ନାରଦ ଶୁଣ ବିଭାରୀତି ।

ବରକନ୍ୟାଙ୍କୁ ବସାଇ ବେଦୀର ଉପର
ହସ୍ତଗ୍ରନ୍ଥି କରିଲେ ଯେ ଦୁହିଁଙ୍କର କର ।
ସନ୍ତୋଷରେ ମହାରାଜା କନ୍ୟା ସମର୍ପିଲେ
ଲକ୍ଷେଭାର ପାଣିଦ୍ରବ୍ୟ ଯଉତୁକ ଦେଲେ ।
ଲକ୍ଷେ ମୁକ୍ତା ଲକ୍ଷେ ହୀରା ଲକ୍ଷେଦେଲେ ନୀଳ
ଏକଲକ୍ଷ ବଇଦୁର୍ଯ୍ୟ ଲକ୍ଷେକ ପୋହଳ ।
ଅଇବ୍ରତ ଅଶ୍ୱ ଦେଲା ଅଇବ୍ରତ ହସ୍ତୀ
ତିନି ଅଇବ୍ରତ ଦେଲା ମାଣିକ୍ୟାଦି ମୋତି ।
ବେନିହସ୍ତେ ପରିବାରୀ ପାଣି ଦେଲା ଟେକି
କନ୍ୟା ସମର୍ପି ଅଶ୍ରୁରେ ପୂର୍ଣ୍ଣକରି ଆଖି ।
ବିକଳ ହୋଇ ଗୃହକୁ ରାଜା ଉଠିଗଲେ
ତହିଁଉତ୍ତାରେ କୁଶାଣ୍ଡି ବିଧି ବ୍ୟାସ କଲେ ।
ବର କନ୍ୟାଙ୍କ ହସ୍ତରୁ ଫେଡ଼ି କୁଶଗଣ୍ଠି
ସୁବର୍ଣ୍ଣ କଉଡ଼ି ତାଙ୍କୁ ଦେଲେ ଦଶମୁଠି ।
ବ୍ରହ୍ମା ବରଣ ଋତ୍ୱିକ ଆଚାର୍ଯ୍ୟ ବରଣ
ପଞ୍ଚ ଆହୁତି ଦେଇଣ ସାରି ଲାଜାହୋମ ।
ଶିଳାର ଉପରେ ବରକନ୍ୟା ବିଭାକଲେ
ଧ୍ରୁବ ଦର୍ଶନ କରାଇ ହୋମକୁ ସାରିଲେ ।
ଏଥୁ ଅନନ୍ତରେ ଜୁଅ ଖେଳାଇଲେ ଆଣି
ବର କନ୍ୟାଙ୍କୁ ବନ୍ଦାଇ ଘରେ ନେଲେ ପୁଣି
ସୁବର୍ଣ୍ଣ ଥାଳିରେ ଭୁଞ୍ଜାଇଲେ ସରପୁଳି
ରାତ୍ରେ ମଧୁଶଯ୍ୟା କଲେ ଜାଳି ଦୀପାବଳି ।
ବ୍ରହ୍ମାଦି ସହିତେ ଯେତେ ଋଷିଗଣ ଥିଲେ
ବର କନ୍ୟାଙ୍କର ଶିରେ ଆଶୀର୍ବାଦ କଲେ ।
ଋଷିଙ୍କୁ ଘେନି ଯିବାକୁ ବ୍ରହ୍ମା ହେଲେ ସଜ
ମରାଳ ବାହନେ ବସି ଗଲେ କମଳଜ ।
ଭୂପାଳ କେଶରୀ ରାଜା ଅଇଲେ ପାଛୋଟି
ବ୍ରହ୍ମାଙ୍କ ପାଦେ ପ୍ରଣାମ କଲେ କୋଟି କୋଟି
ବିଧାତା ବୋଇଲେ ତୁହୋ କେଡ଼େଭାଗ୍ୟବନ୍ତ
ଆମ୍ଭଙ୍କୁ ପାଇଲୁ ବନ୍ଧୁ ପଣେ ନରନାଥ ।
ଏବେ ତୁ ନିଶ୍ଚିନ୍ତ ହୋଇ ତୋର ରାଜ୍ୟ ପାଳ
ହୁଅ ଏ ଦ୍ୱୀପରେ ତୁମ୍ଭେ ଏକାଙ୍ଗ ଈଶ୍ୱର ।
ଏରୂପେ କହି ରାଜାକୁ ଦେଇଣ ମେଲାଣି
ଯଶୋବନ୍ତୀ ପୁରକୁ ସେ ଗଲେ ଚକ୍ରପାଣି ।
ବ୍ୟାସ ଆଦିକରି ଯେତେ ଥିଲେ ଋଷିଗଣ
ରାଜାକୁ କଲ୍ୟାଣ କରି ଚଳିଲେ ତକ୍ଷଣ ।
ସମସ୍ତଙ୍କୁ ଦଣ୍ଡବତ ହୋଇ ଦଣ୍ଡଧାରୀ
ମେଲାଣି ହୋଇ ପୁରକୁ ଅଇଲେ ବାହାରି ।
ଚଉଠି ସାତମଙ୍ଗଳା କଲେ ପାଦପାଣି
ସାରିଲେ ବିଭା ଉତ୍ସବ ବିଧି ନୃପମଣି ।

ରାଜ୍ୟକୁ ଯିବାକୁ ମୁର ବେଗେ ହେଲା ସଜ
ଚଳିଲେ ପଦାତି ସୈନ୍ୟ ରଥ ଅଶ୍ୱ ଗଜ ।
କନ୍ୟାକୁ କୋଳରେ ଘେନି ବସିଲାକ ମୁର
ପୋଇଲୀ ପରିବାରୀଏ କାନ୍ଦନ୍ତି ଅପାର ।
ମାତା ପିତା ଶୋକ ଯେ କହିଲେ ନ ସରଇ
ପାଛୋଟିଣ ବିକଳେ ସେ ଆସେ ନରସାଇଁ ।
ମୁରକୁ ବିନୟ ହୋଇ କହଇ ବଚନ
ଏ ଦ୍ୱୀପଟି ଅଟେ ବାବୁ ତୁମ୍ଭର ଯେ ଜାଣ ।
ଦୁହିତା ଦୋଷ ମୋହର କରିବ ଯେ କ୍ଷମା
କୁଳକୁ ଚନ୍ଦ୍ରମା ତୁଲ୍ୟ ଅଟେ ମୋରେ ଜେମା
ବାଳକାଳୁ ଏ ଝିଅଟି ପାଳି ନାନା ରଙ୍ଗେ
ଭାଗ୍ୟକୁ ବନ୍ଧୁ ପାଇଲି ଏବେ ତୁମ୍ଭ ସଙ୍ଗେ ।
ସର୍ବଦା ଆମ୍ଭେ ତୁମ୍ଭର ମନେ ଥିବୁ ରହି
ମେଲାଣି ମାଗୁଛି ଏବେ ଦୁହିତାକୁ ଦେଇ ।
କୁମାରୀକୁ ଚାହିଁ ପୁଣି ତିଆରନ୍ତି ରାୟେ
ସତ୍ୟରେ ଥିବୁଟି ମାଗୋ ସ୍ୱାମୀ କରି ଲୟେ
ଏତେ ଦିନଯାଏ ମୋର କନ୍ୟା ହୋଇଥିଲୁ
ସମୟ ହୋଇଲା ଏବେ ଶାଶୁଘର ଗଲୁ ।
ଶାଶୁ ବଚନ ପାଳିବୁ ମାଗୋ ଗୁରୁ ପ୍ରାୟେ
ପତିର ବାକ୍ୟକୁ ଥିବ ଅନୁକ୍ଷଣେ ଲୟେ ।
ସ୍ୱାମୀକୁ ସେବିବୁ ମାଗୋ ବିଷ୍ଣୁରୁ ଅଧିକ
କେତେବେଳେ ଗୁରସ୍ତଙ୍କୁ ନ ଦେବୁ ତ ଡାକ
ପତିକୁ ଗୋ ହିଂସା ନ କରିବୁ କେତେବେଳେ
ଶେଯୁଁ ଉଠି ପାଦଧୂଳି ଘେନିବୁ କପାଳେ ।
ପତିର ଗୋ ଦୁଃଖକାଳେ ନୋହିବୁ ଅଶ୍ରଦ୍ଧା
ସ୍ୱାମୀ ଚିତ୍ତ ମନ ଘେନି ସେବିବୁ ସର୍ବଦା ।
ସତ୍ୟରେ ଥିବୁଟି ମାଗୋ ମିଥ୍ୟା କରି ଦୂର
ପରପୁରୁଷକୁ ଯେବେ ନ ଦେବୁ ଉତ୍ତର ।
ପର ଶିରୀ ଦେଖି କ୍ଷୋଭ ନ କରିବୁ ମନେ
ପର ଛାର ବୁଦ୍ଧି ମାଗୋ ନ ଶୁଣିବୁ କର୍ଣ୍ଣେ ।
ସ୍ୱାମୀର ବାକ୍ୟକୁ ମାଗୋ ନ ଲଙ୍ଘିବୁ ହେଲେ
ଯେମନ୍ତେ କଳଙ୍କଟି ନ ରହେ ଦୁଇକୁଳେ ।
ଏତେ କହି ନୃପତି ଯେ ଦୁହିତାକୁ ଆଣି
ଜାମାତାଙ୍କର କୋଳରେ ସମର୍ପିଲେ ପୁଣି ।
କନ୍ୟାକୁ ପାଇଣ ମୁର ହୋଇଲା ସନ୍ତୋଷ
ଶ୍ୱଶୁରଙ୍କୁ ମାନ୍ୟକରି ଗଲା ନିଜ ଦେଶ ।
ବଜାଇ ଶଙ୍ଖ ମହୁରୀ ଭେରୀ ବୀଣାବାଦ୍ୟ
ସ୍ୱର୍ଗପୁରେ ଶୁଣିକରି କମ୍ପନ୍ତି ବିବୁଧ ।
ଇନ୍ଦ୍ରକୋଳରେ ଯେମନ୍ତେ ଶଚୀ ଶୋଭାପାଇ
ତେସନ ସଞ୍ଜାତେ ମୁର ଜମ୍ବୁଦ୍ୱୀପୁ ଯାଇ ।
ଆପଣା ରାଜ୍ୟେ ମିଳିଲା ଯାଇ ଦୈତ୍ୟପତି
କନକାବତୀ ପୁରରେ ସେ ମଦନାବତୀ ।
ରହିଲା ଖଟିଲେ ପାଶେ ଲକ୍ଷେ ବିଳାସିନୀ
ମଦନାବତୀ ରାଜାର ହେଲା ପାଟରାଣୀ ।
ପୋଇଲୀ ଯେ ପରିବାରୀ ଧାଇ ମୁହସୁଲୀ
ପହଣ୍ଡି ମଣାଇ ନେଲେ ମଣିମା ଯେ ବୋଲି
ବସିଲା ମଦନାବତୀ ପାଟରାଣୀ ହୋଇ
ତାହାର ତଳେ ରହିଲେ ସର୍ବ ମହାଦେଈ ।
ଏହି ବିଧିରେ ମଦନାବତୀ ହେଲା ବିଭା
ବଦୟନ୍ତି ବେଦବ୍ରହ୍ମା ଶୁଣ ଋଷି ଦେବା ।
ଶାଲ୍ମଳୀ ଦ୍ୱୀପକୁ ଜିଣି ଅଇଲା ଯେ ମୁର
ନେଉଟି ଦିଗବିଜୟ କଲାକ ଅସୁର ।
ସେ କଥାକୁ ସାବଧାନେ ଶୁଣ ମନଦେଇ
ଶାରଳା ଆଜ୍ଞାରୁ ଏହା ପାରିବି ବା କହି ।
ଜୟ ଜୟ ଶାରଳା ଗୋ ବିଷ୍ଣୁ ମନୋହାରୀ
ପ୍ରଭୁଙ୍କୁ ମୋହିଲୁ ମାଗୋ ଦେଖାଇ ତୋ ଶିରୀ
ତୋ ନିଜ ଆସନ ମାଗୋ ସିଂହର ପିଠିରେ
ନିମିଷ ମାତ୍ରକେ ଭ୍ରମୁ ତୁ ଚଉଦ ପୁରେ ।
ଶ୍ରୀଗୋବିନ୍ଦ ପୁତ୍ରଙ୍କର ସୀମସ୍ଥାନେ ବସି
ରାସ କରୁଥାଉ ବଜାଇ ତୁ ବୀଣା ବଂଶୀ ।
ନିର୍ବାଣମୁକ୍ତି ତୋହର ସର୍ବଶାସ୍ତ୍ରଗ୍ରାହୀ
ନ ଆସିବା ପଦ ମାଗୋ ମୋତେ ଦେବୁ କହି
କୁଶଦ୍ୱୀପ ଯେ ଭ୍ରମିବ ଏବେ ମୁରଦୈତ୍ୟ
କିରୂପେ ଯିବ କହିବାହେଉ ମୋତେ ସତ୍ୟ
ତୁ ବାକ୍ୟଦେବୀ ମୋହର କଣ୍ଠେ ବିଜେକର
କହିବି ନୃସିଂହ ପୁରାଣ ଯେ ତତ୍ତ୍ୱସାର ।
ଶ୍ରୀଗୋବିନ୍ଦ ଚରଣରେ ପଶିଲି ଶରଣ
ବିପ୍ର ପିତାମ୍ବରକୁ ହେ ରଖ ନାରାୟଣ ।



## ମୁରାସୁରର କୁଶଦ୍ୱୀପ ଯାତ୍ରା ଓ ବିଷ୍ଣୁମାଝୀ ରାଜ୍ୟରେ ପ୍ରବେଶ

ଏଥିଉତ୍ତାରେ ନାରଦ ଶୁଣି ଦିବ୍ୟବାଣୀ
ବାହାରିଲେ ମୁରଦୈତ୍ୟ କୁଶଦ୍ୱୀପ ପୁଣି ।
ଫାଲଗୁନ କୃଷ୍ଣ ସପ୍ତମୀ ତିଥି ଚନ୍ଦ୍ରବାର
ନକ୍ଷତ୍ର ଯେ ଅନୁରାଧା ଅଟେ ସେ ଦିନର ।
ସମ୍ପୂର୍ଣ୍ଣରେ ବିଛାଚନ୍ଦ୍ର ସୁକର୍ମା ଯେ ଯୋଗ
କରଣ ବାଣିଜ୍ୟ ଅଟେ ମିତ୍ର ତାର ଭୋଗ ।
ସେଦିନ କୁଶଦ୍ୱୀପକୁ କଲା ଅନୁକୂଳ
ଚଳିଯାନ୍ତି ଆଗ ପଛେ ମୁର ସୈନ୍ୟବଳ ।

ଭାଙ୍ଗିକରି ନଗ୍ରଦେଶ ଆସନ୍ତେ ଉଜାଡ଼ି
ବାରତା ପାଇ ସରବେ ପଳାଇଲେ ଛାଡ଼ି ।
ଗୋରୁ ବ୍ରାହ୍ମଣ ବାଳକ ସ୍ତିରୀ କଲେ ନାଶ
ଯହିଁ ଯେ ପଡ଼ିଲେ ମୋଡ଼ି ଭକ୍ଷନ୍ତି ରାକ୍ଷସ ।
ମେରୁଗିରି ତୁଲ୍ୟ ଦେଖାଯାନ୍ତି ଦୈତ୍ୟମାନେ
ବ୍ୟାଘ୍ର ବାହନ ଚଢ଼ିଣ ଆସନ୍ତି ଆସନେ ।
ସୌଦାସ କାଙ୍କୋଳା ବୀରବାହୁ ଲୋହାସୁର
ଏହାଙ୍କ ସଙ୍ଗେ ଚାଲନ୍ତି ସକଳ ଅସୁର ।
ମଦିରା ବଶେ ସରବେ ହୋଇ ମତିଭୋଳ
ବଜାନ୍ତି କଡ଼ା ଘୁମୁରା ମର୍ଦ୍ଦଳ କଂସାଳ ।
ଦାଉଣ୍ଡି ନାଗରା ଅଦି ବାଦ୍ୟ ବିକିଘୋଷ
ଢୋଲ ଦମାଲୁ ବାଦ୍ୟରେ କମ୍ପଇ ଆକାଶ
ଏରୂପେ କୁଶଦ୍ୱୀପର ପାଶେ ଦୈତ୍ୟରାୟେ
ହରବ୍ରହ୍ମା ପ୍ରସାଦରୁ ନାହିଁ ତାର ଭୟେ ।
ଯେଣେହେଁ ଗଲେ ସେ ଯାନ୍ତି ଅଶୀଯୁଣ ମାନି
ପାଦରେ କାଷ୍ଠ ପାଷାଣ ପଡ଼ନ୍ତି ଯେ ଝଡ଼ି ।
ଅଲୋକିତ ସୈନ୍ୟବଳ କେ କରିବ ଲେଖା
ନଟ ଭାଟ ଦେଶ ଜିଣି ଚଳେ ଦୈତ୍ୟ ଏକା
ତିହୁଡ଼ି ଗୋମତୀ ମହ୍ଲାର ଯେ ଦେବୀ ଦେଶ
କଙ୍କଣ ବିଚିତ୍ର ମିଶି ପାଟଳୀ କୁଳିଶ ।
ବିଭୂତି ଯେ ବଇଧୃତି ସ୍ମୃତି ଦେଶ କାଶୀ
କଞ୍ଚି ମଞ୍ଜୁଳ କପାଳୀ ଦେଶେ ହେଲେ ଆସି
ଏରୂପେ ରାଜ୍ୟକୁ ଜିଣି ଯାନ୍ତେ ମହାହୃଷ୍ଟେ
ଆଉ ଯେ ଥିଲେ ଭେଟିଲେ ଆସି ମୁରଥାଟେ
ଦନ୍ତରେ ତିରଣ ଧରି ଗଳାରେ କୁଠାରୀ
ରଖ ହେ ଶରଣ ବୋଲି ବୋଲନ୍ତି ଫୁକାରି
କାଷ୍ଠ ପାଷାଣ ଆଦି ଯେ ଦେବତା ସହିତେ
ସବୁନ୍ତି ଧ୍ୱଂସ କରିଣ ଆସନ୍ତି ଦଇତ୍ୟେ ।
ନଗରପୁର ମଣ୍ଡପ ଜଗତୀ ଦେଉଳ
ଯାବତ ଧର୍ମ ନାଶିଣ-ଆସନ୍ତି ସକଳ ।
ଦେବତାମାନେ ଗୋପନ ହେଲେ ଯେଝାଠାଏ
ବ୍ରାହ୍ମଣ ସେ ବୃତ୍ତି ଛାଡ଼ି ପଳାଇଲେ ଭୟେ ।
ଦୈତ୍ୟ ଯେତେ ସୀମା ପଶିଆସୁଛନ୍ତି ବାହି
ତହିଁରେ ସୁର ମନୁଷ୍ୟ ନ ରହିଲେ କେହି ।
ଯେସନେକ ମେରୁ ଭାଜିଗଲା ବାତଘାତେ
ସେହିରୂପେ କୁଶଦ୍ୱୀପ ଭାଙ୍ଗନ୍ତି ଦଇତ୍ୟେ ।
ଯାହାଙ୍କୁ ଅଛନ୍ତି ଶୂନ୍ୟେ ଦିଗପାଳ ଡରି
ମାନବ ମାତ୍ର ପୁଣ କେ ତହୁଁ ବଞ୍ଚିପାରି ।
ଏରୂପେ ଆସନ୍ତେ ଦୈତ୍ୟ କୁଶଦ୍ୱୀପ ଭାଜି
ସେ ଦ୍ୱୀପର ଅଧିପତି ଅଟେ ବିଷ୍ଣୁ ମାଝି ।
ସବୁ ରାଜା ଉପରେ ସେ ଅଟେ ମହାରାଜା
ତେଣୁକରି ସର୍ବେ ତାଙ୍କୁ କରୁଥାନ୍ତି ପୂଜା ।
ସେ ରାଜାର ଆଜ୍ଞାପାଳି ସର୍ବ ରାଜା ଆସି
ମଣି ଗୁଛିବାକୁ ସବୁ ମଧ୍ୟେ ଛନ୍ତି ବସି ।
ଶୁଣ ସୁଜ୍ଞଜନେ ଏଥୁଅନ୍ତେ ଆନ ରସ
ଶାରଳା ଆଜ୍ଞାରେ କହେ ପୀତାମ୍ବର ଦାଶ ।



## ସୂର୍ଯ୍ୟାବର୍ତ୍ତକ ମଣି ବୃତ୍ତାନ୍ତ

ଏମନ୍ତ କଥା ଶୁଣିଣ ପୁଚ୍ଛନ୍ତି ନାରଦ
ବୋଇଲେ ଶୁଣିବା ପିତା କହ ମଣି ଭେଦ
କେମନ୍ତେ ସେହି ମଣିର ଅଟେ ଜ୍ୟୋତିର୍ବର୍ଣ୍ଣ
ବିଷ୍ଣୁ ମାଝିକି ମିଳିଲା କେହ୍ନେ ଏଡ଼େ ରତ୍ନ
ଏ କଥା ଶୁଣିମା ଆଗ କହ ଭଲକରି
କିରୂପେ ମଣି ଗୁଛିଲେ ପୁଣି ଦଣ୍ଡଧାରୀ ।
ନାରଦଙ୍କ ଏ ବଚନେ ହସି ପଦ୍ମଯୋନି
ବୋଇଲେ ଶୁଣ କହିବା ଆହେ ସୁରମୁନି ।
କଉସ୍ତୁଭ ସ୍ୟମନ୍ତକ ଯେ ସୂର୍ଯ୍ୟାବର୍ତ୍ତକ
ଏ ତିନି ମଣି ବ୍ରହ୍ମାଣ୍ଡେ ଆଗ କରି ଲେଖ ।
ଏ ତିନି ମଣିର ପୁଣି କଉସ୍ତୁଭ ମଣି
ଅନବରତେ ଲମ୍ବଇ ହରି ହୃଦେ ପୁରି ।
ଲକ୍ଷ୍ମୀ ନାରାୟଣଙ୍କର କ୍ରୀଡ଼ାରସ ମଧ୍ୟେ
ବିଷ୍ଣୁ ହୃଦେ ଲମ୍ବି ଲାଗିଥାଏ ଲକ୍ଷ୍ମୀହୃଦେ ।
ସେ ମଣି ପ୍ରାୟେ ସଂସାରେ ନାହିଁ ଭକ୍ତି ଶ୍ରେଷ୍ଠ
ନିରନ୍ତରେ ଲାଗିଥାଏ ଗୋବିନ୍ଦର କଣ୍ଠ ।
ଲକ୍ଷ୍ମୀଙ୍କର ପ୍ରୀତିତୁଲେ ଲକ୍ଷ୍ମୀ ହୃଦ ମଧ୍ୟେ
ଆବର କହିବା ମଣି କଥା ଶୁଣ ଏବେ ।
ସ୍ୟମନ୍ତକ ମଣିଗୋଟି ନେବ ଶକ୍ରାଜିତ
ବାପର ସେବା ମନାଇଁ ସେବିବ ଆଦିତ୍ୟ ।
ସେ ମଣିର ଯଶ ଲାଭ କରିବେ ଗୋବିନ୍ଦ
ଅଷ୍ଟପାଟ ବଂଶୀଙ୍କର ମିଶାଇବେ ହୃଦ ।
କାମଦେବ ଅନିରୁଦ୍ଧ କୃଷ୍ଣ ଶଙ୍କର୍ଷଣ
ଚତୁର୍ଦ୍ଧା ମୂରତି ଧରି ଦେବ ନାରାୟଣ ।
ଏବେ ଶୁଣ ସୂର୍ଯ୍ୟାବର୍ତ୍ତ ମଣି କଥା ଯେତେ
ବିଷ୍ଣୁ ମାଝି ମହାରାଜା ଲଭିଲେ ଯେମନ୍ତେ ।
ସହସ୍ର ବରଷଯାଏ ସୂର୍ଯ୍ୟଙ୍କୁ ସେବିଲେ
ସେସୂର୍ଯ୍ୟ ସୂର୍ଯ୍ୟାବର୍ତ୍ତକ ମଣି ତାଙ୍କୁଦେଲେ
ବୋଇଲେ ମିଳିବ ମଣି ଲାଗି ତୋର ରତ୍ନ
କ୍ଷୁଧା ତୃଷାଲାଗି ମଧ ନ କରିବୁ ଯତ୍ନ ।
ଯୁବା ଭାବେ ଥିବୁ ନୋହିବୁ ତୁ ବୃଦ୍ଧଦେହୀ
ଦିନକେ ରମିବୁ ମନ କଲେ ଲକ୍ଷେ ମାଇ ।

ଏ ମଣିର ଲାଗି ହେବୁ ସଂସାରେ ଅଜେୟ
ଦିଶିବ ନିଶି ଦିବସେ ତୋତେ ଜ୍ୟୋତିପ୍ରାୟେ
ଯେତେକାଳ ଭଣ୍ଡାରେ ଏ ମଣି ଥିବୁ ରଖି
ତେତେକାଳଯାଏ ମୃତ୍ୟୁ ନାହିଁ ତୋତେଲେଖି
ଏକମାତ୍ର କଥାଟିଏ ଆଜି ଏତେ ସନ୍ଧି
ଯେ ଜନ ମଣି ଗୁଛିବ ପାଟରଜ୍ଜୁ ଛନ୍ଦି ।
ଏ ମଣିର ଦୁଇ ରନ୍ଧ୍ର ମଧ୍ୟେ ଅଷ୍ଟବାଙ୍କ
ଏହାକୁ ସୂତ୍ରରେ ଗୁଛି ପାରିବ ଯେ ଲୋକ
ତାହାର ହସ୍ତରେ ମୃତ୍ୟୁ ଅଛି ତୋର ଜାଣ
ଏତେ ବୋଲି କହିଲେ ଶ୍ରୀ ରବିନାରାୟଣ ।
ବୋଇଲା ଆଉଲୋକ ନପାରେ ତୋତେମାରି
ଏ କଥା ନିଶ୍ଚୟ ତୋତେ କହିଲୁ ବିସ୍ତାରି ।
ମଣିଗୁନ୍ଥା ଲୋକ ଯେବେ ପାରିବୁ ତୁ ବୁଝି
ତେବେ ତୁ ଅମର ହେବୁ ଆରେ ବିଷ୍ଣୁ ମାଝି
ଗଗନେ ଚଳିଲେ ଏତେ କହି ଦିନକର
ମଣିପାଇ ବିଷ୍ଣୁ ମାଝି ଗଲା ନିଜପୁର ।
ବେଲାଳ ଦେଶ ବୋଲିଣ ଅଟେ ତାର ଭୂମି
ସେ ଦ୍ୱୀପରେ ଆଠଲକ୍ଷ ଛନ୍ତି ରାଜା ସ୍ୱାମୀ ।
ସମସ୍ତଙ୍କୁ ବିଷ୍ଣୁମାଝି ଆଣିଲେ ଡକାଇ
ମଣିର ପରୀକ୍ଷା ଗୋଟି ବୁଝିବାର ପାଇଁ ।
ଆଦିତ୍ୟ ବଚନ ସେହୁ ଶିରୋଧାର୍ଯ୍ୟ କରି
ରାଜାମାନଙ୍କୁ ସେ ଘେନି ବସେ ସଭାକରି ।
ମନରେ ପାଞ୍ଚିଲା ମୁଁ ଏ ଦ୍ୱୀପ ଅଧିପତି
ଅଟନ୍ତି ସମସ୍ତ ରାଜା ମୋର ବଶବର୍ତ୍ତୀ ।
ଏଥି ଅବା ମଣି ଗୁଛିପାରେ କେଉଁ ରାୟେ
ଯେ ଅବା ମଣି ଗୁଛିବ ମାରିବ ନିଶ୍ଚୟେ ।
ଏ କଥା ପ୍ରକାଶ କରି ନ କହିବ କାହିଁ
ଜାଣିଲେ ତ ମଣିଗୁନ୍ଥି ନ ପାରିବେ କେହି ।
ସଙ୍ଗରେ ବସିଲେ ଏତେ ପାଞ୍ଚି ମହାରାଜା
ସମସ୍ତଙ୍କୁ କହିଲେକ କରି ପାଦ ପୂଜା ।
ବୋଇଲେ ତୁମ୍ଭଙ୍କୁ ମୁହିଁ ଲୋଡ଼େ ଯହିଁପାଇଁ
ସେ କଥା କହିବି ଶୁଣ ସାବଧାନ ହୋଇ ।
ସହସ୍ର ବର୍ଷ ମୁଁ ସେବାକଲି ଛାୟାକାନ୍ତ
ମଣି ଗୋଟାଏକ ସେହୁ ଦେଲେ ମୋର ହସ୍ତ
ଦେବତାଙ୍କୁ ଦୁର୍ଲ୍ଲଭ ହେ ସେ ମଣିର ପ୍ରଭା
ବୃଦ୍ଧ କଣ୍ଠେ ଦେଲେ ସେହି ହେବ ନବଯୁବା
ସୂର୍ଯ୍ୟଠାରୁ ଶତେଗୁଣ ଦିଶେ ମଣି ତୋରା
ସେ ଥିବାଠାରେ ରଜନୀ ଦିଶେ ଦିନ ପରା ।
ବହୁଅଛି ସୁଧା ଢୋକିଲେ ତ ଯିବ କ୍ଷୁଧା
ଦେହେ ଭୂଷଣହେଲେ ନଲାଗେ ରୋଗବାଧା

ଏକମାତ୍ର କଥା ଗୋଟି ଅଛି ଜାଣ ତହିଁ
ମଣିର ଗର୍ଭରେ ଅଷ୍ଟବାଙ୍କ ପ୍ରକାଶଇ ।
ବାଙ୍କରେ ଗୋଟିଏ ରନ୍ଧ୍ର ଫୁଟିଅଛି ଜାଣ
ଗୁଛିବ ଯେ ଅଷ୍ଟବାଙ୍କ ଜିଣି ମଣି ପୁଣ ।
ବଡ଼ଜଣେ ବୋଲିକରି ଜାଣିବି ମୁଁ ତାକୁ
ସେ ମଣି ଘେନିଣ ସେହୁ ଯିବ ତା ପୁରକୁ ।
ଏହି ମୋର ସତ୍ୟ ସତ୍ୟ ବହେ ଦୃଢ଼ବାଣୀ
ରାଜା ବୋଇଲେ ଦେଖିବା ତେବେ ଆଣମଣି
ଏମନ୍ତ ଶୁଣି ରଖିଛ ଗୃହେ କିମ୍ପା ଆଉ
ଶୀଘ୍ର ଆଣ ମଣି ତେବେ ସଭା ଶୋଭାପାଉ
ଏହା ଶୁଣି ବିଷ୍ଣୁ ମାଝି ଆଣେ ସେହି ମଣି
ଦଶଦିଗ ଜ୍ୟୋତିର୍ମୟ ଦିଶିଲାକ ପୁଣି ।
ମଣିକୁ ଘୋଡ଼ାଇଅଛି ସସ୍ତ୍ରପୁର ପାଟ
ଫୁଟି ଦିଶୁଅଛି ମଣି ହୋଇ ଝଟ ଝଟ ।
ଫେଡ଼ିଣ ଚାହାଁନ୍ତେ ନେତ୍ରୁ ଇହେ ଅଶ୍ରୁଜଳ
ରଜନୀ ଦିଶି ଦିନ ପରାୟେ ଉଜ୍ଜ୍ୱଳ ।
ହଜିଲା ଦୀପ ଦିହୁଡ଼ି ହୁଳା ତାର ତେଜେ
ଚାହିଁଣ ଅଛନ୍ତି ଏକନେତ୍ରେ ସର୍ବରାଜେ ।
ଧନ୍ୟମଣି ବୋଲି ପରଶଂସା କଲେ ସର୍ବେ
ଏ ମଣି ଗୁଛିବ ଯାର ଭାଗ୍ୟଥିବ ପୂର୍ବେ ।
ଯାହାକୁ ଯୋଗଥିବ ଯେ ନେବ ଏହୁ ମଣି
ଏପରି ବିଚାର କରି ପାଞ୍ଚିଲା ନୃପମଣି ।
ତହିଁ ଉତ୍ତାରୁ ସାରିଲେ ରାୟେ ନିତ୍ୟକର୍ମ
ଯେ ଯାହାର ରାଜନୀତି କଲେ ଦେବାର୍ଚ୍ଚନ
ବସିଲେ ମଣିକି ଗୁଛିବାକୁ ସଭାକରି
ଏକ ହାତରୁ ଦେଖନ୍ତି ଆର ହାତ ଧରି ।
ଆବର ଜଳକା ଅନ୍ଧକଣା ଥିଲେ ଯେତେ
ସବୁରି ଚକ୍ଷୁ ନିର୍ମଳ ହୋଇଲା ଚାହାଁନ୍ତେ ।
ଶୁଣ ହେ ନାରଦ କହୁଛନ୍ତି ବିଧାତାଏ
ସେହି ମଣି ଗୁଛିବାକୁ ଉଠେ ଏକ ରାୟେ ।
ଗଳାରେ ସୁବର୍ଣ୍ଣ ରଜ୍ଜୁ ଧରି କରେ ଟାଣି
ଫୁଟିଲାକ ବେନି ରନ୍ଧ୍ରେ ବେନି ବାଙ୍କ ଜିଣି
ନୋହିଲା ଗୁନ୍ଥା ବୋଲିଣ ରାଜାମାନେ ଉଠି
କେ ମଣି କରରେ ଧରି ଗୁନ୍ଥେ ରଜ୍ଜୁଗୋଟି
ରଜ୍ଜୁ ପଳାନ୍ତେ ତାହାଙ୍କୁ ଝାଙ୍କିଲା ଚାଳିଶା
ଦେଖି ନୋହିଲା ବୋଲିଣ ସର୍ବେକଲେ ହସା
ସବୁରି ମୁଖରେ ହର୍ଷ ଦେଖି ସେ ନୃପତି
ଜଗତୀରେ ମଣି ଥୋଇ ବସେ ମଥାପୋତି ।
ତାର ନ ପାରିବା ଦେଖି ଆଉ ଯେତେ ନୃପ
ସମସ୍ତେ ଗୁଛିଲେ ବେଳେ ବେଳେ କରିଧାପ

କେହୁ ଉଠିଣ ମଣିକୁ ଚାହାଁନ୍ତେ ନିରେଖି
ମଣିଜ୍ୟୋସ୍ନା ପାଇଣ ସେ ବୁଜେ ତାରଆଖି
କାହାକୁ ଦିଶଇ ମଣି ସବୁ ଚନ୍ଦ୍ରପ୍ରାୟ
କାହାକୁ ଦିଶଇ ସଭାଯାକ ମଣିମୟ ।
ମଣିକୁ କରରେ ଧରି କେ ପଡ଼େ ଚମକି
କାହାର ଲୋତକ ବହୁଅଛି ବେନିଆଖି ।
ପାପ କ୍ଷୟ କରୁଛନ୍ତି କେଉଁ ନୃପବର
ଚକ୍ଷୁ ବୁଜିଣ ସାଉଁଟି ଧରି ବେନିକର ।
ଆଦିତ୍ୟ ଦରଶୀ ଯେତେଛନ୍ତି ରାଜାମାନେ
ସେ ଅବା ମଣି ଧରିଣ ଗୁନ୍ଥନ୍ତେ ଯତନେ
ଶୁଣ ହେ ନାରଦ କହୁଛନ୍ତି କୁଶପାଣି
ଏତେ ରାଜା କେହୁ ଗୁନ୍ଥି ନ ପାରିଲେମଣି
ପ୍ରଥମ ବାଙ୍କ କାହାର ଫୁଟିଲା ଦ୍ୱିବାଙ୍କ
ଅଷ୍ଟବାଙ୍କ ଫୁଟାଇ କେ ନ ପାରନ୍ତି ଲୋକ
ଦେଖିକରି ବିଷ୍ଣୁମାଝି ହୋଇଲା ଆନନ୍ଦ
ବୋଇଲାକ ନ ପାରିଲେ ଗୁନ୍ଥି ରାଜବୃନ୍ଦ ।
ଗୁନ୍ଥାଇବା ଆନଲୋକ ମଣି ପୁଣି ଏବେ
ସେହୁ ନ ପାରିଲେ ତେବେ ରହିବାକ ଶୁଭେ
ଏତେ ପାଞ୍ଚଣ ଲୋକଙ୍କୁ କହେ ବିଷ୍ଣୁମାଝି
ବୋଇଲେ ଏ ମଣିଗୁନ୍ଥା କରି ନିଅ ବୁଝି
ରାଜାର ବଚନ ଶୁଣି ସର୍ବେ ହେଉ କଲେ
ଜଣ ଜଣ କରି ମଣି ଧରିଣ ଗୁନ୍ଥିଲେ ।
ଗୁନ୍ଥିଛି ଦ୍ୱିଲକ୍ଷ ତିନିଲକ୍ଷ ଧରି ମଣି
ଏମନ୍ତ ସେ ଗଲା ବିଂଶ ବର୍ଷ ବହି ପୁଣି ।
ହସ୍ତରେ ଧରିଣ ମାତ୍ର ଆସନ୍ତି ସେ ଚାହିଁ
ବିଷ୍ଣୁମାଝି ବୋଇଲେ ମୋ ଭୟ ଆଉ ନାହିଁ
ଆଦିତ୍ୟଙ୍କ ବରରେ ମୁଁ ହୋଇଲି ଅମର
ଆଉ କେହି ମଣି ଗୁନ୍ଥି ନପାରେ ସଂସାର
ଏପରି ରହନ୍ତେ ବଡ଼ପଣେ ବିଷ୍ଣୁମାଝି
ଏଥୁଅନ୍ତେ ମୁର ଆସୁଅଛି ଦଣ୍ଡ ସାଜି ।
ବିଷ୍ଣୁମାଝି ନଗରରେ ମିଳେ ଦୈତ୍ୟ ଯାଇ
ଦେଖିଲା ମଣି ଗୋଟିଏ ସଭାରେ ଅଛଇ ।
ବୋଇଲା ବହିବି ପରା ଏ ମଣିକୁ ହୃଦେ
ସକଳ ଦେଶେ ବସିବ ରାଜ ରାଜପଦେ ।
ପ୍ରମାଣ ବୁଝିବା ଏବେ କାହାର ଏ ମଣି
କିମ୍ପାଇଁ ସଭା ମଧ୍ୟକୁ ଅଛି ଏହା ଆଣି ।
ବିଷୟ ବୁଝି କରିବା ପଛେ ସିନା ଗୋଳ
ଏ ମଣି ଗୋଟିକୁ ନେବା ଅଟେ ମୋରମୂଳ
ଏମନ୍ତ ବିଚାରି ରଥ ଖସାଇଲା ତଳେ
ହୋଇଲା ପ୍ରବେଶ ଆସି ଅବନୀ ମଣ୍ଡଳେ ।

ନୃପତିଗଣଙ୍କ ମଧ୍ୟେ ବସି ସଭା ମାଡ଼ି
ରାଜାଏ ଅପସରିଗଲେ ମଣି ଗୋଟି ଛାଡ଼ି ।
ସମସ୍ତେ ଘୁଞ୍ଚିଣ ଯାନ୍ତେ ଧରେ ମୁର ମଣି
ଏହାଦେଖି ବିଷ୍ଣୁମାଝି ଉଠେ ଶିରଝୁଣି
ବୋଇଲା କାହାରି ତୁରେ ଅଟୁ ନିଶାଚର
ଭାଙ୍ଗିଲୁ ଏଡ଼େକ ସଭାଗୋଟି ଆସି ମୋର
ମଣି ଗୋଟିକ ମୋହର ନେଉ ପୁଣି ଧରି
ଗୁନ୍ଥିଲେ ସିନା ନିଅନ୍ତୁ ପଣ ଥିଲି କରି ।
ମୁର ବୋଇଲା ଏ ସିନାଯେବେ ତୋରବାଣୀ
ଶୁଣିଥିଲେ ସିନା ମୁହିଁ ଗୁନ୍ଥିଥାନ୍ତି ମଣି ।
ବିଷ୍ଣୁମାଝି ବୋଇଲାକ ଏବେ ଗୁନ୍ଥ କିନା
ଗୁନ୍ଥିଲେ ମଣି ଗୋଟିକୁ ନେବୁ ତୁହି ସିନା
ମୁର ବୋଇଲା ପରୀକ୍ଷା ଯେବେ ଏଥେ ଅଛି
ଜାଣିଲଇଁ ମାୟା ତୋର ଏଥେ ନାହି କିଛି
ଗୁନ୍ଥିଲେ ଏକା ମଣିକୁ ନେବି ଜାଣ ମୁହିଁ
ନୋହିଲେ କି ସନ୍ଧିଥିଲେ କଥାଯାଅ କହି ।
ଏହାଶୁଣି ବିଷ୍ଣୁମାଝି କହେ ହସି ହସି
ବୋଇଲେ ଗୁନ୍ଥିବ ମଣି ଗୋଟି ଯେବେବସି
ଏକମୁଖେ ଗଳି ରଜ୍ଜୁ ଆନେ ବାହାରିବ
ତେବେ ତୁମ୍ଭ ମଣିଗୋଟି ନିଶ୍ଚେ ଘେନିଯିବ
ଏହାଶୁଣି ମୁରଦୈତ୍ୟ ବସି ତୋଷଚିତ୍ତେ
ବୋଇଲା ଏ ଛାରକଥା ନୋହିବ ମୋ ହସ୍ତେ
ବୁଝିଲେ ଚଉଦପୁରେ ଅଟେ ମୁହିଁ ରାଜା
ଏ ମଣିକି ନ ଗୁନ୍ଥିଲେ ପାଇବଇଁ ଲଜ୍ଜା ।
ଏମନ୍ତ ବିଚାରି ମଣି ଧଇଲା ହସ୍ତରେ
ବୋଇଲା ହେ ସଭାଜନେ ସାକ୍ଷୀଥାଅ ବାରେ
ସୁବର୍ଣ୍ଣ ରଜ୍ଜୁରେ ସିନା ଗୁନ୍ଥୁଥିଲ ତୁମ୍ଭେ
ପାଟ ରଜ୍ଜୁ ଗଳାଇଣ ଦେଖ ନେବୁ ଆମ୍ଭେ
ସଧୀରେ ସୂତ୍ରେ ଗୁଡ଼ାଇ ଗୁନ୍ଥି ନେବି ମୁହିଁ
ତେଡ଼େବେଳେ ଗୋଳଏକା ନକରିବେକେହି
ବଳିରେ ଅଥବା ନେବି କଳେ ହେଲେ ନେବି
ଛଳ କଲେ ପୁନଃ ପ୍ରାଣେ ନାଶକରି ନେବି
ଏହାଶୁଣି ବିଷ୍ଣୁ ମାଝି ବସେ ତୋଷହୋଇ
ବୋଇଲା ମଣିକି ଆଗ ଗୁନ୍ଥ କିନା ତୁହି
ସୁବର୍ଣ୍ଣର ରଜ୍ଜୁ ସିନା ଅଟଇ ନିରାଟ
ପାଟେ କିପରି ଗୁନ୍ଥିବୁ ଦେଖିବୁ ତୋ ଆଣ୍ଟ
ଗୁନ୍ଥ ବେଗ ଗୁନ୍ଥା ଦେଖିଥାନ୍ତୁ ସଭାଜନ
ଶୁଣିଣ ମୁରଦଇତ ଧରି ମଣିରତ୍ନ ।
ମନ୍ତ୍ରବଳେ ପିପିଲିକା ଏକ ଥିଲା ରଖି
ମଣିର ରନ୍ଧ୍ରେ ନେଇଣ ପୂରାଇଲା ଯୋଖି ।

ବ୍ରହ୍ମାର ନନ୍ଦନ ସେହି ଜାଣେ କେଡ଼େ ସିଦ୍ଧି
ପିମ୍ପୁଡ଼ିକୁ ତିଆରିଣ କହେ ନାନାବୁଦ୍ଧି ।
ବୋଇଲା ଅମୃତମଣି ଗର୍ତ୍ତେ ଅଛି ଯାହା
ଝିଙ୍କି ପାଟରଜ୍ଜୁକୁ ତୁ ଭୁଞ୍ଜ ଯାଇ ତାହା ।
ଏ ମୁଖରୁ ସେ ମୁଖକୁ ଅତି ଅଷ୍ଟବାଙ୍କ
ପିମ୍ପୁଡ଼ିବୋଲି ତୋତେ ନଜାଣୁ କେହିଲୋକ
ଏହାଶୁଣି ମଣି ଗର୍ତ୍ତେ ପଶି ଜନ୍ତୁଗୋଟି
ଝିଙ୍କି ଆଣିଲା ରଜ୍ଜୁକୁ ଭିଡ଼ି ଦଣ୍ଡପାଟି ।
ମଣିର ଏପାଖ ରଜ୍ଜୁ ସେପାଖ ଦିଶିଲା
ଦେଖି ସେ ବିଷ୍ଣୁ ମାଝିର ସାହସ ଉଡ଼ିଲା
ମୁର ବୋଇଲା ଏବେହେଁ ଦେଖ ସଭାଲୋକେ
ମଣି ଗୋଟି ଗୁନ୍ଥିଲି ମୁଁ ଲଗାଉଛି ବେକେ
ଏତେ ବୋଲିଣ ମଣିକୁ ଧରି ମୁର କରେ
ସମସ୍ତେ ଦେଖୁଅଛନ୍ତି ଭରିଲା କଣ୍ଠରେ ।
ଦେଖିକରି ବିଷ୍ଣୁମାଝି ହୋଇଲା ପ୍ରଚଣ୍ଡ
ବୋଇଲା ବିଅର୍ଥେ ଆସି ନାଶୁ ଏଥେ ପିଣ୍ଡ
ଗୁନ୍ଥିଲା ମାତ୍ରକେ ମୃତ୍ୟୁ ପୂରିଲା ତୋ ଜାଣ
ଏହିକଥା ସୂର୍ଯ୍ୟ କହିଛନ୍ତି ମୋତେ ପୁଣ ।
ପୂର୍ବେ ତ ଆଦିତ୍ୟ ମୋତେ ବର ଦେଇଛନ୍ତି
ଯେ ଗୁନ୍ଥିବ ମଣି ତାକୁ ମାରିବୁ ନିପାତି ।
ଗୁନ୍ଥାଉଥିଲି ବିଡ଼ିବା ନିମନ୍ତେ ମୁଁ ଏଥେ
ଯେ ଗୁନ୍ଥିବ ମୃତ୍ୟୁ ତାର ଅଛି ମୋର ହସ୍ତେ
ଏହା ନ ଜାଣି ଗୁନ୍ଥିଲୁ ତୁ ଯେ ମୋରମଣି
ଏବେ ସେହି ଜନ ତୋତେ କଲା ମୃତ୍ୟୁ ଆଣି
ଏତେ ବୋଲିଣ ଖଡ଼ଗ ଧରି ବିଷ୍ଣୁ ମାଝି
ମୁରାସୁର ଅଙ୍ଗେ ନେଇ ପିଟେ ଗଳଗାଜି ।
ବାଜି ଖଡ଼ଗ ତାହାର ହେଲା ମସି ଗୁଣ୍ଡ
ତା ଦେଖି ମୁର ଦଇତ୍ୟ ହୋଇଲା ପ୍ରଚଣ୍ଡ ।
ବୋଇଲା ଆରେ ପାମର ଅବିଶ୍ୱାସୀ ମନ୍ଦ
ଏଡ଼େ ଉପରୋଧ ଛୁଡ଼ି କଲୁ ମୋତେ ଦ୍ୱନ୍ଦ୍ୱ ।
ଧରରେ କାଙ୍କୋଳା କାଳକେତୁ ଲୋହାସୁର
ସୈନ୍ୟମାନଙ୍କୁ ଘେନିଣ ବେଗେ ଯାଇ ମାର
ଏହାର ଜଗତୀପୁର ଘର ଦିଅ ପୋଡ଼ି
ତାହା ଦେଖି ବିଷ୍ଣୁମାଝି ମୁର ମୁଣ୍ଡକୋଡ଼ି
ତାହା ଶୁଣି ସେନାପତି ଯାନ୍ତି ଗଳଗାଜି
ରଜାର ନଗର ଯାକ ପକାଇଲା ଭାଙ୍ଗି ।
ମାଇଲେ ଘେନିଣ ସଇନ୍ୟକୁ ତଡ଼ବଡ଼ି
ତାହା ଦେଖି ବିଷ୍ଣୁ ମାଝି ଧାଏଁ ନିଶମୋଡ଼ି
ବୋଲଇ କାହିଁ ଅଛରେ ମୋହର ବଇରୀ
ସେହି ମଲେ ସିନା ମୁହିଁ ଥିବି ଦେହଧରି ।

ଏତେବୋଲି କଟାରି ବୁଲାଇ ଘନ ଘନ
ମୁରର ଛାମୁରେ ଯାଇ ମିଳିଲା ରାଜନ ।
ଦେଖିଲାକ ମଣିଗୋଟି ହୃଦେ ଅଛି ଲମ୍ବି
ନିଶାରେ ଦିବସ ପ୍ରାୟ ଦିଶୁଅଛି ଭୁବି ।
ଆହା ମଣି ବୋଲିକରି ହେଲା ମହାକ୍ରୋଧ
ମୁର ଦୈତ୍ୟ ଅଙ୍ଗେ ନେଇ ପିଟିଲା ଆୟୁଧ
ଶସ୍ତ୍ର ବାଜନ୍ତେଣ ମୁର ଉଠେ କ୍ରୋଧ ହୋଇ
ବିଷ୍ଣୁ ମାଝିର ବାଳକୁ ଧରେ ରଥୁ ଡେଇଁ
ବିଜେ କର୍ଣ୍ଣକଟାରୀରେ ଛେଦିଲା ତା ଶିର
ଦେଖି ରାଜାମାନେ ଭାଜିଗଲେ ଯେଝାପୁର
ବିଷ୍ଣୁ ମାଝି ରାଜା ଯେଣୁ ହେଲା ପ୍ରାଣେ ହତ
ବେଢ଼ିଣ ସୈନ୍ୟ ତାହାର ମାଇଲୁତ ଦଇତ୍ୟ
ନିଶସ୍ତ୍ର ହୋଇଣ ପଡ଼ିଗଲେ ସର୍ବଯୋଧି
ବିଷ୍ଣୁମାଝି ନଗରରେ ବହେ ରକ୍ତନଦୀ ।
ବିଷ୍ଣୁମାଝି ରାଜାଙ୍କର ପୁତ୍ର ଏକା ଥିଲା
କାଙ୍କୋଳାସୁରଠାରେ ସେ ଶରଣ ପଶିଲା
ସୁଜ୍ଞାନୀ ମାଝି ବୋଲିଣ ନାମ ଅଟେ ତାର
ଦେଖି ଦୟାକଲା ତାକୁ କାଙ୍କୋଳା ଅସୁର ।
ମୁର ଦଇତ୍ୟ ଛାମୁରେ କଲା ତାକୁ ନେଇ
ବୋଇଲା ବିଷ୍ଣୁ ମାଝି କୁମର ଅଟଇ ।
ଉତ୍ତମ ବୁଦ୍ଧି ଏହାର ଅଟେ ସ୍ୱାମୀ ଜାଣ
ଆପଣ ସୁଦୟା କଲେ ହେବ ନୃପରାଣ ।
ଆମ୍ଭେ ଏହୁ ଦ୍ୱୀପେ ଆଉ ନ ଥିବାକ ବସି
ଶୁଣିଣ ମୂର ତାହାକୁ ଧଇଲା ଆଶ୍ୱାସି ।
ଆପଣା ହସ୍ତରେ ଘେନି ବାନ୍ଧେ ରାୟେ ଶାଢ଼ୀ
ବେଲାଳ ଦେଶଯାକରେ ବସିଲା ଯେ ମାଢ଼ି
ସେ ଦ୍ୱୀପର ରାଜାଯାକ ଖଟିଲେ ତା ପାଶ
ପର୍ବତ ପରାୟେ ତାର ପ୍ରକାଶିଲା ଯଶ ।
ଯେଡ଼େଲୋକ ଆଶ୍ରାକଲେ ତେଡ଼େହୁଏ ପ୍ରାଣୀ
ମୁର ପ୍ରସାଦେ ସୁଜ୍ଞାନୀ ହେଲା ନୃପମଣି ।
ଏଥୁଉତ୍ତାରେ ନାରଦ ଶୁଣ ଏକଚିତ୍ତ
ମଣି ଘେନି କୁଶଦ୍ୱୀପେ ଗଲା ମୁରଦୈତ୍ୟ ।
ପୁଷ୍କର ଦ୍ୱୀପରେ ଯାଇ ମିଳି ମୁରରାୟେ
ଈଶ୍ୱର ବରେ କାହାକୁ ନାହିଁ ତାର ଭୟେ
ମହାଦେବଙ୍କ ମହିମା ଅଟେ ଅଗୋଚର
ବଳେ ପ୍ରାଣୀକି ସେ ସ୍ୱାମୀ ଯାଚିଦ୍ୟନ୍ତି ବର ।
ଜୟ ତୁ ଜୟ ତୁ ଆଦି ଦେବ ମହାଦେବ
ଆଦିଶକ୍ତି ଗର୍ଭୁନାଥ ହୋଇଲେ ପ୍ରସବ ।
ମତ୍ତଭୋଳେ ସ୍ୱାମୀ ତାହା ନ ପାରିଲ ଜାଣି
ରସିଲ ହେ ଆଦିମାତା ଭାର୍ଯ୍ୟାପ୍ରାୟ ମଣି ।

ଆହେଦେବ ମହାଦେବ ଶ୍ୱେତ ମୂର୍ତ୍ତି ଗୋଟା
ପଞ୍ଚବଦନକୁ ଶୋହେ ପଞ୍ଚମାଥେ ଜଟା ।
ଅଯୋନି ସମ୍ଭୁତ ସ୍ୱାମୀ ଜୟ ମୃତ୍ୟୁଞ୍ଜୟ
ସୁନ୍ଦର ମୂରତି ଦଗ୍‌ଧ କଲ କାମଦେବ ।
ତୁମ୍ଭ ଘେନି ମୃତ୍ୟୁଭାରା ହୋଇଲା ଉଶ୍ୱାସ ।
ପୁତ୍ର ଜନ୍ମାଇ ତାରକାସୁର କଲ ନାଶ ।
ଭକ୍ଷିଲ ଯେ କାଳକୂଟ ଜଗଜ୍ଜନ ହିତେ
ମହା ଦିଗମ୍ବର ହୋଇ ବୁଲିଲ ଜଗତେ ।
ନିରାକାର ଅଲେଖ ହେ ପ୍ରଭୁ ଭାବିଗ୍ରାହୀ
ଅନନ୍ତ ନାଗୋପତବୀତ ଅଙ୍ଗେ ଶୋଭାପାଇ
ଛପନକୋଟି ଜୀବକୁ ତୁମ୍ଭେ ପଡ଼ିତାତା
ଜଗତଜନ ସୋଦର ଜୟ ଆଦିକର୍ତ୍ତା ।
ନବଲକ୍ଷ ଡମ୍ବରୁ ଯେ ଅନ୍ତରୀକ୍ଷେ ବାଜେ
ପଚିଶ କୋଟି ପୃଥ୍ୱୀକି କ୍ଷଣେ ଦିଗବିଜେ ।
ଧାତୁରାଦି ଫଳ ଭୋଜନରେ ଗୁଣଗ୍ରାହୀ
ମାନବ ମାତ୍ରକ ମୁହିଁ ପାରିବି କି କହି ।
ଯାହାର ମହିମା ଗୋଟି ଦେବ ଅଗୋଚର
ଲେଖକ ଦେଖି କେ ଅନ୍ତ କରିବ ତାହାର ।
ଆହେ ଦେବ ମହାଦେବ କର ମୋତେ ତ୍ରାହି
ବିପ୍ର ଶ୍ରୀ ପିତାମ୍ବର ରଖ ଉମାସାଇଁ ।
ଏଥୁଅନନ୍ତରେ ଶୁଣ ମୁର ଦିଗବିଜେ
ପୁଷ୍କର ଦ୍ୱୀପେ ମିଳିଲା ଯାଇ ଦୈତ୍ୟରାଜେ
ପାଞ୍ଚଶତ କୋଟି ଯୁଣ ଯେଉଁ ବସୁନ୍ଧରୀ
ତାହା ପାରିପାଖେ ଅଛି ଲୋକାଲୋକ ଗିରି
ଏହାର ମଧରେ ପୁଣ ସାତଦ୍ୱୀପ ବସେ
ଦ୍ୱୀପ ଗୋଟିକେ ସମୁଦ୍ର ଗୋଟିଏ ପ୍ରକାଶେ
ଲବଣ ଯେ ମଧୁସୁରା ଘୃତ ଅବ୍‌ଧି ଚାରି
ଦଧି ଦୁଗ୍‌ଧ ନୀର ଏହିରୂପେ ସପ୍ତବାରି ।
ନୀରାବ୍‌ଧି ମଧେ ପୁଷ୍କର ନାମେ ଅଛି ଦ୍ୱୀପ
ତହିଁ ପ୍ରବେଶ ହୋଇଲା ଦୈତ୍ୟକୁଳ ନୃପ
ବୁଝିଲେ ଅଟନ୍ତି ଦୈତ୍ୟମାନେ କାମରୂପୀ
ପ୍ରହରକ ମଧରେ ସେ ଶୂନ୍ୟେ ଗଲେ କ୍ଷେପି
ବତିଶଲକ୍ଷ ଯୁଣ ସେ ଅଟେ ଦ୍ୱୀପ ଗୋଟି
ସମସ୍ତ ଦଇତ୍ୟ ଯାଇ ହେଲେ ଏକଗୋଷ୍ଠୀ ।
ବାଜଇ ନିଶାଣ ଭେରୀ ଦମାଲୁ ଟମକ
ତାଳ କଂସାଳି ମହୁରୀ ଝାଞ୍ଜ ଯୋଡ଼ାଶଙ୍ଖ ।
ଅଲୋକିତ ଯେ ଅସୁର ସୈନ୍ୟ ଅନର୍ଯ୍ୟାପ
ପଡ଼ିଲେ ସମସ୍ତେ ମାଡ଼ି ସେ ପୁଷ୍କର ଦ୍ୱୀପ ।
ଦେଖି ଦରଶନ ଘେନିକରି ଯେ ହାହାରେ
ରାଜାମାନେ ଆସି ଖଟୁଛନ୍ତି ଦୈତ୍ୟଠାରେ ।
କାର୍ପଣ୍ୟ ହୋଇ ଛାମୁରେ ବିନୟ କରନ୍ତି ।
ତା ଦେଖି ମୁର ଅସୁର ସୁଦୟା ବହନ୍ତି ।
ଶୁଣ ନାରଦ ପୁଷ୍କର ଦ୍ୱୀପର ଯେ କଥା
ଲକ୍ଷ୍ମୀଙ୍କର ଭୁବନ ଯେ ଅଟଇ ଜାଣିଥା ।
ଷୋଡ଼ଶ ଲକ୍ଷ ଯୋଜନ ବିସ୍ତାର ହେ ମହୀ
ନୀର ସମୁଦ୍ର ବତିଶ ଲକ୍ଷଯୁଣ ବହି ।
ସେହି ଜଳମଧେ ଜାଣ ଲକ୍ଷ୍ମୀଙ୍କର ସ୍ଥାନ
ପୁଷ୍କର ଦ୍ୱୀପ ବୋଲିଣ ଅଟେ ତାର ନାମ ।
ବିକଚପଦ୍ମ ମଧରେ କମଳାର ପୁର
କୋଟି ପ୍ରଳୟରେ ନାଶ ନୁହେଁ କେବେତାର
ସଖିମାନଙ୍କୁ ଘେନିଣ ଜଗଜ୍ଜନ ମାତା
ଅଛନ୍ତି ପଦ୍ମ ବନରେ ହୋଇଣ ଅଚିନ୍ତା ।
ଧରି ପଦ୍ମ ପୁଷ୍ପ ଗୋଟି କରେ କମଳାକ୍ଷୀ
ନିତ୍ୟ ଚଳନ୍ତି ସେ କ୍ଷୀର ବଇକୁଣ୍ଠ ଦେଖି ।
ବିଷ୍ଣୁ ପଦ୍ମପାଦେ ଯାଇ କରନ୍ତି ହେ ପୂଜା
ବିହରନ୍ତି ବିଷ୍ଣୁ ଦେହେ ବରୁଣ ଆତ୍ମଜା ।
କ୍ଷୀର ବଇକୁଣ୍ଠ ପ୍ରାୟ ଅଟେ ଯେଉଁ ପୁର
ଉପମା ଦେବାକୁ ନାହିଁ ତ୍ରିଭୁବନେ ତାର ।
ପଞ୍ଚାଶ କୋଟି ପୃଥିବୀ ଥାପି ଯେଉଁକାଳେ
ଥୋଇଲେ ସକଳ ଜୀବ ମଞ୍ଜି ପଦ୍ମଆଳେ ।
ଯେଣୁ ସେହି ଲୋକମାତା ବିଷ୍ଣୁ ମନୋହାରୀ
ତେଣୁକରି ଭଣ୍ଡାରର ଅଟେ ଅଧିକାରୀ ।
ଯାହାକୁ ଯେତେକ ଦୟା କଲେ କମଳିନୀ
ତାହାକୁଟି ତେତେ ଦ୍ରବ୍ୟ ଭୋଗ ହୁଏ ପୁଣି ।
ଯେତେଲୋକ ତାକୁ ତେତେ ଦ୍ୟନ୍ତିପଡ଼ିଲେଖି
ପାତ୍ରାନୁସାରେ କରନ୍ତି ଭୋଗ ସର୍ବେ ଭକ୍ଷି ।
ବ୍ରହ୍ମାଦି ଦେବତା ଶିବ ଚନ୍ଦ୍ର ସୂର୍ଯ୍ୟ ଯାଏ
କାହାର ଯେ ଅଧିକାର ନାହିଁ ଲକ୍ଷ୍ମୀଠାଏ ।
ଏମନ୍ତ ମହିମା ସେହି କମଳିନୀ ପୁର
ପଶିଲା ତହିଁରେ ବଳେ ଯାଇ ମୁରାସୁର ।
ସେହି ପୃଥ୍ୱୀଜନ ଜନ୍ତୁ ହେଲେ ଖଳବଳ
ପଳାଇ ପଶିଲେ ଯାଇ ପର୍ବତ କନ୍ଦର ।
ସନ୍ଥ ସାଧୁ ଯେ ସେବକ ମନୁଷ୍ୟାଦି ଯେତେ
ଶ୍ରୀଗୋବିନ୍ଦ ଲକ୍ଷ୍ମୀଚିନ୍ତା କରନ୍ତି ହୃଦଗତେ ।
ବୋଲନ୍ତି ହେ ରତ୍ନାକର ବିଷ୍ଣୁ ପାଟରାଣୀ
ସକଳ ଉଦ୍ଧାରିଣୀ ତୁ ବ୍ରହ୍ମାଣ୍ଡ କାରେଣୀ ।
ଆପଣାର ସଞ୍ଚଳାର ଅଟଇ ଏ ଦେଶ
କହୁ କହୁ ଦୈତ୍ୟେ ମାଗୋ କଲେସର୍ବନାଶ
ଜମ୍ବୁଦ୍ୱୀପର ପୁଷ୍କରଦ୍ୱୀପ ପରିଯନ୍ତେ
ଏ ଦୈତ୍ୟ ଆସି ଭୋଗକଲେ ଇଚ୍ଛାମତେ ।

ରାତ୍ରହିଁ ନାହିଁ ତାହାକୁ ଦିବସଇଁ ନାହିଁ
ମୁରାସୁର ମାଗୋ ଭୋଗ କଲା ସବୁ ମହୀ ।
ଆପଣେ ଯେବେ ବିଷ୍ଣୁଙ୍କୁ ଏହା ନ କହିବେ
ତୁମ୍ଭର ଏ ପ୍ରଜାମାନେ ସର୍ବେ ନାଶଯିବେ ।
ମଧୁମାରି ମଧୁ ନାମ ବହିଛନ୍ତି ହରି
ମୁରକୁ ମାଇଲେ ଏବେ ହୋଇବେ ମୁରାରୀ
ଏମନ୍ତ ପ୍ରକାରେ ସ୍ତୁତି କରି ସର୍ବଲୋକେ
ଡାକନ୍ତି ବିକଳେ ରହି ପଦ୍ମବନ ପାଖେ ।
କହନ୍ତି ଯେ ବେଦବ୍ରହ୍ମା ଶୁଣ ଟପଚାରୀ
ଲକ୍ଷ୍ମୀଙ୍କର ଯେପୋଇଲୀ ଥିଲେ ପରିଚାରୀ ।
ଲୋକଙ୍କ ଆତଙ୍କ ସେହି କର୍ଣ୍ଣରେ ଶୁଣିଲେ
ଲକ୍ଷ୍ମୀଠାରେ ଯାଇକରି ସର୍ବେ ଜଣାଇଲେ ।
ବୋଲନ୍ତି ଭୋ ଜନନୀ ଗୋ ଶୁଣ କମଳିନୀ
ଗୁହାରି କରନ୍ତି ଆସି ସଂସାରରୁ ପ୍ରାଣୀ ।
ମୁର ବୋଲିକରି ପୁଣି ଏକଇ ଦଇତ୍ୟ
ଦାରୁଣ ଭାଇ ତାହାର ଅଛଇ ସଙ୍ଗତ ।
ଦିଗବିଜେ କରି ଆସିଅଛି ସୈନ୍ୟଘେନି
ସବୁ ଦ୍ୱୀପଯାକ ବୁଲି ଜିଣିଲା ମେଦିନୀ ।
ପୁଷ୍କର ଦ୍ୱୀପକୁ ଏବେ ନାଶ ଆସିକରି
ଏମନ୍ତ ବୋଲିଣ ଲୋକେ କରନ୍ତି ଗୁହାରି ।
ପଦ୍ମ ବନର ବାହାରେ ଅଇଲୁ ଯେ ପୁଣି
ଏଥକୁ କିସ ଉପାୟ କହ ଗୋସାମଣି ।
ଦାସୀମାନଙ୍କ ମୁଖରୁ ଏହା ଶୁଣି ମାତା
ବୋଇଲେବିଷ୍ଣୁଙ୍କୁ ତେବେ କହିବାଏ ବାର୍ତ୍ତା
ଏତେ ବୋଲିଣ କମଳା ହେଲେ ଦିବ୍ୟବେଶ
ଧଇଲେ ଶ୍ରୀକରେ ମାଏ ଏକ ପଦ୍ମ ପୁଷ୍ପ ।
କ୍ଷୀରନିଧି ବୈକୁଣ୍ଠକୁ କଲେକ ଗମନ
ବିଜେ କରିଛନ୍ତି ଯହିଁ ତ୍ରୈଲୋକ୍ୟ ଜୀବନ ।
ତହିଁର ପାଂଶରେ ଯାଇ ହୋଇଲେ ପ୍ରବେଶ
ପୂଜାକଲେ ଶ୍ରୀଚରଣେ ଦେଇ ପଦ୍ମପୁଷ୍ପ ।
ବୋଇଲେ ଭୋଦେବ ଏବେ ଶୁଣିମା ଗୁହାରି
ପୁଷ୍କର ଦ୍ୱୀପ ଦଇତ୍ୟ କଲେ ହୁରି ଜୁରି ।
ମୁର ଦାରୁଣ ବୋଲିଣ ଦୈତ୍ୟ ବେନିଭାଇ
ଜମ୍ବୁଦ୍ୱୀପର ଅଟନ୍ତି ରାଜା ପୁଣି ସେହି ।
ଭାଙ୍ଗିଲେ ସେ ଦୁଷ୍ଟପଣ ଘେନି ସବୁ ଦୋଷ
ପୁଷ୍କର ଦ୍ୱୀପରେ ଏବେ ହୋଇଲେ ପ୍ରବେଶ
ତହିଁଥିବା ଜନଜନ୍ତୁ ପାଇ ବଡ଼ ଦୁଃଖ
ସେମାନେ ଆମ୍ଭଙ୍କୁ ଚିନ୍ତା ବଲେ ପଦ୍ମମୁଖ ।
ଆମ୍ଭର ରଚନା ଯେବେ ଭାଙ୍ଗିଲେ ଦଇତ୍ୟେ
ତହିଁ ଲୋକମାନେ ଆଉ ରହିବେ କେମନ୍ତେ
ଏହି କଥାକୁ ଉପାୟ କର ଦୟାନିଧି
ନୋହିଲେ ସଂସାର ଭାଙ୍ଗି ଗଲାଟି ଅବଧି ।
କାହିଁର ସେ ଦୈତ୍ୟମାନେକାହୁଁ ହେଲେଜାତ
କେଡ଼େ ଭରସାରେ ସବୁ ଭାଙ୍ଗିଲେ ଜଗତ
ଅସାମାନ୍ୟ କର୍ମ ଦେବ ଶୁଣା ଏହା ନାହିଁ
ମଧୁ କଇଟଭଠାରୁ ବଳିଲେ କି ସେହି ।
କେଡ଼େ ଦୈତ୍ୟଙ୍କୁ ନାଶିଲ ପୁଣି ତୁମ୍ଭେଯୁଝି
ଏଥକୁ ଉପାୟ ସ୍ୱାମୀ କର ଏବେ ବୁଝି ।
ପ୍ରିୟାଠାରୁ ଏସନକ ଶୁଣି ଚକ୍ରଧର
ବୋଇଲେ ଶୁଣରେ ସଖି ଏଥିର ବିଚାର ।
ମଧୁ କଇଟଭ ଯାହା ପୁଛିଲ ଯେ ମୋତେ
ନାଶକଲି ତାହାଙ୍କୁ ଏ ମେଦିନୀ ନିମନ୍ତେ ।
ବ୍ରହ୍ମା ସିନା ସରଜନା କରିଛି ଏ ପୃଥ୍ୱୀ
ତାହାର ପୁତ୍ରେ ଯଦ୍ୟପି ନାଶିଲେ ତା କୀର୍ତ୍ତି
ତହିଁର ଯେ ଦୋଷମାନ କାହୁଁ ଶୁଣ ସଖି
ପିତାଙ୍କର ଯଶକୀର୍ତ୍ତି ସେ ପୁତ୍ର ନ ରଖି ।
ମନ ଘେନି ଆନଗୁରୁ କରଇ ଯେ ପ୍ରାଣୀ
ପତିକୁ ତେଜି ଯେ ହୁଏ ପରମ ରମଣୀ ।
ରାଜା ଥାଉ ପରରାଜ୍ୟ ଭାଙ୍ଗଇ ଯେ ରାଜା
ରମଇ ପରନାରୀ ଯେ ତେଜିଣ ଭାରିଯା ।
ଭୂମି ଥାଉଁ ଥାଉଁ ଲୋକ ବୃକ୍ଷେ କରେ ବାସ
ଏମାନଙ୍କୁ ସଂସାରରେ ବୋଲି କୁପୁରୁଷ ।
ଜାତ ହୋଇ ପୃଥ୍ୱୀକୁ ଯେ ନୁହେଁ ହିତକାରୀ
ସଂସାର ଜନକୁ ଯେହୁ ଅଟଇ ଭଗାରି ।
ତୁମ୍ଭେ ଯେବେ କହୁଅଛ ମାରିବା ତାହାଙ୍କୁ
ବ୍ରହ୍ମା ଏ ଗୁହାରି କରି ନିଅନ୍ତୁ ଆମ୍ଭଙ୍କୁ ।
ଏବେତୁମ୍ଭେ ପ୍ରିୟା ଗୋଟ୍ରେ ଭୂମିତେଜିଆସ
କ୍ଷୀର ସିନ୍ଧୁ ବଇକୁଣ୍ଠେ କର ତୁମ୍ଭେ ବାସ
ସେ ପୁରୁ ସଇନି ଘେନିଆସ ସର୍ବେ ଏଥ
ଉପାୟ କରିବା ତହିଁ ପ୍ରତି ଗୋ ପଶ୍ଚାତ ।
ସ୍ୱାମୀ ମୁଖରୁ ଏସନ ଶୁଣିକରି ଶ୍ରୀୟା
ଅଇଲେ ପୁଷ୍କର ଦ୍ୱୀପ ତେଜି ପଦ୍ମାଳୟା ।
ଲୋକଙ୍କୁ ଯେ ଆଜ୍ଞାଦେଲେ କଷ୍ଟେକରବାସ
ବିଷ୍ଣୁଜାତ ହେଲେ ସିନା ମରିବ ରାକ୍ଷସ ।
ଏତେ ବୋଲି ସଙ୍ଗତରେ ସଖୀଗଣ ଘେନି
ଧନଯାକ ବୁହାଇଣ ନେଲେ କମଳିନୀ ।
କ୍ଷୀର ବଇକୁଣ୍ଠେ ଯାଇ ଦେବୀ କଲେ ବାସ
ଶୁଣ ବାବୁରେ ନାରଦ କହନ୍ତି ଲୋକେଶ ।
ମୂର ଯେ ପୁଷ୍କର ଦ୍ୱୀପ ପରିକ୍ରମା କଲା
କ୍ଷୀରାବଧି ତୀରରେ ଯାଇ ପ୍ରବେଶ ହୋଇଲା

ଦେଖିଲେ ଖଣ୍ଡଦୂରରେ ଦିଶେ ପଦ୍ମବନ
ମନ୍ତ୍ରୀକି ଚାହିଁଣ ରାଜା କହଇ ବଚନ ।
ବୋଲେ ଆହେ ମନ୍ତ୍ରୀବର ଅଟେ ଏହୁ କିସ
ଜଳରେ ତ ଦିଶୁଅଛି ରଙ୍ଗମୟ ପୁଷ୍ପ
କାହାର ଭୁବନ ଏହୁ ଅଟଇ ଜଗତେ
ଅପୂର୍ବ ଦେଖିଣ ମୁହିଁ ପଚାରୁଛି ତୋତେ ।
ରାଜା ପୁଚ୍ଛନ୍ତେ ସୁବିଜ୍ଞ ମନ୍ତ୍ରୀବର କହି
ବୋଇଲା ଶ୍ରୀଲକ୍ଷ୍ମୀଙ୍କର ଭୁବନଟି ଏହି ।
ସର୍ବଦା ବିଜୟ ଏଥେ କରେ କମଳିନୀ
ସର୍ବଲୋକ ମାତା ସେହୁ ବିଷ୍ଣୁ ପାଟରାଣୀ ।
ଏହାର ଘେନି ପୃଥିବୀ ହୁଏ ଆତଯାତ
ଏ ସେ ଭିଆଣ କରନ୍ତି ଅଶେଷ ଜଗତ ।
ନ ଯିବ ଭୋ ଦେବ ମହାରାଜ ଏଥି ପାଶ
ଅଧିକ କି କହିବି ମୁଁ ନ ଜାଣୁ ତୁ କିସ ।
ସ୍ତିରୀ ଭୁବନରେ କିବା ଅଛି ପ୍ରୟୋଜନ
ଏ କଥା କ୍ଷତ୍ରୀକୁଳରେ ଅଟେ ବଡ଼ ହୀନ ।
ତୁ ମହାକ୍ଷତ୍ରୀ ବିଚାରି ଏହି କାର୍ଯ୍ୟ କର
ଏସନ ସୁବିଜ୍ଞ ମନ୍ତ୍ରୀ କହିଲା ଛାମୁର ।
ଶୁଣିଣ ମୁର ଦଇତ୍ୟ ବିଚାରିଲା ମନେ
ବୋଇଲା ସତ ଏ ସିନା କହେ ମନ୍ତ୍ରୀପଣେ
ବୁଝିଲେ ଜଳ ମଧରେ ଅଛି କେଉଁ ଦେଶ
ଚଳାଅ ସୈନ୍ୟ ମୋହର ଯେଣେ ଅଛିଯଶ
ଏତେବୋଲି ସିନ୍ଧୁତୀରେ ଚଳାଇଲା ଥାଟ
ଲୋକାଲୋକ ଗିରିବର ତଟେ ଯେଉଁ ବାଟ
ସେହିପଥ ଚିହ୍ନି ଚଳିଗଲେ ସୈନ୍ୟମାଡ଼ି
ବଜାଇ ନାନା ନିଶାଣ ବାଦ୍ୟ ଘିଡ଼ି ଘିଡ଼ି ।
ପଦାତି ଯେ ରଥ ଗଜ ଅଶ୍ୱ ଅନ୍ତ ନାହିଁ
ଚଳିଯାନ୍ତି ସେନାପତି ଆଗପଛ ହୋଇ ।
କ୍ଷୀରାବଧିକି ଜିଣିଗଲେ ଯେ ଶାକଲ୍ୟ ଦ୍ୱୀପ
ଦିନକୁ ଦିନ ଗମିଣ ଯାନ୍ତି ଅସଂକ୍ଷେପ ।
ଶୁଣ ସୁଜ୍ଞଜନେ ଏଥୁଅନନ୍ତରେ ବାଣୀ
ମନୁଷ୍ୟ ହୋଇ ଏହା କେ ପାରିବ ବଖାଣି ।
ଏହି ନୃସିଂହ ପୁରାଣ ଅଟେ ମହାଗ୍ରନ୍ଥ
ମୁଁ ଛାର ସେ କଥା କାହୁଁ କହିବି ହେ ନାଥ ।
ବିଚାରିଲେ ଅପଣ୍ଡିତ ଅଟେ ବାଳବୃଦ୍ଧ
ଶାରଦାର କରୁଣାରୁ କରିବି ବା ସିଦ୍ଧ ।
ମହାବଇଷ୍ଣବୀ ସେହୁ ବିଷ୍ଣୁ ଚାରୁହଂସୀ
ଯୋଗ ଅଭ୍ୟାସିନୀ ମାତା କଳିକାଳ ଧ୍ୱଂସି ।
ନିଳେନ୍ଦ୍ରି ଦଳ ପରାୟ ଦିଶେ ମୁଖଗୋଟି
ଅମୀୟ ରସ ଝରଇ ପ୍ରସନ୍ନ ବିମ୍ୱୋଷ୍ଠୀ ।
ସେ ମହାମାୟା କହନ୍ତି ମୋତେ ଯେଉଁପଦ
ତାହା ମୁଁ ପତ୍ରରେ ଦେଖି କରେ ଗୀତବନ୍ଧ
କହିଲେ ପରମଗତି ଦିଶେ ମୁକ୍ତିବାଟ ।
ତେଣୁ ଏ ପୁରାଣ ଗୋଟି ହୋଇଲା ପ୍ରକଟ
ପ୍ରସନ୍ନ ମାହେଶ୍ୱରୀ ଯେ ପରଦୁଃଖେ ଦୁଃଖୀ
ପୀତାମ୍ବରକୁ ଉଦ୍ଧାର କର ଶଶିମୁଖୀ ।



## ମୁରାସୁରର ଶାକଲ୍ୟ ଦ୍ୱୀପ ଯାତ୍ରା ଓ ବିଷ୍ଣୁ ପୁର ଦହନ

ଏଥୁଅନନ୍ତରେ ନାରଦ ମୁନି ମହାଜ୍ଞାତା
ବ୍ରହ୍ମାଙ୍କୁ ପୁଛିଲେ ସେହୁ ମୁରାସୁର କଥା ।
ବୋଇଲେ ପୁଷ୍କର ଦ୍ୱୀପେ ଅସୁର ଯେ ଗଲା
ତହିଁ ଉତ୍ତାରୁ କହନ୍ତୁ କେଉଁ କୃତ୍ୟ କଲା ।
ନାରଦ ବଚନେ କହୁଛନ୍ତି ପଦ୍ମଯୋନି
ବୋଲନ୍ତି ସେ ସାବଧାନେ ଶୁଣ ମୁରବାଣୀ ।
ପୁଷ୍କରଦ୍ୱୀପ ଜିଣିଲା ଗଲା ସେ ଅସୁର
ଶାକଲ୍ୟ ଦ୍ୱୀପରେ ଯାଇ ମିଳିଲା ତପ୍ପର ।
ତହିଁର ବାରତା ଏବେ କହୁଅଛି ଶୁଣ
କ୍ଷୀରସିନ୍ଧୁ ବେଢ଼ି ସେହୁ ଦ୍ୱୀପ ଅଛି ଜାଣ ।
ବତିଶ ଲକ୍ଷ ଯୁଣ ଯେ ଦ୍ୱୀପର ବିସ୍ତାର
ଶୁଣହେ ନାରଦ କହୁଛନ୍ତି ବେଦବର ।
ତହିଁ ଚୌଷଠି ଯୋଜନ ଜାଣ ଲକ୍ଷମାଡ଼ି
କ୍ଷୀର ସମୁଦ୍ରକୁ ରହିଅଛି ପୁଣ ବେଢ଼ି ।
ସେ ଦ୍ୱୀପର ମହିମା ହୋ କି କହିବା ଜାଣ
ଯହିଁ ନିରାକାର ବିଷ୍ଣୁ ଛନ୍ତି ନାରାୟଣ ।
ସମସ୍ତ ଦେବତା ଦେବଦେବୀଗଣମାନେ
ସପ୍ତଦ୍ୱୀପା ପୃଥିବୀରୁ ଆସନ୍ତି ସେ ସ୍ଥାନ ।
ନିତ୍ୟେ ବିଷ୍ଣୁଙ୍କୁ ଦର୍ଶନ ଆସି କରିଯାନ୍ତି
ବାରରାଶି ଷଡରତୁ ଯାର ଆଜ୍ଞାବର୍ତ୍ତୀ ।
ଅଷ୍ଟଲୋକ ଦିଗପାଳ ଷୋହଳ ଚନ୍ଦ୍ରମା
ଦ୍ୱାଦଶ ଆଦିତ୍ୟ ଆଦି ପଞ୍ଚଦଶ ବ୍ରହ୍ମା ।
ଏକାଦଶ ରୁଦ୍ରଗଣ ସତାଇଶ ଯୋଗ
ଅଷ୍ଟଗିରି ନକ୍ଷତ୍ର ଯେ ଆଉ ଚାରିମେଘ ।
ସାତବାର ତିଥି ଲଗ୍ନ କାଳବେଳ ଯାଏ
ସମସ୍ତ ଦର୍ଶନ ଯାଇ କରନ୍ତି ଯେ ପାୟେ ।
ସେ ଯେଉଁ ଅନନ୍ତ ନିରାକାର ନାରାୟଣ
ତହିଁରୁ ଯେ କ୍ଷରୁଛନ୍ତି ଜଗତ୍ ବିଧିମାନ ।
ଆପେ ନିରାକାର ଧରିଅଛନ୍ତି ସ୍ୱରୂପ
ସଂସାରରେ ଅବତରି ମାରନ୍ତି କୌଣପ ।

ଲେଉଟିଗଲେ ରହନ୍ତି ଯାଇ ସେହିପୁରେ
ଶୁଣହେ ନାରଦ କହୁଛନ୍ତି ବେଦବରେ ।
ବିଷ୍ଣୁପୁରେ ବିଷ୍ଣୁଗଣ ରହୁଛନ୍ତି ପୂରି
ସର୍ବଦା ଥାଆନ୍ତି ସେହି ବିଷ୍ଣୁ ସେବିକରି ।
ମହା ଶୁକ୍ଳବର୍ଣ୍ଣ ଜ୍ୟୋତି ଅଟଇ ସେ ପୁର
ରାତ୍ରି ଦିବା ବୋଲି ତହିଁ ନ ଯାନ୍ତି ଗୋଚର ।
ତହୁଁ ଆସନ୍ତି ସେ ଚନ୍ଦ୍ର ସୂର୍ଯ୍ୟ ଉଦେହୋଇ
ଦିବାରାତ୍ର କରି ଦୁହେଁ ପାଳୁଛନ୍ତି ମହୀ ।
ସେ ଦ୍ୱୀପଗୋଟି ବିଷ୍ଣୁଙ୍କ ଅଟେ ରମ୍ୟସ୍ଥାନ
କ୍ଷୀର ବୈକୁଣ୍ଠେ କରନ୍ତି ଆସି ବିହରଣ ।
ପଦ୍ମାସୀନ ହୋଇ ତହିଁ ବିଜେ ବିଶ୍ୱନାଥ
ତହିଁ ପ୍ରବେଶ ହୋଇଲା ଏ ମୁର ଦଇତ ।
ଆସନ୍ତି ସମସ୍ତ ଦ୍ୱୀପଯାକେ ଦଣ୍ଡ ସାଜି
ଶାକଲ୍ୟଦ୍ୱୀପେ ଯାଇଣ ପୁଣି ଗଳଗାଜି ।
ଦେଖିଲା ବିଷ୍ଣୁ ଭବନ ପୁର ବାରସ୍ୱତୀ
ଧାଡ଼ି ଧାଡ଼ି ଅଷ୍ଟରତ୍ନ କମ ପନ୍ତି ପନ୍ତ ।
ତାହାଦେଖି ମୁରାସୁର ହୋଇଲା ସନ୍ତୋଷ
ସୈନ୍ୟଙ୍କୁ ଆଜ୍ଞାଦେଲା ଯେ ରତ୍ନ ଘେନିଆସ
ଅପୂରୁବ ଦ୍ରବ୍ୟଯାକ ପୁରକୁ ମୋ ନେବା
ଏହି ରୂପେ ସିଂହଦ୍ୱାରେ ନେଇ ଲମ୍ୱାଇବା ।
ଶୁଣି ସେନାମାନେ ଧାଇଁଗଲେ ଶିରଝୁଣି
ବେଢ଼ିଲେ ସେ ପୁର ଲୋଡେ ଅଷ୍ଟରତ୍ନ ଆଣି
ଦ୍ୱୀପଯାକ ଯୁର କରି ଆସନ୍ତେ ଅସୁରେ
ଜଣାଇଲେ ବିଷ୍ଣୁଗଣ ପ୍ରଭୁଙ୍କ ଛାମୁରେ ।
ବୋଇଲେ ହେ ମହାପ୍ରଭୁ ଶୁଣ ଏବେ ବାଣୀ
ଅସୁରେ ଭାଙ୍ଗିଲେ କାହୁଁ ଆସି ରାଜ୍ୟ ପୁଣି ।
ଯେବଣ ପୁରରେ ବ୍ରହ୍ମା ଆସି ନାହିଁ କ୍ଷମ
ସେ ପୁର ଭାଙ୍ଗିଲେ ଆସି ଏବେ ଦୁରାତମ ।
ଶୁଣିଣ ପାଞ୍ଚିଲେ ବିଷ୍ଣୁ ନାଥ ହୃଦୟରେ
ବିଚାରନ୍ତି ଆମ୍ଭେ ଆଉ ନ ଥିବା ଏ ପୁରେ ।
ଅନେକ ଯୁଗ ହୋଇଲା ଥିଲି ମୁଁ ଏ ସ୍ଥାନ
ଏଣିକି ତ ଜନମିବେ କେତେ ଯାତୁଧାନ ।
ମାଳୀ ସୁମାଳୀ ହିରଣ୍ୟ ମାଲ୍ୟ ହରିଣାକ୍ଷ
ମହିଷ ଅସୁର ଜମ୍ଭୁ ଆଉ ବିରୂପାକ୍ଷ ।
ତାରକା ନାରକା ଦଶାସ୍ୟ ଯେ କୁମ୍ଭକର୍ଣ୍ଣ
ବଳିଦୈତ୍ୟ ବଜ୍ରନାଭ ଆଉ ବିରୋଚନ ।
କଂସକେଶୀ ଗୋସିଂହ ଯେ କାଳନେମୀ କୁମ୍ଭ
ତ୍ରିପୁରା ବୃକାସୁର ଯେ ନିର୍ବାତ ନିକୁମ୍ଭ ।
ଜନ୍ମିବେ ଏ ଆଦି ଯେତେ ଦୈତ୍ୟମଞ୍ଚେ ଆସି
ଏହିଠାରୁ ଏ ପୁର ତ ଯିବ ତାଙ୍କୁ ଦିଶି ।

କ୍ଷୀରସିନ୍ଧୁ ବଇକୁଣ୍ଠ ଯିବ ଏବେ ମୋର
ତହିଁ ଯାଇ ନିଶ୍ଚିନ୍ତରେ କରିବା ବିହାର ।
ଏ ରୂପେ ବିଚାରି ମହାପ୍ରଭୁ ମନେ ମନ
ଡକାଇ ଆଣିଲେ ନିଜ ପାଶେ ବିଷ୍ଣୁଗଣ ।
ସେମାନଙ୍କ ନାମ ଥୋକେ ଶୁଣ ହେ ନାରଦ
ସୁନନ୍ଦ ନିମାନନ୍ଦ ଯେ କୁନନ୍ଦ ଆନନ୍ଦ ।
ପରମାନନ୍ଦ ଗୋବିନ୍ଦ ବ୍ରଜାନନ୍ଦ କହି
ଯୋଗାନନ୍ଦ ସଦାନନ୍ଦ ଜ୍ଞାନାନନ୍ଦ ଦେହୀ ।
ମହାବଳ ସତ୍ୟଶୀଳ ସୁବଳ ନିର୍ମଳ
ଏ ପ୍ରକାରେ ବିଷ୍ଣୁଗଣ ଅଛନ୍ତି ସକଳ ।
ନାରାୟଣ ବୋଇଲେ ହେ ନିମାନନ୍ଦ ଉଠ
ସମସ୍ତଙ୍କୁ କହ ଯାଇଁ ରହନ୍ତୁ ବୈକୁଣ୍ଠ ।
ଓଗାଳି ରଖିବା ଆମ୍ଭେ ତାଙ୍କୁ ଖଣ୍ଡେଦୂରେ
ଲୋକେ କୂଟ ନ ହେଉ ନ ଜାଣନ୍ତୁ ଅସୁରେ ।
ଏଢେ ବୋଲି ସୁଦର୍ଶନ ଦେଲେ ପ୍ରତିପେଷି
ବୋଇଲେ ଅସୁରଙ୍କୁ ତୁ ଓଗାଳି ରଖସି ।
ତୁ ଓଗାଳିଲେ ପାଇବେ ଲୋକେଚିଡେ ଆଣ୍ଟ
ଅଚିନ୍ତା ହୋଇ ବୈକୁଣ୍ଠେ କରନ୍ତୁ ସେ ପୁଟ ।
ବିଷ୍ଣୁ ଆଜ୍ଞାପାଇ ଚଳିଗଲା ସୁଦର୍ଶନ
ତତକ୍ଷଣ ଓଗାଳିଲା ଦୈତ୍ୟରାଜା ସୈନ୍ୟ ।
ଚକ୍ର ଓଗାଳନ୍ତେ ଦୈତ୍ୟ ନ ପାଇଲେ ଭେଟ
ରହିଲେ ନଗ୍ର ବାହାରେ ମୁରାସୁର ଥାଟ ।
ତାହା ଦେଖି ଚାର ବେଗେ ଜଣାଇଲା ଯାଇଁ
ବୋଇଲା ନଗରେ ପଶି ନ ପାରିଲେ କେହି ।
ଚକ୍ର ଗୋଟିଏ ଓଗାଳି ଅଛି ଦିଗମାଡ଼ି
ଏହା ଶୁଣି ମୁରାସୁର ଉଠି ନିଶ ମୋଡ଼ି ।
କାଙ୍କୋଳାସୁରକୁ ଚାହିଁ କହେ ମୁର ରାଜ
ବୋଲେ ବେଗେ ଯାଇ ଭାଙ୍ଗ ଚକ୍ରର ପହିଜ ।
ରାଜା ଆଜ୍ଞା ପାଇ ଚଳିଗଲେ ସେନାପତି
ଦୈନ୍ୟଙ୍କର ପାଦାଘାତେ କମ୍ପେ ବସୁମତୀ ।
ଚାଳିଶପଦ୍ମ ରଥ ସତୁରିପଦ୍ମ ନାଗ
ପଞ୍ଚାଶପଦ୍ମ ପର୍ଯ୍ୟନ୍ତେ ଚଳିଲେ ତୁରଙ୍ଗ ।
ଅଶୀପଦ୍ମ ସୈନ୍ୟ ଘେନି କାଙ୍କୋଳା ଉଠିଲେ
ଆଉ ସେନାମାନେ ତାର ପଛେ ଚଳିଗଲେ ।
ସଉଦାସ ବୃକାସୁର କୁନ୍ଦା ଶରଜିତ
ମଉନା ବୀରଘଣ୍ଟ ଯେ ପ୍ରଳମ୍ୱା ବିକୃତ ।
ଅଲୋପୀ ସଲୋପୀ ଯେ ବିରାଜ ମହାବୀର
ବକ୍ରମାଳ ରଣଚୂଡ ଆଉ ଲୋହାସୁର ।
ଚଳନ୍ତି କଣ୍ଟ ବିକଣ୍ଟ ବେନି ଆଗେ ଆଗେ
ମୁରାସୁରର ପ୍ରତିଜ୍ଞା ଶୁଭେ ତିନି ସ୍ୱର୍ଗେ ।

ବିଜୟାରଥେ ଆରୋହି ମୁର ଭାଇ ବେନି
ପ୍ରବେଶ ହୋଇଲେ ଯାଇ ଚକ୍ର ସନ୍ନିଧାନି ।
ନାରାଚ କୁନ୍ତ ଖଡ଼ଗ ଅସିପତ୍ର ଯଷ୍ଟି
ଶାବେଳି କୋଦାଳ ହେ ମୂଷଳ ଫଳାଫାଟି ।
ଲାଙ୍ଗିଆ ବିଜୁଳିଜ୍ୟୋତି ଜିଣି ଝଲକନ୍ତି
ମୁରକଣ୍ଠେ ସୂର୍ଯ୍ୟାବର୍ତ୍ତ ମଣି ବିରାଜନ୍ତି ।
ମୁର ବୋଲେ ଉପରରେ ଡେଇଁ ବେଗେ ପଶ
ଛାର ଚକ୍ର ଗୋଟାକୁ ରେ କିମ୍ପା କର ତ୍ରାସ ।
ଖଣ୍ଡ ଖଣ୍ଡ କରି ବେଗେ ଆସ ତାକୁ ଭାଙ୍ଗି
ଶୁଣି ସେନାପତି ଧାଇଁଗଲେ ଗଳଗାଜି ।
ଅସିପତ୍ର ବୁଲାଇଣ ଉଠିଲେ ସମସ୍ତେ
ଗଜମାନ ଚଳାଇଣ ଗମିଲେ ମାହୁନ୍ତେ ।
ଚୋଖାର ତୁରଙ୍ଗ ପବନହୁଁ ବେଗେ ବାଜି
କ୍ଷେପୁଛନ୍ତି ଖୁରିସାଣି ହୁଙ୍କାରବ ତେଜି ।
ଏକମୁଖ ହୋଇକରି ଉଠିଲେ ଦନୁଜ
ସୁଦର୍ଶନ ଚକ୍ରେ ନେଇ ପିଟିଲେ ଗୁରୁଜ ।
ରଣ ଧନ୍ଦୋଳା ଯେ ଲାଗିଲାକ ଦୈତ୍ୟବଳେ
ଆକାଶ ଉଛୁଳି ପଡେ ମୁଖର ଚହଳେ ।
ନାରାଚମାନ ପଡ଼ିଣ ସୁଦର୍ଶନ ଅଙ୍ଗେ
ଆସନ୍ତି ତତ୍‌କ୍ଷଣେ ଚୂର୍ଣ୍ଣ ହୋଇ ସେହି ଲାଗେ
ଅଧିକରେ ମହାଚକ୍ର ବଢ଼େ ନିଜକାୟେ
ହୁଅନ୍ତି ଶସ୍ତ୍ର ସମୂହ ପଡ଼ି ଧୂଳିମୟେ ।
ଖଡ଼ଗ ଚକ୍ର ନାରାଚ ଶାବେଳି କୁଠାର
ପର୍ବତମାନ ପଡ଼ିଣ ହେଉଛନ୍ତି ଚୂର ।
ବିନ୍ଧନ୍ତି କକଡ଼ା ବୃଷ୍ଟି ପ୍ରାୟେ ଶରଯାକ
ସୁଦର୍ଶନ ଚକ୍ରର ଯେ ନୁହେଁ ଲୋମବାଙ୍କ ।
ଦେଖି କାଙ୍କୋଳା ଅସୁର ଧାଏଁ କୋପକରି
ନିଜର ଲୁହା ନାରାଚେ ବିନ୍ଧେ ଲକ୍ଷ ଚାରି ।
ଦେଖି ସୁଦର୍ଶନ କାୟା ଦେଲେ ଉଲସାଇ
ଲକ୍ଷେ ଯୋଜନରେ ଶରପଡେ ଆଡ଼ହୋଇ
ତାହାଦେଖି କାଙ୍କୋଳ ଯେ ଧରେ ଗଦାଟୋଳି
ଚକ୍ର ଉପରେ ବୁଲାଇ ପିଟେ ମହାବଳୀ ।
ଚକ୍ର ଉପରେ ପଡ଼ି ଗଦା ମସିଗୁଣ୍ଡା ହେଲା
କୋପରେ କାଙ୍କୋଳା ପୁଣି ଶକତି ଧଇଲା ।
ବୁଲାଇ ପିଟନ୍ତେ ଚକ୍ର ଉପରରେ ନେଇ
ଉଲ୍‌କାପାତ ହୋଇଣ କମ୍ପେ ଜାଣ ମହୀ ।
ଦେଖିକରି ସୁଦର୍ଶନ ପାଦ ଦେଲେ ଆଡ଼ି
ଭାଜିଲା ଶତେକ ଖଣ୍ଡ ହେଲା ଶକ୍ତି ପଡ଼ି ।
ଏ ରୂପେ ମୁରାସୁରର ସବୁ ସେନାପତି
ଚକ୍ର ଉପରେ ନାରାଚ ସର୍ବେ ପହୁଡ଼ନ୍ତି ।
ଲକ୍ଷ ଲକ୍ଷ କୋଟି କୋଟି ପଦ୍ମ ପଦ୍ମ ଆଣି
ଚକ୍ର ଉପରକୁ ବିନ୍ଧୁଛନ୍ତି ସର୍ବେ ପୁଣି ।

ସର୍ବେ ନାରାଚ ପହୁଡ଼ି ହେଲେ ଶୂନ୍ୟ ହସ୍ତ
ତାହାଦେଖି କୋପକରି ଧାଏଁ ମୁରଦୈତ୍ୟ ।
ସେହି ପୁଣି ବ୍ରହ୍ମଶର ଚକ୍ର ପହୁଡ଼ିଲା
ସକଳ ଦେବତାଙ୍କର ବାଣ ଯେତେ ଥିଲା ।
ନାରାୟଣ ପାଶୁପତ ବାବଲ ବୈଷ୍ଣବୀ
ଅଜଗବ ଅଧାଚନ୍ଦ୍ର ଅକ୍ଷୟ ଭୈରବୀ ।
କାଳଫାଶୀ ଜଳଫାଶୀ ନାଗଫାଶୀ ଯାଏ
ଦେବଙ୍କର ବ୍ରହ୍ମଶର ପିଟେ ଚକ୍ର ଦେହେ ।
ନିଘାତ ମେଘାସ୍ତ୍ର ପରବତ ବଜ୍ରବାଣ
ବାଳସୂଚୀ ବଜ୍ରସୂଚୀ ଭେଲ୍ଲ ସହିତେଣ ।
ପଡନ୍ତେ ପର୍ବତ ପ୍ରାୟ ଆସି ଶରମାନ
ତାହା ଦେଖି ଟହ ଟହ ହସି ସୁଦର୍ଶନ ।
ଅସୁରଙ୍କୁ ବୋଇଲେ ସେ ହେଲୁକିରେ ବାଇ
ଆଜ୍ଞା ଥିଲେ ସମସ୍ତଙ୍କୁ ଦିଅନ୍ତି ମୁଁ ଦହି ।
ପ୍ରଭୁଙ୍କର ସୁଦୟାରୁ ଅଛରେ ଚାଣ୍ଡାଳେ
ନୋହିଲେ କି ପ୍ରାଣେ ରହିଥାନ୍ତ ଏତେବେଳେ
ତୁମ୍ଭ ସ୍ୱଭାବରୁ ତୁମ୍ଭେ ବୃଥା ଆଶା କଲ
ବିନାଶ କାରଣେ ଆସି ଘାଣ୍ଟି ହୋଇ ମଲ ।
ଏହା ଶୁଣିଣ ନାରଦ ବ୍ରହ୍ମାଙ୍କୁ ପୁଚ୍ଛନ୍ତି
ଚକ୍ର ନ ମାରଇ କିମ୍ପା ଦୈତ୍ୟ ମାରୁଛନ୍ତି ।
ଯେଉଁ ଚକ୍ର ସପ୍ତସିନ୍ଧୁ ଯିବେ ଦଣ୍ଡେ ଶୋଷି
ସେ କିମ୍ପା ଅସୁର ମାଡ଼ ଖାଉଛନ୍ତି ବସି ।
ଏହି କଥାର ସିଦ୍ଧାନ୍ତ କହ ପଦ୍ମଯୋନି
ଖଣ୍ଡିବ କ୍ଳେଶ ମୋହର ତବ ମୁଖୁଁ ଶୁଣି ।
ନାରଦଙ୍କ ବଚନରେ ପ୍ରଭୁ ବେଦପତି
ବଦନ୍ତି ହେ ସାବଧାନେ ଶୁଣ ଚକ୍ର ରୀତି ।
ଯହିଁପାଇଁ ସୁଦର୍ଶନ ନ ମାରେ ଅସୁର
ତହିଁର ସିଦ୍ଧାନ୍ତ ଶୁଣ କହିବା ବିଚାର ।
ଶ୍ରୀନାରାୟଣ ସ୍ୱାମୀ ହେ ମାୟାଶୂନ୍ୟ ଦେହୀ
ନିର୍ଗୁଣ ଅହିଂସା ନିରଞ୍ଜନ ଭାବଗ୍ରାହୀ ।
ବିଷ୍ଣୁ ପୁରୁଷ ଶ୍ରୀନିତ୍ୟସ୍ଥଳ ମହାବ୍ରହ୍ମା
ସଦାନନ୍ଦ ସ୍ୱରୂପ ସେ ସବୁ ଜୀବଆତ୍ମା ।
ତେଣୁ ସେହି ପ୍ରଭୁ ଦେହେ ତିଳେ ନାହିଁ କୋପ
ସଂସାରଯାକରେ ଯେଣୁଛନ୍ତି ଏକରୂପ ।
ସମସ୍ତ ଜୀବରେ ସ୍ୱାମୀ ତୁଲ୍ୟ ଦୃଷ୍ଟି ଧରି
ସେ ଦେହରେ ନାହାନ୍ତି ତ ହରି ଦୈତ୍ୟ ମାରି
ଯେତେ ବେଳେ ଅସୁରକୁ ମାରିବେ ଅଚ୍ୟୁତ
ସଭାରେ ତ୍ରିଗୁଣ ନେବେ ସିନା ହେବଜାତ ।
ମାରିବେ ତ୍ରିଗୁଣ ସକାଶରୁ ଦୈତ୍ୟହରି
ତେଣୁକରି ସୁଦର୍ଶନ ରହିଲେ ନ ମାରି ।
ଅଲୋକିତ ସଂଗ୍ରାମରେ ରହେ ପିଠିଆଡ଼ି
ନାରାଚମାନ ପଡ଼ିଣ ଗଲେ ସବୁ ଝଡ଼ି ।

ସୁଦର୍ଶନ ଚକ୍ରର ଯେ ନୋହେ ଲୋମବାଙ୍କ
ଏଥୁଅନ୍ତେ ଲୋକଙ୍କର ଶୁଣ କଥାଯାକ ।
ନିମାନନ୍ଦଙ୍କୁ ଯେ ଆଜ୍ଞା ଦେଲେ ଚକ୍ରଧର
ସେ ଯାଇ ରହିଲେ ସବୁଠାରେ ପ୍ରୁଟକର ।
ଅସୁରମାନେ ମାଡ଼ିଣ ଆସୁଛନ୍ତି ଏଥେ
ବିଷ୍ଣୁ ଆଜ୍ଞାଦେଲେ ପୁର କର ଯେଝାମତେ ।
ଯେଝାଘର ଦ୍ରବ୍ୟ ବଇକୁଣ୍ଠେ ନେଇ ଥୁଅ
କୁଟୁମ୍ବମାନ ଘେନିଣ ନିଶ୍ଚିନ୍ତରେ ରହ ।
ଶୁଣିକରି ପ୍ରାଣୀମାନେ ହୋଇଲେ ତରସ୍ତ
ଭାର ବୋଝ କରି ନେଇ ରଖିଲେ ଯାବତ ।
ସେ ଯାହା କୁଟୁମ୍ବ ପୁତ୍ର ବନ୍ଧୁ ଘେନିକରି
ସୁଖେ ଯାଇଣ ରହିଲେ ବଇକୁଣ୍ଠ ପୁରୀ ।
ନଗ୍ର ତୁଚ୍ଛା ହୋଇବାର ଜାଣି ଭଗବାନ
ତକ୍ଷଣେ ଅନ୍ତର୍ଦ୍ଧାନ କଲେ ସୁଦର୍ଶନ ।
ଚକ୍ର ଘେନି ବଇକୁଣ୍ଠ ଗଲେ ଭାବଗ୍ରାହୀ
ଅଙ୍ଗୁ ପ୍ରକାଶିଲେ ଶେଷ ନରସିଂହ ଦୁଇ ।
ତାଙ୍କୁ ଆଜ୍ଞା ଦେଲେ ଦୈତ୍ୟ ବେଗେ ଯାଇ ମାର
ମଞ୍ଚରେ ଲେଉଟି ଜନ୍ମ ହୁଅ ଅବତାର ।
ପୃଥିବୀର ଭାରାଭର କରିଣ ଉଶ୍ୱାସ
ଅବତାର ସାରି ବଇକୁଣ୍ଠେ ପୁଣି ଆସ ।
ଶୁଣି ନରସିଂହ ସ୍ୱାମୀ ଯୋଡ଼ି ବେନିକର
ବୋଇଲେ କଥାଏ ତେବେ ଶୁଣ ମା ମୋହର
ଆହେ ଦେବ ଅବ୍ୟକତ ବିଷ୍ଣୁ ବ୍ରହ୍ମରାଶି
ତୁମ୍ଭର ପାରୁଶେ ଶେଷଦେବ ଥାନ୍ତୁ ବସି ।
ମୁହିଁ ଏବେ ଦନୁଜଙ୍କୁ ଦେବଇଁ ଘଉଡ଼ି
ଅସୁରେ ବସିବେ ଏଥୁଗଲେ ସ୍ୱର୍ଗ ମାଡ଼ି ।
କେବେ ଦେବତାଏ ଆସି କରିବେ ଗୁହାରି
ନିମନ୍ତ୍ର ଦେଇ ଜନ୍ମିବୁ ଆମ୍ଭେ ମଞ୍ଚପୁରୀ ।
କୃଷ୍ଣବଲ୍ଲଭର ଘରେ ହୋଇବୁ ଜନମ
ତେବେ ସେ ରହିବୁ ନରସିଂହ ବେନି ନାମ ।
ଶୁଣି ନିରାକାର ବିଷ୍ଣୁ ହୋଇଲେ ସନ୍ତୋଷ
ନରସିଂହ ସ୍ୱାମୀଗଲେ ଅସୁରଙ୍କ ପାଶ ।
ଅନର୍ଯ୍ୟାପ୍ତ ଦୈତ୍ୟବଳ ଦେଖି ନାରାୟଣ
ପଶିଲେ ତୁଚ୍ଛା କଟକେ ବାଳକ ରୂପେଣ ।
ବେନି ବରଷର ପୁତ୍ରପ୍ରାୟେ ତନୁ ଧରି
ସୁବର୍ଣ୍ଣ ପଲ୍ୟଙ୍କେ ଶଯ୍ୟା କଲେ ଯାଇ ହରି ।
ଶ୍ରୀମାୟାଧର ସ୍ୱାମୀ ସେ ଜଗଜ୍ଜନବାସୀ
ତୁଚ୍ଛା ପୁରରେ ଶୟନ କଲେ ଏକା ଆସି ।
ସୁଦର୍ଶନକୁ ଜଗାଇ ଦେଲେ ବଇକୁଣ୍ଠ
ଶୁଣ ହେ ନାରଦ କହୁଛନ୍ତି ସୁରଶ୍ରେଷ୍ଠ ।
କାହିଁଗଲା ଚକ୍ର ବୋଲି ଗଲେ ଦୈତ୍ୟଧାଇଁ
କେ ବୋଲେ ପଳାଇଗଲା ଶସ୍ତ୍ରାଘାତ ପାଇ
କେ ବୋଲେ ଭାଜିଣ କି ସେ ହୋଇଗଲା ଧୂଳି
କେ ବୋଲଇ କାଢ଼ିନେଲେ କିବା ଭୂମିଖୋଳି
କେ ବୋଲଇ ଚୋରାଇଣ ରଖିଲାକେ ଘରେ
କେ ବୋଲଇ ଆସ ଦେଖି ଯିବା ପୁରେ ପୁରେ
ଏତେ ବୋଲି ଦୈତ୍ୟ ଧାଇଁ ଗଲେ ରୋଷବହି
ପଶିଲେ କଟକେ ଯାଇ ଗୋଟିଏକେ ନାହିଁ ।
ପୁରେ ପୁରେ ପଶିକରି ଗଲେ ସବୁ ଦେଖି
ଆଡ଼ ତିହାଣି ଦୋମୁହିଁ ବାଙ୍କ ଆଖପାଖି ।
ନଅଲକ୍ଷ ଘର ଯେ ବତ୍ରିଶ ସସ୍ର ସାହି
ପଶିଣ ଖୋଜନ୍ତି ସବୁପୁରେ ରହି ରହି ।
ନ ଦେଖି ଜନ ମନୁଷ୍ୟ କିଛି ପୁରଯାକେ
ବୋଲନ୍ତି ଡରି ଆମ୍ଭଙ୍କୁ ପଳାଇଲେ ଲୋକେ
ତେଡ଼େଚକ୍ର ଯେତେବେଳେ ଆମ୍ଭଙ୍କୁ ଡରିଲା
ମନୁଷ୍ୟ ହୋଇଣ ଏଥେ ରହନ୍ତାକେ ଭଲା ।
ସେ ଚକ୍ରକୁ ଆଜ ଯେବେ ପାଆନ୍ତଇଁ ଭେଟ
ରାଜାର ଆଗରେ ଦେଲେ ହନ୍ତା କାର୍ଯ୍ୟ ପୁଷ୍ଟ
ଏବେ ସେ କାହିଁ ନ ଯାଇଥିବ ସିନା ଏଥି
ଏତେକ ପାଞ୍ଚି ଅସୁରେ ବୁଲିଲେ ଚୌକତି ।
ଆଡ଼ ତିହାଡ଼ ଖରାଡ଼ ବାଡ଼ ତାଙ୍କ ମେଲା
ଖୋଜନ୍ତି ଯାବତପୁରେ ପଶି ଦୈତ୍ୟ ଭଲା ।
ନବରପୁର ମଣ୍ଡପ ଜଗତୀ ଦେଉଳ
ତିଳେହେଁ ନଛାଡ଼ି ବୁଲି ଦେଖନ୍ତି ସକଳ ।
ଚକ୍ରର ଚିହ୍ନବର୍ଣ୍ଣ ସେ ନ ଦେଖିଲେ କାହିଁ
ଦେଖିଲେ ଅଷ୍ଟରତନ ମନ୍ଦିରରେ ଯାଇ ।
ବାଳକୁମର ଗୋଟିଏ କରିଛି ଶୟନ
ଶୋଇଛି ପଲ୍ୟଙ୍କପରେ ଚନ୍ଦ୍ରମା ଯେସନ ।
ଅନ୍ଧାରେ ଆଲୋକମୟ ଦିଶେ ବସୁମତୀ
ଶୁଦ୍ଧ ସ୍ଫଟିକ ପରାୟେ ଦିଶେ ଦେହ କାନ୍ତି ।
ବାଳଅର୍କ ପରାୟେକ ଦିଶେ ମୁର ଶୋଭା
ତିଳକୁସୁମ ଖଞ୍ଜନ ଦିଶେ ମୁଖ ପ୍ରଭା ।
କର୍ଣ୍ଣର କୁଣ୍ଡଳ ମରକତ ମଣି ଗଞ୍ଜେ
କପୋଳେ କସ୍ତୁରୀଚିତା ଗୋରଚନା ସାଜେ
କଣ୍ଠେ ହୀରା ମାଳା ମୋତି ମାଣିକ୍ୟର ହାର
ଅଷ୍ଟରତନ ପଦକ ଦିଶେ ଶୋଭାକର ।
କଟିରେ ସୁନାସୂତା ଯେ ମଣିହାର ବେଢ଼ା
ବାହେ ବାଜୁବନ୍ଧ ନେତ ପତନୀ ଦୋଷଡ଼ା ।
ହୀରା ନୀଳାରେ ଜଡ଼ିତ ବାହୁଟି କଙ୍କଣ
ଚରଣରେ ନବରତ୍ନ ବାଜେ ରୁଣୁଝୁଣ ।
ଏମନ୍ତ ରୂପରେ ସ୍ୱାମୀ ବାଳତନୁ ବହି
ନବଲକ୍ଷ ଘରେ ଶୋଇଛନ୍ତି ଏକା ହୋଇ ।
ମାୟା ଯୋଗରେ ଗୋବିନ୍ଦ ହୋଇ ନିଦ୍ରା ଗତେ
ଏସନ୍ତ ସମୟେ ଆସି ମିଳିଲେ ଦଇତେ ।

ପଲଙ୍କେ ବାଳକ ଏକଗୋଟି ଅଛି ଶୋଇ
ଦେଖିଣ ଧାଇଁଲେ ଦୈତ୍ୟ ପେଲା ପେଲି ହୋଇ ।
ନ ଦେଖିବା ଦୈତ୍ୟ ବୋଲୁଛନ୍ତି କିସ କିସ
ଦେଖିବା ଦୈତ୍ୟ ବୋଲନ୍ତି ହୋଇଅଛି ଶିଷ ।
ଏଡେକ ସୌନ୍ଦର୍ଯ୍ୟ ପୁତ୍ର ଛୁଡ଼ି ବାପ ମାଏ
କି ରୂପେ ରହିଲେ ମୂର୍ଚ୍ଛଯାଇ କେଉଁଠାଏ ।
ଥୋକେ ଦଇତ ବୋଲନ୍ତି ଦେଖି ଭୟହେଲା
ଦଇବ ଆମ୍ଭର ଭକ୍ଷ ପାନ ଦେଇଗଲା ।
ପୋଡାବଳିକୁ ହୋଇବ ଆଜ ଏହୁଯୋଗ
ଏ ମାଂସ ଭକ୍ଷିବ ଜାଣ ଥିବ ଯାର ଭାଗ୍ୟ ।
ପୁଣି ଥୋକେ ଦୈତ୍ୟ ବୋଲୁଛନ୍ତି ହୋଇ ହୋଇ
ଏହିପରି ବସ ଦ୍ରୋହ କରି ନ ଯୋଗାଇ ।
ତରଛ ହୋଇ ଏହାକୁ ଗଲେ ପିତା ଛାଡ଼ି
ନ ଦେଖି ମରିବ ଏବେ ମାତା ମୁଣ୍ଡକୋଡ଼ି ।
ବାପର କ୍ରୋଧ କହିଲେ ପୁଣି ନ ସରିବ
କି ବୋଲିବା ଛୁଡ଼ିଗଲା ଏହିପରା ଦ୍ରବ୍ୟ ।
ଏମନ୍ତ ବୋଲି ଅସୁରେ କରନ୍ତେ ବିଚାର
ତାହାଶୁଣି ଆଉ ଦୈତ୍ୟ ବିହିଲେ ଉତ୍ତର ।
ବୋଇଲେକ ସାବଧାନେ ଶୁଣ ସଭାଜନେ
ଏ ପୁତ୍ରକୁ ନ ମାର ନ ଛାଡ ଏହୁ ସ୍ଥାନେ ।
ରାଜାର ଛାମୁରେ ଆସ ନେଇ ଦେବାବସା
ସମର୍ପି ଦେଲାଠାରୁ ସେ କରନ୍ତୁ ଯା ଇଚ୍ଛା ।
ରାଜା ସିନା ବୁଝି କରୁଥାଇ ସବୁ ନ୍ୟାୟ
ଆମ୍ଭେ ଏକଥା ନକଲେ ହୋଇବ ଅନ୍ୟାୟ ।
ଅସୁର କହନ୍ତେ ଏହିରୂପେ ହୃଦେ ପାଞ୍ଚି
ସବୁରି ମତେ ସେ କଥା ଲାଗିଲାକ ରୁଚି ।
ବୋଇଲେକ ଏ ପଲ୍ୟଙ୍କ ସହ ଟେକି ଧର
ପୁତ୍ରକୁ ଦେବା ନେଇଣ ରାଜାଙ୍କ ଛାମୁର ।
ଏମନ୍ତ ପାଞ୍ଚି ଟେକିଲେ ସର୍ବେ ଖଟ ଖୁରା
ଉଠାଇ ସେ ନ ପାରିଲେ ହେଲା ମହୀଭାରା
ଦେଖିଣ ଅସୁରମାନେ ଚମତ୍କାର ହେଲେ
ଦଶଦିଗ ସଜ ହୋଇ ଲେଉଟି ଧଇଲେ ।
ବୋଇଲେକ ଖଟ କିମ୍ପା ଟଳୁ ନ ଉଠିଲା
ହୀରା ନୀଳା ଲମ୍ବିବାରୁ ଗରୁ ଅବା ହେଲା ।
ସମସ୍ତ ଧରିଣ ଏବେ ଏକାବେଳେ ଟେକ
ରାଜାର ଛାମୁରେ ନେଇ ଦେବା ଏ ବାଳକ ।
ଏସନ ପାଞ୍ଚି ଉଠିଲେ ଦୈତ୍ୟ ଶୁରଝୁଣି
ଖଟ ଗୋଟି ଟେକି କେହି ନ ପାରିଲେ ପୁଣି ।
ସବୁରି ଅଙ୍ଗରୁ ଝାଳ ବହେ ଖଳ ଖଳ
ଖଟ ଛୁଡ଼ିଣ ଅଲଗା ହେଲେ ଦୈତ୍ୟବଳ ।
ପାଞ୍ଚିଲେକ ନରଅଙ୍ଗ ନୁହଇ ଏ ପରା
ଟଳୁ ଟେକି ନ ପାରିଲୁ ଆମ୍ଭେ ଖଟଖୁରା ।
କିବା ବ୍ରହ୍ମା ବିଷ୍ଣୁ ଅଟେ କିବା ରୁଦ୍ରଦେହୀ
ନୋହିଲେ ଏଥିତ ନଗ୍ରେ ଅଛି ଏକା ହୋଇ ।
ଆସ ଏବେ ଏହାର ଯେ କାଟିବା ଶରୀର
ଖଣ୍ଡ ବିଖଣ୍ଡ କରିଣ ପିଇବା ରୁଧିର ।
ଶୁଣିଣ ଥୋକେ ବୋଇଲେ ନୁହଇ ଏମନ୍ତ
ବୃଥା ଦୋଷରେ କିପାଇଁ ମାରିବା ବାଳୁତ ।
ସମସ୍ତେ ଟେକିବା ଏକମନେ ଖଟ ଆସ
ନେଲେ ପୋଷ୍ୟପୁତ୍ର ହେବ ଏ ରାଜାର ଶିଷ୍ୟ
ଦଶ ବିଂଶ ପଚିଶ ନ ପାରି ଯେବେ ଟେକି
ସୈନ୍ୟଯାକ ମିଶି ନେବା ଆସ ଖଟଝିଙ୍କି ।
ଏମନ୍ତ ବୋଲି କହନ୍ତେ ସେହୁ ସମସ୍ତଙ୍କୁ
ଶୁଣି ସଇନ୍ୟ ଯାକର ପାଇଲା ମନକୁ ।
ଅଶୀପଦ୍ମ ଯାଏ ସଜ ହେଲେ ଟେକି ଖଟ
ଶୁଣ ହେ ନାରଦ କହୁଛନ୍ତି ସୁରଶ୍ରେଷ୍ଠ ।
ଦଇତଙ୍କର ବିଚାର ଜାଣିଲେ ଦୈତ୍ୟାରୀ
ଛଦ୍ମରେ ଗଲେ ନିଦ୍ରା ଚକ୍ଷୁ ବୁଜିକରି ।
ମେରୁ ଗିରିର ସମାନ ହେଲେ ଗରୁ ପୁଣ
ଦଇତେ ଧଇଲେ ଏଥିଅନ୍ତେ ଖଟ ଜାଣ ।
ସାଙ୍ଗି ବାହାଙ୍ଗି ଲହଡ଼ି ଚାର ଛନ୍ଦିକରି
ସେମାନେ ଉଠିଲେ ପ୍ରାଣପଣେ ଖଟଟାଣି ।
ଚତୁର୍ଦ୍ଦିଗରେ ବେଢ଼ିଣ ଟେକନ୍ତି ଖଟଟି
ଉଠାଇ ନପାରି ଉଠି ଗଲେ ଦୈତ୍ୟ ହଟି ।
ବୋଇଲେ ଆମ୍ଭବଳରେ ନୁହେଁ ଖଟତୋଳି
କହିବା ରାଜାର ପାଶେ ଆସ ସର୍ବେ ମିଳି ।
ଏମନ୍ତ ପାଞ୍ଚିଣ ଚାର ଗଲେ ବେଗେ ଧାଇଁ
କହିଲେ ରାଜାର ପାଶେ ମିଳି ଉଭାହୋଇ ।
ବୋଇଲେକ ସ୍ୱାମୀ ଶୁଣ ଏବେ ମହାରାୟେ
ଏ ନଗ୍ରେ ବୁଲିଣ ଆଜ ଦେଖିଲୁ କଥାଏ ।
ଜନଜନ୍ତୁ ଆଦିକରି କେହି ଏଥି ନାହିଁ
ଦେଖିଲୁ ବାଳକ ଏକମାତ୍ର ଅଛି ଶୋଇ ।
ପାଞ୍ଚିଲୁ ତାହାକୁ ତୁମ୍ଭପାଶେ ଆଣିବାକୁ
ଦଶ ବିଂଶ ଶଏ ହୋଇ ଟେକିଲୁ ଖଟକୁ ।
ଉଠାଇଣ ନପାରନ୍ତେ ପୁଣି ସଜହେଲୁ
ସୈନ୍ୟଯାକ ଯାଇ ଆମ୍ଭେ ସମସ୍ତେ ଧରିଲୁ ।
ଅଙ୍ଗୁଳି ମାତ୍ରକେ କେହି ଟେକି ନ ପାରିଲୁ
ତେଣୁକରି ଆମ୍ଭେ ସର୍ବେ ଛାମୁକୁ ଅଇଲୁ ।
ସେ ପୁତ୍ର କଥା ଆମ୍ଭଙ୍କୁ ଲାଗେ ଅପ୍ରମିତ
ଏଥକୁ ବୁଝିଣ ସ୍ୱାମୀ କହ ଦୈତ୍ୟନାଥ ।
ଧରି ଆଣିବାକୁ କେହି ନୋହିଲୁ ତ ସରି
ମାରିଆଣ ବୋଇଲେ ତ ଆଣିବୁ ଯେ ମାରି ।
ଚାରଗଣଙ୍କ ମୁଖରୁ ଏହି ବାଣୀ ଶୁଣି
ବୋଇଲେ ଦେଖିବା ତେବେ ଚାଲପୁତ୍ରମଣି ।

ଏମନ୍ତ ବୋଲି ଉଠିଲା ରାଜା ସେହି ଲାଗେ
ସକଳ ସେନାପତିଏ ଗଲେ ସଙ୍ଗେ ସଙ୍ଗେ ।
ସମସ୍ତେ ଦେଖିବା ବୋଲି ଗଲେ ପୁତ୍ରକତି
ଦେଖନ୍ତି ସେ କୁଦା କୁଦା ହୋଇ କାଳ ମୂର୍ତ୍ତି ।
ଯେବର ଭୁବନେ ରହିଛନ୍ତି ନାରାୟଣ
ଶରେ ସୂର୍ଯ୍ୟଜ୍ୟୋତି ପ୍ରାୟ ଦିଶଇ ନିର୍ମାଣ ।
ସେ ଘରେ ପଶି ସରବେ ହେଲେ ଏକରୁଣ୍ଡ
ମୁଖରାବ ଶବଦରେ କମ୍ପେ ନବଖଣ୍ଡ ।
ଆସନ୍ତି ଅପୂର୍ବ ମଣି ସର୍ବେ ବେଗେ ଧାଇଁ
ଦେଖୁଛନ୍ତି ବାଳକକୁ ପେଲାପେଲି ହୋଇ ।
ଏଥିଉତ୍ତାରେ ନାରଦ ଶୁଣ ସେ ବିଚାର
ପୁତ୍ରର ପାଶରେ ଯାଇ ମିଳେ ମୁରାସୁର ।
ଦେଖିଲେ ଉତ୍ତମ ପୁତ୍ର ଶୋଇଛି ପଲ୍ୟଙ୍କେ
ସରିସରି ଧାରା ବହେ ତାର ଓଷ୍ଠଯାକେ ।
ଧରିଲେ ବାଳମୋହନ ମୂର୍ତ୍ତି ପଦ୍ମନାଭ
ଦଇତ୍ୟକୁ ଭୁଲାଇଣ ଦେଖାଅନ୍ତି ଲୋଭ ।
ଆରକତ ବର୍ଣ୍ଣ ଜ୍ୟୋତି ଦିଶେ ଦେହକାନ୍ତି
ବାଳକକୁ ଦେଖି ଶ୍ରଦ୍ଧା କରିଲା ନୃପତି ।
ସେମାନଙ୍କୁ ବୋଇଲା ମୋର ବଡଭାଗ୍ୟ
ମଦନାବତୀର ଏହି ହେବ ପୁତ୍ର ଆଗ ।
ମାତାପଣେ ଶୋଭା ଦିଶୁଥିବ କୋଳେ ଧରି
ସ୍ୱରାଜ୍ୟକୁ ନେବା ଚାଲ କିଛି ନ ବିଚାରି ।
ଏକମାତ୍ର ଉଶ୍ୱାସିଣ ଧର ପୁତ୍ରକାୟେ
ଚେତି ନ ଉଠିବ ଜାଣି ରାଜ୍ୟେ ନେବାଯାଏ ।
ବାଳକକୁ ସିନା ଅତିଅନ୍ତ ସୁକୁମାର
ଦେଢ଼ବରଷ ପ୍ରାୟେ ତ ଦିଶଇ ଶରୀର ।
ଖଟସହିତରେ ଟେକି ଧର ଯିବା ଘେନି
ରାଜାର ବାକ୍ୟରେ ଉଠି ସକଳ ସଇନି ।
ସଉଦାସ ବୃକାସୁର କାଳକେତୁ ବୀର
ବିକୃତା ମୁକୁନ୍ଦା ବୀରଘଣ୍ଟ ଲୋହାସୁର ।
ରଣକେଶୀ ରଣଚୂଡ଼ ଆଦି ବଜ୍ରବାଳୀ
ପ୍ରଳମ୍ଭା ମଦନ ଜଳଘଣ୍ଟ ମହାବଳୀ ।
ଅଲୋପୀ ସଲୋପୀ କଣ୍ଟ ବିକଣ୍ଟ ଆବର
ପ୍ରତାପ ସମରଜିତ କାଙ୍କୋଳା ଅସୁର ।
ଏ ଆଦି ଟେକିଲେ ସୈନ୍ୟମାନେ ଖଟଯାକ
ତଳୁ ଉଠାଇ ନ ପାରିଲେ ଲଜ୍ଜାପାଇ ।
ମହା ମହା ରଥୀମାନେ ପାଇ ମନେ ଲଜ୍ଜା
ସମସ୍ତେ ବୋଇଲେ ଚାଲ ଟେକିବାକ ଶଯ୍ୟା
ଆମ୍ଭେ ଘୁଞ୍ଚିଲେ ରାଜା କରିଲେ ସିନା ଦୁଃଖ
ବୋଲିବେ ହାରିବେ ବାଳୁତକୁ ଏତେ ଲୋକ ।
ଏମନ୍ତ ବୋଲିଣ ଲାଜ ପାଇବା ଅଧିକ
ଆସ ହୋ ଧରିବା ଏକମେଳେ ଖଟ ଟେକ ।

ସେନାଏ ଉଠିଲେ ଏତେବୋଲି କୋପ ହୋଇ
ଧଇଲେକ ଦନ୍ତ ଓଷ୍ଠ ଭିଡ଼ି ମନ ଦେଇ ।
ଆସନତ ନ ଟଳିଲା ଟଳେ ବସୁମତୀ
କମ୍ପିଲେ ବାସୁକୀଦେବୀ କମ୍ପିଲେ ଧରିତ୍ରୀ ।
ଦୈତ୍ୟଙ୍କର ବକ୍ଷଫାଟି ବହିଲା ରୁଧିର
କେ ଭୂମି ପଡ଼ିଲା କେହୁ ଆଡ଼େ ମୋହକାର ।
କେହୁ ଉଠି ନ ପାରିଣ ବସେ ମଥାଯୋଡି
କେହୁ ହତଜ୍ଞାନ ହୋଇ ପଡ଼େ ବସୁମତୀ ।
ସମସ୍ତଙ୍କୁ ଅଶକତ ଦେଖି ମୁରସୁର
ବାଳକକୁ ଚାହିଁକରି ହେଲା ଚମତ୍କାର ।
ପାଞ୍ଚିଲା ଏଡ଼େ ରଥୀଏ ମୋହ ହୋଇଗଲେ
ବାଳକ ଛାରକୁ କେହି ଟେକି ନ ପାରିଲେ ।
ମୁହିଁ ଦେଖି ବଳେ ଆଜି ଟେକେ କିନାପୁତ୍ର
ତେବେ ସିନା ଚିହ୍ନିବି ମୁଁ ପୁତ୍ର କେଡ଼େ ପାତ୍ର ।
ଟେକିନେଇ ପାରିଲେତ ରାଣୀକୋଳେ ଦେବି
ନ ପାରିଲେ ଏଠାବରେ ଏହାକୁ ମାରିବି ।
ସପ୍ତଦ୍ୱୀପା ପୃଥ୍ୱୀକୁ ମୁଁ ଅଟେ ମହାବୀର
ମୋର ହାରିଲେ ତ ହାରିଯିବେ ବ୍ରହ୍ମାବର ।
ଆଉ ଲୋକମାନଙ୍କର କିବା ପ୍ରୟୋଜନ
ଏମନ୍ତ ବିଚାରି ମନେ ଉଠିଲା ରାଜନ ।
ଉଠନ୍ତେସେ ମହାକୋପେ ହୋଇ ମୁର ଦୈତ୍ୟ
ଅନ୍ତର୍ଯ୍ୟାମୀ ପୁରୁଷ ଜାଣିଲେ ତାର ଚିତ୍ତ ।
ପାଞ୍ଚିଲେ ମନେ ଅସୁର ଉଠେ କୋପାନଳେ
ଉଶ୍ୱାସ ନୋହିବା ଆମ୍ଭେ ଯେବେ ଏତେ ବେଳେ
ଅସଜ ହେବ କଥା ନ ହେବ କାର୍ଯ୍ୟ କିଛି
ନିଶ୍ଚେ ଦଇତ୍ୟର ମୃତ୍ୟୁ ମୋରହାତେ ଅଛି ।
ଏ ସମୟେ ନାଶିଲେ ନହେବ ରସ ଜାତ
ଆଉ ଦିନାକେତେ ମଞ୍ଚେ ଥାଉ ଏ ଦଇତ ।
ଅବଶ୍ୟ ମଞ୍ଚରେ ଆମ୍ଭେ ନେବା ଅବତାର
ନରସିଂହ ନାମ ବହି ମାରିବା ଅସୁର ।
ମୁର ବିନାଶି ମୁରାରି ବହିବାକ ନାମ
ଏତେ ପାଞ୍ଚିଣ ଉଶ୍ୱାସ ହେଲେ ପରଂବ୍ରହ୍ମ ।
ସେବତୀ ଫୁଲପରା ଶେଯେଛନ୍ତି ଶୋଇ
ଏସନ ସମୟେ ମୁର ଧରେ ଖଟ ଯାଇ ।
ବିଷ୍ଣୁ ଆସନରେ ନେଇ ଲଦନ୍ତେଣ ହସ୍ତ
ଟେକିଲାକ ଚମ୍ପାପୁଷ୍ପ ପ୍ରାୟେ ମୁରଦୈତ୍ୟ ।
ମଥାପରେ ବହି ନିଜ ରାଜ୍ୟେ ହେଲା ସଜ
ମହାରାଜା ଚଳନ୍ତେଣ ବାଜେ ପଖାଉଜ ।
ଉଠିଲା ଅସୁର କାମରୂପୀ ଶୂନ୍ୟମାର୍ଗେ
ଶ୍ରଦ୍ଧାରେ ବିଷ୍ଣୁଙ୍କୁ ଧରିଅଛି ପୁତ୍ରଭାବେ ।
ଏଥୁଅନନ୍ତରେ ଶୁଣ ଭାବ କଥା ରସ
ପାଞ୍ଚନ୍ତି ଦୈତ୍ୟର ମୁଣ୍ଡେ ବସ ହୃଷୀକେଶ ।

ବୋଲନ୍ତି ଏଥୁ କେସନ ଯିବାଟି ଉବୁରି
ଲୁଚିଗଲେ ମରିଯିବ ଦୈତ୍ୟ ଝୁରି ଝୁରି ।
କ୍ଷଣା ହୋଇଗଲେ ଏହୁ କରିବ କଟାଳ
ଲେଉଟି ନଗର ମୋର ଭାଙ୍ଗିବ ଚଣ୍ଡାଳ ।
ଉପାୟ କରିଣ ଗଲେ କରିବ ଏ ରାଗ
ଏତେପାଞ୍ଚି ମହାଗରୁ ହେଲେ ଜଗଦୀଶ ।
ବସିଲେ ପର୍ବତ ପ୍ରାୟେ ହୋଇ ମୁଣ୍ଡମାଡ଼ି
ରହିଲେ ମେରୁରୁ ଗରୁ ହୋଇ ଜାନୁଭିଡ଼ି ।
ଫୁଲଗଭା ପ୍ରାୟେ ମୁର ନେଉଥିଲା ବହି
ବେଳକୁ ବେଳ ଯେ ଗରୁ ହେଲେ ଭାବଗ୍ରାହୀ
ବହି ନ ପାରିଣ ମୁର ପାଞ୍ଚେ ମନେ ମନ
ହୋଇଲା ଅତ୍ୟନ୍ତ ଗରୁ କିମ୍ପାଇ ଆନନ ।
ବାଳୁତ ନୁହଇ ଏହି ଅଟେ ବିଷ୍ଣୁ ଦେହୀ
ଟେକନ୍ତେ କି ରୂପେ ମୋର ସୈନ୍ୟ ଏହାକୁହିଁ
ଏଡ଼େ ନୋହିବେକ କେଡ଼େବଡ଼ ରଥମାନେ
ଟେକନ୍ତେ ଅବଶ ହୋଇପଡ଼ିଲେ ଅଜ୍ଞାନେ ।
ଜାଣୁ ଜାଣୁ ଏହା ଯେବେ ନ କରିବି ନାଶ
ସଂସାରେ ମୋତେ ଆଉ କି ମାନିବେ ମନୁଷ୍ୟ
ବୋଲିବେ ଶତ୍ରୁକୁ ଜାଣୁ ଜାଣୁ ନେଲା ଧରି
ଘରେ ନେଇଣ ରଖିଲା କାଳପ୍ରାୟ କରି ।
ଏହାକୁ କେସନ କାଳ ନ ଘୋଟନ୍ତା ଆସି
ଏମନ୍ତ ବୋଲି କହିବେ ଲୋକେ ସିନାହସି ।
ମୁଁ ଆଜ ବୁଲାଇ ଦେଖି ଛେଚିବି ଏହାକୁ
ତଳେ ପଡ଼ି ବାଳକର ଭାଜିଯାଉ ବୁକୁ ।
ଏତେ ପାଞ୍ଚିଣ ବୁଲାଏ ଦୈତ୍ୟକୋପାନଳେ
ଛେଚିଲା ଖଟ ସହିତେ ଉଁଙ୍ଗି ଦେଇ ତଳେ ।
ଉର୍ଦ୍ଧ୍ୱ ଆକାଶୁ ଆସନ୍ତେ ହରିଶୂନ୍ୟ ଗଡ଼ି
ଦେଖି ଦଇତ୍ୟ ବୋଇଲେ ପୁତ୍ର ମଲାପଡ଼ି ।
କେଡ଼େ ଅଭାଗ୍ୟ କରମେ ଥିଲାଏ ଉପୁଜି
ନୋହିଲେକି ପିତାମାତା ପଳାଇଲେ ତେଜି ।
ପୁଣିହିଁ ଆମ୍ଭର ରାଜା ନେଉଥିଲେ ଧରି
ତହିଁକି ଏହାର କର୍ମ ହେଲା ହତଶିରୀ ।
ଅବଶ୍ୟ ମଲା ବାଳକ ଶୂନ୍ୟମାର୍ଗୁ ଖସି
ମିଳିଲେ ବିଷ୍ଣୁ ଏମନ୍ତ ପାଞ୍ଚୁତଳେ ଆସି ।
ଦିଶନ୍ତି ସହସ୍ର ଗୁଣେ ତାଙ୍କ ଶୋଭାକର
ତଳେ ପଡି ଲୋମେବଙ୍କା ନୋହିଲା ଶରୀର
ବୁଝିଲେ ଚଉଦପୁର ପୂରିଛି ଯା କାୟେ
ତହିଁକି ଚାହିଁଲେ ସ୍ୱାମୀ ଦିଶନ୍ତି ସେଠାଏ ।
ଜ୍ଞାନୀଜନମାନଙ୍କର ମହିମା ଏମନ୍ତ
ଦୁଷ୍ଟଲୋକଙ୍କୁ ଶ୍ରୀହରି ଦିଶନ୍ତି ବାଳୁତ ।
ଏଥୁଉତ୍ତାରେ ବସନ୍ତେ ହରି ଭୂମିଭାଗେ
ଧାଇଁଯାଇଣ ଅସୁରେ ବେଢ଼ିଲେ ଚୌଦିଗେ

ଗୋବିନ୍ଦ ବୋଇଲେ ତୁମ୍ଭେ ଅଟ କେଡ଼େ ରାଢ଼
ବାଳକ ଗୋଟିକି ଅଶୀସସ୍ର ଲୋକ ବେଢ଼ ।
ବାଳପୁତ୍ର ବୋଲିଣ ନକଲ କେହୁ ଦୟା
ଅର୍ଦ୍ଧଆକାଶରୁ ଧରି ଛେଚିଲ ମୋ କାୟା ।
ଧର୍ମ ଥିବାରୁ ମୁଁ ବଞ୍ଚିଗଲି ଦେହ ଘେନି
ଏହା ଶୁଣି ଆଚମ୍ବିତ ହେଲା ମୁର ପୁଣି ।
ଉଚ୍ଚେ ଦଇତ୍ୟ ବୋଇଲା ଶୁଣରେ ଛେଉଣ୍ଡା
ମୂଳଗଣ୍ଡି ପାଡ଼ି ତୁହି ଜନ୍ମୁ ବଡ଼ତୁଣ୍ଡା ।
ନୋହିଲେ ଏଡ଼େ ନଗରେ ଥିଲୁ ଏକା ହୋଇ
ମାତାପିତା ମଲେ ତୋର ନାହାନ୍ତି ନା କେହି
ବର୍ଷକ ପିଲା କି କହୁଅଛୁ ଏତେ ବୁଦ୍ଧି
ତୁ ଛେଉଣ୍ଡା ନୋହୁ ନର ଅଟୁ ଦୟାନିଧି ।
ତୋତେ ନ ମାଇଲେ ମୁଁ ନ ଯାଇ ଏଥୁ ଆଜ
ଏତେ ବୋଲି ରଥୁ ଡେଇଁ ପଡ଼ିଲା ଦନୁଜ ।
ଦେଖିକରି ମାୟାଧର ଗଲେ ମାୟା ହୋଇ
ଲେଉଟିଣ ଦେଖାଦେଲେ ଖଣ୍ଡେଦୂରେ ଯାଇ
ଲୋଡ଼ନ୍ତେ କାହିଁ ବାଳକ ବୋଲି ମୁରଦୈତ୍ୟ
ଦେଖିଲା ପୁଣି ଆଗରେ ବସିଛି ବାଳୁତ ।
ଏହୁଟିରେ ବୋଲିକରି ଧାଇଁଲା ନିରାଶି
ତାହା ଦେଖି ମହାପ୍ରଭୁ ଟହ ଟହ ହସି ।
ଅସୁର ଗୋଡ଼ାନ୍ତେ ଅନ୍ତର୍ଦ୍ଧାନ ହେଲେ ହରି
ଲେଉଟିଣ ଦେଖାଇଲେ ଶଙ୍ଖ ଚକ୍ରଧାରୀ ।
ଦେଖିକରି ମୁରାସୁର ଆଚମ୍ବିତ ହେଲା
ପ୍ରତ୍ୟକ୍ଷେ ନାରାୟଣ ଏ ବୋଲି ବିଚାରିଲା ।
ଏହାକୁ ନ ମାଇଲେ ତ ନାହିଁ ମୋର ଯଶ
ଏତେ ବୋଲି ଲେଉଟିଣ ଧାଇଁଲା ରାକ୍ଷସ ।
ମୁର ଗୋଡ଼ାନ୍ତେ ପଳାଇଗଲେ ହରି ଯହୁଁ
ତୁଚ୍ଛା କଟକେ ପଶିଲେ ଯାଇଁ ଚାହୁଁ ଚାହୁଁ ।
ଦୈତ୍ୟ ତହୁଁ ପଛେ ପଛେ ଅଛଇ ଗୋଡ଼ାଇ
ଧଇଲା ପରାୟେ ମଣି ମିଳେ ପାଶେ ଯାଇ ।
ଧରୁ ଧରୁ ହସ୍ତୁ ଖସିଗଲେ ଭଗବାନ
ଏ ଘରୁ ସେ ଘର ଯାଇ ଲୁଚିଲେ ମୋହନ ।
ଦେଖି କରି ମୁରଦୈତ୍ୟ ହେଲା ଆଚମ୍ବିତ
ବୋଇଲା ବାଳକ ଏହୁ ଅଟଇ ଅଚ୍ୟୁତ ।
ନୋହିଲେକ ଏତେ ଭାରା ହୋନ୍ତା ମୋର ମୁଣ୍ଡେ
ଗୋଡ଼ାଇଣ ଧରୁ ଧରୁ ପଳାଉଛି ଦାଣ୍ଡେ ।
ସୈନ୍ୟଙ୍କୁ ବୋଲେ କଟକ ବେଢ଼ି ତୁମ୍ଭେ ରହ
ଯାହା ହାତେ ପଡ଼ିବ ସେ ମୋତେ ଆଣି ଦିଅ
ନିର୍ବନ୍ଧ କରିଣ ଏବେ ଏ ପୁରକୁ ଜଗ
ତାକୁ ନ ଧରିବା ଯାଏ ନାହିଁ ଭକ୍ଷ୍ୟ ଭୋଗ ।
ବଡ଼ ମାୟାବୀ ବାଳକ ଅଟଇଟି ଏହି
ମିଛେଣ ବାଳକ ପ୍ରାୟେ ଠକୁଅଛି ଶୋଇ ।

ଆମ୍ଭର ବଇରୀ ମୋର ଅଟେ ଏହୁ ଜାଣ
ଯାକୁ ନ ମାଇଲେ ମୋର କିବା ନୃପରାଣ ।
ବ୍ରହ୍ମାତ ପୂର୍ବେ ମୋତେ ଯେ କହିଥିଲେ କର୍ଣ୍ଣେ
ପାଇବ ହରିକି ମାରୁଥିବ ସବୁଦିନେ ।
ନୋହିଲେ ନିଶ୍ଚୟ ତୋର ଅକାଳ ମରଣ
ହୋଇବ ଏ କଥା ତୁହି ଧରିଥିବୁ ମନ ।
ଆଜ ପଡ଼ିଲେ ମୋଡ଼ନ୍ତି ଧରି ତାର ମୁଣ୍ଡ
ଏତେ ବୋଲିଣ ବୁଲଇ ମୁର ରାଜଦାଣ୍ଡ ।
ରାଜା ଆଜ୍ଞାରେ ବେଢ଼ିଲେ ସୈନ୍ୟ ଶତେ ପୁର
ନଗର ପୁର ମଣ୍ଡପ ବୁଲେ ଖୋଜି ଚାର ।
ଜଗତୀ ଅଟ୍ଟାଳି ଆଢ଼େ ତିହାଡ଼ି ଯେ ମେଲା
ବାର ଗଳି ବାଡ଼କନ୍ଦି ପ୍ରାଙ୍ଗଣେ ଖୋଜିଲା ।
ଦୁଇମୁହିଁ ଆଡ଼ମୁହିଁ ଲଙ୍କାମୁହିଁ ନାଳ
ଆଟଶାଳ ପଟଭାଡ଼ି ଘର ଓଳିତଳ ।
ତୁଚ୍ଛା କଟକ ବୋଲିଣ ଦେଖି ଦୈତ୍ୟନାଥ
କାହିଁ ନ ଦେଖିଲା ଖୋଜି ମାୟାବୀ ବାଳୁତ ।
ଶୂନ୍ୟ ଘରଗୁଡ଼ା ଏକା ଆସି ସବୁଲୋଡ଼ି
ବୋଇଲା ସୈନ୍ୟମାନଙ୍କ ଘର ଦିଅ ପୋଡ଼ି ।
ଏହୁ କଟକେ ବାଳୁତ ସିନାଗଲେ ପଶି
ଯହିଁଥିଲେ ପୋଡ଼ିମରୁ ଅନଳରେ ଧ୍ୱଂସି ।
ସେ ମଲେ ରାଜ୍ୟ କଳଙ୍କ ସରିଯିବ ପୁଣି
ତେବେ ମୁଁ କାଳକୁ ରହିଥିବି ଦେହଘେନି ।
ଶୁଣି ସେନାମାନେ ଧାଇଁଗଲେ କୋପଭରେ
ଲଗାଇଲେ ଅଗ୍ନିନେଇ କଟକ ଭିତରେ ।
ଉଠିଲା ମହାଅଗ୍ନି ଯେ ହୋଇ ଜଉହୁଳା
ପୋଡ଼ିଣ ଦିଶିଲା ଠାବେ ଠାବେ ସବୁ କଳା ।
ଦୈତ୍ୟଙ୍କର ଦୁଷ୍ଟବୁଦ୍ଧି ଦେଖି ନାରାୟଣ
ଗୁପତରେ ରହୁଥିଲେ କଟକ ମଧ୍ୟେଣ ।
ମନେ ମନେ ବିଚାରକରି ସେ ଦଇତ୍ୟାରି
ବୋଇଲେ ଏଦେହେ ଦଇତକୁ ନୋହେ ମାରି
ମଞ୍ଚରେ ଅବଶ୍ୟ ଜନ୍ମିବା ତ ଦେହ ବହି
ମାନବ ଦେହେ ତାମସ ସିନା ଜାତ ହୋଇ ।
ଏ ଦେହରେ ମୋର ଷଡ଼ ଅଇରୀ ବର୍ଜିତ
ତଥାପି ମାରନ୍ତି ବଳେ ଅକ୍ଷେ ଯିବ ହତ ।
ଥାଅ ଥାଅ ଦଇତ୍ୟରେ ଦିନାକେତେ ବର୍ତ୍ତି
ଅବଶ୍ୟ ମଞ୍ଚରେ ମୁହିଁ ହେବି ଉତପତ୍ତି ।
ତେବେ ଯାଇ ତୋତେ ସିନା କରେ ମୁହିଁ ହତ
ଏତେ ପାଞ୍ଚି ବୈକୁଣ୍ଠକୁ ଚଳିଲେ ଅଚ୍ୟୁତ ।
ମାୟାରେ ମହାପ୍ରଭୁ ସେ ପୁରଗଲେ ଲେଛି
ଅସୁରଙ୍କୁ ଗୋଚର ଏ କଥା ନାହିଁ କିଛି ।
କଟକ ବେଢ଼ିଣ ମାତ୍ର ପୋଡ଼େ ଚାରିଖାନି
ନ ଲାଗିଲା ଘରେ ନେଇ ଲଗାଅନ୍ତି ଅଗ୍ନି ।
ଧୂମାନ୍ତ କରି ସେ ସବୁ ପୁରଦେଲେ ଜାଳି
ନବଲକ୍ଷ ଘରଯାକ ହେଲା ଭସ୍ମ ଧୂଳି ।
ତା ଦେଖି ମୁର ଦଇତ୍ୟ ହୋଇଲା ସନ୍ତୋଷ
ବୋଇଲା ଏବେରେ ସେହି ପୁତ୍ର ହେଲା ନାଶ
ମୋତେ ନ ମାନିଅଖଡ଼େ ସେହି ପୋଡ଼ି ମଲା
ପୁତ୍ର କିବା ବିଷ୍ଣୁ କିବା କଳଙ୍କ ମୋ ଗଲା ।
ଏତେକ ବୋଲିଣ ମୁର ବସେ ରଥେ ଯାଇ
ସୈନ୍ୟକୁ ବୋଲଇ ରାଜ୍ୟେ ଚାଲ ସଜହୋଇ
ଜୟ କଲା ସ୍ଥାନେ କେବେ ନ ରହିବା କ୍ଷଣେ
ଏ କଥା ମୁନିଏ ଲେଖିଅଛନ୍ତି ପୁରାଣେ ।
ଏବେ ମୁଁ ଜିଣିଲି ସପ୍ତଦ୍ୱୀପ ବାହୁବଳେ
ଆଉ କେହୁ ସମ ମୋତେ ଅଛନ୍ତି ମଣ୍ଡଳେ ।
ବିଷ୍ଣୁଙ୍କୁ ତ ଦେଖିଲି ମୁଁ ମଲା ପୋଡ଼ି ଆଜ
ଆଉ ଲୋକଙ୍କର ଅଛି ଅବା କେଉଁ କାର୍ଯ୍ୟ ।
ଈଶ୍ୱରଙ୍କୁ ଡରନ୍ତି ସେ ମୋର ବରଦାତା
ବ୍ରହ୍ମାଙ୍କୁ ଡରନ୍ତି ସେ ମୋର ଅଟେ ପିତା ।
ଅଗ୍ନିତ ଲେଖା ରେ ମୋର ଅଟେ ଜ୍ୟେଷ୍ଠଭାଇ
ସେବାରେ ତ ଦଶଦିଗପାଳେ ଛନ୍ତି ରହି ।
ଏକମାତ୍ର ନ ମାନିଣ ଅଛି ଇନ୍ଦ୍ର ସ୍ୱର୍ଗେ
ଏଠାରୁ ଗଲେ ଆଣିବ ଧରି ତାକୁ ବେଗେ ।
ଏମନ୍ତ ବୋଲିଣ ମୁର ପାଞ୍ଚେ ରଥେ ବସି
ତାହାର ବିଚାରଯାକ ଜାଣି ହୃଷୀକେଶୀ ।
ସମୁଦ୍ରକୁ ବୋଇଲେ ତୁ ବେଗେ ଆସ ମାଡ଼ି
ଅସୁର ପଳାନ୍ତୁ ଦେଖି ତୋତେ ଏଥୁ ହୁଡ଼ି ।
ସର୍ବଦା ଜୟାଯାଇ କ୍ଷୀରଅବ୍ଧି ବୋଲି
ଆଜହୁଁ ଏଠାକୁ ଦୈତ୍ୟ ନ ଆସିବେ ଚାଲି ।
ଏ ବୈକୁଣ୍ଠପୁର ତାଙ୍କୁ ହୋଇବ ଅଦୃଶ୍ୟ
ଏହିରୂପେ ବରୁଣକୁ କହି ଜଗଦୀଶ ।
ସେହିଦିନୁ ସେହିପୁର ଅଦୃଶ୍ୟ ହୋଇଲା
ଅସୁରକୁଳକୁ ଜଣା କେବେ ହେଁ ନ ଗଲା ।
ବରୁଣ ଅଇଲା ଶୁଣିକରି ବେଗେ ମାଡ଼ି
ବଇକୁଣ୍ଠ ଚାରିପାଖେ ରହେ ସବୁ ବେଢ଼ି ।
ରହନ୍ତେ ଘୋର ଗର୍ଜ୍ଜନ କରି ଦିଗପୂରି
ତାହା ଦେଖି ମୁରାସୁର ମନ୍ତ୍ରୀକି ପଚାରି ।
ବୋଲେ ଏ ସମୁଦ୍ର କାହିଁକିରେ ଦିଏ ରଡ଼ି
ବଣ ଡିଙ୍ଗର ପର୍ବତ ଆସୁଛି କି ମାଡ଼ି ।
ସୁବିଜ୍ଞ ମନ୍ତ୍ରୀ ବୋଇଲା ଶୁଣ ଦୈତ୍ୟ ନୃପ
ଏ କଟକ ପୋଡ଼ିବାରୁ ସମୁଦ୍ରର କୋପ ।
ଚାଲବେଗେ ଏଥୁ ଆମ୍ଭେ ପଳାଇବା ଛାଡ଼ି
ମରିବା ସିନା ସମୁଦ୍ର ମାଡ଼ିଗଲେ ବୁଡ଼ି ।
ଏହା ଶୁଣି ମୁରାସୁର ହସେ ଟହ ଟହ
ବୋଲେ ଏ ଛାରକୁ ଡରିଥିବା କେହ୍ନେ କହ ।

ଦେଖ ଏ ସମୁଦ୍ରକୁ ମୁଁ ପକାଇବି ଶୋଷି
କେଉଁ ବାପ ତାହାର ରଖିବ ଏବେ ଆସି ।
ଏତେ କହି ମୁରାସୁର ଦେଇ ଘୋର ରଡ଼ି
ଲକ୍ଷେ ଯୁଣ ଓସାରରେ ଉଠେ କାୟାବଢ଼ି ।
ସମୁଦ୍ରକୁ ଚାହିଁ ଚକ୍ଷୁ କଲା ରଟ ମଟ
ଦନ୍ତପାଟି ଭିଡ଼ି ଦୋହଲାଇ ନାସାପୁଟ ।
ବାହୁ ବେନି ବିସ୍ତାରିଣ ଉଠେ ଶିରଟେକି
ଡ଼ାକିଲା କିରେ ସମୁଦ୍ର ମୋତେ ନ ଜାଣୁକି ।
କେହୁ ରକ୍ଷା କରିବରେ ଆଜ ଦେଖି ତୋତେ
ମୋଠାରୁ ବଳିଷ୍ଠ ହୋଇଅଛି କେ ଜଗତେ ।
ଏକ ନିଃଶ୍ୱାସକେ ତୋତେ ଯିବି ଆଜ ଶୋଷି
ଦେଖିବା କେଉଁ ବାପ ତୋ ରଖିବରେ ଆସି ।
ଏତେ ବୋଲିଣ ଧାମନ୍ତେ ମୁର କୋପାନଳେ
ଶୁଣି ବରୁଣ ନମିଲା ଆସି ପାଦତଳେ ।
ଗୁଡ଼ାଏକ ଅଷ୍ଟରତ୍ନ ରକ୍ଷେଦେଲା ଆଣି
କାର୍ପଣ୍ୟ କରିଣ କହେ ଶୁଣ ଦୈତ୍ୟମଣି ।
ତୁହି ଯେ ସପ୍ତଦ୍ୱୀପରେ ଏକ ଚକ୍ରବର୍ତ୍ତୀ
ତୋହର ହିତରେ ଆମ୍ଭେମାନେ ଥାଉନିତି ।
ଏବେ ଯେ ତୋହର କାର୍ଯ୍ୟ ଆସୁଥିଲି ମାଡ଼ି
ତହିଁର କଥା ଶୁଣହେ କହୁଛି ବାହୁଡ଼ି ।
ଆପଣ ଯେ କଟକକୁ ଦେଲ ପରା ଦହି
ତହିଁରେ ଶ୍ରୀ ନାରାୟଣ ଥିଲେ ପରା ଶୋଇ ।
ମାୟା ହୋଇ କାହିଁରେ ସେ ଲୁଚିଥିଲେ ବୋଲି
ତେଣୁ ମୁଁ ଜଳ ଘେନିଣ ଆସୁଥିଲି ପେଲି ।
ରହିବି କଟକଯାକ ମାଡ଼ିବୋଲି ଜଳ
ତେଣୁ କରିଣ ଆସିଲି ଶୁଣ ନୃପଶୀଳ ।
ଜଳ ମାଡ଼ିଗଲେ ବିଷ୍ଣୁ ରହନ୍ତା ଯେ ରୁନ୍ଧି
ତେବେ ସିନା ତୋହରଟି ହନ୍ତା କାର୍ଯ୍ୟସିଦ୍ଧି ।
ନୋହୁ ପଛେ ଏକଥା ମୁଁ ଯାଉଅଛି ଘୁଞ୍ଚି
ଆପଣଙ୍କୁ ଯେବେ ଏହା ନ ଯୋଗାଏ କିଛି ।
ଶୁଣିଣ ମୁର ଦଇତ୍ୟ ହେଲା ହସ ହସ
ବରୁଣ ଦେବତାଙ୍କୁ ସେ ପୂଜିଲା ବିଶେଷ ।
ବୋଇଲା ବସିବୁ ଏହି ନଗ୍ର ଯେବେ ମାଡ଼ି
ମୁଁ ଏଥୁ ଯିବା ପର୍ଯ୍ୟନ୍ତ ପାଦ ନ ଥା କାଢ଼ି ।
ବିଷ୍ଣୁ ମରିଲା ବୋଲିଣ ଅଛି ମୁହିଁ ଜାଣି
ତହିଁରେ ତେବେ ତ ଘୋଟି ରହିଥାଅ ପାଣି ।
ଏତେ କହିଣ ଅସୁର ସୈନ୍ୟ ଘେନି ସଙ୍ଗେ
ଆପଣ ରାଜ୍ୟକୁ ବୋଲି ବାହାରିଲା ବେଗେ
ଅସୁରେ ଯେ ଦେଖୁ ଦେଖୁ ମାଡ଼ିପଡ଼େ ଜଳ
କ୍ଷୀର ବୈକୁଣ୍ଠକୁ ମାଡ଼ି ରହିଲା ପାତାଳ ।
ଦୃଷ୍ଟକୁ ଅଦୃଶ୍ୟ ହେଲା ବଇକୁଣ୍ଠ ପୁର
କହୁ କହୁ ବାହାରିଣ ଆସେ ମୁରାସୁର ।
ଆପଣେ ଜମ୍ବୁଦ୍ୱୀପରେ ହୋଇଲା ପ୍ରବେଶ
ଶ୍ରୀହରି ପାଦେ ଶରଣ ପୀତାମ୍ବର ଦାଶ ।



## ନାରଦ ମୁରାସୁର ନିକଟକୁ ଗମନ ଓ ବିଡ଼ୋଜାଠାରୁ ଇନ୍ଦ୍ର ନୀଳମଣି ଗ୍ରହଣର ଉପଦେଶ

ଏଥୁ ଅନନ୍ତରେ ମୁର ଦାରୁଣ ବିଚାର
ଶୁଣ ହେ ନାରଦ କହୁଛନ୍ତି ବେଦବର ।
କନକବତୀ ଅଟେ ଆମ୍ଭର ଦ୍ୱିତୀସ୍ୱର୍ଗ
ମଦନାବତୀକି ଘେନି କରେ ବଇଭୋଗ ।
ପାତ୍ରମନ୍ତ୍ରୀ ସେନାପତି ସୈନ୍ୟ ସେନାମୂଳେ
ବିହରିଲେ ସାତଦ୍ୱୀପେ ମୁରାସୁର ବଳେ ।
ଅସୁରଙ୍କ ଉପଦ୍ରବ୍ୟ ମଧ୍ୟପୁର ଯାକ
ସ୍ୱର୍ଗ ଭୁବନକୁ ବୋଲି ପଡ଼ଇ ଚମକ ।
ଭାଳନ୍ତି ଦେବତାଏ ଯେ ଯାହାଠାବେ ବସି
ବୋଲନ୍ତି ଉତ୍ପାତ ଏତେକାଳେ ହେଲା ଆସି ।
ବୁଝିଲେ ସପତ ଦ୍ୱୀପ ହେଲା ଦୈତ୍ୟଭୋଗ
ନପୁଣ ମାଡ଼ି ଆସିବେ ଏବେ ପରା ସ୍ୱର୍ଗ ।
ଏମନ୍ତ ବୋଲି ଭାଳନ୍ତି ଦେବେ ମନେ ବସି
ନାରଦ ଭ୍ରମଣ କଲେ ସ୍ୱର୍ଗଯାକେ ଆସି ।
ପୁରେ ପୁରେ ସଂହରିଣ ବୁଝୁଁ ସର୍ବ ମନ
ଜମ୍ବୁଦ୍ୱୀପକୁ ବିଜୟ କଲେ ତପୋଧନ ।
ଦଇବେ ଦେବ ଡଗର ବ୍ରହ୍ମାଙ୍କର ଶିଷ୍ୟ
ନୃତ୍ୟରଙ୍ଗ ବୀଣା ନାଦେ ମୋହନ୍ତି ତ୍ରିଦଶ ।
ମିଥ୍ୟା ତ କହନ୍ତି ସେହି ସଦା ସତ୍ୟଭାଷୀ
କଳହ ଲାଗନ୍ତି ସତ୍ୟେ ବହୁଲୋକ ବସି ।
ନଜାଣି ମିଥ୍ୟା କହନ୍ତି ଲୋକେ ଋଷିବାଣୀ
ଭଣ୍ଡ ବୋଲନ୍ତି ମଣୁଛି ସୁବାକ୍ୟକୁ ଶୁଣି ।
ଯେଉଁ ଠାବକୁ ନାରଦ ତୁଷ୍ଟେଯାନ୍ତି ଚଳି
ସେଠାବରେ ସତ୍ୟକହି ଲଗାବନ୍ତି କଳି ।
ଏମନ୍ତ ମହିମା ସେ ନାରଦ ତପୋବନ୍ତ
କଷାବସନ କୌପୀନ ଶୋହେ ଜଟାମାଥ ।
ବାମକରେ ବୀଣାଦଣ୍ଡ କାଖରେ ଅଧାଟି
କ୍ଷଣକେ ବୁଲନ୍ତି ମନକଲେ ମନସୃଷ୍ଟି ।
ଯେଉଁପୁରେ ମହାମୁନି ନ ଦେଖିଲେ ଖଳ
ଦଣ୍ଡେ ନରହି ଚଳନ୍ତି ତହୁଁ ତପଶୀଳ ।
ଯେବଣ ପୁରେ ଦେଖନ୍ତି ଯାର ପୁଣି କଳି ।
ଲାଗୁରେ ଲାଗୁ ବୋଲିଣ ମାରି କରତାଳି ।
ମୁଣ୍ଡାରୁ ଧୂଳି ଝାଡ଼ିଣ ମାରନ୍ତେ ମୁଠାଏ
ଏସନ ନୋହିଲେ ପେଟ ଫୁଲାଟି ନଯାଏ ।

ନୃତ୍ୟ ବହୁରୂପ ବୀଣା କରତାଳି ପ୍ରତି
ଖେଳନ୍ତି ଘଡ଼ିଏ ତହିଁ କଉତୁକେ ମାତି ।
ଜୟ ତୁ କଳହପ୍ରିୟ ପଦ୍ମଯୋନି ଶିଷ୍ୟ
ବିପ୍ର ପୀତାମ୍ବର ଦାଶ ତୁମ୍ଭପାଦେ ଆଶ ।
ଏମନ୍ତ ବୁଲି ବୁଲିଣ ଆସନ୍ତି ନାରଦ
ମଧପୁରେ ଯାଇକରି ଦେଖିଲେ ପ୍ରମାଦ ।
ଜନଜନ୍ତୁ ମନୁଷ୍ୟଗୋ ବିପ୍ର ଆଦିକରି
ଏମାନେ ନ ଦେଖିଲେତ ଦୈତ୍ୟଛନ୍ତି ପୂରି ।
ଯହିଁ ଚାହିଁଲେ ଯେ ତହିଁ ଦିଶନ୍ତି ରାକ୍ଷସ
ପାଞ୍ଚିଲେ ଦଇତେ ରଖି ନାହାନ୍ତି ମନୁଷ୍ୟ ।
ପୃଥିବୀକି ବଡ଼ ଭାରା ହେଲେ ଦୈତ୍ୟଆସି
ଜାଣି ନ ପାରିଲେ ଏହି କଥା ସ୍ୱର୍ଗବାସୀ ।
ଆମ୍ଭେ ତେବେ ଏଥରକ ଲଗାଇବା କଳି
ତେବେ ମଞ୍ଚରେ ଜନମ ହେବେ ବନମାଳୀ ।
ଅସୁରମାନଙ୍କୁ କହିଦେବା ମୃତ୍ୟୁଭେଦ
ଏତେପାଞ୍ଚି ମୁରପାଶେ ମିଳିଲେ ନାରଦ ।
ଖଣ୍ଡେ ଦୂରରୁ ମୁନିଙ୍କୁ ଦେଖି ମୁରାସୁର
ଆସନରେ ବସାଇଲା କଳି ପ୍ରିୟବର ।
ଷଡ଼ ଅର୍ଘ୍ୟ ବେଇଣ ସେ କଲା ପାଦପୂଜା
ବୋଲେ କି ଅର୍ଥେ ଆସିଲ କହ ବ୍ରହ୍ମଦ୍ୱିଜା ।
ନାରଦ ବୋଇଲେ ତୁମ୍ଭେ ଶୁଣ ଦୈତ୍ୟନାଥ
ଆପଣଙ୍କ ଶୁଭବାର୍ତ୍ତା ପାଇ ଆମ୍ଭେ ଏଥ ।
ସପ୍ତଦ୍ୱୀପ ଜାଣିବାର ବାର୍ତ୍ତା ଆମ୍ଭେ ପାଇ
ପାଞ୍ଚିଲୁ ଅପୂର୍ବ ଦ୍ରବ୍ୟ ଆଣିଥିବ ଭାଇ ।
ଆମ୍ଭେ ଯେତେ ବ୍ରହ୍ମାଠାରୁ ଜନ୍ମିଲୁ ଅନେକ
ତୋରପରା ବଳବନ୍ତ ନାହିଁକେ ବାଳକ ।
ଶ୍ରୀବହ୍ମା ଋଷିଗଣରେ ଗଲା ଆମ୍ଭ କାଳ
ତୁ ଏକା ରଖିଲୁ ପିତା ନାମ ରବିତଳ ।
ବୀରପୁତ୍ର ଜନମିଲେ ପିତା ନାମ ପଡ଼େ
ଧନ୍ୟ ଧନ୍ୟ ବୋଲି ବୋଲୁଥାନ୍ତି ସବୁଆଡ଼େ
ଦିଅନ୍ତି କୁପୁତ୍ର ଜନମିଲେ ସର୍ବେ ଶାପ
ବୋଲନ୍ତି ସଂସାରୁ କେବେ ଯିବ ଏହୁ ପାପ ।
ଏମନ୍ତ ବୋଲିଣ କେହୁ ନ ସହନ୍ତି ତାକୁ
ଚଡ଼କ ପଡୁ ବୋଲିଣ ଜଣାନ୍ତି ଧାତାକୁ ।
ଏମନ୍ତ ବୋଲିଣ ସର୍ବେ ଜନ୍ମିଲେ କୁପୁତ୍ରେ
ତୁ ଏକା ସୁପୁତ୍ର ହୋଇ ଜନ୍ମିଲୁ ଜଗତେ ।
ନୋହିଲେ ଚମକ ତୁମ୍ଭ ନାମ ଏଡ଼େ ଏଡ଼େ
ମେରୁ ମନ୍ଦର ଯେ ଭାସିଯିବ ତୋର ଦାଢ଼େ ।
ଏମନ୍ତ ବୋଲି କହନ୍ତେ ଋଷି କରି ସ୍ନେହ
ଏହା ଶୁଣି ମୁରାସୁର ହସେ ଟହ ଟହ ।
ସପ୍ତଦ୍ୱୀପ ଜିଣିବାରେ ଯେତେକ ବୃତ୍ତାନ୍ତ
ହରଷେ କହଇ ମୁନି ଆଗେ ମୁର ଦୈତ୍ୟ ।
ଅସୁର ବୋଇଲା ଆହେ ଶୁଣିମା ନାରଦେ
ପ୍ରଥମେ ଜିଣିଲି ଜମ୍ବୁଦ୍ୱୀପ ଘୋରନାଦେ ।
ସମସ୍ତ ଅସୁର ଆସି ଖଟିଲେ ମୋ ପାଶ
ତହିଁ ଉତ୍ତାରୁ କହିବି ଶୁଣ ବ୍ରହ୍ମଶିଷ ।
କ୍ରୌଞ୍ଚଦ୍ୱୀପକୁ ମୁଁ ଜିଣିଗଲି ବାହୁବଳେ
ମୋହନାସୁରକୁ ଜିଣି ରଖି ପାଦତଳେ ।
ପ୍ଲକ୍ଷଦ୍ୱୀପରେ ଯାଇଣ ମିଳିଲି ଲେଉଟି
ତ୍ରିମୁଣ୍ଡା ଜିଣି ଆଣିଲି ପୁତ୍ର ଦୁଇଗୋଟି ।
ଚାଳିଶପଦ୍ମ ସଇନି ଅଛି ସଙ୍ଗେ ଧରି
ସର୍ବ ଅଙ୍ଗନା ଷୋଡ଼ଶୀବର୍ଷୀ ଯୁବା ନାରୀ ।
ତାହାଙ୍କର ତୁଲେ ଲାଗି କେହିନାହିଁ ବର୍ତ୍ତି
ଦେଖିଲେ ହେଲେ ପଡ଼ିବ ମୋହେ ସୁରପତି
ଏହି ସକାଶୁ ତାହାଙ୍କୁ କେ ନ ପାରେ ଯୁଝି
ପ୍ରୀତି ଲଗାଇ ଆସିଲି ମାତ୍ରକଥା ବୁଝି ।
ତହିଁ ଉତ୍ତାରୁ ଶାଲ୍ମଳୀ ଦ୍ୱୀପ ପୁଣି ଗଲି
ଭୋପାଳ କେଶରୀକି ମୁଁ ଯାଇଣ ଭେଟିଲି ।
ମିଳିଲି ସେ ଦ୍ୱୀପଯାକ ଭ୍ରମି ତାରପୁରେ
କନ୍ୟାପାଇଁ ଲାଖ କରିଛନ୍ତି ସ୍ୱୟମ୍ବରେ ।
ସେ ଲାଖଶାଳରେ ଯାଇ ମିଳିଲି ମୁଁ ଜାଣ
ଦେଖିଲଇଁ ପାଞ୍ଚଲକ୍ଷ ଛନ୍ତି ନୃପରାଣ ।
କନ୍ୟା ନିମନ୍ତେ ମାତ୍ରକ ଥିଲେ ରୁଣ୍ଡ ହୋଇ
ଜଣେ ହେଲେ ଲାଖ ବିନ୍ଧି ନ ପାରିଲେ କେହି
ଏମନ୍ତ ସମୟେ ଯାଇ ମିଳିଲି ସଭାରେ
ମୋତେ ଦେଖିଣ ସେମାନେ ପଳାଇଲେ ଡରେ ।
ସେମାନେ ପଳାନ୍ତେ ମୁହିଁ ସଭା ଗଲି ଦେଖି
ଚାହିଁଲି ହାନ୍ଦୋଳପରେ ଅଛି ଶଶୀମୁଖୀ ।
ତାହାକୁ ଲାଖରେ ଜିଣି ଆଣିଲି ମୋ ପୁର
ଲେଉଟିଣ କୁଶଦ୍ୱୀପ ଗଲି ମୁନିବର ।
ବିଷ୍ଣୁ ମାଝିକି ମାରିଣ ଆଣି ସୂର୍ଯ୍ୟମଣି
ତହିଁ ଉତ୍ତାରୁ ପୁଷ୍କର ଦ୍ୱୀପେ ଗଲି ପୁଣି ।
ସେ ଦ୍ୱୀପ ଜିଣି ଶାକଲ୍ୟଦ୍ୱୀପେ ପୁଣି ଗଲି
ସେଠାରେ ଚକ୍ର ଗୋଟିଏ ପଡ଼ିଛି ଦେଖିଲି ।
ତାହାକୁ ଶସ୍ତ୍ରରେ ହାଣି କଟକେ ପଶନ୍ତେ
ଦେଖିଲି ପୁତ୍ର ଗୋଟାଏ ଶୋଇଛି କେମନ୍ତେ
ମନେ ପାଞ୍ଚିଲି କରିବି ଯାକୁ ନେଇ ପୁତ୍ର
ଏତେ ବୋଲି ବହି ତାର ଆଣୁଥିଲି ଗାତ୍ର ।
ଅବିଶ୍ୱାସପଣ ଦେଖି କଲା ସେ ମୋଠାରେ
ପର୍ବତ ପରାୟେ ମାଡ଼ି ବସିଲା ମଥାରେ ।
ସେ ମାଡ଼ି ବସନ୍ତେ ମୁହିଁ ପାଞ୍ଚେ ମନେ ମନେ
ବୋଇଲି ପ୍ରତ୍ୟକ୍ଷେ ଏହି ଅଟେ ଭଗବାନ ।
ବାଳୁତ ପୁଅ ହୁଅନ୍ତା ନିକି ଏଡ଼େ ଗରୁ
ଏତେ ବୋଲିଣ ତାହାକୁ ଛେଚିଲି ଶୂନ୍ୟରୁ ।

ଆକାଶରୁ ଖସିପଡ଼ି ନ ମଲା ସେ ଜାଣ
ପୁଣିହିଁ ପାଞ୍ଚିଲି ଏହୁ ଅଟେ ନାରାୟଣ ।
ଗୋଡ଼ାଇ ଧରନ୍ତେ ପୁଣି ପଶେ ଯାଇ ଘରେ
ସୈନ୍ୟଙ୍କୁ ବୋଇଲି ବେଢ଼ି ଜଗଯେ ଯାହାରେ
ଏମନ୍ତ ବୋଲି ଲୋଡ଼ିଲି ମୁହିଁ ଘରେ ଘରେ
କାହିଁ ସେ ରହିଲା ଲୁଚି ବାଲୁତ କୁମରେ ।
ସେହି କୋପରେ କଟକ ପୁଣି ଦେଲି ପୋଡ଼ି
ବିଷ୍ଣୁ ପୋଡ଼ିଗଲାରୁ ମୁଁ ଅଇଲି ବାହୁଡ଼ି ।
ରଖିଲି ଏତିକି ମାତ୍ର ଯଶ ରବିତଳେ
ଏହା ଶୁଣି ମହାଋଷି ହସି କୁତୂହଳେ ।
ନାରଦ ବୋଇଲେ ତୋର ସବୁକଥା ଯଶ
ବିଷ୍ଣୁଙ୍କୁ ତୁ ପୋଡ଼ିବାର ଅଟଇ ତ ମିଛ ।
ପବନରେ ଉଡ଼ଇ ଖଡଗେ ନ ଛିଡ଼ଇ
ଅନଳରେ ନ ପୋଡ଼ଇ ଜଳେ ନ ବୁଡ଼ଇ ।
ପିଟିଲେ କାଟିଲେ ଛେଚିଲେ ଯେ ନୁହେଁ ଚୂନା
ବାଟିଲେ ବାଟି ନୁହଇ ଏମନ୍ତ ଯା ବାନା ।
ପଚାଶ କୋଟି ପୃଥ୍ୱୀ ଯା ଲୋମକୂପେ ଜାତ
ସେ ମଲା ପୋଡ଼ିବୋଇଲେ କରିବତ ସତ ।
ମୁର ବୋଇଲା କହିଲୁ ମୁନି ଅସମ୍ଭବ
ମାନବ ଦେହ ଧରି କେ ପୋଡ଼ି ନ ମରିବ ।
ଯେବେ ବିଷ୍ଣୁ ଅନଳରେ ମରିବାର ମିଛ
ତେବେ ତୁମ୍ଭଙ୍କୁ ପୋଡ଼ିଣ ବୁଝିବା ପ୍ରତ୍ୟକ୍ଷ ।
ଯେବେ ତୁମ୍ଭ ଦେହ ପୋଡ଼ି ନ ଯିବ ଅଗ୍ନିରେ
ତେବେ ଜାଣିବା ଗୋବିନ୍ଦ ଅଛନ୍ତି ସଂସାରେ
ଏତେ ବୋଲି ଚୂହାଣକୁ ରାଇ ଆଜ୍ଞା ଦେଲା
କାଷ୍ଠ କୁଢ଼ାଇ ଅନଳ ଲଗାଅ ବୋଇଲା ।
ମୁରର ଦୁଷ୍ଟ ବୁଦ୍ଧିକୁ ଦେଖିଣ ନାରଦ
ମନରେ ପାଞ୍ଚିଲେ ଆସି ହୋଇଲା ପ୍ରମାଦ ।
ମୁହିଁ କିମ୍ପା ହୋଇ ହୋଇ ବୋଲି ନ କହିଲି
ଆପଣା ଇଚ୍ଛାରେ ଆସି ଏଥି ମୁହିଁ ମଲି ।
ଏହାକୁ କିମ୍ପାଇ ଆମ୍ଭେ କହୁଥାଉ ସତ
ମଲା ବୋଇଲା ସିନା ଏ ହୁଅନ୍ତା ଉସତ ।
ଏଣୁ ଦୁର୍ଜ୍ଜନସଙ୍ଗେ ନ ହେବ କେବେ ଗୋଷ୍ଠୀ
ଯଦ୍ୟପି ଗୋଷ୍ଠୀ ହେବଟି ବୋଲି ଥିବ ଖଟି ।
ମୂଢ଼ବୁଦ୍ଧି ଦେଖି କରିଥିବ ତାକୁ ଟେକ
ବୋଲିବାଏ ସଂସାରେ ତୁ ଅଟୁ କେଡ଼େ ଲୋକ
ଏମନ୍ତ ବୋଇଲେଣ ଯେ ପ୍ରାଣେ ଥିବ ରହି
ଆମ୍ଭ ଏ ଦୋଷୀ ସଙ୍ଗରେ କାହିଁ ଲାଗିବଇଁ ।
ବିଅର୍ଥେ ଆମ୍ଭଙ୍କୁ ପୋଡ଼ିଦେବ ପରା ଆଜ
ବଞ୍ଚାଇ କହିଲେ ଅବା ଦେଖିବ ଦନୁଜ ।
ଲାବଣ୍ୟ କହନ୍ତି ଏତେ ପାଞ୍ଚି ମୁନିବର
ବୋଲନ୍ତି ସାବଧାନେ ହୋ ଶୁଣ ମୁରାସୁର ।

ତୁହି ହେଲେ ଏ ସଂସାରେ ଏକ ଚକ୍ରବର୍ତ୍ତୀ
ଧରିଣ ମାଇଲେ ସତ ସିଦ୍ଧେ ଯେ ମରନ୍ତି ।
ବିଷ୍ଣୁ ମଲାର ପ୍ରମାଣ କଥା ସତ ସତ
ତୁହି ନ କହିଲେ ଏହା ଜଣା ନୁହନ୍ତାତ ।
ଏକଥା ଗୋଟି ମୁଁ ତ ନଥିଲି କାହିଁ ଶୁଣି
ଏବେ ଯାଇ ସବୁଠାରେ କହିବା ତୋ ବାଣୀ
ବିଷ୍ଣୁ ମଲା ମଲା ବୋଲି ଉଚ୍ଚେ ଦେବାଡ଼ାକ
ତେବେ ସିନା ତୋର ନାମେ ପଡ଼ିବ ଚମକ ।
ଶୁଣିକରି ମୁରାସୁର ହୋଇଲା ସନ୍ତୋଷ
ମୁନିଙ୍କର ପାଦେ ଯାଇ ନମିଲେ ଅଶେଷ ।
ନାରଦ ଭାବିଲେ ମୋର ବଡ଼ ଭାଗ୍ୟ ଆଜ
ପୋଡ଼ ବୋଲି ବୋଇଲା ଯାହା ସେ ଦନୁଜ ।
ଏବେ କିପରି ଏଠାରୁ ଚଳିଯିବି ମୁହିଁ
ତେବେ ଦୁଃଖ ନ ପାଇଲେ ଦୈତ୍ୟମରେ ନାହିଁ
ବିଷ୍ଣୁଙ୍କ ଆଗରେ ଯାଇ କରିବେ ଗୁହାରି
ତେବେ ସିନା ପୃଥିବୀରେ ପ୍ରଭୁ ଅବତରି ।
ନାଶିବେ ଏ ପାପୀ ଦଇତ୍ୟକୁ ଭଗବାନ
କଥାଏ କହିଲେ ଏତେ ପାଞ୍ଚି ମନେ ମନ ।
ନାରଦ ବୋଇଲେ ଆହେ ଶୁଣ ମୁରାସୁର
ରାଜ୍ୟରେ ଗୋଟିଏ ଦ୍ରବ୍ୟ ନ ଦେଖିଲେ ତୋର ।
ଆଣିଛ ସପତ ଦ୍ୱୀପ ଜିଣି ଯେତେ ଧନ
ଇନ୍ଦ୍ର ନୀଳମଣିକୁ ଏ ନୁହଇ ସମାନ ।
ତୋ ସୂର୍ଯ୍ୟମଣିକୁ ସେହି ଲକ୍ଷେ ଗୁଣେ ଶୋଭା
ସେହି ମଣି ସକାଶରୁ ଇନ୍ଦ୍ରର ଯେ ପ୍ରଭା ।
ମଣି ଘେନିଣ ଇନ୍ଦ୍ରର ଅଟେ ଇନ୍ଦ୍ରପଦ
ସେ ମଣି ଯଦ୍ୟପି ଆଣି ଲମ୍ବାନ୍ତୁ ତୋ ହୃଦ ।
କରନ୍ତୁ କୋଟିଏ ବାରଙ୍ଗନା ନିତ୍ୟେ ଭୋଗ
ଶୁଣିଣ ମୁର ଦୈତ୍ୟର ଉଲ୍ଲସଇ ଅଙ୍ଗ ।
ନାରଦଙ୍କୁ ବୋଇଲା ସେ ମଣି କାହିଁ କହ
ଶୁଣିଲା ବେଳରୁ ମୋର ସହୁନାହିଁ ଦେହ ।
ଋଷି ବୋଇଲେ ତେବେ ରେ ଶୁଣ ଦୈତ୍ୟ ସାଇଁ
ସେ ମଣି ସ୍ୱର୍ଗରେ ଇନ୍ଦ୍ର ଅଛଇ ଲମ୍ବାଇ ।
ସ୍ୱର୍ଗ ତାହାକୁ ଦିଶଇ ଆଲୋକର ମୟେ
ଦିଶଇ ସେ ତିନିପୁର ପାଖେ ଥିଲା ପ୍ରାୟେ ।
ସେ ମଣି ପ୍ରତିଜ୍ଞା ରାଜା କହେ ଶୁଣ ତୋତେ
ବସିଲା ମଣିକୁ ଧରି ଦିନେ ଇନ୍ଦ୍ର ହସ୍ତେ ।
ମନେକଲା ଏକବ୍ରହ୍ମ ଅଟନ୍ତି ତ ହରି
କେତେ ବର୍ଣ୍ଣ ହେଲେ ପୁଣି ଜାଣିବା କିପରି ।
ଏତେ ବୋଲିଣ ବାସବ ମଣିକୁ ଚାହାଁନ୍ତେ
ଦିଶିଲା ଛପନକୋଟି ବର୍ଣ୍ଣ ତାର ନେତ୍ରେ ।
ସୃଷ୍ଟି ସର୍ଜ୍ଜନା କାଳରୁ ଗୋଚର ନ ଥିଲା
ସେଠାରୁ ଛପନକୋଟି ବର୍ଣ୍ଣ ଜଣାଗଲା ।

ଜିଣିଲାକ ସେହି ମଣି ଲାଗି ତୋତେ ଇନ୍ଦ୍ର
ଖେଳେ ବସିନେଲା ଲଗାଇଣ ନାନାକେନ୍ଦ୍ର ।
ଏହାଶୁଣି ମୁରକୁ ଯେ ଲାଗେ ମଣି ମୋହ
ଖେଳକଥା ଚିତୋଇଣ ଉଠେ କରି କୋହ ।
ଆରକ୍ତ ପଦ୍ମ ପ୍ରାୟେକ କଲା ବେନି ଆଖି
ଛାଡ଼ିଲା ସ୍ୱର୍ଗକୁ ଏକ ରଡ଼ି ମୁଖଟେକି ।
ବାହାସ୍ଫୋଟ ମାରିଣ ସେ ହସ୍ତେ ନିଶମୋଡ଼ି
ନିଃଶ୍ୱାସ ଛାଡ଼ଇ ଘନଘନ ତଡ଼ବଡ଼ି ।
ଚମକି ପଡ଼ଇ ରଡ଼ିଘାତେ ଚତୁର୍ଦ୍ଦଶେ
ସ୍ୱର୍ଗରେ ଥାଇ କମ୍ପିଲେ ସକଳ ତ୍ରିଦଶେ ।
ମୁର ବୋଇଲା ନାରଦ ତପୋବନ୍ତ ଶୁଣ
ଲେଖି ଶ୍ରୀମୁଖ ପେଷିବି କାଲି ଦୂତ ଜାଣ ।
ମଣି ଯେବେ ସେ ଦେବଟି ଦୂତ ବୋଲିମାନି
ତେବେ ସେ ରହିବ ଇନ୍ଦ୍ରପଦେ ଦେବଘେନି ।
ନ ଦେଲେ କରିବି ସ୍ୱର୍ଗଯାକେ ଚୁରିକରି
ବସିବଇଁ ଇନ୍ଦ୍ରପଦେ ଶଚୀ କୋଳେ ଧରି ।
ଅମର ଭୋଗଯାକ ମୁଁ ବିଳସିବି ହେଳେ
ଯାବତ ଦିନକୁ କଥା ଥିବ ରବିତଳେ ।
ଏତେ ବୋଲିଣ ଅସୁର ଗର୍ଜ୍ଜେ ଘନ ଘନ
କମ୍ପଇ ରଡ଼ି ଘାତରେ ସକଳ ଭୁବନ ।
ମୁରର କ୍ରୋଧ ଦେଖିଣ ନାରଦ ମହର୍ଷି
ବୋଇଲେ ପୂରିଲା ଦୈତ୍ୟ ମୃତ୍ୟୁ ଏବେ ଆସି
ପାଇବେ ଏହାର ଲାଗି ଦେବ ବଡ଼ ଦୁଃଖ
ଦୁଃଖ ପାଇଲେ ଜନ୍ମିବେ ସିନା ପଦ୍ମମୁଖ ।
ଏବେ ତ ଦଇତ୍ୟ ଆସି କଲା କେତେ ଭୋଗ
ଲେଖନ୍ତେ ହୋଇଲା କାଳ ସସ୍ର ଗଣ୍ଡାଯୁଗ ।
ଦଇତଙ୍କଠାରେ ଦେବେ ପାନ୍ତୁ ଏବେ ଶାସ୍ତି
ମେଲାଣି ମାଗିଲେ ଏତେ ପାଞ୍ଚି ବ୍ରହ୍ମଯତି ।
ଦେଖୁ ଦେଖୁ ଅନ୍ତର୍ଦ୍ଧାନ ହେଲେ ତପୋବନ୍ତ
ପିତାଙ୍କ ଭୁବନେ ଯାଇ ମିଳିଲେ ତ୍ୱରିତ ।
ଜୟ ଜୟ ଶାରଳା ଗୋ ଅଭୟ ବରଦା
ଶରଣ ପଶେ ତୋ ପାଦେ ପୀତାମ୍ବର ସଦା ।



## ମୁରାସୁର ଇନ୍ଦ୍ରଙ୍କ ନିକଟକୁ ପତ୍ରଲିଖନ

ଶୁଣରେ ନାରଦ କହୁଛନ୍ତି ବେଦବର
ଆସ୍ଥାନ ମଉଳି ଉଠିଗଲା ମୁରାସୁର ।
ସେବକମାନେ ଧରିଲେ ଟେକି ବେନିବାହା
ଧୀରେ ଧୀରେ ନଗରକୁ ଗମେ ଦୈତ୍ୟନାହା
ଡାକୁଛନ୍ତି କୟେବାର ମଣିମା ମଣିମା
ମାଜଣାପୁରେ ମିଳିଲା ଯାଇ ଦୈତ୍ୟବ୍ରହ୍ମା ।
ସେବାକାରୀ ଜନମାନେ ହୋଇଲେ ଅନ୍ତର
ପରିବାରୀ ନାରୀ ଆସି ମିଳିଲା ସତ୍ୱର ।
ସୁବାସ ନୀରରେ ପାଦ ପଖାଳିଲେ ଆଣି
ପୋଛିଲେ ଝୀନବସନେ ଚରଣକୁ ପୁଣି ।
ହୀରାର ପୀଢ଼ା ଉପରେ ବସି ମହାରାଜା
ରତନ କଠାଉ ବେନି ପାଦୂ କଲା ତେଜ୍ୟା ।
ମର୍ଦ୍ଦନ ମାଜଣା ମୃଦୁସୁଲୀ ବେଗେ କଲେ
ଚତୁଃସମ ବାସ ଜଳେ ଦେହ ପଖାଳିଲେ ।
ଶ୍ରୀଅଙ୍ଗ ପୋଛିଲେ ଦିବ୍ୟବାସେ ଗଣିକାଏ
ଦେବାଙ୍ଗ ପାଟକୁ ଲାଗି ହେଲା ମହାରାୟେ ।
ଲେପିଲେ ଅଗରୁ ଚତୁଃସମ ନେଇ ହୃଦେ
ଦିବ୍ୟ ସୁବାସିତ ଫୁଲ ଗଭା ଶିରେ ବାନ୍ଧେ ।
ମାଜଣା ସାରି ମଣୋହିଠାକୁ କଲା ବିଜେ
ସୁବର୍ଣ୍ଣ ଥାଳୀରେ ଅନ୍ନ ଭୁଞ୍ଜେ ଦୈତ୍ୟରାଜେ
ଟେରାବାଡ ଉହାଡ଼ରେ ରହେ ମୃଦୁସୁଲୀ
ଦ୍ୱାରଆବୋରି ରହିଲେ ବାହାରେ ପୋଇଲି
ଆନନ୍ଦେ ପରଷଇ ମଦନାବତୀ ରାଣୀ
ଷଡ଼ରସରେ ବ୍ୟଞ୍ଜନ ପ୍ରତିପ୍ରତି ଆଣି ।
କାକରା ଅମାଲୁ ତନ୍ଦ୍ରାକାନ୍ତି ସରପୁଳି
ଆରିସା ଛତୁଆ ତହିଁ ଗଜା ଅଟକାଳି ।
ନବାତ କର୍ପୂର ଝିଲି ଖଣ୍ଡ ଗୁଣ୍ଡିସିଞ୍ଚା
ସିଙ୍ଗଡ଼ା ରସପାପୁଡ଼ା ସରପୁଳି ମେଞ୍ଚା ।
ମନୋହର ଚେଳିଭୁଞ୍ଜି ହୋଇଲା ସନ୍ତୋଷ
ମଦନାବତୀକି ସେହି କରେ ପଉରୁଷ ।
ମଣୋହି କୋଠିରୁ ବେଗେ ଉଠିଲା ରାଜନ
ସୁବାସିତ ଜଳେ ଯାଇ କଲା ଆଚମନ ।
କର୍ପୂର ତାମ୍ବୁଳ ଗୁଆ ପାତ୍ରେ ଭଲକରି
ଯୋଗାଡ଼ି ଦିଅନ୍ତି ଫରିକାରମାନେ ଧରି ।
ଭୁଞ୍ଜିଣ ସନ୍ତୋଷ ହେଲା ଦୈତ୍ୟ କୁଳରାଜେ
ନିଦ୍ରା ଆଳସେ ସୁପାତି ଶେଯେ କଲା ବିଜେ
ଦାସୀ ପରିବାରୀମାନେ ହୋଇଲେ ଅନ୍ତର
ମଦନାବତୀକି ଘେନି ଶୁଏ ମୁରାସୁର ।
କାମକେଳିରେ ଶୟନ ଅନ୍ତେ ଶ୍ରଦ୍ଧାଚିତ୍ତ
ମଦନାବତୀ ସଙ୍ଗରେ ବିଳସଇ ଦୈତ୍ୟ ।
ଶଯ୍ୟାରୁ ଉଠି ମହାଦେଈକି କଲା କୋଳ
ଆନନ୍ଦରେ ବିଳସଇ ହୋଇ ମତିଭୋଳ ।
ଶୃଙ୍ଗାର ଅନ୍ତରେ ଶୋଇ ପାହିଲା ରଜନୀ
ବାୟସ କୋକିଳ ଚକ୍ରବାକ କଲେ ଧନି ।
ଏଥୁଅନ୍ତେ ପୂର୍ବଦିଗେ ଉଦେ ଛାୟାକାନ୍ତ
ରାଜନୀତି ବିଧିମାନ ସାରି ମୁରଦୈତ୍ୟ ।
ସେବାକାରୀ ଲୋକେ ଆସି ଲାଗିଲେ ସେବାଏ
ସୁବର୍ଣ୍ଣ ପାଦୁକା ଆଣି ଯୋଗାଇଲେ ପାଏ ।

ସଭାମଧ୍ୟେ ବିଜେ କଲା ଦୈତ୍ୟ କୁଳପତି
ବସିଲେ ଆସ୍ଥାନପରେ ଆସି ସେନାପତି ।
ଆଗେ ମହୁରୀ କାହାଳି ଶଙ୍ଖ ବୀଣା ବାଜେ
ବେଳୁ ବେଳ ସଭାସ୍ଥାନେ ଆସିଲେ ଦନୁଜେ
ପାତ୍ର ମନ୍ତ୍ରୀ ଅମାନାତ୍ୟ ସେନାପତିଗଣ
ବସିଲେ ଯେ ଯାହା ସ୍ଥାନ ମାଡ଼ି ଦେବଗଣ ।
ଖୁଣ୍ଟିଆ ଯେ ପଢ଼ିହାରୀ ଘଡେ ଘଡ଼ିତାଳ
ପାଇକ ମାହୁନ୍ତ ଅଶ୍ୱପାଳ ମାଳ ମାଳ ।
ପାଟଯୋଷୀ ସଭାଗୋଟି ବିଶୋଇ ଆଦିତ୍ୟ
ସାହାଣୀ ପରିଛା ଯେ ଭଣ୍ଡାର ଗନ୍ତାଇତ ।
ପାଇକ ଡଗରା ମହାସୁଆର ଯେ ଭୋଇ
ଚୂହାଣ ରଟିଆ ଯେ ସୁଆର ପୋଲେଇ ।
ଆବର ଷୋଳ ସାଆନ୍ତ ବାସ୍ତରି ନିଯୋଗୀ
ବସିଲେ ଛତିଶକୁଳ ସଭାମଧ୍ୟେ ବେଗି ।
ଅଷ୍ଟାଦଶ ପାଟକ ଯେ ଯୁବାକାଳ ବୃଦ୍ଧି
ସମସ୍ତେ ସଭାରେ ଆସି ବିସିଲେ ନିଃଶବ୍ଦି ।
ଖରଡ଼ ଆସନ ପରେ ବସି ରାଜା ସୁଖେ
ଚରାସ ଯେ ବୀରବାନା ଉଡ଼େ ଚାରିପାଖେ
ସେ ମୁରାସୁର ସଭାକେ କରିପାରେ ଅନ୍ତ
ଆଗରେ ଦାରୁଣ ଭାଇ ବସିଛି ତହିଁ ତ ।
ସେନାପତିମାନେ ବସିଛନ୍ତି ଚଉପାଶେ
ମୁକୁନ୍ଦା ପ୍ରଳମ୍ବା ବକାସୁର ସଉଦାସେ ।
ବୀରଘଣ୍ଟ ବିରାଜ ଯେ ଆବର ସଲୋପି
ମଦନା ଜଳଘଣ୍ଟା ଯେ ଆବର ଆଲୋପି ।
ଲୋହାସୁର ବଜ୍ରମାଳୀ ରଣଚୂଡ଼ ବୀର
ଚନ୍ଦ୍ରମାଳି ଶରଜିତ କାଙ୍କୋଳା ଅସୁର ।
କୃତବେଶୀ ରଣକେଶୀ ଖଡ଼ିକା ଅସୁରେ
ସମସ୍ତେ ଚାହୁଁ ଅଛନ୍ତି ବସି ନିଶବ୍ଦରେ ।
ତ୍ରିମୁଣ୍ଡାସୁରର କଣ୍ଠ ବିକଣ୍ଠ ଯେ ପୋଏ
ରାଜା ବାମ ଡାହାଣରେ ବସିଛନ୍ତି ଦୁହେଁ ।
ରଖିଛି ଅତ୍ୟନ୍ତ ପ୍ରୀତି କରି ତାଙ୍କୁ ରାଜା
ଆପଣାର ସମାନ ଭଳିରେ ତାଙ୍କୁ ପୂଜା ।
ଦୁଇହସ୍ତେ ଦୁହିଁଙ୍କର ଆଉଁଷଇ ପିଠି
ବୋଇଲା ତୁମ୍ଭ ଘେନି ଜିଣିଲେ ନବସୃଷ୍ଟି ।
ଇନ୍ଦ୍ରକୁ ଜିଣିବ ଏବେ ସ୍ୱର୍ଗ ଯେବେ ଯାଇ
ଅମରେ ବସିବି ତେବେ ମୁହିଁ ଇନ୍ଦ୍ର ହୋଇ ।
ଏବେ ପାଞ୍ଚିଅଛି କଥା ଏକ କରିବାକୁ
ଶ୍ରୀମୁଖ ଲେଖା ଦେଇଣ ପେଷିବି ତାହାଙ୍କୁ ।
ଯେବେ ସେ ଶୁଣିଣ ମଣି ଦେବ ତତକାଳ
ତେବେ ମୁଁ ତାହାର ତୁଲେ ନ କରିବି ଗୋଳ ।
ଶୁଣିଣ କଣ୍ଠ ବିକଣ୍ଠ ବୋଇଲେ ଉତ୍ତମ
ଆପଣ ତ ମହାବୀର୍ଯ୍ୟ ହୋଇଛ ଜନମ ।
ତାର ବୋଲ ନମାନି କେ ରହିବ ମେଦିନୀ
ଟଳି ପଡ଼ିବ ବାସୁକୀ ହେଲେ ଦେହ ଘେନି ।
ପେଶ ହୋ ସତ୍ୱରେ ଦୂତ ଯାନ୍ତୁ ସ୍ୱର୍ଗପୁର
ଶୁଣି ମନରେ ସନ୍ତୋଷ ହେଲା ମୁରାସୁର ।
ମନ୍ତ୍ରୀକି ବୋଲେ ଶ୍ରୀମୁଖ ବେଗକରି ଲେଖ
ଆଜ୍ଞା ଶୁଣିଲା ମାତ୍ରକେ ଉଠିବ ସସ୍ରାକ୍ଷ ।
କର ପ୍ରସାରି ମୁଣ୍ଡରେ ବହିବ ମୋ ଆଜ୍ଞା
ମଣି ଆଣି ଦେବ ଯେବେ ବୁଝିବ ପ୍ରତିଜ୍ଞା ।
ଶୁଣିଣ ସୁବିଜ୍ଞ ମନ୍ତ୍ରୀ ରାଜା ଆଜ୍ଞା ପାଳି
ମୁରାସୁର ରାଜା ନାମ ଲେଖେ ପତ୍ରାବଳୀ ।
ଯେବଣ ମୁର ଅସୁର ସପ୍ତଦ୍ୱୀପ ମଣ୍ଡି
ତାହାର ନାମେ ଚିଟାଉ ଲେଖେ ପତ୍ରଖଣ୍ଡି ।
ଶ୍ରୀମୁଖ ଶ୍ରୀ ଶ୍ରୀ ଶ୍ରୀ ମୁରାସୁର ରାଜାଙ୍କର
ମନ୍ତ୍ରୀ ପତ୍ର ଲେଖିଛନ୍ତି ଇନ୍ଦ୍ରଙ୍କ ପାଶର ।
ଯେଉଁ ମୁର ବିଧାତାଙ୍କ ଅଂଶରେ ଜନମ
କମଳଜ ବଂଶେ ସେହୁ ପ୍ରଦୀପ କାରଣ ।
ସ୍ୱୟମ୍ଭୁ ବ୍ରହ୍ମାର ପୁତ୍ର କୁଳଧର୍ମକାରୀ
ଶ୍ରୀ ସଦାଶିବ ଦେବଙ୍କ ସାନୁଜ୍ଞାଧିକାରୀ ।
ପଶୁପତି ସମ୍ବନ୍ଧୀୟ ଅକ୍ଷୟ ଯେ ତୂଣ
ପିନାକ ତ୍ରିଶୂଳ ପଶା ପରଶୁ ଧାରଣ ।
ସଦାଶିବ ଦେବଙ୍କର ମହିମା କୃପାରେ
କ୍ଷଣେ ସୃଷ୍ଟିଜାତ ଲୀଳାକରି ସେହୁ ପାରେ ।
ଶ୍ରୀକନକାବତୀପୁର ନଗର କଟକ
ପିତାମହ ସ୍ୱାମୀପରେ ଦଣ୍ଡଛତ୍ର ଟେକ ।
ଯେହୁ ଦଶଦିଗପାଳ ମଧ୍ୟରେ ବାରଣ
ସର୍ବ ମହୀମଣ୍ଡଳରେ ସମର ନିପୁଣ ।
ବୀରାଧିବୀରମାନଙ୍କ ଗରବ ମର୍ଦ୍ଦନ
ସପ୍ତଦ୍ୱୀପ ରାଜାଙ୍କର ଉପରେ ରାଜନ ।
ରମଣୀକୁଳରେ ମନସିଜର ସଦୃଶେ
ନାରୀମାନଙ୍କର ମନ ହରଣ ଦିବସେ ।
ବୀରମାନଙ୍କ ଉପରେ ଯେ ମଉଡ଼ମଣି
ସତ୍ୟ ନାଶକର ଦେବ ପ୍ରାୟ ଯାକୁ ଜାଣି ।
କ୍ଷତ୍ରିୟ କୁଳରେ ଯେହୁ ଅଟେ ମହାମଲ୍ଲ
ଚଉଦ ପୁର ଯା ଦର୍ପେ ହୁଏ ଦଲ ଦଲ ।
ଦେବନର ନାଗଲୋକ ଉପରେ ଧାରଣ
ଗନ୍ଧର୍ବ କିନ୍ନର ଯକ୍ଷ ରକ୍ଷ ଗ୍ରହଗଣ ।
ଋଷି ସାଧକ ବ୍ରାହ୍ମଣ କ୍ଷତ୍ରୀ ଶୁଦ୍ର ବୈଶ୍ୟ
ନର ଗୁଞ୍ଜର ବାନର ଅଷ୍ଟଲୋକ ଈଶ ।
ପ୍ରାତଃ ମଧ୍ୟାହ୍ନ ସନ୍ଧ୍ୟା ଯେ ତ୍ରିକାଳ ଧାରଣ
ସତ୍ୟ ତ୍ରେତୟା ଦ୍ୱାପର କଳିର ଯୁଗେଣ ।
ଭୂ ର୍ଭୁ ବଃ ସ୍ୱଃ ତପ ସତ୍ୟଜନ ଲୋକ
ଏ ସପ୍ତ ଲୋକର ଯେହୁ ଅଟଇ ନାୟକ ।

ଭୂତ ଭବିଷ୍ୟତ ତିନିକାଳ ଅଧିପତି
ଅସୁର କୁଳରେ ଯାର ଦୀକ୍ଷା ଜଗଜ୍ଜ୍ୟୋତି ।
ଇନ୍ଦ୍ର ଅଗ୍ନି ଯମପୁର ନଇର୍ରତ ପୁର
ବରୁଣ ବାୟବ୍ୟପୁର ପୁର ଚନ୍ଦ୍ରଙ୍କର ।
ଅଇଶାନ୍ୟ ଆଦିକରି ଏହି ଅଷ୍ଟପୁର
ବଳେ ବଳୀୟାର ଅଟେ ଯେଉଁ ମୁରାସୁର ।
ଜମ୍ବୁଦ୍ୱୀପ ଶାଲ୍ମଳୀ ଯେ ପ୍ଲକ୍ଷ କୁଶଦ୍ୱୀପ
ପୁଷ୍କର ଶାକଲ୍ୟ ଘେନିକରି ସପ୍ତଦ୍ୱୀପ ।
ନବଖଣ୍ଡ ମେଦିନୀର ଗରବ ଖଣ୍ଡନ
ବଇରୀଗଞ୍ଜନ ମୁର ଅସୁର ରାଜନ ।
ବ୍ରହ୍ମଯଜ୍ଞ ଦାନଦେବ ବିଜ୍ଞାନ ଦେବତା
ବୈଶ୍ୟସତ୍ୟ ଦେବତା ଯେ ଆଲୋକ ଦେବତା ।
ସାତ୍ତ୍ୱିକ୍ ଦେବତା ଏତେ ଦେବତା ଉପରେ
କରତା ଅଟନ୍ତି ଯେଉଁ ମୁରାସୁର ବୀରେ ।
ବାର ତିଥି ଚନ୍ଦ୍ର ଯୋଗ ନକ୍ଷତ୍ର କରଣ
ଏମାନଙ୍କ ଉପରେ ହେ କରିବ କାରଣ ।
ବିଛା ଧନୁ କୁମ୍ଭ ମୀନ ସିଂହ ମେଷ ବୃଷ
ମକର ମିଥୁନ ତୁଳା କକଡ଼ା ଯେ ମାସ ।
କନ୍ୟା ଆଦିକରି ବାରମାନଙ୍କ ଉପରେ
ଆବର ବୈଶାଖ ଜ୍ୟେଷ୍ଠ ଆଷାଢ଼ ମାସରେ
ଏ ଆଦି ସହିତରେ ଯେ ବାରମାସ ଜାଣ
ଦୁଇ ବାରମାସେ ସେହୁ ଅଟଇ ରାଜନ ।
ସ୍ୱେଦଜ ଅଣ୍ଡଜ କୀଟ ଭୂମିଜ ଉଦ୍ଭିଜ
ସ୍ଥାବର ଜଙ୍ଗମ ଆଦି ଚାରିଖାନି ହେଜ ।
ମନୁମାନଙ୍କ ମଧ୍ୟରେ ସ୍ୱାୟମ୍ଭୁବ ମନୁ
ରାକ୍ଷସ ପୁଣିହିଁ ଯେ ବଇବସ୍ୱତ ମନୁ ।
ଆବର ଯେ ଦକ୍ଷବ୍ରହ୍ମା ଧର୍ମ ଆଦି ମନୁ
ଉତ୍ତମ ତାମସ୍ ମନୁ ରଇବତ ମନୁ ।
ଦେବ ରୁଦ୍ର ସୂର୍ଯ୍ୟ ମନୁ ମନୁ ସାବର୍ଣ୍ଣକ
ଏ ଚଉଦମନୁପରେ ଅଟେ ସେ ନାୟକ ।
ବ୍ରହ୍ମକଳ୍ପ ପଦ୍ମକଳ୍ପ ପ୍ରଳୟ କଳପ
ଶ୍ୱେତ ବରାହ କଳପ ଆନ ଯେ କଳପ ।
ଯକ୍ଷ କଳ୍ପ ସହିତରେ ସପ୍ତକଳ୍ପ କରି
ଏ ସପତ କଳପର ସେହୁ ଭିକ୍ଷାକାରୀ ।
ଧ୍ୟାନ ଧାରଣା ସଂଯମ ନିମଗନ ଯୋଗ
ପ୍ରତିହାର ଯୋଗ ସହିତରେ ଲୟ ଯୋଗ ।
ସମାଧି ପ୍ରଣୟ ଯୋଗ ଅଷ୍ଟରେ ଗଣିତା
ଏ ଅଷ୍ଟ ଉପରେ ଅଟେ ଯେ ବ୍ରହ୍ମ ଦେବତା
ଶିବ ବରେ ଚଉଷଠୀ ଯୋଗ୍ନୀ ଆଜ୍ଞାକାରୀ
ଭଗବତୀ କାତ୍ୟାୟିନୀ ଆଉ ଶାକମ୍ଭରୀ ।
ବ୍ରହ୍ମୟଣୀ ଇନ୍ଦ୍ରାୟଣୀ ଆବର କୁଠାରୀ
ଭାକେଶ୍ୱର ଢାବେଶ୍ୱର ବାକ୍ୟଶ୍ୱରୀ କରି ।
ବିନ୍ଧ୍ୟବାଇ ଗରୁଡ଼ାଇ ସାକରୀ ଘଟାରୀ
ଜାଗୁଳାଈ କାଳରାତ୍ରି ଆଦି କାଳଞ୍ଜରୀ ।
ଏ ଚଉଷଠି ଯୋଗିନୀ ଯାର ଆଜ୍ଞାକାରୀ
ସେ ମୁରାସୁର ସବୁରି ପରେ ଅଧିକାରୀ ।
ପୁରୁରବା ବୃଦ୍ଧଶ୍ରବା ନହୁଷ ଯଯାତି
ସହସ୍ରାକ୍ଷ ଶତମନ୍ୟୁ କଶ୍ୟପ ସନ୍ତତି ।
ଦୁଷ୍ୟବନ ଆଦିକରି ସ୍ୱର୍ଗେ ଯେତେ ଇନ୍ଦ୍ର
ସେମାନଙ୍କ ପରେ ମୁର ଅଟେ ଦ୍ୱିତୀଇନ୍ଦ୍ର ।
ଗିରିମାନଙ୍କ ଉପରେ ଉଦୟ ଯେ ଗିରି
ମନ୍ଦରଗିରି ଯେ ଗନ୍ଧମାରଦନ ଗିରି ।
ମାଲ୍ୟବନ୍ତ ଗିରି ଅସ୍ତଗିରି ରାମଗିରି
ବିନ୍ଧ୍ୟଗିରି ଲୋକାଲୋକ ଗିରି ଆଦିକରି ।
ଏ ଅଷ୍ଟ ଗିରିରେ ସୃଷ୍ଟି ହୋଇଛି ଧରଣୀ
ମୁରାସୁର ଅଟନ୍ତି ଏ ଗିରିର କାରେଣୀ ।
ଭୂତଳ ସୁତଳ ଅତିତଳ ମହାତଳ
ବିତଳ ପାତାଳ ତଳାତଳ ସପ୍ତତଳ ।
ସପ୍ତ ପାତାଳ ଯେ ଅଧିକାରୀ ମୁରାସୁର
ଅମରପୁରକୁ ସେହୁ ଲେଖନ୍ତି ପତର ।
ଆରେ ଆରେ ଇନ୍ଦ୍ର ତୁହି ସ୍ୱର୍ଗପୁର ରାଜ
ଦେବଗଣ ମଧ୍ୟେ ପୂଜା ଆଦିତ୍ୟ ଆତ୍ମଜ ।
ଏ ମୋହର ଚିଟାଉକୁ ପଢ଼ିକରି ତୁହି
ଦେବଗଣ ସହିତରେ ଆସ ବେଗ ହୋଇ ।
ତେତିଶକୋଟି ଦେବଙ୍କୁ ସଙ୍ଗତରେ ଘେନି
ବେଗେ ଉଠ ଆସ ଦେଖି ଦେଖା ଦରଶନୀ ।
ଯେଉଁ ଇନ୍ଦ୍ର ନୀଳମଣି ଅଛି ତୋର କରେ
ତାକୁ ଘେନି ଆସି ଗଲା ଦୂତ ସଙ୍ଗତରେ ।
ଶ୍ରୀ ମୁରାସୁର ରାଜାଙ୍କ ଅଟେ ଏ ଆଦେଶ
ଚିଟାଉ ପଢ଼ିଣ ବେଗେ ଆସ ସୁରଈଶ ।
ପ୍ରଚଣ୍ଡ ବୀରାଧିବୀରବର ମୁରାସୁର
ଲେଖାଗଲା ଇନ୍ଦ୍ରପାଶେ ଏମନ୍ତ ପତର ।
ମୁରର ସୁବିଜ୍ଞ ମନ୍ତ୍ରୀ ଲେଖିଲା ଶ୍ରୀମୁଖ
ପୀତାମ୍ବରକୁ ନୃସିଂହ ସ୍ୱାମୀ ସଦାରଖ ।



## ମୁରାସୁରର ସ୍ୱର୍ଗ ବିଜୟ

ବଦୟନ୍ତି ବେଦବ୍ରହ୍ମା ଶୁଣରେ ନାରଦ
ମୁରର ସ୍ୱର୍ଗ ବିଜୟ ବିଷୟକ ପଦ ।
ସାବଧାନେ କହିବା ସେ କଥା ଶୁଣ ତୋତେ
ନୃସିଂହ ପୁରାଣ ଯେବେ ପଚାରିଲ ମୋତେ ।
ଖଡ଼ିକାସୁରକୁ ଚାହିଁ ଆଜ୍ଞାଦେଲେ ମୁର
ଇନ୍ଦ୍ରପାଶେ ନିଅ ବେଗେ ଶ୍ରୀମୁଖ ମୋହର
ଶୁଣିଣ ଖଡ଼ିକାସୁର ରାଜା ଆଜ୍ଞା ପାଇ
ଆପଣା ଥାଟୁ ଦୂତଙ୍କୁ ଆଣିଲା ଡକାଇ ।

ହଲିଆ ବଳିଆ ବୋଲି ଅଟନ୍ତି ସେ ଦୂତ
ରାଜାର ଶ୍ରୀମୁଖ ଗୋଟି ଦେଲା ତାଙ୍କ ହସ୍ତ
ବୋଇଲା ସ୍ୱର୍ଗକୁ ତୁମ୍ଭେ ଚଳ ଏହି ଲାଗେ
ଇନ୍ଦ୍ରଙ୍କୁ ଆଜ୍ଞା ଦେଇଣ ଘେନିଆସ ବେଗେ
ନିରଳସ ହୋଇଯାଅ କରି ବେଗ ଗତି
ସ୍ୱର୍ଗପୁରୁ ବେଗେ ଘେନିଆସ ଶଚୀପତି ।
ଆସନ୍ତୁ ଆଜ୍ଞା ପାଇ ଶ୍ରୀମୁଖ ଗୋଟି ଘେନି
ଆଜ୍ଞା ଶିରେ ଘେନି ଚଳିଗଲେ ଦୂତବେନି ।
ଘଡ଼ିଏକ ମଧ୍ୟେ ଦୁହେଁ ମିଳିଲେକ ସ୍ୱର୍ଗେ
ଖର ନିଃଶ୍ୱାସ ବହଇ ଝାଳ ବହେ ଅଙ୍ଗେ ।
ସମସ୍ତ ଦେବଗଣଙ୍କୁ ଘେନି ଶଚୀପତି
ସୁଧର୍ମା ସଭା ମଧ୍ୟରେ ବିଜେ କରିଛନ୍ତି ।
ଗନ୍ଧର୍ବ କିନ୍ନର ବିଦ୍ୟାଧର ରକ୍ଷୀଗଣ
ପୁତ୍ରମାନଙ୍କୁ ଘେନିଣ କରେ ବେରରଣ ।
ଦ୍ରୁମନ ବିଚିତ୍ରସେନ ଶୂରସେନ ବଳ
ଚିତ୍ରସେନ ଜୟସେନ ସୁନନ୍ଦ ସୁବଳ ।
ସୁରଥ ବେରଥ ଦେବରଥ ମନୋରଥ
ସାନନ୍ଦ ଆନନ୍ଦ ସତ୍ୟାନନ୍ଦ କୀର୍ତ୍ତିନାଥ ।
ବୃହଦ୍ଧ୍ୱଜ ବିଷ୍ଣୁଧ୍ୱଜ ଶିବଧ୍ୱଜ ହୋଏ
ଗରୁଧ୍ୱଜ ଇନ୍ଦ୍ରଧ୍ୱଜ ଆଦି ଇନ୍ଦ୍ର ପୋଏ ।
ସୁଧର୍ମା ସଭାରେ ପୂରିଛନ୍ତି ସର୍ବେ ବସି
ଆଉ ଆଉ ଦ୍ରବ୍ୟଯାକ କହିବା ଶୁଣସି ।
ଉଚ୍ଚୈଃଶ୍ରବା ତୁରଙ୍ଗମ ଐରାବତ ଗଜ
ସଭାର ବାମଭାଗରେ ହୋଇଛନ୍ତି ସଜ ।
ଆବର କିନ୍ନରୀ ଅପସରାଗଣ ସଙ୍ଗେ
ପାରିଜାତର କୁସୁମ ଶୋହେ ଇନ୍ଦ୍ର ଅଙ୍ଗେ
ଇନ୍ଦ୍ର ନୀଳମଣିକି ସେ ହୃଦରେ ଲମ୍ବାଇ
ବୈଜୟନ୍ତୀମାଳା ଗଳେ ସୁନ୍ଦର ଦିଶଇ ।
ବାମଭାଗେ ଅଜଗବ ଦକ୍ଷିଣରେ ବଜ୍ର
ଆଗଭାଗେ ଯମଦାଢ଼ ହୋଇଅଛି ସଜ ।
ସନ୍ନିଧିରେ ଅଷ୍ଟଦିଗପାଳେ ଛନ୍ତି ବେଢ଼ି
ସଭାରେ ବସିଅଛନ୍ତି ସ୍ତମ୍ଭେ ସ୍ତମ୍ଭେ ମାଡ଼ି ।
ଆଉ ମଧ୍ୟ ନବଗ୍ରହ ବସିଣ ଅଛନ୍ତି
ଯେ ଯାହାର ଶାସ୍ତ୍ରମାନ ଫେଡ଼ି ପଢୁଛନ୍ତି
ସତ୍ୟ ତ୍ରେତା ଦ୍ୱାପର ଯେ କଳି ଚାରିଯୁଗ
ସଭାର ଚାରିକୋଣରେ ବସିଛନ୍ତି ଆଗ ।
ନକ୍ଷତ୍ର କରଣ ବାର ତିଥି ଯୋଗ ଆଦି
ସୁଧର୍ମା ସଭାରେ ସର୍ବେ ବସିଛନ୍ତି ଭେଦି ।
ଶୁକ୍ଳ ପୀତ ପାଣ୍ଡୁର ରକ୍ତ ଚାରିବର୍ଣ୍ଣ
ଅଷ୍ଟକୁଳ ନାଗେ ଆସି ବସିଛନ୍ତି ପୁଣ ।
ଅଙ୍ଗାରପନ୍ନଗ ତୁଳେ ଅନଙ୍ଗ ଅଛନ୍ତି
ବଶ୍ୟ ଉଚ୍ଚାଟନ ବିଦ୍ୟା ସାଧନ ଦେଖାନ୍ତି ।

ଏରୂପେ ସଭାରେ ସମସ୍ତଙ୍କୁ ସଙ୍ଗେ ଘେନି
ସଖାଭାବେ ମେଳ କରିଛନ୍ତି ସସ୍ରଯୋନି ।
ଏହି ସମୟରେ ଯାଇଁ ଅସୁରେ ପ୍ରବେଶ
ସୁଧର୍ମା ସଭାରେ ପେଲି ପଶନ୍ତେ ରାକ୍ଷସ ।
ସେହି ଦ୍ୱାରେ ଦ୍ୱାରପାଳ ସସ୍ରଶ୍ରବା ବୀର
କୁମୁଦସେନ ବୀର ଯେ ଅଜୟ ପ୍ରବୀର ।
ଏହାଙ୍କ ସହିତେ ତିନିଲକ୍ଷ ରକ୍ଷୀଗଣ
ସଭାବସିଲେ ଦୁଆର ଜଗନ୍ତି ଏ ପୁଣ ।
କେ ଅବା ଯଦ୍ୟପି ଭେଟି ଆସନ୍ତି ବିଦେଶୀ
ଇନ୍ଦ୍ରଙ୍କୁ କହିଲେ ତାଙ୍କୁ ନିଅନ୍ତି ଯେ ଆସି ।
ହଳିଆ ବଳିଆ ପେଲି ପଶନ୍ତେ ସେ ଦ୍ୱାରେ
ଆଗରେ ଓଗାଳି ଆସି ସସ୍ରଶ୍ରବା ବୀରେ ।
ବୋଇଲେ କାହିଁର ତୁମ୍ଭେ ଅଟରେ ଦାନବ
ନ କହିଲେ ରାଜାଙ୍କୁ କି ଭିତରକୁ ଯିବ ।
କେଉଁ ଦେଶରେ କାହାର ଅଟ ତୁମ୍ଭେ ଚାର
ନ କହିଲେ ଛାମୁରେ କି ପଶିବ ଭିତର ।
ହଳି ବଳି ବୋଇଲେ ହେ ଶୁଣ ଦ୍ୱାରପାଳେ
ଆସିଲୁ ଜମ୍ବୁଦ୍ୱୀପରୁ ମୁରୁ ଆଜ୍ଞାବଳେ ।
ଶ୍ରୀମୁଖ ଧରି ଆସିଛୁ ଇନ୍ଦ୍ର ରାଜାଠାକୁ
ତୁମ୍ଭେ କିପାଇଁ ଓଗାଳୁଅଛ ଯେ ଆମ୍ଭଙ୍କୁ ।
ଦ୍ୱାରିଏ ବୋଇଲେ ତେବେ ରହ କ୍ଷଣେ ଭାଇ
ଶ୍ରୀଇନ୍ଦ୍ର ଆଗରେ ଆମ୍ଭେ ଆସୁ ଆଗ କହି ।
ଏତେବୋଲି ଦ୍ୱାରୀମାନେ ଗଲେ ସେହିଲାଗେ
ପ୍ରବେଶ ହୋଇଲେ ଯାଇ ବାସବର ଆଗେ
ବୋଇଲେ ହେ ଦେବ ଶୁଣ ଶୁଣ ସସ୍ରଯୋନି
ମୁରନାମେ ଦୈତ୍ୟ ପେଶି ଅଛି ଦୂତ ବେନି
ଶ୍ରୀମୁଖ ଗୋଟାଏ ଆନେ ବହିଛନ୍ତି ମଥା
କେଡ଼େ ରଗଡ଼ରେ ଦୁହେଁ କହୁଛନ୍ତି କଥା
ରଖାଇ ଆସିଲୁ ତାଙ୍କୁ ଦ୍ୱାରେ ରହିବାକୁ
ଏଥକୁ କଥାଏ ତୁମ୍ଭେ ବିଚାର ମନକୁ ।
ଏରୂପେ ଇନ୍ଦ୍ରଙ୍କୁ ଆସି କହନ୍ତେ କୁମୁଦ
ଏମନ୍ତ ସମୟେ ଆସି ମିଳିଲେ ନାରଦ ।
ମନପବନ ଦଣ୍ଡରେ ଚଢ଼ି ମହାମୁନି
ସୁଧର୍ମା ସଭାରେ ଆସି କଲେ ବୀଣାଧ୍ୱନି ।
ନାରଦଙ୍କୁ ଦେଖି ଦେବଇନ୍ଦ୍ର ହେଲେତୋଷ
ଦଣ୍ଡ ପ୍ରମାଣ କରିଣ ବସାଇଲେ ପାଶ ।
ବାସବେ ପୁଚ୍ଛନ୍ତି ବେନି କରଯୋଡ଼ି ଦମ୍ଭେ
ଏ ମୁର ଦୈତ୍ୟକୁ ମୁନି ଜାଣଟିକି ତୁମ୍ଭେ ।
ନାରଦ ବୋଇଲେ ଆମ୍ଭେ ଜାଣୁ ଏହାଙ୍କୁତ
ଉର୍ବଶୀ ଗର୍ଭରୁ ଜାତ ପିତାମହ ପୁତ୍ର
ମଧ୍ୟ ଭୁବନଯାକ ଏ ଜିଣିଲାକ ସବୁ
ଇନ୍ଦ୍ର ନୀଳମଣି ମାଗୁଅଛି ତୁହି ଦେବୁ ।

ଭବିଷ୍ୟତ ଦିଶିଲା ଏ କଥା ଆସି ମୋତେ
ତୋ ମନକୁ କି ପାଇଲା ପାଞ୍ଚ ତୋରଚିତ୍ତେ
ଶୁଣିଣ କୋପରେ ଇନ୍ଦ୍ର କ୍ରୋଧେ ଥରହର
ବୋଇଲା ବେଶ୍ୟାର ପୁତ୍ର ଅଟେ ସିନାମୁର
ହୋଇଣ ଜାରଜାତକା ଜନ୍ମିଛି ଯେ ପୁଣି
ସେ ପୁଣି ମୋତେ ମାଗୁଛି ଦେବ ନୀଳମଣି
ବେଶ୍ୟାନଟୀର ଗର୍ଭରେ ପଡ଼ି ବ୍ରହ୍ମବୀର୍ଯ୍ୟ
ଯେଣୁ ସେ ବ୍ରହ୍ମଚାଣ୍ଡାଳ ଅଟଇ ଦନୁଜ ।
ଖେଳିବା କାଳରେ ସିନା ଅଟଇ ଏ ମୁରା
ସ୍ୱର୍ଗଛାଡ଼ି ପଳାଇଲା ହାରି ସବୁ ପରା ।
ତାହା ଏବେ ପାଶୋରିକି ଦେଲା ମତ୍ତଗର୍ବେ
କାହାକୁ କହିବା ଏଥେ ଶୁଣିବ କେ ଏବେ ।
ଏତେ ବୋଲିଣ ବାସବ ଉଠିଲା ପ୍ରଜ୍ୱଳି
ମୁର ଦୈତ୍ୟକୁ ସେ ତହିଁ ଦେଲା ବହୁଗାଳି
ମହାକ୍ରୁଧ ହୋଇ ଇନ୍ଦ୍ର ଦେଲେ କୁମୁଦ୍ରକୁ
ବିଧାମାରି ଘଉଡ଼ାଇ ଦିଅ ଅସୁରଙ୍କୁ ।
ଦୂତ ହୋଇ ନ ଥିଲେ ତ ତା ମୁଣ୍ଡ ଛିଡ଼ନ୍ତା
ଏତେବେଳେଯାଏ ପ୍ରାଣପିଣ୍ଡ କି ଥାଆନ୍ତା ।
ଶୁଣିକରି ଦ୍ୱାରପାଳେ ବେଗେ ଗଲେ ଧାଇଁ
ଦୂତଙ୍କୁ ବୋଇଲେ ବେଗେ ଯାଅରେ ପଳାଇ
ତୁମ୍ଭର କଥା ଶୁଣିଣ ଇନ୍ଦ୍ର କୋପ କଲେ
ଆଉ ବେଳେ ଏ ସ୍ଥାନକୁ ନ ଆସ ବୋଇଲେ
ଏ ପବିତ୍ର ସ୍ଥାନରେ ନ ଚାହୁଁ ତୁମ୍ଭ ମୁଖ
ଅପବିତ୍ର ଜନ କେହ୍ନେ ଆସି ଦେବଲୋକ ।
ତାହାଙ୍କ ବାକ୍ୟେ ଦୈତ୍ୟକୋପବହିଉଠିଲେ
ବୋଇଲେ ଇନ୍ଦ୍ର କିମ୍ପାଇଁ ମୁରେଗାଳିଦେଲେ
ଯେବଣ ମୁର ଅଟଇ ସଂସାରେ ରାଜେନ୍ଦ୍ର
ତାହାକୁ ବୋଇଲେ ବେଶ୍ୟାପୁତ୍ର କିମ୍ପାଇନ୍ଦ୍ର
ଶ୍ରୀମୁଖ ନ ମାନି ତାର ଦୂତ ଘଉଡ଼ିଲା
ଏଥର ସେ ଜାଣ ନିଶ୍ଚେ ଯମକୁ ଭେଟିଲା ।
ବାସବ ପୁତ୍ରେ ବୋଇଲେ ଶୁଣରେ କୁମୁଦ
ଦୂତ ନୋହିଥିଲେ ଆଜ ହୋନ୍ତା ଶିରଛେଦ
ମୁରାସୁର ବୋଲି କହୁଅଛି ହୋଇ ଟାଣ
ସେ ମୁରର ଦୂତ ଆମ୍ଭେ ନ ମାନିଲୁ ପୁଣ୍ୟ ।
ଶୁଣିକରି ବେନିଦୂତେ ଉଠିଲେ ପ୍ରଜ୍ୱଳି
ବୋଇଲେ ଏଥର ସ୍ୱର୍ଗ ନ ପାର ସମ୍ଭାଳି ।
ଏରୂପ ବୋଲିଣ ଦୈତ୍ୟ ଶୂନ୍ୟେ ଉଡ଼ିଗଲେ
ବାହୁଡ଼ିଣ ମୁରାସୁର ଆଗେ ଜଣାଇଲେ ।
ଦଣ୍ଡ ପ୍ରଣାମ କରିଣ ହେଲେ ଦୁହେଁ ଉଭା
ସେନାପତିଯାକ ଏଣେ ବସିଛନ୍ତି ସଭା ।
ଦୂତଙ୍କୁ ଚାହିଁଣ ରାଜା ପଚାରନ୍ତି ବାଣୀ
କି ବୋଇଲା କହ ଇନ୍ଦ୍ର ଶୁଣିବା ତା ପୁଣି ।

ଦୂତ ବୋଇଲେ ଭୋଦେବ କି କହିବା ଆମ୍ଭେ
ଦେହେ ବଳବୀର୍ଯ୍ୟ ଥିଲେ ନ ସହିବ କେବେ
ତୁମ୍ଭ ଶ୍ରୀମୁଖ ଧରିଣ ଗଲୁ ତତକାଳେ
ଆମ୍ଭଙ୍କୁ ପୁରେ ପୂରାଇ ନଦେଲେ ଚଣ୍ଡାଳେ ।
ବୋଇଲେ ଇନ୍ଦ୍ରଙ୍କୁ ଆମ୍ଭେ ଆସୁ ଆଗେ କହି
ତେବେ ତୁମ୍ଭେ ଭିତରକୁ ଯିବ ଦୂତ ଦୁଇ ।
ଏହା କହି ଇନ୍ଦ୍ର ପାଶେ ଗଲେ ଦୂତକାରୀ
ଇନ୍ଦ୍ରକୁ କହନ୍ତେ ସେହି ଉଠେ କୋପକରି ।
ବୋଇଲେ ବେଶ୍ୟାର ପୁତ୍ର ଅଟେ ସିନା ମୁର
ମୋତେ କେସନେ ଶ୍ରୀମୁଖ ଲେଖିଲା ସେଛାର
ସଭାରେ ଯା ବୋଲି ଇନ୍ଦ୍ର ଗରଜି ମରଇ
ତା ଆମ୍ଭେ ଶୁଣିଲୁ ଦୁହେଁ ଦ୍ୱାରଦେଶେ ଥାଇ
କି କହିବୁ ଆମ୍ଭେ ଦେବ ସଭା ଆୟତନ
ଉଚ୍ଚେ ଶତେତାଳ ଅଟେ ସ୍ୱର୍ଗ ବିଦ୍ୟମାନ ।
ମୁକ୍ତା ମାଣିକ୍ୟ ହୀରା ନୀଳା ନାନା ମଣି
ଅଷ୍ଟରତ୍ନରେ ନିର୍ମିତ ସୁବର୍ଣ୍ଣ ଛାଉଣୀ ।
ମଣି ପାଇଁ ଆମ୍ଭଙ୍କୁ ଯେ ପେଷିଲେ ଭୋଦେବ
ଆବରହିଁ ପଞ୍ଚଦ୍ରବ୍ୟ ଦେଖିଲୁ ଅପୂର୍ବ ।
ପ୍ରଥମେ ଦେଖିଲୁ ତହିଁ ଆମ୍ଭେ ରତ୍ନାବଳୀ
ଅଷ୍ଟ ଅପସରୀ ମଧ୍ୟେ ଅଟେ ସେ ଉପୁଳି ।
ଆବର ଦେଖିଲୁ ପୁଣି ଉଚ୍ଚୈଃଶ୍ରବା ଅଶ୍ୱ
ଐରାବତ ନାମେ ଗଜ ଅଛି ତାର ପାଶ ।
ଇନ୍ଦ୍ର ନୀଳମଣି ଅଛି ବାସବର କାୟେ
ଦ୍ୱାର ମୁଣ୍ଡେଇରେ ବସି ଚାହୁଁଥିଲୁ ଦୁହେଁ ।
ଶୁଣିଣ ଉସୁକେ ମୁରାସୁର ମନ କଲା
ଅଣାଇ ଦୂତକୁ ଶାଢ଼ୀ ଖଡୁ ଘରୁ ଦେଲା ।
ଇନ୍ଦ୍ରଙ୍କୁ ସେ ମହାକୋପ କଲା ମୁରାସୁର
ରଖିବ ତାହାକୁ କେଉଁ ବାପ ସ୍ୱର୍ଗପୁର ।
ବସିବି ଶଚୀକୁ କୋଳେ ଘେନି ଇନ୍ଦ୍ରହୋଇ
ଭୋଗ ଭୁଞ୍ଜିବି ଇନ୍ଦ୍ରକୁ ମାରି ସ୍ୱର୍ଗେ ମୁହିଁ ।
ଈଶ୍ୱର ପ୍ରସାଦେ ମୁହିଁ ଅଟଇ ଅମର
ନ କରି ପାରିବ ମୋତେ ଇନ୍ଦ୍ର ବଜ୍ର ଛାର ।
ଶ୍ରୀବ୍ରହ୍ମାଙ୍କ ପୁତ୍ର ମୁହିଁ ଅଟଇ କି ସାନ
ପୃଥ୍ୱୀ ଥିବାଯାଏ ମୋର ଅଛଇ ଜୀବନ ।
କାଲି ତାହାର ମୋହର ବୁଝିବା ପରୀକ୍ଷ
କେଉଁ ଦେବତା ରଖିବେ ହୋଇ ସାହାପକ୍ଷ
ଏମନ୍ତ ବୋଲିଣ ମୁର ଗର୍ଜେ ଘନ ଘନ
ଏଥୁଅନ୍ତରେ ନାରଦ କଥା ଏବେ ଶୁଣ ।
ଯେତେବେଳେ ଦେଲେ ଇନ୍ଦ୍ର ଦୂତକୁ ଘଉଡ଼ି
ଦେବତାଙ୍କୁ ଲୋଡ଼ିକରି ବସିଲେ ଘଉଡ଼ି ।
ବାସବ ବୋଇଲେ ଆହେ କି ବିଚାର ତୁମ୍ଭେ
ମୁର ବାହିଲେଟି ଆମ୍ଭେ ରହିବୁ କି ସ୍ୱର୍ଗେ ।

ଦେବେବୋଇଲେ ସେହିତ ବଳେ ବଳୀୟାର
ଛାଣିବେ ଏଥିର କଥା ଅବା ବେଦବର ।
ଚାଲ ସର୍ବେ ଯାଇଁ ତାଙ୍କ ପାଶେ ପଚାରିବା
ଯେଉଁଆଜ୍ଞା ଦେବେ ତାହା ସମସ୍ତ କରିବା ।
ଏହିକଥା ଯୋଗାଇଲା ସବୁରି ମନକୁ
ନିଶାରେ ଗଲେ ସରବେ ଆମ୍ଭ ଭୁବନକୁ ।
ଦେଖିଲେ ସନ୍ଧ୍ୟାରେ ରହିଅଛୁ ଆମ୍ଭେ ବସି
ପାଶୁଶରେ ବେଢ଼ିଛନ୍ତି ସକଳ ମହର୍ଷି ।
ଏମନ୍ତ ସମୟେ ଦେବେ ପ୍ରବେଶିଲେ ବେଗେ
ଦେବଙ୍କୁ ଦେଖି ପକାଇ ଦେଲୁ ଚଳୁ ଆଗେ
ଦେବେ ଦେଖିଣ ଆମ୍ଭଙ୍କୁ ଯୋଡ଼ି ବେନିକର
ଶୁତିଲେ ପାୟେ ପଡ଼ିଣ ସକଳ ଅମର ।
କଲ୍ୟାଣ କରନ୍ତେ ଆମ୍ଭେ ସବୁ ଦେବେ ଉଠି
କେବଣ କାରଣ ମୋର ପାଦେ ସର୍ବଲୋଟି
ଏମନ୍ତ ଗହଣ କେବେ ଦେଖାନାହିଁ ଦିନେ
ଏକ ସମୟେକ ଉଠି ଅଇଲ କେସନେ ।
କି କଥା ବିଚାର କରି ଆସିଛ ମୋର ପୁର
ସମସ୍ତେ ବସିଣ ତାହା କହ ମୋ ଆଗର ।
ବସିଲେଆମ୍ଭର ଆଜ୍ଞା ପାଇ ସର୍ବ ଦେବା
ମୋହୁଅଛି ସଂସାରକୁ ଆମ୍ଭର ଯେ ସଭା ।
ବାସବ କହନ୍ତି କରଯୋଡ଼ି ଆଗ ବଢ଼ି
ଭୋଦେବ ମୁର ସ୍ୱର୍ଗକୁ ଦେଲା କାଲି ଧାଡ଼ି
ମଧ୍ୟମ ଭୁବନଯାକ କଲା ହସ୍ତଗତ
ଏବେ ମୋତେ ଜାଣି ମଣି ମାଗୁଛି ଦଇତ୍ୟ
ଏଥକୁ କିସ ଉପାୟ କରିବଇଁ କହ
ଏହା ଶୁଣି ମନେ ମନେ ପାଞ୍ଚି ପିତାମହ ।
ଇନ୍ଦ୍ରକୁ ବୋଇଲେ ମୁହିଁ କହିଥିଲି ପୂର୍ବେ
ସେକଥାକୁ ଯେବେ ମୁର ନ ମାନିଲା ଏବେ ।
ବଡ଼ଲୋକ ବୋଲ ନକରେ ଯେବେ ସାନ
ଅବଶ୍ୟ ତାହାକୁ ଦଣ୍ଡ ଏତେ କାଳେ ଜାଣ ।
ପିତାର ବୋଲକୁ ଯେବେ ନକରେ କୁମର
ସେ ପୁତ୍ର ତ ଅପାଣ୍ଡୁକ ହୁଅଇ ସଂସାର ।
ପତିର ବୋଲକୁ ଯେବେ ନ କରଇ ନାରୀ
ସେହିସ୍ତିରୀ ଜନ୍ମେ ଜନ୍ମେ ହୁଅଇ ଦୋଚାରୀ
ପ୍ରଭୁକଥା ବଳିଆଇ ଜନ୍ମେ ଯେବଣ ସେବକ
ସେହି ପାପୀ ଜନ୍ମେ ଜନ୍ମେ ଭୋଗଇ ନର୍କେ
ରାଜାର କଥା ନ ଘେନେ ଯେଉଁ ରାଜମନ୍ତ୍ରୀ
ତାହାର ଦିବସ କାଳ ସୁଖେ ନ ଯାଏଟି ।
ଶ୍ରୀଗୁରୁଙ୍କ ବଚନ ନ ମାନେ ଯେଉଁ ଶିଷ୍ୟ
ସେହି ଜାଣ ସମୟରେ ହୁଏ ଅଚ୍ଚାୟୁଷ ।
ଶାଶୁ ଶ୍ୱଶୁର ବଚନ ନ ମାନେ ଯେ ବଧୂ
ଲକ୍ଷ୍ମୀଦେବୀ ଅନ୍ତର ଯେ ହୁଅନ୍ତି ତା କନ୍ଧୁ ।

ଯେଉଁ ରାଜା ପ୍ରଜାଙ୍କର ଭୂମି ହରେ ବଳେ
ତାହାର ମରଣ ନିଷ୍ଟେ ଜାଣିବ ତତ୍କାଳେ ।
ଆମ୍ଭର ପୁତ୍ର ହୋଇଣ ନ କଲା ହେ ବାଣୀ
ଅବଶ୍ୟ ତାହାକୁ ଉଣା ପଡ଼େ କାଳେ ପୁଣି ।
ତୁମ୍ଭେ ଯେବେ ବିଷ୍ଣୁଙ୍କର ଅଟ ନିଜ ଦାସ
ତୁମ୍ଭ କଷ୍ଟ ଦେଖି ହରି ଜନ୍ମିବେ ଅବଶ୍ୟ ।
ବିବେକ ହେବାରୁ ମୋତେ ଅଇଲା ଯେ କହି
ଏବେ କହୁଥାଇ ଆମ୍ଭେ କୂଟକର ଯାଇ ।
ସବୁ ପଦାର୍ଥ ତୁମର ପୂରାଇ ବିମାନେ
ସ୍ୱର୍ଗ ତେଜି ରହ ଯାଇ ପଶ୍ଚିମର କୋଣେ
ଯେବଣ କାଳେ ପୃଥିବୀ ସୃଜିଲେ ଶ୍ରୀହରି
ଯେକାଳେ ମେରୁଦଣ୍ଡ ମୁଁ ଥିଲି କରେ ଧରି ।
ତାହାଙ୍କୁ ଆଜ୍ଞାରେ ମୁହିଁ ସ୍ଥାପିଲାରୁ ମେରୁ
ଅକର୍ମଶିଳାକୁ ବୋଲି ଲାଗିଲା ସେଠାରୁ ।
ଯେବଣ ଗଣ୍ଠି ମୁଁ ଧରିଥିଲି କରପତ୍ରେ
ସେହି ମେରୁଗଣ୍ଠି ଗୋପ୍ୟ ଅଟେ ଦିବାରାତ୍ରେ
ସେ ସ୍ଥାନରେ ପବନର ପ୍ରତାପ ଯେ ନାହିଁ
ଚନ୍ଦ୍ର ସୂର୍ଯ୍ୟ ଅନଳ ଯେ ଆସିବେ ବା କାହିଁ
ଜ୍ୟୋତିର୍ମୟ ନଗ୍ରେ ତହିଁ କର ଯାଇ ଘର
ବିଷ୍ଣୁ ନିବାରନ୍ତି ସିନା ଦୁରିତ ତୁମ୍ଭର ।
ଏମନ୍ତ ଶୁଣି ବାସବ କରଯୋଡ଼ି କହି
ଭୋ ପିତା ହରି ଜନ୍ମିବେ କେମ୍ନେ ମଧ ମହୀ
ଏକଥା ସଂଖ୍ୟା କରିଣ କହିବାକ ମୋତେ
ତବ ମୁଖୁଁ ଶୁଣିଲେ ନଥିବ ଭୟ ଚିତ୍ତେ ।
କାହାର ଗୃହରେ ଜନ୍ମ ହେବେ ନାରାୟଣ
କିରୂପେ ଆମ୍ଭଙ୍କୁ ହରି କରିବେ ରକ୍ଷଣ ।
ବିଧାତା ବୋଇଲେ ତେବେ କହିବା ସେକଥା
ତିନିପୁର ଯାକ ସବୁ ପାଇବେ ଅବସ୍ଥା ।
ଚଉଦ ଲୋକେ ସହିଲେ କମ୍ପିବ ଧରଣୀ
କ୍ଷୀର ବୈକୁଣ୍ଠେ ଜାଣିବେ ତାହା ଚକ୍ରପାଣି
ତୁମ୍ଭେ ସରବେ ଯାଇଣ କରିବ ଗୁହାରି
ଜମ୍ବୁଦ୍ୱୀପେ ଆସି ପୁଣି ଜନ୍ମିବେ ଶ୍ରୀହରି ।
ପାଞ୍ଚଶକୋଟି ପୃଥିବୀ ମଧ୍ୟେ ସାରଭୂମି
ଜମ୍ବୁଦ୍ୱୀପ ଉତ୍ତରାର୍ଦ୍ଧେ ଜନମିବେ ସ୍ୱାମୀ ।
ଯେ ଦୁଷ୍ଟ ଦର୍ପିଷ୍ଟ ପୃଥିବୀରେ ଉପୁଜିବେ
ନାନାରୂପ ଧରି ହରି ତାହାଙ୍କୁ ମାରିବେ ।
ମଧୁ କୈଟଭକୁ ନାଶକରି ଦଇତ୍ୟାରି
ଏ ପୃଥ୍ୱୀ ସର୍ଜି ଅଛନ୍ତି ମେଦା ମେଦା କରି ।
ଏବେ ଯେ ମୁର ଦାରୁଣ ହୋଇଲେ ଜନମ
ଅବଶ୍ୟ ନାଶିବେ ତାଙ୍କୁ ଶ୍ରୀପୁରୁଷୋତ୍ତମ ।
ତୁମ୍ଭେ ନ ଜାଣ ଆମ୍ଭର ହୋଇଲେ ଆୟତ୍ତ
କନ୍ଦର୍ପ ପାଞ୍ଚବାଣରେ ହେଲି ଭୋଳଚିତ୍ତ ।

ଅବେଳ ଅକାଳ ଅଯୋଗ୍ୟରେ ସନ୍ଧ୍ୟାକାଳେ
ନାଚନ୍ତିରୀ ଗର୍ଭେ ଦେଖି ବ୍ରହ୍ମଚର୍ଯ୍ୟ ଟଳେ ।
ତେଣୁ ଜନ୍ମିଲେ ଯେ ମହାଦୁଷ୍ଟେ ଦୁରାଚାର
ତାଙ୍କ ତୁଲେ ଲାଗିତୁମ୍ଭେ କେବେହେଁ ନପାର
ଏତେ କହିଣ ବିଧାତା ଦେବ ମନତୋଷି
ମେଲାଣି ମାଗି ଚଳିଲେ ସ୍ୱର୍ଗପୁରବାସୀ ।
ପଦାର୍ଥ ତନୟ ଦାରା ସବୁ ସଜକରି
ଯେଝା ଯାନ ଚଢ଼ି ତ୍ୟାଗକଲେ ସ୍ୱର୍ଗପୁରୀ ।
ସମସ୍ତେ ଏକତ୍ର ହୋଇ ଶୂନ୍ୟେ ଗଲେ ଚଳି
ମେରୁ ପଶ୍ଚିମ ଦେଶରେ ପ୍ରବେଶିଲେ ଚଳି ।
ଲୋକାଲୋକ ପରବତ ପଥେ ହସ୍ତଗିରି
ରହିଲେ ସେ ବେନିଗିରି ମଧ୍ୟେ ବାସକରି ।
ଚନ୍ଦ୍ର ସୂର୍ଯ୍ୟଙ୍କ ଗମନ ପଥ ଯେଉଁଠାଏ
ସେଠାରୁ ଅଣଆୟତ୍ତ ଅନ୍ଧକାର ମଧ୍ୟେ ।
ସେଠାରେ ଯାଇଣ ଗୋପ୍ୟହେଲେ ସର୍ବଦେବ
ଏଥୁଅନନ୍ତରେ ଶୁଣ ମୁରର ପ୍ରସ୍ତାବ ।
ଦୂତଙ୍କଠାରୁ ଶୁଣିଣ ଗର୍ଜେ ଘନ ଘନ
ମନ୍ତ୍ରୀକିବୋଇଲା ମୋର ସାଜ ବେଗେସୈନ୍ୟ
ଅବଶ୍ୟ ଆଜ ମୁଁ ସ୍ୱର୍ଗ ବସିବଇଁ ମାଡ଼ି
ମାରିବି ଦେବତା ଇନ୍ଦ୍ର ବାନ୍ଧି ଯୋଡ଼ି ଯୋଡ଼ି
ମୋର ପିତା ବ୍ରହ୍ମା ସିନା ସର୍ଜିଛି ତ୍ରିପୁର
ତା ବାପ କଶ୍ୟପ ଯେ ମୋ ବାପ ବେଦବର
ବୁଝିଲେ ମୋହର ସ୍ୱର୍ଗ ଅଟଇ ଦିଭାଗ
ପିତାର ଅର୍ଜନଯାକ ପୁତ୍ର କରେ ଭୋଗ ।
ଏତେ ବୋଲିଣ ରଥରେ ବସି ମୁରାସୁର
ସେନା ସୈନ୍ୟ ସଙ୍ଗେ ଘେନି ଗଲା ସ୍ୱର୍ଗପୁର
ସଉଦାସ ବୃକାସୁର କାଳକେତୁ ବୀର
ରଣଚୂଡ଼ ଚନ୍ଦ୍ରମାଳୀ ପ୍ରଳମ୍ବ ଅସୁର ।
ବିରାଜ ଅଲେପୀ ବଜ୍ରମାଳୀ ଶଉଜିତ
ମଦନାସୁର ମାଳୀ ଯେ ସଲୋପୀ ବିକୃତ ।
ଜଳଘଣ୍ଟ ବୀରଘଣ୍ଟ କାଙ୍କୋଳା ଅସୁର
ରଣକେଶୀ କୃତକେଶୀ ଖଡ଼ିକା ଯେ ବୀର ।
କାଳଦଣ୍ଡ ବଜ୍ରଦଣ୍ଡ ଦୁର୍ଦ୍ଦାଣ୍ଡ କୋଦଣ୍ଡ
କଙ୍କ ଧଙ୍କ ଯେ ବୀରଙ୍କ ଶୂରଙ୍କ ପ୍ରଚଣ୍ଡ ।
ଏହିପରି ବାହାରିଲେ ସେନାପତିମାନେ
ରାଜାର ଆଗପଛରେ ଚଳନ୍ତି ଗହଣେ ।
ଏକ ଆରେକ ଅସୁରେ ନ ଯାନ୍ତି ଗଣନା
ଉଦେଗିରିରେ ମିଳିଲେ ଯାଇ ସର୍ବସେନା ।
ଆଦିତ୍ୟ ଦେବତା ଯହୁଁ ଉଦୟ ହୋଇଲେ
ତହିଁ ଯାଇଁ ଦୈତ୍ୟବଳ ଆନନ୍ଦେ ମିଳିଲେ ।
ସେଠାରୁ ସ୍ୱରଗପୁର ସହସ୍ର ଯୋଜନ
ବିଜୟ ରଥରେ ବସିଅଛି ମୂର ଜାଣ ।

ଯେତେ ମନାସିବ ଯାନ ତେତେକ ବିସ୍ତାର
ସମସ୍ତେ ବସିଲେ ଯାଇଁ ସେ ରଥ ଉପର ।
ବ୍ରହ୍ମାଙ୍କର ଭଣ୍ଡାର ସେ ରଥ ଥିଲା ରହି
ଈଶ୍ୱରଙ୍କର ବରରେ ମୁର ପ୍ରାୟ ହୋଇ ।
ଅଷ୍ଟକୋଟି ରଥ ଏଯେ ସର୍ବଦା ଅକ୍ଷୟେ
ବ୍ରହ୍ମା ପ୍ରଳୟେ ହୋଇଲେ ବୈକୁଣ୍ଠ ସମ୍ଭାଏ
ଯେତେବେଳେ ସୃଷ୍ଟି ପୁଣ ହୁଏ ଅବତାର
ଯେ ବ୍ରହ୍ମା ହୁଏ ତାହାକୁ ଦିଅନ୍ତି ଭଣ୍ଡାର ।
ଆଦ୍ୟେ ନନ୍ଦିଘୋଷ ଧ୍ୱଜ ବିଜୟ ଯେ ଯାନ
ଚନ୍ଦ୍ର ସୂର୍ଯ୍ୟମଣ୍ଡଳ ଯେ ପୁଷ୍ପକ ବିମାନ ।
ଅନନ୍ତଧ୍ୱଜ ପଥ ଯେ ଚନ୍ଦ୍ରଯାନ ଦୁଇ
ପଞ୍ଚାଶକୋଟି ପୃଥ୍ୱୀ ଏ ତିଳପ୍ରାୟ ହୁଇ ।
ଏମନ୍ତ ଏ ଅଷ୍ଟରଥ ସବୁକାଳେ ଥାନ୍ତି
ଯାହାକୁ ଯେ ପରମାଣ ତାକୁ ସେ ଦହନ୍ତି ।
ଏମନ୍ତ ବିଜୟ ବିମାନ ସେ ମନୋରଥ
ମାଗିଲା ମାତ୍ରକେ ତାହାଂ ଦେଲେ ବିଷ୍ଣୁନାଥ
ସେ ରଥରେ ମୁର ବସି ଜିଣିଲା ସକଳ
ଯହିଁ ଚାଳିବ ତହିଁକି ଚଳଇ ତତ୍କାଳ ।
ବାଜଇ ଢୋଲ ଦମା ଯେ ଟମକ କାହାଳୀ
ସମଦଣ୍ଡ ବଳଘେନି ମୁର ଶୂନ୍ୟେ ଚଳି ।
ଏକମୁଖ ହୋଇ ସର୍ବେ ଯାଉଛନ୍ତି କ୍ଷେପି
ଈଶ୍ୱର ବର ପାଇଣ ହୋଇଛି ପ୍ରତାପୀ ।
ପବନହୁଁ ବେଗେ ଗମଇ ସେ ରଥବର
ମିଳିଲା ସ୍ୱର୍ଗରେ ଯେ ଅମରାବତୀ ପୁର ।
ଯେତେବେଳେ ସେ ବାସବ ସ୍ୱର୍ଗ ତେଜିଗଲେ
ସବୁଦ୍ରବ୍ୟ ନେଇ ମେରୁ ପଶ୍ଚିମେ ରହିଲେ ।
ବୃହସ୍ପତି ବୋଇଲେକ ଶୁଣ ପୁରନ୍ଦର
ମୁରର ମହିମା ଚାଲ ବୁଝିବା ଏଥର ।
କି ଅବା ଆମ୍ଭଙ୍କୁ କରିବ ସେ ସମାଧାନ
କି ଅବା ଘଉଡ଼ି ଦେଇ ନେବ ସ୍ୱର୍ଗଯାନ ।
ସୁଧର୍ମା ସଭାରେ ଚାଲ ଥୋକେ ବସିଥିବା
ଥୋକାଏ ପାହାରୀ ଚାରିପାଶେ ଜଗାଇବା ।
ଧନ ପୁତ୍ର କୁଟୁମ୍ବ ତ ସବୁ ଆଣିଲଇ
ସୁଧର୍ମା ଏବେ ବସିବା ଆସ ସର୍ବେ ଯାଇ ।
ଏତେକ ବିଚାରି ଦେବେ ଅମରକୁ ଗଲେ
ସୁଧର୍ମା ସଭା ପାହାରିମାନ ଜଣାଇଲେ ।
ଏଥିଉତ୍ତାରେ ଯେ ନିଶି ଆସି ହେଲା ଶେଷ
ଅମର ଭୁବନଯାକ ଘୋଟିଲେ ରାକ୍ଷସ ।
ଅସୁର ସଇନ୍ୟ ଯହୁଁ ପଡ଼ିଲେକ ମାଡ଼ି
ପଳାଇଲେ ବୃନ୍ଦାରକେ ଘରଦ୍ୱାର ଛାଡ଼ି ।
ଗନ୍ଧର୍ବ ଯକ୍ଷ କିନ୍ନର ଆଉ ବିଦ୍ୟାଧର
ସମସ୍ତେ କହିଲେ ଆସି ଇନ୍ଦ୍ରର ଛାମୁର ।

ଆହେ ଦେବ ସ୍ୱର୍ଗପୁର ସମ୍ଭାଳ ତୁମ୍ଭର
ଅସୁରେ ବହିଣ ଆସି କଲେ ଜୁର ଜର ।
ଦେବଙ୍କ ନଗର ପୁରୀ ଜଗତୀ ଅଟ୍ଟାଳୀ
ସମସ୍ତ ଉଜାଡ଼ି ଆସୁଛନ୍ତି ମହାବଳୀ ।
ଅନେକ ସଇନ୍ୟ ଦେଖି ଅଇଲୁ ଏ ଲାଗେ
ଅଶୀଯୁଣ ପୃଥିବୀ ନ ଦିଶେ ଦିଗଭାଗେ ।
କାହିଁରେ ବାସବ ବୋଲି ଛାଡୁଛନ୍ତି ବୋବି
ପଳାଇବା ଚାଲ ଏବେ ସ୍ୱର୍ଗପୁରଭୁବି ।
ଦୈତ୍ୟଙ୍କ ଆଗେ ପଡ଼ିଲେ ବର୍ତ୍ତିବଟି କେହି
କିଛିଦିନ ଭୋଗ ପୁଣି କରି ସିନା ମହୀ ।
ସବୁକାଳେ ଅସୁରେ କି ଥିଲେ ଆମ୍ଭ ସ୍ୱର୍ଗେ
ଏରୁପେ କହନ୍ତି ରକ୍ଷପାଳେ ଇନ୍ଦ୍ରଆଗେ ।
ଏକାଳେ ବିଜୟା ରଥ ମୁରାସୁର ଚଢ଼ି
ବସିଲା ସୁଧର୍ମା ସଭାପରେ ଯାଇଁ ମାଡ଼ି ।
ଦକ୍ଷିଣ ଦିଗପାଳେ ଯେ ଆଗେ ହେଲେ ଉଭା
ମୁରକୁ ଦେଖି ଆସନୁ ଉଠିଲେ ମଘବା ।
ଇନ୍ଦ୍ର ଆସନକୁ ମାଡ଼ି ବସିଲା ସେ ମୁର
ବାସବଙ୍କୁ ଚାହିଁ କୋପେ କମ୍ପେ ଥରହର ।
ଅନଳ ଯମ କୁବେର ଚନ୍ଦ୍ରମା ସବିତା
କାଖେ ହାତ ନାଇ ରହି ନୁଆଁଇଲେ ମଥା ।
କାଳଦେବତା ପରାୟେ ଦିଶେ ମୁରାସୁର
ମେରୁଗିରି ପ୍ରାୟେ ମଥା ଦିଶଇ ତାହାର ।
ପର୍ବତର ଖୋଳ ପ୍ରାୟ ଦିଶେ ବେନିକର୍ଣ୍ଣ
କୁରାଳ ଚକ୍ର ପରାୟ ଦିଶଇ ନୟନ ।
ନାସା ଫୁଲାଇ ବାସୁକୀ ସର୍ପଫଣା ପ୍ରାୟେ
ଲପନ ପ୍ରକାଶେ ରାହୁଗ୍ରହ ମୁଖ କିଏ ।
କାତରରେ ଥରହର ସର୍ବ ସୁର ଦେବା
ମୃତ୍ୟୁ ଦେବତା ପରାୟ ମାଡ଼ି ବସେ ସଭା ।
ରଡ଼ି ଶୁଭେ ଘନ ଘନ ପ୍ରଳୟର ଜାଣି
ନାସା ନିଃଶ୍ୱାସ ବହନ ପ୍ରଚଣ୍ଡ ମହାଗ୍ନି ।
ତ୍ରିଶୂଳ ଯେ ଗଦାବର ଖଡ୍‌ଗ ଛୁରୀ ଖଣ୍ଡା
ବିଜୁଳି ଝଟକ ପ୍ରାୟ ବୁଲାଇ ପ୍ରଚଣ୍ଡା ।
ଗରଜନ ନାଦକରି ଦୈତ୍ୟକୁଳ ସାଇଁ
ବୋଇଲେ କିହୋ ବୋହିଲୁ ଇନ୍ଦ୍ରକିମ୍ପାତୁହି
ରହିଲୁ ଯେବେ ପଦାର୍ଥ ତେବେ ମୋତେଦିଅ
ଯାହା ଆଣିଦେବ ତାହା କହେ ଶୁଣିଯାଅ ।
ଇନ୍ଦ୍ରନୀଳମଣି ଦେବୁ ଉଚ୍ଚୈଃଶ୍ରବା ଅଶ୍ୱ
ଐରାବତ ଗଜ ଆଦି ପାରିଜାତ ପୁଷ୍ପ ।
ଅଷ୍ଟ ଅପସରୀ ଆଦି ଶଚୀ ମହାଦେଈ
ଏତେ ଦ୍ରବ୍ୟ ଦେଇ ଇନ୍ଦ୍ର ସୁଖେ ଥାଅ ରହି
ନ ଦେବୁ ଯଦ୍ୟପି ବେଗେ ଯୁଦ୍ଧ ତେବେ କର
ଏତେ ବୋଲିଣ ପହିଜ କରେ ମୁରାସୁର ।

ଶୁଣିଣ ଇନ୍ଦ୍ର ଦେବତା ମନେ ମନେ ହେଜି
ବୋଇଲେ ପାପୀ ସଙ୍ଗେ ତ ନ ପାରିବା ଯୁଝି
ଦେବା ବୋଲିକରି ଏଥୁ ଯିବା ବେଗେ ହଟି
ଏତେ ପାଞ୍ଚିଣ ବାସବ ସଭା ମଧ୍ୟୁ ଉଠି ।
ଇନ୍ଦ୍ର ବୋଇଲେ କି ହେବ ଆଉ ଯୁଝିବାରୁ
ମାଗିଲ ଯେବେ ଯାଉଛି ଆଣିଦେବି ଘରୁ ।
ଏହି ଛାରଦ୍ରବ୍ୟ ସିନା ମାଗିଲୁ ତୁ ମୋତେ
ପତ୍ନୀକି ମାଗିଲୁ ମୋର ନ ଦେବି କେମନ୍ତେ
ବସିଥା ସଭାରେ ତୁହି ଯାଉଛି ମୁଁ ଆଣି
ଏରୂପେ କହି ପଳାଇ ଗଲେ ବଜ୍ରପାଣି ।
ଶେଷ ହେଲା ସ୍ୱର୍ଗ ଭୋଗ ଛାଡ଼ିଲେ ବାସବ
ମୁରକୁ ଡରିଣ ମେରୁପରେ କଲେ ଠାବ ।
ଇନ୍ଦ୍ର ଯିବା ଦେଖି କରି ସର୍ବ ଦିଗପାଳେ
ପଛଘୁଞ୍ଚା ଦେଇ ସର୍ବେ ଗଲେ ଅନ୍ତରାଳେ ।
ଯକ୍ଷ ରକ୍ଷ ଗନ୍ଧର୍ବ ଯେ ଅବା ବସିଥିଲେ
ଗ୍ରହଗଣ ସହିତରେ ସର୍ବେ ପଳାଇଲେ ।
ଏକମାତ୍ର ଶତ୍ରୁ ବସି ଅଛନ୍ତି ସଭାରେ
ଶୁଣ ହେ ନାରଦ କହୁଛନ୍ତି ବେଦବରେ ।
ଇନ୍ଦ୍ର ପଳାନ୍ତେଣ ସ୍ୱର୍ଗ ହେଲା ହତଶିରୀ
ଠାବ ଠାବରେ ଅସୁରେ ନେଲେ ଜୁରକରି
ମାଡ଼ି ବସିଲେ ଅମରପୁର ଯେଝାମତେ
କାହିଁଗଲା ଦେଖ ବୋଲି ସେ ମୁରଦଇତ୍ୟେ
ଖୋଜନ୍ତି ରାଜାର ଆଜ୍ଞା ପାଇ ନିଶାଚରେ
ଇନ୍ଦ୍ରକୁ ନ ପାଇ ଯାଇ କହିଲେ ଛାମୁରେ ।
ବୋଇଲେ ଭୋଦେବ ତାର ନପାଇଲୁ ଭେଟ
ଶୁଣି ମୁରାସୁର ରାଜା କାମୁଡ଼ିଲା ଓଷ୍ଠ ।
ବୋଇଲେ ଭଲା ଭୁଲାଇ ଗଲା ପୁରନ୍ଦର
ହାତେ ପଡ଼ିଥିଲେ ପ୍ରାଣ ଘେନନ୍ତି ତାହାର ।
ଇନ୍ଦ୍ର ନୀଳମଣ ଘେନି ପଳାଇଣ ଗଲା
ଯେତେ ପ୍ରତିଜ୍ଞା କଲେଟି ସବୁ ନାଶ ହେଲା ।
କେଡ଼େହେଁ ତର୍କ ଭେଦର ଦେବତା ଜାଣଏ
ତୁମ୍ଭଙ୍କୁ ମାରିଣ ଇନ୍ଦ୍ର ହ୍ୱନ୍ତି ସବୁଠାଏ ।
ଶଚୀକୁ ଘେନି କୋଳରେ ବସନ୍ତି ମୁଁ ଆଜ
ରମ୍ଭାକୁ ପୁଣି ନେଲୁ ତ ନେଲୁ ଅଶ୍ୱ ଗଜ ।
ଏକା ସୁଧର୍ମା ସଭାକୁ ଏହି ଅଟେ ସାର
ନନ୍ଦନବନ ଅମରାବତୀ ପୁର ତୋର ।
ଏତେକ ଘେନିଣ ମାତ୍ର ହେବା ଅଭିଷେକ
ଏତେ ପାଞ୍ଚିଣ ଚାହିଁଲା ଶୁକ୍ରଙ୍କର ମୁଖ ।
ତାଙ୍କୁ ପଚାରିଲେ ତୁମ୍ଭେ ଅଟ କେଉଁ ବଂଶୀ
ଶୁକ୍ର ବୋଇଲେ ଆମ୍ଭର ପିତା ଭୃଗୁଋଷି ।
ମୁର ବୋଇଲା ତେବେ ତ ହୋଇଲା ଉତ୍ତମ
ଭୃଗୁଋଷିଠାରୁ ଯେବେ ହୋଇଛ ଜନମ ।

ତୁମ୍ଭ ଆମ୍ଭର ହୋଇଲେ ତେବେ ଏକ ଗୋତ୍ରୀ
ଏଠାରୁ ଗୁରୁ ତୁମ୍ଭେ ହେ ହୁଅ ଦୈତ୍ୟମନ୍ତ୍ରୀ
ଏତେ ବୋଲି ଶାଢ଼ୀଦେଲା ଶୁକ୍ରଙ୍କର ମୁଣ୍ଡେ
ବୋଇଲା ସଚିବ ହୋଇଥାଅ ଏ ବ୍ରହ୍ମାଣ୍ଡେ ।
ସମସ୍ତ ଦୈତ୍ୟ କରନ୍ତୁ ତୁମ୍ଭ ପାଦ ସେବା
ଆଜିଠାରୁ ଗୁରୁ ହୋଇ ବସ ଦୈତ୍ୟସଭା
ଏରୂପେ କହି ବଜାଇ ମୁର ବିଜିଘୋଷ
ସବୁ ଦଇତ୍ୟମାନଙ୍କୁ କରାଇଲା ଶିଷ୍ୟ ।
ସେହିଠାରୁ ଶୁକ୍ରମନ୍ତ୍ରୀ ଦୈତ୍ୟଗୁରୁ ହୋଇ
ନ ପୁଛିଲେ ତାଙ୍କୁ କାର୍ଯ୍ୟ ନ କରନ୍ତି କେହି
ମୁର ବୋଇଲା ଗୁରୁ ହେ ଖୋଜ ଅନୁକୂଳ
ସ୍ୱର୍ଗେ ଅଭିଷେକ ହୋଇ ହେବି ଆଖଣ୍ଡଳ ।
ଶୁକ୍ର ବୋଇଲେ ତୁହିତ ବ୍ରହ୍ମାଣ୍ଡ ଅଗ୍ରଣୀ
ଏ ତିନି ପୁରଯାକରେ ହୋଇଛୁ କାରେଣି ।
ଇନ୍ଦ୍ର ହେବୁ ବୋଲି ଯେବେ ବିଚାରିଛୁ ମନେ
ଶଚୀକୁ କୋଳେ ନ ଧରି ବସିବୁ କେସନେ
ପ୍ରଥମରେ ଐରାବତ ଗଜ ଏଥି ନାହିଁ
ଇନ୍ଦ୍ର ନୀଳମଣି ଥିଲେ ବସନ୍ତୁବା ତୁହି ।
ଆଉ ଅଷ୍ଟ ଅପସରୀ ଉଚ୍ଚୈଃଶ୍ରବା ଅଶ୍ୱ
ଭୂଷିତ ହୁଅନ୍ତୁ ଥିଲେ ପାରିଜାତ ପୁଷ୍ପ ।
ଏ ଷଡ଼ଦ୍ରବ୍ୟରୁ ଦ୍ରବ୍ୟ ଗୋଟିଏକ ନାହିଁ
କିସ ଘେନି ଅଭିଷେକ ହେବୁ ଦୈତ୍ୟସାଇଁ
କେବଳ ତ ଇନ୍ଦ୍ରପଦ ହେଲା ଏକ ତୋର
ଏହାଶୁଣି ତୁନିହୋଇ ବସେ ମୁରାସୁର ।
କାଙ୍କୋଳାସୁର ବୋଇଲା ଶୁଣ ଦଣ୍ଡଧାରୀ
ସ୍ୱର୍ଗରେ ବସାଅ ମୋତେ ତେବେ ଇନ୍ଦ୍ରକରି
ଆଜ୍ଞୁ ଆମ୍ଭର ହୋଇ ଏ ରହୁ ସ୍ୱର୍ଗଯାକ
କେବେହେଁ ଏଥେ ନ ପଶିଦେବା ଦେବଲୋକ
ଇନ୍ଦ୍ରଯେବେ ଡରିକରି ପଳାଇଲା ତୋତେ
ଏଡ଼େ ପଣ କାହିଁ ଆଉ ପାଇବୁ ଜଗତେ ।
ସ୍ୱର୍ଗୁ ଅଧିକ ସଂସାରେ ଭୋଗ ଆଉ ନାହିଁ
ଏତେ କଥା ଭୂସ୍ୱାମୀର ଭାଗ୍ୟେ ଥିଲେ ପାଇ
ତୁହି ମୋତେ ଯେବେ ସ୍ୱର୍ଗପୁରେ ଥାପିଯିବୁ
ମୋହର ବଡ଼ ପଣରେ ତୋର ସିନା ଥିବୁ ।
ଶୁଣିକରି ମୁରଦୈତ୍ୟ ହୋଇଲା ସନ୍ତୁଷ୍ଟ
କାଙ୍କୋଳାସୁରର ମୁଣ୍ଡେ ବାନ୍ଧେ ନେଇ ପାଟ
ଶାଢ଼ୀ ଖଡ଼୍‌ଗ ହସ୍ତେ ନେଇ ସ୍ୱର୍ଗେ ଇନ୍ଦ୍ରକଲା
ଅଷ୍ଟଦିଗପାଳେ ଆଠଦିଗେ ବସାଇଲା ।
ଚନ୍ଦ୍ର ସୂର୍ଯ୍ୟ ସହିତରେ ମନୁ କଲା ଜାତ
ଯାହା ବର ଦେଇଛନ୍ତି ସେହି ଆଦିଭୁତ ।
ତିନିପଦ୍ମ ସୈନ୍ୟ ଦେଲା କାଙ୍କୋଳାସୁରକୁ
ଏହିରୂପେ ଖଞ୍ଜା ଦେଲା ଦିଗପାଳମାନଙ୍କୁ ।

ଶୁକ୍ରକୁ ମନ୍ତ୍ରୀ ପଣରେ ଦେଇ ଅଧିବାର
ଇନ୍ଦ୍ର ଖୋଜ ବୋଲକରି ପେଶେ ଲକ୍ଷେଚାର
ଏମନ୍ତ ପ୍ରକାରେ ସବୁ ପରିମାଣ ନେଇ
କନକାବତୀ ପୁରକୁ ଗଲା ଦୈତ୍ୟସାଇଁ ।
ଯେ ପ୍ରକାରେ ନବସୃଷ୍ଟି କଲାକ ପାଳନ
ସେ କଥା ନାରଦ ଏବେ ସାବଧାନେ ଶୁଣ
ବିହନ୍ତା ପୁରୁଷମାନେ ଅଦୃଶ୍ୟ ହୋଇଲେ
କାଙ୍କୋଳାସୁର ଡାକନ୍ତେ ସମସ୍ତେ ଅଇଲେ.
ଆସନ୍ତେ ଯାକୁ ଯାହାର ଖଞ୍ଜା ପଡ଼ିଦେଲା
ସୃଷ୍ଟି ଗୋଟି ପାଳ ବୋଲି ସବୁଙ୍କୁ କହିଲା
ସେମାନେ ପାଇଲେ ସୁଖଭୋଗ ଯେଣୁକରି
ଡକାଇଲେ ସର୍ବଦେବେ ଗଉରବ କରି ।
ବାସବ ଯିବାରୁ ସର୍ବେ ପଳାଇଣ ଥିଲେ
ଆମ୍ଭେ ନ ପାଳିଲେ ପୃଥ୍ୱୀ ରହିବ କି ଭଲେ
ଏତେପାଞ୍ଚି ଅଇଲେ କାଙ୍କୋଳାସୁର ବୋଲେ
ଯକ୍ଷ ରକ୍ଷ ରନ୍ଧରବ ଗ୍ରହଗଣ ତୁଲେ ।
ଯେ ଯାହା ସ୍ଥାନରେ ବସି ଭୁଞ୍ଜିଲେ ଐଶ୍ୱର୍ଯ୍ୟ
କାଙ୍କୋଳାକୁ ମାନିଣ ଯେ କଲେ ଇନ୍ଦ୍ରକାର୍ଯ୍ୟ
ସବୁଠାରେ ଜ୍ୱରରୋଗ ବ୍ୟାଧି ବିବର୍ଜିତ ।
ନର ଗୁଞ୍ଜାରେ ବାନର ଆରୋଗ୍ୟ ସମସ୍ତ ।
କାଙ୍କୋଳାସୁର ବୋଇଲା ମେଘକୁ ଡକାଇ
ଦିବସରେ ଖରା କରି ରାତ୍ରେ ବର୍ଷ ଯାଇ ।
ଆମ୍ଭର ନିନ୍ଦାକୁ କେହି ନ କହିଲେ ମୁଖେ
ଅଚିନ୍ତା ଭୋଗ ଭୁଞ୍ଜନ୍ତି ତିନିପୁର ଲୋକେ ।
ଅକଳନ ଶସ୍ୟ ଜାତ ସବୁଠାରେ ହେଉ
ଦଣ୍ଡ ହଳ ବିନାକର ପରିଜା ନ ଦେଉ ।
ସରିଭାବ ବାଣ୍ଟିକରି କୃଷିକୁ ନିଅନ୍ତୁ
ହାଟୁଆ ପରଜାମାନେ କର ନ ଦିଅନ୍ତୁ ।
ଆନନ୍ଦେ କରନ୍ତୁ ବିପ୍ରମାନେ ହୋମ ଯାଗ
ସୁଖେ ଦାନ ବୃତ୍ତି ଖାଇ କରନ୍ତୁ ବୈଭୋଗ
ମହାଜନେ ପାଟଣାର ପଶ୍ଚିମେ ବସନ୍ତୁ
ବିଶୋଇ ନାୟକ ଟଙ୍କା ଆଗେ ନ ବାନ୍ଧନ୍ତୁ
ଦୟାଳୁ ହୁଅନ୍ତୁ ଠାବେ ଠାବେ ପ୍ରାଣୀମାନେ
ନ ଯାନ୍ତୁ ବାହୁନି ଦ୍ୱାରୁ ଭୋକୀ ଶୋଷୀଜନେ
ମୁରାସୁର ରାଜାକୁ କେ ନ କରନ୍ତୁ ନିନ୍ଦା
ଇନ୍ଦ୍ରଠୁ ଶତେଗୁଣରେ ପାଳ କରି ଶ୍ରଦ୍ଧା ।
ଶୁଣିଣ ପାଳିଲେ ମେଘମାନେ ସେହିମତେ
ନାନାବିଧ ଶସ୍ୟ ଜାତ ହୋଇଲା ଜଗତେ ।
ସଂସାରେ ହୋଇଲେ ମହାସୁଖୀ ଯେତେ ନର
ବୋଇଲେ ଭଲା ପୃଥିବୀ ପାଳିଲା ଅସୁର ।
ଆମ୍ଭ ଭାଗ୍ୟକୁ ଆସିଣ ହେଲା ମୁର ରାଜା
ଇନ୍ଦ୍ରଠୁ ଶତେଗୁଣରେ ପାଳେ ଜନପ୍ରଜା ।

ଏବେ ଆସି ପ୍ରାଣୀଙ୍କର ଫାଟିଲା ଦୁର୍ଦ୍ଦଶା
ଏମନ୍ତ ବୋଲି ମୁରକୁ କରନ୍ତି ପ୍ରଶଂସା ।
ଏରୂପେ କାଙ୍କୋଳାସୁର ପାଳିଲା ସଂସାର
କନକାବତୀ ପୁରରେ ସୁଖେ ରହେ ମୁର ।
ଯହିଁରେ ବସିଲେ ଶୁକ୍ରଗୁରୁ ମନ୍ତ୍ରୀପଣେ
କହନ୍ତି ସମସ୍ତେ ବସି ଶାସ୍ତ୍ରର ପ୍ରମାଣେ ।
ତାହା କାଙ୍କୋଳା ଅସୁର ଶୁଣେ ଦୃଢ଼କରି
ଗୁରୁଙ୍କ ଆଜ୍ଞାରେ ପାଳିଥାଏ ବସୁନ୍ଧରୀ
ବଶକରି ଶୁକ୍ରମନ୍ତ୍ରୀ ବିଚାରନ୍ତି ମନେ
ପୃଥ୍ୱୀ ଦ୍ରବିଯାନ୍ତି ସିନା ଇନ୍ଦ୍ରର ବିହୀନେ ।
ସ୍ୱର୍ଗରେ ବସି କରିବା ଆମ୍ଭେ ବୁଝାମଣା
କାଳେ ଅବା କେଉଁ କଥା ହୁଏ ହାରଜିଣା ।
କେହି ତ ଅନ୍ୟଥା କରି ନୁହେଁ କଲା କୃତ୍ୟ
ପୁରାଣ ଶାସ୍ତ୍ରରେ ଯାହା ହୋଇଛି ଉକତ ।
ଏସନ ବିଚାରି ଶୁକ୍ର ପାଳନ୍ତି ମେଦିନୀ
କାଙ୍କୋଳାସୁର ନାମରେ ସ୍ୱର୍ଗେ ପଡ଼େ ଧ୍ୱନି
ଏମନ୍ତେଣ ଗଲା ତହିଁ କେତେ କାଳ ଭୋଗ
ଜଗତୀରେ ବସି ମୁର ଚାହେଁ ଚଉଦିଗ ।
ଜମ୍ବୁ ଦ୍ୱୀପରେ କନକାବତୀ ପୁର ଅଛି
ପାତ୍ରମନ୍ତ୍ରୀ ଘେନି ସଭାକରି ବସିଅଛି ।
ସୁବିଜ୍ଞ ମନ୍ତ୍ରୀକୁ ଚାହିଁ ବୋଲଇ ଅସୁର
ବୋଇଲା ଏଡ଼େକରି କେ ପାରିଲା ସଂସାର
ସୁବିଜ୍ଞ ବୋଇଲା ରାଜା ଶୁକ୍ର ଯହିଁ ମନ୍ତ୍ରୀ
ନାନାଶାସ୍ତ୍ର ବିଜ୍ଞ ସେହି ବ୍ରହ୍ମାଙ୍କର ନାତି
ତାହାଙ୍କର ବୁଦ୍ଧି ବଳେ କାଙ୍କୋଳା ଅସୁର
ତୋହର ଆଜ୍ଞାରେ ପାଳୁଅଛି ଏ ସଂସାର ।
ଏଡ଼େ କୀର୍ତ୍ତି ପୂର୍ବେ କେ ନଥିଲା ଜାଣଅର୍ଜି
ସବୁଠାରେ ଅଛନ୍ତି ତୋ ନାମ ଲୋକେ ଭଜି
କହିଲେ ତ ପ୍ରଜାଙ୍କର ହର୍ଷ ନ ସରଇ
ନିଜ ନିଜ କାର୍ଯ୍ୟେ ଲୋକେ ଛନ୍ତି ମତ୍ତହୋଇ
ଯୁବତୀମଣ୍ଡଣି ରତ୍ନପ୍ରାୟ ସର୍ବଘରେ
ଦିଶନ୍ତି ବାଳକମାନେ କନ୍ଦର୍ପ ଆକାରେ ।
ପୁରେ ପୁରେ ଘରେ ଘରେ ହୁଏ ବାଦ୍ୟନାଟ
ଦ୍ୱାରେ ଦ୍ୱାରେ କେହୁ କରୁଛନ୍ତି ନଟଭାଟ ।
ପଣ୍ଡିତ ଯେ ସାଧୁ ଗୋଷ୍ଠଦ୍ୱିଜେ ବେଦବିଦ୍ୟା
ଯାଗାଦି କରନ୍ତି ଠାବେ ଠାବେ ସ୍ୱାହା ସ୍ୱଧା
ଭୋକୀ ରଙ୍କି ଆଦିକରି ସମସ୍ତେ ସେ ସୁଖୀ
ଅଚିନ୍ତା ହୋଇଣ ସର୍ବେଛନ୍ତି ଧନ ରଖି ।
ଯତି ସନ୍ୟାସୀ ବ୍ରାହ୍ମଣ ତପୋଧନ ଋଷି
ଏମାନେ କରନ୍ତି ଜପ ତପ ସୁଖେ ବସି ।
ଶୁକ୍ରଙ୍କର ବୁଦ୍ଧିବଳେ କାଙ୍କୋଳା ଅସୁର
ପାଳଇ ସେ ନବସୃଷ୍ଟି ହୋଇ ନିରାଧାର ।

ନାହିଁ କାହିଁ ରୋଗ ଶୋକ ଜ୍ୱର ଅପମୃତ୍ୟୁ
ସବୁଠାରେ ଆରୋଗ୍ୟରେ ଛନ୍ତି ଜୀବଜନ୍ତୁ ।
ସବୁଲୋକ ସତ୍ୟବାଦୀ ହୋଇଲେ ସଂସାରେ
ସ୍ତିରୀମାନେ ରଜସ୍ୱଳା ହୁଅନ୍ତି ମାସରେ ।
ଜନମ କରନ୍ତି ଗାବମାନେ ଦଶମାସେ
ଆଉ ସ୍ତିରୀମାନେ ଯେତେ ହୁଅନ୍ତି ଗର୍ଭବାସେ
ଏକା ପତି ପତ୍ନୀରେ ସେ ଯାଏ କାଳଭୋଗ
ଏମନ୍ତ ପ୍ରମାଣେ ପାଳୁଛନ୍ତି ବସି ସ୍ୱର୍ଗ ।
ଶୁଣି ମନରେ ସନ୍ତୋଷ ହେଲା ମୁରଦୈତ୍ୟ
କାଙ୍କୋଳାସୁରକୁ ଧନ୍ୟ କଲାକ ବହୁତ ।
ବୋଇଲାରେ ଧନ୍ୟ ଧନ୍ୟ ତୋର ପିତାମାତା
ଶୁକ୍ରଗୁରୁ ପ୍ରସାଦରେ ହେଲୁ ଜଗଜିତା ।
ନବବରଷ ହୋଇଲା ପାଳୁ ସ୍ୱର୍ଗ ତୁହି
ନିନ୍ଦା ନକଲେ ସଂସାର ଲୋକେ ତୋରେ କେହି
ତୋର ଘେନି ସ୍ୱର୍ଗମୋତେ ହେଲା ଜାଣଜୟ
ବାସବ ଛାରକୁ ଆଉ ମୋର କିସ ଭୟ ।
ଏକମାତ୍ର ସଭା ମୋର ଅଲଗା ଦିଶୁଛି
ନବବର୍ଷ ହେଲା ଦେଇଅଛି ତେବେ ମୂର୍ଚ୍ଛି
ଜିଣିବଇଁ ସମସ୍ତଙ୍କୁ ଇନ୍ଦ୍ର ଥିଲା ପ୍ରାନ୍ତେ
ମଲା କି ଜିଇଲା ଆଉ ଜଣାନାହିଁ ମୋତେ ।
ଆରେ ଆରେ ହଳି ବଳି ଯାଅ ତୁମ୍ଭେ ବେନି
ଶୁକ୍ରମନ୍ତ୍ରୀ କାଙ୍କୋଳାକୁ ଆସ ବେନି ଘେନି
ଆଜ୍ଞା ପାଇଣ ସ୍ୱର୍ଗକୁ ଗଲେ ବେନି ଦୂତ
ରାଜାଙ୍କର ବାକ୍ୟଗୋଟି ବହି ଶିରାଗ୍ରତ ।
ଦୂତେ ଆସନ୍ତେ କାଙ୍କୋଳା ଚିହ୍ନିଲା ଦୂରରୁ
ରାଜାର ଆଜ୍ଞା ବୋଲିଣ ଉଠିଲା ସଭାରୁ ।
ଦୂତକୁ ଶରଧା କରି ଧଇଲା ଭୁଜରେ
ପତ୍ର ଧରି ପାଠ କଲେ ଶୁକ୍ର ମନ୍ତ୍ରୀବରେ ।
ଶୁଣିଣ କାଙ୍କୋଳାସୁର ଉଦବେଗ ମନ
ଗୁରୁଙ୍କୁ ସଙ୍ଗରେ ଘେନି ଯାଏ ଯାତୁଧାନ ।
ଅପୂର୍ବ ଯେ ଦ୍ରବ୍ୟମାନ ଘେନି ବିମାନରେ
ସୈନ୍ୟଙ୍କୁ ବୋଇଲା ଜଗିଥାଅ ସ୍ୱର୍ଗପୁରେ
ମୋହର ଆସିବା ଯାଏ ସୁଖେ ଥାଅ ଜଗି
ନିକଟେ ରାଜାଙ୍କୁ କହି ଆସିବି ମୁଁ ବେଗି ।
ଏତେ କହିଣ କାଙ୍କୋଳା ଗୁରୁ ଘେନିସଙ୍ଗେ
କନକାବତୀ ପୁରକୁ ଗଲା ସେହିଲାଗେ ।
ଦରଶନୀ ଦ୍ରବ୍ୟ ଥୋଇ ରାଜା ବେନି ପାଦେ
ପାୟେ ଯାଇ ଶତବାର ନମିଲା ଆନନ୍ଦେ ।
କାଙ୍କୋଳାସୁରର ଭକ୍ତି ଦେଖି ରାଜା ତୋଷ
ଶୁକ୍ରକୁ ଆସନ ଦେଇ ବସାଇଲା ପାଶ ।
ସକଳ ସଇନ୍ୟ ଉଠି କଲେ ଦଣ୍ଡବତ
କଲ୍ୟାଣ କରିଲେ ଗୁରୁ ହୋଇ ଶ୍ରଦ୍ଧାଚିତ୍ତ ।

ସଭାରେ କାଙ୍କୋଳାସୁର ଆଜ୍ଞା ପାଇ ବସି
ବେନି ଜନ ମୁଖ ଚାହିଁ ବହୁତ ପ୍ରଶଂସି ।
କାଙ୍କୋଳାକୁ ବସାଇଣ ଶୁକ୍ରେ କଲା ପୂଜା
ବୋଇଲେ ସ୍ୱର୍ଗେ ପୁରାଇ ନଦେବୁ ବିଡ଼ୋଜା
ତୁମ୍ଭେତ ସ୍ୱର୍ଗରେ ଥିଲେ ବହୁ ମୋର ଯଶ
ଚଉଦ ଭୁବନଯାକ ହୋଇଲି ମୁଁ ଈଶ ।
କାଙ୍କୋଳା ବୋଇଲା ଦେବତୁମ୍ଭ ବାହୁବଳେ
ସ୍ୱର୍ଗେ ଆମ୍ଭେ ଥିଲେ ପଶିନପାରେ କେବଳେ
କେବଳ ତୋହର ଯେବେ ଦୟାଥିବ ଚିତ୍ତେ
କୋଟିଇନ୍ଦ୍ର ନମାନେ ମୁଁ ତୁମ୍ଭର ଥାଆନ୍ତେ
ଶୁଣିକରି ମୁରାସୁର ହୋଇଲା ହରଷ
ଏଥୁ ଅନନ୍ତରେ ଶୁଣ ଅପୂର୍ବ ରହସ୍ୟ
ଇନ୍ଦ୍ର ଯେ ମୁରକୁ ଲୁଚି ମେରୁକ୍ରୋଟେ ଥିଲା
କାଙ୍କୋଳା ମଞ୍ଚେ ଯିବାର ବାରତା ପାଇଲା
ଦେବଙ୍କୁ ପୁଣି ପୁଚ୍ଛନ୍ତି ଚାହିଁ ପୁରୁହୁତ
କି ବିଚାର କରିବା ହେ ସମସ୍ତେ କହ ତ ।
ମୁରାସୁରକୁ ଦେଖିଣ ଆସିଲଇଁ ଘୁଞ୍ଚି
ଏ ମେରୁକ୍ରୋଟେ ଥିବାରୁ ରହିଲଇଁ ଲୁଚି ।
ନଉବରଷ ହେଲା ତ ସହ୍ୟ କଲୁ ଦୁଃଖ
ଦୈତ୍ୟ ନିର୍ଭୟେ ବଢ଼ିଲେ ଏ ପୃଥିବୀଯାକ
ଏଥକୁ ଡରିଲେ ତାଙ୍କୁ ନାହିଁ କାର୍ଯ୍ୟ କିଛି
ଧର୍ମକୁ ଜିଣିଣ ବଳେ ଆସିଲଇଁ ଘୁଞ୍ଚି ।
କାଙ୍କୋଳା ତ ଏବେ ଯାଉଅଛି ଜମ୍ବୁଦ୍ୱୀପେ
ଆମ୍ଭେ ଆସ ସ୍ୱର୍ଗ ମାଡ଼ି ବସିବା ଏଧାପେ ।
ଅଇଲେ ଆସରେ ଏବେ ମାରିବା ଘଉଡ଼ି
କିମ୍ବା ଘରଦ୍ୱାର ଛାଡ଼ି ଏଥି ଥିବା ପଡ଼ି ।
ଏ ସମୟେ ବୁଝି କାର୍ଯ୍ୟ ନ କରିବା ଯେବେ
ଏଥିର ଯେ ଉପଲକ୍ଷ୍ୟ କହୁ ଶୁଣ ତୁମ୍ଭେ ।
ପତି ବିହୁନରେ ପତ୍ନୀ ଯେସନେ ନିରେଖ
ବିଦ୍ୟା ନଥିବା ବ୍ରାହ୍ମଣ ଯେହ୍ନେ ଅବିବେକ
ତନୟ ନ ଥିବା ଘର ଯେହ୍ନେ ଅସୁନ୍ଦର
ନାସିକା ନଥିବା ମୁଖ ଯେହ୍ନେ ଶୋଭାକର ।
ବୈଦ୍ୟନଥିଲେ ରୋଗୀରକ୍ଳେଶଯେହ୍ନେବଢ଼େ
ଦୟା ନଥିବା ପ୍ରାଣୀର ପୁତ୍ର ଯେହ୍ନେ ଛିଡ଼େ
ରାଜା ନଥିଲେ ତ ରାଜ୍ୟ ଯେହ୍ନେ ହତଶିରୀ
ଜନ ନଥିଲେ ଧନ କି ହେବ ଅର୍ଜିକରି ।
ପଦାର୍ଥ ଅର୍ଜିଛି ହେବ ନଥିଲେ ଯେ କୀର୍ତ୍ତି
ଗାବ ପୋଷି କି ହେବ ନ ହେଲେ କ୍ଷୀରବତୀ
ଶାସ୍ତ୍ର ପଢ଼ି ଅକାରଣ ନ ଜାଣିଲେ ଅର୍ଥ
ଗୁରୁ କରିଲେ କି ହେବ ନ ଦେଲେ ପଦାର୍ଥ
ମନୁଷ୍ୟ କି ହେବ ହୋଇସୌମ୍ୟଯେବେନାହିଁ
ବିଜ୍ଞ ନ ହୋଇଲେ କିସ ହେବ ଦେହବହି
କି ହେବି ସ୍ତିରୀହୋଇ ନ ହେବ ଯେବେସତୀ
କି ହେବ ଦେହବହି ନ ହୋଇ ଯେବେ ଯତି
କି ହୋଇବ ଆଶ୍ରିତ ଲୋକ ନାଶ କରି
ସେହି ଲୋକମାନେ ଜାଣ ଜୀଉଁ ଜୀଉଁ ମରି
ରଥ ଯଦ୍ୟପି ନ ଥିବ ପଦାତି କି ହୁଏ
ପ୍ରଭୁ ନ ଥାଇ ସେବକ କି କରିବ ସ୍ୱୟେଂ ।
ଯଦ୍ୟପି ରାଉତ ରଥୀ ସୈନ୍ୟ ସଙ୍ଗେ ନାହିଁ
ସେ ଥାଟ ଜାଣିବ ନିଶ୍ଚେ ଅନ୍ତେ କ୍ଷୟପାଇ
କାଙ୍କୋଳାସୁର ସ୍ୱର୍ଗରେ ନାହିଁ ପୁଣି ଆଜ
ଆମ୍ଭେ ଏବେ ଚାଲଯାଇ ମାରିବା ଦନୁଜ ।
ଇନ୍ଦ୍ର କହନ୍ତେ ବୋଇଲେ ସର୍ବେ ହେଉହେଉ
ଯେ ଯାହା ବାହନ ଲାଗି ହେଲେ କହୁଁ କହୁଁ
ବାସବ ବିଜୟ କଲେ ଐରାବତ ନାଗେ
ମହିଷ ବାହନ ଯମ ଆରୋହିଲେ ବେଗେ ।
ଏକଇ ବାହନ ଚଢ଼ି ରତ୍ନାକର ବିଜେ
ଆସନ୍ତି ସୋମ ମଣ୍ଡଳ ଯୋଗେ ଦ୍ୱିଜରାଜେ
ସୂର୍ଯ୍ୟ ଦେବତା ସେ ଏକଚକ୍ର ରଥେ ମିଳି
ଆସନ୍ତି ବ୍ରହ୍ମାଗ୍ନି ମେଷ ବାହନରେ ଚଳି ।
ବୃହସ୍ପତି ଆସନ୍ତି ଯେ ଚଢ଼ି ହଂସପନ୍ତି
ଆସନ୍ତି ମକର କନ୍ଧେ ବସି କୁବେରଟି ।
ମୃଗ ବାହନେ ଆସନ୍ତି ବାତ ହୋଇ ସଜ
ନୈର୍ଋତ ବିଜୟ କରେ ଆରୋହିଣ ଗଜ ।
ଭୂରିଶ୍ରବା ଅଶ୍ୱଲାଗି ହେଲେ କ୍ଷେତ୍ରପାଳ
ଚଳିଲେ ନକ୍ଷତ୍ର ବାର ତିଥି ସ୍ୱର୍ଗଆଳ ।
ଏବିଧି ତେତିଶକୋଟି ଦେବ ହେଲେ ସଜ
ସବୁଙ୍କରି କରେ ଅଛି ଅକ୍ଷୟ ନାରାଜ ।
ଦୈତ୍ୟଙ୍କର ଡରେ ମେରୁ ତଳେ ଥିଲେ ପଡ଼ି
ସମସ୍ତେ ଆସନ୍ତି ଏକମୁଖେ ସ୍ୱର୍ଗ ମାଡ଼ି ।
ଯେ ଯାହାର ଶସ୍ତ୍ର ଧରି ବାହି ଅପ୍ରମିତ
ବିମାନ ରଥ ଗଜରେ ଆରୋହି ସମସ୍ତ ।
ସ୍ୱର୍ଗ ମାଡ଼ି ବସିବାକୁ ହେଲେ ଏକରୁଣ୍ଡ
ବରୁଣ ଚନ୍ଦ୍ର ଆଦିତ୍ୟ ମରୁତ ପ୍ରଚଣ୍ଡ ।
ଯମ ଦେବତା କୁବେର ଆଉ ବୃଷଧ୍ୱଜ
ଦେବଙ୍କ ବିକଳ ଦେଖି ଶିବ ହେଲେ ସଜ ।
ନନ୍ଦୀ ମହାକାଳ ଚଣ୍ଡ ପ୍ରଚଣ୍ଡ କାର୍ତ୍ତିକ
ରୁଦ୍ରବଳ ସହିତରେ ଘେନି ବିନାୟକ ।
ଭୀମକୁ ଭ୍ରୁକୁଟି ଆଦିକରି ଭଇରବ
ଜୟ ବିଜୟକୁ ଘେନି ବାହାରିଲେ ଶିବ ।
ଏ ପ୍ରକାରେ ଶିବଗଣ ହୋଇଲେ ବାହାର
ଆପଣା ସଙ୍ଗରେ ଘେନିଛନ୍ତି ପୁରନ୍ଦର ।
ଅଷ୍ଟାଦଶ ରଥ ଘେନି ସହିତରେ ମେଘ
ଗର୍ଜନ ଶବଦ କରି ଗଲେ ଉଦବେଗ ।

ଲକ୍ଷେ ଅଶୀ ସସ୍ର ରଥ ଚିତ୍ରସେନା ମୂଳେ
ହା ହା ହୁ ହୁ ଗନ୍ଧର୍ବେ ଏ ସର୍ବ ଘେନି ଚଳେ
ଚିଥିବାର ଗ୍ରହଗଣ ସକଳ ବତ୍ସର
ଯକ୍ଷ ରକ୍ଷ କିନ୍ନର ଯେ ଅଶ୍ୱିନୀକୁମାର ।
ଖେଚର ଭୂଚର ମୃତ୍ୟୁ ଅପମୃତ୍ୟୁ କାଳ
ଭୂତଗଣଙ୍କୁ ଘେନିଣ ରୁଦ୍ରଗଣ ଠୁଳ ।
ସମସ୍ତେ ଏକମୁଖରେ ବାହାରିଲେ ରୋଷେ
ଅଛିଦ୍ର ହୋଇଣ ପୂରି ରହିଲେ ଆକାଶେ ।
ଅଇଲେ ଅସୁରେ ବାର୍ତ୍ତାପାଇ ସ୍ୱର୍ଗୁ ଉଠି
ରହିଲେକ ଏକମୁଖ ହୋଇ ଚାହିଁ ଦୃଷ୍ଟି ।
ଥାଟ ରଖିଣ ନିର୍ବନ୍ଧେ ଦୈତ୍ୟ ସୈନ୍ୟଯାକ
ଜଗିଲେ ପ୍ରାଣପଣରେ ସ୍ୱର୍ଗ ଚାରିପାଖ ।
ସମୁଦ୍ର ଜଳ ଯେସନେ ପ୍ରଳୟର କାଳେ
ଉଠିଲେ ତେସନପ୍ରାୟ ଦୈତ୍ୟ ଏକାବେଳେ
ଜଗିଲେ ଜଗତୀ ସ୍ୱର୍ଗପୁର ରାଜା ଛଳେ
ରଡ଼ିଘାତ ଶବଦରେ ତ୍ରିପୁର ଉଚ୍ଛୁଳେ ।
ଦଇତ୍ୟଙ୍କର ସାହସ ଦେଖି ବୃନ୍ଦାରକେ
ଭୟକରି କେହି ଆଗେ ନମିଳିଲେ ପାଖେ ।
ଦେବଙ୍କର ଭୟମାନ ଦେଖି ସୁନାସୀର
ମେଘଗଣେ ଆଜ୍ଞାଦେଲେ ବରଷ ପଥର ।
ଘଡ଼ଘଡ଼ି ଚମକ ଯେ ବଜ୍ରସୂଚୀ ଆଣି
ମାର ଦଇତେ ମାରନ୍ତୁ ଗଡ଼ି ମୁଣ୍ଡ ଗଣି ।
ପବନକୁ ବୋଇଲେ ହୋ ବହ ଅଣଚାଶ
ଉଡ଼ି ସମୁଦ୍ରରେ ପଡ଼ି ମରନ୍ତୁ ରାକ୍ଷସ ।
ଉଠିଲେ ମରୁତ ମେଘ ଶୁଣି କୋପାନଳେ
ଗର୍ଜିଣ ଉଠିଲେ ଘୋଟି ଗଗନ ମଣ୍ଡଳେ ।
ପବନ ସାହା ପାଇଣ ବରଷିଲେ ମେଘ
ତତକ୍ଷଣେ ଅନ୍ଧକାର ହେଲା ଚାରିଦିଗ ।
ଘନ ଘନ ଝଟ ଝଟ ବିଜୁଳି ମାରଇ
ଘଡ଼ଘଡ଼ି ଚଡ଼ଚଡ଼ି ଗଗନେ ଶୁଭଇ ।
ଶ୍ୱେତ ପୀତ ଲୋହିତ ପାଣ୍ଡୁର ମେଘ ଚାରି
ହାତୀର ଶୁଣ୍ଡ ପ୍ରମାଣେ ବରଷିଲେ ବାରି ।
ଝୁଙ୍କେ ଝୁଙ୍କେ ମହାବାତ ଟେକିଲା ମଉଳି
ପଥରମାନ ଉଠିଣ ପଡ଼ିଲେକ ଟଳି ।
ଦିଶଇ ଆକାଶପୂରଯାକ ଉଲକାପାତ
ଅତି ପ୍ରଚଣ୍ଡ ହୋଇଣ ବହିଲା ମରୁତ ।
ଭୟଙ୍କର ଗରଜନ କରି ମେଘମାଳ
ନୀର ବରଷିଲେ ଟେକି କ୍ଷୀରସିନ୍ଧୁ ଜଳ ।
ମାରଇ ଚଡ଼କ ଘଡ଼ଘଡ଼ି ଅନୁକ୍ଷଣ
ପଥର ବରଷା କଲେ ଦୈତ୍ୟ ଉପରେଣ ।
ଅସୁର ମୁଣ୍ଡେ ପାଷାଣ ପଡ଼ି ଖଣ୍ଡ ଖଣ୍ଡ
ଭକ୍ଷନ୍ତି ଜଳ ପଥର ବିସ୍ତାରିଣ ତୁଣ୍ଡ ।

ବେଳୁବେଳ ଦେବଗଣ ହୋଇଲେ ଗହଳ
ଲେଖାରେ ଅଟନ୍ତି ଦୈତ୍ୟ ତିନିପଦ୍ମ ବଳ ।
କାଙ୍କୋଳାସୁର ମଞ୍ଚରୁ ଏଣେ ଅଛି ଆସି
ବିଚାରକଲେ ତାହାର ସୈନ୍ୟଯାକ ଆସି ।
ବୋଇଲେ କାଙ୍କୋଳା ଯାଇଅଛି ରାଜାପାଶ
ଆମ୍ଭେମାନେ କେହ୍ନେ ଛାଡ଼ିଯିବୁ ସ୍ୱର୍ଗବାସ
ପଳାଇ ଚାହିଁବା ଅବିଶ୍ୱାସେ କାହାମୁଖ
ଏତେ ପାଞ୍ଚିଣ ସମର କଲେ ଦୈତ୍ୟଯାକ ।
ଘଡ଼ଘଡ଼ି ବଜ୍ରକୁ ନକଲେ ମନେ ଭୟ
ମାଡ଼ିଣ ରହିଲେ ମୁଣ୍ଡମାନ ଯେଝାଠାଏ ।
ବେଳକୁବେଳ ବିଷମଘାତେ ବୃଷ୍ଟିପଡ଼ି
ବଜ୍ରସୂଚୀ ଫଡ଼ନ୍ତେଣ କରି ଘୋରରଡ଼ି ।
ପଡ଼ନ୍ତେ ପାଷାଣ ଦୈତ୍ୟ ନ ଡରନ୍ତି ଯେଣୁ
ଦେଖିଣ ଇନ୍ଦ୍ର ଧଇଲେ ଆର୍ଦ୍ରାବଳି ଧନୁ ।
ପୂରାଇ ପଞ୍ଚ ସହସ୍ର ଶତ ଧନୁ ତୂଣେ
ବିନ୍ଧିଲେ ଅସୁରସୈନ୍ୟ ଦେଖି ରଣଭଣେ ।
କାମରୂପୀ ଦୈତ୍ୟମାନେ ଶର ଦେଖି ଆଡ଼ି
ବାଜିଣ ପଡ଼ିଲେ ଇନ୍ଦ୍ରଶର ସବୁ ଝଡ଼ି ।
ପୁଣି ପେଶିଲେ ବାବଲଶର ଶଚୀସାଇଁ
ଶସ୍ତ୍ର ଆସନ୍ତେ ଆସରେ ଗଲେ ଆଡ଼ହୋଇ ।
ପୁଣିହିଁ ପେଶିଲେ ଲକ୍ଷେ ବାଣ ପୁରୁହୂତ
ଦୂରୁ ଦେଖିଣ ତାହା ନାଶିଲେ ଦଇତ୍ୟ ।
କାଙ୍କୋଳା ଅସୁର ଆଜ୍ଞା ପାଳନ୍ତି ଅସୁର
ବେଳକୁବେଳ ବିନ୍ଧନ୍ତି କୋପେ ପୁରନ୍ଦର ।
ସମର ବଢ଼ିଲା ଅଲୋକିତ କୁତୂହଳ
ବାଣଘାତେ ନ ଦିଶଇ ଆକାଶ ମଣ୍ଡଳ ।
ପୁଣିହିଁ ପେଷିଲେ ଲକ୍ଷେ ଶର ଶଚୀନାହା
ଖଡ଼ଗ ଆଡ଼ି ଅସୁର ନିବାରିଲେ ତାହା ।
ଦେଖିଣ ପାଇଲେ ସୁରପତି ଗୁରୁ ଖଙ୍ଗ
ପୁଣି ଧନୁରେ ଯୋଚିଲେ ନାରୋଚ ପନ୍ନଗ ।
ଦେଖିଣ ଦଇତ୍ୟମାନେ ବିସ୍ତାରିଲେ ପାଟି
ଗର୍ଭେ ପଡ଼ି ସର୍ପ ଭସ୍ମହେଲେ କୋଟି କୋଟି
ପେଷିଲେ ପର୍ବତାଶର ଲକ୍ଷେ ପୁରନ୍ଦର
ଦେଖିକରି ମୁଣ୍ଡମାନ ଆଡ଼ିଲେ ଅସୁର ।
ଗର୍ଜିଣ ପର୍ବତମାନେ ଆସୁଥିଲେ ଉଡ଼ି
ଦୈତ୍ୟଙ୍କ ମୁଣ୍ଡରେ ବାଜିଗଲେ ସର୍ବେ ଝଡ଼ି
ଦେଖିଣ ଇନ୍ଦ୍ର ତାହାଙ୍କୁ କଲେ ସାଧୁ ସାଧୁ
ଧନ୍ୟରେ ଦୈତ୍ୟ ତୁମ୍ଭର ଜୀବନ ବୀରଧୁ ।
ସେନା ନ ଥାଇ ସମର କରୁଛ ମୋ ତୁଲେ
ଭଲବର ତୁମ୍ଭଙ୍କୁ ତ କେଉଁ ଦେବ ଦେଲେ
ଥାଅରେ ସ୍ୱର୍ଗେ ଅମରପଦ ପଛେ ବହି
ନୋହୁ ମୋର ଇନ୍ଦ୍ରପଦ ସ୍ୱର୍ଗ ମଞ୍ଚ ଦେହୀ ।

ଏ ପ୍ରକାରେ ସୁରପତି ହୁଅନ୍ତେ ବିଷାଦ
ତକ୍ଷଣେ ଶୂନ୍ୟରେ ଆସି ମିଳିଲେ ନାରଦ ।
ମୁନିଙ୍କୁ ଦେଖିଣ ଇନ୍ଦ୍ର ହସ୍ତୁ ଧନୁ ଥୋଇ
କଲେ ଦଣ୍ଡବତ ଧରି ମୁନିପାଦ ଦୁଇ ।
ଋଷି ବୋଇଲେ ଶୁଣିମା ଆହେ ସୁନାସୀର
କାହିଁକି ଏତେ ବିସ୍ମୟ ହେଉ ପୁରନ୍ଦର ।
ଏଥର ତ ହାରିଗଲେ ଜୟ ତୋତେ ନାହିଁ
ଦୈତ୍ୟ ଯେପରି ମରିବେ କହେ ଶୁଣତୁହି ।
ଏବେ ସର୍ବ ଦେବଗଣ ଯେଝା ଧନୁ ଧର
ଏକାବେଳକେ ଯୋଚିଣ ବିନ୍ଧ ସର୍ବେ ଶର ।
ଅଣଚାଶ ପବନ ଯେ ବହୁ ଏକାବେଳେ
ବରଷନ୍ତୁ ମେଘମାନେ କରି ମହାପ୍ରଳେ ।
ଏକା ନିଃଶ୍ୱାସେ ସରବେ ଶର ଦିଅ ଛାଡ଼ି
ମରନ୍ତୁ ଦୈତ୍ୟ ବଡ଼ବା ଅନଳରେ ପଡ଼ି ।
କହିଲେ ଏସନ ସନ୍ଧି ଯୁଦ୍ଧ ମୁନିବର
ଶୁଣିଣ ଅତି ଆନନ୍ଦ ହେଲେ ପୁରନ୍ଦର ।
ଦେବଙ୍କୁ ବୋଇଲେ ଆହେ ଶୁଣିଲ କି ଭାବେ
ଉତ୍ତର କଥା କହିଲେ ଋଷି ଆସି ଏବେ ।
ଦୈତ୍ୟଙ୍କର ମୃତ୍ୟୁଭେଦ ଯେହ୍ନେ ହେବ ଜାଣ
ଏକା ନିଃଶ୍ୱାସେ ବିନ୍ଧିବାଆସ ସର୍ବେ ବାଣ ।
ତେବେତ ନିଶ୍ଚେ଼ ଅସୁରେ ଶୂନ୍ୟେଯିବେ ଉଠି
ମରିବେ ବଡ଼ବାନଳେ ବାତବଳେ ପଡ଼ି ।
ବାସବ ବଚନ ଦେବେ କଲେ ଶିରୋଗତ
ଯେଯାହା ଧନୁରେ ଶର ଯୋଚିଲେ ତ୍ୱରିତ ।
ପବନା ପାଶୁପତ ଯେ ପରଶୁ ପନ୍ନଗ
ଅକ୍ଷୟ ଅର୍ଦ୍ଧଚନ୍ଦ୍ର ଯେ ଅଘୋରୁ ଅଜଙ୍ଗ ।
ଅଗ୍ନିଶର କାଳଚକ୍ର ନୈର୍ଋତ ବରୁଣ
ବ୍ରହ୍ମଶର ରୁଦ୍ରଶର ଆଉ ନାରାୟଣ ।
ହର କରେ ଶୂଳ ଇନ୍ଦ୍ର କରେ ବଜ୍ରସୂଚୀ
ବାବଲଶରକୁ କାଳାନଳ ଦେବ ଯୋଚି ।
ଆଦିତ୍ୟ ସେ ସୂର୍ଯ୍ୟାବଳୀ ଯମ କାଳପାଶି
ନୈର୍ଋତ ଲୋହଶରକୁ ଧଇଲେ ଆକର୍ଷି ।
ବୀର ବାୟବାସ୍ତ୍ର ଧନପତି ରତ୍ନାବଳୀ
ପେଷିଲେ ଗନ୍ଧର୍ବଗଣ ମିଳି ଜ୍ୱାଳାବଳି ।
ଦ୍ୱାଦଶ ବିଶ୍ୱ ଦେବତା ଯୋଚିଲେ ଭୈରବ
କିନ୍ନରଗଣ ଧଇଲେ ନାନା ଅସ୍ତ୍ର ଜବ ।
ବାରତିଥି ରଷଯୋଗ ପିତୃ ଦଇବତ
ଏମାନେ ଧଇଲେ କାଳଶର ଯେଝା ହାତ ।
ଏମନ୍ତ ତେତିଶକୋଟି ଦେବତା ସଇନି
ଯୋଚିଲେ ନିଃଶ୍ୱାସରେ ଯେ ଯାହା ଶସ୍ତ୍ରଘେନି
ଆଜ୍ଞା ଦିଅନ୍ତେ ତାହାଙ୍କୁ ଦେବ ସସ୍ତ୍ରଯୋନି
ପେଷନ୍ତି ଶରମାନଙ୍କୁ ଇନ୍ଦ୍ର ଆଜ୍ଞା ମାନି ।

ହୁଁ କାର ନାଦ କରିଣ ଛାଡ଼ିଲେ ନାରାଜ
ଚଳିଲେ ବିକାଶି ଶରମାନେ ବ୍ରହ୍ମତେଜ ।
କାଳାନଳ ପ୍ରାୟ ଶିର ଟେକିଣ ଚଳିଲେ
ଲହଲହ ଜିହ୍ୱାକରି ଚୌଦିଗେ ଘୋଟିଲେ ।
ପଡ଼ିଲେ ପ୍ରଳୟଅଗ୍ନି ଜାଣି ମାଡ଼ି ଶର
ଶବଦରେ କମ୍ପୁଅଛି ପୃଥ୍ୱୀ ଚରାଚର ।
ବହିଲାକ ଅଣଚାଶ ବାୟୁ ଆସି ମାଡ଼ି
ଶର ବାଜନ୍ତେଣ ଦୈତ୍ୟେଶୂନ୍ୟେ ଗଲେଉଡ଼ି
ଚକ୍ର ପ୍ରାୟ ହୋଇଗଲେ ଗଗନ ମାର୍ଗରେ
ଚିହ୍ନ ଦେଖିବାକୁ ଜଣେ ନାହାନ୍ତି ସ୍ୱର୍ଗରେ ।
ବଡ଼ବାନଳେ ପଡ଼ିଣ ଗଲେକ ନିମଜ୍ଜି
ବରୁଣ ପବନମେଘ ଶସ୍ତ୍ରମାନ ବାଜି ।
ଅସୁରେ ମରନ୍ତେ ଦେବେ କଲେ ପୁଷ୍ପବୃଷ୍ଟି
ବସିଲେ ସ୍ୱର୍ଗରେ ଇନ୍ଦ୍ର କରି ଦେବଗୋଷ୍ଠୀ ।
ବସିଲେ ଯେ ଯାହା ପୁରମାଡ଼ି ଦେବଗଣ
ଈଶ୍ୱର ଯେ ଚଳିଗଲେ ଆପଣା ନଗ୍ରେଣ ।
ରହିଲେକ ଦିଗପାଳେ ଯାଇଁ ଯେଝାପୁରେ
ନାରଦେ କହନ୍ତି ଶୁଣ ପ୍ରଭୁ ବେଦବରେ ।
ମୁର ଯେ ଦୂତ ଘେନିଣ କାଙ୍କୋଳାକୁ ନେଲା
ସଭାରେ ବସାଇ ସବୁ କଥା ସେ ବୋଇଲା ।
ରାଜା ଛାମୁରେ ହୁଅନ୍ତେ ବସି କଥାମାନ
କାଙ୍କୋଳାସୁରର ମନ ହେଲା ଛନ୍ନ ଛନ୍ନ ।
ସ୍ୱର୍ଗରେ ସୈନ୍ୟ ତାହାର ଗଲେ ତେଣୁମରି
ଭାଳେ କାଙ୍କୋଳା ଅସୁର ଆଗେ ଦେଖିକରି
କାଳଚକ୍ର ପରାୟେକ ଉଦେ ତାର ମନ
ପାଞ୍ଚିଲା ବସିଲେ ସ୍ୱର୍ଗେ ନିଶ୍ଚେ ଦେବଗଣ ।
ସବୁଦିଗ ହତଶିରୀ ଦିଶୁଅଛି ମୋତେ
ଆହେ ଦେବ ମହାରାଜା ଶୁଣ ମୁରଦୈତ୍ୟେ
ସ୍ୱର୍ଗର ଅଇଲି ସୈନ୍ୟଯାକ ଛାଡ଼ି ଏକା
ଦେବତା ମାଇଲା ପ୍ରାୟେଲାଗେ ମୋତେଶଙ୍କା
ମୁର ବୋଇଲା ନ ଭାଳ ତୁ ରେ କିଛି ମନେ
ଏଡ଼େଭଳି ଲୋକ କେହୁ ଅଛି ତ୍ରିଭୁବନ ।
ଶତ୍ରୁ ହୋଇଣ ମୋ ତୁଲେ ରହିବ ସେ କାହିଁ
ଯହିଁ ପଶିଲେ ମାରିବି ନିଶ୍ଚେ଼ ଖୋଜି ମୁହିଁ ।
ତୁ କିମ୍ପାଇଁ ଚିନ୍ତା ମନେ ଘେନୁ ମହାବୀର
ଅନର୍ଥ ହେଲେ ଧାଇଁଣ କହେ ଆସି ଚାର ।
ଏହି ରୂପେ ସଭାମଧ୍ୟେ କହେ ମୁର ବସି
ଏଥିଉତ୍ତାରେ ନାରଦ ପ୍ରବେଶିଲେ ଆସି ।
ମୁନିଙ୍କି ଦେଖି ଆସନୁ ଉଠି ମୁରାସୁର
ସଭାଲୋକଙ୍କୁ ଘେନିଣ ନମିଲା ପୟର ।
ଆସନ ଦେଇଣ ରାଜା ପୁଚ୍ଛେ ପାଶେ ବସି
ବୋଇଲା ଅଇଲ କିସ ଅର୍ଥେ ବ୍ରହ୍ମଋଷି ।

ନାରଦ ବୋଇଲେ ରାଜା ତୋହ କାର୍ଯ୍ୟସିନା
ସ୍ୱର୍ଗର ବାରତା କିଛି ଆଣିଅଛୁ କିନା ।
ତୁ କାଳେ ମୋତେ ବୋଲନ୍ତୁ ନ କହିଲେମୁନି
ସ୍ୱର୍ଗଥିବା ସୈନ୍ୟ ତୋର ଗଲେ ସଞ୍ଜମନୀ
ଜାଣୁ ଜାଣୁ କେହ୍ନେ ଆସି ନ କହନ୍ତି ଏହା
ତୁ ଅଟୁ ଯେ ଚକ୍ରବର୍ତ୍ତୀ ତିନିପୁରେ ନାହା ।
ତୋହର ସଇନମାନେ କଲେ ମହାଯୁଦ୍ଧ
ଏକା ନିଃଶ୍ୱାସକେ ତାଙ୍କୁ ନାଶିଲେ ବିବୁଧ ।
ବାଣର ଜ୍ୱାଳାରେ କେତେମଲେ ଜାଣପୋଡ଼ି
ଧୂଳି ପରାୟେ ହୋଇଣ ଶୂନ୍ୟେ ଗଲେ ଉଡ଼ି
ବଡ଼ବାନଳରେ ସର୍ବେ ପଡ଼ିଲେକ ଯାଇ
ଏହିକ୍ଷଣି ଦେଖି ଆମ୍ଭେ ଅଇଲୁ ଗୋ ତହିଁ ।
ଏତେ କହି ଚଳିଗଲେ ମୁନି କଚ୍ଛବାଞ୍ଚା ।
ଶୁଣି କାଙ୍କୋଳା ଅସୁର ହୋଇଗଲା ମୂର୍ଚ୍ଛା
ଆହାରେ ସେନାଏ ମୋର ସଖା ସହୋଦର
ଅଥଳ ସମୁଦ୍ରେ ଭେଳା ବୁଡ଼ାଇଲ ମୋର ।
ଆହାରେ ଗୋପକ୍ଷ ରକ୍ଷ ଭକ୍ଷ ମହୀରକ୍ଷ
ପୃଥିବୀକି ତୁମ୍ଭେମାନେ ଅଟ ମହାଦକ୍ଷ ।
ତୁମ୍ଭଙ୍କୁ ସ୍ୱର୍ଗ ଛାଡ଼ିଣ ଆସନ୍ତେ ବାହାରି
ଅଖଡ଼େ ଅକ୍ଷତ ଲୋକ ପ୍ରାୟ ଗଲ ସରି ।
ଯୋଦ୍ଧାକୁ ଯେ ଲେଖାତୁମ୍ଭେ ଅଟ ଜଣେଜଣେ
ତୁମ୍ଭଙ୍କୁ ମାଇଲା ଛାର ଇନ୍ଦ୍ର କେଉଁବାଣେ ।
ଏବେ କାହାକୁ ଘେନି ମୁଁ କରିବି ସମର
ଉବୁରି ନଇଲ ଜଣେ ହେଲେ ବାବୁମୋର ।
ତୁମ୍ଭଙ୍କୁ ଘେନି କାହାକୁ ମୁହିଁ ନମାନଇ
ସାତ ସମୁଦ୍ର ଘଡ଼ିକେ ହେଲେ ପାରେଡ଼େଇଁ
ଏତେ କଥା ହେବ ବୋଲି ନ ଥିଲି ମୁଁ ଜାଣି
ସ୍ୱର୍ଗେ ତୁମ୍ଭଙ୍କୁ ଅଇଲି ଛାଡ଼ି ତୁଚ୍ଛା ପୁଣି ।
ଆରେ ଆରେ କଙ୍କ ଧଙ୍କ ସୁରୁକି ସୁବାହୁ
ଏକରୁ ଆରେକ ତୁମ୍ଭେ କ୍ଷତ୍ରୀକୁଳ ରାହୁ ।
ସମରରେ ଇନ୍ଦ୍ର ଚନ୍ଦ୍ର ନମାନ କାହାକୁ
ତୁମ୍ଭ ଯୁଦ୍ଧ ଦେଖି ମୋର ଉଲୁସଇ ବୁକୁ ।
ଭାଇ ବନ୍ଧୁ ସଖା ତୁମ୍ଭେ କୁଟୁମ୍ବ ମୋ ଅଟ
ତୁମ୍ଭେ ନ ଥିଲେ ମୁହିଁ ନ ଚାଲଇ ବାଟ ।
ମୂର୍ଚ୍ଛିତ ହୋଇଣ ଦୈତ୍ୟ କାନ୍ଦେ ଡକାପାଡ଼ି
ଉଠିଣ ଧଇଲା ମହାରାଜା ଭୁଜେ ଭିଡ଼ି ।
କାଙ୍କୋଳାକୁ ପ୍ରବୋଧିଣ କହେ ମୁରାସୁର
କେଉଁ ଛାର କଥାକୁ କି କାନ୍ଦ ଏତେ ବୀର ।
ଆପେ ଜୀଇ ରହିଥିଲେ ସବୁ ଅର୍ଜିପାରି
ଗୃହ ଦ୍ୱାର କୁଟୁମ୍ବାଦି ମିତ୍ର ସଖା ଶିରୀ ।
ସେବା ଦୟା ଧର୍ମ କର୍ମ ଭକ୍ତି ମୁକ୍ତି ଜୟ
ସ୍ନାନ ଦାନ ଜପ ହୋମ ଯଜ୍ଞ ଆଦି କାୟ ।

ମିଳନ୍ତ ଏ କକ୍ଷ କକ୍ଷ ହୋଇ ସର୍ବେ ଆସି
ଆପେ ଗଲେ ତାହା ସବୁ ନ ମିଳଇ କିଛି ।
ତିନିପଦ୍ମ ସଇନଙ୍କୁ ବାନ୍ଧୁ ଯେବେ ବୀର
ଦଶପଦ୍ମ ଦେଉଛି ତୁ ନିଅ ଅଙ୍ଗେ ତୋର ।
ଇନ୍ଦ୍ର ଯେବେ ଉପରୋଧ ଛାଡ଼ିଲା ଆମ୍ଭଙ୍କୁ
ଆଉ କି ସ୍ୱର୍ଗରେ ମୁହିଁ ରଖିଦେବି ତାକୁ ।
ଆଣିବି ହସ୍ତରେ ପଡ଼ିଗଲେ ବନ୍ଦିକରି
ରଖିବି ଅମର ଇନ୍ଦ୍ର ଛାପି ସ୍ୱର୍ଗପୁରୀ ।
ରାଜା ବୋଲନ୍ତେ କାଙ୍କୋଳା ଛାଡ଼ିଗଲା ମୋହ
ସ୍ୱର୍ଗକୁ ଚାହିଁ ଉଠିଲେ ଦୈତ୍ୟକରି କୋହ
ଗର୍ଜିଣ ବିଜୟରଥେ ମୁରାସୁର ଚଢ଼ି
ବସିଲା ଆରକ୍ତ ଦୃଷ୍ଟି କରି ନିଶମୋଡ଼ି ।
ଧଇଲା ଜ୍ୱଳନ୍ତ ଅଗ୍ନି ଜାଣ କରେ ଶୂଳ
କ୍ଷଣେ ପର୍ଯ୍ୟନ୍ତ ନିଃଶ୍ୱାସ ଛାଡ଼େ ଅନ୍ତରାଳ ।
ମନ୍ତ୍ରୀକି ବୋଇଲା ଆହେ ଥାଟ ବେଗେ ସାଜ
ଗୁପତେ ବସିବା ଯାଇ ସ୍ୱର୍ଗ ମାଡ଼ି ଆଜ ।
ପଳାଇ ଯିବ ଗହଳେ ଗଲେ ଇନ୍ଦ୍ର କାହିଁ
ବୁଡ଼ମାରି ଜଗିଥିବା ନିଶା କାଳେ ଯାଇଁ ।
ପାହାନ୍ତି ବେଳରେ ଝାସି ପଶିବା କଟକେ
ନ ଥାଇ ଏକଥା ଜାଣ ଆଗୁଁ ଦେବଲୋକେ
ଶାକୋଳି ମୁଁ ପିନ୍ଧାଇବି ଧଇଲେ ଇନ୍ଦ୍ରକୁ
ଏ ଉତାରେ ସ୍ୱର୍ଗ ଭୋଗ କରିବି ମନକୁ ।
ବାଜିଲାକ ବିଜିଘୋଷ ଝାଞ୍ଜ ପଖାଉଜ
ଅତି ସମ୍ଭାରରେ ବିଜେକଲା ଦୈତ୍ୟରାଜ ।
ନିଶିରେ ସେ ଅନୁକୂଳ କଲେ ନିଜଥାଟ
ଦକ୍ଷିଣେ ଦାରୁଣ କଣ୍ଠ ବାମରେ ବିକଣ୍ଠ ।
ଚଳେ କାଙ୍କୋଳା ସଇନି ଦଶପଦ୍ମ ଘେନି
ଆବର ସେନାଏ ଚାଲିଛନ୍ତି ଚାରିଖାନି ।
ଯେ ଯାହାର ସୈନ୍ୟବଳ ଘେନି ଚାରିପାଖେ
ଈଶାନ ମୋଡ଼ି ହୋଇଣ ଗଲେ ପୂର୍ବମୁଖେ ।
ରଥେ ଚିରାଳ ପତାକା ଗଜ ଦନ୍ତ ଅଶ୍ୱ
ଧାଡ଼ି ଧାଡ଼ି ହୋଇକରି ଚଳନ୍ତି ଆକାଶ ।
ଧ୍ୱଜ କଳଶ ଉପରେ ମଣ୍ଡି ରତ୍ନମୟେ
ତହିଁରେ ଘଣ୍ଟା ଘର୍ଘର ରୁଣୁଝୁଣୁ ବାଏ ।
ବସ୍ତ୍ର କୁଙ୍କୁମ ଚାମର ମାଳ ମାଳ ଲମ୍ବେ
କୋଟି କୋଟି ରଥପନ୍ତି ସ୍ୱର୍ଣ୍ଣ ପରି ରମ୍ଭେ ।
ବିଭୂଷିତ ରୌପ୍ୟ ସାଞ୍ଜୁ ଆଭରଣ କରି
ଧନୁର୍ଦ୍ଧର ଯୋଦ୍ଧାମାନେ ଅଛନ୍ତି ଆବୋରି ।
ଭୂଷଣ୍ଡି ମୂଷଳ ଯଷ୍ଟି ଧରିଣ ମାହୁନ୍ତେ
ଗମନ୍ତି ଗଜର କନ୍ଧେ ବସି ଯେଝାମତେ ।
ରାଉତ ପଦାତି ସୈନ୍ୟ ଗଣନ ନ ଯାଇ
ଶୂନ୍ୟରେ ଚଳନ୍ତେ ରାତ୍ରେ ପଡ଼େ ତଳେ ଛାଇ

ଶରଦ ଜ୍ୟୋସ୍ନାରେ ନିଶି ଦିଶଇ ଉଜ୍ଜ୍ୱଳ
ଯେ ଯାହାର ମନ୍ତ୍ର ବଳେ ଯାନ୍ତି ସ୍ୱର୍ଗଆଳ ।
ଯିବା ଶବଦଘାତରେ କମ୍ପେ ନବସୃଷ୍ଟି
ସନ୍ଧ୍ୟାକାଳ ମେଘ ପ୍ରାୟ ଆସୁଅଛି ଘୋଟି ।
ଆରକତ ପଦ୍ମ ପ୍ରାୟେ ଦିଶେ ନେତ୍ରମାନ
ପ୍ରକାଶେ ତମ୍ଭାର ବର୍ଣ୍ଣ ଜାଣି କେଶ ଲୋମ ।
ଲହ ଲହ ଜିହ୍ୱା ଦନ୍ତ ମୂଷିକର ପ୍ରାଏ
ରଟ ମଟ ଶୁଭେ ପାଟି ଭିଡ଼ିବାର ଯାଏ ।
ଟହ ଟହ ହସିବାର ଶୁଭେ ଘୋର ରାବ
କୋଳାହଳ ନାଦକରି ଚଳିଲେ ଦାନବ ।
ଆଗ ପଛେ ସୈନ୍ୟ ଚଳେ ମଧ୍ୟେ ମୁରାସୁର
ଉଦେଗିରିରେ ମିଳିଲେ ଯାଇ ନିଶାଚର ।
ବିମାନ ବାହନେ ଗଜ ଅଶ୍ୱ ଥିଲେ ଯେତେ
ବିଜୟା ରଥରେ ରଖିଗଲେ ଶୂନ୍ୟ ପଥେ ।
ଅମର ଭୁବନେ ଯାଇ ମିଳିଲେ ଅସୁର
ଅର୍ଦ୍ଧବାଟେ ନିଃଶବଦେ ଗଲେ ସ୍ୱର୍ଗପୁର ।
ଅସୁରେ ଆସିବା ଦେବତାଙ୍କୁ ଜଣାନାହିଁ
ନିର୍ଶ୍ଚିନ୍ତ ହୋଇଣଛନ୍ତି ସ୍ୱର୍ଗପୁରେ ଶୋଇ ।
ସ୍ୱର୍ଗ ଛାଡ଼ିବା ଦିନୁ ନ ଥିଲେ ସୁଖ ପାଇ
ନଉବରଷେ ସେ ଦିନ ଛନ୍ତି ନିଦ୍ରା ଯାଇ ।
ଜଗିଲେକ ବୁଢ଼ି ପୁଣି ମୁରରାଜା ଥାଟ
କାଙ୍କୋଳା ବସିଲା ଜଗି ଜାଣି ଦ୍ୱାର ବାଟ ।
ଥୋକେ ଅସୁର ରହିଲେ ଚାରିଦ୍ୱାରେ ପଡ଼ି
ରହିଲେ ଉହାଡ଼ସ୍ଥାନେ ଥୋକେଦୈତ୍ୟମାଡ଼ି
ମୁର ଅସୁର ରହିଲା ସିଂହଦ୍ୱାରେ ଯାଇ
ଥୋକେ ସଇନ୍ୟ ଜଗିଲେ ଚାରିପାଶେ ରହି
ଥୋକାଏ ଜଗିଲେ ରଥେ ବସି ଶୂନ୍ୟମାର୍ଗେ
ମାଛି ଗଳିବାକୁ ବାଟ ନାହିଁ ଦଶଦିଗେ ।
ଶୁଣ ହେ ନାରଦ ଦେବତାଙ୍କ କଷ୍ଟବାରେ
ଭାଲପଟ ଲେଖା କେହୁ ଆନ କରିପାରେ ।
ଏମନ୍ତ ରଜନୀ ଆସି ହୁଅନ୍ତେ ପ୍ରବେଶ
ଅରୁଣ ହୋଇଲେ ଆସି ପୂର୍ବେ ପରକାଶ ।
ଶିବଆଳେ ବିଷ୍ଣୁଆଳେ ଶୁଭିଲା ଶବଦ
ଦେବତା ପୂଜାସାରିଣ କଲେ ଶଙ୍ଖନାଦ
ପାହାନ୍ତି ଅବକାଶରେ ହେଲା ଆସି ନିଶି
କାକ କୁକ୍କୁଟ କୋକିଳ ରାବଦେଲେ ବସି
ସିଂହଦ୍ୱାରେ ରଖୁଆଳ ଫେଡ଼ିଲେ କବାଟ
ଲୁଚି ରହିଥିଲେ ତହିଁ ମୁରରାଜା ଥାଟ ।
କିଳିକିଳା ରାବଦେଇ ପଶିଲେକ ବଳେ
ଅସୁରକୁ ଦେଖି ପଳାଇଲେ ଦ୍ୱାରପାଳେ ।
ଅସୁର ସଇନ୍ୟ ମାଡ଼ି ପଶିଲେ ଭିତର
ଦେଖିକରି ଅଷ୍ଟରତ୍ନ କଲେ ସବୁ ଚୁର ।

ମୁର ଅସୁର ରାଜନ ଇନ୍ଦ୍ର ଧରିବାକୁ
ଶତେପଦ୍ମ ସୈନ୍ୟ ଘେନି ଗଲା ଭିତରକୁ
ବେଢ଼ିଲେ ପିମ୍ପୁଡ଼ି ମନ୍ଦାପ୍ରାୟ ଇନ୍ଦ୍ରପୁର
କାହିଁ ଆରେ ଇନ୍ଦ୍ର ବୋଲି ଡାକେ ମୁରାସୁର
ଅମରାବତୀ ପୁରରେ ଇନ୍ଦ୍ର ରଜନୀରେ
ଶଚୀକି ଘେନିଣ ଶୋଇଥିଲା ପଲ୍ୟଙ୍କରେ ।
ହୁରି ହୁଅନ୍ତେ ଶଯ୍ୟାରୁ ଉଠିଲେ ବାସବ
ଶୁଣିଲେ ଯେ ଚାରିକାତି ଶୁଭେ ଦୈତ୍ୟରାବ
ଜଳଘାଟ ବାଟରେ ନଥିବ ବୋଲିକରି
ଶଚୀକି ଘେନିଣ ତହୁଁ ଗଲେ ବଜ୍ରଧାରୀ ।
କାଙ୍କୋଳା ଯେ ଜଗିଥିଲା ପାଣିଦ୍ୱାର ବାଟେ
ଇନ୍ଦ୍ରକୁ ଦେଖିଣ ଧାଇଁ ଧରିଲା ନିରାଟେ ।
ଚନ୍ଦ୍ରୋଦୟ ପଲ୍ୟଙ୍କରେ ଇନ୍ଦ୍ରଥିଲେ ଶୋଇ
ଶଚୀ ଅଷ୍ଟ ଅପସରୀ ସଙ୍ଗେ ଛନ୍ତି ନେଇ ।
ଦକ୍ଷମୂର୍ତ୍ତି ଧରି ନେଲା କାଙ୍କୋଳା ଅସୁର
ରଖିଲା ଆପଣା ଥାଟେ ବାନ୍ଧି ପାଟଡ଼ୋର ।
ଦଶପଦ୍ମ ସଇନ୍ୟଙ୍କୁ କହିଲା ବିଶ୍ୱାସେ
ବୋଇଲା ଏହାକୁ ରଖିଥାଅ ତୁମ୍ଭ ପାଶେ ।
ସାବଧାନେ ଜଗିଥାଅ ନ ଯାନ୍ତୁ ପଳାଇ
ସମୟ ବୁଝିଣ ରାଜା ଆଗେ ଦେବା ନେଇ ।
ଶୁଣିଣ ରହିଲେ ସୈନ୍ୟଯାକ ସୁଖେ ଜଗି
ଇନ୍ଦ୍ର ପଡ଼ିବାରୁ ଦେବେ ପଳାଇଲେ ଭାଗି
କୁରକଲେ ଦୈତ୍ୟଗଣ ତହୁଁ ସ୍ୱର୍ଗପୁର
ଫେଡ଼ା ଫେଡ଼ିକରି ବହିନେଲେ ରତ୍ନହାର
ପିନ୍ଧି ଦିବ୍ୟବାସ ହରିନେଲେ ଦିବ୍ୟନାରୀ
ରହିଲେ ଶୂନ୍ୟ ମଣ୍ଡଳଯାକ ଦୈତ୍ୟପୁରୀ ।
ଧରନ୍ତେ କୁବେର ଦେବତାଙ୍କୁ ଦୈତ୍ୟଯାଇ
ରତ୍ନ ଭଣ୍ଡାର ଛାଡ଼ିଣ ଗଲେ ଯେ ପଳାଇ ।
ରତ୍ନହାର ନେଇ ବେଶହେଲେ ଦୈତ୍ୟମାନେ
ନାନାରୂପ ଧରିକରି ଉଡ଼ିଲେ ଗଗନେ ।
ଶୂନ୍ୟକୁ ବଢ଼ଇ କେହୁ ମଞ୍ଜୁଆସେ ଉଡ଼ି
ଦେଖିକରି ବୃନ୍ଦାରକେ ପଳାଇଲେ ଛାଡ଼ି ।
ଠାବେ ଠାବେପଶି ଦୈତ୍ୟ କରେ ନଷ୍ଟଭ୍ରଷ୍ଟ
ପୁଣି କା ମନ୍ଦିରେ କେହୁ ହୁଡ଼ିଗଲେ ବାଟ
କେ କାହିଁ ଲୁଚିଲା କେହୁ ନ ଯାଇ ବାରଣ
ମେରୁ ପଶ୍ଚିମରେ କେହୁ ଲୁଚିଲାକ ପୁଣ ।
ଥୋକେ ଲୁଚିଲେ ଯାଇଣ ବ୍ରହ୍ମାଙ୍କର ପୁର
ଶୁଣ ହେ ନାରଦ କହୁଛନ୍ତି ବେଦବର ।
ଏମନ୍ତେ ଦେବଙ୍କ ଦୁଃଖ କଳନା ନ ଯାଇ
ଇନ୍ଦ୍ରଙ୍କୁ ଧରିବାକୁ ଗଲାକ ସୁରସାଇଁ
ବାସବକୁ ନ ପାଇଣ ସଭାରେ ବସିଲା
ଇନ୍ଦ୍ରଙ୍କୁ ଧରିବ ବୋଲି ସେନାକୁ ପୁଚ୍ଛିଲା ।

ସମସ୍ତେବୋଇଲେ ଆମ୍ଭେ ତାଙ୍କୁ ଦେଖିନାହୁଁ
କାଙ୍କୋଳା ଧରିଛି ବୋଲି ଶୁଣିବାକୁ ପାଉ
ଶୁଣିକରି ମୁରାସୁର ହୋଇଲା ସନ୍ତୋଷ
ବୋଲେ ମୋ କାଙ୍କୋଳାକୁ ବେଗେଘେନିଆସ
ଯାଅ ଆହେ ଶରଜିତ ଆଉ ବକ୍ରମାଳୀ
ଇନ୍ଦ୍ରଙ୍କୁ ସଙ୍ଗେ ଘେନିଣ ଆସ ବେଗେ ଚଳି
ଶ୍ରୀଅଙ୍ଗେ ମୋହର ଅଛି ଯେତେ ଅଳଙ୍କାର
ସେକାଙ୍କୋଳାକୁ ପିନ୍ଧାଇ ଦିଅ ନେଇ ମୋର
ଏତେବୋଲି ଦେହଲାଗି ସଜ ଯେତେ ଥିଲା
ସରଳ ବାହୁଟି ତାଡ଼ ଝୁମ୍ପା ଜଗଦବାଳା
ତୋଡ଼ର ରତ୍ନକଙ୍କଣ ମୁଦି ରତ୍ନେ ଜଡ଼ି
ଧଣ୍ଡାତ୍ରାସ ଛତ୍ରଦେଲା ଦେବଅଙ୍ଗ ଶାଢ଼ୀ ।
ଘେନି ବେନି ସେନା ଚଳିଗଲେ ଶୀଘ୍ରହୋଇ
ପଛେ ନଉଲକ୍ଷ ସୈନ୍ୟ ଅଛନ୍ତି ଗୋଡ଼ାଇ
କାଙ୍କୋଳାସୁରକୁ ନେଇ ଦେଲେ ବେନିବୀର
ବୋଇଲେକ ଚାଲଯିବା ଲୋଡ଼େ ମୁରାସୁର
ଆପଣଙ୍କୁ କେଡ଼େ ଦୟା କଲେ ନୃପସାଇଁ
ଦେହଲାଗି ଦ୍ରବ୍ୟ ଦେଇଛନ୍ତି ପଠିଆଇ ।
ଏମାନ ଭୂଷଣ ବେଗେ ହୁଅ ମହାବୀର
ବାସବଙ୍କୁ ଧରି ଚାଲ ଯିବାକ ଛାମୁର ।
ଶୁଣିଣ କାଙ୍କୋଳାସୁର ଉଠେ ସଜହୋଇ
ରାଜାଙ୍କର ଦେଲା ଶାଢ଼ୀ ବାନ୍ଧେ ଶିରେନେଇ
ଆଉ ଯେତେ ଅଳଙ୍କାର ଆସିଥିଲେ ଘେନି
ସେବେନି ସଇନ୍ୟ ତାହା ବାଣ୍ଟି ନେଲେପୁଣି
ବୋଳିଲା ଚନ୍ଦନ ଚତୁଃସମ ତାଙ୍କ ଅଙ୍ଗେ
ବୋଇଲେକ ଜଣେ ମୁହିଁ ଅଟେ ତୁମ୍ଭ ସଙ୍ଗେ
ତୁମ୍ଭଙ୍କୁ ପ୍ରଶଂସା କଲେ ମୋର ବୋଲି ଜାଣ
ମୋତେ ଯେତେକ ପ୍ରଶଂସା ତୁମ୍ଭରି ସେ ପୁଣ
ଶୁଣିକରି ବେନିସେନା ହୋଇଲେ ଉଲ୍ଲାସ
କାଙ୍କୋଳାସୁରକୁ ଘେନିଗଲେ ରାଜା ପାଶ
ମଧରେ ଶଚୀ ଇନ୍ଦ୍ରଙ୍କୁ ଅଛନ୍ତି ଚଳାଇ
ଚାରିପାଶେ ଲାଗିଅଛି ଲକ୍ଷେପୁର ହୋଇ ।
ବଜାଇ ଯେ ବିଜିଘୋଷ ଝାଞ୍ଜ କରତାଳ
ଢୋଲଦମା ଟମକ ଯେ ଦୁନ୍ଦୁଭି କଂସାଳ ।
ଡାକି ଡମ୍ବରୁ ମୃଦଙ୍ଗ ବୀଣା ବଇରୀ ବାଦ୍ୟ
ଘୁମୁ ଘୁମୁ ଘୁମୁରା ଦୋସରୀ ଚାଙ୍ଗୁନାଦ ।
ଶଙ୍ଖ କାହାଳୀ ଡିଣ୍ଡିମ ବାଜେ ଡିବି ଡିବି
ସୀତାରା ତୁମ୍ବୁରୁ ବଂଶୀ ମିଷ୍ଟସ୍ୱରେ ଶୁଭି ।
କାହାଳୀ କମ ଭୁଜଙ୍ଗ ଦମା ଶଙ୍ଖ କଡ଼ା
ଘଣ୍ଟା ଘଣ୍ଟା ଘାଗୁଡ଼ିଯେ ବାଜେ ଯୋଡ଼ାଯୋଡ଼ା
ଧଣ୍ଡା ଛତ୍ର ଚିରାଳ ଯେ ଚୌପାଶେ ଉଡ଼ଇ
ବାଦ୍ୟମାନ ତୁଲୁ ତୁଲୁ ପୃଥିବୀ କମ୍ପଇ ।
ଅସୁରଙ୍କ ହରଷ କହିଲେ ନ ସରଇ
ଆଗ ପଛେ ଚଳୁଛନ୍ତି ପୁଞ୍ଜା ପୁଞ୍ଜା ହୋଇ ।
ସିଂହାସନେ ବିଜେ କରିଛନ୍ତି ମୁରାରାୟେ
ସେନାପତିମାନେ ବେଢ଼ି ରହିଲେ ସଭିଏଁ ।
ପାଶେ ଯାଇଣ କାଙ୍କୋଳା ପାୟେ ପଡ଼ିଶୋଇ
ଇନ୍ଦ୍ରଙ୍କୁ ଦେଖିଣ ଶ୍ରଦ୍ଧା କଲା ଦୈତ୍ୟସାଇଁ ।
ଶଚୀଇନ୍ଦ୍ରଙ୍କୁ ନେଇଣ ଆଗେ କଲା ଉଭା
ଚାରିମୁଖକୁ ଅପସରି ଛନ୍ତି ନବଯୁବା ।
ଇନ୍ଦ୍ରଙ୍କୁ ଛିଡ଼ା କରିଲେ ନେଇ ମୁର ଆଗେ
ଅସଂଖ୍ୟ ସଇନ୍ୟ ବେଢ଼ିଛନ୍ତି ଚାରିଦିଗେ ।
ପାଟଡୋରେ ବନ୍ଧା ହୋଇଅଛି ସୁନାସୀର
ମୁର ପଚାରଇ ଏହି କେଉଁ ଦେଶ ଚୋର ।
ଇନ୍ଦ୍ରଙ୍କୁ ସିନା ବରିଣ ଆଣନ୍ତି ମୋ ପାଶ
ଖଣ୍ଡଲୋକ ପ୍ରାୟ ଦିଶୁଅଛି ଏହା ଦେଶ ।
କାଙ୍କୋଳା ବୋଇଲା ଦେବ ଶୁଣ ମୁରରାଜା
ଚୋର ଖଣ୍ଡ ନୁହଇ ଏ ଅଟଇ ବିଡ଼ୋଜା ।
ଶଚୀ ନାମ ଏହାର ଏ ଅଟଇ ଇନ୍ଦ୍ରାଣୀ
ସ୍ୱର୍ଗର ନାୟିକା ଏହୁ ବାସବ ଘରଣୀ ।
ଏହାକୁ ନ ବରି ଇନ୍ଦ୍ର ନୁହଇ କି ସ୍ୱର୍ଗେ
ଅଷ୍ଟ ଅପସରୀମାନେ ଥାନ୍ତି ସଙ୍ଗେ ସଙ୍ଗେ ।
ଆବର ଚାରି ପଦାର୍ଥ ନ ପାଇଲୁ ପୁଣି
ଅଇରାବତ ମାତଙ୍ଗ ଇନ୍ଦ୍ର ନୀଳମଣି ।
ଉଚ୍ଚୈଃଶ୍ରବା ତୁରଙ୍ଗମ ପୁଷ୍ପ ପାରିଜାତ
ଏହା ଇନ୍ଦ୍ର କେଉଁଠାରେ କରିଛି ଗୁପତ ।
ଶୁଣିକରି ମୁରାସୁର ହଲାଇଲା ଦାଢ଼ି
ବାସବଙ୍କୁ ପଚାରଇ ନିଶ ମୋଡ଼ି ମୋଡ଼ି ।
କି ହୋ ବାସବ ହୁଡ଼ିଲୁ କିମ୍ପା ବୁଦ୍ଧି ଏତେ
ଶ୍ରୀ ମୁରାସୁର ବୋଲି କି ନ ଚିହ୍ନିଲୁ ମୋତେ
ଜିଣିଲି ସପତ ଦ୍ୱୀପଯାକ ବାହୁବଳେ
ଏକ ଚକ୍ରବର୍ତ୍ତୀ ହେଲି ମୁଁ ମର୍ତ୍ତ୍ୟମଣ୍ଡଳେ ।
ଅଇଲି ତୋ ଅବିବେକ ପଣେ ଏବେ ସ୍ୱର୍ଗେ
ଏ ଚାରିଦ୍ରବ୍ୟ ଦିଅ ମୁଁ ଯିବି ମର୍ତ୍ତ୍ୟଭାଗେ ।
ପ୍ରାଭବ ପାଇବୁ ଏହା ନ ଦେବୁ ତୁ ଯେବେ
ସେ ଦିନ ପଳାଇବାର ନୁହଇଟି ଏବେ ।
ଅପସରୀଙ୍କୁ ଚାହିଁଣ ବୋଲେ ପୁଣ୍ୟବାଣୀ
ତୁମ୍ଭର ରାଜା ହେଲି ମୁଁ ଥାଅ ଆଜୁଁ ଜାଣି ।
ଆଜ ମୁଁ ବସିବି ସିଂହାସନେ ଘେନି ଶଚୀ
ତୁମ୍ଭେ ଲୋ ବୀଣା ବଜାଅ ରାମଲୀଳା ପାଞ୍ଚି
ଖୋଜିଲେ ପାଇବ କାହିଁ ବାସବ ତୁମ୍ଭର
ଯେ ହୁଏ ଇନ୍ଦ୍ର ତାହାର ତୁମ୍ଭେ ପରିଚାର ।
ନୋହିଲେ ଇନ୍ଦ୍ରକୁ କହ ଦେଉ ନୀଳମଣି
ଗଜ ଅଶ୍ୱ ପାରିଜାତ ଚାରିଦ୍ରବ୍ୟ ଆଣି ।

ଏତେକ ପାଇଲେ ମୁହିଁ ଯିବି ମଞ୍ଚପୁର
ମୋତେ ମାନକରି ସ୍ୱର୍ଗେ ଥାଉ ପୁରନ୍ଦର ।
ଏହା ବୋଲି ମୁରାସୁର ଗର୍ଜେ ଘନ ଘନ
ରକତ ପଦ୍ମ ପରାୟେ କଲାକ ନୟନ ।
ତୁନି ହୋଇଣ ସଭାରେ ସର୍ବେ ଛନ୍ତି ରହି
ଶଚୀ ସୁନାସୀର ଆଦି ନ ପାରନ୍ତି କହି ।
ଅପ୍‌ସରୀଙ୍କ ମଧ୍ୟରେ ରମ୍ଭା ନାମେ ନାରୀ
ସେହି ଏକ ଭରସିଣ କହେ ଆଦିକରି ।
ସ୍ତିରୀମଧ୍ୟେ ନାୟିକା ସେ ଜନ୍ମ ଜାତ ଶୁଣି
ପିକ ଭାଷିଲା ପାୟେ କହେ ମୃଦୁବାଣୀ ।
ବୋଇଲା ଭୋଦେବ ଏବେ ଶୁଣ ଦୈତ୍ୟରାଜା
ଦ୍ରବ୍ୟ ମାଗିଲେକ କାହୁଁ ଦେବଟି ବିଡୋଜା
ଇନ୍ଦ୍ର ନୀଳମଣି ଯାହା ମାଗୁଛୁ ଇନ୍ଦ୍ରକୁ
ମୋର କହିଲେ ସତ କି ଆଣିବ ମନକୁ ।
ବଇକୁଣ୍ଠରୁ ଅଇଲେ ଦିନେ ଚକ୍ରପାଣି
ବାସବଙ୍କୁ ଭେଟିଣ ସେ ମାଗେ ନୀଳମଣି ।
ବିଷ୍ଣୁଙ୍କୁ ଦେଖିଣ ଇନ୍ଦ୍ର କଲେ ନମସ୍କାର
ଦେଲେ ନେଇ ନୀଳମଣି ଦାମୋଦର କର ।
କହିବି ପାରିଜାତର କଥା ଶୁଣ ଦେବ
ଉମା ଇଚ୍ଛା କଲାକୁ ଯେ ମାଗେ ସଦାଶିବ ।
ତୁଷ୍ଟ ମନରେ ଈଶ୍ୱର ସବୁ ମୋକ୍ଷମାନ
ତେଣୁକରି ପାରିଜାତ ଦେଲ ମଘବାନ ।
ଉଚ୍ଚୈଃଶ୍ରବା ଅଶ୍ୱକୁ ଯେ ବୋଲୁ ଦିଅ ଆଣି
ତାହାର କଥା କହୁଛି ଶୁଣ ନୃପମଣି ।
ଅଶ୍ୱିନୀ କୁମାରେ ସିନା ଅଶ୍ୱ ଥାନ୍ତି ରଖି
ତୁମ୍ଭର ଆସିବା ଶୁଣି ପଳାଇଲେ ଦେଖି ।
ସେହିଦିନୁ ସେହିଅଶ୍ୱ ନାହିଁ ସ୍ୱର୍ଗପୁରେ
ଐରାବତ କଥା ମୁହିଁ କହେ ଶୁଣ ବାରେ ।
ମେରୁରେ ସେ ଗଜରାଜ ହେଲେ ଚଳୁଥିଲା
ତୁମ୍ଭ ଆସିବା ଶୁଣି ସେ ସ୍ୱର୍ଗେ ନ ଅଇଲା
ଏଥିକୁ ଗଞ୍ଜଣା ଯେ ନ କର ଦୈତ୍ୟମଣି
ନ ଥିଲା ପଦାର୍ଥ କାହୁଁ ଦେବଇନ୍ଦ୍ର ଆଣି ।
ଏହା ଶୁଣି ମୁରାସୁର ଚାହେଁ କୋପବହି
ବୋଇଲା ତୁମ୍ଭେମାନେ ଲୋ ସବୁ ପାରକହି
ଏହିକଥାକୁ ପ୍ରତେ କି ଯିବ ମୁରାସୁର
ଯାହା କହିବି ଦେଖନ୍ତୁ ଆଜ ଚରାଚର ।
ଏସନ ବୋଲିଣ ମୁର ଚାହେଁ କୋପକରି
ବୋଇଲା ଶାଙ୍କୋଳି ଇନ୍ଦ୍ର ପଦେ ଦିଅ ଭରି
ଦେଖିବାଟି କେଉଁ ବାପ ଦେବ ମୁକୁଳାଇ
ଚାରିଦ୍ରବ୍ୟ ଦେବାଯାଏ ଥାଉ ବନ୍ଦୀ ହୋଇ ।
ରାଜା ଆଜ୍ଞାରେ କାଙ୍କୋଳା ବୀର ଯେ ଚଳିଲା
ଭଣ୍ଡାର ଖଞ୍ଜା ଘରରୁ ଶାଙ୍କୋଳି ଆଣିଲା ।

ତତକ୍ଷଣେ ବାସବର ପାଦେ ଦେଲା ଖଞ୍ଜି
ଦୁଷ୍ଟବୁଦ୍ଧି ଦେଖି ଇନ୍ଦ୍ର ରହେ ଚକ୍ଷୁ ବୁଜି ।
ପାଞ୍ଚିଲେ ଦାନବ ହାତେ ପଡ଼ିଅଛି ଆସି
ଧର୍ମ ପାରିକଲେ ସିନା ଏଥୁ ଯିବି ଖସି ।
ଧର୍ମବନ୍ତ ପ୍ରାଣୀକି ଯେ ପଡ଼ଇ କଷଣ
ଧର୍ମ ଥିଲେହେଁ ରଖନ୍ତି ନିଷ୍ଟେ ନାରାୟଣ ।
ଧର୍ମ ଥିଲେ ପ୍ରାଣୀ ମୁକ୍ତି ପାଏ ରୋଗକ୍ଳେଶୁଁ
ଧର୍ମ ଥିଲେ ରକ୍ଷାହୁଏ ସର୍ପ ବ୍ୟାଘ୍ର ପାଶୁ ।
ଧର୍ମ ଥିଲେ ତରିଯାଏ ରାଜଦଣ୍ଡଠାରୁ
ଧର୍ମ ଥିଲେ ରକ୍ଷାପାଏ ଯାବତ ଭୟରୁ ।
ଧର୍ମ ନଥିଲେ ଅବଶ୍ୟ ପ୍ରାଣୀ ବୁଡିଯାଇ
ଏ କଥାକୁ ହେତୁକରି ନ ପାରନ୍ତି କେହି ।
ଧର୍ମ ମାନି ସିନା ମୁହିଁ ପାଳିଛି ଜଗତ
ଏଥକୁ ଅଧର୍ମ ଆସି କଲା ଯେବେ ଦୈତ୍ୟ
ହେଉ ପଛେ ଦୁଃଖଭୋଗ ନାହିଁ ମୋରଭୟେ
ଭଲା ସେ ରମ୍ଭା ବଞ୍ଚାଇ କହିଲା କଥାଏ ।
ଏହିରୂପରେ ଶଚୀକି କହି ମୋର ଯେବେ
ବଞ୍ଚାଇଣ ଘେନିଯିବ ଏଥୁ ସର୍ବଶୁଭେ ।
ତେବେ ସବୁକାଳେ ଥିବ ମୋର କଥା ରହି
ଅବଶ୍ୟ ଏଥିରୁ ପ୍ରଭୁ କରିଦେବେ ତ୍ରାହି ।
ଏତେ ବୋଲିଣ ବାସବ ପାଦ ଦେଲା ଟେକି
କାଙ୍କୋଳା ଶାଙ୍କୋଳାଖିଲ ଦେଲାମାରିଝିଙ୍କି
ରଖିଲା ବନ୍ଦୀଗୃହରେ ନେଇ ବଜ୍ରପାଣି
ଅଷ୍ଟ ଅପସରୀ ଆଦି ସର୍ବ ମହାମ୍ୱାଣୀ ।
ଏଥିଅନନ୍ତରେ ଶଚୀ ସୁମରିଲେ ଧର୍ମ
ବୋଇଲେ ଏ କଷ୍ଟୁପାରିକର ପରଂବ୍ରହ୍ମ ।
କିବୁଦ୍ଧି କରିବୁ ଆମ୍ଭେ କହିବୁ କାହାକୁ
ପ୍ରଭୁ ସିନା ପରିତ୍ରାଣ କରନ୍ତି ସର୍ବଙ୍କୁ ।
ସେ ପ୍ରଭୁ ଆଜ୍ଞାରେ ସିନା ପାଳୁଥିଲି ମୁହିଁ
ବିନାଅପରାଧେ ଦଣ୍ଡ ଦିଆଇଲେ ବିହି ।
ଦୈତ୍ୟଙ୍କ ହାତରେ ବନ୍ଦୀହେଲୁ ବେନିପ୍ରାଣୀ
ଅକ୍ଷତ ଦେଲୁ ତୁମ୍ଭଙ୍କୁ ଆଶ୍ରେକରି ପୁଣି ।
ଏ ବିପଦ ସମୟରେ ପ୍ରଭୁଙ୍କୁ ସୁମରୁ
ଉଦ୍ଧର ହେ ମହାପ୍ରଭୁ ମହା ସଙ୍କଟରୁ ।
ତୁମ୍ଭର ମହିମା ନିରାଶ୍ରୟ ଜନେ ସାହା
ଭକତଜନ ବାନ୍ଧବ ତୁମ୍ଭେ ଚତୁର୍ବାହା ।
ବିପତ୍ତି ମୋଚନ ତୁମ୍ଭ ପାଦପଦ୍ମ ଗୋଟି
ବିପତ୍ତି ଆଶ୍ରୟ କଲେ ନ ଥାଇ ଦୁଃଖଟି
ଅଭୟ ପାଦ ଅରକ୍ଷଜନର ଯେ ବାନା
ଦୁଃଖନାଶନ ଅଭୟ ସ୍ୱାମୀ ବଜ୍ର ସେହ୍ନା ।
ଆପଣଙ୍କ ପଦ୍ମପାଦେ ପଶୁଛି ଶରଣ
ଦାନବ ମୁଖରୁ ରକ୍ଷା କର ନାରାୟଣ ।

ରଖ ରଖ ଜଗନ୍ନାଥ ତବ ପାଦେ ଆଶ
ପୀତାମ୍ବରଙ୍କୁ ଉଦ୍ଧାର କର ହୃଷୀକେଶ ।
ଚିନ୍ତାରେ ଏମନ୍ତ ବୋଲି ପଡ଼ିଲାକ ବନ୍ଦୀ
ଇନ୍ଦ୍ର ଇନ୍ଦ୍ରାଣୀଙ୍କୁ ଦେଖି ଶୂନ୍ୟେଦେବେକାନ୍ଦି
ବୋଇଲେ ଆରେ ଦଇବ କିମ୍ପା ଏହା କଲୁ
ଅମର ଶିରୋମଣିକି ଦୈତ୍ୟ ହାତେ ଦେଲୁ
ଛାଡ଼ଇ ସବୁରି ଦୁଃଖ ଯାର ମୁଖ ଦେଖି
ଏବେସେ ଦୈତ୍ୟହାତରେ ହେଲେନିରମାକ୍ଷୀ
ଶତେପଲ ଚନ୍ଦନ ଯେ ନିତ୍ୟେ ହୁଏ ବୋଲି
ସେହୁ ଏବେ ଶତେଭାର ପିନ୍ଧିଲା ଶାଙ୍କୋଳି
ଶଚୀକି ଦେଖିଣ ପୁଣ ରୋଦନ୍ତି ଦୈବତ
ଭୋମାତ ପଡ଼ିଲୁ କର୍ମବଳେ ଦୈତ୍ୟହାତ ।
କିରୂପେ ଗୋବିନ୍ଦ ଅବା କରିବେ ରକ୍ଷଣ
ତୁହି ଫିଟିଲେ ସବୁରି ଥିବ ବଡ଼ପଣ ।
ତୁମ୍ଭର ଅଭାବେ ଆମ୍ଭେ ହେଲୁ ଅରକ୍ଷିତ
ତୁହି ଯେ ସ୍ୱର୍ଗେ ନାୟିକା ସବୁ ଦେବମାତ
ଆହେ ଦେବ ନାରାୟଣ କର ଏଥୁ ତ୍ରାହି
ମହାଦୁଃଖନାଶନ ହେ ପ୍ରଭୁ ଭାବଗ୍ରାହୀ ।
ତୁମ୍ଭର ଶରଣ ଆମ୍ଭେ ଅଟୁ ସର୍ବ ସୁର
ଇନ୍ଦ୍ର ଇନ୍ଦ୍ରାଣୀଙ୍କୁ ଏହି ସଙ୍କଟୁ ଉଦ୍ଧାର ।
ଏମନ୍ତ ବୋଲି ଜଣାନ୍ତେ ଦେବେ ଶୂନ୍ୟେଥାଇ
ଏଥୁଅନନ୍ତରେ ନାରଦ ମିଳିଗଲେ ତହିଁ ।
ଋଷିଙ୍କୁ ଦେଖି ଶୋଇଲେ ଦେବ ପାୟେପଡ଼ି
କରନ୍ତି କଲ୍ୟାଣ ମୁନି ମନ୍ତ୍ରକାଣ୍ଡ ପଢ଼ି ।
ବୋଲନ୍ତି କୁଶଳ ବାବୁ ହେଉରେ ତୁମ୍ଭର
ଯୁଗେ ଯୁଗେ ଥାଅ ରହି ହୋଇଣ ପଥର
ଦେବେ ଥାଇଣ କହିଲେ ମୁନି ମୃତ୍ୟୁ ନାହିଁ
ମୂର ତ ବନ୍ଦୀ ରଖିଲା ବାସବଙ୍କୁ ନେଇ ।
ଅଷ୍ଟ ଅପସରା ଆଉ ଶଚୀର ସମେତେ
ଏ ଦଶଜଣଙ୍କୁ ଧରି ରଖିଲେ ଦଇତ୍ୟେ ।
ନାରଦ ବୋଇଲେ ହୋ ନ ଭାଳ ମନେକିଛି
ସ୍ୱର୍ଗକୁ ଯାଇଣ ମୁହିଁ ଉପାୟ କରୁଛି ।
ଅଷ୍ଟ ଅପସରୀ ଆଦି ଶଚୀ ମହାଦେଈ
ଏହାଙ୍କୁ ଦେଉଛି ବୁଦ୍ଧି ବଳେ ପଠିଆଇ ।
ସମୟେ ଠଉରି ତୁମ୍ଭେ ଥିବ ଦେବଗଣେ
ଆଣିବି ଅସୁର ମାରିକରି ତାଙ୍କୁ ରଣେ ।
ଶୁଣିଣ ଦେବତାମାନେ କଲେ ସନମତ
ବୋଇଲେତେବେ ବେଗେରେଯାଅ ତପୋବନ୍ତ
ଏରୂପେ ନାରଦ କଥା କହିଗଲେ ସ୍ୱର୍ଗେ
ମୁରଦୈତ୍ୟ ଆଗେଯାଇ ପ୍ରବେଶିଲେ ବେଗେ
ଋଷିଙ୍କୁ ଦେଖିଣ ମୁରାସୁର କଲା ପୂଜା
ବୋଇଲେ ମିଳିଲେ ଭଲା ଭଲ ବ୍ରହ୍ମଦ୍ୱିଜା ।

ଆସନ୍ତି ସମୟ ମୋର ବୁଝି ବିଚାରି
ଆଚ୍ଛା ପ୍ରସଙ୍ଗମାନଙ୍କୁ କହନ୍ତି ବିସ୍ତାରି ।
ଏବେ ଯେ ବସିଛି ଶଚୀ ଘେନି ଇନ୍ଦ୍ରହୋଇ
ତାହା ଦେଖିଣ କହିବେ ଋଷିଲୋକେ ଯାଇ
ଏମାନେ ଦେଖିଲେ ସିନା ରାଜା ନାମ ପଡ଼େ
କହନ୍ତି କରୁଛି କେତେ କୀର୍ତ୍ତି ସବୁଆଡ଼େ ।
ପଣ୍ଡିତ ଲୋକ ପାଖରେ ପଣ୍ଡିତ ମିଳନ୍ତି
ଆମ୍ଭେ ସୁପଣ୍ଡିତ ଯେଣୁ ଅଇଲେ ତ ଯତି ।
ବୁଝିଲେ ପଣ୍ଡିତ ଭଳି ପରାୟ ଅଟନ୍ତି
ପୁଷ୍ପର ପରାୟେ ଲୋକ ମନକୁ ନିଅନ୍ତି ।
ସେହିପରି ସିନା ଏ ନାରଦ ତପଚାରୀ
କହିବେ ଏ ମୋର କଲା କୀର୍ତ୍ତି ସବୁ ପୁରୀ ।
ଏତେ ବୋଲିଣ ନମିଲା ନାରଦଙ୍କ ପାଶେ
କରଯୋଡ଼ି ନମସ୍କାର କରଇ ଆନନ୍ଦେ ।
ବୋଇଲେ ଭୋ ମୁନି ମୋତେ ଦିଅଆଜଣାଡ଼ୀ
ଇନ୍ଦ୍ର ହୋଇଣ ବସିବି ସ୍ୱର୍ଗପୁର ମାଡ଼ି ।
ଆପଣେ ଶାଢ଼ୀ ଦେଲେ ଯେ ସବୁକଥାଶ୍ରେଷ୍ଠ
ଏ ସଂସାରେ ତୁମ୍ଭେ ଯେଣୁ ଦ୍ୱିତୀବ୍ରହ୍ମା ଅଟ
ଶୁକ୍ରହିଁ ଅଛନ୍ତି ସାକ୍ଷାତରେ ଦୈତ୍ୟଗୁରୁ
ଫିଟିବ ସଂଶୟ ଆଜ ଦୁଇଜଣଙ୍କରୁ ।
ଏସନ ବୋଲି କହିଲା ମୁର ଯହୁଁ ବାଣୀ
ନାରଦେ ଦିଅନ୍ତି ପ୍ରତିବାକ୍ୟ ତାହା ଶୁଣି ।
ଋଷି ବୋଇଲେ ବାବୁରେ ଶୁଣ ମୁରାସୁର
ସ୍ୱର୍ଗରେ ଇନ୍ଦ୍ର ହୋଇଣଥିଲା ପୁରନ୍ଦର ।
ତୁ ଏବେ କିରୂପେ କହ ବସିବୁ ସେ ପୁରୀ
ବୁଝିଲେ ହୋଇଛି ତୋର କିସ ଊଣା ଶିରୀ
ଚଉଦ ଭୁବନେ ରହି ଏକା ଚକ୍ରବର୍ତ୍ତୀ
ଇନ୍ଦ୍ର ହେବାକୁ କିମ୍ପାଇ ବଳାଉ ତୁ ମତି ।
ମୁର ବୋଲେ ଅନୁସରି ଥିବାରୁ ତୁମ୍ଭଙ୍କୁ
ତେଣୁ ପରା ଏହା ଆସି କହିଲ ଆମ୍ଭଙ୍କୁ ।
ଆପଣ ବୋଲି କହିଲ ଏହା ମାତ୍ର ମୁନି
ଆନ ଲୋକ ହୋଇଥିଲେ ଯାନ୍ତାଫଳ ଘେନି
ମୁନି ବିଚାରିଲେ ଦୈତ୍ୟକ୍ଷୟ ହେବ ଯେବେ
ତେବେ ସିନା ତିନିପୁର ଲୋକ ସୁଖୀ ହେବେ
ଏହି କଥାକୁ ନ ମାନେ ଘେନେ ଏଡ଼େ ରୋଷ
ଚାଲ କହିଲେ କରନ୍ତା ପରା କିଛି ନାଶ ।
ଏବେ ଯେବେ ଏହାକୁ ତ ନ କହିବା ଟେକି
ବୋଲିଣ ଅନଳ ଜାଳି ପୋଡ଼ରେ ମୁନିକି ।
ଯାହାକୁ ଏ ସଂସାରରେ ଥାଇ ଯେଉଁ ଯୋଗ
ବିଧାତା ବଳେ କରାଇ ଦିଅ ତାହା ଭୋଗ ।
ବାସବଙ୍କୁ ଯେବେ ଦୁଃଖ ଦେଲା ଏ ପାମର
ଅବଶ୍ୟ ନିକଟେ ମୃତ୍ୟୁ ହୋଇବ ଏହାର ।

ଏତେ ପାଞ୍ଚ ମୁନି ବୋଲେ ଶୁଣ ମହାରାଜା
ରାଜାର ଯୋଗାଡ଼ ତେବେକର ବେଗେଖଞ୍ଜା।
ମୁର ବୋଇଲା କହ ତ କି କି ଲୋଡ଼ା ହେବ
ନାରଦ ବୋଇଲେ ଆଣ ପାଞ୍ଚଗୋଟି ଦ୍ରବ୍ୟ
ସେ ପାଞ୍ଚ ଦ୍ରବ୍ୟର ନାମ ଶୁଣ ଦୈତ୍ୟପତି
ପ୍ରଥମେ ମଣ୍ଡଣି ହେବ ଐରାବତ ହସ୍ତୀ ।
ଦ୍ୱିତୀୟେ ମଣି ତୃତୀୟେ ଉଚ୍ଚୈଃଶ୍ରବା ଅଶ୍ୱ
ଚତୁର୍ଥେ ଶଚୀ ପଞ୍ଚମେ ପାରିଜାତ ପୁଷ୍ପ ।
ଏ ପାଞ୍ଚଗୋଟି ନ ଥିଲେ ନୁହେଁ କେହୁ ରାଜା
ମୁର ବୋଇଲା ମୁନି ଏ ଅଛି ପୁଲୋମଜା ।
ଇନ୍ଦ୍ର ଅପସରୀ ସଙ୍ଗେ ପଡ଼ିଅଛି ବନ୍ଦୀ
ନାରଦେ ବୋଇଲେ ତହିଁ କାର୍ଯ୍ୟନୁହେଁ ସିଦ୍ଧି
ହୁଅନ୍ତେ ତୁ ପଞ୍ଚଦ୍ରବ୍ୟ ଥିଲେ ନିଶ୍ଚେ ରାଜ
ମଣ୍ଡଣି ହୁଅନ୍ତୁ ଥିଲେ ଐରାବତ ଗଜ ।
ବସନ୍ତୁ ସେ ଅଶ୍ୱଲାଗି ହୋଇ ଆସି ସଭା
ପାରିଜାତ ଗୁନ୍ଥିଣ ବାନ୍ଧନ୍ତୁ ମୁଣ୍ଡେ ଗଭା ।
ଇନ୍ଦ୍ର ନୀଳମଣିରେ କି ହୁଅନ୍ତୁ ଭୂଷଣ
କରନ୍ତୁ ଶଚୀକି କୋଳେ ଘେନି ବିହରଣ ।
ଦିଶନ୍ତୁ ରାଜା ହୋ ତେବେ ସିନା ଶୋଭାକର
ଏତେ କଥାରେ ନିଶାଣି ଅଛି ବାସବର ।
ଏକା ଶଚୀ ଅଛି ବୋଲି କହିଲୁ ଯେ ମୋତେ
ତହିଁର ଲକ୍ଷଣ ଶୁଣ ବୁଝାଇବା ତୋତେ ।
ପତିର ଅନ୍ତରେ ସ୍ତିରୀ ଯେହ୍ନେ ଦିଶେ ଶୋଭା
ଏହା ନ ଥିଲେ ଇନ୍ଦ୍ର ନ ଦିଶେ ତେହ୍ନେ ପ୍ରଭା ।
ନ ଜାଣଇ ଅକ୍ଷର ଯେ ଜନ ପଢ଼ି ଲେଖି
କି ହୋଇବ ବେଦଶାସ୍ତ୍ର ଗୃହେ ତାର ରଖି ।
ବଡ଼ ହେବି ବୋଲିଣ ଯେ ହୁଡ଼େ ଜାତି ପୁଣି
ଇନ୍ଦ୍ର ସମ୍ପତ୍ତି ହୋଇଲେ ହୀନେ ତାକୁ ଗଣି ।
ସାଆନ୍ତ ହୋଇବି ଯେଉଁ ରାଜପୁତ୍ର ବୋଲି
ନୀଚଲୋକକୁ ଓଳଗି ମାଗଇ ସେ ବୁଲି ।
ତାହାକୁ ବୋଲନ୍ତି ଲୋକେ ଜାଣ ଅବିବେକ
ଧନ ଅରଜି କି ହେବ ହୋଇ ଅପୁତ୍ରିକ ।
ବିଧବା ସ୍ତିରୀ ମଥାରେ ମଣ୍ଡିଲେ ସିନ୍ଦୂର
ସେହି ଯେହ୍ନେ ସଂସାରକୁ ଦିଶେ ଶୋଭାକର
ତେସନେ ତୁ ନୃପପଣେ ସବୁଠାରେ ପୂଜା
ନିଶାଣ ଉଡାଇ ହେବ କିପରି ସେ ରାଜା ।
ଶୁଣି ମୁରଦୈତ୍ୟ ଯେ କାଙ୍କୋଳା ମୁଖ ଚାହିଁ
ବୋଇଲା ବନ୍ଦୀ ଗୃହରୁ ଇନ୍ଦ୍ର ଆଣ ଯାଇ ।
ଶଚୀ ଅଷ୍ଟ ଅପସରୀଙ୍କୁ ମଧ ଥାଅ ଆଣି
ସଭାରେ ଉଭା କରିଣ ବୁଝିବା ତ ବାଣୀ ।
ବୋଲିବା ଏ ଦ୍ରବ୍ୟମାନ ଅଛି କେଉଁଠାରେ
ଅଣାଇ ଦେଲେ ରାଜା ମୁଁ ହୁଅନ୍ତି ସ୍ୱର୍ଗରେ ।

ଶୁଣିଣ କାଙ୍କୋଳାସୁର ଆପେ ଗଲା ଉଠି
ଇନ୍ଦ୍ରକୁ ଆଣିଲା ଧରି ଶାଙ୍କୋଳିକୁ କାଟି ।
ଶଚୀ ଅପସରୀମାନେ ଛନ୍ତି ପୁଣି ସଙ୍ଗେ
ଦେଖିଣ ଇନ୍ଦ୍ରକୁ ମୁର ବସାଇଲା ଆଗେ ।
ମୁରାସୁର ବୋଇଲା ହେ ଶୁଣ ସୁନାସୀର
ଚାରିଗୋଟି ଦ୍ରବ୍ୟ କାହିଁ ରଖିଅଛୁ ତୋର ।
ସେ ଦ୍ରବ୍ୟ ମୋରେ ଦେଇଣ ଯାଅବେଗେ ଚଳି
ନୋହିଲେ ଥିବୁଟି ବନ୍ଦୀ ପଡ଼ିଣ ଶାଙ୍କୋଳି ।
ଶୁଣିଣ କୋମଳ କରି କହନ୍ତି ବିଡୋଜା
ବୋଲନ୍ତି ସାବଧାନେ ହେ ଶୁଣ ଦୈତ୍ୟରାଜା ।
ଯାହାକୁ ଯେଉଁ ପଦାର୍ଥ ଦେଇଥାଇ ପୁଣି
ତାହା ଲେଉଟି ମାଗିଲେ ପାରିବ କେ ଆଣି ।
ଆଗେ ତ କହିଛି ପୁଛିଥିଲ ରମ୍ଭାନାରୀ
ଇନ୍ଦ୍ର ନୀଳମଣି ମାଗି ନେଇଛନ୍ତି ହରି ।
ସେହିମତି ସର୍ବେ ମାଗିନେଲେ ଦ୍ରବ୍ୟସବୁ
ତୁ ଯାହା ମାଗିଲେ ପୁଣି କେହ୍ନେ ଆଣିଦେବୁ
ଏ ରୂପେ ମୁର ବାସବ ହୁଅନ୍ତେ ସମ୍ବାନ
ଦୁଇକୁଳକୁ ଚାହିଁଣ କହନ୍ତି ନାରଦ ।
ବୋଇଲେ ସଭାସ୍ଥଳେ ଯେ ସର୍ବେ ଥାଅ ଶୁଣି
ରାଜାକୁ ଯେ ହିତହେବ କହିବା ଯେ ବାଣୀ ।
ଇନ୍ଦ୍ର ନୀଳମଣି ଗଜ ଅଶ୍ୱ ପାରିଜାତ
ଯେମନ୍ତ ମିଳବ ତାହା ଶୁଣ ହେ ତଦନ୍ତ ।
ବାସବକୁ ଏକା ତୁମ୍ଭେ ରଖ ବନ୍ଦୀକରି
ଏ ଦ୍ରବ୍ୟ ଯାଇ ଆଣନ୍ତୁ ଶଚୀ ଅପ୍‌ସରୀ ।
ଶଚୀଦେବୀ ନ ଗଲେ ନ ମିଳେ ଏକା ଜାଣ
ଯହିଁ ଥିଲେ ଖୋଜିଣ ଏ ଆଣିବେ ତକ୍ଷଣ ।
ଶଚୀ ସଙ୍ଗରେ ତୁମ୍ଭର ଥୋକେ ଲୋକଯାନ୍ତୁ
ଜଗି ରଖି ଦ୍ରବ୍ୟ ଧରି ବେଗେଣ ଆସନ୍ତୁ ।
ଶୁଣିକରି ସଭାଜନ ପ୍ରଶଂସିଲେ ସର୍ବେ
ବୋଇଲେ କହିଲ ଭଲ କଥା ମୁନି ଏବେ ।
ପାତ୍ର ମନ୍ତ୍ରୀମାନେ ଶୁଣି କଲେକ ପ୍ରଶଂସା
ମୁରକୁ ଅମୃତ ପ୍ରାୟ ଲାଗିଲା ଏ ଭାଷା ।
ଶୁଣିଣ ବୋଇଲେ ସେନାମାନେ ଭଲା ଭଲା
ଶଚୀ ଯାଇ ଆଣନ୍ତୁ ତା ମନକୁ ପାଇଲା ।
ଶୁକ୍ରେ ବୋଇଲେ କଥା ତ ଅଟଇ ଯଥାର୍ଥ
ପୁଲୋମଜା ନ ଗଲେ ତ ନମିଳେ ପଦାର୍ଥ ।
ଆଉଲୋକେ ବୋଇଲେଯେତାହାହେଉହେଉ
ଯାହାର ପଦାର୍ଥ ସେହୁ ଆଣିବାକୁ ଯାଉ ।
ଆମ୍ଭ ସରି ଲକ୍ଷେ ଗଲେ ନୁହେଁ କାର୍ଯ୍ୟକାରୀ
ଆଣିବେ ଏକାକେ ଶଚୀ ଗଲେ ସବୁ ଧରି ।
ଏରୂପେ କହିଣ ମନ ମୋହିଲେ ନାରଦ
କାହାକୁ ଯେ ନାହିଁଜଣା ମୁନି ତର୍କ ଛନ୍ଦ ।

ଏଥୁଅନନ୍ତରେ ଶୁଣ ମୁର ନୃପରାଣ
କାଙ୍କୋଳାକୁ ବୋଇଲା ହୋ ଆଣନବଜଣ ।
ଶଚୀ ଆଉ ଅପ୍‌ସରୀଙ୍କ ସଙ୍ଗେ ତାଙ୍କୁ ଦିଅ
ଜଗି ରଖିଣ ଆଣିବ ଗୁପ୍ତେ ତାଙ୍କୁ କହ ।
ଏକଶତ ମତ୍ତଗଜ ସସ୍ରେ ଅଶ୍ୱଆର
ବେନି ସହସ୍ର ପଦାତି ଜଗିବେ ନିଶାର ।
ଗଜ ମଣି ପୁଷ୍ପ ଅଶ୍ୱ ପାଇବା ପର୍ଯ୍ୟନ୍ତେ
ଖୋଜି ବୁଲି ଜଗି ରଖି ଆଣ ଯେଝାମତେ ।
ଶୁଣିଣ କାଙ୍କୋଳାସୁର ସୈନ୍ୟେ ଦେଲା ଚାହିଁ
ବୋଇଲାହେ ନବଜଣ ଆସ ସଜହୋଇ ।
ଶୁଣିଣ ଆସି ମିଳିଲେ ନଅଟି ଦାନବ
ହେରମ୍ଭ ଦାଡ଼ିମ୍ଭ ମହାରମ୍ଭ ନିମ୍ଭ ତୁମ୍ଭ ।
ଆରମ୍ଭ ଜମ୍ଭ ନିକୁମ୍ଭ ବିଷ୍ଟୁମ୍ଭ ଯେ କହି
ଏମନ୍ତେ ଅଇଲେ ନବସେନା ସଜହୋଇ ।
ଗଜ ଅଶ୍ୱ ପଦାତି ଯେ କହିବା ପ୍ରମାଣେ
ଶଚୀ ଅପସରୀ ଘେନି ମିଳିଲେ ପଶ୍ଚିମେ ।
ମୁର ଆଜ୍ଞାଦେଲେ ଶୁଣ କାଙ୍କୋଳା ଅସୁର
ଇନ୍ଦ୍ରକୁ ନେଇଣ ଏବେ ରଖ ବନ୍ଦୀଘର ।
ଶଚୀ ଅଇଲାଯାଏ ଶାଙ୍କୋଳିଥାଉ ପିନ୍ଧି
କାଙ୍କୋଳା ରଖିଲା ଆଜ୍ଞା ପାଇନେଇ ବନ୍ଦୀ
ଇନ୍ଦ୍ରକୁ ରଖିଲେ ରକ୍ଷୀଲୋକ ଲକ୍ଷେ ଆସି
ଏଥୁଅନନ୍ତରେ ତହିଁ ନାରଦ ମହର୍ଷି ।
ମୁରକୁ ବୋଇଲେ ଆହେ ଶୁଣ ଦୈତ୍ୟମଣି
ତୁମ୍ଭେ ଥାଅ ଏବେ ମୁହିଁ ନେଉଛି ମେଲାଣି ।
ମେଲାଣି ହୋଇଣ ଆମ୍ଭେ ଯାଉଅଛୁ ଚଳି
ଜଟନ୍ତି ଯେ ଜଟିଯିବା ବୋଲି ତପଃଶାଳୀ ।
କଉତୁକ କରିଣ ଯେ କହନ୍ତି ମହର୍ଷି
ବୋଇଲନ୍ତି ପୁତ୍ର ମୋହର ଭାଳୁଥିବେ ବସି ।
କାହିଁଗଲେ ପିତା ବୋଲି ଚାହିଁଥିବେ ଦ୍ୱାରେ
ଅନ୍ନପାଣି ନ କରିଣ ବସିଥିବେ ଘରେ ।
ଆମ୍ଭେ ଅଇଲୁ ଅପାର ବେଳ ହେଲା ଛାଡ଼ି
କ୍ଷଣେ ନ ଦେଖିଲେ ଛାଡୁଥିବେ ଘୋରରଡ଼ି
ସାନପୁଅ ଗୋଳ କହିଲେ ତ ନ ସରଇ
ମୋତେ ନ ଦେଖିଲା ଯାଏ ଭୁଷି ବସିଥାଇ ।
ନାତିଟି ଅଛି ମୋହର ବଡ଼ପୁଅ ବେଟା
କେଣେ ଗଲେ ପିତା ବୋଲି କରୁଥାଇ ହଟା
ଭୁଜା ନ ଦେଇଣ ଯେବେ ଯିବି ମନରଞ୍ଜି
ସେ ଦିନ କୁଡ଼ିଆ ଖଣ୍ଡି ଦେଇଥାଏ ଭାଙ୍ଗି ।
ଜଳଭାଣ୍ଡ କୁଞ୍ଚା ହାଣ୍ଡି ନ ରଖଇ କିଛି
ଗୋଡ଼ାଇ ଧଇଲେ ପଳାଇଣ ଯାଏ ଲୁଚି ।
ମୋହର ବ୍ୟତୀତେ ସେହୁ ନ ମାନେ କାହାକୁ
ମେଲାଣି କର ହେ ରାଜା ଯିବି ମୁଁ ଘରକୁ ।
ଆଉ କ୍ଷଣେ ତୁ ରଖିବୁ ମୋତେଯେବେ ଭଲେ
କଉପୁନୀ ଖଣ୍ଡି ମୋର ଚିରିଦେବେ ଗଲେ
ନ ଧଇଲେ ବସିବେକ ବଳେ କୋଳେ ଆସି
ଦାଢ଼ି ନିଶ ମୋଡ଼ିକରି ଝିଙ୍କିବେ ଆକର୍ଷି ।
ବୀଣାଗୋଟିକ ତ ମୋର ନେବେ ବଳେ ଛାଟି
ଗୁଣ୍ଡାକରି ଦେବେ ନେଇ କାନ୍ଥବାଡ଼େ ପିଟି
ନାରଦ କହନ୍ତେ ଏତେ ବୋଲି ରାଜା ଆଗେ
ମୁନି କଥା ଶୁଣି ସର୍ବେ ହସନ୍ତି ସରାଗେ ।
କଉତୁକ ଲଗାଇଣ କହେ କରି ସ୍ନେହ
ଶୁଣିଣ ହସନ୍ତି ସର୍ବ ଲୋକ ଟହ ଟହ ।
ମିଛ ନ କହିଲେ ମୁନି କଥା ଅଟେ ସତ୍ୟ
ସତ୍ୟ କହିଲେ ତ କଳି ଲାଗେ ଅପ୍ରମିତ ।
ଯେବଣ ଦିନ କଳି ନ ଲାଗେ ଯେଉଁଦିଗେ
ସେହିଦିନ ବଳେ ମୁନି ମିଳନ୍ତି ସେ ଦିଗେ ।
ଯେଉଁଦିଗୁ ଯେଉଁ ଚାରେ ଶୁଣିଣ କଥାଏ
ଫୁଲଇ ପେଟ ତାଙ୍କର ନ କହିବା ଯାଏ ।
କହିଲେ ଯାଇଣ ବୋଧ ହୁଏ ତେବେ ମନ
ତେବେ ଯାଇଁ ଛାଡ଼ଇ ସେ ପେଟଫୁଲାମାନ ।
ଜୟ ଜୟ ପୁଷ୍ପଯୋନି ପୁତ୍ର ଯୋଗାରୂଢ଼
କଉତୁକର ନିମନ୍ତେ ଲଗା କଳି ଖେଡ଼ ।
ଜୟ ଜୟ ବିଧାତାରପୁତ୍ର ଦ୍ୱିତୀବ୍ରହ୍ମା
ସତ୍ୟ ପ୍ରତିପାଳି ବୁଲ ଉଦେ ଅସ୍ତ ସୀମା ।
ଜୟ ଜୟ ହେ ଚତୁରମୁଖ ଆଦି ଚାଟ
ଶରୀର ଯାକ ତୁମ୍ଭର ଅଟେ କଳିହଟ ।
ବଦନ ଅମୃତ ରସ ନେତ୍ର କଳିଦୃଷ୍ଟି
କ୍ଷଣକେ ଚାହିଁଲେ ଲୋକେ ହ୍ୱନ୍ତି ପିଟାପିଟି ।
ଯହିଁଗଲେ କଳିର ବଜାର ଯାଅ ଧରି
କଳି ଧୋକଡ଼ି ମୁଣିକି କାଖେ ଯାକକରି ।
କଳି ମହାଦେବୀ ପତ୍ନୀ ଅଟଇ ତୁମ୍ଭର
ତେଣୁ ମୁନି ବୋଲାଅ ହେ କଳି ପ୍ରିୟବର ।
ଦୁହିତାର ନାମ କଳି ଯେ ସୁହାଶି ପରା
ପୁତ୍ରଙ୍କର ନାମ କଳି ଖୁଣ୍ଟିଆ ବେହେରା ।
କଳିକତରା ବୋଲିଣ ଅଟେ ନାତି ନାମ
ଏତେ କୁଟୁମ୍ବ ବୁଲନ୍ତି ଧରି ଋଷିବ୍ରହ୍ମ ।
ଜୟ ଜୟ ହେ ବିରଞ୍ଚିପୁତ୍ର କଳିବଂଶ
ବିପ୍ର ପିତାମ୍ବରକୁ ଉଦ୍ଧାର ବ୍ରହ୍ମଶିଷ୍ୟ ।
ଚଳନ୍ତି ନାରଦ ଏତେବୋଲି ପାଦୁକାଢ଼ି
ଲେଉଟି ମୁର ଦଇତ୍ୟ ପୁଚ୍ଛେ କରଯୋଡ଼ି ।
ବୋଇଲାତୁମ୍ଭେଟି କେବେ ଦେବଶାଢ଼ୀମୋତେ
ନାରଦ ବୋଇଲେ ଆମ୍ଭେ ଆସିବୁ ପଛନ୍ତେ
ଏଥକୁ କିଛି ମନେ ନ ପାଞ୍ଚ ଦୈତ୍ୟସାଇଁ
ଶଚୀ ବୋଇଲେ ଦିଅଇ ଶାଢ଼ୀ ସିନା ମୁହିଁ ।

ଏତେ କହିଣ ସେ ଋଷିଗଲେ ତହୁଁ ଜଟୀ
ଶୁଣ ହେ ନାରଦ କହୁଛନ୍ତି ପରମେଷ୍ଠୀ ।
ସେ ନବ କନ୍ୟାକୁ ଘେନିଗଲେ ନବଦୈତ୍ୟେ
ତାହାଙ୍କ ବୃତ୍ତାନ୍ତ ଶୁଣ ହୋଇଲା ଯେମନ୍ତେ ।
ନିରପେକ୍ଷ ହୋଇ ଦୈତ୍ୟଜନ ତାଙ୍କୁ ଜଗି
କ୍ଷୁଧା ତୃଷା ମଇଥୁନ ସବୁ ପରିତ୍ୟାଗୀ ।
ଅସୁର ବୋଲନ୍ତି କାହିଁ ଅଛି ତୁମ୍ଭ ଦ୍ରବ୍ୟ
ଶଚୀ ବୋଇଲେ ବୁଲିବା ଚାଲ ଠାବ ଠାବ
ଯେଉଁଦିଗେ ଯେଉଦ୍ରବ୍ୟ ଥିଲେ ନେଇ ରଖି
ପାଇଲେ ଆଣିବା ସିନା ତାହା ଆମ୍ଭେ ଦେଖି
ନ ପାଇଲେ ନଯିବା ହେ ତୁଚ୍ଛାହାତେ କେହି
ରାଜାର ଆଗରେ ଉଭା ହେବା କିସ ଦେଇ ।
ଶୁଣି ସନମତ କଲେ ନବ ନିଶାଚର
ପ୍ରଥମେ ମିଳିଲେ ଯାଇ ବରୁଣ ନବର ।
ତହିଁ ଦେଖିଲେ ନାହାନ୍ତି କେହି ରକ୍ଷ ଜଗି
କାଙ୍କୋଳା ଇନ୍ଦ୍ର କାଳରୁ ଗଲେ ସବୁ ଭାଙ୍ଗି
ତୁଚ୍ଛା ସ୍ଥାନ ଦେଖି ଗଲେ ନଇର୍ଋତ ପୁରୀ
ଦେଖିଲେ ସେହିପୁରରେନେଲେ ଦୈତ୍ୟେକୁରି
ସେ ଠାବରେ ନ ରହିଣ ଗଲେ ଯମପୁରେ
ସେହି ମଧ ପଳାଇଛି ଅସୁରଙ୍କ ପୁରେ ।
ତହିଁ କ୍ଷଣହେ ନ ରହି ଗଲେ ଦୈତ୍ୟଯାକ
ଦେଖିଲେ ନାହାନ୍ତି ଅଗ୍ନିପୁରେ କେହି ଲୋକ
ସେ ପୁରଯାକ ଉପେକ୍ଷି ଚଳିଲେ ଐଶାନ୍ୟେ
ଦେଖିଲେ ଅଛନ୍ତି ତହିଁ ଶିବପୁତ୍ରମାନେ ।
ତାଙ୍କୁ ଦେଖି ଦୈତ୍ୟମାନେ ବାରତା ପୁଚ୍ଛନ୍ତି
ତୁମ୍ଭପରେ ଐରାବତ ଅଛି କି ବୋଲନ୍ତି ।
ଅଶ୍ୱ ପୁଷ୍ପ ଆବର ଯେ ଇନ୍ଦ୍ର ନୀଳମଣି
ପେଶିଛି ଏ ଚାରିଦ୍ରବ୍ୟ ପାଇଁ ମୁର ପୁଣି ।
ଶିବଗଣ ବୋଇଲେକ କାହିଁର ସେ ରାଜା
କାହିଁ ଅଶ୍ୱ କାହିଁମଣି କାହିଁ ପୁଷ୍ପ ଖୋଜା ।
ମୁରର ଲୋକ ହେଲାକୁ ପୁଚ୍ଛଇ ଭରସି
ଆନ ଲୋକ ପାରନ୍ତା କିକେବେ ଏଥେଆସି
ଶୁଣିଣ ଦଇତମାନେ ପଳାଇଲେ ତହୁଁ
ପଶିଲେ କୁବେରପୁରେ ଯାଇଁ କହୁଁ କହୁଁ ।
ଦେଖିଲେ ଭଣ୍ଡାର ହୋଇଅଛି ଅସ୍ତବ୍ୟସ୍ତ
ନ ଯାଇ ପବନପୁରେ ପଶିଲେ ଦଇତ୍ୟ ।
ହୋଇଛି ସେ ପୁରଯାକ ସବୁ ଶୂନ୍ୟମୟେ
ତା ଦେଖି ପୁଛିଲେ ଦୈତ୍ୟମାନେ ଶଚୀଠାଏ
ବୋଇଲେ ଆସିଲୁ ନେବାପାଇଁ ଦ୍ରବ୍ୟଚାରି
ସବୁ ଦିଗଯାକ ଏବେ ଦେଖିଲଇଁ ଫେରି ।
ସବୁ ପୁର ନଗ୍ର ହୋଇଅଛି ଶୂନ୍ୟମୟେ
ଏଣିକି ଆମ୍ଭ ତୁମ୍ଭର ଅଛି କି ଉପାୟେ ।

ଦ୍ରବ୍ୟ ଘେନି ନଗଲେ ତ ନଥୋଇବ ରାଜା
ଯୋଗେ ନ ଥିଲେ ଅଧିକ କରିବ ଭାରିଯା ।
ଏହି ଦୁଇ କଥାକୁ ତ କହିଲା ପୌରୁଷ
ନେଲେହେ ଜାତିଗଲା ନ ହେଲେ ଯିବନାଶ
ଆଉ କଥାଏ କହୁଛୁ ଆମ୍ଭେ ତେବେ ଶୁଣ
ତୁମ୍ଭେ ନଅଟି ସ୍ତିରୀକି ଆମ୍ଭେ ନବଜାଣ ।
ତୁମ୍ଭେ ପତିହୀନା ଆମ୍ଭର ଯେ ନାହିଁ ପତ୍ନୀ
ତୁମ୍ଭେ ଆମ୍ଭେ ଏକଯୋଗ ହେବା ଯେ ଭାବିନୀ
ତୁମ୍ଭେ ତ ନବନାରୀ ହେ ଆମ୍ଭେ ନବ ବର
ବିଧାତା ଏହି ଘଟଣା କରିଛି ଆମ୍ଭର ।
ତୁମ୍ଭେ ନବଯୁବ ଆମ୍ଭେ ଯେ ପୁରୁଷ ସିଂହ
ତୁମ୍ଭେ ଆମ୍ଭେ ଆସ ସଖି ହୋଇବା ବିବାହ ।
ଏହା ଶୁଣି ଶଚୀଦେବୀ ସ୍ତବ୍ଧ ହୋଇ ରହି
ରମ୍ଭା ବୋଇଲା ଏଥକୁ ନ ଭାବ ଗୋ ତୁହି ।
ଏ ନବଦୈତ୍ୟର ଆୟୁ ଶେଷ ହେଲା ଜାଣ
ଆମ୍ଭଙ୍କୁ ଯେବେ ଏ ଆସି ମାଗିଲେ ରମଣ ।
ଶଚୀ ବୋଇଲେ ତୁ ଏହା ଜାଣିଲୁ କେମନ୍ତେ
ରମ୍ଭା ବୋଇଲେ ଜାଣିଲି ମୁହିଁ ଶାସ୍ତ୍ରମତେ ।
ପୃଥିବୀରେ କେଡ଼େ କେଡ଼େ ଲୋକ ଅବତରି
ଅଳ୍ପକେ ମରନ୍ତି ମାଗୋ ହରି ପରସ୍ତିରୀ ।
ଏ କେତେବେଳେ ଆମ୍ଭଙ୍କୁହେଲେକାମଭୋଳ
ତାଙ୍କୁ ପ୍ରଭୁ ପଦାର୍ଥ ନକଲେ କିଛି ମୂଳ ।
ଏହାଙ୍କର ବର୍ତ୍ତମାନ ହେଲା ଜାଣ ମୃତ୍ୟୁ
ଫିଟିଲା କହିଲି ଆମ୍ଭ ବନ୍ଦୀ ତତ୍ତ୍ୱ ହେତୁ ।
ଶଚୀ ବୋଇଲେ ଯିବଇଁ ମୁହିଁ କେହ୍ନେ ପ୍ରତେ
ବନ୍ଦୀ ଫିଟିଲାଯାଏ ତ ନ ଯାଇ ସଂପ୍ରତେ ।
ରମ୍ଭା ବୋଇଲା ମାତା ଗୋ ନ ଭାଳ ତୁକିଛି
ଏଥକୁ ଅବଧି ନାରାୟଣ ଦେବେ ସଞ୍ଚି ।
ଅସୁର ବଳ ଛୁଇଁବେ କିମ୍ୱା ଆମ୍ଭ ଦେହ
କହିବା ଏ ମୃତ୍ୟୁ ହେବ ଯାଏ କରି ସ୍ନେହ ।
ନୋହିଲେ କହିବି ଆଜ୍ଞା ଦିଅ ତାଙ୍କୁ ଆଣ୍ଟ
ନିଶ୍ଚେ ଆମ୍ଭର ବନ୍ଦୀ ଗୋ ଫିଟିବ ନିକଟ ।
ଇନ୍ଦ୍ର ବିନୁ ଆମ୍ଭର ଯେ ନାହିଁ ଆନ ପତି
ଦଇତ୍ୟ ଛାରହୋଇଣ କି ନେବେ ଆମ୍ଭଜାତି
କେବଳ ଶୁଣିଲା ପ୍ରାୟ ଥାଅ ତୁମ୍ଭେ ରହି
ଏହି ଦୈତ୍ୟଙ୍କୁ ଆଜ ମୁଁ ଭୁଲାଉଛି କହି ।
ଶଚୀ ବୋଇଲା ଉପାୟ ଯେବେ ଅଛି ତୋର
ଯେମନ୍ତେ ସେ ନ ଛୁଇଁବ ସେହି ବୁଦ୍ଧିକର ।
ଏହା ଶୁଣି ରମ୍ଭା ନାରୀ ଧୈର୍ଯ୍ୟଭାବେ ହୋଇ
ଚକ୍ଷୁ ବେନି ତରାଟିଣ ଦୈତ୍ୟଙ୍କୁ କହଇ ।
ବୋଇଲେକ ଆମ୍ଭଙ୍କୁ କି ବୋଲି ହରି ଲୋଡ଼
ଯେଉଁ ଶଚୀକି ଦେଖିଲେ ପଡ଼େ ଇନ୍ଦ୍ରବାଡ଼

ସ୍ୱର୍ଗର ନାୟିକା ସେହି ସୃଷ୍ଟି ଶିରୋମଣି
ସବୁ ଯୁବତୀର ପରେ ଅଟଇ ଅଗ୍ରଣୀ ।
ହସ୍ତେ ପଦ୍ମ ପାଦେ ପଦ୍ମ ଦିଶୁଅଛି ଫୁଟି
ବୋଲନ୍ତି ସେ ଦ୍ୱିତୀ କମଳିନୀ ପାଳି ସୃଷ୍ଟି ।
ପଞ୍ଚାଶ କୋଟି ପୃଥ୍ୱୀରେ ଅଟଇ ସେ ରାଜା
ତାଙ୍କ ପାଟରାଣୀ ଅଟେ ଏହୁ ପୁଲୋମଜା ।
ଅଜ୍ଞାନ ପଣେ ରଖିଲା ମୁର ବନ୍ଦୀଘରେ
ସେହି ପୁଣି ତୁମ୍ଭେ ଏହା ବୋଲି ନାହିଁ ଥରେ
ସେ ମୁରରତୁମ୍ଭେ ମାତ୍ରହେଲରେ ଦୋରେହା
ଶୁଣିଣ ଦଇତ୍ୟଙ୍କର କମ୍ପିଗଲା କାୟା ।
ହରିବେ ବୋଲିସିନା ସେ ପାଞ୍ଚୁଥିଲେଦୈତ୍ୟ
ରମ୍ଭା କହିଲା ମାତ୍ରକେ ଡରିଲେ ସମସ୍ତ ।
କାର୍ପଣ୍ୟ ହୋଇ କହନ୍ତି ଦୈତ୍ୟ କରଯୋଡ଼ି
ଭୋ ମାତ ନଜାଣି ଆମ୍ଭେ ବୋଇଲୁ ଗୋହୁଡ଼ି
ଏ କଥା ଗୋପନ କରି ଦୋଷ କ୍ଷମାକର
କାହିଁଅଛି ଦ୍ରବ୍ୟ ଚାଲ ଖୋଜିବା ସତ୍ୱର ।
କହୁଅଛି ରମ୍ଭା ତେବେ ଶୁଣ ଦୈତ୍ୟମାନେ
ମେରୁସ୍ଥାନ ଚାଲ ଯିବା ଦ୍ରବ୍ୟାନୁସନ୍ଧାନେ ।
ଶୁଣିଣ ପଦ୍ମ ନଗରୀ ଗଲେ ନବଦୈତ୍ୟେ
ଶଚୀ ଅପସରୀଙ୍କୁ ଘେନିଣ ସମସ୍ତେ ।
ବୁଲି ବୁଲି ଯାଇ ପଶନ୍ତେ ସେ ମେରୁକ୍ରୋଟେ
ଦେଖିକରି ଦେବଗଣେ ଓଗାଳିଲେ ବାଟେ ।
ବୋଇଲେ କିଏ ତୁମ୍ଭେ ଯେ ପଶ ମେରୁସ୍ଥଳି
ଚିତ୍ରସେନ ଜାଣିଲେ ତ ଦେବ ବିଶାବଳୀ ।
ଅସୁରେ ବୋଇଲେ ହୋ ନକରତୁମ୍ଭେଗୋଳ
ଗଜ ଅଶ୍ୱ ଖୋଜି ଆମ୍ଭେ ଆସିଛୁ କେବଳ ।
ଶଚୀ ଅପସରା ମଧ୍ୟ ଏ ଅଛନ୍ତି ବସି
ମଣି ପୁଷ୍ପ ପାଇଲେଟି ଯିବୁ ସର୍ବେ ମିଶି ।
ସବୁ ଦିଗଯାକ ବୁଲି ଆସିଲୁ ଏଠାକୁ
ନ ଦେଲେ ବାହୁଡ଼ି ଯାଇ କହିବୁ ମୁରକୁ ।
ଜାଣନାରେ ମୁର ପଞ୍ଚଭୁବନକୁ ସାଧି
ଏବେ ସ୍ୱର୍ଗରେ ବସିଛି ଦେବତାଙ୍କୁ ଛେଦି ।
ବାରତା ପାଇଲେ ଦଣ୍ଡ ବାହିବ ଏକ୍ଷଣି
ଅସ୍ତବ୍ୟସ୍ତ କରିବଟି ମେରୁକ୍ରୋଟ ପୁଣି ।
ଶୁଣିଣ ରକ୍ଷକ ଧାଇଁଗଲେ ସେହିଲାଗେ
ବାରତା କହିଲେ ଯାଇଁ ଚିତ୍ରସେନ ଆଗେ ।
ବୋଇଲେ କଥାଏ ଶୁଣ ଆହେ ପୁତ୍ରମଣି
ଶଚୀଙ୍କି ଦ୍ୱାରରେ ଆହେ ଦେଖିଲୁ ଏକ୍ଷଣି ।
ଅସୁର ଗୁଡ଼ାଏ ତାଙ୍କ ସଙ୍ଗେ ଛନ୍ତି ଆସି
ଗଜ ଅଶ୍ୱ ଆଦି ବୋଲି ମାଗୁଛନ୍ତି ବସି ।
ଶୁଣିଣ ଚିତ୍ରସେନର ହର୍ଷ ହେଲା ମନ
ବୋଇଲା ଅନ୍ଧ କି ପାଇଅଛି ଚକ୍ଷୁଦାନ ।
ଅପୁତ୍ରିକ ଘରେ କିବା ଜନ୍ମେ ଆସି ପୁତ୍ର
ଭଲା ଭଲା ଦଇବରେ କଲା ଘଟସୂତ୍ର ।
ମାତା ଯେବେ ଅଇଲେ ରେ ଆମ୍ଭ ବଡ଼ଭାଗ୍ୟ
କେତେ ସୈନ୍ୟଛନ୍ତି ସଙ୍ଗେକହ ମୋରଆଗ
ରକ୍ଷାକର ବୋଇଲେ ଯେ ଅକ୍ଷ ପୟୋଦର
ବେନି ସହସ୍ର ସଇନ୍ୟ ସସ୍ତ୍ରେ ପଶୁଆର ।
ଏକଶତ ମତ୍ତଗଜ ନବଜଣ ରଥ
ଅଷ୍ଟ ଅପସରୀ ସଙ୍ଗେ ସର୍ବେ ଆସୁଛନ୍ତି ।
ଶୁଣିକରି ଚିତ୍ରସେନ ଉଠିଲାକ ବେଗେ
ତେତିଶକୋଟିଦେବତା ବେଢ଼ିଲେଚୌଦିଗେ
ଦେବଙ୍କୁ ବୋଇଲେ ଦଇତ୍ୟଙ୍କୁ ଧରି ମାର
ଆଗରେ ପଡ଼ିଲେ ଆଉ ଉପ୍ରୋଧ ନ କର ।
ଶୁଣି ଅଙ୍ଗାରପନ୍ନଗ ଆଦି ନବ ଭାଇ
ଧଇଲେ ନବଦୈତ୍ୟଙ୍କ କେଶ ବେଗେଯାଇ
ବିଜେ କଲା କଟାରୀରେ ଛେଦି ତାଙ୍କ ଶିର
ପଦାତିଙ୍କ ସହ ପେଷିଦେଲେ ଯମପୁର ।
ବିଡ଼ିଆ ପ୍ରମାଣରେ ନ ରହିଲେ ଗୋଟିଏ
କାହାକୁ ଜଣାନାହିଁ ସେ ମଲେ ଡଗରାଏ ।
ଧର୍ମବନ୍ତ ପୁରୁଷଙ୍କୁ ପଡ଼ିଲେ କଷଣ
ଅବଶ୍ୟ କରନ୍ତି ଜଗନ୍ନାଥ ପରିତ୍ରାଣ ।
ପାପିଷ୍ଠ ଲୋକଙ୍କୁ ଦଣ୍ଡ ପଡ଼ିଣ ନଥାଇ
ପଡ଼ିଲାକ୍ଷଣି ସମୂଳେ ଜାଣ ନାଶଯାଇ ।
ସାହସରେ ଶଚୀଦେବୀ ପରମ ଦୟାଳୁ
ଫିଟିଣ ଅଇଲେ ତେଣୁକରି ଦୈତ୍ୟବଳୁ ।
ମାତାଙ୍କୁ ଦେଖିଣ ପୋଏ ହୁଅନ୍ତି ବିକଳ
ଆନନ୍ଦରେ ଚକ୍ଷୁରୁ ଯେ ବହେ ଅଶ୍ରୁଜଳ ।
ମାତାଙ୍କର ପାଦେ ସର୍ବେ କରନ୍ତି ଦଇନୀ
ମୁଖେ ଚୁମ୍ବନ ଦିଅନ୍ତି ଧରିଣ ଜନନୀ ।
ମୃତପିଣ୍ଡେ ଜୀବନ ପଶିବା ପ୍ରାୟ ହୋଇ
ଦେଖିବା ବୋଲିଣ ପୁତ୍ରେ ଆସୁଛନ୍ତି ଧାଇଁ ।
ବାଜେ ମହୁରୀ ଦୁନ୍ଦୁଭି ଶଙ୍ଖ କୁତୂହଳେ
ଜନନୀଙ୍କୁ ବସାଇଲେ ଅଷ୍ଟରତ୍ନ ଦୋଳେ ।
ଆଗ ଚିତ୍ରସେନ ପଛେ ଅଙ୍ଗାର ପନ୍ନଗ
ବାମଦିଗେ ଜୟସେନ ଡାହାଣେ ଅନଙ୍ଗ ।
ଏହାଙ୍କ ସଙ୍ଗରେଛନ୍ତି ସକଳ ଦନୁଜ
କେ ରଥେ ଚଢ଼ି କେ ବସିଅଛି ଅଶ୍ୱଗଜ ।
କେ ଛତ୍ର ଟେକିଣ କେହୁ ଚାମର ବିଞ୍ଚଇ
କେ ବାଠ ପିଞ୍ଛ ଧରିଣ ପଛରେ ପକାଇ ।
ଉପରେଣ ସୁବାସିତ ପୁଷ୍ପଗୁଣ୍ଡି ଉଡ଼େ
ଆଗରେ ଚତୁଃସମ ଚନ୍ଦନ ଛେରା ପଡ଼େ ।
ଯୋଡ଼ାଯୋଡ଼ା ଶଙ୍ଖବାଜେଯୋଡ଼ାଯୋଡ଼ାକମ
ବାଦ୍ୟତାଳ ଝଞ୍ଜାଳ ଯେ ବାଜେ ଝମ ଝମ ।

ଅପସରାଆଦି କିନ୍ନରୀ ବିଦ୍ୟାଧରୀ ମିଳି
ଶଚୀର ଆଗ ପଛରେ ଦ୍ୟନ୍ତି ହୁଳହୁଳି ।
କୁଙ୍କୁମ ଶ୍ରୀକର୍ପୂର କସ୍ତୁରୀ ଯୋଡ଼ା ପାଖେ
ତଣ୍ଡୁଳ ଦୁର୍ବାଅକ୍ଷତ ପଡ଼େ ଚାରିପାଖେ ।
ଅଷ୍ଟଅପସରୀଏ ନାଚନ୍ତି ଗେଲେ ଗେଲେ
ଆନନ୍ଦ ହୋଇଣ ସର୍ବେ ମରୁଥାନ୍ତି ରହିଲେ
ଦେବଙ୍କ ନବରେ ମାଏ କଲେ ଯାଇଁ ବାସ
ସଭା ମଣ୍ଡାଇ ସମସ୍ତେ ବସିଲେ ଚୌପାଶ ।
ପୁତ୍ର ନାତି କୁଟୁମ୍ବଙ୍କୁ ପାଶରେ ବସାଇ
ବନ୍ଦୀ ଯିବାର କଥାକୁ ହୁନ୍ତି କୁହାକୁହି ।
ଚିତ୍ରସେନ ବୋଇଲେ ଯେ ଆମ୍ଭ ବଡ଼ଭାଗ୍ୟ
ନାରଦ କହି ଯାଆନ୍ତେ ଚାହିଁଲେ ଚୌଦିଗ
ଯେବେଆସି ମାତାଗୋବେଢ଼ିଲେଦୈତ୍ୟସ୍ୱର୍ଗେ
ଇନ୍ଦ୍ର ଇନ୍ଦ୍ରାଣୀ ପଡ଼ିଲେ ଦୁହେଁ ବନ୍ଦୀ ଆଗେ
ସେହିଠାରୁ ଆମ୍ଭର ଯେ ଉଡ଼ିଲା ସାହସ
ନାରଦ ଆସିଣ ମାତ୍ର ଦେଲେକ ଆଶ୍ୱାସ ।
ଶଚୀ ବୋଇଲେ ବାବୁରେ ଥିଲୁ ଆମ୍ଭେବନ୍ଦ
ସେ ନାରଦ ଲାଗି ପାରି କଲେକ ଗୋବିନ୍ଦ
ମୁରକୁ ନାରଦ ଯେବେ ନ କହନ୍ତେ କୋଟି
ଆପେ କିପରି ଏଠାକୁ ଆସନ୍ତୁ ଅବାଟି ।
ଏବେ ପିତା ଆସିବାକୁ ବୁଦ୍ଧି ବେଗେ କର
ଏ କଥା ଗୋଟା ଏକା ନ ଜାଣୁ ମୁରାସୁର
ଏପରିରେ କଥାବାର୍ତ୍ତା ହୋନ୍ତି ମାତାପୋଏ
ନାରଦ ଋଷି ପ୍ରବେଶ ହୋଇଲେ ସେଠାଏ
ମୁନିଙ୍କି ଦେଖି ଶୁତିଲେ ଦେବେ ପାଏ ପଡ଼ି
ଉଠିଣ କହନ୍ତି ଶଚୀ ମଧ କରଯୋଡ଼ି ।
ବୋଲନ୍ତି ଆହେ ଭୋଦେବ ତୁମ୍ଭ ପରସାଦେ
ଦୈତ୍ୟ ସଙ୍କଟୁ ତରିଲି ମୁହିଁ ଅପ୍ରମାଦେ ।
ଆପଣଙ୍କର ମହିମା ଦେବେ ଅଗୋଚର
ନ ପାରେ ଭଣି ମୁଁ ଦେବ ଉପମା ଯାହାର
ସର୍ବଜ୍ଞ ପୁରୁଷ ତୁମ୍ଭେ ସମସ୍ତଙ୍କ ବନ୍ଧୁ
ଦେବଙ୍କ ବିପଦ ତୁମ୍ଭେ ଶୁଣ ପୂର୍ଣ୍ଣଇନ୍ଦୁ ।
ତୁମ୍ଭର କୃପାରୁ ଆମ୍ଭେ ହୋଇଲୁ ସଫଳ
ଏବେ କି ରୂପେ ଆସିବେ କହ ଆଖଣ୍ଡଳ ।
ଶଚୀ ବାଣୀ ଶୁଣି ମୁନି ହୋଇଲେ ସନ୍ତୋଷ
ଇନ୍ଦ୍ର ପୁତ୍ରକୁ ବୋଲନ୍ତି ଚାହିଁ ଭାଳ କିସ ।
ଉଦ୍ୟମ ଶାସ୍ତ୍ର ପ୍ରାକର୍ମ ଧୈର୍ଯ୍ୟ ବଳବୀର୍ଯ୍ୟ
ଶତ୍ରୁକୁ ବିନାଶ କର ପାଞ୍ଚ ଷଡ଼କାର୍ଯ୍ୟ ।
ବୁଦ୍ଧି ଦଣ୍ଡଶାସ୍ତ୍ର ଭେଦ ଏ ଯେତେ ପ୍ରକାର
ଛଳ ଶ୍ଳେଷ ରଖି ଜାଣ କରିବ ବେଭାର ।
ବଳ ନ ପାଇଲେ ପୁଣ କଲେ କାର୍ଯ୍ୟକରି
ହାରି ଅପଚୟ କ୍ଷଣେ ଏଥି ନ ବିଚାରି ।
ଯେବେ ତୁମ୍ଭର ପିଅର ପଡ଼ିଅଛି ବନ୍ଦୀ
ନିଶାକାଳେ ଯାଇ ତହିଁ କର କାର୍ଯ୍ୟସିଦ୍ଧି ।
ଅବଧି ଗଲେ ତ କାର୍ଯ୍ୟ ହୋଇବ ତୁମ୍ଭର
ଅସମୟ କାଳେ କେଉଁ କଥା ନ ବିଚାର ।
ଦେହପରେ ପଡ଼ିଲେ ନକର ଲଜ୍ଜା ଜାଣ
ରଖିବ ଚଣ୍ଡାଳ ଘରେ ହେଲେ ଲୁଚି ପ୍ରାଣ
ନୀଚ ଲୋକଙ୍କୁ ଯେ ରଖିଥିବ ଅନୁସରି
ପ୍ରାଣରକ୍ଷା ପାଇଁ ଏହିପରି କାର୍ଯ୍ୟ କରି ।
ଇନ୍ଦ୍ର ଅଇଲାରୁ ଆମ୍ଭେ ପାଉକିନା ସ୍ୱର୍ଗ
କହିବୁ କରିଣ ସମାଧାନ ମୁର ଆଗ ।
ଅବଶ୍ୟ ପୂରିବ କିଛିଦିନେ ମୃତ୍ୟୁ ତାର
ଦେବେ ନ କହିଲେ ବିଷ୍ଣୁ ନୋହି ଅବତାର
ଯାହାକୁ ଜାଣ ସରବେ ଡରନ୍ତି ସଂସାରେ
ସେହୁ ପ୍ରାଣୀ ଅଳ୍ପାୟୁଷ ହୁଏ ଅଳ୍ପକରେ ।
ପ୍ରାଣ ଥିବା ପରିଯନ୍ତେ ପିତା କାର୍ଯ୍ୟ କରି
ତେବେ ତାକୁ ବୋଲନ୍ତି ସୁପୁତ୍ର ତିନିପୁରୀ ।
ଯଥାସାଧ ଚେଷ୍ଟାକରି ନ କର ଯେ ହେଳା
ବୁଝିଲେତ ତୁମ୍ଭେ ସର୍ବେ କ୍ଷତ୍ରି ଅନର୍ଗଳା ।
ଏସନ କହି ସେଠାରୁ ଗଲେ ମହାମୁନି
ଉଦ୍ୟମ କରିଲେ ପୁତ୍ର ମୁନି ଆଜ୍ଞା ଘେନି ।
ଚିତ୍ରସେନ ବୋଇଲେ ନ ଭାଳ ମନେ କିଛି
ଆଜ ଏକ ବୁଦ୍ଧି କରି ପିତାଙ୍କୁ ଆଣୁଛି ।
ଶୁଣିକରି ଶଚୀ ଦେବୀ ହୋଇଲେ ସନ୍ତୁଷ୍ଟ
ସବୁ ବସାଇ ବସିଲେ ସର୍ବେ ମେରୁ କ୍ରୋଡ
ଦିଗପାଳ ଆଦିକରି ସର୍ବେ ଦେବଗଣ
ବିଚାର କରନ୍ତି ସଭା କରି ଜଣ ଜଣ ।
ନାରଦ କହିବାର ଶୁଣିଲେଟିକି ଦେବେ
ସାହସ ନକଲେ ଆଣି ନ ପାରିବ ତେବେ ।
ଚୋରିବିଦ୍ୟା ନକଲେ ତ ନ ପାରିବ ଆଣି
ରାତ୍ରେ ସନ୍ଧି ଖୋଳିଣ ଆଣିବ ବଜ୍ରପାଣି ।
ଗନ୍ଧର୍ବବୋଇଲେକେମ୍ଭେ ଖୋଳିବା ସେ ସନ୍ଧି
ଚିତ୍ରସେନ ବୋଇଲେକ କହିବା ସେ ବୁଦ୍ଧି
ଯେବଣ କାଳେ ପୃଥିବୀ ସରଜିଲେ ବ୍ରହ୍ମା
ପ୍ରଥମେ ଚକ୍ଷୁରୁ ଜନ୍ମ କଲେ ବିଶ୍ୱକର୍ମା ।
ପୁଣି ହୃଦଗତେ ପାଞ୍ଚକରି ବେଦବର
ଦକ୍ଷିଣକରୁ ପୁରୁଷେ କଲେ ଅବତାର ।
ତାହାର ନାମ ଗୋଟିକ ଖଲ୍ୟକାର ଦେଲେ
ବିଶ୍ୱକର୍ମା ତୁଲେ ତାକୁ ବିଦ୍ୟା ପଢ଼ାଇଲେ ।
ସବୁ ବିଦ୍ୟା ବିଶ୍ୱକର୍ମା କଲେ ବୁଦ୍ଧି ସାର
ଶିଖିଲେ ଚଉର୍ଯ୍ୟ ବିଦ୍ୟା ଏକ ଖଲ୍ୟକାର ।
ଏମନ୍ତେ ବ୍ରହ୍ମାର ସେ ଅଟେ ପୁତ୍ର ଦୁଇ
ଶୁଣ ହେ ଗନ୍ଧର୍ବ ଏହା ଚିତ୍ରସେନ କହି

ସମୟେ ବିଶ୍ୱକର୍ମାକୁ ଆଜ୍ଞାଦେଲେ ହରି
ବୋଲେ ବୈକୁଣ୍ଠକୁ ଦିଅ ନିରିମାଣ କରି ।
ତେତେବେଳେ ବିଶ୍ୱକର୍ମା ପୁଚ୍ଛିଲା ବିଷ୍ଣୁଙ୍କୁ
ପଦାର୍ଥ ନ ଅଣ୍ଟିଲେ ମୁଁ ମାଗିବି କାହାକୁ
ଗୋବିନ୍ଦ ବୋଇଲେ ତୋର ଖଲ୍ୟକାର ଭାଇ
ପଦାର୍ଥ ନ ଅଣ୍ଟିଲେ ଯେ ଦେଉଥିବ ନେଇ
ବିଶ୍ୱକର୍ମା ବୋଲେ ଆଣିବ ସେ କାହୁଁ ପୁଣି
ହରି ବୋଇଲେକ ଦେବ ଆମ୍ଭଆଜ୍ଞା ମାନି ।
ନିମିଷ ମାତ୍ରକେ ଆଣି ଦେଉଥିବ ତୋତେ
ଧନ ଥିଲାଠାରୁ ଆଣିଦେବ ନିଶାରାତ୍ରେ ।
ପାଷଣ କାନ୍ଥ ହୋଇଲେ ଝଳିବ ତା ଘାଏ
କେହି ନ ଜାଣିବେ ସେ ଆସିବା ଯିବାଯାଏ
କାନ୍ଥମୂଳେ ବସିକରି ଖୋଳୁଥିବ ଖାତ
ତୋତେ ତ ଅଣ୍ଟିଲେ ଆଣି ଦେଉଥିବ ବିତ୍ତ
ଶୁଣିକରି ବିଶ୍ୱକର୍ମା ଗଲା ବେଗେ ଚଳି
ବଇକୁଣ୍ଠପୁରଯାକ ଶୀଘ୍ର ଦେଲା ତୋଳି ।
କଳସ ଗୋଟିକୁ ପୁଣି ନ ଅଣ୍ଟଇ ସୁନା
ଖଲ୍ୟକାରକୁ ବୋଇଲେ ଧନ ଆଣୁକିନା ।
ଶୁଣ ହେ ଗନ୍ଧର୍ବ ଖଲ୍ୟ ଗଲା ସେହିଲାଗେ
ପଶିଲା ଅଳକାପୁରେ ଖୋଳି ନିଶାଭାଗେ ।
ସେଠାବରୁ ରତ୍ନ ବହି ଆଣିଲା ନିଶ୍ଚିନ୍ତେ
କ୍ଷଣମାତ୍ରେ ଦେଲା ନେଇ ବିଶ୍ୱକର୍ମା ହାତେ
ତାହାର କର ଲାଗିଲା ହେଲା ପୁରୀ ନିର୍ଭା
ଏମନ୍ତ ଅଟଇ ଜାଣ ଖଲ୍ୟକାର ପ୍ରଭା ।
ରାତ୍ରକେ ଯେ ଖଲ୍ୟକାର କଲା ଏତେ କାର୍ଯ୍ୟ
ଲେଉଟି ଯେ ରନ୍ଧ୍ର ବୁଜି କଲା କାନ୍ଥଉଜ ।
ଏମନ୍ତ ମହିମା ଅଟେ ଖଲ୍ୟକାର ଜାଣ
ଗୋଟିକା ଅଞ୍ଜନା ବିଦ୍ୟା ଅଛି ତାର ପୁଣ
ତାକୁ ଅଣାଇ କହିବା ବାସବର କାର୍ଯ୍ୟ
ନୋହିଲେ କି ବୁଦ୍ଧିଥିଲେ କହମୋତେ ଆଜ
ଦେବେ ଶୁଣିଣ ବୋଇଲେ ଆଉ କିସ ବୁଦ୍ଧି
ଖଲ୍ୟକାରକୁ ଡକାଇ କର କାର୍ଯ୍ୟସିଦ୍ଧି ।
ଶୁଣି ଚିତ୍ରସେନ ବରଗିଲେ ବେଗେ ଚାର
ଦେବ ଆଦେଶରେ ପହଞ୍ଚିଲେ ଖଲ୍ୟକାର ।
ତାକୁ ଦେଖି ଦେବତାଏ କଲେ ଜୟେ ଜୟେ
ଖଲ୍ୟକାର ଯେ ଅଇଲେ ବୋଇଲେ ସଭିଏଁ
ମେରୁକ୍ରୋଟ ଦେବସଭା ମଧ୍ୟେ ଆସି ମିଳି
ଦେଖିଣ ଦେବତାମାନେ କଲେ କୃତାଞ୍ଜଳି ।
ଉଠିକରି ଚିତ୍ରସେନ କଲେ ଯାଇ କୋଳ
ପିତାଙ୍କ ବନ୍ଦୀ ବିଷୟ କହିଲେ ସକଳ ।
ବୋଇଲେ ଖଲ୍ୟକାର ଯେ ଶୁଣ ଆମ୍ଭବାଣୀ
ବେନିମାସ ହେଲା ବନ୍ଦୀ ହେଲେ ବଜ୍ରପାଣି ।

ଯେଉଁ ମୁର ପଶା ଖେଳୁଥିଲା ମୋର ସଙ୍ଗେ
ସେ ଏବେ ମାଡ଼ି ବସିଲା ଦେଖ ଆସି ସ୍ୱର୍ଗେ
ପାରିଜାତ ଐରାବତ ଅଶ୍ୱ ନୀଳମଣି
ଏହା ଦିଅ ବୋଲି ବନ୍ଦିକଲା ବଜ୍ରପାଣି ।
ବନ୍ଦିମୁକ୍ତ ହେବେ ପିତା ତୁମ୍ଭେ ମନ କଲେ
ଶୁଣିଣ ଖନତକାର ଅଳପ ହସିଲେ ।
ବୋଲେ ଆଜଯାଏଁ କିମ୍ପା ଥିଲ ହୋଇତୁନି
କେତେଦିନୁ ବାସବଙ୍କୁ ଆସନ୍ତିଣ ଘେନି ।
ଏବେ ତୁମ୍ଭେମାନେ ଆଉ ନଭାଳ କେ ମନେ
କେବଳ ମୋର ସଙ୍ଗରେ ଆସ ଷଡ଼ଜଣେ ।
ଅଛନ୍ତି ବାସବ ଥିବା ସ୍ଥାନ ଦୈତ୍ୟ ଜଗି
ତହିଁରେ ଭରସି କେହି ପଶିବ ଯେ ବେ଼ଗି
ଏ ଖନତକାର ସଙ୍ଗେ ଯାଅ ଯମଦଗ୍ନି
ବରୁଣ ନୈର୍ଋତ ଆଉ ବାୟୁ ସଙ୍ଗେ ଘେନି
କୁବେରଙ୍କ ସଙ୍ଗତରେ ଚଳ ଷଡ଼ଜଣ
ଖଲ୍ୟକାର ବୋଲ ପାଳି ବାସବଙ୍କୁ ଆଣ ।
ଚିତ୍ରସେନ କହନ୍ତେଣ ଗଲେ ଦିଗପାଳେ
ଖଲ୍ୟକାର ଘେନି ମିଳିଗଲେ ସ୍ୱର୍ଗଆଳେ
ଦେଖିଲେ ଦଇତ୍ୟ ବେଢ଼ିଛନ୍ତି ଚଉପାଶେ
ଇନ୍ଦ୍ରଥିବା ଘରେ ପ୍ରବେଶିଲେ ବ୍ରହ୍ମାଶିଷ୍ୟ
ଦେଖିଲେ ପାଚେରୀ ପଡ଼ିଅଛି ଚାରିଆଡ଼େ
ଯାଇ ସେ ବସିଲେ ଖଲ୍ୟକାର କାନ୍ଥଡାଡ଼େ
ବାଳକ ପ୍ରମାଣେ ବାଟ ଆଡ଼ ଦୀର୍ଘ କଲା
ଗଡ଼ ଦିଗପାଳଙ୍କୁ ସେ ନେଇ ଦେଖାଇଲା ।
ବୋଇଲା ଇନ୍ଦ୍ରକୁ ଆସ ଆଣିବା ଏ ବାଟେ
ଚଉର୍ଯ୍ୟ ବୃତ୍ତି କରିଣ ନେବା ବହି ଖଟେ ।
ଶୁଣିଣ ବୋଇଲେ ଦିଗପାଳେ ଆଚ୍ଛା ଆଚ୍ଛା
ତୋରଲାଗି ବାସବର ପୁରୁ ମନୋବାଞ୍ଛା ।
ନାରଦ କହନ୍ତି ଶୁଣ ବାବୁ ବେଦବର
କୁହୁକ ଅଞ୍ଜନ ବିଦ୍ୟା କଲା ଖଲ୍ୟକାର
ବିଧିରେ ପ୍ରଚଣ୍ଡ ସେହୁ ଅଟେ ଗ୍ରୀଷ୍ମଋତୁ
ବହିଲେ ପବନ ଯେଣୁ ଘେନି ଧାତୁମାତୁ ।
ଭିତରେ ଇନ୍ଦ୍ର ରଖି ସୁତଳ ଦୈତ୍ୟପଦା
ବରୁଣ ଦେବତା ତହିଁ କଲେ ଭୂମି ଓଦା ।
କାକନିଦ୍ରା ଘେନି ଘୋଟିଗଲେ ନାଶକର
ସ୍ୱପନରେ ଅଷ୍ଟରତ୍ନ ଦେଖାନ୍ତି କୁବେର ।
ଅଗ୍ନିଦେବ ସମସ୍ତଙ୍କ ନେତ୍ରେ କଲେ ବିଜେ
ଚାହିଁଦେଲେ ଚକ୍ଷୁମାନ ଜଳେ ଅଗ୍ନିତେଜେ
ଅସୁରମାନେ ଚୈତନ୍ୟ ଚେତା ପାଇବାକୁ
ନୈର୍ଋତ ଦେବତା ଜଗିବସିଲେ ତାହାଙ୍କୁ ।
ଏରୂପେ ମୋହିଲେ ମନ ମାନ ଦିଗପାଳ
ଦଇତ୍ୟମାନଙ୍କୁ ଘୋଟିଗଲେ ମହାକାଳ ।

ଯେ ଯାହା ସ୍ଥାନେ ରହିଲେ ସ୍ୱର୍ଗେ ଚକ୍ଷୁବୁଜି
ଖଲ୍ୟକାର ବୋଲେ ଦେବା ଇନ୍ଦ୍ରଙ୍କୁ ଯେ ଆଜି
ଶୁଣି ଷଡ଼ଦିଗପାଳେ ଉଠିଲେ ତକ୍ଷଣ
ଇନ୍ଦ୍ରଥିବା ପୁରେ ଯାଇ ମିଳିଲେ ବହନ ।
ଦେଖିଲେ ଶୟନେ ଶୋଇଛନ୍ତି ସୁରସାଇଁ
ଶାଙ୍କୋଳି ବନ୍ଧନେ ପାଦ ଛୁଇଁ ନ ଚଳଇ ।
ଦିଗପାଳ ବୋଇଲେ ହୋ କି କରିବା କହ
କି ରୂପେ ବହିଣ ନେବା ବାସବର ଦେହ ।
ଖନତକାର ବୋଇଲା ଶଯ୍ୟାଯାକ ଟେକ
ଏଥୁ ଯିବାଯାଏ ନ ଜାଣନ୍ତୁ ଦୈତ୍ୟଯାକ ।
ଆଚ୍ଛା ହେଉ ବୋଲି ଉଠିଲେକ ଦିଗପାଳେ
ଇନ୍ଦ୍ରର ଶଯ୍ୟାଧଇଲେ ଯାଇ ଏକାବେଳେ ।
ଖଟକୁ ଟେକି ଆଣିଲେ ସୁଡ଼ଙ୍ଗର ବାଟେ ।
ଘଡ଼ିକ ମଧ୍ୟେ ମିଳିଲେ ମେରୁଗିରି କ୍ରୋଟେ ।
ତହିଁର ମଧ୍ୟେ ଅଛଇ ଇଳାନାମେ ଗିରି
ଦିବସେ ଦୈତ୍ୟ ବସନ୍ତି ତହିଁ ସଭାକରି ।
କୁହୁକ ମନ୍ତ୍ର ପ୍ରକାଶ ଖଲ୍ୟକାର ବେଳେ
ବେନିଦଣ୍ଡ ମଧ୍ୟେ ଚଳିଗଲେ ଦିଗପାଳେ ।
ସବୁଙ୍କୁ ଓହ୍ଲାଇ ରଖିକରି ତହିଁ ନେଇ
ତହିଁ ଉତ୍ତାରେ ବାସବ ତେତିଶ ଉଠଇ ।
ବାସବ ଚାହାନ୍ତେ ଚେତି ଉଠି ସବୁ ମୁଖ
ଦେଖିଲେ ଅଛନ୍ତି ଦିଗପାଳେ ଚାରିପାଖ ।
କେ କେ ତୁମ୍ଭେବୋଲି ପୁଚ୍ଛାକଲେ ସୁରନାଥ
ଦେବେ ବୋଇଲେ ତୁମ୍ଭଙ୍କୁ ଅଣାଇଲୁ ଏଥ
ଅସୁରେ ଜାଣିଲେ ବୋଲି ନ କଲୁ ଚହଳ
ଶୁଣି ମନରେ ଆନନ୍ଦ ହେଲେ ଆଖଣ୍ଡଳ ।
ଶାଙ୍କୋଳି ଭାରରେ ପାଦ ନ ପାରନ୍ତି ଟେକି
ତାହା ଦେଖି ଖଲ୍ୟକାର ଖିଲ ନେଲା ଝିଙ୍କି ।
ଫିଟିଲା ଶାଙ୍କୋଳି ଇନ୍ଦ୍ର ହେଲା ଉଶୁଆସ
ସୁଖ ପାଇ ଚିନ୍ତାକଲେ ହରି ପୀତବାସ ।
ତହିଁ ଉତ୍ତାରୁ ବୋଇଲେ ଶୁଣ ଦଳବତେ
ବିଶ୍ୱକର୍ମା ଭାଇ ମିଶିଅଛି ଜନସାତେ ।
ପାପୀଦୈତ୍ୟ ହାତେ ମୋର ମୃତ୍ୟୁହେଉଥିଲା
ଜଗନ୍ନାଥଙ୍କ ପ୍ରସାଦୁ ଦୁଃଖ ଦୂର ହେଲା ।
ଦିଗପାଳେ ବୋଇଲେ ଏ କଥା ହେଲା ସତ
କେଡ଼େ ବନ୍ଦୀରୁ ଗୋବିନ୍ଦ ଆଣିଲେ ତୁମ୍ଭନ୍ତ
କେବଳ ଏ ବିଶ୍ୱକର୍ମା ଭାଇ ସକାଶରୁ
ଆଣିଲୁ ତୁମ୍ଭଙ୍କୁ ଆମ୍ଭେ ତେଡ଼େ ଦୁର୍ଗମରୁ ।
ଶୁଣିଣ ଆନନ୍ଦ ହେଲେ ଦେବ ପୁରୁହୁତେ
ଖନତକାରକୁ ସ୍ତୁତି କଲେ ନାନା ମତେ ।
ଏଥୁ ଅନନ୍ତରେ ତହିଁ ପାହିଲା ରଜନୀ
ଅଇଲେକ ଇନ୍ଦ୍ର ବୋଲି ଶୁଭିଲାକ ଧ୍ୱନି ।
ଜୟ ଜୟ ଶବଦ ଯେ ଶୁଭେ ଘରେ ଘରେ
ଶଙ୍ଖ କାହାଳୀ ବଜାନ୍ତି ଅଚି ଉଚ୍ଚସ୍ୱରେ ।
ସୁବାସ କୁସୁମ ବୃଷ୍ଟି କର୍ପୂର କସ୍ତୁରୀ
ପନୀରଜଳ ପିଚିକା ହାନ୍ତି ମରାମରି ।
କିନ୍ନରୀ ଅପସରୀ ଆଦି ବିଦ୍ୟାଧାରୀ ଯେତେ
କରନ୍ତି ଗହଳ ନୃତ୍ୟ ଗୀତ ଅପ୍ରମିତେ ।
ହାନ୍ଦୋଳା ଲାଗି ହୋଇଣ ଶଚୀ ମହାଦେଈ
ସ୍ୱାମୀର ଦର୍ଶନେ ଆସୁଛନ୍ତି ସଜ ହୋଇ ।
ଚିତ୍ରସେନ ସହିତରେ ଆସି ପୁତ୍ରମାନେ
ପିତାଙ୍କର ପାଦେ ନମୁଛନ୍ତି ଜଣେ ଜଣେ ।
ଯକ୍ଷ ରକ୍ଷ ବିଦ୍ୟାଧର ଗନ୍ଧର୍ବ କିନ୍ନର
ସର୍ବେ ଦର୍ଶନ କରନ୍ତି ଆସି ସୁନାସୀର ।
ଗଣ ସିଦ୍ଧ ସାଧବଙ୍କୁ ଆଦିକରି ଯେତେ
ସଭା ମଣ୍ଡାଇ ବସିଲେ ଦେବେ ଯେଝାମତେ
ମାଜଣା ବିଧି କଲେକ ଆସି ବିଳାସିନୀ
ମଥା ଜଟା ଫେଇ ବୋଳିଦେଲେ ଗନ୍ଧ ଘେନି
ସୁବାସ ଗନ୍ଧ ତଇଳ ଆଦି ଦ୍ରବ୍ୟମାନ
ଯେ ଯାହା ମତେ ଇନ୍ଦ୍ରଙ୍କୁ କରନ୍ତି ମର୍ଦ୍ଦନ ।
ନାନା ତୀର୍ଥଜଳ ସୁଶୀତଳ ବାସପାଣି
ଇନ୍ଦ୍ରଙ୍କ ଶିରେ ଢାଳନ୍ତି ସର୍ବେ ତାହା ଆଣି ।
ଝୀନବାସ ଘେନିକରି ପୋଛନ୍ତି ଶରୀର
ଦେବଙ୍କ ବାସ ପିନ୍ଧନ୍ତି ଦେବ ପୁରନ୍ଦର ।
ଚନ୍ଦନ କର୍ପୂର ଆଉ କୁଙ୍କୁମ କସ୍ତୁରୀ
ବାସବ ଅଙ୍ଗେ ବୋଳନ୍ତି ନେଇ ଦେବନାରୀ
ତ୍ରିମୁଣ୍ଡ ଗଭା ବାନ୍ଧିଣ ଖଞ୍ଜି ପୁଷ୍ପମାଳୀ
ଅପସରୀଏ ମିଳିଣ ଦ୍ୟନ୍ତି ହୁଳହୁଳି ।
ଶଚୀ ଯାଇଣ ବସିଲେ ବାସବର କୋଳେ
ଦିଶନ୍ତି ଲକ୍ଷ୍ମୀ ଗୋବିନ୍ଦ ପରାୟେ ସେକାଳେ
ଐରାବତ ଗଜଲାଗି ହୋଇ ବଜ୍ରଧାରୀ
ଚାମର ପକାନ୍ତି ଚଉପାଶେ ପରିବାରୀ ।
ବୁଲି ଆସିଣ ବସିଲେ ଇନ୍ଦ୍ର କରି ସଭା
ଅମୃତ ଗ୍ରାସ କଲେକ ସର୍ବ ସୁରଦେବା ।
ବନ୍ଦୀରେ ଥିବା କଥା ସେ ହୋନ୍ତି କୁହାକୁହି
ବୋଲନ୍ତି କେତେ ବିପଦେ ପଡ଼ିଥିଲି ମୁହିଁ ।
ଗୋବିନ୍ଦଙ୍କ କରୁଣାରୁ ଆସିଲି ମୁଁ ବର୍ତ୍ତି
ଧର୍ମେ ଥିଲାରୁ ମୋର ନଥିଲା ମାତ୍ର ଭୀତି ।
ଏ ସ୍ଥାନ ମଧ୍ୟରେ ରହି ନ ପାରିବା ପରା
ଜାଣିଲେ ଶୀଘ୍ର ଧାଇଁଣ ଆସିବେ ଅସୁରା ।
ଶୁଣି ଚିତ୍ରସେନ ଉଠି ଗଲେ ଶିରଝୁଣି
ଭ୍ରାତାଙ୍କୁ ବୋଇଲେ ନିକଟରେ ଜଗ ପୁଣି ।
ଶୁଣିଣ ଭ୍ରାତେ ଧଇଲେ କରେ ଧନୁ ବେଗ
ସୁନଙ୍ଗ ଅନଙ୍ଗ ଆଉ ଅଙ୍ଗାର ପନ୍ନଗ ।

ଋତୁଧ୍ୱଜ ଗନ୍ଧର୍ବ ଯେ ଆଉ ଚନ୍ଦ୍ରଧ୍ୱଜ
ନାରାଚମାନ ଧରିଣ ହୋଇଲେ ସେ ସଜ ।
ପିତାଙ୍କୁ ବୋଇଲେ କିମ୍ପା ଭାଳୁ ସୁରପତି
ଦୈତ୍ୟେ ଆସିଲେ କି ଆଜ ଏଥୁ ଯିବବର୍ତ୍ତି ।
ଏ ସ୍ୱର୍ଗପୁର ଖଣ୍ଡିକ ଥିବାରୁ ଆମ୍ଭର
ସହି ନ ପାରିଣ ମାଡ଼ି ବସିଲେ ଅସୁର ।
ପରଶିରୀ ପରନାରୀ ପର ଭୂମି ହରି
କେଡ଼େକେଡ଼େଲୋକମାନେ ଗଲେଣିତ ମରି
ଦୁଷ୍ଟଲୋକଙ୍କୁ ବୋଲନ୍ତି ଲୋକେ କୁପୁରୁଷ
ମରଣ ସେମାନଙ୍କର ହୁଅଇ ଅବଶ୍ୟ ।
ଯେତେ ପ୍ରତାପୀ ହେଲେ ସେ ମରିବ ଏଥର
ଶୁଣିଣ ଛାଡ଼ିଲେ ବନ୍ଦୀଭୟ ପୁରନ୍ଦର ।
ସ୍ୱର୍ଗ ଆଦିକରି କରିଲେକ ତହିଁ ବାସ
ସରଜିଲେ ବିଶ୍ୱକର୍ମା ରହିଣ ତ୍ରିଦଶ ।
ପୁଣି ନାରଦ କହନ୍ତି ଦେବ ଚଉମଥା
ଏଥୁ ଅନନ୍ତରେ ଶୁଣ ସ୍ୱର୍ଗର ବାରତା ।
ଇନ୍ଦ୍ରଙ୍କୁ ଚୋରାଇ ଆଣନ୍ତେ ସେ ଦିଗପାଳେ
କାହାକୁ ଜଣାନାହିଁ ସେ କଥା ସ୍ୱର୍ଗ ଆଳେ ।
ପ୍ରଭାତୁ ଉଠିଣଦୈତ୍ୟ ଦେଖି ବନ୍ଦୀଘର
ଫିଟିଛି ରନ୍ଧ୍ର ଗୋଟିଏ ନାହିଁ ସୁନାସୀର ।
ରକ୍ଷଲୋକମାନଙ୍କର ଉଡ଼ିଲା ସାହସ
କାହିଁଗଲା ଇନ୍ଦ୍ର ବୋଲି ଖୋଜନ୍ତି ଚୌପାଶ
କେ ବୋଲଇ ବାସବର ଚିହ୍ନ ଦିଶୁନାହିଁ
ଶଯ୍ୟା ସହିତେ ଧରି କେ ନେଲା ଏଥୁବହି ।
ରାଜା ଶୁଣିଲେ ଆମ୍ଭଙ୍କୁ ନିଶ୍ଚେ ଦେବ ଦଣ୍ଡ
ବୋଲିବ କିପରି ଜଗିଥିଲରେ ପାଷାଣ୍ଡ ।
ଏତତବୋଲିଣ ବାଉଳାହେଲେ ରକ୍ଷାଲୋକେ
ମୁରର ଆଗେ କହିଲେ ଯାଇ ମିଳି ଥୋକେ
ଭୋ ମହାରାଜା ଶୁଣିବା ହେଉ ଆମ୍ଭ ବାଣୀ
ଆଜରାତ୍ରେ କେ ଚୋରାଇ ନେଲେ ବଜ୍ରପାଣି
ଡଗର ମୁଖରୁ ଏହା ଶୁଣି ମୁରାସୁର
ଦଣ୍ଡେ ପର୍ଯ୍ୟନ୍ତେ ମଉନ ହେଲା ମହାବୀର ।
ଶୁକ୍ରଙ୍କର ମୁଖ ଚାହିଁ ଅନାଇଲା ପୁଣ
ବୋଇଲାକ ନିଶ ଧରି କହୁଛି ତା ଶୁଣ ।
ଚଉଦପୁରଯାକ ତ ଅଟଇ ମୋହର
ଇନ୍ଦ୍ରଙ୍କୁ ନେଇ ରଖିବ ସେହୁ କେଉଁପୁର ।
ଯହିଁ ଥିଲେ ମୁଁ ଅବଶ୍ୟ ଆଣିବି ଯେ ଧରି
ଏହା ଯେ କେଉଁ ପାମର କଲା ନ ବିଚାରି ।
ଅଟଇ ଯେ ଅବିବେକ ପୁଣି କେଡ଼େ ମୂର୍ଖ
ଧ୍ରୁବଲୋକେ ଥିଲେ ବାନ୍ଧି ଆଣିବି ମୁଁ ଦେଖ
ମୋହର ମହିମା ସେ କି କେବେ ଶୁଣିନାହିଁ
ବ୍ୟାଘ୍ର ଛାମୁରୁ ପଳାଇ ଯିବ ମୂଷା କାହିଁ ।
ମଞ୍ଜାରୀ ମୁଖରୁ ମୂଷା କେତେଦୂର ଯିବ
ସର୍ପ-ମୁଖୁ ମଣ୍ଡୁକୀ କି ପଳାଇ ପାରିବ ।
ଗରୁଡ଼ ଆଗେ ଭୁଜଙ୍ଗ ପଡ଼ିଯିବ କେଣେ
ସିଂହ ଆଗେ ଚାଲିଯିବ କେହୁ ବଡ଼ପଣେ ।
ଶ୍ୟାମଳ ପଶୁପକ୍ଷୀ କି ଯିବ କରି କେନ୍ଦ୍ର
ବୁଝିଲେ ତୁ ଏହିରୂପେ ଅଟୁ ମୋତେ ଇନ୍ଦ୍ର ।
ତଥାପି ଇନ୍ଦ୍ରଙ୍କୁ ଆଜ ଚୋରାଇ ବା ନେଲେ
ଏ ନବ ଚଣ୍ଡାଳେ ଯାଇଁ କେଉଁକାର୍ଯ୍ୟ କଲେ
ଶଚୀ ଯେ ଅପସରୀଙ୍କି ଘେନି ଗଲେ ସଙ୍ଗେ
କେହିହେଲେ ଆଜିଯାଏ ନଆସିବେ ବେଗେ
କାର୍ଯ୍ୟକରି ନ ପାରିଲେ ହେଲି ତୁଚ୍ଛାଘାଣ୍ଟି
କି ଅବା ଗଗନେ ଶଶୀ ମଧ୍ୟେ ତାରା ଫୁଟି ।
ଏରୂପେ ବିସ୍ମୟ କଥା ମୁର ମୁଖୁ ଶୁଣି
କହନ୍ତି କୋମଳ ମଞ୍ଜୁ ବାକ୍ୟେ ଶୁକ୍ର ଶୁଣି ।
ବୋଲନ୍ତି ହେ ସାବଧାନେ ଶୁଣ ଦୈତ୍ୟରାଜା
ତୁ ହେଲେ ଆଜି ଅବଧି ରଖିଲୁ ବିଡ଼ୋଜା ।
ଆବର ବଳେ କି ଏହା ପାରନ୍ତା କେ ବରି
କୀଟୁ ବ୍ରହ୍ମଯାଏ ଯେତେ ଛନ୍ତି ଦେହ ଧରି ।
କେ ହେଲେ ରଖି କି ଥିଲେ ବାସବ ଶଚୀକି
ତୁମ୍ଭପରି ରାଜା ଭୂମଣ୍ଡଳେ ଅଛି କେ କି ।
ଖାଇବା ପଦାର୍ଥ ଯେହୁ ଭୋଗ କରେ ବେଗେ
ତାକୁ ବୋଲନ୍ତି ଚତୁର ଏ ସଂସାର ଭାଗେ ।
ପଣ ପାଇଲାକ୍ଷଣି ତ ନ ରହିବ ଦଣ୍ଡେ
ତତକ୍ଷଣେ ସେହି ଦୁହେଁ ବାନ୍ଧି ଶାଢ଼ୀ ମୁଣ୍ଡେ
ପତ୍ନୀ ସଙ୍ଗେ ଅଭିଷେକ ହୋଇବ ଯୁକତ
ହେଳା ନକରି ଘେନିବ ଶିରେ ଦୁର୍ବାକ୍ଷତ
ଅନ୍ନ ଯେବେ ତତକାଳେ ହେବ ସିଦ୍ଧ ଜାଣ
ତାକୁ ହେଳା ନ କରିଣ କରିବ ଭୋଜନ ।
ଯେବେ ମିଳିବ ନୂତନ ବସ୍ତ୍ର ଅଳଙ୍କାର
ଏଥେ ହେଳା ନ କରିଣ ପିନ୍ଧିବ ତତ୍ପର ।
ଶୁଣି ମୁରଦୈତ୍ୟ ବୋଇଲାକ ସତ୍ୟ ସତ୍ୟ
ଶଚୀକି ନ ହରି ଲୋଡ଼ିଲି ମୁଁ ଆଗ ବିତ୍ତ ।
ଏବେ ଆଉ ପାଞ୍ଚିଲେ ବା ହେବ କଥା କିସ
ବିଧାତା ପୁରୁଷ ଯାହା ଲେଖିଛି ଭବିଷ୍ୟ ।
ଏମନ୍ତ ବୋଲି ବସନ୍ତେ ମୁର ନିଃଶବଦେ
ତକ୍ଷଣେ ଆସି ସେଠାରେ ମିଳିଲେ ନାରଦେ
ଋଷିଙ୍କି ଦେଖିଣ ବେଗେ ଉଠି ମୁରଦୈତ୍ୟ
ଆସନରେ ବସାଇଣ କଲା ପ୍ରଣିପାତ ।
ନାରଦ ବୋଇଲେ ରାଜା କହିଥିଲୁ ତୁହି
ଶଚୀଦେବୀଙ୍କ ନିମନ୍ତେ ଆସିଅଛି ମୁହିଁ ।
ମୁର ବୋଇଲା ହୋ ମୁନି କହିବାକୁ ଲଜ୍ଜା
ଇନ୍ଦ୍ର ସହିତରେ ଚୋରାଇଣ ନେଲା ଶଯ୍ୟା ।

ବାସବ କାହିଁ ବୋଲିଣ ଲୋଡ଼ୁ ସବୁଠାରେ
ଦେଖିଲୁ ବନ୍ଦୀଘରରେ ଫିଟିଛି ବିବରେ ।
ଶଚୀଦେବୀଙ୍କ କଥା କି କହିବି ତୁମ୍ଭଙ୍କୁ
ନବ ଅସୁରେ ଘେନିଣ ଗଲେ ହେ ତାହାଙ୍କୁ
ସେହି ଆଜିଯାଏ ନ ଅଇଲେ କାହିଁ କରି
ଏଥକୁ ଆପଣେ ଅବା କହିବେ ବିଚାରି ।
ନାରଦ ବୋଇଲେ ରାଜା କହେ ତେବେ ଶୁଣ
ଇନ୍ଦ୍ରକୁ ବେଳେ ଚୋରାଇ ନେଲେ ଦେବଗଣ
ଶୁଣିଣ ମୁର ଅସୁର ଉଠି କୋପାନଳେ
ବୋଇଲା ଦେବଙ୍କୁ ଖୋଜି ମାରିବି ତକ୍ରାଳେ
ଶୁକ୍ରଙ୍କୁ କହିଲା ପୁଣି ଥାଅ ତୁମ୍ଭେ ସ୍ୱର୍ଗେ
ଇନ୍ଦ୍ରଙ୍କୁ ଧରି ଆଣିବି ଯାଇଁ ଏହିଲାଗେ ।
ଏତେକ ବୋଲି ବିଜୟ ରଥେ ବିଜେକଲା
ଥୋକାଏକ ସୈନ୍ୟ ଶୁକ୍ର ଗୋଚରେ ଛାଡ଼ିଲା
ଧନ୍ୟ ସେହି ଦେବଯାନ ଅଟେ ଶତେପୁର
ଦେବହିଁ ଗୋପ୍ୟ ତହିଁରେ ବସିଲେ ଅସୁର ।
ଉପରେ ଯାଇଁଣ ମୁର ଦାନବ ବସିଲା
ମନେ ମନାସନ୍ତେ ରଥ ଭୂଲୋକ ଚଳିଲା ।
ସେ ପୁରଯାକ ଖୋଜିଣ ନ ପାନ୍ତେ ଇନ୍ଦ୍ରଙ୍କୁ
ତହୁଁ ଟଳିଲେ ଅସୁର ଭୁବଲୋକଠାକୁ ।
ତହିଁ ନ ଦେଖି ସ୍ୱର୍ଲୋକ ପୁରକୁ ଚଳିଲେ
ମହର୍ଲ୍ଲୋକ ଜନଲୋକ ତପଲୋକ ହେଲେ ।
ତହିଁ ନ ଦେଖିଣ ସତ୍ୟଲୋକେ ପୁଣି ଗଲା
ଧ୍ରୁବଲୋକ ଖୋଜି ଇନ୍ଦ୍ରଙ୍କୁ ସେ ନ ପାଇଲା
ସେଠାବରୁ ଆସି ପୁଣି ପଶିଲା ପାତାଳେ
ଦ୍ୱାର ଫିଟିଅଛି ତହିଁ କେଶୀ କୁଣ୍ଡତଳେ ।
ସେହିବାଟ ସଳଖରେ ଗଲାକ ପାତାଳ
ଭୂତଳ ପାତାଳ ଅତଳ ରସାତଳ ।
ସୁତଳ ବିତଳ ଆଦିକରି ତଳାତଳ
ଏହି ସାତପୁରେ ପଶି ଖୋଜିଣ ତକ୍ରାଳ ।
ତହିଁ ଇନ୍ଦ୍ରକୁ ନ ପାଇ ଆସି ମନସ୍ତାପେ
ଜଳ ସ୍ଥଳ ଆକାଶ ଯେ ଖୋଜେ ମନସ୍ତାପେ
ଇନ୍ଦ୍ରପୁର ଅଗ୍ନିପୁର ନୈର୍ଋତ ପୁର
ବରୁଣ ପବନ ପୁର ଈଶାନ କୁବେର ।
କ୍ଷିତିମଣ୍ଡଳ ଗନ୍ଧର୍ବ ଯକ୍ଷ ସାଧଲୋକ
ମକର ହିମଆଳୟ ଗିରି ଲୋକାଲୋକ ।
କାହିଁ ନ ପାଇଣ ପୁଣି ଗଲା ଯଶୋବନ୍ତୀ
ଦେଖିଲା ଦିବ୍ୟପୁର ସେ ବ୍ରହ୍ମମୟ ଜ୍ୟୋତି ।
ବାରସ୍ୱତୀ ପୁରକୁ ସେ ଦିଶେ ପଟାନ୍ତର
ଅପୂର୍ବ ଦ୍ରବ୍ୟ ଦେଖିଲେ ଜାଣିଲେ ଅସୁର ।
ବାରତା ପାଇ ଅଇଲେ ପିତା ବେଗେ ଧାଇଁ
ଦେଖିଲେ ଆସୁଛି ଖଣ୍ଡଦୂରୁ ମୁରବାହି ।
ମିଳିଲେ ହଂସ ବାହନ ଚଢ଼ି ଶୀଘ୍ର ଆସି
ଆପଣ ପୁରକୁ ଦେଖି କହନ୍ତି ପ୍ରଶଂସି ।
ବୋଲନ୍ତି କି ଆହେ ବାବୁ ହେଲ ତୁମ୍ଭେବଣା
ପିତାଙ୍କର ନଗ୍ର ବୋଲି ନ ଗଲା କି ଜଣା ।
ଆମ୍ଭେ ତ ପଥେ ଥାଇଣ କଲ୍ୟାଣ ଯେ କଲୁ
ବୁଝିଲେ ଏ ନଗ୍ର ଅଲଗା ଯେ ସବୁଠାରୁ ।
ତୁ କିମ୍ବା ଜାଣୁ ଜାଣୁରେ କରୁଛୁ ଅନୀତି
ସଂସାରେ ବୋଲିବେ ମୁର ବାପେଦେଲାଶାସ୍ତି
ତଥାପି ସଂସାର କି ନ ଅଣ୍ଟିଲା ତୋତେ
ଦୂତ ବରଗି ମାଗିଣ ନ୍ୟନ୍ତୁ ସିନା ମୋତେ ।
ଶୁଣି ମୁରାସୁର ମନେ ପାଇଲାକ ଲଜ୍ଜା
ରଥୁ ଡେଇଁପଡ଼ି କଲା ବ୍ରହ୍ମାଙ୍କୁ ସେ ପୂଜା ।
ବୋଇଲେ ଭୋ ପିତା ମୁଁ ନ ଥିଲି ଏହା ଜାଣି
କେଣେଗଲା ବୋଲି ଖୋଜୁଅଛି ବ୍ରହ୍ମପାଣି ।
ହରିବା ଦ୍ରବ୍ୟ ତୁମ୍ଭର ନିଅ ପିତାମହ
ବାସବ କାହିଁପାଇଁ ସେ କଥା ମୋତେ କହ
ସମସ୍ତପୁର ଖୋଜି ମୁଁ ନ ପାଇଲି ତାକୁ
ପାଇଲେ ଯେ ପରାଭବ ଦ୍ୟନ୍ତି ବାସବକୁ ।
ବ୍ରହ୍ମାଏ ବୋଇଲେ ବାବୁ ଶୁଣ ଦୈତ୍ୟନୃପ
ଇନ୍ଦ୍ରକୁ କରୁଛୁ କାହିଁପାଇଁ ଏଡ଼େ କୋପ ।
ମୁର ବୋଇଲା କହିବା ଶୁଣ ତେବେ ପିତା
ଇନ୍ଦ୍ରକୁ ଧଇଲେ ମୋର ପଦାର୍ଥ ମିଳନ୍ତା ।
ଯେ ଦ୍ରବ୍ୟ ପାଇଲେ ମୁହିଁ ହୁନ୍ତି ସ୍ୱର୍ଗେ ରାଜା
ତେଣୁକରି ବାସବକୁ କରିଛି ପରିଜା ।
ଶୁଣିକରି ପିତାମହ ବହୁତ ହସିଲେ
ମୁରକୁ କଥାଏ କହି ବଚନେ ମୋହିଲେ ।
ବୋଇଲେ ବାପ୍ପା ତୁରେ ନକର ଉପ୍ରୋଧ
ସେ ଇନ୍ଦ୍ର ଦେଇଛି ତୋତେ ଏବେ ରାଜପଦ
କନକାବତୀ ପୁରରେ ବୁଲୁ ଅଶ୍ୱ ଚଢ଼ି
ଏ କଥା ଏବେ ପାଶୋରି ଦେଲୁ କିବା ହୁଡ଼ି
ଶାଢ଼ୀ ଉପରେ ତ ଶାଢ଼ୀ ଘେନି ନଯୋଗାଇ
ପଣ ଉପରେ ସଂସାରେ ପଣ ଅଛି କାହିଁ ।
ପତି ଥାଉଁ ଥାଉଁ କେହି ଘେନେ ଆନ ପତି
ରାଜାର ଉପରେ ରାଜା ହୋଇଛି କେ କ୍ଷତ୍ରୀ
ଶ୍ରୀଗୁରୁ ଉପରେ ଗୁରୁ କରିଛି କେ କହ
ବିଷ୍ଣୁ ଉପରେ ବିଷ୍ଣୁ କେ ଅଛି ଧରି ଦେହ
ଏ ଚଉଦପୁର ଯାକେ ତୋହରି ତରିଜା
ଆଉ କିମ୍ପାପାଞ୍ଝୁଛୁହୋ ହେବାକୁ ବିକୋଡ଼ା
ପଣ୍ଡିତେ କହନ୍ତି ଗଲା ମଲା ଦୁଇ ସରି
ପଳାଇଗଲା ଲୋକକୁ ଆସୁ କିମ୍ପା ଧରି ।
ଚକ୍ରବର୍ତ୍ତୀ ହେଲାରୁ ଯେ ଇନ୍ଦ୍ରରେ କି କାର୍ଯ୍ୟ
ମୋର ବୋଲ ଘେନିବାକୁ ଫେରିଯାଅ ଆଜ

ତୁହି ବୀରବର ପୃଥିବୀର ଅଧିକାରୀ
ଯହିଁ ଥିଲେ ଥିଲା ଯେବେ ରହିଲା ସେ ଡରି
ଏମନ୍ତ କହି ସନ୍ତୋଷ କଲେ ପିତା ତାକୁ
ଶୁଣିଣ ମୁରଦୈତ୍ୟର ଉଲସିଲା ବୁକୁ ।
ପାଞ୍ଚିଲେ ଏ ବେଦବ୍ରହ୍ମା କହିଲେ ତ ସତ
ଡରିଲା ଯେବେ ମୋତେ ସେ ହେଲା ଅରକ୍ଷିତ
ଏତେ ବୋଲିଣ ପିତାଙ୍କୁ ମାଗିଲା ମେଲାଣି
ଶାନ୍ତ ହୋଇଣ ସ୍ୱର୍ଗକୁ ଗଲା ଦୈତ୍ୟମଣି ।
ମନେ ପାଞ୍ଚିଲା ମାତ୍ରକେ ଯାନ ଗଲା ଚଳି
ସୁଧର୍ମା ସଭାରେ ଯାଇ ମିଳେ ମହାବଳୀ ।
ଶୁକ୍ର ଗୁରୁଙ୍କୁ ଯାଇଣ କଲା ନମସ୍କାର
କଲ୍ୟାଣ କରି ପୁଚ୍ଛନ୍ତି ଶୁକ୍ର ମୁନିବର ।
ଶୁକ୍ରେ ବୋଇଲେ ଇନ୍ଦ୍ରର ପାଇଲୁକି ଭେଟ
ମୁର ବୋଇଲା ଭୋ ଗୁରୁ ନୋହିଲା ପ୍ରକଟ
ବ୍ରହ୍ମାଏ ଦେଖି କହିଲେ ମୋତେ କଥାବୋଧି
ବୋଇଲେ ଲୁଚିବା ଲୋକ ଛାଡ଼ିଲେ କି ସିଦ୍ଧି
ବୋଲିକରି ବାହୁଡ଼ି ତୁ ଯାଅ ଏବେ ବାବୁ
ବୁଝିଲେ ଏହି ପୃଥିବୀ ଅଟେ ତୋର ସବୁ ।
ମୁରାସୁର ମୁଖୁଁ ଏସନକ ବାଣୀ ଶୁଣି
ଅନେକ ପ୍ରଶଂସା ତାକୁ କଲେ ଶୁକ୍ର ପୁଣି ।
ଶୁକ୍ରେ ବୋଇଲେ ବସିଲୁ ସ୍ୱର୍ଗ ଯେବେ ମାଡ଼ି
କିହେବ ହେଲେ ଆସିଲେ ଏଥେ ଇନ୍ଦ୍ର ଲୋଡ଼ି
ବାସବ ଠାବରେ ହେଲେ ନାହିଁ କିଛି କାର୍ଯ୍ୟ
ତୋ ଭାଗ୍ୟବଳେ ଏବେ ତୁ ଭୁଞ୍ଜ ଅଇଶ୍ୱର୍ଯ୍ୟ
ଚାଲ ହେ ରାଜା ନଗ୍ରକୁ ତୋର ଯିବା ଏବେ
ତହିଁ ବସି ହାନିଲାଭ ବୁଝ ସବୁଠାବେ ।
ଜିଣିଲୁ ତୁ ଜମ୍ବୁଦ୍ୱୀପେ ଥାଇ ସବୁ ପୁର
ସ୍ୱଦେଶ ଛାଡ଼ି କରିବୁ ସ୍ୱର୍ଗେ କିମ୍ପା ଘର ।
ଯେଉଁଠାରେ ଥାଇ ଏତେ ଜୟକଲୁ ପୃଥ୍ୱୀ ।
ଜୟମଙ୍ଗଳପୁର ସେ ଅଟଇ ତୋ କୀର୍ତ୍ତି ।
ସେ ସ୍ଥାନେ ବସି ଏବେରେ ସବୁ କଥା ବୁଝ
ତେବେ ତୋହର ଅଧିକ ଉଦେ ହେବକାର୍ଯ୍ୟ
ଶୁଣିଣ ମୁର ଦଇତ ଶୁକ୍ରଙ୍କ ବଚନ
ରାଜ୍ୟକୁ ସେ ଯିବାପାଇଁ କଲା ପୁଣି ମନ ।
ମନ୍ତ୍ରୀକି ବୋଇଲା ସଇନ୍ୟଙ୍କୁ କର ସଜ
ଗୁରୁଙ୍କ ଆଦେଶ ହେଲା ରାଜ୍ୟେ ଯିବା ଆଜ
ସୈନ୍ୟମାନଙ୍କୁ ଯେ ଆଣ ମୋ ପାଶକୁ ରାଇ
ସ୍ୱର୍ଗପୁରେ ଯିବା ରଖି ଜଣେ ଶାଢ଼ୀ ଦେଇ
ବେନିବର୍ଷ ହେଲା ଛାଡ଼ି ଆସିଲିଣି ଦେଶ
ଇନ୍ଦ୍ର ପଳାଇଲା ଲିଭିଲିଣି ସ୍ୱର୍ଗବାସ ।
ଆଉ ତ କଳଙ୍କ ମୋତେ ନାହିଁ ଏ ସଂସାରେ
ସେନାଏ ପଶି ପଳାନ୍ତୁ ଏବେ ସ୍ୱର୍ଗ ପୁରେ ।
ଶୁଣିଣ ସୁବିଜ୍ଞ ମନ୍ତ୍ରୀ ସାଜି ସୈନ୍ୟ ବେଗେ
ସୈନ୍ୟଙ୍କୁ ଘେନି ମିଳିଲା ରାଜାଙ୍କର ଆଗେ
ସମସ୍ତେହେଁ ଦରଶନ କରନ୍ତି ସନ୍ତୋଷେ
ପାରୁଶେ ବସାଇ ତାଙ୍କୁ କହେ ମୁର ରସେ ।
ରାଜା ବୋଇଲା କାଙ୍କୋଳାସୁର ଆରେ ଶୁଣ
ତୋ ମୂଳେ ଏ ସର୍ବ ରଖି ଦେଲଇଁ ପ୍ରମାଣ
ଦଶପଦ୍ମ ସୈନ୍ୟ ଘେନି ରହନ୍ତୁ ଅମରେ
ଇନ୍ଦ୍ରହୋଇ ପାଳ ତୁହି ସବୁ ପରକାରେ ।
ବଜ୍ରପାଣିକି ରାଇଣ ପୁଣ ଦେଲା ଶାଢ଼ୀ
ବୋଇଲା ତୁ ଯମପୁର ବସ ଯାଇ ମାଡ଼ି ।
ତୋ ଅଙ୍ଗବଳ ସଇନ୍ୟ ସାଗରଙ୍କୁ ଘେନି
ବିବର ମୋ ବାଳଦଣ୍ଡ ଧରି ସଂଯମନୀ ।
ରଣଚଣ୍ଡ ବୋଲିକରି ଯେଉଁ ସେନାପତି
ଈଶାନପୁରେ ତାହାକୁ କଲା ଚକ୍ରବର୍ତ୍ତୀ ।
ପୁଣି ବୋଇଲା ସେ ରାୟେ ଚାହିଁ ବୀରଘଣ୍ଟ
ହିରଣ୍ୟଗର୍ଭ ପୁରରେ ହୁଅ ତୁହି ରାଟ ।
ତହୁଁ ଯେ ଜଳଘଣ୍ଟକୁ ଚାହିଁ ଆଜ୍ଞାଦେଲା
କୁବେର ପୁରେ ଯାଇଣ ରହ ଯା ବୋଇଲା
ସାଗରେକ ସୈନ୍ୟଘେନି ତୋର ଅଙ୍ଗବଳ
କୁବେର ପୁର ଜଗି ତୁ ହୁଅ ଧନପାଳ ।
ସୌଦାସକୁ ଚାହିଁ ବେଗେ ବୋଇଲା ହେଜାଣ
ମରୁତପୁରେ ବସିଣ ହୁଅ ତୁହି ଗଣ ।
ଲୋହ ଅସୁରକୁ ପୁଣି ଦୈତ୍ୟ ଚାହିଁଲାକ
ବୋଲେ ତୋତେ ଦେଲିମୁହିଁ ଅଗ୍ନିପୁରଯାକ
ମୁଦ୍ଗାସୁରକୁ ବୋଇଲା ଚଳ ତୁ ପାତାଳେ
ତହିଁ ବସି ହାନିଲାଭ ବୁଝ ତତକାଳେ ।
ମଦନାସୁରକୁ ରାଜା କହିଲାକ ହସି
ବୋଇଲା ନୈର୍ଋତପୁରେ ଯାଇ ତୁ ରହସି
ମୁକୁନ୍ଦାକୁ ବୋଲେ ତୋର ବରୁଣର ପୁର
ତାହାର ନଗ୍ରରେ ଯାଇଁ ହୁଅ ନୃପବର ।
ଚନ୍ଦ୍ର ମାଳି ଶରଜିତ ଦୁହେଁ ତୁମ୍ଭେ ଜାଣ
ଚନ୍ଦ୍ର ସୂର୍ଯ୍ୟ ବୋଲାଇଣ ଉଦେ ହୁଅ ଶୂନ୍ୟ
ଦିବାରାତ୍ର ହୋଇଣ ଯେ କର ଦେବକାର୍ଯ୍ୟ
ମୁହିଁ ଯାହା ମନାସିବି ହେବ ନିଶ୍ଚେ ଆଜ ।
ରଣକେଶୀ କୃତକେଶୀ ଆଲୋପି ସାଲୋପି
ଏହାଙ୍କୁ ବୋଇଲା ତୁମ୍ଭେ ହୁଅ ଗ୍ରହରୂପୀ ।
ଖଡ଼ିକାସୁରକୁ କହିଲାକ ପୁଣି ଉଠି
ବୋଇଲା ନକ୍ଷତ୍ରହୋଇ ଶୂନ୍ୟେ ରହଫୁଟି ।
ତୋହର ସଙ୍ଗେ ଅଛନ୍ତି ଯେତେ ଥାଟସୈନ୍ୟ
ସମସ୍ତେ ତାରା ହୋଇଣ ଦିଶନ୍ତୁ ଗଗନ ।
ଆଉ ଯେ ଥିଲେ ଗନ୍ଧର୍ବ ଆଦି ବିଦ୍ୟାଧର
ସମସ୍ତଙ୍କୁ ଅଙ୍ଗୁଜାତ କଲା ମୁରାସୁର ।

ଯେବଣ ପୁରରେ ହୁଏ ଯେ ବିଧାନ ନୀତି
ସର୍ବ ସଇନ୍ୟ ପାଳନ କର ସେହିମତି ।
ପୀତାମ୍ବର କହେ ଏହିପ୍ରିର ମୁର ଦୈତ୍ୟ
କହି ରାଜ୍ୟେ ଯିବାପାଇଁ ହୋଇଲା ଉଦ୍ୟତ ।



## ମୁର ଦାରୁଣଙ୍କର ପଦ୍ମାବତୀ ଓ ଚନ୍ଦ୍ରାବତୀ ସହ ବିବାହ

କହନ୍ତି ବିଧାତା ଶୁଣ ହେ ନାରଦ ମୁନି
ମୁର ଦାରୁଣଙ୍କର ଯେ ଅପୂର୍ବ କାହାଣୀ ।
ସବୁଙ୍କୁ ଛାଡ଼ି ଦେଇଣ ଗଲା ମୁରାସୁର
ଡାହାଣେ ଦାରୁଣ କଣ୍ଠ ବିକଣ୍ଠ ବାମର ।
ଆଗେ ଯାନ୍ତି ଶୁକ୍ରଗୁରୁ ପଛେ ଦୈତ୍ୟଗଣ
ବାଜୁଅଛି ଚାରିପାଖେ ଦୁନ୍ଦୁଭି ନିଶାଣ ।
ପୂର୍ବମୁଖ ହୋଇକରି ଚଳେ ଦୈତ୍ୟମଣି
ଉଦେଗିରି ପାଖେ ମିଳିଲାକ ଥାଟ ଘେନି ।
ସହସ୍ରେ ଯୋଜନ ବିସ୍ତାର ଯେହୁ ଉଦେଗିରି
ଲକ୍ଷେକ ଯୋଜନ ଉଚ୍ଚ ସ୍ୱର୍ଗ ସମସରି ।
ତହିଁ ପୂର୍ବଭାଗେ ଚନ୍ଦ୍ର ଆଦିତ୍ୟ ଉଦୟେ
ସେହିଠାରୁ ପୃଥ୍ୱୀ ନାହିଁ ସବୁ ଜଳମୟେ ।
ସୂର୍ଯ୍ୟବଂଶରେ ଜନମ ହୋଇଲେ ଯଯାତି
ବରିଲେ ସେ ରାଜା ନବ ସତୀ ନବଜାତି ।
ବ୍ରାହ୍ମଣ କୁଳରୁ ଯେଉଁ କନ୍ୟା ବିଭାହେଲେ
ସେ ନାରୀ ଗର୍ଭରୁ ଏକ ପୁତ୍ର ଜନମିଲେ ।
ଦାତାଶୀଳ ବୋଲିକରି ଦେଲେ ନାମ ତାର
ଉଦେଗିରି ପାଶେ ଯେଉଁ ମନୋହର ପୁର
ସେ ଭୁବନକୁ ଯଯାତି ମନରେ କଳ୍ପିଲେ
ଦାତାଶୀଳ ତନୟକୁ ତହିଁ ରାଜାକଲେ ।
ସେ ରାଜା ବିରଞ୍ଚି ନାରାୟଣ ସେବାକଲା
ତପେ ମନାଇ ଅକ୍ଷୟ ବରକୁ ପାଇଲା ।
ଜିଣିଲା ସପତଦ୍ୱୀପ ପୃଥ୍ୱୀ ବାହୁବଳେ
ଅଚିନ୍ତା ଭୋଗ ଭୁଞ୍ଜାଇ ଉଦୟ ମଣ୍ଡଳେ ।
ଯେ ରାଜା କୋଳରେ ଜନ୍ମ ହେଲେ ଦଶପୁଅ
ପଦ୍ମାବତୀ ଚନ୍ଦ୍ରାବତୀ ଏହି ଦୁଇ ଝିଅ ।
ଉଦେଗିରି ପାରୁଶରେ ତାହାର ଭୁବନ
ଆଦିତ୍ୟଙ୍କ ବ୍ୟତୀତ ସେ ନ ଜାଣଇ ଆନ ।
ବ୍ରାହ୍ମଣ କୁଳରେ ରାଜା ଅଟେ ସୂର୍ଯ୍ୟବଂଶୀ
ଅଟନ୍ତି ତାହାର ବେନିକନ୍ୟା ଚାରୁହଂସୀ ।
ନାନା ସୁବେଶ ହୋଇଛନ୍ତି ବେନି ବାମା
ନାହିଁ ପଟାନ୍ତର ତାଙ୍କୁ ପୃଥ୍ୱୀର ଉପମା ।
ଉଦୟାଚଳ ନାମରେ ବହେ ଏକ ନଦୀ
ଦକ୍ଷିଣେ ସଙ୍ଗମ ହୁଏ ଉଦେଗିରି ଭେଦି ।
ସାରନ୍ତି ପ୍ରଭାତୁ ଉଠି ଦୁହେଁ ନିତ୍ୟକର୍ମ
ଉଦୟ ବାହିନୀ ବୋଲି ଅଟେ ନଦୀ ନାମ ।
ଏହିପରି ନିତି ନିତି କରନ୍ତି ସ୍ନାନକୁ
ଦିନେକ ବିଳମ୍ବ ହୋଇ ଆସନ୍ତେ ଘରକୁ ।
ବିବାହ ନୋହି ଅଛନ୍ତି ପିତାଘରେ ରହି
ତାଙ୍କ ସମାନରେ ବର ନ ମିଳଇ କାହିଁ ।
ସେ ଦିନ ମୁର ଅସୁର ସ୍ୱର୍ଗ କରି ତେଜ୍ୟା
ଉଦେଗିରି ପ୍ରଦକ୍ଷିଣ କଲେ ମହାରାଜା ।
ମୁରଦୈତ୍ୟ ପୂର୍ବଭାଗେ ଆସେ ରସ ଘେନି
ଦେଖିଲେ ସେ ବେନି ଦୁହିତାଙ୍କୁ ଭାଇ ବେନି
ଖଣ୍ଡେଦୂରୁ ଚାହିଁ ରଥ ରଖିଲେ ଥକାଇ
ରହିଲେ ଘଡ଼ିଏ ପରିଯନ୍ତେ ତାଙ୍କୁ ଚାହିଁ ।
ତାହାଙ୍କ ରୂପ ଦେଖିଣ ହୋଇଲେ ମୋହିତ
ପାଞ୍ଚନ୍ତି ଏ ଦୁଇକନ୍ୟା କାହାର ଦୁହିତ ।
ପୂର୍ବେ ଏ ଦୁହିତା କେବେ ଦେଖାତ ନଥିଲେ
କେବଣ ରାଜାର ଏ ଅଟନ୍ତି ଝିଅ ଭଲେ ।
ସଙ୍ଗତେ ଅନେକ ପରିବାରୀ ଛନ୍ତି ଘେନି
ପାଞ୍ଚନ୍ତି କେଣିକି ଯିବେ ଦେଖିବା ଏ ବେନି
ଆମ୍ଭଙ୍କୁ ଯୋଗ୍ୟ ଅଟନ୍ତି ଏକା ଏ କାମିନୀ ।
କେଉଁ ପୁରୁଷର ଏହୁ ଅଟନ୍ତି ରମଣୀ ।
ତାଙ୍କୁ ମନାଇଁ କରିଣ ନେବା ବେନି କନ୍ୟା
ତାଙ୍କୁ ନ କହିଣ ନେଲେ ପାପ ହେବ ସିନା
ତିନିପୁରେ ଆମ୍ଭଙ୍କୁ କେ ନାହିଁ ବଳିୟାର
ଏଠାନେଲେ ପିତାଙ୍କୁ ନୋହିବ ଗୋଚର ।
ପୁରାଣେ କହୁଛି ରାଜଦଣ୍ଡ ଏ ମେଦିନୀ
ପିତା ଦତ୍ତ କନ୍ୟା ପରସିଦ୍ଧ ପୁର ତିନି ।
କେବଣ ପୁରକୁ ଯିବେ ଦେଖୁ ଆଜ ରହି
ପୁଚ୍ଛ ଭାଇ କାହାକୁ ବା କେହି ଏଥେ ନାହିଁ ।
ଅଦୃଶ୍ୟ ହୋଇଣ ରଥ ବାହୁଥିବ ବେଳେ
ତେତେବେଳରେ ଏକାର୍ଯ୍ୟଲଭି ସିନାହେଲେ
ଆସନ୍ତେ ଏ ରୂପେ ପାଞ୍ଚ ମୁର ରଥେ ବସି
ହାନ୍ଦୋଳା ପାଶରେ କନ୍ୟା ପ୍ରବେଶିଲେ ଆସି
ଦେବାଙ୍ଗ ଶାଢ଼ୀ ଅଙ୍ଗରେ ପିନ୍ଧିଲେ ସୁନ୍ଦରୀ
ନବୀନ ଝୀନବସନ ପହରଣ କରି ।
ନାନା ଅଳଙ୍କାରେ ଦାସୀ କଲେକ ଭୂଷଣ
ଲେପିଲେ ସୁବାସ ଚତୁଃସମ ଶରୀରେଣ ।
ଭାଲରେ ସୁଗନ୍ଧପାଟୀ କପୋଳରେ ଟୀକା
ନେତ୍ରେ କଜ୍ଜଳ ପାଦେ ଅଳତାବେଢ଼ା ରେଖା
ବସିଲେ ଏରୂପେ ବେଶ ହୋଇ ବେନିବାଳୀ
ପରିବାରୀଏ ପକାନ୍ତି ତହିଁ ହୁଳହୁଳି ।
ନବରରେ ବେନିବାମା ପ୍ରବେଶିଲେ ଆସି
ତାହାଙ୍କ ପଛରେ ମୁର ଆସେ ରଥେ ବସି

ସିଂହଦ୍ୱାରେ ରଥ ଦେଖି ଓଗାଳିଲେ ଲୋକେ
ଦାତାଶୀଳ ରାଜାଆଗେ କହିଲେ ଯେଥୋକେ
ଭୋ ଦେବ ଶୁଣିମା ସୂର୍ଯ୍ୟବଂଶୀ ନୃପବର
ଅଦଭୁତେ ରଥ ଆସି ମିଳେ ସିଂହଦ୍ୱାର ।
ସେ ରଥରେ ବେନିଜନ ଛନ୍ତି ଦେବ ବସି
ବୀରବର ପରାୟକ ତାଙ୍କ ରୂପ ଦିଶି ।
ନାମ ଗୋତ୍ର ମଧ ତାଙ୍କ ନାହୁଁ ଆମ୍ଭେ ଜାଣି
ବିକ୍ରମସିଂହ ପରାୟେ ତାଙ୍କ ଠିଆ ଠାଣି
ଶୁଣି ଦାତାଶୀଳ ରାଜା ଉଠେ କୋପକରି
ବୋଇଲେ କାହିଁର ସେହି ପଶେ ନ ପଚାରି
ସୈନ୍ୟଙ୍କୁ ବୋଇଲେ ଆରେ ଓଗାଳି ତାପଥ
ନାମ ସେ ନକହି କରି ପଶେ କିମ୍ପା ଏଥ
ଦାତାଶୀଳ ବୋଲିକରି ନାହିଁ ମୋତେ ଜାଣି
ବାଳୁତ କାଳରୁ ମୁହିଁ ସେହି ଦିନମଣି ।
ଆଦିତ୍ୟଙ୍କ ପ୍ରସନ୍ନରୁ ଅକ୍ଷୟ ମୋ ବର
ଧରିଆଣ ବେଗେ ତାକୁ ପ୍ରାଣେହେ ନମାର
ଶୁଣିଣ ଧାଇଁଲେ ସୈନ୍ୟଯାକ ଆଜ୍ଞା ପାଇ
ପନ୍ଦର ପାଟଛ ଯାଏ ଉଭାରିଲେ ଯାଇ ।
ଡାକନ୍ତି କାହିଁର ତୁମ୍ଭେ ଅଟରେ ବିଦେଶୀ
ବାର୍ତ୍ତା ନ ଦେଇ ପଶିଲ କିମ୍ପା ରାଜ୍ୟେ ଆସି
ନ ଜାଣ କି ଦାତାଶୀଳ ରାଜା ବୀରବର
ସୂର୍ଯ୍ୟଙ୍କୁ ସେବା କରି ସେ ହୋଇଛି ଅମର
ତୁମ୍ଭେ କେହ୍ନେ ପଶିଲ ନ ଜାଣି ଏଥେ ଆସି
ଶୁଣି ମୁରଦୈତ୍ୟ ତାହା ଅନ୍ତଦେଲା ହସି
ରଥ ଉପରେ ବସିଣ ଡାକେ ରହ ଉହ
ସୈନ୍ୟ ଲୋଚାକୁ ଦେଖିଣ ହସେ ଟହ ଟହ
ବୋଲଇ ଏଡ଼େ ପ୍ରତିଜ୍ଞା କହ ହେ କାହିଁକି
ଆମ୍ଭେ ତ ଅଧର୍ମେ ଆସି ନାହୁଁ ନା ଏଣିକି
ରାଜାକୁ ଏବେ ତୋହର ବେଗେ କହ ଯାଇ
ନିଶ୍ଚିନ୍ତରେ ଥାଉ ମୋତେ କନ୍ୟାବେନିଦେଇ
ଦେଖିଲୁ ନଦୀରୁ ଆସୁଥିଲେ ବାଟେ ତାଙ୍କୁ
ଅଧରମ ହେବ ବୋଲି ନ ନେଲୁ ରାଜ୍ୟକୁ ।
ପିତାମାତାଙ୍କୁ କହିଣ ନେବୁ ବୋଲି ମାଗି
ଏହା ନ ଜାଣି ଆସିଛ କିମ୍ପା ଯୁଦ୍ଧଲାଗି ।
ଏବେ ଯାଇଣ ତୁମ୍ଭର ରାଜା ଆଗେ କହ
ବେଳାରେ ଆସିଛି ମୁର ରାଜା ମାଗି ଝିଅ
ଶୁଣିକରି ସେନାମାନେ ଆସିଲେ କୁହାଟି
ବୋଇଲେ ଆସିଛି ଭଲ ନେବ କନ୍ୟାକୁଟି
ସୂର୍ଯ୍ୟବଂଶେ ରାଜା ସେହୁ ବିପ୍ରକୁଳେ ଜାତ
ଦୈତ୍ୟ ହୋଇ ରହିବ କି ବ୍ରାହ୍ମଣ ଦୁହିତ ।
ମାଛି ପଡ଼ିଗଲେ ଯହିଁ ହେବେ ନବଖଣ୍ଡ
ତହିଁରେ କିପରି ଆସି ହରାଉଛ ପିଣ୍ଡ ।

ଦାତାଶୀଳ ନୃପବୋଲି ନଜାଣିଲେ ଦୈତ୍ୟେ
ତୋତେବାନ୍ଧି ନେବାପାଇଁପେଷିଅଛି ମୋତେ
ମୁର ଅସୁର ବୋଇଲା ଶୁଣ ଆରେ ଭାଇ
ଅନେକ ପଡ଼ି କେସନେ ନରଜନ୍ମ ପାଇ ।
ଅଗାଧ ସମୁଦ୍ରେ ପଡ଼ି ଲୋଡ଼ୁଛ କି ବାଟ
ରଥୁଁ ଉଠିଲେ ତୁମ୍ଭର ସରିବଟି ନଟ ।
ସର୍ପ ଆଗରେ ମଣ୍ଡୁକୀ ଟେକେ କିରେ ମେରୁ
ଟେଳା ପ୍ରହାରିଲେ କିରେ ନ ସହଇ ମେରୁ
ବ୍ରହ୍ମା ଶଙ୍କର ଯାହାକୁ ଥାନ୍ତି ଅନୁସରି
ତୁମ୍ଭେ ଛାର ଏହିକ୍ଷଣି ବ୍ୟର୍ଥେ ଯିବ ମରି ।
ବନ୍ଧୁପଣକୁ ସିନାରେ କରିଥିଲି ସ୍ନେହ
ନୋହିଲେ ସହେ କି ଏହା ମୁରାସୁର ଦେହ
ଶୁଣି ଦାତାଶୀଳ ଲୋକେହେଲେ କୋପମୂର୍ତ୍ତି
ମୁର ଦୈତ୍ୟ ଉପରକୁ ଶର ବରଷନ୍ତି ।
ତା ଦେଖି ଉଠିଲା ମୁରାସୁର କୋପାନଳେ
ଗଦା ଧରିଣ ପଡ଼ିଲା ଡେଇଁ ଆସି ତଳେ ।
ବିକଟାଳ ଘୋରରୂପ ଫୁଲାଇଣ ମୁଛ
ଏକଧାପ ଚାପେଣ ସେ ନାଶେ ସୈନ୍ୟଯାକ
କାହାକୁ ବିଧା ଗୁରୁଜ କାହାକୁ ଚାପୋଡ଼େ
କାହାକୁ ଧରିଣ ଫିଙ୍ଗିବାକୁ ଛେଚେଗୋଡ଼େ
ମହାକୋପ ହୋଇ ମୁର ସମରେ ପ୍ରଚଣ୍ଡ
ବିଜୟ କର୍ଣ୍ଣକଟାରେ ଛେଦେ କାହା ମୁଣ୍ଡ
ଥୋକାଏ ଗଦାଘାତରେ ଥୋକେପାଦେପଡ଼ି
ଥୋକାଏକ ଧୂଳିପ୍ରାୟେ ଶୂନ୍ୟେ ଗଲେଉଡ଼ି
ଡଗର କହିଲେ ଯାଇ ବାର୍ତ୍ତା ରାଜା ଆଗେ
ଭୋଦେବ ସୈନ୍ୟ ତୁମ୍ଭର ମାଇଲାସେବେଗେ
ଅନେକ ଉଚ୍ଛେ ରକତ ଯାଉଅଛି ବହି
ଦେଖିଣ ଅଇଲୁ ଏହିକ୍ଷଣି ରକ୍ତ ନଇ ।
ଏହାଶୁଣି ଦାତାଶୀଳ ହେଲା କୋପାନଳ
ସଙ୍ଗରେ ଘେନି ଚଳିଲା ଥୋକେ ସୈନ୍ୟବଳ
ସୂର୍ଯ୍ୟାବର୍ତ୍ତ ନାରାଚକୁ ଧରି ରାଜା କରେ
ରେରେକାର କରି ଯାଇ ପଶିଲା ସମରେ ।
ବୋଇଲା କାହିଁକି ତୁରେ ମାଇଲୁ ସଇନି
ଅଦୋଷରେ ମାଇଲେ ତ ହୁଏ ଧର୍ମହାନି ।
ରଥି ନ ଥିବାର ଥାଟ କରେ ଯେହୁ ନାଶ
ତାହାର ସମାନ ପାପୀ ନାହିଁ କେ ତ୍ରିଦଶ ।
ଦୋଷ ନ ଦେଖି ଅଦୋଷେ ଯେହୁ ଦିଏ ଦଣ୍ଡ
ତାହାଠାରୁ ମହାପାପୀ ନାହିଁ କେ ବ୍ରହ୍ମାଣ୍ଡ ।
ଶୁଣିଣ ମୁର ଦଇତ୍ୟ ବୋଲେ ସତ୍ୟ ସତ୍ୟ
ସଇନ୍ୟକୁ ମାରି ତେବେ ମାରିବା ଉଚିତ ।
ଥାଟ ମଲାକୁ ବିକଳ ଯଦ୍ୟପି ତୁ ହେଲୁ
ଆଗୁଁ ଆସି ତୁହି କିମ୍ପା ମୋହାତେ ନ ମଲୁ

ଶୁଣକରି ଦାତାଶୀଳ ହୋଇ କୋପାନଳ
ମୁରାସୁରକୁ ସେ ଶର ବିନ୍ଧିଲା ତତ୍କାଳ ।
ଶର ଆସନ୍ତେଣ ମୁର ଧଇଲା ତା ହସ୍ତେ
ଖଣ୍ଡ ଖଣ୍ଡ କରି ଭାଙ୍ଗି ପକାଇ ତଡ଼ତେ ।
ପୁଣି ସୂର୍ଯ୍ୟବଂଶୀ ବିନ୍ଧି ଦେଲେ ଲକ୍ଷେ ଶର
ଯେସନେ ଗଗନୁ ଖସି ପଡ଼ନ୍ତି ପଥର ।
ସେହି ସଦୃଶେ ପଡ଼ନ୍ତେ ଦେହେ ଶର ଆସି
କୀଟ ମାଛି ପ୍ରାୟେ ତାହା ଦିଏ ମୁର ଘଷି ।
ଦେଖିକରି ଆଚମ୍ବିତ ହେଲେ ସୂର୍ଯ୍ୟଗୋତ୍ର
ପେଷିଲେ ବାବଲ ସୂର୍ଯ୍ୟାବର୍ତ୍ତ ପଢ଼ି ମନ୍ତ୍ର
ଆସନ୍ତେ ସେ ଦେବଶର ଛାଡ଼ି ବାଟେ ରଡ଼ି
ଦେଖି ମୁରଦୈତ୍ୟ ରହିଲାକ ମୁଣ୍ଡକୋଡ଼ି ।
ତାହାକୁ ଦେଖି ନାରାଚ ଗଲେ ଆଡ଼ ହୋଇ
ବୋଇଲେ ମୁରଦଇତ୍ୟ ବ୍ରହ୍ମାଙ୍କ ତନୟି ।
ଏହାର ଦେହେ ପଡ଼ିବା ଯାଇ ଆମ୍ଭେ ଯେବେ
ଶୁଣିଲେ ପାଇବେ ଲଜ୍ଜା ସିନା ଠାବେ ଠାବେ
ଏହାର ମରଣ ନାହିଁ ଏଠାରେ ତ ଭଲେ
ଏତେ ପାଞ୍ଚି ଶସ୍ତ୍ରମାନ ଦେବଲୋକେ ଗଲେ
ଦେଖିକରି ସୂର୍ଯ୍ୟବଂଶୀ କୋପେ ଗୁରୁତର
ଦୋକନା ମୁଗୁର ବାଣ ବିନ୍ଧି ଲକ୍ଷେ ଶର ।
ମୁରର ଅଙ୍ଗେ ପଡ଼ନ୍ତେ ଦିଏ ତାହା ଝିଙ୍କି
ରଥର ଉପରେ ବସି ହସେ ମୁଖ ଟେକି ।
ବୋଇଲା କି ଏହିଯୁଦ୍ଧେ ହେବୁ ମୋତେ ସରି
ଶ୍ୱଶୁର ତୁ ହେବୁ ବୋଲି ମୁଁ ତୋତେନମାରି
ନ ଶୁଣେ ସମର କୁତୂହଳେ ତାହା ରାଜ
ପୁଣି ଲକ୍ଷେ ଶର ବିନ୍ଧିଲାକ ମହାରାଜ ।
ଅକାଟ ଅତୁଟ ପୁଣି ଅଟେ ଯାର କାୟ
ଦାତାଶୀଳ ରାଜାକୁ ଯେ ତାର କିସ ଭୟ
ବିଷ୍ଣୁ ବ୍ୟତିରେକେ ମୃତ୍ୟୁ ନାହିଁଟି ତାହାକୁ
ସେ କିସ ମାନିବ ଏହି ନାରାଚମାନଙ୍କୁ ।
ବଦନ ଉଲୁସାଇ ନିଃଶ୍ୱାସ ଦ୍ୟନ୍ତେ ଛାଡ଼ି
ପଡ଼ିଲେ ନାରାଚମାନେ ଖଣ୍ଡେଦୂରେ ଉଡ଼ି ।
କରନ୍ତେ ଏମନ୍ତ ବାଣ ବୃଷ୍ଟି ଦଣ୍ଡଧାରୀ
ତାହା ଦେଖି ମୁରଦୈତ୍ୟ ଉଠି କୋପକରି
ବିଚାରିଲେ ମୁଁ ସହିବି କେତେ ଏହା ଯୁଦ୍ଧ
କନ୍ୟାକୁ ଘେନିଣ ଗଲେ ପରେ ସିନା ବଧ ।
ଏତେ ପାଞ୍ଚି ବିଶ୍ୱରୂପ ହେଲା ମୁରାସୁର
ବଢ଼ିଲା ଆକାଶ ପରିଯନ୍ତେ କଳେବର ।
ଲମ୍ବିଲା ପାଞ୍ଚଯୋଜନ ଯାଏ ବେନି ବାହା
ଶୂନ୍ୟେ ସୂର୍ଯ୍ୟଙ୍କର ଲୁଚିଗଲା ଜାଣ ଛାୟା ।
ବଢ଼ିଲା ବ୍ରହ୍ମାଣ୍ଡଯାକ ଘୋଟି କାମରୂପୀ
ଲହ ଲହ ଜିହ୍ୱା କରି ଆସେ ଶୂନ୍ୟେ କ୍ଷେପି
ଆକାଶ ମାର୍ଗରେ ଶିର ମଞ୍ଚେ ଲାଗେ ପାଦ
ରାହୁକୁ ଚନ୍ଦ୍ରମା ପ୍ରାୟ ଘୋଟି କଲା ନାଦ ।

ମୁରାସୁର ବିକଟାଳ ଦେଖି ଦାତାଶୀଳ
ବେନି କରରେ ଧରିଣ ପିଟେ ନେଇ ଶୂଳ ।
ଶୂଳ ବାଜନ୍ତେ ଧାଇଁଲା ଦୈତ୍ୟହୋଇ କୋପ
ଅମୋଘ ଶୂଳ ଘେନି ପିଟନ୍ତେ ହୋଇ ତାପ
ପିଟନ୍ତେ ପଡ଼ିଲା ମୋହଯାଇ ଦାତାଶୀଳ
ଭାଜିଲେ ରାଜା ପଡ଼ିବା ଦେଖି ସୈନ୍ୟବଳ
ମୁର ଯାଇ ଦାତାକୁ ଧଇଲା ଗଳଗାଜି
ପାଟ ଡ଼ୋରରେ ନେଇ ବାନ୍ଧେ ରଥମଝି
ଏଥୁ ଅନନ୍ତରେ ଦାତା ପାଇଲେ ଚେତନ
ପାଞ୍ଚନ୍ତି ମୁର ମୁଖକୁ ଚାହିଁ ମନେ ମନ ।
ଦାତାଶୀଳ ବୋଇଲେ ହେ ଶୁଣ ମହାବୀର
କେବଣ ମହାତମାର ଅଟୁ ତୁ କୁମର ।
ମୋର ସଦୃଶ ରାଜାକୁ ଜିଣିଲୁ ତୁ ଆସି
ତେଣୁକରି ମୁଁ ପୃଚ୍ଛୁଛି ତୋତେ ପରଶଂସି
ମୋହର ମହିମା କହୁଅଛି ଶୁଣ ତୋତେ
ଯଯାତି ଇନ୍ଦ୍ର ପୁତ୍ର ମୁଁ ଅଟଇ ଯୁକତେ ।
ନବ ଜାତିରୁ ବିବାହ ହେଲେ ନବ ନାରୀ
ଥାପିଲେ ବ୍ରାହ୍ମଣୀପୁତ୍ର ବୋଲି ଉଦେଗିରି ।
ସବୁରି ସ୍ଥାନକୁ ଏହୁ ଅଟେ ଅଗ୍ରଜିତା
ତେଣୁକରି ଏ ପୃଥିବୀ ଦେଲେ ମୋତେ ପିତା
ସେହିକାଳୁ ଏ ପୁରକୁ ପାଳୁଅଛି ମୁହିଁ
ବାଳକାଳରୁ ସୂର୍ଯ୍ୟଙ୍କୁ ଅଛି ତପେ ଦାହି
ସେ ଆଦିତ୍ୟ ପ୍ରସନ୍ନରୁ ଜିଣିଲି ତ୍ରିପୁର
ଅମର ହୋଇଅଛି ମୁଁ ସଂସାର ଭିତର ।
ଏତେକାଳେ ହାରିଲି ମୁଁ ଆଜି ତୋହଠାରେ
ତୁ କେବଣ ମହାତମା କହ ମୋ ଆଗରେ ।
ଏହାଶୁଣି ମହାରାଜା ହେଲା ଶାନ୍ତମନ
ତକ୍ଷଣେ ରଜ୍ଜୁ ଫେଡିଣ ଦେଲାକ ଆସନ ।
ବୋଇଲା ଭୋ ରାଜା ତୁହି ଅଟୁ ବଡ଼ଲୋକ
ମୋହର ପରାୟେ ଯୋଦ୍ଧାନାହିଁନା ତ୍ରୈଲୋକ
ମୋର ତୁଲେ ଯୁଦ୍ଧକରି ନାହିଁ କେହୁ ବର୍ତ୍ତି
ସ୍ୱର୍ଗେ ଇନ୍ଦ୍ର ମୋତେ ହାରିଗଲା ତିନିଘାନ୍ତି
ଜିଣିଲି ସପତଦ୍ୱୀପ ପୃଥ୍ୱୀ ମୁହିଁ ବଳେ
ବୈକୁଣ୍ଠକୁ ଯାଇ ବିଷ୍ଣୁ ପୋଡ଼ିଲି ଅନଳେ
ହେଲେହେଁ ସ୍ୱର୍ଗପୁରକୁ ବସିବି ମୁଁ ମାଡ଼ି
ତୋ ଝିଅକୁ ଦେଖି ଆସିଗଲି ବାଟଛାଡ଼ି ।
ବିପ୍ରକୁମାରୀ ବୋଲିଣ ବଳିଲା ମୋ ମନ
ଆମ୍ଭେ ବେନିଭାଇ ଅଟୁ ବ୍ରହ୍ମାଙ୍କ ନନ୍ଦନ ।
ଈଶ୍ୱର ବରରେ ପୁଣି ଅଟୁ ଜଗଜ୍ଜିତା
ଅମର ବର ଦେଇଣ ଅଛନ୍ତି ବିଧାତା ।
ଏଣୁ ତୁ ମୋହର ତୁଲେ କର ଯେତେ ଯୁଦ୍ଧ
ତୋର ଯୁଦ୍ଧ ଦେଖି ମୋତେ ଲାଗିଲାଉପ୍ରୋଧ
ବଡ଼ଲୋକ ବୋଲି ତୁହି ବୋଲି ବିଚାରିଲି
ତେଣୁ ପାଟଡ଼ୋରେ ତୋତେ ଆଣିଣ ବାନ୍ଧିଲି

ତୁମ୍ଭେ ତ ବ୍ରାହ୍ମଣ ରାଜା ଆମ୍ଭେ ବ୍ରହ୍ମାପୁଅ
ଆମ୍ଭଙ୍କୁ ବିଭା କରାଅ ତୁମ୍ଭ ବେନି ଝିଅ ।
ଆନ ଲୋକ ହେଲେ ଆଜ ନପାନ୍ତ ଜୀବନ
ତୁମ୍ଭେ ମହା ବିଜ୍ଞବନ୍ତ ଅଟ ହେ ରାଜନ ।
ଶୁଣିକରି ଦାତାଶୀଳ ହୋଇଲା ସନ୍ତୋଷ
ମନରେ ପାଞ୍ଚିଲା ଏତେ ଉତ୍ତମ ପୁରୁଷ ।
ବଡ଼ଲୋକ ପୁଅ ଏହୁ ଅଟେ ବଡ଼ଲୋକ
ନାସ୍ତିକଲେ କଥା ସିନା ରହିବ ତ୍ରୈଲୋକ୍ୟ
ଯଦ୍ୟପି ବଳେ ଏହାଙ୍କୁ ହନ୍ତି ବଳିୟାର
ତେବେ ଘଉଡ଼ି ଦିଅନ୍ତି ବୋଲିଣ ଅସୁର ।
ନାହିଁ ବୋଲିବାକୁ କଥାଅଛି ହେଲେ ଆଉ
ବନ୍ଧୁ ହେବାକୁ ବୋଲିତ ମଗାଇଲା ଏହୁ ।
ଏତେ ପାଞ୍ଚି ଘେନି ତାଙ୍କୁ ଗଲେକ ନବରେ
ଛାମୁଣ୍ଡିଆମାନ ଯାଇଁ କଲେ ନଦୀତୀରେ ।
ତହିଁ ଯାଇଁ ରହିଲେ ହେ ମୁର ସୈନ୍ୟଯାକ
ଭୁଞ୍ଜିବାକୁ ଖଞ୍ଜିଲେ ମଣୋହି ସୁଧାପାକ ।
ସୁବର୍ଣ୍ଣର ବେଦୀ ଦୁଇ ସ୍ଥାପିଲେ ନୃମଣି
ନକ୍ଷତ୍ର ଅମୃତ ବେଳେ ଦିନ ବାର ଗଣି ।
ଶୁକ୍ର ମହାଗୁରୁ ସଙ୍ଗେ ଛନ୍ତି ତହିଁ ଆସି
ଆପଣେ ପ୍ରୋହିତ ହେଲେ ବେଦୀପରେ ବସି
ଶୁକ୍ଳ ଶ୍ରୀପଞ୍ଚମୀ କୁମ୍ଭମାସ ଗୁରୁବାର
ରୋହିଣୀ ନାମେ ନକ୍ଷତ୍ର ଅଟେ ସେ ଦିନର
ସିଂହକୁ ମଙ୍ଗଳ ଅଷ୍ଟମେ ଯେ ଅଟେ ସ୍ଥିତି
ଚତୁର୍ଥଘରେ ଚନ୍ଦ୍ର ସପ୍ତମେ ବୃହସ୍ପତି ।
ଦ୍ୱିତୀୟ ଘରେ ବୁଧ ଦଶମେ ଶନୈଶ୍ଚର
ଏମନ୍ତ ଯୋଗରେ ବିଭାହେଲେ ବେନିବୀର
ଦାତାଶୀଳବୋଇଲେ ହୋଆମ୍ଭେ ସୂର୍ଯବଂଶ
ତୁମ୍ଭେ ତ ବିଧାତାଙ୍କର ଅଟ ବେନି ଶିଷ୍ୟ
ଏହିପରି ବେନି ଗୋତ୍ର ଉଚ୍ଚାରଣ କଲେ
ବରୁଣ ପୂଜା କରିଣ ବୈଶାଳା ପୋତିଲେ
ଇଷ୍ଟକୁଳ ନାଗକୁ ପୂଜିଲେ ମାତୃଗଣ
ସୁଗନ୍ଧାଧିବାସ କଲେ ପକାଇ ଲବଣ ।
ବର କନ୍ୟା ଘେନି ବେଦୀପରେ ବସାଇଲେ
ହସ୍ତଗ୍ରନ୍ଥି କରିଣ ସେ କୁଶେ ପାଣିଦେଲେ
ଶକ୍ୟ ଅନୁକ୍ରମେ ପୁଣି ଦେଲେ ଯଉତୁକ
ସହସ୍ରେକ ଅସୁର ମାତଙ୍ଗ ସହସ୍ରେକ ।
ସମର୍ପିଣ ମହାରାଜା ନବରକୁ ଗଲେ
ବନ୍ଧାଇ ଭିତର ପୁରେ ବରକନ୍ୟା ନେଲେ
ବଜାଇଣ ଶଙ୍ଖ ଭେରୀ କାହାଳୀ ମହୁରୀ
ଟମକ ନିଶାଣ ଢୋଲ ଦମା ଆଦିକରି ।
ସାତଦିନ ପରିଯନ୍ତେ ଥିଲେ ବେନିଭ୍ରାତ
ଚଉଠି ସାତମଙ୍ଗଳା ବଢ଼ିଲା ସମସ୍ତ ।
ରାଜ୍ୟକୁ ଯିବାକୁ ସଜ ହେଲେ ବେନିଭାଇ
ବିଜୟ ରଥ ଉପରେ ବସିଲେ ସେ ଯାଇ ।
ଦୁଇକନ୍ୟାକୁ ଧଇଲେ ଦୁହେଁସ୍ନେହେକୋଳେ
ରାଜ୍ୟକୁ ସଜ ହୋଇ ଚଳିଲେ ତତକାଳେ ।
ମୁର ପଦ୍ମାବତୀ ଦାରୁଣକୁ ଚନ୍ଦ୍ରାବତୀ
ଏରୂପେ ସେ ଦାତାଶୀଳ ଦେଲେକ ଦୁହିତୀ ।
ମୁରକୁ ବୋଲେ ମେଲାଣି କରବେଗେମୋତେ
ଶରଣ ଗଲି ଦୁହିତା ବେନି ଦେଇ ତୋତେ
ଉଦେଗିରି ରାଜ୍ୟେ ତୁମ୍ଭ ଦୁହିଁଙ୍କର ଜାଣ
ଦୋଷ କ୍ଷମାକରି ମୋର ଚଳିବ ଆପଣ ।
ଏତେ ବୋଲିଣ ଧଇଲେ ଦାତା ଯାଇ କର
ବେନି ନୟନରୁ ଲୁହ ବହେ ଝର ଝର ।
ଦେଖିଣ ମୁର ଅସୁର ନୁଆଇଁଣ ମଥା
ବୋଇଲା ତୁମ୍ଭେ ହୋଇଲ ଆମ୍ଭ ଧର୍ମ ପିତା
କନ୍ୟାକୁ ଯେତେବେଳରୁ ଦେଲୁ ମହାରାୟେ
ଅଭୟ ହୋଇ ଏବେ ତୁ ଥାଅ ସର୍ବଦାଏ ।
ମୋହର ଥାନ୍ତେ ଅଜୟ ତୋତେ ଏଥେନାହିଁ
ମୋର ନାମରେ ଡରିଲେ ଚରାଚର ମହୀ ।
ନିର୍ଭୟ ହୋଇଣ ଭୋଗ କର ତୁହି ଏବେ
ଏପରି ପ୍ରବୋଧ କରି ଚଳିଲେ ଦାନବେ ।
ଶୁଣ ସାଧୁଜନମାନେ ଏ ପୁରାଣ ସାର
ନିଶ୍ଚେଁ ମୁକତି ଲଭିବ କହେ ପୀତାମ୍ବର



## ମୁରାସୁରର ସ୍ୱପୁରେ ପ୍ରବେଶ ଓ ଦେବଗଣଙ୍କର ସ୍ୱସ୍ୱ ଅଧିକାର ପ୍ରାପ୍ତି

ଶୁଣ ବାବୁ ହେ ନାରଦ କହନ୍ତି ବିଧାତା
ପୁଣି କହିବାକ ତୋତେ ମୁରାସୁର କଥା
ପୁରେ ବାହୁଡ଼ିଲେ ସେହିଠାରୁ ଦାତାଶୀଳ
ଜମ୍ବୁଦ୍ୱୀପେ ଯାଇ ମିଳିଗଲେ ଦୈତ୍ୟବଳ ।
କନକାବତୀ ନଗ୍ରରେ ମିଳେ ମୁରାସୁର
ଶୁଣ ହେ ନାରଦ କହୁଛନ୍ତି ବେଦବର ।
ନବୀନ ଗଜ ଅଶ୍ୱ ଯେ ନୂଆଦ୍ରବ୍ୟ ନାରୀ
ନୂଆଧନ ବସନ ପୋଇଲୀ ପରିବାରୀ ।
ବହୁ ବିଧିମତେ ନୂଆ ବାଦ୍ୟମାନ ବାଜେ
ନୟନ ଆଲୋକ ଦିଶେ କନ୍ୟା ସଜବାଜେ ।
ମୋହିତ ସେ କନ୍ୟା ବେନି ଦେଖି ନରନାରୀ
ବୋଲନ୍ତି ଆଣିଲେ ଆମ୍ଭ ରାଜା ସ୍ୱର୍ଗୁ ହରି ।
ଥୋକେଲୋକ ବୋଲନ୍ତି ଏପୂର୍ବେ ଥିଲେ ଦାହି
ତେଣୁ ଏ ଭୁଞ୍ଜନ୍ତି ଏଡ଼େ ବଡ଼ ଦୈତ୍ୟହୋଇ
ମିଳନ୍ତି ଅପୂର୍ବ ଦ୍ରବ୍ୟଯାକ ଆସି ପାଶ
ବଳେ ଆସି ଦେଉଅଛି ଦଇବ ପୁରୁଷ ।
ଏବେ ବ୍ରହ୍ମାପୁତ୍ରେ ମୁର ଦାରୁଣ ଏ ବେନି
ତେଣୁ ଏ ତିନିଲୋକରେ ହୋଇଲେ କାରେଣି
ଏମନ୍ତ ବୋଲିଣ ଲୋକେ ହନ୍ତି କୁହାକୁହି
ଏଥିଉତ୍ତାରେ ମିଳିଲେ ସର୍ବେ ଦ୍ୱାରେ ଯାଇ ।

ବାର୍ତ୍ତା ପାଇ ଅଇଲେ ମଦନାବତୀ ରାଣୀ
ସୁବର୍ଣ୍ଣ ଥାଳିରେ ଦୁର୍ବାକ୍ଷତ ଛନ୍ତି ଆଣି ।
ସଙ୍ଗେ ତାର ପରିବାରୀ କାମିନୀଏ ମିଶି
ସେ ବେନି କନ୍ୟାଙ୍କୁ ବାଳୀ ବନ୍ଦାଇଲେ ଆସି
ମଙ୍ଗଳ ଗୀତ ଗାଇଣ ଅନ୍ତପୁରେ ନେଲେ
ଅମୃତ ଗୁଟିକା ସର ନେଇ ଭୁଞ୍ଜାଇଲେ ।
ଅନ୍ତଃପୁରେ କନ୍ୟା ଦୁହେଁ ରହିଲେ ନିଶ୍ଚିନ୍ତ
ଏଥିଉତ୍ତାରେ ରଥୁଁ ଓହ୍ଲାଇ ମୁର ଦୈତ୍ୟ
ମନ୍ତ୍ରୀ ଅମନାତ୍ୟ ଘେନି ବସିଲେ ସଭାରେ
ସୈନ୍ୟମାନଙ୍କୁ ମେଲାଣିଦେଲେ ଯେଯାହାରେ
ସାରିଲେ ସ୍ନାହାନ ନିତ୍ୟକର୍ମ ଯଥାବିଧି
ସ୍ୱୂପକାରେ ରାଜନୀତି କଲେ ସର୍ବସାଧି ।
ମୁର ଦାରୁଣ ବେନି ମଣୋହି ଗଲେ କରି
ଶୁକ୍ର ଗୁରୁ ସହିତରେ ଗଲେ ଯେଝାପୁରୀ ।
ଏଥୁଁ ଅନନ୍ତରେ ତହିଁ ଗଲା କେତେଦିନ
ତିର୍ନିପୁରର ବାରତା ଆସେ ଘନ ଘନ ।
ସଭାରେ ମୁର ଦାରୁଣ ବିଜେ ଭାଇ ବେନି
ସେନାପତି ସହିତରେ ଛନ୍ତି ଶୁକ୍ରମୁନି ।
ବୁଝାଇ ସୁବିଜ୍ଞ ମନ୍ତ୍ରୀବର ସବୁ ହସି
ରାଜା ଛାମୁରେ ଗୋଚର କରେ ତାହା ଆସି
ସ୍ୱର୍ଗପୁର ସହିତରେ ଧ୍ରୁବପୁର ଯାଏ
ଉତ୍ତର ଦକ୍ଷିଣ ପୂର୍ବ ପଶ୍ଚିମରୁ ଆୟେ ।
ଯେ ଯାହାର ସେନାମାନେ ପାଳନ୍ତି ସଂସାର
କନକାବତୀ ନଗ୍ରକୁ ଆସେ ନିତ୍ୟ ଚାର ।
ଶୁଣ ହେ ନାରଦ ମୁନି ମୁରର ମହିମା
ଏ ମୁରର ଭୟେ କେହି ନଲଘି ସେ ସୀମା
ସ୍ୱର୍ଗ ଭୁବନରେ ଇନ୍ଦ୍ର ପାତାଳେ ବାସୁକୀ
ଧ୍ରୁବଲୋକଯାଏ ସର୍ବେ ରହିଲେକ ଶଙ୍କି ।
ନାଗ ନରଗଣ ଆଦି ଦେବଗଣ ଯେତେ
ବିହନ୍ତା ପୁରୁଷ ଆଦି ଦେବଗଣ ଯେତେ ।
ଚତୁର୍ମୁଖ ବ୍ରହ୍ମାଙ୍କର ଯେତେକ ରଚନା
ପାଞ୍ଚଶକୋଟି ପୃଥିବୀ ଜୀବଜନ୍ତୁ କିନା ।
ସ୍ଥାବର ଜଙ୍ଗମ କୀଟ ପତଙ୍ଗାଦି କରି
ସପତ ସାଗର ନବଦ୍ୱୀପ ଆଦି ପୁରି ।
ଜଳଚର ସ୍ଥଳଚର ଆକାଶର ଗଣେ
ମୁର ବ୍ୟତୀତ ରଚନା ନ କରନ୍ତି ଆନେ ।
ରଚିଲେ ପାଞ୍ଚଶକୋଟି ପୃଥ୍ୱୀ ଦେବହରି
ମୁରକୁ ରହିଲେ ସେହି ପୁଣି ଲୁଚିକରି ।
ଯେତେ ଜୀବଙ୍କୁ ପାଳନ ବ୍ରହ୍ମା କରୁଥିଲେ
ଅସୁରଙ୍କ ଆଗେ ସେହୁ ଉଦିତ ନୋହିଲେ ।
ସଦାଶିବ କପିଳାସ କନ୍ଦେ ଥିଲେ ରହି
ସେହି ଅନୁସରି ଗଲେ ଦୈତ୍ୟେ ବରଦେଇ
ଇନ୍ଦ୍ର ଆଦିକରି ଆଉ ଦିଗପାଳ ଯେତେ
ଏହାଙ୍କର ନାମ କର୍ମ ହଜିଲା ଜଗତେ ।

କ୍ଷଣେ ତେଜିଲେ ସେ ସବୁ ଦୈତ୍ୟମୟ ପୃଥ୍ୱୀ
ମୁରକୁ ଆଶ୍ରିତ ହୋଇ ରହିଲେ ସବୁନ୍ତି ।
ନଉବରଷୁ ହୋଇଲା ସହସ୍ରେ ବରଷ
ଅସୁରେ ବସି ପାଳନ୍ତି ସକଳ ତ୍ରିଦଶ ।
ଏକୁ ଏକ ମନଇଚ୍ଛା କଲେ ସବୁ ଭୋଗ
ଦିଗପାଳମାନଙ୍କର ସରିଲା କି ଭୋଗ ।
କେ ହିମାଳୟେ ଥିଲେ କେ କପିଳାସେ ଥିଲେ
ବାସୁକୀ ସଙ୍ଗରେ ସେହୁ ପାତାଳେ ଲୁଚିଲେ
ସମସ୍ତେ ବିକଳେ ଆସି ହେଲେ ଏକଠାବେ
ବୋଇଲେ ଇନ୍ଦ୍ରକୁ ଚାଲ କହିବା ସରବେ ।
ଶୁଣିବା କିସ ବୋଲିବେ ସୁରରାଜା ମୁଖେ
ଗୃହରେ ରହିବା ତେବେ ହୋଇ ଯେଝାସୁଖେ
ସମସ୍ତେ ମିଳିଲେ ଏତେ ପାଞ୍ଚ ମେରୁକ୍ରୋଟେ
ଦେଖିଲେ ସଭାରେ ବସିଛନ୍ତି ଇନ୍ଦ୍ର ଭେଟେ ।
ଅପସରାଏ କରନ୍ତି ମିଳି ନୃତ୍ୟ ଗୀତ
ସେବାରେ ବିଦ୍ୟାଧରୀଏ ହୁନ୍ତି ବିମୋହିତ ।
କେ ପିକଦାନୀ ଧରିଛି କେହୁ ଧୂପକାଠି
ଧରିଛି କେ ଗନ୍ଧ ଚତୁଃସମ ପେଡ଼ି ଗୋଟି ।
କେହୁ ସୁବାସିତ ଜଳ ପୂର୍ଣ୍ଣକୁମ୍ଭେ ଭରି
କେ ଦାନ୍ତକାଠି ଧରିଣ ପାରୁଶେ ଉଭାରି ।
କେ ପରୀକ୍ଷ ଖରୀ କେହୁ ବିଞ୍ଚଣୀ ଆଲଟ
କେହୁ ଦେବାଙ୍ଗ ସୁପାତି ପାଡ଼େ ରତ୍ନଖଟ ।
କେହୁ ପାରିଜାତ ପୁଷ୍ପ ସ୍ୱଚ୍ଛନ୍ଦେଣ ଗୁନ୍ଥି
ମଥା ଉପରେ କେ ଅବା ବାନ୍ଧିଲା ସୀମନ୍ତି ।
କେ ନାଗେଶ୍ୱର ପରାଗ ଗୁଣ୍ଡ ବିଞ୍ଚେ ଶେଯେ
ଏମନ୍ତ ସମୟେ ଦିଗପାଳେ କଲେ ବିଜେ ।
ଦେଖିଣ ଇନ୍ଦ୍ର ଦେବତା ଆସନୁ ଉଠିଲେ
ସବୁଙ୍କୁହିଁ ନେଇ ସିଂହାସନେ ବସାଇଲେ ।
କ୍ଷଣକ୍ଷଣକେ ଆନନ୍ଦେ କୋଳାଗ୍ରତ କରି
କହୁଁ କହୁଁ ବେହରଣ ବେଳୁଁ ବେଳ ପୂରି ।
ଚନ୍ଦ୍ର ସୂର୍ଯ୍ୟ ପୃଥ୍ୱୀ ନାଗ ଅଷ୍ଟ ଦିଗପାଳ
ନକ୍ଷତ୍ର ଗ୍ରହଗଣ ବହନ୍ତା ଗିରିମାଳ ।
ନିମିଷ ମୁହୂର୍ତ୍ତ ବାର ତିଥି ଦଣ୍ଡ ଘଡ଼ି
ମାସ ପକ୍ଷ କରଣ ବରଷ କାଳ ବେଢ଼ି ।
ତିନିଶ ବାସ୍ତରୀ ନାଡ଼ୀ ଚଉଷଠି ରୋଗ
କେହି କେଉଁଠାରେ କିଛି ନ ପାଇଲେ ଭୋଗ
ପିଶାଚ ଗନ୍ଧର୍ବ ଯକ୍ଷ ରକ୍ଷ ଗୁହ୍ୟଗଣ
ସିଦ୍ଧ ସାଧକ ଯୋଗାଦି ମୁନି ସହିତେଣ ।
ଇନ୍ଦ୍ର ସଭାରେ ବସିଲେ ସର୍ବେ ଆସି ପାଶେ
ଦେଖି ବାସବଙ୍କୁ ଚିନ୍ତା ଲାଗିଲା ମାନସେ ।
ଭାଳନ୍ତି ପାଇଲେ ମୋରଲାଗି ସର୍ବେ ଦଣ୍ଡ
କାହିଁ ଥିଲୁ ପାପିଷ୍ଟରେ ଅକାଳ ଦୁର୍ଦ୍ଦଣ୍ଡ ।
ମୋତେ ସିନା ଦୋଷୀହୋଇ ତଡିଥିଲୁ ସ୍ୱର୍ଗୁ
ଏମାନେ କି ଦୋଷ ତୋତେ ଅର୍ଜି ଥିଲେ ଆଗୁ

ଏକଥା କି ବିଚାରିଣ କଲୁ ଏତେ ସରି
ବହିଲୁ ଚଣ୍ଡାଳବୁଦ୍ଧି ବଡ଼ପଣ ଧରି ।
ଯାହାକୁ ଯେ ବଡ଼ପଣ ଧାତା ଜାଣ ଦେଇ
ସେହୁ ଯେବେ ଶତ୍ରୁ ମିତ୍ର ଏକ ନ କରଇ ।
ତାହାର କନ୍ଧେ କେବେ ଯେ ନ ରହଇ ଶିରୀ
ଏଣୁକରି ଦୁଷ୍ଟକୁ ନ ସହେ ବସୁନ୍ଧରୀ ।
ଆହେ ଦିଗପାଳେ ମୋତେ ନ କର ହେ ଆଶ
ମୁରକୁ ଆଶ୍ରେ କରି ଯେ ଯାହାପୁରେ ବସ ।
କେବେ ହେଁ ମୋହର ହେଲେ ତହିଁଯାଇ ନାହିଁ
ତାହାର କଥା ହେଲେ ନ ପାରେ ମୁହିଁ ସହି ।
ମୁହିଁ ଗଲେ ପ୍ରଥମୁଁ ସେ ନେବ ମୋର ଜାତି
ସେ ପୁଣି ବୋଲିବ ଦିଅ ଶଚୀ ମହାସତୀ ।
ଅପସରୀ ଐରାବତ ଇନ୍ଦ୍ର ନୀଳମଣି
ଉଚ୍ଚୈଃଶ୍ରବା ପାରିଜାତ ପୁଷ୍ପ ଦିଅ ଆଣି ।
ଏହା ମାଗିଲେ ମୋହର ଯିବ ଇନ୍ଦ୍ରପଣ
କି ବୋଲିବେ ଆମ୍ଭଙ୍କୁ ଅନନ୍ତ ନାରାୟଣ ।
ଏହି କଥା ବିଚାରିଣ ଥାଅ ତୁମ୍ଭେମାନେ
କାଙ୍କୋଳାକୁ ମନାଇ ତା କହ ଶୁକ୍ରକର୍ଣ୍ଣେ ।
ସେ ହେଲେ ସବୁ ଜାଣନ୍ତି ଅସୁରଙ୍କ ଗୁରୁ
ତାଙ୍କ ଭାଷା ଭଙ୍ଗି କେହୁ ନ ପାରନ୍ତୁ ଦୂରୁ ।
ଅବଶ୍ୟ ତୁମ୍ଭଙ୍କୁ ସେହୁ ବସାଇବେ ନେଇ
ଦିନାକେତେ ଭୋଗକର ତାର ବୋଲେ ଥାଇ
ଆମ୍ଭଙ୍କୁ ତ ଦୁଃଖ ଭୋଗ ଅଛି ଯେତେକାଳ
ନ ପାରନ୍ତି ତାହା ଆନ କରି ଲୋକପାଳ ।
ମୋହର ପାଇଁ ସହିବ ତୁମ୍ଭେ କେତେ ଦୁଃଖ
ଅସୁରଙ୍କୁ ସେବେ ପଦେ ଭୁଞ୍ଜ କିଛି ସୁଖ ।
ଏହୁ ପୃଥ୍ୱୀ ପ୍ରଭୁ ପୁଣି ଛନ୍ତି ଜାତ କରି
ଯେ ଯାହା କର୍ମକୁ ଚାହିଁ ଦେଇଛନ୍ତି ଶିରୀ ।
ସେ ଶିରୀକି ଯେବେ ଏକା ଜଣକେ ଭୁଞ୍ଜିବ
ଆଉ କି ରୂପେ ପାଳନ ହୋଇଲେ ମାନବ ।
ଏ କଥା ପାଞ୍ଚି ଦିନେ ମୁଁ ଗଲି ଯଶୋବନ୍ତୀ
ପିତାଙ୍କୁ କହିବି ବୋଲି ମୁରର ଅନୀତି ।
ଦେଖିଲେ ପିତା ଅଛନ୍ତି ଭାଗ୍ୟବର ସଭା
ପାଶରେ ବେଢ଼ିଅଛନ୍ତି ସବୁ ଋଷି ଦେବା ।
ଆଗେ ଉଭା ହୋଇ ସବୁ କହିଲି ବିସ୍ତାରି
ସେ ବୋଇଲେ ଯୋଗନିଦ୍ରା ଯାଇଛନ୍ତି ହରି ।
ଆଉ କିଛିଦିନ ଦେବେ ଥାଅ ଦୁଃଖ ସହି
କିସ ବୋଲିବେ ଗୋବିନ୍ଦ ଶୁଣୁସିନା ତହିଁ ।
ଏମନ୍ତ ବୋଲିଣ ମୋତେ ବୋଧ ଦେଲେ ପିତା
ତୁମ୍ଭେ ଦିଗପାଳ ଏବେ କର ତୁମ୍ଭ ଚିନ୍ତା ।
ଦିଗପାଳେ ବୋଲନ୍ତି ଯା ଶୁଣି ହେଉ ହେଉ
ତୁମ୍ଭଙ୍କୁ ନ କହିଣ କି ଯାନ୍ତୁ ଆମ୍ଭେ ଆଉ ।
ଆମ୍ଭର ଏ କଥା ଶୁଣି କି ବୋଲିବେ ଥୋକେ
ବୋଲନ୍ତି ଦିଗପାଳେତ କେଡ଼େ ଅବିବେକେ
ତୁମ୍ଭଙ୍କୁ ଅଇଲୁ ତେଣୁ କରି କହି ଆମ୍ଭେ
ନିତି ହାନି ଲାଭ ତାର ବୁଝି ଆସ ତୁମ୍ଭେ ।
ଦେବଙ୍କ ଯିବା ଦେଖିଣ ବୋଇଲେ ଧରଣୀ
କି ବୁଦ୍ଧି କରିବି ମୋତେ କହ ଚକ୍ରପାଣି ।
ଅସୁରଙ୍କ ଭାରା ମୁହିଁ ନ ପାରିଲି ସହି
ହୋଇଯିବି ରସାନଳେ ଦୈତ୍ୟ ଲାଗି ମୁହିଁ ।
ବାସବ ବୋଇଲେ ମାଗୋ ଥାଅ ଦିନାକେତେ
ବ୍ରହ୍ମା ଶଙ୍କର ଯାହା କି କହିଛନ୍ତି ମୋତେ ।
ତାଙ୍କ ବୋଧ ଶୁଣି ମୁଁ ଅଇଲି ଦେବଲୋକ
ମୋର କଷ୍ଟ ଥିବାଯାଏ ଥିବ ତୁମ୍ଭ ଦୁଃଖ ।
ଏମନ୍ତ କହି ପ୍ରବୋଧ କଲେ ବଜ୍ରପାଣି
ଦିଗପାଳମାନେ ଗଲେ ହୋଇଣ ମେଲାଣି ।
ଏମନ୍ତ ସମସ୍ତେ ପୁଣ କିଛି ଦିନାନ୍ତରେ
ଷଡଦିଗପାଳେ ମିଶି ଗଲେ ସ୍ୱର୍ଗପୁରେ ।
ଅଗ୍ନି ଯମ ନଇର୍ଋତ ବରୁଣ ପବନ
କୁବେର ଦେବତା ମିଶି ଗଲେ ଷଡ଼ଜଣ ।
ଅମର ସିଂହଦ୍ୱାରରେ ପ୍ରବେଶିଲେ ଯାଇଁ
ଅସୁର ବୋଲନ୍ତି ଏ ଆସନ୍ତି କାହିଁପାଇଁ ।
ଆହବିଲା ଭେକକୁଟି ଯେହ୍ନେ ସର୍ପ ଗ୍ରାସି
ସେହିମତି ପ୍ରାୟେକ ବସିଲେ ଦ୍ୱାରେ ଆସି ।
କେତେକ ଲୋକ ବୋଇଲେ ଶୁଣ ଆହେ କହୁ
ଯୁଝିବାକ ଲୋକପ୍ରାୟ ଦିଶନ୍ତି କି ଏହୁ ।
ରଥ ଗଜ ଅଶ୍ୱ ନାହିଁ ନାହିଁ କରେ ଅସ୍ତ୍ର
ଧନୁଶର ନାହିଁ ଗଦା ନାହିଁ ଦେହେ ବସ୍ତ୍ର ।
ପୁଣି ଥୋକାଏ ବୋଲନ୍ତି ହୋଇ କୁହାକୁହି
ସନ୍ଧିର ନିମନ୍ତେ ଅବା ଆସିଅଛି ଏହି ।
ବଣରେ ରହିବା କଷ୍ଟ ସହି ନ ପାରିଲେ
ଦୁଃଖ ସୁଖ କହିବାକୁ ଛାମୁକୁ ଅଇଲେ ।
ଏମନ୍ତ ବୋଲିଣ ଦୈତ୍ୟ ଦାଣ୍ଡେ ହୋନ୍ତି କହି
ଦ୍ୱାରୀମାନେ ଜଣାଇଲେ କାଙ୍କୋଳାକୁ ଯାଇ
ଭୋଦେବ ଅଇଲେ ଦିଗପାଳେ ଆମ୍ଭ ପୁର
ଏହିକ୍ଷଣି ଦେଖି ତାଙ୍କୁ ଅଇଲୁ ଛାମୁର ।
ଷଡ଼ଗୋଟି ଦେବ ସିଂହଦ୍ୱାରେ ଛନ୍ତି ବସି
ଜାଣିବା ପାଇଁ ତୁମ୍ଭଙ୍କୁ ଜଣାଇଲୁ ଆସି ।
ଶୁଣି ଉଠିଲେ କାଙ୍କୋଳାସୁର ଶୀଘ୍ର ହୋଇ
ସିଂହଦ୍ୱାର ଯାଏ ବୋଲି ଅଇଲା ଚଳାଇ ।
ଦେଖିଣ ଯମ ବରୁଣ କୁବେର ନୈର୍ଋତ
ପବନ ଅନଳ ମିଶି ଷଡ଼ ଦଇବତ ।
କାଙ୍କୋଳାକୁ ଦେଖି ଉଠିଗଲେ ଷଡଜଣ
ଆଗରେ ଯାଇଣ ଉଭା ହୋଇଲେ ତକ୍ଷଣ ।
ସଭାରେ ତାଙ୍କୁ କାଙ୍କୋଳା ବସାଇଲେ ନେଇ
ବାରତା ପୁଛଇ ଦେବେ ଆସିଲ କିମ୍ପାଇଁ ।
ସର୍ବେ ଏକପରି ଦିଶ ମଳିନ ବଦନ
ଚିତ୍ତକ୍ଷୋଭ କଲାପ୍ରାୟ ଦିଶୁଅଛି ମନ ।

କେଉଁ ବିଷୟେ ଅଇଲ କହ କିନା ମୋତେ
ତୁମ୍ଭେମାନେ ବିଜ୍ଞ ଅଟ ସୃଷ୍ଟି ଆଦିଅନ୍ତେ ।
ଶୁଣି କହନ୍ତି ବରୁଣ ରାଜା ଆଗସରି
ବୋଲନ୍ତି ଶୁଣ କାଙ୍କୋଳାସୁର ଦଣ୍ଡଧାରୀ ।
ଇନ୍ଦ୍ର ପଳାଇ ଯିବାରୁ ହେଲୁ ଆମ୍ଭେ ବଣା
ପଛକୁ ଯେ ଭଲମନ୍ଦ କଥା ସିନା ଜଣା ।
ସେ ଯେବଣ ସୁରପତି ଦେବଙ୍କର ରାଜା
ଆମ୍ଭେ ଦେବଗଣ ଅଟୁଁ ତାହାର ପରଜା ।
ରାଜା ରଣୁ ଭାଜିଲେଣି ସୈନ୍ୟର କି ବଳ
ପିଣ୍ଡରୁ ପରାଣ ଗଲେ ପଡ଼େ ଯେହ୍ନେ ତଳ ।
ଜଳ ଶୁଖିଲେ ମରନ୍ତି ଯେହ୍ନେ ଜଳଚର
ଆମ୍ଭେ ସେହିରୂପେ ଭାଜିଗଲୁ ପୁରନ୍ଦର ।
ତୁହି ବିଜ୍ଞ ବୋଲି ଆସିଅଛୁ ତୋତେ କହି
ପ୍ରାଣଥିବା ଦେହକୁ ପ୍ରକୃତି ନ ଛାଡ଼ଇ ।
ବାସବ ବୋଇଲେ ସିନା ପାଳୁଥିଲୁ ସ୍ୱର୍ଗ
ଯେ ଯାହା ଅନୁରୂପରେ କରିବଇଁ ଭୋଗ ।
ଏବେତ ବେନିସହସ୍ର ବର୍ଷ ହେଲା ଆସି
ସ୍ୱର୍ଗେ ଭୋଗ ନ ପାଇଲେ ସର୍ବ ସ୍ୱର୍ଗବାସୀ ।
ତେଣୁ ତୋତେ ଆସି କହୁଅଛୁ ମହାବୀର
ତୋହର କରି ଆମ୍ଭଙ୍କୁ ରଖ ଯେଝାପୁର ।
ରାଜା ପାଳିଲେ ପରଜା ଯାଇଛି କି କାହିଁ
ଯେହୁ ରାଜା ହୁଅଇଟି ସର୍ବେ ତାର ହୋଇ ।
ଏହି କଥାକୁ ବିଚାର କର ତୋର ମନେ
ରାଜାଙ୍କୁ କହି ଆମ୍ଭଙ୍କୁ ରଖ ଆମ୍ଭସ୍ଥାନେ ।
ନୃପତି ହିତେ କରିବୁ ଆମ୍ଭେ ସବୁ କାର୍ଯ୍ୟ
ରହିବୁ ରାଜା ମାନିଆ ହୋଇ ଆମ୍ଭ ରାଜ୍ୟ ।
ବରୁଣ କହିଲେ ଏତେ ବୋଲି ଯହୁଁ ମାନି
କାଙ୍କୋଳା ଅସୁର ଟହ ଟହ ହସେ ଶୁଣି ।
ବୋଇଲା ହେ ଦେବ ତୁମ୍ଭେ ବଡ଼ ଅବିବେକ
ବାସବ ଲାଗି ଦେହକୁ ଆଣିଲ କଳଙ୍କ ।
ଶାସ୍ତ୍ରେ କହିଛି ଆଦ୍ୟେ ଯେ ସଂହାରିବ କୋପ
ସେ ପ୍ରାଣୀକି ଅବଶ୍ୟଟି ହୁଏ କ୍ରୋଧ ମାଫ ।
ବାସବକୁ ସିନା ଦୁଃଖଥିଲେ ରାଜା କରି
ତୁମ୍ଭେ କେହ୍ନେ ପଳାଇଲ ଛାଡ଼ି ସ୍ୱର୍ଗପୁରୀ ।
କେତେ ହେଁ ଖେଳିଲେ ଶତ୍ରୁ ସଙ୍ଗେ ଆମ୍ଭରାଜା
ହାରିଥିବା ଦ୍ରବ୍ୟପୁଣି ନ ଦେଲା ବିଡୋଜା ।
ଅଇଲା ଦୂତଙ୍କୁ ପୁଣି ନ କଲା ସମ୍ମାନ
ମାନହୀନ କରି ତାଙ୍କୁ ବୋଇଲା ବଚନ ।
ସେ କଟୁବାକ୍ୟକୁ ରାଜା ନ ପାରିଲେ ସହି
ଇନ୍ଦ୍ର ହୋଇବ ବୋଲିଣ ଆସେ ପୁଣି ବାହି ।
ଦେଖାଇ ଦେଇ ଆଗରୁ ଭଣ୍ଡାଇ ସେ ଗଲା
ତେଣୁକରି ରାଜା ମୋତେ ଏଥି ରାଜା କଲା
ରାଜା ହେବାରୁ ସଇନ୍ୟ ମାରେ ଇନ୍ଦ୍ର ଆସି
ସେହିଦିନୁ ଆମ୍ଭ ରାଜାକଲେ ତାକୁ ଦୋଷୀ ।
ତୁମ୍ଭେ ଯଦି ବିକଳରେ ଆସ ମୋତେ କହି
ସେ ମୁର ରାଜାକୁ ଚାଲ ଜଣାଇବା ଯାଇ ।
ଭୂମଣ୍ଡଳେ ଚକ୍ରବର୍ତ୍ତୀ କର୍ତ୍ତା ଯାର ନାମ
ତାଙ୍କୁ କହିଲେ କରିବା କାର୍ଯ୍ୟ ସିନା ସମ ।
ଦିଗପାଳେ ବୋଇଲେକ ଭଲା ହେଲାତେବେ
ମୁରକୁ କହି ଆମ୍ଭଙ୍କୁ ରଖ ଯେଝାଠାବେ ।
ଏତେ ବୋଲି ସ୍ୱର୍ଗପୁରୁ ଅଇଲେ ଓହ୍ଲାଇ
କନକାବତୀ ନଗ୍ରରେ ପ୍ରବେଶିଲେ ଯାଇ ।
କାଙ୍କୋଳା ସେନାପତି ଯେ ଚଳେ ତାଙ୍କ ଆଗେ
ଶୁକ୍ରପୁରେ ଦେବଗଣ ପ୍ରବେଶିଲେ ବେଗେ ।
କାଙ୍କୋଳା ବୋଇଲା ତୁମ୍ଭେ ଥାଅ ଶୁକ୍ରପୁରେ
ମୁଁ ଯାଇଁ ଆଜ କହିବି ରାଜାଙ୍କ ଛାମୁରେ ।
ଏତେ କହିଣ କାଙ୍କୋଳା ଚଳିଲା ଛାମୁକୁ
ଶୁକ୍ର ଦେଖିଣ ସନ୍ତୋଷ ହେଲେ ଦେବତାଙ୍କୁ ।
ଆପଣା ଆସନପାଖେ ବସାଇଲେ ନେଇ
କୁଶଳ ବାରତାମାନ ହୋନ୍ତି କୁହାକୁହି ।
ଏସନ ସମୟେ ତହିଁ କାଙ୍କୋଳା ଅସୁର
ମୁରକୁ ଯାଇଁ ଭେଟିଲା ସଭାର ଉପର ।
ଦେଖିଣ ଅସୁର ରାଜା ବସାଇଲେ ପାଶେ
ସ୍ୱର୍ଗର ବାରତା ବୁଝି ହସେ ମନତୋଷେ ।
ଏମନ୍ତ ବେଳେ ମିଳିଲେ ଯାଇ ଶୁକ୍ରମୁନି
ସଭାରେ ବିଜୟ କଲେ ପୁରାଣକୁ ଘେନି ।
ଦେଖିଣ ଆସନ ଦେଲା ମୁରାସୁର ନେଇ
ପାଦତଳେ ଦୈତ୍ୟମାନେ ପ୍ରଣମିଲେ ଯାଇଁ ।
କହନ୍ତି କଲ୍ୟାଣ ବାଞ୍ଛା କରି ଭୃଗୁପିତା
ଶୁଣ ମହାରାଜା ଏବେ ସ୍ୱର୍ଗର ବାରତା ।
ଦେବଗଣମାନେ ଏବେ ଆପଣଙ୍କୁ ଚାହିଁ
ଶରଣ ପଶିବେ ବୋଲି ଆସିଛନ୍ତି କହି ।
ଏବେ ଦିଗପାଳଙ୍କର କଷ୍ଟ ତାପ ହର
ବସନ୍ତୁ ସକଳ ଦେବେ ହୋଇଣ ତୋହର ।
ଏକା ଜାଣ ଇନ୍ଦ୍ର ଆସି ନ ଭେଟିବେ ତୋତେ
ପୂର୍ବର କଥାମାନକୁ ଭୟ କରି ଚିତ୍ତେ ।
ମୁଁ ଯାଇ କହିଲାକ୍ଷଣି ସମସ୍ତେ ଆସିବେ
ତୁ ଯେବେ ନିଶ୍ଚଳ ହୋଇ ଆଜ୍ଞାଦେବୁ ଏବେ
ଶୁଣିକରି ମୁରାସୁର ହୋଇଲା ତୃପତ
କହେ ଦେବ ଏକାମୋର ବୋଲେ ଆସିବତ
କେଉଁ ପ୍ରକାରେ ମୋହର ନଗ୍ରେ ଥିବେ ରହି
ତାହା କହୁଅଛି ଗୁରୁ ଶୁଣ ମନଦେଇ ।
ଅଗ୍ନି ଦେବତା ମୋହର ପାକ ନିଯୋଗିବ
ଯମର କାଳଦଣ୍ଡ ମୋ ପୁରେ ନ ପଶିବ ।
ନୈର୍ଋତ ଚନ୍ଦନ ଫୁଲମାନ ମୋତେ ଦେବ
ବେଳ ଜାଣିଣ ବରୁଣ ଜଳ ବରଷିବ ।
ପବନ ଦେବତା ମୋର ଧରିବ ଆଲଟ
କୁବେର ନିତି ଦେବଟି ରତ୍ନ ଝୀନପାଟ ।

ଈଶାନ ଦେବତା ମୋର ଥିବେ ଟି ନଗରେ
ଇନ୍ଦ୍ରପଣେ କାଙ୍କୋଳାକୁ ରଖିବି ସ୍ୱର୍ଗରେ ।
ଚନ୍ଦ୍ର ଆଦିତ୍ୟ ମୋହର ହୋଇବେ ଦୁଆରୀ
ଯକ୍ଷ ରକ୍ଷଗଣ ଯେବେ ଜାଗିବେ ପ୍ରହରୀ ।
ଗ୍ରହଗଣମାନେ କହୁଥିବେ ଯୋଗ ବାର
ସଭାରେ ବସିବେ ସିଦ୍ଧଗଣ ଆସି ମୋର ।
ଅଷ୍ଟକୁଳ ନାଗମାନେ ମୋ କଥାରେ ଥିବେ
ଧନ୍ୱନ୍ତରୀ ଆସି ବେଦ୍ୟପଣ ରେ ଖଟିବେ ।
ନକ୍ଷତ୍ରମାନେ ଫୁଟିବେ ସ୍ୱର୍ଗେ ହୋଇ ତୋରା
ରାତ୍ର ଦିଶୁଥିବ ମୋତେ ଦିବସର ପରା ।
ଶୟନପୁରେ ମୋର ଥିବ ନିଦ୍ରାବତୀ
ନବରେ ବସନ୍ତରତୁ ଥିବ ଦିବା ରାତି ।
ରୋଗ ମୃତ୍ୟୁ ଜରା ବ୍ୟାଧି ଅକାଳ ମରଣ
ଏହାକୁ ଧର୍ମ ଦେବତା କରିବ ଖଣ୍ଡନ ।
ଭୋ ଗୁରୁ ଯେତେ ପ୍ରକାରେ କହିଲି ମୋ ସେବା
ଯେଝାଭୋଗ ଭୁଞ୍ଜି ଖଟିଥିବେ ସର୍ବଦେବା ।
ଶୁକ୍ର ବୋଇଲେ ତେବେ ରେ ଆଚ୍ଛାଆଚ୍ଛା ବାବୁ
ଏତେ ବୋଲି ଦେବତାଙ୍କୁ ଘେନିଗଲେ ସବୁ ।
ମୁରାସୁର ଆଗେ ନେଇ କରାଇଲେ ଭେଟ
ଦେଖିଣ ଦେବତାଙ୍କର ଫିଟିଲା ସଙ୍କଟ ।
ରାଜାର ଆଗରେ ଉଭାହେଲେ ଷଡ଼ଜଣ
ହସିଣ ମୁର ଦଇତ ଦେଲାକ ପ୍ରମାଣ ।
ବୋଲେ ଆହେ ଦେବଗଣ ମୋର ବୋଲେ ଥିବ
ପୂର୍ବର ପରାୟ କରି ସଂସାର ପାଳିବ ।
ଯେମନ୍ତେ ନୋହିବ ଜନମୁରେ ମୋତେ ନିନ୍ଦା
ଯେ ଯାହା ରତୁ ଘେନିଣ ପାଳିବ ସର୍ବଦା ।
ତୁମ୍ଭେ ତ ଜାଣ ମୋହର ସର୍ବ କଥାମାନ
ଇନ୍ଦ୍ରସିନା ଏକା ମୋତେ ହୋଇଲା ବିମନ ।
ତୁମ୍ଭଙ୍କୁ ତ ମୋହର ନ ଥିଲା କିଛି କୋହ
କାହିଁକି ପଳାଇଲ ଏକଥା ମୋତେ କୁହ ।
ଧ୍ରୁବଲୋକ ଯାଏ ମୁହିଁ ଖୋଜିଲି ଇନ୍ଦ୍ରକୁ
ସେହି ତାପେ ଚଳିଗଲା ବିଧାତା ପୁରକୁ ।
ପିତା ଦେଖି ବୋଇଲେ ତ ଯାଅ ନିଜପୁରୀ
ଗଲା ମଲା ଲୋକଙ୍କୁ କି ସ୍ନେହ ଆଉ କରି ।
ପିତାର ବୋଲ ଶୁଣି ମୁଁ ଗଲି ସ୍ୱର୍ଗଦେଶ
ଦେଖିଲି ମୁଁ ସବୁ ତୁଚ୍ଛା ତୁମ୍ଭ ଗୃହବାସ ।
ଏଣୁ ମୁହିଁ ସଇନ୍ୟଙ୍କୁ ପାଶକୁ ହକାରି
ବସାଇଲି ଦିଗଯାକ ଦିଗପାଳ କରି ।
ଆଉମାନଙ୍କୁ ମୁଁ ସବୁ ମନୁ କଲି ଜାତ
ମୋର ମହିମା କି ତୁମ୍ଭେ ନ ଜାଣ ସମସ୍ତ ।
ଇନ୍ଦ୍ରକୁ ଯେସନେ ତୁମ୍ଭେ ଥାଅ ଅନୁସରି
ମୋତେ ସେହିପରି ଏବେ ରହ ସେବାକରି ।
ଏତେ ବୋଲି କାଙ୍କୋଳାକୁ ଚାହିଁଣ ଅସୁର
ବୋଇଲା ଦେବେ ବସନ୍ତୁ ଯେ ଯାହା ସ୍ଥାନର ।

ତୁହି ଏକା ଇନ୍ଦ୍ର ପୁରେ ରହି ଭୋଗକର
ସର୍ବ ଦେବଗଣ ଆଜ୍ଞୁ ହୋଇଲେ ଆମ୍ଭର ।
ଏମନ୍ତ କହି ଦେବଙ୍କୁ ଦେଲେକ ମେଲାଣି
ଗଲା କାଙ୍କୋଳା ଅସୁର ରାଜାଆଜ୍ଞା ମାନି ।
ଶୁକ୍ର ବୋଇଲେ ହେ ରାଜା ଥାଅ ମଧୁପୁରେ
ଆମ୍ଭେ ଯାଉଅଛୁ ଘେନି ଦେବଙ୍କୁ ସଙ୍ଗରେ ।
ହେଉ ବୋଲି ନମି ରାଜା ଉଠିଲା ଆସନୁ
ଚଳିଲେ ଦେବତାମାନେ ମୁର ସନ୍ନିଧାନୁ ।
କାଙ୍କୋଳା ଶୁକ୍ରଗୁରୁ ଯେ ଆଉ ଦିଗପାଳେ
ପ୍ରବେଶ ହୋଇଲେ ଆସି ଅମର ମଣ୍ଡଳେ ।
ସୁଧର୍ମା ସଭାରେ ଯାଇ ବସି ଆଠଜଣ
ଅସୁର ସଇନ୍ୟ ଆସି ଭେଟିଲେ ତକ୍ଷଣ ।
ଘାଙ୍କୋଳା ବୋଇଲା ଆହେ ଯାଅ ଚାରଗଣେ
ସବୁଠାରୁ ଘେନିଆସ ସେନାପତି ମାନେ ।
ଶୁଣି ଚାରମାନେ ଚଳିଗଲେ ସର୍ବ ଦେଶେ
ରାଜା ଆଜ୍ଞା ଜଣାଇଲେ ସେନାଙ୍କର ପାଶେ
ଆଜ୍ଞା ପାଇଣ ବାହାର ହେଲେ ସର୍ବସେନା
ବକ୍ରମାଳୀ ରଣଚୂଡ଼ ବୀରଘଣ୍ଟ ଜେନା ।
ସଉଦାସ ଚନ୍ଦ୍ରମାଳୀ ଜଳଘଣ୍ଟା ସୁର
ମଦନା ଖଡ଼ିକା ମୂଢ଼ାସୁର ମହାବୀର ।
କୁଣ୍ଡଳ ମୁକୁନ୍ଦା ରଣକେଶୀ ହୃତକେଶୀ
ଶରଜିତ ବୃକାସୁର ଆଦି ସେନା ମିଶି ।
ସମସ୍ତେ ଯାଇଁ ସୁଧର୍ମା ସଭାରେ ମିଳନ୍ତେ
କାଙ୍କୋଳା କହିଲା ତାଙ୍କ ରାଜା ଆଜ୍ଞା ଯେତେ
ଶୁକ୍ରଗୁରୁ ବୋଇଲେ ହେ ଶୁଣ ସେନାଗଣେ
ତୁମ୍ଭଙ୍କୁ ବୋଇଲେ ରାଜା ଆଜ୍ଞା ପରମାଣେ
ତୁମ୍ଭେମାନେ ଏବେ ସର୍ବେ ଚଳ ରାଜାପାଶେ
ଯାଇଣ ବସନ୍ତୁ ଦିଗପାଳେ ଯେଝାଦେଶ ।
ଏମନ୍ତ ବୋଲି କହିଲେ ଗୁରୁ ରାଜା ଆଜ୍ଞା
ଶୁଣିଣ ସେନା ଚଳିଲେ କରିଣ ପ୍ରତିଜ୍ଞା ।
କାଙ୍କୋଳାକୁ କହି ମର୍ତ୍ତ୍ୟମଣ୍ଡଳକୁ ଗଲେ
ମୁର ଦୈତ୍ୟଙ୍କୁ ଯାଇଣ ଦରଶନ କଲେ ।
ସଇନ୍ୟଙ୍କୁ ଦେଖି ରାଜା ହୋଇଲେ ସନ୍ତୋଷ
ସବୁଙ୍କୁ ବୋଇଲା ଏବେ ମୋର ପାଶେ ବସ
କେତେଦିନ ହେଲା ମୋତେ ଛାଡ଼ିଥିଲୁ ବାବୁ
ଅଲାଗି ଦିଶୁଥିଲା ମୋ ଦେବଘୋଷ ସବୁ ।
ଖଡ଼ିକାସୁର ବୋଇଲା ତୋ ଆଜ୍ଞା ପ୍ରମାଣେ
ଶୁଣିଲା ମାତ୍ରକେ ଉଠି ଆସିଲା ତକ୍ଷଣେ ।
ପାଇଲୁ ପରମଗତି ଭୁଞ୍ଜ ସ୍ୱର୍ଗ ଭୋଗ
ତୋହର ପ୍ରସାଦେ ଆମ୍ଭନାହିଁ ଶୋକରୋଗ
ମୁରାସୁର ବୋଇଲା ହୋ କି କରିବା କହ
ଆଣି ତ ମାଗିଲେ ଦିଗପାଳେ ଯେଝାଗୃହ ।
ଆମ୍ଭର ସେବାକରି ସେ ରହିବେ ବୋଲିଲେ
ତେଣୁକରି ତୁମ୍ଭଙ୍କୁ ମୁଁ ଡକାଇଲି ଭଲେ ।

ଶୁଣିକରି ସେନାମାନେ କଲେ ସାଧୁ ସାଧୁ
ବୋଇଲେ ଧନ୍ୟ ତୋହର ମହିମା ବୀରଧୂ ।
ଦୁଃଖୀ ଲୋକଙ୍କର ବନ୍ଧୁ ଦୁର୍ଜନଙ୍କ କାଳ
ଶରଣ ରକ୍ଷଣକୁ ଦୟାଳୁ ସତ୍ୟଶୀଳ ।
ବର୍ତ୍ତମାନ ଦେଖ ଦେବ ପଶିଲେ ଶରଣ
ଦୟା ବହିଣ ରଖିଲୁ କେଡ଼େ ବଡ଼ପଣ ।
ଆପଣା ଲୋକକୁ ନାଥ ଯାଉ ଅନ୍ତକରି
ପରମବନ୍ଧୁ ହେଉ ଯେ ସାର ଦୟା ଭରି ।
ଏମନ୍ତ କରନ୍ତେ ଦୈତ୍ୟ ଜୟ ଜୟ
ଶୁଣିଣ ମୁର ଦୈତ୍ୟର ଉଲ୍ଲସଇ କାୟ ।
କହନ୍ତି ବେଦବର ଯେ ଶୁଣ ହେ ନାରଦ
ଏ ରୂପେ ରହନ୍ତେ ସୁଖେ ସ୍ୱର୍ଗେ ଦେବବୃନ୍ଦ
ମୁର ଯେତେକ ଦେହରୁ ଥିଲା ଜାତ କରି
ମାନସେ ରଖିଲା ତାଙ୍କୁ ହୃଦମଧ୍ୟେ ଭରି ।
ବହନ୍ତା ପୁରୁଷ ସେହିଠାରୁ ବିହରିଲେ
ଗଗନେ ନକ୍ଷତ୍ର ଚନ୍ଦ୍ର ସୂର୍ଯ୍ୟ ଉଦେ ହେଲେ ।
ଦିଗପାଳେ ବସିଲେ ଯେ ଯାହା ଦିଗମାଡ଼ି
ଗ୍ରହମାନେ ଭୋଗକଲେ ଦିନ ବାରଘଡ଼ି ।
ଜଗିଲେ ଯେ ଯକ୍ଷ ରକ୍ଷଗଣ ସ୍ୱର୍ଗଆଳ
ନନ୍ଦନବନ ପାଳିଲେ ତୋଟା ରଖୁଆଳ ।
ଆବର ଯେତେକ ଥିଲା ସାରସ୍ୱତ ଭୂମି
କାଙ୍କୋଳାଅସୁର ଲୋକେ ଆୟକଲେ ଭ୍ରମି
ଏ ରୂପେ ଦେବତାମାନେ ପାଇଲେ ଭରସା
ମୁରାସୁରଠାରୁ ଯହୁଁ ଲଭିଲେ ପ୍ରଶଂସା ।
କୁବେର ଯେ ଅଷ୍ଟନିଧି ଭଣ୍ଡାର ରଖିଲେ
ବରୁଣ ଦେବତା ଜଳପୁରେ ବିହରିଲେ ।
ସଂଯମନୀ ପୁରେ ଯମ କଲେ ବୁଝାମଣା
ସଂସାରରେ ବିକଶିଲେ ବହ୍ନି ଅଗ୍ନିକଣା ।
ମୁର ନବରେ ଈଶାନ ହେଲେ ଭଦିଷ୍ଟାଣୀ
ମରୁତ ଧରି ବାହାରେ ମଳୟ ବିଞ୍ଚଣୀ ।
ଫୁଲ ଚନ୍ଦନ ନୈର୍ଋତ ଦେଉଥାନ୍ତି ନିତି
ଯାହାକୁ ଯେବଣ ଘଡ଼ି ପଡ଼େ ସେବା ଥାତି ।
ଚନ୍ଦ୍ରଦେବ ପରିଛା ଯେ ହୁଅନ୍ତି ନିଶାକାଳେ
ଆଦିତ୍ୟ ଦିବସ ଭୋଗ କରନ୍ତି ତତ୍କାଳେ ।
ଘଟଣ ବରଇ ବିଶ୍ୱକର୍ମା ତିନିପୁରେ
ଜଗିଥାନ୍ତି ନିଦ୍ରାବତୀ ଶୟନ ମନ୍ଦିରେ ।
ଏ ରୂପେ କ୍ଷଣ କ୍ଷଣକେ ସମସ୍ତ ଖଟଣି
ଯାଆ ଆସ କରନ୍ତି ଲୋଟଣି ପାରା ଜାଣି ।
ନର ଅସୁରଗଣ ଯେ ଦେବ ନାଗଗଣ
ମୁରାସୁର ସଭାରେ ବସନ୍ତି ଚାରିଜଣ ।
ବଜ୍ରମାଳି ଇନ୍ଦ୍ରମାଳି ସମକ୍ଷିତ ସଭା
ଭାଙ୍ଗଇ ଯାବତ ନ୍ୟାୟ ମଦନା ଦାନବା ।
ସଉଦାସ ବୃକାସୁର ଦ୍ୱାରେ ଅଟକାନ୍ତି
କୃତକେଶୀ ଶରକେଶୀ ଅସୁର ଭେଟାନ୍ତି ।
ଘେନନ୍ତି ବୃକା ମୁକୁନ୍ଦା ଅସୁର ଶୋଧନ
ରାଜାଙ୍କୁ ଖଡ଼ିକାସୁର କରାନ୍ତି ଜଣାଣ ।
ନିତି ନିତି ଏପରି କନକାବତୀପୁରେ
ସମସ୍ତେ ବସନ୍ତି ପୂରି ମୁରର ସଭାରେ ।
କଣ୍ଡ ବିକଣ୍ଡ ଦାରୁଣ ସୁବିଜ୍ଞ ମନ୍ତ୍ରୀର
ସେନାପତିଯାକ ମିଶି ବସନ୍ତି ଛାମୁର ।
କନକାବତୀପୁରରେ ରହେ ରାଜା ସୁଖେ
ପୁଣି ଏହିରୂପେ ଚାଲିଗଲା ବର୍ଷ ଲକ୍ଷେ ।
ସମସ୍ତେ ଅଭୟ ମାଗୋ ମୁକତି ଦୟିନୀ
ମୂରୁଖ ପୀତାମ୍ବରକୁ କର ତୁ ସୁଜ୍ଞାନୀ ।



## ଦେବଗଣଙ୍କର ବିଷ୍ଣୁଙ୍କ ନିକଟରେ ମୁରବଧ ପ୍ରାର୍ଥନା

କହନ୍ତି ଚତୁରାନନ ହେ ନାରଦ ବାବୁ
ଯାହା କହୁଅଛି ତାହା ହେତୁ ରଖିଥିବୁ ।
ଦିନେକ ଆସ୍ଥାନେ ମୁରାସୁର ଅଛି ବସି
ସୁବିଜ୍ଞ ମନ୍ତ୍ରୀକି ଚାହିଁ ପଚାରଇ ହସି ।
ଇହ ପରଲୋକେ ବସି ଅଛନ୍ତି ଗହନେ
ଦେବତା ଅସୁର ନର ନାଗଲୋକମାନେ ।
ସିଦ୍ଧ ସାଧକ ଋଷିଏ ଛନ୍ତି ବିପ୍ରେ ପୂରି
ମୁରାସୁର ବୋଲେ ଇନ୍ଦ୍ର ରହେ କାହିଁ ଡରି ।
ଦିଗପାଳେ ଲୁଚାଇଣ ରଖିଲେ କି ତାକୁ
ଏହିମତେ ହେଲା ପ୍ରାୟେ ଲାଗୁଛି ଆମ୍ଭଙ୍କୁ ।
ମୁରର ନିଷ୍ଠୁର ବାକ୍ୟ ଶୁଣି ସର୍ବଦେବା
କାଖରେ ହସ୍ତ ଦେଇଣ ଆଗେ ହେଲେ ଉଭା
ବୋଇଲେ ଅମ୍ଭଙ୍କୁ ଯାହା ବୋଲୁ ଦୈତ୍ୟ ରାଜା
ମଣି ମାଗିଲା ଦିନୁ ତ ଭାବିଲା ବିଡ଼ୋଜା ।
ସେହି ଦିନୁ ଆମ୍ଭେମାନେ ହୋଇଲୁ ତରଛ
ଥୋକେ ଲୁଚି ରହିଥିଲୁ କଇଳାସ ପଛ ।
ଲୁଚିଲେ ବାସୁକିସୁତେ ଆଉ ଥୋକେ ଯାଇଁ
ଏଣୁ କରି ଆମ୍ଭେ ତାଙ୍କୁ ଦେଖିନାହୁଁ କେହି ।
ସେହିଠାରୁ ଆପଣଙ୍କୁ ଆଶ୍ରାକଲୁ ଆସି
ତୋହର କାର୍ଯ୍ୟରେ ଆମ୍ଭେ ଥାଉ ଦିବାନିଶି ।
ଦଶଦିଗେ ବସି ତିନିଲୋକ ପାଳୁଥାଉ
ଯେ ରାଜି ତାର ପରଜା ତୋର କାଳନେଉଁ ।
ଶୁଣିକରି ମୁରଦୈତ୍ୟ ଦେବଙ୍କର ବାଣୀ
ଗୁପତରେ ଡଗରଙ୍କୁ ପେଷିଲା ସେକ୍ଷଣି ।
ବୋଇଲା କନ୍ଦି ବିକନ୍ଦି ଗୁହା ଆଦି ଯେତେ
ଇନ୍ଦ୍ରକୁ ଦେଖିଲେ ଆସି କହିବଟି ମୋତେ ।
ଆଜ୍ଞା ପାଇଣ ଡଗରେ ଖୋଜିଗଲେ ଦେଶେ
ନଗର ପୁର ମଣ୍ଡପ ଗିରି କଇଳାସେ ।
ଦିଗପାଳମାନେ ତାହା ମନେ ବିଚାରିଲେ
ଗୁପତେ ମେରୁଗିରିକି ନିଶାକାଳେ ଗଲେ ।

କହିଲେ ମୁରର କଥାଯାକ ଇନ୍ଦ୍ର ଆଗେ
ବାସବ ବୋଇଲେ ତେବେ ଯିବା ଚାଲବେଗେ ।
ପୃଥିବୀରେ ଜନ୍ମି ଯେବେ ନୋହିଲାକ ସୁଖ
କେତେ ସହୁଥିବା ଦେହେ ଏତେ କଷ୍ଟଯାକ ।
ବ୍ରହ୍ମା ଯେ ପାଳୁଅଛନ୍ତି ତିନିପୁର ମହୀ
ଏ ଦେହ ଛାଡ଼ିଣ ଦେବା ଚାଲ ତାଙ୍କୁ କହି ।
ଏତେ ବୋଲିଣ ବାସବ ଉଠିଲେ ଆସନୁ
ସବୁ ଦେବଙ୍କୁ ଘେନିଣ ଗଲେ ଶ୍ୱେତମନୁ ।
ନିର୍ଭୟରେ ଯାଇ ବ୍ରହ୍ମପୁରେ କଲେ ବିଜେ
ଜ୍ୟୋତିର୍ମୟ ପୁର ସେହୁ ବିରାଜଇ ତେଜେ ।
ଚହଳ ଶୁଣିଣ ବ୍ରହ୍ମା ବିଚାରିଲେ ମନେ
ପାଞ୍ଚଲେ ଏକା ଆସୁଛି ଇନ୍ଦ୍ର ତପୀମନେ ।
ମୁର ଲାଗି ସ୍ୱର୍ଗପୁରେ ନ ପାରନ୍ତି ରହି
ତେଣୁକରି ମୋତେ ଏବେ ଆସୁଅଛି କହି ।
ଏମନ୍ତ ସେ ପାଞ୍ଚୁ ମିଳିଗଲେ ଯାଇଁ ଇନ୍ଦ୍ର
ଦେଖିଲେ ବ୍ରହ୍ମାଏ ବସି ଭଜନ୍ତି ଉପେନ୍ଦ୍ର ।
କୁଶବଟୁ ଆସନ ସେ ପାରି ସିଂହାସନେ
ଅଷ୍ଟଭୁଜେ ଅଷ୍ଟମାଲଭୁକ୍ତ ପ୍ରତିଦିନେ ।
ତୁଳସୀ ରୁଦ୍ରାକ୍ଷ ପଦ୍ମସ୍ଫଟିକ ଯେ ମାଳ
ନିରତେ ପ୍ରଦକ୍ଷିଣ ଦକ୍ଷିଣ କରତାଳ ।
କୁଶ ଶ୍ରୁବ ଶ୍ରୁଚ ସ୍ୱାହା ସ୍ୱଧା ଆଦି ଘେନି
ବିରାଜଇ ବାମ ଚାରିକରେ ପଦ୍ମଯୋନି ।
ବାମରେ ଧାତା ବଦନ ଦକ୍ଷେ ପଦ୍ମମୁଖ
ଆଗେ ବ୍ରହ୍ମାମୁଖ ପଛେ ବିରଞ୍ଚିର ମୁଖ ।
ଶୁଦ୍ଧ ସ୍ଫଟିକ ପରାୟେ ଶୋହେ ଜଟ ମାଥ
ଋକ ଯଜୁ ସାମବେଦ ଅଥର୍ବ ଚତୁର୍ଥ ।
ହୃଦରେ ଆଭରଣ ପୁଷ୍କର ସପ୍ତସରି
ଅଙ୍ଗେ କୃଷ୍ଣ ଗୋମଳ ବିଭୂତି ପଞ୍ଚସାରି ।
କପୋଳେ ହରିମନ୍ଦିର ତିଳକ ଅଙ୍କିତ
ନାସା ଅଗ୍ର ଶୋଭାବନ କେଶ ପରିଯନ୍ତ ।
ଶୁକଳ ବର୍ଣ୍ଣ ଶରୀର ରକ୍ତବର୍ଣ୍ଣ ପିନ୍ଧା
କହିବା ମାତ୍ରକେ ସବୁ କ୍ଷଣେ ହୁଏ ସିଦ୍ଧା ।
ଏସନ ସମୟେ ଧାତା ପଦ୍ମାସନ ବିଜେ
ବସିଣ ଅଛନ୍ତି ସୁଖେ ଋଷିଙ୍କର ମାଝେ ।
ଏଥିଉତ୍ତାରୁ ହୋଇଲେ ଇନ୍ଦ୍ର ଯାଇ ଉଭା
ସାଷ୍ଟାଙ୍ଗେ ସ୍ତୁତିଲେ ଗଡ଼ଘାଲି ସର୍ବଦେବା ।
ଯାହା ପାଞ୍ଚ ଦେବତାଏ ନମିଲେ ଛାମୁର
ବିଷ୍ଣୁ ଅସ୍ତୁ କଲ୍ୟାଣକୁ କଲେ ବେଦବର ।
ଋଷିମାନେ ବିଚାରିଲେ ହେଲା କାର୍ଯ୍ୟସିଦ୍ଧି
ଅବଶ୍ୟ ଦେବଙ୍କ ଫିଟିଗଲା ଦୁଃଖବନ୍ଦୀ ।
ବ୍ରହ୍ମାଏ ବୋଇଲେ ଇନ୍ଦ୍ର ଅଇଲେ ଯେ ଅର୍ଥେ
ଅବଶ୍ୟ ଫେଡ଼ିବେ କଷ୍ଟ ତୋର ଜଗନ୍ନାଥେ
ଇନ୍ଦ୍ର ବୋଇଲେ ପାଇଲୁ ପିତା ବଡ଼ କ୍ଳେଶ
ତୁମ୍ଭ ବୋଲେ ବଞ୍ଚିଲୁ ଅଜ୍ଞାନ ବନବାସ ।
ବ୍ରହ୍ମା ବୋଇଲେ ଇନ୍ଦ୍ର ହୋ ମୁରଲାଗି କିନା
ପାଇଲେ ହେଲେ ଫେଡ଼ିବେ କୃଷ୍ଣ କଷ୍ଟ ସିନା
ଚାଲ ସରବେ ହରଙ୍କୁ କହିବା ଏ କଥା
ଆସନୁ ଉଠିଲେ ଏତେ ବୋଲି ବଡ଼ମଥା ।
ନିଦ୍ରାବତୀକି ଯେ ଆଜ୍ଞା ଦେଲେ ଲୋକସାଇଁ
ଆମ୍ଭେ ଆସିବାର ଯାଏ ଦୈତ୍ୟ ଥାଅମୋହି
ଏତେ ବୋଲି ହରଷରେ ମିଳି ବ୍ରହ୍ମା ଇନ୍ଦ୍ର
ଦେଖିଲେ ଉମା ସଙ୍ଗରେ ବସିଛନ୍ତି ରୁଦ୍ର ।
ଧାତା ଇନ୍ଦ୍ର ଦେଖି ଉଠିଗଲେ ହରବାମା
ଆପଣା ଆସନେ ନେଇ ବସାଇଲେ ବ୍ରହ୍ମା ।
ସର୍ବ ଦେବତା ନମିଲେ ଶିବ ପାଦତଳେ
କଲ୍ୟାଣ କରିଣ ହର ପୁଛନ୍ତି କୁଶଳେ ।
ଇନ୍ଦ୍ର ବୋଇଲେ ଭୋ ପ୍ରଭୁ ନ ଜାଣକି ତୁମ୍ଭେ
ମୁରକୁ ବର ଦେଇଣ ପାଶୋର କି ଏବେ ।
ସେହୁ ଯେତେ ଉପଦ୍ରବ୍ୟ କଲାଣି ସଂସାର
ସେହିସବୁ କଥା ତୁମ୍ଭେ ଜାଣିଛ ଯେ ହର ।
ପାଇଲି ମୁଁ ମେରୁକ୍ରୋଟେ ଲୁଚି ବଡ଼ କଷ୍ଟ
ଈଶ୍ୱର ବୋଇଲେ ତେବେ ଚାଲ ହୋ ବୈକୁଣ୍ଠ
ଇନ୍ଦ୍ର ବୋଇଲେ ଭୋଦେବ ତୋର ସିନା ଇଚ୍ଛା
ଭୋଗୀଜନଙ୍କୁ ତୁ କରୁ କାମଦେବ ସଖା ।
ଅନାଥଜନକୁ ନାଥ କରୁ ବଡ଼ଲୋକ
ଅଭାଗ୍ୟଲୋକ ଭଜିଣ ଲଭେ ସର୍ବ ସୁଖ ।
ଅକାରଣ ଜନ ସେହୁ ଲଭେ ସୁକାରଣ
ମୃତ୍ୟୁରତ ଲୋକମାନେ ଲଭୁଛନ୍ତି ପ୍ରାଣ ।
ତୋତେ ସେବାକରି ଲୋକେ ରୋଗମୁକ୍ତ ହୁନ୍ତି
ତୋହର ମହିମା ଗୁଣେ ଉଦ୍ଧାର ପାଆନ୍ତି ।
ତୋତେ ଆଶ୍ରେ କରିଣ ନଗଲା ଆମ୍ଭ ଦୁଃଖ
ବାସବ ବସଳ ବାନା ତୋ ନାମ ପଞ୍ଚଶିଖ ।
ବାସବ କରନ୍ତି ଏତେ ବୋଲି ବହୁସ୍ତୁତି
ଶୁଣିଣ ସନ୍ତୋଷ କଲେ ଭୋଳାନାଥ ମତି ।
ବ୍ରହ୍ମା ସହିତରେ ମିଳି ସର୍ବ ସୁରଗଣ
ରୁଦ୍ର ଇନ୍ଦ୍ର ଚନ୍ଦ୍ର ସୂର୍ଯ୍ୟ ସପ୍ତାଙ୍ଗ ବରୁଣ ।
କୁବେର ଯେ ନଇରତ ବାୟୁ ରତ୍ନାକର
ଯମ ଧର୍ମ ଅନଳ ବିହନ୍ତା ବିଦ୍ୟାଧର ।
ଗନ୍ଧର୍ବ କିନ୍ନର ଯକ୍ଷ ରକ୍ଷ ସନକାଦି
ସିଦ୍ଧ ସାଧକ ଚାରଣ ଗୁହ୍ୟଗଣ ଆଦି ।
ନାଗଗଣ ଋଷିଗଣ ଗ୍ରହଗଣ ତାର
ବାର ତିଥି କାଳବେଳା ମାସ ସମ୍ୱତ୍ସର ।
ବ୍ରହ୍ମା ରୁଦ୍ର ସଙ୍ଗତରେ ସର୍ବ ଦେବ ମିଶି
କ୍ଷୀର ବୈକୁଣ୍ଠକୁ ଚଳିଗଲେ ଶୂନ୍ୟବାସୀ ।
ଚଉଷଠି ଲକ୍ଷଣ ଯୁଣ ଯେଉଁ କ୍ଷୀରସିନ୍ଧୁ
ତହିଁର ମଧ୍ୟେ ବିଜୟ ଭକ୍ତଜନ ବନ୍ଧୁ ।
ସେ ପୁରର ମହିମା କି ଦେବା ପଟାନ୍ତର
ଶଙ୍ଖ ଗୋକ୍ଷୀର ସ୍ଫଟିକ ଦିଶଇ ସୁନ୍ଦର ।
ଶୁକ୍ଳ ମଣିମାଦି ଲମ୍ବିଅଛି ଚଉକତି
ନାନାରତ୍ନ କମ ତହିଁ ମଧ୍ୟେ ଝଟକନ୍ତି ।
ସୁବର୍ଣ୍ଣ ହୋଇ ବିରାଜେ ତହିଁ ପୁରଯାକ
ଅଷ୍ଟରତନ ଚଉଁରା ଶୋହେ ଚାରିପାଖ ।

ସ୍ଫଟିକର କାନ୍ଥପରେ ପବାଳର ଶ୍ରେଣୀ
ସୁବର୍ଣ୍ଣ ରୁଅ ବତା ଯେ ରୂପାର ଖଞ୍ଜଣୀ ।
ମାଣିକ୍ୟର ଥୋରହସ୍ତ ନୀଳାରେ ପଗଡ଼ି
ବଇଡୁର୍ଯ୍ୟ ତୁଣ୍ଡି ଆଦି ଯେତେ ଯୁଣବେଢ଼ି ।
ଷାଠି ବାନି ସୁବର୍ଣ୍ଣ ରସାଣ ପିଢ଼ା ଚାଳ
ମୁକ୍ତା ପେଣ୍ଡାମାନ ଲମ୍ୱିଛନ୍ତି ମାଳ ମାଳ ।
ସ୍ଫଟିକ କାନ୍ଥ ପୋହଳା ତହିଁ ପୁଞ୍ଜି ପୁଞ୍ଜି
ବ୍ରହ୍ମଜାତି ହୀରା ତହିଁ ମଧ୍ୟେ ଅଛି ଖଞ୍ଜି ।
ତହିଁର ମଧ୍ୟରେ ନବସିଂହାସନ ସଞ୍ଚ
ପାଞ୍ଚଯୁଣ ବିସ୍ତାର ଯେ ଶତେ ତାଳ ଉଚ୍ଚ ।
ଅନନ୍ତ ନାଗମଣି ସେ ସସ୍ରଫଣା ଧରି
ସୁଖାସନ ଶଯ୍ୟାପରେ ସତରଞ୍ଜି କରି ।
କେତକୀ କର୍ପୂର ରଜ ନାଗେଶ୍ୱର ଗୁଣ୍ଡି
ବେନିତାଳ ବହଳରେ ବିଶ୍ୱକ୍ସେନ ମଣ୍ଡି ।
ସେ ଶଯ୍ୟା ବହିବାକୁ ସେ ଫଣୀ ସାମରଥ
ବହିଛି ପଞ୍ଚାଶକୋଟି ପୃଥ୍ୱୀଭାର ମାଥ ।
ପାଞ୍ଚକୋଟି ଯୁଗରେ ଯେଉଁ ବସୁନ୍ଧରୀ
ଏହିରୂପେ କୋଟି କୋଟି ବ୍ରହ୍ମାଣ୍ଡରେ ପୁରି ।
ତିଳଚୋପା ପ୍ରମାଣରେ ଗଣି କୋଟି କୋଟି
ଅକର୍ମ ଶିଳା ଉପରେ ଅନନ୍ତ ବଇଠି ।
ଅକର୍ମ ଶିଳା ଅନନ୍ତ ପାର ତାର ନାହିଁ
ନିରଞ୍ଜନ ଆଦେଶରେ ସଦା ତହିଁ ରହି ।
ଯେ ନିରାକାର ପୁରୁଷ ଯୋଗନିଦ୍ରା ରମି
ବୈକୁଣ୍ଠେ ଅଛନ୍ତି ଆବୋରିଣ ସାରଭୂମି ।
ଅରୂପାନନ୍ଦ ସ୍ୱାମୀ ସ୍ୱରୂପଭାବେ ବସେ
ହେମମଣି ପଲ୍ୟଙ୍କରେ ବିହରେ ହରଷେ ।
ଲକ୍ଷେ ଯୋଜନ ପାଚେରୀ ବେଢ଼ି ଚାରିପାଖ
ଧ୍ରୁବଲୋକ ଯାଏ ଲାଗିଅଛି ରତ୍ନଶିଖ ।
ଚାରିପାଖେ ଚାରିଦ୍ୱାର ଅଛି ତହିଁ ରହି
ବିଶ୍ୱକର୍ମାଙ୍କ ନିର୍ମାଣ କୋଟିରୂପ ବହି ।
ପୂର୍ବଦ୍ୱାରେ ବସିଛନ୍ତି କପିଳା ମାତାଏ
ଅନନ୍ତ ବତ୍ସା ବିକ୍ରମ ସିଂହଛୁଆ ପ୍ରାୟେ ।
ସେମାନଙ୍କର ମହିମା ଯୁଗେକ ନିଃଶ୍ୱାସେ
କରନ୍ତି ଗୋଟିଏ ଯୁଗ ଗଲେ ବେଳେ ଗ୍ରାସେ
ପୂର୍ବଦ୍ୱାରେ ବିହରିଣ ଥାନ୍ତି ଅହର୍ନିଶି
ନ ଦିଅନ୍ତି ବ୍ରହ୍ମା ଇନ୍ଦ୍ର ହେଲେ ତହିଁ ପଶି ।
ଦକ୍ଷିଣ ଦ୍ୱାରେ ବିଜୟ ସଦା ଖଗେଶ୍ୱର
କୋଟିଏ ବାସବ ଗଲେ ନିଃଶ୍ୱାସେ ତାହାର ।
ସେ ଦ୍ୱାରରେ କୋଟି ବ୍ରହ୍ମା ଦୂର ଯାଏ ନାହିଁ
ପକ୍ଷର ବିଘାତ ତାର କେ ପାରିବ ସହି ।
ଉତ୍ତର ଦ୍ୱାରରେ ବିଜେ ଦେବନାଶ ବାଟ
ନିରନ୍ତର ପଡ଼ିଥାଇ କୁଳିଶ କବାଟ ।
ଦେବତା ହୋଇଥିଲେ ଯେ ତପେ ଇଚ୍ଛାକରି
ସେହି ବଟମୂଳେ ସେହି ଥାନ୍ତି ଲୟକରି ।
ଯୋଗନିଦ୍ରା ଭାଙ୍ଗିଗଲେ ଦ୍ୟନ୍ତି ପ୍ରଭୁ ବର
ନୋହିଲେ ମିଳାଏ ଅସ୍ଥି ଚର୍ମ ସେହିଠାର ।

ଏ ହେତୁ ପଶ୍ଚିମଦ୍ୱାରେ ସର୍ବେ ଆତଯାତ
ବ୍ରହ୍ମା ଶଙ୍କର ଇନ୍ଦ୍ରାଦି ଦେବ ଦଇବତ ।
ସଦା ସର୍ବଦା ସେ ଦ୍ୱାରେ ଫିଟାଇ କିଳଣି
ତହିଁ ଦ୍ୱାରପାଳ ଜୟ ବିଜୟ ସେ ବେନି ।
ସେ ଦ୍ୱାର ଛାଡ଼ି ଦିଅନ୍ତି ଲକ୍ଷ୍ମୀଙ୍କି ଜଣାଇ
ବିନା ଆଜ୍ଞାରେ ତିରଣ ଯାର ନ ହଲଇ ।
ଏମନ୍ତ ମହିମା ସେହି ଯାର ବଇକୁଣ୍ଠ
ଭକ୍ତଜନଙ୍କର ସେ ଅଜୟ ବଡ଼ ଆଣ୍ଠ ।
ବିକଳେ ଦେବତାମାନେ ଏଣୁକରି ଭାଳି
ବିଷ୍ଣୁଙ୍କର ଭୁବନକୁ ରାତ୍ରେ ଗଲେ ଚଳି ।
ହର ବ୍ରହ୍ମା ଇନ୍ଦ୍ର ଚନ୍ଦ୍ର ସର୍ବ ଦେବତାଏ
ସ୍ୱର୍ଗ ଭୁବନ ଛାଡ଼ିଣ ଗଲେ ସେହିଯାଏ ।
ଦୈତ୍ୟଙ୍କୁ ଭୟ କରିଣ ଦେବକନ୍ୟା ଯାକ
ଘରେ ନ ରହି ଚଳିଲେ ସ୍ୱର୍ଗୁ ସଙ୍ଗେ ତାଙ୍କ ।
ଅସୁରଙ୍କୁ ଡରିକରି ସେହି ନ ରହିଲେ
ସବ ଦେବସ୍ତିରୀମାନେ ଜଳଶାୟୀ ହେଲେ ।
ଯେବଣ ପୁରରେ ବିଜେ ପ୍ରଭୁ ନାରାୟଣ
ସପ୍ତସିନ୍ଧୁ ଜିଣି ମିଳିଗଲେ ଦେବଗଣ ।
ମିଳିଲେ ପଶ୍ଚିମଦ୍ୱାରେ ଯାଇଁ ସର୍ବଦେବା
ଦେଖିଲେ ଜୟ ବିଜୟ ଆଗେ ହେଲେ ଉଭା
ବ୍ରହ୍ମାଏ ବୋଇଲେ ଯାଅ ହେ ଜୟ ବିଜୟ
ଦେବେ ଆସିଲେ ବୋଲିଣ ବିଷ୍ଣୁ ଆଗେ କହ
ବ୍ରହ୍ମାର ବାକ୍ୟ ବିଜୟ ଶୁଣି ଚଳିଯାଇ
ଶ୍ରୀହରି ଶୟନ ସ୍ଥାନେ ଲକ୍ଷ୍ମୀଙ୍କି ଜଣାଇ ।
ବିଜୟ ବୋଇଲେ ମାଗୋ ଶୁଣ ବିଷ୍ଣୁ ବାହା
ଦ୍ୱାରେ ଉଭାହୋଇ ଆସି ରୁଦ୍ର ଇନ୍ଦ୍ର ବ୍ରହ୍ମା ।
ଦର୍ଶନ କରିବେ ବୋଲି ବିଷ୍ଣୁ ପାଦତଳେ
ଦେବଙ୍କୁ ଘେନିଣ ଆସିଅଛି ଦିଗପାଳେ ।
ଶ୍ରୀଲକ୍ଷ୍ମୀ ବୋଇଲେ ପ୍ରଭୁ ଯାଇଛନ୍ତି ନିଦ୍ରା
ପାରିଲେ ବିଧାତା ଆସି ଭାଙ୍ଗନ୍ତୁ ସେ ନିଦ୍ରା ।
ନ କରି କପଟ ତାଙ୍କୁ ଦ୍ୱାର ଦିଅ ଛାଡ଼ି
ଦର୍ଶନ କରିଣ ଦେବେ ଯାଆନ୍ତୁ ବାହୁଡ଼ି ।
ଆପଣେତ ବସିଛନ୍ତି ବେଦବର ସୁତା
ସପ୍ତସ୍ୱର ପୁଣ ଚାଳିଦେବେ ସେ ବିଧାତା ।
ଆମ୍ଭେ ତ ମଞ୍ଚାଳୁଅଛୁ ବେନି ପଦ୍ମପାଦ
କରନ୍ତୁ ଆସି ଗାୟନ ବୃହସ୍ପାମ ବେଦ ।
ଶୁଣିଣ ବିଜୟ ଚଳିଗଲା ତଡ଼ବେଗେ
ଯାଇଁ ଜଣାଇଲା ହର ବ୍ରହ୍ମାଙ୍କର ଆଗେ ।
ବୋଇଲା ହେ ମହାପ୍ରଭୁ ଛନ୍ତି ନିଦ୍ରା ଯାଇ
କହିଛନ୍ତି ମହାଲକ୍ଷ୍ମୀ ତୁମ୍ଭ ଯିବାପାଇଁ ।
ସମସ୍ତ ଦେବ ମିଳିଣ ଆସ ଯେଝାମତେ
ଏମନ୍ତ ବୋଲି ବିଜୟ କହିଲା ଅଗ୍ରତେ ।
ଶୁଣିଣ ସକଳ ଦେବେ ଦ୍ୱାରୀସଙ୍ଗେ ଗଲେ
ବୈକୁଣ୍ଠ ସିଂହାସନର ତଳେ ଉଭାହେଲା ।
ଦେଖିଲେ ଯେ ବିଶ୍ୱନାଥ ଛନ୍ତି ନିଦ୍ରାଯାଇ
ସ୍ୱପ୍ନ ସୁଷୁପ୍ତି ଜାଗ୍ରତ ଆଦି ଆଗେ ଥୋଇ ।

ପାଦ ମଞ୍ଜାଳନ୍ତି ବସି ବରୁଣ ଦୁହିତା
ସୀମସ୍ଥାନ ପାଶେ ବୀଣା ବାଆନ୍ତି ବ୍ରହ୍ମସୁତା
ବିରାଳଚନ୍ଦ୍ର ବୋଲିଣ ଯେବଣ ଉରଗ
ଶିର ଉପରେ ବହିଛି ବିଷ୍ଣୁ ନିଜ ଅଙ୍ଗ ।
ଏମନ୍ତ ସମୟେ ବ୍ରହ୍ମା ଆବର ଈଶାନ
ସାମବେଦ ବୃହତ୍‌ସାମ କଲେକ ଗାୟନ ।
ସେ ବେଦ ଗାୟନେ ନିଦ୍ରା ନ ଭାଜିଲା ହରି
ଇନ୍ଦ୍ର ଆଦି ଲକ୍ଷ୍ମୀ ସରସ୍ୱତୀ ସ୍ତୁତିକରି ।
ଜୟ ତୁ ଲକ୍ଷ୍ମୀ ଶାରଳା ବିଷ୍ଣୁ ବେନିବାମା
ବିଦ୍ୟାଧରଦାୟିନୀ ଗୋ ଅଲୋକ୍ୟ ମହିମା
ତୁମ୍ଭର କୀରତି ମାଗୋ ନ ଯାଇ କଥନ
ତୁମ୍ଭ ବ୍ୟତିରେକ ବିଷ୍ଣୁ ମୋହର କେ ଆନ ।
ତୁମ୍ଭର ରଚନା ଏ ଛପନକୋଟି ପୃଥ୍ୱୀ
ମହୀ ଆପ ତେଜ ବାୟୁ ଶୂନ୍ୟ ପଞ୍ଚରଥୀ ।
ଶ୍ୱେତପଦ୍ମ ମୁଖେ ଚନ୍ଦ୍ର ଅକଳଙ୍କ ଦିଶେ
ଭାଲେ ସିନ୍ଦୂରବିନ୍ଦୁ ଅଖଣ୍ଡ ଭାନୁ କିସେ ।
ବେନିଗୋଟି ନୟନେ ଅଞ୍ଜନ ସରୁ ଲେଖା
ଲପନ ସୁଧାବାକ୍ୟ ଅମୃତ ଧାରା ଶିଖା ।
ବେନିଦେହେ ଅଳଙ୍କାର ସର୍ବଜନ ମୋହେ
ସୁକୁନ୍ତଳାବେନି ବେଣୀ କଟି ଭାଗଯାଏ ।
ବ୍ରହ୍ମା ବିଷ୍ଣୁ ମହାଦେବ ବାକ୍ୟେ ହେବେ ବଶା
ଲକ୍ଷ୍ମୀ କରରେ କମଳ ବାଣୀ କରେ ବୀଣା ।
ମନେ କଳ୍ପିବା ମାତ୍ରକେ ବ୍ରହ୍ମାଣ୍ଡ ଭିଆଣ
ବ୍ରହ୍ମଜାତି ହୀରା ତବ ପାଦନଖ କୋଣ ।
ତୁମ୍ଭେ ବେନି ହରିପ୍ରିୟା ଅଟ କାଳେକାଳେ
ସଦା ତୁମ୍ଭେ ବେନିଥାଅ ବିଷ୍ଣୁଙ୍କର ଆଳେ ।
ବିଷ୍ଣୁ ପୁରୁଷର ଅର୍ଦ୍ଧଅଙ୍ଗ ବେନି ନାରୀ
ଦେବଙ୍କ ବିକଳ ଆଗୋ କହି କେହୁ ପାରି ।
ବିଷ୍ଣୁ ନିଦ୍ରା ଭାଙ୍ଗିବାକୁ ତୁମ୍ଭେ ବେନିଦେବୀ
ପୃଥ୍ୱୀ ପାଳିବାରୁ ମାଗୋ ଶାରଦା ଭାର୍ଗବୀ ।
ଅନାଦିନାଥ ପିତା ଗୋ ତୁମ୍ଭେ ବେନିମାତା
ଏହ୍ନେ ମାତା ପିତା ଆଉ ଭାଷିଲେ ଦେବତା ।
ରଖ ରଖ ମାତା ମାଗୋ ଆମ୍ଭେ ତୁମ୍ଭ ଦାସ
ବିପ୍ର ପୀତାମ୍ବର ବେନିକର ପାଦେ ଆଶ ।
ଶୁଣ ହେ ନାରଦ କହୁଛନ୍ତି ବେଦବ୍ରହ୍ମା
ଦେବଙ୍କ ଦୁଃଖ ଜାଣିଲେ ବିଷ୍ଣୁ ବେନିବାମା ।
ପଞ୍ଚମ ସ୍ୱରରେ ବୀଣା ଟେକିବାକ୍ୟ ଦେବୀ
ବେନିପାଦ ମଞ୍ଜାଳନ କଲେ ଲକ୍ଷ୍ମୀଦେବୀ ।
ଭିଆଇ ଚୈତନ୍ୟ ମନ ଭିନ୍ନ କରିବାକୁ
ସପ୍ତସ୍ୱର ବୀଣା ଦେବୀ ଚାଳିଲେ ମନକୁ ।
ଭ୍ରମଇ ଗୁମ୍ଫା ଭିତରେ ମାନସରୋବର
ଜୀବଆତ୍ମା ବୁଲେ ମନ ଶୁଭଇ ସଙ୍ଗର ।
କୁଆର ଟେକି ଘୋଡ଼ାଇ ପଡ଼ିଛି ଡାକୁଣୀ
ଚୈତନ୍ୟ ହୃଦେ ବାନ୍ଧିଛି ଦୋମୁହାଁ କିଳଣି ।

ଏମନ୍ତ ଠାବକୁ ଦେବୀ ବାଏ ଧରି ବୀଣା
ତିନିସ୍ୱର ପାଞ୍ଚସ୍ୱର ସପ୍ତସ୍ୱର ଜିଣା ।
ବେନି ଚରଣ ଧରିଣ ଚାପେ ଶ୍ରୀୟା ବସି
ଅଷ୍ଟାଦଶ ଫୁଟି କିବା ଷୋଳଘଷା ମିଶି ।
ବ୍ରହ୍ମା ସାମ ପଢ଼ନ୍ତି ଓଁକାର ଧ୍ୱନି ଚାଳି
ଈଶ୍ୱର ଲକ୍ଷ ଲକ୍ଷ ଡମ୍ବରୁ ଦ୍ୟନ୍ତି ଚାଳି ।
ଲକ୍ଷ୍ମୀପାଦ ମଞ୍ଜାଳଇ ବାଣୀ ଟେକେ ବୀଣା
ହରଙ୍କ ଡିଣ୍ଡିମବାଦ୍ୟ ବ୍ରହ୍ମା ସାମଗୁଣା ।
ଚାରିଜଣ ହେତୁ ଭାଙ୍ଗିଗଲା ବିଷ୍ଣୁକାଳ
ଧ୍ୟାନରେ ଜାଣିଲେ ପ୍ରଭୁ ଦେବଙ୍କ ବିକଳ ।
ଯୋଗଲୟ କରି ଚାହିଁଦେଲେ ପଦ୍ମନାଭ
ଦେଖିଲେକ ବ୍ରହ୍ମା ଇନ୍ଦ୍ର ଛନ୍ତି ରୁଦ୍ରଦେବ ।
ବସିଲେ ଅନନ୍ତ ଶଯ୍ୟା ତେଜି ସିଂହାସନେ
ନମିଲେ ଶ୍ରୀ ପଦ୍ମପାଦେ ଦେବଗଣମାନେ ।
ବ୍ରହ୍ମା ଶଙ୍କରଙ୍କୁ ଦେଖି ବସାଇଲେ ଆଗେ
ରହିଲେ ଯେ ଲକ୍ଷ୍ମୀ ସରସ୍ୱତୀ ପଛଭାଗେ ।
ଶ୍ରୀହରି ବୋଇଲେ ଆହୋ ଶୁଣ ବ୍ରହ୍ମା ଇନ୍ଦ୍ର
କାହିଁକି ଆସିଛ କହ ଘେନି ଦେବବୃନ୍ଦ ।
କେବଣ କାରଣେ ଅବା ମୋର ଦରଶନେ
କିବା ଅସୁରଙ୍କ ଭୟ ହେଲା ତ୍ରିଭୁବନେ ।
ଏ ରୂପେ ଦେବଙ୍କୁ ଚାହିଁ ପୁଚ୍ଛନ୍ତି ଗୋବିନ୍ଦ
ଶୁଣିଣ କାନ୍ଦି କହନ୍ତି ତାଙ୍କ ଆଗେ ଇନ୍ଦ୍ର ।
ଇନ୍ଦ୍ର ବୋଇଲେ ଭୋ ଦେବ ଶୁଣ ଦାମୋଦର
ମୁରଦୈତ୍ୟ ଲାଗି ଏବେ ଗଲାଟି ସଂସାର ।
ହରକୁ ବର ମାଗି ସେ ଅମର ହୋଇଲା
ହର ଡରିକରି ତାଙ୍କୁ ଯାଚି ବର ଦେଲା ।
ସେହିଠାରୁ ମୁରଦୈତ୍ୟ ହୋଇଲା ପ୍ରବଳ
ସପତଦ୍ୱୀପ ଯାକ ସେ ଜିଣିଲା ଚାଣ୍ଡାଳ ।
ଏତେକ ଜିଣିଣ ଶାନ୍ତ ନୋହିଲା ତା ଦେହ
ଅମରକୁ ବହିଲା ସେ ଧରି ପୂର୍ବକୋହ ।
ଶଚୀ ଅପସରା ଗଜ ଉଚ୍ଚୈଃଶ୍ରବା ଅଶ୍ୱ
ଇନ୍ଦ୍ର ନୀଳମଣି ମାଗୋ ପାରିଜାତ ପୁଷ୍ପ ।
ଏହା ମାଗିବାରୁ ଦୈତ୍ୟ ଗଲି ମୁଁ ପଳାଇ
ଲୁଚିଲଇଁ ଆଜିଯାଏ ମେରୁକ୍ରୋଡେ ମୁହିଁ ।
ଲକ୍ଷେ ବରଷ ହେଲାଣି ଦୁଃଖେ ଦିନ ନେଲି
ଏଣିକି ଏ କଷ୍ଟ ଆଉ ସହି ନ ପାରିଲି ।
ତେଣୁ କରି ମହାପ୍ରଭୁ କହୁଛି ମୁଁ ଆସି
ଏଥକୁ ବିଚାରି ଦୟା କର ହୃଷୀକେଶୀ ।
ଏତେ କହିଣ ରୋଦନ କଲେ ସୁନାସୀର
ଇନ୍ଦ୍ରଙ୍କର କୋହ ଦେଖି ହସିଲେ ଶ୍ରୀଧର ।
ବୋଲନ୍ତି ବ୍ରହ୍ମା ଶିବଙ୍କୁ ଚାହିଁ ନାରାୟଣ
ଆମ୍ଭେ ତିନିମୂର୍ତ୍ତି ସଂସାରରେ ସାର ଜାଣ ।
ତୁମ୍ଭେ ପୃଥ୍ୱୀ ପାଳନରେ ଦୁହେଁ ଅଛ ବସି
ଏଡ଼େ ଅସମ୍ଭବ ମୋତେ ନ କହିଲ ଆସି ।

ଆମ୍ଭେ ଯେବେ ନ ଜାଣିବା ପୃଥ୍ୱୀ ଭାରାଭର
କିମ୍ପାଇ ଏହି ପୃଥ୍ୱୀକି କଲି ଅବତାର ।
ତୁମ୍ଭେ ଆମ୍ଭେ ଥାଉଁ ଜନେ ପାନ୍ତି ମହାଦୁଃଖ
ତୁମ୍ଭେ ଆଉ କି କରିବ ହୋଇ ପଦ୍ମମୁଖ ।
ପ୍ରଥମେ ଜନମ ଯେବେ ହେଲା ଦୁଷ୍ଟ ମୁର
ଆହୁରି ତ କେତେ ଏଥି ଜନ୍ମିବେ ଅସୁର ।
ଏ ରୂପେ ବିଷ୍ଣୁ ମୁଖରୁ ଶୁଣିଣ ବିଧାତା
ତରଛ ହୋଇ ମନରେ ପୁଚ୍ଛନ୍ତି ବାରତା ।
ବୋଇଲେକ ଆହେ ଦେବ ଶୁଣ ଚକ୍ରପାଣି
ଅଜଣା ନୁହଇ ତୁମ୍ଭଙ୍କୁ ତ କେଉଁ ବାଣୀ ।
କି ରୂପେ ପୃଥ୍ୱୀରେ ଜନ୍ମହେବେ ଏତେଦୈତ୍ୟ
ଶୁଣିବା କର୍ଣ୍ଣରେ ତାହା କହ ହେ ଅଚ୍ୟୁତ ।
ଶ୍ରୀହରି ବୋଇଲେ ତେବେ ଶୁଣ ବେଦବ୍ରହ୍ମା
ମୋତେ ହେଁ ତ ଅଗୋଚର ମୋହର ମହିମା
ଯେତେବେଳେ ଜନମ ମୁଁ କଲି ବସୁନ୍ଧରୀ
ତେତେବେଳେ ତୁମ୍ଭେମାନେ ଥିଲ ମେରୁଗିରି
ସେ ମେରୁ ପୃଥିବୀ ଦୁହେଁ ହୁଅନ୍ତେ ତ ଭେଟ
କୂର୍ମରୂପେ ବହିଲି ମୁହିଁ ତାହା ପୃଷ୍ଠ ।
ରହିଲି ଅକର୍ମଶିଳା ପରେ ବିଜେକରି
ସେ ଅକର୍ମଶିଳା ଅଛି ମାୟା ରୂପ ଧରି ।
ମୋର ପୃଷ୍ଠେ ଅନନ୍ତ ଅନନ୍ତ ଶିରେ ମହୀ
ସେହି ଅନନ୍ତ ସବୁଠି ଅଛି ଶିରେ ବହି ।
ଏମନ୍ତେ ତ ତହିଁ ପୁଣ କେତେ ଦିନ ଯିବ
ଶଙ୍ଖାସୁର ଜନ୍ମିଣ ଯେ ବେଦ ହରିନେବ ।
ତୁମ୍ଭର ଆତଙ୍ଗେ ମୁହିଁ ମତ୍ସ୍ୟରୂପ ଧରି
ଶଙ୍ଖାକୁ ଯୁଦ୍ଧେ ମାରି ଆଣିବି ବେଦଚାରି ।
ତହିଁ ଉତ୍ତାରୁ ପୁଣିହିଁ କଶ୍ୟପର ଘରେ
ଜନ୍ମିବେ ହିରଣ୍ୟ ହିରଣାକ୍ଷ ବେନିବୀରେ ।
ଏ ପୃଥିବୀ ହରି ଯେବେ ନେବ ହିରଣାକ୍ଷ
ବରାହ ରୂପେ ତାକୁ ମୁଁ ମାରିବି ପ୍ରତ୍ୟକ୍ଷ ।
ପାତାଳରୁ ମେଦିନୀକି ଆଣିବି ଉଦ୍ଧାରି
ହିରଣ୍ୟ ବିଦାରିବି ନୃସିଂହ ରୂପ ଧରି ।
ପୁଣି ସତ୍ୟରେ ମହିଷାସୁର ହେବ ଜାତ
ଶୁମ୍ଭ ନିଶୁମ୍ଭର ତୁଲେ ଚଣ୍ଡ ମୁଣ୍ଡ ଦୈତ୍ୟ ।
ଦୁର୍ଗା ରୂପେ ତାହାକୁ ମୁଁ ଏହା ବିନାଶିବି
ବୈଲୋଚନକୁ ମାଳତୀରୂପେ ସଂହାରିବି ।
ପାତାଳେ ବାମନରୂପେ ବଳି ଦେବି ଚାପି
କୁମ୍ଭକୁ ମୁଁ ମରାଇବି ଇନ୍ଦ୍ରେ ସ୍ୱର୍ଗେ ସ୍ଥାପି ।
ତେବେ ସେ ଇନ୍ଦ୍ରର ନାମ ଜୟଭେଦୀ ହେବ
ତ୍ରିପୁର ବୋଲିଣ ଏକ ଦୈତ୍ୟ ଜନମିବ ।
କରିବ ଅନେକ ଉପଦ୍ରବ ରବିତଳେ
ତାକୁ ହର ହସ୍ତେ ମୁହିଁ ମରାଇବି ବଳେ ।
ତେବେ ଯାଇ ତ୍ରିପୁରାରି ବୋଲାଇବେ ହର
ପୁଣି ଅନ୍ଧକ ନାମରେ ଜନ୍ମିବ ଅସୁର ।
କରିବି ଈଶ୍ୱର ହସ୍ତେ ପୁଣି ତାକୁ ନାଶ
କହିବେ ଅନ୍ଧକରିପୁ ନାମ ବ୍ୟୋମକେଶ ।
ରାମରୂପେ ବିନାଶିବି ସହସ୍ର ଅର୍ଜୁନ
ଏକୋଇଶ ଥର ପୃଥ୍ୱୀ ବୁଲିବି ବହନ ।
ଜନ୍ମିବେ ଦନୁ ଦାନବ ପୁଣି ବେନି ଦୈତ୍ୟ
ଦାମୋଦର ମୂର୍ତ୍ତିଧରି କରିବି ନିହତ ।
ଆବର କଥାଏ ଧାତା କହୁଅଛି ଶୁଣ
ଲାଗିବେ ମେରୁ ପବନ କାଳେ ବାଦ ପୁଣ ।
ସେ ବାମେ ଶୃଙ୍ଗେକ ଭାଙ୍ଗି ପବନର ବଳେ
ନେଇଣ ପକାଇଦେବେ ଲବଣଲବ୍ଧି ଜଳେ
ବିଶ୍ୱକର୍ମା ଯାଇ ତାକୁ ଗଢ଼ିକରି ଦ୍ରୁମ
ସ୍ୱର୍ଣ୍ଣମୟ ଲଙ୍କା ନଗ୍ର ହେବ ତାର ନାମ ।
ପଉଲସ୍ତ୍ୟସୁତ ବିଶ୍ୱଶ୍ରବା ମୁନିବର
ତାହାର ଜ୍ୟେଷ୍ଠ ନନ୍ଦନ ଅଟଇ କୁବେର
ପୂର୍ବେ ସେ ଦ୍ୱାପରେ ଥିବ ସୁକେଶ ଦଇତ
ତା ପୁତ୍ର ହେବ ମାଳୀ ସୁମାଳୀ ମାଲ୍ୟବନ୍ତ ।
ନଉକେଶୀ ନାମେ ହେବ ଏକଇ ଦୁଲଣୀ
ତିନିପୁତ୍ରେ ହୋଇବ ଯେ ଏକଇ ଭଉଣୀ ।
କାଳରେ ସେ ପୁତ୍ରମାନେ ହେବେ ମହାଦୁଷ୍ଟ
ହରି ଅବତାରେ ତାକୁ କରିବି ବିନଷ୍ଟ ।
ସୁମାଳୀ ନିକଷା ଘେନି ତଳେ ଥିବ ଲୁଚି
ଲଙ୍କାକୁ ଆସିବାକାଳେ ପୁଣି ମନେ ପାଞ୍ଚି ।
ବିଶ୍ରବା ଋଷିଙ୍କୁ ଦେଖି ଦେବ ତାର ଝିଅ
କହୁଛନ୍ତି ନାରାୟଣ ଶୁଣ ପିତାମହ ।
ନଉବେଶୀକି ବିଭାରେ ଯହୁଁ ସମପିବ
ସେ ଲଙ୍କାଗଡ଼ ମୁନିଙ୍କି ଯଉତୁକ ଦେବ ।
ବୈଶ୍ରବଣକୁ କରିବେ ମୁହିଁ ତହିଁ ରାଜ
ନଉକେଶୀର ତିନୋଟି ଜନ୍ମିବେ ଆତ୍ମଜ ।
ରାବଣ ଯେ କୁମ୍ଭକର୍ଣ୍ଣ ବିଭୀଷଣ ହେବେ
ବଇଶ୍ରବଣକୁ ସେହୁ ତହିଁ ଘଉଡ଼ିବେ ।
ବିଶ୍ରବା ରଖିବେ ନେଇ ଉତ୍ତମ ପ୍ରଦେଶେ
ତ୍ରି ଅମ୍ବିକା ସଖା ହୋଇ ଗିରି କଇଳାସେ ।
ରାବଣ ଯେ କୁମ୍ଭକର୍ଣ୍ଣ ବ୍ରହ୍ମା ବର ପାଇ
ସଂସାରେ ଦଗ୍‌ଧ କରିବେ ଦୁଷ୍ଟବୁଦ୍ଧି ବହି ।
ଭଲ ବସ୍ତ୍ର ଭଲ ଶସ୍ତ୍ର ଭଲ ଭଲ ନାରୀ
ଲଙ୍କାରେ ରଖିବେ ସବୁ ଆଣି ଠୁଳକରି ।
ଗୁହାରି କରିବ ତୁମ୍ଭେ ଆସି ମୋର ପୁର
ତହିଁ ନିମନ୍ତେ ହେବି ମୁଁ ରାମଅବତାର ।
କରିବି ରାବଣ ଦୈତ୍ୟ ଲାଗି ବନବାସ
ମାରିବି କବନ୍ଧ ଆଦି ତାଡ଼କା ରାକ୍ଷସ ।
ମାରୀଚ ଖର ଦୂଷଣ ଆବର ତ୍ରିଶିର
ଏମାନେ ମଲେ ଆସିବ ରାବଣ ଅସୁର ।
ମହାଲକ୍ଷ୍ମୀଙ୍କୁ ଚୋରାଇ ବନ୍ଦୁ ଘେନିଯିବ
ଅଶୋକବନେ ଅସୁରୀ ରଖି ଜଗାଇବ ।
କପିବଳ ଘେନିକରି ସାଗର ବନ୍ଧନ
ତହୁଁ ମୁଁ ବିନାଶିବି ରାବଣ କୁମ୍ଭକର୍ଣ୍ଣ ।
ବିଭୀଷଣଙ୍କୁ କରିବି ମୁହିଁ ଲଙ୍କେ ରାଜା
ଏଥୁଅନନ୍ତରେ ଶୁଣ ଦ୍ୱାପର ତରିଯା ।

ଶ୍ରୀକୃଷ୍ଣ ଅବତାର ମୁଁ ହେବି ସମୟକେ
ଗୋପରେ ଜନମିବି ମୁଁ ମଥୁରା କଟକେ ।
ଶ୍ରୀକୃଷ୍ଣ ଯେ ବଳରାମ ହେବୁ କେନିଭାଇ
ନାଶିବୁ ମଥୁରାପୁର କଂସ କେଶୀ ଯାଇଁ ।
ମାରିବା ଗୋପରେ ଥାଉଁ ଥାଉଁ ଅଷ୍ଟମଲ୍ଲ
କୁବଳୟା ସହିତରେ ଯିବେ ସର୍ବେ ସଲ ।
ଆଉ ଯେତେ ଦୈତ୍ୟ ଥିବେ ପୃଥିବୀରେ ଜନ୍ମି
କେହୁ ସତ୍ୟ ତ୍ରେତା କେହୁ ଦ୍ୱାପରକୁ ଘେନି ।
ରୁକ୍ମିଣୀ ହୋଇଲେ ମୋର ଏ କମଳା ଯାଇ
କନ୍ଦର୍ପ ଜନ୍ମିବ ପ୍ରଦ୍ୟୁମ୍ନ ନାମ ବହି ।
ପ୍ରଦ୍ୟୁମ୍ନ ଔରସେ ଅନିରୁଦ୍ଧ ହୋଇ ଜାତ
ଶୁଣ ଆହେ ବେଦବ୍ରହ୍ମା କହନ୍ତି ଅଚ୍ୟୁତ ।
ତହିଁ ଉତ୍ତାରେ ପାଣ୍ଡବ ହେବେ ଅବତାର
ସଖା ଅର୍ଜୁନ ହେବ ମୋ ମାଉସୀ କୁମର ।
ଜରାସନ୍ଧଠାରୁ ଗଲା ବାଣାସୁର ଯାଏ
କରିବି ମୁଁ ପାଣ୍ଡବାନ୍ତ ଘେନି ସବୁ କ୍ଷୟେ ।
ପୃଥ୍ୱୀ ହେବାକାଳରୁ ସେ ଶମ୍ବର ଜନ୍ମିଛି
ପ୍ରଦ୍ୟୁମ୍ନ ମାରିବ ତାକୁ ରଖିଛି ମୁଁ ସଞ୍ଚି ।
ଅମ୍ବା କଦମ୍ବା ପ୍ରଳମ୍ବା ଦ୍ୱିବିନ୍ଦ ବାନରେ
ବଳରାମ ସଂହାରିବେ କୃଷ୍ଣ ଅବତାରେ ।
ଜରାକୁ ମରାଇବି ମୁଁ ଭୀମସେନ ହାତେ
ଶିଶୁପାଳକୁ ଛେଦିବି ସୁଦର୍ଶନ ହାତେ ।
ଶାଲ୍ୱକୁ ଅନଳ ଶରେ କରିବି ଦହର୍ଯ୍ୟ
ଗଦାରେ କରିବି ବକ୍ରନାଭ ପ୍ରାଣତ୍ୟଜ ।
ନାରକାସୁର ଅଟଇ ଅବନୀର ସୁତ
ଷୋଳସସ୍ର କନ୍ୟା ଆଣି କରି ତାକୁ ହତ ।
ରୁକ୍ମଣକୁ ମାରିବି ଚାପୋଡ଼େ ଛେଦି ଶିର
ଦନ୍ତବକ୍ରକୁ ପେଷିବି ଜାଣ ଯମପୁର ।
ବାଣାର ସହସ୍ର ଭୁଜ ଛେଦି ଖଡ଼୍ଗେ
ଚକ୍ରପେଷି ପୁଣ୍ଡରୀକ ମାରିବି ମୁଁ ବେଗେ ।
କାଳଦମନକୁ କୂଟେ ମରାଇବି ଜାଣ
ଗୋସିଂହକୁ ମରାଇବି ଅର୍ଜୁନ ହସ୍ତେଣ ।
କୁମ୍ଭ ନିକୁମ୍ଭ ଆଦି ଯେ ଜୟସିଂହ ଯାଏ
ସବୁଙ୍କୁ ମୁଁ କରାଇବି ପୃଥ୍ୱୀ କରି କ୍ଷୟେ ।
ବଜ୍ରକବଚ ହିରଣ୍ୟ କବଚ ଅସୁର
ମେରୁସୁର କାଳାନଳ ରେବାସୁର ବୀର ।
କୁମ୍ଭୀର କିନ୍ନରୀ ଯେ କୁମ୍ଭକ ହିଡ଼ିମ୍ବକ
ଗୟାସୁର ବ୍ୟୋମସୁର ମୋଢ଼ା ଯେ ଫଳୁକ ।
ଏମନ୍ତେ ଅନେକ ଦୈତ୍ୟ ଦୁଷ୍ଟଗଣ ମାରି
କଳିକିରୂପ ହୋଇବି ମ୍ଳେଚ୍ଛକୁ ସଂହାରି ।
ତୁମ୍ଭେ ଯା ପୁଛିଲ ମୁଁ କହିଲି ବେଦବର
ଏତେ ଅବତାରେ ଦୁଷ୍ଟ କରିବି ସଂହାର ।
ଦେବତାଙ୍କର ଦୁଃଖ ମୁଁ ନ ପାରଇ ସହି
ପୃଥ୍ୱୀର ବିକଳେ ମଞ୍ଚେ ଜନମ ଲଭଇ ।
ମୋର ଅବତାର କେହୁ କରିବ ସଂକ୍ଷେପ
ଯେ ଜନ୍ମହିଁ ନାଶେଯିବ ଧରି ତହିଁ ରୂପ ।

ମୁର ଦାରୁଣ ସଂସାରେ ଏବେ ହେଲେ ଜାତ
ପ୍ରଥମୁଁ ତ ମେଦିନୀକି ଭାଙ୍ଗିଲା ଦଇତ୍ୟ ।
ଇନ୍ଦ୍ରହିଁ ପାଇଲା ସ୍ୱର୍ଗ ମଧ୍ୟେ କେତେ ଦୁଃଖ
ଏ ରୂପେ ବର ତାହାଙ୍କୁ ଦେଲେ ପଞ୍ଚମୁଖ ।
ନ ଜାଣ କି ଚାଣ୍ଡାଳେ ଲୋଡ଼ନ୍ତି ଅବ୍ରକାର୍ଯ୍ୟ
ବର ପାଇଲେ ସ୍ୱର୍ଗରେ କ୍ରୁରନ୍ତି ପହିଜ ।
କେତେବେଳେ ନ ମାନଇଁ ପ୍ରାଣୀ ପରାପର
ତୁମ୍ଭେ କିମ୍ପା ଏଡ଼େ ବର ଦେଲ ଆହେ ହର ।
ନ ଜାଣକି ସେ ଚାଣ୍ଡାଳେ ନାଶନ୍ତି ସଂସାର
ଜନ୍ମେ ଜନ୍ମେ ଅବତାର କରନ୍ତି ସଂହାର ।
ବ୍ରହ୍ମାଏ ଆଗରେ ପ୍ରଭୁ କହୁଅଛ ତୁମ୍ଭେ
ତୁମ୍ଭର ଆଗରେ ଆଉ କହିବୁ କି ଆମ୍ଭେ ।
ଏଥିକି ମୋର ହେତୁରୁ ହୋଇଥିଲା ଜନ୍ମ
ସ୍ୱଦାଶିବ ଲାଗି ସେହୁ ହୋଇଲା ଅଜ୍ଞାନ ।
ଈଶ୍ୱର ବୋଇଲେ ମୋର ନୋହିଲା ଆୟତ୍ତ
ମାଗିବାରୁ ଭୋଳେ ବର ଦେଲି ହେ ଅଚ୍ୟୁତ ।
ଏବେ ତ କହିଲ ମୋର ସରୁନାହିଁ କଷ୍ଟ
ବଳେ ନେଇ ମୋତେ ଘରେ ରଖିଲା ପାପିଷ୍ଠ ।
ଇନ୍ଦ୍ର ବୋଇଲେ ଆମ୍ଭର ଗଲା ସବୁ ଆଶ
ରାଜ୍ୟଘୋଷ ତେଜିଣ ମୁଁ କ୍ରୋଟେ କଲିବାସ
ତିନି ସହସ୍ର ପଚାଶ ବ୍ରହ୍ମାର ବରଷ
ଏତେ ଦିନ ଗଲାଣି ନ ଥିଲା ମୋର କ୍ଳେଶ ।
ଦିଗପାଳେ ବୋଇଲେକ ଇନ୍ଦ୍ର ଆଶା ଛାଡ଼ି
ରହିଲୁ ଦୈତ୍ୟଙ୍କୁ ସେବାକରି ଦୁଃଖେ ପଡ଼ି ।
ଗୃହ ବିଷୟ ଧର୍ମ ଯେ ପୁତ୍ର ଦାରା ତେଜି
ଦେବ ଲକ୍ଷଣ ଆମ୍ଭର ସବୁ ଗଲା ହଜି ।
ବିହନ୍ତା ପୁରୁଷ ବୋଲେ ଆମ୍ଭ ଶକ୍ୟ ନାହିଁ
ଯେ ଯାହା ବୋଲଇ ଆମ୍ଭେ କରୁଅଛୁ ତହିଁ ।
ତୁମ୍ଭେ ଯେ ପୃଥ୍ୱୀ କରତା ବିଚାରିଣ କହ
ନୋହିଲେ ତେଜିବୁ ତୁମ୍ଭ ପୁରେ ଆମ୍ଭ ଦେହ ।
ଆଦିତ୍ୟ ଚନ୍ଦ୍ର ବୋଇଲେ ନ ପାଇଲୁ ଫେରି
ସର୍ବଦା ତାହାର ଦ୍ୱାରେ ହୋଇଲୁ ଦୁଆରୀ ।
ଆମ୍ଭଙ୍କୁ ଯେ କଲ ପ୍ରଭୁ ପୃଥ୍ୱୀକି ଧାରଣା
ବାର ତିନିମାସ ପକ୍ଷ ହେବ ବୋଲି ଜଣା ।
ରାତ୍ରେ ଜଗେ ମୁହିଁ ରବି ଦିବସରେ ଜଗେ
ଦଣ୍ଡ ଘଡ଼ି ବସି କହିଦ୍ୟନ୍ତି ଗ୍ରହ ସର୍ବେ ।
ଯମ ବୋଇଲା ଘେନିଲା ମୋର କାଳଦଣ୍ଡ
ପାପୀଜନମାଙ୍କୁ ମୋ ନାହିଁ ଦଣ୍ଡମଣ୍ଡ ।
କୁବେର ବୋଇଲା ମୋର ସରିଲା ଭଣ୍ଡାର
ଅଷ୍ଟନିଧିଯାକ ବହି ନେଲାକେ ଅସୁର ।
ବରୁଣ ବୋଇଲା ମୋର ସୈନ୍ୟବଳ ହତ
ଜଳଜନ୍ତୁମାନେ ମାର ଖାଇଲେ ଦଇତ୍ୟ ।
ନୈର୍ଋତ ବୋଇଲା ମୁହିଁ ଯୋଗାଇଲି ପାନ
ନିତି ନିତି ଘୋରି ନେଇ ଦିଅଇ ଚନ୍ଦନ ।
ଅନଳ ବୋଇଲା ଆମ୍ଭେ ତ୍ରିକୁଳ ଅନଳେ
ସର୍ବଦା ଜଳିଲୁ ଯାଇ ତାର ରୋଷଶାଳେ ।

ବାୟୁ ବୋଇଲା ଆଲଟ ଧରି ଆମ୍ଭେ ବିଞ୍ଚୁ
ଅଣଚାଶଯାକ ଜଗି ଦିନଯାକ ବଞ୍ଚୁ ।
ସବୁ ଗୁହାରି ଶୁଣି ବୋଇଲେ ନିଦ୍ରାବତୀ
ମୁରାସୁରର ନୟନ ଜିଣିଲି ମୁଁ ନିତି ।
ବିକଳେ କହିଲେ ଶୁଣ ସର୍ବ ଗୁହ୍ୟଗଣ
ବୋଇଲେ ଚାପିଲୁ ଆମ୍ଭେ ମୁରର ଚରଣ ।
କହନ୍ତି କିନ୍ନରଗଣ ହୋଇଣ ବିକଳ
ବୋଲନ୍ତି ପଖାଳୁ ଆମ୍ଭେ ମୁରାର ଦୁକୂଳ ।
ସଭାର ମଧ୍ୟେ ପୃଥିବୀ ହୁଅନ୍ତି ବିକଳ
ବୋଇଲେ ପଡ଼ିଲି ଦୈତ୍ୟ ଲାଗି ରସାତଳ ।
ସହି ନ ପାରନ୍ତି ପ୍ରଭୁ ଦୈତ୍ୟଙ୍କର ଭାରା
ରୋଦନ କରନ୍ତି ଏତେ ବୋଲି ବସୁନ୍ଧରା ।
ଏମନ୍ତ ବୋଲିଣ ଦେବେ କରନ୍ତି ଗୁହାରି
ପାଦପଦ୍ମ ଚାହିଁ ହୋଇଅଛନ୍ତି ଜୁହାରି ।
ଜାଣିଲେ ଅନାଦି ନାରାୟଣ ସବୁ ଦୁଃଖ
ବିଚାର କରନ୍ତି ମନେ ମନେ ପଦ୍ମମୁଖ ।
ଶ୍ରୀହରି ବୋଇଲେ ଆହେ ବ୍ରହ୍ମା ରୁଦ୍ରଗଣ
ଅସୁର ଭୋଗ ପୃଥିବୀ ହେଲା ସବୁ ଜାଣ ।
ଏବେ ତୁମ୍ଭେମାନେ ସର୍ବେ ଯାଅ ଯେଝାଘର
ଆମ୍ଭେ ଏବେ ତ ଜନମ ହେବୁ ମଞ୍ଚପୁର ।
ହରିବି ସର୍ବରିଷ୍ଟ କରିବି ଦେବକାର୍ଯ୍ୟ
ସମସ୍ତେ ହେଁ ଦେଖୁଥିବ ମୋର ବଳବୀର୍ଯ୍ୟ ।
ଦେବଙ୍କ ବିକଳ ମୁହିଁ ସହି ତ ନପାରି
ମେଦିନୀ ଭାରା ହରିବି ମୁରାକୁ ସଂହାରି ।
ଏମନ୍ତ ଶୁଣି ବ୍ରହ୍ମାଏ ଯୋଡ଼ି ବେନିକର
ବୋଇଲେ କଥାଏ ସ୍ୱାମୀ ପୁଚ୍ଛିବି ଛାମୁର ।
କେଉଁରୂପେ କେଉଁଠାରେ ହେବ ପ୍ରଭୁ ଜନ୍ମ
ସେ କଥା ଶୁଣିବି ସ୍ୱାମୀ କହ ପରଂବ୍ରହ୍ମ ।
ସର୍ବ ଦେବଗଣ ଶୁଣି ହୋଇଲେ ସନ୍ତୋଷ
କେବଣ ବଂଶେ ଜନ୍ମିବ ଅଟେ କେଉଁ ଦେଶ ।
ଶ୍ରୀହରି ବୋଇଲେ ବ୍ରହ୍ମା କହୁଅଛି ଶୁଣ
ତିନିପୁରରେ ସାର ସେ ଅଟେ ପୁର ଜାଣ ।
ତହିଁ ପୁଣ ସାତସିନ୍ଧୁ ସାତ ଦ୍ୱୀପ ହୁଏ
ମାନବ ଶରୀରେ ପୃଥ୍ୱୀ ପାଦ ଶିରଯାଏ ।
ଜମ୍ବୁଦ୍ୱୀପ ବୋଲିଣ ସେ ପୃଥ୍ୱୀ ଅଟେ ସାର
ତୁମ୍ଭେ ନ ଜାଣ କି ଧାତା କେବଣ ସେ ପୁର
ସାରସ୍ୱତ ଭୁବନ ବିସ୍ତାର ନିଜବାସ
ସବୁକାଳେ ଅଟଇ ସେ ମୋର ଜନ୍ମଦେଶ ।
ସେ ଦେଶ ଲବଣ ସିନ୍ଧୁ ଦକ୍ଷ ନୀଳଗିରି
ସ୍ୱର୍ଗ ମର୍ତ୍ତ୍ୟ ପାତାଳର ବଇକୁଣ୍ଠ ପୁରୀ ।
ସେ ପୁରୀ ଉତ୍ତରଭାଗେ ସସ୍ରକୋଶ ଛଡ଼ା
ବଦରିକାଶ୍ରମ ବୋଲି ସେ ପୁର ଆଖଡ଼ା ।
ସେ ଦେଶର ରାଜା କୃଷ୍ଣବଲ୍ଲଭ ଯେ ନାମ
ମହା ସାଧୂ ବ୍ରାହ୍ମଣ ସେ ସୂର୍ଯ୍ୟବଂଶେ ଜନ୍ମ ।

ସତ୍ୟବନ୍ତ ନୃପତି ସେ ଅଟେ ଜ୍ଞାନବନ୍ତା
ଭାଗବତୀ ନାମେ ତାର ପତ୍ନୀ ପତିବ୍ରତା ।
ଜନ୍ମିଛି ଅଦିତି ଅଂଶ ଘେନି ସେହୁ ନାରୀ
କୃଷ୍ଣବଲ୍ଲଭ କଶ୍ୟପ ତୁଲ୍ୟ ଅବତରି ।
ତାହାର ବୀର୍ଯ୍ୟରେ ଆମ୍ଭେ ହୋଇବୁ ଜନମ
ଶେଷ ନୃସିଂହ ମୂରତି ହେବ ଆମ୍ଭ ନାମ ।
ଏ ଯେ ସହସ୍ର ଫଣା ଅନନ୍ତ ମହୀଧର
ଶେଷ ନାମ ବହିଣ ଏ ହେବ ଅବତାର ।
ମୋର ନାମ ହେବ ନରସିଂହ ଜଗନ୍ନାଥ
ଏ ରୂପେ ପ୍ରଥମେ ଜନ୍ମି ବିନାଶିବୁ ଦୈତ୍ୟ ।
କଶ୍ୟପ ଅଦିତି ଦୁହେଁ ଅତି ଭାଗ୍ୟବନ୍ତା
ଚାରିଜନ୍ମେ ହୋଇବେ ସେ ମୋର ପିତା ମାତା
ପ୍ରଥମ ଜନ୍ମରେ ଶେଷ ନୃସିଂହ ହୋଇବୁ
ଦ୍ୱିତୀୟ ଜନ୍ମେ ବାମନ ହେବୁଁ ମହାପ୍ରଭୁ ।
ତୃତୀୟରେ ଦଶରଥ କଉଶଲ୍ୟା ଘରେ
ଚତୁର୍ଥ ରୂପେ ଜନ୍ମିବୁ ରାମ ଅବତାରେ ।
ଚତୁର୍ଥେ ବସୁଦେବର ବୀର୍ଯ୍ୟେ ହେବୁ ଜାତ
କୃଷ୍ଣ ସଙ୍କର୍ଷଣ ଜନମିବୁ ବେନିଭ୍ରାତ ।
ଏମନ୍ତ ଚାରି ଜନମ ହେବୁ ତାଙ୍କ ପୁତ୍ର
ଶୁଣ ଆହେ ବେଦବ୍ରହ୍ମା କହନ୍ତି ଅଚ୍ୟୁତ ।
ମୋର ତ ଅନନ୍ତ କୋଟି ଅଂଶ ଅନ୍ତନାହିଁ
ଅଂଶ ଗୋଟିକେ ଜଗତ ଅଛି ଏକା ବହି ।
ଏଣୁ ବେନିଅଂଶ ଆମ୍ଭେ ଜନ୍ମି ମଧପୁର
ସ୍ୱରୂପ ବଚନ ଏହୁ ଶୁଣ ବେଦବର ।
ପିତାଏ ବୋଇଲେ ସ୍ୱାମୀ କହ ବ୍ରହ୍ମରାଶି
କି ରୂପେ କୃଷ୍ଣବଲ୍ଲଭ ହେଲେ ସୂର୍ଯ୍ୟବଂଶୀ ।
ତାହାଙ୍କ ବଂଶ ଚରିତ ଶୁଣୁଥିବି ମୁହିଁ
ଶୁଣିଲେ ସଂଶୟ ଆଉ ନଥିବ ଏ ଦେହୀ ।
ନାରାୟଣ ବୋଇଲେକ ତହୁଁ ତେବେ ଶୁଣ
କୃଷ୍ଣବଲ୍ଲଭ ରାଜାର ଯେତେ ବଂଶ ପୁଣ ।
ସେ କଥା ହେତୁ କରିଣ ବୁଝ ଭଲ ତୁମ୍ଭେ
ପ୍ରଥମରେ ସୂର୍ଯ୍ୟେଠାରୁ ଶ୍ରଦ୍ଧା ଉପୁଜିବେ ।
ଶ୍ରଦ୍ଧାର ପୁତ୍ର ହୋଇବ ଜାଣ ଇକ୍ଷାକୁରୁ
ଇକ୍ଷାକୁରୁ ଅଂଶେ ପୁତ୍ର ଜନ୍ମିବେ ବୀର୍ଯ୍ୟରୁ ।
ସେହି ଦୁଇ ପୁତ୍ର ନାମ କହୁଁ ତୋତେ ଶୁଣ
ସୁନନ୍ଦ ପୟୋଧର ଯେ ହେବେ ଉଚ୍ଚାରଣ ।
ପ୍ରଥମରେ ସୁନନ୍ଦର ଶୁଣ ହୋ ବଂଶାନୁ
ସୂର୍ଯ୍ୟ ବଂଶର ମହିମା ଯେବଣ ଆଖ୍ୟାନୁ ।
ସୁନନ୍ଦର କୁମର ଯେ ହେବ ବଂଶଧ୍ୱଜ
ତାହାର ବଂଶରେ ଜାତ ହୋଇବ ସରୋଜ ।
ସରୋଜଙ୍କର କୁମର ହେବ ସୁରସେନ
ସୁରସେନର ତନୟ ହୋଇବ ଦ୍ରୁମନ ।
ଦ୍ରୁମନଙ୍କର କୁମର ହେବେ ପ୍ରଭାବସୁ
ପ୍ରଭାବସୁର କୁମର ହେଇବେ ସୀତାଂଶୁ ।

ସୀତାଂଶୁଙ୍କର କୁମର ହେବେ କାରଣ୍ୟବ
କାରଣ୍ୟବର ନନ୍ଦନ ହେବେ ମଣିଶିବ ।
ମଣିଶିବର ନନ୍ଦନ ହେବେ ସତ୍ୟବ୍ରତ
ସତ୍ୟବ୍ରତଙ୍କ ନନ୍ଦନ ହେବେ ସୁଦୀକ୍ଷିତ ।
ସୁଦୀକ୍ଷିତଙ୍କ ନନ୍ଦନ ପ୍ରବୃଦ୍ଧ ଉତ୍ପତ୍ତି
ତନୁଭ ବୋଲି ହୋଇବେ ତାହାର ସନ୍ତତି ।
ତନୁଭଙ୍କର ନନ୍ଦନ ହେବ ଅଶ୍ୱଗ୍ରୀବ
ଅଶ୍ୱଗ୍ରୀବର କୁମର ହୋଇବେ ପାର୍ଥିବ ।
ପାର୍ଥିବର ଅଂଶେ ଜନ୍ମ ହୋଇବେ ଭୂମନ୍ୟୁ
ସେ ଭୂମନ୍ୟୁର ନନ୍ଦନ ହୋଇବେ କୃଶାନୁ ।
କୃଶାନୁ ପୁତ୍ର ହୋଇବେ କାକୁସ୍ଥ ଯେ ରାଜା
ପୃଥୁକ ବୋଲି ହୋଇବେ ତାହାଙ୍କ ତନୁଜ ।
ପୃଥୁଙ୍କର ନନ୍ଦନ ହୋଇବେ ବିଷ୍ଣୁରଥ
ବିଷ୍ଣୁରଥର ନନ୍ଦନ ହୋଇବେ ସୁରଥ ।
ସୁରଥର ନନ୍ଦନ ଯେ ହୋଇବେ ତ୍ରିବେଣୀ
ତ୍ରିବେଣୀଙ୍କର ନନ୍ଦନ ହେବେ ବସୁମଣି ।
ବସୁମଣିର ନନ୍ଦନ ହେବେ ଦୀର୍ଘେଶ୍ୱର
ବିଦର୍ଭ ବୋଲିଣ ହେବେ ତାହାଙ୍କ କୁମର ।
ସେ ବିଦର୍ଭର ନନ୍ଦନ ହୋଇବେ ଗାଲବ
ଗାଲବ ନନ୍ଦନ ହେବେ ଏ କୃଷ୍ଣବଲ୍ଲଭ ।
କୃଷ୍ଣବଲ୍ଲଭର କୋଳେ ଆମ୍ଭେ ଉପୁଜିବୁ
ନୃସିଂହ ନାମ ବହିଣ ଦୈତ୍ୟ ସଂହାରିବୁ ।
ଅନନ୍ତ ବିଷ୍ଣୁଙ୍କୁ ଯିବୁ ସଙ୍ଗତରେ ଘେନି
ସାନୁଜ ଭାଇ କରିଣ ଜନ୍ମିବୁ ମେଦିନୀ ।
ଏହିରୂପେ ଦେହ ବହି ହେବୁ ଅବତାର
ପୃଥିବୀକି ଉଦ୍ଧାରିବୁ ମାରି ମୁରାସୁର ।
ଶୁଣିଣ ବ୍ରହ୍ମା ବିଷ୍ଣୁଙ୍କ ବଂଶାନୁ ଚରିତ
ଯୋଡ଼ିଲେ ମେଲାଣି ହେବାପାଇଁ କରପତ୍ର ।
ଗୋବିନ୍ଦ ଆଜ୍ଞା ଦେଲେ ହେ ଶୁଣ କୁଶପାଣି
ଦେବଗଣ ଯାନ୍ତୁ ମଧ୍ୟ କରୁଛି ମେଲାଣି ।
ଆଜ୍ଞାପାଇ ଗଲେ ବ୍ରହ୍ମା ରୁଦ୍ରଙ୍କ କୁମର
ବାସବ ପବନ ଚନ୍ଦ୍ର ସୂର୍ଯ୍ୟ ରତ୍ନାକର ।
ଅନଳ ନୈର୍ଋତ କାଳଦଣ୍ଡ ଗ୍ରହଗଣ
ଯକ୍ଷ ରକ୍ଷ ଗନ୍ଧର୍ବ ଯେ ବିହନ୍ତା ଚାରଣ ।
ବାର ତିଥି ଯୋଗ ଯେ କରଣ ଲଘୁମାଳେ
ପକ୍ଷମାସ ବରଷାଦି ଉଠିଲେ ସକଳେ ।
ଶ୍ରୀମୁଖକୁ ଅନାଇଣ ସର୍ବେ ହେଲେ ଉଭା
ଅନେକ ସ୍ତୁତି କରିଣ ବ୍ରହ୍ମା ହରଦେବା ।
ଜୟ ଜୟ ନାରାୟଣ ପରମ ମଙ୍ଗଳ
ଜୟ ଜୟ ନାରାୟଣ ସର୍ବଜନ ପାଳ ।
ଜୟ ଜୟ ନାରାୟଣ ଦେବ କର ତ୍ରାହି
ଜୟ ଜୟ ନାରାୟଣ ଅଟୁ ଭାବଗ୍ରାହୀ ।
ଡାକିଲେ କୀଟକୁ ନାଥ କର ବଜ୍ରଅଙ୍ଗ
ଗର୍ବ କରିଲେ ଗଞ୍ଜୁ ତୁ ବ୍ରହ୍ମ ସୁଢ଼ଳାଙ୍ଗ ।
ଅସାଧୁଙ୍କୁ ସାଧୁ ନାଥ ସାଧୁ ପରିପାଳୁ
ସଛକୁ ରଖି ବୋଲାଉ ପରମ ଦୟାଳୁ ।
ଧର୍ମକୁ ସ୍ଥାପନ ତୁହି କରୁ ନାନାମାର୍ଗେ
ତେଣୁ ତୁହି ଅବତାର ହେଉ ଯୁଗେ ଯୁଗେ ।
ଏମନ୍ତ ସ୍ତୁତି କରିଣ ଗଲେ ଦେବଗଣେ
ଯେ ଯାହାର ପୁରେ ଯାଇ ମିଳିଲେ ତକ୍ଷଣେ
ଶ୍ରୀ ନୃସିଂହ ପୁରାଣ ଏ ଅଟେ ଅଗୋଚର
ଶ୍ରୀଗୋବିନ୍ଦ କୃପାରୁ ମୁଁ କରୁଛି ମାତର ।
କେବଳ ଯେ ଏହା ମୁହିଁ ସାଧୁଙ୍କର ମୁଖେ
ଯେ ଗ୍ରନ୍ଥ ଶୁଣିଥିଲି ମୁଁ ବସି ତାଙ୍କ ପାଖେ ।
କି ରୂପରେ ପରକୃତ କରିବି ଲିଖନ
ଏହି କଥା ଭାଳୁ ଭାଳୁ ଗଲା ମୋର ଦିନ ।
କହୁଁ କହୁଁ କାଳ ମୋର ହେଲା ଆସି ଶେଷ
ପୁରାଣ ବେଳକୁ ମୋତେ ବୟସ ବତିଶ ।
କି ରୂପେ ନୃସିଂହ ନାମ ନାରାୟଣ କହି
ମୁରାସୁରକୁ ମାରିବେ ସସ୍ତ୍ର ପାଦ ବହି ।
ଦ୍ୱିତୀୟ ଖଣ୍ଡରେ ବାଣୀ ହୋଇଛି ସମ୍ପୂର୍ଣ୍ଣ
ତୃତୀୟ ଖଣ୍ଡରେ ଏବେ ବଳୁଛି ମୋ ମନ ।
ଏଥକୁ ସୁଜ୍ଞଜନ ହେ ନ ଧର ମୋ ଦୋଷ
ଶାସ୍ତ୍ର ନ ପଢ଼ିଣ ମୁହିଁ କରୁଛି ସାହସ ।
ବିଦ୍ୟା ନ ଜାଣିଣ ମୁହିଁ ବକ୍ତାପଣ କରେ
ଘଟଣା କଥାମାନ ମୁଁ କହଇ ସଭାରେ ।
ବେଦମନ୍ତ୍ର ନ ଜାଣିଣ ପଶେ ଯେବା ଦାନେ
ଦୂର ଦେଶ ବାର୍ତ୍ତା ଯେହୁ କହେ ଅନୁମାନେ ।
ଅର୍ଥକୁ ନ ଜାଣି ଯେବେ ପଢ଼ଇ ଶୋଳକ
ଅକ୍ରିୟାବନ୍ତ ହୋଇଣ ବାଣୀ ଆରମ୍ଭେକ ।
ସର୍ବନିନ୍ଦା କରି ଯେହୁ ଆପେ ହୁଏ ବଡ଼
ଜୀବେ ଦୟା ନ କରି ଯେ ହୁଅଇ ଅଖଡ଼ ।
କଳହ କଥାକୁ ଯେହୁ ହନ୍ତି ଆଗୁଁ ସାର
ହସ୍ତରେ ଯଷ୍ଟି ବହଇ ଯେଉଁ ଦ୍ୱିଜବର ।
ପରକୁ ହିଂସା ସ୍ୱଭାବ ବହେ ଯେଉଁ ନିତ୍ୟେ
ମୀନକୁ ଯେ ମାରି ଯେହୁ ଭକ୍ଷେ ଅନୁବ୍ରତେ
ଦଣ୍ଡଶାସ୍ତ୍ର ପୁଣି ସେହୁ ମାନଇ କୌତୁକେ
ପୁରାଣ ଗ୍ରନ୍ଥ ଶୁଣିଣ ନିନ୍ଦଇ ଅଙ୍କେ ।
ବ୍ରତ ଉପବାସକୁ ଯେ ବିକି ବଞ୍ଚେ ଦିନ
ବାପର ବୋଲ ନକରେ ଯେବଣ ନନ୍ଦନ ।
ମୂର୍ଖପଣକୁ ଅଟଇ ମୁହିଁ ସେହି ମତି
ସାଧୁ ମହିମାରୁ କଲି ଏ ପୁରାଣ କୀର୍ତ୍ତି ।
ପଢ଼ିଣ ଶୁଣିଣ ନରେ ହୋଇବ ମୁକତ
ପଚାରିବା ଜନେ ହେବେ ଶ୍ରୀହରି ଭକତ ।
ଶ୍ରୀବିଷ୍ଣୁ ମହିମା ଏହୁ ନୃସିଂହ ପୁରାଣ
ବିପ୍ର ପୀତାମ୍ବର ଦାଶ ପଶିଲା ଶରଣ ।

**ଶ୍ରୀ ଶ୍ରୀ ନୃସିଂହ ପୁରାଣ ଦ୍ୱିତୀୟ ସାଗର ସମାପ୍ତ**

ବିପ୍ର ପୀତାମ୍ବର ଦାସଙ୍କ ବିରଚିତ

# ନୃସିଂହ ପୁରାଣ

## ତୃତୀୟ ସାଗର

(ନୂତନ ମୁଦ୍ରଣ)

୨୦୧୫






ପ୍ରକାଶକ ଓ ପ୍ରାପ୍ତିସ୍ଥାନ :

**ଧର୍ମଗ୍ରନ୍ଥ ଷ୍ଟୋର**

ପ୍ରତିଷ୍ଠାତା- ଶ୍ରୀ ବିଦ୍ୟାଧର ସାହୁ

ପରିଚାଳକ- ଶ୍ରୀ ମହିମା ପ୍ରସାଦ ସାହୁ

ଅଲିଶା ବଜାର, କଟକ-୨,

ଫୋନ୍ : ୦୬୭୧-୨୫୦୮୨୯୬

ମୂଲ୍ୟ : ପଞ୍ଚସ୍ତରୀ ଟଙ୍କା ମାତ୍ର

## ସୂଚିପତ୍ର



ସୂଚିପତ୍ର ସମାପ୍ତ

# ନୃସିଂହ ପୁରାଣ

## ତୃତୀୟ ସାଗର

ଆସୀନଂ କମଳାସନେ କମଳୟା ବକ୍ଷସ୍ଥଳାସୀନୟା,
ବିଦ୍ୟୁଦ୍ଦ୍ୟୋତସଟାସମୂହବିଲସତ୍ ସୌମ୍ୟାନନାମ୍ଭୋରୁହଂ ।
ଜାନ୍ୱୋରର୍ପିତଯୋଗପଟ୍ଟମୁଭୟୋର୍ବାହ୍ୱୋ ଦୃଢ଼ା ବାୟତୌ,
ହସ୍ତାଭ୍ୟାଂ ଧୃତଶଙ୍ଖଚକ୍ରମନିଶଂ ଲକ୍ଷ୍ମୀନୃସିଂହ ଭଜେ ।୧।
ନାରାୟଣଂ ନମସ୍କୃତ୍ୟଂ ନରଂ ଚୈବ ନରୋତ୍ତମଂ ।
ଦେବୀଂ ସରସ୍ୱତୀଂ ବ୍ୟାସଂ ତତୋଜୟ ମୁଦୀରୟେତ୍ ।୨।
ବେଦେ ରାମାୟଣେ ଚୈବ ପୁରାଣେ ଭାରତେ ତଥା ।
ଆଦ୍ୟେ ଚାନ୍ତେ ଚ ମଧ୍ୟେ ଚ ହରିଃ ସର୍ବତ୍ର ଗୀୟତେ ।୩।
ତଂ ବେଦଶାସ୍ତ୍ର ପରିନିଷ୍ଠିତଂ ଶୁଦ୍ଧବୁଦ୍ଧିଂ, ଚର୍ମାମ୍ବରଂ ସୁରମୁନୀନ୍ଦ୍ରନୁତଂ କବୀନ୍ଦ୍ରଂ ।
କୃଷ୍ଣତ୍ୱିଷଂ କନକପିଙ୍ଗଜଟାକଳାପଂ ବ୍ୟାସଂ ନମାମି ଶିରସା ତିଳକଂ ମୁନିନାଂ ।୪।
ନାହଂ ତିଷ୍ଠାମି ବୈକୁଣ୍ଠେ ଯୋଗୀନାଂ ହୃଦୟେ ନ ଚ ।
ମଦ୍ଭକ୍ତା ଯତ୍ର ଗାୟନ୍ତି ତତ୍ର ତିଷ୍ଠାମି ନାରଦ ।୫।

### ବନ୍ଦନା ।

ଜୟ ଜୟ ବ୍ୟାସଦେବ ବେଦଶାସ୍ତ୍ରଜ୍ଞାତା
ଅଷ୍ଟାଦଶ ପୁରାଣର ଯେ ଅଟେ ବକତା ।
ଜୟ ଜୟ ଶୁଦ୍ଧଅଙ୍ଗ ସ୍ୱୟଂ ବ୍ରହ୍ମଋଷି
ଚର୍ମାମ୍ବର ପରିଧାନ ଶରୀର ବିକାଶି ।
ସ୍ୱର୍ଗ ମର୍ତ୍ତ୍ୟ ପାତାଳ ଏ ତିନିପୁରେ ଥାଅ
କବିଙ୍କ ଉପରେ କବି ଇନ୍ଦ୍ର ଯେ ବୋଲାଅ ।
କୃଷ୍ଣବର୍ଣ୍ଣ ଦେହ ଯେ ପିଙ୍ଗଳ ଜଟାଭାର
ଆହେ ମୁନି ତୁମ୍ଭ ପାଦେ କୋଟି ନମସ୍କାର ।
ଜୟ ଜୟ ଜଗପତି ଜଗତକାରଣ
ପୃଥ୍ୱୀଆଦି ପଞ୍ଚଭୂତ ଯାହାଙ୍କ ଭିଆଣ ।
ଜୟ ଜୟ ନାରାୟଣ କମଳାର ପତି
ଶଙ୍ଖ ଚକ୍ର ଗଦାପଦ୍ମ ହସ୍ତ ଦିବ୍ୟଜ୍ୟୋତି ।
ଜୟ ଜୟ ନାରାୟଣ ସାରଦାର ନାହା
କଉସ୍ତୁଭ ମାଳା ଶୋହେ ଆହେ ଚଉବାହା ।
ଜୟ ଜୟ ନାରାୟଣ ଲକ୍ଷ୍ମୀଦେବୀ ପତି
ଭକ୍ତି ଚିନ୍ତିବା ମାତ୍ରକେ ଫିଟଇ ଦୁର୍ଗତି ।
ଜୟ ଜୟ ନାରାୟଣ ସ୍ଥୂଳ ବେନି ବାହୁ
ଦୁଷ୍ଟଜନଙ୍କୁ ନିବାରି ସନ୍ଥେ ଦୟା ବହୁ ।
ଜୟ ଜୟ ନାରାୟଣ ଘନ କଳେବର
କୀଟୁଁ ବ୍ରହ୍ମ ପରିଯନ୍ତେ ଗର୍ଭେ ତୁମ୍ଭେ ଧର ।
ଜୟ ଜୟ ନାରାୟଣ ନୃସିଂହ ମୂରତି
ମକରକୁଣ୍ଡଳ କର୍ଣ୍ଣମୂଳେ ବିରାଜନ୍ତି ।
ଜୟ ଜୟ ନାରାୟଣ ଶୋହେ ଝୀନବାସ
କ୍ଷୀଣ କଟୀକି ଡମ୍ବରୁ ଉପମା ବିଶେଷ ।
ଚରଣର କଠାଉକୁ ରତ୍ନମୁଦି ଶୋହେ
ଦିଶଇ ପାଦ ଅଙ୍ଗୁଳି ପ୍ରବାଳ ପରାୟେ ।
କୁନ୍ଦିଲାହୀରାର ପ୍ରାୟେ ଦିଶେ ନଖରେଖା
କାଛରେ ଝଟକେ ଯେହ୍ନେ ପ୍ରତିମାର ଶିଖା ।
ସେରୂପେ ହେ ସ୍ୱାମୀ ଦିଶେ ତୁମ୍ଭର ଯେ ରୂପ
ନରଅଙ୍ଗକୁ ବହିଣ ବିନାଶ କୌଣପ ।
ଭକ୍ତଜନମାନଙ୍କର ଅଟ ମୋକ୍ଷଦାତା
ଦୁଷ୍ଟ କାଳରାହୁ ସନ୍ଥଜନ ମାତା ପିତା ।
ନିରେଖ ଜନର ବନ୍ଧୁ ସର୍ବଲୋକ ପ୍ରାଣ
ଦୁଃଖୀଜନ ସଙ୍ଖାଳି ହେ ଅଟ ନାରାୟଣ ।

କୃପାବାରାନିଧି ହେ ସୁଦୟା କର ମୋତେ
ନୃସିଂହ ରୂପ କି ରୂପେ ବିକାଶିଲେ ମର୍ତ୍ତ୍ୟେ ।
ସେହି ମହିମା କହିବା ହେଉ ଭାବଗ୍ରାହୀ
ମୁରଦୈତ୍ୟକୁ ନାଶିବେ କେହ୍ନେ ଦେହ ବହି
ଆଦି ସତ୍ୟ ଯୁଗର ସେ ଅଟେ ଏହୁ ଗ୍ରନ୍ଥ
ବର୍ଣ୍ଣନା କରିବା ପାଇଁ ମୁହିଁ କି ସମର୍ଥ ।
କଳିଯୁଗ ମଧ୍ୟେ ମୁହିଁ ଅଟେ ନର ଜଣେ
ଛପନ କୋଟି ଜୀବରେ ଜୀବନେ ବଖାଣେ ।
ନୃସିଂହ ପୁରାଣ ବୋଲି ଅଟେ ଯେଉଁ ଗ୍ରନ୍ଥ
ପୂରଣ କରିବ ମୋର ତାହା ଜଗନ୍ନାଥ ।
ବୁଝିଲେ ଶ୍ରୀ ହରି ନାମ ଦିନେ ନାହିଁ ପଢ଼ି
ଅଧମ ଜନ ସଂସାରେ ମୁହିଁ ଅଛି ବେଢ଼ି ।
ବାତୁଳଙ୍କ ପ୍ରାୟ ହୋଇ ଲେଖୁଛି ପୁରାଣ
ମୁଖରେ ମୁଁ ଦିନେ ଭଜି ନାହିଁ ନାରାୟଣ ।
ଜଗନ୍ନାଥ ନାମ ମୋତେ ମୁଖେ ଆସୁ ନାହିଁ
ସ୍ୱପନେ ହେଲେହେଁ ବେଳେହରି ବୋଲି ନାହିଁ
ଶ୍ରୀ ମଧୁସୂଦନ ନାମ ସୁମରିବି ଯେବେ
ପାଞ୍ଚଦିନରେ ହେଲେ ନ ଆସେ ପଦକେତେ ।
ମୁରାରୀର ନାମଗୋଟି ପଢ଼େ ତେବେ ଖୋଜି
ଜଡ଼ାଲୋକଙ୍କ ପରାୟେ ରହେ ଚକ୍ଷୁ ବୁଜି ।
ରାମକୃଷ୍ଣ ନାମ ଆଉ ଆସିବ କାହିଁକି
ତେଣୁ ମୁହିଁ ଶାରଦାଙ୍କୁ ଜଣାଉଛି ଡାକି ।
ହରିନାମ ଗୋଟି ଆସୁ ନାହିଁ ବୋଲିକରି
ବସି ଲେଖନ୍ତେ ବରଷେ ଯାଏ ଖଡ଼ି ଧରି ।
କେବେହେଁ ତ ନ ଆସିଲା ଗୋବିନ୍ଦର ନାମ
ବାମନ ଶ୍ରୀବନମାଳୀ ପୁରୁଷ ଉତ୍ତମ ।
ରାଜୀବନେତ୍ରେ ଶ୍ରୀଧର ରାମ ଶ୍ରୀନିବାସ
ବରାହ ଯେ ନରସିଂହ କମଳା ବିଳାସ ।
କେଶବ ମୁରାରି ଦାମୋଦର ଭଗବାନ
ଅଚ୍ୟୁତ ଅନାଦି ଆଦିକନ୍ଦ ଜନାର୍ଦ୍ଦନ ।
ଶ୍ରୀ ମଧୁସୂଦନ ଦୈତ୍ୟ ଅରି ଚକ୍ରପାଣି
ମାଧବ ଯେ ମଧୁରିପୁ ଭକ୍ତ ଚିନ୍ତାମଣି ।
କୃପାବାରିଧି କରୁଣା କର ଜଗନ୍ନାଥ
ଲକ୍ଷ୍ମୀର ବଲ୍ଲଭ ଆହେ ଶଙ୍ଖଚକ୍ର ହସ୍ତ ।
ଶ୍ରୀଗୋପାଳ ଗୋପୀନାଥ ଗୋବର୍ଦ୍ଧନ ଧର
ପଦ୍ମନାଭ ପଦ୍ମନେତ୍ର ପ୍ରଭୁ ପୀତାମ୍ବର ।
ଶ୍ରୀ କୃଷ୍ଣ ହେ କୃପାସିନ୍ଧୁ ଗୋପ ଚୂଡ଼ାମଣି
ନାରାୟଣ ଦୀନଜନବନ୍ଧୁ ଗୋପପାଣି ।

ମଦନ ମୋହନ ଘନଶ୍ୟାମ ବେଣୁପାଣି
ଏ ନାମରୁ ଗୋଟିଏ ମୁଁ ଦିନେ ନାହିଁ ଶୁଣି ।
ତଥାପି କାଳେ ଆସିବ ହେଲେ ସାଧୁ ମେଳେ
ତେବେ ହରିନାମ ଗୋଟି ନ ଆସଇ ହେଳେ ।
ବୁଝିଲେ ହରିର ହେଲେ ଅନ୍ତ କେ ପାଇବ
ଅନ୍ତ କରି ନ ପାରନ୍ତି ଯାହା ବ୍ରହ୍ମା ଶିବ ।
ମୁଁ ତାହା ମାନବ ହୋଇ ପାଇବି କି ଅନ୍ତ
ପୀତାମ୍ବରଙ୍କୁ ରଖିବେ ପ୍ରଭୁ ଜଗନ୍ନାଥ ।
ତାରି ନାହାନ୍ତି ବା କେତେ ଭକ୍ତ ନାରାୟଣ
ପ୍ରଥମେ ନରଦେହରେ ପ୍ରହଲ୍ଲାଦ ଜାଣ ।
ବିଦୁର ସୁଗ୍ରୀବ ଆଉ ବିଭୀଷଣ ରାଜା
ଅଠାଶୀ ସହସ୍ରଯାଏ ଯେତେ ବ୍ରହ୍ମଦ୍ୱିଜା ।
ଯୁଧିଷ୍ଠି ନାରଦ ମୁନି ଅଜାମିଳ ଧ୍ରୁବ
ଅନ୍ଧ ଦରିଦ୍ର ପାଣ୍ଡବ ଅକ୍ରୁର ବାନ୍ଧବ ।
ବଳି ବେଣୁ ମନଧାତା ସିଦ୍ଧ ହନୁମାନ
ଗୋପିକା ହେ ଯଜ୍ଞପତ୍ନୀ କୁବେର ଅର୍ଜ୍ଜୁନ ।
ବାକମୁକୁଣ୍ଡ ବଶିଷ୍ଠ ଆଦି ଅରୁନ୍ଧତୀ
ପିଙ୍ଗଳା ଯେ ଅମରୀଷ ଅହଲ୍ୟା ଦ୍ରୌପଦୀ ।
ଉଦ୍ଧବ ସାତ୍ୟକି କୃପବ୍ରହ୍ମା ଅଶ୍ୱଥାମା
ଶବର ଶବରଣୀ ଯେ ସୁଦେଷ୍ଣା ସୁଦାମା ।
ଜନ୍ତୁ ମଧ୍ୟରେ ମଣ୍ଡୁକି ମୂଷିକ ମୃଗୁଣୀ
ଗରୁଡ଼ ଗଜ ଗ୍ରାହ ଯେ କୁବୁଜା ମାଳୁଣୀ ।
ମଧୁ ଅସୁର ହରିଣ୍ୟ ରାବଣ ଯେ ରାୟେ
ଏହିରୂପେ କେତେ ତରିଛନ୍ତି ଅନ୍ତ ନୋହେ
ଭୋ ମହାପ୍ରଭୁ ନୃସିଂହ ପ୍ରଭୁ ନାରାୟଣ
ଅଟନ୍ତି ଲକ୍ଷ୍ମୀ ସାରଦା ଦୁହେଁ ତୁମ୍ଭ ପ୍ରାଣ ।
ଲକ୍ଷେ ଲକ୍ଷଣ ଘେନି ଶ୍ରୀମାତା କମଳିନୀ
ଦକ୍ଷିଣଭାଗେ ସେବନ୍ତି ବସି ମନ ଜାଣି ।
କୋଟି ଲକ୍ଷ ଗ୍ରନ୍ଥ ଘେନି ବେଦବର ସୁତା
ବସି ବାମଭାଗେ ପଢ଼େ ପୁରାଣ ସେ ଗୀତା ।
ସେ ମାତା ଶାରଦାମୋତେ ସଦାସେବା ମୋର
ଭୋ ମାତା ଶାରଦାମୋତେ ସୁଦୟା ଯେ କର ।
ଅପଣ୍ଡିତ ଲୋକଙ୍କୁ ତୁ ପଣ୍ଡିତ ଯେ କରୁ
ସବୁଙ୍କ ଦାରିଦ୍ର୍ୟ ଦୋଷ ଦୟାକରି ହରୁ ।
ବିଧାତା ପୁତ୍ରଙ୍କର ତୁ ଅଟୁ ନିଜ ଭଗ୍ନି
ବୈକୁଣ୍ଠପୁର ପାଳିଲୁ କରି ପୁର ତିନି ।
ସେ ବିଷ୍ଣୁ ଭକତ ଲୋକ ଅଟନ୍ତି ତୋ ପୁତ୍ର
ସବୁରି ମାତା ହୋଇଣ ପାଳୁ ତୁ ଜଗତ ।

ଆପଣ ତ ସମସ୍ତଙ୍କ କଣ୍ଠେ ବିଜେ କଲେ
ଦେବେ ସୁଦୟା କରନ୍ତି ଲୋକଙ୍କୁ ସେ ଭଲେ ।
ତୋହର କରୁଣା ମାଗୋ ଯେଉଁ ଲୋକେ ନାହିଁ
ଅଦାତା ହୋଇ ନିଷ୍ଠୁର ଭାଷା କହେ ସେହି ।
ତୁ କଣ୍ଠେ ନ ଥିଲେ ପୃଥ୍ୱୀ ନୁହନ୍ତାଟି ଆଉ
ବାଳକ ଗୋଳକଲେ ତୁ ମାତ ହୃଦେ ଥାଉ ।
ଯେ ଯାହା ମାଗିଲେ ତତକାଳେ ଯାଇ ମିଳେ
ତୋ ଦୟା ନୋହିଲେ କେହି ନ ଦିଏକବେଳେ ।
ନ ମିଳିବାଠାରେ ତୋତେ କରନ୍ତି ସେ ନିନ୍ଦା
ବୋଲନ୍ତି କଣ୍ଠେ ତାର କି ନ ଥିଲେ ସାରଦା ।
ତେଣୁ ମାତା ସବୁଙ୍କର ହୃଦେ ଯାଇ ବସୁ
ମୋହର ଦୁଷ୍କୃତରାଶି ନାଶଯାଉ ଆଗୁଁ ।
ଜୟ ଜୟ ଧବଳାଙ୍ଗ ମାତା ଶଶୀମୁଖୀ
କର ଯେତେ ଅନୁଗ୍ରହ ନାରାୟଣ ସଖି ।
ତୋର ଆଜ୍ଞାରେ ଲେଖିଲି ପ୍ରଥମ ଦ୍ୱିତୀୟ
ତୃତୀୟ ସାଗର ଏବେ ପଦ କହିଦିଅ ।
କିରୂପେ ନାଶିବେ ମୁରଦୈତ୍ୟ ନାରାୟଣ
ବଦରିକାନଗ୍ରେ ହେବେ କି ରୂପେ ସେ ଜନ୍ମ
କି ରୂପେ କୃଷ୍ଣବଲ୍ଲଭ ଘରେ ଅବତରି
ସ୍ୱୟଂ ଜନ୍ମିବେ ମାନବ ତନୁ ପ୍ରଭୁ ଧରି ।
ସେ କଥା ଗୋଚର ମୋତେ କରବାକ୍ୟ ଦେବୀ
ଆପଣ ପ୍ରସନ୍ନ ହେଲେ ଲେଖନ ଧରିବି ।
ତରିବେ ସଂସାରୁ ପ୍ରାଣୀ ଶୁଣି କର୍ଣ୍ଣପଥେ
ବିପ୍ର ପୀତାମ୍ବରକୁ ଯେ ରଖିବେ ଶ୍ରୀନାଥେ ।

❋ ❋ ❋

## ମୁରାସୁରର ବିଭା

ଶୁଣ ପଣ୍ଡିତେ ତୃତୀୟ ଖଣ୍ଡର ଯେ ବାଣୀ
ନାରଦ ଆଗେ କହନ୍ତି ଯାହା କୁଶପାଣି ।
ଶୁକ ମୁନିଙ୍କି ପୁଚ୍ଛନ୍ତି ତାହା ପରୀକ୍ଷିତ
ସୁବର୍ଣ୍ଣ ଦକ୍ଷିଣା ତାଙ୍କୁ ଦେଇ ଅଇବ୍ରତ ।
ଲକ୍ଷେ ହୀରା ଲକ୍ଷେ ନୀଳା ଲକ୍ଷେ ମୋତି ଦେଇ
ମୁନିଙ୍କ ପାଦ ସେବିଣ ପୁରାଣ ପୁଚ୍ଛଇ ।
ବୋଇଲେ କହିବା ହେଉ ଆହେ ଋଷି ମୋତେ
ଶ୍ରୀ ନୃସିଂହ ମହାପ୍ରଭୁ ଜନ୍ମିଲେ କେମନ୍ତେ ।
କିରୂପେ ମୁର ଅସୁର ବଂଶ କଲେ ହତ
କେତେ ଯେ ପୁତ୍ର ତାହାର କାହା ଠହୁଁ ଜାତ ।
କେତେକ ଯୁବତୀ ସେହୁ ବିଭାହେଲେ ପୁଣି
ଏକ ଯୁବତୀ ସେ ବିଭା ହୋଇଲାକ ଜାଣି ।

ଏକଥା ଫେଡ଼ି କହିବା ହେଉ ମହାମୁନି
ଶ୍ରୀ ନୃସିଂହ ପୁରାଣ ଏ ଅତି ପୁଣ୍ୟ ଧ୍ୱନି ।
କେତେହେଁ ପୁଣି ତାହାର ହେଲେ ପୁତ୍ରଜନ୍ମ
କିରୂପେ ତାହାକୁ ବଧକଲେ ପରଂବ୍ରହ୍ମ ।
ରାଜା ପୁଚ୍ଛନ୍ତେ କହିବେ ସେହି ଶକ୍ତିଗୋତ୍ର
ସାବଧାନେ ଶୁଣ ଏହୁ ପୁରାଣ ଚରିତ ।
ନାରଦ ମହର୍ଷି ପିତାମହ ପାଶେ ବସି
ପାଦାର୍ଘ୍ୟ ଦେଇଣ ସେହୁ ପୁଚ୍ଛନ୍ତି ଆଶ୍ୱାସି ।
ବୋଇଲେ କହ ତୃତୀୟ ଖଣ୍ଡର ଯେ ବାଣୀ
ମୁରର ଯେତେକ ପୁତ୍ର ଜନ୍ମିଲେ ଧରଣୀ ।
ଧାତା ବୋଇଲେ ସେ କଥା କହିବା ତା ଶୁଣ
ବଡ଼ ଗହନ ଅଟେ ଏ ନୃସିଂହ ପୁରାଣ ।
ସୁପୁତ୍ର ଥିଲେହେଁ ବଂଶେ ଶୁଣିବ ତ ଗ୍ରନ୍ଥ
ଯଥା ଅନୁକ୍ରମେ କରି ପୁଜା ଦାନ ଚିତ୍ତ ।
ମୃତ୍ୟୁ ଅପମୃତ୍ୟୁ କାଳମୃତ୍ୟୁ ଯିବ ତରି
ଦେହଅନ୍ତେ ବସିବ ସେ ବିଷ୍ଣୁ ନିଜପୁରୀ ।
ମୁର ଅସୁରର ଶୁଣ ପୁତ୍ର ଜନ୍ମ ଲୀଳା
ସତର ଲକ୍ଷ ପର୍ଯ୍ୟନ୍ତେ ଉପୁଜିଲେ ବଳା ।
ସେ ମୁରାସୁରର କଥା ଅଟେ ଅଲୋକିତ
ସୁରଗଣେ ସେବାକରି ରହିଲେ ଯାବତ ।
ରହିଲେକ ବସୁନ୍ଧରା ତାର ବୋଲ ପାଳି
ବଚନ ମାତ୍ରକେ ଜଳ ବର୍ଷେ ମହୀସ୍ଥଳୀ ।
ଅଗ୍ନି ଯେ ରୋଷେଇଶାଳେ ଥାଏ ଅନୁବ୍ରତେ
ମଣୋହି ଭୋଜନ ଲାଗି କରାଏ ସେ ନିତ୍ୟେ ।
ପବନ ଦେବତା ଥାନ୍ତି ତା ଆଜ୍ଞାକୁ ଖଟି
ବଚନ ମାତ୍ରକେ ଶୂନ୍ୟେ ରହିଥାନ୍ତି ଘୋଟି ।
ଏମନ୍ତେ ପଞ୍ଚଭୂତେ ସେ ଅବୁବ୍ରତେ ଥାନ୍ତି
ଦଶଦିଗପାଳେ ସେବା କ୍ଷଣେ ନ ଛାଡ଼ନ୍ତି ।
ସେନାପତିମାନଙ୍କର ଅକଳନା ଥାଟ
ଲକ୍ଷେ ଯୁଣ ଜମ୍ବୁଦ୍ୱୀପ ଅସୁରର ରାଷ୍ଟ୍ର ।
ମଦନାବତୀର ମୂଳେ ତେତିଶ ଯେ କୋଟି
ଝଡ଼ା ମୁଦ୍‌ସୂଳୀ ମିଶି ତିନିପଦ୍ମ ଖଟି ।
ସତରଲକ୍ଷ କୁମର ନାତି ନବଲକ୍ଷ
ଅଣନାତି ତିନିଲକ୍ଷ ବଢ଼ନ୍ତି ଅସଂଖ୍ୟ ।
ବିଂଶଶତ ଯୋଜନ କନକାବତୀ ପୁର
ତିନିଶ ଯୋଜନ ରାଜା ଉଆସ ବିସ୍ତାର ।
ମଦନାବତୀର ପୁତ୍ର ନାତି ମିତ୍ରଲାଭ
ମୁକୁଳ ଯେ ମହୀନାଗ ମୁଷ୍ଟିକ ମୁର୍ତ୍ତବ ।

ମହାକର୍ଣ୍ଣ ମହାଧ୍ୱଜ ମନ୍ଦ୍ର ମହାଶୀଳ
ମହାତେଜ ମହାରୂପ ମତ୍ତ ମହାକାଳ ।
ମହାରାମ ମହାସିଂହ ମଣ୍ଡଳ ଯେ ମୟ
ମହାମଣ୍ଡଳ ଯେ ମୀନକେତନ ତନୟ ।
ମାତାର ନାମ ଅଟଇ ଯେ ମଦନାବତୀ
ତେଣୁ ପୁତ୍ର ନାମ ସେହୁ ବହିଲେ ଆକୃତି ।
ଯମ ପଶି ନ ପାଇଇ ନ ପଶଇ ରୋଗ
ମୁରର ଲାଗି ସେ ପୁରେ ସମସ୍ତେ ଆରୋଗ୍ୟ ।
ନାତି ନାମ ମୁରାଷ୍ଟବ ଆବର ମୁଷ୍ଟିକ
ମକରା ମଘରା ମନମଥ ମୃତାନ୍ତକ ।
ଏ ବିଧି ମହୀକି ହେଲେ ମୁରବଂଶ ଭାରି
କଷ୍ଟ କଷ୍ଟ ହୋଇ ବହିଥାଏ ବସୁନ୍ଧରୀ ।
ଏକଥା ଶୁଣି ନାରଦ ହେଲେ ଆଚମ୍ବିତ
କହନ୍ତି ଯେ ଶୁକମୁନି ଶୁଣ ପରୀକ୍ଷିତ ।
ନାରଦ ଯେ ପଚାରନ୍ତି ପିତାପାଦେ ନମି
ଏତେ ଯୁବତୀ ଆଣିଲା ମୁର କାହୁଁ ଭ୍ରମି ।
ଏ କଥାଟି ଆଗ ମୋତେ କହନ୍ତୁ ହେ ତାତ
ତବ ମୁଖୁ ଶୁଣି କ୍ଷୟ ଯାଉ ମୋ ଦୁରିତ ।
ବ୍ରହ୍ମା ବୋଇଲେ ତେବେହେଁ ଶୁଣ ସେ ସମ୍ବାଦ
ନୃସିଂହ ପୁରାଣ ଏକା ଅଟେ ମୋକ୍ଷପ୍ରଦ ।
କହିବା ମୁରାସୁରର କଥା ଏବେ ଶୁଣ
ବାଳକାଳେ ବିଭାହୋଇଥିଲେ ଯେତେ ଜାଣ
ମଦନାବତୀର ବିଭା ଉତ୍ତାରେଣ ରାଣୀ
ତେତିଶକୋଟି କନ୍ୟା ଯେ ବିଭାହେଲା ପୁଣି ।
ଏହି ପ୍ରସଙ୍ଗ କହିବା ଏବେ ତାହା ଶୁଣ
ଯେ ରୂପେ ସେ ଦେବକନ୍ୟା ବିଭାହେଲା ପୁଣ ।
ସ୍ୱର୍ଗରେ ବସିଲା ଯେତେବେଳେ ମୁରାସୁର
ଦେବେ ପାଳନ୍ତେ କନ୍ୟାକୁ ଦେଖିଲା ଅସୁର ।
ମନରେ ପାଞ୍ଚିଲା ହେବି ଏହାଙ୍କୁ ମୁଁ ବିଭା
ଦେବଙ୍କୁ ଆଶ୍ୱାସି ଆଣି ବସି କଲା ସଭା ।
ବୋଇଲା ଦେବେ ଏବେ ହୋ ବୁଲୁଛ କାହିଁକି
ମୋ ବୋଲକଲେ ତୁମ୍ଭଙ୍କୁ ପୋଷିବି କାହିଁକି ।
ଇନ୍ଦ୍ରକୁ ଯେ ଲୋଡୁଛ କି କାର୍ଯ୍ୟ ଅଛି ତହିଁ
ତୁମ୍ଭଙ୍କୁ ପୋଷନ୍ତା ଭାତ ବର୍ତ୍ତନ କି ଦେଇ ।
ଘର ଛାଡ଼ିଲେ ପ୍ରାଣୀକି ଲାଗେ ସଙ୍ଗବାଧା
ଦରିଦ୍ରଲୋକ ପରାୟ ପୀଡ଼େ ଆସି କ୍ଷୁଧା ।
ମୁହିଁ ଏବେ କହୁଅଛି କଥା ଏକ କର
ଅଚିନ୍ତା ହୋଇ ରହିବ ଯେବେ କରି ଘର ।

ଅଛନ୍ତି ତୁମ୍ଭର ଝିଅମାନେ ଜାଣ ଯେତେ
ତହିଁରୁ ଜଣେ ଜଣେ ତ ବିଭାକର ମୋତେ ।
ଶୁଣି ଦେବତାଏ ବସିଲେକ ପୋତି ମଥା
ନିର୍ଜ୍ଜୀବ ଲୋକ ପ୍ରାୟେକ ନ କହିଲେ କଥା ।
ମୁରାସୁର ବୋଇଲା ହୋ ତୁନି ତ ହୋଇଲ
ମୋହର ବାକ୍ୟ ଶୁଣିଣ କଥା ନ କହିଲ ।
ଦେବେ ବୋଇଲେ କାହିଁକି କଥା ନ କହିବୁ
ତବ ବୋଲ ନ କଲେ ତ କ୍ଷୟ ଯେ ହୋଇବୁ ।
ଏ କଥାଗୋଟି ବିଚାର କରି ସର୍ବ ଚିତ୍ତେ
କାଲି ଆସି ଆପଣଙ୍କୁ କହିବୁ ସମସ୍ତେ ।
ଏତେ କହି ଦେବତାଏ ଗଲେ ସର୍ବେ ଚଳି
ବସିଲେ ସଭା କରିଣ ମନେ ମନେ ଭାଳି ।
କେ ବୋଲଇ ଦୈତ୍ୟ ନିଶ୍ଚେ ନେଲା ଆମ୍ଭଜାତି
କେ ବୋଲଇ ଆମ୍ଭର ହୋ ସରିଲା ବିଭୂତି ।
କେ ବୋଲେ ଦେବ ମହତ୍ତ୍ୱ କୁଳ ଯିବ ବୁଡ଼ି
କେ ବୋଲେ ଚାଲ ହୋ ଯିବା ସ୍ୱର୍ଗପୁର ଛାଡ଼ି
କେ ବୋଲେ ନ ଗଲେ ତ ସତେ ଜାତି ଗଲା
ଦୈତ୍ୟ ଛାର ବେଳେ ଏହା କି ବୋଲି ମାଗିଲା ।
ସଂସାର ଲୋକେ ଶୁଣିଣ କି ବୋଲିବେ ପୁଣି
ଦୈତ୍ୟକୁଯେ ଦେବତାଏ କନ୍ୟା ଦେଲେ ଆଣି ।
ଏମନ୍ତ ବୋଇଲେ ଲଜ୍ଜା ଉପୁଜିବ କେତେ
କିମ୍ପା ଚଣ୍ଡାଳେ ଆମ୍ଭଙ୍କୁ ନ ରଖିଲେ ସୁଷ୍ଟେ ।
ଏରୂପେ ଭାଳିନ୍ତି ସଭାକରି ଦେବଗଣେ
ବିଶ୍ୱାବସୁ ଗନ୍ଧର୍ବର ତୁ ହୋ ପୁତ୍ର ଜଣେ ।
ସୁରସେନ ବୋଲିଣ ଯେ ଅଟେ ତାର ନାମ
ସେ ବୋଇଲା କାହିଁକି ହୋ ହୁଏ ଏଡ଼େ ତମ ।
ମୋହର ସିଦ୍ଧାନ୍ତ ଶୁଣ କହୁଅଛି ଏବେ
ବଶିଷ୍ଠ ଋଷି ମୁଖରୁ ଶୁଣିଛି ଯେ ପୂର୍ବେ ।
ଏକଥା ଗୋଟି କଲେ ତ ନାହିଁ କିଛି ଦୋଷ
ଦୁହିତା ଦେଇ ଶରଣ ବେଗେ ଯାଇ ପଶ ।
ଅସମୟ କାଳେ ପୁଣ ଦୋଷ ନାହିଁ ଲେଖି
ନୀଚକୁ ହେଲେହେଁ ସେବାକରି ପ୍ରାଣ ରଖି ।
ମୃଗର ପାଦ ଧରିବ କାର୍ଯ୍ୟ ନେବାପାଇଁ
ବଶିଷ୍ଠ ଋଷିଠାରୁ କେ ଅଛି ଶ୍ରେଷ୍ଠହୋଇ ।
ସେ ପୁଣି ଚାଣ୍ଡାଳ ଘର ଝିଅ ହେଲେ ବିଭା
ତାଙ୍କୁ ଦୋଷଦେଇ ନପାରିଲେ କେହିଦେବ
ସେ କନ୍ୟାଠାରୁ ଜନ୍ମିଲେ ପୁଣି ଶକ୍ତି ମୁନି
ପୁଣି ସେ ବେଳେକ ବିଭା ହେଲେ ଶବରୁଣୀ ।

ତାହାଙ୍କର ଦୋଷ କେହୁ ଦେଲେକି ହେ ଶୂର
ସେ ଋଷିଠାରୁ ଜନ୍ମିଲେ ପୁଣି ପରାଶର ।
ସେହି ପରାଶର ଋଷି ରମିଲେ କୈବର୍ତ୍ତୀ
କେହି ନକଲେ ତାହାଙ୍କୁ ଦୋଷୀ ଜାଣ କ୍ଷିତି ।
କୈବର୍ତ୍ତୀ ଗର୍ଭୁ ଜନ୍ମିଲେ ବ୍ୟାସଦେବ ପୁଣ
ମୁନିଏ ଅଟନ୍ତି ଏଡ଼େ ଜାତି ସଂସାରେଣ ।
ବୁଝିଲେ ବ୍ରହ୍ମାର ପୁତ୍ର ଅଟେ ମୁରାସର
ପ୍ରକୃତି ମନ୍ଦରୁ ସିନା ହୋଇଲା ଅସୁର ।
ନୋହିଲେ ଲେଖାହୁଅନ୍ତା ଋଷି ସଙ୍ଗେ ଜଣେ
ମୁରକୁ ସାନକରି ନ ମଣ ଦେବଗଣେ ।
ଏମନ୍ତ ବୋଲି କହିଲା ଯହିଁ ସୁରସେନ
ଶୁଣି ମନରୁ ସଂଶୟ ଛାଡ଼ ଦେବଗଣ ।
ଗନ୍ଧର୍ବର ସେ କଥାକୁ ଦେବ ପ୍ରତିପାଳି
ପାଞ୍ଚିଲେ ଝିଅ ଘିଅକୁ କେପାରେ ସମ୍ଭାଳି ।
ସମ୍ଭାଳିଲେ କାଳେ ପୁଣି ହୁଏ ବିଡ଼ମ୍ବନ
ଯୁବାସ୍ତିରୀ ଦେଖି ମୁର କହେ ନେବି ପଣ ।
ବାଳୁତକାଳୁ ପ୍ରଦାନ ଯେବେ କରିଥାନ୍ତୁ
ଦାନବ ଗ୍ରହଣ କିମ୍ବା ଚକ୍ଷୁରେ ଦେଖନ୍ତୁ ।
ଯୁବାକନ୍ୟା ଘରେଥିଲେ ପରେ ଦୃଷ୍ଟି ହୋଇ
ପଣ୍ଡିତଲୋକ ବୁଝିଣ ଦାନ କରିଦେଇ ।
ସମ୍ଭାଳିଲେ କାଳେ ପୁଣି ଏହୁ ବିଡ଼ମ୍ବନ
ଅଯୋଗ୍ୟ ଲୋକ ଯେ ଏହା ରଖେ ସାଇତିଣ ।
ବୁଝିଲେ ଆମ୍ଭଙ୍କୁ ହେଲେ ଅଛି କାହିଁ ଠାବ
ମୁର ପାଶେ ନଗଲେତ ଘରଦ୍ୱାର ଯିବ ।
ଏତେ ବିଚାରିଣ ଦେବେ ଚଳିଲେ ବାହୁଡ଼ି
ମୁରର ଆଗେ ବସିଲେ ଯାଇ ସଭା ମାଡ଼ି ।
ବୋଇଲେ ରାଜା ଶୁଣିମା ହେଉ ଆମ୍ଭ ବୋଲ
ଦୁହିତା ଦେଲୁ ଆମ୍ଭର ବନ୍ଧୁ ତୁମେ ହେଲ ।
ଏକଥାରେ ସନ୍ଦେହ ତ କିଛି ନାହିଁ ଆଉ
କେବଳ ଆମ୍ଭଙ୍କୁ ଏକା କୃପା ତୋର ଥାଉ ।
ଶୁଣିଣ ଉଷତହେଲା ସେ ମୁର ଅସୁର
ଦେବଙ୍କୁ ସୁଖେ ରଖିଲା ନେଇ ସ୍ୱର୍ଗପୁର ।
ତେତିଶକୋଟି ଦେବଙ୍କ କନ୍ୟା ବିଭାହେଲା
ଚଉଠି ଆବର ସାତମଙ୍ଗଳା ଯେ କଲା ।
ଗଣିଣ ପ୍ରମାଣେ ବିଭା ସେ ତେତିଶକୋଟି
ଗଉରୀ କାଳିକା କେହୁ ସୁଚାରୁ ବିମ୍ବୋଷ୍ଠୀ ।
କେ ସୁନ୍ଦରୀ ଯୁବା ନବଯୁବା ବାରଙ୍ଗନା
କେ ଗଜଗମନୀ କେହୁ ଶଶିମୁଖୀ ବାମା ।

ଏରୂପେ କନ୍ୟାକୁ ବିଭାହେଲା ମୁରଦୈତ୍ୟ
ସନ୍ତାନ ବଢ଼ିଲା ତାହାଙ୍କର ଅପ୍ରମିତ ।
ଏରୂପେ ସେ ମୁରବଂଶ ହେଲା ଉତପତ୍ତି
ସତରଲକ୍ଷ କୁମର ନବଲକ୍ଷ ନାତି ।
ଆବର ଯେତେ ଦୁହିତା ଥିଲେ ସେନାଙ୍କର
ପୁତ୍ରଙ୍କୁ ବିଭା କଲାକ ତାହା ମୁରାସୁର ।
ସେନାମାନଙ୍କ ପୁତ୍ରଟି ଥିଲେ ଜାଣ ଯେତେ
ଦୁହିତାଙ୍କୁ ବିଭା ତାହା କଲା ମୁରଦୈତ୍ୟେ ।
ଏ ମୁରାସୁରର ମରିବ ଜାଣ ଯେତେବେଳେ
ଏ ସ୍ତିରୀଯାକ ତାହାର ପଡ଼ିବେ ଅନଳେ ।
ମୁରାସୁର ମଲାରୁ ସେ ସର୍ବ ସତୀ ଯିବେ
ଅଗ୍ନିରେ ଦେହ ଝାସିଣ ସ୍ୱର୍ଗକୁ ଆସିବେ ।
ରହିବେ ଆସି କିନ୍ନରୀଗଣ ତୁଲେ ଜାଣ
କହିବା ବିଷ୍ଣୁର ଜନ୍ମଲୀଳା ଏବେ ଶୁଣ ।
ଶୁଣି ସେ ନାରଦମୁନି ହେଲେ କୃତ୍ୟ କୃତ୍ୟ
ବୋଇଲେ କହ ନୃସିଂହ ଜନ୍ମର ଯେ କୃତ୍ୟ ।
କାହାର କୋଳରେ ଜନ୍ମହୋଇଲେ ଶ୍ରୀହରି
ଏହି କଥା ପିତାମହ କହନ୍ତୁ ବିସ୍ତାରି ।

❋ ❋ ❋

## ହରିଙ୍କ ନିକଟେ ଦେବ ଲୋକଙ୍କର ଜଣାଣ

ବ୍ରହ୍ମାଏ ବୋଇଲେ ବାବୁ ଶୁଣରେ ନନ୍ଦନ
ବିଷ୍ଣୁଙ୍କ ଅଂଶରେ ଜାତ ହେବେ ଭଗବାନ ।
ସତଲୋକ ବୀର୍ଯ୍ୟେ ଜାତି ସୁପୁତ୍ର ଯେ ହୋଇ
ସେ ପୁତ୍ରକୁ ସଂସାରରେ ବୋଲି ବିଷ୍ଣୁଦେହୀ ।
କୁମତି ଲୋକ ବୀର୍ଯ୍ୟରେ ଜନ୍ମିଲେ କୁସଙ୍ଗ
ସେହିଟି ଅଶୁଦ୍ଧ ସ୍ତିରୀ କରେ ରତିରଙ୍ଗ ।
ସଭାରେ କରଇ ପକ୍ଷ ରଣରେ ନିସତ
ପରିସ୍ତିରୀକି ଦେଖିଲେ ବିକଳ୍ପ ତା ଚିତ୍ତ ।
ପରର ପ୍ରାଣ ହରଣେ ଶଙ୍କା ନ କରଇ
ତମ ତାପ କୋପରେ ସେ ସଦା ମଜ୍ଜିଥାଇ ।
ଆତ୍ମଗର୍ବ ବହି ସାଧୁଜନକୁ ଯେ ନିନ୍ଦେ
ବିନାଦୋଷରେ ପକାଏ ପ୍ରାଣୀଙ୍କି ସେ ଫାନ୍ଦେ
ଗୁରୁଜନଙ୍କ ବଚନ କରେ ଅମାନନା
ନଟଦ୍ୟୁତ ବିଳାସରେ ଦିଏ ଟଙ୍କା ସୁନା ।
ଏମନ୍ତ ପୁରୁଷ ଜନ୍ମ କୁବୀର୍ଯ୍ୟରେ କହି
କୁସ୍ତିରୀଙ୍କର ଲକ୍ଷଣ ଶୁଣ ମଧୁ ତୁହି ।

ଯୁବତୀ ହୋଇଣ ଯେବେ କ୍ରିୟା କର୍ମ ନଷ୍ଟ
କରଇ ଯେ ଦୁଷ୍ଟପଣେ ସ୍ୱାମୀ ଆଜ୍ଞାଭ୍ରଷ୍ଟ ।
ମନ୍ଦିରକୁ ସଂସ୍କାର ଯେ ନକରଇ ଭଲେ
ଲାଗଇ ଶତ୍ରୁ ପ୍ରାୟେକ ନିଜ ସ୍ୱାମୀ ତୁଲେ ।
ଅପବାଦ ଲଗାଏ ଯେ କରେ ନିତ୍ୟ କଳି
ଗୁରୁଜନର ବଚନ ମଣୁଥାଇ ଶୂଳି ।
ଇଷ୍ଟଲୋକଙ୍କୁ ତ ପୁଣ ଅମାନନା କରେ
ଦଇବକୁ ଅକାରଣେ ନିନ୍ଦେ ସନ୍ତାପରେ ।
ଗୁରୁସ୍ତ ପ୍ରିୟ ମଧୁର ବୋଲ ଦିଏ ଭାଙ୍ଗି
ପରଗୃହେ ବିଶ୍ରାମିଣ ପରଅନ୍ନ ଭୁଞ୍ଜି ।
ବିବାଦକୁ ସୁଖଘେନି କଳହରେ ମାତି
ଆପଣା ଗୃହର ଦ୍ରବ୍ୟ ଚୋରିକରେ ନିତି ।
ପିତା ପୁତ୍ର ଦୁହିତା ଯେ ଦାସଦାସୀ ବୋହୁ
ବିନାଦୋଷେ ଏହାକୁ ଯେ ଗଞ୍ଜେ କହୁଁ କହୁଁ ।
ଧୀରହୋଇ ମନ୍ଦିରେ ଯେ ନ ବସଇ କ୍ଷଣେ
ବୁଲୁଥାଇ ଗ୍ରାମଯାକ କିଞ୍ଚିତ କାରଣେ ।
ନିଜଗୃହ ଖବର ନ ଘେନଇ ଚିତ୍ତେ
ପରଗୃହର ବାରତା ପୁଚ୍ଛୁଥାଇ ନିତ୍ୟେ ।
ରବିପୂଜା ଅଗ୍ନିପୂଜା ଗୁରୁସ୍ତ ଅର୍ଚ୍ଚନା
ଦ୍ୱାରେ ଭିକ୍ଷାଶୀ ଦେଖିଲେ କରଇ ଭର୍ସନା
ବହୁ ଧନ ସଞ୍ଚି ମହାର୍ଗକୁ ପାଞ୍ଚୁଥାଇ
ତାଠାରୁ ଯେ ମହାପାପୀ ସଂସାରେକେ ନାହିଁ ।
ଏରୂପେ ସ୍ତିରୀ ପୁରୁଷ ଅବିଗୁଣେ ଯେତେ
ରଜ ବୀର୍ଯ୍ୟରେ ବିଷ୍ଣୁ ନ ଜନ୍ମେ କଦାଚିତେ ।
ଯହିଁ ସେ ଜନ୍ମିବେ ତାହା କହିବାହେ ଶୁଣ
କଶ୍ୟପ ଅଂଶୀ ଯେ କୃଷ୍ଣବଲ୍ଲଭ ବ୍ରାହ୍ମଣ ।
ଅଟନ୍ତି ଆଦିତ୍ୟ ବଂଶେ ଭଗବତୀ ରାଣୀ ।
ତାହାଙ୍କ ଗର୍ଭେ ପ୍ରକାଶ ହେବେ ଚକ୍ରପାଣି
ନାରଦ ବୋଇଲେ ପିତା କହିବାକ ମୋତେ
ଭଗବତୀ ମାତା କାହୁଁ ଜନ୍ମିଲେ ଜଗତେ ।
ତେଡ଼େ ନୋହିଲେ ବିଷ୍ଣୁଙ୍କୁ ଗର୍ଭେ ବହନ୍ତେକି
ତୁମ୍ଭେ ନକହିଲେ ଆନ କେପାରେ କହିକି ।
ବ୍ରହ୍ମାଏ ବୋଇଲେ ତେବେ ଶୁଣହେ ପ୍ରସଙ୍ଗ
ମୁରଜନ୍ମ ଦେଖିଦେଇ ହୋଇଲେ ଆତଙ୍କ ।
ପିତାଙ୍କପୁରେ ମିଳିଲେ ଯାଇ ଦେବଗଣ
ବାସବ ଯମ କୁବେର ଅଗ୍ନି ଯେ ବରୁଣ ।
ଅନଳ ଯେ ନଇରତ ମରୁତ ଆକାଶ
ଈଶାନ ଆବର ବିଦ୍ୟାଧର ବାରମାସ ।

ଯକ୍ଷରକ୍ଷ ପିଶାଚ ଯେ ଚନ୍ଦ୍ର ଦିବାକର
ଦ୍ୱାଦଶ ବିଶ୍ୱଦେବତା ଯେ ଅଶ୍ୱିନୀ କୁମାର ।
ଗନ୍ଧର୍ବ ଯେ ଅଷ୍ଟବସୁ ଗୁରୁ ବୃହସ୍ପତି
ସୁରଭୀ ଗୃହ୍ୟକଗଣ ତାରା ଯୋଗତିଥି ।
ଏକାଦଶ କାରଣ ଯେ ବର୍ଷ ଚାରିଯୁଗ
ମୂହୂର୍ତ୍ତ ଯେ ଦଣ୍ଡ ଘଡ଼ିବାର ରାଶି ମେଘ ।
ଯାବତ ଋଷିଙ୍କି ଘେନି ବ୍ରହ୍ମାଛନ୍ତି ବସି
କାନ୍ଦି କହିଲେ ବସୁଧା ଦେବୀ ଆଗେ ଆସି ।
ବୋଇଲେ ମୁରକୁ ମୁହିଁ ନ ପାରଇ ବହି
ସର୍ବେ ଶୁଣିଥାଅ ଯିବି ରସାଗତ ହୋଇ ।
ଏମନ୍ତ କହିଣ ବସୁମତୀ କାନ୍ଦି କ୍ରୋଧେ
ଦେବତା କହନ୍ତି କ୍ରୋଧେ ସେହି ସଭାମଧ୍ୟେ
ସବୁରି କ୍ରୋଧ ଘେନିଣ ଅନଳ ବରଷି
ପ୍ରଳୟ ଅଗ୍ନିର ପ୍ରାୟ ସଭାମଧ୍ୟେ ବସି ।
ସେ ଅଗ୍ନିକି ଦେଖି ଦେବେ ଯୋଡ଼ ହସ୍ତବେନି
ସମସ୍ତେ ଯେ ସ୍ତୁତିକରି କରନ୍ତି ଦଇନ୍ୟ ।
ବୋଲନ୍ତି ଭୋ ଅଗ୍ନିଦେବ ଆମ୍ଭ ଦୁଃଖ ଶୁଣ
କି ରୂପେ ମୁରଦୈତ୍ୟର ହୋଇବ ମରଣ ।
ବ୍ରହ୍ମା ବୋଇଲେ ଆକୁଳ ନହୁଅଯେ କେହି
ଜଣାଇବା ଅଗ୍ନିକି ଯେ କନ୍ୟା ଦେବେ ସେହି ।
ସେ କନ୍ୟା ଗର୍ଭରୁ ଜାତହେବେ ନାରାୟଣ
ଯୋଗବଳୁ ଦୃଶ୍ୟ ମୋତେ କହୁଅଛି ଶୁଣ ।
ଏତେବୋଲି ଧାତାତହିଁ ଆହୁତି ଯେ ଦେଲେ
ପୁର ପାବକ ମନ୍ତ୍ରେଣ ଋଷି ଛନ୍ଦ କଲେ ।
ଚତୁରମୁଖେ ଟେକିଲେ ମନ୍ତ୍ର ବେଦଧ୍ୱନି
ପ୍ରାଣାୟାମ ହୋମ ଆଦି କଲେ ବେଳଘେନି ।
ପ୍ରାଣକୁ ନ୍ୟାସି ଅଗ୍ନିକି ଦେବେଛନ୍ତି ଚାହିଁ
ବେଢ଼ିଣ ଯେ ବସିଛନ୍ତି ଏକଦୃଷ୍ଟି ହୋଇ ।
ଅଛନ୍ତି ବ୍ରହ୍ମା କହିଲାବେଳୁ କରଯୋଡ଼ି
ଶ୍ରୀ ନୃସିଂହର କବଚ ବିଷ୍ଣୁ ମନ୍ତ୍ର ପଢ଼ି ।
ଅଗ୍ନିକି ଚାହିଁଣ ସ୍ତୁତି କରନ୍ତି ଦିଗପାଳେ
ଟେକିଲେ ଶିଖାକୁ ବହ୍ନିଗଗନ ମଣ୍ଡଳେ ।
କରନ୍ତି କାର୍ପଣ୍ୟହୋଇ ଦେବେ ବ୍ରହ୍ମାସ୍ତୁତି
ନମସ୍ତେ କାଳାନଳ ହେ ବର୍ଣ୍ଣାନଳ ଜ୍ୟୋତି ।
ନମସ୍ତେ ପିଙ୍ଗଳାନତ ମହାତେଜ ରଶ୍ମି
ନମସ୍ତେ ହେ ଜ୍ୱାଳାନଳ ହେ କୃପାଟଯୋନି ।
ନମସ୍ତେ ମହାଅନଳ ମହିମା ଅଲେଖା
ନମସ୍ତେ କୋଟି ଅନଳ ସପ୍ତ ମହାଶାଖା ।

ନମସ୍ତେ ହେ ଦାବାନଳ ରଖ ଦେବକୁଳ
ନମୋ ଅବିକାର ରୂପୀ ହେ ବଡ଼ବାନଳ ।
ଶ୍ରୀଅଙ୍ଗ ପାପରୁ ନାହିଁ ରୂପ ବର୍ଣ୍ଣ ଚିହ୍ନ
ମନ ଶାନ୍ତିକଲେ ହେଉ ନିମିଷେ ଗୋପନ ।
ଆୟୁର୍ବେଦବର ଧନୁର୍ବେଦ ସୃଷ୍ଟିମୁନା
ଅଭେଦ ତୋର ଅଜପା ଜପ ବ୍ରଜସେହ୍ନା
ମଳିନ ନୋହିବାରୁ ତୁ ଅନଳ ବୋଲାଉ
ଅଳପ ଦୃଷ୍ଟି ପଡ଼ିଲେ ସର୍ବ ସୃଷ୍ଟି ଦହୁ ।
ବେନିପତ୍ନୀ ସଙ୍ଗେଘେନି ବିଜେକରୁ ଯୋଗେ
ମହାମନ୍ତ୍ର ଦେଲେତୋଷ ହୋଇ ଭୁଞ୍ଜୁ ବେଗେ ।
ଅଠର ବର୍ଣ୍ଣର ଗୁରୁ ଅଟୁ ଦେବ ତୁହି
ଶୁଦ୍ଧ ଅଶୁଦ୍ଧବୋଲି ନଘେନୁ ସର୍ବ ସହି ।
ତୁହି ସେ ବୋଲାଉ କର୍ମ ଧର୍ମ ଆଦି କର୍ତ୍ତା
ସମସ୍ତ ଅସହଣି ତୁ ସକଳ ସହନ୍ତା ।
ଜୟ ଜୟ ଋଷି ତୁହୋ କର ଏଥୁ ତ୍ରାହି
ନରଖିଲେ ଆମ୍ଭଙ୍କୁ ପରିତ୍ରାଣ ନାହିଁ ।
ଜୟ ଜୟ ବ୍ରହ୍ମଅଗ୍ନି ତୋର ପାଦଗତେ
ବିପ୍ର ପୀତାମ୍ବର ଦାଶ ସେବେ ସ୍ୱାହାକାନ୍ତେ ।

❋ ❋ ❋

## ଭଗବତୀ ଜନ୍ମ

ଶୁଣ ହେ ନାରଦ କହୁଛନ୍ତି ପଦ୍ମଯୋନି
ଆଚମ୍ୱିତ ଅଟେ ଭଗବତୀ ଜନ୍ମ ବାଣୀ ।
ଏରୂପେ ଦେବତା କଲେ ଜାଣ ବହୁ ସ୍ତୁତି
ସବୁଙ୍କରି କ୍ଳେଶ ଦେଖି ଅଗ୍ନି ହେଲେ ଶାନ୍ତି ।
ଅଦ୍ଭୁତେ ଅଗ୍ନି ମଧ୍ୟରୁ ପୁରୁଷେକ ଘେନି
ପ୍ରତ୍ୟକ୍ଷେ ନାରାୟଣଙ୍କୁ ଜନ୍ମିଲେ ଜନନୀ ।
ଅଛନ୍ତି ଆଦିତ୍ୟ ଅଂଶ ଧରି ଅବତାରି
ତେଣୁ ସେ ବିଷ୍ଣୁଙ୍କୁ ସବୁ ଜନ୍ମେ ଗର୍ଭେ ଧରି ।
ଅଗ୍ନିର ଭିତରେ କନ୍ୟା ଦେଖି ଦେବତାଏ
ନମନ୍ତି ଭକତି ଭାବ ଘେନି ଦେବୀ ପାଏ ।
ଦେବତାଙ୍କ ଭକତିରୁ ହୁଅନ୍ତେ ଉତ୍ପତ୍ତି
ତେଣୁ ତାଙ୍କ ନାମ ଦେଲେ ବ୍ରହ୍ମା ଭଗବତୀ ।
ସାକ୍ଷାତରେ ଅଗ୍ନି ସ୍ୱରୂପିଣୀ ସେ ଭିଆଣ
ଦେବତାଙ୍କ ତେଜ ଘେନି ହୋଇଲେ ନିର୍ମାଣ ।
ପ୍ରଥମରେ ଆହୁତି ଯେ ଦେଲେ ପରମେଷ୍ଠୀ
ତାହାଙ୍କର ତେଜ ଘେନି ହେଲା ଜିହ୍ୱାପାଟି ।
ବିଷ୍ଣୁ ତେଜେ ଘେନି ପରକାଶ ଦେହକାନ୍ତି
ଈଶ୍ୱର ତେଜେ ବିରାଜେ ତାଙ୍କ ଦନ୍ତପନ୍ତି ।
ଆଦିତ୍ୟଙ୍କ ତେଜ ଘେନି ବର୍ଣ୍ଣ ପ୍ରକାଶିଲା
ପବନର ତେଜ ଲାଗି ଦେହ ବିରାଜିଲା ।
ଚନ୍ଦ୍ରମାର ତେଜ ଲାଗି ହେଲା ନାସା ଉଚ୍ଚ
ଅନଳର ତେଜ ଲାଗି ହେଲା ବେନି ଭୁଜ ।
ଯମର ତେଜ ଲାଗି ଯେ କଣ୍ଠ ପ୍ରକାଶିଲା
ବାସବ ଦେବତା ତେଜେ ମସ୍ତକ ହୋଇଲା ।
ବସୁଧାର ତେଜ ଲାଗି ହେଲା କେଶ ଲୋମ
କୁବେର ତେଜ ଲାଗିଣ ଉପୁଜିଲା ଚର୍ମ ।
ବରୁଣର ତେଜ ଲାଗି ହୋଇଲା ଉଦର
ନୈର୍ଋତ ତେଜେ ଜନ୍ମିଲା କଟୀଭାଗ ତାର ।
ଦେବସ୍ତିରୀଙ୍କ ତେଜରୁ ପୟୋଧର ବେନି
ବାମଦେବ ତେଜୁଁ ଉତପତ୍ତି ଦ୍ୱାର ଯୋନି ।
ବିଶ୍ୱାବସୁଙ୍କ ତେଜରୁ ଜାତ ଗୁହ୍ୟଦ୍ୱାର
ଗନ୍ଧର୍ବଙ୍କ ତେଜୁଁ ଜନମିଲା ନାଭିଦ୍ୱାର ।
ଅନନ୍ତ ବାସୁକି ତେଜ ବାସନା ଯେ ଲାଗି
ଅଙ୍ଗୁଳି ରେଖାର ରେଖାହେଲା ସଉଭାଗୀ ।
ଅଶ୍ୱିନୀକୁମାରଙ୍କର ନିବେଦନ ମନୁ
ସୁସଞ୍ଚ ଶୋଭା ଦିଶିଲା ବେନିଗୋଟି ଜାନୁ ।
ବିନ୍ଧ୍ୟ ଧରାଧର ତେଜୁ ଦିଶେ ଦେହ ଶୋଭା
ହେମବନ୍ତ ବାସନାରୁ ହେଲା ପିଠି ପ୍ରଭା ।
ମହାଲକ୍ଷ୍ମୀ ତେଜ ଘେନି ହେଲା ଦେହଯାକ
ଶତେଚନ୍ଦ୍ର ଜ୍ୟୋତି ପ୍ରାୟେ ଦିଶେ ନିଷ୍କଳଙ୍କ ।
ମେଘର ତେଜରୁ ହୋଇଲାକ ବେନି ଆଖି
ପ୍ରଭାକରଙ୍କ ତେଜରୁ ହୋଇଲାକ କୁକ୍ଷି ।
ଗାୟତ୍ରୀଙ୍କ ପ୍ରଭା ଘେନି ଗ୍ରୀବା ସଞ୍ଚରିଲା
ନବଗ୍ରହ ତେଜ ଘେନି ନବଦ୍ୱାର ହେଲା ।
ବାର ତିଥି କରଣ ଯେ ଅଂଶ ଯୋଗ ତାର
ଏହାଙ୍କ ତେଜ ହୋଇଲା ତଳିପା ସୁନ୍ଦର ।
ତେତିଶକୋଟି ଦେବତାଙ୍କର ତେଜରାଶି
ଦେହଯାକରେ ପ୍ରକୃତିଗଣ ହେଲେ ଆସି ।
ଶୁଣ ହେ ନାରଦ ପ୍ରଭୁ ସେ ଜନନୀ କଥା
ଏତେ ଅଂଶ ନୋହିଲେ କି କୃଷ୍ଣଙ୍କୁ ବହନ୍ତା ।
ସେ ମାତା ଜନମହେଉ ଅଗ୍ନି ହେଲେ ଗୋପ୍ୟ
ତେବେ ଦେବତାଏ ଅଙ୍ଗୁ ଛାଡ଼ିଲେ ଯେ ତାପ ।
ଶୂନ୍ୟରୁ କୁସୁମ ବୃଷ୍ଟି ହେଲା ମନ୍ଦ ମନ୍ଦ
ମନରେ ପାଞ୍ଚିଲେ ଏବେ ଜନ୍ମିବେ ଗୋବିନ୍ଦ ।
ଦେବଙ୍କୁ ଚାହିଁ କହନ୍ତି ଦେବ ପରମେଷ୍ଠି
ବୋଲନ୍ତି ଦେବ ଭଲେ ନ କର କଥାସ୍ତୁତି ।

ମୁରାସୁର ଜାଣିଲେ ଯେ ହେବ ମହାଭୟେ
ବୋଲିବ କନ୍ୟାକୁ ମୋତେ ଦିଅ ଦେବତାଏ ।
ଏହା ବୋଲନ୍ତେ ତୁମ୍ଭେ ନ ପାର ଜାଣ ରଖି
ବିଷ୍ଣୁ ମାତାଙ୍କୁ ମାଗିବ ସ୍ତିରୀ ପ୍ରାୟ ଲେଖି ।
ଏଣୁ ଗୋପ୍ୟସ୍ଥାନ କହୁଅଛି ତୁମ୍ଭେ ଶୁଣ
ଗୋଲକ ଦେଶରେ ନେଇ ରଖ ଯାଙ୍କୁ ଜାଣ ।
ସେହି ରାଜ୍ୟରେ ରାଜା ଯେ ଅଟେ ଭଗବନ୍ତ
ମନୁବଂଶର ପ୍ରଭୁ ଯେ ଅଟେ ସାରସ୍ୱତ ।
ବିଷ୍ଣୁର ପୁରାଣ ରାଜା ଶୁଣେ ସର୍ବକାଳେ
ଦେବା ଦୟା ଧର୍ମେ ଅନୁବରତେ ସେ ଚଳେ ।
ତାହାର କୋଳେ ସମର୍ପିଦେଇ ଆସ କନ୍ୟା
କୃଷ୍ଣବଲ୍ଲଭଙ୍କୁ ବିଭା କରଇ ସେ ସିନା ।
ଶୁଣି ଦେବଗଣେ ବ୍ରହ୍ମବାକ୍ୟ ପ୍ରତିପାଳି
ବୋଇଲେ ପିତା ନାରଦ ଯାନ୍ତୁ ତେବେ ଚଳି ।
କନ୍ୟାକୁ ଦିଅନ୍ତୁ ଗୋପ୍ୟ କରି ନିଶାକାଳେ
ସମର୍ପନ୍ତୁ ନେଇ ଭଗବନ୍ତ ରାଜା କୋଳେ ।
ଶୁଣି ନାରଦଙ୍କୁ ଚାହିଁଦେଲେ ପଦ୍ମଯୋନି
ବୋଇଲେଚଳହୋ ତୁହି କନ୍ୟା କୋଳେଘେନି ।
ଏ କନ୍ୟାରେ ଜାଣ ଅଛି ବହୁତ ଯେ କାର୍ଯ୍ୟ
ଏହାର ଗର୍ଭୁ ଜନ୍ମିବେ ପ୍ରଭୁ ଦେବରାଜ ।
ତେବେ ଯାଇ ମୁରକୁ ସେ ମାରିବେ ଗୋବିନ୍ଦ
ବ୍ରହ୍ମାଙ୍କ ଆକାରେ କନ୍ୟା ନେଲେ ଯେ ନାରଦ ।
ପିତାଙ୍କ ବଚନେ ମୁନି ଗଲେ ରାତ୍ରକାଳେ
ଗୋଲକ ଦେଶେ ମିଳିଲେ ଯାଇ ମନ୍ତ୍ରବଳେ ।
ଭଗବନ୍ତପୁରେ ଯାଇ ହୋଇଲେ ପ୍ରବେଶ
ମୁନିଙ୍କି ଦେଖି ଆସନୁ ଉଠି ମନୁବଂଶ ।
ଏକା ହୋଇକରି ବସିଥିଲେ ମନୁରାୟେ
ଲାଗିଛି ଦୀପ ଦିହୁଡ଼ି ହୁଳା ଠାଏଁ ଠାଏଁ ।
ଆସନ ଗୋଟିଏ ଦେଇ ମୁନିଙ୍କି ବସାଇ
ପ୍ରଣାମ କରି ଶୁତିଲେ ପାୟେ ନରସାଇଁ ।
ବୋଇଲେ ଆଜ ମୋହର ଅଟେ ବଡ଼ ପୁଣ୍ୟ
କିମଥେ ବିଜୟକଲେ ଆସି ବ୍ରହ୍ମନାନ ।
ନାରଦ ବୋଇଲେ ରାଜା କହିବା ହେ ଶୁଣ
ତୋହର ତହିଁକି ପେଶୀଲେମୋତେଦେବଗଣ ।
ଏବେ ଯେ ଜନ୍ମ ହୋଇଛି ମୁର ମହାଦୁଷ୍ଟ
ତା ଲାଗି ସଂସାରଯାକ ପଡ଼ିଛି ସଙ୍କଟ ।
ଅମର ଭୁବନେ ଦେବେ ନ ପାରିଲେ ରହି
ଗୋବିନ୍ଦଙ୍କୁ ଚିନ୍ତା କରୁଅଛି ସୁରସାଇଁ ।
ସେହି ନାରାୟଣ ମଞ୍ଚପୁରେ ହେବେ ଜାତ
ଏହିକଥା ପାଞ୍ଚି ମୋତେ ପେଶିଲେ ଦେବତ ।
ତେଣୁକରି ଏ କନ୍ୟାକୁ ଆଣିଲୁ ତୋ ପାଶ
ଏହାଦ୍ୱାରା ପୃଥ୍ୱୀଭାରା ହୋଇବ ଉଶ୍ୱାସ ।
ଏ କନ୍ୟାକୁ ବିଷ୍ଣୁ ପ୍ରାୟ ଥିବୁ ସେବାକରି
କୃଷ୍ଣବଲ୍ଲଭ ରାଜାଙ୍କୁ ଦେବୁ ଏ କୁମାରୀ ।
ବ୍ରହ୍ମଅଗ୍ନି ଭିତରୁ ଏ ହୋଇଅଛି ଜାତ
ତୁମ୍ଭେ ବେନି ଏହାଙ୍କର ହୁଅ ତାତମାତ ।
ଗୁପତେ ତୁ ସମ୍ଭାଳିଣ ରଖ କନ୍ୟାଗୋଟି
ମୁରାସୁର ଜାଣିଲେ ଯେ ଅନର୍ଥ ହେବଟି ।
ଏକଥା ବିଚାରକରି ଦେବତାଏ ବସି
ଗୁପତରେ ତୁମ୍ଭଠାକୁ କନ୍ୟା ଦେଲେ ପେଶି
ତୁହି ମହାରାଜା ଅଟୁ ବିଷ୍ଣୁ ପରାୟଣ
ତେଣୁ ଏ କୁମାରୀ ତୋତେ ମିଳିବଟି ଜାଣ ।
ଶୁଣି ଭଗବନ୍ତ ରାଜା ହୋଇଲା ସନ୍ତୋଷ
ରାଜ୍ୟେ ନାନା ଉତ୍ସବ ସେ କଲା ମନୁବଂଶ ।
ଏତେ କହିଣ ନାରଦ ଗଲେ ତହୁଁ ଚଳି
ସେ ଦିନରୁ ଭଗବନ୍ତ କନ୍ୟା ପ୍ରତିପାଳି ।
କହୁଁ କହୁଁ କନ୍ୟାର ଯେ ହେଲା ବିଭାକାଳ
କୃଷ୍ଣବଲ୍ଲଭଙ୍କୁ ବରି ଆଣି ମହୀପାଳ ।
ସେ ଭଗବତୀଙ୍କୁ ବିଭା କଲେ ତାଙ୍କୁ ଜାଣ
ଏରୂପେ ବିଷ୍ଣୁଙ୍କ ମାତା ଜନ୍ମକଥା ଶୁଣ ।

❋ ❋ ❋

## ମେରୁ ଉପରେ ଦେବଗଣଙ୍କର ପରାମର୍ଶ

ଚଉଠି ଆଦି ଯେ ସାତମଙ୍ଗଳାକୁ କଲେ
କନ୍ୟାକୁ କୃଷ୍ଣବଲ୍ଲଭ ନେଇ ବିଳସିଲେ ।
ନାରଦ ବୋଇଲେ ତେବେ ଶୁଣହେ ଆତ୍ମଭୁ
ଦେବଙ୍କ ଗୁହାରି ଶୁଣି କି କଲେ ସେ ପ୍ରଭୁ ।
ହରି ଆଜ୍ଞା ଦେଇଥିଲେ ସେ ପୂର୍ବୁ ତାହାକୁ
ମୁଁ ଯାଇ ମଞ୍ଚରେ ଜନ୍ମି ମାରିବି ଦୈତ୍ୟଙ୍କୁ ।
ସେ ଆଜ୍ଞା ଶୁଣିଣ ଦେବେ ବାହୁଡ଼ିଲେ ତହୁଁ
ଶୁଣିବି ମୁହିଁ କହିବା ଏବେ ତାହା ହେଉ ।
ବ୍ରହ୍ମାଏ ବୋଇଲେ ତେବେ ଶୁଣ ମୋ ବଚନ
ଦେବେ ଯାଇ ବୈକୁଣ୍ଠରୁ ଆସନ୍ତେ ବହନ ।
ମେରୁରେ ବସିଲେ ସଭାକରି ସର୍ବେ ଭାଳି
ତାହାଙ୍କର ନାମ ଆଗ ଶୁଣ ତପଶାଳୀ ।

ବ୍ରହ୍ମା ବରୁଣ କୁବେର ଇନ୍ଦ୍ର ମହେଶ୍ୱର
ମରୁତ ନୈର୍ଋତ ଅଗ ନାଶନ୍ତୁ ଆବର ।
ରବି ଚନ୍ଦ୍ର କୁଜ ବୁଧ ଗୁରୁ ମନ୍ଦ ଶୁକ୍ର
ଯକ୍ଷ ରକ୍ଷ ଗନ୍ଧର୍ବ ଯେ କିନ୍ନର ଗୁହ୍ୟକ ।
ତାର ବାର ଯୋଗ ତିଥି କରଣର ମୂଳେ
ବାରମାସ ଷଡ଼ଋତୁ ସମ୍ୱତ୍ସର କାଳେ ।
ମୁହୂର୍ତ୍ତ ଦଣ୍ଡ ଘଡ଼ି ଯେ ଲଗ୍ନ ବେଳ ଆଦି
ମେରୁରେ ବସି ପାଞ୍ଚନ୍ତି ସର୍ବେ ନାନାବୁଦ୍ଧି
ବିରସ ମୁଖ ସମସ୍ତେ ନାହିଁ କାର ସୁଖ
ତେତିଶକୋଟି ଦେବଙ୍କ ମନେ ମହା ଦୁଃଖ ।
ଭାଳନ୍ତି ମୁରର କଥାମାନ ବସି ସର୍ବେ
ବୋଲନ୍ତି ଏହି ଚଣ୍ଡାଳ ମରିବ ଯେ କେବେ ।
ତେବେ ଯାଇ ସିନା ଆମ୍ଭ ଦୁଃଖ ଯିବ ପାର
କେତେବେଳେ ମାରିବେକ ଜନ୍ମି ଦାମୋଦର ।
ତଥାପି ସେ ଦୁଷ୍ଟକୁ ତ ପୃଥ୍ୱୀ ନ ସହଇ
ଏଡ଼େକ ପାପୀ କେମନ୍ତେ ଅଛି ଦେହ ବହି ।
ଆମ୍ଭଙ୍କୁ ଯେ ଊଣାଭାଗ୍ୟ ଥିବ ଅବା ପଡ଼ି
ତେଣୁ ବା ମୁରଦୈତ୍ୟକୁ ନୋହୁଛି ମରୁଡ଼ି ।
ତହୁଁ କେତେକ କହିଲେ ଆହେ ବୃହସ୍ପତି
ଯୁଗ ପରାୟେ ଆମ୍ଭଙ୍କୁ ହେଲା ଦିବାରାତି ।
ଗୁରୁ ବୋଇଲେ ଭାଳିଲେ ଆଉ କାର୍ଯ୍ୟ ନାହିଁ
ଅସମ୍ଭବ କାଳେ ଧର୍ମ ସିନା ସାହାହୋଇ ।
ଧାତାବୀର୍ଯ୍ୟୁ ଜନ୍ମିଅଛି ଯେଣୁ ସେ ଅସୁର
ଈଶ୍ୱର ଯାହାକୁ ପୁଣି ଦେଇଛନ୍ତି ବର ।
ତାହା ଭୋଗ ନୋହିଲେ ସେ କିରୂପେ ମରିବ
ଗୋବିନ୍ଦ ଜନ୍ମିଲେ ସିନା ମାରିବେ ଦାନବ ।
ସେ ମହାପ୍ରଭୁ ଜନ୍ମିବେ ଏବେ ନିଶ୍ଚେ ଜାଣ
କହିଲୁ ନିକଟ ହେଲା ଆସି ଦେବ ଶୁଣ ।
ଆମ୍ଭର ଦୁଃଖ ନାଶିବେ ପ୍ରଭୁ ଦାମୋଦର
ଅସୁରକୁ ନିବାରି ସେ ଯିବେ ନିଜପୁର ।
ଏମନ୍ତ ବୋଲି କହନ୍ତେ ଗୁରୁ ଧର୍ମବାଣୀ
ଶୁଣହେ ନାରଦ ଏଥି ଉତ୍ତାରୁ କାହାଣୀ ।
ସେଦିନ ଅନ୍ଧାରୀବିଜେ କରି ମୁରାସୁର
ବିଜୟା ରଥରେ ବସି ବୁଲେ ତିନିପୁର ।
ବିଚାରିଲା ଦେବେ ମୋତେ ଆଉ ନଭେଟିଲେ
ଏଥର ବିଚାର କରି କି ମନ୍ଦ ପାଞ୍ଚିଲେ ।
ଏମନ୍ତେ ପାଞ୍ଚି ବାହଇ ରଥ ଊର୍ଦ୍ଧ୍ୱଗତେ
ଚଳଇ ଅସୁରଯାନ ନିଶିରେ ଏକାନ୍ତେ ।
ମେରୁର ପଶ୍ଚିମଭାଗେ ଆସେ ଦୈତ୍ୟହରି
ପବନ ପୂର୍ବରୁ ବହେ ଧୀର ଧୀର କରି ।
ମେରୁଶିଖେ ବସି ଦେବ କରନ୍ତି ବିଚାର
ସୁସ୍ୱର ବାତେ ଶବଦ ବାରିଲା ଅସୁର ।
ଶବଦକୁ କର୍ଣ୍ଣଡ଼େରି ଚାଲେ ଧୀରେ ଧୀରେ
ଦେଖି ଦେବଗଣଙ୍କୁ ସେ ରହି ଖଣ୍ଡେଦୂରେ ।
ଦଣ୍ଡେ ପର୍ଯ୍ୟନ୍ତ ଶୁଣିଲା ରାଜା ମେରୁତଳେ
ବଚନ ଶୁଭେ ମରିବ ମୁର କେତେବେଳେ ।
ମୁରାସୁର ମଲେ ହେବ ସବୁଙ୍କୁ ଯେ ଜୟେ
କେତେକାଳ ସେବା କରୁଥିବୁ ତାର ପାୟେ ।
ଭୋ ନାରାୟଣ କରିବା ଏଥୁ ପରିତ୍ରାଣ
ଦଇତ୍ୟକୁ ସେବି ସେବି ନ ସରଇ ଦିନ ।
ଭୋ ବିଷ୍ଣୁ ଆଉ ହୋଇବ କେତେ ଅବତାର
ମୁରକୁ ମାରି ପୃଥ୍ୱୀ ଉଦ୍ଧରିବ ଭାର ।
ରକ୍ଷକ ପ୍ରାୟେ ରହିଲୁ ଆମ୍ଭେ ତାର ପାଶେ
ଭୃତ୍ୟ ପ୍ରାୟେ ବୋଲ ପାଳି ଖଟି ଅନିମିଷେ ।
ସେବା କରିବାଠାରୁ ତ ନାହିଁ ଆଉ ହୀନ
ଦେବାଠାରୁ ବଡ଼ହୋଇ ନାହିଁକେ ସୁଜନ ।
ଗୁରୁ ସେବାରୁ ବଳି ତ ନାହିଁ ମୋକ୍ଷଗଡ଼ି
ଗିରସ୍ତ ସେବାଠାରୁ ତ ନାହିଁ ପୁଣ୍ୟ ଅତି ।
ମାତା ପିତାଙ୍କଠାରୁ କେ ନାହିଁ ଆଉ ବଡ଼
ବ୍ରହ୍ମଜ୍ଞାନ ସାଧନାରୁ ନାହିଁ ଯୋଗାରୁଢ଼ ।
ତୀର୍ଥବାସୀ ଲୋକଠାରୁ ନାହିଁକେ ପବିତ୍ର
ଦେବଧ୍ୟାୟୀ ଲୋକଠାରୁ ନାହିଁ ଶୁଦ୍ଧଗାତ୍ର ।
ଏକାଦଶ ବ୍ରତଠାରୁ ନାହିଁ ବ୍ରତାଚାରୀ
ନିର୍ମାଲ୍ୟ ସେବାଠାରୁ କେ ନାହିଁ ପୁଣ୍ୟକାରୀ ।
କ୍ଷୁଧାଠାରୁ ଆଉ ଭବେ ନାହିଁ ବଡ଼ କଷ୍ଟ
ଶମନ ଦଣ୍ଡଠାରୁ କେ ନାହିଁ ବଡ଼ ଆଷ୍ଟ ।
ଚୋରୀ ନାରୀ ମିଥ୍ୟାରୁ ଯେ ନାହିଁ ବଡ଼ଲାଜ
ସେରୂପେ ଆମ୍ଭଙ୍କୁ କଲାଣିତ ମୁରରାଜ ।

ଭୋ ନାରାୟଣ କରିବା ଏଥିବାରେ ତ୍ରାହି
ତୁମ୍ଭଙ୍କୁ ଭରସା ଆମ୍ଭେ କରିଅଛୁ ଚାହିଁ ।
ଏମନ୍ତ ବୋଲି କରନ୍ତେ ଦେବେ ବସି ଚିନ୍ତା
ଶୁଣହେ ନାରଦ ତହୁଁ ଉତ୍ତାରୁ ବାରତା ।

❋ ❋ ❋

## ମୁରାସୁରର ମେରୁଗିରି ଉତ୍ପାଟନ ଓ ଶୁକ୍ରଙ୍କ କଥାରେ ପୁନଃସ୍ଥାପନ

ମେରୁତଳେ ଆସି ମୁର ଶୁଣୁଥିଲା ବସି
ଆରେରେଦେବେ ବୋଲିଣ ଡାକିଲା ଆକ୍ରୋଶି
ଉଠିଲା ଘୋର ଗର୍ଜନ କରି ଶିରଝୁଣି
ଛାଡ଼ନ୍ତେ ସେ ରଡ଼ି ଏକ କମ୍ପିଲା ଧରଣୀ ।
ଡାକଦେଲା ଆରେ ଆରେ ପାମର ଚଣ୍ଡାଳେ
ପାଞ୍ଚୁଛରେ ମୋର ମୃତ୍ୟୁ ଏଡ଼େ ନିଶାକାଳେ
ପୋଷିବାର ଗୁଣଯାକ ଦେଖାଇଲି ଆସି
ସଂସାରଲୋକ ଯାକ୍‌ରେ ଅଟ ତୁମ୍ଭେ ଦୋଷୀ
ପାଳିବାର ଧର୍ମଗୋଟି ଚିହ୍ନାଇଲ ମୋତେ
ଭଲା ଶୁଭକଥା ପାଞ୍ଚୁଅଛ ଦଇବତେ ।
ଏତେ କହି ରଡ଼ି ଏକ ଛାଡ଼େ ପୁଣ ରାୟେ
କମ୍ପିଲାକ ସ୍ୱର୍ଗମର୍ତ୍ତ୍ୟ ରସାତଳ ଯାଏ ।
ଉଠିଲା ନିଶିରେ ହସ୍ତଭରି ବାହୁଟୋଳି
ଆରକ୍ତ ପଦ୍ମପରାୟେ ନେତ୍ରବେନି ଢାଳି ।
ବିଜୟା ରଥରୁ ଡେଇଁ ପଡ଼ି ଦୈତ୍ୟତଳେ
ପିଟିଲାକ ବେନିକର ନେଇ ମେରୁ ମୂଳେ ।
ବାହୁବେନି ବିସ୍ତାରିଣ ଧରେ କୁଣ୍ଢିଆଇ
ଷଣ୍ଢକୁ ଝିଣ୍ଟିକା ପ୍ରାୟେ ଯେହ୍ନେ ବ୍ୟାଘ୍ର ନେଇ
ସେହିରୂପେ ମେରୁକୁ ସେ ଧରି ଗଳଗାଜି
ବୋଇଲା ସିନ୍ଧୁରେ ନେଇ ପକାଇବି ଆଜି ।
ପାଦଘାତ ମାରି କରିବଇଁ ଚୂର୍ଣ୍ଣରାଶି
ପକାଇବି ସିନ୍ଧୁମଧେ ଯାଉ ଜଳେ ଭାସି ।
ଦେବତା କରିଣ ଆଉ ନ ରଖିବି ପଦ
ଚଣ୍ଡାଳ ଅବିଶ୍ୱାସୀଏ ପାଞ୍ଚିଲେ ମୋ ମନ୍ଦ ।
ଏତେ ବୋଲି ମେରୁକୁ ସେ ଧରି ବେନିକରେ
ହୁଁକାର ନାଦେ ରଖିଲା ମଥାର ଉପରେ ।
ଧରନ୍ତେ ସେ ମୁରାସୁର କୋପେ ମେରୁମୁଣ୍ଡେ
କମ୍ପିଲାକ ବସୁମତୀ ସପତ ବ୍ରହ୍ମାଣ୍ଡେ ।
ଟମକି ପଡ଼ିଲେ ଦେବଗଣ ମୁହଁମାଡ଼ି
ଦଶଦିଗପାଳ ଆଦି ପଡ଼ିଲେକ ମାଡ଼ି ।
ଜୀବମାନେ ପଡ଼ିଲେକ ହୋଇ ଭେଳାଭେଳା
ହୁଗୁଳି ପଡ଼ିଲେ ଅଷ୍ଟଦିଗୁ ଅଷ୍ଟକିଳା ।
ସ୍ଥାବର ଜଙ୍ଗମକୀଟ ପତଙ୍ଗାଦି ଜନ୍ତୁ
ଏକାବେଳେ ପୂରିଲାକ ସମସ୍ତଙ୍କ ମୃତ୍ୟୁ ।
ଇନ୍ଦ୍ର ଅଗ୍ନି ବରୁଣ ଯେ ଯମ ଧନପାଳ
ବାତ ନଇରତ ଆଦି ହୋଇଲେ ଆକୁଳ ।
ବୋଇଲେ ମେରୁ ଥିଲାରୁ ଥିଲା ଆମ୍ଭ ଆଣ୍ଟ
ଏଡ଼େକ କଥା କି ବୋଲି କଲୁରେ ପାପିଷ୍ଠ
ମେରୁକୁ ମୁଣ୍ଡରେ ଯେତେ ବହିଲୁ ରାକ୍ଷସ
ଅଖଡ଼େ ଦେବକୁଳ ତୁ କଲୁରେ ବିନାଶ ।
ମେରୁସିନା ଏ ପୃଥ୍ୱୀକି ଅଟେ ମହାଖମ୍ବ
କାହିଁ କେତେ ବ୍ୟାପି ସେହୁ ହୋଇଅଛଦମ୍ଭ ।
ମେରୁ ଉପୁଡ଼ିଲେ ଆଉ ରହିବ କି ପୃଥ୍ୱୀ
ଏତେକ ପାଞ୍ଚି କରନ୍ତି ଦେବେ ମନେ ଭ୍ରାନ୍ତି
ଦେବଙ୍କର ଏ ବିକଳ ଜାଣି ପିତାମହ
ନାରଦଙ୍କୁ ବୋଇଲେକ ବେଗ ହୋଇଯାଅ ॥
ଅସୁରଙ୍କ ପୁରେ ରହିଛନ୍ତି ଶୁକ୍ର ଗୁରୁ
ତାହାଙ୍କୁ କହିଲେ ବୋଧି ରଖିବେ ସେ ମେରୁ ।
ଆନ ଲୋକର ସେ ବୋଧି ନୁହେଁ ମୁରାସୁର
ମୁଁ ଯାଇ ବୋଧନ୍ତି ମୋତେ ନାହିଁ ତାର ଡର
ଅନିମିତ୍ତେ କିମ୍ପାଇଁ ମୁଁ ଯିବି ତାର ଠାଇ
ମୁଁ କହିଲି ବୋଲି କହ ଶୁକ୍ରଙ୍କୁ ଯେ ଯାଇ ।
ଯେମନ୍ତେ ରହଇ ପୂର୍ବ ପ୍ରାୟ ସୁରାଳୟ
ତେମନ୍ତ କରିଣ ତୁମ୍ଭେ ଶୁକ୍ର ଆଗେ କହ ।
ପିତାଙ୍କର ଆଜ୍ଞାପାଇ ନାରଦ ଚଳିଲେ
ଶୁକ୍ରଙ୍କୁ ଯାଇ ଭେଟିଣ ତଙ୍କାଳେ କହିଲେ ।
ନାରଦ ବୋଇଲେ ଶୁଣ ଆହେ ଶୁକ୍ରଗୁରୁ
ପିତା କହିଛନ୍ତି ତୁମ୍ଭେ ରଖିବ ଯେ ମେରୁ ।
ଏହିକ୍ଷଣି ମେରୁଗିରି ଉପାଡୁଛି ମୁର
ତୁମେ ପ୍ରବୋଧିଲେ ମାନି ରହିବ ଅସୁର ।
ନୋହିଲେ ସେ ସମୁଦ୍ରରେ ପକାଇବ ନେଇ
ଏ ରୂପେ ଶୁକ୍ରଙ୍କ ଆଗେ ନାରଦ ଯେ କହି ।
ଶୁଣି ଶୁକ୍ରଗୁରୁ ସେହିକ୍ଷଣି ଗଲେ ଚଳି
ଦେଖିଲେ ମେରୁ ରଖିଛି ମୁଣ୍ଡେ ଦୈତ୍ୟ ଟୋଳି ।
ମହା ବିଶ୍ୱରୂପ ଧରି ଗର୍ଜେ ଘନ ଘନ
ନିଃଶ୍ୱାସ ଘାତରେ ପାଶୁଁ ଉଡ଼େ ତରୁତୃଣ ।

ଦର୍ଶନ ତା ରଟ ରଟ ନେତ୍ର ମଟ ମଟ
ମେରୁକୁ ବହିଣ ମୁର ମାରେ ବାହାସ୍ଫୋଟ ।
ଦେଖିଣ ଶୁକ୍ରଗୁରୁଯେଧାଇଁଲେ ଉଦ୍‌ବେଗେ
ରହ ରହ ବାପ ବୋଲି ଡାକିଲେ ଆତଙ୍ଗେ
ବୋଇଲେ କାହିଁକି ଉପାଡ଼ିଲୁ ତୁ ସୁମେରୁ
ଆମ୍ଭେ ଧାଇଁଅଛୁ ଜାଣ ପୃଥ୍ୱୀ ଟଳିବାରୁ ।
ମେରୁ ଘେନି ସିନା ପୃଥ୍ୱୀ ଅଛଇ ଯେ ରହି
ମେରୁ ଗଲେ ଚତୁର୍ଦ୍ଦଶ ପୁର ନାଶଯାଇ ।
ମେରୁ ଟଳିଗଲେ ଜାଣ ଗଲା ତିନିପୁର
ଚକ୍ରବର୍ତ୍ତୀ ହୋଇ ଏହା ନକଲୁ ବିଚାର ।
କଳହ ଛାର ପଦକୁ କଲୁ ଏଡ଼େ କ୍ରୋଧ
ଏବେ ଆମ୍ଭେ କହୁଅଛୁ ମନକର ବୋଧ ।
ମଥାର ଉପରୁ ମେରୁ ଥୁଅ ଏବେ ତଳେ
ମୁର କହିଲା ଗୁରୁ ନ କହ ଏତେବେଳେ ।
ଦେଖିଲା କରିଣ ଆଉ ନ ରଖିବି ମହୀ
ମନ୍ଦ ପାଞ୍ଚିଲେ ସେ ମୋତେ ମୋର ଦ୍ରବ୍ୟଖାଇ
ତେଣୁ ଆସି ଏହି ମେରୁଦଣ୍ଡ ଉପାଡ଼ିଲି
ଆହୁରି ଦଣ୍ଡେକ ଅଛି ତୁମ୍ଭଙ୍କୁ କହିଲି ।
ଆଙ୍ଗୁଳେ ମାତ୍ର ଭୂମିକି ଅଛି ଆଉ ଲାଗି
ନିଃଶ୍ୱାସକେ ଟେକି ସିନ୍ଧୁ ମଧ୍ୟେ ଫିଙ୍ଗିଦେବି
ସମୁଦ୍ରେ ପଡ଼ି ମରିବେ ଦୁଷ୍ଟ ଦେବଲୋକେ
କହିବା କଥା ରହିବ ମୋର ପୃଥ୍ୱୀଯାକେ ।
ଶୁକ୍ରବୋଇଲେରେ ବାପ ଶୁଣ ବ୍ରହ୍ମାପୁତ୍ର
କରିବାକୁ ଏକଥା ତୋ ଅବା କେତେ ମାତ୍ର
ମେରୁ ଭାଙ୍ଗିବାକୁ ହେଲେ କିଛି ନାହିଁ ରସ
ସ୍ଥାବର କୀଟପତଙ୍ଗ ଆଦି ଯିବେ ନାଶ ।
ଜନ ମନୁଷ୍ୟ ଅଛନ୍ତି ଯେତେ ତହିଁ ପୁରୀ
ହର ବ୍ରହ୍ମା ସହିତରେ ସର୍ବେ ଯେବେ ମରି ।
ସାକ୍ଷାତରେ ନିଜ ପିତା ଧାତାପରା ତୋର
ସେ ମଲେ କରିବୁ ସିନା ଦଶକ୍ରିୟା ଘର ।
ପିଣ୍ଡ ପ୍ରଭୃତି ଦେଇଣ କେତେ ଶ୍ରମି ହେବୁ
ଆମ୍ଭ ବୋଲପାଳି ମେରୁକୁଯେ ରଖବାବୁ ।
ମୁରାସୁର ବୋଇଲେହୋ ଶୁଣ ଶୁକ୍ରଗୁରୁ
ବ୍ରହ୍ମାମଲେ ମୋର ପାପ ଯିବ ସବୁଠାରୁ ।
ସେ ଯେବେପିତାହୋଇଣକଲେ ମୋତେମାୟା
ମଲେସେ ମରନ୍ତୁ ପଛେ କରିବି ଯେ କ୍ରିୟା ।
ବ୍ରହ୍ମାଯେବେ ପୁତ୍ରବୋଲି ବିଚାରନ୍ତା ମୋତେ
ସେ କାହୁଁ ମନ୍ଦ ପାଞ୍ଚନ୍ତା ଅବା ହୃଦଗତେ

ଦେବତାଙ୍କୁ ଧରି କିମ୍ପା କରନ୍ତା ବିହାର
ଏଘେନି ଟାଳୁଛି ମେରୁ ମରୁ ବେଦବର ।
ତଥାପି ଶାସ୍ତ୍ରର କଥା ଅନ୍ୟଥା ହେବକି
ପତ୍ନୀହୋଇ କୂଟଯେବେ ପାଞ୍ଚଇ ପତିକି ।
ପିତା ହୋଇଣ ଯଦ୍ୟପି ଗୁରୁ ନ ମାନଇ
ବ୍ରାହ୍ମଣ ହୋଇଣ ଯେବେ ନକରଇ ସନ୍ଧ୍ୟା
ସୁନ୍ଦରୀ ସ୍ତିରୀ ଯଦ୍ୟପି ହୁଏ ମହାବନ୍ଧ୍ୟା ।
ରାଜା ହୋଇ ନପାଳଇ ଯେବେ ଲୋକବର୍ଗ
ପତିହୋଇ ନକରେ ଯେ ପତ୍ନୀକୁ ସୁଆଗ ।
ଧନ ଅର୍ଜ୍ଜି ସୁପାତ୍ରେ ନ ଦିଏ ଯେଉଁ ନର
ତପସ୍ୱୀ ହୋଇଣ ଯେବେକରେ ମହାକୋପ
ସତୀହୋଇଣ ଲୋଡ଼ଇ ଯେବେ ରତ୍ନକଛ ।
ପଣ୍ଡିତ ହୋଇ ବଚନ ଯେବେ କହେ କୂଟ
ଏତେ ଲୋକଙ୍କୁ ଯେ ବୋଲି ସଂସାରେ ପାପିଷ୍ଠ
ଶୁକ୍ରଗୁରୁ ବୋଇଲେ ହେ ଶୁଣ ନୃପମଣି
ବାଛୁରୀ ଉପରେ କଲ ବୃଷଭ ମାରୁଣି ।
ମୁରବୋଲେ ଏ କଥାଟି କିପରିହେ ଗୁରୁ
ଶୁଣିବି ମୁଁ ଆଗେ କହ ମୁଣ୍ଡେ ଥାଇ ମେରୁ ।
ବୃଷଭ କେ ହେଲା ଆଉ ବାଛୁରୀଟି କେହୁ
ଏ କଥା କହ ସଂଶୟ ମୋର ଆଗେ ଯାଉ ।
ଶୁକ୍ର ବୋଇଲେ କହିବାଶୁଣ ଶାସ୍ତ୍ରବନ୍ଧେ
ଅଟନ୍ତି ଋଷିଙ୍କ ମାତା ପିତା ଚାରିବେଦେ ।
ବେଦରୁ ଜନମ ହୋଇଲେକ ଋଷିଗଣ
ତେଣୁ ସେ ବାଛୁରୀବୋଲି ଋଷିଙ୍କୁଟି ଜାଣ ।
ବେଦରୁଟି ପରକାଶ ସାରସ୍ୱତ କ୍ଷୀର
ସେ କ୍ଷୀର ପିଅନ୍ତି ଜାଣ ସର୍ବ ଋଷିବର ।
ତହିଁଟି କ୍ଷୀର ପ୍ରକାଶ ହେଲା ବେଦହୁଁ
ତାହା ଦେଖି ଋଷିମାନେ ଭୁଞ୍ଜନ୍ତି ସୁସ୍ୱାଦୁ ।
ଋଷିମାନେ ବୋଲନ୍ତି ଯେ ଏଣୁ ବେଦଆମ୍ଭା
ପିବନ୍ତି ଜ୍ଞାନର ତତ୍ତ୍ୱ କ୍ଷୀର ମନଇଚ୍ଛା ।
ସଂସାରରେ ଚାରିବେଦ ସର୍ବରୂପ ବ୍ୟାପି
ଗାୟତ୍ରୀ ମାତାରୁ ଜନ୍ମ ସର୍ବେ ଜୀବରୂପୀ ।
କଥା ଏକ ଆଉ ମଧ ଶୁଣ ନୃପମଣି
ବିଭାହୋଇଛ ତେତିଶିକୋଟି ପାଟରାଣୀ ।
ତାହାଙ୍କ ଗର୍ଭରୁ ଯେବେ ଜନ୍ମିଲେକ ପୁତ୍ର
ଏଣୁ ସେ ତୋହର ବସ୍ତା ହୁଅନ୍ତି ସମସ୍ତ ।
ବ୍ରହ୍ମାଙ୍କୁ ହେଲେ ତୁହି ତୁ କରିପାରୁ ନାଶ
କୋଟିମେରୁ ଗଲେ ତାହାଙ୍କର ଯିବ କିସ

କେବଳ ପୃଥ୍ୱୀ ହୋଇବ ଏକା ରସାଗତ
ନାତି ପୁତ୍ର ଦାର ତୋର ମରିବେ ନିୟତ ।
ମଦନବତୀର ତୁଲେ ତେତିଶକୋଟି ରାଣୀ
ଏହିମାନେ ମରିବେଟି ମେରୁ ଗଲାକ୍ଷଣି ।
ଏଣୁ ତୁହି କ୍ଷଣେ ହେଲୁ ବାଛୁରୀ ତୋ ପୋଏ
ଏଡ଼େ ଅବିଚାର କରୁ ସର୍ବେ ଯିବେ କ୍ଷୟେ ।
ଶୁଣି ମୁରାସୁର ମନ ମଧ୍ୟେ କଲା ଶଙ୍କା
ବୋଇଲାକି ସମସ୍ତଙ୍କୁ ମାରିବି ମୁଁ ଏକା ।
ମେରୁକୁ ଭାଙ୍ଗନ୍ତେ ଯେବେ ମୋରବଂଶ ଗଲା
ସେକଥାରେ ମୋର ତେବେ କେଉଁକଥା ହେଲା
ମେରୁ ସୁଖେ ଆଉ ପୁତ୍ରେ ମୋ ସୁଖେ ଥାଆନ୍ତୁ
ବଂଶ ରକ୍ଷାପାଇଁ ସିନା ସବୁକର୍ମ ହେତୁ ।
ଏତେଲୋକଙ୍କୁ ମାରିକି ହେବ ମେରୁ ନାଶି
ଥାଅ ଥାଅ ଦେବେ ଏବେ ସ୍ୱର୍ଗପୁରେ ବସି ।
ଏତେବୋଲି ପୁଣିଦୈତ୍ୟେ ମେରୁ ଧରିକରେ
ମଥାରଉପରୁ ଟେକି ରଖିଲା ମହୀରେ ।
ଐଶାନ୍ୟ କରି ରଖିଲା ମେରୁ ତଳେ ଆଣି
ଅଷ୍ଟକିଲା ଘେନି ମେରୁ ବୁଲିଲା ଧରଣୀ ।
ରହିଲା ଐଶାନ୍ୟ ମୋଡ଼ି ହୋଇ ଗିରିବର
ତେଣୁ ଐଶାନ୍ୟେ ହୁଅଉ ଉଦେ ଦିବାକର ।
ଶୁଣ ଆହେ ନାରଦ ଏ ନୃସିଂହ ପୁରାଣ
ଏଡ଼େକ ପ୍ରତିଜ୍ଞା କରି ନାହାନ୍ତି କେ ଜାଣ ।
ସେହିଦିନୁ ଐଶାନ୍ୟରେ ଉଦେହେଲେ ରବି
ଚନ୍ଦ୍ରହିଁ ଉଦେ ହୁଅନ୍ତି ପାଳନେ ପୃଥିବୀ ।
ପୁତ୍ରଙ୍କ କଥାରେ ସ୍ଥିର ହେଲା ମୁରାସୁର
ମେରୁକୁ ଥୋଇ ଗୁରୁଙ୍କୁ କଲା ନମସ୍କାର ।
ଶୁକ୍ରଗୁରୁଙ୍କୁ ଘେନିଣ ରାଜ୍ୟେ ଚଳିଗଲା
କନକାବତୀ ପୁରରେ ଯାଇ ପ୍ରବେଶିଲା ।
ତହିଁଉତ୍ତାରୁ ଚଳିଲେ ବ୍ରହ୍ମା ଯଶୋବନ୍ତୀ
ଇନ୍ଦ୍ରହିଁ ଚଳିଲେ ଚଳିଗଲେ ଉମାପତି ।
ତେତିଶକୋଟି ଦେବତାମାନେ ଚଳିଗଲେ
ଯେ ଯାହାର ଆଶ୍ରମରେ ପ୍ରବେଶ ହୋଇଲେ
ରହିଲେ ଜନ୍ତୁମାନେ ଯେ ଯାହାଠାବ ଘେନି
ସ୍ଥାବର ଜଙ୍ଗମ କୀଟଆଦି ଚାରିଖାନି ।
ବିଷ୍ଣୁ ଜନ୍ମକୁ ଅଛନ୍ତି ସର୍ବେ ବାଟ ଚାହିଁ
ଶୁଣ ହେ ନାରଦ ଏବେ ତାହା କହୁଥାଇଁ
ସାମବେଦୁଁ ଜାତ ଜାଣ ଏ ଗ୍ରନ୍ଥର ବାଣୀ
ଅପୁତ୍ରିକର ଯେ ପୁତ୍ର ହେବ ଏହା ଶୁଣି ।
ଧନଧାନ୍ୟ ଆୟୁଷ ଯେ ବଢ଼ିବ ତାହାର
ଗଙ୍ଗାସ୍ନାନର ଫଳକୁ ଲଭିବ ସେ ନର ।
ଶତେକ ମାଢ଼ ସୁବର୍ଣ୍ଣ ଦାନେ ଫଳ ଯେତେ
ନୃସିଂହ ପୁରାଣ ପଦକର ଫଳ ତେତେ ।
ପଦ ପଦକରେ ପୁଣି ପୂରି ଅଛି ରସ
ନାଦରଙ୍କ ଚରଣରେ ନାଗଲୋକ ଇଶ ।

❋ ❋ ❋

## ଭଗବତୀର ବିବାହ

ଶୁଣ ହେ ନାରଦ ଏଥିଉତ୍ତାରୁ ପ୍ରସଙ୍ଗ
ଯେମନ୍ତ ମର୍ତ୍ତ୍ୟରେ ଆସି ଜନ୍ମିବେ ନୃସିଂହ ।
ଜମ୍ବୁଦ୍ୱୀପ ମଧ୍ୟେ ସାର ବଦରିକା ଦେଶ
ବିଷ୍ଣୁପାଇଁ ସଞ୍ଚିଲେଟି ବିଧାତା ପୁରୁଷ ।
ସେ ପୁର ନଗ୍ରକୁ କିସ ଦେବି ମୁଁ ଉପମା
ସହସ୍ର ଧାରାରେ ଗଢ଼ିଅଛି ବିଶ୍ୱକର୍ମା ।
ଶତେକ ଯୋଜନ ଅଟେ ସେ ବଦ୍ରିକାପୁର
ନବସସ୍ର ସାହି ପୁଣି ଏକ ଲକ୍ଷ ଘର ।
ସାକ୍ଷାତେ ସେ ବଦରିକା ଅଟେ ବଇକୁଣ୍ଠ
ସ୍ୱର୍ଗକୁ ସହସ୍ରଗୁଣ ଅଟଇ ପାଳଟ ।
ସେ ନଗ୍ରେ ବାସ କରନ୍ତି ଯେତେ ନରନାରୀ
ସମସ୍ତେ ଜନ୍ମି ଅଛନ୍ତି ଗନ୍ଧର୍ବଂଶ ଧରି ।
ସେ ପୁର ପାଶରୁ ଗଙ୍ଗା ବହଇ ଉତ୍‌କ୍ରମି
ସବୁହୁଁ ପବିତ୍ର ଗୋବିନ୍ଦଙ୍କ ଜନ୍ମ ଭୂମି ।
ଘରେଘରେ ନୃସିଂହ ପୁରାଣ ସେ ଗୀତ
ଗାଆନ୍ତି ଯେତେକ ତହିଁ ସର୍ବେ ବିଷ୍ଣୁଭକ୍ତ ।
ରୋଗାଦି ଜ୍ୱର ଅସୁସ୍ଥ ବିବର୍ଜିତ ତହିଁ
ଅଛନ୍ତି ଆରୋଗ୍ୟ କାମପ୍ରାୟ ଦେହ ବହି ।
ଉପମା ଦେବା ସେ ଦ୍ୱିତୀ ବୈକୁଣ୍ଠକୁ କିସ
ଶରୀର ଧରି ରହିବେ ଯହିଁ ହୃଷୀକେଶ ।
ନାରଦ ବୋଇଲେ ପିତା କହିବା ଯେ ହେଉ
ସେ ନଗ୍ରେ କିପରି ଜନ୍ମ ହେଲେ ମହାବାହୁ ।
ବ୍ରହ୍ମା ବୋଇଲେ ହେ ଶୁଣ ସେପୁର ବାରତା
ବିଷ୍ଣୁଙ୍କ ଜନ୍ମ ନିମନ୍ତେ ଅର୍ଜିଛି ବିଧାତା ।
ପ୍ରତିଜନେ ନାମେ ନାମେ ବହନ୍ତି ସେ ପୁର
ଆଦ୍ୟେ ବଦରିକା କଥା ଶୁଣ ମୁନିବର ।
ଜନ୍ମିବେ ନୃସିଂହ ଶେଷ ବୋଲି ବେନି ଭାଇ
ବଦରିକା ନଗ୍ରେ ଆଦି ବିଳସିବେ ରହି ।

ମୁରାରୁର ଦୈତ୍ୟକୁ ଯେ ମାରିବେ ନୃହରି
ସେହିଠାରୁ ନାମଗୋଟି ବହିବେ ମୁରାରି ।
ଅବତାର ଅନ୍ତେ ଯିବେ ବଇକୁଣ୍ଠ ପୁର
ଲେଉଟ ଜନ୍ମ କହିବା ଶୁଣ ପ୍ରଭୁଙ୍କର ।
ଏହିରୂପେ ଭଗବତୀ ଉଦରୁ ଜନମି
ଦ୍ୱିତୀୟ ଯେ ଅବତାର ହେବେ ଅନ୍ତର୍ଯ୍ୟାମୀ
ଶ୍ରୀ ବାମନ ମୂର୍ତ୍ତି ଧରି ଅଦିତି ଉଦରେ
ରହିବେ ସେ ଗୃହକରି ନୈମିଷା ବନରେ
ବଳିକି ପାତାଳପୁରେ ଚାପି ନରହରି
ନୈମିଷା ଅରଣ୍ୟ ଯିବେବୈକୁଣ୍ଠକୁ ଫେରି
ତୃତୀୟ ଅବତାର ଯେ ଅଯୋଧ୍ୟା ନଗରେ
ଜନ୍ମହେବେ ସୂର୍ଯ୍ୟବଂଶେ କୌଶଲ୍ୟା ଗର୍ଭରେ ।
ସୀତାଘେନି ଅଯୋଧ୍ୟାରେ କରିବେ ବୈଭୋଗ
ରାବଣ ମାରି ବୈକୁଣ୍ଠ ଚଳିବେ ଶ୍ରୀରଙ୍ଗ ।
ତ୍ରେତାଯୁଗ ଲୀଳାମାନ ସାରି ମହାପ୍ରଭୁ
ଚତୁର୍ଥେ ଜନ୍ମ ହୋଇବେ ଦେବକୀର ଗର୍ଭୁ ।
କରିବେ ଅଷ୍ଟବରଷ ଲୀଳା ଗୋପରାଜ୍ୟେ
ନାଶିବେ କଂସ ମଥୁରାପୁରେ କରି ବିଜେ ।
ନୈମିଷା ଅଯୋଧ୍ୟା ବଦରିକା ମଧୁପୁର
ଏ ଚାରିନଗ୍ର ବିଷ୍ଣୁର ଅଟଇ ମନ୍ଦିର ।
ସ୍ଥାନମାନ ରହଇ ଯେ ଯାନ୍ତି ଶିରୀ ଘେନି
ଶୁଣ ନାରଦ କହନ୍ତି ଦେବ ପଦ୍ମଯୋନି ।
ପ୍ରତ୍ୟକ୍ଷେ କୃଷ୍ଣବଲ୍ଲଭ ଅଟନ୍ତି ବ୍ରାହ୍ମଣ
କଶ୍ୟପ ଋଷିର ଅଂଶ ପ୍ରତ୍ୟକ୍ଷେ ସେ ଜାଣ ।
ତାହାଙ୍କର ପତ୍ନୀଅଟେ ଯେଉଁ ଭଗବତୀ
ଅଦିତିର ଅଂଶ ଘେନି ପ୍ରକାଶ ସେ ସତୀ ।
ଭଗବନ୍ତ ରାଜାର ଯେଅଟନ୍ତି ଦୁହିତା
କରବୀର ଦେଶରେ ଯେନୃପ ଅଗ୍ରଜିତା ।
ମନୁବଂଶ ରାଜା ସେହୁ ଅଟେ ମୁନିବର
ଦେବତା ବିପ୍ର ପାଦରେ ଭକତି ଅପାର ।
କୃଷ୍ଣବଲ୍ଲଭର ସାଧୁ ଗୁଣମାନ ଜାଣି
ଭଗବତୀ କନ୍ୟାକୁ ଯେ ବିଭାକଲେ ଆଣି
ମନୁବଂଶେ ହେଲେ ସେହି ପାଟ ମହାଦେଈ
ପତିବ୍ରତାପଣେ ତାର ସଦା ଦିନ ଯାଇ ।
ଯେତେ ବାରବ୍ରତ ଜାଣସବୁ ପତିସେବା
ପ୍ରତ୍ୟକ୍ଷେ ଅଦିତି ପୁଣ ସୁନ୍ଦରୀ ଯେ ଯୁବା ।
ସ୍ୱାମୀସେବା ବିନୁ ସେହୁ ନ ଜାଣଇ ଆନ
ବିଷ୍ଣୁଠାରୁ ଅଧିକରେ ସେବେ ପ୍ରତିଦିନ ।
ପାଦ ପ୍ରକ୍ଷାଳନ ସେବା ଅର୍ଚ୍ଚନାଦି କରି
ସକଳ ନିର୍ଭା କରଇ ଭକ୍ତିଭାବ ଧରି ।
ପକ୍ୱଦ୍ରବ୍ୟ ଆଣି ଆଗ ଦିଅଇ ସ୍ୱାମୀକି
ଶେଷେ ଉଚ୍ଛିଷ୍ଟ ନିର୍ମାଲ୍ୟ ପ୍ରାୟ ଭୁଞ୍ଜେଟେକି
ପତିର ବାକ୍ୟ ପାଳିଣ କରେ ସବୁ କାର୍ଯ୍ୟ
ମନ୍ତ୍ରୀପଣକୁ ପ୍ରତ୍ୟକ୍ଷେ ଅଟେ ସୁରାଚାର୍ଯ୍ୟ ।
ହିତ ପଣକୁ ସେ ଅଟେ ପୁତ୍ରେ ମାତାପ୍ରାୟେ
ସହଣୀପଣକୁ ପ୍ରତ୍ୟକ୍ଷେ ସେ ପୃଥ୍ୱୀପ୍ରାୟେ ।
ପଦାର୍ଥ ସଞ୍ଚିବାକୁ କି ଅଟେ କମଳିନୀ
ପତିଙ୍କୁ ସେବଇ ଯେହ୍ନେ ଚନ୍ଦ୍ରକୁ ରୋହିଣୀ ।
ବଚନ କହଇ ମଧୁରୁଚି ଖାନ୍ତି ଧାର
ନିଧୂମ ଅନଳପ୍ରାୟେ ଦିଶେ ଜ୍ୟୋତି ତାର ।
ବସନ୍ତ କୋକିଳପ୍ରାୟ ବାକ୍ୟେ ପରକାଶି
ତପସ୍ୱୀ ଗୁଣକୁ ଋଷିସମ ଶୁଭ୍ରକେଶୀ ।
ଚନ୍ଦ୍ରବଦନୀ ବାମା ସେ କୁରଙ୍ଗୀ ନୟନୀ
ଯୋଗେନ୍ଦ୍ର ଗୁଣ ପରାୟ ଅଟଇ ସୁଜ୍ଞାନୀ
ମହୀଧରଙ୍କ ପରାୟେ ମନ ତା ନିଶ୍ଚଳ
ଶାନ୍ତିପଣକୁ ପ୍ରତ୍ୟକ୍ଷେ ଅଟେ ଗଙ୍ଗାଜଳ ।
ସ୍ତିରୀକୁଳକୁ ପ୍ରତ୍ୟକ୍ଷ ଅଟେ ସୁଲକ୍ଷଣୀ
କୃଷ୍ଣବଲ୍ଲଭ ରାଜାର ସେହି ପାଟରାଣୀ ।
ଏମନ୍ତ ସେ ସୁଲକ୍ଷଣୀ ବିଷ୍ଣୁ ଜନ୍ମ କଥା
ଶୁଣହେ ନାରଦ କହୁଛନ୍ତି ଚଉମଥା ।
ସେ ଭଗବତୀର ଗର୍ଭୁ ନୃସିଂହ ଜନ୍ମିବେ
ଶୁଣ ଆହେ ସାଧୁଜନେ ଲେଖିବି ତା ଏବେ ।
ଅବତାର ହେବେ ନରସିଂହ ଦେବରାୟେ
ସତ୍ୟଯୁଗେ ଜନ୍ମିକଲାଦେବ ଦୈତ୍ୟକ୍ଷୟେ ।
ସେ କଥା କହିବାପାଇଁ ବଳିଲା ମୋ ମନ
ବାନ୍ଧିବି ପ୍ରକୃତ ବନ୍ଧେ ଯୋଡ଼ି ପଦମାନ ।
ଜନ୍ମରୁ ମୂର୍ଖ ନ ଜାଣେ ଲେଖି ଏହା
ବେଦବର ନନ୍ଦିନୀ ଯେ ହେଲେ ମୋତେ ସାହା
ଆପଣେ ଯେ ସରସ୍ୱତୀ ମୂର୍ତ୍ତିମନ୍ତ ହୋଇ
ସମର୍ପଣ ପଦ ମୋତେ ଦେଇଛନ୍ତି କହି ।
ଏହା ମିଥ୍ୟା ବୋଲି ଯେହୁ କରିବେକ ନିନ୍ଦା
ନିନ୍ଦିବା ଲୋକର କଥା ବୁଝିବେ ସାରଦା ।
ପୁରାଣେ ତହିଁର ଦୋଷାଦୋଷ ଛନ୍ତି କହି
ନିନ୍ଦିବାର ଲୋକମାନେ ଯେତେ ଦୋଷପାଇଁ ।
ଶ୍ରୀବିଷ୍ଣୁ ପୁରାଣେ ଯେତେ ସଂସାରଟି ଅଛି
ତ ତାଙ୍କୁ ନିନ୍ଦାକରନ୍ତି ପାଷାଣ୍ଡେ ଯେ ପାଞ୍ଚି ।

ସେ ପାପୀମାନେ ସଂସାରେ ଜାଣ ବଡ଼ଦୋଷୀ
ଦେହ ଅନ୍ତେ ହୁଅନ୍ତି ସେ ଜନେ ନର୍କବାସୀ
ଗୁରୁ ଗୋସାଇଁକି ନିନ୍ଦା କରନ୍ତି ଯେ ପ୍ରାଣୀ ।
ମହାପାପୀଙ୍କ ସଙ୍ଗତେ ନେଇ ତାଙ୍କୁ ଗଣି ।
ସଂସାରେ ଉପକାର ଯେ ପ୍ରାଣୀଙ୍କରିଥାଇ
ତାଙ୍କୁ ନିନ୍ଦାକଲେ ପଡ଼େ ନରକରେ ଯାଇ
ପିତାମାତାଙ୍କୁ ଯେବଣ ପୁତ୍ର ଜାଣ ନିନ୍ଦେ
ଦେହଅନ୍ତେ ନର୍କେମାଛି ହୁଅଇ ଦୁର୍ଗନ୍ଧେ ।
ସୁଜନମାନଙ୍କୁ ନିନ୍ଦାକରନ୍ତି ଯେ ପ୍ରାଣୀ
ମଲେ ସେହୁ ନୀଚକୁଳେ ଜନମନ୍ତି ପୁଣି ।
ଏକବ୍ରତା ସ୍ତିରୀଙ୍କିଟି ନିନ୍ଦଇ ଯେ ପୁଣ
ନପୁଂସକ ହୋଇ ଜାତ ହୁଅନ୍ତି ସେ ଜାଣ ।
ବିଦ୍ୟାଗୁରୁଙ୍କର ନିନ୍ଦା କରନ୍ତି ଯେ ଲୋକ
ମଲେ ଶ୍ୱାନହୋଇ ଜନ୍ମହୋନ୍ତି ମର୍ତ୍ତ୍ୟଲୋକ
ଯେବଣ ପ୍ରାଣୀଟି ଜାଣ ମାତା ନିନ୍ଦାକରେ
ତାହାକୁଯେ କୁଷ୍ଟବ୍ୟାଧି ଘୋଟେ ଏସଂସାରେ
ଯେହୁ ଅବା ମୂର୍ଖପଣେ ପୃଥ୍ୱୀକରେ ନିନ୍ଦା
ତାହାଙ୍କର କୃଷି କେବେ ନୁହଇ ସର୍ବଦା ।
ଯେଉଁ ଅବିବେକ ପ୍ରାଣୀ ଧର୍ମ ନିନ୍ଦା କରେ
ଦରିଦ୍ର ହୋଇ ସେ ଜନ୍ମ ହୁଏ ଶତବାରେ ।
ଆବର ଶତେକ ଜନ୍ମ ହୁଅଇ କୁକୁର
ସବୁବେଳେ ବିଷ୍ଠା ଆଦି କରଇ ଆହାର ।
ଅନଳଦେବଙ୍କୁ ନିନ୍ଦା କରନ୍ତି ଯେ ପ୍ରାଣୀ
ମନ୍ଦାଗ୍ନି ବ୍ୟାଧି ତାହାଙ୍କୁ ଘାରଇ ସେକ୍ଷଣି ।
ପୁରାଣ ନିନ୍ଦିଲେ କୁଷ୍ଟ ବ୍ୟାଧବ ହୁଏ ଜାତ
ଏ କଥାକୁ ଧ୍ରୁବ ବୋଲି ଜାଣ ତପୋବନ୍ତ
ନିନ୍ଦିବା ଲୋକମାନଙ୍କୁ ଯମପୁରେ ନେଇ
ଦଣ୍ଡଦେଇ ନାଶକର ଜନ୍ମ କରୁଥାଇ ।
କାହାକୁ ଚଣ୍ଡାଳଗରେ ନେଇକରେ ଜାତ
କାହାକୁ ବ୍ୟାଘ୍ର ଭଲ୍ଲୁକ କରଇ କୃତାନ୍ତ ।
କୁମ୍ଭୀର ମଣ୍ଡୁକ ଗଜ ଅଶ୍ୱ କେବା ହୋଏ
କାହାକୁ କୋକ ଘୁଷୁରି ଜନ୍ମେଧରି କାୟେ
କେହୁ ଅବା ଇନ୍ଦୁରର ଜନମ ଲଭଇ
ଗଣ୍ଡା ଗୟଳ ମହିଷି ଗୋରୁ ମେଷ କହି ।
ନିନ୍ଦୁକ ଲୋକ ଏରୂପେ ଜନ୍ମ ହେଉଥାଏ
ପୁଣ୍ୟପୁରୁଷ ଲୋକ ଯେ ବୈକୁଣ୍ଠକୁ ଯାଏ ।
ରେଣୁକା ନର୍ମଦା ଗଙ୍ଗା ଗୟା ସରସ୍ୱତୀ
ଭାନୁମତୀ ପୁଣ୍ୟତୋୟା ଯମୁନା ଗୋମତୀ ।
ବିଷ୍ଣୁଭଦ୍ରା ତୁଙ୍ଗଭଦ୍ରା କାଶୀ କଉଶିକୀ
କାବେରୀ ଯେ ଗୋଦାବରୀ ମନ୍ଦାଗ୍ନି ପୁଲକୀ ।
ଗଣ୍ଡୁକୀ ମଣିକର୍ଣ୍ଣିକା ବୈତରଣୀ ଗଲେ
କେହି ନୋହେ ସରି ଏହି ଗ୍ରନ୍ଥ ଶୁଣିଥିଲେ ।
ଏ କଳିକାଳ ପାତକ ଖଣ୍ଡିବା ନିମନ୍ତେ
ନୃସିଂହ ପୁରାଣ ମୁହିଁ ଲେଖିଛି ପ୍ରାକୃତେ ।
ବେଦବିଦ୍ୟା ସଂସ୍କୃତ ଯେ ମୋର ପଢ଼ାନାହିଁ
କେବଳ ବିଷ୍ଣୁ ନାମକୁ ହୃଦେ ଜପୁଥାଇ ।
ନ ଜାଣଇ କାବ୍ୟଶାସ୍ତ୍ର ଶୁଣିନାହିଁ ଗ୍ରନ୍ଥ
କେବଳ କହିଲେ ପୂର୍ବହେତୁ ଜଗନ୍ନାଥ ।
ଗୋବିନ୍ଦ ଆଜ୍ଞାହୋଇଛି ମୋତେ ନିରାଧାର
ବୋଇଲେ ଏହି ନୃସିଂହ ପୁରାଣ ତୁ କର ।
ତେଣୁ ମୁଁ ପତ୍ରଲେଖିଲି ପଦ ଆଣି ଛନ୍ଦି
ନୋହିଲେ ହୁଅନ୍ତାକାହୁଁ ମୋର ଏତେ ବୁଦ୍ଧି ।
କହନ୍ତିଯେ ପ୍ରଭୁ ଯାହା ଲେଖେ ମୁଁ ତା ଆଣି
କେବେହେ ଗୋଚର ମୋତେନୁହେଁ ଏହାପୁଣି ।
ସେହି ପ୍ରଭୁ ନୃସିଂହଙ୍କ ଚରଣେ ମୋ ଆଶ
ଏ ଗ୍ରନ୍ଥ ବଖାଣେ ବିପ୍ରପୀତାମ୍ବର ଦାସ ।

❋ ❋ ❋

## ଶେଷ ନୃସିଂହ ଜନ୍ମ

ଯାହାଙ୍କର ଲୋମକୂପୁ କୋଟି କୋଟି ମହୀ
ଦେବଙ୍କ ଛଳେ ଉପୁଜେ ଆସି ଦେହ ବହି ।
ନିରାଲମ୍ବ ପୁରୁଷ ସେ ଜନ୍ମ ନାହିଁ ଯାର
ସଂସାରକୁ ରଖିବାକୁ ହୁନ୍ତି ଅବତାର ।
ଆପେ ବ୍ରହ୍ମା ବିଷ୍ଣୁ ଆପେ ଯେହୁ ରୁଦ୍ର ଇନ୍ଦ୍ର
ଆପେ ଆପେ ବରୁଣ ସେ ଆପେ ରବି ଚନ୍ଦ୍ର ।
ଆପେ ଆପେ ନର ପୁଣି ଆପେ ସର୍ବଦେହୀ
ଆପେ ଆହେ ସାଧୁ ପୁଣି ଆହେ ଜ୍ଞାନୀହୋଇ ।
ଯାହାକୁ କି ଯୋଗୀମାନେ ହୃଦଗତେ ଚିନ୍ତି
ସେ ଅପୂର୍ବ ରୂପ ପୁଣି ନେତ୍ରେ ନ ଦେଖନ୍ତି ।
ସୁଜନଜନେ ଦେଖନ୍ତି ବୋଲି ମନେକରି
ଦୁଷ୍ଟ ଜନମ କରାନ୍ତି ବିଶ୍ୱେ ଆଣି ହରି ।
ଏବେ ସେହି ପାପିଷ୍ଠଙ୍କୁ ସଂହାରିବା ପାଇଁ
ଭଗବତୀଙ୍କ ଗର୍ଭକୁ ଆସି ଭାବଗ୍ରାହୀ ।
ଶ୍ରୀନିରାକାର ରୂପରୁ ହୋଇଣ ଆକାର
ନୃସିଂହ ନାମକୁ ଧରି ହେବେ ଅବତାର ।

ଆସିବେ କ୍ଷୀରାବଧି ଆସନରୁ ବିଜେ କରି
ଶ୍ରୀଅନନ୍ତ ମୂରତିଙ୍କି ସଙ୍ଗତରେ ଧରି ।
ଶଙ୍ଖ ଚକ୍ର ଗଦା ଶାର୍ଙ୍ଗଧାରୀ ଚତୁର୍ଭୁଜ
ମଥାରେ ଶୋହଇ ପୁଣି ମୁକୁଟ ବୈଦୁର୍ଯ୍ୟ ।
ଲଲାଟରେ ହୀରା ନୀଳା ମୁକ୍ତା ଜାଲିକମ
କପାଳରେ ଗୋରଚନା ଚିତା ଚନ୍ଦ୍ରସମ ।
ଶ୍ରବଣତଟରେ ଶୋହେ ମକର କୁଣ୍ଡଳ
ନାସାପୁଟରେ ମୁକୁତା ଶୋହେ ଢଳ ଢଳ ।
ଶରଦ ଚନ୍ଦ୍ରମା ପ୍ରାୟେ ଦିଶେ ପଦ୍ମମୁଖ
ଅଧର ଶୋଭନ ପକ୍ୱବିମ୍ବ ପୁଷ୍ପରେଖ ।
କଣ୍ଠତଟେ ନାନା ରତ୍ନମଣିମାଳା ସାଜେ
ହୃଦଗତେ କଉସ୍ତୁଭ ପଦକ ବିରାଜେ ।
ଦେହେ ଅଗୁରୁ ଚନ୍ଦନ ହୋଇଛନ୍ତି ବୋଳି
କଟିତଟେ ପୀତାମ୍ବର ପାଟ ଦିଶେ ଝଳି ।
ସେହି କଟିତଟେ ପୁଣି ବାଜେ ଘଣ୍ଟି ଘଣ୍ଟ
କୁନ୍ଦନ ରତନ ମଣି ଦିଶେ ଝଟ ଝଟ ।
ବାହୁମୂଳେ ବୀରବାନା ଫର ଫର ଉଡ଼େ
ତାଡ଼ ତୋଡ଼ର ବାହୁଟୀ କଙ୍କଣାଦି ଜଡ଼େ ।
ଆସନ୍ତି ବେନି ବାଳକ ରୂପେ ଆଦିମୂଳ
କିଙ୍କିଣୀ ଘଣ୍ଟିର ନାଦ ଶୁଭେ ଅନର୍ଗଳ ।
ଅଙ୍ଗୁଳିମାନଙ୍କରେ ଯେ ଶୋହେ ରତ୍ନମୁଦି
ନୂପୁର ବାଜଇ ଚାଲିବାରୁ କୁଦି କୁଦି ।
ତଳିପାତଳ କାନ୍ତିକି ସହସ୍ର କିରଣ
ଚମ୍ପାକଢ଼ ପ୍ରାୟ ଦିଶେ ଅଙ୍ଗୁଳି ବରଣ ।
ଶ୍ରୀବତ୍ସର ଚିହ୍ନ କୌସ୍ତୁଭମଣି ହୃଦେ ସାଜେ
ବିଜୟେ ନୃସିଂହ ସ୍ୱାମୀ ଚଢ଼ି ପକ୍ଷୀରାଜେ ।
ଏମନ୍ତ ସ୍ୱରୂପେ ମହାଲକ୍ଷ୍ମୀ ଦେବୀସାଇଁ
ମଞ୍ଚକୁ ଆସନ୍ତି ଦେବ ନରଦେହ ବହି
ଆସନ୍ତି ବୈକୁଣ୍ଠ ଭୁବନରୁ ନରହରି
ଶଙ୍ଖଚକ୍ର ଗଦାପଦ୍ମ ଛନ୍ତି କରେ ଧରି ।
ସକଳ ସ୍ଥାନର ସାର ଅଟେ ବଦରିକା
ମିଳିଲେ ବଲ୍ଲଭପୁରେ ବିଷ୍ଣୁ ଆସି ଏକା ।
ମିଥୁନ ମାସ ଯେ କୃଷ୍ଣପକ୍ଷ ତ୍ରୟୋଦଶୀ
ମୂଳାନାମେ ନକ୍ଷତ୍ରକୁ ଅଟେ ଧନୁରାଶି ।
ବାଳବ ନାମେ କରଣ ଯେ ଧରି ସୌଭାଗ୍ୟ
ମିଥୁନ ସଂକ୍ରାନ୍ତି ପଞ୍ଚବିଂଶ ଦିନ ଭୋଗ ।
ରାତ୍ର ଚତୁର୍ଦ୍ଦଶଦଣ୍ଡେ ମୀନ ଲଗ୍ନବେଳ
ମାତାଙ୍କ ଆଗେ ମିଳିଲେ ଆସି ଆଦିମୂଳ ।
ସେଦିନ ଯେ ଶୁଦ୍ଧସ୍ନାନ ସାରି ଭଗବତୀ
ଧୂପ ଦୀପ ଦେଇ ବିଷ୍ଣୁ ପ୍ରତିମା ପୂଜନ୍ତି ।
କୁଙ୍କୁମ ଚନ୍ଦନ ଅର୍ଘ୍ୟ ପୁଷ୍ପ ଗନ୍ଧବାସ
ଅମୃତ ମଣୋହି ଦେଇ କରେ ବିଷ୍ଣୁ ତୋଷ ।
ଅଧାମ ଗୋଟିକା ସର ଶାକର ଲବଣୀ
ପଇଡ଼ପାଣି ଖଜୁରୀ ଗଜା ଖଣ୍ଡ ଚିନି ।
ଏରୂପେ ପୂଜଇ ବଦରିକା ନାରାୟଣ
ଜନ୍ମନ୍ତୁ ମୋ ସୁତ ହୋଇ ପାଞ୍ଚେ ମାତା ପୁଣ ।
ପୂଜାରେ ମନକୁ ତୋଷି ହରପାଦେ ସେବି
ସୁପୁତ୍ର ଜନ୍ମନ୍ତୁ ବୋଲି ବିଷ୍ଣୁପାଦେ ଭାବି ।
ସ୍ୱାମୀସେବା କରି ଆପେ ଭୋଜନ ସେ କଲା
ଏଥି ଉତ୍ତାରେ ଯେ ରାତ୍ର ପ୍ରବେଶ ହୋଇଲା ।
ସନ୍ଧ୍ୟାକାଳରେ ଯେତେକ ପୂଜାବିଧି ସାରି
ଶଯ୍ୟା ପାରି ନିଦ୍ରାଗଲେ ଗୋବିନ୍ଦ ସୁମରି ।
ବିଷ୍ଣୁଙ୍କୁ ଯେ ଲୟକରି ଅଳ୍ପ ନିଦ୍ରାଯାନ୍ତେ
ସତୀର ଆଗେ ମିଳିଲେ ଆସି ଜଗନ୍ନାଥେ ।
ଶଙ୍ଖ ଚକ୍ର ଗଦା ପଦ୍ମ ଚାରିକରେ ଧରି
ଭଗବତୀ ଆଗେ ଯାଇ ଦୃଶ୍ୟହେଲେ ହରି
ଗରୁଡ଼ ଉପରେ ବସିଛନ୍ତି ନାରାୟଣ
ମାତାଙ୍କୁ କହନ୍ତି ସ୍ୱପନରେ ଉଠାଇଣ ।
ବୋଲନ୍ତି ଆମ୍ଭଙ୍କୁ ତୁମ୍ଭେ ଗର୍ଭେ ଠାବଦିଅ
ଶ୍ରୀହରି ଅନନ୍ତ ବେନି ହେବୁ ତୁମ୍ଭ ପୁଅ ।
ମୁରାସୁର ଭାରା କେହି ନ ପାରିଲେ ସହି
ତେଣୁ ଅମରେ ଗୁହାରିକଲେ ମୋତେ ଯାଇ
ପ୍ରତ୍ୟକ୍ଷେ ଆସିଛୁ ବିଷ୍ଣୁ ଆମ୍ଭେ ବାସୁଦେବ
ଆଜିଠାରୁ ତୁମ୍ଭ ଆମ୍ଭ ଗର୍ଭଧାରୀ ହେବ ।
ତଥାପି ପୃଥ୍ୱୀର ଭାରା ନାଶିବାର ପାଇଁ
ତୁମ୍ଭର ଗର୍ଭରେ ଜନ୍ମହେବୁ ବେନିଭାଇ ।
ରହିବୁ ତୁମ୍ଭ ଜଠର ମଧ୍ୟେ ଦଶମାସ
ରହିବୁ କହିଲୁ ଆମ୍ଭ ଆଜି ତୁମ୍ଭ ପାଶ ।
ଆମ୍ଭେ ଗର୍ଭେ ରହୁ ତୁଟିଯିବ ମାୟାଭ୍ରମ
ଉଭାହୋଇ କହନ୍ତି ଯେ ପୁରୁଷ ଉତ୍ତମ ।
ଏମନ୍ତେ ଶୁଭନ୍ତେ ବିଷ୍ଣୁ ଆଜ୍ଞା ଶୂନ୍ୟେ ବାଣୀ
ଉଠିଲେ ଚେତନାପାଇ ଭଗବତୀ ରାଣୀ ।
ଦେଖନ୍ତେ ଅଗ୍ରତେ ରହିଛନ୍ତି ଭାବଗ୍ରାହୀ
ଶଙ୍ଖଚକ୍ର ଗଦାପଦ୍ମ ଚାରିଭୁଜେ ବହି ।
ବିଷ୍ଣୁ ମାୟାରେ ଲାଗିଲା ପୁଣି ମାୟା ଘୁମ
ସ୍ୱପନ ଚେତି ଦେଖିଲେ ଦେବୀ ଜ୍ୟୋତିବ୍ରହ୍ମ

ଶୁଣିଲେ ଶ୍ରୀବିଷ୍ଣୁ ରୂପ ଦେଖି ପାୟେ ପଡ଼ି
ଉଠି ସ୍ୱପନେ କହନ୍ତି ପୁଣି କର ଯୋଡ଼ି ।
ବୋଲନ୍ତି ତ ଆପଣ ଯେ ସ୍ୱୟଂ ଭଗବାନ
କାହାକୁ ପୁଛିବି ଆଉ ମୁହିଁ ବ୍ରହ୍ମଜ୍ଞାନ ।
କହିଲେ ଶ୍ରୀମୁଖେ ଶୁଣିବି ମୁଁ ଆଉ ବସି
ଉଦରେ ରହିଣ ମୋକ୍ଷ ହେବି ବ୍ରହ୍ମରାଶି ।
ପିଣ୍ଡରେ କହ ଆତ୍ମାଟି କିରୂପେ ପ୍ରକାଶ
ଶ୍ରୀମୁଖରୁ ଶୁଣିଲେ ଯେ ଫିଟିବ କଲ୍ମଷ ।
ନାରାୟଣ ବୋଇଲେ ଗୋ ଶୁଣ ତେବେ ଆଇ
ଯେ ଜ୍ଞାନଯୋଗକୁ ଯେଉଁରୂପେ ଭେଟପାଇ
ପୃଥ୍ୱୀର ଭିତରେ ଯେତେଛନ୍ତି ଜାଣ ଲୋକ
ବିଷ୍ଣୁର ବାସନା ଘେନି ହୁଅନ୍ତି ଯେତେକ
ପ୍ରାଣୀଏ ଖେଳନ୍ତି ଯେ ଅନେକ ଲୀଳାଭାବେ
ବୁଝିଲେ ଅଛନ୍ତି ସବୁ ଆତ୍ମା ବାସୁଦେବେ ।
ସେ ବାସୁଦେବଙ୍କୁ ହୃଦେ ପାରନ୍ତି ଯେ ଚିହ୍ନି
ତାହାଙ୍କୁ ବୋଲନ୍ତି ଲୋକ ମଧ୍ୟେ ମହାଜ୍ଞାନୀ
ଶୁଣ ଆଗୋ ଭଗବତୀ କହନ୍ତି ଶ୍ରୀହରି
ଯେ ଯେଉଁରୂପେ ହୃଦରେ ଜ୍ଞାନ ଭେଟ କରି ।
ପ୍ରଥମେ ସୃଷ୍ଟି ଅର୍ଜିଲେ ପ୍ରଭୁ ଯେତେବେଳେ
ପଞ୍ଚଭୂତ ହୃଦେ ଜୀବ ରଖିଲେ ତକ୍ଷଣେ ।
ଅଙ୍ଗରୁ କାଢ଼ିଲେ ପଞ୍ଚଭୂତ ପଞ୍ଚ ପଞ୍ଚ
ପଚିଶ ପ୍ରକୃତି ସେହି ହେଲେ ଜାଣ ମଞ୍ଚ ।
ପୃଥିବୀରୁ ଜନମିଲେ ଯେ ପଞ୍ଚ ପ୍ରକୃତି
ତାହାଙ୍କ ନାମ କହିବା ଶୁଣ ଭଗବତୀ ।
ଚର୍ମ ଲୋମ ଅସ୍ଥି ହାଡ଼ ମାଂସ ଜାଣ ଦେଲେ
ଗୁହ୍ୟଦ୍ୱାର ଆବୋରି ସେ ସର୍ବଦା ରହିଲେ ।
ଜନମିଲେ ଆପ ଅଂଶ ଘେନି ଯେଉଁ ପଞ୍ଚ
ଶୋଣିତ ମଳ ମୂତ୍ରଟି ସ୍ୱେଦ ଲାଳ ପଞ୍ଚ ।
ରହିଲେ ସେ ଲିଙ୍ଗଦ୍ୱାରେ ଏ ପଞ୍ଚ ପ୍ରକୃତି
ଅଗ୍ନିର ଯେ ପଞ୍ଚବିଧି ଶୁଣ ଏବେ ସତୀ ।
ଆଳସ୍ୟ ରୋଗ ଆବର ନିଦ୍ରା କ୍ଷୁଧା ତୃଷା
ନୟନ ସ୍ଥାନ ଆଗୋରି କରନ୍ତି ଏ ବସା ।
ବାୟୁରୁ ହୋଇଲେ ଯେଉଁ ପଞ୍ଚ ଉତପନ
ତାହାଙ୍କର ନାମମାନ କହିବା ଗୋ ଶୁଣ
ପ୍ରାଣ ପାନ ବ୍ୟାନ ଦାନ ସମାନ ଯେ ଆତ୍ମା
ଏ ପାଞ୍ଚ ପ୍ରକୃତି ଜାଣ ନାସାଦ୍ୱାର ସୀମା ।
ଆକାଶରୁ ପ୍ରକାଶଟି ହେଲେ ଯେଉଁମାନେ
ତାହାଙ୍କ ନାମ କହିବା ଶୁଣ ଭିନ୍ନେ ଭିନ୍ନେ ।
କାମନା ଭୟ ଲଜ୍ଜା ଯେ ଲୋଭ ମୋହ ଆଦି
ମଥାରେ ବସନ୍ତି ସେହୁ କର୍ଣ୍ଣଦ୍ୱାର ଭେଦି ।
ଖଞ୍ଜିଲେ ପଚିଶ ପ୍ରକୃତିରେ ପଞ୍ଚମନ
ତହିଁରେ ଗଠନ କରି ଖଞ୍ଜିଲେ ଜୀବନ ।
ଲାଳ ମଳ ମୂତ୍ର ସ୍ୱେଦ ଗନ୍ଧ ଦେହ ଆଖି
ବିଚାରି ଜୀବ ଚିନ୍ତନ ଭଜେ ପଦ୍ମ ଆଖି ।
ବୋଲନ୍ତି ଶୁଣିମା ଆହେ ପ୍ରଭୁ ଚକ୍ରପାଣି
ଏ ପାପ ଦେହେ ସଞ୍ଚିଲ କିମ୍ପାମୋତେ ଆଣି
ଲାଳ ମଳ ମୂତ୍ର ଆଦି ଖଙ୍କାର ଦୁର୍ଗନ୍ଧ
ଏଥିରେ କ୍ଷଣେ ନ ରହି ପାରେ ହେ ଗୋବିନ୍ଦ
ଆକୁଳ ହୁଅନ୍ତି ଘଟ ମଧ୍ୟେ ରହି ଜୀବ
ଦୟା ବହିଣ କହନ୍ତି ପ୍ରଭୁ ପଦ୍ମନାଭ ।
ଗୋବିନ୍ଦ ବୋଲନ୍ତି ଜୀବନ କାଳରେ କିଛି
ଆମ୍ଭେ ମଧ ରହିବୁ ତୋ ସାଙ୍ଗେ କାଳବଞ୍ଚି ।
ବ୍ରହ୍ମା ରୁଦ୍ର ଇନ୍ଦ୍ର ଆଦି ଦେବତାଙ୍କୁ ଘେନି
ଆବୋରି ରହିବୁ ଘଟ ମଧ୍ୟେ ତୋତେ ମାନି
ତୁହି ଥିବାଯାକେ ଆମ୍ଭେ ପିଣ୍ଡ ମଧ୍ୟେ ଥିବୁ
ତୁ ପିଣ୍ଡ ଛାଡ଼ିଲେ ଆମ୍ଭେ ସମସ୍ତେ ଯେ ଯିବୁ ।
ଏରୂପେ ଆଜ୍ଞାଦେଇ ସେ ପ୍ରଭୁ ନାରାୟଣ
ଜୀବଙ୍କୁ ସଙ୍ଗତେ ଘେନି ଦେହେ ଦେଲେ ପ୍ରାଣ ।
ଜୀବ ଭୁଞ୍ଜୁଥିଲେ ବାଣ୍ଟି ଭୁଞ୍ଜନ୍ତି ସେ ଗ୍ରାସ
ଯାବତ ଫଳର ରସ ଖାଇ ହୋନ୍ତି ତୋଷ ।
ବିଷ୍ଣୁଙ୍କୁ ଚିହ୍ନଇ ଆପେ ଯେବେ ହୃଦଗତେ
ତେବେ ସେହୁ ବ୍ରହ୍ମଜ୍ଞାନ ଲଭଇ ସାକ୍ଷାତେ ।
ନିର୍ମଳ ହୋଇଣ ଏକା ବସିବ ନିଶ୍ଚଳେ
ଜିଣିବ ଷଡ଼ ଅଇରିଯାକ ଜ୍ଞାନବଳେ ।
ମନକୁ ଚଳାଇ ଯାଇ ବାୟୁସଙ୍ଗେ ମିଶି
ସାଧିବ ସେ ସମୀରକୁ ନିଜଘରେ ପଶି ।
ମନ ବ୍ରହ୍ମର ଦେଖିବ ତେବେ ଜ୍ୟୋତିରୂପ
ଦେଖିଲେ କ୍ଷୟ ଯିବ ତା ଦେହେ ଥିବା ପାପ
ସାଧନ୍ତେ ଅଜରାମର ହେବ ତାର ଦେହୀ
ଶୁଣଇ ସେ ମହାସତୀ କହି ଭାବଗ୍ରାହୀ ।
ଏ ଦେହ ଭିତରେ ଅଛି ଯେଉଁ ଷଡ଼ଚକ୍ର
କହିବା ଗୋ ଶୁଣ ତାହା ସାଧନା ଯେ ବକ୍ର ।
ମୂଳଦ୍ୱାର ବୋଲି ଯେଉଁ ଆଧାର ଚକ୍ରଟି
ଯାବତ ଜୀବର ସେହୁ ଅଟଇ ବଇଠି ।
ସେ ସ୍ଥାନେ ଚାରିପାଖୁଡ଼ା କମଳ ଯେ ଫୁଟେ
ବଅଠାରୁ ସଅଯାଏ ଅକ୍ଷର ଯେ ଭେଟେ ।

ସେ ଦଳ ମଧ୍ୟେ ଅଛନ୍ତି ଗଣେଶ ଦେବତା
ତହିଁ ପାଶେ ଆଦିଶକ୍ତି ବସେ ଦେବୀ ମାତା ।
ସେହି ଦେବୀଙ୍କି ଚିନ୍ତିବ ତହିଁ ପୀତବର୍ଣ୍ଣେ
ଚିନ୍ତିବ ଶ୍ରୀଗଣେଶଙ୍କୁ ରକ୍ତବର୍ଣ୍ଣ ଯେହ୍ନେ
ଇନ୍ଦୁର ବାହାନେ ତହିଁ ବସି ଆଦିଶକ୍ତି
ଅନ୍ନପୂର୍ଣ୍ଣା ମନ୍ତ୍ରପଢ଼ି ପୂଜିବ ଦୁହିଙ୍କି ।
ଗଣେଶ ଯେ ଆଦିଶକ୍ତି ପ୍ରସନ୍ନ ହେଲାରୁ
ଡେଇଁ ଚଳିଯିବ ତେବେ ଆଦି ଚକ୍ରଠାରୁ ।
ଦ୍ୱିତୀୟ ଚକ୍ରରେ ଯାଇ ମିଳିବ ତକ୍ଷଣେ
ତହିଁ ପଦ୍ମେକ ଫୁଟିଛି ଦେଖିବ ଷଡ଼ତଳେ ।
ବଅଠାରୁ ଲ ଯାଏ ଅକ୍ଷର ଯେ ତହିଁ
ସେ ଷଡ଼ଦଳେ ବସନ୍ତି କାମ ରତି ଦୁଇ ।
ଦେବତାର ବର୍ଣ୍ଣ ଶୁକ୍ଳ ଦେବୀ ବର୍ଣ୍ଣ ଶ୍ୟାମ
ତ୍ରିଅକ୍ଷର ମନ୍ତ୍ର ପଢ଼ି ପୂଜି ରତି କାମ ।
ବାହନ ସେ ଦେବ ଦେବୀଙ୍କର ଅମ୍ବୁବତୀ
ତାଙ୍କୁ ଚିହ୍ନିବ ମନାଇଁ ପରଂବ୍ରହ୍ମ ଜ୍ୟୋତି ।
ତହିଁ ଉତ୍ତାରୁ ଯେ ଚଳିଯିବ ନାଭିଚକ୍ର
ଦେଖିବ ଯେ ଦଶଦଳ ଫୁଟିଛି ପଦ୍ମେକ ।
ଡଅଠାରୁ ଫଅଯାଏ ଅକ୍ଷର ଯେ ବସେ
ସେ ଦଳେ ଦେବତା ହୋଇ ବିଧାତା ପ୍ରକାଶେ
ଶ୍ରୀଅଙ୍ଗ ତା ପୀତବର୍ଣ୍ଣ ବସେ ହଂସପିଠି
ନୀଳବର୍ଣ୍ଣେ ବସିଅଛି ପାଶେ ସାବିତ୍ରୀଟି ।
ତାହାଙ୍କୁ ଯେ ମହାମନ୍ତ୍ର ତୋଷିଯିବ ଚଳି
ଭେଟିବ ଦ୍ୱାଦଶ ଦଳ ହୃଦପଦ୍ମେ ମିଳି ।
ସେ ଦଳେ ଅକ୍ଷର ବସେ କ ଠାରୁ ଠ ଯାଏ
ତହିଁରେ ଦେବତା ହରି ନୀଳବର୍ଣ୍ଣ କାୟେ ।
ଅନନ୍ତ ଯେ ଲକ୍ଷ୍ମୀଦେବୀ ପାଶେ ଛନ୍ତି ବସି
ସୁବର୍ଣ୍ଣ ଜ୍ୟୋତି ପରାୟେ ଶରୀର ପ୍ରକାଶି ।
ବତିଶ ଅକ୍ଷର ଶ୍ରୀ ନୃସିଂହ ମହାମନ୍ତ୍ରେ
ତାଙ୍କୁ ସେବା କରି ଯିବ କଣ୍ଠଚକ୍ର ସୂତ୍ରେ ।
ସେ ଚକ୍ରରେ ପଦ୍ମଫୁଟେ ଷୋଳ ଯେ ପାଖୁଡ଼ା
ସବୁ ସ୍ୱରବର୍ଣ୍ଣ ତହିଁ ହୋଇଛଇଁ ଲୋଡ଼ା ।
ସେ ଚକ୍ରରେ ଦେବତା ଯେ ବସେ ସଦାଶିବ
ମହା ଶୁକଳ ସ୍ୱରୂପେ ଦିଶନ୍ତି ଦୁର୍ଲ୍ଲଭ ।
ତାହାଙ୍କର କୋଳେ ବସିଛନ୍ତି ଉମାଦେବୀ
ଆରକ୍ତ ବର୍ଣ୍ଣ ତାହାଙ୍କ ଶରୀରଟି ଭାବି ।
ପଞ୍ଚାଶ ଅକ୍ଷରେ ମନ୍ତ୍ର ଅନାଇଁ ଚଳିବ
ଲଲାଟଚକ୍ରରେ ଯାଇ ପ୍ରବେଶ ହୋଇବ ।

ସେ ଚକ୍ରରେ ବେନି ଦଳେ ଫୁଟେ ପଦ୍ମପୁଷ୍ପେ
ହ କ୍ଷ ବୋଲିଣ ଅକ୍ଷର ବେନି ତହିଁ ବସେ ।
ନିରଞ୍ଜନ ଦେବତା ସେ ଦଳେ ଉଦେ ହୋନ୍ତି
ଶୁଦ୍ଧ ସ୍ଫଟିକ ପରାୟେ ଦେହ ପ୍ରକାଶନ୍ତି ।
ମୟୂର ବାହନ ଘେନି ବସନ୍ତି ସର୍ବଦା
ବସନ୍ତି ତାହାଙ୍କ ପାଶେ ଲକ୍ଷ୍ମୀ ଘେନି ହୃଦା ।
ମୁକୁତା ବର୍ଣ୍ଣ ପରାୟେ ଦିଶେ ଲକ୍ଷ୍ମୀ ଅଙ୍ଗ
ଏକାକ୍ଷର ମହାମନ୍ତ୍ର ଜପିବ ଶ୍ରୀରଙ୍ଗ ।
ତାଙ୍କୁ ମନାଇଣ ମନେ ବସିବ ନିଶ୍ଚିନ୍ତେ
ମନକୁ ମିଶାଇଦେବ ପବନ ସଙ୍ଗତେ
କାଉଁରୀ ମଣ୍ଡଳେ ଯାଇ ପଶି ଗୋଲାହାଟେ
ଦେଖିବ କାଳିନ୍ଦୀ ଜଳ ଅଛି ହୃଦତଟେ ।
ସହସ୍ର ଦଳ ପଦ୍ମ ସେ ଜଳେ ଅଛି ଫୁଟି
ସେ ସ୍ଥାନେ ପରମହଂସ ଖେଳଇ ଲେଉଟି
ମହାଶୂନ୍ୟ ବୃକ୍ଷରେ ସେ ବସେ ହଂସପକ୍ଷୀ
ପାଦକେ ରଚଇ ଆର ପାଦେ ଧାଏଁ ଝୁଙ୍କି
ଶୂନ୍ୟରେ ସେ ନ ଗମଇ ତଳେ ନ ବସଇ
ମହାଶୁକ୍ଳ ସ୍ୱରୂପେ ସେ ଦେହେ ବିରାଜଇ ।
ନିଦ୍ରା ଜାଗ୍ରତ ଭଜନ ମନ୍ତ୍ର ତହିଁ ହଂସ
ଦିନଯାକେ ଏକୋଇଶ ସହସ୍ର ଛଅଶ ।
ଗୋବିନ୍ଦ ସୁଧା ରସକୁ ତୁଣ୍ଡେ ପାନ କରି
ମୁଖରେ ବୋଲୁ ଥାଇ ଶ୍ରୀରାମ କୃଷ୍ଣ ହରି ।
ମନ୍ତ୍ର ଭଜୁ ଭଜୁ ଝର ଶୁଖେ ଯେତେ ବୃକ୍ଷୁ
ସେ ହଂସ ପଳାଏ ବୃକ୍ଷୁ ଚାହିଁ ଦେଖୁ ଦେଖୁ ।
ଜୀବ ଆତ୍ମାକୁ ଧରି ସେ ଦେହୁ ଯାଏ ଖସି
ଗମଇ ସେ ଆକାଶରେ ବାୟୁ ସଙ୍ଗେ ମିଶି
ଏ କଥା ଚିହ୍ନି ପାରଇ ଜାଣ ଏହା ଯୋଗୀ
ସେ ହଂସପଳାନ୍ତେ ତାକୁ ଧରଇ ସେ ବେଗି ।
ହଂସ ଯିବା କଥା ନାହିଁ କାହାକୁ ଯେ ଜଣା
ଜାଣିଲେ ହୁଅନ୍ତେ କାହିଁପାଇଁ ଲୋକେ ବଣା ।
ହଂସ ଯିବା ବେଳକୁ ଆଠଦିନଠାରୁ
ଚାଲଇ ସେ ପରଘରେ ଛାଡ଼ି ଆସନରୁ ।
ଏକ କଡ଼କରେ ଶୁଏ ଏକ ଅଙ୍ଗେ ଚାଲେ
ଏକା ଅଙ୍ଗରେ ସେ ଖାଇ ଏକାଙ୍ଗରେ ବୁଲେ ।
ମୃତ୍ୟୁକାଳ ପ୍ରବେଶିଲେ ଯାବତ ଶରୀରେ
ଆଠ ଦିନରୁ ଚାଲଇ ହଂସ ପରଘରେ ।
ତାହା ଚିହ୍ନି ଜାଣି ଆଣେ ଯେହୁ ହଂସ ଧରି
ସେମାନେ ରହନ୍ତି ଜାଣ ମୃତ୍ୟୁରୁ ଉବୁରି ।

ହଂସଟି ଉଡ଼ି ଆଉ ନ ପାରେ ବୃକ୍ଷୁ ଯାଇ
ହଂସ ବୁଲିବା ସ୍ଥାନଟି ମହାଶୂନ୍ୟ କହି ।
ଭ୍ରମର ଗୁମ୍ଫାରେ ଗଳି ପିଏ ହଂସ ପାଣି
ସରୋବରଯାକେ ବୁଲି କରଇ ଭ୍ରମଣି ।
ହଂସ ସରୋବରକୁ ସେ ବାଳରନ୍ଧ୍ରେ ବାଟ
ତହିଁରେ ଗଳିଲେ ମନେ ନ ଥାଇ ସଙ୍କଟ ।
ସେ ରନ୍ଧ୍ର ବାଟରେ ଅମ୍ବୁ ଝରେ ଝର ଝର
ସେ ଝରଟି ଶୁଖିଗଲେ ବୁଲେ ହଂସ ଯର ।
ଏମନ୍ତ ଅଟଇ ପୁଣି ସେ ହଂସ ପୁରୁଷ
ସବୁଙ୍କୁ ଅଦୃଶ୍ୟ ହୋଇ କରେ ଦେହେ ବାସ
କହିଲେ ପୁଛିଲେ ବୁଝାଇଲେ ଶୁଣାଇଲେ
କେ ଦେଖି ପାରିବ ତାହା ଗୁରୁ ନ କହିଲେ ।
ଶ୍ରୀଗୁରୁ କହିଲେ ସିନା ଫିଟେ ସଂଶୟଟି
ଆତ୍ମାକୁ ଚିହ୍ନାଇ ଦେଇ ପାରେ ଶିଷ୍ୟଦୃଷ୍ଟି ।
ଲଭଇ ସେ ଅନ୍ତେ ସ୍ୱର୍ଗ ବଇକୁଣ୍ଠ ବାସ
ସଂସାର ତିନି ତାପ ସେ କରିପାରେ ନାଶ ।
ଶୁଣ ଗୋ ଜନନୀଏ ଶ୍ରୀପୁଣ୍ୟଶ୍ଳୋକ ବାଣୀ
କେବେହେଁ ଜ୍ଞାନୀ ମୂର୍ଖ ଆଗେ ନ ବଖାଣି ।
ସଂସାରେ ଅଟନ୍ତି ଯେତେଲୋକ ମୂର୍ଖ ଜାଣ
ତାଙ୍କ ନାମମାନ କହେ ଥୋକାଏ ଗୋ ଶୁଣ ।
ଗୁରୁଙ୍କୁ ନ ମାନି ଯେହୁ ହୋନ୍ତି ଅପରାଧୀ
ମାଂସ ଭୋଜନ କରଇ ଯେହୁ ଜୀବ ବଧି ।
ଅଦୋଷେ ପରକୁ ଯେହୁ କରେ ମନେ ହିଂସା
ସଭାରେ ପକ୍ଷକରି ଯେ କହେ ମିଥ୍ୟାଭାଷା ।
କାମନା କ୍ରୋଧ ଲୋଭକୁ କରେ ଯେହୁ ମୂଳ
ହରଇ ପରର ନାରୀ ଯେବଣ ଚଣ୍ଡାଳ ।
ପରଠାରେ ପ୍ରମାଦଟି କରେ ଯେହୁପାପୀ
ଆତ୍ମାରେ ସୁଦୟା ନୋହି ହୁଏ ମହାକୋପୀ ।
ଭୋଜନରେ ଅତୃପତି ନିଦ୍ରାରେ ମୋହିତ
ତୁଛା କଥାରେ କନ୍ଦଳ କରେ ଅପ୍ରମିତ ।
ଦ୍ୟୁତଶକଟାପଶାରେ ବେଶ୍ୟାରେ ଯେ ମାତେ
ଭୁଞ୍ଜଇ ଗଞ୍ଜାଇ ଆପୁ ମଦ ବସି ନିତ୍ୟେ
ଏ ଲୋକମାନଙ୍କ ଆଗେ ନ କହି ଏ ଜ୍ଞାନ
ଏତେ କହି ମହାପ୍ରଭୁ ହେଲେ ଅନ୍ତର୍ଦ୍ଧାନ ।
ଶୁଣି ଭଗବତୀ ରାଣୀ ହୋଇଲେ ସନ୍ତୋଷ
ମନେ ଶ୍ରଦ୍ଧା ବହି ଚଳିଗଲେ ପତି ପାଶ ।
ଶଯ୍ୟାରେ ସେ ବେନିଜନ ହେଲେ ଏକସଙ୍ଗ
ଯେସନେ ସଂସାରେ ପତିପତ୍ନୀ ଲୀଳାରଙ୍ଗ
ଗୃହସ୍ଥ ଭାରିଯାଙ୍କର ଯହିଁ କ୍ରୀଡ଼ାରସେ
ଥିଲା ଅମୋଘ ବୀର୍ଯ୍ୟ ସେ ସୁଖ ଅବଶେଷେ
ଅନ୍ତର୍ଦ୍ଧାନେ ମହାପ୍ରଭୁ ଶୂନ୍ୟେ ସିନା ଥିଲେ
ମାତା ପିତା ରଜ ବୀର୍ଯ୍ୟେ ଯାଇଣ ମଜ୍ଜିଲେ ।
ପବନ ସଙ୍ଗେ ଗମିଲେ ହରି ଗର୍ଭଗତ
କମଳ ଆବୋରି ଠୁଳହେଲେ ଲକ୍ଷ୍ମୀକାନ୍ତ ।
ମାତା ପିତାଙ୍କର ନାସାବାୟୁ ସଙ୍ଗେ ପଶି
ବୀର୍ଯ୍ୟେ ନିମଜ୍ଜି ପଡ଼ିଲେ ଗର୍ଭ ବହୁରାଶି ।
ଏହି ପ୍ରକାରେଟି ଜାଣ ଜୀବ ଜନ୍ମଗତି
ଯାହା ଭାଗ୍ୟକୁ ଗୋବିନ୍ଦ ଯାହା ଖଞ୍ଜିଥାନ୍ତି ।
କ୍ଷୀରାବଧି ଶଯ୍ୟାର ପ୍ରାୟେ ମାତାଗର୍ଭେ ଯାଇ
ରହିଲେ ଅନନ୍ତ ଶଯ୍ୟା ପ୍ରାୟ ଭାବଗ୍ରାହୀ ।
ଏ ଅନ୍ତେ ବାସ ପିନ୍ଧିଲେ ଦେବୀ ଭଗବତୀ
ବିଷ୍ଣୁଙ୍କ କହିବା କଥା ସ୍ୱାମୀଙ୍କି ଜଣାନ୍ତି
ବୋଲନ୍ତି ସ୍ୱପନେ ଆଜ ଦେଖିଲି ମୁଁ ଯାହା
ଶୁଣ ଆହେ ପ୍ରାଣନାଥ କହୁଛି ମୁଁ ତାହା ।
ନାରାୟଣ ପ୍ରଭୁ ଆଜି ହୋଇ ଚତୁର୍ଭୁଜ
କହିଲେ ଦୃଶ୍ୟ ହୋଇଲା କେଡ଼େ କଥା ଆଜ
ବୋଇଲେ ତୁମ୍ଭର ପୁତ୍ର ହେବୁ ଆମ୍ଭେ ବେନି
ଦଶମାସ ଗର୍ଭେ ରହି ଜନ୍ମିବୁ ମେଦିନୀ
ଏମନ୍ତ ବୋଲି କହିଲେମୋତେ ବ୍ରହ୍ମରାଶି
ଅନ୍ତର୍ଦ୍ଧାନ ହୋଇ ମୋର ଗର୍ଭେ ଛନ୍ତି ପଶି ।
ଏମନ୍ତ ବୋଲି କହନ୍ତେ ସତୀ ସ୍ୱାମୀ ଆଗେ
ଶୁଣି ରାଜା ମନେ ହୃଷ୍ଟ ହୋଇଲା ସରାଗେ ।
ବୋଲନ୍ତି ଆମ୍ଭର ଭାଗ୍ୟ ଥିବ ଯେବେ ପୂର୍ବେ
ତେବେ ସେ ବିଷ୍ଣୁ ଆସିଣ ଜନ୍ମିବେ ତୋ ଗର୍ଭେ
ଏଥିରୁ ଅଧିକ ଆଉ ଅର୍ଜିବା କି କଥା
ଜାଣିବେ ପ୍ରଭୁ ଆମ୍ଭର ଏକ ମନ ଚିନ୍ତା ।
ଜାଣନ୍ତି ସବୁରି ମନ କଥା ଏକ ହରି
ଆନ ଛାରକୁ ତ ଜଣାନାହିଁ ତିନିପୁରୀ ।
ସ୍ୱପନେ ଆସି କହିଲେ ଯେବେ ତୋତେ ପ୍ରଭୁ
ପ୍ରତ୍ୟକ୍ଷେ ଶୀ ନାରାୟଣ ଜନ୍ମିବେ ତୋ ଗର୍ଭୁ
ଲଭିବୁ କୋଟିଏ ଗଙ୍ଗାସ୍ନାନ ଫଳ ତୁହି
ତୋହ ଘେନି ମଧ ମୋକ୍ଷ ହେବି ଜାଣ ମୁହିଁ
ଏମନ୍ତ ବୋଲି ଶୁଣିଲେ ରାଜା ଶଯ୍ୟାଗତେ
ରଜନୀ ଅନ୍ତେ ଉଠିଲେ ପୁଣି ଯେଝାମତେ ।
ଏମନ୍ତେ ଗଲା କେତେକ ଦିନ ତହିଁ କାଳ
ରହିଲେ ଭଗବତୀଙ୍କ ଗର୍ଭେ ଆଦିମୂଳ

ଅନନ୍ତଙ୍କୁ ସଙ୍ଗେ ଘେନି ସେ ଅନନ୍ତଶାୟୀ
ବଢ଼ନ୍ତି ମାତାଗର୍ଭରେ ବାମବକ୍ଷେ ରହି ।
ଏମନ୍ତେ ଯେ ଦିନୁ ଦିନ ହୋନ୍ତେ ନବମାସ
ଗର୍ଭର କଷ୍ଟକୁ ସହି ନ ପାରିଲେ ଶେଷ ।
ବିଷ୍ଣୁଙ୍କୁ ବୋଇଲେ ସ୍ୱାମୀ ଶୁଣ ମହାପ୍ରଭୁ
ଶୀଘ୍ର ହୋଇ ଚାଲ ଏବେ ଜନମିବା ଗର୍ଭୁ ।
ଶ୍ରୀହରି ବୋଇଲେ କିମ୍ପା ଆତୁର ଯେ ହୁଅ
ଦଶମାସ ନ ହୋଇଲେ ଟାଣ ନୋହେ ଦେହ
ସପ୍ତମାସେ ଜନମିଲେ ଟାଣ ନୋହେ ଦେହୀ
ଆଠରେ ଜନ୍ମିଲେ ପୁତ୍ର କେବେ ନ ବଞ୍ଚଇ ।
ନବମରେ ଜନମିଲେ ମାତା ପାଏ କ୍ଳେଶ
ଦଶମେ ଜନ୍ମିଲେ ସକୁ କଥାକୁ ଉଶ୍ୱାସ
ଶେଷଦେବ ବୋଇଲେ ଏ ଆଜ୍ଞାଯେବେହେଲା
କହିବି ଗର୍ଭର କଷ୍ଟ ଶୁଣ ଏବେ ଭଲା
ଜନନୀ ଉଦର ଯେତେ ଯେତେ କଷ୍ଟପାଇ
ଛାମୁରେ କହୁଛୁ ତାହା ଶୁଣ ଭାବଗ୍ରାହୀ ।
ଯେତେବେଳେ ମାତାପିତା ହୋନ୍ତି ଏକଠାବ
ସେ ବୀର୍ଯ୍ୟର ମଧରେ ସେ ପଶେ ଯାଇଁ ଜୀବ
ମାତାର ଗର୍ଭରେ ପଡ଼ି ଧରେ ଦେହକାନ୍ତି
ପ୍ରଥମ ଦିନୁ ହୁଅଇ ଜଳବିମ୍ବ ଜ୍ୟୋତି ।
ପଞ୍ଚମ ଦିନରେ ହୁଏ ରକ୍ତବର୍ଣ୍ଣ କାୟେ
ସେହିଠାରୁ କ୍ରମେ କ୍ରମେ ହୋଇ ବୃଦ୍ଧି ପାଏ
ବଦରି ଫଳର ପ୍ରାୟେ ଦିଶେ ଦିନ ଦଶେ
ଅଣ୍ଡାର ଆକୃତି ହୁଏ ପନ୍ଦର ଦିବସେ ।
ତିରିଶ ଦିନେ ପ୍ରମାଣ ହୁଏ ମଥା ଆସି
ଚାଳିଶ ଦିନରେ ଯାଇ ଚରଣ ପ୍ରକାଶି ।
ଷାଠିଏ ଦିନ ପ୍ରକାଶେ ପୁଣି ବେନି ଭୁଜ
ଆବର ଚକ୍ଷୁ ନାସିକା ହୁଏ କର୍ଣ୍ଣ ଉଚ ।
ପଞ୍ଚଷଠି ଦିନରେ ଯେ ହୁଏ ତୁଣ୍ଡ ଗୋଟି
ସତୁରି ଦିନରେ ମଳଦ୍ୱାର ଯାଏ ଫାଟି ।
ଅଣାଅଶୀ ଦିନରେ ଯେ ଅଙ୍ଗୁଳିର ସଞ୍ଚା
ଅଶୀଦିନରେ ଦିଶଇ ଲୋମ ଚର୍ମ ଲୋଚା ।
ନଉଦିନରେ ଯେ ପୁଣି ହୋଇ ନଖମାନ
ବସଇ ଉର୍ଦ୍ଧ୍ୱମୁଖରେ ବିଂଶଶତେ ଦିନ ।
ପଞ୍ଚମାସରେ ବସଇ ସପ୍ତଧାତୁ ପେଜ
ଅସ୍ଥିମାଂସ ମଜ୍ଜା ମେଦ ଚର୍ମ ରକ୍ତ ବୀର୍ଯ୍ୟ ।
ଏ ସାତ ପୁରର ମଧ୍ୟେ ପଞ୍ଚଭୁତ ଯାଇ
ପ୍ରକୃତି ପ୍ରକାଶେ ଷଡ଼ମାସେ ହୃଦେ ରହି ।
ପଞ୍ଚମାସ ପକ୍ଷକରେ ଲାଗେ କ୍ଷୁଧା ତୃଷା
ଷଡ଼ମାସରେ କରଇ ହୃଦେ ଆସି ବସା ।
କ୍ଷୁଧା ତୃଷା ଲାଗି ଆତ୍ମା ହୁଅଇ ବିକଳ
ତାହା ଜାଣିଣ ବିଧାତା ମିଳନ୍ତି ତତ୍କାଳ ।
ସୋହଂ ହଂସ ପବନର ବିଞ୍ଚଣାଟି ଆଣି
ଜୀବଆତ୍ମା ଘରଠାରେ ଖଞ୍ଜନ୍ତି ନିଉଣୀ ।
ବୋଲନ୍ତି ଏହୁ ଆଲଟେ ହୁଏ ବିଞ୍ଚାବିଞ୍ଚି
କ୍ଷୁଧା ତୃଷା ରୋଗ ତୋତେ ନ ଲାଗିବ କିଛି
ନାଭିକି ଜଡ଼ି ଲାଗିଛି ତୋର ନାଡ଼ୀଗୋଟି
ବିଞ୍ଚି ଏହି ପବନରେ ଚକ୍ଷୁ ଯାଉ ଫିଟି ।
ଜନନୀ ଉଦରୁ ସେହି ରନ୍ଧ୍ରେ ଅନ୍ନରସ
ଝରିବ ଖାଇ ହୋଇବୁ ଜାଣ ତୁହି ତୋଷ ।
ଏମନ୍ତେ କହି ହୁଅନ୍ତେ ବିଧି ଅନ୍ତର୍ଦ୍ଧାନ
ସେହି ପବନ ବାଛିଣ ଫିଟେ ଦ୍ୱାରମାନ ।
ଦ୍ୱାର ଫିଟନ୍ତେ ପ୍ରବେଶ ହୋଇ କୃମିମାନେ
ମାତାର ଗର୍ଭେ ପଶନ୍ତି ବୁଲି ନାସାକର୍ଣ୍ଣେ ।
ସପତମ ମାସ ହେଲେ ଲଭେ ପୁଣି କଷ୍ଟ
କର ଚରଣକୁ ଛନ୍ଦି ହୁଏ ଛଟପଟ ।
ଗର୍ଭର ଅନ୍ଧାକାରରେ ପଡ଼ିହୋଏ ଘାଣ୍ଟି
ଦଇବ ଯୋଡ଼ ବନ୍ଧନ ପୁଣି ଯାଏ ଫିଟି ।
ବନ୍ଧା ପରାୟେ ହୋଇଣ ପଡ଼ିଥାଏ ଗର୍ଭେ
ତହିଁର ଦୁଃଖ କହିବି କିସ ପୁଣି ଏବେ ।
ଜନନୀ କରଇ ଯେତେ ଦ୍ରବ୍ୟ ବସି ଗ୍ରାସ
ତପତ ଆହାର ଲାଗି ଶିଶୁ କରେ ତ୍ରାସ ।
ଆମ୍ବିଳ କଷା ଆବର ତିକ୍ତ ରାଗ ଦ୍ରବ୍ୟ
ତହିଁରେ କେତେ ବିକଳ ହୁଏ ଜାଣ ଜୀବ ।
ଅଷ୍ଟମାସର ଯେ ଦଣ୍ଡ କି କହିବି ପୁଣି
ତରଛ ଯେ ହେଉଥାଏ ଗର୍ଭକଥା ଜାଣି ।
ଯେତେବେଳେ ମାତା ତାର କରଇ ଗମନ
ବ୍ୟର୍ଥେ ପଡ଼ି ମଲି ବୋଲି ଭାଳଇ ନନ୍ଦନ ।
ଜନନୀ ଶୁଅଇ ଶେଯେ ପୁଣି ଯେତେବେଳେ
ମହା ଆକୁଳ ହୋଇଣ ଶିଶୁ ପୁଣି ଭାଳେ ।
ବୋଲଇ ମାତା ମୋହର ଗଲା ପରା ମରି
କିରୂପେ ଆଉ ଜନ୍ମିବି ମୁହିଁ ଦେହ ଧରି ।
ଏରୂପେ ଗର୍ଭେ ଆକୁଳ ହୁଅନ୍ତେ ସେ ବଳା
ନିର୍ଜୀବ ପ୍ରାୟେ ହୋଇଣ ବୁଜେ ଚକ୍ଷୁଡୋଳା
ସେ ଦୁର୍ଗନ୍ଧ ପୂଜ ରକ୍ତ ଲାଳ ମଧ୍ୟେ ପଡ଼ି
ଆମିଷ ଯେ ମଳମୂତ୍ର ହୋଇଥାଏ ଜଡ଼ି ।

ଦୁର୍ଗନ୍ଧ ବାସନା ତାର ନାସାରନ୍ଧ୍ରେ ପଶି
ମନରେ ଆକୁଳ ହୋଇ କାନ୍ଦେ ଶିଶୁ ବସି ।
ଲୋତକଧାରା ନେତ୍ରରୁ ବହେ ଅନର୍ଗଳ
ବିଧାତାଙ୍କୁ ଚିନ୍ତାକରି କାନ୍ଦେ ଗର୍ଭବାଳ ।
ବାଳକ ରୋଦନ ଜାଣି ହୃଦେ ବେଦବର
ଜାଲ ଗୋଟିଏ ବେଢ଼ାନ୍ତେ ଆଣି ଦେହେ ତାର
ବ୍ରହ୍ମଜ୍ଞାନକୁ ଯେ କହି ଦିଅନ୍ତି ସମ୍ମୁଖେ
ବୋଲନ୍ତି ତରିବୁ ଯେବେ ଭଜ ହରି ମୁଖେ
ବିଧାତା ମୁଖରୁ ଏହିପରି ବାକ୍ୟ ଶୁଣି
ଜ୍ଞାନକୁ ପାଇ ବାଳକ ଭଜେ ଚକ୍ରପାଣି ।
ପରମପୁରୁଷକୁ ସେ ଭଜେ ଧ୍ୟାନକରି
ବୋଲଇ ମୋତେ ଉଦ୍ଧର ପ୍ରଭୁ ନରହରି ।
ଆହେ ପ୍ରଭୁ ନାରାୟଣ ନର୍କ ଉଦ୍ଧାରଣ
ରଖ ଶ୍ରୀଚରଣ ତଳେ ପଶିଲି ଶରଣ ।
ମହାଘୋର ଅନ୍ଧକାର ଅଟେ ମାତା ଗର୍ଭ
ଏଥିରେ ରହିଲେ ମୋକ୍ଷ ନାହିଁ ପଦ୍ମନାଭ ।
ଆହେ ଚତୁର୍ଭୁଜ ପ୍ରଭୁ ମୋତେ କର ତ୍ରାହି
ଉଦ୍ଧର ଏ ଗର୍ଭ ଯାତନାରୁ ଭାବଗ୍ରାହୀ ।
ଏଥୁ ପାରିହେଲେ ଭଜିବି ମୁଁ ତୁମ୍ଭ ପାଦେ
ଆଉ ବେଳେ ନ ପଡ଼ିବି ଏ ଘୋର ପ୍ରମାଦେ
ଏହିରୂପେ ଚିହ୍ନି ଜ୍ଞାନ ଧରେ ବାଳଶିଷି
ନବମାସ ପୂରି ଦଶମାସ ହୁଏ ଆସି ।
ସେ ଦଶମାସରେ ପୁଣି ମାତା ପାଏ କଷ୍ଟ
ଉଠି ଚଳି ନ ପାରଇ ଚଢ଼ ଚଢ଼ ପେଟ
ଦୁର୍ଗାଙ୍କୁ ସୁମରି ସେହୁ ସୁମରେ ଶ୍ରୀହରି
ବୋଇଲ ଏଥୁ କରିବେ ପ୍ରଭୁ ମୋତେ ପାରି ।
ଏମନ୍ତ ଭଜନ୍ତେ ମାତା ପୁତ୍ର ଜଗନ୍ନାଥ
ସେଠାରୁ ଗୋବିନ୍ଦ ପୁଣି ହୁନ୍ତି ସାହାପକ୍ଷ ।
ପବନଙ୍କୁ କହିଦ୍ୟନ୍ତି ପ୍ରଭୁ ଭାବଗ୍ରାହୀ
ପ୍ରଭୁଙ୍କ ଆଜ୍ଞାରେ ସ୍ମୃତିବାୟୁ ଚଳିଯାଇ
ଜନନୀ ଗର୍ଭରେ ଶୂଳ ମାରନ୍ତେ ଯେ ପେଲି
ସେହି ଠାବରୁ ଚଞ୍ଚଳେ ଉଠେ ଶିଶୁ ବୁଲି ।
ଗୋବିନ୍ଦର କଟାକ୍ଷରୁ ଫଟେ ଗର୍ଭକଷ୍ଟ
ସେହିଠାବରୁ ଶିଶୁକୁ ଦିଶେ ଗର୍ଭବାଟ ।
ଅଧୋମୁଖରେ ପଡ଼ିଣ ପେଲେ ମୁଣ୍ଡିଆଇ
ମାତା ଗର୍ଭଦ୍ୱାରୁ ଖସି ଭୂମିରେ ପଡ଼ଇ ।
ଭୂମିରେ ପଡ଼ନ୍ତେ ଆସି ଆକର୍ଷଇ ମୋହ
କୁଆଁ କୁଆଁ ବୋଲି ରଡ଼ି ଛାଡ଼େ ବାଳପୁଅ

ଏରୂପେ କହନ୍ତି ବିଷ୍ଣୁ ଆଗେ ସାନଭାଇ
ଗର୍ଭରେ ଜାଣ ଜୀବଟି ଏତେ କଷ୍ଟ ପାଇ ।
ସବୁରି ଜନମ ପନ୍ଥା ଏସନକ ବାଣୀ
ତେଣୁ ଛାମୁରେ କହିଲି ଏହା ପରିମାଣି ।
ପ୍ରଭୁ ବୋଇଲେକ ତେବେ ଶୁଣ ହେ ଅନନ୍ତ
ଏ ଛାର କଥାକୁ ଆମ୍ଭେ ହେବାକି ବିରକ୍ତ
ଆମ୍ଭେ ଯେବେ ଗର୍ଭକଥା ଘେନିବାଟି ମନ୍ଦ
ସଂସାରେ ହେବାଟିଆମ୍ଭେ କେହ୍ନେ ପୂର୍ଣ୍ଣନନ୍ଦ ।
ବୁଝିଲେ ସଂସାରେ ଆମ୍ଭେ ସିନା ସର୍ବ ଜୀବ
ଆତ୍ମା ରୂପରେ ପ୍ରକାଶି ଜନ୍ମି ମାତାଗର୍ଭ ।
ଆମ୍ଭେ ନରହରି ଥାଉଁ ସଂସାରେ ତ ପୂରି
ଆମ୍ଭେ ବିକାର ଘେନିଲେ ଜନ୍ମିବା କି କରି
ସବୁ ଆତ୍ମା ଆମ୍ଭେ ଜାଣ ବୁଝିଲେ ପ୍ରମାଣ
ସଂସାର ଆମ୍ଭଙ୍କୁ ଯେ ନ ଚିହ୍ନେ ମୂର୍ଖଜନ ।
କହିଲ ଗର୍ଭର କଷ୍ଟ ଯେତେ ତୁମ୍ଭେ ଆଜ
ଲଭନ୍ତି ଯେ କ୍ଳେଶ ଯହୁଁ କହିବା ତା ବୁଝ
ବିଯୋନିକୁ କୁଇନ୍ଦ୍ରିୟ ଦ୍ୟନ୍ତି ଯେତେ ଲୋକ
ତାହାଙ୍କ କାର୍ଯ୍ୟେଟି ଲଭେ ସବୁ କଷ୍ଟଯାକ
ହିଂସ୍ରକ କୁଟିଳ ଯେହୁ ଦାମ୍ଭିକ ବିଟାଳ
କପଟୀ ଲମ୍ପଟି ଆଦି ଅଜ୍ଞାନ ଚଣ୍ଡାଳ ।
ତାମସିକ କର୍କଶ ଯେ ସାହସୀ ଦୁର୍ଭାଷୀ
ପାପୀ ମହାପାପୀ ଯେତେ ଆବର ଯେଦୋଷୀ
ଏହି ଲୋକମାନଙ୍କର ରଜବୀର୍ଯ୍ୟ ଯେତେ
ଜଠରେ ପଡ଼ିଣ ଦୁଃଖ ଲଭେ ଗର୍ଭଗତେ ।
ଯେବେ ସନ୍ତତ ପୁଣ୍ୟାତ୍ମା ପୁରୁଷର ରହି
ସେମାନେ ଗର୍ଭର ଦୁଃଖ ନ ପାଆନ୍ତି କେହି ।
ଆମ୍ଭେ ପରଂବ୍ରହ୍ମ ବ୍ରହ୍ମାଣ୍ଡର ସୃଷ୍ଟିକର୍ତ୍ତା
ଆମ୍ଭଙ୍କୁ ଗର୍ଭରେ କଷ୍ଟ ଦେବ କି ବିଧାତା
ଏବେ ନବ ପୂରି ଦଶମାସ ହେଲା କାଳ
ଚାଲ ଆହେ ସୁଖେ ଏବେ ଯିବା ବେନି ବାଳ ।
ଏତେକ ବୋଲି ଜନ୍ମକୁ ହେଲେ ସ୍ୱାମୀ ସଜ
ଶଙ୍ଖ ଚକ୍ର ଗଦା ପଦ୍ମ ଧରି ଚତୁର୍ଭୁଜ ।
ମାତା ଗର୍ଭେ କଥାବାର୍ତ୍ତା ହୋଇ ବେନି ଭାଇ
ଜନ୍ମ ସଞ୍ଚାରକୁ ସଜ ହୋଇଲେକ ତହିଁ ।
ଏଥୁଅନ୍ତରରେ ଶୁଣ ଭଗବତୀ ରାଣୀ
ପ୍ରସବକାଳ ହୁଅନ୍ତେ ଉଠେ ପେଟ ଟାଣି ।
ଗର୍ଭ ବଥାକୁ ଚିନ୍ତିଲେ ଦେବ ନାରାୟଣ
ଗର୍ଭେ ଥାଇ ପ୍ରଭୁ ହେ ଉଶ୍ୱାସ ଯେ ପୁଣ ।

ଅଶେଷ ପୃଥ୍ୱୀ ଅଛନ୍ତି ଯାର ଗର୍ଭଗତେ
କେ ଅଛି ସେ ଭାରା ସହିବାକୁ ଏ ଜଗତେ ।
ଧନ୍ୟ ସେହି ଭଗବନ୍ତ ରାଜାର ଦୁଲ୍ଲଣୀ
ଅଯୋନି ଜନ୍ମା ଧଇଲେ ଗର୍ଭେ ଚକ୍ରପାଣି ।
ପ୍ରତ୍ୟକ୍ଷରେ ଆଦିଶକ୍ତି ଅଟେ ସେହି ମାତା
ତେଣୁ ଧଇଲେ ସେ ଗର୍ଭଗତେ ସୃଷ୍ଟି କର୍ତ୍ତା ।
ସମ୍ପୂର୍ଣ୍ଣ ଦଶମାସଟି ହେଲା ଯେତେବେଳେ
ଜନ୍ମ ସଞ୍ଚାରକୁ ମନ କଲେ ଆଦିମୂଳେ ।
ପବନ ବଳରେ ଶୂଳ ଆସିଲା ଆକର୍ଷି
ବୈଶାଖ ଶୁକଳପକ୍ଷ ତିଥି ଚତୁର୍ଦ୍ଦଶୀ ।
ସ୍ୱାତୀନାମେ ନକ୍ଷତ୍ର ଯେ ତୁଳାଚନ୍ଦ୍ର ଭୋଗ
ତୈତିଳନାମେ କରଣ ସୌଭାଗ୍ୟ ଯେ ଯୋଗ ।
ବେଳ ଊନବିଂଶ ଦଣ୍ଡେ ସିଂହ ଲଗ୍ନଗୃହେ
ଦ୍ୱିତୀୟରେ ବୃହସ୍ପତି ଷଷ୍ଟେ ଶନି ରହେ ।
ତୃତୀୟରେ ସୁଧାକର କର୍ମେ ଭୃଗୁନାନ
ଏମନ୍ତ ବେଳରେ ଶୂଳ ଆସେ ଘନ ଘନ ।
ଧାଈ ପରିବାରୀ ଜେନ ପୋଇଲୀ ସମୂହେ
ଯେଝା ପୁରେ ସେବି ଲାଗିଛନ୍ତି ଦେହେଦେହେ ।
ଏଥିଉତ୍ତାରେ ଯେ ପୁତ୍ରେ ଗର୍ଭୁ ଅବତରି
ଦେଖି ରାଜାଙ୍କୁ କହିଲେ ଯାଇ ପରିବାରୀ ।
ଭୋ ପ୍ରଭୁ ରାଣୀଙ୍କର ଯେ ପୁତ୍ର ହେଲା ଜାତ
ପ୍ରତ୍ୟକ୍ଷେ ଦିଶନ୍ତି ସେହି ଶ୍ରୀହରି ସଂଜାତ ।
ଅଷ୍ଟାଦଶ ଚିହ୍ନ ଘେନି ଜନ୍ମିଛନ୍ତି ହରି
କରେ ଦିଶେ ଶଙ୍ଖଚକ୍ର ଗଦା ପଦ୍ମ ଚାରି ।
ହୃଦକମଳେ ଶ୍ରୀବତ୍ସ ଚିହ୍ନ ଅଛି ବସି
ନିମିଷେ ଦେଖି କହୁଛୁ ସିନା ଆମ୍ଭେ ଆସି ।
ତୁମ୍ଭଙ୍କୁ ଅବା ଦିଶିବେ ସେହୁ ପୁତ୍ର ପ୍ରାୟ
ଆମ୍ଭଙ୍କୁ ହେଲେ ସାକ୍ଷାତେ ଦିଶେ ବିଷ୍ଣୁମୟ ।
ଅଛନ୍ତି ଲକ୍ଷେ ଲକ୍ଷଣ ଘେନି ଅବତରି
ଦେଖିବା ମାତ୍ରେ ଆମ୍ଭର ନେତ୍ର ଗଲା ପୁରି ।
ଏତେ ବୋଲି ଦାସୀ କହୁଁ କହୁଁ ରାଜା ଆଗେ
ଆଉ ଜଣେ ଧାଇଁ ଧାଇଁ କହିଲାକ ବେଗେ ।
ବୋଇଲା ରାଣୀର ପୁଣି ବଥାଉଛି ପେଟ
ଏହିରୂପେ ମହାଦେଈ ପାଉଛନ୍ତି କଷ୍ଟ ।
ନୃପତି ବୋଇଲେ ଆଲୋ ସେବଯାଇ ତୁମ୍ଭେ
ଆବର ପୁତ୍ରେକ ଜାଣ ହେବ ଜାଣୁ ଆମ୍ଭେ ।
ସ୍ୱପନ ଗୋଟିଏ ଦେଖିଅଛୁ ଆଜ ରାତ୍ରେ
ମହାଦେଈଙ୍କ ଗର୍ଭରୁ ଜାତ ବେନି ପୁତ୍ରେ ।
ସେ କଥାଗୋଟି ଘଟିଲା ଦେଖ ଏବେ ଆସି
ଗର୍ଭ ଯେବେ ଟାଣୁଅଛି ଜାତହେବ ଶିଷି ।
ଏହିରୂପେ କଥା ହେଉଁ ପୁତ୍ର ଜାତ ହେଲା
ତାହା ଦେଖି ପୋଇଲୀଏ ଧାଇଁଣ ଆସିଲା ।
ରାଜା ଛାମୁରେ କହିଲା ଯାଇ କରଯୋଡ଼ି
ବୋଲେ ଆଉ ପୁତ୍ର ଦେବ ଜନ୍ମିଲେ ବାହୁଡ଼ି ।
ନିଶ୍ଚେ ଅନନ୍ତ ଜନ୍ମିଲା ପ୍ରାୟ ସେହି ଦେଶେ
ସେ ପୁତ୍ର ଗୁଣ କହିବି କିସ ତୁମ୍ଭ ପାଶେ ।
ଶୁଣିଣ କୃଷ୍ଣବଲ୍ଲଭ ସନ୍ତୋଷ ହୋଇଲେ
ବହୁତ ଯେ ଧନ ଦ୍ରବ୍ୟ ଧାଈ କରେ ଦେଲେ
ରାଜ୍ୟଯାକ ଯେ ଉତ୍ସବ କଲେ ଅପ୍ରମିତ
ବଜାଇଣ ଶଙ୍ଖ ଭେରୀ କଲେ ନୃତ୍ୟଗୀତ ।
ଅଠର ବର୍ଣ୍ଣର ବାଦ୍ୟ ବାରବର୍ଣ୍ଣେ ତାଳି
ସ୍ତିରୀଏ ଗୀତ ଗାଇଣ ଦେଲେ ହୁଳହୁଳି
ଠାବେ ଠାବେ ପଶି ଜୂରକଲେ ରାଜ୍ୟଦେଶ
କେହି ଛଡ଼ାଇ କାହାର ନେଲେ ଝୀନବାସ
ହାଟ ଜୂର ବାଟ ଜୂର ପେଣ୍ଠ ଜୂରକଲେ
ପହରେପର୍ଯ୍ୟନ୍ତେ ଦେଶେ ହେମାଳିୟାହେଲେ ।
ଏରୂପେ ଆସି ହୁଅନ୍ତେ ଆସିଲା ଦିହୁଡ଼ି
ସମସ୍ତ ଘରେ ଲାଗିଲା ଦୀପ ଯେ ଦିହୁଡ଼ି ।
ଦିନ ପ୍ରାୟ ହେଲା ନିଶି ଲୁଚିଲେଟି ଚନ୍ଦ୍ର
ପୁଞ୍ଜି ପୁଞ୍ଜି ହୋଇ କେହୁ ହ୍ୱନ୍ତି ବୃନ୍ଦ ବୃନ୍ଦ ।
ବୋଲନ୍ତି ଜନ୍ମିଲେ ରାଜାଘରେ ପୁତ୍ର ଦୁଇ
ପ୍ରତ୍ୟକ୍ଷେ ଦିଶନ୍ତି ସେ ଅନନ୍ତ ଭାବଗ୍ରାହୀ ।
ପୃଥ୍ୱୀଯାକକୁ କାରଣ ବେନି ପୁଅ ହେବେ
ଦୁଷ୍ଟ କ୍ଷୟ କରି ଧରା ଭାର ଉଶ୍ୱାସିବେ ।
କେ ବୋଲଇ ହରିହର ଜନମିଲେ ଆସି
ସେରୂପେ ଦିଶନ୍ତି କୃଷ୍ଣ ବଲ୍ଲଭର ଶିଷି ।
ଏତେକ ବୋଲିଣ ଲୋକେ ହ୍ୱନ୍ତି କୁହାକୁହି
ଏଥି ଉତ୍ତାରେ ପୁତ୍ରଙ୍କୁ ସଜାଡ଼ିଲେ ଧାୟି ।
ଅନ୍ତୁଡ଼ି ଲଗାଇ ନାଭି କାଟି କଲେ ଉଚ୍ଚ
ଚତୁଃସମ ଗୋଳି ସ୍ନାନ କଲେ ଦେବରାଜ ।
ଦେବାଙ୍ଗ ପାଟ ବସନ ଛନ୍ତି ଶଯ୍ୟା ପାଡ଼ି
ତହିଁପରେ ଶୁଆଇଲେ ଧାଈ ପୁତ୍ର ଯୋଡ଼ି ।
ଶୁକ୍ଳ ଜୀମୃତ ପରାୟେ ଦିଶେ ଦେହକାନ୍ତି
ବଳୟ ମଣି ରତନ ଦେହେ ଝଟକନ୍ତି ।
କଟୀତଟେ ଝୀନ ପୀତବସ୍ତ୍ର ଗୋଟି ଶୋହେ
ସେ ସୁନ୍ଦର ରୂପଗୋଟି ଜଗଜନ ମୋହେ ।

ଦିଶଇ ଶଙ୍ଖ ଚକ୍ର ଯେ ଗଦା ପଦ୍ମ ତେଜ
ମର୍କତରୁ ସ୍ତମ୍ଭ ଯାଏ ଦିଶେ ଚତୁର୍ଭୁଜ ।
ଅଧର ଦିଶଇ ରଙ୍ଗନେତ୍ର ଦିଶେ ରଙ୍ଗ
ଶ୍ରୀବତ୍ସର ଚିହ୍ନ ଫୁଟି ଦିଶେ ହୃଦଭାଗ ।
କଟିତଟେ ବିରାଜଇ ଅଷ୍ଟରତ୍ନ ସୂତା
କନ୍ଧରେ ଦିଶଇ ଫୁଟି ସୁବର୍ଣ୍ଣ ପଇତା ।
ଜଗଜ୍ଜନ ଚିତ୍ତ ମୋହିବାର ପାଇଁ ହରି
କ୍ଷଣକେ ଦେଖାନ୍ତି ଆନ ଆନ ରୂପ ଧରି ।
ନୀଳଜୀମୂତ ଯେସନେ ଦିଶେ ଶୋଭାବନ
ସେହିରୂପେ ଜ୍ୟୋତି ପ୍ରକାଶନ୍ତି ଭଗବାନ ।
ଜାନୁ ପରିଯନ୍ତେ ଲମ୍ବମାନ ଚାରିଭୁଜ
ଗୋଷଦର ଚିହ୍ନ ଫୁଟି ଦିଶେ ମହାତେଜ ।
ମର୍କତ କୁଣ୍ଡଳ ବେନି ଶ୍ରବଣରେ ଶୋହେ
କପୋଳେ ଚନ୍ଦନବିନ୍ଦୁ ଦିଶେ ଚନ୍ଦ୍ର ପ୍ରାୟେ ।
କଳାମେଘେ ଦିଶେଯେହ୍ନେ ବିଜୁଳିର ଜ୍ୟୋତି
ତେସନ ଦିଶଇ କଟିତଟେ ପୀତ ଧୋତି ।
କୁଟିଳ କେଶ ଅଳକାପନ୍ତି ଦିଶେ ଶୋଭା
ଶିରରେ ମୁକୁଟ ଶୋହେ ସପ୍ତଗ୍ରହ ପ୍ରଭା ।
ଶ୍ରୀବତ୍ସର ଚିହ୍ନ ଯାହା ଦିଶେ ଦେହ ମାଝେ
କୌସ୍ତୁଭ ମଣି ସହସ୍ର ସୂର୍ଯ୍ୟ ତେଜ ଗଞ୍ଜେ ।
ଯାବତ କୁସୁମଯାକ ମାଳ ମାଳ ହୋଇ
ଶ୍ରୀ ଅଙ୍ଗରେ ଲମ୍ବିବାରୁ ସୁନ୍ଦର ଦିଶଇ ।
ଶ୍ରୀଭୁଜରେ ବିଦମୁଦି ବାହୁଟି କଙ୍କଣ
ଅଣ୍ଟାରେ ସୁନା ଘାଗୁଡ଼ି ବାଜେ ରୁଣୁଝୁଣ ।
ବେନି ପାଦରେ ମୁଦ୍ରିକା ବ୍ରହ୍ମାଣ୍ଡକୁ ମୋହେ
ନାନାଦି ସଜ ଲାଗି ଶ୍ରୀଅଙ୍ଗ ଶୋଭାପାଏ ।
କୋଟି କନ୍ଦର୍ପର ପ୍ରାୟେ ଦିଶେ ଦେହକାନ୍ତି
ବଦରିକା ଦେଶ ଲୋକେ ଦେଖି ତୋଷହୋନ୍ତି ।
ଚୌଷଠି ସହସ୍ର କନ୍ୟା ନିତ୍ୟସ୍ଥଳେ ଆସି
ସ୍ତୁତି କରନ୍ତି ବିଷ୍ଣୁଙ୍କ ପାଦେ ସର୍ବେ ବସି ।
ବ୍ରହ୍ମାଣ୍ଡର ସ୍ତିରୀମାନେ ଦ୍ୟନ୍ତି ହୁଳହୁଳି
ଚାମର ଢାଳନ୍ତି ଅଷ୍ଟସଖୀ କରେ ତୋଳି ।
ଆବର ଟେକିଲେ ଅଷ୍ଟସଖା କରେ ଛତ୍ର
ବିଷ୍ଣୁ ପାଦଧୂଳି ବୋଲି ହୁଅନ୍ତିକେ ଗାତ୍ର ।
ଭଗବତୀ ମାଏ ବେନି ପୁତ୍ରମୁଖ ଦେଖି
କ୍ଳେଶ ଦୂରେ ଏଡ଼ିକଲେ ନିର୍ମଳ ଯେ ଆଖି ।
ବ୍ରାହ୍ମଣମାନେ ପଢ଼ନ୍ତି ଆସି ମନ୍ତ୍ରଭାଗ
କୁସୁମ ବୃଷ୍ଟି କରନି ଦେବେ ଥାଇ ସ୍ୱର୍ଗ ।

ଏଥୁଅନ୍ତେ କୃଷ୍ଣବଲ୍ଲଭ ଯେ ମହୀପାଳ
ପୁତ୍ର ଦେଖିବାକୁ ଖୋଜିଲେକ ଅନୁକୂଳ ।
ଯାବତ ବର୍ଣ୍ଣର ପୁଷ୍ପ ସ୍ୱର୍ଣ୍ଣପାତ୍ରେ ଘେନି
ଶ୍ରୀବନ୍ଦାଣ ଦୁର୍ବାକ୍ଷତ ଦେଖା ଦରଶନୀ ।
ଆଗରେ ବାଜଇ ଯୋଡ଼ା ଶଙ୍ଖ ଘନ ଘନ
ବ୍ରାହ୍ମଣେ ବେଦ ପଢ଼ିଣ କହନ୍ତି ବଚନ ।
ଭାଟ କାୟେବାର ଗୀତ ଗାଇ ତୁହାପାଡ଼ି
ଆଗରେ ବୀର କାହାଳୀବାଜେ ଯୋଡ଼ିଯୋଡ଼ି ।
ଏମନ୍ତେ ରାଜା ମିଳିଲେ ଧରି ଦୁର୍ବାକ୍ଷତ
ଦେଖିଲେ ଶୋଇଅଛନ୍ତି ଶେଯେ ବେନି ସୁତ ।
ଶଙ୍ଖ ଚକ୍ର ଗଦାପଦ୍ମ ଚତୁର୍ଭୁଜ ହୋଇ
ଅନନ୍ତଙ୍କୁ ସଙ୍ଗେ ଘେନି ଛନ୍ତି ନିଦ୍ରାଯାଇ ।
ଦେଖିଣ ରାଜାର ଚିତ୍ତ ହୋଇଲା ଆନନ୍ଦ
ମନେ ବିଚାରନ୍ତି ଏହୁ ସାକ୍ଷାତେ ଗୋବିନ୍ଦ ।
ଭକ୍ତିଭାବ ହେତୁ ଅଶ୍ରୁଜଳେ ବୁଡ଼ିଗଲେ
ବେନି ନେତ୍ର ଫେଡ଼ି ପୁଣ ନିରେଖି ଚାହିଁଲେ
ଶ୍ରୀହରି ରୂପ ଦେଖିଣ ଆଚମ୍ଭିତ ହୋଇ
ଜଣାନ୍ତି ଭୂମିରେ ପଡ଼ି ପାଦତଳେ ଶୋଇ ।
ଉଠ ବୋଇଲେ ହେ ସ୍ୱାମୀ ତୁମ୍ଭେ ବ୍ରହ୍ମରାଶି
ସାଧୁ ତରିବାକୁ ଜନ୍ମହେଲେ ମଞ୍ଚେ ଆସି ।
ଯାହା ମହିମାର ଅନ୍ତ ବିଧାତା ନ ପାନ୍ତି
ମୁହିଁତ ମାନବ କିସ ସେବିବି ଶ୍ରୀପତି ।
ତୁମ୍ଭେ ବା ଆସିଲ ପ୍ରାଣୀହିତେ ଅବତରି
ଜନ୍ମିଲ ମୋହର ଘରେ ଦିବ୍ୟ ତନୁ ଧରି ।
ଧୋଇବି କେବଣ ଅମ୍ବୁ ଧରି ପାଦ ତୋର
ଯାହାର ପାଦପଦ୍ମରୁ ବହେ ଗଙ୍ଗାନୀର ।
କି କୁସୁମ ଦେଇ ଗଳା କରିବି ମଣ୍ଡଣି
ଯାର ପ୍ରିୟବତୀ ବୃନ୍ଦାବନ ଠାକୁରାଣୀ ।
କେଉଁ ଉପଚାର ବାଢ଼ି କରିବି ବା ପୂଜା
ଯାହାର ଶ୍ରୀ ମହାଲକ୍ଷ୍ମୀ ଅଟନ୍ତି ଭାରିଯା ।
କି ମନ୍ତ୍ର ପଢ଼ି କରିବି ତବ ଦରଶନ
ଯାହାର ଅଟେ ସାରଦା ପତ୍ନୀ କବିରତ୍ନ ।
କେବଣ ଆସନ ଦେଇ ବସାଇବି ତୋତେ
ଯାହାର ଭକ୍ତ ଅନନ୍ତ ଶଯ୍ୟା ନିଦ୍ରାଗତେ ।
କରିବି କେବଣ ଗନ୍ଧ ଦେଇ ନିମନ୍ତ୍ରଣ
ବଡ଼ ସିଂହଦ୍ୱାର ବେଶ ଯା ହୃଦରେ ଭୂଷଣ
କେବଣ ପିନ୍ଧା କରିବି କଟୀତଟେ ଲାଗି
ଯାହାର ପୀତବସନ ସର୍ବଦା ନିଯୋଗୀ ।

କେବଣ ରତ୍ନ କରିବି ଅଙ୍ଗ ଆଭରଣ
ବାଆନକୋଟି ଭଣ୍ଡାର ଯାର ଅଛି ପୂର୍ଣ୍ଣ ।
ଯାର ଅଷ୍ଟାଦଶ ଚିହ୍ନ ପାଦପଦ୍ମେ ଅଛି
ମୁହିଁ ମାନବ ବର୍ଣ୍ଣିବି କିସ ତାହା ପାଞ୍ଚି ।
ଭାଗ୍ୟ ଥିବାରୁ ଦର୍ଶନ କଲି ମୁହିଁ ଆଜ
ଶ୍ରୀଶଙ୍ଖ ଚକ୍ର ଯେ ଗଦା ଶାର୍ଙ୍ଗ ଚତୁର୍ଭୁଜ ।
ଭୋ ପ୍ରଭୁ କମଳାକାନ୍ତ ଶରଣ ମୁଁ ତୋତେ
ମାନସ ପୁରାଇ ଆଜ ଦେଖିଲି ମୋ ନେତ୍ରେ ।
ଆପଣଙ୍କୁ ଘେନି ମୋର ପୁରେ ଦେବତାଏ
ଦର୍ଶନ କରୁଅଛନ୍ତି ଆସି ଅପ୍ରମେୟେ ।
ତାହାଙ୍କ ଦର୍ଶନ ପାଉଅଛି ଚର୍ମଡ଼ୋଳେ
ସେବାରେ ମନାଇଅଛି ଜ୍ଞାନ ଯୋଗବଳେ ।
ଏମନ୍ତେ କୃଷ୍ଣବଲ୍ଲଭ ବେନି କରଯୋଡ଼ି
ଶ୍ରୁତିଲେ ବିଷ୍ଣୁଙ୍କୁ ପାଦପଦ୍ମ ତଳେ ପଡ଼ି ।
ପିତାର ଭକତିପଣ ଦେଖି ନାରୟଣ
ମନେ ପାଞ୍ଚିଲେ ଚିହ୍ନିଲେ ଏ ମୋହର ଗୁଣ ।
ଏରୂପେ ଚିହ୍ନିଲେ ପୁତ୍ର ମୁଁ କିରୂପେ ହେବି
ମାୟାପଟଳ ରାଜାଙ୍କୁ ଦେଲେ ମନେ ଭାବି ।
ସେ ମାୟାପଟଳ ଆସି ଲାଗୁଁ ବଲ୍ଲଭଙ୍କୁ
ତତକ୍ଷଣ ପୁତ୍ର ପରି ମଣେ ଗୋବିନ୍ଦଙ୍କୁ ।
ଧଇଲେ ମୋରେ ବାଳକ ବୋଲି ଶେଯୁ ତୋଳି
ପ୍ରିୟାର କୋଳରେ ଦେଲେ ପୁତ୍ର ଧର ବୋଲି ।
ଦାସୀଙ୍କୁ ବୋଇଲେ ସେବାକରଲୋ ପୁତ୍ରକୁ
ଏତେକହି ରାଜନ ଯେ ଗଲେ ଆସ୍ଥାନକୁ ।
ଏଥୁଅନନ୍ତରେ ବାଣୀ ଶୁଣହେ ନାରଦ
ସେବିଲେ ବ୍ରହ୍ମା ରୁଦ୍ରାଦି ଆସି ବିଷ୍ଣୁପାଦ ।
ବରୁଣ ଚନ୍ଦ୍ର ସୂର୍ଯ୍ୟ ଯେ ଦରଶନ କଲେ
କୁବେର ପବନ ଯମ ଅଗ୍ନି ଘେନି ତୁଲେ ।
ବାସୁକି ଯେ ନଇର୍ରତ ଦଶ ବିଶ୍ୱେଦେବା
ଗନ୍ଧର୍ବ ବିଦ୍ୟାଧର ଯେ ବସିକଲେ ସଭା ।
କିନ୍ନରୀ ଅପ୍‌ସରୀଗଣ ଆବର ଚାରଣ
ଧର୍ମ ଦେବତାଙ୍କୁ ଆଦିକରି ପିତୃଗଣ ।
ଏହାଙ୍କ ପରେ ଆସିଲେ ପୁଣି ଋଷିଯାକ
ଅଗସ୍ତି ପଉଲସ୍ତି ଯେ ଜାବାଳି ଜନକ
କପିଳ ଗୌତମ କଣ୍ୱଋଷି ମନ୍ଦକର୍ଣ୍ଣ
ମରୀଚି ପୁଲହ କ୍ରତୁ ଆଦି ତପୋଧନ ।
ବଶିଷ୍ଠ ସନକ ମୁନି କପିଳ ଆସୁରି
ବାଲମିକ ପଞ୍ଚଶିଖ ଦୁର୍ବାସା ଆଚାରୀ ।

ଆତ୍ରେୟ ଯେ ବିଭାଣ୍ଡକ ଶକ୍ତ ଋଷ୍ୟଶୃଙ୍ଗ
ଅଙ୍ଗିରସ ଭରଦ୍ୱାଜ ଜୈମିନୀ ଉତ୍ତୁଙ୍ଗ ।
କାତ୍ୟାୟନ ପରାଶର ଲୋମଶ ଚ୍ୟବନ
ଗାଲବ ରୋମାଞ୍ଚ ମୁନି ବଇଶମ୍ପାୟନ ।
କୃପାଢଳ ସୁନନ୍ଦନ ଗାର୍ଗ୍ୟ ବେଦଗର୍ଭ
କପିଳ ଦଧୀଚି କାଳିଞ୍ଜନ ବାମଦେବ ।
ଅଙ୍ଗିରା ଲୋମଶ ବ୍ୟାସ ପରାଶର ମୁନି
ବାରୁଣୀ ସତ୍ୟାନନ୍ଦ ଯେ ସୁପଣ୍ଡିତ ଘେନି ।
ଅଷ୍ଟବକ୍ର ବାଳଖିଲ୍ୟା ବୋଢ଼ୁ ଯେ ଉତଙ୍ଗ
ମଇତ୍ରେୟ ଶୁକ୍ରମୁନି ଭୃଗୁ ଶରଭଙ୍ଗ ।
ପିପ୍‌ପଳାୟନ ବିହଙ୍ଗ ମୁନି ଦତ୍ତାତ୍ରେୟ
ବଦ୍ରିକା ନଗ୍ରେ ମିଳିଲେ ଋଷି ଅପ୍ରମେୟ ।
ନାରଦ ସୁନନ୍ଦ ପରାନନ୍ଦ ସତ୍ୟାନନ୍ଦ
ମିଳିଲେ ପ୍ରଜାପତିଙ୍କ ସଙ୍ଗେ ଋଷବୃନ୍ଦ ।
ସମସ୍ତ ଦେବେ ମିଳିଣ କଲେ ପୁଷ୍ପବୃଷ୍ଟି
ଛାମୁରେ କହିଲେ ଆଗହୋଇ ପରମେଷ୍ଠୀ ।
ପାର୍ବତୀ ଜଗଦ୍ଧାତ୍ରୀ ଯେ ଗାୟତ୍ରୀ ସାବିତ୍ରୀ
କିନ୍ନରୀ ଅପ୍‌ସରୀ ଘେନି ଶଚୀ ପଦ୍ମନେତ୍ରୀ ।
ମିଳିଲେ ଯାବତ ଋଷିପତ୍ନୀ ଯେଝାମତେ
ମୂର୍ତ୍ତି ହୋଇ ଗଙ୍ଗା ମିଳିଲେ ସାକ୍ଷାତେ ।
କେ ଗୀତ ଗାବନ୍ତି କେହି ଦ୍ୟନ୍ତି ହୁଳହୁଳି
କେହୁ ସ୍ତୁତି କରନ୍ତି ନାଚନ୍ତି ଢଳି ଢଳି ।
କେ ବୋଲେ ହରି ହରିକେ ବୋଲେ ବଳରାମ
କେବୋଲେ କୃଷ୍ଣକୃଷ୍ଣ କେ ବୋଲେ ଘନଶ୍ୟାମ
କେ ବୋଲେ ଜଗନ୍ନାଥ କେ ବୋଲଇ ଶ୍ରୀପତି
କେ ବୋଲେ ଭଗବାନ କେବୋଲ ଜଗଜ୍ଜ୍ୟୋତି
କେ ବୋଲଇ ଧନ୍ୟ ଧନ୍ୟ ବଦରିକା ପୁର
ଦ୍ୱିତୀୟ ବୈକୁଣ୍ଠ ପ୍ରାୟ ଦିଶଇ ସୁନ୍ଦର ।
ବୈକୁଣ୍ଠ ତେଜି ଶ୍ରୀହରି ଯହିଁ ଅବସ୍ଥିତି
ସବୁ ତୀର୍ଥ ଘେନି ଦେବେ ଆସି ଯାଉଥାନ୍ତି ।
ଦରଶନ କରୁଥାନ୍ତି ଶ୍ରୀହରି ଚରଣେ
ସେବନ୍ତି ଗୋବିନ୍ଦ ପାଦପଦ୍ମେ ଭକ୍ତଗଣେ ।
ଅପ୍ରକଟ ମୂର୍ତ୍ତି ହେଲେ ପ୍ରକଟ ଯେ ଆସି
ନିଶ୍ଚେ ନାରାୟଣ ଏହୁ କ୍ଷୀରାର୍ଣ୍ଣବ ବାସୀ ।
ଭଲା ବିଜେକଲେ ଆସି ବଦରିକା ଧାମ
ଧନ୍ୟ ଏ ରାଜାର ଅଟେ ପୁର ଭୂମି ଗ୍ରାମ ।
ଦେଖ ଏହି ବିଷ୍ଣୁ ହୃଦେ ବିଜେ କମଳିନୀ
ଖଟିଅଛନ୍ତି ଶାରଦା ମାତା ଠାକୁରାଣୀ ।

ରତ୍ନ ସିଂହାସନେ ଯେହ୍ନେ ଅନନ୍ତ ଶଯ୍ୟାରେ
ସେହି ରୂପେ ମହାପ୍ରଭୁ ଦିଶନ୍ତି ସେଠାରେ ।
ପୂର୍ବକାଳେ ବୈକୁଣ୍ଠରେ ଦେଖିଥିଲୁ ଯାହା
ବଦରିକାରେ ଦେଖିଲୁ ଏବେ ଆସି ତାହା ।
ଆବର ଦେହେ ଦିଶୁଛି ଚିହ୍ନ ଅଷ୍ଟାଦଶ
ଶଙ୍ଖଚକ୍ର ଗଦାପଦ୍ମ କୋଦଣ୍ଡ କୁଳିଶ ।
ଧ୍ୱଜ ବଜ୍ର ଶାରଙ୍ଗ ଯେ ଖଡ଼୍ଗ ମୂଷଳ
ଜମ୍ବୁ ଗୋଷ୍ପଦ ସାୟକ ଅଙ୍କୁଶ ଲାଙ୍ଗୁଳ ।
ବେଣୁ ପାଶ ଚିହ୍ନ ଏହିରୂପେ ଅଷ୍ଟାଦଶ
ଦେବଙ୍କୁ ଦିଶଇ ଏହା ମାନବେ ଅଦୃଶ୍ୟ ।
ଦେବେ ଯେ ଦେଖିଣ ଏହା ଉଠି କରଯୋଡ଼ି
ବୋଇଲେ ବୈକୁଣ୍ଠେ ବିଷ୍ଣୁ ଦେଖିଲୁ ବାହୁଡ଼ି ।
ଭକତକୁ ତାରିବାକୁ ଧରିଲେ ଏ ରୂପ
ଦେଖିବା ଲୋକଙ୍କୁ ଏବେ ଛାଡ଼ିଯିବ ପାପ ।
ଶ୍ରୀମୁଖକୁ ଚାହିଁଲେ କି ଥିବ ଆଉ ଦୁଃଖ
ପାଇଲୁ ଯେ ପୁଣ୍ୟ ଗତି ଦେଖି ପଦ୍ମମୁଖ ।
କୁମୁଦବନ ପ୍ରାୟ ସେ ତୁମ୍ଭ ଭକ୍ତଜନ
ସେ ବନକୁ ତୁମ୍ଭ ମୁଖ ଶରତଚନ୍ଦ୍ର ଜାଣ ।
ଦିବସ ଅନ୍ତେ ଯେ ନାଥ ହେଲେ ଅବତାର
ଫୁଟିବା କୁମୁଦବନ ବନ୍ଧୁ ତୁ ଆମ୍ଭର ।
ଅଷ୍ଟାଦଶ ଚିହ୍ନ ତୋର ଭକ୍ତଜନ ହିତେ
ଦେଖି ନିସ୍ତରି ଶରଣ ପଶିଲୁଁ ସୁଚିତ୍ତେ ।
ମୂଷଳ ଲଙ୍ଗଳ ଖଡ଼୍ଗ ଧରି ବଜ୍ର କରେ
ଭକ୍ତକୁ ପାଳ ଭୋ ନାଥ ଦୁଷ୍ଟ ମାରିବାରେ
ଅଷ୍ଟାଦଶ ଚିହ୍ନଯାକ ଭକ୍ତେ ତୋର ଧାୟି
ଚଳୁଥାନ୍ତି ବୈକୁଣ୍ଠକୁ ଦରଶନ ପାଇଁ ।
ତୁମ୍ଭ ପାଦପଦ୍ମ ଘେନି ସଂସାର ମୁକତ
କୀଟୁ ବ୍ରହ୍ମଯାଏ ସବୁ ତୋହର ଏକତ୍ୱ ।
କୌସ୍ତୁଭମଣି ତୋହର ଦିଶେ ବକ୍ଷସ୍ଥଳେ
ଆମ୍ଭେ ଦେବତାଏ ଦେଖି ନିସ୍ତରିଲୁ ହେଳେ
ମୋକ୍ଷକୁ ପବିତ୍ର ଏ ତୋ ନାମ ବୀରବାନା
ସେ ବାନା ପ୍ରକାଶୁଅଛି ଆମ୍ଭ ଲାଗି ସିନା ।
ଆବର ବାହନ ତୋର ଯେଉଁ ପକ୍ଷୀରାଜ
କେଡ଼େ ନିଅଳସ ଅଟେ ସେହି ବ୍ରହ୍ମବୀର୍ଯ୍ୟ ।
ତେଣୁ ତୁମ୍ଭର ବହଇ ଏଡ଼େ ବଡ଼ ଭାର।
ଯେଉଁ ଗର୍ଭେ ପୁରିଅଛି କୋଟି ବସୁନ୍ଧରା ।
ଗରୁଡ଼ ଆସନ ପରେ ତୁମ୍ଭ ନିଜ କାୟେ
ନିବାରିବ କେବେ ଦୁଷ୍ଟ ପୃଥ୍ୱୀ ଥିବାଯାଏ ।
ଏ କୃଷ୍ଣବଲ୍ଲଭ ରାଜା କେଡ଼େ ଭାଗ୍ୟବନ୍ତ
ତାହାଙ୍କ ପତ୍ନୀ ଗର୍ଭରୁ ହେଲ ତୁମ୍ଭେ ଜାତ ।
ଚାରିଜନ୍ମେ ସେହି ଏକା ହେବେ ତୁମ୍ଭ ପିତା
ଏତେବୋଲି ବହୁ ସ୍ତୁତି କରନ୍ତି ବିଧାତା ।
ଏବେ ଜାଣିଲୁ ମରିବ ନିଶ୍ଚେ ମୁରାସୁର
ଆପଣେ ଯେଣୁ ହେଲେଣି ଆସି ଅବତାର ।
କେତେକାଳ ଯାଏ ଥିଲା ଦୈତ୍ୟକୁ ଏ ଯୋଗ
କୋଡ଼ିଏ ଗଣ୍ଡା ଯୁଗ ତ କଲାଣି ସେ ଭୋଗ ।
ତୁମ୍ଭେ ଅନ୍ତର୍ଯ୍ୟାମୀ ଜାଣ ସବୁଙ୍କରି ଚିତ୍ତ
ତୁମ୍ଭକୁ ଭଜି ପାରନ୍ତି ନିଶ୍ଚେ ଭାଗ୍ୟବନ୍ତ ।
ପଦାର୍ଥ ଅର୍ଜି ନୁହଇ ଯେବେ ଦାତାଶୀଳ
ସେହିମାନଙ୍କୁ ଦରିଦ୍ର ବୋଲିଟି କେବଳ ।
ଧନ ଅର୍ଜିଲଟି ଜାଣ ଧର୍ମ ଯେବେ କରି
ଧର୍ମରୁ ପ୍ରାପତ ନିଶ୍ଚେଁ ହୋନ୍ତି ନରହରି ।
ଯାହାଙ୍କର ଘରେ ଲକ୍ଷ୍ମୀ ନାରାୟଣ ଥାନ୍ତି
ତାହାଙ୍କୁଟି ଭାଗ୍ୟବନ୍ତ ସଂସାରେ ବୋଲନ୍ତି ।
ପ୍ରବୋଧିଣ କହୁଅଛି ରଖ ଏ ଧରଣୀ
ଏରୂପେ କହିଣ ଦେବେ ହୋଇଲେ ମେଲାଣି
ସୁରପାଦପ ଗିରିର ଶିଖେ ଉଠିଗଲେ
ଯଶୋବନ୍ତା ପୁରେ ଯାଇଁ ବ୍ରହ୍ମା ବିଜେକଲେ ।
ବ୍ରହ୍ମା ଗଲାରୁ ଚଳିଲେ ଦେବେ ଯେଝା ପୁର
ଶ୍ରୀଗୋବିନ୍ଦ ଶରଣ ମୁଁ ବିପ୍ର ପୀତାମ୍ବର ।

❋ ❋ ❋

## ଶେଷ ନୃସିଂହଙ୍କର ନାମକରଣ ଓ ସାମୁଦ୍ରିକ ଲକ୍ଷଣ

ଏଥି ଉତ୍ତାରେ ସେ କଥା ଶୁଣ ନେ ନାରଦ
ମଂଚରେ ଆସିଣ ଜନ୍ମ ହୋଇଲେ ଗୋବିନ୍ଦ ।
କୃଷ୍ଣବଲ୍ଲଭ ଘରେ ହୁଅନ୍ତେ ଜନମ
କେତେ ରୂପେ ବିପ୍ରଙ୍କୁ ସେ ଦେଲେ ନିତି ଦାନ ।
ପଞ୍ଚୁଆତି ସାରି ପୁଣି ଉଠିଆରି କଲେ
ଏକୋଇଶ ରାତ୍ରେ ଉତ୍ସବ ଯେ କରାଇଲେ ।
ଅଷ୍ଟରତ୍ନରେ ମଣ୍ଡନ କରି ପୁରଯାକ
ପଲ୍ୟଙ୍କରେ ଶୁଆଇଲେ ନେଇଣ ବାଳକ ।
ଏଥି ଉତ୍ତାରେ ଯେ ବ୍ରହ୍ମା ବୃହସ୍ପତି ରାଇ
ବୋଇଲେ ଯାଇ ପୁତ୍ରଙ୍କୁ ଆସ ନାମ ଦେଇ
ଶୁଣିକରି ବୃହସ୍ପତି ଗଲେ ମଧୁପୁରେ

ପ୍ରବେଶ ହୋଇଲେ କୃଷ୍ଣବଲ୍ଲଭର ଘରେ ।
ଶରୀରକୁ ଗୋପ୍ୟକରି ଦ୍ୱିଜରୂପ ଧରି
ପଶିଲେକ ପୁରେ ଆସି ଯେହ୍ନେ ବ୍ରହ୍ମଚାରୀ ।
ଜ୍ୟେଷ୍ଠ ଶୁକଳ ପଞ୍ଚମୀ ତିଥି ଗୁରୁବାର
ପୁଷ୍ୟାନାମେ ନକ୍ଷତ୍ର ଯେ ଅଟେ ସେ ଦିନର
ବ୍ରହ୍ମନାମେ ନକ୍ଷତ୍ରଯେ ଅଟେ ସେ ଦିନର ।
ବ୍ରହ୍ମନାମେ ଯୋଗ ପୁଣି କକଡ଼ା ଯେ ରାଶି
ବଲ୍ଲଭ ଘରେ ପ୍ରବେଶ ହେଲେ ଗୁରୁ ଆସି ।
ଦେଖି ତାଙ୍କୁ ମହାରାଜା କଲେ ନମସ୍କାର
ପାଞ୍ଚିଲେ ଭଲ ବେଳେ ତ ଭେଟ ବିପ୍ରବର ।
କେବଣ ଦେଶୁଁ ଅଇଲେ ପୁରେ ବିଜେକରି
ଏହାଙ୍କର ନାମ ଦେଖି ବୁଝିବା ପଚାରି ।
ଏତେକ ପାଞ୍ଚି ଆସନ ଦେଲେ ନୃପମଣି
ପାଦ ପଖାଳିବା ପାଇଁ ଦେଲେ ବାସ ପାଣି ।
ଏକେତ ଗ୍ରୀଷମକାଳ ଅଟେ ଜ୍ୟେଷ୍ଠମାସ
ପୁଛିଲେ କେଉଁ ଦେଶରୁ ଆସିଲ ଦ୍ୱିଜେଶ ।
ବୃହସ୍ପତି ବୋଇଲେ ହେ ଶୁଣ ମହୀପତି
ଗୁପତେ ଆସିଛୁ ଆମ୍ଭେ ନାମ ବୃହସ୍ପତି ।
ତୁମ୍ଭର କୋଳରେ ପୁତ୍ର ଜନ୍ମହେବା ଶୁଣି
ଆମ୍ଭଙ୍କୁ ବିଧାତା ପେଶିଦେଲେ ତାହା ଜାଣି ।
ଏ ତୁମ୍ଭର ବାଳକକୁ ଦେବା ନାମ ବୁଝି
ତେଣୁ ଆମ୍ଭେ ସ୍ୱର୍ଗୁ ଆସିଅଛୁ ଧରି ପାଞ୍ଜି ।
ଶୁଣିକରି ମହାରାଜା ହେଲେ ହସ ହସ
ପ୍ରବେଶିଲେ ଯେ ମନ୍ଦିରେ ଶୋଇଥିଲେ ଶିଷ୍ୟ ।
ଚାହିଁଲାକ୍ଷଣି ଚିହ୍ନିଲେ ପ୍ରଭୁ ବ୍ରହ୍ମରାଶି
ଶଙ୍ଖ ଚକ୍ର ଗଦାପଦ୍ମ ଚତୁର୍ଭୁଜ ଦିଶି ।
ହୃଦରେ ପାଞ୍ଚିଲେ ଏହି ସ୍ୱୟଂ ଜଗନ୍ନାଥ
ପୃଥ୍ୱୀଭାରା ନାଶିବାକୁ ହେଲେ ଆସି ଜାତ ।
ଏରୂପେ ପାଞ୍ଚି କୋଷ୍ଠୀଏ କାଟି ବୃହସ୍ପତି
ଦିନବାର ଯୋଗ ବୁଝି ସୁଝି ରକ୍ଷ ରଥି ।
ଲଗ୍ନରେ ଯେ ବୃହସ୍ପତି ଶୁକ୍ର ଲଗ୍ନେ ରହେ
ସପ୍ତମରେ ଚନ୍ଦ୍ର ରବି ଦ୍ୱିତୀୟରେ ଥାଏ ।
ରାହୁ ମଙ୍ଗଳରେ ତୃତୀୟ ଘରେ ଅବସ୍ଥିତି
ଅମୃତ ଦୃଷ୍ଟି ଘେନିଣ ଷଷ୍ଠେ ଶନି ଛନ୍ତି ।
ଆରକ୍ତ ବର୍ଣ୍ଣ ଯେ ଚକ୍ଷୁ ରୂପ କୋଟି କାମ
ଜ୍ୟେଷ୍ଠ ପୁତ୍ର ଗୋଟିକର ନୃସିଂହ ଯେ ନାମ ।
ଦ୍ୱିତୀୟ ପୁତ୍ର ଗୋଟିକ ଶେଷ ନାମ ଦେଲେ
ନୃସିଂହ ଶେଷ ନାମରେ ଜାତକ ଯେ କଲେ ।

ବୃହସ୍ପତି ବୋଇଲେ ହୋ ଶୁଣ ମହାରାଜ
ଅତି ଭାଗ୍ୟେ ଜନ୍ମିଅଛି ତୋହର ତନୁଜ !
କେବଳ ତୁ ଯତ୍ନକରି ଥିବୁ ପ୍ରତିପାଳି
କେତେ ଧନ ଦ୍ରବ୍ୟ ତୁମ୍ଭ ପଡ଼ିବ ଉଛୁଳି ।
ଶଙ୍ଖନିଧି ପଦ୍ମନିଧି ପୁତ୍ରପାଦେ ଅଛି ।
ଲକ୍ଷେ ଲକ୍ଷଣ ଘେନିଣ ତୋ ଗୃହେ ଜନମିଛି
ଶୁଣିଣ ମନରେ ଶ୍ରଦ୍ଧା ବହି ନୃପରାଣ
ବୋଇଲେ କହ ଗୁରୁହେ ଶୁଣିବା ଲକ୍ଷଣ ।
ଲକ୍ଷଣମାନ କିରୂପେ ଥିଲେ ଜଣାଯାଇ
ସେ କଥା କୁହ ଶୁଣିବା ଏବେ ମନଦେଇ ।
ଶୁଣିଣ ସେ ବୃହସ୍ପତି ହେଲେ ହସ ହସ
ବୋଇଲେ ଚିହ୍ନିବ ତୁମ୍ଭେ ବିଷ୍ଣୁଗଣ କିସ ।
ପ୍ରତ୍ୟକ୍ଷେ ନୃସିଂହ ବିଷ୍ଣୁ ଛନ୍ତି ଜାଣ ମନ୍ତ୍ରୀ
ଅଳ୍ପଦିନେ ବଧୁ ତାର ହେବେ ମହାଲକ୍ଷ୍ମୀ ।
ଏ ବେନି ମୂର୍ତ୍ତି ଲକ୍ଷଣ କେ ପାରିବ କହି
ଅନନ୍ତ କୋଟି ଲକ୍ଷଣ ଛନ୍ତି ଦେହେ ବହି ।
ଲକ୍ଷଣ ପୁଛିଲେ ଯେବେ କହେ ତେବେ ଶୁଣ
ସଂସାରେ ସ୍ତିରୀ ପୁରୁଷ ଛନ୍ତି ଯେତେ ଜାଣ ।
ପ୍ରଥମରୁ ବୁଝ ଆଗେ ପୁରୁଷର କଥା
ଲୋକଙ୍କୁ ଯେ ମିଷ୍ଟବାକ୍ୟ କହେ ଟେକି କଥା ।
କାହାକୁ କୂଟ କପଟ ମାୟା ନ କରଇ
ସତ୍ୟ ବଚନେ ତାହାର ସଦା ଦିନ ଯାଇ ।
ଦେବାକୁ ନ ଥିଲେ ଆଣିଦିଏ ପରଠାରୁ
ଏଣୁ ମହାଲକ୍ଷ୍ମୀ ତାର ନ ଛାଡ଼େ କନ୍ଧରୁ ।
ସଂସାରେ ସେ ପୁରୁଷକୁ ବୋଲନ୍ତି ଶ୍ରୀମନ୍ତ
ଆବର ଲକ୍ଷଣ ଶୁଣ କହିବା ବୃତ୍ତାନ୍ତ ।
ଆଦ୍ୟେ ଦେଖିବ ଦକ୍ଷିଣ ହସ୍ତ ପୁରୁଷର ।
ରେଖାମାନଙ୍କରୁ ବୁଝି କହିବ ତତ୍ପର ।
କରପଦ୍ମ ବିସ୍ତାରି ଯେ ରେଖା ବୁଝାଯିବ
କନିଷ୍ଠାଠାରୁ ତର୍ଜ୍ଜନୀ ମୂଳଯାଏ ଥିବ ।
ଆଦ୍ୟ ମଧ୍ୟ ପ୍ରାନ୍ତ ଛିଡ଼ି ନ ଥିବ ଯେ ରେଖା
ମହା ଧନବନ୍ତ ହୁଏ ସଂସାରେ ସେ ଲେଖା ।
ଧନବନ୍ତ ହୋଇ ଯାର ଆୟୁଷ ନ ଥିବ
ବତିଶ ଲକ୍ଷଣେ ଜନ୍ମି ସେ କିସ କରିବ ।
ଭାଗ୍ୟବନ୍ତ ପ୍ରାଣୀ ଜନ୍ମେ ବତିଶ ଲକ୍ଷଣେ
ଆୟୁଷ ଶିରୀ ସମ୍ପଦ ପୂର୍ଣ୍ଣ କରି ଆଣେ ।
ବତିଶ ଲକ୍ଷଣଯାକ ଯାହା ଦେହେ ଥାଇ
ଲକ୍ଷଣଯାକ କହିବା ଶୁଣ ରାଜା ତୁହି ।

ଦୟାଳୁ ସୁବୁଦ୍ଧି ସୁପଣ୍ଡିତ ସତ୍ୟବାଦୀ
କୋମଳ ବାକ୍ୟ କହଇ ଯାବତ ସମ୍ବାଦି ।
କେବଳ ଗୁରୁ ଦେବତା ନିତ୍ୟେ କରି ପୂଜା
ଲକ୍ଷ୍ମୀ ନୃସିଂହ ବିନୁ ନ ଜାଣେ ଆନ ଦ୍ୱିଜା ।
ଶ୍ରୀଗୋବିନ୍ଦଙ୍କ ଚରଣେ ଯାର ଚିତ୍ତ ଥାଇ
ସମଦରଶୀ ଭାବରେ ତାର ଦିନ ଯାଇ ।
ଆବର ତିନି ଲକ୍ଷଣ ଅଟେ ବଡ଼ ଦୀର୍ଘ
ଚାରି ଯେ ରହସ୍ୟ ପଞ୍ଚ ଅଟଇ ସୁହାଗ ।
ଛଅ କଥା ନୀଚ ଅଟେ ସାତକଥା ଉଚ୍ଚ
ଆଉ ଦଶକଥା ମନେ କରିବ ଯେ ପାଞ୍ଚ ।
ଦୟା ଧର୍ମ ଦୁଇ କଥା ହୃଦେ ପୁଣି ଥିବ
ତେବେ ବତିଶ ଲକ୍ଷଣ ତାର ଜଣାଯିବ ।
ରାଜନ କି ଅବା ମନ୍ତ୍ରୀ ହୁଏ ସେହୁ ପ୍ରାଣୀ
ଆବର କହିବା ପୁଣ କଥା ଥାଅ ଶୁଣି ।
କୋଡ଼ିଏ ଲକ୍ଷଣ ପୁଣି ଥିବ ଯାହା ହୃଦ
ଧନବନ୍ତ କରି ତାଙ୍କୁ ରଖନ୍ତି ଗୋବିନ୍ଦ ।
ତାହାର ମୁଖ ଦେଖିଲେ ସର୍ବେ ବୋଧ ହୋନ୍ତି
ସେ ପ୍ରାଣୀ ଅନେକ ଧନ ଦ୍ରବ୍ୟେ ବିଳସନ୍ତି ।
ଷୋଡ଼ଶ ଲକ୍ଷଣ ଥିଲେ ହୋନ୍ତି ସେନାପତି ।
ଦଶଲକ୍ଷଣ ଯେ ସାଧୁ ବୈଷ୍ଣବ ହୁଅନ୍ତି ।
ପନ୍ଦରଟି ଗୁଣ ଥିଲେ ମିଳେ ବହୁ ଦ୍ରବ୍ୟ
ସାତଟି ଲକ୍ଷଣ ଥିଲେ ପୋଷଇ କୁଟୁମ୍ବ ।
ଏକ ଲକ୍ଷଣ ଶରୀର ମଧ୍ୟେ ଯାର ଥାଇ
କେବଳ ମୁଖ ତାହାର ସୁନ୍ଦର ଦିଶଇ ।
ଆବର ଲକ୍ଷଣ କିଛି ଶୁଣ ହେ ରାଜନ
କନିଷ୍ଠ ଅଙ୍ଗୁଳି ଯାର ଦିଶିବ ସମାନ ।
ଦିଶିବ ମୁଖ କପୋଳ ବକ୍ଷୁ ଯାର ଦୀର୍ଘ
ସେ ପ୍ରାଣୀକି ଜନ ମଧ୍ୟେ ବୋଲି ମହାଭାଗ ।
ଆବର ଲକ୍ଷଣ ଏକ କହିବା ହୋ ଶୁଣ
ଉଚ୍ଚେ ଡ଼ାକୁଥିଲେ ବାକ୍ୟ ଶୁଭେ କୋମଳେଣ ।
ଅଙ୍ଗୁଳିର ନଖ ଯାର ଦିଶେ ସରୁ ସରୁ
ଦଶନପନ୍ତି ଯେ ସରୁ ଦିଶେ ଲପନରୁ ।
ନାସା ଶ୍ରବଣ ଏ ଦୁଇ ଦିଶେ ଦୀର୍ଘ ଯାର
ମୁଖ ଯେ କପୋଳ ଚକ୍ଷୁ ଦିଶେ ଶୋଭାକର ।
ଏତେ ଲକ୍ଷଣ ପୁରୁଷଠାରେ ଯେବେ ଥାଇ
ଶତେକ ବରଷଯାଏ ସଂସାରେ ଜୀଅଇ ।
ଦାରା ପୁତ୍ର ସମ୍ପତ୍ତି ସେ କରେ ବଇଭୋଗ
ଦିନ ବଞ୍ଚୁଥାଇ ସୁଖେ ହୋଇଣ ଆରୋଗ୍ୟ ।
ଆବର ଲକ୍ଷଣ ଏବେ କହିବା ହୋ ଶୁଣ
ଯାହାଙ୍କର କରପତ୍ର ଦିଶେ ରକ୍ତବର୍ଣ୍ଣ ।
ଚକ୍ଷୁ ନଖ ପାଦ ତିନି ଯାର ରକ୍ତ ଦିଶି
ଭ୍ରୂଲତା ଉପର ଓଷ୍ଠ ରକତ ପ୍ରକାଶି ।
ପିଠିଭାଗ ଗୋଟି ଯାର ଦିଶେ ଶୋଭାକର
ବଳିନ ଆବର ଶୋଭା ଦିଶେ ଜାନୁ ଯାର ।
ଏପରି ଲକ୍ଷଣମାନ ଯାହାଠାରେ ଥାଇ
ସେ ପ୍ରାଣୀକି ଧନଦ୍ରବ୍ୟ ଅନେକ ମିଳଇ ।
ଆବର ଯାହାର ଦେହେ ଥାଇ ଲକ୍ଷ୍ମୀକଳା
କୋମଳ ଗଭୀର ହୋଇ ଶୁଭେ ତାର ଗଳା ।
ଆବର ବିସ୍ତାର ଦିଶେ ହୃଦଗୋଟି ଯାର
ନାଭି ଗଭୀର ଯେ ଅଣ୍ଟା ଦିଶେ ଶୋଭାକର ।
ପାଦ ବେନି ସୁନ୍ଦର ଯେ ଦିଶୁଥାଇ ବେନି
ବଚନ ତାହାର ଶୁଭେ କୋକିଳର ବାଣୀ ।
ଏମନ୍ତ ଲକ୍ଷଣ ଗୋଟି ଯାହା ଦେହେ ଥାଇ
ନୃପତିଗଣକୁ ସେହି ଜନ ଯୋଗ୍ୟ ହୋଇ ।
ଆବର ପାଦ ଯାହାର ଦିଶେ ସାନ ସାନ
ମହାଶ୍ରୀମନ୍ତରେ ଲେଖା ହୁଏ ସେହୁ ଜନ ।
ବହୁତ ରେଖା ଯାହାର ହସ୍ତରେଟି ଥାଇ
ଅନୁକ୍ଷଣେ ରୋଗ ତାର ଦେହୁଁ ଜାତହୋଇ ।
ଆବର ଆରକ୍ତ ଯାର ହସ୍ତରେଖା ଦିଶି
ବହୁତ କୁଟୁମ୍ବ ସେହୁ ପାରେ ଜାଣ ପୋଷି ।
ନ ଦିଶେ ଯେଉଁ ଲୋକର ଚକ୍ଷୁ ରକ୍ତବର୍ଣ୍ଣ
କେତେବେଳେ ପୁରା ଯେ ନମିଳେ ତାକୁ ଅନ୍ନ ।
ଯେଉଁ ଲୋକ ଇନ୍ଦ୍ରି ନବଅଙ୍ଗୁଳ ସେ ବଢ଼େ
ଦରିଦ୍ର ହୋଇଣ ବୁଲେ ସେହୁ ଚାରିଆଡ଼େ ।
ଯେଉଁ ଲୋକଙ୍କର ଇନ୍ଦ୍ରି ଦିଶେ ସମଭାଗ
ବହୁତ ସୁରତି ସେହୁ କରେ ବଇଭୋଗ ।
ତଥାପି ଇନ୍ଦ୍ରି ଯାହାର ସମତୁଲ ନାହିଁ
ଅତି କ୍ଷୀଣ ଦିଶିଲେ ସେ ଅପୁତ୍ରିକ ହୋଇ ।
ଯାହା କଟୀଭାଗ ଦିଶେ ଅତ୍ୟନ୍ତ ବିସ୍ତାର
ବହୁତ ପୁତ୍ରନାତି ଯେ ହୁଅଇ ତାହାର ।
ଯାହା ପାଦ ବେନି ଜାଣ ଦିଶେ ସାନସାନ
ସଂସାରେ ଅବଶ୍ୟ ସେହୁ ବୁଲେ ଚଢ଼ି ଯାନ ।
ଯେଉଁ ଲୋକଙ୍କର ଜାଣ ଦିଶେ ଭୁଜ ଲମ୍ବ
ଧନବନ୍ତ ହୋଇ ସେହୁ ପୋଷଇ କୁଟୁମ୍ବ ।
ଯାହା ମଥାଗୋଟି ସୁବିଶାଳ ହୋଇ ଦିଶେ
ଅନେକ ପଦାର୍ଥ ଜାଣ ଯେ ପ୍ରାଣୀ ବିଳସେ ।

ଅତି ବଡ଼ ଅତି ସାନ ଯେ ପ୍ରାଣୀ ଦିଶନ୍ତି
କୁଳରେ ଚନ୍ଦ୍ରମା ତୁଲ୍ୟ ସେ ପ୍ରାଣୀ ହୁଅନ୍ତି ।
ବୃଦ୍ଧ ଅଙ୍ଗୁଳିରେ ଜାଣ ଦିଶେ ଯାର ଯବ
ମହା ବିଦ୍ୟାବନ୍ତ ସେହୁ ସଂସାରେ ଜାଣିବ ।
ଯେବଣ ଲୋକର ହସ୍ତେ ରେଖାଚିହ୍ନ ନାହିଁ
ସଂସାରେ ସୁଖଭୋଗ ସେ ପାଇବଟି କାହିଁ ।
ଆବର କପାଳେ ଯାର କଳାରେଖା ଥିବ
ଫୁଟିଣ ବିରାଜି ସେ ପଦାକୁ ଦିଶୁଥିବ ।
ସେହି ଲୋକୁ ସଂସାରେ ବୋଲନ୍ତି ଖଚୁଆ
ଜୀବଥିବାଯାକେ ସେ ଯେ ଅଟଇ ମିଛୁଆ ।
ଦେହଥିବାଯାକେ ସେ ନ କହେ ପଦେ ସତ
କୋଟିକେ ଗୋଟିଏ ଜାଣ ମିଳଇ ଏମନ୍ତ ।
ଯେବଣ ଲୋକର ଜାଣ ବୃଦ୍ଧଅଙ୍ଗୁଳିରେ
ଯବ ମଧ୍ୟେ ଦୁଇରେଖା ଲାଗି ଯୋଗକରେ
ଧନବନ୍ତ ବିଦ୍ୟାବନ୍ତ ଯେ ପ୍ରାଣୀ ହୁଅଇ
ବୁଦ୍ଧି ବଡ଼ ହୁଏ ପଣ୍ଡିତେ ସେ ଲେଖାଯାଇ ।
ପୁଣି ମତ୍ସ୍ୟରେଖା ଚିହ୍ନ ଯାହା କରେ ଥିବ
ତାହାର ସମ୍ପତ୍ତି ଜାଣ କେ ଅନ୍ତ କରିବ ।
ଆବର ଉର୍ଦ୍ଧ୍ୱରେଖାଟି ଯାହା କରେ ଥାଇ
ତାହାର ଭାଗ୍ୟ ସଂସାରେ ଜାଣ ନୋହେ କହି ।
ବିସ୍ତାର ଦିଶେ ହୃଦୟ ଉଦର ସେ ସାନ
ଆବର ଚକ୍ଷୁ ଯାହାର ଦିଶେ ଶୋଭାବନ ।
ଏତେ ଲକ୍ଷଣଟି ଯାହା ହୃଦୟରେ ଥାଇ
ଅଶୀବରଷ ସେ ଜନ ଆୟୁଭୋଗ ପାଇ ।
ଆବର ଯାହାର ସୁବିଶାଳ ଦିଶେ ପେଟ
ଉଚ୍ଚଭାଗ ହୋଇ ଦିଶେ ଶ୍ରବଣ ଯେ ମୋଟ ।
ଦଶନପନ୍ତି ଦିଶଇ ମୋଟ ପୁଣି ଯାର
ମହାଦୁଃଖୀ ଦରିଦ୍ରଟି ଅଟେ ସେହୁ ନର ।
ଆବର ତ୍ରିଶୂଳଗୋଟି ଥିବ ଯାର ହସ୍ତେ
ତାହାକୁ ଅନ୍ନବସ୍ତ୍ର ନ ମିଳେ କଦାଚିତେ ।
ଆବର କପାଳେ ଯାର ଥିବ ପଞ୍ଚରେଖା
ଶତେବରଷ ପର୍ଯ୍ୟନ୍ତ ଆୟୁ ତାର ଲେଖା ।
ଉର୍ଦ୍ଧ୍ୱରେଖା ଜାଣ ଯାହା ହସ୍ତରେଟି ଥାଇ
ପୂର୍ଣ୍ଣହୋଇ ଧନ ତାକୁ ସର୍ବଦା ମିଳଇ ।
ଏରୂପେ ଲକ୍ଷଣ କେତେ ପୁରୁଷର ଅଛି ।
ତହିଁରୁ ଥୋକେ କହିଲୁ ତୋତେ ବାଛି ବାଛି
ସ୍ତିରୀମାନଙ୍କ ଲକ୍ଷଣ କହିବା ହୋ ଶୁଣ
ଯାହାର ଦେହେ ଯେମନ୍ତ ଅଟଇ ଲକ୍ଷଣ ।

ଯେଉଁ ଯୁବତୀର ମୁଖ ବିଶେ ଅତି ଶୋଭା
ପ୍ରସନ୍ନ ମୁଖେ ଝଟତି ଦିଶେ ପୁଣି ପ୍ରଭା ।
ଚମ୍ପା ପୁଷ୍ପ ପ୍ରାୟ ଝଟକଇ ଯାର ଗାତ୍ର
ମୃଗର ଚକ୍ଷୁ ପରାଏ ଦିଶେ ପଦ୍ମନେତ୍ର ।
ବାସୁଥାଏ ଦେହ ଗୋଟି କର୍ପୂରର ପ୍ରାୟ
ଅଧର ଦିଶଇ ଯାର ରକ୍ତବର୍ଣ୍ଣମୟ ।
ବଚନ କୋମଳ ଶୁଭୁଥାଇ ମଧୁରୁଚି
ହଂସ ପ୍ରାୟ ଗତିକରି ଚାଲେ ପାଦଯୋଚି ।
ଯାହାକୁ ଇଚ୍ଛା ତାହାକୁ କହିଲେ ବାକ୍ୟଟି
କୋକିଳଠାରୁ ମଧୁର ଶୁଭେ ତାହା ଫୁଟି ।
ସ୍ୱାମୀଙ୍କ ସେବା କରଇ ବିଷ୍ଣୁ ପ୍ରାୟ ମଣି
କୁଟୁମ୍ବଯାକକୁ ସେବା କରେ ମନ ଜାଣି ।
ଶାଶୁ ଶ୍ୱଶୁର ଦେବର ପୁଣି ନଣନ୍ଦଙ୍କୁ
ଯେ ଯାହାର ମନ ଜାଣି ପାଳିଥାଏ ତାଙ୍କୁ ।
ବେଭାର ମହତ୍ୱରେ ସଭିଙ୍କି ସେହି ପାଳେ
ସେ ସ୍ତିରୀ ଉଦରେ ବଂଶଯାକ ଅବହେଳେ ।
ସଂସାରେ ସୌଭାଗ୍ୟବତୀ ଅଟେ ସେହୁ ଜାଣ
ଆବର ସ୍ତିରୀ ଲକ୍ଷଣ କହେ ଏବେ ଶୁଣ ।
ଯେଉଁ ସ୍ତିରୀର ଅଙ୍କୁଶରେଖା ପାଦେ ଥାଇ
ଚକ୍ର କୁଣ୍ଡଳ ରେଖା ଯା ହସ୍ତେ ବିରାଜଇ ।
ସେ କନ୍ୟାଟି ରାଜତ୍ୱକୁ ପ୍ରାପ୍ତ ଏକା ହୁଏ
ଆବର ସ୍ତିରୀ ଲକ୍ଷଣ କହିବା ହୋ ରାୟେ ।
ସୁଲଭ ସ୍ତିରୀ ଅଟନ୍ତି ଜାଣ ଯେତେ କନ୍ୟା
ସୁବର୍ଣ୍ଣ ବର୍ଣ୍ଣ ଦିଶନ୍ତି ସେହି ବରାଙ୍ଗନା ।
ନନ୍ଦାବର୍ତ୍ତର ପରାୟେ ଦିଶେ କର୍ଣ୍ଣପୁଟ
ପଦ୍ମପୁଷ୍ପ ପ୍ରାୟ ଦିଶେ ତାଙ୍କ ମୁଖ ଓଷ୍ଠ ।
ଭୂମିରେ ଚାଲିଲେ ଯାର ଶବ୍ଦ ନ ଶୁଭଇ
ଏମନ୍ତ ଯୁବତୀ କି ଯେ ଅନ୍ନପୂର୍ଣ୍ଣା କହି ।
ଆବର କନ୍ୟାର ଗୁଣ ଯେମନ୍ତଟି ଶୁଣ
ଏ କଥାକୁ ସାବଧାନେ ଶୁଣ ନୃପରାଣ ।
ଅତି ଗୋରା ପୁଣି ଅତି ନୋହିଥାଇ କଳା
ମୃଗଚକ୍ଷୁ ପ୍ରାୟ ଦିଶେ ଯାର ବେନି ଡୋଳା ।
କୋମଳ ଅଙ୍ଗ ସୁସଞ୍ଚ ହେବ ଯାର କୁଚ
ଅତିହିଁ ସାନ ନୋହିବ ପୁଣି ଅତି ଉଚ୍ଚ ।
ଦିଶଇ ଚାରୁ ଚରଣ କଟି ମହାଶୋଭା
ରାଜହଂସର ପରାୟ ଯାର ଚାଲି ପ୍ରଭା ।
ସମାନ ଯାହାର ଦନ୍ତ ଗଭୀର ଯା ନାଭି
ଏମନ୍ତ ସ୍ତିରୀଙ୍କି ବିଜ୍ଞେ ବୋଲନ୍ତି ସାଧବୀ ।

ଏ ଜାତି ସ୍ତିରୀରେ ଘର ଉଜ୍ଜ୍ୱଳ ଯେ ହୁଏ
ଆବର ସ୍ତିରୀର ଗୁଣ କହିବା ହେ ରାୟେ ।
ଯେଉଁ ଯୁବତୀ କପୋଳ ଦିଶଇ ଯେ ଉଚ୍ଚ
କଳା ହୋଇଣ ଯା ଜିହ୍ୱା ଦିଶଇ ପ୍ରପଞ୍ଚ ।
ମୁଖ ମଣ୍ଡଳରେ ଫୁଟି ଦିଶଇ ବରୁଣ
ଭାଷିଲେ କାକ ପରାୟେ ଶୁଭେ ଯା ବଚନ ।
ଏରୂପେ ଲକ୍ଷଣ ଜାଣ ଯାହା ଦେହେ ଥାଇ
ସେ ଯୁବତୀ ନିଶ୍ଚେ ପୁଣି ବିଧବା ହୁଅଇ ।
ବୃହସ୍ପତି ବୋଇଲେ ହେ ଶୁଣ ନୃପରାଣ
ଆବର କିଛି ଲକ୍ଷଣ କହୁ ତୋତେ ଶୁଣ ।
ବିସ୍ତାର ଦିଶେ ଯେବଣ ଯୁବତୀର ପେଟ
କଲ୍ଲରେ ଜିହ୍ୱା ବୁଲାଇ ଚାହେଁ ମଟ ମଟ ।
ଅବଶ୍ୟ ଜାଣ ଶ୍ୱଶୁର ତାର ଯାଏ ମରି
ପ୍ରଥମୁ ଏ କନ୍ୟାକୁ ନ ଥିବ ବିଭାକରି ।
ଯେବଣ ଯୁବତୀ ପାଦ ଦିଶେ ଲମ୍ବ ଲମ୍ବ
ସେ ଥିବାଯାକେ ଦରିଦ୍ର ହୁଅଇ କୁଟୁମ୍ବ ।
ଯେବଣ ସ୍ତିରୀର ଡାକ ଶୁଭେ କାକରଡ଼ି
ଚାହିଁଥାଏ କାକ ପ୍ରାୟ ଚକ୍ଷୁ ବେନି ଭେଡ଼ି ।
କାକଙ୍କ ପରାୟ ତନୁ ହୁଏ ଛନ୍ନ ଛନ୍ନ
କାକଙ୍କ ପରାୟ ପୁଣି କରଇ ଗମନ ।
ଏମନ୍ତ ସ୍ତିରୀ ଯେବଣ ଗୃହେ ଜାଣ ଥାଇ
ଅଳପ ଦିନରେ ତାର ଗୃହସ୍ଥ ମରଇ ।
ଆବର ସ୍ତିରୀ ପୁରୁଷ ଗୁଣ କହୁ ତୋତେ
କେଶ ଲୋମ ପିଙ୍ଗଳାଦ୍ୱି ଦିଶେ ଯାର ଗାତ୍ରେ ।
ଦନ୍ତନପନ୍ତି ବିବର୍ଣ୍ଣ ଅଟେ ଯାର ହୃଦ
ଚାଲିଲେଟି ଫୁଟୁଥାଇ ଯେଉଁ ସ୍ତିରୀ ପାଦ ।
ସେ ଯେବେ ଅମର ବର ହୁଅଇଟି ବିଭା
ଅବଶ୍ୟ ଅଳ୍ପଦିନରେ ହୁଅଇ ବିଧବା ।
ଆବର ସ୍ତିରୀର ଗୁଣ କହିବା ହୋ ତୋତେ
ବହୁତ ଲୁଚାଏ କଥା କହୁଥାଇ ନିତ୍ୟେ ।
ଅବିଦ୍ୟା ମାର୍ଗରେ ପଡ଼ି ଆପେ ହୋଏ ସତୀ
ସୁଲଭ ସ୍ତିରୀଙ୍କି ବୋଲେ ତୁମ୍ଭେ ଲୋ ଅସତୀ ।
ଅବରଣ କଥାରେଟି ବଳେ ହୁଏ ସାକ୍ଷୀ
କଳି ନ ଥିଲେ ଲଗାଏ କଳିକଥା ଯୋଖି ।
ଅବୋଲ ବୋଲକୁ ଶୁଣି ନିନ୍ଦେ ବିଧାତାକୁ
ଏମନ୍ତ ସ୍ତିରୀ ଅଟେ ଯେ କଳଙ୍କୀ କୁଳକୁ ।
ଆବର ସ୍ତିରୀର ଗୁଣ କହିବା ହୋ ତୋତେ
ଶାସ୍ତ୍ରକୁ ଚାହିଁଣ ଏହା କହୁଅଛି ଯେତେ ।
କର ଚରଣର ଗଣ୍ଠି ଦିଶେ ଯାର ଉଚ୍ଚ
ଅତିହିଁ ବିରୂପ ହୋଇ ଦିଶେ ପରପଞ୍ଚ ।
ପାଦ ତଳିପା ଦୁଇ ନ ଦିଶେ ସମତୁଲ
ଅଙ୍ଗେ ସାନ ଅଙ୍ଗେ ବଡ଼ ଦିଶେ ଦେହ ଗାଲ ।
କଳତଳକୁ ଚୋବାଇ ବୁଲାଇ ସେ ଜିହ୍ୱା
ଲକ୍ଷେ ହୀରା ଦେଲେ ତାକୁ ନେହିବଟି ବିଭା ।
ଦେହଯାକଟି ଯାହାର ଲୋମ ଲୁଚା ଥାଇ
ନାଭିତଳକୁ ଯା ପେଟ ଦିଶେ ଉଚ୍ଚ ହୋଇ ।
ଥେଣ୍ଟାକାଲ ପ୍ରାୟ ଶୁଣେ ସବୁରି ଯେ କଥା
ଏମନ୍ତ କନ୍ୟାକୁ ବିଭା ନୋହିବ ସର୍ବଥା ।
ଯେବଣ ସ୍ତିରୀଏ ଜାଣ ଅତି ଉଚେ ବଢ଼େ
ଚାଲୁଥାଏ ପାଦ ବେନି ବୁଲିହୋଇ ପଡ଼େ ।
ଆଣ୍ଠୁକୁ ଆଣ୍ଠୁ ବାଜି ଯେ ପଡ଼େ ହୋଇ ଝୁଣ୍ଟି
ଚାହିଁଲେ ଲଲାଟ ଉଚ୍ଚ ଦିଶେ କପାଳଟି ।
ଏମନ୍ତ କନ୍ୟାକୁ ଯେବେ ହୁଅ ଜାଣ ବିଭା
ଅଶୀବର୍ଷ ଆୟୁକାଳ କ୍ଷଣକେ ମରିବା ।
ଆବର କନ୍ୟାର ଗୁଣ କହିବା ହୋ ରାୟେ
ଦେହଯାକ ଦେଖାଯାଏ କଳାକାଠ ପ୍ରାୟେ ।
ବଚନ କହୁଁ ତରାଟେ ଆଖିର ଯେ ଡୋଳା
ତାଳୁ ପୃଷ୍ଠ ଜିହ୍ୱା ପୁଣି ଦିଶେ ଯାର କଳା ।
ଏମନ୍ତ ସ୍ତିରୀକି ବିଭାହୁଏ ଯେଉଁ ଲୋକ
ସେ ସ୍ତିରୀ କ୍ଷୟ କରିବ ଜାଣ ବଂଶଯାକ ।
ଆବର ସ୍ତିରୀର ଗୁଣ କହୁଛୁ ଯା ବୁଝି
କଳାବର୍ଣ୍ଣ ହୋଇ ନିଶ ଦିଶେ ଯାର ରଞ୍ଜି ।
ସେହି ସ୍ତିରୀ ଅଳ୍ପଦିନେ ବିଧବା ହୁଅଇ
ଏକଥାକୁ ନିଶ୍ଚେ ବୁଝି ପୁରାଣେ ଯେ କହି ।
ଯେବଣ ସ୍ତିରୀ କିଞ୍ଚିତ କଥାଟିକୁ ଯାକେ
ତିଆରି କହିଲେ ରୋଷ ବହଇ ଅଳ୍ପକେ ।
ଶୁଅଇ କୁଟୁମ୍ବଯାକେ କଣକାଛେ ରୁଷି
ଛେପ ପକାଇ ଥାଏଟି ଗୃହଯାକେ ବସି ।
ନାସା ସିଙ୍ଘାଣି ପୋଛିଣ ଦେହେ ହୁଏ ବୋଳି
ଆଣ୍ଟେ କହିଲେ ଲୋତକ ନେତ୍ରୁ ଦିଏ ଢାଳି ।
ପରିସ୍ରାକଲେ କେବେହେଁ ପାଣି ନ ଘେନଇଁ
ଅଶଉଚ ହୋଇ ରୋଷଶାଳାରେ ପଶଇ ।
ଏମନ୍ତ ସ୍ତିରୀକି ଜାଣ ବୋଲି ଅଲକ୍ଷଣୀ
ପୁଣି ଅର୍ଜିଲେଟି ସେହୁ ପକ୍ଷେ ଭୁଞ୍ଜେ ପୁଣି ।
ଆବର ଯେଉଁ ସ୍ତିରୀଟି ଗୃହେ ଭୁଞ୍ଜି ବସେ
ମାଇ କୁକ୍କୁଟ ପ୍ରାୟେ ଯେ କରକର ହସେ ।

ଲୋକ ଲଜ୍ଜାଟିକୁ ଏଣେ ଥାଇ ଟିକେ ଡର
ଭଲ କହିଲେଟି ରୁଷିବସେ ସାତଥର ।
ରୁଷି ସାରି ଉଠି ଗୃହରୁ ସେ ବାହାରଇ
ଘରେ ଘରେ ପଶି ଗୃହ ଛିଦ୍ରଯାକ କହି ।
ନଣନ୍ଦ ଶାଶୁ ଶ୍ୱଶୁର ସାନ ଦିଅରଙ୍କୁ
ସକ ସକ କରି କହେ ନିନ୍ଦାକରି ତାଙ୍କୁ ।
ଏମନ୍ତ ସ୍ତିରୀଟି ଜାଣ ଯାହା ଗୃହେ ଥିବ
ଦଶପୁତ୍ର ମାତା ହେଲେ ତ୍ୟାଗ କରିଦେବ ।
ଆବର ସ୍ତିରୀର ଗୁଣ କହିବା ହୋ ରାଜା
କୁଳସ୍ତିରୀ ହୋଇ ପୁଣ ଯାର ନାହିଁ ଲଜ୍ଜା ।
ପଦେ ବୋଇଲେ ଦାଣ୍ଡରେ ଉଠିହୋଏ ଛିଡ଼ା
ସାହସୀ ହୋଇ ନିୟମ କରେ ଘରବୁଢ଼ା ।
ହାଟ ଯେ ବଜାରବୁଲି ଚୋରଣୀ ଯେତେକ
ତାଙ୍କ ଆଗେ କାନ୍ଦି କହି ହୁଏ ସକ ସକ ।
ଏମନ୍ତ ଭାରିଯା ଜାଣ ଯେଉଁ ଘରେ ଥାଇ
ସେ ଗୃହସ୍ଥ ମହତ୍ତ୍ୱ କଡ଼ାକୁ ଯୋଗ୍ୟ ନୋହି ।
ଆବର ସ୍ତିରୀର ଶୁଣି ଗୁଣ ନରନାଥ
ଉଚ୍ଚହୋଇ ବଢ଼ିଯାଇ ଦିଶେ ଯାର ଦନ୍ତ ।
ଦନ୍ତମୂଳେ ଯାହାରଟି ଦନ୍ତ ଥାଇ ଉଠି
ଦିଶୁଥିବ ବାରିହୋଇ ପାଦଶିରା ଗଣ୍ଠି ।
ନୋହିବ ବିଭା ଏମନ୍ତ ସ୍ତିରୀ ହସ୍ତଧରି
ଆବର ସ୍ତିରୀର ଶୁଣ ଗୁଣ ଦଣ୍ଡଧାରୀ ।
ଯେଉଁ ସ୍ତିରୀମୁଖ ବକ୍ରକରି ଚାହୁଁଥାଇ
ଦେହ ଆଉଁସିଲେ ଲାଗେ ଲୌହପ୍ରାୟ ହୋଇ ।
ଗୋଡ଼ଯାକରେଟି ଶିରା ଦିଶେ ସରି ସରି
ଡରାଟି ଚାହିଁଥାଏ ସେ ନେତ୍ରେ ଥିରି ଥିରି ।
ରାଜାଝିଅ ହେଲେ ତାକୁ ନୋହିବଟି ବିଭା
ଶୁଣହେ ଆହୁରି କନ୍ୟା ପ୍ରସଙ୍ଗ କହିବା
ଆବର ଯୁବତୀଙ୍କର ଶୁଣ ଯେ ଲକ୍ଷଣ
ସ୍ୱାମୀ କଥା ଶୁଣି ହୁଏ ପ୍ରଚଣ୍ଡ ଯେ ପୁଣ ।
ପରପାକକୁ ଯେ ଆଶା କରିଥାଏ ନିତି
ସ୍ୱାମୀକି ଲୁଚାଇ ପରେ କରଇ ଯେ ରତି ।
ଆପଣା ପଦାର୍ଥମାନ କରେ ପୁଣି ଚୋରି
ପରଘରେ ରଖେ ତାହା ନେଇ ଗୁପ୍ତକରି ।
ଏମନ୍ତ ସ୍ତିରୀଟି ଜାଣ ଯାହା ଘରେ ଥିବ
ଇନ୍ଦ୍ର ସମ୍ପଦ ହୋଇଲେ ହତଶିରୀ ହେବ ।
ଆବର ଶୁଣ ଯୁବତୀ ଲକ୍ଷଣ ହୋ ରାୟେ
ଗୃହସ୍ଥ କଥା ଶୁଣି ଯେ ବିଷ ପ୍ରାୟ ହୋଏ ।

ଭୁଞ୍ଜି ବସିଲାର ବେଳେ ପରଷେଟି ଭାତ
ପିଙ୍ଗିଲା ପରାଏ କରି ଦେଉଥାଏ ହାତ ।
ତଳରେ ଅବା ପାତ୍ରରେ ପଡୁ ବା ନ ପଡୁ
କଂସାର ଉପରେ ଆଣି ଝାଡୁଥାଏ ଖଡୁ ।
ବିଞ୍ଛିହୋଇଣ ଅନ୍ନ ଯେ ପଡ଼ଇ କେତେହେଁ
ସେ କଥାକୁ କିଛି ତା ନ ଥାଏ ଡ଼ରଭୟେ ।
ଏମନ୍ତ ସ୍ତିରୀଟି ଜାଣ ଯାହା ଘରେ ଥାଇ
କୁଟୁମ୍ବଯାକ ତାହାକୁ ଡରିଥାନ୍ତି ରହି ।
ସେ ସ୍ତିରୀଟି ସଂସାରକୁ ଅଟେ ନିଉଛୁଣୀ
ଆବର ସ୍ତିରୀର ଗୁଣ ଶୁଣ ନୃପମଣି ।
ଯେବଣ ଯୁବତୀ ଘରେ ଲଗାଇଟି କଳି
କୋପରେ ଅନ୍ନବ୍ୟଞ୍ଜନ ଦିଏ ଆଣି ତୋଳି ।
ପଛବେଳକୁ ଯେ କିଛି ନ ଥିଲେ ତିଉଣ
ପିଟେ ଡମ ତମ ହୋଇ ହାଣ୍ଡି ଉପରେଣ ।
ଆପଣାର ଘରକଥା ନ ମଣଇ ସୁଖ
ପରକୁ ହସିଣ କଥା କହେ ଚାହିଁ ମୁଖ ।
କେବେହେଁ ଗୃହସ୍ଥକୁ ନ କରଇ ଭୟ ତ
ବୋଲଇ ସୂକ୍ଷ୍ମ କରି ମୁଁ ନ ଭୁଞ୍ଜିଲି ଭାତ ।
ଏତେ ବୋଲି ସକ ସକ କରୁଥାଇ ଆଖି
ପଡ଼ିଶା ଘରକୁ ଡାକି କରୁଥାଇ ସାକ୍ଷୀ ।
କଥା ପଦକରେ କାନ୍ଦି କରେ ଶୋକ ଗୁରୁ
ରୁଷେ ନିମିଷକେ ଯାଏ ବାହାରି ସେ ଘରୁ ।
ଏ ପ୍ରକାର ସ୍ୱଭାବଟି ଯେମନ୍ତ ସ୍ତିରୀର
ତା ଗୃହସ୍ଥ ଜୀବନଟି କେତେକ ମାତର ।
ଆବର ସ୍ତିରୀର ଗୁଣ କହିବା ରାଜନ
ପିଙ୍ଗଳ ବର୍ଣ୍ଣ ଦିଶଇ ଯାର ଦେହ ବର୍ଣ୍ଣ ।
ଆବର ପିଠି ଯାହାର ଅଳ୍ପ ଦିଶେ ସରୁ
ମରିବ ତାକୁ ବରିଲେ ସପ୍ତ ମଙ୍ଗଳାରୁ ।
ଉତ୍ତମ ସ୍ତିରୀର କଥା କହିବା ହୋ ଶୁଣ
ପୃଥ୍ୱୀର ପ୍ରାୟେ ସହଣି ଦେବ ସଂସାରେଣ ।
ଦୁଃଖ ସୁଖ କଥା ଘେନିଥିବ ସମକରି
ବିଚାର କରୁଥିବ ସେ ଆଗପଛ ଧରି ।
ଦେବ କଥାରେ ଦେବାଟି ପରମ ଦୟାଳୁ
କରୁଥିବ ପତି ସେବା ଉଠି ପ୍ରାତଃକାଳୁ ।
ପରକଥା ମନେ ରଖି ଆନେ ନ କହିବ
ମଧୁର ବଚନ କହି ସକଳେ ତୋଷିବ ।
ସାୟଂକାଳରେ ଯେ ପୁଣି ହୋଇବ ସୁବେଶ
କରୁଥିବ ପତିସେବା ଦେଇ ରତି ରସ ।

ଭୋଜନ କାଳେ ସ୍ୱାମୀକି ହେବ ମାତା ପ୍ରାୟ
ଦ୍ରବ୍ୟ ସଞ୍ଚିବାକୁ ହେବ ବିଷ୍ଣୁଙ୍କ ପରାୟ ।
ଏମନ୍ତ ଯୁବତୀଟିକୁ ବୋଲି ଅନ୍ନପୂର୍ଣ୍ଣା
ଆବର କହିବା ଶୁଣ ସ୍ତିରୀଙ୍କ ବର୍ଣ୍ଣନା ।
ଭୋଜନକୁ ଦ୍ୱିଗୁଣ ଯେ ହୋଏ ଆଗୁସାର
ନିଶ୍ଚଳ କଥାକୁ ହୋନ୍ତି ତିନିଗୁଣ ଧାର ।
ବୁଦ୍ଧିମନ୍ତ କଥାରେ ଯେ ହୋନ୍ତି ଚାରିଗୁଣ
ପ୍ରକାଶନ୍ତି ଅଷ୍ଟଗୁଣେ ତାମସୀ ଲକ୍ଷଣ ।
ରତିକଥାରେ ଥାଆନ୍ତି ଷୋଳଗୁଣେ ସରି
ଭକ୍ତିକଥାରେ ଚବିଶ ଗୁଣେ ଥାନ୍ତି ପୁରି ।
ସାହସ ପଣେ ଛକୋଡ଼ି ଗୁଣେ ଥାନ୍ତି ବଳି
ମାୟା କଥାକେ ସହସ୍ରେ ଗୁଣେ ଯାନ୍ତ ଚଳି ।
କପଟେ ଥାଆନ୍ତେ କୋଡ଼ି ପନ୍ଦର ଯେ ଗୁଣେ
ଏଣୁ ସ୍ତିରୀଙ୍କି ବିଶ୍ୱାସ ନ ଯିବ କେ ଜଣେ ।
କାମଦେବ ପ୍ରାୟ ନିଜ ପତିଘରେ ଥାଉଁ
ପର ପୁରୁଷେ ରଖନ୍ତି ଚିତ୍ତନେଇ ସେହୁ ।
ତହିଁ ଉପଲକ୍ଷେ କହୁଅଛୁଁ ମଧ ଶୁଣ
ବୃହସ୍ପତିଙ୍କଠାରୁ କେ ଶୋଭା ଅଛି ଜାଣ ।
ତାହାଙ୍କର ଭାରିଯା ଯେ ତାର ନାମେ ସତୀ
ଚନ୍ଦ୍ରକୁ ସୁନ୍ଦର ଦେଖି ବଳାଇଲେ ମତି ।
ବୃହସ୍ପତି ପ୍ରାୟ ପୁରୁଷକୁ ତେଜ୍ୟାକରି
ସୁନ୍ଦର ଦେଖି ଚନ୍ଦ୍ରକୁ ମୋହହେଲା ନାରୀ ।
ଏଣୁ ସ୍ତିରୀଙ୍କି ପ୍ରତେ ନ ଯିବ କଦାଚିତେ
ତହିଁର ମାର୍ଗ କହୁଛୁ ଶୁଣ ଶାସ୍ତ୍ରମତେ ।
ଜଳ ଆଣିବା ବେଳରେ କୁମ୍ଭେ ଚିତ୍ତ ଯେହ୍ନେ
ଚାଲନ୍ତି ମଥା ଉପରେ ରଖି ସ୍ତିରୀମାନେ ।
ସେହି ଭାବରେଟି ମନ ପରପୁରୁଷରେ
ଗୃହସ୍ଥ ତେଜି ମରନ୍ତି ରସିକ ଜନରେ ।
ବରଷାକାଳରେ ନଦୀ ବହଇ ଯେମନ୍ତ
ସ୍ତିରୀମାନଙ୍କର ମନ ଅଟଇ ତେମନ୍ତ ।
କବିମାନଙ୍କର ଗର୍ବ ରାଜାଙ୍କର ମନ
ମନ୍ତ୍ରୀମାନଙ୍କର ବୁଦ୍ଧି ଅଟଇ ଯେସନ ।
ସେହି ପ୍ରକାରେ ସ୍ତିରୀଙ୍କ ହୃଦେ ଥାଇ ମାୟା
ଋଷିଏ ମୋହ ହେବେଟି ଦେଖିଯାହା କାୟା ।
ସ୍ତିରୀମାନଙ୍କର କଥା ସକଳେ ଅଜଣା
ଦେବତା ହେଲେ ହେଁ ପଶି ହେବେ ତହିଁ ବଣା ।
ସ୍ତିରୀର ଯେଡ଼େ ସୁନ୍ଦର ସ୍ୱାମୀ ମଧ ଥିବ
କୁଳ ରକ୍ଷକ କୁମର ପଛକେ ହୋଇବ ।
ସୁପଣ୍ଡିତ ପଛେ ଥିବ ସର୍ବଗୁଣେ ବଳି
ଗନ୍ଧର୍ବ ପ୍ରାୟ ହେବ ଯେ ଦିଶୁଥିବ ଝଳି ।
ବଳବନ୍ତ ପଣରେ ଯେ ସିଂହ ପ୍ରାୟ ହେବ
କୁବେରଠାରୁ ଅଧିକ ଧନ ରଖିଥିବ ।
ବଳୀ ବେଣୁ ମାନଧାତା ପ୍ରାୟ ହେବ ଦାନୀ
ପଢ଼ିଥିବ ବେଦବିଦ୍ୟା ଶାସ୍ତ୍ର ଚାରିଖାନି ।
ରାଜଶାଢ଼ୀ ମୁଣ୍ଡେ ବାନ୍ଧି ହୋଇଥିବ ଶ୍ରେଷ୍ଠ
ଯାବତ ଲୋକଙ୍କଠାରେ ବୋଲଇ ଗରିଷ୍ଠ ।
ଏତେ ଗୁଣରେଟି ପତି ଯେ ସ୍ତିରୀର ଥାଇ
ସେ ସ୍ତିରୀ ମନ ଚଞ୍ଚଳ କହୁଁ ନ ସରଇ ।
ସୁରତି ନ କଲେ ନିଶ୍ଚେ ମନ ହେଲେ ପାଞ୍ଚେ
ତାଙ୍କ ମନ ବୁଲେ ସ୍ୱର୍ଗ ପାତାଳେ ଯେ ମଞ୍ଚେ ।
ସୁପଣ୍ଡିତ ପ୍ରାୟ ଭର୍ତ୍ତା ଗୃହେ ଥାଉଁ ଥାଉଁ
ପର ପୁରୁଷରେ ଚିତ୍ତ ଦିଏ ଚାହୁଁ ଚାହୁଁ ।
ଯାହାଙ୍କ ମାନସ ଜାଣ ରସଇ ଯାହାକୁ
ଦେଖିଲା ମାତ୍ରକେ ଚିତ୍ତ ଟଳିପଡ଼େ ତାକୁ ।
କହନ୍ତି ଯେ ବୃହସ୍ପତି ଶୁଣ ନୃପବର
ଏରୂପେ ଅଟଇ ଗୁଣ ସ୍ତ୍ରୀ ପୁରୁଷଙ୍କର ।
ତୁମ୍ଭରି ବାଳକ ଅଟେ ସ୍ୱୟଂ ନାରାୟଣ
ଆମ୍ଭେ କିସ କହିବୁ ସେ ପ୍ରଭୁଙ୍କ ଲକ୍ଷଣ ।
ପ୍ରତ୍ୟକ୍ଷରେ ପତ୍ନୀ ଯାର ଅଟେ ମହାଲକ୍ଷ୍ମୀ
ଲକ୍ଷେ କୋଟି ଲକ୍ଷଣରେ ଅଛନ୍ତି ସେ ଜନ୍ମି
ଖଣ୍ଡିବେ ଯାବତ ରିଷ୍ଟଯାକ ତୋର ବଳେ
ଏରୂପେ କହି ଚଳିଲେ ଗୁରୁ ସ୍ୱର୍ଗ ଆଳେ ।
ଶୁଣିଣ କୃଷ୍ଣବଲ୍ଲଭ ହୋଇଲେ ସନ୍ତୋଷ
ବୃହସ୍ପତି ଯାନ୍ତେ କଲେ ପୁତ୍ରକୁ ଯେ ବେଗ
ସେହି ଦିନ ଶୁଭବେଳେ ଶ୍ରବଣ ଫୋଡ଼ିଲେ
ନବୀନ ସୁବର୍ଣ୍ଣ ନୋଳି ଯୋଡ଼ିଯୋଡ଼ି ଦେଲେ ।
ଶିରେ ପରେ ସୀମନ୍ତିତ ଉଚସରି ମୋତି
କଣ୍ଠରେ ମାଣିକ ହାର ଲମ୍ବେ ପନ୍ତି ପନ୍ତି ।
ହୃଦରେ ରତ୍ନ ପଦକ ଅତି ଶୋଭାବନ
କରରେ ସୁବର୍ଣ୍ଣ ଖଡୁ ମୁଦ୍ରିକା ରତନ ।
କଟିରେ ସୁନା ଶିକୁଳି ଶୋହେ ସରି ସରି
ପାଦରେ ନୂପୁର ରୁଣୁଝୁଣୁ ନାଦକରି ।
ସହସ୍ରେ ଚନ୍ଦ୍ରମା ଜିଣି ନୃସିଂହଙ୍କ କାୟ
ଦିଶନ୍ତି ଯେ ବେନି ମୂର୍ତ୍ତି ଏକ ରୂପ ପ୍ରାୟ ।
ବିଛାଇ ସୁବର୍ଣ୍ଣ ସିଂହାସନେ ଝୀନପାଟ
ଉପରେ ବିରାଜେ ଚନ୍ଦ୍ରାତପ ଝଟ ଝଟ ।

ଦର୍ପଣ ପ୍ରତିମା ଚାରି ପାଖେ ଯୋଡ଼ି ଯୋଡ଼ି
ଅଛନ୍ତି ପୋଇଲୀ ପରିବାରୀ ପାଶେ ବେଢ଼ି ।
ପୁତ୍ରକୁ ଦେଖିଣ ମାଏ ହୁଅନ୍ତି ଆନନ୍ଦ
ମୁଖ ବିକାଶଇ ଯେହ୍ନେ ପୂର୍ଣ୍ଣିମାର ଚାନ୍ଦ ।
ରିଷ୍ଟ ଶାନ୍ତିକି ଦିଅନ୍ତି ମାଏ ନିତ୍ୟ ଦାନ
ବୋହିଲେ ଯେ ନ ସରଇ ଭଣ୍ଡାରର ଧନ ।
ଏମନ୍ତ କହୁଁ କହୁଁ ଯେ ମାସେକ ହୋଇଲା
ବରଷ ବୃଦ୍ଧିତ କଥା ଶୁଣ ଏବେ ଭଲା ।
ଶ୍ରୀ ନୃସିଂହ ଶେଷ ସ୍ୱାମୀ ସର୍ବ ମନ ମୋହି
ଲୋକେ ଜାଣିବାକୁ ଛନ୍ତି ବାଳତନୁ ବହି ।
ଝୁଲିଲେ ଷଡ଼ମାସରେ ବସି ଆଣ୍ଠୁମାଡ଼ି
ଅଷ୍ଟମାସରେ ବସିଲେ ସେ ଯେ ଚକାମାଡ଼ି ।
ଉଠିଲେକ ଦଶମାସ ଧରି କାନ୍ଥବାଡ଼
ଦ୍ୱାଦଶ ମାସେ ଚାଲନ୍ତି ଟେକି ଟେକି ଗୋଡ଼ ।
କହୁଁ କହୁଁ ବଇଶାଖ ମାସ ହୋନ୍ତେ ଆସି
ବନ୍ଦାଇଲେ ସ୍ୱନକ୍ଷତ୍ର ଶୁକ୍ଳ ଚତୁର୍ଦ୍ଦଶୀ ।
ନବ ନବ ଅଳଙ୍କାର ନବ ଝୀନବାସ
ବାନ୍ଧିଲେ ତ୍ରିମୁଣ୍ଡୀ ଗଭା ନାନାଜାତି ପୁଷ୍ପ ।
ମିଶାଇଣ ଚତୁଃସମ ଭାଲେ ଲେପି ଦେଲେ
ସୁଗନ୍ଧ କସ୍ତୁରୀ ଚିତା କପାଳରେ ଦେଲେ ।
ଛଡ଼ାଇ କୁଙ୍କୁମ ଦେଲେ ଚତୁଃସମ ବୋଳି
ନୂଆ ନୂଆ ଅଳଙ୍କାର ଦିଶେ ଦେହ ଝଳି ।
ଅନେକ ବର୍ଣ୍ଣେ ସୁବେଶ କଲେ ପୁତ୍ର ବେନି
ବନ୍ଦାନ୍ତି ଯୁବତୀମାନେ କରେ ଅର୍ଘ୍ୟ ଘେନି ।
ପଡ଼ିଲାକ ହୁଳହୁଳି ବାଜେ ଶଙ୍ଖ ନାଦ
ମହୁରୀ ବୀଣା କାହାଳୀ ଭେରୀ ନାନା ବାଦ୍ୟ ।
ପିଢ଼ାରେ ବହୁ ଉତ୍ସବ କରି ବସାଇଲେ
ବାଳାଦି ଉପନ ବାଢ଼ି ଅଭିଷେକକଲେ ।
ବସିଲେକ ମୋକ୍ଷଗତି ସଂସାରର ଜନ
ଇନ୍ଦ୍ର ସହିତରେ ଚାହିଁଛନ୍ତି ଭଗବାନ ।
ସଂସାର ଧାରଣା ପ୍ରଭୁ ନକ୍ଷତ୍ରାଭିଷେକ
ଦେଖନ୍ତି ରହସ୍ୟେ ରହି ତିନିପୁର ଲୋକ ।
ନୃସିଂହ ଉତ୍ସବେ ବାଣୀ ଶୁଭେ ଜୟ ଜୟ
ନଗରଯାକ ପିଚିକା ବାସିଜଳମୟ ।
ଭାଟ ଜୟେବାରଙ୍କର ଡାକ ଘନ ଘନ
ଗନ୍ଧର୍ବେ ଗାବନ୍ତି ଅଙ୍ଗ ଢାଳି ଗୀତମାନ ।
ମାଗଧ ପୁତ୍ରଙ୍କ ମୁଖେ ଯୋଡ଼ି ଶଙ୍ଖମୟେ
ଚମ୍ପକ ବିମାନେ ବିହରନ୍ତି ଶରଧାଏ ।

କରନ୍ତି ଗଣିକା ସ୍ତିରୀମାନେ ନୃତ୍ୟକେଳି
ବିପ୍ରଙ୍କ ବେଦଧ୍ୱନିର ନଗର ଉଚ୍ଛୁଳି ।
ସେବକଙ୍କୁ ଅବକାଶ ନାହିଁ ଯାଉ ଆସ
ଭକ୍ତଙ୍କୁ ନ ଅଣ୍ଟେ ଦିନ ହରିନାମ ଘୋଷ ।
ଏରୂପେ ବଦ୍ରିକାନଗ୍ରେ ଉତ୍ସବ ଅନେକ
ଶ୍ରୀ ନୃସିଂହ ଶେଷଦେବ ପୂଜା ଅଭିଷେକ ।
ଶ୍ରୀ ନୃସିଂହ ବାଳଲୀଳା ଯେଉଁ କର୍ମମାନ
ଦେଖିବାକୁ ମାନବ କି ହୋଇବ ଭାଜନ ।
ନୃସିଂହ ପୁରାଣ ଅତି ପବିତ୍ର ଏ ବାଣୀ
କହିଲେ ସଂସାର ଜନ ହିତେ ଗୋସାମଣି ।
ଏ ପୁରାଣ ମହିମାଟି ଅଟଇ ଏମନ୍ତ
ଶୁଣିଲେ ଅପୁତ୍ରିକଙ୍କର ହେବ ପୁତ୍ର ଜାତ ।
ସଂକଳ୍ପ କରି ଯେ ଏହା ସୁଚିତ୍ତେ ଶୁଣିବ
ଅବଶ୍ୟ ସମ୍ପଦ ଧନ ଜନ ତାର ହେବ ।
ନୋହିବେ ଏ ଗ୍ରନ୍ଥ ନିନ୍ଦାକରେ ଯେହୁ ଶୁର୍ଣି
ଶତେଜନ୍ମ ଯାଏ ସେହୁ ଅନ୍ଧ ହୁଏ ପୁଣି ।
ଏଥକୁ ଦେଇପାରିବେ ଯେବେ ଅନ୍ନଦାନ
ତେବେ ସେହି ଅନ୍ଧ ଦୋଷୁଁ ତରିବ ସେ ଜନ
ବ୍ରାହ୍ମକୁ ନିନ୍ଦାକଲେ ହୁଏ ଅଳ୍ପାୟୁଷ
ବେଗେ ଜନ୍ମି ମରି ଲଭନ୍ତି ସେ କୋଟି ଦୋଷ ।
ଏଥକୁ ଯେ ପ୍ରାୟଶ୍ଚିତ୍ତ ପୂର୍ଣ୍ଣଦାନ ଦେବ
ତେବେ ସେହି ଅଳ୍ପାୟୁଷ ଦୋଷରୁ ତରିବ ।
ଦାତା ଦେଲା ବେଳେ ଯେହୁ ବାରଣଟି କରେ
ଶତେଥର ଜଡ଼ ହୋଇ ଜନ୍ମଇ ସଂସାରେ ।
ଏଥକୁ ଯେ ପ୍ରାୟଶ୍ଚିତ୍ତ ଶୁଣ ମନଦେଇ
ଜିହ୍ୱାକାଟି ପୋଡ଼ିଦେଲେ ଦୋଷମାନ ଯାଇ ।
ପରବିତ୍ତ ଚୋରିକରନ୍ତିଟି ଯେଉଁ ନର
ଦରିଦ୍ର ହୋଇ ଜନ୍ମଇ ସେହୁ ଶତେବାର ।
ଏଥକୁ ଯେ ପ୍ରାୟଶ୍ଚିତ୍ତ ରୋପି ଚୂତବନ
ତ୍ରିପଥ ବାଟରେ ଦେବ ଗ୍ରୀଷ୍ମେ ପଣାଦାନ ।
ସାଧୁକୁ ନିନ୍ଦା କଲେଟି ହୁଏ ମହାକଷ୍ଟୀ
ଏଥକୁ ବିପୁଳ ଘରୁ ବ୍ରାହ୍ମଣେ ଦେବଟି ।
ତହିଁକି ନ ପାରିଲେଟି ଦେବ ତୁଳାଦାନ
ତୁଳାଦାନ ନ ଦେଲେ ଭଜିବ ଭଗବାନ ।
ତେବେ ଯେ ସାଧୁନିନ୍ଦାରୁ ତରିବ ସେ ନର
ବୈକୁଣ୍ଠେ ରଖିବେ ତାକୁ ନେଇ ଚକ୍ରଧର ।
ପୁରାଣ ଗ୍ରନ୍ଥ ଶୁଣି ଯେ ନ ଦିଅନ୍ତି ଦାନ
ଦ୍ୱାଦଶ ଜନମ ଯାଏ ବଧୀର ସେ ଜନ ।

ନୋହିଲେ ଏ ଦୋଷକୁ ଯେ ଭୂମିଦାନ ଦେବ
ଶ୍ରୀଗଙ୍ଗା ସ୍ନାହାନକରି ବିଷ୍ଣୁଙ୍କୁ ଭଜିବ ।
ତେବେ ଏ ଦୋଷ ସଂସାରୁ ହେବ ସେହୁ ପାର
ପୁରାଣର କଥା ଏହି ଅଟେ ନିରାଧାର ।
ନ ଜାଣି ଯେବଣ ଜନ ବ୍ରହ୍ମହତ୍ୟା କରେ
ଶତେଜନ୍ମଯାଏ ପୁଣି ପଡ଼େ ସେ ନର୍କରେ
ତହୁଁ ଉତ୍ତାରୁ ସେ ପୁଣି ନର୍କରୁ ବାହାରି
ଶତେଜନ୍ମଯାଏ ସେହି ପାପତନୁ ଧରି ।
ଏଥକୁ ସେ ପ୍ରାଣ ରଖି ଘୋର ତପ କଲେ
ତେବେ ସେହି ବ୍ରହ୍ମହତ୍ୟା ଦୋଷୁ ତରେ ଭଲେ
ସ୍ତିରୀହତ୍ୟା କରଇ ଯେ ଚତୁର୍ଯୁଗ ଯାଏ
ରଉରବ ନରକରେ ପଡ଼େ ତାର କାୟେ ।
ତଦନ୍ତେ ପୁଣ ସେ ନର ନପୁଂସକ ହୋଇ
ଚାରିଜନ୍ମ ଯାଏ ସେହି ତନୁ ଥାଏ ବହି ।
ଉଗ୍ରତପ କଲେ ଯେ ଏ ଦୋଷ ନାଶଯାଏ
ନୋହିଲେ ସେହି ଦୋଷଟି ସବୁବେଳେ ଥାଏ ।
ଗୋହତ୍ୟା ପାତକ କଲେ ଯଶ ହୁଏ ନାଶ
ତିନିଯୁଗ ଯାଏ ନର୍କେ ତାର ହୁଏ ବାସ ।
ତଦନ୍ତରେ ଶୁଣ ସେହୁ ହୁଅଇ ଘୁଷୁରି
ଗଜଘଣ୍ଟ ଦାନଦେଲେ ତେବେ ଯାଏ ତରି ।
କାମରେ ଯେ ବଶହୋଇ ହରେ ଗୁରୁପତ୍ନୀ
ସହସ୍ରେ ଜନମ ଯାଏ ଜନ୍ମେ ଶ୍ୱାନଯୋନି ।
ତହିଁ ଉତ୍ତାରୁ ପୁଣି ସେ ହୁଅଇ ଛାଗଳ
ଛାଗଳ ହୋଇ ମାତାକୁ ହରଇ ଚଣ୍ଡାଳ ।
ଏଥକୁ ଲକ୍ଷେକ ଧେନୁ ଦାନ ଯେବେ ଦେବ
ତେବେ ସେହି ପାପରୁଟି ସଂସାରୁ ତରିବ ।
ବିଶୁଦ୍ଧ କୁଳରେ ଜନ୍ମି ଭକ୍ଷେ ଯେ ମଦିରା
ଶତେଜନ୍ମ ଯାଏ ସେହୁ ପିଏ ନର୍କଧାରା ।
ଅନ୍ତେ ପୁଣି ଅଛବର ହୁଏ ସେହୁ ଜାତ
ଯେତେ ଅର୍ଜିଲେ କନ୍ଧରୁ ଶିରୀ ହୁଏ ହତ ।
ଅଗ୍ନିରେ ଶିର ଯଦ୍ୟପି ପକାଇବ କାଟି
ତେବେ ସେ ପାତକ ତାର ଦେହୁଁ ଯିବ ତୁଟି
ପର ଦାରା ହରନ୍ତିଟି ଯେବଣ ଚଣ୍ଡାଳ
ବିଟପୀ ସ୍ତିରୀ ଗର୍ଭେ ସେ ଜନ୍ମେ ଶତବାର ।
ଏଥକୁ ସେ ତୀର୍ଥବାସ କରିବ ପ୍ରାଶ୍ଚିତ୍ତ
ନୋହିଲେ ପଶୁଜନ୍ମକୁ ଲଭିବ ନିୟତ ।
ଗୁରୁନିନ୍ଦା କଲେ ମହାବାତୁଳ ସେ ହୁଏ
ଅଜ୍ଞାନ ହୋଇ ବୁଲଇ ବାରଜନ ଯାଏ ।
ଲେଉଟି ଗୁରୁମୁଖରୁ ଶୁଣିଲେଟି ମନ୍ତ୍ର
ତେବେ ସେ ତାହାର ଦେହ ହୁଅଇ ପବିତ୍ର ।
ଗୁରୁଙ୍କର ଦକ୍ଷିଣା ନ ଦ୍ୟନ୍ତି ଯେତେ ପ୍ରାଣୀ
ସହସ୍ର ଜନମ ଯାଏ ସର୍ପ ହୁନ୍ତି ପୁଣି ।
ଏଥକୁ ପ୍ରାୟଶ୍ଚିତ୍ତ ଯେ ପଣ୍ଡିତେ କହିଲେ
ଆପଣାର ମାଂସ କାଟି ପୃଥ୍ୱୀଦାନ ଦେଲେ ।
ତେବେ କ୍ଷୟ ଯାଇ ଗୁରୁ ଅପରାଧ ଦୋଷ
ନୋହିଲେ ଯେ ପଶୁଯୋନି ଲଭଇ ଅଶେଷ ।
ବିଷ୍ଣୁଙ୍କୁ ନିନ୍ଦା କଲେଟି ହୁଏ ମହାପାପୀ
ଅବଶ୍ୟ ପ୍ରମାଦ ତାକୁ ପଡ଼ଇ ଅଦ୍ୟାପି ।
ଦ୍ୱାଦଶ ଜନ୍ମ ଯାଏ ଯେ ହୁଏ ବ୍ୟାଧିମନ୍ତ
ବିପୁଳ ଦାନକଲେ ସେ ହୁଅଇ ମୁକତ ।
ଈଶ୍ୱରଙ୍କୁ ନିନ୍ଦାକଲେ ହୁଅଇ ଅଗତି
ଶତେଜନ୍ମ ଯାଏ ସେହୁ ନ ଦେଖେ ସନ୍ତତି ।
ଏଥକୁ ଯେ ପ୍ରାୟଶ୍ଚିତ୍ତ ଦେବ ହୋମଦାନ
ନୋହିଲେ କରିବ ଶିବଆଳେ ଗୋଦୋହନ
ଅଗାଧ ସମୁଦ୍ର ତୁଲ୍ୟ ଏହି ମହାଗ୍ରନ୍ଥ
ତାହା ଲେଖିବାକୁ କିଏ ଅଟଇ ସମର୍ଥ ।
ଗଙ୍ଗା ବୋଲି ଗଣିବାକୁ ଶକ୍ତି ଅଛି କାର
ଶ୍ରୀନୃସିଂହ ପୁରାଣ ଯେ ଅତି ଅଗୋଚର ।
ଶ୍ରୀ ଶାରଳା ଦେବୀଙ୍କର ଆଜ୍ଞା ପରମାଣେ
ବିପ୍ର ପୀତାମ୍ବର ଦାଶ ପୁରାଣ ବଖାଣେ ।

❋ ❋ ❋

## ଶେଷ ନୃସିଂହଙ୍କର ବାଳଲୀଳା

ଏଥୁ ଉତ୍ତାରେ ଯେ ବାଣୀ ନାରଦ ହେ ଶୁଣ
ଖେଳନ୍ତି ଦିନକୁଦିନ ହରି ଦାଣ୍ଡରେଣ ।
ମାଏ ନ ଜାଣନ୍ତୁ ଘରୁ ଯାନ୍ତି ଭାବଗ୍ରାହୀ
ସଙ୍ଗତରେ ଶେଷଦେବ ଅଛନ୍ତି ଗୋଡ଼ାଇ ।
ଘରୁ ବାହାରି ମିଳନ୍ତି ଦାଣ୍ଡେ ବେନି ବସ୍ନେ
ନଗରର ପୋଏ ଧାଇଁଛନ୍ତି ପ୍ରଭୁ ପଛେ ।
ଶ୍ରୀହରି ମହିମା ବାଳଲୀଳା ଭାବ ବୁଝ
ଖେଳନ୍ତି ପିଲାଙ୍କ ଆଗେ ଧାଇଁ ଚତୁର୍ଭୁଜ ।
ନାଚନ୍ତି ଗୋରୁଙ୍କ ଶିଙ୍ଗ ଧରି ଚକ୍ରପାଣି
ସର୍ପ ଦେଖିଲେ ଭରନ୍ତି ତୁଣ୍ଡେ ହସ୍ତ ଆଣି ।
କଣ୍ଟା ଉପରେ ପଡ଼ିଣ ଗଡ଼ି ଗଡ଼ି ଯାନ୍ତି
ଧରି ବାଛୁରୀମାନଙ୍କ ଲାଙ୍ଗୁଳ ଝିଙ୍କନ୍ତି ।

ବୁଲନ୍ତି ଅଗ୍ନିର ଚାରିପାଶେ ଡେଇଁ ଡେଇଁ
ଜଳକୁଣ୍ଡ ମଧ୍ୟେ ପଡ଼ିଯାନ୍ତି ପେଟିଆଇ ।
ମାର୍ଜାରୀମାନଙ୍କ କର୍ଣ୍ଣ ଧରନ୍ତି ହେ ଟେକି
କାହା ଘରେ ପଶି କେଶ ଦିଅନ୍ତି ଯେ ଝିଙ୍କି ।
କେବଣ ବିପ୍ରର ଘରେ ଲୁଚି ପଡ଼ିଯାନ୍ତି
କାହାର ପୋଥି ପଞ୍ଜିକା ଧରି ଚିରିଦ୍ୟନ୍ତି ।
କାହା ଭାଡ଼ିପଟା ଉପରକୁ ଯାନ୍ତି ଚଢ଼ି
ଦିଅନ୍ତି ଥୋଇବା ଦ୍ରବ୍ୟଯାକ ତଳେ ଇଡ଼ି ।
କାହାର ପାଟପଡନୀ ଦେଖି ଦ୍ୟନ୍ତି ଚିରି
ଛେଦନ୍ତି କାହାର ଜଳଭାଣ୍ଡ କରେ ଧରି ।
ଦିଅନ୍ତି କାହାର ଗୁଡ଼ହାଣ୍ଡି ପଣା ଗୋଳି
ପିଅରେ ବାଳକେ ବୋଲି ଦ୍ୟନ୍ତି ତଳେ ଢାଳି ।
ସ୍ତିରୀଏ ତାହା ଦେଖିଣ ଧରି ଛାଟଖଣ୍ଡେ
ଗୋଡ଼ାନ୍ତେ ପକାନ୍ତି ବେନିଭାଇଦାଣ୍ଡେ ଦାଣ୍ଡେ ।
ଲେଉଟି ବୁଲି ପଶନ୍ତି କାହାରି ଅଗଣା
ଆଗରେ ପଡ଼ିଲେ ଚିରିଦିଅନ୍ତି ମଣିଶା ।
କେବଣ ବିପ୍ରଙ୍କୁ ଘରୁ ଶ୍ରୁବ ଶ୍ରୁଚ ଆଣି
ଝିଙ୍କନ୍ତି ଶକଟ ଅଖ କରି ଦାଣ୍ଡେ ପୁଣି ।
କାହା ଘର ପିଢ଼ା ଉପରକୁ ଚଢ଼ିଯାନ୍ତି
କଣାକରି ପାଣି ନେଇ ଚାଳରେ ଇଡ଼ନ୍ତି ।
ବାଳକ ବୋଲି ହସନ୍ତି ଉଚ୍ଚେ ଡାକଦେଇ
ଲୁଚି ଲୁଚି ପଳାନ୍ତି ତ ସ୍ତିରୀଙ୍କି ଯେ କହି ।
କାହାର ଘରେ ଯାଇଣ ଖରାବେଳେ ପଶି
ନିଦ୍ରାଯିବା ଲୋକ ନିଶ ଝିଙ୍କନ୍ତି ଯେ ହସି ।
ଭାଙ୍ଗନ୍ତି କାହାର ଘରେ ପଶି କାନ୍ଥବାଡ଼
ଏରୂପେ ବାଳକମତି ହୋଇ ଯୋଗାରୂଢ଼ ।
ସଂସାରରେ ପିଲାମତି ହୋଇ ଭାବଗ୍ରାହୀ
ଲୋକଙ୍କୁ ମୋହୁ ଅଛନ୍ତି ବାଲ୍ୟ ରୂପ ବହି ।
ବଦରିକା ଯୁବତୀଏ ହରିଭାବ ଦେଖି
କୁଣ୍ଢାଇ ଚାଲନ୍ତି କାଖେ ଧରି ସର୍ବ ସଖି ।
ଲୋଟଣିପାରା ପରାୟେ କାଖେ ହୋନ୍ତି ମୋଡ଼ି
ଶ୍ରଦ୍ଧାରେ ଧରନ୍ତି ଯୁବତୀଏ ତଡ଼ବଡ଼ି ।
ଆବର ଯେ ଚଉଷଠି ସସ୍ର ଯୁବା କନ୍ୟା
ଅଷ୍ଟସଖୀଙ୍କର ମୂଳେ ଯେତେ ବାରଙ୍ଗନା ।
ନୃସିଂହ ବେନି ଭାଇଙ୍କି କାଖେ କୋଳକରି
ଭଗବତୀ ପାଶେ ଯାଇଁ ମିଳି ସର୍ବନାରୀ ।
ବୋଲନ୍ତି ମାଏ ଆମ୍ଭେ ନ ପାରୁ ଘରେ ରହି
ବଡ଼ ବିଟାଳ ହେଲେ ଏ ତୁମ୍ଭ ପୁତ୍ର ଦୁଇ ।

ଚିରନ୍ତି ଏ ଘରେ ଘରେ ପଶି ପୋଥିପାଞ୍ଜି
ଥାଉ ବାପ ବୋଇଲେ ଏ ଯାନ୍ତି ବାଟ ଭାଜି ।
ଗୋଡ଼ାଇଲେ ପଳାନ୍ତି ଉଠନ୍ତି ଖଣ୍ଡେ ଦୂରେ
ଗୋଡ଼ାଇଲେ ଖତଉପେ ହୁଅନ୍ତି ମୁଖରେ ।
ଲାଜେ ନ କାନ୍ଦି କହୁଛୁ ମାତା ତୁମ୍ଭ ଆଗେ
ମେଲାଣି କଲେ ଘରକୁ ଯାନ୍ତୁ ଆମ୍ଭେ ବେଗେ ।
ଏରୂପେ କହି ରହନ୍ତେ ସେହୁ ହୋଇ ତୁନି
ଆଉ ଜଣେ ବଳେ ପେଲି କହେ କଥା ଘେନି
କୋଇଲା କହିବି ତୁମ୍ଭ ଆଗେ କିସ ମାଏ
କେଡ଼େ ଦୁର୍ଦ୍ଦଣ୍ଡ ହେଲେ ତୁମ୍ଭ ବେନି ପୋଏ ।
କାଲିର କଥା କହୁଛି ଆଗ ଶୁଣ ତୁହି
ଘରକୁ ଆମ୍ଭର ବୁଲି ଗଲେ ବେନି ଭାଇ ।
ସ୍ୱାମୀ ଶୋଇବା ସ୍ଥାନକୁ ବୋଲି ଚାଲିଗଲେ
ନିଦ୍ରା ଯାଇଛନ୍ତି ନିଶ ଧରିଣ ଝିଙ୍କିଲେ ।
ରେରେ କାର ବୋଲନ୍ତେ ସେ ପଳାଇଲେ ଘରୁ
ପିଢ଼ା କଣାକରି ପାଣି ଇଡ଼ିଲେ ଉପରୁ ।
ତାହା ଶୁଣି ଆଉ ଜଣେ କହିଲା ବାହୁଡ଼ି
ବୋଲେ ମାତା ଆମ୍ଭେ ଯାଉଅଛୁ ଘର ଛାଡ଼ି ।
କିସ କହିବି ତୁମ୍ଭର ପୋଏ ବିଛୁଆତି
ଦାଣ୍ଡର ଖପରା ଆଣି ଘରେ ଥୋଇଯାନ୍ତି ।
ବୋଧିଲେ ସେ ନ ବୁଝନ୍ତି ମାରି କର ତାଳି
ସାତ ପାଞ୍ଚ ପିଲା ଧରି ଦ୍ୟନ୍ତି ହୁଳହୁଳି ।
ଯାଅରେ ବାପା ବୋଇଲେ ଘରେ ଦ୍ୟନ୍ତି ମୂତି
ଆଛା କିସ କରିବୁଁ ତ ଗଲା ଆମ୍ଭ ଜାତି ।
ଶୁଣି ଭଗବତୀ ରାଣୀ ହେଲେ ହସ ହସ
ବୋଇଲେ ବାଳୁତଙ୍କର ନ ଘେନଲୋ ଦୋଷ ।
ମୋର ହେଲେ ତୁମ୍ଭର କି ନୁହନ୍ତି ସେ ବଳା
ଏଥକୁ ଶୋଚନା ଗୋ ନ କର ପ୍ରେମଶୀଳା ।
ପଣ୍ଡିତ ଲୋକଙ୍କ କ୍ରୋଧ କ୍ଷଣେ ଶାନ୍ତି ହୁଏ
ମୂର୍ଖଲୋକ କ୍ରୋଧ ଅହୋରାତ୍ର ହେଉଥାଏ ।
ପାପୀଲୋକଙ୍କର କ୍ରୋଧ ମଲେ ଏକା ଯାଇ
ମୁଁ କିସ କହିବି ତୁମ୍ଭ ଆଗେ ବଳିଆଇ ।
ସତେକ ବୋଲିଣ ମାଏ ଆରେ ପୁତ୍ର ବୋଲି
ଛାଟ ଧରିଣ ଉଞ୍ଚାନ୍ତି ଧୀରେ ଧୀରେ ଚାଲି ।
ମାତାଙ୍କ କରେ ଛାଟ ଦେଖି ବେନି ଭାଇ
ଗେଲେଗେଲେ ପଳାନ୍ତି ଯେ ଦାଣ୍ଡେ ହ୍ୱନ୍ତିଯାଇ ।
ଧାଇଁଣ ଧରିଣ ଥୋକେ ସ୍ତିରୀ କାଖକରି ।
ମୁଖରେ ଚୁମ୍ବନ ଦେଇ ଆଣି କୋଳକର ।

ବୋଲନ୍ତି ମାତାଙ୍କୁ ଏବେ ପୁତ୍ରଙ୍କୁ ନମାର
ତାଙ୍କ ଭୟ ଦେଖି ଆମ୍ଭେ ହେଉଛୁ କାତର ।
ବାଳୁତ ଭାବରୁ ପୋଏ ମାତି ସିନା ଗଲେ
ସର୍ବଦା କି ବାଳମତି ଥିବ ବଡ଼ ହେଲେ ।
ଶୁଣି ଭଗବତୀ ମାଏ ହୋଇଲେ ସନ୍ତୋଷ
ଯୁବତୀମାନଙ୍କୁ ଆଣି ବସାଇଲେ ପାଶ ।
ବୋଇଲେ ଏଥକୁ ମାଏ ଶୋଚନା ନ କର
ପୁତ୍ରକୁ କଲ୍ୟାଣ କରି ଯାଅ ଏବେ ପୁର ।
ଶୁଣିଣ ଯୁବତୀଗଣ ହସ ହସ ହେଲେ ।
ନୃସିଂହ ଶେଷଦେବଙ୍କ ମୁଖେ ଚୁମ୍ବଦେଲେ
ସମସ୍ତେ ବିଷ୍ଣୁମାୟାରେ ପଡ଼ିହେଲେ ମୋହି
ନରଲୋକ ପ୍ରାୟେ ମଣିଛନ୍ତି ଭାବଗ୍ରାହୀ ।
ପୁତ୍ରଙ୍କୁ ଘେନି ମନ୍ଦିରେ ମାଏ ବିଜେକଲେ
ସୁବେଶ କରିଣ ଆପେ ଭୁଞ୍ଜାଇ ବସିଲେ ।
ପୁରି ନାଡ଼ି ମନୋହର ଛେନା ଦୁଧସର
ଭୁଞ୍ଜନ୍ତି ଯେ ଷଡ଼ରସେ ନାନା ଉପହାର ।
ଡାଳିମ୍ବ କର୍ପୂର ଝିଲିଖଣ୍ଡ ପୁଳିରସ
ଭୁଞ୍ଜୁ ଭୁଞ୍ଜୁ ଯୋଗନିଦ୍ରା ଗଲେ ଜଗଦୀଶ ।
ପୁତ୍ରଙ୍କ ନିଦ୍ରା ଦେଖିଣ ଭଗବତୀ ରାଣୀ
ପଲ୍ୟଙ୍କରେ ଶୁଆଇଲେ ନେଇ ଚକ୍ରପାଣି ।
ନିଦ୍ରାଭୋଗ ସାରି ପୁଣି ଉଠି ବେନିଭାଇ
ପିତାଙ୍କ ସଙ୍ଗେଖେଳିଲେ ଦାଣ୍ଡେ ଦାଣ୍ଡେ ଯାଇ ।
ଏମନ୍ତ ସେ ଭଗବତୀ କୋଳେ ଭଗବାନ
ବଢ଼ନ୍ତି ବଦ୍ରିକା ଆଶ୍ରମରେ ଦିନୁଦିନ ।
ଏମନ୍ତେ ଷଡ଼ବରଷ ଗଲା ଯହୁଁ ପୁରି
ଷଷ୍ଠୀଓଷା ପୂଜିବାକୁ ସଜହେଲେ ନାରୀ ।
ସିଂହମାସେ ଭାଦ୍ର ଶୁକ୍ଳପକ୍ଷ ଷଷ୍ଠୀଦିନ
ଓଷା ପୂଜିବାକୁ ମାଏ କଲେକ ଗମନ ।
ଷଷ୍ଠୀପୂଜାରେ ଯେତେକ ଦ୍ରବ୍ୟ ଲୋଡ଼ା ହୋଇ
ବିପ୍ରଙ୍କ ମୁଖୁଁ ସକଳ ଶୁଣି ମହାଦେଈ ।
ସୁବେଶ ବେଶ ହୋଇଣ ପିନ୍ଧିଲେ ବସନ
ପୃଥୁଳ ମୁଖ ଯେ ସେହି ଦିଶେ ଶୋଭାବନ ।
ସୁବର୍ଣ୍ଣ ଖୁଡ଼ି ଦିଶଇ ବେନି ହସ୍ତେ ଶୋଭା
ହଂସଗମନ ପରାୟେ ଦିଶେ ଚାଲି ପ୍ରଭା ।
ବାହୁରେ ଯେ ତାଡ଼ ସୂତା କଣ୍ଠେ ରତ୍ନମାଳି
ହୃଦୟରେ ହାର ଶୋଭା କର୍ଣ୍ଣେ କାପନୋଳି ।
ନାସାପୁଡ଼ାରେ ବସଣୀ ଦିଶେ ବିତପନ
ନୃସିଂହ ମାତାର ବେଶ କେ କହିବ ଜାଣ ।

ଶିରରେ ସୀମନ୍ତ ଦିଶେ ଅତି ଶୋଭାମୟେ
ଷଷ୍ଠୀ ଓଷା ପୂଜିବାକୁ ସଜହେଲେ ମାଏ ।
ଚୌଷଠି ସହସ୍ରକନ୍ୟା ଅଷ୍ଟସଖୀ ମୂଳେ
ଉପନ ନିର୍ଭାକଲେ ଯେ ଯାହାର ଗୃହଆଳେ ।
ଆବର ଯେତେ ବଦ୍ରିକା ନଗ୍ରେ ଥିଲେ ନାରୀ
ସମସ୍ତ ବସିଲେ ପୂଜାଦ୍ରବ୍ୟ ନିର୍ଭାକରି ।
ଏଥିଉତ୍ତାରେ ନୃସିଂହ ଶେଷଙ୍କର ମାତା
ପିଠାଭାଜି ବସିଲେକ ମନୁ ଛାଡ଼ି ଚିନ୍ତା ।
ଏ ଉତ୍ତାରୁ ଶେଷ ଯେ ନୃସିଂହ ବେନିଭାଇ
ନାଚି ନାଚି ମାତା ପାଶେ ପ୍ରବେଶିଲେ ଯାଇ ।
ମାତାର ପାଶେ ପଶିଲେ ଯାଇ ବେନି ବାଳେ
କାନ୍ଦନ୍ତି ପଣତ ଧରି ଝିଙ୍କି କୁତୂହାଳେ ।
ବୋଧନ୍ତି ମାଏ ପୁତ୍ରକୁ ଦେଖିକରି କୋପ
ବୋଲନ୍ତି କ୍ଷଣକେ ଆଉ ଖେଳିଯାଅ ବାପ ।
ପିଠା ଭାଜିସାରି ଧରିବି ମୁଁ ପଛେ କୋଳେ
ମାତାଙ୍କୁ ନ ମାନି କାନ୍ଦନ୍ତି ଯେ ପଡ଼ି ତଳେ ।
ପୁତ୍ରଙ୍କର ଅଳି ମାତ ନ ପାରିଲେ ସହି
ପିଠା କରିବାର ଛାଡ଼ିଦେଲେ କ୍ଷୀର ନେଇ ।
ଶ୍ରୀମୁଖରେ ସ୍ତନ ଦେଇ କହନ୍ତି ବଚନ
ବୋଲନ୍ତି ଯାଅଯା ଖେଳ ଏବେ ମୋର ଧନ ।
ଏରୂପେ କହି ବସନ୍ତେ ପୁଣି ପିଠାରାଜି
ଋଷି ବେନିପୋଏ କାନ୍ଦନ୍ତି ଯେ ଆଖିବୁଜି ।
ଭୂମିରେ ପଡ଼ି କାନ୍ଦିଣ ଖଣ୍ଡେ ଦୂର ଗଲେ
ଗମ୍ଭୀରିଘରେ ପଶିଣ ପୁଣି ବିଚାରିଲେ ।
ବୋଇଲେ ପିଠାରେ ଯେବେ ମାତା ମନ ଅଛି
ପେଡ଼ିରୁ କାଢ଼ିବା ଚାଲ ଭଲଲୁଗା ବାଛି ।
ସହସ୍ର ଖଣ୍ଡ କରିଣ ଚିରିଦେବା ତାକୁ
କୌପୁନୀମାରି ଖେଳିବା ଚାଲ ଆରେ ବାବୁ ।
ଏରୂପେ ଲକ୍ଷେ ସେ ପେଡ଼ି କାଢ଼ି ବେନିଭାଇ
ଉତ୍ତମ ବସନମାନ ଚିରି କୋପହୋଇ ।
ଖଣ୍ଡିଏ ଖଣ୍ଡିଏ କରି ସବୁ କୁଢ଼କଲେ
ନିଅରେ ପିଲାଏ ବୋଲି ଦାଣ୍ଡେ ଫିଙ୍ଗି ଦେଲେ ।
ଦେଖି ଭଗବତୀ ଧାଇଁଗଲେ ଛାଟଧରି
ପଳାନ୍ତି ନୃସିଂହ ଶେଷକୁ ଛାଡ଼ିକରି ।
ଧାଇଁ ନ ପାରି ପଡ଼ିଲେ ଶେଷେ ଭୂମିଲୋଟି
ଧଇଲେକ କାଖକରି ମାଏ ପଡ଼ିଉଠି ।
ଦେହକୁ ଆଉଁଷି ମାତା ମୁଖେ ଚୁମ୍ବଦେଲେ
ଆହାମୋରବାପାବୋଲି ମାତାକୋଳକଲେ ।

ବୋଇଲେ ପଡ଼ିଶା ବ୍ରାହ୍ମଣୀକି ଧର ତୁହି
ହରିଙ୍କି ଗୋଡ଼ାଇ ଧରି ମାରିବି ଯେ ମୁହିଁ ।
ଆଣିବାଯାଏ ଶେଷକୁ ଧରି ରଖିଥାଅ
ମହା ଶକ୍ତିଶାଳୀ ଅଟେ ସେ ମୋହର ପୁଅ ।
ବାଳୁତକାଳୁ ଶ୍ରୀହରି ମୋର ବଡ଼ କୋପୀ
ଧରିଲେ ମାଡ଼ମାରିବି ଯାଉଅଛି ଛପି ।
ଏତେ ବୋଲି ଛାଟ ଖୋସିଦେଲେ ପଛଭାଗେ
ମିଳିଲେକ ମାଏ ଯାଇ ନୃସିଂହଙ୍କ ଆଗେ ।
ଧରିବି ବୋଲି ଗୋଡ଼ାନ୍ତେ ମନେ ମନେ ଭାଳି
ପଳାନ୍ତି ନୃସିଂହ ଦାଣ୍ଡେ ଦାଣ୍ଡେ ଖେଳି ଖେଳି
ପ୍ରଭୁଙ୍କ ପଛରେ ଧାଇଁଛନ୍ତି ଭଗବତୀ
ପଡ଼ି ଉଠି ଝୁଣ୍ଟି ଝୁଣ୍ଟି ଧାଇଁ ନ ପାରନ୍ତି ।
ଯେବଣ ପ୍ରଭୁ କମଳାଦେବୀଙ୍କର ସାଇଁ
ପୁତ୍ର ପ୍ରାୟ ମଣି ମାଏ ଯାଉଛନ୍ତି ଧାଇଁ ।
ବିଧିରେ ପୃଥୁଳ ଦେହ ଅଟେ ଭଗବତୀ
ଗୋଡ଼ାଇ ପଡ଼ି ଉଠି ଯେ ଧରି ନ ପାରନ୍ତି ।
କେଶ ଫିଟି ଶରୀରରୁ ବହେ ଶ୍ରମଝାଳ
କବରୀ ଖସି ପଡ଼ଇ ତଳେ ଫୁଲମାଳ ।
ଯାହାର ଆଦି ଅନ୍ତ ନ ପାନ୍ତି ଭାବ ବିହି
ବୁଝିଲେ ତା ଭଗବତୀ ପାଇଦେ ବା କାହିଁ ।
ମାତା ବିକଳ ହୁଅନ୍ତେ ଜାଣି ନାରାୟଣ
ପାଞ୍ଚିଲେ ଚାଲିବା ସ୍ଥିର ହୋଇ ଏବେ ପୁଣ ।
ଆମ୍ଭେ ସତେ ପଳାଇଲେ ମାଏ ଧରିବେକି
ଏତେକ ବୋଲି ଚାଲିଲେ ଢଳି ପାଦ ଟେକି ।
ସ୍ଥିରହୋଇଣ ସେ ପ୍ରଭୁ ଯାନ୍ତେ ଧୀରେ ଧୀରେ
ଧାଇଁ ଧାଇଁ ଭଗବତୀ ଧଇଲେକ କରେ ।
ଦକ୍ଷିଣ କରରେ ଛାଟ ଧଇଲେ ଉଞ୍ଚାଇ
ମନରେ ହସି କାନ୍ଦନ୍ତି ପ୍ରଭୁ ମାୟା ମୋହି ।
ନୃସିଂହଙ୍କର ବିକଳ ଦେଖି ତାଙ୍କ ମାତା
ଛାଟକୁ ତଳେ ପକାଇ କରନ୍ତି ସେ ଚିନ୍ତା ।
ପାଞ୍ଚନ୍ତି ଘରକୁ ନେଇ ବାନ୍ଧିବି ଏହାକୁ
ବସିଣ ବିଷୟାସୁଖେ ରଖିବି ମନକୁ ।
ଏରୂପେ ପାଞ୍ଚି ପୁତ୍ରକୁ ନେଲେ ବଳେ ଧରି
ରଖିଲେ ଗମ୍ଭୀରୀ ଘରେ କବାଟ ଯେ କିଳି ।
ମାତାଙ୍କ ନିରାଣ କଥା ଦେଖି ନାରାୟଣ
କ୍ରୋଧେ କାନ୍ଦନ୍ତି ଗମ୍ଭୀରୀ ଘରେ ଭିତରେଣ ।
କବାଟ ପକାଇ ମାଏ ଆସୁ କଞ୍ଚି ଦେଇ
ଉଠି ଭଗବାନ ଦେଲେ କବାଟକୁ ଫେଇ ।
ଶ୍ରୀକର ପଦ୍ମକୁ ନେଇ ଲଗାନ୍ତେ କବାଟେ
ପ୍ରଭୁଙ୍କ ଆଜ୍ଞାରେ ଫିଟିଗଲା କଞ୍ଚି ହଟ୍ଟେ ।
ଦେଖିକରି ଭଗବତୀ ମନେ ଶଙ୍କା କଲେ
ଲେଉଟି ଘରେ ପୁରାଇ ଖିଡ଼ିକି କିଳିଲେ ।
ପିଠି ଦିଅନ୍ତେ କବାଟ ଗଲା ପୁଣି ଫିଟି
କାନ୍ଦନ୍ତି ମାତାର ପଛେ ଥାଇ ଭୂମି ଲୋଟି ।
ଲେଉଟି ଧଇଲେ ଭଗବତୀ ପୁତ୍ର ଟୋଳି
ଗମ୍ଭୀରିରେ ପୁରାଇଣ ପାଡ଼ିଲେ ଅର୍ଗଳି ।
ଏହିରୂପେ ଜଗି ବସି କିଳନ୍ତେ ଦ୍ୱାରଟି
ବିଷ୍ଣୁ ଆଜ୍ଞାରେ କବାଟ ଗଲା ପୁଣ ଫିଟି ।
ଗମ୍ଭୀରି ଘରୁ ଆସନ୍ତେ ଶ୍ରୀନୃସିଂହ କାନ୍ଦି
ଧଇଲେ ଜନନୀ ପାଦ ଦୁଇହସ୍ତେ ଛନ୍ଦି ।
ମାଏ ଆଉ ପାଦ ଟେକି ନ ପାରିଲେ ଚାଲି
ରହିଗଲା ମାତା ପାଦ ବେନି ଯେ ଅଙ୍ଗୁଳି ।
ବଦରି ଦେଶରେ ଯେତେ ଥିଲେ ସ୍ତିରୀବୃନ୍ଦ
ମାତା ପୁତ୍ର ଭାବ ଦେଖି ହସି ଗଦ ଗଦ ।
ପିରହାସ ପ୍ରାୟ କରି ମେଲନ୍ତି ଯେ ଢଗ
ବୋଲନ୍ତି ସମ୍ଭାଳି ତୁମ୍ଭେ ନ ପାର ନୃସିଂହ ।
କେତେ କଳ୍ପନା ଜାଣନ୍ତି ଏହି ବେନିଭାଇ
ଦେଲେ ନିସ୍ୱଭାବେ ଶୁଭେ ପ୍ରିୟଭାବ ବହି ।
ନାଗରୀସ୍ତିରୀଙ୍କ ତୁଲେ ପଡ଼ିବ ଯେ ବେଳେ
ତାଙ୍କ ମତଗର୍ବ ଭଙ୍ଗ ହେବ ଅବହେଳେ ।
ସ୍ତିରୀଙ୍କର ପରିହାସ ଶୁଣି ଭଗବତୀ
ମନେ ମନେ ଲଜ୍ଜା ପାଇ ଦେଲେ ମଥାପୋତି ।
ବଦ୍ରିକାନଗ୍ରେ ଅଛନ୍ତି ଜାଣ ଯେତେ କନ୍ୟା
ନହୁଲୀ ବୟସୀ ସେହି ସବୁ ବୀରାଙ୍ଗନା ।
କାହାକୁ ବା ପାଞ୍ଚ ଦଶ କାହାକୁ ଷୋଡ଼ଶ
ଏରୂପେ ସେ ସ୍ତିରୀଙ୍କର ଅଟଇ ବୟସ ।
କେ ବାର ବରଷ କେବା ଅଟଇ ଚଉଦ
ଏମନ୍ତେ ଯେ ଚଉଷଠି ସସ୍ର କନ୍ୟାବୃନ୍ଦ ।
ବିପ୍ରଙ୍କ ମନ୍ଦିରେ ଅଛନ୍ତି ଯେ ଅବତରି
ଆଗହୁଁ ଜନ୍ମିଛନ୍ତି ନ ଜନ୍ମୁ ନରହରି ।
ଥିଲେ ସେହି ଆଜିଯାଏ ନୃସିଂହକୁ ଧ୍ୟାୟି
ନୃସିଂହ କରିବେ ରାସ ଯାତ୍ରା ବନେ ଯାଇ ।

❋ ❋ ❋

## ନୃସିଂହଙ୍କର ରଥଯାତ୍ରା

ଏହି ଠାବରୁ ନୃସିଂହ ରାସ ହେବ ଜାତ
ଭଗବତୀ କଥା ଆଗ ଶୁଣିବା ସିଦ୍ଧାନ୍ତ ।

ଚୌଷଠି ସହସ୍ର ଆଦି ଯେତେକ ବନିତା
ହସିଣ କହନ୍ତି ଶୁଣ ନୃସିଂହଙ୍କ ମାତା ।
ଆମ୍ଭେ ତ ହସୁଛୁ ତୋର ପୁତ୍ର ଭାବ ଦେଖି
ତୁମ୍ଭେ ହେଲେ ସମ୍ଭାଳି ନ ପାର ପୁତ୍ର ରଖି ।
ଆସ ଗୋ ଜଣାଗଲାଣି ଯିବା ମାତା ଏବେ
ପୁତ୍ରକୁ ଘେନି ପୂଜିବା ଚାଲ ଷଷ୍ଠୀ ଦେବେ ।
ଶୁଣି ଭଗବତୀ ରାଣୀ ପୁତ୍ରକୁ ଧରନ୍ତେ
ଦେଖିଣ ଶ୍ରୀ ଶଙ୍ଖ ଚକ୍ର ଗଦାପଦ୍ମ ହସ୍ତେ
ପାଞ୍ଚିଲେ ମୋର ପୁତ୍ର ନିଶ୍ଚେ ନାରାୟଣ
ବଞ୍ଚି ରହନ୍ତା କେହ୍ନେ ଏ କର ଲାଗନ୍ତେଣ ।
ମୁଁ ବଡ଼ ପାପୀ ବିଷ୍ଣୁର ମାୟାରେ ଯେ ପଡ଼ି
ନାରାୟଣଙ୍କୁ ରଖି ତ ଥିଲି ଦ୍ୱାର ପାଡ଼ି ।
ସ୍ୱପନେ ଏହି କହିଲେ ପ୍ରଭୁ ମୋତେ ଯାହା
ମୁଁ ଛାର ପାମରୀ ଏବେ ପାଶୋରିଲି ତାହା ।
ପର ପୁରୁଷଙ୍କୁ ମୁହିଁ ପୁତ୍ର ପାୟ ମଣି
ଅନ୍ଧାର ଘରେ ଭରି ଯେ କିଳିଲି କିଳିଣୀ ।
କେଡ଼େ ପୁଣ୍ୟ ପୂର୍ବେ ଅର୍ଜିଥିଲା ଏ କବାଟ
ପଦ୍ମକର ଲାଗି ଫିଟିଗଲା ଗୃହବାଟ ।
ଗୃହଯାକକୁ ଉଜ୍ଜ୍ୱଳ ହେଲା ଦ୍ୱାର ଛାଡ଼ି
ଏହାଙ୍କୁ ମୁଁ ଚିହ୍ନି ନ ପାରିଲି ମୋହେ ପଡ଼ି ।
ଏମନ୍ତ ବୋଲି ପାଞ୍ଚନ୍ତେ ମାଏ ହୃଦଗତେ
ଅନ୍ତର୍ଯ୍ୟାମୀ ପୁରୁଷ ତା ଜାଣିଲେକ ଚିତ୍ତେ ।
ଜନନୀ ଦେବୀଙ୍କି କଲେ ମାୟାରେ ଯେ ମୋହ
ଲାଗନ୍ତେ ସେ ମାୟାଦେବୀ ପୁତ୍ରେବଳେସ୍ନେହ ।
ଧରିଲେ ବାଳକ ବୋଲି କୋଳେ ନେଇକରି
ଧୋଇଲେ ସୁବାସ ଜଳେ ପାଦ ଦୁଇ ଭରି ।
ପୋଛିଲେ ନବୀନ ଝୀନବାସେ ବିଷ୍ଣୁ ଦେହେ
ଏରୂପେ ଲାଗିଲା ଗୋବିନ୍ଦର ମାୟାମୋହେ ।
ତହିଁ ଉତ୍ତାରୁ ଚଳିଲେ ମାଏ ଓଷା କରି
ସଙ୍ଗତେ ଅଛନ୍ତି ବଦରିକା ବିପ୍ରନାରୀ ।
ଚଉଷଠି ସସ୍ରକନ୍ୟା ତାଙ୍କ ସଙ୍ଗେ ଛନ୍ତି
ସକଳ ନିତ୍ୟସ୍ଥଳୀର ବାମା ଯେ ଅଟନ୍ତି ।
ଆସି ବଦରି ଦେଶରେ ଛନ୍ତି ବିଜେକରି
ଦ୍ୱିତୀୟ ନିତ୍ୟସ୍ଥଳୀ ଯେ ଅଟଇ ବଦରି ।
ଶ୍ରୀ ନିତ୍ୟସ୍ଥଳୀ ବ୍ୟବସ୍ଥା ନୃସିଂହ ବ୍ୟତ୍ରକେ
ଆନ କିଏ ସେ ତା ଜାଣିପାରେ ତିନିଲୋକେ
ନିତ୍ୟସ୍ଥଳୀର ମହିମା ଯେତେ କରୁଥିବେ
ନୃସିଂହ ପ୍ରଭୁ କରିବେ ତାହା ଜାଣ ଏବେ ।

ଷଷ୍ଠୀଓଷା ପୂଜିବାକୁ ଗଲେ ଭଗବତୀ
ଚୌଷଠୀ ସହସ୍ର କନ୍ୟା ସଙ୍ଗତେ ଅଛନ୍ତି ।
ନୃସିଂହ ଶେଷକୁ ଧରିଗଲେ ଅଷ୍ଟସଖୀ
ଶରଦ ଚନ୍ଦ୍ରମା ପ୍ରାୟ ନିର୍ମଳ ଯେ ଆଖି ।
ଯେଉଁ ପ୍ରଭୁଙ୍କ ଭେଟ ନ ପାନ୍ତି ଯୋଗୀମାନେ
ତାହାଙ୍କ ପାଖରେ ବସିଛନ୍ତି ସ୍ତିରୀମାନେ ।
ଧନ୍ୟ ସେହୁ ବଦରିକା ଆଶ୍ରମ ନାୟିକା
ନଦୀକି ଯାନ୍ତି ନୃସିଂହ ସଙ୍ଗେ ମାତା ଏକା ।
ହାସ୍ୟୋଲ୍ଲାସ ପରିହାସ କରିଣ ନାଗରୀ
ଶ୍ରୀହରି ରୂପ ଦେଖିଣ କାମେ ହୋନ୍ତି ଘାରି ।
ସେ ନାୟିକାମାନଙ୍କର ଦେଖି ପ୍ରେମଭାବ
ଦିଶନ୍ତି କୋଟି ମଦନ ପ୍ରାୟ ପଦ୍ମନାଭ ।
କେ କାହାକୁ ଭରସି ନ କହେ କଥା କିଛି
ଯେ ଯାହାର କାମ ତାର ଦେହ ଘାରୁଅଛି ।
କେ କାହାକୁ ପଛରୁ ଯେ ଧରିଣ ଚରଣ
ଝିଙ୍କନ୍ତେ ପାଦ ନୂପୁର କରେ ରୁଣଝୁଣ ।
କେ କାହା ବସନ ଧରି ଅଙ୍ଗୁ ଦିଏ ଝିଙ୍କି
ଚାହିଁଇ କେ ବଙ୍କ୍ର କରି ନେତ୍ର ବେନି ଟେକି
କାହାର ଜାନୁ ଉପରେ କେହୁ ଦିଏ ହସ୍ତ
ଗେଲଗେଲ ହୋଇ କେହି କରେ କୋଳାଗ୍ରତ ।
କେ କାହାକୁ ଠାରିକରି ବାକ୍ୟ ପ୍ରକାଶଇ
ବାହାର ହୋଇ କେ ମୁଖେ ଚୁମ୍ବନ ଦିଅଇ ।
କେ କାହାକୁ ଧାଇଁ ଯାଇ କରେ ବିବସନ
କେ ବୋଲଇ ରହ ରହ ଯିବା ଗୋ ବହନ ।
କେ କାହା କନ୍ଧ ଉପରେ ଦେଇ କର ବେନି
କହଇ ଯେ କର୍ଣ୍ଣମୂଳେ ହୋଇ ତୁନି ତୁନି ।
ବେନି କର ଟେକି କେହି ଶିରେ ଲଦେ ନେଇ
କାହାର ଉପରେ କିଏ ପଡ଼େ ପେଟିଆଇ ।
କେହୁ ବୋଲଇ କାହାକୁ ହୁଅ ମୋତେ ବିଭା
ବାନ୍ଧିଲେକ ହସ୍ତଗ୍ରନ୍ଥି ଦିଶିଲାକ ଶୋଭା ।
କେ ବୋଲଇ ହୋଇହୋଇ ଖାଇବାକୁ ଭୋଜି
ନୃସିଂହଙ୍କୁ ପରଶିବ ତାଙ୍କ ମନ ରଞ୍ଜି ।
ଗେଲାଇ ହୋଇଣ କେହି ଚାଲେ ହୋଇ ଛବି
କେ ଚାଲ ବୋଲଇ କେହୁ ବୋଲେ ଯିବି ଯିବି ।
କେ କାହାକୁ ଗୋଡ଼ାଇଣ ଧରେ କରେ ଯାକି
ବିବସନ କରଇ କେ ପୁଂସ ପ୍ରାୟ ଝିଙ୍କି ।
କେ ତାହା ଦେଖିଣ ହାସ୍ୟକରେ ଗୀତ ଗାଇ
ସ୍ତିରୀଙ୍କି ସ୍ତିରୀ ରମିଲେ ସୁଖ ହୁଏ ନାହିଁ ।

ପୁରୁଷ ସଙ୍ଗେ ରମିଲେ ସୁଖ ହୁଏ କାହିଁ
ବିଅର୍ଥେ ମିଳଇ ଆମ୍ଭେ ହୋଇ କାମ ବାଇ ।
ହରିଙ୍କି ଚାଲ ଏକାନ୍ତେ ଏବେ ଘେନିଯିବା
ଆନନ୍ଦବନରେ ପଶି ସୁଖେ ବିଳସିବା ।
ବୁଝିଲେ ବାଳକ ଏଟି ନୁହନ୍ତି ନୃସିଂହ
ଯୁବା ପୁରୁଷର ପ୍ରାୟ ଦିଶୁଛି ଶ୍ରୀଅଙ୍ଗ ।
ଚୌଷଠି ସହସ୍ର କନ୍ୟା ସର୍ବେ ଆମ୍ଭେ ସରି
ବାଳୁତ ପରାୟେ ସିନା ଥିଲେ ତନୁ ଧରି ।
ହରିଙ୍କୁ ଦେଖି ଟେକିଲା ଏବେ କାମପ୍ରଭା
ଆମ୍ଭ ରୂପକୁ ଦିଶନ୍ତି ପ୍ରଭୁ ବଳି ଶୋଭା ।
ସଦାକାଳେ ଏ ନୃସିଂହ ଆମ୍ଭର ଯେ ଯତି
ପ୍ରଭୁ ବିହୀନେ ଆନେ ନ ବଳେ ଆମ୍ଭ ମତି ।
ଏରୂପରେ ନାରୀମାନେ ଚିହ୍ନି ଭଗବାନ
ଅନ୍ତର୍ଯ୍ୟାମୀ ପୁରୁଷ ସେ ଜାଣି ତାଙ୍କ ମନ ।
କାହାର କଣ୍ଠରେ ଲମ୍ବି ଚୁମ୍ବଦେଲେ ହରି
କାହାର କାଖରୁ ଖସି ପଡ଼ି କୁଚ ଧରି ।
କାହାର ପିଠି ଉପରେ ଧରି ଚଢ଼ିଥାନ୍ତି
କା କଣ୍ଢେ ବସି ଲୋଟଣୀପାରା ପ୍ରାୟ ବୋନ୍ତି
କାହାର ସ୍ତନ ଉପରୁ ବସ୍ତ୍ର ଦ୍ୟନ୍ତି ଝିଙ୍କି
ତା ଦେଖି ହସନ୍ତି ନାୟିକାଏ କରଟେକି ।
ବୋଲନ୍ତି ବାଳକ ନୁହେଁ ଏହି ନରସିଂହ
ପ୍ରତ୍ୟକ୍ଷେ ଅବତାର ଏ ହେଲେ ବିଷ୍ଣୁଅଙ୍ଗ ।
ବିଷ୍ଣୁ ନୋହିଲେ ହୁଅନ୍ତା ଏଡ଼େ କର ବୁଦ୍ଧି
ଆମ୍ଭେ ପାଞ୍ଚିବା କଥାଟି ଏବେ ହେଲା ସିଦ୍ଧି ।
ଏହିରୂପେ ନାରୀଗଣ କହନ୍ତି ପ୍ରଭୁଙ୍କୁ
ଜାଣି ନାରାୟଣ ବାକ୍ୟ କହନ୍ତି ଯେ ତାଙ୍କୁ ।
ବୋଇଲେ ଶୁଣଗୋ ବଦରିକା ନାୟିକାଏ
ତୁମ୍ଭେ ଚୌଷଠି ସହସ୍ର ମୋର ଆତ୍ମାମୟେ ।
ତୁମ୍ଭର ପାଇଁ ଆଗ ମୁଁ ହେଲି ଅବତାର
ନୃସିଂହ ରାସ କରିଣ କରିବା ବିହାର ।
ନିତ୍ୟସ୍ଥଳୀ ଲୀଳା ଯିବା ଏ ସଂସାରେ ରଖି
ଶୁଣିଲେ ପ୍ରାଣୀଏ ତାହା ହେବେ ମହାସୁଖୀ ।
ଏହା ନ ଥିଲା କାହାକୁ ଜଣା ତିନିପୁରେ
ନୃସିଂହ ରାସକ୍ରୀଡ଼ା କି ହେବେ ବଦ୍ରିକାରେ ।
ତୁମ୍ଭେ ମୋତେ ଜାଣିଲ ମୁଁ ଜାଣେ ତୁମ ମନ
ଏ ଘେନି ତୁମ୍ଭେ ମୋହର ହେବ ପ୍ରାଣଧନ
ଭଲ ବୋଲି ଯାହାକୁଟି ବୋଲି ଏ ସଂସାରେ
ସେମାନେ ଲୀନ ହୁଅନ୍ତି ମୋହର ଶରୀରେ ।

ଥୋକାଏ ଲୋକମାନେ ଯେ ମୋତେ ନ ଜାଣନ୍ତି
ଆତ୍ମାର ବଡ଼ିମାପଣେ ବଡ଼ ହେଉଥାନ୍ତି ।
ସେହିମାନଙ୍କୁ ବୋଲିଟି ମୂର୍ଖ ନରାଧମ
ମୋତେ ନ ଜାଣିବାଲୋକ ଅଟେ ମୋରସମ ।
ତୁମ୍ଭେ ଯେ ମୋତେ ଚିହ୍ନିଲ ଏବେ ବିଷ୍ଣୁ ବୋଲି
ତେଣୁ ମୁହିଁ ତୁମ୍ଭଙ୍କୁ ଯେ ସୁଦୟା ବହିଲି ।
ମୋହର ମାୟାଶାଙ୍କୋଳି ତୁମ୍ଭେ ଅଟ ଏକା
ତେଣୁ ହେଲ ଚଉଷଠି ସହସ୍ର ନାୟିକା ।
ଏ ଅବତାରେ ତୁମ୍ଭଙ୍କୁ ଆମେ ଭୋଗକରି
ଗଲାବେଳେ ସଙ୍ଗେ ନେବୁ ବଇକୁଣ୍ଠପୁରୀ ।
ଲେଉଟି ଆମ୍ଭେ ଜନମ ହେବୁ ମଞ୍ଚପୁରେ
ରାମ ଲକ୍ଷ୍ମଣ ଭରତ ଶତ୍ରୁଘ୍ନ ରୂପରେ ।
ଚୌଷଠି ସହସ୍ର ତୁମ୍ଭେ ଅଧେ କନ୍ୟା ଯିବ
ବତିଶ ସହସ୍ରଯାଏ ଗଣା ତୁମ୍ଭେ ହେବ ।
ସରଯୁନଦୀର ତୀରେ ରାସକ୍ରୀଡ଼ା ହେବ
ବାଳକ ଭାବରେ ବାରବର୍ଷ ପୁରିଯିବ ।
ତୁମର ଏ କ୍ରୀଡ଼ାରସ ଯେବେ ରସବାଣୀ
ନିତ୍ୟେ ଶୁଣିବେ ସେ ରାମାୟଣେ ସାଧୁବାଣୀ ।
ରାମ ଅବତାର ଅନ୍ତେ ତୁମେମାନେ ଯାଇ
ନିତ୍ୟସ୍ଥଳୀରେ କରିବ ସେବା ମୋତେ ରହି ।
ତହିଁ ଉତାରୁ ଦ୍ୱାପର ଯୁଗେ ପୁଣି ଯାଇ
ଶ୍ରୀକୃଷ୍ଣ ଅବତାର ଯେ ହେବି ଏକା ମୁହିଁ ।
ବତିଶ ସହସ୍ର ତୁମେ ଷୋଳ ସସ୍ର ଯିବ
ଗୋପରେ ଜନ୍ମି ଗୋପିକାନାମ ବୋଲାଇବ ।
ତୁମ୍ଭଙ୍କୁ ଘେନିଣ ରାସ କରିବି ଯମୁନା
ତୁମେ ଯେ ମୋହର ରାସ ପ୍ରାଣବନ୍ଧୁ ସିନା ।
ସେହି ଅବତାର ଶେଷେ କଳିଯୁଗେ ଯାଇ
ନୀଳଗିରି ଜଗନ୍ନାଥ ବୋଲାଇବି ମୁହିଁ ।
ତୁମେ ଷୋଳସହସ୍ରରୁ ଅଧେ କନ୍ୟା ଯିବ
ପଣ୍ଡା ପଡ଼ିହାରୀ ପଶୁପାଳକ ହୋଇବ ।
ଚାଙ୍କଡ଼ା ମେକାପ ଯେ ଦଇତାପତି ହୋଇ
ସେବା ପୂଜା କରୁଥିବ ମୋ ଖଞ୍ଜାରେ ରହି ।
ଭୋଗ ରାଗ ମୋତେ ଦେଇ କରିବଟି ପୂଜା
ତୁମେ ତ ନାୟିକାଗଣ ଅଟ ଲକ୍ଷ୍ମୀ ଦ୍ୱିଜା ।
ଅବତାର ଗୋଟିକେ ଏରୂପେ ତୁମେ ମୋତେ
ଭକ୍ତିଭାବ ଘେନି ସେବା କରୁଥିବ ନିତ୍ୟେ ।
ଶୁଣିଣ ଯୁବତୀଗଣ ଛାଡ଼ି ମନୁ ଭ୍ରାନ୍ତି
ଆଗତ କଥା ଶୁଣି ସେ ହୋଇଲେ ତୃପତି ।

ଏରୂପେ ନାୟିକାଗଣ ପ୍ରଭୁ ମୁଖୁ ଶୁଣି
ମିଳିଲେକ ବନେ ଯାଇ ଘେନି ଚକ୍ରପାଣି ।
ଶେଷଦେବଙ୍କୁ ମାତାଙ୍କ ପାଶେ ଗଲେ ଛାଡ଼ି ।
ଆନନ୍ଦ ବନ ମଧ୍ୟରେ ପଶି ଫୁଲ ତୋଳି ।
ଗଙ୍ଗାକୂଳେ ଭଗବତୀ ପୂଜନ୍ତି ଦେବତା
ତୋଳନ୍ତି ବନରେ ଫୁଲ ସକଳ ବନିତା ।
ପାଞ୍ଚନ୍ତି ଫୁଲ ନେଲେଟି ପୂଜିବା ଦେବଙ୍କୁ
ମାଗିବା ପର ଆମ୍ଭେ ସେ ଦେବ ନୃସିଂହଙ୍କୁ ।
ହରିଙ୍କି କାଖେ ଧରିଣ ହରି ମନେ ଧ୍ୟାୟି
ତୋଳନ୍ତି ଫୁଲ ନୃସିଂହ ସଙ୍ଗେ ସଙ୍ଗେ ଥାଇ ।
ଫୁଲତୋଳନ୍ତେ ସେ ପୁଣ ଯଜ୍ଞବେଦୀ ଦେଖି
ସେ ବେଦୀ ଉପରେ ରୁଣ୍ଡହେଲେ ସର୍ବସଖୀ ।
ବୋଲନ୍ତି ଏ ବେଦୀ ଅଟେ ସୁରଞ୍ଜିତ ସ୍ଥାନ
ଏ ସ୍ଥାନରେ ବିହରିବେ ପ୍ରଭୁ ଭଗବାନ ।
କେଉଁ ଦେବତା ପୂଜିବା ନଦୀକୂଳେ ଯାଇ
ମୂଳ ଦେବତା ଆମ୍ଭର ନୃସିଂହ ଅଟଇ ।
ଏହିରୂପେ ପାଞ୍ଚି ଫୁଲ ଦେଲେ ପ୍ରଭୁ ଶିରେ
ଅଷ୍ଟସଖୀ ସେବାକରୁଥାନ୍ତି ନିରନ୍ତରେ ।
ଫୁଲରେ ଭୂଷଣ ପ୍ରଭୁ ହୋଇଲେ ନୃସିଂହ
ଚୌଷଠି ସହସ୍ର କନ୍ୟା ମୋହିଲେ ଶ୍ରୀରଙ୍ଗ ।
ତହିଁରେ ନୃସିଂହ ପ୍ରଭୁ କଲେ ଯୋଗମାୟା
ହେଲା ଚୌଷଠି ସହସ୍ର ନୃସିଂହଙ୍କ କାୟା ।
ମାତାଙ୍କ ଆଗରେ ପ୍ରଭୁ ଦିଶନ୍ତି ବାଳୁତ
ଯୁବତୀକେ ରୂପ ହୋଇ କରେ କୋଳାଗ୍ରତ ।
ଗୋବିନ୍ଦଙ୍କ ମାୟା ନାହିଁ ଏହାଙ୍କୁ ହେ ଜଣା
କରନ୍ତି ଯେ ରାସକେଳି ମାତାଙ୍କୁ ଅଜଣା ।
ସ୍ତିରୀକେ ପୁରୁଷେ ହୋଇ କରେ ମାୟାରତି
ସତ୍ୟ ପ୍ରାୟ କରି ତାହା ମଣନ୍ତି ଯୁବତୀ ।
ମନବୋଧ ହେଲେ ମିଥ୍ୟା ଲାଗେ ସତପ୍ରାୟେ
ମନ ଅବୋଧ ହେଲେଟି ସତ୍ୟ ମିଥ୍ୟା ହୁଏ ।
ଗୋବିନ୍ଦ ମାୟା ହେଲେ କେ ଜାଣିବ ତାହା
ସର୍ବ ହୃଦେ ବସି ରତିକରେ ଚଉବାହା ।
ଚଉଷଠି ପରିବନ୍ଧେ କରନ୍ତି ରମଣ
ସହସ୍ରେ କନ୍ୟାର ବନ୍ଧ ଗୋଟିଏ ପ୍ରମାଣ ।
ଏରୂପେ ଚୌଷଠି ବନ୍ଧ କଲେ ଭାବଗ୍ରାହୀ
ଶ୍ରୀହରି ବ୍ୟତୀତ ଆନ ନ ଜାଣେ ତା କେହି ।
କରନ୍ତି ଯେଉଁ ପ୍ରଭୁ ଏ ସଂସାର ରଚନା
ତାହାକୁ ଏ ରତିବନ୍ଧ କିଞ୍ଚିତ ସେ ସିନା ।

ଶ୍ରୀ ନୃସିଂହର ଭାବନା ଦେଖି ଦେବତାଏ
ଶୂନ୍ୟରୁ କୁସୁମ ବୃଷ୍ଟି କଲେ ପ୍ରଭୁ ଦେହେ ।
ବୋଲନ୍ତି ଧନ୍ୟ ଧନ୍ୟ ଏ ଅଟେ ସତ୍ୟଯୁଗ
ମାନବେ ଜନମି କ୍ରୀଡ଼ା କରନ୍ତି ନୃସିଂହ ।
ଧନ୍ୟ ଏ ଆନନ୍ଦବନ ଧନ୍ୟ ବଦରିକା
ଧନ୍ୟ ଅଟେ ଗଙ୍ଗାନଦୀ ବିଷ୍ଣୁ ପାଦୋଦକା ।
ଧନ୍ୟ ଭଗବତୀ ଅଟେ ନୃସିଂହର ମାତା
ଗୋଡ଼ରେ ଖେଳାଉଅଛି ତିନିଲୋକକର୍ତ୍ତା ।
ହଳଦୀ ବୋଳିଲା ବେଳେ ଗୋଡ଼ ଧରି ହରି
ଖେଳାଇ ଡିଆଉଁଅଛି ନାହିଁ ଏହା ସରି ।
ଧନ୍ୟ ଚୌଷଷଠି ସହସ୍ର କନ୍ୟା ଏ ଜଗତେ
ଏହାଙ୍କ ପ୍ରାୟେ ଭକ୍ତ ନ ମିଳେ କଦାଚିତେ ।
ନୃସିଂହଙ୍କୁ ଅଙ୍ଗ ସଙ୍ଗ ଦେଇ କ୍ରୀଡ଼ାକରି
ଯାଙ୍କ ଭକ୍ତିକି ନୁହନ୍ତି ଯୋଗୀମାନେ ସରି ।
ଏମନ୍ତ ବୋଲିଣ ଦେବେ କୁସୁମ ବରଷି
ଶ୍ରୀମୁଖ ଦର୍ଶନକରି ଗଲେ ଶୂନ୍ୟବାସୀ ।
ଏଥୁଅନନ୍ତରେ ପ୍ରଭୁ ଯୋଗମାୟା ବଳେ
କରନ୍ତି ଭାବନା କେହି ନ ଜାଣନ୍ତି ଭୋଳେ ।
ଯେ ଯାହାର ସ୍ୱଭାବକୁ ସେ ଏକା ଜାଣନ୍ତି
ସବୁରି ନେତ୍ରେ ନୃସିଂହ ଦିଶେ ଏକମୂର୍ତ୍ତି ।
ବୃଦରିକା ଦେଶ ନାୟିକାଙ୍କୁ ସଙ୍ଗେ ଘେନି
କରନ୍ତି ଯେ ରାସକ୍ରୀଡ଼ା ହୋଇ ବେନି ବେନି ।
ଜଣକେ କରନ୍ତି ଭିନ୍ନ ଭିନ୍ନ ଆଲିଙ୍ଗନ
ଯାହାର ଯେମନ୍ତ ଭାବେ ହୋଏ ତୋଷମନ
ସଭିଙ୍କି ତୋଷନ୍ତି ସେହି ଭାବେ ନରହରି
କାହାର ମୁଖକୁ ଚୁମ୍ବି କାହା କୁଚ ଧରି ।
ସୁରତିକରି କାହାରି ସ୍ତନମଣ୍ଡଳରୁ
ଘୋଡ଼ାନ୍ତି ବସନ ଖସିପଡ଼େ ଉରଜରୁ ।
କାହାର ଶରୀରୁ ବହିପଡ଼େ ଶ୍ରମଝାଳ
କବରୀ କାହାର ଫିଟିପଡ଼େ ଫୁଲମାଳ ।
ପିନ୍ଧିବା ବସନ ଫୁଟିପଡ଼େ କାର ତଳେ
କଟୀର ମେଖଳା କାର ଫିଟେ ଅସମ୍ଭାଳେ ।
ବିଜୁଳି ତେଜ ଯେସନେ ଦିଶେ କଳାମେଘେ
ନୃସିଂହଙ୍କ ଆଗେ ନାରୀ ଦିଶନ୍ତି ସେ ମାର୍ଗେ ।
କେ ଯୁବତୀ ହରିଙ୍କୁ ଘେନିଣ କ୍ରୀଡ଼ାରସେ
ଆଳାପ ତାନ କରିଣ ଗୀତ ଗାଇ ତୋଷେ ।
ଆବର ଯୁବତୀ ଚାଲେ ହୋଇ ଗେଲେ ଗେଲେ
ତାର ମନ ଜାଣି ପ୍ରଭୁ ମନେ ବଶ କଲେ ।

ଆବ୍‌ର ଯୁବତୀ ମନ ମଧ୍ୟେ ସ୍ନେହ ଧରି
ନୃସିଂହଙ୍କୁ ବଳେ ଝିଙ୍କି ଆଣି କାଖ କରି ।
ତା ଦେଖି ଆଉ ସ୍ତିରୀରେ ବଳେ ଧାଇଁଯାଇ
ଛଡ଼ାଇନେଲେ କାଖରେ ବସାଇଲେ ନେଇ ।
କାମେ ମତ୍ତହୋଇ ଟେକିଲାକ କାମଭୋଳେ
ରହି ନ ପାରି ପକାଇଦେଲା ପୁଣି ତଳେ ।
ତା ଦେଖି ଯୁବତୀ ଏକ ନୃସିଂହକୁ ଧରି
ଆଘ୍ରାଣ କଲାକ ନେଇ ନାସାରନ୍ଧ୍ରେ ଭରି ।
ବାସିଲା ସେ ପଦ୍ମହସ୍ତ ପଦ୍ମ ପ୍ରାୟ ହୋଇ
ସେ ବାସ ପାଇ ତାହାର ଦେହ ରୋମାଞ୍ଚଇ ।
ଅପର ଯୁବତୀ ଧରି ପ୍ରଭୁଙ୍କୁ ଯେ କୋଳେ
ଶ୍ରୀମୁଖ ଚୁମ୍ବି ତାମ୍ବୁଳ ଦିଏ ନେଇ ଭୋଳେ ।
କେ କାଖେ କୋଳେ ବସାଇ ଧରି ନୃସିଂହଙ୍କୁ
ଗୃହସ୍ଥ ପରାୟ ମଣି ରମଇ ତାହାଙ୍କୁ ।
ଆବର ନାୟିକା ନୃସିଂହଙ୍କ ହସ୍ତଧରି
ଅଦୃଶ୍ୟ ହେଲାଯାଏ ସେ ନେଲା କାଖକରି ।
କୋଳରେ ଧରି ଚୁମ୍ବଇ ଅତି ଶ୍ରଦ୍ଧା ବହି
ଆନନ୍ଦେ ଗୀତ ଗାନ୍ଧାର ରାଗେ ଗାଇ ଗାଇ ।
ସେ ଗୀତ ଶୁଣି ସକଳ ଯୁବତୀ ଧାଇଁଲେ
ଶିରରେ ଭୁଜକୁ ଟେକି ଆଗେ ଉଭାହେଲେ ।
ବଳୟ ଆଉ ନୂପୁର ଶବ୍ଦ ନାଦ କରି
ଦେଖାଇ ରହିଲେ ବେନି କୁଚ ସର୍ବ ନାରୀ ।
ନୃସିଂହ ଦେଖିଣ ତାହା ଆନନ୍ଦ ହୋଇଲେ
କାମିନୀଙ୍କି କାମଶରେ ବିମୋହିତ କଲେ ।
ମୋହିତ ହୋଇ ସକଳେ ହେଲେ ଅସମ୍ଭାଳ
ଧରିନେଇ ବଳେ ତାଙ୍କୁ କରନ୍ତି ସେ କୋଳ ।
ନୃସିଂହ ପ୍ରଭୁଙ୍କ କ୍ରୀଡ଼ା ଦେଖି ମର୍ତ୍ତ୍ୟଲୋକେ
ଆସନ୍ତି ଅମରପୁର ତେଜି ବୃନ୍ଦାରକେ ।
ଚନ୍ଦ୍ରଙ୍କ ସଙ୍ଗେ ନକ୍ଷତ୍ରଗଣ ଯେହ୍ନେ ଖଟି
ସେହି ସ୍ୱରୂପେ ସ୍ତିରୀଏ କାମେ ଛନ୍ତି ଲୋଟି ।
ସ୍ତିରୀକେ ରୂପେକ ହୋଇଛନ୍ତି ଦଇତ୍ୟାରି
ଆନନ୍ଦ ମନେ କରନ୍ତି ପ୍ରେମଲୀଳା ପୁରି ।
ଯାହାର ଆଦି ଅନ୍ତ ନ ପାନ୍ତି ବ୍ରହ୍ମା ହର
ସେ ପ୍ରଭୁ ସ୍ତିରୀଙ୍କ କୋଳେ ଏତେ ଅଗୋଚର ।
ନୃସିଂହଙ୍କ ନଖ କ୍ଷତ କାମିନୀଏ ପାଇ
କାମେ ଜର ଜର ହେଲା ସବୁଙ୍କରି ଦେହୀ ।
ନାନା ଅଳଙ୍କାର ଅଙ୍ଗେ ହୋଇଣ ଭୂଷଣ
ନୃସିଂହଙ୍କ ଅଙ୍ଗସଙ୍ଗ ହୁଅନ୍ତି ନାରୀଗଣ ।

ନିତ୍ୟସ୍ଥଳୀ କନ୍ୟା ସେହୁ ବିପ୍ରଙ୍କ କୁମାରୀ
ଶ୍ରୀବିଷ୍ଣୁଙ୍କୁ ଲଭିଲେ ସେ ପ୍ରେମଭକ୍ତି କରି ।
ଏହିରୂପେ ଲୀଳାରସ ସାରିଣ ଅବଳା
ଚଳିଲେ ହରିଙ୍କି କାଖେ ଧରି ପ୍ରେମଶୀଳା ।
ହରିଙ୍କି ଶ୍ରୀ ଗଙ୍ଗାନଦୀ ତଟେ ଘେନି ସଙ୍ଗେ
ନୃତ୍ୟକରି କୁଙ୍କୁମ ଲେପନ୍ତି ତାଙ୍କ ଅଙ୍ଗେ ।
କେ ହାସ କରେ କେହୁ କହଇ ଢମାଳି
ଗଙ୍ଗାଜଳେ ପଶି କେହୁ ମାରେ କରତାଳି ।
ପାଣିରେ ବୁଡ଼ିଣ କେହୁ ଉଠେ ଖଣ୍ଡେଦୂରେ
ଲୁଚି ଲୁଚି ପାଦ କେହି ଧରି ବେନିକରେ ।
କେ ବୋଲଇ ଏ ଗଭୀର ଜଳେ ଯାଇ ପଶ
କଣ୍ଟିବା ପାଣି ତାହାକୁ କେତେ ହେବ ଆସ ।
ଶୁଣିଣ ସଖୀ ଜଣେ ଯେ ହସ ହସ ହୋଇ
ଆର ସଖୀକି ଧରିଣ ପଶେ ଜଳେ ଯାଇ ।
କେ କାହା ଅଙ୍ଗରେ ନେଇ ଦିଏ ପଙ୍କ ବୋଳି
କେ ଜଳେ ପଶଇ କେହି ଦିଏ ହୁଳହୁଳି ।
କେ ବୋଲଇ ନାବ ପ୍ରାୟେ ଜଳେ ହେବା ଆସ
ସେ ନାବେ ବସାଇ ପାରି କରିବା ଗୋ ଈଶ ।
ଏତେକ ବୋଲି ନାରୀଏ ଧରି ନରହରି
ଉପରେ ସିଞ୍ଚନ୍ତି ଗେଲେଗେଲେ ଗଙ୍ଗାବାରି ।
ଶ୍ରୀଗଙ୍ଗାନଦୀର କୂଳେ ଯୁବତୀଙ୍କ ମେଳେ
କରନ୍ତି ଲୀଳା ବିନୋଦ ପ୍ରଭୁ କୁତୂହଳେ ।
ବଦରିବା ଆଶ୍ରମରେ ଅବଳାଙ୍କ ସଙ୍ଗେ
ରମିଲେ ପ୍ରଭୁ ନୃସିଂହ ଭକ୍ତିଭାବ ମାର୍ଗେ ।
ଯେତେ ଅଛନ୍ତି ଏ ବ୍ରହ୍ମାଣ୍ଡରେ ଭକ୍ତ ପୁରି
ବଦରିକା ନାରୀ ସଙ୍ଗେ ନୁହନ୍ତି କେ ସରି ।
ପ୍ରତ୍ୟକ୍ଷ ବିଷ୍ଣୁଙ୍କ ସଙ୍ଗେ ରଙ୍ଗସଙ୍ଗ ହୋନ୍ତି
ଏହାଙ୍କ ଭକତି କେହୁ ସଂସାରେ ନ ପାନ୍ତି ।
ଚୌଷଠି ସହସ୍ର ନାରୀ ସର୍ବେ ବିଷ୍ଣୁପ୍ରିୟା
ତେଣୁ ନ ଲାଗଇ ତାଙ୍କୁ ଗୋବିନ୍ଦର ମାୟା ।
ନାରଦ ବୋଇଲେ ଶୁଣ ଆହେ ପିତାମହ
ଏ କଥାରେ ଭ୍ରାନ୍ତି ମୋତେ ଲାଗିଲା ସନ୍ଦେହ ।
ଯେଉଁ ପ୍ରଭୁ ନାମ ଶୁଣି ହୁଏ ଗତିମୁକ୍ତି
ସେ କିମ୍ପା ସ୍ତିରୀ ସଙ୍ଗତେ କଲେ ପ୍ରେମଭକ୍ତି ।
ତଥାପି ମାନବ ଅଂଶେ ଜନ୍ମ ନାରାୟଣ
ବାଳକ ହୋଇ କଲେକ ଏତେ ବିଡ଼ମ୍ବନ ।
ବ୍ରହ୍ମା ବୋଇଲେ ପ୍ରତ୍ୟକ୍ଷେ ପରଂବ୍ରହ୍ମ ସେ ତ
ତେଜୋବନ୍ତ ବଳବନ୍ତ ସର୍ବ ଆତ୍ମଭୂତ ।

କୀଟୁଁ ବ୍ରହ୍ମଯାଏ ପୁତ୍ର ଅନୁସାରେ ଥାନ୍ତି
କରନ୍ତି ସ୍ତିରୀ ପୁରୁଷ ହୋଇ ନାନା ରତି ।
ରତି ନ କରିଲେ ଜୀବ ହେବ କି ପ୍ରକାଶ
ଏଣୁ ସେ ପ୍ରଭୁଠାରେ ନ ଲାଗେ ଶୁଣ ଦୋଷ
ଯେତେ ନାୟିକାଙ୍କ ସଙ୍ଗେ କଲେ ପ୍ରେମରତି
ସମସ୍ତଙ୍କୁ ଯୋଗମାୟା ଲଗାଇ ଅଛନ୍ତି ।
ରେତ ନ ପକାଇ କରନ୍ତି ସେ ରତିରଙ୍ଗ
ହରିଙ୍କର ରତି ମିଥ୍ୟା ସ୍ତିରୀ ପ୍ରେମସଙ୍ଗ ।
ଗୋବିନ୍ଦ ମାୟାରେ ପଡ଼ି ସତ୍ୟ ପ୍ରାୟ ମଣି
ରମନ୍ତି ବଦ୍ରିକା କନ୍ୟାଗଣ ଚକ୍ରପାଣି ।
ଏ ସଂସାର ମାୟା ନାହିଁ ପ୍ରାଣୀଙ୍କୁ ଯେ ଛାଡ଼ି
କରନ୍ତି କ୍ରୀଡ଼ା ବିଷୟା ବନ୍ଧନରେ ପଡ଼ି ।
ହରି ତ ଅଛନ୍ତି ଆତ୍ମାରୂପେ ସର୍ବଦେହେ
କ୍ରୀଡ଼ା କରନ୍ତି ପ୍ରକୃତିଗଣ ନାନା ସ୍ନେହେ ।
ବହୁଛି କହୁଛି ସେହୁ ଶୁଣୁଛି ଚାହୁଁଛି
ଏହାଙ୍କ ବଳୁ ବିଷୟେ ମନ କରାଉଛି ।
ତେଣୁ ସେ ପ୍ରଭୁଙ୍କଠାରେ ନ ଥାଇ ଗୁଣ ଦୋଷ
ଆବର ଲୋକେ ଅଜ୍ଞ ଯିବେ କଲେ ନାଶ ।
ଗରଳକୁ ପାରିଲେ ଯେ ରୁଦ୍ର ଏକା ଭକ୍ଷି
ଅନ୍ନ ଜଳ ଭକ୍ଷି ଦେହ ପାରିବକି ରଖି ।
ଆଉ କେ ଅଗ୍ନି ସକଳ ପାରନ୍ତିଟି ଖାଇ
ଆଉକେ ଅଗ୍ନିରେ ପ୍ରାୟ ହେବ ଦେହ ବହି ।
ବୁଝିଲେ ସଂସାର ସିନା ସୂର୍ଯ୍ୟ ଉଦେହୋନ୍ତି
ଦିବସ ରଜନୀ କରି ଜଗତ ପାଳନ୍ତି ।
ତାହାଙ୍କ ପରି ସଂସାରେ କେହୁ ହେବ କହ
ଶୁଣହେ ନାରଦ ଋଷି ବୋଲେ ପିତାମହ
ବୁଝିଲ ତ ପ୍ରଭୁଙ୍କର ବିଷୟାରେ ମତି
ବଡ଼ଲୋକ କରି ନ ପାରେ ଏହି କୃତି ।
ତଥାପି କରିବେ ମୂଢ଼େ ଯେବେ ମୂର୍ଖପଣେ
ଅଳପକେ ନାଶହୋଇ ଯିବେ ତତକ୍ଷଣେ ।
ଯେବଣ ମହାପ୍ରଭୁଙ୍କ ପାଦପଦ୍ମ ଧୂଳି
ବ୍ରହ୍ମା ଇନ୍ଦ୍ର ରୁଦ୍ର ଆସି ଅଙ୍ଗେ ହୋନ୍ତି ବୋଳି ।
ସୁଜନ ଜନ ତାରିବା ଅର୍ଥେ ସେହୁ ଜାଣ
ବଦରୀ ଦେଶରେ ଜାତ ହେଲେ ନାରାୟଣ ।
ନୃସିଂହ ସଙ୍ଗରେ ଚଉଷଠି ସସ୍ର ନାରୀ
ବୈକୁଣ୍ଠେ ଚଳିବେ ସେହୁ ଲୀଳା ଭୋଗସାରି ।
ରାମ ଅବତାରେ ଏଥୁ ଅଧେ ଯାଇ କନ୍ୟା
କରିବେ ଯେ ରାସକେଳି ରସ ବୀରାଙ୍ଗନା ।
ରାମ ଅନ୍ତେଣ ଦ୍ୱାପର ଯୁଗେ ପୁଣ ଯାଇ
କୃଷ୍ଣ ଅବତାର ହେବେ ପ୍ରଭୁ ଭାବଗ୍ରାହୀ ।
ଚଉଷଠି ସହସ୍ରରୁ ଷୋଳସସ୍ର ଯିବେ
ଗୋପସ୍ତିରୀ ହୋଇ ଗୋପପୁରେ ଜନମିବେ
ଶ୍ରୀବୃନ୍ଦାବନେ କରିବେ ରାମ କୃଷ୍ଣ ଘେନି
କଦମ୍ବ ମୂଳରେ ବିହରିବେ ଅନ୍ତର୍ଯ୍ୟାମୀ ।
ଅନେକ ଲୀଳାକରି ସେ ଅବତାର ଶେଷେ
ନୀଳଗିରିରେ ଯେ ବିଜେ ହେବେ ପୀତବାସେ ।
ଚଉଷଠି ସହସ୍ରରୁ ଆଠସସ୍ର ନାରୀ
କଳିଯୁଗରେ କରିବେ ରାସ ନୀଳଗିରି ।
ଏହିରୂପେ ଚାରିଯୁଗେ ସେ ରାସ ମଣ୍ଡଳୀ
ଯହିଁ ହରି ବିଜେ ତହିଁ ଅଟେ ନିତ୍ୟସ୍ଥଳୀ ।
ହରି ଗଲେ ନିତ୍ୟସ୍ଥଳୀ ତାଙ୍କ ସଙ୍ଗେ ଯାନ୍ତି
ଯହିଁ ପ୍ରଭୁ ତହିଁ ରାସଲୀଳା ବିରଚନ୍ତି ।
କହିବା ଏବେ ହୋ ଶୁଣ ନୃସିଂହଙ୍କ କୀର୍ତ୍ତି
ଷଷ୍ଠୀ ଓଷା ପୂଜି ଚଳିଗଲେ ଭଗବତୀ ।
ବଦରିବା ଆଶ୍ରମରେ ଯେତେ ବିପ୍ରବାଳୀ
ଭଗବତୀ ସଙ୍ଗେ ଯାଇ ଦ୍ୟନ୍ତି ହୁଳହୁଳି ।
ନୃସିଂହ ସ୍ୱାମୀଙ୍କ ଷଡ଼ବରଷ ହୁଅନ୍ତେ
ଷଡ଼ବର୍ଣ୍ଣରେ ଉପନ ବାଢ଼ିଲେ ସମସ୍ତେ ।
ଷଡ଼ବର୍ଣ୍ଣରେ ଯେ ଫୁଲ ଷଡ଼ବର୍ଣ୍ଣେ ଫଳ
ଷଡ଼କୁମ୍ଭେ ନଦୀ ମଧୁ ଆଣି ତୀର୍ଥଜଳ ।
ଷଡ଼ବର୍ଣ୍ଣ ପିଠା ରଖି ଷଡ଼ଗୋଟି ଭାଣ୍ଡେ
ଷଡ଼ଗୋଟି ଯୁବତୀ ତା ବହିଆଣି ମୁଣ୍ଡେ ।
ଷଡ଼ରସରେ ସମ୍ପାଦିଛନ୍ତି ଭଗବତୀ
ଶତଦଳ ପଦ୍ମ ପ୍ରାୟ ଦିଶେ ମୁଖକାନ୍ତି ।
ଷଡ଼ଗୋଟି ସୂତ୍ରରେ ସେ ଷଡ଼ଗୋଟି ଗଣ୍ଠି
ଷଡ଼ଗୋଟି ଦେବତାଙ୍କୁ ସ୍ଥାପି ଦେବୀ ଷଷ୍ଠୀ ।
ଷଡ଼ଗୋଟି ନଡ଼ିଆ ଯେ ଷଡ଼ଗୋଟି ଗୁଆ
ଷଡ଼ଦୀପ ଜାଳି ପୁଣି କଲେ ତହିଁ ଥୁଆ ।
ଷଡ଼ଗୋଟି କଂସାଳ ଯେ ବାଜେ ଷଡ଼ତାଳ
ଷଡ଼ ପ୍ରକାରେ ଶଙ୍ଖ ବାଜେ ଅନର୍ଗଳ ।
ଷଡ଼ଘଡ଼ି ବେଳରେ ଯେ ଉଷା ପୂଜି ବସି
ମାତାଙ୍କ ପାଶେ ଅଛନ୍ତି ପ୍ରଭୁ ବ୍ରହ୍ମରାଶି ।
ବଦରିକା ଆଶ୍ରମରେ ଯେତେକ ଯୁବତୀ
ସବୁଙ୍କୁ ଘେନି ପୂଜନ୍ତି ଦେବୀ ଭଗବତୀ ।
ବୋଲନ୍ତି ଆରୋଗ୍ୟକର ମୋ ପୁତ୍ରକୁ ମାତା
ହୁଅନ୍ତୁ ସଚରାଚର ଯାକେ ନରନାଥ ।

ଶୁଣିଣ ହସନ୍ତି ନାୟିକାଏ କର କର
ବୋଲନ୍ତି ଶ୍ରୀହରିଙ୍କି ଏ ମଣିଛି କୁମର ।
ଏ ପ୍ରଭୁ ଉପରେ ଆଉ ଅଛି କେ ଦେବତା
ଯାହା ଲୋମମୂଳୁ ଜନ୍ମିଅଛନ୍ତି ବିଧାତା ।
ଅଶେଷ ପ୍ରଭୁ ଏ ଦେହୁ ଛନ୍ତି ଜାତକରି
ଯାହାର ପାଦପଦ୍ମକୁ ସେବେ ତ୍ରିପୁରାରି ।
ଯାବତ ଦେବତାଙ୍କୁ ଯେ ରଖିଅଛି ସର୍ଜି
କେ କାହାକୁ ରଖିପାରେ ଆନ ଦେବ ପୂଜି ।
ଏତେକ ବୋଲି ସ୍ତିରୀଏ ନୃସିଂହକୁ ଆଣି
ପୁଷ୍ପ ଗୁନ୍ଥିଣ ମଥାରେ କଲେକ ମଣ୍ଡଣି ।
ନେତ୍ରରେ କଜ୍ଜଳରେଖା ସବୁଙ୍କରି ଦେଲେ
କପାଳେ ସିନ୍ଦୂରବିନ୍ଦୁ ଟୀକା ଚଢ଼ାଇଲେ ।
ଖଣ୍ଡ ଶାକର ଲବଣୀ ହସ୍ତେ ଦେଲେ ଆଣି
ଶିରେ ଅର୍ଘ୍ୟ ଦୁର୍ବାକ୍ଷତ ବନ୍ଦାନ୍ତି ତରୁଣୀ ।
ଯାହାର ଯେ ଉପନଟି ଯେତେ ନେଇଥିଲେ
ନୃସିଂହ ପ୍ରଭୁ ଆଗରେ ବେଢ଼ି ପୂଜାକଲେ
ଶାକର ବ୍ୟଞ୍ଜନ ଦଧି ଦୁଧ ଷଡ଼ରସ
ଅମୃତପାଣି କଦଳୀ ନାଲିଝିଲି ବାସ ।
ଗୋରସ ନବାତ ରସାବଳୀ ଖଣ୍ଡଚିନି
ଅଧାମଗୋଟିକା ସରେ ପୂଜନ୍ତି ତରୁଣୀ ।
କ୍ଷୀରି କାକରା ଯେ ପୁରି ଲଡୁ ରସକୋରା
ଉପନ ବଢ଼ାନ୍ତେ ଶୋଭା ଦିଶେ ବସୁନ୍ଧରା
ବଦ୍ରିକା ନାୟିକାଙ୍କର ସେବା ପୂଜା ଦେଖି
ଚାହିଁଲେ ଭଗବତୀ ଯେ ପୁତ୍ରକୁ ନିରେଖି ।
ଦେଖିଲେ ଶ୍ରୀ ଶଙ୍ଖଚକ୍ର ଗଦାପଦ୍ମ କରେ
ଲମ୍ବିଅଛି କଣ୍ଠେ ମଣି କଉସ୍ତୁଭ ହାରେ ।
ଶ୍ରୀବତ୍ସ ଚିହ୍ନ ଫୁଟିଣ ଦିଶେ ହୃଦଗତେ
ଶ୍ରୀଗୋବିନ୍ଦ ପାଶାଙ୍କୁଶ ଲାଙ୍ଗୁଳ ସହିତେ ।
ଏ ଆଦି ଯେ ଅଷ୍ଟାଦଶ ଚିହ୍ନମାନ ଧରି
ପୂଜାରେ ମାତାଙ୍କୁ ଦୃଶ୍ୟ ହେଲେ ବିଜେକରି ।
ଅଛନ୍ତି ଶେଷଦେବ ଯେ ସପ୍ତଫଣା ବହି
ଧବଳ ଶ୍ୱେତ ଶୁକଳ ଅଙ୍ଗ ବିରାଜଇ ।
ଶୂନ୍ୟରେ ଦେବେ ଯେ ବିଞ୍ଚନ୍ତି କୁସୁମ
ଷଷ୍ଠୀଙ୍କ ଆସ୍ଥାନେ ବସିଛନ୍ତି ପରଂବ୍ରହ୍ମ ।
ଦିଅନ୍ତି ସପତପୁର ଲୋକେ ହୂଳ ହୂଳି
ଆକାଶେ କରନ୍ତି ନୃତ୍ୟଗୀତ ଦେବେ ମିଳି ।
ବଦରିକା ଆଶ୍ରମରେ ଯୁବତୀଏ ମେଳେ
ପୂଜନ୍ତି ଚୌଷଠି ସସ୍ର କନ୍ୟା ନଦୀକୂଳେ ।
ନୃସିଂହଙ୍କ ମାତା ଦେଖି ମନେ ହୁନ୍ତି ତୋଷ
ପାଞ୍ଚନ୍ତି ପ୍ରତ୍ୟକ୍ଷେ ଏହୁ ଅଟେ ଜଗଦୀଶ ।
ପୁତ୍ର ମୋର ବୋଲି ବିଚାରୁ ଯେ ଥାଇ ଚିତ୍ତେ
ଦେଖିଲଇଁ ନିଶ୍ଚେ ଏବେ ଶଙ୍ଖଚକ୍ର ହସ୍ତେ ।
ଏମନ୍ତ ବୋଲି ମନରେ ପାଞ୍ଚୁଥାନ୍ତି ବସି
ତତକ୍ଷଣେ ଲାଗିଲା ବିଷ୍ଣୁମାୟା ଅଙ୍ଗେ ଆସି ।
ଲାଗନ୍ତେ ଆସି ଗୋବିନ୍ଦ ମାୟା ଜନନୀଙ୍କି
କୁମରଙ୍କୁ ପୂଜାକରି ପୂଜିଲେ ଷଷ୍ଠୀଙ୍କି ।
ଧରିଣ ପୁତ୍ରଙ୍କୁ ଚଳିଗଲେ ମନ୍ଦିରକୁ
ଷଷ୍ଠୀବ୍ରତ ଉଜାଇଣ ଆସିଲେ ଗୃହକୁ ।
ଚୌଷଠି ସହସ୍ର କନ୍ୟା ବିଷ୍ଣୁପଦେ ପୂଜି
ଆପଣା ଗୃହେ ବସିଲେ ଯାଇ ଅନ୍ନ ଭୁଞ୍ଜି ।
ଶ୍ରୀନୃସିଂହ ପ୍ରଭୁଙ୍କର ବାଳଲୀଳା ରସ
ମୁଁ ଛାର ମାନବ କହି ପାରିବି ତା କିସ ।
କେବଳ ଶାରଳା ଦେବୀ ଆଜ୍ଞା ପରମାଣେ
ତାଙ୍କ କୃପା କଲାରୁ ମୁଁ ପୁରାଣ ବଖାଣେ ।
ସାଧୁ ପଣ୍ଡିତେ ଶୁଣିବେ ଏ ପୁରାଣ ବସି
କେ ପଢ଼ିବେ କେ ଶୁଣିବେ କେହୁ ହୃଦେ ଘୋଷି ।
ସେହି ଲୋକମାନଙ୍କର ହେବ ଯେବେ ପୂର୍ଣ୍ଣ
ମୁଁ କିସ ଜାଣିବି ଜାଣେ ତାହା ଭଗବାନ ।
ଦୃଢ଼େ ବସିଣ ଶୁଣିବ ରୋଗୀ ଯେବେ ନିତ୍ୟେ
ବ୍ୟାଧି ଛାର ରହିବ କି ତାର ହୃଦଗତେ ।
ଅବଶ୍ୟ ଖଣ୍ଡିବେ କ୍ଳେଶ ତାର ନାରାୟଣ
ଏ କଥାଟି ଯଥାର୍ଥ କରି ତୁମ୍ଭେ ଜାଣ ।
ଯଦ୍ୟପି ପଢ଼ିବ ଅପୁତ୍ରିକ ଅହୋରାତ୍ର
ନିଶ୍ଚୟ ତାହାକୁ ପୁତ୍ର ଦେବେ ପଦ୍ମନେତ୍ର ।
ପଢ଼ିଲେ ଦରିଦ୍ରଜନ ପାଇବ ସମ୍ପତ୍ତି
ପାତକୀ ପଢ଼ିଲେ ସେ ନ ଯିବ ନର୍କଗତି ।
ଲାଗିବ ଯେବେ ନୃପତିଭୟ ଗୃହେ ଆସି
ଶୁଣିଲେ ଏ ପୁରାଣ ସେ ଭୟ ଯେ ନ ପଶି ।
ଗୋହତ୍ୟା ବ୍ରହ୍ମହତ୍ୟା ଯେ ସ୍ତିରୀହତ୍ୟା ପୁଣ
ସୁରାପାୟୀ ଅବିଶ୍ୱାସୀ ଯେତେ ଲୋକ ଜାଣ ।
ଶୁଣିଲେ ଏ ଆଦି ପାପ ହେଲେ ଯିବ ନାଶ
ଚଳିବେ ସେ ଦେହ ଅନ୍ତେ ବିଷ୍ଣୁ ନିଜବାସ ।
ନଳିନୀପତ୍ରେ ଯେହ୍ନେ ନ ରହେ ନୀର ପଡ଼ି
ସେହି ରୂପରେ ଅଙ୍ଗରୁ ପାପ ଯାଏ ଛାଡ଼ି ।
ଆହେ ସୁଜ୍ଞଜନମାନେ ସାବଧାନେ ଶୁଣ
ବସି ବୁଝିବ ନିର୍ମଳମନେ ଏ ପୁରାଣ ।

କେବଳ ବ୍ରାହ୍ମଣ ମୁଖୁଁ ପୁରାଣ ଶୁଣିବ
ଆଦରକରି ତାହାଙ୍କୁ ଗୃହକୁ ଆଣିବ ।
ବୋଲିବ ଗୋସାଇଁ ଆହେ ଭକ୍ତି ମୋର ଘେନ
ପୁରାଣ କହି ତୋଷିବ ମୋର ପଞ୍ଚମନ ।
ଶ୍ରୀହରି ପୁରାଣ ପଢ଼ି ଅବଧାନ କର
ଶୁଣିଲେ ପବିତ୍ର ମୋର ହେବ କଳେବର ।
ଏତେ ବୋଲି ବିପ୍ର ମୁଖୁଁ ପୁରାଣ ଶୁଣିବ
ପୁରାଣ ଶେଷରେ ମନ ତୋଷେ ଦାମ ଦେବ ।
ବିପ୍ରଙ୍କ ମୁଖୁଁ ଶୁଣିଲେ ଚାରିଭାଗ ପୁଣ୍ୟ
କ୍ଷତ୍ରିୟଙ୍କ ମୁଖୁଁ ଶୁଣିଲେ ଚାରିଭାଗ ଜାଣ ।
ବୈଶ୍ୟମୁଖରୁ ଶୁଣିଲେ ବେନିଭାଗ ହୋଇ
ଶୂଦ୍ର ମୁଖରୁ ଶୁଣିଲେ ଭାଗେ ପୁଣ୍ୟ କହି ।
ଫଳ ବାଞ୍ଛିଲେ ବ୍ରାହ୍ମଣ ମୁଖୁ ଏହା ଶୁଣି
ଏକଥା କହିଅଛନ୍ତି ବେଦେ କୁଶପାଣି ।
ବିପ୍ର ମୁଖୁ ଶୁଣିଲେ ଯେ ବହୁ ପୁଣ୍ୟ ଅଛି
ଏଥକୁ ସୁଜ୍ଞଜନେ ନ ଘେନ ମନେ କିଛି ।
ବିପ୍ର ପୀତାମ୍ବର ଦାସ ସର୍ବଜନ ହିତେ
ବାଳୁତଭାବେ ଲେଖଇ ଗ୍ରନ୍ଥ ପର କୃତେ ।
ଶ୍ରୀନୃସିଂହ ବାଳଭାବ ଯେତେ କ୍ରୀଡ଼ାରୀତି
ନାରଦ ଆଗେ କହନ୍ତି ଏହା ବେଦପତି ।
ନାରଦ ଶୁଣିଲେ ଯେତେ ଯେତେ ଧର୍ମଧାଡ଼ି
ପରୀକ୍ଷ ଆଗେ କହନ୍ତି ଶୁକ ତାହା ଭେଡ଼ି ।
ତେଣୁ ଲେଖଇ ଏ ଗ୍ରନ୍ଥଯାକ ମୁହିଁ ବାଣୀ
ଏଥକୁ ଦୟା କରିବେ ମୋତେ ଚକ୍ରପାଣି ।
ଏ ଗ୍ରନ୍ଥକୁ ଲେଖିବାକୁ ଲାଗୁଅଛି ଭୟ
ପୁରାଣ ପୁଣ୍ୟ କରିବେ ପ୍ରଭୁ ଦେବରାୟ ।
ଚାରିବେଦରେଟି ଗୁପ୍ତ ଅଟେ ଯେଉଁ ଅର୍ଥ
ମୋର ଜ୍ଞାନ ନୋହେ କହିଦ୍ୟନ୍ତି ଜଗନ୍ନାଥ ।
ଶୁଣ ଶୁଣ ସୁଜ୍ଞଜନେ ଏ ଗ୍ରନ୍ଥର ବାଣୀ
ବିପ୍ର ପୀତାମ୍ବର ଦାସ ପୁରାଣେ ବଖାଣି ।

* * *

## ନୃସିଂହଙ୍କ ରାସଲୀଳା

ଷୋଳସସ୍ର ବର୍ଷଲୀଳା ନୃସିଂହ ଯେ କରି
ଅବତାର ଅନ୍ତେ ବିଜେ ହେବେ ନିଜ ପୁରୀ ।
ନୃସିଂହ ରାସ ମୁଁ ଏବେ କରିବି ଲେଖନ
ବସି ସାବଧାନେ ତାହା ଶୁଣ ହେ ସୁଜନ ।
ଜୟ ଜୟ ନୃସିଂହ ହେ ଭକ୍ତ ଭାବଗ୍ରାହୀ
ସପତ ବରଷ ଲୀଳା ଲେଖିବି ଯେ ମୁହିଁ ।
କରିବି ଯେ ଶ୍ରୀ ନୃସିଂହ ରାସ ଗୀତ ରସ
ସୁଜ୍ଞ ଜନେ ଶୁଣିଲେ ହୋଇବେ ସନ୍ତୋଷ ।
ମୋର ବୁଦ୍ଧି ବଳେ ତାହା ପାରିବିକି ଲେଖି
ଲେଖବୋଲିମୋତେଆଜ୍ଞାଦେଲେ ପଦ୍ମ ଆଖି ।
ସେହି ଆଜ୍ଞାରୁ ପୁରାଣ ମୋତେ ହେଲା ଦୃଶ୍ୟ
ପଦବନ୍ଧରେ ବସାଇ କହେ ଗୀତରସ ।
ଶ୍ରୀ ନୃସିଂହ ପୁରାଣ ଏ ରସପୂର୍ଣ୍ଣ ବାଣୀ
କହନ୍ତି ନାରଦ ଗୋସାଇଁଙ୍କି କୁଶପାଣି ।
ଶ୍ରୀହରି ଚରିତ ଗ୍ରନ୍ଥ ପବିତ୍ର ଏ ସାର
କହନ୍ତି ନୃସିଂହ ରାସକେଳି ବେଦବର ।
ଶୁଣ ଆହେ ନାରଦ ଏ ନୃସିଂହଙ୍କ ରାସ
ବାଳକଭାବରେ ଯାହା କଲେ ପୀତବାସ ।
ନିତ୍ୟସ୍ଥଳେ ହୁଏ ଯେଉଁ ରାସର ବିଧାନ
ବଦ୍ରିକାନଗ୍ରେ କରନ୍ତି ତାହା ଭଗବାନ ।
ପ୍ରତ୍ୟକ୍ଷ ସେ ପରଂବ୍ରହ୍ମ ସ୍ୱୟଂ ଜାତହୋଇ
ନାୟିକାଗଣଙ୍କୁ ଘେନି ରାସକଲେ ଯାଇଁ ।
ଲେଖାରେ ଯେ ଚଉଷଠି ସହସ୍ର ନାୟିକା
କ୍ରୀଡ଼ା କରନ୍ତି ସବୁଙ୍କୁ ଘେନି ବଦରିକା ।
ଷୋଡ଼ଶ ବରଷ ମଧ୍ୟେ ଯେତେ ଲୀଳାରସ
ବାଳଭାବରେ ରମନ୍ତି ପ୍ରଭୁ ପୀତବାସ ।
ବଦ୍ରିକା ଉତ୍ତର ଭାଗେ ବହେ ଗଙ୍ଗାନଦୀ
ଆନନ୍ଦବନ ମଧ୍ୟରେ ଅଛି ଯଜ୍ଞବେଦୀ ।
ସେ ନଦୀ ଉପରେ ଯାଇ ଶ୍ରୀନୃସିଂହସ୍ୱାମୀ
ରାସ କରନ୍ତି ତହିଁରେ ନାୟିକାଙ୍କୁ ରମି ।
ନାରଦ ବୋଇଲେ ଶୁଣ ଆହେ ବେଦବର
ସେ ନାୟିକାଗଣ କାହୁଁ ହେଲେ ଅବତାର ।
ଚଉଷଠିସସ୍ର କନ୍ୟା ଉପୁଜିଲେ କାହୁଁ
ଏକଥା ଗୋଟିକ ଆଗ କହିବା ଯେ ହେଉ ।
ବ୍ରହ୍ମା ଯେ ବୋଇଲେ କନ୍ୟା ବିଷ୍ଣୁ ଅର୍ଦ୍ଧଅଙ୍ଗ
କେତେବେଳେ ନ ଛାଡ଼ନ୍ତି ପ୍ରଭୁଙ୍କର ସଙ୍ଗ ।
ବିଷ୍ଣୁ ଜନ୍ମିଲେ ସେ କନ୍ୟା ଜାତ ନିତ୍ୟସ୍ଥକୁ
ବିଜୟ କରନ୍ତି ଆସି ସେ ରାସମଣ୍ଡଳୁ ।
ସେ କନ୍ୟାମାନଙ୍କ ଜନ୍ମ ଶୁଣ ହେ ସିଦ୍ଧାନ୍ତ
ଚୌଷଠି ଅକ୍ଷର ଲେଖି ସେ ଗାୟତ୍ରୀ ମନ୍ତ୍ର ।
ଚତୁଃଷଷ୍ଟୀ ଗାୟତ୍ରୀ ଯେ ରୂପେ ଜାଣହୋଇ
ଯେକଥାଟି ସାବଧାନେ ଶୁଣ ମନଦେଇ ।

ବ୍ୟାହୃତି ଯେ ବାରବର୍ଣ୍ଣ ତ୍ରିପଦୀ ଚବିଶ
ଚୂଡ଼ା ଯେ ଚଉଦ କହି ପ୍ରବଣ ଯେ ଦଶ
ଏଥିରେ ମିଶନ୍ତେ ବ୍ରହ୍ମାକ୍ଷର ଚାରିଗୋଟି
ତେଣୁ ଗାୟତ୍ରୀଙ୍କୁ ରୂପିଲେକ ଚଉଷଠି ।
ଚଉଷଠି ଅକ୍ଷର ଯେ ପରଂବ୍ରହ୍ମ ଏକା
ସେ ଅକ୍ଷରେକ ସହସ୍ର ଜନ୍ମିଲେ ନାୟିକା ।
ଚଉଷଠି ଅକ୍ଷରରୁ ପ୍ରକାଶିଲେ ସ୍ତିରୀ
ବିପ୍ରଙ୍କ ଘରେ ଜନ୍ମିଲେ ଆସି ସେ କୁମାରୀ ।
ଶ୍ରୀହରି ଲୀଳାକୁ ପୁଣି ବ୍ରହ୍ମା ପ୍ରକାଶିଲେ
ବିଷ୍ଣୁଙ୍କ ସଙ୍ଗେ ବିହାର ସଦାଦିନ କଲେ ।
ବିଷ୍ଣୁ ବୈକୁଣ୍ଠରେ ଥିଲେ ବୈକୁଣ୍ଠେ ସେ ଥାନ୍ତି
ବିଷ୍ଣୁର ଅବତାର ହେଲେ ଅବତାର ହୋନ୍ତି ।
ସେ କନ୍ୟାମାନଙ୍କ ନାମ କହୁଁ ଏବେ ଶୁଣ
ଲକ୍ଷ୍ମୀଅଂଶ ଘେନି ଜନ୍ମି ଅଛନ୍ତି ସେ ପୁଣ ।
ହଂସିକୀ ହେମବତୀ ଯେ ମଧୁକଣ୍ଠାହାରା
ସୁରେଖା ଯେ ଚିତ୍ରରେଖା ସୁନ୍ଦରୀ ତ୍ରିପୁରା ।
କମଳା ସାରିଣୀ ସୁକୁନ୍ତଳା ଶତରୂପା
ମୋହିନୀ ଯେ ମଧୁମତୀ ମାନିନୀ ସ୍ୱରୂପା ।
ଜାନୁକା ବିମଳା ଶୋଭନିକା ମୋହନିକା
ଅପର୍ଣ୍ଣା ଅଞ୍ଜନା ଅନ୍ନପୂର୍ଣ୍ଣା କେଶନିକା ।
ଅମ୍ବୁବତୀ ଭାନୁବତୀ ରେବତୀ ସେବତୀ
ହରପ୍ରିୟା ହରିପ୍ରିୟା ହରିଣୀ ସୁକାନ୍ତି ।
ରୁକ୍ମିଣୀ ଗଉରୀ ଶିରୋମଣି ନାରାୟଣୀ
ସରୋଜିନୀ ପଦ୍ମିନୀ ଯେ ମାନିନୀ ତାରିଣୀ ।
ଚଞ୍ଚଳା ଚପଳା ପରିମଳା ଶ୍ରୀବତ୍ସଳା
କାବେରୀ ଯେ ଗୋଦାବରୀ ଗଉରୀ ସୁଶୀଳା ।
ରମା ରାମା କାମାଶ୍ୟାମା ବାମା ଯେ ସୁକାନ୍ତି
ପ୍ରମିଳା ଉର୍ମିଳା ମିଳା ବାଳା ଶୁଭ୍ରଦନ୍ତୀ ।
ହରିଣାକ୍ଷୀ ଚନ୍ଦ୍ରମୁଖୀ ବିଶାଳାକ୍ଷୀ ନୀଳା
କାମକଳା ଲୀଳାବତୀ ରତି ଶକୁନ୍ତଳା ।
ଏହିରୂପେ ଚୌଷଠି ଅକ୍ଷର ଗାୟତ୍ରୀରୁ
ଚୌଷଠି ସହସ୍ର କନ୍ୟା ଜନ୍ମିଲେ ବେଦରୁ ।
ଅବନା ଅଷ୍ଟ ଅକ୍ଷରୁ ଜାତ ଅଷ୍ଟସଖୀ
ସାକ୍ଷାତେ ପଦ୍ମିନୀ ସେବୁଥାନ୍ତି ପଦ୍ମଆଖି ।
ଅହୋରାତ୍ରରେ ସେବନ୍ତି ବିଷ୍ଣୁଙ୍କୁ ସେ ଜାଣ
ତାହାଙ୍କର ନାମମାନ କହିବା ହୋ ଶୁଣ ।
ସୁକାନ୍ତି ସ୍ୱରୂପା ସୁଲଗ୍ନା ଯେ ସୁଲକ୍ଷଣୀ
ସୁବ୍ରହ୍ମା ସୁଦୁର୍ଗା ସୁରତି ସୁରେଖା ପୁଣି ।
ଅଷ୍ଟପ୍ରହରେ ଏ ଆଠେ ଥାନ୍ତି ହରି ପାଶେ
ବିଷ୍ଣୁର ସେବାରେ ଲାଗିଥାନ୍ତି ସେ ହରଷେ ।
ଅଷ୍ଟପ୍ରହର ଯାକ ସେ ହରି ସେବୁଥାନ୍ତି
ଯେ ଯାହାର ସେବା ସେହୁ କ୍ଷଣେ ନ ଛାଡ଼ନ୍ତି ।
ବିଷ୍ଣୁଙ୍କୁ ଜଣାନ୍ତି ବେନିସଖୀ ସର୍ବକଥା
ବେନି ସଖି ଚିହ୍ନନ୍ତି ସେ ସକଳ ବ୍ୟବସ୍ଥା ।
ବେନି ସଖି ଷଡ଼ରସ କରନ୍ତି ଯେ ଲାଗି
ବେନି ସଖି ଦିବାରାତ୍ରେ ଥାଆନ୍ତି ସେ ଜଗି ।
ଅଷ୍ଟପ୍ରହରେ ସେବା ସେ ନ ଛାଡ଼ନ୍ତି କ୍ଷଣେ
ଏରୂପେ ସେବା ନ କରିପାରେ ଆନ ଜଣେ ।
ତେଣୁ ବିଷ୍ଣୁ ମାୟା ତାଙ୍କୁ ନ ଲାଗଇ ପୁଣ
ନବଯୁବା ହୋଇ ସେହୁ ସଦା ଥାନ୍ତି ଜାଣ ।
ବିଷ୍ଣୁ ଅବତାର ହେଲେ ଏମାନେ ଜନ୍ମନ୍ତି
ବିଷ୍ଣୁ ଅବତାର ଅନ୍ତେ ବୈକୁଣ୍ଠେ ଚଳନ୍ତି ।
ଏବେ ପ୍ରଭୁ ଶ୍ରୀନୃସିଂହ ନାମକୁ ଯେ ବହି
ବଦରିକାଶ୍ରମେ ଜନ୍ମିଛନ୍ତି ଭାବଗ୍ରାହୀ ।
ଶ୍ରୀନୃସିଂହ ଉତ୍ସବ ରାସର ଯେ ବିଧି
ମିଳିଲେ ନାୟିକାଗଣ ଘେନି ଦୟାନିଧି ।
ରାସର ନିତ୍ୟସ୍ଥଳୀର ପ୍ରାୟ ନିର୍ଣ୍ଣୀକଲେ
ଶୁଣିଣ ନାରଦ ତାହା ଚମତ୍କାର ହେଲେ ।
ବ୍ରହ୍ମାଙ୍କୁ ବୋଇଲେ ତେବେ କହ ସେହି ରାସ
ନିତ୍ୟସ୍ଥଳୀ ପ୍ରାୟ ମଣି କଲେ ଜଗଦୀଶ ।
ବ୍ରହ୍ମା ବୋଇଲେ ସେହି ତ ସ୍ୱୟଂ ପରଂବ୍ରହ୍ମ
ଜନନୀଙ୍କୁ କହି ଗର୍ଭେ କଲେକ ବିଶ୍ରାମ ।
ମାନବ ଦେହ ବହିଣ ମର୍ତ୍ତ୍ୟେ ଛନ୍ତି ଜନ୍ମି
ସେହି କଥା ଶୁଣ ଏବେ ହେ ନାରଦ ମୁନି ।
ଯେଉଁରୂପେ ଆସି ବସିଲେ ବନେ ଯଜ୍ଞବେଦୀ
ନିତ୍ୟରାସ କଲେ ଘେନି ବିପ୍ରକନ୍ୟା ଆଦି ।
ଶେଷଦେବ ବିଜେକଲେ ସହସ୍ରେ ଫଣା ଧରି
ତହିଁ ଉପରେ ଆସନ କରିବେ ଶ୍ରୀହରି ।
ସେଠାର ବିଷୟ ବୁଝି କହିବା ପ୍ରସଙ୍ଗ
ଯେବଣ ମାର୍ଗରେ ରାସ କରିବେ ନୃସିଂହ ।
ଆଶ୍ୱିନ ପୂର୍ଣ୍ଣିମା କୁମାରୀକା ପୂର୍ବ ଅନ୍ତେ
କାର୍ତ୍ତିକ ସ୍ନାନକରି ଯେ ଚଳନ୍ତି ସମସ୍ତେ ।
ଚୌଷଠି ସହସ୍ର କନ୍ୟା ରୂପବତୀ ବାଳୀ
ନିତି ନିତି ସ୍ନାନକରି ଯାନ୍ତି ଗୃହେ ଚଳି ।
ଏମନ୍ତେ ସ୍ନାନ ପଚିଶଦିନ ବହିଯାନ୍ତେ
ଛବିଶ ଦିନରୁ ସଜହେଲେ ଯାତ୍ରାକୃତେ ।

କାର୍ତ୍ତିକ ଶୁକ୍ଳ ଦଶମୀ ରାତ୍ର ଅବକାଶୁଁ
ନିଶି ଥାଇ ସଜହୋଇଗଲେ ଗୃହବାସୁଁ ।
ବିପ୍ରଙ୍କ ଦୁହିତା ସେହୁ ନିତ୍ୟସ୍ଥଳୀ ବାଳୀ
ଚହଳକରି ପାରନ୍ତି ଦାଣ୍ଡେ ହୁଳହୁଳି ।
ବୋଲନ୍ତି କରିବା ଯାତ୍ରା ଆସ ଆଜିଠାରୁ
ଲଭିବା ମାସକ ସ୍ନାନ ଫଳ ପୂଜା କରୁ ।
କର୍ପୂର ଗନ୍ଧ ଅଗୁରୁ ଚଳନକୁ ଧରି
ପୂଜା ଦ୍ରବ୍ୟମାନ ଧରିଗଲେ ସର୍ବନାରୀ ।
ଡକା ଡକି ହୋଇ ଚଳିଯାନ୍ତି ରାଜଦାଣ୍ଡେ
ହରିବୋଲ ଶବ୍ଦକରି ଯେ ଯାହାର ତୁଣ୍ଡେ ।
ଚାଲନ୍ତି ଖେମଟା ନୃତ୍ୟକରି ଗୀତ ଗାଇ
ମାରନ୍ତି ଆଖିପତା ମୁରୁକିହସା ଦେଇ ।
ଗାବନ୍ତି ରାଗିଣୀ ଟେକି ଧରି ଖୋଳ ତାଳ
ଚହଟି ପଡୁଛି ବଦରିକା ଦେଶସ୍ଥଳ ।
କୁହାଟି କୁରୁଳି ଚାଲୁଛନ୍ତି ଯୋଡ଼ି ଯୋଡ଼ି
କେ କାହାର ପାଦଝୁଣ୍ଟି ପଡ଼େ ମୁହଁମାଡ଼ି ।
ଖେଦା ଖେଦା ପୁଞ୍ଜା ପୁଞ୍ଜା କୁଦା କୁଦି ହୋନ୍ତି
ପଳାଇ ଆଗରୁ କେହି ପଛଘୁଞ୍ଚା ଦ୍ୟନ୍ତି ।
କାହାର ଉପରେ ବୋଲି ବସଇକେ ଗନ୍ଧ
କେ ଆଖିବୁଜି ବାଟରେ ଚାଲେ ହୋଇ ଅନ୍ଧ ।
କେହି ମନ ହରଷରେ ଚାଲେ ଗୀତଗାଇ
କେ ବୋଲେ ଗୋଡ଼ାଅ ଆଲୋଆଗେ ଯାଅଧାଇଁ ।
ଲୁଚାଦେଇ ଡରାଅ ଯେ କେବଣ ପରଖୀ
ଏରୂପେ ହରଷେ ମାତିଗଲେ ସର୍ବ ସଖୀ ।
ବୋଲନ୍ତି ଚାଲ ତୋଳିବା ବନୁ ଫୁଲ ଆଗ
ଯଜ୍ଞବେଦୀରେ ସ୍ଥାପିଣ ପୂଜିବା ନୃସିଂହ ।
ଆବର ନୃସିଂହ ଶିରେ ବାନ୍ଧି ଫୁଲଗଭା
ତେବେ ସେହି ରୂପ ଦେଖି ସର୍ବେତୋଷହେବା ।
ଏରୂପେ ପାଞ୍ଚ ମିଳିଲେ ସର୍ବେ ବନେ ଯାଇ
ତୋଳିଲେକ ଚଢ଼ି ଫୁଲ ଡାଳେଡାଳେ ଡେଇଁ ।
ଚମ୍ପା ବକୁଳ ମାଳତୀ ମଲ୍ଲୀ କନିଅର
କେତକୀ କିଆ ଟଗର କୁନ୍ଦ ନାଗେଶ୍ବର
କଞ୍ଚନ ବଉଳ ପାରିଜାତ କୁରୁବେଲୀ
ପୁନାଗ ପଦ୍ମ ମନ୍ଦାର ଜାଇ ବଣମଲ୍ଲୀ ।
ମରୁଆ ଗଙ୍ଗଶିଉଳି ଛୁରୀଅନା ଯୁଇ
ମାଧବୀ ତରାଟଫୁଲ ଉତ୍ପଳ ଯେ କଇଁ ।
ସେବତୀ ପାଟଳୀ ପୁଣି ତୁଳସୀ ଦୟଣା
କେଶର ପୁଷ୍ପ ତୋଳନ୍ତି ସର୍ବ ବାରଙ୍ଗନା ।
ନାୟିକାଗଣଯାକ ଯେ ହୋଇ ଏକଠୁଳ
ଦ୍ୱିସରି ତ୍ରିସରି କରି ଗୁନ୍ଥି ଫୁଲମାଳ ।
କେହୁ କରେ ଚଉସରି କେହୁ ନବସରି
କେହୁ ମାଳ ଗୁନ୍ଥଇ କେ ବାନ୍ଧଇ କବରୀ ।
କାହା ଫୁଲଗୁଚ୍ଛା ଅଟେ ଗଣ୍ଠି ଗଣ୍ଠି ପଡ଼ି
କେ ବିନା ସୂତାରେ ଫୁଲ ଗୁନ୍ଥେ ଧାଡ଼ି ଧାଡ଼ି ।
କେ ହରଗଉରା ଫୁଲ ଗୁନ୍ଥି ମାଳ ମାଳ
ଏଥିଉତ୍ତାରେ ଯେ ବାଣୀ ଶୁଣ ତପଶୀଳ ।
ସ୍ତ୍ରୀରୀଙ୍କର କଥା ପ୍ରଭୁ ହୃଦପଦ୍ମେ ଜାଣି
ଶଯ୍ୟାରୁ ଉଠିଲେ ନିଦ୍ରା ତେଜି ଚକ୍ରପାଣି ।
ମାତାଙ୍କର ମନ ମୋହି ଗଲେ ନାରାୟଣ
ଶେଷଦେବଙ୍କୁ ଘେନି ଯେ ପ୍ରଭୁ ସଙ୍ଗତେଣ ।
ମନେ ପାଞ୍ଚନ୍ତି ଆନନ୍ଦବନେ ଆଗେ ଯିବା
ନାୟିକାଗଣଙ୍କୁ ଆଗ ରାସ ଦେଖାଇବା ।
ଏମନ୍ତ ମନରେ ପାଞ୍ଚି ଘରୁ ବେନିଭାଇ
ଗଲେ ଦାଣ୍ଡେ ଖେଳିବାକୁ ମାତା ଆଗେ କହି ।
ଯଜ୍ଞବେଦୀରେ ମିଳିଲେ ଯାଇ ବ୍ରହ୍ମରାଶି
ଚାହିଁଲେ ନାୟିକାମାନେ ବନେ ଛନ୍ତି ପଶି ।
ନୃସିଂହ ବିଜେ କରିବା ଦେଖି ଅଷ୍ଟସଖୀ
ରହିଲେ ସେବାରେ ଲାଗି ପାଦପଦ୍ମ ଦେଖି ।
ଅଷ୍ଟପ୍ରହରେ ସେବି ଯେ କରନ୍ତି ମାଜଣା
ଏଥିଉତ୍ତାରୁ ବୋଇଲେ ପ୍ରଭୁ ବ୍ରହ୍ମବୀଣା ।
ତ୍ରିଭଙ୍ଗୀ ଛନ୍ଦରେ ବସି ବୀଣା ଧରି ଭୁଜେ
ସପତ ସ୍ୱରରେ ନାଦ ଟେକି ଦେବରାଜେ ।
ସେ ସ୍ୱରମାନଙ୍କ ନାମ କହୁ ମଧ୍ୟ ଶୁଣ
କର୍ମ ଧର୍ମ ଜ୍ୟୋତି ଜ୍ୱାଳା ଚାରି ଅଟେ ପୁଣ ।
ଓଁକାର ସକ୍ାର ହକାର ଯେ ମିଶି ସାତ
ଏହି ସାତସ୍ୱରୁଁ ବ୍ରହ୍ମଶବ୍ଦ ହୁଏ ଜାତ ।
ଟେକନ୍ତେ ଏ ସାତସ୍ୱର ପ୍ରଭୁ ବୀଣାନାଦ
ଚମକି ପଡ଼ିଲେ ବନମଧ୍ୟେ ସ୍ତିରୀବୃନ୍ଦ ।
ପାଷାଣମାନେ ତରଳ ହୋଇଗଲେ ଉଡ଼ି
ଶୁଖିଲା ତରୁପଲ୍ଲବ ଧଇଲେକ କଢ଼ି ।
ତିନିପୁର ଲୋକେ ଶୁଣି ହୋଇଲେ ସ୍ତବଧ
ପିତା ମାତା କର୍ଣ୍ଣକୁ ନ ଶୁଭେ ଏକା ନାଦ ।
ଏଥୁ ଅନନ୍ତରେ ଶୁଣ ସେ ନାୟିକାଗଣ
ବୀଣାର ଧ୍ୱନି ଶୁଣିଣ ଅଇଲେ ତତ୍କ୍ଷଣ ।
ଗୁନ୍ଥିକରି ନାନାପୁଷ୍ପ କରେ ଛନ୍ତି ଧରି
ଦେଖିଲେ ବେଦୀରେ ବସିଛନ୍ତି ନରହରି ।

ଯାବତ ପୁଷ୍ପ ମଣ୍ଡିଲେ ନେଇ ପ୍ରଭୁ ଶିରେ
କରନ୍ତି ଯେ ମହାସ୍ତୁତି ରହି ପ୍ରେମଭରେ ।
ବୋଲନ୍ତି ଏ ଅବତାର ଆମ୍ଭର ନିମିତ୍ତେ
ନୃସିଂହ ସ୍ୱାମୀ ଜନମ ଆସି ହେଲେ ମର୍ତ୍ତ୍ୟେ ।
ଭକ୍ତଙ୍କ ହିତରେ ପ୍ରଭୁ ସଦାକାଳେ ଥାନ୍ତି
ସାଧୁଙ୍କୁ ପାଳିବା ଅର୍ଥେ ଅବତାର ହୋନ୍ତି ।
ମୁଗ୍‌ଧସ୍ୱରେ ପ୍ରଭୁଙ୍କର ଶୁଭେ ବ୍ରହ୍ମବୀଣା
କି ସ୍ନାନକରିବୁ ଆମ୍ଭେ ଶୁଣି ହେଲୁଁ ବଣା ।
ପ୍ରେମନୀରେ ବୁଡ଼ିଯାଇ ହୋଇ ଅସମ୍ଭାଳ
ଥବିର ହେଲୁଁ ପ୍ରଭୁଙ୍କୁ ଦେଖି ବେନିଡ଼ୋଳ ।
ଏ ମାୟା ଗୋଟି ଆମ୍ଭର ଅଙ୍ଗୁ କର ଦୂର
ସର୍ବଦା ସେବାରେ ଥିବୁଁ ନୋହିଣ ଅନ୍ତର ।
ଶୁଣିଣ ହସି କହନ୍ତି ପ୍ରଭୁ ନାରୟଣ
ବୋଇଲେ ଗୋ ଆସ ଯାଇକରି ପ୍ରାତଃସ୍ନାନ ।
ସ୍ନାନ ସାରିଲେ କରିବା ସିନା ବିଷ୍ଣୁସେବା
ତେବେ ଯାଇ ତୁମ୍ଭ ଅଙ୍ଗୁ ମାୟା ଛଡ଼ାଇବା ।
କାର୍ତ୍ତିକ ସ୍ନାନର କୃତ୍ୟ କର ଯାଇ ଆଗ
ସ୍ନାନ ସାରିଲେ ପୂଜିବ ସିନା ନରସିଂହ ।
ଶୁଣିଣ ଯୁବତୀମାନେ ସନ୍ତୋଷ ହୋଇଲେ
ପୂଜାଦ୍ରବ୍ୟଯାକ ଯଜ୍ଞବେଦୀରେ ଥୋଇଲେ ।
ଅଷ୍ଟସଖୀ ଏକା ଯେ ନ ଗଲେ ସ୍ନାନକରି
ରହିଲେ ସେ ପ୍ରଭୁ ପାଶେ ସେବାକୁ ଆବୋରି ।
ନ ଲାଗେ ବିଷ୍ଣୁର ମାୟା ତାଙ୍କୁ ଏକା ଜାଣ
ରହିଲେ ତେଣୁ ନୃସିଂହ ସେବାରେ କାରଣ ।
ନାୟିକାଗଣେ ଲାଗିଲା ବିଷ୍ଣୁ ମାୟା ମୋହ
ତେଣୁ ସ୍ନାନ କରନ୍ତି ସେ ବହି ନରଦେହ ।
ଜାହ୍ନବୀ ଜଳରେ ପଶି କଲେ ସର୍ବେ ସ୍ନାନ
ଦେଖିଲେ ତହିଁ ନୃସିଂହଙ୍କର ଜ୍ୟୋତିବର୍ଣ୍ଣ ।
ଶଙ୍ଖ ଚକ୍ର ଗଦା ପଦ୍ମ ଚତୁର୍ଭୁଜ ହୋଇ
ଜଳ ଭିତରେ ସେ ଦେଖା ଦେଲେ ଭାବଗ୍ରାହୀ ।
ଚୌଷଠିସସ୍ର ନୃସିଂହ ଏକା ରୂପ ଦିଶେ
ଲଭି ଯୁବତୀ ଦେଖନ୍ତି ମନର ହରଷେ ।
ବୋଲନ୍ତି ନୃସିଂହ ଯଜ୍ଞବେଦୀରେ ତ ଥିଲେ
କି ରୂପେ ଏ ଜଳ ଭିତରକୁ ବିଜେକଲେ ।
ଏତେ ବୋଲି ନାରୀଗଣ କୂଳେ ଉଠି ଚାହିଁ
ଦେଖିଲେ ବେଦୀରେ ବୀଣା ଶୁଭୁଯେ ଅଛଇ ।
ବଜାନ୍ତି ଯେ ବ୍ରହ୍ମବୀଣା ସପ୍ତସ୍ୱରେ ଟେକି
ସେଠାରୁ ଶ୍ରୀମୁଖଗୋଟି ଦିଶଇ ଝଟତି ।
ଦେଖି କନ୍ୟାଏ ଲେଉଟି ଜଳେ ଗଲେ ବୁଡ଼ି ।
ଚାହିଁଲେ ବିଷ୍ଣୁଙ୍କ ପାଦେ ବ୍ରହ୍ମା ଛନ୍ତି ପଡ଼ି ।
ଯାବତ ଋଷି ଅଛନ୍ତି ସେବାରେ ଯେ ଲାଗି
କୋଳେ ବିଜେକରିଛନ୍ତି ଦେବୀ କୋମଳାଙ୍ଗୀ
ଶଙ୍ଖ ଚକ୍ର ଗଦା ପଦ୍ମ ଶ୍ରୀବତ୍ସଲାଞ୍ଛନ
ପାଦରେ ବିରାଜଇ ଶ୍ରୀ ଅଷ୍ଟାଦଶ ଚିହ୍ନ ।
କମ୍ବୁ ଗୋଷ୍ପଦ ରେଣୁ ଯେ ପାଶାଙ୍କୁଶ ଦିଶେ
କୋଦଣ୍ଡ କଳସ ଧ୍ୱଜ ଶାରଙ୍ଗ ପ୍ରକାଶେ ।
ଖଡ଼ଗ ବଜ୍ର ମୂଷଳ ସାୟକ ଲଙ୍ଗଳ
ଏରୂପେ ବୁଡ଼ି ଦେଖନ୍ତି ଜଳେ ସ୍ତିରୀକୁଳ ।
ମନରେ ପାଞ୍ଚନ୍ତି ହରି ଯଜ୍ଞବେଦୀ ଛାଡ଼ି
ଲୁଚି ଏବେ ଆସି କିବା ଜଳେ ଛନ୍ତି ବୁଡ଼ି ।
ଏତେ ପାଞ୍ଚି ଉଠିଗଲେ କୂଳକୁ ସେ ବାଳୀ
ଦେଖିଲେ ନୃସିଂହ ବେଦୀପରେ ଛନ୍ତି ମିଳି ।
ଶ୍ରୀନୃସିଂହ ପ୍ରଭୁଙ୍କର ପ୍ରତିଜ୍ଞା ଯେ ଦେଖି
ଚମତ୍କାର ହୋଇ ଚଳିଗଲେ ସର୍ବସଖୀ ।
ସୁବେଶ ହୋଇଣ କୂଳେ ନୂଆବାସ ପିନ୍ଧି
ଅସମ୍ଭାଳ ହୋଇ ବେଗେ ସାରି ସ୍ନାନବିଧି ।
ଓଦା ବସନକୁ ନାରୀ କୂଳେ ନେଇ ଥୋଇ
ମିଳିଲେ ଯଜ୍ଞବେଦ ରେ ସର୍ବବାଳୀ ଯାଇ ।
ରାତ୍ର ଦିବସ ତହିଁ ଯେ ଦିଶେ ଏକ କାୟେ
ତାହା ଦେଖିଣ ଚକିତ ହେଲେ ନାୟିକାୟେ ।
ପୁଣି ଦେଖିଲେ ନୃସିଂହ ରାହାସ ମଣ୍ଡଳ
ପ୍ରତ୍ୟକ୍ଷେ ହୋଇଛି ଯଜ୍ଞବେଦୀ ନିତ୍ୟସ୍ଥଳ ।
ଶେଷଦେବ ହୋଇଛନ୍ତି ଯେ ଅନନ୍ତଶାୟୀ
ଲକ୍ଷ୍ମୀଙ୍କୁ କୋଳରେ ଘେନିଛନ୍ତି ଭାବଗ୍ରାହୀ ।
ଛତ୍ର ଆକାରେ ଅଛନ୍ତି ଶେଷ ଫଣା ଡାଙ୍କି
ପ୍ରଭୁଙ୍କୁ ସେବୁଅଛନ୍ତି ଶିରୋପରେ ଟେକି ।
ହୋଇଛି ନୃସିଂହ ସିଂହାସନ ଯଜ୍ଞବେଦୀ
ଅଟନ୍ତି ସେ ସିଂହାସନ ଦ୍ୱାରୀ ସନକାଦି ।
ରାସସ୍ଥାନେ ଗଡ଼ ହୋଇଅଛି ସତ୍ୟଯୁଗ
ପବନ ଯେ ଅଣଚାଶ ବହେ ବନମାର୍ଗ ।
ରାସସ୍ଥାନ ହୋଇଅଛି ସେହି ନୃସିଂହର
ଷୋଡ଼ଶ ଆନନ୍ଦବନେ ଲାଗିଛି ବିହାର ।
ସେ ସ୍ଥାନରେ ଶ୍ରୀହରିର ରାସ ରସକେଳି
ବଜାନ୍ତି କଳପବଟେ ବୀଣା ନାଦ ତୋଳି ।
ଯହିଁ ଜୀବଯାକ ଛନ୍ଦିଅଛି ଆତ୍ମା ଘେନି
ସେ ବୀଣାସ୍ୱର ଅମୃତ ଦ୍ରାବେ ଶୁଭେ ଧ୍ୱନି ।

ଅଛନ୍ତି ଛପନକୋଟି ବର୍ଣ୍ଣେ ଯେତେ ଜୀବ
ସମସ୍ତ ଆତ୍ମାରେ ବାଜେ ବ୍ରହ୍ମବୀଣା ଭାବ ।
ସେ ବୀଣା ହୃଦଗତେ ନ କଲେ ବେଦଧ୍ୱନି
ଖସନ୍ତି ଶରୀରୁ ଜୀବ ପରମକୁ ଘେନି ।
ଏ ବୀଣା ସୂତ୍ରବନ୍ଧନରୁ ସରୁ ବାଦ୍ୟ ବାଜେ
ଯାଦବ କୀର୍ତ୍ତନ ନୃତ୍ୟ ଗୀତ କଥା ସାଜେ ।
ଦେହ କଳ୍ପବଟ ବୁଝି ପାରିଲେଟି ସତ
ମରନ୍ତି ନ ଚିହ୍ନି ନିଜ ଦେହ ଲୋକେ ବ୍ୟର୍ଥ ।
ଏମନ୍ତ ବାଜନ୍ତେ କଳ୍ପବଟ ବୀଣାଧ୍ୱନି
ଆନନ୍ଦ ବନ ଚହଟି ପଡ଼େ ପୁର ତିନି ।
ଷୋଡ଼ଶ ଆନନ୍ଦବନ କହିବା ହୋ ଶୁଣ
ଶ୍ରୀବିଶ୍ୱନନ୍ଦନ ବନ ଅଟେ ପ୍ରଥମେଣ ।
ସେ ବନ ମଧ୍ୟେ ସୁଜ୍ଞାନ ନାମେ ହ୍ରଦ ଅଛି
ଲକ୍ଷ୍ମୀଙ୍କି ଘେନି ତହିଁରେ ବିହରେ ଶ୍ରୀବତ୍ସି
ତହିଁର ମଧ୍ୟେ ଆନନ୍ଦ କାମେ ଅଛି ବନ
ଚଉଷଠି ସସ୍ର କନ୍ୟା ବିହାର ସେ ସ୍ଥାନ ।
ରମ୍ୟକ ଆନନ୍ଦବନେ ଲାଗିଅଛି ରାସ
କାମ୍ୟକ ଆନନ୍ଦବନେ କାମକେଳି ରସ ।
ତ୍ରିକୂଟ ଆନନ୍ଦବନେ ଅଛଇ ଆଛାଦି
ବହୁଛି ତ୍ରିବେଣୀଧାର ଗଙ୍ଗା ତହିଁ ଭେଦି ।
ଆବର ବନ ଯେ ଅଷ୍ଟ ଦଳକୁଟି କହି
ଅଷ୍ଟଦଳରେ କମଳ ଅଷ୍ଟ ଫୁଟିଥାଇ ।
ଅଷ୍ଟସଖୀଙ୍କର ସ୍ଥାନ ଅଟେ ଅଷ୍ଟଦଳ
ତହିଁ ବିହାର କରନ୍ତି ନିତ୍ୟ ଆଦିମୂଳ ।
ନୃସିଂହ ରାସ ପ୍ରକାଶ ସେ ସ୍ଥାନରେ ହୋଏ
ଦ୍ୱାଦଶ ମାର୍ଗରେ ବୀଣା ବାଜେ ଠାଏ ଠାଏ ।
ଚିତ୍ରକୂଟ ନାମେ ଯେ ନନ୍ଦନବନ କହି
ସୀତାଙ୍କୁ ଘେନି କରନ୍ତି ରାସକ୍ରୀଡ଼ା ତହିଁ ।
ଲାଗିଛି ପ୍ରେମ ଆନନ୍ଦବନେ ପ୍ରେମଲୀଳା
ଅଛନ୍ତି ଚୌଷଠିସସ୍ର କନ୍ୟା ପ୍ରେମଶୀଳା ।
ଗୋଲକ ଆନନ୍ଦବନ ଥାନ୍ତି ତହିଁ ପାଶେ
କରନ୍ତି ଅଷ୍ଟପ୍ରହରୀ ଲୀଳା ଜଗଦୀଶେ ।
ଏରୂପେ ଆନନ୍ଦବନ ଷୋଳଗୋଟି ଲେଖା
ନୃସିଂହଙ୍କ ପରିଚାର ପୁଣି ଅଷ୍ଟସଖା ।
ସଖାମାନଙ୍କର ନାମ କହିବା ଏ ଭେଦ
ସୁନନ୍ଦ ଆନନ୍ଦ ବସୁନନ୍ଦ ଯୋଗାନନ୍ଦ ।
ସଦାନନ୍ଦ ପ୍ରେମାନନ୍ଦ ଯେ ମାନବାନନ୍ଦ
ବ୍ରହ୍ମାନନ୍ଦ ଘେନି ଆଠଗୋଟି ସଖାବୃନ୍ଦ ।

ଯେବଣ କଳପବଟେ ବାଜେ ବ୍ରହ୍ମବୀଣା
ଉଲଟ ତରୁଟି ସେହି ଅଟେ ଜଗଜ୍ଜିଣା ।
ସେଠାରେ କରନ୍ତି ନିତ୍ୟେ ଅଷ୍ଟସଖୀ ସେବା
ତାଙ୍କ ଜପ ତପ ଜାଣ ପରଶର ପ୍ରଭା ।
ଏମନ୍ତ ମୂର୍ତ୍ତି ତାଙ୍କର ଏକା ବ୍ରହ୍ମଜ୍ଞାନ
ଶ୍ରୀନୃସିଂହ ମହାମନ୍ତ୍ର କରନ୍ତି ଭଜନ ।
ଶ୍ରୀ ପୁରୁଷୋତ୍ତମେ ଅଛି ଯେଉଁ ପ୍ରଭୁ ମୂର୍ତ୍ତି
ପ୍ରତ୍ୟକ୍ଷେ ଶ୍ରୀନୃସିଂହ ସେ ପ୍ରଭୁ ଜଗଜ୍ୟୋତି ।
ସେଠାରେ ଗରୁଡ଼ ଜାଣ ଅଟେ ନିଜ ଦ୍ୱାରୀ
ରମ୍ୟକ ଆନନ୍ଦବନେ ଅଛି ବିଜେକରି ।
ଅଛନ୍ତି ସେ ନିତ୍ୟରାହାସରେ ମହେଶ୍ୱର
ଶିବଗଣ ଘେନି ତହିଁ କରନ୍ତି ବିହାର ।
ଶ୍ରୀବାଞ୍ଛାବଟ ଦ୍ୱାରରେ ଅଛି ଲକ୍ଷ୍ମୀକୁଣ୍ଡ
ତହିଁରେ ସ୍ନାନକଲେ ନ ଲାଗେ ଯମଦଣ୍ଡ ।
ଅନନ୍ତ ମଣ୍ଡପ ବୋଲି ଯେଉଁ ନିଜସ୍ଥାନ
ସାକ୍ଷାତେ ବୈକୁଣ୍ଠ ତହିଁ ବିଜେ ଭଗବାନ ।
ସେ ବୈକୁଣ୍ଠେ ଅଛି ଦେବ ନାଶ ଯେ ବଟ ।
ଗୁପତେ ରହିଅଛି ସେ ନୋହିଣ ପ୍ରକଟ ।
ଆଉ ଅଷ୍ଟ ସ୍ତମ୍ଭ ଅଛି ତହିଁ ଜାଣିଥାଅ
ମେରୁ ଆଦି ଅଷ୍ଟକିଳା ଅଟେ ବିଷ୍ଣୁଦେହ ।
ତହିଁର ମଧରେ ଖମ୍ବ ଅଛି ଯେଉଁ ଚାରି
ବ୍ରହ୍ମା ବିଷ୍ଣୁ ଈଶ୍ୱର ଯେ ଛନ୍ତି ଆଦିନାରୀ ।
ଆବର ଅଛି ସୁଧର୍ମା ନାମେ ତହିଁ ସଭା
ବସି ଭଜିଲେ ଲଭିବ ତହିଁ ବିଷ୍ଣୁ ପ୍ରଭା ।
କହିବା ପୂର୍ବଦ୍ୱାରର କଥା ଏବେ ଶୁଣ
ସେଠାବରେ ସିଂହଦ୍ୱାରୀ ଅଟେ ଧାତା ଜାଣ ।
ଅ ବ ଶ ଅଷ୍ଟ ଅକ୍ଷର ଭଜନା ଯେ ତହିଁ
ଶ ଷ ବ ଦ ପର ରଜ ଅଟେ ଜାଣ ଏହି ।
ଶ ଷ ବେନି ଅକ୍ଷରଟି ସ୍ୱୟଂ ସଦାଶିବ
ବ ଦ ଏ ଅକ୍ଷରଂ ବେନି ପ୍ରତ୍ୟକ୍ଷରେ ଜୀବ ।
ପ ର ଯେ ବ୍ରହ୍ମସ୍ୱରୂପ ଦେବେ ହୋଏ ଲେଖା
ର ଜ ସ୍ୱୟଂ ବିଷ୍ଣୁ ଅବତାର ହୋଏ ଏକା ।
ଏ ଅଷ୍ଟାକ୍ଷର ଭଜନ ଗାୟତ୍ରୀ ସ୍ମରଣ
ଛବିଶ ଅକ୍ଷର ଯେହୁ ଅଟଇ ପ୍ରମାଣ ।
ଦକ୍ଷିଣଦ୍ୱାରେ ସାବିତ୍ରୀ ମାତା ପୁଣି ଦ୍ୱାରୀ
ଏକାକ୍ଷର ମହାମନ୍ତ୍ର ଭଜନ ସେ କରି ।
ପଶ୍ଚିମଦ୍ୱାରେ କେତୁକା ସୁନ୍ଦରୀର ସ୍ଥାନ
ଷୋଳଚନ୍ଦ୍ର ତହିଁରେ ଯେ ଜଗନ୍ତି ପ୍ରମାଣ ।

ଉତ୍ତରଦ୍ୱାରେ ଦ୍ୱାଦଶ ଆଦିତ୍ୟ ଯେ ଜାଣ
ସବୁବେଳେ ଉଦେ ତହିଁ ସହସ୍ର କିରଣ ।
ତହିଁର ପାଶେ ଅଛଇ ଯେଉଁ ରୋଷଘର
ସଦାବେଳେ ତହିଁ ରହିଥାନ୍ତି ବୈଶ୍ୱାନର ।
ପାକସିଦ୍ଧ ହେଲେ ପୂଜା କରି ଅନ୍ନପୂର୍ଣ୍ଣା
ବିଷ୍ଣୁ ସେହି ଭୋଗ ଲାଗି କରନ୍ତି ଅର୍ଚ୍ଚନା ।
ପିଛଡ଼ା ଗୋଟିକ ଜାଣ ପଡ଼ିବା ମାତ୍ରକେ
ସେହି ଭୋଗ ସେହିକ୍ଷଣି ପଡ଼ଇ ତ୍ରୈଲୋକ୍ୟେ ।
ଏହିରୂପେ ସେ ପ୍ରଭୁଙ୍କୁ ଲାଗି ହୋଏ ଭୋଗ
ଶୂନ୍ୟରୁ ପ୍ରବେଶ ଆସି ହୁଅଇ ନିଯୋଗ ।
ଆବର ଯେତେକ ରସ ସୁରସ ସୁରୁଚି
ସେ ସକଳ ଭୋଗପାକ ତହିଁ ପ୍ରକାଶିଛି ।
ଓଁକାର ଭାବରେ ତହିଁ ହୁଏ ରତି ରସ
ହକାର ସ୍ତ୍ରୀସଙ୍ଗ କରେ ସେ ନିଶି ଦିବସ
ହରେ ବୋଲିବାର ନାମ ଅଟେ ରତିରଙ୍ଗ
ରାମ ବୋଲିବାର ନାମ ଅଟେ ପ୍ରତିରଙ୍ଗ ।
କୃଷ୍ଣ ବୋଲିବାର ନାଦ ଶବଦ ପ୍ରକାଶ
ଏ ତିନିହେଁ ମିଶିବାରୁ ବୋଲି ସର୍ବରସ ।
ଏଣୁ ହରେ ରାମକୃଷ୍ଣ ଅଟେ ଏକ ଅଙ୍ଗ
ଯୁଗଳଭାବ ହୁଅନ୍ତି ସଦାବେଳେ ସଙ୍ଗ ।
ଓଁକାର ମଣ୍ଡଳ ବୋଲି ଯେଉଁ ଘର କହି
ଗୋଲକ ଭୁବନ ସେହି ଅଟେ ଜାଣ ମହୀ ।
ସେବାକାରୀ ଅଛନ୍ତି ସେ ପୁରେ ଅଷ୍ଟସଖୀ
ବିଶାଖା ଭଦ୍ରା ମେଧା ଯେ ଶ୍ରଦ୍ଧା ଶଶୀମୁଖୀ ।
ଚଞ୍ଚଳା ବିମଳା ପରିମଳା ହେମଗୋରୀ
ଓଁ କାରୁ ଏ ଅଷ୍ଟାଙ୍ଗ ବହି ବିଜେକରି ।
ସେ ଅଷ୍ଟ ସଖୀଙ୍କ ମୂଳେ ଭଣ୍ଡାର ଯେ ଅଛି
ତାଙ୍କୁ ଏକା ଖଞ୍ଜା ଦେଇଛନ୍ତି ଶିରୀବତ୍ସି ।
କୋଟିକୋଟି ନାୟିକା ଯେ ସେବାରେ ନିଯୋଗି
ଶ୍ରୀ ନୃସିଂହ ପାଦପଦ୍ମ ଲଭିବାରେ ବେଗି ।
ବୁଝିଲେ ସେହି ଭକ୍ତିରେ ପୁଂସେ ଅଙ୍ଗ ନାହିଁ
ସ୍ତିରୀ ସଙ୍ଗେ ସେବା ପୂଜା ଭୋଗରାଗହୋଇ ।
ଶ୍ରୀନୃସିଂହ ଅବତାର ଅଟେ ଅପ୍ରକଟ
ସ୍ୱାମୀ କିଶୋରୀ କେବଳ ପାଇଁ ତହିଁ ଭେଟ ।
ତହିଁର ଅର୍ଥମାର୍ଗ ହେ ଶୁଣ ସୁପଣ୍ଡିତେ
ଏଥିରେ ତ୍ରିପୁରାଙ୍କର ସେବା ଘେନି ଚିତ୍ତେ ।
ମୂଳବୀଜ ବାଣବୀଜ ଲଜ୍ଜାବୀଜ କହି
ଶ୍ରୀ ବୀଜ ଯେ ମହାବୀଜ ତ୍ରିପୁରାଟି ଏହି ।

ଏ ବୀଜ ଦେହ ମଧ୍ୟେ ଯେ ଅଛଇଟି ଜାଣ
ଆତ୍ମା ମଜ୍ଜିହୋଇ ପୁରିଅଛି ଶରୀରେଣ ।
ଅନନ୍ତ କୋଟି ଯେ ବୀର ହୋଇ ଉପୁଜୁଛି
ହରେରାମ ମହାମନ୍ତ୍ରେ ଆତ୍ମା ପ୍ରକାଶୁଛି ।
ଶ୍ରୀମହାମନ୍ତ୍ରେ ଆତ୍ମାଟି ଅନନ୍ତ ପୁରୁଷ
ଶରୀର ଚତୁର୍ଦ୍ଧାରୂପ ଧରି କରେ ବାସ ।
ବାଣବୀଜ ବୋଲିବାରେ ସୁଦର୍ଶନ କାୟା
ଲଜ୍ଜ୍ୟାବୀଜ ବୋଲିବାରେ ଅଟେ ଶତଶ୍ରିୟା ।
ଶ୍ରୀବୀଜ ବୋଲିବାରେ ଯେ ଶେଷଦେବ କହି
କାମବୀଜ ଜଗନ୍ନାଥ ଅଟେ ସର୍ବଦେହୀ ।
ତ୍ରିପୁରା ଦେହେ ଚତୁର୍ଦ୍ଧାରୂପେ ପ୍ରଭୁ ଥାନ୍ତି
ତେଣୁ ସେ ନିତ୍ୟର ଭାରା ଦେବୀ ବହିଛନ୍ତି ।
ଶୁଣ ଆହେ ଭକ୍ତଜନେ କାମବୀଜ କଥା
ଏ କାମ ପଞ୍ଚବୀଜ ଯେ ଆତ୍ମାର ବ୍ୟବସ୍ଥା ।
ଇକାର ମାତ୍ରାକୁ ଧରି ଯେ ଅଟେ ଶ୍ରୀବୀଜ
ଇକାର ମାତ୍ରା ଅଟେ ଶ୍ରୀମହାଲକ୍ଷ୍ମୀ ତେଜ ।
ଇକାର ମାତ୍ରା ଗୋଟି ଶ୍ରୀନୃସିଂହଙ୍କ ଜ୍ୟୋତ୍ସ୍ନା
ଅର୍ଦ୍ଧମାତ୍ରାପରେ ବ୍ରହ୍ମା ଗାୟତିରୀ ସିନା ।
ତହିଁପରେ ବିନ୍ଦୁଘର ଅଟେ ନିରାମିଷ
ସେ ପରଂବ୍ରହ୍ମ ଅଶେଷ ଲୋକେ କରେ ବାସ ।
ବିଲଗ୍ନ ହୋଇ ପ୍ରଭୁର ଦେହେ ଛନ୍ତି ରହି
ବେଦୁ ବାହାରେ ଅକ୍ଷରେ ଏକା ଲେଖା ନାହିଁ ।
ପଞ୍ଚାଶ ଅକ୍ଷର ହୋଏ ଯେଉଁଠାରେ ଜାତ
ବାରମାତ୍ରା ଘେନି ଦେହେ ବସଇ ଯାବତ ।
ଶବଦ ଯେ ନାଦବିନ୍ଦୁ ଶବ୍ଦ ଅଟେ ବେଦ
ଶବ୍ଦ ଅଟେ ନିରାଲମ୍ବ ଶବ୍ଦ ବ୍ରହ୍ମବଦ ।
ଏହି ଶବ୍ଦଟିକୁ ବ୍ରହ୍ମବାହିନୀ ଯେ କହି
ଶବ୍ଦ ନ ଥିବାର ଦେହ ଦେହେ ଲେଖା ନୋହି ।
ଏ ସଚରାଚର ଯାକେ ଶବ୍ଦ ଏକା ମୂଳ
ଶବ୍ଦ ସବୁ ଦେହେ ହୋଇଅଛି ଏକା ଠୁଳ ।
ଶରୀର ବହିବ ଶବ୍ଦ ଟେକନ୍ତେ ଓଁକାର
ତେଣୁକରି ବେଦମୟ ବୋଲଇ ଶରୀର ।
ଓଁକାରକୁ ବୋଲି ଜାଣଇ ଯେ ପ୍ରାଣୀ
ସେହି ସେ ବେଦର ଅର୍ଥ ପାରେ ମୁଖେ ଭଣି ।
ଏ ଘେନି ଚାରିବେଦ ଯେ ପ୍ରଣବୁଁ ବାହାର
ପ୍ରଣବ ତିନିଖଣ୍ଡ ସେ ତିନିପୁରେ ସାର ।
ଗାୟତ୍ରୀ ଅର୍ଦ୍ଧମାତ୍ରା ତ୍ରିପୁରା ନିତ୍ୟସ୍ଥଳ
ତଥିପରେ ଯୋଗନିଦ୍ରା ସେହି ଆଦିମୂଳ ।

ତ୍ରିପୁରା ତ୍ରିବିଧି ଦେହ ଅଟଇ ଓଁକାର
ଚନ୍ଦ୍ର ସୂର୍ଯ୍ୟ ବେନି ଉଦେ ହୁଅନ୍ତି ତହିଁର ।
ତେଣୁ ବେଦକୁ ଗୋଚର ନୁହେଁ ବିଷ୍ଣୁ ସମ
ନାମକୁ ଚିହ୍ନିଲା ଲୋକ ଅଟେ ବିଷ୍ଣୁ ସମ ।
ବେଦର ତତ୍ତ୍ୱଯାକ ଯେ ଅଟେ ନାମସାର
ଯେଉଁ ଜନ ନାମ ଭଜେ ସେ ବ୍ରହ୍ମଣ୍ୟ ନର ।
ଏ ଘେନି ସଂସାରେ ନାମ ବ୍ରହ୍ମ ଅଛି ପୁରି
ଜୀବ ପରମ ଭାବରେ ଭଜେ ମନ୍ତ୍ର ଧରି ।
ଏ ବୀଜ ମନ୍ତ୍ରକୁ ଚିହ୍ନି ଭଜେ ଯେହୁ ମୁଖେ
ଲଭଇ ନୃସିଂହ ପାଦପଦ୍ମ ସେ ପ୍ରତ୍ୟକ୍ଷେ ।
ଶ୍ରୀ ମହାଲକ୍ଷ୍ମୀଙ୍କ ଅଙ୍ଗ ଲଭେ ଜ୍ଞାନସେବା
ସେ ମହାଭକ୍ତି ଜ୍ଞାନ ନ ପାନ୍ତି ସୁରଦେବା ।
ସୁମେଧା ଅଙ୍ଗେ ହୁଅଇ ଯାର ପ୍ରେମ ଲୟେ
ସେ ପ୍ରାଣୀ ନିଶ୍ଚେ ବିଷ୍ଣୁରେ ଜାଣ ଲୀନହୋଏ ।
ବିମଳ ବୋଲିଣ ଜାଣ ସେହି ଠାକୁରାଣୀ
ପ୍ରତ୍ୟକ୍ଷେ ସେ ଲକ୍ଷ୍ମୀଅଂଶ ଅଟେ ଗୋସାମଣି ।
ତାହାଙ୍କ ପାରୁଶେ ଅଛି ଯେଉଁ ଗୁହାଶ୍ରମ
ତହିଁରେ ଅଛନ୍ତି ରହି ଶ୍ରୀମଲ୍ଲିକା ନାମ ।
ଅଟଇ ଶ୍ରୀ ସରସ୍ୱତୀ ମାତା ନାମ ଯାର
ପ୍ରତ୍ୟକ୍ଷେ ତ୍ରିପୁରା ସେ ଓଁକାର ମନ୍ତ୍ରସାର ।
ମହାଲକ୍ଷ୍ମୀ ବୋଲିକରି ଯେଉଁ ଶତକ୍ରିୟା
ପ୍ରତ୍ୟକ୍ଷେ କମଳା ସେହୁ ଅଟେ ହରିପ୍ରିୟା ।
ପଶ୍ଚିମଦିଗରେ ମୂର୍ତ୍ତି ଅଛନ୍ତି ଯେବଣ
ପ୍ରତ୍ୟକ୍ଷେ ଗୋବିନ୍ଦ ସେହି ପ୍ରଭୁ ନାରାୟଣ ।
ଉତ୍ତର ଦିଗ ବନରେ ପ୍ରକାଶ ଯା ହୁଏ
ସେ ବିଶ୍ୱ ଆନନ୍ଦବନ ନାମଟି ବୋଲାଏ ।
ଦକ୍ଷିଣଦିଗେ ଅଛନ୍ତି ଯେଉଁ ଭାବଗ୍ରାହୀ
ଗୋମୁଖୀ କେଶବ ନାମ ତାହାଙ୍କୁ ଯେ କହି ।
ପୂର୍ବଦିଗେ ବିଜେ କରିଛନ୍ତି ଯେଉଁ ପ୍ରଭୁ
ବୁଝିଲେ ସେହି ପ୍ରତ୍ୟକ୍ଷେ ଅଟନ୍ତି ସ୍ୱୟମ୍ଭୁ ।
ତ୍ରିପୁରା ପାଶେ ଅଛନ୍ତି ଯେଉଁ ଠାକୁରାଣୀ
ପ୍ରତ୍ୟକ୍ଷେ ଲକ୍ଷ୍ମୀ ଅଟନ୍ତି ସେହି ଗୋସାମଣି
ମୁକତିଶାଳା ବୋଲିଟି ଯାର ନାମ କହି
ବୈକୁଣ୍ଠପୁରକୁ ଅଟେ ସେ ପବିତ୍ର ମହୀ ।
ଚାରିବେଢ଼ର ପାଚେରୀ ଅଟେ ଯେଉଁ ମାର୍ଗ
ବୁଝିଲେ ପ୍ରତ୍ୟକ୍ଷେ ସେହି ଅଟେ ଚାରିମେଘ ।
ଆବର୍ତ୍ତକ ବୋଲି ଯେଉଁ ମେଘ ନାମ କହି
ପୂର୍ବଦିଗର ସେ ବେଢ଼ା ପାଚେରୀ ବୋଲଇ ।

ଦକ୍ଷିଣଦିଗ ପାଚେରୀ ଅଟେ ମେଘ ଦ୍ରୋଣ
ପଶ୍ଚିମଦିଗ ପାଚେରୀ ସମ୍ବର୍ତ୍ତକ ଜାଣ ।
ଉତ୍ତରଦିଗ ପାଚେରୀ ଯେଉଁ ବେଢ଼ା ଦୀର୍ଘ
ପ୍ରତ୍ୟକ୍ଷ ଅଟଇ ଜାଣ ସେ ପୁଷ୍କର ମେଘ ।
ତହିଁର ପାରୁଶେ ଅଛି ଯେଉଁ ଗୁପ୍ତଗଙ୍ଗା
ଯମୁନା ଯେ ସରସ୍ୱତୀ ବହେ ଚନ୍ଦ୍ରଭାଗା ।
ଅର୍ଦ୍ଧ ଶୋଷିଣୀ ବୋଲିଣ ଯେବଣ ଖପର
ପ୍ରଳୟ ପାଣି ଅର୍ଦ୍ଧେକ ଭକ୍ଷହୁଏ ତାର ।
ତହିଁର ପାଖରେ ଅଛି ଯେଉଁ ଦୀପଦଣ୍ଡୀ
ତାହାକୁ ଦର୍ଶନକଲେ ସର୍ବପାପ ଖଣ୍ଡି ।
ତହିଁର ଉପରେ ଜାଣ ଅଟେ ବାସ ଯାର
ସେ ମହାପ୍ରଭୁଙ୍କ ନାମ ଅଟେ ନିରାକାର ।
ତାଙ୍କୁ ସେବିବାକୁ ଅଛି ତିନିଗୋଟି ବାଟ
ବହଇ ଗଙ୍ଗା ଯମୁନା ସରସ୍ୱତୀ ଘାଟ ।
ତା ପାଖେ ଯେଉଁ ଈଶ୍ୱର ମୂର୍ତ୍ତି ଛନ୍ତି ରହି
ନାମ ତାଙ୍କର ମଲ୍ଲିକା ପଶୁପତି ହୋଇ ।
ସେ ସ୍ୱାମୀର ବେନି ପାଖେ ଛନ୍ତି ବେନି ନାରୀ
ଚନ୍ଦ୍ର ସୂର୍ଯ୍ୟ ଆଲଟ ଯେ କରେ ଛନ୍ତି ଧରି ।
କେତକୀ ବିଞ୍ଚଣା ଆଦି ପାଞ୍ଚଦଣ୍ଡ ବାଟି
ଦିବାରାତ୍ରେ ପୁରୁଷଙ୍କୁ ସବୁ ଥାନ୍ତି ଖଟି ।
ସର୍ବଦା ସେବା ତାହାଙ୍କ ଅଜପା ଯେ ମନ୍ତ୍ର
କ୍ରୀଡ଼ନ୍ତି ରମ୍ଭା ସଙ୍ଗତେ ମିଶି ଅହୋରାତ୍ର ।
ବିହାର କରନ୍ତି ସବୁ ଦେହେଁ ଅହର୍ନିଶି
ଦେହକ୍ଷେତ୍ରରେ ବୋଲାନ୍ତି ତେଣୁ କ୍ଷେତ୍ରବାସୀ ।
ଭଜନ୍ତି ଦେହରେ ବସି ଭିତରେ ବାହାରେ
ହରେରାମ କୃଷ୍ଣ ଉଚ୍ଚାରନ୍ତି ଷଡ଼ାକ୍ଷରେ ।
ହଂସ ପୋଖରୀ ବୋଲିଣ ଯେବଣ ସେ ତୀର୍ଥ
ସେ ତୀର୍ଥ ଚିହ୍ନି ଭଜିଲେ ହୋଇବ କୃତାର୍ଥ ।
ହଂସ ସରୋବରେ ଯେହୁ ପାରେ ଜାଣ ବୁଡ଼ି
କୃତଘ୍ନ ଦୋଷ ଥିଲେଟି ଦେହୁଯାଏ ଛାଡ଼ି ।
କେବଳ ବୁଡ଼ିପାରନ୍ତି ତହିଁ ଯେଉଁ ଜନ
ସାକ୍ଷାତେ ବ୍ରାହ୍ମଣ ସେହୁ ଅଟଇ ସୁଜନ ।
ବ୍ରହ୍ମମଣ୍ଡଳ ବୋଲିଣ ଯେବଣହିଁ ପୁର
ବୈକୁଣ୍ଠ ଭୁବନ ସେହି ଅତି ଅଗୋଚର ।
ତିହିଁର ପାଶେ ଅଛଇ ଯେଉଁ ଫୁଲତୋଟା
ଶ୍ରୀବିଶ୍ୱବ୍ରହ୍ମାଣ୍ଡ ଯାକୁ ଅଛଇ ଚହଟା ।
ଚହଟା ଭିତରେ ଅଛି ଯେବଣ ମନ୍ଦିର
ତହିଁର ଶବଦ ଶୁଭେ ଦ୍ୱାଦଶ ପ୍ରକାର ।

ତପ କରନ୍ତି ସେ ଶବ୍ଦ ଚିହ୍ନି ଯେତେ ଲୋକ
ତତକ୍ଷଣେ ଲଭଇ ସେ ବିଷ୍ଣୁ ପୁଣ୍ୟଶ୍ଳୋକ ।
ଯଜ୍ଞବେଦୀ ବୋଲି ଅଟେ ଯେଉଁ ସିଂହାସନ
ପ୍ରତ୍ୟକ୍ଷେ ଶ୍ରୀହରିଙ୍କର ଅଟେ ସିଂହାସନ ।
ସେ ବେଦୀ ଉପରେ ବସିଛନ୍ତି ନରସିଂହ
ପ୍ରତ୍ୟକ୍ଷେ ମହାବ୍ରହ୍ମ ସେ ଅଟେ ବିଷ୍ଣୁ ଅଙ୍ଗ ।
ସେଠାରେ ଯେତେ ଅଛନ୍ତି ସ୍ତିରୀବୃନ୍ଦ ମିଳି
କରନ୍ତି ରାସ ସେ ନରସିଂହ ରାମକେଳି ।
ଏଠାକୁ କେବଳ ଲୟେ ଏକା ହେତୁ ମୂଳ
ହେତୁହୀନ ଲୋକୁ ନମିଲେ ବିଷ୍ଣୁଆଳ ।
ହେତୁ ଥିବା ଲୋକ ହୃଦେ ବିଜେ ଭାବଗ୍ରାହୀ
ବିଷ୍ଣୁର ରୂପ ତାହାଙ୍କୁ ସଦା ଦିଶୁଥାଇ ।
ବିଷ୍ଣୁ ରୂପକୁ ଚିହ୍ନନ୍ତେ ଦିଶଇ ତତ୍ପର
ଜ୍ଞାନୀଙ୍କୁ ସେ ଜଣା ଆନ ଜନେ ଅଗୋଚର ।
ଶ୍ରୀନୃସିଂହ ରାହାସ ଏ ଅଗୋଚର ପଥ
ଦେଖିବା ଲୋକର ପାପ ଖଣ୍ଡିବେ ଅଚ୍ୟୁତ ।
ସେ ରାସ ମଧ୍ୟରେ ଅଛି ଯେଉଁ ଚକାଡ଼ୋଳା
ତହିଁରେ ପ୍ରକାଶପାନ୍ତି ଦ୍ୱିଗୋଟି ପିତୁଳା ।
ସେ ପିତୁଳା ନାମ ଚିତ୍ରଗୁପ୍ତ ଅଟେ ଜାଣ
ଭଜନ୍ତି ରାହାସ ମଧ୍ୟେ ଶ୍ରୀପଦ୍ମ ପୁରାଣ ।
ସେହି ବେନି ପ୍ରତିମାର ମଧ୍ୟଭାଗ ଗତି
ଅଛଇ ବୃକ୍ଷ ଗୋଟିଏ ଯେଉଁ ବଟମୂର୍ତ୍ତି ।
ଚତୁର୍ଦ୍ଦଶ ଲୋକକୁ ଯେ ଅଟେ ସାର ସେହି
ନିତ୍ୟ କେଳିରାହାସ ସେ ବଟମୂଳେ ହୋଇ ।
ନବଧା ଭକ୍ତି ଅଷ୍ଟାଙ୍ଗଯୋଗ ବୋଲି ଯାହା
ଚଉରାଶୀ ଖଣ୍ଡ ଜ୍ଞାନ ବିଷ୍ଣୁ ନିତ୍ୟ ଦେହା ।
ସବୁଠୁଁ ଧାରଣା ଷୋଳଖଣ୍ଡ ଅଟେ ବଡ଼
ସେଠାରୁ ମହାଭକତି କରନ୍ତି ଗରୁଡ଼ ।
ଚଉଦ ଖଣ୍ଡ ଅଛଇ ଯେଉଁ ଜ୍ଞାନ ତହିଁ
ସେ ଜ୍ଞାନତତ୍ତ୍ୱ ଜାଣନ୍ତି ଏକା ପଣ୍ଡିତହିଁ ।
ଦ୍ୱାଦଶ ଖଣ୍ଡ ବିଜ୍ଞାନ ଯେବଣ ଧାରଣା
ତହିଁରେ କରନ୍ତି ଉମା ହର ନିତ୍ୟ ଠଣା ।
ଆବର ସପତଦଶ ଧାରଣା ଯେ ଜାଣ
ବସିଅଛନ୍ତି ମଣ୍ଡିଣ ପ୍ରଭୁ ନାରାୟଣ ।
ବଦରିକା ଆଶ୍ରମରେ ମହିମା ଯେ ବିଧି
ଶ୍ରୀନୃସିଂହ ବିଜେ କରିଛନ୍ତି ଯଜ୍ଞବେଦୀ ।
ବିପ୍ର ପୀତାମ୍ବର ଦାସ ଅଟେ ନରାଧମ
ଏ ରାହାସ ଦେଖିବାକୁ କିସ ମୋର କ୍ଷମ ।

ଡରିଣ ଓଁ ହରି ମୁହିଁ ବସନ୍ତେଣ ଲେଖି
ରାତ୍ରେ କହିଲେକ ମୋତେ ଶାରଦା ସୁମୁଖୀ ।
ବୋଇଲେ କାହିଁକି ରହିଲୁରେ ତୁନିହୋଇ
ନିନ୍ଦା କରିବେ ବୋଲିକି ଡରୁଛୁରେ ତୁହି ।
ଏଥକୁ ଭୟ କିଛି ନ କର ତୋର ମନେ
ଲେଖ ଏ ଗ୍ରନ୍ଥଯାକ ମୋ ଆଜ୍ଞା ପରମାଣେ ।
ସଭାରେ ବସିବେ ସୁପଣ୍ଡିତେ ଏହା ଶୁଣି
କୁପଣ୍ଡିତ ଲୋକ ଏହା ନିନ୍ଦିବେ ନ ଜାଣି ।
ନିନ୍ଦିବା ଲୋକକୁ ଆରେ ସୁଜନେ ସହିବେ ।
ସେ କଥା ଶୁଣ ବୁଝାଇ କହିବାରେ ଏବେ ।
ନିନ୍ଦିବା ଲୋକମାନେଟି ଯେତେ ଦୋଷ ପାଇ
ଶ୍ରୀମୁଖରୁ ଶୁଣ ମୋର ନିଦ୍ରା ତୁହି ଯାଇ ।
ଶ୍ରୀବିଷ୍ଣୁ ପୁରାଣ ଯେତେ ସଂସାରରେ ଅଛି
ତାହା ନିନ୍ଦିଲେ ପାଷାଣ୍ଡ ହୋଇ ଦିନ ବଞ୍ଚି ।
ସେ ପ୍ରାଣୀମାନେ ସଂସାରେ ଜାଣ ବଡ଼ଦୋଷୀ
ମଲେଣ ହୁଅନ୍ତି ସେହୁ ଅନ୍ତେ ନର୍କବାସୀ ।
ଯାହାକୁ ଉପକାର ଯେ ପ୍ରାଣୀ କରିଥାଇ
ତାକୁ ନିନ୍ଦାକଲେ ପଡ଼େ ନରକରେ ଯାଇ ।
ପିତାମାତାଙ୍କୁ ଯେବଣ ପୁତ୍ର ଜାଣ ନିନ୍ଦେ
ମଲେ ସେ ନର୍କକୁଣ୍ଡରେ ପଡ଼ଇ ଦୁର୍ଗନ୍ଧେ ।
ସୁଜନ ସାଧୁଙ୍କୁ ନିନ୍ଦା କରଇ ସେ ପ୍ରାଣୀ
ମଲେ ସେ ନୀଚକୁଳରେ ଜନ୍ମେ ଦେହ ଘେନି ।
ସୁଚରିତ୍ରା ଯୁବତୀଙ୍କୁ ନିନ୍ଦଇ ଯେ ଜନ
ନପୁଂସକ ଜନମ ସେ ଲଭଇ ମଲେଣ ।
ଶ୍ରୀଗୁରୁ ଗୋସାଇଁଙ୍କି ନିନ୍ଦଇ ଯେ ପ୍ରାଣୀ
ଉପୁଜଇ ସର୍ପ ହୋଇ ସସ୍ତଜନ୍ମେ ପୁଣି ।
ପତିବରତା ସ୍ତିରୀକି ନିନ୍ଦଇ ଯେ ଲୋକ
ମଲେ ଶ୍ୱାନ ହୋଇ ଜନ୍ମଇ ସେ ଅବିବେକ ।
ଯେଉଁ ପ୍ରାଣୀ ଜାଣି ପୁରାଣକୁ ନିନ୍ଦାକରେ
ଦେହରେ ତା କୁଷ୍ଟବ୍ୟାଧି ହୁଏ ସେହୁ ମରେ ।
ଯେ ଅବା ଗରବ ବହି ପୃଥ୍ୱୀ ନିନ୍ଦାକରେ
ଦରିଦ୍ର ହୋଇ ଜନ୍ମଇ ସେହୁ ଶତବାରେ ।
ଅଗ୍ନି ଦେବତାଙ୍କୁ ନିନ୍ଦାକରେ ଯେଉଁ ପ୍ରାଣୀ
ମନ୍ଦାଗ୍ନି ବ୍ୟାଧି ତାହାକୁ ହୁଅଇ ତକ୍ଷଣି ।
ଦଇବ ବିଧାତାଙ୍କୁ ଯେ ନିନ୍ଦେ ଅଦୋଷରେ
ସାହସପଣେ ନିୟମ କରେ ଯେ ସଭାରେ ।
ସେହି ପ୍ରାଣୀ କଲେ ଜାଣ ହୁଅଇ ଛାଗଳ
ଦେବୀଆଳେ ଛେଦହୋଇ ପାଏ ପ୍ରତିଫଳ ।

ଯେଉଁ ପ୍ରାଣୀ ଧର୍ମ ନିନ୍ଦା କରଇ ସଂସାରେ
ତାହାର ଅଭାଗ୍ୟ ସିନା କହିଲେ ନ ସରେ ।
ନିନ୍ଦିବା ଲୋକମାନେ ଏ ରୂପେ ହୋନ୍ତି ବଧ
ଯମଦେବତା ତାହାଙ୍କୁ କରେ ନେଇ ସାଧ ।
କାହାକୁ ଚଣ୍ଡାଳ ଘରେ ନେଇ କରେ ଜାତ
କାହାକୁ ନେଇ ଶୃଗାଳ କରେ ଯୁଥ ଯୁଥ ।
କାହାକୁ ବା ଜଡ଼ାକାଲ କାହାକୁ ବା ଛୋଟା
କାହାକୁ କୁଜା କରଇ କାହାକୁ ଯେ ପେଟା ।
କାହାକୁ ଅନ୍ଧ କରଇ କାହାକୁ ବା କାଣ
କାହାକୁ ବାତୁଳ କରି ଉପୁଜାଏ ଗୁଣ ।
କାହାକୁ ଛାଗୁଣା କରେ କାହାକୁ ଘୁଷୁରି
କାହାକୁ କପି କରଇ କାହାକୁ ମାର୍ଜାରୀ ।
କାହାକୁ ଯେ ବ୍ୟାଘ୍ର ଭାଲୁ କାହାକୁ ଯେ ଭେକ
କାହାକୁ କର୍ମଠ କରେ କିଏ ହୁଏ ଶୁକ ।
କାହାକୁ ଗ୍ରାହ କାହାକୁ ଶଶା ଜନ୍ମ କରି
କେ ହୁଏ ଗଣ୍ଡା ଗୟଳ ମେରୁ ମେଷ କରି ।
ଏରୂପେ ସାରଦା ସ୍ୱପ୍ନେ କହିଦେଲେ ମୋତେ
ଲେଖନ୍ତି ନୃସିଂହ ଗ୍ରନ୍ଥବାଣୀ ମୋର ହସ୍ତେ ।
ଏଥକୁ ହେ ସୁଜ୍ଞଜନେ ନ ଧର ମୋ ଦୋଷ
ବିପ୍ର ପୀତାମ୍ବର ମୁଁ ବାଲୁଙ୍କେଶ୍ୱର ଶିଷ୍ୟ ।

❋ ❋ ❋

## ନୃସିଂହଙ୍କ ରାସୋତ୍ସବ

ପୂର୍ବେ ବ୍ରହ୍ମା ନାରଦ ସମ୍ବାଦ ଏହି ବାଣୀ
ପରୀକ୍ଷକୁ କହନ୍ତି ଯେ ତାହା ଶୁକମୁନି ।
ଏଥୁଅନନ୍ତରେ ପୁଣ ନାରଦ ମହର୍ଷି
ବ୍ରହ୍ମାଙ୍କ ପୁରାଣ କଥା ପଚାରନ୍ତି ବସି ।
ବୋଲନ୍ତି ହେ ପିତା ମୋତେ କରିବାକ ଦୟା
ନୃସିଂହ ରାସ କହି ଶୁଦ୍ଧ କର କାୟା ।
ଯଜ୍ଞଦେବୀ ମଣ୍ଡପଟି ବୋଲି ଯେଉଁ ସ୍ଥାନ
ଆସନ କରି ବସିଲେ ତହିଁ ଭଗବାନ ।
ଶ୍ରୀରାମ ଲକ୍ଷ୍ମୀଙ୍କି ପ୍ରଭୁ ହୃଦପଦ୍ମେ ଧରି
ଯଜ୍ଞବେଦୀ ମଣ୍ଡପରେ ଯାଇ ବିଜେକରି ।
ଯେଉଁ ପ୍ରକାରେ କଲେ ସେ ରାସକେଳି କଥା
କିହବା ହେଉ ଶୁଣିବି ସେ ରାସ ବ୍ୟବସ୍ଥା ।
ବ୍ରହ୍ମା ବୋଇଲେ ସେ ରାସକଥା ଆଲୋକିତ
ପଞ୍ଚମେ ଫିଙ୍ଗିବ ଏହି ବନ ମୂରଦୈତ୍ୟ ।
ବନ ଉପାଡ଼ନ୍ତେ ଯଜ୍ଞବେଦୀ ଉପୁଡ଼ିବ
ଉପାୟ କରିବେ ପୁଣି ପ୍ରଭୁ ଦେବଦେବ ।
ପଡ଼ିବ ଯକିବେଦୀଟି ମହୋଦଧି ତଟେ
ସେ ବନ ଯାଇ ପଡ଼ିବ ସ୍ୱର୍ଗେ ମେରୁକ୍ରୋଟେ ।
ସ୍ୱର୍ଗେ ପଡ଼ି ବୋଲାଇବ ଯେ ନନ୍ଦନବନ
ବୋଲାଇବ ଯଜ୍ଞବେଦୀ ଗୁଣ୍ଡିଚା ଭବନ ।
କ୍ଷେତ୍ରେ ପଡ଼ି ଯଜ୍ଞବେଦୀ ନାମ ଏ ହୋଇବ
ଶୁଣ ହେ ନାରଦରଷି କହନ୍ତି ଦଇବ ।
ବଇରୀ ଦେଶେ ଅଛନ୍ତି ତୀର୍ଥ ଯେତେ ପୁରି
କ୍ଷେତ୍ର ମଧେ ପଡ଼ି ନାମ ହୋଇବ ପୋଖରୀ ।
କହିବା ଫିଙ୍ଗିବା କଥା ପଞ୍ଚମରେ ଯାଇ
ନୃସିଂହଙ୍କ ରାସ ଏବେ ଶୁଣ ମନଦେଇ ।
କାର୍ତ୍ତିକେ ଚୌଷଠୀ ସସ୍ରକନ୍ୟା ସ୍ନାନକରି
ଆସନ୍ତେ ବେଦୀ ଉପରେ ଦେଖିଲେ ଶ୍ରୀହରି ।
ଅନନ୍ତ ଶଯ୍ୟାରେ ଶୋଇଛନ୍ତି ନାରାୟଣ
ପ୍ରକାଶଇ ସହସ୍ରେକ ଫଣା ଉପରେଣ ।
ଛତ୍ର ପ୍ରାୟ ଫଣା ଟେକି ଅଛନ୍ତି ଅନନ୍ତ
ଦିଶନ୍ତି ନୟନ ଜ୍ୟୋତି ଯେସନେ ଆଦିତ୍ୟ
ବେନି ସହସ୍ର ନୟନ ଦିଶେ ସୂର୍ଯ୍ୟଜ୍ୟୋତି ।
ଏକା ପରି ଦେଖାଯାଏ ତହିଁ ଦିବାରାତି ।
ବିଷ୍ଣୁଙ୍କର ବ୍ରହ୍ମନିଶି ପ୍ରକାଶିଛି ତହିଁ
ସେ ରାସ ଦେଖେ ନିର୍ମାୟାବନ୍ତ ଅଟେ ଯେହି ।
ଚଉଷଠସସ୍ର କନ୍ୟା ଦେଖନ୍ତେ ତା ଆସି
ତତକ୍ଷଣେ ବିଷ୍ଣୁମାୟା ଅଙ୍ଗୁ ଗଲା ଖସି ।
ସେ ରାସର ଚାରିଦ୍ୱାରେ ତ୍ରିପୁରା ଯେ ଦ୍ୱାରୀ
ଶୁଣନ୍ତି ନାରଦ କହୁଛନ୍ତି ମୁଖଚାରି ।
କନ୍ୟାଙ୍କୁ ନୃସିଂହ ମହାପ୍ରଭୁ ଦେଲେ ଆଜ୍ଞା
କରାବେଗେ ଯାଇ ମୋର ରାସବିଧି ପ୍ରଜ୍ଞା ।
ଅଷ୍ଟସଖୀ ଏ ଅବନା ଅକ୍ଷରକୁ ଭଜ
ଯାହାର ଯେଉଁ ସେବାଟି କ୍ଷଣେହେଁ ନ ତେଜ ।
ଅଷ୍ଟପ୍ରହ ଯାକରେ ଯେବା କରୁଥାଅ
ସବୁ ଦେହ ଅଷ୍ଟଦଳେ ରାହାସେ ମତାଅ ।
ସର୍ବତ୍ର ପୁରିଅଛନ୍ତି ଯେଉଁ ନରହରି
ସର୍ବଘଟେ ରାହାସଟି ହେଉଛି ସବୁରି ।
ସବୁବେଳେ ରାହାସରେ ପକା ବେନିଆଖି
ସବୁବେଳେ ସ୍ନାନଲାଗି କରାଅ ପଦ୍ମାକ୍ଷୀ ।
ସବୁବେଳେ ବେନି ସଖୀ ଚେତା କରୁଥାଅ
ସବୁବେଳେ ବେନି ସଖୀ ଅମୃତ ଭୁଞ୍ଜାଅ ।
ଆଜ୍ଞାପାଇ ବେନି ସଖୀ ଡାକିଲେ ଆଲଟ
ତାହାଙ୍କ ନାମ ସୁଲଗ୍ନା ସୁଲକ୍ଷଣା ଶ୍ରେଷ୍ଠ ।

ସୁଜ୍ଞାତି ଯେ ଶତରୂପା ଗନ୍ଧକଲେ ଲାଗି
ସୁଦୁର୍ଗା ସୁବ୍ରହ୍ମା ଦୁହେଁ ଚିତାକଲେ ଲାଗି ।
ସୁରତି ସୁରେଖା ବେଲେ ଅମୃତ ଯେ ରସ
ଏହିରୂପେ ଅଷ୍ଟସଖୀ ପ୍ରକାଶିଲେ ରାସ ।
ଅଷ୍ଟଦଳେ ଅଷ୍ଟସଖୀ ଛନ୍ତି ଅଗ୍ରଲେଖା
କେଶର ମଧ୍ୟେ ଅଛନ୍ତି ନୃସିଂହ ଯେ ଏକା ।
ଅଷ୍ଟସଖୀ ଘେନି ଚଉଷଠିସସ୍ର କନ୍ୟା
ବସିଲେ ରାହାସ ନିର୍ଭକରି ବାରାଙ୍ଗନା ।
ଅଷ୍ଟକୋଣ ବେଢ଼ି ରହିଲେକ ଥୋକେ ନାରୀ
ଆବର ରହିଲେ ଥୋକେ ସପ୍ତପୁର କରି ।
ଗୀତ ତାଳ ଖୋଳସ୍ୱର ସୁସ୍ୱରରେ ଟେକି
ବଜାନ୍ତି ସେ ନୃତ୍ୟକରି ବୀଣାନାଦ ଫୁଙ୍କି ।
ଷଡ଼କନ୍ୟା ଯେ ପରମ୍ହଂସ ରୂପ ଚିହ୍ନି
ବଜାନ୍ତି ସେ ଷଡ଼ଲଗ୍ନେ ବାମ ଦକ୍ଷ ଘେନି ।
ସେ କନ୍ୟାଙ୍କ ନାମ ମୋହିନୀଯେ ହେମଗୋରୀ
ପରିମଳା ଚିତ୍ରକଳା ସୁଶୀଳା ମାଧୁରୀ ।
ଆବର ଯେ କନ୍ୟାମାନେ ସପତ ପ୍ରକାରେ
ବଜାନ୍ତି ସେ ଯନ୍ତ୍ରଧରି ମଙ୍ଗଳ ଦିଶାରେ ।
ଶରଇନ୍ଦ୍ରମୁଖୀ ପଦ୍ମମୁଖୀ ଇନ୍ଦ୍ରମୁଖୀ
ଭଜନ୍ତି ଏ ଏକାକ୍ଷର ମନ୍ତ୍ର ହୃଦେ ରଖି ।
ଶ୍ରୀପଦ୍ମସ୍ଥଳିରେ ଏହୁ ବସନ୍ତି ଆବୋରି
ସକଳେ ଅଟନ୍ତି ନୃସିଂହଙ୍କ ସେବାକରୀ ।
ସମସ୍ତେ ଦିଶନ୍ତି ଶୋଭା ଶ୍ରୀ ଜଗମୋହିନୀ
ଶ୍ୱେତ ଚାମରମାନ ସେ ଛନ୍ତି କରେ ଘେନି ।
ଆଳାପେ କରନ୍ତି ତାଳ ଧରି ନୃତ୍ୟ ଗୀତ
ସେହି ନିତ୍ୟରାସ ବୋଲି ଉଛୁଳେ ଜଗତ ।
ଅନନ୍ତ ଶେଷଦେବ ଯେ ସସ୍ରଫଣା ମଧ୍ୟେ
ମହାଯୋଗ ପୀଠେ ବସି ପରମ ଆନନ୍ଦେ ।
ଯଜ୍ଞବେଦୀର ମଣ୍ଡପ ଦିଶେ ଦିବ୍ୟଶୋଭା
ଅଷ୍ଟଦଳ ମଧ୍ୟେ ଛନ୍ତି ପଦ୍ମଦଳ ପ୍ରଭା
ପଦ୍ମଦଳର କେଶର ମଧ୍ୟେ ବିଜେ ହରି
ଆସନ କରିଅଛନ୍ତି ଲକ୍ଷ୍ମୀ କୋଳେ ଧରି ।
ମହାଲକ୍ଷ୍ମୀଙ୍କ ଅଙ୍ଗରେ ଲଗାଇ ଶ୍ରୀଅଙ୍ଗ
ବିହାରଭାବେ କରନ୍ତି ସ୍ୱାମୀ କ୍ରୀଡ଼ାରଙ୍ଗ ।
ଏକରଙ୍ଗ ପରାୟ ଯେ ମିଶି ରହିଛନ୍ତି
ତେଣୁକରି ଅର୍ଦ୍ଧଅଙ୍ଗ ଲକ୍ଷ୍ମୀ ବୋଲାବନ୍ତି ।
ସେ ମହାଯଜ୍ଞ ବେଦୀର ପୂର୍ବଦିଗଠାରେ
ସମ୍ମୁଖେ ବସି ସାରଦା ଦେବୀ ସେବାକରେ

ଶ୍ରୀମୁଖେ କରାନ୍ତି ଲାଗି କର୍ପୂରମୂଳକର
ସୁଗନ୍ଧ ଚନ୍ଦନ ଦେଇ ସେବେ ନିରନ୍ତର ।
ନାନାବର୍ଣ୍ଣର କୁସୁମ ଧରି ମାଳ ମାଳ
ସେବନ୍ତି ଶ୍ରୀପଦ୍ମପୁଷ୍ପ ଦେଇ ଆଦିମୂଳ ।
ନାନା ସୁବାସ ସଂଯୋଗ କରି ଗନ୍ଧ ଘୋଟି
ବୋଲାନ୍ତି ପ୍ରଭୁ ଅଙ୍ଗରେ ରାସ ମଧ୍ୟେ ଖଟି ।
ଶ୍ରୀ ଛାମୁରେ ବସିଛନ୍ତି ତ୍ରିପୁର ସୁନ୍ଦରୀ
ହେଙ୍ଗୁଳା ମଦନ ଶଶୀରେଖା ମନୋହାରୀ ।
ନୀଳା ଶ୍ୟାମଳା ବିମଳା ନିତ୍ୟରୂପା ଘେନି
ଯୋଗରୂପା ସିଦ୍ଧରୂପା ପ୍ରେମରୂପା ତିନି ।
ଜ୍ୟୋତିରୂପା ସତ୍ୟରୂପା କାମୀ କାମରୂପା
ରାହାସ ନିତ୍ୟସ୍ଥଳିରେ ଭଜନ୍ତି ଅଜପା ।
ଷ୍ଟଦଳ ପଦ୍ମମଧ୍ୟେ ରାସ କରେ ନିତ୍ୟ
ଅମୃତସିନ୍ଧୁ ତହିଁରେ ହୋଇଛି ବେଷ୍ଟିତ ।
ସେହିଠାରେ ଶ୍ରୀନୃସିଂହ କମଳାଙ୍କୁ ଘେନି
ବହିରନ୍ତି ବଜାଇଣ ବ୍ରହ୍ମବୀଣା ଧ୍ୱନି ।
ଆବର ବଜାନ୍ତି ଷଡ଼ସୂତ୍ରେ ସର୍ବେ ବୀଣା
ଭେଦି ତିନିପୁରେ ଶବ୍ଦ ହୁଏ ପୁଣି ଜଣା ।
ପ୍ରେମରୂପା ସୁନ୍ଦରୀ ସେ ବାଜୁବନ୍ଧେବାହେ
ଯୋଗରୂପା ସୁନ୍ଦରୀ ଯେ କୀର୍ତ୍ତନରେ ରହେ ।
ଶଶୀରେଖା ସୁନ୍ଦରୀଯେ ଧରେ ତାଳ ତାନ
ଦିଶେ ନୃସିଂହ ରାହାସ ନିତ୍ୟସ୍ଥଳ ବର୍ଣ୍ଣ ।
ଖୋଳ କଂସାଳ କୀର୍ତ୍ତନ ତାଳଯନ୍ତ୍ର ରୋଳେ
ଉଛୁଳି ସକଳ ରସ ପଡ଼େ ଅନ୍ତରାଳେ ।
ନାନାବିଧ ନାନାବାଦ୍ୟ ରାସସ୍ଥାନେ ବାଜେ
ସବୁ ବୀଣା ଶବ୍ଦ ଏକ ପ୍ରକାର ଯେ ସାଜେ ।
କଂସାଳ ଝଞ୍ଜାଳ ତାଳ ଖୋଳ ପରିତାଳ
ବଜାନ୍ତି ଚୌଷଠି ସସ୍ର କନ୍ୟା ହୋଇ ଠୁଳ ।
ଅନନ୍ତଶଯ୍ୟା ଯେ ହୋଇଛନ୍ତି ଶେଷଦେବ
ସଖୀଗଣଙ୍କୁ ଘେନିଣ କ୍ରୀଡ଼ନ୍ତି ମାଧବ ।
ଯମୁନା କାଳିନ୍ଦୀ ବୃନ୍ଦାବନ ଯହିଁ ଅଛି
ସେ ସ୍ଥାନେ ଘେନିଣ ଗୋପେ ଜନ୍ମିବେ ଶ୍ରୀବତ୍ସି ।
ଏ କେଳି ରାସ ଦ୍ୱାପରଯୁଗେ ଯାଇ ହେବ
ଏବେ ହୋ ଶୁଣ ନୃସିଂହ ରାସ ଯେତେ ଭାବ ।
ଅନନ୍ତ ଶଯ୍ୟାରେ ଶୋଇଛନ୍ତି ମହାବାହୁ
ପ୍ରତ୍ୟକ୍ଷେ ପରମବ୍ରହ୍ମ ଅଟନ୍ତିଟି ସେହୁ ।
ଅନନ୍ତ ଶେଷ ମୂରତି ଯେଉଁ ମନ୍ତ୍ରସାର
ସବୁଙ୍କରି ଭଜନ ଯେ ଅଟେ ଏକାକ୍ଷର ।

ଶ୍ରୀକୃଷ୍ଣ ବୋଲି କହିଟି ଯେଉଁ ପ୍ରଭୁ ନାମ
ସେ ନୃସିଂହ ପ୍ରଭୁ ଜାଣ ଅଟନ୍ତି ଏକାତ୍ମ ।
ରାମ ବୋଲିବାର ନାମ ଯେ ବେନି ଅକ୍ଷର
ନୃସିଂହଙ୍କ ବେନି ଭୁଜ ଅଟେ ମୋକ୍ଷ ଦ୍ୱାର ।
ହରିନାମଟି ନୃସିଂହ ପ୍ରଭୁଙ୍କର ହୃଦ
ଜ୍ଞାନୀ ସେ ଜାଣେ ସିନା ନାମସୂତ୍ର ଭେଦ ।
ଏରୂପେ ରହିଛି ହୃଦେ ଛଅକ୍ଷର ଛନ୍ଦି
ନୃସିଂହ ପ୍ରଭୁଙ୍କର ହୃଦେ ବାମହୃଦ ଭେଦି ।
ସେ ତେର ଅକ୍ଷର ଅଟେ ଜାଣ ମନ୍ତ୍ରସାର
ଶ୍ରୀନୃସିଂହ ପ୍ରଭୁଙ୍କର ଅଟେ କଳେବର ।
ଭଜନ୍ତି ସେ ତେର ଅକ୍ଷରକୁ ଯୋଗରୂପା
ପ୍ରଭୁଙ୍କର ଭଜନ ତତ୍ତ୍ୱ ଅଟଇ ଅଜପା ।
ସେହି ମହାଲକ୍ଷ୍ମୀଙ୍କର ଯେଉଁ ମନ୍ତ୍ରବିଧି
ଛବିଶ ଅକ୍ଷରରେ ଜାଣ ଅଟଇ ପ୍ରସିଦ୍ଧି ।
ପ୍ରେମରୂପା ଭଜନ ଯେ ଷୋଡ଼ଶ ଅକ୍ଷର
ଏହିରୂପେ ମହାମନ୍ତ୍ର ପ୍ରାଣୀ ମୋକ୍ଷଦ୍ୱାର ।
ଯୁଗଳ ଭଜନ ଜାଣ ଏ ମନ୍ତ୍ରରାଜଟି
ନୃସିଂହ ପ୍ରଭୁଙ୍କ ବାମନେତ୍ରେ ବସନ୍ତିଟି ।
ଆବର ସାତ ଅକ୍ଷର ଯେଉଁ ମନ୍ତ୍ର ଧ୍ୟାନ
ଏ କଥାକୁ ହେଜି ଭଲେ ବୁଝ ସାଧୁଜନ ।
ନୃସିଂହ ପ୍ରଭୁ ଦକ୍ଷିଣ ନେତ୍ର ଅଟେ ଏହି
ଏହି ମନ୍ତ୍ରକୁ ଦକ୍ଷିଣେ ଦ୍ୟନ୍ତି ଗୁରୁ କହି ।
ମନ୍ତ୍ରର ଆଦ୍ୟ ଅକ୍ଷର ପୁରୁଷଟି ଜାଣ
ଶେଷ ଅକ୍ଷରଟି ସ୍ତିରୀ ଯୁଗଳ ଯେ ଘେନ ।
ଏବେ କହିବା ଶୁଣ ଶ୍ରୀ ନାରାୟଣ ମନ୍ତ୍ର
ସେ ଅଷ୍ଟ ଅକ୍ଷର ଜାଣ ହରିରଟି ଗାତ୍ର ।
ଏ ମନ୍ତ୍ରଗୋଟି ପ୍ରାଣୀଙ୍କ ଜାଣ ମୋକ୍ଷକର୍ତ୍ତା
ଶ୍ରୀଭୁବନେଶ୍ୱରୀ ମନ୍ତ୍ର ଅଟେ ଲକ୍ଷ୍ମୀମାତା ।
ହରେ ରାମ କୃଷ୍ଣର ଯେ ଜାତ ଷଡସଖୀ
ହ ଅକ୍ଷରରୁ ଜନମ ହେଲେ ହରିଣାକ୍ଷୀ ।
ରେ ଅକ୍ଷରରୁ ଜନମ ହୋଇଲେ ରେବତୀ
ରା ଅକ୍ଷରରୁ ଜନମ ହେଲେ ରମା ସତୀ ।
ମ ଅକ୍ଷରୁ ଜନ୍ମହେଲେ ଜାଣ ମହୀସ୍ଥଳୀ
କୃ ଅକ୍ଷରୁ ଜନମ ହେଲେ ଜାଣ ଦେବୀ କାଳୀ ।
କୃଷ୍ଣ ଅକ୍ଷରରୁ ଜନ୍ମ ହେଲେ ଶଶୀରେଖା
ଏହି ରୂପେ ସେହି ସଖୀ ଅଟେ ଅଗ୍ରେଲେଖା ।
ଙ ଅକ୍ଷରୁ ଜାତହେଲା ଯେଉଁ ମନ୍ତ୍ରଗୋଟି
ଶ୍ରୀନୃସିଂହ ସ୍ୱାମୀଙ୍କର ଅଟଇ ବଇଠି ।

ଭାଲରେ ଯେବଣ ହରିମନ୍ଦିର ଯେ ଚିତା
ଏ ତିନି ଅକ୍ଷର ପ୍ରାଣୀଙ୍କର ମୋକ୍ଷଦାତା ।
ଏ ତିନି ଅକ୍ଷରକୁ ଶ୍ରୀ ନୃସିଂହ ମୁରାରୀ
ମହାଲକ୍ଷ୍ମୀ ମାତାଙ୍କୁ ଯେ ରଖି ବଶକରି ।
ଏ ମହା ଗୁପ୍ତ ମନ୍ତ୍ରରେ ତ୍ରୟ ତତ୍ତ୍ୱ କାଟି
ଦ୍ୱାପରେ ଯେ ପ୍ରେମରୂପା ହେବେ ରାଧିକାଟି ।
ସାକ୍ଷାତରେ ସେ ପ୍ରେମରୂପା ଅଟେ ଲକ୍ଷ୍ମୀଅଂଶ
ଗୋପପୁରେ ଜନ୍ମି ସେହୁ କରିବେ ରାହାସ ।
ଶ୍ରୀ କୃଷ୍ଣ ସ୍ୱାମୀଙ୍କୁ ଘେନି ରାହାସ କରିବେ
ଶେଷଦେବଙ୍କର କଥା କହିବାହେ ଏବେ ।
ଶ୍ରୀଜଗନ୍ନାଥଙ୍କ ପାଦେ ଶେଷଦେବ ଯାଇଁ
ବସିବେ ଦକ୍ଷିଣଭାଗେ ବଳଭଦ୍ର ହୋଇ ।
ପ୍ରେମ ଷୋଡ଼ଶ ନାମଟି ଅଟେ ଜାଣ ସେହୁ
ଶ୍ରୀ ମହାଲକ୍ଷ୍ମୀ ମାତାର ବୀଜମନ୍ତ୍ର ସେହୁ ।
ଏ ମନ୍ତ୍ରକୁ ଷଡ଼ସଖୀ କରନ୍ତି ଭଜନ
କହିବା ଏବେ ତାହାଙ୍କ ନାମମାନ ଶୁଣ ।
ରୁକ୍ମିଣୀ ବାରୁଣୀ ଶିରୋମଣି ନାରୟଣୀ
ଏ ଚାରି ସଙ୍ଗେ ମିଶିଣ ତ୍ରିପୁରା ତାରିଣୀ ।
କରନ୍ତି ଏ ତିନି ସଖୀମାନେ ପ୍ରଭୁସେବା
ଭଜନ୍ତି ମନ୍ତ୍ରକୁ ବୀଜକରି ବିଷ୍ଣୁସେବା ।
ଓଁକାର ଅକ୍ଷର ମଧ୍ୟୁ ପ୍ରକାଶଇ କାଳୀ
ସ୍ଥାପିଲେ ତହିଁ ପାଶେ ଶ୍ରୀ ଅକ୍ଷରକୁ ତୋଳି ।
ନେଇ କୁ ଅକ୍ଷରେ କଲେ ସକାରକୁ ସଙ୍ଗ
ପ୍ରତ୍ୟକ୍ଷେ ମନ୍ତ୍ର ଗୋବିନ୍ଦ ପ୍ରଭୁଙ୍କର ଅଙ୍ଗ ।
ସେ ଅଙ୍ଗରେ କ୍ରୀଡ଼େ ଜୀବ ପରମ ଯେ ମୂର୍ତ୍ତି
କ୍ରୀଡ଼ା କରିବାକୁ ଗୋପୀବଲ୍ଲଭ ବୋଲାନ୍ତି ।
ଶ୍ରୀଲକ୍ଷ୍ମୀ ନୃସିଂହ ଜୀବ ପରମ ଯୁଗଳରୁ
ତେଣୁ ସେ ଗୋପାଳମନ୍ତ୍ର ପ୍ରକାଶେ ଆତ୍ମାରୁ ।
ସେ ଓଁକାର ମହାବ୍ରହ୍ମ ଯେଉଁ ମନ୍ତ୍ର କହି
କୀଟୁ ବ୍ରହ୍ମଯାଏ ସବୁ ଆତ୍ମା ଜାଣ ସେହି ।
ପଞ୍ଚପ୍ରାଣ ଆତ୍ମାର ଯେ ପାଞ୍ଚଗୋଟି ସଖୀ
କହିବା ଏହାଙ୍କ ବର୍ଣ୍ଣଭେଦ ପୁଣ ଲେଖି
ଆକାର ଉକାର ମକାର ଯେ ସକାରଟି
ହକାର ଅକ୍ଷର ମିଶି ଏମନ୍ତ ପାଞ୍ଚୋଟି ।
ଅ ଅକ୍ଷରୁ ଜନ୍ମିଲା ଲଳିତା ଠାକୁରାଣୀ
ଲୋହିତ ବର୍ଣ୍ଣ ପରାୟ ଦିଶେ ଜ୍ୟୋତି ପୁଣି ।
ଉକାର ଅକ୍ଷରୁ ଜାତହେଲେ ଜାଣ ଇଳା
ଶ୍ୟାମଳା ବର୍ଣ୍ଣ ପରାୟ ଦିଶେ ଦେହ କଳା ।

ମକାର ଅକ୍ଷରୁ ଜାତ ହୋଇଲେ ମାଳତୀ
ଗଉର ବର୍ଣ୍ଣ ପରାୟ ଦିଶେ ଦେହ ଜ୍ୟୋତି ।
ସକାର ଅକ୍ଷରୁ ଜାତ ହେଲେ ଦେବୀ ଶ୍ୟାମା
କେବଳ ସେ ଜ୍ୟୋତିକଳା ବର୍ଣ୍ଣ ଦିଶେ ବାମା ।
ହକାର ଅକ୍ଷରୁ ଜନମିଲେ ହିଙ୍ଗୁଳାଇ
ଶୁକ୍ଳ ସ୍ୱରୂପେ ତାଙ୍କର ଶୋଭା ବିରାଜଇ ।
ଏରୂପେ ଓଁକାରୁ ଜନମିଲେ ପାଞ୍ଚସତୀ
ସୁରତରୁ ମୂଳେ ଏହାଙ୍କର ସେବା ଭକ୍ତି ।
ତେଣୁ ତହିଁରେ ହୁଅଇ ରସ ରାମକେଳି
ସୁରପାଦପ ବଟର ଛାୟା ତଳେ ମିଳି ।
ଗୁପତରେ ସୁଦର୍ଶନ ତହିଁ ବିଶ୍ରାମିଛି
ସେ ରାକ୍ଷାସ ମଧ୍ୟେ ପ୍ରଭୁ ବିଜୟେ ଶ୍ରୀବସ୍ତି ।
ଶ୍ରୀ ମହାଲକ୍ଷ୍ମୀ ଦେବୀଙ୍କ ଯେଉଁ ମନ୍ତ୍ରଭେଦ
ଷୋଡ଼ଶ ଅକ୍ଷର ଅଟେ ଜାଣ ଯଜୁର୍ବେଦ ।
ମହାଲକ୍ଷ୍ମୀ ଦେବୀଙ୍କର ଅଟେ ନିଜ ଅଙ୍ଗ
ହୃଦପଦ୍ମରେ ଘେନିଣ କ୍ରୀଡ଼ନ୍ତି ନୃସିଂହ ।
ଚୌଷଠି ସହସ୍ର କନ୍ୟା ଘେନି ଦେବହରି
ଯଜ୍ଞବେଦୀରେ ଘେନିଣ ସୁଖେ କ୍ରୀଡ଼ାକରି ।
ରାମ ପ୍ରେମରୂପା ଦେବ ଯେ ସ୍ୱରୂପ କାୟେ
ତିନିକଳା ଘେନି ତହୁଁ ହୁଅନ୍ତି ଉଦୟେ ।
ମହାଲକ୍ଷ୍ମୀ ଦେବୀଙ୍କର ଯେଉଁ ବ୍ରହ୍ମଅଙ୍ଗ
ତାଙ୍କ କୋଟି କଳା ମଧ୍ୟେ ବିଜୟ ନୃସିଂହ ।
ମହାଲକ୍ଷ୍ମୀ ଦେବୀଙ୍କର ଯେଉଁ କୋଟି କଳା
ଦିଶଇ ନୃସିଂହ ଦେହେ ହୋଇ ବନମାଳା ।
ତହିଁକି ଯେ ସେବା କରିଛନ୍ତି ପ୍ରେମରୂପା
କମଳ ଏକ କଳାରୁ ଜନ୍ମିଛି ସ୍ୱରୂପା ।
ନୃସିଂହ ଦକ୍ଷିଣଭାଗେ ଯୋଗରୂପା ଛନ୍ତି
ବାମଭାଗେ ପ୍ରେମରୂପା ଦେବୀ ବିଳସନ୍ତି ।
ସେ ବେନି ସଖୀଙ୍କ ମଧ୍ୟେ ବିଜୟେ ନୃସିଂହ
କରନ୍ତି ଲକ୍ଷ୍ମୀଙ୍କୁ କୋଳେ ଘେନି କ୍ରୀଡ଼ାରଙ୍ଗ ।
ଅନନ୍ତ ସିଂହାସନେ ଯେ ଶେଷ ଛନ୍ତି ହୋଇ
ବିହାର କରନ୍ତି ତହିଁପରେ ଭାବଗ୍ରାହୀ ।
ଲକ୍ଷ୍ମୀସଭାରେ ଯୁଗଳ ହୋନ୍ତି ଦେବହରି
ଯୋଗରୂପା ପ୍ରେମରୂପା ବେନି କୁଚ ଧରି ।
ଶ୍ରୀପ୍ରେମ ରୂପାଟି ରସେ ଯେଉଁ ରୂପ ଗୋଟି
ନୃସିଂହଙ୍କ କେଳିକି ସେ ଅଟଇ ବଇଠି ।
ତହିଁ ଉପରେ ଲକ୍ଷ୍ମୀଙ୍କୁ ଘେନି ଭଗବାନ
ଯୁଗଳଭାବେ ଅଛନ୍ତି ହୋଇ ଏକାସନ ।
ଶ୍ୱେତ ତିଳକ ବୋଲିଣ ଯେବଣ ପଦାର୍ଥ
ଓଁକାର ବ୍ରହ୍ମ ଅଟନ୍ତି ସେହୁ ଜଗନ୍ନାଥ ।
ସବୁଠାରେ ଅଛନ୍ତି ସେ ନାମରୂପେ ପୂରି
ମଥାରେ ପାଗ ବାନ୍ଧନ୍ତି ଟେକି ଦେବହରି
ବସିଲା ମକାର ଓଁକାରକୁ ସୂତ୍ର ବାନ୍ଧି
ମୂଳରେ ନେଇଣ କଲା ମାତ୍ରା ଦେବ ଛନ୍ଦି ।
ଗୁଣିଲେ ସେ ଅକ୍ଷରକୁ ମନ୍ତ୍ର ଭାବ ହୋଇ
ତେବେ ସେ ସାକ୍ଷାତେ ବ୍ରହ୍ମରୂପ ଦେଖାଯାଇ ।
ସେହି ବ୍ରହ୍ମରୁ ଜନ୍ମନ୍ତି ଜାଣ କାମବୀଜ
ପ୍ରତ୍ୟକ୍ଷେ ସ୍ୱୟଂ ବ୍ରହ୍ମ ସେ ଜଗନ୍ନାଥ ତେଜ ।
ଶ୍ୱେତ ଚିତାଗୋଟି ବୁଝିଲେତ ଅଟେ ସେହି
ତହିଁକି ସମାନ ନାହିଁ ଏ ବ୍ରହ୍ମାଣ୍ଡେ କେହି ।
ହୃଦୟରେ ବିଜେ କରିଛନ୍ତି କମଳିନୀ
ସମସ୍ତଙ୍କ ମାତା ସେହୁ ବିଷ୍ଣୁ ପାଟରାଣୀ ।
କେବଳ ହଅ ଅକ୍ଷର ଗୋଟି ପ୍ରେମରୂପା
ମିଥ୍ୟାଭାବରେ ଗୋବିନ୍ଦ କଲେ ତାକୁ କୃପା ।
ବୁଝିଲେ ତ ଗୁରୁଭାବ ଅଟେ କମଳିନୀ ।
ତହିଁକି କି ସେ ମୋକ୍ଷଦାତା ଅଟେ ଚକ୍ରପାଣି
ଶିଷ୍ୟ ଗୁରୁ ଜଗନ୍ନାଥ ଅଟେ ଏଣୁ ଏକ
ଏ ମାର୍ଗ ଚିହ୍ନିପାରନ୍ତି ଏକା ଜ୍ଞାନୀଲୋକ ।
ରାନ୍ଧନ୍ତି ରାନ୍ଧିବା ଦ୍ରବ୍ୟମାନ କମଳିନୀ
ତହିଁର ମଣୋହି ତ୍ରିପୁରା ଯେ ଠାକୁରାଣୀ ।
ମହାପ୍ରସାଦ ଅଟନ୍ତି ସେହି ଜଗନ୍ନାଥ
କରନ୍ତି ଭକ୍ଷଣ ସର୍ବେ ପୁରେ ମନୋରଥ ।
ଶ୍ରୀ ମହାପ୍ରଭୁଙ୍କର ଶ୍ରୀ ଅଙ୍ଗେ ଯେବେ ଜାଣ
ପୀଡ଼ା କରିବଟି ଆସି କାମ ପଞ୍ଚବାଣ ।
ଅଚ୍ୟୁତ ସେ କମଳିନୀ ସଙ୍ଗେ କ୍ରୀଡ଼ାକରେ
ପ୍ରେମସୁଖରେ ସୁରତି କରି ଦିନ ହରେ ।
ତେଣୁ ହରେ ଶବଦଟି ଅଟେ ଜାଣ ଗୁରୁ
ରାମ ଶବଦ ଶିଷ୍ୟଟି ପ୍ରେମ ପ୍ରକାଶରୁ ।
କୃଷ୍ଣ ଶବଦ ଅକ୍ଷୟ କଳା ପରଂବ୍ରହ୍ମ
ଏରୂପେ ଷଡ଼ ଅକ୍ଷର ଶ୍ରୀପୁରୁଷୋତ୍ତମ ।
ହ ଅକ୍ଷରେ କହିବାକ ବର୍ଣ୍ଣ ଏବେ ଶୁଣ
ଶକ୍ତିରୂପରେ ବିହାର କରେ ସଂସାରେଣ ।
ତହିଁକିରେ ଅକ୍ଷରଟି ଅଟେ ପୁଷ୍ପଲିଙ୍ଗ
ରା ଅକ୍ଷର ପୁଣିକରେ ତହିଁ କ୍ରୀଡ଼ାରଙ୍ଗ ।
ମ ଅକ୍ଷର ହୁଅଇଟି ସମସ୍ତ ସ୍ୱରୂପ
କ ଅକ୍ଷର ଗୋଟିକ ଯେ ସ୍ୱୟଂ ବ୍ରହ୍ମକଳ୍ପ ।

ଷ ଅକ୍ଷରଟି ପରମ ଆକାରଟି ଜାଣ
ଲକ୍ଷ୍ମୀଙ୍କୁ ଅଛନ୍ତି ବେଢ଼ି ସେ ଛଅଟି ବର୍ଣ୍ଣ ।
ଲକ୍ଷ୍ମୀ ନୃସିଂହ ଅଟନ୍ତି ଏଣୁ ଷଡ଼ାକ୍ଷର
ମହାମନ୍ତ୍ର ହୋଇହେଲେ ସଂସାରେ ପ୍ରଚାର ।
କହନ୍ତି ଶ୍ରୀହରି ରମଣକୁ କମଳିନୀ
ତେଣୁ ହରେ ରାମକୃଷ୍ଣ ଷଡ଼ାକ୍ଷର ଭଣି ।
ହରିର ମନ କ୍ଷରନ୍ତେ ହରିପ୍ରିୟା ଲକ୍ଷ୍ମୀ
ହରି ହୃଦେ ବସିଥାନ୍ତି ହରିଙ୍କି ଯେ ରମି ।
ଅନନ୍ତ ଶେଷଦେବଙ୍କ ଅଙ୍ଗ ଉପରେଣ
ବିଜେକରିଛନ୍ତି ପ୍ରଭୁ ଲକ୍ଷ୍ମୀ ନାରାୟଣ ।
ସେ ମହାଯଜ୍ଞ ବେଦୀର ପୀଠୋପରେ ବସି
ଲକ୍ଷ୍ମୀଙ୍କୁ ଘେନି କ୍ରୀଡ଼ନ୍ତି ପ୍ରଭୁ ବ୍ରହ୍ମରାଶି ।
ମହାଲକ୍ଷ୍ମୀ ତହିଁ ତାଙ୍କ କୋଳରେ ଯେ ଧରି
କରନ୍ତି ପ୍ରେମରସ ଯେ କୋଳାଗ୍ରତ କରି ।
ଚରଣେ ଚରଣ ଖଞ୍ଜିଦେଇ ଆଦିମୂଳ
ଜାନୁକୁ ଜାନୁ ଛନ୍ଦିଣ ହୁଅନ୍ତି ଯୁଗଳ ।
କଟିରେ ଯେ କଟି ବାନ୍ଧି ନାଭି ନାଭି ଛନ୍ଦି
ହୃଦୟକୁ ହୃଦ ଛନ୍ଦି ବାହୁ ବାହୁ ବାନ୍ଧି ।
ସେ ବେନି ହୃଦୟ ମଧ୍ୟେ ତିଳେ ନାହିଁ ଜଡ଼ା
କଣ୍ଠେ କଣ୍ଠଚକ୍ର ଲାଗି ହୋଇଅଛି ଯୋଡ଼ା ।
ଅଧରକୁ ଅଧର ସେ ଓଷ୍ଠେ ଓଷ୍ଠ ଭାବ
ନାସାରେ ନାସାକୁ ଖଞ୍ଜି ଚୁମ୍ବେ ପଦ୍ମନାଭ
କର୍ଣ୍ଣରେ ଯେ କର୍ଣ୍ଣ ବେନି ଥୋଇଲେ ସଳଖି
ଏରୂପେ ବିଷ୍ଣୁଲୀଳା କେ ପାରେ ଶାସ୍ତ୍ରେ ଲେଖି ।
ରତିଶାସ୍ତ୍ର କଥା ଏବେ ଶୁଣ ମୁନିବର
ଏକା ସ୍ତିରୀକେ ଯେ ରମିପାରେ ଲକ୍ଷେ ଥର
ସେ ପତି ପତ୍ନୀ ଯେ ଲକ୍ଷ୍ମୀ ନୃସିଂହଙ୍କ ଯମ
ସେହି ବେନିଙ୍କର ଜାଣ ସତୀ ଯତିକର୍ମ ।
ପତିକି ବିଷ୍ଣୁଙ୍କ ପ୍ରାୟ ମଣେ ଯେଉଁ ସ୍ତିରୀ
କୋଟିଏକ ତୀର୍ଥଫଳ ଲଭେ ସେହୁ ନାରୀ ।
ଆବର ଯେତେକ ସ୍ତିରୀ ସମସ୍ତେ ତା ତଳ
ପତିବ୍ରତାଟି ସାକ୍ଷାତେ ଅଟେ ଗଙ୍ଗାଜଳ ।
ପତିବ୍ରତା ସ୍ତିରୀଗୋଟି ଯାର ଗୃହେ ଥାଇ
ପୌର୍ଣ୍ଣମୀ ଚନ୍ଦ୍ର ପ୍ରାୟ ତା ସ୍ୱାମୀ ପ୍ରକାଶଇ ।
ପାପିଷ୍ଠା ସ୍ତିରୀ ଯେବଣ ଗୃହେ ଜାଣ ଥାଇ
କୃଷ୍ଣଚନ୍ଦ୍ର ପ୍ରାୟ ସ୍ୱାମୀ ତାର କ୍ଷୟ ଯାଇ ।
ନୃସିଂହ ରାହାସ ଏହୁ ଅଟେ କ୍ରୀଡ଼ାରସ
ପଲକ ମାତ୍ରକେ କୋଟି ବ୍ରହ୍ମାଣ୍ଡ ଯେ ନାଶ ।

ଏରୂପେ ବ୍ରହ୍ମାଣ୍ଡ କୋଟି କୋଟି ନାଶଗଲେ
ନୃସିଂହ ରାହାସ କ୍ରୀଡ଼ା ନ ଭାଜଇ ଭଲେ ।
ନୃସିଂହ ରାହାସ କ୍ରୀଡ଼ା ଏସନକ ରଙ୍ଗ
ଯୁକତେ ତ ଏକ ପ୍ରାୟ ଦିଶେ ବେନି ଅଙ୍ଗ ।
କ୍ରୀଡ଼ାରେ ଲକ୍ଷ୍ମୀ ନୃସିଂହ ଜାଣ ଏକ କାୟା
ସମ୍ପୂର୍ଣ୍ଣ କାଳରେ ରତିକରେ ବିଷ୍ଣୁ ଶ୍ରୀୟା ।
ମହାଲକ୍ଷ୍ମୀ ମାତାଙ୍କର ଶ୍ରୀମୁଖାରବିନ୍ଦ
ନୃସିଂହ ଚୁମ୍ବ ଦିଅନ୍ତି ବହେ ମକରନ୍ଦ ।
ଚିରଞ୍ଜୀବୀ ନାମରୂପୀ ହୋଇଣ ଶ୍ରୀହରି
ଆତ୍ମା ମଜ୍ଜିହୋଇ ସର୍ବ ଦେହେ ଅବତରି ।
ସେ ଯଜ୍ଞବେଦୀ ମଣ୍ଡପ ପରେ ଛନ୍ତି ବସି
ପ୍ରେମରେ ଲକ୍ଷ୍ମୀ ନୃସିଂହ ହେଲେ ହସାହସି ।
ନୃସିଂହଙ୍କ ପ୍ରେମରସୁ ଗଳେ ଗୁପ୍ତବିନ୍ଦୁ
ଆତ୍ମା ମଜ୍ଜିହୋଇ ପ୍ରକାଶେ ସେ ନୀବିବନ୍ଧୁ ।
ରସରେ ଯେ ରସ ଜାତ ହବନ୍ତେ କମଳାର
ଶକ୍ତି ମଧ୍ୟେ ରସଭାବ ଶ୍ରୀହରି କିଶୋର ।
ଯୋଗାରୂପା ପ୍ରେମରୂପା ରଖି ବେନିଭାଗେ
ଶ୍ରୀଲକ୍ଷ୍ମୀଙ୍କି ଘେନି ପ୍ରଭୁ ରମନ୍ତି ଏକାଙ୍ଗେ ।
ନୃସିଂହଙ୍କ ଜାନୁପରେ ଲକ୍ଷ୍ମୀ ବେନି ଜାନୁ
ତିନିପୁର ଯାଏ ଶୋଭା ଯୁଗଳ ବନ୍ଧନୁ ।
କୋଟି କୋଟି ନାୟିକା ଯେ କୋଟି ସଖୀ ଘେନି
ବେନି ପାଶେ ଛନ୍ତି ଯୋଗ ପ୍ରେମରୂପା ବେନି ।
ଶ୍ରୀଲକ୍ଷ୍ମୀ ନୃସିଂହଙ୍କ ଶ୍ରୀଅଙ୍ଗ କିରଣକୁ
କୋଟିଚନ୍ଦ୍ର କୋଟି ସୂର୍ଯ୍ୟ ନୋହେ ସରି ତାକୁ ।
ସେ କିରଣ ମଧ୍ୟେ ଛନ୍ତି ଯୋଗ ପ୍ରେମରୂପା
ଅଟନ୍ତି ଲକ୍ଷ୍ମୀ ନୃସିଂହ ପରଂବ୍ରହ୍ମ ରୂପା ।
ଶ୍ରୀ ନୃସିଂହ ରାହାସଯେ ଯେବଣ ମଣ୍ଡଳ
କୋଟି ସୂର୍ଯ୍ୟ କିରଣରୁ ଦିଶଇ ଉଜ୍ଜ୍ୱଳ ।
ଏରୂପେ ନୃସିଂହ ଲକ୍ଷ୍ମୀ ବେନି ନିତ୍ୟସ୍ଥଳେ
ଯୋଗମାର୍ଗେ ବସିଛନ୍ତି ରମା ଘେନି କୋଳେ ।
ସଚ୍ଚିଦାନନ୍ଦ ପ୍ରଭୁ ଯେ ଅଟେ ମୋକ୍ଷଦାତା
ସଂସାର ଧାରଣ ପ୍ରଭୁ ସର୍ବଲୋକ କର୍ତ୍ତା ।
ଲକ୍ଷ୍ମୀ ନୃସିଂହ ଯୁଗଳ ନିତ୍ୟ ମହାଧାମ
ସମ୍ଭୋଗ ସୁଖରେ ସେହୁ କେଳି ଆଦି ନାମ ।
ସୁରତି ରତି ମତ ଯେ ଉଲଗନ ଭାବେ
ବେନିପାଦ ଧରି ମୁଖ ଚୁମ୍ବେ ପଦ୍ମନାଭେ ।
ଚୁମ୍ବ ସରାଗରେ ସୁବାସଇ ପଦ୍ମମୁଖ
ଜନମେ ପ୍ରେମ ଭଣ୍ଡାରୁ ବହୁ ପ୍ରେମ ସୁଖ ।

ଶ୍ରୀଲକ୍ଷ୍ମୀ ନୃସିଂହ ରତି ଏକ ଆସନରେ
ପୂର୍ବେ କ୍ଷରିମୁଖ ଲକ୍ଷ୍ମୀ ମୁଖ ପଶ୍ଚିମରେ ।
ଅଛି ଏକତ୍ର ହୋଇ ଯେ ମୂର୍ତ୍ତି ବେନି ଡ଼ୋଳା
ଯଜ୍ଞ ବେଦୀପରେ ଲକ୍ଷ୍ମୀ ନୃସିଂହଙ୍କ ଲୀଳା ।
ଲକ୍ଷେ ଯୋଜନ ଯାଏ ଯେ ପ୍ରକାଶଇ ପ୍ରଭା
କୁଚମଣ୍ଡଳ ଫୁଟିଣ ଦିଶେ ଜ୍ୟୋତିଆଭା ।
ତହିଁର ମଧ୍ୟେ କଟକ ଯେଉଁ ମଧ୍ୟସ୍ଥଳୀ
ଶ୍ରୀନୃସିଂହ ମହାପ୍ରଭୁ ନ ପାରନ୍ତି ଚାଲି ।
କମଳ ବଦନୀ ସୁକୋମଳ କୁଚଭାର
ତାହାକୁ ଯେ ଦୃଶ୍ୟ ନୋହେ ଶ୍ରୀହରିବିହାର ।
କେବଳ ନୃସିଂହ ପ୍ରଭୁଙ୍କର ପ୍ରେମଲକ୍ଷ୍ମୀ
ପରମ ସୁଖଭାବରେ ତହିଁଛନ୍ତି ରମି ।
ମାନରଙ୍ଗରେ ଝିଙ୍କିଣଛନ୍ତି ଲକ୍ଷ୍ମୀମନୁ
ନେତ୍ର ଅଙ୍ଗରେ ଝିଙ୍କିଣଛନ୍ତି ଲକ୍ଷ୍ମୀତନୁ ।
ଇନ୍ଦ୍ରିୟ ଅଙ୍ଗରେ ଜାତହୁଏ ସୁଖେ ହସ
ମନବୋଧ ହ୍ୱନ୍ତେ କାମବୀଜ ଯେ ପ୍ରକାଶ ।
ଦୃଷ୍ଟିର ଉପରେ ଜାଣ ବିନ୍ଦୁଘର ସ୍ଥିତି
ଶ୍ରୀଲକ୍ଷ୍ମୀ ନୃସିଂହଙ୍କର ଯୁଗଳୁ ଉତ୍ପତ୍ତି ।
ଅକାର ବକାର ଆଉ ମକାର ସକାର
ହକାରକୁ ମିଶାଇଣ ଏ ପାଞ୍ଚଅକ୍ଷର ।
ଏ ପାଞ୍ଚ ଅକ୍ଷରୁ ଜନ୍ମ ସବୁଙ୍କରି ଦେହ
ଶୁଣ ହେ ନାରଦ କହୁଛନ୍ତି ପିତାମହ ।
ଶ୍ରୀଗୁରୁଗୋବିନ୍ଦଙ୍କ ଯେ ଥିବ ସେବାକରି
ସେହି ଯେ ବୁଝିବ ଏହି ରାସ ଅନୁସରି ।
ଗୁରୁଙ୍କ ଆଜ୍ଞା ନ ଥିଲେ ନ ପାରେ କେ ବୁଝି
ସାଧୁଙ୍କୁ କେବଳ ସହି ଅଟେ ଜ୍ଞାନମଞ୍ଜି ।
ଗୁରୁ କହିବାର ବାଣୀ ପ୍ରାଣୀଙ୍କି ସେ ମୋକ୍ଷ
ଏ ଭବସଂସାରୁ ପାରି ହୁଅଇ ପ୍ରତ୍ୟକ୍ଷ ।
ଭକ୍ତିଭାବ ଘେନିକଲେ ଗୁରୁଙ୍କର ସେବା
ଗୁରୁ ଏକା ପରଂବ୍ରହ୍ମ ଅଟେ ବିଷ୍ଣୁଦେବା ।
ଶ୍ରୀଗୁରୁ ଦେବାର ମନ୍ତ୍ର ସ୍ୱୟଂ ଜଗନ୍ନାଥ
ଶୁଣିଲାକ୍ଷଣି ସେ ମୋକ୍ଷ ହୁଅନ୍ତି କୃତାର୍ଥ ।
ସବୁ ସଞ୍ଚିବାକୁ ସମର୍ଥ ଯେ ଭାବଗ୍ରାହୀ
ତାକୁ ସଞ୍ଚିବାକୁ କେହି ସଂସାରରେ ନାହିଁ ।
ଯାବତ ଆତ୍ମାକୁ ପ୍ରଭୁ ପାରନ୍ତି ଯେ ସଞ୍ଚି
ଜଳରୁ ଆସଇ ଯେହ୍ନେ ଲହରୀ ଉପୁଜି ।
ପୁଣି ହିଁ ଆସି ପୁଣିହିଁ ବେଗେ ଚଳିଯାଇ
ଯାବତ ଜୀବନ ଜନ୍ମ ସେ ପ୍ରକାରେ କହି ।

ଜନ୍ମନ୍ତି ମରନ୍ତି ସର୍ବେ ଜନ୍ମି ପୁଣି ଆସି
ନୁହନ୍ତି କେବେହେଁ କ୍ଷୟ ବୃଦ୍ଧି ବ୍ରହ୍ମରାଶି ।
ଶ୍ରୀରାସମଣ୍ଡଳ ମଧ୍ୟେ ପ୍ରଭୁ ବିଜେକରି
ଅଛନ୍ତି ଚୌଷଠି ସସ୍ର କନ୍ୟା ସେବାକରି ।
ବଦରିକା ନାୟିକାଏ ହୋଇ ଦିବ୍ୟବେଶ
ନୃସିଂହ ଦୟାଙ୍କୁ ଶିରେ ଦେଲେ ନାନାପୁଷ୍ପ ।
ପୁଷ୍ପ ପ୍ରଭୁ ଶିରେ ଦେଇ ପାଞ୍ଚନ୍ତି ଯୁବତୀ
ବୋଲନ୍ତି ପତିର ପ୍ରାୟ ସେବା କଲୁ ନିତି ।
ଆମ୍ଭଙ୍କୁ ପ୍ରଭୁଙ୍କୁ କେହୁ ବିଭାକରି ଦ୍ୟନ୍ତା
ଏରୂପକୁ ଆମ୍ଭରୂପ ଶୋଭା ପାଉଥାନ୍ତା ।
ଏରୂପେ ବିରହୀ ହୋଇ ବିଚାରନ୍ତେ ମନେ
ଅନ୍ତର୍ଯ୍ୟାମୀ ପୁରୁଷ ତା ଜାଣିଲେକ ଧ୍ୟାନେ ।
ବୋଇଲେ ଯୁବତୀମାନେ ବିଚାରିଲେ ଯାହା
ରାହାସ ଅନ୍ତେ ଚେତାଇଦେବା ତାଙ୍କୁ ତାହା ।
ଏହିରୂପେ ପାଞ୍ଚି ସ୍ୱାମୀ ହେଲେ ପୁଷ୍ପ ମଣ୍ଡି
ବଦରିକା କନ୍ୟାଙ୍କର ମାୟା ଦେଲେ ଖଣ୍ଡି ।
ପୁଷ୍ପ କ୍ଷଣକରେ ମାୟା ଲଗାନ୍ତି ନୃହରି
ପୁଣି ହିଁ କ୍ଷଣକରେ ମାୟା ଛଡ଼ାନ୍ତି ସବୁରି ।
ଏହିରୂପେ ନାୟିକାଏ କଲେ ଆସି ସେବା
ବଜାନ୍ତି ହାସିନୀ ହେମଗୋରୀ ବୀଣାରବା ।
ସୁରେଖା ଚିତ୍ରରେଖା ଯେ ଢାଳନ୍ତି ଚାମର
ସୁଦେହା ହେମବନ୍ତୀ ଯେ ସେବନ୍ତି ପୟର ।
ଆଲଟ ଧରି ତ୍ରିପୁରା ହୀରାବତୀ ବିଞ୍ଚି
କର୍ପୂର ଧରିସାରେଣ ଶତରେଖା ସିଞ୍ଚି ।
କମଳା ବିମଳା ନୀଳା ଶ୍ୟାମଳା ଏ ଚାରି
ଚାରିଦ୍ୱାରେ ଜଗିଛନ୍ତି ହୋଇ ରାସଦ୍ୱାରୀ ।
ଯୋଗରୂପା ପ୍ରେମରୂପା ବାମ ଦକ୍ଷିଣରେ
ଜଗନ୍ତି ପହରା ସୋହଂ ହଂସ ଏହି ଦ୍ୱାରେ
ଯାନୁକା ମୋହିନୀ କାମାଳିକା ମଧୁମତୀ
ତାଳ ଖୋଳ ବଜାଇ ଯେ ବୁଲନ୍ତି ଚୌକତି ।
ଗୋମତୀ ସୁକାନ୍ତି ଭାନୁମତୀ ସୁକୁନ୍ତଳା
ବଜାନ୍ତି ଯେ କରତାଳି ଏ ଚାରି ଅବଳା ।
ତାରିଣୀ ରୁକ୍ମିଣୀ ଶିରୋମଣି ନାରାୟଣୀ
କରନ୍ତି ଆଳପ ଟେକି କେଦାର ରାଗିଣୀ ।
ଉରୀ କାବେରୀ ଯେ ହେମଗୋରୀ ଗୋଦାବରୀ
ଗାବନ୍ତି ଗୀତ ଏ ଟେକି ରାଗେ ଗୁଣ୍ଡକିରୀ ।
ରେହିଣୀ ଦୟଣା କାମସେଣା ସାରକମା
ଗୀତ ଗାବନ୍ତୀ ଖେମଟା ରାଗେ ଚାରିବାମା ।

ଯମୁନା ଅମ୍ବାଳୀ ଅମ୍ବୁବତୀ ଜମ୍ବୁବତୀ
ଡ଼ାକନ୍ତି ପିଛଳା ଏହୁ ରାସରସେ ମାତି ।
ଆବର ଅଛନ୍ତି ଅଷ୍ଟସଖୀ ଅଷ୍ଟଦଳେ
କରନ୍ତି ଅଷ୍ଟପ୍ରହରୀ ସେବା ଆଦିମୂଳେ ।
ଚଉଷଠି ସସ୍ର ନାୟିକାଯାକ ତହିଁ ଆସି
ସପ୍ତବେଢ଼ା ହୋଇ ସେବିଲେକ ବ୍ରହ୍ମରାଶି ।
ବୋଇଲେ ପ୍ରଥମ ବେଢ଼ା ସଖୀ ବ୍ରହ୍ମବୀଣା
ଚଉଦ ପୁରରେ ହେଲା ସେ ଶବଦ ଜଣା ।
ଦ୍ୱିତୀୟ ବେଢ଼ରେ ଥିଲେ ଯେତେ ସଖୀବୃନ୍ଦ
ବଜାନ୍ତି ଡ଼ମ୍ବରୁ ଧରି ହୋଇ ମହାନନ୍ଦ ।
ତୃତୀୟ ବେଢ଼ ସଖୀ ଯେ କଂସାଳବାଇଲେ
ଚତୁର୍ଥ ବେଢ଼ରେ ସଖୀ ତାଳ ବଜାଇଲେ
ବାଇଲେ ପଞ୍ଚମ ବେଢ଼ ସଖୀ ଧରି ରବା
ଷଷ୍ଠବେଢ଼ ସଖୀ ଟେକିଦେଲେ ଶଙ୍ଖପ୍ରଭା ।
ବଜାନ୍ତି ସପ୍ତବେଢ଼ା ସଖୀଏ କରତାଳି
ତିନିପୁରଯାକେ ବାଦ୍ୟ ପଡ଼ିଲା ଉଛୁଳି ।
କେହୁ ସଖୀ ଭୋଳହୋଇ ନାଚେ ବାହୁଟୋଳି ।
କେହି ହାଉ ହାଉ ହୋଇ ଦ୍ୟନ୍ତି ହୁଳହୁଳି ।
ବୁଲନ୍ତି କେ ଚକ୍ରାକାର କରି ବେନିକର
ଉଛୁଳଇ ହରିବୋଲ ଶବ୍ଦେ ତିନିପୁର ।
ନୃସିଂହ ରାସେ ବାଜଇ ଦଶଗୋଟି ତାଳ
ତେଣୁ ସେ ତାଙ୍କ ନାମ ଶୁଣ ତପଶୀଳ ।
ପ୍ରଥମ ତାଳର ନାମ ଅଟେ ଜାଣ ଆଦି
ଶୁଣିଲେ ଚିହ୍ନିପାରିବେ ମନେ କେହି ଭେଦି ।
ଦ୍ୱିତୀୟ ତାଳର ନାମ ଅଟଇ ଯେ ମଠି
ତୃତୀୟ ତାଳର ନାମ ନିସାରି ବୋଲାନ୍ତି ।
ଚତୁର୍ଥ ତାଳର ନାମ ମାଠ ପ୍ରବର୍ତ୍ତଇ
ପଞ୍ଚମ ତାଳର ନାମ ରୂପକା ଯେ କହି ।
ଷଷ୍ଠ ତାଳର ନାମ ଯେ ଅଟଇ ଝମ୍ପକ
ସପ୍ତମର ନାମ ଲୟ ଜାଣେ ପୁଣ ଲୋକ ।
ଅଷ୍ଟମେ ପଡ଼ି ନବମେ ଦ୍ୱିପଟା ଯେ ତାଳ
ଦଶମେ ତ୍ରିପଟା ତାଳ ହୁଏ ସୁକୋମଳ ।
ଏହିରୂପେ ଦଶତାଳ ବାଜେ ସଂକୀର୍ତ୍ତନେ
ଗୁଣୀ ସେ ତାଳର ନାମ ଚିହ୍ନିବେ ପ୍ରଚ୍ଛନ୍ନେ ।
ଏରୂପେ ବଜାନ୍ତେ ଦଶତାଳ ସ୍ତିରୀଗଣେ
ଶୁଣିଲେ ସଂସାରେ ମୋହଯାନ୍ତି ଲୋକ ମୋତେ ।
ପାଷାଣମାନ ତରଳି ବହିଯାନ୍ତି କ୍ଷିତି
ଅସମ୍ଭବ ସ୍ତିରୀମାନେ ହେଲେ ପୁଷ୍ପବତୀ ।

ଗାବଙ୍କର ଚିରୁ କ୍ଷୀର ପଡ଼ିଲାକ ବହି
ଯୋଗାରି ପୁରୁଷେ ଚାହିଁଦେଲେ ଚକ୍ଷୁଫେଇ ।
ବୃଦ୍ଧାସ୍ତିରୀମାନେ ପୁଣି ହେଲେ ନବଯୁବା
ଶୁଷ୍କକାଠ ପଲ୍ଲବିଣ ହେଲେ ଦିବ୍ୟଶୋଭା ।
ସଂସାରରେ ମୃତ ଶବ ଥିଲେ ଯେତେ ପଡ଼ି
ସମସ୍ତେ ଜୀବନ ପାଇ ଉଠିଲେ ବାହୁଡ଼ି ।
ଜୀଅନ୍ତା ଲୋକଙ୍କର ହେଲା ଦୁଇଗୁଣ ଆୟୁ
ମରିବା ଲୋକଙ୍କ ନାକେ ବହିଲାକ ବାୟୁ ।
ଅନ୍ଧ ଲୋକମାନଙ୍କର ଚକ୍ଷୁକୁ ଦିଶିଲା
ବଧିର ଲୋକମାନଙ୍କୁ ଡାକିଲେ ଶୁଭିଲା ।
ଜଡ଼ା ଲୋକମାନେ କହିଲେ ଯେ ସୁବଚନ
ଶୁଣିଣ କହିଲେ ମୂର୍ଖଲୋକ ବ୍ରହ୍ମଜ୍ଞାନ ।
ବାତୁଳଲୋକମାନେ ଯେ ସଭା ଯୋଗ୍ୟ ହେଲେ
ଦରିଦ୍ରଲୋକେ ବିପୁଳ ଭୋଗମାନ କଲେ ।
ଶୁଣ ହେ ନାରଦ ଏହି ଗ୍ରନ୍ଥର ଯେ ବାଣୀ
ପୁରାଣ ନିନ୍ଦିବା ଲୋକ ମୂର୍ଖ ଲୋକେ ଗଣି ।
ବ୍ରାହ୍ମଣଙ୍କୁ ନିନ୍ଦାକଲେ ଆୟୁ କ୍ଷୟ ଯାଇ
ଗୁରୁଙ୍କୁ ନିନ୍ଦାକଲେ ଯେ ଅପୁତ୍ରିକ ହୋଇ ।
ବୈଷ୍ଣବଙ୍କୁ ନିନ୍ଦାକଲେ ନପୁଂସକ ହୋଇ
ଭାରିଯାକୁ ନିନ୍ଦାକଲେ ଧର୍ମ ନାଶଯାଇ ।
ଗୌରବକୁ ନିନ୍ଦାକଲେ ହୁଏ ନର୍କଗତି
ମାତାଙ୍କୁ ନିନ୍ଦାକଲେ ଯେ ମରଇ ସନ୍ତତି ।
ସୁଜନକୁ ନିନ୍ଦାକଲେ ଚକ୍ଷୁ ହୁଏ ଅନ୍ଧ
ମୈତ୍ର ନିନ୍ଦାକଲେ ଉପୁଜଇ ଦେହ ଗନ୍ଧ ।
ରାଜା ନିନ୍ଦାକଲେ ଶିର ଛେଦନ ହୁଅଇ
ଅଭ୍ୟାଗତକୁ ନିନ୍ଦିଲେ କଷ୍ଟେ ଦିନ ଯାଇ ।
ସଂଗ୍ରାମକୁ ନିନ୍ଦିଲେଟି ନୋହେ ଶତ୍ରୁ ଜୟେ
ସୁସ୍ତିରୀକି ନିନ୍ଦାକଲେ ହୁଏ କୁଳକ୍ଷୟେ ।
ଶ୍ରୀନୃସିଂହ ପୁରାଣ ଯେ ଅଟେ ମୁକ୍ତିପଥ
ଶୁଣିଲେ ସଂସାର ଜନେ ହୋଇବେ କୃତାର୍ଥ ।
ପଦ ହେଜି ପାରିଲେଟି ଲାଭ ବ୍ରହ୍ମଜ୍ଞାନ
ଦର୍ଶନ କରିଲେ ନୟନରେ ଭଗବାନ ।
ବଦନରେ ଉଚ୍ଚାରିଲେ ଲଭି ମୋକ୍ଷଗତି
ବୈକୁଣ୍ଠରେ ବାସ ତାକୁ ଦେବେ ଲକ୍ଷ୍ମୀପତି
ଶୁଣ ହେ ନାରଦ ଶ୍ରୀନୃସିଂହଙ୍କ ରାହାସ
ବ୍ରହ୍ମାଙ୍କ ଆସନ ଟଳି କମ୍ପେ ସ୍ୱର୍ଗବାସ ।
ଅସମ୍ଭାଳ ହୋଇ ସର୍ବେ ମଞ୍ଚେ ବିଜେକଲେ
ବଦ୍ରିକାଦେଶେ ଆନନ୍ଦବନରେ ମିଳିଲେ ।

ଶ୍ରୀ ନୃସିଂହ ରାହାସକୁ ଦେଖି ଚଉମାଥେ
ପାଞ୍ଚନ୍ତି ବିଷ୍ଣୁର ମାୟା ଅନ୍ତ ନାହିଁ ଏଥେ ।
ପୁଣି ବୋଲେ ନୃସିଂହର ଅଟେ କେତେ ଖେଡ଼
ଏତେ ଯୁବତୀ ଆଣିଲେ କାହୁଁ ଯୋଗାରୁଢ଼ ।
ତାଳ ଖୋଳ ଝାଞ୍ଜ ଏତେ ମିଳିଲାକ କାହୁଁ
ଆମ୍ଭେମାନେ ଦିନେ ଏହା କେବେ ଦେଖିନାହୁଁ ।
ସାତ ବରଷ ହୋଇଲା ଜନ୍ମିଲେ ଶ୍ରୀହରି
ଏତେକ ରାହାସବନ୍ଧ ଜାଣିଲେ କିପରି ।
ଯେଉଁ ରାହାସ ଅଟଇ ଦେବେ ଅଗୋଚର
ଦେଖିଲେ ମଧ କହି ନ ପାରେ ବେଦବର ।
ଗୋଲକପୁରରେ ଅଛି ଯେଉଁ ନିତ୍ୟସ୍ଥଳ
ରାହାସ କରନ୍ତି ସିନା ତହିଁ ଆଦିମୂଳ ।
ଏଥକୁ ଏହି ରାହାସ ଆଣିଲେ କେମନ୍ତେ
ଆଚମ୍ବିତ ପ୍ରାୟ ଏହା ଲାଗଇତ ମୋତେ ।
କୃଷ୍ଣବଲ୍ଲଭର ପୋଓ ନରବିଷ୍ଣୁ ସିନା
କିରୂପେ ବା ଏଥେ କଲେ ଏଡ଼େକ ଭାବନା ।
ତଥାପି ବିଷ୍ଣୁ ବିନା ନ ପାରେ କେହି କରି
କଲେ ଯେବେ ବୈକୁଣ୍ଠରୁ ଆସି ଏହି ହରି ।
ତଥାପି ଏ ପ୍ରଭୁଙ୍କର ଅଟେ କେଡ଼େ ଖେଡ଼
କାହିଁ ରଚିଲେ ଏତେକ ଲୀଳା ଯୋଗାରୁଢ଼
ତାଳ ଖୋଳ ଝାଞ୍ଜି ଏତେ ଆଣିଲେ ବା କାହୁଁ
ଆଚମ୍ବିତ ଲାଗୁଅଛି ମୋତେ ହେଲେ ଏହୁ ।
ଦେଖିଲେ ପୁଣି ଲକ୍ଷ୍ମୀ ତ ଅଛନ୍ତି ସଙ୍ଗତେ
ବରୁଣପୁରୁଁ ଘେନି କି ଆସିଲେ ଗୁପତେ ।
ସେ ଲକ୍ଷ୍ମୀକି ବରୁଣ ତ ଲାଖିଥିଲା କରି
ତାହା ନ ବିନ୍ଧି ଚୋରାଇ ଆଣିଲେକ ହରି ।
ବରୁଣପୁରେ ବୁଝିବି ତାହା ଯାଇ ଆଗ
କାହାର ବୋଲେ ଲକ୍ଷ୍ମୀକି ଆଣିଲେ ନୃସିଂହ
ତହିଁ ଉତ୍ତାରୁ ବୈକୁଣ୍ଠ ପୁରକୁ ମୁଁ ଯିବି
ସେଠାରେ କଥା ବୁଝିଣ ବାହୁଡ଼ି ଆସିବି ।
ଏତେକ ପାଞ୍ଚି ବିଧାତା ମନେ ଗର୍ବ ଧରି
ବରୁଣପୁରକୁ ଗଲେ ହଂସ ଚଢ଼ିକରି ।
ତକ୍ଷଣେ ମିଳିଲେ ଯାଇ ବରୁଣଙ୍କ ପୁରେ
ଦେଖିଲେ ଅଛନ୍ତି ମହାଲକ୍ଷ୍ମୀ ଜଗତୀରେ ।
ପିଲାଙ୍କୁ ସଙ୍ଗରେ ଘେନି ଛନ୍ତି ବିଜେକରି
ଲକ୍ଷେକ ଲକ୍ଷଣ ଲକ୍ଷ୍ମୀ ଦେହେ ଅଛି ପୁରି ।
କୋଟି କମଳ ପରାଯେ ଫୁଟେ ମୁଖକଞ୍ଜ
ହସ୍ତେ ପଦ୍ମପାଦେ ପଦ୍ମ ଦିଶେ ଫୁଟି ତେଜ ।
ଜଗତଲୋକର ମାତାବସି ଜଗତୀରେ
ବିଧାତାର ମନକଥା ଜାଣିଲେ ତପୂରେ ।
ବୋଇଲେ ମନ ମୋହର ବିଡ଼ିବାର ପାଇଁ
ଆସିଅଛି ବେଦବର ରାସଠାରୁ ଧାଇଁ ।
ନୁହଇକି ଲକ୍ଷ୍ମୀ ବୋଲି ପାଞ୍ଚିଅଛି ମନେ
ଭଲକରି ଚିହ୍ନୁ ମୋତେ ଚତୁର ଆନନେ ।
ଏତେକ ପାଞ୍ଚି ଅଧିକେ ଖେଳିଲେକ ଶିରୀ
ସେବାରେ ଅଛନ୍ତି ଖଟି ଲକ୍ଷେ ପରିବାରୀ ।
ଧୂଳିରେ ଘର ସଞ୍ଜାଦି ତହିଁ କମଳିନୀ
ପିଲାଙ୍କୁ ଦେଇଅଛନ୍ତି ସ୍ୱର୍ଣ୍ଣକୁଳା ପୁଣି ।
ଧୂଳିରେ ଭାତ ଧୂଳିରେ ତିଅଣ ସେ କରି
ପରଷନ୍ତି କମଳା ଯେ ଦେଖି ମୁଖଚାରି ।
ମନରେ ପାଞ୍ଚିଲେ ସେହୁ ଲକ୍ଷ୍ମୀ ନୁହନ୍ତି କି
ଦେଉଛି ଧୂଳି ଲୋଚାଏ ଅନ୍ନ ବୋଲି ଟେକି ।
ନବାତ ଶାକର ପଣା ପାଣି ଝିଲି ସର
ଛତୁଆ ପୁରି ଆବର ନାଡ଼ୀ ମନୋହର ।
ସପୁରି ପାରିଜାତକ ଅମାଲୁ ଯେ କୋରା
ସିପୁରି ଆରିଷା ଆଉ ଶାକର କାକରା ।
ଏହି ଦ୍ରବ୍ୟରୁ କିଛି ନ ମିଳେ କମଳାକୁ
ଭାତ ଭୁଞ୍ଜ ବୋଲି ଧୂଳି ପରଷେ ପିଲାଙ୍କୁ ।
ଯାବତ ଲୋକଙ୍କୁ ଅଛି କି ରୂପେ ଏ ପାଳି
ଏଠାବରେ ଦେଖିଲି ତ ପରଷନ୍ତି ଧୂଳି ।
ଏ କଥାଗୋଟି କିରୂପେ ଏବେ ଜଣାଯିବ
ଶଙ୍କୁନ ବୁଝି ପୁଛିବି ସିନା କଥାଭାବ ।
ନୁହନ୍ତି କି ଲକ୍ଷ୍ମୀ ଏହୁ ପୁଛିଲେ ଜାଣିବି
ତେଣୁ ସିନା ମନୁ ମୋର ସଂଶୟ ଛାଡ଼ିବି ।
ଏତେକ ପାଞ୍ଚି ଲକ୍ଷ୍ମୀକି ପୁଛେ ପିତାମହ
ବୋଇଲେ ଗୋ ତୁମ୍ଭେ ପରା ବରୁଣର ଝିଅ ।
ତୁମ୍ଭର ନାମ ପରା ଗୋ ଅଟେ କମଳିନୀ
କିରୂପେ ଏ ସଂସାରକୁ ଦିଅ ଅନ୍ନପାଣି ।
ଏବେତ ଦେଖିଲି ଧୂଳି ଦେଉଛ ପରଷି
ଯାବତ ଲୋକଙ୍କୁ କେଉଁ ରୂପେ ଅଛ ପୋଷି ।
ଅଗୋଚର ଲାଗିଲାତ ମୋରେ ତୁମ୍ଭ କଥା
ଶୁଣିଣ ହସିଲେ ଲକ୍ଷ୍ମୀ ପୋତିଦେଇ ମଥା ।
ବୋଇଲେ ବିଧାତା ତେବେ କହିବା ହେ ଶୁଣ
ସମସ୍ତଙ୍କୁ ଦେଉଅଛି ଖଞ୍ଜି ମୁହିଁ ଅନ୍ନ ।
ଭୁଞ୍ଜନ୍ତି ଯେ ଯାହା ଭାଗ୍ୟ ଘେନି କର୍ମଫଳେ
କେ ଅବା ମିଷ୍ଟଅନ୍ନ କେ ଭୁଞ୍ଜେ ଫଳମୂଳେ ।

ଯେବେ ତୁମ୍ଭ ମନ ଏଡ଼େ ହୋଇଲା ଉତ୍ସୁକ
ସଂସାରେ ଦେଖ ଭୁଞ୍ଜନ୍ତି କେହ୍ନେ ସର୍ବଲୋକ
ଏମନ୍ତ କହି ରହିଲେ ଲକ୍ଷ୍ମୀ ହୋଇ ତୁନି
ଗୁପତେ ପିମ୍ପୁଡ଼ି ଦୁଇ ଧରି ପଦ୍ମଯୋନି ।
କରାଟେ ପୁରାଇ ଯତ୍ନେ ତାଙ୍କି ବେନିଗୋଟି
ଗୁପ୍ତେ ଥାଇ ଲକ୍ଷ୍ମୀକି ଯେ ହସି ପରମେଷ୍ଠୀ
ବୋଇଲେ ସବୁଙ୍କୁ ଖଞ୍ଜୁଅଛକି ଗୋ ଗ୍ରାସ
କାଠପୋକ ଭୁଞ୍ଜି ତେବେ ହେବ ମଧ ତୋଷ ।
ଲକ୍ଷ୍ମୀ ଯେ ବୋଇଲେ ଦିବ୍ୟଚକ୍ଷୁରେ ହୋ ଚାହଁ
ଅନ୍ନ ମିଳିଛି କି ନାହିଁ ଦେଖି ମୋତେ କହ ।
ଶୁଣି ବେଦବର ଚାହିଁଦେଲେ ପୃଥ୍ୱୀଯାକେ
ଆହାର ମିଳିଛି ସମସ୍ତଙ୍କୁ ତିନିଲୋକେ ।
ଯେ ଯେତେ ଯୋଗ୍ୟ ମିଳିଛି ତାକୁ ତେତେଶିରୀ
ପାତ୍ରାନୁସାରେ ଭକ୍ଷନ୍ତି ସର୍ବ ଦେହଧାରୀ ।
ଦେଖିଣ ବ୍ରହ୍ମା ହୋଇଲେ ଅତି ଆଚମ୍ଭିତ
ଚାହିଁଲେ କବାଟ ଫେଡ଼ି ପିମ୍ପୁଡ଼ିଯାକ ତ ।
ମୁଖରେ ତଣ୍ଡୁଳ ଖଣ୍ଡେ ଖଣ୍ଡେ ଛନ୍ତି ଧରି
ଗ୍ରାସ କରୁଛନ୍ତି ଉଦରକୁ ପୂର୍ଣ୍ଣକରି ।
ଦେଖିଣ ବ୍ରହ୍ମା ମନରେ ଆଚମ୍ଭିତ ହେଲେ
ଧୂଳିଘରକୁ ଲେଉଟି ପୁଣି ଚାହିଁଦେଲେ ।
ଦେଖିଲେ ତହିଁରେ ପୁରି ଅଛଇ ଅମୃତ
କେ ଅବା କେତେ ଭୁଞ୍ଜନ୍ତି ତହିଁ ଅଲୋକିତ
ଦିଶୁଅଛି ଧୂଳିଖଣ୍ଡ ଶାକରର ଗଣ୍ଡି
ବାଳକେ ଖାଉଅଛନ୍ତି ଖଣ୍ଡ ଖଣ୍ଡି ଖଣ୍ଡି ।
ପରଷୁଅଛନ୍ତି ଲକ୍ଷ୍ମୀ ତାଙ୍କ ମନ ଜାଣି
ଦେଖି ବଡ଼ ଶ୍ରଦ୍ଧାବନ୍ତ ହୋଇ ପଦ୍ମଯୋନି ।
ପାଞ୍ଚିଲେ ଶ୍ରୀ ମହାଲକ୍ଷ୍ମୀ ଅଟଇ ଏ ନିଶ୍ଚେ
ସମସ୍ତଙ୍କୁ ଗ୍ରାସଦେଇ ପାରନ୍ତା କେ ମଞ୍ଚେ ।
କେବଳ ମାତ୍ର ମାୟାରେ ମୁହିଁ ଗଲି ଭ୍ରମି
ଏତେକ ପାଞ୍ଚି ବିଧାତା ଲକ୍ଷ୍ମୀପାଦେ ନମି ।
ପ୍ରତ୍ୟକ୍ଷେ କମଳା ଏହି ଅଟେ ଆଦିଶକ୍ତି
ମାୟାରେ ପଡ଼ିଣ ମୁହିଁ କଲି ମନଭ୍ରାନ୍ତି ।
ଲକ୍ଷ୍ମୀଙ୍କୁ ଛାଡ଼ିଣ ତହୁଁ ଗଲେ ଚଉମାଥ
ପାଞ୍ଚେ ଦେଖିବି ବୈକୁଣ୍ଠେ ଯାଇଁ ଜଗନ୍ନାଥ ।
ତହିଁ ନ ଥିଲେ ଜାଣିବି ଆସିଲେ ପଳାଇ
ବଦରି ନଗ୍ରରେ କୂଟକଲେ ଭାବଗ୍ରାହୀ ।
ନିତ୍ୟସ୍ଥଳୀରୁ ରାସ କି ଚୋରାଇ ଆଣିଲେ
ଯଜ୍ଞବେଦୀରେ ବସିଣ ପ୍ରମୋଦ ଯେ କଲେ ।
ପୁଣି କେଉଁ କୃପାଞ୍ଚ କି କଲେ ମୋତେ ହରି
ଲକ୍ଷ୍ମୀ ଦେଖିଲେ ବରୁଣ ରାଜାର ନଗରୀ ।
ଗୋବିନ୍ଦର ମାୟା ମୋତେ ନ ଗଲା ଗୋଚର
ମନେ ପାଞ୍ଚି ପିତା ଗଲେ ବଇକୁଣ୍ଠପୁର ।
ବୈକୁଣ୍ଠେ ଦେଖିଲେ ନିତ୍ୟସ୍ଥଳେ ଛନ୍ତି ହରି
ରାସ କରୁଛନ୍ତି ନାୟିକାଙ୍କୁ କୋଳେ ଧରି ।
ସେହି ଅନନ୍ତ ଶଯ୍ୟାରେ ସେ ନାୟିକାଗଣ
ଲକ୍ଷ୍ମୀଙ୍କି ଘେନିଣ କ୍ରୀଡ଼ାକରେ ନାରାୟଣ ।
ବଦରି ଦେଶରେ ଯାହା ଦେଖିଥିଲେ ବିହି
ତହୁଁ ଶତେଗୁଣ ରାସ ହୁଅଇ ଯେ ତହିଁ ।
ବଦରି ରାହାସ କି ନ କଲେ ଆଉ ମଞ୍ଚେ
ସେ ଭାବ ଦେଖିଣ ବ୍ରହ୍ମା ମନେ ପୁଣ ପାଞ୍ଚେ ।
ପୁଣି ପାଞ୍ଚଇ ଲେଉଟି ବଦରିକୁ ଯିବି
ହେଉଛି କି ନାହିଁ ତହିଁ ରାହାସ ଦେଖିବି ।
ଏତେକ ପାଞ୍ଚିଣ ପୁଣ ହଂସପୃଷ୍ଠେ ଚଢ଼ି
ବୈକୁଣ୍ଠେ ଗଲେ ବିଷ୍ଣୁଙ୍କୁ କର ଦୁଇଯୋଡ଼ି ।
ବଦରିଦେଶେ ଦେଖିଲେ ପୁଣି ଆସି ବିହି
ଦେଖିଲେ ନୃସିଂହ ରାହାସର ଅନ୍ତ ନାହିଁ ।
ଯଜ୍ଞବେଦୀରେ ଅଛନ୍ତି ପ୍ରଭୁ ବିଜେକରି
ସ୍ୱରୂପରେ ଦଶ ଅବତାର ରୂପଧରି ।
ମତ୍ସ୍ୟ କୂର୍ମ ବରାହ ହେ ନୃସିଂହ ବାମନ
ପରଶୁରାମ ଶ୍ରୀରାମ କୃଷ୍ଣ ଶଙ୍କର୍ଷଣ ।
ବଉଦ୍ଧ କଲକି ମିଶି ଦଶ ଅବତାର
ଏହି ପ୍ରଭୁମାନଙ୍କର ରାସ ଅଗୋଚର ।
ମତ୍ସ୍ୟ ଅବତାରର ଯେ ରାସ ଅନ୍ତ ନାହିଁ
କୂର୍ମରୂପ ରାସ ମୁଖେ କେ ପାରିବ କହି ।
ବରାହ ଅବତାରରେ ରାସ ଅଗୋଚର
ନୃସିଂହ ରାସକ୍ରୀଡ଼ାରେ କମ୍ପେ ତିନିପୁର ।
ବାମନ ଅବତାରରେ ରାସ ଯାତ୍ରା ହୁଏ
ଚଉଦପୁର ବ୍ରହ୍ମାଣ୍ଡଯାକ ପୁଣି ମୋହେ ।
ପର୍ଶୁରାମ ଅବତାର ଯେବଣଟି ରାସ
ତ୍ରିଲୋକଯାକକୁ ଜିଣି ମୋହେ ଦଶଦିଶ ।
ରାମ ଅବତାର ରାସ ଯାହକୁଟି କହି
ଭେଦି ଚମକେ ପଞ୍ଚାଶ କୋଟି କୋଟି ମହୀ ।
ଶ୍ରୀକୃଷ୍ଣଙ୍କ ଅବତାରୁ ରାହାସର ବାଣୀ
ପିବନ୍ତି ଲୋକେ ଅମୃତ ପ୍ରାୟ ତାହା ଜାଣି ।
ବୌଦ୍ଧ ଅବତାର ଯେଉଁ ରାସ ରସକେଳି
ନାଚନ୍ତି ତ୍ରିପୁରଲୋକେ ଦେଖି ଢଳି ଢଳି ।

କଲକି ଅବତାର ରାସ ଯାହାକୁଟି କହି
ଦେଖିଣ ବ୍ରହ୍ମା ଶଙ୍କର ହୋଇଛନ୍ତି ମୋହୀ ।
ବଦରିକା ରାସ କଥା ଅଟେ ଅଗୋଚର
ସେ ରାହାସ ଦେଖି ବ୍ରହ୍ମା ହୁଅନ୍ତି କାତର ।
ଅଠାଶୀ ସହସ୍ର ଯାଏ ଯେତେ ମହାଋଷି
ଦେଖନ୍ତି ଆସି ରାହାସ ବାହାରେ ଯେ ବସି ।
ଭିତରେ କାହାର ନାହିଁ ପଶିବାର ବଳ
ଚାଚନ୍ତି ବାହାରେ ଥାଇ ସର୍ବ ତପଶୀଳ ।
ନୃସିଂହଙ୍କ ରାସକେଳି ଅଟେ ଅକଳନା
ବଜାନ୍ତି ନାରଦ ମହାଋଷି ବ୍ରହ୍ମବୀଣା ।
ଦୁର୍ବାସା ଋଷି ମଙ୍ଗଳ ଅଷ୍ଟକ ଯେ ପଢ଼ି
ସ୍ୱରକୁ ଟେକି ଗାବନ୍ତି ରାସ ସୀମା ବେଢ଼ି ।
ପଢ଼ନ୍ତି ସନକ ସାତଋଷି ଚାରିବେଦ
ରାହାସେ ଭୋଳ ହୁଅନ୍ତି ଜ୍ଞାନେ ହୋଇ ମୁଦ ।
ଅଗସ୍ତି ଯେ ମହାଋଷି ନାଚେ ବାଇ ତାଳ
ଡମ୍ବରୁ ବଜାନ୍ତି ତହିଁ ଋଷି ଯେ କପିଳ ।
ନାଚନ୍ତି ପୁଲସ୍ତ୍ୟ ମହାଋଷି ବାଇ ରବା
ରାସ ଚାରି ବେଢ଼ ପାଉଅଛି ଦିବ୍ୟ ଶୋଭା ।
ଅକ୍ଷୟ ବ୍ରହ୍ମଜ୍ଞାନରେ ମନ ହେତୁ ବେଢ଼ି
ନାଚନ୍ତି ବ୍ୟାସଁ ଋଷି ଏ ଯୋଗପଥ ଛାଡ଼ି ।
ବଜାନ୍ତି ପୌଲସ୍ତ୍ୟ ମହାଋଷି ଶଙ୍ଖଧ୍ୱନି
ନାଚନ୍ତି ଭୃଗୁ ଯେ ବୀର କାହାଳିକି ଘେନି ।
ଗୌତମ ମହର୍ଷି କରେ କଂସାଳ ଯେ ଧରି
ରାହାସରେ ନାଚୁଛନ୍ତି ଆଡ଼ ଆଡ଼ ବୋଲି ।
କଣ୍ୱ ମହାଋଷି ନାଚି ବିଞ୍ଚନ୍ତି କର୍ପୂର
ଚନ୍ଦନ ଛେରା ଦିଅନ୍ତି କୋକିଳ ଆବର ।
ବଜାନ୍ତି ବଶିଷ୍ଠ ମହାଋଷି କରତାଳି
ରାହାସର ଚାରିପାଖେ ନାଚି ଢଳି ଢଳି ।
ନାଚନ୍ତି କସ୍ତୁରୀ ଚୂର୍ଣ୍ଣ ମାରି ଶୁକମୁନି
ତାହା ଦେଖିଣ କାତର ହୁନ୍ତି ପଦ୍ମଯୋନି ।
ଈଶ୍ୱର ନାଚୁଅଛନ୍ତି ଶିବଗଣ ଧରି
ଡାକି ଡମ୍ବରୁ ବାଦ୍ୟ ଯେ କଉତୁକ କରି ।
ଶୂନ୍ୟପୁରରେ ଥାଇଣ ଦେବଗଣ ଯାକ
ଦେବକନ୍ୟାଙ୍କୁ ଘେନିଣ ଦେଖନ୍ତି କୌତୁକ ।
କେହୁ କରଇ ସ୍ତୁତି କେ କରେ ଦଣ୍ଡବତ
ନୃସିଂହ ମହିମା ଜାଣ ଅଟେ ଅଲୋକିତ ।
ରାମ ମନ୍ଦିରକୁ ହୋଇଅଛି ଚାରିଦ୍ୱାର
ସେ ଚାରିଦ୍ୱାରରେ କଥା ଅଟେ ଅଗୋଚର ।
ତଥାପି ସେ ଦ୍ୱାରମାନ ଅଛନ୍ତି ଯେ ଜଗି
ତାହାଙ୍କ ନାମ କହିବା ଶୁଣ ହୋଇ ବେଗି ।
ମତ୍ସ୍ୟ କୂର୍ମ ରୂପଧାରୀ ଯେଉଁ ମହାପ୍ରଭୁ
ପ୍ରଥମେ ଦକ୍ଷିଣ ଦ୍ୱାରେ ଜଗିଛନ୍ତି ସବୁ ।
ପଶ୍ଚିମଦ୍ୱାରେ ଅଛନ୍ତି ବରାହ ନୃସିଂହ
ସୁବର୍ଣ୍ଣର ବେତବାଡ଼ି ପଡୁଅଛି ଆଗ ।
ଉତ୍ତରଦ୍ୱାରେ ବାମନ ସ୍ୱାମୀ ପର୍ଶୁରାମ
ତାହାଙ୍କର ଜଗିବା ଯେ ଅଟଇ ଅଗମ୍ୟ ।
ପୂର୍ବରେ ଅଛନ୍ତି ରାମ କୃଷ୍ଣ ବେନି ମୂର୍ତ୍ତି
ଶଙ୍ଖ ଚକ୍ର ଗଦା ପଦ୍ମ ହସ୍ତେ ବିରାଜନ୍ତି ।
ବଉଦ୍ଧ କଲକି ବେନି ଯେବଣ ଶ୍ରୀହରି
ରାହାସମଣ୍ଡଳେ ଅଟନ୍ତି ସେ ପଢ଼ିହାରୀ ।
ବ୍ରହ୍ମା ଦେଖି ତାହା ଅତି ଆଶ୍ଚର୍ଯ୍ୟ ହୋଇଲେ
ଭିତରକୁ ଯିବା ବୋଲି ଦକ୍ଷିଣକୁ ଗଲେ ।
ଦେଖିଲେ ଦ୍ୱାରେ ଅଛନ୍ତି ମତ୍ସ୍ୟ କୂର୍ମ ସ୍ୱାମୀ
ତାହାଙ୍କୁ ବ୍ରହ୍ମା ହୋଇଲେ ଯାଇ ପ୍ରଣାମି ।
ବୋଇଲେ ଆପଣ ଅଟ ସ୍ୱୟଂ ଭଗବାନ
ଦ୍ୱାର ଛାଡ଼ ନୃସିଂହଙ୍କୁ କରିବା ଦର୍ଶନ ।
ତୁମ୍ଭ କୃପା ହେଲେ ଆମ୍ଭେ ଭିତରକୁ ଯିବା
ନୃସିଂହ ମହାପ୍ରଭୁଙ୍କ ରାହାସ ଦେଖିବା ।
ଶୁଣି ମତ୍ସ୍ୟ ସ୍ୱାମୀ ଦେଲେ ତରାଟି ଯେ ଆଖି
ବୋଇଲେ ରାହାସ ତୁ ନ ପାରୁ ଜାଣ ଦେଖି ।
ଠାକୁରଙ୍କ ଆଜ୍ଞା ନାହିଁ ଛାଡ଼ିବ କେ ଦ୍ୱାର
କୂର୍ମମୂର୍ତ୍ତି ବୋଇଲେ ହୋ ଶୁଣ ବେଦବର ।
ରାସ ଦେଖିବାକୁ ଯେବେ କରୁଅଛ ମନ
ଶବ୍ଦ ଶୁଭୁ ଶୁଭୁଁ ହେଉଅଛ ହତଜ୍ଞାନ ।
ଯେଉଁ ଶବ୍ଦ ଶୁଭେ ପିଣ୍ଡ ବ୍ରହ୍ମାଣ୍ଡକୁ ଖେଦି
ସେ କଥା ବୁଝ ପଚାରି ଆଗ ମୋତେ ଯଦି ।
ରାସଟି ସେହି ଶବଦ ପ୍ରତ୍ୟକ୍ଷରେ ଜାଣ
ସେ ଶବ୍ଦ ପିଣ୍ଡ ବ୍ରହ୍ମାଣ୍ଡେ ଅଛି ପ୍ରକାଶିଣ ।
ପିଣ୍ଡରେ ଯାହା ବ୍ରହ୍ମାଣ୍ଡେ ଜାତ ତାହା ହୁଏ
ଏକଥା ଚିହ୍ନି କେହି ନ ପାରେ ଜାଣ ଦେହେ
ଏ ଯଜ୍ଞବେଦୀରେ ଯେଉଁ ରାସ ହେଉଅଛି
ସେହି ରାହାସ ସବୁରି ଦେହେ ପ୍ରକାଶିଛି ।
ପ୍ରଭୁଙ୍କର ଆଜ୍ଞା ନାହିଁ ଛାଡ଼ିବ କେ ଦ୍ୱାର
ଶୁଣିଣ ବିଧାତା ହୋଇ ମନେ ଚମତ୍କାର ।
ବୋଇଲେ ଶବ୍ଦ ଗୋଚର ମୋହର ତ ନାହିଁ
କହିଲେ କେଡ଼େ ଅଦୃଶ୍ୟ କଥା ଭାବଗ୍ରାହୀ ।

କାହାକୁ ପଚାରିବି କେ ଦେବ କହି ମୋତେ
ଏ ହେଲେ ଦ୍ୱାର ଛାଡ଼ି ନ ଦେବେ କଦାଚିତେ ।
ଏରୂପେ ମନରେ ପାଞ୍ଚି ଗଲେ ତହୁଁ ଧାତା
ମିଳିଲେ ପଶ୍ଚିମଦ୍ୱାରେ ଯାଇ ସୃଷ୍ଟିକର୍ତ୍ତା ।
ଶ୍ରୀବରାହ ନୃସିଂହଙ୍କୁ ଦଣ୍ଡବତ କଲେ
ପ୍ରଣାମ କରି ପଛକୁ ପାଦେ ଘୁଞ୍ଚିଗଲେ ।
ଲେଉଟି ଚରଣେ ପଡ଼ି ଜଣାନ୍ତେ ପ୍ରଭୁଙ୍କୁ
ଆଗୁଳି ବରାହ ସ୍ୱାମୀ ଦେଖି ବିଧାତାଙ୍କୁ ।
ପିଟିବାକୁ ବାଡ଼ିଧରି ଉଠୁଁ କରି କୋହ
ନୃସିଂହଙ୍କୁ ବୋଇଲେ ରହ ରହ ହେ ବରାହ ।
ଆମ୍ଭେ ପୁଛିବା କଥା ସେ ପାରେ ଯେବେ କହି
ତେବେ ସେ ଦେଖିବ ରାସ ଭିତରକୁ ଯାଇ ।
ନୋହିଲେ କିମ୍ପାଇଁ ସେହି ରାସ ଦେଖିଯିବେ
ଏତେ ବୋଲି ପ୍ରଭୁ ପୁଛାକଲେ ଆତ୍ମାଭାବେ ।
ବୋଇଲେ ଆତ୍ମାର ଆଗ ରାହାସ କହତ
ନ ଚିହ୍ନି ଭ୍ରମୁଥିଲଟି ବୋଲି କୁପଣ୍ଡିତ ।
ବସିଥିଲେ ଆତ୍ମା କେତେ ଯୋଜନ ଗମଇଁ
ଧ୍ୟାନ ପରିକ୍ରମା କେତେ ଦୂରରେ କରଇ ।
ଚାଲନ୍ତେ କେତେ ଯୋଜନ କହ କରେ କ୍ଷେପ
ବଚନ କହୁ ସେ କେତେ ଯୁଣ କରେ ଧାପ ।
ଶୃଙ୍ଗାର କାଳରେ କେତେ ଯୁଣ ପ୍ରକାଶଇ
ନିଦ୍ରାକାଳରେ ସେ କେତେ ଯୋଜନଟି ଯାଇ ।
ମୃତ୍ୟୁକାଳେ କେତେ ଯୁଣ କ୍ଷେପକରେ ପୁଣି
ଏତେକ କହି ଭିତରେ ପଶ କୁଶପାଣି ।
ଆତ୍ମାଭାବ ରାହାସରେ ଏମନ୍ତ ଯେ ରସ
ଜାଗ୍ରତ ନିଦ୍ରା ସୁଷୁପ୍ତି ତ୍ରିକାଳ ପ୍ରକାଶ ।
ପ୍ରକାଶି ସେ ଆତ୍ମାରୂପେ ରାହାସ କରୁଛି
ଅଷ୍ଟଦଳେ ଅଷ୍ଟସଖୀ ଘେନି ବିହରୁଛି ।
ଘଡ଼ି ଦଣ୍ଡ ହେରି ବୁଝି ରାସେ ମାତିଥାଇ
କ୍ଷେପିଣ ଏକା ପାଦେ ଯେ ବ୍ରହ୍ମାଣ୍ଡ ବୁଲଇ ।
ଦେହରୁ ଗଲେ ଏ ଆତ୍ମା କାହିଁ ରହେ କହ
ଏହା ସେ ହେଜି ବୁଝି ନ ପାରେ ପିତାମହ ।
କେଉଁଠାରୁ କହ ବେଦମନ୍ତ୍ର ଶାସ୍ତ୍ର ଆଣି
କହିବା ଶବ୍ଦକୁ କାହିଁ ଥୁଅନେଇ ପୁଣି ।
ପାଶୋରିବା ପାଦ କେଉଁ ସ୍ଥାନେ ରହେ କର
ସେ ସ୍ଥାନ ଯେ ଜାଣେ ତାକୁ ରାହାସ ଗୋଚର ।
ମାତୃଗର୍ଭ ହେତୁ ଯେହୁ ଜାଣେ ଜନ୍ମହୋଇ
ତାହାକୁ ଜାଣ ହୋ ବ୍ରହ୍ମା ବ୍ରାହ୍ମଣ ଯେ କହି ।

ରାତ୍ର ଦିବା ବେନି ଅଷ୍ଟପ୍ରହର ଯେ ଲେଖି
କେତେ କ୍ଷଣିରେ ଖେଳୁଛି ହୃଦେ ଆତ୍ମା ରଖି ।
ଜୀବ ପରମକୁ ଦୁଇ ସମସ୍ତ ଯେ ବୋଲି
ଜୀବ କେହୁ କହ ପରମ ତ ପଚାରିଲି ।
ଏକ କିବା ଦୁଇ ଏହା ବୁଝି ମୋତେ କହ
ଆତ୍ମା ରାହାସ ଜାଣିବୁ ତେବେ ପିତାମହ ।
ଦେଖ ଜୀବ ପରମର ଲାଗେ କେତେ ମେଳ
ଶୁଭୁଅଛି ଗହ ଗହ ଗୋଲୋକ ମଣ୍ଡଳ ।
ଯେବଣ ରାସେ ଅମୃତମୟ ଅଛି ରସ
ଯାବତ ଦୟାଦି ଧର୍ମ ପୁରିଛି ଅଶେଷ ।
ଯାବତ ଜ୍ଞାନଯାକ ତ ହୁଏ ଯହୁଁ ଉଦେ
ଯାବତ ଭୋଗ ଭୁଞ୍ଜିଛି ଜୀବ ଆତ୍ମାପଦେ ।
ଭକ୍ତି ଗତି ମୁକ୍ତି ପୁରିଅଛି ମୋକ୍ଷ ଯହିଁ
ଭଜୁଛି ସବୁରି ଦେହେ ଆତ୍ମାରୂପେ ଥାଇ ।
ଜୀବ ପରମ ଦୁଇର ରାସ ଖେଦ ହୃଦେ
ଯାବତ ଆଲଟ ପଡୁଅଛି ନେତ୍ର ମଧ୍ୟେ ।
ତୁମ୍ଭେ ବା ବୋଲିବ ମୋତେ ଦିଶୁ ନାହିଁ କିଛି
ଆପଣାର ନେତ୍ରେ ଚାହିଁକି ରୂପେ ପଡୁଛି ।
ଅଷ୍ଟପ୍ରହରରେ ପଡୁଅଛି ଯହିଁ ପିଛ
ଦେଖୁ ଦେଖୁ ତୁମ୍ଭେ ତାହା କର କିମ୍ପା ମିଛ ।
ଆମ୍ଭେ ତ ଜଗିଛୁ ଏହି ରାସକୁ ଚୌକତି
ଗୋଚର ନ କରେ ଛାଡ଼ିନପାରୁ ତହିଁକି ।
ଏରୂପେ ଗୋଚର କର ପଚାରନ୍ତେ ତତ୍ତ୍ୱ
ତହିଁକି ବିଧାତାର ଯେ ନ ପଶଇ ଚିତ୍ତ ।
ଆଶ୍ଚର୍ଯ୍ୟ ହୋଇଣ ବ୍ରହ୍ମା ତରଛ ଯେ ହେଲେ
ନ କହି ପଦେ ଉତ୍ତରଦ୍ୱାରେ ନମିଗଲେ ।
ଦେଖିଲେ ତହିଁ ବାମନ ମୂର୍ତ୍ତି ପର୍ଶୁରାମ
ବ୍ରହ୍ମା ଦେଖି ବୋଇଲେ ତା ହୋଇଲା ଉତ୍ତମ ।
ଏ ଅବା ନେଇ ଛାମୁରେ ମୋତେ ଦେଖାଇବେ
ରାହାସ ମଧ୍ୟେ ଦର୍ଶନ ନେଇ କରାଇବେ ।
ଏତେକ ପାଞ୍ଚି ଭିକରେ ପର୍ଶୁ ବେଦବର
ନଦେଲେ ଛାଡ଼ି ବାମନ ମୂର୍ତ୍ତି ପର୍ଶୁଧର ।
ଧାତାକୁ ବୋଇଲେ କିମ୍ପା ଭିତରକୁ ପଶ
ଦେଖ ସବୁ ଦେହ ଆତ୍ମା ନୃସିଂହ ରାହାସ ।
ଆଜ୍ଞା ନୋହିଲେ ସେଠାକୁ ତୁମ୍ଭେ କେହ୍ନେଯିବ
ଗଲେତ ଦେଖିବା ମାତ୍ରେ ବୋଲଣା ପାଇବ ।
ବ୍ରହ୍ମା ଏହା ଶୁଣି ତାଙ୍କୁ ନମସ୍କାର କଲେ
ଦିରସ ଲୋକ ଜଣେ ମୁଁ ନୁହଇ ବୋଇଲେ ।

ଚତୁର୍ମୁଖ ବ୍ରହ୍ମା ମୁହିଁ ପ୍ରତ୍ୟକ୍ଷେ ଆସିଛି
ମାୟାରେ ଗଲ ଭ୍ରମି ନ ଚିହ୍ନି ବ୍ରହ୍ମରାଶି ।
ଶୁଣି ବାମନ ହସିଲେ ହୋଇ କର କର
ପରଶୁ ବୋଇଲେ ତୁମ୍ଭେ କେଉଁ ବେଦବର
ଚତୁର୍ମୁଖ ବ୍ରହ୍ମା ବୋଲି କହିଲେ ଯେ ବାରେ
ଆଉ କେଡ଼େ କେଡ଼େ ବ୍ରହ୍ମା ପଡ଼ିଛନ୍ତି ଦ୍ୱାରେ ।
ଶତମୁଖ ବ୍ରହ୍ମା ଆସିଅଛି କେତେଦେଲୁ
ସହସ୍ରେକ ମୁଖ ପଡ଼ିଅଛି ବହୁକାଳୁ ।
ଲକ୍ଷେ ମୁଖ ବ୍ରହ୍ମା ବସିଅଛି ଦେଖ ଜାଣ
କୋଟି ମୁଖ ବ୍ରହ୍ମା ସେବୁଛନ୍ତି ଅନୁକ୍ଷଣ ।
ଏରୂପେ କହିବି କେତେ ବ୍ରହ୍ମା ନାମ ଧରି
ଖର୍ବ ଖର୍ବ ହୋଇ ଏଥେ ଛନ୍ତି ଅନୁସରି ।
ଶ୍ରୀନୃସିଂହ ପ୍ରଭୁଙ୍କର ଯେଉଁ ସ୍ୱାଦୁରସ
ତାହାକୁ ନ ଚିହ୍ନି ଆଉ କହିବା ବା କିସ ।
ଆମ୍ଳିଳ କଷା ଲବଣ ତିକ୍ତ ମଧୁରସ
କାହିଁରେ ଲାଗିଲେ ଜାଣିବାର ଏ ପ୍ରୟାସ ।
ଏ ମାର୍ଗ ସନ୍ଧିକି କେହି ନ ପାରନ୍ତି ଜାଣି
କହନ୍ତି ଖାଇବ ଖଣ୍ଡ ମୂଳ ପରିମାଣି ।
ଭଞ୍ଜିବା ସ୍ୱାଦୁକଥା ସେ ଭେଦି ପାରୁଥାନ୍ତା
ଗୋବିନ୍ଦ ମାୟାରେ ସେହୁ କାହିଁକି ପଡ଼ନ୍ତା ।
ଏବେ ତୁମ୍ଭଙ୍କୁ କହୁଛୁ ଯାଅ ଯା ବାହୁଡ଼ି
ପ୍ରଭୁ ଆଜ୍ଞା ନୋହିଲେ ନ ପାରୁ ଆମ୍ଭେ ଛାଡ଼ି ।
ପୁଣି ପରମେଷ୍ଠୀ ବଡ଼ ଆକୁଳ ହୋଇଲେ
ବିଷ୍ଣୁଙ୍କ ମାୟାରେ ପଡ଼ି ବାହୁଡ଼ି ଯେ ଗଲେ ।
ପୂର୍ବଦ୍ୱାରେ ଯାଇଁ ମିଳିଗଲେ ବେଦବର
ଦେଖିଲେ ତହିଁ ସେ ରାମ କୃଷ୍ଣ ଅବତାର ।
ଚଉଦ ବ୍ରହ୍ମାଣ୍ଡଲୋକ ସେ ଦ୍ୱାରରେ ରହି
ଅଛନ୍ତି ପାଦରେ ପଡ଼ି ଖର୍ବ ଖର୍ବ ହୋଇ ।
ପ୍ରତ୍ୟକ୍ଷେ ଶ୍ରୀରାମ କୃଷ୍ଣରୂପ ସର୍ବଆତ୍ମା
ଦେଖିଲେ ରାହାସ ଦ୍ୱାରେ ଛନ୍ତି ବେଦବ୍ରହ୍ମା ।
କୀଟୁ ବ୍ରହ୍ମଯାଏ ତହିଁ ସର୍ବେ ପୁରିଛନ୍ତି
ଆନନ୍ଦବନରେ ପଶି ହୁନ୍ତି ଯନ୍ତାଯନ୍ତି ।
ସେହି ରାହାସମଣ୍ଡଳ ଶୁଭେ ଗହ ଗହ
କେହି ବୋଲେ ଚାଲ କେହି ବୋଲେ ରହ ରହ
ବ୍ରହ୍ମା ତାହା ଦେଖି ବଡ଼ ଚମତ୍କାର ହେଲେ ।
ଲୋକପୁରିବାରେ ତହିଁ ବାଟ ନ ପାଇଲେ ।
ପେଲାପେଲି ହୋଇ ପଶି ଦ୍ୱାରେ ହେଲେ ଉଭା
ଚାହିଁଲେ ଦିଶନ୍ତି ରାମ କୃଷ୍ଣ ମହାଶୋଭା ।

ଦିଶନ୍ତି ଶ୍ୟାମଳ କଳା ବର୍ଣ୍ଣେ ବେନି ରୂପ
ଶ୍ରୀଭୁଜେ ଶୋଭଇ ମଣି ମୁକୁତା ପ୍ରଦୀପ ।
ଶ୍ରୀବତ୍ସ ଚିହ୍ନ ଯେ ଫୁଟି ଦିଶେ ଦାଉ ଦାଉ
ଶୋଭଇ ପୀତବାସକୁ ବେନିଗୋଟି ବାହୁ ।
ବସିଛନ୍ତି ବେନି ମୂର୍ତ୍ତି ଦ୍ୱାରବନ୍ଧ ମାଡ଼ି
ଦେଖିଣ ଶୁଣିଲେ ବେଦବ୍ରହ୍ମା ପାଦେ ପଡ଼ି ।
ପୁଣି କ୍ଷଣେ ଉଠି ଚାହିଁ ଦ୍ୟନ୍ତେ ନେତ୍ରପଥେ
ଦେଖିଲେ ସୁବର୍ଣ୍ଣବାଡ଼ି ଧରିଛନ୍ତି ହସ୍ତେ ।
ମନେ ପାଞ୍ଚିଲେ କାହିଁକି ଧରିଛନ୍ତି ବାଡ଼ି
ନ ପୁଣ ଏଥୁ ମୋତେ ଏ ଦିଅନ୍ତି ଘଉଡ଼ି ।
ଏ ପ୍ରଭୁଙ୍କ ହୃଦରେ ତ ନାହିଁ ମିତ୍ର ଅରି
କାହିଁକିରେ ମନ ପାଞ୍ଚୁଅଛୁ ଏତେ ଡରି ।
ନିଶ୍ଚେ ରାମ କୃଷ୍ଣ ଅଟନ୍ତି ଏ ଅନ୍ତର୍ଯ୍ୟାମୀ
ପଥୁ ପଳାଇଲେ ଡରି ମରିବୁଟି ଭ୍ରମି ।
ଏତେ ବୋଲିଣ ମନକୁ ବ୍ରହ୍ମା ତିଆରନ୍ତି
ରାମ କୃଷ୍ଣ ପାଶୁଁ ଗଲେ ନ ପାଇବୁ ଗତି ।
ସେ ପଛେ ବାହୁଡ଼ିଧରି ମାରନ୍ତୁ ରେ ମୋତେ
ତୁ ମନ ଡରି ଏଥୁ ନ ଯାଅ କଦାଚିତେ ।
ଏତେକ ବୋଲି ଶୁତିଲେ ବ୍ରହ୍ମା ପଦ୍ମପାଦେ
ଉଠି ପୁଣି ଉଭାହୋଇ ଜାଣନ୍ତି ଗଦ୍‌ଗଦେ ।
ବୋଲୁଛନ୍ତି ଧନ୍ୟ ଏହି ରାମ ଅବତାର
କୃଷ୍ଣ ଅବତାରକୁ କି ଦେବା ପଟାନ୍ତର ।
ଦେଖିଲି ଏ ଚାରିଦ୍ୱାରେ ଶ୍ରୀଗୋବିନ୍ଦମୟ
ମୁଁ ମାତ୍ର ସେବି ନ ପାରି ଘେନିଲି ସଂଶୟ ।
ଦଶଅବତାର ପ୍ରଭୁ ଅଟନ୍ତି ତ ଏକା
ଦ୍ୱାର ନ ଛୁଡ଼ିଣ ମୋତେ କରନ୍ତି ତାଟକା ।
ଶ୍ରୀନୃସିଂହ ରାସକୁ ନ ପାରିଲେ ମୁଁ ଦେଖି
କି କାର୍ଯ୍ୟ ଅଛି ମୋହର ଥାଇ ଅଷ୍ଟଆଖି ।
ଦେହରେ ଶ୍ରବଣ ଥାଉଁ ନ ଶୁଣିଲି ନାମ
ଭ୍ରମୁଅଛି ଅନିମିତ୍ତେ ହୋଇ ମତିଭ୍ରମ ।
ଅଣହେତୁ ମାର୍ଗେ ମୁହିଁ ବିଷ୍ଣୁ ନ ଚିହ୍ନିଲି
ଗୋବିନ୍ଦ ମାୟାରେ ପଡ଼ି ବ୍ୟର୍ଥେ ଭୁଲିଗଲି ।
ଭୋଳରେ ଗର୍ବ ବହିଣ ନ ପାରିଲି ଚିହ୍ନି
ଶ୍ରୀନୃସିଂହଙ୍କୁ ନ ଭଜି ହୋଇଲି ଅଜ୍ଞାନୀ ।
ଧଇଲେ ଦୁର୍ଲ୍ଲଭ ଦେହ ପାଇ ପଶୁବୁଦ୍ଧି
ନୃସିଂହଙ୍କୁ ନ ସେବି ମୁଁ ହେଲି ଅପରାଧୀ
ଭୋ ପ୍ରଭୁ ମହାବାହୁ ନ ଘେନ ମୋର ଦୋଷ
ଅପ୍ରାଧ ଖଣ୍ଡ ମୋହର କର ବାରେ ତୋଷ ।

ମାତା ଗର୍ଭଗତେ ଯେହ୍ନେ ବାଳକ ଯେ ଥାଇ
ଚହଟିହୋଇ ସେ ଗର୍ଭେ ପାଦ ପ୍ରହାରଇ ।
ସେ ଦୋଷ ଗୋଟି ତାହାର ନ ଘେନଇ ମାତ
ଶ୍ରଦ୍ଧାକରି ପୁତ୍ରେ ଯେ ନ କରେ କୋପଚିତ୍ତ ।
ପ୍ରାଣରୁ ଅଧିକ କରି ପୁତ୍ରକୁ ପାଳଇ
ମୁଁ ଜାଣେ ତୁମ୍ଭଙ୍କୁ ସେହି ରୂପେ ଭାବଗ୍ରାହୀ ।
ତ୍ରିଗୁଣ ରଜ୍ଜୁରେ ପଡ଼ି ବୁଲଇ ମୁଁ ଜଡ଼
ଆପଣଙ୍କୁ ନ ଚିହ୍ନିଲି ଭ୍ରମେ ହୋଇ ମୂଢ଼ ।
ନମସ୍ତେ ଭୋ ଦେବ ନାରାୟଣ ମତ୍ସ୍ୟରୂପୀ
ମହାପ୍ରଳୟ ଜଳେ ତୋ ରୂପ ଦିଶେ ବ୍ୟାପି ।
ନମସ୍ତେ ଶ୍ରୀ ନାରାୟଣ କୂର୍ମ ରୂପଧାରୀ ।
ପୃଥ୍ୱୀର ଭାରା ବହିଣ ଦୁଷ୍ଟ ଜନ ମାରି
ନମସ୍ତେ ବରାହରୂପୀ ନାରାୟଣ ବିଷ୍ଣୁ
ଦନ୍ତ ଅଗ୍ରେ ପୃଥ୍ୱୀ ଧରି ହେଲେ ସ୍ୱର୍ଗେ ବିଷ୍ଣୁ ।
ନମସ୍ତେ ନୃସିଂହରୂପୀ ନାରାୟଣ ପ୍ରଭୁ
ଦଶ ଅବତାର ହୁଅ ତୁମ୍ଭେ ଏକା ସବୁ ।
ନମସ୍ତେ ବାମନ ବିଷ୍ଣୁ ନାରାୟଣ ହରି
ବଳିକି ରଖିଲ ତଳେ ପାଦ ଜାତ କରି ।
ନମସ୍ତେ ପରଶୁରାମ ନାରାୟଣ ରୂପ
ଏକଚକ୍ର କଲ ପୃଥ୍ୱୀ ଦଳି ଦୈତ୍ୟଦର୍ପ ।
ନମସ୍ତେ ଶ୍ରୀ ନାରାୟଣ ରଘୁନାଥ ମୂର୍ତ୍ତି
ଜାନକୀ ଛଳେ ମାଇଲ ଯାଇଁ ଲଙ୍କପତି ।
ନମସ୍ତେ ଶ୍ରୀ ନାରାୟଣ ବିଷ୍ଣୁ ପରଂବ୍ରହ୍ମ,
ଜନ୍ମିଲେ ଗୋପରେ ସଙ୍ଗେ ଘେନି ବଳରାମ ।
ନମସ୍ତେ ଶ୍ରୀ ନାରାୟଣ ବୌଦ୍ଧରୂପ ଧାରୀ
ଦ୍ୱାଦଶ ଯାତ୍ରା କରିଣ ବିଜେ ନୀଳଗିରି ।
ନମସ୍ତେ ଶ୍ରୀ ନାରାୟଣ କଳକୀ ସ୍ୱରୂପ
ପାପୀଙ୍କି ମାରି ଖଣ୍ଡିଲ ସକଳ ସନ୍ତାପ ।
ସଂସାରେ ଆପଣଙ୍କୁ ନ ପାରେ କେହି ଚିହ୍ନି
ଆତ୍ମା ଭିନ୍ନ କରି ହୁଏ ବାହାରରେ ଜ୍ଞାନୀ ।
ତୁମ୍ଭେ ବାହାରେ ଭିତରେ ଆହେ ନାରାୟଣ
ପୁରିଅଛ ଆତ୍ମାରୂପେ ଏ ସଂସାରେ ପୁଣ ।
ବଦରିକା ନଗ୍ରେ ଛନ୍ତି ଯେତେ ଜୀବଜନ୍ତୁ
କେ କହିପାରିବ ମୁଖେ ତାଙ୍କ ପୁଣ୍ୟ ହେତୁ ।
ଯଜ୍ଞବେଦୀକି ପୁଣ ଯେ କଲ ଚାରିଦ୍ୱାର
ସେ ଦ୍ୱାର ଜଗିଲେ ହୋଇ ଦଶ ଅବତାର ।
ବୁଝିଲେ କେଡ଼େ ଅଗମ୍ୟ ଚାରି ଦ୍ୱାର କଥା
ମୁଁ କିସ ପାରିବି କହି ତହିଁର ବ୍ୟବସ୍ଥା ।

## ଗୁରୁସେବା

କେତେବେଳେ ଯାଇଁ କୃଷ୍ଣ ଦେଲେକ ଉତ୍ତର
ବ୍ରହ୍ମାକୁ ବୋଇଲେ ଶ୍ରୀଗୁରୁଙ୍କୁ ସେବାକର ।
ଗୁରୁଙ୍କୁ ଚିହ୍ନିଲେ-ଏକା ପାଇବୁ ଆମ୍ଭଙ୍କୁ
ନୋହିଲେ ଭ୍ରମୁଥିବୁ ନ ଭେଟି ଠାକୁରଙ୍କୁ ।
ବୁଝିଲେ ଆତ୍ମା ଏତା ଶ୍ରୀଗୁରୁ ଜଗନ୍ନାଥ
ଗୁରୁ ସେ ପ୍ରାଣୀକି ତାରି କରନ୍ତି କୃତାର୍ଥ ।
ଗୁରୁଙ୍କୁ ଯେ ନସେବେ ସେ ମୋତେ ହୁଏ ଦୂର
ବୁଝିଲି ମୁହିଁ ଶ୍ରୀ ଗୁରୁ ସାକ୍ଷାତେ ଈଶ୍ୱର ।
ପ୍ରତ୍ୟକ୍ଷରେ ମୁହିଁ ଏକା ଅଟେ ଗୁରୁ ଜାଣ
ଗୁରୁ ବିନା ଜଗତେକେ ନାହିଁ ପରିତ୍ରାଣ ।
ଗୁରୁଙ୍କୁ ଯେହୁ ଚିହ୍ନଇ ମୋତେ ସେହୁ ଜାଣେ
ଗୁରୁ ଅଚିହ୍ନା ଲୋକଟି ଭ୍ରମେ ଅକାରଣେ ।
ଶ୍ରୀମୁଖେ କହନ୍ତି ଏହିପରି କୃଷ୍ଣ ବ୍ରହ୍ମ
ଶୁଣି ଦେବବ୍ରହ୍ମା ପୁଚ୍ଛାକଲେ ଗୁରୁଧର୍ମ ।
ବୋଇଲେ ସ୍ୱାମୀ କହିବା ହେଉ ଧର୍ମବାଣୀ
କିରୂପେ ଭବୁ ତରିବେ ସେବାକରି ପ୍ରାଣୀ ।
ଶ୍ରୀକୃଷ୍ଣ ଆଜ୍ଞା କଲେକ ବ୍ରହ୍ମା ତେବେ ଶୁଣ
ଶିଷ୍ୟକୁ ଗୁରୁ ପ୍ରତ୍ୟକ୍ଷ ଅଟେ ନାରାୟଣ ।
ଗୁରୁ ବ୍ରହ୍ମା ଗୁରୁ ବିଷ୍ଣୁ ଗୁରୁ ମହେଶ୍ୱର
ଗୁରୁ ସେ ପରମବ୍ରହ୍ମ ଅଟେ ମୋକ୍ଷଦ୍ୱାର ।
ଶ୍ରୀଗୁରୁ ଅଟନ୍ତି ମହାପ୍ରଭୁ ଚତୁର୍ଭୁଜ
ଶ୍ରୀମୁଖେ କହୁଛୁ ଆମ୍ଭେ ଭଲକରି ବୁଝ ।
ଆମ୍ଭ ବଚନ ନ ମାନି ଆନ ବିଚାରିଲେ
ସେ ଶିଷ୍ୟ ନରକ କୁଣ୍ଡେ ପଡ଼େ ଜାଣ ମଲେ ।
ଯାବତ ତୀର୍ଥ ମଧ୍ୟରେ ଗଙ୍ଗା ଯେହ୍ନେ ଶେଷ
ସେ ରୂପେ ଶିଷ୍ୟଙ୍କ ଗୁରୁ ଅଟେ ମୁକ୍ତି ବାଟ ।
ଯାବତ କ୍ଷେତ୍ର ମଧ୍ୟେ ଯେହ୍ନେ ନୀଳଗିରି
ସେହି ରୂପେ ଏ ସଂସାରେ ଗୁରୁ ମୋକ୍ଷକାରୀ
ଗୁରୁଙ୍କୁ ନର ବୋଇଲେ ମହାପାପ ପାଇ
ମହାନର୍କ କୁଣ୍ଡରେ ଯେ ମଲେ ପଡ଼େ ଯାଇ ।
ପୃଥ୍ୱୀ ଆପ ତେଜ ବାୟୁ ଆବର ଆକାଶ
ଘେନିବ ଏହି ପାଞ୍ଚଙ୍କ ତୁଲେ ଗୁରୁଶିଷ୍ୟ ।
ଓଁକାର ଯେହ୍ନେ ପଞ୍ଚାଙ୍କ ବର୍ଣ୍ଣ ମଧ୍ୟେ ସାର
ତହିଁକି ଶତେ ଅଧିକ ଶ୍ରୀଗୁରୁ ଠାକୁର ।
ପ୍ରତ୍ୟକ୍ଷେ ଶ୍ରୀଗୁରୁ ମହାପ୍ରଭୁ ନାରାୟଣ
ବ୍ରହ୍ମା ବିଷ୍ଣୁ ହରିବୋଲ ଘେନି ନିଶ୍ଚେ ଜାଣ ।

ଶ୍ରୀଗୁରୁଙ୍କ ଶ୍ରୀଚରଣେ ଯେବଣ ଉଦକ
ତାହା ପାଇଁ ଶିଷ୍ୟ ଯେବେ ନ ଘେନେ ମସ୍ତକ
ପାଣି ତୁଲେ ସମ କରେ ଯେବେ ସେହୁ ଜଳ
ତାଠାରୁ କେ ଅପରାଧୀ ନାହିଁ ଭୂମଣ୍ଡଳ ।
ଗୁରୁ ଏକା ସଂସାରକୁ ଅଟେ ମୋକ୍ଷଦାତା
ଗୁରୁଠାରୁ ଶ୍ରେଷ୍ଠ ହୋଇ ନାହିଁ କେ ଦେବତା ।
ସହସ୍ରେକ ଶିବଲିଙ୍ଗ ପୂଜିଲେ ଯେ ପୁଣ୍ୟ
ତହିଁରୁ ଶତେ ଅଧିକ ଶ୍ରୀଗୁରୁ ଦର୍ଶନ ।
ଯେବଣ କୃତଘ୍ନ ମୂର୍ଖ ମନ୍ଦ କୁଳାଙ୍ଗାର
ସେହି ଅବା ଶ୍ରୀଗୁରୁଙ୍କୁ ମଣଇ ଯେ ନର ।
ଯାହା ଆଶୀର୍ବାଦେ କୁଳ ଉଜ୍ଜ୍ୱଳ ହୁଅଇ
ମୂଢ଼ପଣେ ତାଙ୍କୁ ନର ପ୍ରାୟେ ସେ ମଣଇ ।
ଯେବଣ ଶିଷ୍ୟଟି ଜାଣ ଗୁରୁ ସେବା ତେଜି
ଆନ ଦେବତାମାନଙ୍କୁ ଯାଏ ପୁଣି ପୂଜି ।
ତାହାର ସଂସାରେ ଯେତେ ଦୋଷ ହୁଏ ପୁଣ
ଶ୍ରୀମୁଖ ବଚନ ଏହା ଅଟଇ ପ୍ରମାଣ ।
ବାରି ଶତ ଶତ କୋଟି ପୁରୁଷଙ୍କୁ ଘେନି
ପୂତିଗନ୍ଧ ନରକରେ ପଡ଼େ ଯୁଗ ତିନି ।
ଯେବଣ ଶିଷ୍ୟ ଶ୍ରୀଗୁରୁ ଗୋସାଇଁ ଚରଣେ
ଦେଖିଲାକ୍ଷଣି ଗୃହରୁ ପାଣିଢାଳ ଆଣେ ।
ବେନି ଚରଣର ତଳେ ଗଡୁ ଗୋଟି ଥୋଇ
ଧୋଇଦେଇ ଗୁରୁପାଦ ଆନନ୍ଦିତ ହୋଇ ।
ସେ ପାଦନୀରକୁ ନେଇ ଗର୍ଭକୁ କ୍ଷେପିବ
ଥୋକାଏ ନେଇ କୁଟୁମ୍ବ ଶିରେ ସିଞ୍ଚିଦେବ ।
ଆବର କିଛି ସିଞ୍ଚିବ ନେଇ ସବୁ ଦ୍ରବ୍ୟେ
ପାଞ୍ଚିବ କାରୁଣ୍ୟଜଳ ବୋଲି ଭକ୍ତିଭାବେ ।
ଆଉ ଯାହା ଥିବ ଦେବ ତୁଳସୀର ମୂଳେ
ନୋହିଲେ ପକାଇଦେବ ଅଗାଧ ସଲୀଳେ ।
ତହିଁକି ନ ଗଲେ ଦେବ ପୋଖରୀରେ ଢାଳି
ଶ୍ରୀମୁଖ ବଚନ ମୋର ଥିବ ପ୍ରତିପାଳି ।
ଏଥକୁ ଦୋଷ ଘେନିବ ମନେ ଯେହୁ ଜାଣ
ବ୍ରହ୍ମହତ୍ୟା ଦୋଷ ଲଭିବ ସେ ଶରୀରେଣ ।
କୋଟି ଗଙ୍ଗା ସ୍ନାନଫଳ ବିଫଳ ହୋଇବ
ଏକଥା ଗୋଟିକ ବ୍ରହ୍ମା ଜାଣ ନିଶ୍ଚେ ଧ୍ରୁବ ।
ଗୁରୁ ବିଷ୍ଣୁ ବୋଲି କଲେ ଜୀବ ମୋକ୍ଷ ହୋଇ
ନର ତୁଲେ ସମ କଲେ ମରେ ପାପ ପାଇଁ ।
ସାକ୍ଷାତେ ଅଟନ୍ତି ଗୁରୁଦେବ ଭଗବାନ
କେବଳ ଏହା ଏକା ନ ମାନେ ମୂର୍ଖଜନ ।
ବୁଝିଲି ଅଟେ ଗୁରୁ ଶିଷ୍ୟ ଏକା ଆତ୍ମା
ଆତ୍ମାକୁ ଚିହ୍ନିବେ ବୋଲି ପଣ୍ଡିତ ମହାତ୍ମା ।
ଗୁରୁଙ୍କର ପାଦଧୋଇ ପାଦତଳେ ପଡ଼ି
ଦଣ୍ଡବତ କରି ପୁଣି ଉଠି କରଯୋଡ଼ି ।
ପୁଣି ପ୍ରଣାମ କରିବ ପାଦେ ବେଳ ଶତ
କରିବ ନୋହିଲେ ଅଶୀବାର ଦଣ୍ଡବଦ ।
ଷାଠିଏ ଅବା ଚାଳିଶଥର ଅବା କରୁ
କପଟ ଛାଡ଼ିଥିବଟି ଏକା ହୃଦୟରୁ ।
ଶ୍ରୀଗୁରୁ ମହାପ୍ରଭୁଙ୍କ ଆଜ୍ଞା ଶିରେ ଧରି
ସେ ବିବ ନିର୍ମଳ ଚିତ୍ତେ ମନ ଦୃଢ଼କରି ।
ଯେ ଅବା ଘରେ ତାହାର ମିଳେ ଯେଉଁ ଦ୍ରବ୍ୟ
ମନ ସନ୍ତୋଷେ ଗୁରୁଙ୍କୁ ତାହା ନେଇ ଦେବ ।
ରନ୍ଧନକରି ବିଷ୍ଣୁଙ୍କୁ ଚଳୁ ନେଇ ଦ୍ୟନ୍ତେ
ସେ ଶିଷ୍ୟ ଜୀବନ ଧନ୍ୟ ଅଟଇ ଜଗତେ ।
ନୃସିଂହ ଶ୍ରୀମୁଖେ ଲାଗିକରନ୍ତେ ତା ନେଇ
ସେହିଟି ମହାନିର୍ମାଲ୍ୟ ସଂସାରରେ ହୋଇ ।
ସେ ନିର୍ମାଲ୍ୟ ପ୍ରସାଦକୁ ପାଆନ୍ତି ଯେ ପ୍ରାଣୀ
ତାହାଙ୍କ ହୃଦ ପବିତ୍ର ନିଶ୍ଚେ ହୁଏ ପୁଣି ।
କୋଟି ରାଜସୂୟ ଯଜ୍ଞ କଲେ ଯେତେ ପୁଣ୍ୟ
ଗୁରୁ ପ୍ରସାଦ ଅନ୍ନକୁ ସରି ନୋହେ ଜାଣ ।
ଚାନ୍ଦ୍ରାୟଣ ବ୍ରତ ଏକଗୋଟି ଯେବେ କରି
ଗୁରୁସେବା ଧର୍ମକୁ ଯେ ନୁହନ୍ତି ସେ ସରି ।
ଶ୍ରୀଗୁରୁଙ୍କୁ ଦଣ୍ଡବତ କଲେ ଯେତେପୁଣ୍ୟ
ସେ କଥା କହୁଛି ଶୁଣ ଚତୁର ଆନନ ।
କରିବ ଗଙ୍ଗାମହତ ସ୍ନାନ ଯେବେ ଶତେ
ସେହି ନୁହଇ ସମାନ ଗୁରୁ ସେବା ଯେତେ ।
କାର୍ତ୍ତିକ ମାଘ ହବିଷ୍ୟ ସ୍ନାନ ଲକ୍ଷେ କଲେ
ଗୁରୁଦର୍ଶନକୁ ସରିନୁହଇ ସେ ଭଲେ ।
ଆବର ସେ ସିଦ୍ଧକଥା ଶୁଣ ବେଦବର
ଗୁରୁ ମୁଖେ ମହାମନ୍ତ୍ର ଶୁଣିବ ସେଠାର ।
ତୁଳସୀ ବୃକ୍ଷର ମୂଳେ ଅଶ୍ୱତ୍ଥର ତଳେ
କି ଅବା ପୁଷ୍ପବନରେ ଅବା ଦେବଆଳେ ।
ଶ୍ରୀବିଷ୍ଣୁଙ୍କ ମନ୍ଦିରେ ବା ବଇଷ୍ଣବ ମଠେ
ସମୁଦ୍ର ନଦୀର ତୀରେ ଅବା ଗୋରୁ ଗୋଷ୍ଠେ ।
ଏତେକ ସ୍ଥାନେ ବସି ଯେ ହେବ ଗୁରୁକର୍ଣ୍ଣୀ
ତାହାର ଭାଗ୍ୟ କହି ନପାରେ ପଦ୍ମଯୋନି ।
ନୋହିଲେ ଗୁରୁଙ୍କ ବାକ୍ୟ ଫାଟିବ ଯେ ବେଳେ
ସେ ବୋଲକୁ ପାଳି ମନ୍ତ୍ର ଘେନିବ ତତ୍କାଳେ ।

ଗୁରୁ ସନ୍ତୋଷ ହୋଇଲେ ସର୍ବ ଧର୍ମ ପାଇ
ଭାଗ୍ୟବନ୍ତ ଶିଶୁକୁ ଯେ ଗୁରୁ ଦୟାବହି ।
ଗୁରୁଙ୍କ ଦୟାରୁ ଶିଷ୍ୟ ସୁଖେ ଲଭେ ସ୍ୱର୍ଗ
ଛନ୍ମିଲେ ପୁନର୍ପି ଲଭେ ସେ ବିପୁଳ ଭୋଗ ।
ପରମ ଗତି ଘେନି ସେ ଶିଷ୍ୟ ଜନ୍ମ ପାଇ
ଲେଉଟି ଗୁରୁପାଦରେ ଭକ୍ତି ଉପୁଜଇ ।
ରୋଗଶୋକଦୁଃଖରେ ସେ ନୁହେଁ କେଭେ କଷ୍ଟି
ଭୁଞ୍ଜଇ ବିପୁଳ ଭୋଗ ଜନ୍ମେ ଜନ୍ମେ ସେଟି ।
ପ୍ରୟାଗେ ମକରସ୍ନାନକଲେ ଯେତେପୁଣ୍ୟ
ସେ ଫଳ ଲଭେ ଗୁରୁଙ୍କୁ ଦେଲେ ଶିଷ୍ୟ ଅନ୍ନ ।
ଆବର ଗୁରୁଙ୍କୁ ନିତ୍ୟ ଦରଶନ କଲେ
ସେ ପୁଣ୍ୟର କଥା କହି ନ ପାରଇ ଭଲେ ।
ଆପଣାର ଗ୍ରାମେ ଯେବେ ଗୁରୁ ଜାଣ ଥିବ
ଦିନକେ ଥରେ ଅବଶ୍ୟ ଦର୍ଶନ କରିବ ।
ଅର୍ଦ୍ଧକୋଶକରେ ଯେବେ ଗୁରୁଥିବେ ରହି
ତ୍ରିଦିନରେ ବେଳେ ଶିଷ୍ୟ ପ୍ରଣମିବ ଯାଇ
କୋଶକରେ ଗୁରୁ ଯେବେ ଥିବେ ବାସକରି
ମାସକରେ ବେଳେ ଶିଷ୍ୟ ଗୁରୁପାଦ ଧରି ।
ଘରକରି ଗୁରୁ ଯେବେ ଥିବେ ରାଜ୍ୟାନ୍ତରେ
ଛମାସେ ଶିଷ୍ୟ କରିବ ଯାଇଁ ସେବାଥରେ
ଅତିଦୂର ଯେବେ ହେବ ଗୁରୁଙ୍କ ଭବନ
ବରଷକେ ଶିଷ୍ୟ ଥରେ କରିବ ଦର୍ଶନ ।
ଅଥବା ଗୁରୁଙ୍କୁ ଯେବେ ନ ଦେଖିବ କେବେ
ଦର୍ଶନ କରିବ ମନେ ମନେ ଗୁରୁଦେବେ ।
ପ୍ରଭାତୁ ଉଠି ବସିବ ଶ୍ରୀଗୁରୁଙ୍କୁ ଧ୍ୟାୟି
କରିବ ଯେ ଦଣ୍ଡବତ ଶୁଦ୍ଧଚିତ୍ତ ହୋଇ ।
ଏଥିରେ ପୁଣ୍ୟ ଯେତେକ ଜଣାନ୍ତି ଗୋବିନ୍ଦ
ଶୁଣନ୍ତି ଯେ ପିତାମହ ହୋଇଣ ଆନନ୍ଦ ।
ଗୁରୁଙ୍କୁ ଦର୍ଶନକରି ଯିବେ ଯେବେ ଶିଷ୍ୟ
ନ ମିଳେ ଶୂନ୍ୟହସ୍ତରେ ବିଫଳ ତା ଯଶ ।
କିଛି ଦ୍ରବ୍ୟ ନ ମିଳିଲେ ନେବ ଫୁଲଟିଏ
ଗୁରୁପାଦତଳେ ଥୋଇ ହୋଇବ ବିନୟେ ।
ଚରଣ ତଳରେ ପଡ଼ିହେବ ଦଣ୍ଡବତ
ଉଠିଲେ ଉଭାହୋଇବ ଯୋଡ଼ି ବେନିହସ୍ତ ।
ମୁଖରେ ଭଜି ବୋଲିବ ଶ୍ରୀଗୁରୁଗୋବିନ୍ଦ
ମଥାରେ ଲଦିବ ଆଣି ଗୁରୁ ପଦ୍ମପାଦ ।
ଏ ଘୋର ଅନ୍ଧାରୁ ମୋତେ କରିବାକ ପାରି
ଏମନ୍ତ ବୋଲିବ ମଖେ ବସି ପାଦଧରି ।

ଶତେ କପିଳା ଗୋଦାନ କଲେ ଯେତେ ଫଳ
ସେ ପୁଣ୍ୟ ଲଭନ୍ତି ଶିଷ୍ୟ ଭକ୍ତିରୁ କେବଳ ।
ଆବର ସିଦ୍ଧାନ୍ତବାଣୀ ଶୁଣ ହେ ବିଧାତା
ଶ୍ରୀମୁଖ ବଚନ ମୋର ନୁହଇ ଅନ୍ୟଥା ।
ପ୍ରଭାତୁ ଉଠି ଗୁରୁଙ୍କୁ ଶିଷ୍ୟ ଯେବେ ନମେ
ଲଭଇ ଗଙ୍ଗାସ୍ନାନର ଫଳ ପୁଣ୍ୟକାମେ ।
ଯେବଣ ଶିଷ୍ୟ ଦିବସ ଅର୍ଥେ ଜପି ନାମ
ଗୁରୁଙ୍କ ପାଦ ଧରିଣ କରଇ ପ୍ରଣାମ ।
କୋଟି ତୀର୍ଥ ଯିବା ଫଳ ତତକ୍ଷଣେ ପାଇ
ଶ୍ରୀମୁଖ ବଚନ ମୋର ଅନ୍ୟଥା ନୁହଇ ।
ଗୁରୁଙ୍କୁ ସନ୍ଧ୍ୟାକାଳରେ କଲେ ଦଣ୍ଡବତ
ତହିଁର ଫଳ ଅଟଇ ଜାଣ ଅଲୋକିତ ।
କୋଟି କୋଟି ବ୍ରହ୍ମାଣ୍ଡକୁ ଦେଲ ଦାନକରି
ସେହି ନୁହଇ ସମାନ କହନ୍ତି ଯେ ହରି ।
ନିତିହିଁ ଶିଷ୍ୟ ଯଦ୍ୟପି ଗୁରୁ ସେବିପାରେ
ତହିଁର ପଳ କେ କହି ନ ପାରେ ସଂସାରେ ।
ଗାବ ତିନିପଦ୍ମ ଜାଣ ଦାନ ଯେବେ ଦେବ
ତହିଁକି ନୁହଇ ସରି କହନ୍ତି କେଶବ ।
ଯେବଣ ଶିଷ୍ୟ ଦେଖିଲାକ୍ଷଣି ଦ୍ୱାରେ ଗୁରୁ
ପ୍ରଣାମ କରି ରନ୍ଧାଇ ଅନ୍ନ ଆଣି ଘରୁ ।
ନବାତ ଶାକର ଦଧି ଦୁଧ ଖଣ୍ଡ ତୁଲେ
ମଣୋହିକରହୋ କୋଲି ଗୁରୁଙ୍କୁ ଯେ ବୋଲେ ।
ଗୁରୁଙ୍କର ମନ ଜାଣି କରେ ବସି ସେବା
ମିଷ୍ଟାନ ସହିତେ ଦିଏ ଉତ୍ତମ ପରିବା ।
ସେ ଶିଷ୍ୟର ଯେ ସୁକୃତ କହି ନୁହେ ଅନ୍ତ
ଆମ୍ଭର ଶ୍ରୀମୁଖ ବାଣୀ ଅଟେ ଜାଣ ସତ୍ୟ ।
ଆବର କଥାଏ ମଧ୍ୟ ଶୁଣ ବେଦବର
ଗୁରୁଙ୍କୁ ଦେଖି ହାତେ ଯେ କରେ ନମସ୍କାର ।
ଭୂମିରେ ଦଣ୍ଡବତ ଯେ ପ୍ରାଣୀ ନ କରଇ
ତହିଁର ପାତକ କହିଲେ ଯେ ନ ସରଇ ।
ବେନିକର ଛେଦିଲେ ଯେ ପାପ ଯାଇଁ ନାଶ
ଆବର ଯେ ସତ୍ୟବାଣୀ ଶୁଣ ଲୋକଈଶ ।
ଗୁରୁଙ୍କୁ ଆସନ ଯେହୁ ହେଳାକରି ଝୁଣ୍ଟି
ଗୁରୁଙ୍କ ଆଗେ କଠାଉ ମାଡ଼ିଣ ଚାଲେଟି ।
ଗୁରୁଙ୍କର ବଚନ ଯେ ନ ଶୁଣଇ କର୍ଣ୍ଣେ
ଗୁରୁଙ୍କ ଆସନପରେ ବସେ ଯେ ଅଜ୍ଞାନେ ।
ମୂର୍ଖ ପଣେ ଗୁରୁଙ୍କୁ ଯେ ନଜର ନ କରେ
ଗୁରୁଙ୍କୁ ଜବାବ ଦିଏ ଗର୍ବ ଅହଙ୍କାରେ ।

ପ୍ରଥମୁ ଯେ ଶିଷ୍ୟଟି ନ କରିଥିବ ଗୁରୁ
ଲୋକଲଜ୍ଜା ପାଇ ମରେ ବଳେ ଚଣ୍ଡାଳରୁ ।
ସେ ଲୋକମାନେ ପଡ଼ନ୍ତି ମଲେ ଯେ ନରକେ
ଆବର ବିଷୟା ଶୁଣ କହୁଛି ଶ୍ରୀମୁଖେ ।
ଯେବଣହିଁ ଶିଷ୍ୟ ପୁଣ ଗୁରୁଙ୍କ ସଂସାରେ
ନର ସଙ୍ଗେ ସମାନଟି ଘେନ ଲେଖାକରେ ।
ବାପର ତୁଲେ ସମାନ ଘେନେ ଲେଖାକରି ।
ମାତା ସମାନ ଘେନଇ ଗୁରୁଙ୍କର ନାରୀ ।
ଲକ୍ଷ୍ମୀ ନାରାୟଣ ପ୍ରାୟ ନ ଘେନଇ ଏକା
ଗୁରୁଙ୍କ ପୁତ୍ରଙ୍କୁ ବୋଲେ ଏ ମୋହର ସଖା ।
ଗୁରୁ ସମାନ କରି ଘେନେ ଗୁରୁ ପୁତ୍ର
ଲେଖଇ ଭାଇ ବୋଲିଣ ମୂର୍ଖପଣେ ମାତ୍ର ।
ଅଚେତା ହୋଇ ମନୁଷ୍ୟ ବୋଲି ମନେ ଘେନେ
ପିତାମାତା ଭାଇ ବୋଲି ଘେନଇ ଯେ ମନେ
ସାକ୍ଷାତରେ ଗୁରୁ ବିଷ୍ଣୁ ଗୁରୁନାରୀ ଲକ୍ଷ୍ମୀ
ଗୁରୁପୁତ୍ର ଗୁରୁ ବୋଲି ନ ଘେନରେ ଭ୍ରମି ।
ଯେବଣ ଗୁରୁ ସାକ୍ଷାତେ ଅଟେ ବ୍ରହ୍ମରୂପ
ତାହାଙ୍କୁ ପୁଣି ସମାନ ହୁଅନ୍ତି କି ବାପ ।
ଲକ୍ଷ୍ମୀ ନାରାୟଣଙ୍କୁ ବା ବଚନେ ହୁଡ଼ଇ
ପିତାମାତା ନାନା ତୁଲେ ଲେଖା କରୁଥାଇ ।
ପିତାମାତା ଜନ୍ମ ସିନା ସଂସାରେ କରନ୍ତି
ଗୁରୁବିନା ମୋକ୍ଷ ନ କରଇ ଜଗଜ୍ୟୋତି ।
ନରକର ନିସ୍ତାରଣ ଅଟେ ଏକା ଗୁରୁ
ଗୁରୁ ବିନା ମୋକ୍ଷକାରୀ ନାହିଁ କେ ସଂସାରୁ ।
ଗୁରୁ ସନ୍ତୋଷେ ଶିଷ୍ୟର ବର୍ଦ୍ଧିତ ଯେ ହୁଏ
ତେବେ ସେହି ଦୁର୍ବାସନା ଅଟେ ଭବଭୟେ ।
ଆବର ସିଦ୍ଧାନ୍ତ ବାଣୀ ଶୁଣ ହେ ଦଇବ
ଉତ୍ତମ ଶିଷ୍ୟ ଚିହ୍ନିଣ କରି ଯେବେ ଥିବ ।
ସେ କାହିଁକି ନୋହିବ ବା ଗୁରୁ ସେବାକରି
କି ହେବ ଅଯୋଗ୍ୟ ଶିଷ୍ୟ ଲକ୍ଷ ଲକ୍ଷ କରି ।
ତୁମ୍ଭେ ଯେବେ ବ୍ରହ୍ମା ଆହୋ ଗୁରୁ ଚିହ୍ନିଥାନ୍ତ
କାହା ପାଇଁ ବିଷ୍ଣୁ ମାୟାରେ ଯେ ଭ୍ରମି ଯାନ୍ତ ।
ଏଣୁ ହେ ବ୍ରହ୍ମ ସାକ୍ଷାତେ ଅଟୁ ଆମ୍ଭେ ଗୁରୁ
ଗୁରୁ ଜଗନ୍ନାଥ ଗୁରୁ ତାରନ୍ତି ସଂସାରୁ ।
ତୁମ୍ଭ ହୃଦପଦ୍ମେ ଏବେ ଗୁରୁଙ୍କୁ ଚିହ୍ନଟି
ପ୍ରତ୍ୟକ୍ଷେ ଦେଖିବ ନୃସିଂହଙ୍କ ରୂପଗୋଟି
ଏତେକ ବୋଲି ଶ୍ରୀମୁଖେ କହନ୍ତି ସେ ପ୍ରଭୁ
ଶୁଣି ମନେ ଧ୍ୟାନକରି ବସିଲେ ଆତ୍ମାଭୁ ।

ନାସାଗ୍ରେ ଲୟ ଲଗାଇ ଚାହାଁନ୍ତେ ଦେହକୁ
ଦେଖିଲେ ହୃଦୟପଦ୍ମେ ପ୍ରଭୁ ନୃସିଂହକୁ ।
ଶଙ୍ଖ ଚକ୍ର ଗଦା ପଦ୍ମ ଚତୁର୍ଭୁଜ ମୂରତି
ଗୋଲକ ନିତ୍ୟସ୍ଥଳୀରେ ବିଜେ କରିଛନ୍ତି ।
ଶ୍ରୀନୃସିଂହ ରାସ ଲାଗିଅଛି ଅଗୋଚର
ପରମହଂସ ଲୀଳାକୁ କିସ ପଟାନ୍ତର ।
ଚୌଷଠି ସହସ୍ର କନ୍ୟା ଅଷ୍ଟସଖୀ ଆଦି
କରନ୍ତି ରାସ ଗୋବିନ୍ଦ ପାଦପଦ୍ମ ବନ୍ଦି ।
ଲକ୍ଷ୍ମୀଙ୍କ କୋଳେ ନୃସିଂହ ଘେନି ନିତ୍ୟସ୍ଥଳେ
ବିଜେ କରିଛନ୍ତି ପ୍ରଭୁ ରାହାସ ମଣ୍ଡଳେ ।
ଆଲଟ ଚାମର ପଡ଼େ ବିଜେ ପଦ୍ମଆଖି
ଅଷ୍ଟପ୍ରହରେ ସେବନ୍ତି ଆସି ଅଷ୍ଟସଖୀ ।
ଅଷ୍ଟଦଳ ପଦ୍ମ ମଧ୍ୟେ ବିଜେ ଭଗବାନ
ସେ ଅଷ୍ଟଦଳ ଚିନ୍ତନ୍ତି ସାଧୁ ସନ୍ଥଜନ ।
ଅଷ୍ଟଦଳ ଚିହ୍ନିଲେଟି ବୋଲି ବ୍ରହ୍ମଜ୍ଞାନୀ
ବ୍ରହ୍ମଜ୍ଞାନୀରୁ ଶ୍ରେଷ୍ଠ କେ ନାହିଁ ପୁର ତିନି ।
ସର୍ଜିଲେ ଛପନକୋଟି ଜୀବ ପରମେଷ୍ଠୀ
ତାର ପୁରେ ଅଷ୍ଟାଦଶ ପାଟକର ସୃଷ୍ଟି ।
ଅଷ୍ଟାଦଶ ପାଟକର ପରେ ଚାରିଜାତି
ସେ ଚାରିଜାତି ଶ୍ରେଷ୍ଠ ଏ ସବୁଙ୍କୁ ଅଟନ୍ତି ।
ଚାରିଜାତିଙ୍କ ଉପରେ ବିପ୍ର ମହାଶ୍ରେଷ୍ଠ
ସେ କଥାବେଦେ ଲେଖିଅଛି ଆହେସୁରଜ୍ୟେଷ୍ଠ
ବ୍ରହ୍ମ ଚିନ୍ତି ବ୍ରାହ୍ମଣଙ୍କୁ ବୋଲି ବ୍ରହ୍ମଜ୍ଞାନୀ
ବ୍ରହ୍ମଜ୍ଞାନୀ ତହୁଁ ଶ୍ରେଷ୍ଠ ନାହିଁ କେ ଅବନୀ ।
ଯେଉଁ ସଭାରେ ବ୍ରାହ୍ମଣ ପୁରୁଷ ନ ଥାଇ
କଳହ ଅନିଷ୍ଟ ଜାତ ସେ ସଭାରେ ହୋଇ ।
ଧର୍ମ ନ୍ୟାୟ କରି କଥା କେହି ନ କହନ୍ତି
ଏଣୁ ବ୍ରହ୍ମଜ୍ଞାନୀ ସବୁଠାରେ ଶ୍ରେଷ୍ଠ ହୋନ୍ତି ।
ବ୍ରହ୍ମ ଚିନ୍ତା ଲୋକଙ୍କୁ ଯେ ବୋଲି ବ୍ରହ୍ମଜ୍ଞାନୀ
କହନ୍ତି ଶ୍ରୀ ନାରାୟଣ ଶୁଣ ପଦ୍ମଯୋନି ।
ସକଳ ଦେହରେ ହରି ରାସ କରୁଛନ୍ତି
ପଶୁ ପ୍ରାୟେ ସଂସାରେ କେ ଚିହ୍ନି ନ ପାରନ୍ତି ।
ଶୁଙ୍ଘୁଛି କହୁଛି ସବୁ ଶୁଣୁଛି ଚାହୁଁଛି
ଏ ଚାରି ଥିବାରୁ ସିନା ରାସ ହୋଇଅଛି ।
ଶ୍ରବଣରେ ଶୁଣି ଶୁଣି ନେତ୍ରେ ଦେଖି ଦେଖି
ନାସିକାରେ ଘେନି ବାସ ଯହିଁ ରାସ ଦେଖି ।
ନିତ୍ୟ ରାହାସକୁ ଏହି ଚାରିଦ୍ୱାର ମୂଳ
ଆଲଟ ଚାମର ପିଛା ପଡ଼େ ମାଳ ମାଳ ।

ଭେଦକରି ଷଡ଼ଚକ୍ର ରାସ ଧ୍ୱନି କରେ
ଶୁଭଇ ଯେ ଧ୍ୱନି ଗୋଟି ଦ୍ୱାଦଶ ପ୍ରକାରେ ।
ହୃଦପଦ୍ମ ମଧ୍ୟେ ଧ୍ୱନି ଶୁଣି ବେଦବର
ବୋଇଲେ କେଡ଼େ ଭାବ ଏ ଅଟେ ଗୋବିନ୍ଦର ।
ପଦାରେ ଦେଖିବ ଯାହା ଭିତରେଟି ତାହା
ବୈକୁଣ୍ଠେ ତାହା କରନ୍ତି ପ୍ରଭୁ ଚଉବାହା ।
ସକଳ ଦେହରେ ସିନା ଏ ପ୍ରକାରେ ଚିନ୍ତି
ରାହାସର ଚିହ୍ନ କେହି ଶରୀରେ ନ ପାନ୍ତି ।
ବାହାରେ ଦେଖିଲେ ଯାହା ଶରୀରେଟି ତହିଁ
ଭଲା ଖେଳ କରିଛନ୍ତି ପ୍ରଭୁ ଭାବଗ୍ରାହୀ ।
ଏ ରୂପେ ଧ୍ୟାନେ ରହନ୍ତେ ଚାହିଁ ବେଦପତି
ଦେଖିଲେ ଜୀବ ପରମ ଆତ୍ମା ମେଳ ହୋନ୍ତି ।
ଏକ ଆସନେ ନ ବସି ହୁନ୍ତି ଦେଖାଦେଖି
ପାଦକେ ଚାଲୁଛନ୍ତି ହୋଇ ମନେ ସୁଖୀ ।
ଦିନକରେ ଏକୋଇଶ ସହସ୍ର ଛତିଶ
ପାଦକରେ ଚାଲିକରି ହୁନ୍ତି ଯାଆ ଆସ ।
ଯାବତ କର୍ମକରି ସେ ବଜାନ୍ତିଟି ତାଳ
ସେହି ତାଳ ବାଜୁଥିଲେ ପାପ ପୁଣ୍ୟ ଫଳ ।
ବକାର ସକାର ସେହି ଫଳ ନାମଗୋଟି
କହନ୍ତି ଶ୍ରୀ ନାରାୟଣ ଶୁଣ ପରମେଷ୍ଠୀ ।
ସେହି ଫଳ ଫଳୁଥିଲେ ରାସ ହୁଏ ମତ୍ତା
ଏରୂପେ ଶ୍ରୀହରି ମୁଖୁ ଶୁଣିଲେ ବିଧାତା ।
ହୃଦରେ ଚିହ୍ନି ରାହାସ ଉଠି କରଯୋଡ଼ି
ତତକ୍ଷଣେ ବିଷ୍ଣୁପ୍ରିୟା ଦେହୁ ଗଲା ଛାଡ଼ି ।
ପାଞ୍ଚିଲେ ଏ ଭବେ ଜୀବ ଛନ୍ତି ଯେତେ ପୁରି
ସର୍ବ ଦେହରେ କରନ୍ତି ରାସ ଦେବ ହରି ।
ଏହା ନ ଚିହ୍ନି ହରନ୍ତି ଭୁଲି ମୂର୍ଖ ଜନେ
ପାଷାଣ୍ଡ ହୋଇ କରନ୍ତି ଅର୍ଥ ଆନୁଆନେ ।
ଏତେ ବୋଲିଣ ଚାହାନ୍ତେ ବ୍ରହ୍ମା ଚକ୍ଷୁ ଫେଇ
ଦେଖିଲେ ବଦ୍ରିକାପୁରେ ପ୍ରଭୁ ରାସ ହୋଇ ।
ଯଜ୍ଞବେଦୀର ଉପରେ ଛନ୍ତି ବିଜେକରି
ରାସେ ଲାଗିଛନ୍ତି ଚଉଷଠି ସସ୍ତ୍ରନାରୀ ।
ଲକ୍ଷ୍ମୀଙ୍କି କୋଳରେ ଘେନି ଶ୍ରୀନୃସିଂହ ସ୍ୱାମୀ
ରାହାସରେ ବିଜେ କରିଛନ୍ତି ଅନ୍ତର୍ଯ୍ୟାମୀ ।
ଆବର ଯେ ଅଷ୍ଟସଖୀ ଅଷ୍ଟଗୃହେ ଜଗି
ସେବାରେ ଲାଗିଅଛନ୍ତି ହୋଇଣ ନିଯୋଗୀ ।
ଆସନ ସ୍ୱାଗତ ପାଦ୍ୟ ଅର୍ଘ୍ୟ ଆଚମନ
ବସନାଭରଣ ଗନ୍ଧ ପୁଷ୍ପ ନିବେଦନ ।
ଧୂପ ଦୀପ ନଇବେଦ୍ୟ ଆଦି ସେବା ଲାଗି
ଶ୍ରୀ ନୃସିଂହ ହୁଅନ୍ତି ଯେ ଷଡ଼ରସ ଭୋଗୀ ।
ତା ଦେଖି ବିଧାତା ଲୋଟେ ଭୂମିରେ ଯେ ପଡ଼ି
ହୋଏହୋଏ ବୋଇଲେ ଯେ ଉଠି କରଯୋଡ଼ି ।
ଲକ୍ଷ୍ମୀ ନୃସିଂହଙ୍କୁ ଦେଖି ବ୍ରହ୍ମା ହେଲେ ଭୋଳ
ଭୋଳହୋଇ ଧଇଲେକ ହାତେ ବେନି ତାଳ ।
ତାଳଦେଇ ଭୋଳେ ପଡ଼ିଗଲେ ଭୂମି ଲୋଟି
ହସିଲେ ବ୍ରହ୍ମାର ଭୋଳ ଦେଖି ଗୋବିନ୍ଦଟି ।
ପିତାଙ୍କୁ ବୋଇଲେ ଦେଖ ଆତ୍ମାରେ କି ଭାବ
ଏରୂପେ ସକଳ ଘଟେ ବିଜେ ବାସୁଦେବ ।
ଆତ୍ମା ରାହାସ କଥାଟି ନ ଜାଣନ୍ତି କେହି
ନ ଚିହ୍ନି ମରନ୍ତି ଭୋଳହୋଇ ତାପ ବହି ।
ଆତ୍ମା ରାହାସ ଭାବ ଯେ ଚିହ୍ନି ପାରିଥିବ
ସେ କିପାଇଁ ତାପ ବହି ନୃତ୍ୟେ ଭୋଳ ହେବ ।
ଏବେତ ଆତ୍ମା ଚିହ୍ନାଇ ଦେଲୁ ଜାଣ ତୋତେ
ଏଠାରୁ ମାୟା ତୋତେ ନ ଲାଗୁ ହସ୍ତଗତେ ।
ଋଷିମାନଙ୍କୁ ସଙ୍ଗରେ ଘେନି ତୁମ୍ଭେ ଯାଅ
ଆତ୍ମା ରାହାସରେ କଥା ଜ୍ଞାନୀଜନେ କହ ।
କଦାପି ମୂର୍ଖ ଲୋକଙ୍କ ଆଗେ ନ କହିବ
ଶୁଣି କରପତ୍ର ଯୋଡ଼ି କହନ୍ତି ଦଇବ ।
ବ୍ରହ୍ମା ବୋଇଲେ ଆପଣ ସିନା ଆମ୍ଭ ଗୁରୁ
ଗୁରୁ ବେନି ଅକ୍ଷରକୁ ଚିହ୍ନି କେହୁ ପାରୁ ।
ଗୁ ଶବଦ ମହିମାଟି ଗୁଣର ଅତୀତ
ରୁ ଶବଦ ମହିମାଟି ଅଟେ ଭୂମିରୁ ବର୍ଜିତ ।
ଗୁଣ ରୂପ ତୁମ୍ଭର ସଂସାରରେ ଥିବାରୁ
ଗୁରୁ ବେନି ଅକ୍ଷରକୁ କାଢ଼ିଲ ହୃଦରୁ ।
ଗୁରୁ ବେନି ଅକ୍ଷରଟି ତୁମ୍ଭର ଯେ ଆତ୍ମା
ଏବେ ଆତ୍ମା ଚିହ୍ନି ନ ପାରେ ଦେବବ୍ରହ୍ମା ।
ତେଣୁ ଆତ୍ମା ଚିହ୍ନି ବ୍ରହ୍ମ ଚିହ୍ନିଲ ଗୁରୁଙ୍କୁ
ମୁହିଁ ଶିଷ୍ୟ ତୁମ୍ଭେ ଗୁରୁ ଅଟେ ସଂସାରକୁ ।
ଗୁରୁ ଚରଣ ତୁଳସୀ ପାଣି ଦେବି ପାଇ
ବିଷ୍ଣୁର ପ୍ରସାଦ ଲାଗି ମୁଁ ପବିତ୍ର ହୋଇ ।
ଗୁରୁଙ୍କ ପାଦ ଉଦକ ହରି ସେବା କରି
ରହିଲେ ଅନନ୍ତ କୋଟି ଯୁଗ ଦେହ ଧରି ।
ଗୁରୁ ଚରଣର ନୀର ଲକ୍ଷ୍ମୀ ଶିରେ ଘେନି
ସଦାକାଳରେ ରହିଲେ ହୋଇ ସୁଲକ୍ଷଣୀ ।
ଗୁରୁଙ୍କ ଚରଣ ନୀର ଦେବବ୍ୟାସ ପାଇ
ଗର୍ଭକୁ କ୍ଷେପନ୍ତେ ସେହି ହେଲେ ବେଦଧ୍ୟାୟୀ ।

ଚାରିବେଦ ଷଟଶାସ୍ତ୍ର ପୁରାଣ ଅଠର
ଗୁରୁପାଦେ ମନ ରଖି କଲେ ମୁନିବର ।
ଏମନ୍ତ କହନ୍ତେ ବେଦବର ପାଦେ ନମି
ଶୁଣି ମନେ ମନେ ହସି ପ୍ରଭୁ ଅନ୍ତର୍ଯ୍ୟାମୀ ।
ବୋଇଲେ ଏ କଥା ବ୍ରହ୍ମା ଅଟଇ ଯଥାର୍ଥ
ଗୁରୁଙ୍କର ପାଦ ନୀର ଅଟେ ସର୍ବ ତୀର୍ଥ ।
ଗୁରୁ ସେବିଲେ ତୀର୍ଥେ କି କରିବ ଯାଇ
ଶ୍ରୀଗୁରୁ ଗୋବିନ୍ଦ ଏକା ଅଟଇଟି ମୁହିଁ ।
ବିଷ୍ଣୁ ଆଜ୍ଞା ପାଇ ବ୍ରହ୍ମା ଚଳେ ଯଶୋବନ୍ତୀ
ସେ ପାଦେ ଶରଣ ବିପ୍ର ଲକ୍ଷ୍ମୀଧର ନାତି ।
ଅଧମ ହୀନ ବିପ୍ର ଶ୍ରୀ ପୀତାମ୍ବର ଦାସ
ସାଧୁଙ୍କ ପାଦନୀରକୁ ସର୍ବଦା ମୋ ଆଶ ।

❋ ❋ ❋

## ନୃସିଂହଙ୍କର ଅନ୍ତର୍ଦ୍ଧାନ ଓ କନ୍ୟାଙ୍କର ରୋଦନ

ଏଥୁ ଅନନ୍ତରେ ଶୁର ରାସ ମାର୍ଗ ପଥ
ଯଜ୍ଞବେଦୀ ପରେ ବିଜେ ଶ୍ରୀନୃସିଂହନାଥ ।
କନ୍ୟାଙ୍କର ଓଷ୍ଠଧରି ପୁଚ୍ଛିଲେ ଶ୍ରୀଧର
ବୋଇଲେ କହ ତ ଫୁଲତୋଟାର ବିଚାର ।
ଯେତେବେଳେ ଫୁଲ ତୋଳି ଆସିଲ ରାସକୁ
ବିଭାଦେବ ବୋଲି ପରା ପାଞ୍ଚିଲ ଆମ୍ଭଙ୍କୁ ।
ସେ କଥା କରିବା ଆସ ତୁମ୍ଭର ଗୋ ସିଦ୍ଧି
ଦେଖ କେଡ଼େ ସୁନ୍ଦର ଗୋ ଏହି ଯଜ୍ଞବେଦୀ ।
ଶୁଣିଲ ନାୟିକାମାନେ କାମୁଡ଼ିଲେ ଜିଭ
ବୋଇଲେ ଜାଣିଲେ ଆମ୍ଭ କଥା ପଦ୍ମନାଭ ।
ମହାପୁରୁଷ ଅଟନ୍ତି ଏହି ଭଗବାନ
ଅନ୍ତର୍ଯ୍ୟାମୀ ଜାଣିଲେ ତ ଆମ୍ଭର ଯେ ମନ ।
ଏବେ ଆମ୍ଭେ ପ୍ରଭୁର କି ନୋହୁ ମନୋହାରୀ
ବିଭାହେଲେ ସଂସାରରୁ ହେବୁଁ ଆମ୍ଭେ ପାରି ।
ଆମ୍ଭେ ନାୟିକାଏ ବିଷ୍ଣୁଙ୍କର ସ୍ତିରୀରତ୍ନ
ଲକ୍ଷ୍ମୀ ନୃସିଂହ ବିନୁ ନ ଜାଣୁ ସେବା ଆନ ।
ଅଟନ୍ତି ତ ଆମ୍ଭ ପ୍ରାଣନାଥ ଏକା ହରି
ଏତେକ ବୋଲି ହରଷ ହେଲେ ସର୍ବନାରୀ ।
ନାୟିକାଙ୍କ ମନକଥା ଜାଣି ଭଗବାନ
ଚୌଷଠି ସହସ୍ର ରୂପ ହେଲେ ଏକବର୍ଣ୍ଣ ।
ଏକା ନୃସିଂହ ଚୌଷଠିସସ୍ର ମୂର୍ତ୍ତି ହେଲେ
ସ୍ତିରୀକେ ପୁରୁଷେ ହୋଇ ବେଦୀରେ ବସିଲେ ।
ନାୟିକା ଗୋଟିକ ପାଖେ ଗୋଟିଏ ଶ୍ରୀହରି
ବେଦୀପରେ ବସାଇଲେ ହସ୍ତ ଧରିକରି ।
ଆପେତ ପ୍ରୋହିତ ହୋଇ ଆପେ ହେଲେ ବର
ଆପେ ଆପେ କୁଶଗ୍ରନ୍ଥି ବାନ୍ଧିଲେ ସେ କର ।
ଲକ୍ଷ୍ମୀଙ୍କ କୋଳରେ ଘେନିଛନ୍ତି ବ୍ରହ୍ମରାଶି
ସ୍ତିରୀକେ ପୁରୁଷେ ହୋଇ ବେଦୀପରେ ବସି ।
ହସ୍ତଗ୍ରନ୍ଥି ବାନ୍ଧି କନ୍ୟାଙ୍କର ମୁଖ ଚାହିଁ
ବୋଇଲେ କି ଯଉତୁକ ଦେବ ମୋତେ ସହି ।
କନ୍ୟାଏ ବୋଇଲେ ସ୍ୱାମୀ ଦେବୁ ଆମ୍ଭେ କିସ
ତୁମ୍ଭ ପଦ୍ମପାଦେ ଆମ୍ଭ ମନ ହେଉ ତୋଷ ।
ଏହି ଯଉତୁକ ଆମ୍ଭେ ଦେଲୁ ବାଞ୍ଛାକରି
ସର୍ବଦା ଯେ ସେବୁଥିବୁ ଚରଣେ ତୁମ୍ଭରି ।
ଶ୍ରୀଲକ୍ଷ୍ମୀ ନୃସିଂହ ଶ୍ରୀଚରଣେ ଆମ୍ଭ ସେବା
ଏଥୁ ଆମ୍ଭଙ୍କୁ ଅନ୍ତର କେବେ ନ କରିବା ।
କହିଣ ନୃସିଂହ ସ୍ୱାମୀ ହସ ହସ ହେଲେ
ଫିଟାଇଣ ହସ୍ତଗଣ୍ଠି ବିଭା ବଢ଼ାଇଲେ ।
କୋଇଲେ ଯେ ଯଉତୁକ ଦେଲ ତୁମ୍ଭେ ମୋତେ
ମନରେ ମୋ ମନଦେଇ କର କୋଳାଗ୍ରତେ ।
ଶୁଣିର ନାୟିକାଏ ଶ୍ରୀପଦ୍ମ ମୁଖ ବାଣୀ
ମନ ଇଚ୍ଛାରେ ବିହାର କଲେ ଚକ୍ରପାଣି ।
ଏକଇ ବିହାର କଥା ଆନ ନ ଜାଣଇ
ଯୁବତୀକେ ପୁରୁଷକେ ନୃସିଂହ ଯେ ହୋଇ ।
ବୁଝିଲେ ତ ସ୍ତିରୀ ଏକେ ପୁରୁଷ ତ ଏକେ
ଦୁଇରୁ ତ ତିନି ଜାତି ନାହିଁ ତିନିଲୋକେ ।
ଏଣୁ ଏକରୁ ଅନେକ ହୋଇ ଦେବହରି
ରମନ୍ତି ଯେ ନାୟିକାଙ୍କୁ କୋଳାଗ୍ରତ କରି ।
ଏକ ବ୍ରହ୍ମ ବୋଲି ଯେ ନୃସିଂହ ବ୍ରହ୍ମରାଶି
ଲକ୍ଷ୍ମୀଙ୍କୁ କୋଳରେ ଧରି ବେଦୀପରେ ବସି ।
କରନ୍ତି ଜଣକେ ଜଣେ ହୋଇ କ୍ରୀଡ଼ାରସ
ସବୁ ନାୟିକାଙ୍କ କୋଳେ ବିଜେ ପୀତବାସ ।
କେହୁ ଅଟେ ଯୁବା କେହୁ ଅଟେ ବାରାଙ୍ଗନା
କେ ଅଟେ ସୌନ୍ଦର୍ଯ୍ୟବତୀ କେହୁ ସୁଅଙ୍ଗନା ।
କେ ଚନ୍ଦ୍ରବଦନୀ କେହୁ ଅଟଇ ପଦ୍ମିନୀ
କେ ଗଜଗମନୀ କେହୁ ପୃଥୁଳ ଯୌବନୀ ।
କେ ମୁଖ ଚୁମ୍ବଇ କେହୁ ପଡ଼େ ତଳେ ଖସି
କେ ଉଲଟ ମାର୍ଗେ ରତି କରେ ହସି ହସି ।
ଏରୂପେ ନାୟିକା ମନ ମୋହିଣ ଗୋବିନ୍ଦ
ଯୁବତୀଙ୍କ କୋଳୁ ଖସି ଖସି ପୂର୍ଣ୍ଣାନନ୍ଦ ।

ବନର ରାହାସ ସାରି ହେଲେ ଏକ ଅଙ୍ଗ
କେ ଜାଣି ପାରିବ ଯୋଗାମାୟାର ପ୍ରସଙ୍ଗ ।
ସକଳ ରୂପ ସଂହରି ଏକ ରୂପ ହେଲେ
ବିଷ୍ଣୁର ମାୟା କଥାକୁ ଜାଣିବ କେ ଭଲେ ।
ଗୋବିନ୍ଦ ବୋଇଲେ ଶୁଣ ଆଗୋ ବିମ୍ବଓଷ୍ଠୀ
ଚାରି ଜନ୍ମେ ତୁମ୍ଭେ ଥିବ ମୋ ସେବାରେ ଖଟି ।
ନୃସିଂହ ଅବତାର ଏରୂପେ ସେବା କଲ
ଆବର ମରିବା କଥା ଗୋଚର ନ କଲ ।
ଅଭୟବର ଘେନିଣ ସଦାକାଳେ ଥାଅ
ଅବତାର ଅନ୍ତେ ମୋର ସଙ୍ଗେ ଚଳିଯାଅ ।
ନିତ୍ୟସ୍ଥଳେ ରାସେ ହୁଅ ପରବେଶ ଯାଇ
ଆମ୍ଭ ଜନ୍ମଯାଏ ଥିବ ଏହି ଦେହି ବହି ।
ଆମ୍ଭେ ତ ତ୍ରେତାଯୁଗରେ ହେବୁ ଯାଇ ଜାତ
ହେବୁ ରଘୁନାଥ ମୂର୍ତ୍ତି ଦଶରଥ ସୁତ ।
ବାଳକ ଭାବରେ ଯିବ ଦ୍ୱାଦଶ ବରଷ
କରିବୁଁ ସରଯୁତୀରେ ଶ୍ରୀରାମ ରାହାସ ।
ଚୌଷଠିସସ୍ର ବତିଶସସ୍ର ତୁମ୍ଭେ ଯିବ
ଶ୍ରୀରାମ ରାସରେ ମୋର ସଖୀବୃନ୍ଦ ହେବ ।
ତୁମ୍ଭଙ୍କୁ ଘେନିଣ ରାସ କରିବିଟି ମୁହିଁ
ବାରବରଷରେ ସୀତା ବିଭାହେବି ଯାଇଁ ।
ଜାନକୀଙ୍କି ସଙ୍ଗେ ଘେନି ଯିବି ବନବାସ
ରାବଣ ମାରି ଅଯୋଧ୍ୟା ଆସିବି ଅବଶ୍ୟ ।
ସେ ଲୀଳା ଅନ୍ତରେ ମୋର ବୈକୁଣ୍ଠକୁ ଯିବ
ଶ୍ରୀ ନିତ୍ୟସ୍ଥଳୀରେ ରହି ରାସ କରୁଥିବ ।
ତହିଁ ଉତ୍ତାରୁ ଦ୍ୱାପର ଯୁଗେ ଆମ୍ଭେ ଯାଇ
ମଥୁରା ଜନ୍ମି ବଢ଼ିବୁ ଗୋପେ ବେନିଭାଇ ।
ସେ ଯୁଗରେ ତୁମ୍ଭେ ଯିବ ଷୋଳସସ୍ର କନ୍ୟା
କରିବ ଯେ ସେବାପାଇଁ ହୋଇ ଗୋପାଙ୍ଗନା ।
ଅଷ୍ଟବରଷେ କରିବୁ ଲୀଳା ତୁମ୍ଭ ତୁଲେ
ତା ପରେ ମଥୁରା ଯିବୁ ଅକ୍ରୁରର ବୋଲେ ।
ମଞ୍ଚାର ଉପରେ ଚଢ଼ି କଂସ ନିବାରିବୁ
ଦ୍ୱାରକାରେ ଅଷ୍ଟପାଟବଂଶୀ ବିଭା ହେବୁଁ ।
ଅବତାର ସାରି ପୁଣି ଆସିବୁଁ ବୈକୁଣ୍ଠ
ତୁମ ଆମ ନିତ୍ୟସ୍ଥଳେ ପୁଣି ହେବ ଭେଟ ।
ତହିଁ ଉତ୍ତାରୁ ଯେ ଆମେ କଳିଯୁଗେ ଯାଇ
ବସିବୁ ନୀଳଗିରିରେ ବୌଦ୍ଧରୂପ ହୋଇ ।
ଏଥିରୁ ଆଠସହସ୍ର କନ୍ୟା ତୁମେ ଯିବ
ଶ୍ରୀପୁରୁଷୋତ୍ତମ କ୍ଷେତ୍ରେ ଆମ୍ଭଙ୍କୁ ସେବିବ ।
ପଣ୍ଡା ପଢ଼ିହାରୀ ପଶୁପାଳ ଦୈତାପତି
ସେବାକରି ମୋତେ ଖଟିଥିବ ଦିବାରାତି ।
ଶୁଣି ସେହି ନାୟିକାଏ ମନେକଲେ ଗର୍ବ
ପାଞ୍ଚିଲେ ହରି ଆମଙ୍କୁ କେଉଁଠେ ନ ଛାଡ଼ିବ ।
ଆମ୍ଭରୁ ବଡ଼ହୋଇଣ ନାହିଁ କେଉଁ ସ୍ତିରୀ
ଏରୂପେ ଗର୍ବ ବହିଲେ ଯହୁଁ ସର୍ବନାରୀ ।
ଆପେ ଆପେ ମନମଧ୍ୟେ ସର୍ବେ ବଡ଼ ହେଲେ
ବିଷ୍ଣୁଙ୍କ ମାୟାରେ ପଡ଼ି ଭୋଳେ ଗର୍ବକଲେ ।
ଅନ୍ତର୍ଯ୍ୟାମୀ ସେ ସ୍ତିରୀଙ୍କ ମନକଥା ଜାଣି
ଅନ୍ତର୍ଦ୍ଧାନ ହୋଇ ତହୁଁ ଗଲେ ଚକ୍ରପାଣି ।
ବିଷ୍ଣୁର ଯୋଗମାୟା ଏ ଅଟଇ ଅଗାଧ
ଭବ ବିହି ବଶାରେ ନ ପାନ୍ତି ବିଷ୍ଣୁପାଦ ।
ଲକ୍ଷ୍ମୀଙ୍କି କୋଳରେ ଘେନି ବିଜେ ଦେବହରି
ଅନ୍ତର୍ଦ୍ଧାନ ହୋଇ ତହିଁ ଗଲେ ବିଷ୍ଣୁପୁରୀ ।
ଏଥିଅନ୍ତରରେ ବାଣୀ ଶୁଣ ଆନ ରସ
ହରି ନ ଦେଖି କନ୍ୟାଙ୍କ ଉଡ଼ିଲା ସାହସ ।
ଯଜ୍ଞବେଦୀପରେ ଥିଲେ ଯେତେକ ବିମ୍ବୋଷ୍ଠୀ
ନୃସିଂହ ନଦେଖି ପଡ଼ିଗଲେ ମହୀ ଲୋଟି ।
ବିହ୍ୱଳ ହୋଇବା କଥା ଗଲାକହିଁ ଛାଡ଼ି
ନୃସିଂହ ରଖ ହେ ବୋଲି ମନେ ଡାକପାଡ଼ି ।
ବୋଲନ୍ତି ହେ ମହାପ୍ରଭୁ ଦେଖା ବେଗେ ମୁଖ
ତୁମ୍ଭଙ୍କୁ ନ ଦେଖି ଆମେ ହେଲୁଟି ନିରେଖ ।
ଆମେ ଅଭାଗୀ ତୁମଙ୍କୁ ଚିହ୍ନି ନ ପାରିଲୁ
ବୟସ ମତ୍ତଗର୍ବରେ ଭୋଳେ ମତ୍ତହେଲୁ ।
ଆମର ବା କିସ ବୁଦ୍ଧି ଆମ କୁଳ ନଷ୍ଟ
ମିଳିଲେ ଯେ ସୁଖଭୋଗ ତେଜୁଁ ସର୍ବ କଷ୍ଟ ।
ଉଶ୍ୱାସ ବୁଦ୍ଧିରେ ସ୍ୱାମୀଙ୍କର ଆଜ୍ଞା ଭାଙ୍ଗୁ
ବଡ଼ିମାପଣେ ବୋଇଲେ କଥାକୁ ଯେ ମଙ୍ଗୁ ।
ଭଲମନ୍ଦ ନ ଜାଣି ଯେ ଆପେ ବଡ଼ ହେଉ
କୂଟକଥାକୁ ଆବୋରି କଳି ଜଗିଥାଉଁ ।
ଭୂତଙ୍କର ପ୍ରାୟେ ଜିହ୍ୱା ଲହ ଲହ କରୁ
ଧର୍ମକଥା ଏଡ଼ି ଅଧର୍ମରେ ଦିନ ହରୁଁ ।
ବିଶ୍ୱାସ ଲୋକ ଅଳ୍ପକେ ହେଉ ଅବିଶ୍ୱାସୀ
ଦୋଷ ଅର୍ଜି ନିୟମରୁ ବାହାରୁ ସାହସୀ ।
ପରର ଶିରୀ ଦେଖିଣ ହୃଦେ ହେଉ ଘାଣ୍ଟି
ପରର ଦ୍ରବ୍ୟ ଚୋରାଉ ହୋଇଣ ଲମ୍ପଟୀ ।
ଆବର ଯେ ହୀନକର୍ମ କରି ଦିନ ହରୁ
ବ୍ରତ ଆଚରି ଲୋକଙ୍କୁ ଗର୍ବେ ନିନ୍ଦାକରୁଁ ।

ଅନାଚାର କଥା ଯେ ଥାଉଁ ଆମେ ବଢ଼ି
ଦନ୍ତକୁ ନ ଘଷି ଭୁଞ୍ଜୁ ଅପାଳଟ ଶାଢ଼ୀ ।
ବେନି ପାକକୁ ମିଶ୍ୟାଇ ଭୋଜନ ଯେ କରୁଁ
ଏ କଥାଟି ଦୋଷ ବୋଲି ମନେ ନ ବିଚାରୁ ।
ଉତ୍ତମ ଲୋକର ବାକ୍ୟ କେବେହେଁ ନ ପାଳୁ
ଅସୁର ଲକ୍ଷଣେ ମୂର୍ଖ ଲୋକଠାରୁ ବଳୁଁ ।
ବିଷ୍ଣୁଙ୍କୁ ନ ଭଜିଣ ଯେ ଓଷାବ୍ରତ କରୁଁ
ବନବାସ କରି କରି ବ୍ୟର୍ଥେ ତହିଁ ମରୁଁ ।
ଏଣୁ ଏହି ସ୍ତିରୀକୁଳ ଅଟନ୍ତି ରାକ୍ଷସୀ
ଅଶୁଚି ଲୋକର ସଙ୍ଗେ ପାଳୁ ବ୍ରତ ବସି ।
ବିଷ୍ଣୁର ପୂଜା ଛାଡ଼ିଣ ପାଳୁ ଯେ ମାଲୁଣୀ ।
ପୂଜୁ ଆମ୍ଭେ ଦେବଦେବୀ ତେଜି କମଳିନୀ ।
କେବେହେଁ ନ ଧରୁ ଗୁରୁ ବୁଦ୍ଧିକି ଶରୀରେ
ସ୍ୱାମୀର ସୁହୃଦ କଥା କହିଦେଉ ପରେ ।
ଏଡ଼େକ ଉଶ୍ୱାସ ବୁଦ୍ଧି ଅଟୁ ସ୍ତିରୀ ଛାର
ଭୋ ଦେବ ନୃସିଂହ ଆମ କଥାକୁ ବିଚାର ।
ଅନ୍ୟ ସ୍ତିରୀଙ୍କ ପରାୟ ଘେନି ଆମ ବୁଦ୍ଧି
ରଖ ଏବେ ଆମ୍ଭଙ୍କୁ ହେ ପ୍ରଭୁ ଦୟାନିଧି ।
ଆମର ଯେ ଦୋଷ କ୍ଷମାକର ଭାବଗ୍ରାହୀ
କାହିଁ ଲୁଚିଅଛ ଦେଖା ଦିଅ ଆମ୍ଭକୁହିଁ ।
ତୁମ୍ଭଙ୍କୁ ନ ଦେଖି ଆମ ପ୍ରାଣଯିବ ଛାଡ଼ି
ଏତେକ ବୋଲି ଚାହାଁନ୍ତି ବୃକ୍ଷ ଶିଖେ ଚଢ଼ି ।
କେ ଯଜ୍ଞବେଦୀ ଉପରେ ଡାକନ୍ତି କୁହାଟି
ବୋଲନ୍ତି ନୟନ ଥାଉଁ ହେଲୁ ଅନ୍ଧଦୃଷ୍ଟି ।
ଦେଖିଲେ ତୁମ ମୁଖ ନିର୍ମଳ ଚିତ୍ତ ହେବ
ଏଥକୁ ହେ ଶୀଘ୍ର ଦୟାକର ବାସୁଦେବ ।
ଏତେ ବୋଲି ବେଦୀରୁ କେ ପଡ଼େ ବେଦୀତଳେ
କେ ପୁଣି ଖୋଜନ୍ତି ବୁଲି ବୁଲି ନଦୀକୂଳେ ।
କେହି ବନମାର୍ଗେ ପଶି ବୃକ୍ଷଡ଼ାଳେ ଉଠି
ଦେଖିଲେ ଜୀବମାନଙ୍କୁ ପୁଛନ୍ତି କୁହାଟି ।
ବୋଲନ୍ତି ଦେଖିଛ ନୃସିଂହକି ବେନି ଆଖି
ଆମ୍ଭଙ୍କୁ ହେଳେ ଗଲେ ସେ କରି ନିରିମାଖି ।
ନୃସିଂହ ପ୍ରଭୁଙ୍କୁ ଆଉ ପାଇବୁଟି ଭେଟ
ତୁମେ ଦେଖିଥିଲେ କହ ଭଗବତୀ ବାଟ ।
ଏରୂପେ ନାୟିକାଗଣ ବାଇ ପ୍ରାୟ ହୋଇ
ଯଜ୍ଞବେଦୀକି ଆସିଲେ ସର୍ବେ ପୁଣ ଧାଇଁ ।
ନୃସିଂହ ରଖ ବୋଲିଣ କାନ୍ଦିଲେ କୁହାଟି
ପଡ଼ିଲା ସବୁରି ନେତ୍ରୁ ଲୁହ ବହି ମାଟି ।

ବୋଲନ୍ତି ନୃସିଂହ ଦୟାସିନ୍ଧୁ ମହାବାହୁ
ବେଗେ ଦେଖାଦିଅ ଆମ ଜୀବନ ଯେ ରହୁ ।
ଜୟ ଜୟ ନୃସିଂହ ହେ ଭକ୍ତ ଚିନ୍ତାମଣି
ଜୟ ଜୟ ନୃସିଂହ ହେ ଶଙ୍ଖଚକ୍ରପାଣି ।
ଜୟ ଜୟ ନୃସିଂହ ହେ ପରଂବ୍ରହ୍ମମୟ
ଜୟ ଜୟ ନୃସିଂହ ହେ ସର୍ବ ଆତ୍ମାମୟ ।
ଜୟ ଜୟ ନୃସିଂହ ହେ କର୍ମୀ କର୍ମଗ୍ରାହୀ
ଜୟ ଜୟ ନୃସିଂହ ହେ କ୍ଷୀରସିନ୍ଧୁଶାୟୀ ।
ଜୟ ଜୟ ନୃସିଂହ ଶ୍ରୀ ନିରାକାର ରୂପ
ଦେଖିଲେକ କ୍ଷୟଯିବ କୋଟିଜନ୍ମ ପାପ ।
ଏରୂପେ ସ୍ତୁତି କରିଣ ସକଳ ବିମ୍ବୋଷ୍ଠୀ
ଚୌଷଠି ସହସ୍ର କନ୍ୟା ଡାକନ୍ତି କୁହାଟି ।
ନାୟିକାଙ୍କର ଆକୁଳ ଶୁଣି ଚକ୍ରପାଣି
ଶୂନ୍ୟରୁ ଖସି ମିଳିଲେ ତଳେ ସେହିକ୍ଷଣି ।
ଲୀଳା ଗତି ପ୍ରାୟ ଚାଲି ସର୍ବେ ଗତିକରି
ସଖୀଙ୍କ ମଧ୍ୟେ ମିଳିଲେ ଆସି ଦେବହରି ।
ଦେଖିଣ ନାୟିକାଗଣ ଧଇଲେ ତତ୍କାଳେ
ଚୁମ୍ବନ ଦେଇ ଧରନ୍ତି କେହୁ ବଳେ କୋଳେ ।
କେ ବୋଲଇ ପିଣ୍ଡର ଯେ ତୁମେ ଆମ୍ଭ ଆତ୍ମା
ଆତ୍ମା ନ ଥିବା ପିଣ୍ଡ ଯେ ମୃତ୍ୟୁରେ ଗଣିତା ।
ବୁଝିଲେ ତ ଆମେ ଥାଳ ତୁମେ ଶାଳୀଅନ୍ନ
ଅନ୍ନକୁ ନ ଭୁଞ୍ଜିଲେ କେ ରଖିବ ଜୀବନ ।
ଆମେ କୃଷି ଅଟୁ ତୁମେ କାରୁଣ୍ୟ ଯେ ଜଳ
ଜଳ ବିନା ଉପୁଜେ କି କେବେ କୃଷିଫଳ ।
ଆମେ ତ ମଣ୍ଡପ ଅଟୁ ତୁମେ ତ ଦେବତା
ଦେବ ନ ଥାଇ ମଣ୍ଡପ ଦିଶେ କି ଶୋଭିତା ।
ଆମେ ଅଟୁ ମୁଖପଦ୍ମ ତୁମେ ଅଟ ଜିହ୍ୱା
ଜିହ୍ୱା ନ ଥିଲେ ବାକ୍ୟ କି କହିଣ ପାରିବା ।
ଆମେ ତ ତୁମର ଦେହ ତୁମେ ଆମ ପ୍ରାଣ
ପ୍ରାଣ ନ ଥିଲେ ଦେହରେ ଅଛି କି କାରଣ ।
ଆମେ ତ ତୁମର ପ୍ରିୟା ତୁମେ ଆମ ସ୍ୱାମୀ
ସ୍ୱାମୀର କଥା ସ୍ତିରୀକି ହେବା ଏକା କାମୀ ।
ଏମନ୍ତ କାମିନୀ ଶୋକେ କହନ୍ତି ଏ ବାଣୀ
ଶୁଣି ହସ ହସ ହେଲେ ଦେବ ଚକ୍ରପାଣି ।
ବୋଇଲେ ଯେଣୁ ତୁମେ ତ ଗର୍ବେ ହେଲ ଭୋଳ
ତେଣୁ ଅନ୍ତର୍ଦ୍ଧାନ ଆମେ ହେଲୁଁ ତତକାଳ ।
ଗର୍ବକଲା ପ୍ରାଣୀଙ୍କି ନ ପାରୁ ଆମେ ସହି
ତୁମ ଚିନ୍ତା ଦେଖିକରି ପୁଣି ଦୟାବହି ।

ଏବେ ନିକଟେ ଆସିଣ ମିଳିଲୁ ତୁମର
ଶୁଣି ନାୟିକା କହନ୍ତି ଏ ବିନୟ ଗିର ।
ଯେଣୁ ଅଟନ୍ତି ସଂସାରେ ଅଦଣ୍ଡ୍ୟ ସ୍ତ୍ରୀବୃନ୍ଦ
ଅଳ୍ପକେ ଗର୍ବ ବହନ୍ତି ଦେଖିଲେ ସମ୍ପଦ ।
ମତ୍ତଗର୍ବରୁ ସିନାଏ ସ୍ତିରୀ ନ ଜାଣିଲେ
ପରଂବ୍ରହ୍ମ ପୁରୁଷରେ ତେଣୁ ଗର୍ବୀ ହେଲେ ।
ସବୁରିତ ପିତାମହ ଅଟନ୍ତି ଦଇବ
ତେଡ଼େକ ପୁରୁଷ ହୋଇ କିମ୍ପା କଲେ ଗର୍ବ ।
ନୃସିଂହ ବୋଇଲେ ତେବେ ଶୁଣ ଗୋ ତରୁଣୀ
ମୋର ପତ୍ନୀ ଲକ୍ଷ୍ମୀ ପରା ଅଟଇ ଘରଣୀ ।
ସେ ପୁଣି ଗର୍ବ କଲାରୁ ନ ପାରିଲି ସହି
ଆଉ ଛାର କେ ସଂସାରେ ଅଧିକ ଅଟଇ ।
ବୁଝିଲେ ଆତ୍ମା ମୋହର ଅଟେ ସଦାଶିବ
ସେହି ପୁଣି ଗର୍ବକରି ପାଇଛି ପ୍ରଭାବ ।
ବ୍ରହ୍ମାଙ୍କୁ ଜାତ ପୁଣି ମୁଁ କଲଇଁ ନାଭିରୁ
ବଡ଼ ହୋଇ ସଂସାରରେ କେ ଅଛି ତାଠାରୁ ।
ସବୁଙ୍କୁ ସୃଜି ସେ ନାମ ବହେ ପିତାମହ
ସୃଷ୍ଟିକର୍ତ୍ତା ହୋଇଣ ନ କଲା ଗୁରୁ ଦେହ ।
ମହାଭୋଳ ହୋଇ ମତ୍ତଗର୍ବ କଲା ଆସି
ମାନବ ବିଷ୍ଣୁ ହୋଇଲା ପରଂବ୍ରହ୍ମ ରାଶି ।
ମାନବ ତୁଲେ ସ୍ଥାପନ୍ତେ ମୋତେ ଗର୍ବ ବହି
ନୃସିଂହ ରାସରେ ତାକୁ ନ ଦେଲି ପୁରାଇ ।
ଯଜ୍ଞବେଦୀ ରାସେ ମୋର ପଶି ନ ପାରିଲା
ଅନ୍ତରାଳ ହୋଇ ନଗରକୁ ପଳାଇଲା ।
ଦେଖିଲା ନଗରେ ବ୍ରହ୍ମା ହୋଇଛନ୍ତି ଜଣେ
କୋଟିମୁଖ ବ୍ରହ୍ମା ବୋଲି ନାମ ତାର ଭଣେ ।
ଛପନ ଗୋଟି ଜୀବ ଏ ସଂସାରେ ସର୍ଜିଲା
ଯେ ଜନ୍ମିଲା ତାକୁ ସ୍ଥାନ ଦେଇ ସେ ରଖିଲା ।
ପରମହଂସ କତିକି ଲେଖେ ନିତ୍ୟେ ଚିଠି
ଦିନକରେ ଏକୋଇଶ ସସ୍ର ଛଅଷଠି ।
ଆତ୍ମାପ୍ରକାଶ କରିଣ ପ୍ରତ୍ୟକ୍ଷରେ ଲେଖେ
କରଇ ସେ ଜନ୍ମମୃତ୍ୟୁ ଏ ବ୍ରହ୍ମାଣ୍ଡଯାକେ ।
ଜୀବ ଲଲାଟରେ ପୁଣି ଆଠକ୍ଷର ଲେଖି
ସେ ବେନି ଅକ୍ଷର ନାମ କର୍ମ ଅଟେ ସାକ୍ଷୀ ।
ଶ୍ରୀପରମେଶ୍ୱର ଏକା ଭକ୍ତ ଭାଲପଟେ
ଆଠଗୋଟି ଅକ୍ଷର ସେ ଲେଖନ୍ତି ଲଲାଟେ ।
ବ୍ରହ୍ମା ଲେଖିବା ଅକ୍ଷର ଲିଭାଇ ଦିଅନ୍ତି
ଶୁଣ ଗୋ ନାୟିକା କହୁଛନ୍ତି ଲକ୍ଷ୍ମୀପତି ।

ଶୁଣ ଗୋ ସଖିଏ ବିଷ୍ଣୁ ଲେଖିବା ଅକ୍ଷର
ଭକ୍ତଙ୍କର ଭାଲେ ଯେହ୍ନେ ଲେଖେ ପୀତାମ୍ବର ।
ଗୁରସ୍ତ ଭାରିଯା ସ୍ନେହ ଅଟେ ଯେତେ ପ୍ରୀତି
ସେପରି କେହି ଭକ୍ତି ନ ପାରେ ଲକ୍ଷ୍ମୀପତି ।
ପତି ପତ୍ନୀ ଏହି ସଂସାରରେ ଅଳପକ
ସେ ସ୍ନେହର ପ୍ରାୟେ ଆଉ ନାହିଁ କି ଅଧିକ ।
ସେ ସ୍ନେହମାର୍ଗର କଥା ଶୁଣ ଶାସ୍ତ୍ର ଉକ୍ତେ
ନବଯୁବା ସ୍ତିରୀଙ୍କର ରତିଭାବ ଯେତେ ।
ଯେତେବେଳେ ପ୍ରିୟାକୁ ଯେ ଗୃହେ ସ୍ୱାମୀ ଛାଡ଼ି
ଚଳେ ବିଦେଶେ ବିଷୟାବନ୍ଧେ ପୁଣି ପଡ଼ି ।
ତେତେବେଳେ ତା ଭାରିଯା ପ୍ରିୟେ ରଖି ମତି
ଲୋତକ ନେତ୍ରରୁ ଝଡ଼ି ବକ୍ରେ ଚାହେଁ ସତୀ ।
ଯେତେବେଳେ ତା ଅଞ୍ଚଳ ସ୍ୱାମୀ କରେ ଧରି
ମୁଖରେ ଚୁମ୍ବନଦେଇ ପୋଛେ ନେତ୍ରୁ ବାରି ।
ବୋଲଇ ସଖିରେ ମୋର ଅଟୁ ପ୍ରାଣବନ୍ଧୁ
ତୋତେ ନ ଦେଖିଲେ ମୋ ନ ସରେ ଦିନସବୁ ।
ମୁହିଁ ହେଲେ ମୂର୍ଚ୍ଛି ତୋତେ କିମ୍ପା ଯିବି ଛାଡ଼ି
ଆଜି ମୁହିଁ ଗଲେ କାଲି ଆସିବି ବାହୁଡ଼ି ।
ଏଥକୁ କିଛି ଶଙ୍କା ନ କର ମୋର ପ୍ରିୟେ
ଏତେ କହି ନେତ୍ରୁ ନୀର ପୋଛେ ଅତି ସ୍ନେହେ
ସେହି ରୂପ ଭକତର ଲଲାଟୁ ଶ୍ରୀବତ୍ସ
ନେତ୍ରୁ ଲୋତକ ପରାୟେ ବ୍ରହ୍ମଲେଖା ପୋଛି ।
ଅଷ୍ଟାକ୍ଷର ଲେଖିଦ୍ୟନ୍ତି ପରମ ଆନନ୍ଦେ
ସେ ଅକ୍ଷର ନାମମାନ ଶୁଣ ସ୍ତିରୀବୃନ୍ଦେ ।
ସତ୍ୟ ଧର୍ମ ଦୟା ଜ୍ଞାନ ଏହି ଅଷ୍ଟାକ୍ଷର
ଭକ୍ତର ଭାଲେ ଲେଖନ୍ତି ଏକା ଦାମୋଦର ।
ଆବର ଯଶଶିରୀ ଯେ ଭକତ ମୁକତି
ଏରୂପେ ଭକ୍ତିର ଚିହ୍ନ ଲେଖନ୍ତି ଶ୍ରୀପତି ।
ତେଣୁ ମୋ ମହିମାଯାକ ଭକ୍ତି ସିନା ଜାଣେ
ଦୂରେ ଡାକୁଥିଲେ ପାଶେ ଥିଲା ପ୍ରାୟ ଶୁଣେ ।
ମୋ ରୂପଗୋଟି ସବୁରି ନେତ୍ରେ ଅଛି ଲାଗି
ଦେଖୁଥାନ୍ତି ଚିହ୍ନି କେହି ନ ପାରନ୍ତି ଜଗି ।
ଜଗିବସିଲେ ପାଆନ୍ତି ପ୍ରାଣୀ ସିନା ଭେଟ
ଏଣୁକରି ସବୁଙ୍କୁ ମୁଁ ନୁହଇ ପ୍ରକଟ ।
ସୁଜ୍ଞାନୀ ଭକତ ଏକା ପାରେ ମୋତେ ଚିହ୍ନି
ପୃଥ୍ୱୀଯାକ ଅଛି ମୁଁ ଦୁର୍ଜ୍ଜୟ ଦେହ ଘେନି ।
ଭକତ ଯେ ତେତେକେ ମୁଁ ଜାଣ ତେତେ ବଢ଼େ
ମୋ ରୂପକୁ ଯାଇ ଦେଖ ଦିଶେ ଜ୍ୟୋତି କେଡ଼େ ।

ସବୁ ପ୍ରତିପାଳେ ମୁହିଁ ଦେହଗୋଟି ବହି
ମୋହର କହିବା କଥା ତାକୁ ଜଣା ନାହିଁ ।
ପ୍ରତ୍ୟକ୍ଷେ ମୁଁ ଭକ୍ତବନ୍ଧୁ ପରମ ଦୟାଳୁ
ସମସ୍ତଙ୍କୁ ଦୃଷ୍ଟିକରି ଜୀବ ପ୍ରତିପାଳୁ ।
ଶଙ୍ଖଚକ୍ର ଗଦା ଧରି ସର୍ବ ଆଗେ ଥାଉଁ
ମୁଁ ତାକୁ ଦେଖଇ ସେ ନ ଦେଖେ ମହାବାହୁ ।
ମୋତେ ଜାଣଇ ଭକ୍ତ ମୁଁ ଜାଣେ ଭକ୍ତ ମନ
ଦେଖୁଥିଲେ ହେଁ ଚିହ୍ନି ନ ପାରେ ଅନ୍ୟ ଜନ ।
ତୁମ୍ଭେ ଜ ଏବେ ସଖିରେ ନେତ୍ରେ ଚାହିଁ ଦେଖ
ଅକଳଣା ରୂପ ମୋର ଅଟଇ ପ୍ରତ୍ୟକ୍ଷ ।
ଏରୂପେ କହନ୍ତେ ଭେଦସୂତ୍ର ଭାବଗ୍ରାହୀ
ଦେଖିଲେ ନାୟିକାଗଣ ନେତ୍ର ଅଗ୍ରେ ଚାହିଁ
ପଞ୍ଚାଶତ କୋଟି ପୃଥ୍ୱୀ ପୁରିଅଛି କାୟେ ।
ଶୂନ୍ୟରେ ଦିଶେ ଅନନ୍ତ କୋଟି ଯୁଗଯାଏ ।
ନାୟିକାଏ ବୋଇଲେ ଏ କେଡ଼େ ବ୍ରହ୍ମମୂର୍ତ୍ତି
ଦେଖୁ ଦେଖୁ ପ୍ରାଣୀଏ ନ ଚିହ୍ନି ବଣାହ୍ୱନ୍ତି ।
ପ୍ରଭୁ ବୋଇଲେ ସଖି ଗୋ ଚିହ୍ନିଲକି ଏବେ
ବ୍ରହ୍ମାକୁ ଦେଖାଇଥିଲି ଏହି ସୂତ୍ର ପୂର୍ବେ ।
ଯେତେବେଳେ ମୋ ନାଭିରୁ ଜନ୍ମିଲା ସେ ଆସି
ମୁଁ ବୋଇଲି ଚିହ୍ନିଥା ମୁଁ ଏକା ବ୍ରହ୍ମରାଶି ।
ଏତେକଥା ଦେଖାନ୍ତେ ସେ ବ୍ରହ୍ମା ଭୂଲିଗଲା
ରାତ୍ରକୁ ଆସିଣ ମୋତେ ଚିହ୍ନି ନ ପାରିଲା ।
ମାନବବିଷ୍ଣୁ ବୋଲିଣ ହାସ୍ୟକଲା ମୋତେ
ତେଣୁକରି ଦେଖା ମୁଁ ନ ଦେଲି କଦାଚିତେ ।
ଶ୍ରୀନୃସିଂହ ରାସରେ ମୁଁ ନ ଦେଲି ପୁରାଇ
ଗଲା ସେହୁ ଅନ୍ତରାୟେ ସେଠାରୁ ପଳାଇ ।
ନଗ୍ରକୁ ତାର ପଳାନ୍ତେ ସେହୁ ବିଶ୍ୱସୃକ୍
ଦେଖିଲା କେ ବ୍ରହ୍ମା ଜଣେ ପାଳେ ସୃଷ୍ଟିଯାକ ।
ଛପନକୋଟି ବର୍ଣ୍ଣରେ ଯେତେ ଜୀବ ଛନ୍ତି
ସବୁରି ଘରେ କରାନ୍ତି ଜନ୍ମ ପୁତ୍ର ନାତି ।
ତାହା ଦେଖି ଧାତା ବଡ଼ ଆକୁଳ ଯେ ହେଲା
ମନରେ ପାଞ୍ଚିଲା ମୋର ପଣ ଏ ଘେନିଲା ।
ମୁହିଁ ଛାର ମୂଢ଼ପଣେ ବିଷ୍ଣୁ ନ ଚିହ୍ନିଲି
ମାନବାବିଷ୍ଣୁ ବୋଲିଣ କିମ୍ପା ଗର୍ବ ଗଲି ।
ସମ୍ପତ୍ତି ମଦିରା ପାଇ ହେଲି ଅତି ଭୋଳ
ହରାଇ ବୁଦ୍ଧି ଲୋଡୁଛି ଏବେ ଗଙ୍ଗାଜଳ ।
ବାପ ଥାଉ ମଉସାର ପାଦେ ଓଳଗିଲି
ଶ୍ରୀଗଙ୍ଗାନଦୀ ଯେ ଥାଉଁ କୂପେ ସ୍ନାନ କଲି ।

ସୁଜନ ସଭାକୁ ତେଜି ମୂର୍ଖେ ହେଲି ମେଳ
ତୁଳସୀ ତେଜି ପୂଜିଲି ବୃକ୍ଷ ମହାକାଳ ।
କୁଟୁମ୍ବ ନ ପୋଷି ମୁଁ ପୋଷିଲି ବେଶ୍ୟାନାରୀ
ନିଜ ପତ୍ନୀ ଛାଡ଼ି ରମିଲଇଁ ପରସ୍ତିରୀ ।
ବେନି ଭାରିଯାରେ ତିନିପୁର ଅରଜିଲି
ନ ଥିଲା କନ୍ଦଳଯାକ ଗୃହେ ଜାତ କଲି ।
ସେ କନ୍ଦଳଯାକ ବ୍ରହ୍ମା ମନରେ ବିଚାରି
ଶ୍ଳୋକ ପଢ଼ି ଅର୍ଥକଲେ ବୁଝି ମୁଖଚାରି ।
ପୁରୁଷେକ ଯେତେ ଦୁଇଗୋଟି ପତ୍ନୀ ହେବ
ତହିଁର କଳିର କଥା କେ ଅନ୍ତ କରିବ ।
ଯେତେବେଳରେ ଅଖଡ଼ ଲାଗେ ତିନିଭାଇ
ପର ଦ୍ରବ୍ୟଯାକ ନଷ୍ଟ କରନ୍ତି ସେ ନେଇ ।
ଏକପୁତ୍ର ବୋଲେ କରି ନେବା ବେନିଭାଗ
ଧର୍ମ ନ୍ୟାୟକଥା ଏହି ଅଟଇ ପ୍ରସଙ୍ଗ ।
ବେନି ମାତାଠାରୁ ସିନା ହେଲେ ତିନିପୁତ୍ର
ଜନନୀ ଜଣକେ ଭାଗ ବାଣ୍ଟି ଧର୍ମଶାସ୍ତ୍ର ।
ବେନି ଜନନୀକି ବେନି ଭାଗକରି ବାଣ୍ଟି
ଯେ ଯାହାର କର୍ମ ଘେନି ଭୁଞ୍ଜିବା ଦେହଟି ।
ଶୁଣି ବେନିଭାଇ ତାହା କଲେ ଗୋଳମାଳ
ବୋଇଲେ ଆମ୍ଭର ତିନିଭାଗ ଅଟେ ମୂଳ ।
ତାହା ଶୁଣି ଏକପୁତ୍ର କଲା ନାହିଁ ନାହିଁ
ବୋଇଲେ କେହୁ ବାଣ୍ଟିବ ଦେଖେ କି ନା ମୁହିଁ ।
ଏରୂପେ ପତ୍ନୀ କଲେକ ଘରକୁ ବିଷମ
ଅନ୍ୟ ଗ୍ରାମେ ଚାଷ ଯାଇ କରଇ ଅଧମ ।
ଆପଣା ଗ୍ରାମ ଛାଡ଼ି ଯେ କୃଷିକରେ ଯାଇ
ତହିଁରୁ ଉତ୍ପାତ କହିଲେ ଯେ ନ ସରଇ ।
ଦଣ୍ଡ ଭେଦା ପକାଇଣ ମାରନ୍ତି କହୁଣି
ଚଷା ଗୁହାରିକଲେ ନ ଶୁଣେ କେହୁ ବାଣୀ ।
ଭେଦା ପଞ୍ଚା ଦେଇ ଖାଏ ନାକ କାନମୋଡ଼ା
ଖରାରେ କୁଲା ପହଁରା ଧରି ହୁଏ ଛିଡ଼ା ।
ମଥା ଶ୍ରବଣ ଆଉଁଶି ପକାଇଣ ଆସେ
ପରଗ୍ରାମେ ଯଶ ଆଉ କେବେ ନ ପ୍ରକାଶେ ।
ଏକା ମଳୁକୁ ଦେଖନ୍ତି ଯେବେ ବେନି ବୈଦ୍ୟ
ସେ ମଳୁର କେବେ ଜାଣ ନୁହେ ରୋଗ ସାଧ୍ୟ ।
ଗୋଟିଏ ରାଜ୍ୟକୁ ଯେବେ ହୁଅନ୍ତି ବେନି ରାଜା
ସେ ରାଜ୍ୟେ ସୁଖୀ ନୁହନ୍ତି କେବେ ଜନପ୍ରଜା ।
ଏକା ଗ୍ରାମକୁ ହୁଅନ୍ତି ଯେବେ ବେନି ବାଜି
ସେ ଗ୍ରାମେ ସୁଖୀ କଦାପି ନୁହେଁ ଧନ ଅର୍ଜି ।

ସଂସାରେ ମୁଁ ଏକ ବ୍ରହ୍ମା ବୋଲି ଜାଣିଥିଲି
ଆଉ ଜଣେ ବ୍ରହ୍ମା ସୃଜେ ସଂସାରେ ଦେଖିଲି ।
ଏଣୁ ସଂସାରକୁ ବେନିପଣଟି ବିଷମ
ବ୍ରହ୍ମା ପରା ଲୋକ ହୋଇ ହେଲା ମତିଭ୍ରମ ।
ତହିଁର ଫଳ ମୁଁ ଏବେ ପାଇଲି ନ ଜାଣି
ଯାଉଛି ରାସକୁ ଭେଟିବଇଁ ଚକ୍ରପାଣି ।
ଗୁହାରି ନକଲେ ମୋର ପଣ ବ୍ୟର୍ଥ ହେବ
ବ୍ରହ୍ମାପଦ ଉଡ଼ିଯିବ ଗଣ୍ଡ ନ ରହିବ ।
ଚତୁର୍ମୁଖ ବ୍ରହ୍ମାପଦ ଯିବ ସିନା ବୁଡ଼ି
କୋଟିମୁଖ ବ୍ରହ୍ମା ସୃଷ୍ଟି କଲା ଏବେ ବଡ଼ି ।
ଏରୂପେ ସେ ମନେପାଞ୍ଚି ଆସିଲେକ ଧାଇଁ
ଭେଟିଲେକ ନୃସିଂହଙ୍କୁ ସାବିତ୍ରୀର ସାଇଁ ।
ବଦରିକା ଆଶ୍ରମରେ ନୃସିଂହ ରାସରେ
ସେଠାବରୁ ତତ୍ତ୍ୱ ପାଇ ଗଲେ ନିଜ ପୁରେ ।
ଏମନ୍ତ ପ୍ରକାରେ ଜାଣ ବ୍ରହ୍ମାର ବ୍ୟବସ୍ଥା
ଶୁଣ ଆଗୋ ସଖିଗଣ କହେ ଆଦିକର୍ତ୍ତା ।
ସେହିଠାରୁ କୋଟିମୁଖ ବ୍ରହ୍ମା ପୁଣ ଗଲା
ନିତ୍ୟସ୍ଥଳେ ସେ ଆମ୍ଭଙ୍କୁ ଯାଇ ସେବାକଲା ।
ଚତୁର୍ମୁଖ ବ୍ରହ୍ମା ପୁଣି ସୃଷ୍ଟିହେଲା ଜାତ
ଶ୍ରୀବିଷ୍ଣୁ ମହିମା ଜାଣ ଅଟେ ଅଲୋକିତ ।
ଏରୂପେ କହନ୍ତେ ନାୟିକାଙ୍କୁ ନାରାୟଣ
ଶୁଣି ମନରେ ଚକିତ ହେଲେ ନାରୀଗଣ ।
ବୋଇଲେ ବ୍ରହ୍ମା ପରାୟେ ପୁରୁଷକୁ ଦେଖ
ଅକ୍ଳକେ ଗଞ୍ଜିଲେ ଗର୍ବ ତାର ପଦ୍ମମୁଖ ।
ବ୍ରହ୍ମଠାରୁ ସଂସାରେ କେ ଅଛି ଆଉ ବଡ଼
ଗଞ୍ଜିଲେ ତେଡ଼େ ପୁରୁଷ ଗର୍ବ ଯେ ଗାରୁଢ଼ ।
ବୁଝିଲେ ଆମେ ତ ସ୍ତିରୀ କେତେକ ମାତର
ବୟସ ମତଗର୍ବରେ ହେଲୁ ଭୋଳେଶ୍ୱର ।
ଏରୂପେ ସେ କନ୍ୟାମାନେ ହୋଇ ଘାରିମନି
ମନକୁ ଯେ ଝିଙ୍ଗାସନ୍ତି ହୃଦେ ବିଷ୍ଣୁ ଚିହ୍ନି ।
ବୋଲନ୍ତି ଆରେ ମନ ତୁ ଏଡ଼େ ମୂର୍ଖ ହେଲୁ
ଦେଖୁ ଦେଖୁ ବିଷ୍ଣୁଠାରେ କେଡ଼େ ଗର୍ବ କଲୁ ।
ତୋତେ କି ବୋଲିବା ଆରେ କର୍ଣ୍ଣହେଲୁ ମୂଢ଼
ଶୁଣୁଶୁଣୁ ଭୁଲିଲୁ ତୁ ଆରେ ଯୋଗାରୁଢ଼ ।
କର୍ଣ୍ଣଠାରୁ ଗାଢ଼ହୋଇ ନାହିଁ କେ ସଂସାରେ
ଉତ୍ତମ କଥାକୁ ଶୁଣି ପାପରେ ପ୍ରଚାରେ ।
ତୁହି ହେଲେ ନୟନରେ ନ ଜାଣୁକି କିଛି
ଆଗହୋଇ ଧାଉଁ ଥାଉ ସବୁକଥା ପୁଛି ।

ମିଟି ମିଟି ଚାହୁଁ ଚାହୁଁ ସେ ସବୁକଥା କରୁ
ଗୋବିନ୍ଦର ବୃତ୍ତିକରି କେବେହେଁ ନ ପାରୁ ।
ତୋତେ କିସ ବୋଲିବା ତ ଜିହ୍ୱା ଅଟେ ମନ୍ଦ
ଖାଇବା କଥା ମାତର ଜାଣେ ସବୁ ସ୍ୱାଦ ।
ସତ୍ୟ ବଚନକୁ ଛୁଡ଼ି କୁବାକ୍ୟ ଯେ କହେ
ଜୀବରେ ଦୟା ନ କରି ପରେ ନାଶୁଥାଏ ।
ବିଷ୍ଣୁପଦ ଚୁମ୍ବୁ ଚୁମ୍ବୁ ଏକେ ଗର୍ବକଲୁ
ଆମ୍ଭେ ଏକା ଭକ୍ତ ବୋଲି କିମ୍ବା ବୋଲାଇଲୁ ।
ଏଣୁଟି ତୁମମାନଙ୍କୁ କଲୁ ଆମ୍ଭେ ନିନ୍ଦା
ଜାଣୁ ଜାଣୁ ସଂସାରରେ ହୁଅ କେଡ଼େ ଧନ୍ଦା ।
ଏରୂପେ ସେ କନ୍ୟାମାନେ ମନେ ବିଚାରନ୍ତେ
ଅନ୍ତର୍ଯ୍ୟାମୀ ପ୍ରଭୁ ତହିଁ ଜାଣି ହୃଦଗତେ ।
ସଖୀଙ୍କର ମନମୋହି ହର୍ଷ କରାଇଲେ
ହୃଦୟରେ ହେବା କ୍ଷୋଭ ଛଡ଼ାଇ ଯେଦେଲେ ।
ସେହିଠାରେ ସେ କନ୍ୟାଏ ରାସଠାରେ ଉଠି
ନୃସିଂହଙ୍କ ପଦ୍ମପାଦେ ନମି କୋଟି କୋଟି ।
କାର୍ତ୍ତିକ ପୂର୍ଣ୍ଣମୀଦିନ ସେ ରାସକୁ ସାରି
କନ୍ୟାକୁ ସଙ୍ଗରେ ଘେନି ନଗ୍ରେ ଯାନ୍ତି ହରି ।
ଆଗରେ ବୀଣା ବଜାନ୍ତି ଯାନ୍ତି ବ୍ରହ୍ମରାଶି
ସଖୀଏ ଦିଅନ୍ତି ହୁଳହୁଳି ହସି ହସି ।
ବଦରିକା ନଗ୍ରେ ଯାଇ ହେଲେ ପରବେଶ
ସରିଲା କାର୍ତ୍ତିକବ୍ରତ ନୃସିଂହ ରାହାସ ।
ନାୟିକାମାନେ ଯେ ଯେଝା ପୁରେ ଗଲେଚଳି
ନୃସିଂହ ଶେଷ ମାତାଙ୍କ ପାୟେ ଯାଇ ମିଳି ।
ବାଳକରୂପେ ଧରିଣ ପ୍ରବେଶିଲେ ଯାଇ
ସଙ୍ଗତେ ଅଛନ୍ତି ଶେଷଦେବ ସାନଭାଇ ।
ମାତାଙ୍କ ଆଗରେ ଯାଇ ପ୍ରବେଶିଲେ ହରି
ପୁତ୍ରଙ୍କୁ ଦେଖି ଧଇଲେ ମାଏ କୋଳକରି ।
ବୋଇଲେ ଯେ କେତେବେଳୁଁ ଖେଳିଗଲ ବାପ
ନ ସରେ ଦିନ ମୋର ନ ଦେଖି ତୁମ ମୁଖ ।
ଖୋଜିଲି ମୁଁ ଦାଣ୍ଡଯାକ କେତେ ଦ୍ୱାର ଯାଇ
ନ ଦେଖି ମୁଁ ଖୋଜୁଥିଲି ବାଇପ୍ରାୟ ହୋଇ ।
ନିରେଖ ପ୍ରାଣୀଙ୍କ ପ୍ରାୟେ ଅଧଇର୍ଯ୍ୟେ ବସି
ଦୁଃଖୀର ସଙ୍ଖାଳି ମୋର ବେନି ବାଳଶିଷି ।
ଏରୂପେ ବୋଲିଣ ମାଏ ମୁଖେ ଚୁମ୍ବଦେଲେ
ସୁବାସ ଜଳରେ ନେଇ ସ୍ନାନ କରାଇଲେ ।
ଅଙ୍ଗ ପୋଛିଦେଲେ ମାଏ ଝୀନବସ୍ତ୍ର ଘେନି
ହରିମନ୍ଦିର ଚିତାକୁ କାଟିଦେଲେ ଆଣି ।

ଶ୍ରୀଅଙ୍ଗେ ରାହାସ ପଟ ପିନ୍ଧାଇଲେ ବାଛି
ରତ୍ନପିଢ଼ାରେ ଭୁଞ୍ଜିଲେ ବସି ଘେନିବସି ।
ଭୋଜନ ସାରିଣ ପ୍ରଭୁ କଲେ ଆଚମନ
ଶୁଣନ୍ତି ନାରଦ କହେ ଚତୁର ଆନନ ।
❋ ❋ ❋

## ଭଗବତୀଙ୍କର ଶାଳଗ୍ରାମ ପୂଜା

ଏଥୁଅନନ୍ତରେ ରାତ୍ରି ହୁଅନ୍ତେ ପ୍ରବେଶ
ଶେଯେ ବିଜେକଲେ ପ୍ରଭୁ ଶ୍ରୀନୃସିଂହ ଶେଷ ।
ପୁତ୍ରଙ୍କୁ ଶେଯେ ଶୁଆଇ ଦେବୀ ଭଗବତୀ
ଏଥିଉତ୍ତାରେ ଯେ ଶେଷ ହୁଅନ୍ତେ ନିଶାରାତି ।
ରାତ୍ରି ଦଣ୍ଡେ ଥାଉଁ ଉଠି ଶଯ୍ୟାରୁ ଯେ ମାଏ
ଗୃହ ମାର୍ଜ୍ଜନା ସାରିଣ ସ୍ନାନେ ଚଳିଯାଏ ।
ଶୀଘ୍ର ସ୍ନାନକରି ଆସି ଦେବୀ ଭଗବତୀ
ଦେଖିଲେ ଶଯ୍ୟାରେ ଶୋଇଛନ୍ତି ବେନି ମୂର୍ତ୍ତି ।
ପୁତ୍ର ମୋର ଅଳପରେ ଛନ୍ତି ନିଦ୍ରାଯାଇ
ଯାଉଅଛି ଶାଳଗ୍ରାମ ପୂଜିବି ଯେ ମୁହିଁ ।
ଅଳି କରିବେ ଯେ ପୁତ୍ରେ ଉଠି ବହି ତମ
ଏହି ସମୟେ ସାରିବା ପୂଜା ଶାଳଗ୍ରାମ ।
ବିଷ୍ଣୁ ପ୍ରତିମା ଯେ ଦାମୋଦର ଶିଳାମୂର୍ତ୍ତି
ପୂଜିବା ହିରଣ୍ୟ ଗର୍ଭଶିଳା ଦିବାରାତ୍ରି ।
ପୂଜିଲେ ଆରମ୍ଭବନ୍ତ ସ୍ତିରୀ ଦୋଷ ନାହିଁ
କେବଳଟି ରଜସ୍ରାବ ଥିବ ଯାର ରହି ।
ସେ ସ୍ତିରୀ ହୃଦରେ ବିଷ୍ଣୁ ଥାନ୍ତି ବିଜେକରି
ଲକ୍ଷ୍ମୀ ସମାନରେ ସେହୁ ଅଟେ ଜାଣ ସ୍ତିରୀ ।।
ଅଶୁଦ୍ଧି ଯେ ଅନାଚାରୀ ନାରୀ ପୂଜାକଲେ
ତାହାକୁ ନମିଲେ ଅନ୍ନ ସହସ୍ର କୋଶରେ
ନିର୍ମଳ ଶୁଦ୍ଧ ଚିତ୍ତ ଯେ ପୂଜଇ ଯେ ସ୍ତିରୀ
ତାହାର କନ୍ଧୁ କେବେ ନ ଯାନ୍ତି ଛାଡ଼ି ଶିରୀ ।
ଏକଥା ପୂର୍ବେ ଅଛନ୍ତି ବ୍ରହ୍ମା ମୋତେ କହି
ତେଣୁ ମୁହିଁ ଶାଳଗ୍ରାମ ସଦା ପୂଜୁଥାଇ ।
ଆବର୍ ପୂଜା ତକ୍ଷଣେ ଦେବି ମୁହିଁ ସାରି
ପୁତ୍ରେ ଉଠିଲେ ଧରିବି ବେଗେ କୋଳକରି ।
ଏହିରୂପେ ପାଞ୍ଚ ମାଏ ଗଙ୍ଗାଜଳ ଆଣି
ଆସନ ଶୁଦ୍ଧି କରିଣ ସିଞ୍ଚ ମନ୍ତ୍ର ପାଣି ।
ରତ୍ନ ଆସନରୁ ତୋଳି ସୁବର୍ଣ୍ଣ ଥାଳିରେ
କରନ୍ତି ଯେ ସ୍ନାନପୂଜା ଷୋଡ଼ଶୋପଚାରେ ।

ସହସ୍ର ଶିର୍ଷ କାଣ୍ଡିକ ପଢ଼ି ଗଙ୍ଗାଜଳେ
ସ୍ନାନବିଧି ପୂଜାବିଧି ସାରିଲେ ତକ୍ଷଣେ ।
ରତ୍ନସିଂହାସନ ପରେ ବସାଇଲେ ନେଇ
ଗନ୍ଧପୁଷ୍ପ ତୁଳସୀ ଯେ ଧୂପ ଦୀପ ଦେଇ ।
ଶୀତଳମଣୋହି ଲାଗି କରିବାର ବେଳେ
ନିଦ୍ରା ତେଜିଣ ନୃସିଂହ ଉଠିଲେ ତକ୍ଷଣେ ।
ପାଞ୍ଚନ୍ତି ଜନନୀ ପୂଜା କରୁଛନ୍ତି ବସି
କିରୂପେ ପୂଜା କରନ୍ତି ଚିହ୍ନି ବ୍ରହ୍ମରାଶି ।
ଚିହ୍ନି ପୂଜାକଲେ ସିନା ଦେବେ ବର ଦ୍ୟନ୍ତି
ନ ଚିହ୍ନିଲେ ସେ ପାଷାଣ ରୂପେ ରହିଥାନ୍ତି ।
ଦେବତା ଯେ ହୃଦପଦ୍ମେ ଚିନ୍ତି ରଖିଥିବ
ସେ କିମ୍ପାଇଁ ପୂଜାକରି ସଂସାରୁ ତରିବ ।
ଲୌକିକେ ପୂଜୁଥିଲେ କି କାର୍ଯ୍ୟ ଅଛି ତହିଁ
ମାତାଙ୍କର ମନ ଆଗେ ବିଡେ କିନା ଯାଇ ।
ଏ ସମୟେ କାନ୍ଦି ଭୂମିପରେ ଗଡୁଥିବି
ନ ଧଇଲେ ରୁଷି ବସି ଜଞ୍ଜାଳ କରିବି ।
ଏତେକ ପାଞ୍ଚିଣ ପ୍ରଭୁ ପଦ୍ମ ନେତ୍ର ମେଲି
କାନ୍ଦି କାନ୍ଦି ଶେଯେ ପ୍ରଭୁ ପଡ଼ନ୍ତି ଯେ ଢଳି ।
ଗେଲରେ ଯେ କାନ୍ଦି କାନ୍ଦି ଶେଯୁ ଉଠିଗଷଲ
ଧରଆଗୋମାତାବୋଲି ଦେହେ ବୋଳିହେଲ ।
ପ୍ରଭୁ ବୋଇଲେ ମାତାଗୋ ଦେବ୍‌ପୂଜା ରଖ
ନିଦ୍ରାରୁ ଉଠିଣ ମୋତେ ଲାଗେ ବଡ଼ ଭୋକ ।
ଜନନୀ ବୋଇଲେ ବାବୁ କ୍ଷଣେ ତୁ ମଙ୍ଗାଳ
ଦେବପୂଜା ସାରି ତୋତେ ଧରିବି ମୁଁ କୋଳ ।
ତୁମ୍ଭେ ପୁତ୍ର ବେନି ଅଟ ମୋହର ଯେ ଜୀବ
ତୁମ୍ଭଙ୍କୁ ନ ଦେଖିଲେ ମୋ ପ୍ରାଣ କି ରହିବ ।
କ୍ଷଣେ ଆଉ ଜଞ୍ଜାଳ ନ କର ବାପ ମୋତେ
ପୂଜିସାରି ଦ୍ରବ୍ୟଯାକ ଦେବି ଆଜି ତୋତେ ।
ଷଡ଼ରସର ମଣୋହି ସବୁ କରାଇବି
ବିଷ୍ଣୁ ଚଳୁଦେଇ ତୁମ୍ଭଙ୍କୁ ଯେ ଭୁଞ୍ଜାଇବି ।
ମାତା ଚାଟୁ ଶୁଣି ଶ୍ରୀନୃସିଂହ କଲେ ଅଳି
ଝିଙ୍କନ୍ତି ମାତା ପଣତ ଧରି ଢଳି ଢଳି ।
ବୋଲନ୍ତି ମାତାଗୋ ମୋତେ ନ ଧରିବଯେବେ
ଯାଉଛି ସାନଭାଇକି ଉଠାଇବି ତେବେ ।
ବେନି ଭାଇଯାକ ମିଶି କରିବୁ ଜଞ୍ଜାଳ
ତେତେବେଳେ ତୁମେ ଏକା ନୋହିବ ଆକୁଳ ।
ମାଏ ବୋଇଲେ ଡରାଉ ମୋତେ କେତେ ତୁହି
ଶେଷଦେବ ପ୍ରାୟ ପୁତ୍ର ବ୍ରହ୍ମାଣ୍ଡରେ ନାହିଁ ।

ଏତେ ରୂପେ ବୋଧି କହୁଁ ମୋତେ ଡରାଇଲେ
ଜ୍ୟେଷ୍ଠପୁତ୍ର ହୋଇ ମୋର କଥା ନ ଶୁଣିଲୁ
ଏତେ ବୋଲି ଜନନୀ ଯେ କୋପେ ପରଜ୍ୱଳି
ପିଟିଲେ ଡରିବା ପାଇଁ ମନେ ବଡ଼ ଚଳି ।
ବାଳକ ଭାବରେ ପ୍ରଭୁ କାନ୍ଦି ଭାବଗ୍ରାହୀ
ଗୁହାରିକଲେ ବାପାଙ୍କ ଆଗେ ସବୁ ଯାଇ ।
ଯେବଣ ଅଙ୍ଗରେ ବଜ୍ର ପଡ଼ି ଧୂଳି ହେବ
ବୁଝ ସେହି ନୃସିଂହଙ୍କ କଉତୁକ ଭାବ ।
ମାୟାଧର ପ୍ରଭୁ ବାପ ଆଗେ କହିଗଲେ
ପଳାବୋଲି କୋପେ ମାତ ଛାଟେକ ପିଟିଲେ ।
ନୃସିଂହଙ୍କ କଥା କୃଷ୍ଣବଲ୍ଲଭ ଯେ ଶୁଣି
ପୁତ୍ରକୁ ବୋଧି କହନ୍ତି ଧରି ନୃପମଣି ।
ରାଜାଙ୍କୁ ନୃସିଂହ ମାତା କଥା ସବୁ ଜଣା
କହନ୍ତି ମନ ବୁଝିବା ପାଇଁ ବୁଝାମଣା ।
ବୋଲେ ତୁମ୍ଭଙ୍କୁ ମାଇଲେ ମାଏ ଯେବେ ବାଡ଼ି
ଘଉଡ଼ି ଦେବି ମୁଁ ନିଶ୍ଚେ ଯାନ୍ତୁ ଘରର ଛାଡ଼ି ।
ବାପଘରକୁ ତାଙ୍କର ପଳାଇ ସେ ଯାନ୍ତୁ
ମାତା ପୋଏ କଳି କରିଗଲେ ସେ ବୋଲାନ୍ତୁ ।
ଏରୂପେ ଭଣ୍ଡି ପୁତ୍ରକୁ କହନ୍ତେ ରାଜନ
ପିତା ମୁଖୁ ଶୁଣି ପ୍ରଭୁ ଚଳିଲେ ବହନ ।
ମାତାର ଆଗେ ମିଳିଲେ ଯାଇଁ ଭାବଗ୍ରାହୀ
ବୋଇଲେ ମାଗୋ ରହିବ ତୁମ୍ଭେ କାହିଁପାଇଁ ।
ବାପ ତ ବୋଇଲେଣି ଘଉଡ଼ିଦେବା ବୋଲି
ପିତାଙ୍କ ଘରକୁ ତୁମ୍ଭେ ବେଗେ ଯାଅ ଚଳି ।
ଭିତର ପୁରରେ ଲୁଚିକରି ବାହାରନ୍ତ
ଦିହୁଡ଼ି ଲଗାଇ ସବୁ ଖୋଜିବେ ଗୋ ତାତ ।
ଲଘୁ ନୋହିଣ ଗୋ ବେଗେ ପଳା ଛାଡ଼ି ଘର
ପିତାଙ୍କର କୋପ ଦେଖି ଲାଗେ ମୋତେ ଡ଼ର
ମାତା ବୋଇଲେ ଲାଗୁଛି ଭୟ ଯେବେ ତୋତେ
ବାପାଙ୍କ ଆଗେ କହିଲୁ ଯାଇଁ କିମ୍ପା ଏତେ ।
ଘଉଡ଼ିବା ଯାଏ ମୁହିଁ କିମ୍ପା ଘରେ ଥିବି
ପୁତ୍ରକୁ ଘେନିବି ଯୋଡ଼ି ପଛେ ମୁହିଁ ଦେବି ।
ପ୍ରଭୁ ବୋଇଲେ ପିତାଙ୍କୁ ଆମ୍ଭେ ଛାଡ଼ିବୁକି
ମାଏ ବୋଇଲେ ଅର୍କ୍ଷିତ ତୁହି ନୋହିବୁକି ।
ଅର୍କ୍ଷିତ ଯେଉଁ ମାଇଲ ମୋତେ କିମ୍ପା କହ
ଶୁଣିଣ ଜନନୀ ନେତ୍ରୁ ଖସିପଡ଼େ ଲୁହ ।
ଆହା ବାପ ବୋଲି ଧଇଲେକ କୋଳକରି
ମୁଖେ ଚୁମ୍ବଦେଇ ପୋଛିଦେଲେ ନେତ୍ରୁ ବାରି ।

ତୁମ୍ଭେ ମୋର ବେନିପୁତ୍ର ଅଟ ବେନି ଚକ୍ଷୁ
କ୍ଷଣେ ନ ଦେଖିଲେ ବଣା ହେବି ପୁତ୍ର କାଖୁ ।
ଧନ ମୋର ଦ୍ରବ୍ୟ ମୋର ଅଟ ସବୁ ତୁମ୍ଭେ
ବାପେତୁମ୍ଭ ଛାଡ଼ିମୋତେ ପାରିବେକି କେବେ ।
ତଥାପି ସ୍ୱାମୀ ମୋର କି ଦୋଷ ଦେଖିଲେକ
ତୁମ୍ଭ ବୋଲ ବୁଝି କହିଲେ ସେ କଥାତକ ।
ତଥାପି ସ୍ୱାମୀ ମୋହର କଲେ ଯେବେ ମାନ
ତୁମ୍ଭେ ଉଦ୍ଧାରି ରଖିବ ମୋତେ ଭଗବାନ ।
ତଥାପି ସ୍ୱାମୀ ତେଜିବେ ଯେବେ ମୋତେ ମୂର୍ଚ୍ଛି
ତୁମ୍ଭେ ତ ମୋତେ ଲୁଚାଇ ରଖ ହେ ଶ୍ରୀବତ୍ସି
ବିଷ୍ଣୁ ମନ୍ଦିରରେ ସିନା ପୂଜିଥିଲି ବସି ।
ସେ ବିଷ୍ଣୁ ପଞ୍ଜର ସେହି ସ୍ୱୟଂ ବ୍ରହ୍ମରାଶି ।
ମାତାଙ୍କ ମନର ଚିନ୍ତା ଜାଣି ନାରାୟଣ
ହସି ହସି କୋଳେ ଯାଇ ବସିଲେ ତତକ୍ଷଣ ।
ବୋଇଲେ ଜନନୀ ଗୋ ନ କର କିଛି ଭୟେ
ତୁମ୍ଭ ମନ ଘେନି ଆମ୍ଭେ ଆସୁ ସର୍ବଦାଏ ।
ତୁମ୍ଭେ ଆଦି ଯେ ଅନାଦି ଆମ୍ଭ ପିତାମାତା
ଏକଥା ଦେହରେ ଲେଖିଅଛନ୍ତି ବିଧାତା ।
ଆମ୍ଭଙ୍କୁ ଯେବେ ତୁମ୍ଭେ ନ କରନ୍ତ ଜନମ
ଅଜଣା ହୁଅନ୍ତା ପୃଥ୍ୱୀଯାକେ ଆମ୍ଭ ନାମ ।
ତୁମ୍ଭେ ଆମ୍ଭ ଚାରି ଜନ୍ମେ ହେବ ଗର୍ଭଧାରୀ
ଏକଥା ପୂର୍ବରୁ ଲେଖିଛନ୍ତି ମୁଖଚାରି ।
ଆମ୍ଭର ଚାରି ଜନ୍ମରେ ଏହି ରୂପେ ହେବ
ନୃସିଂହ ବାମନ ରାମ କୃଷ୍ଣ ବଳଦେବ ।
ଏହି ଚାରିଜନ୍ମ ଜାଣ ଆମ୍ଭ ଲୀଳାକୀର୍ତ୍ତି
ତୁମ୍ଭ ଚାରିଜନ୍ମ ନାମ ଶୁଣ ଉପଗତି ।
ଆଦି ଅବତାରେ ଭଗବତୀ ବୋଲାଇଲ
ନୃସିଂହ ଶେଷେ ଏ ବେନିପୁତ୍ର ଜାତକଲ ।
ଦ୍ୱିତୀୟେ ହେବ ମାତା ଗୋ ପ୍ରତ୍ୟକ୍ଷେ ଅଦିତି
ଜନ୍ମିବେ ତୁମ୍ଭ ଗର୍ଭରୁ ବାମନ ମୂରତି ।
ତୃତୀୟାବତାରେ ତୁମ୍ଭେ ହେବ କଉଶଲ୍ୟା
ହେବୁ ରଘୁନାଥ ଜନ୍ମ ତୁମ ଗର୍ଭେ ଭଲା ।
ଚତୁର୍ଥ ଜନ୍ମରେ ତୁମ୍ଭେ ହୋଇବ ଦେବକୀ
ତୁମ ପୁତ୍ର ହୋଇ ଆମ୍ଭେ ପାଳିବୁ ପୃଥ୍ୱୀକି ।
କୃଷ୍ଣାବତାରୁ ସରିବ ଆମ୍ଭ ଯୋନି ଜନ୍ମ
ଏରୂପେ ମାତା ଗୋ ହେବ ତୁମ୍ଭ ଆମ ନାମ ।
ଶୁଣିକରି ଭଗବତୀ ହୋଇଲେ ହରଷ
ନୃସିଂହ ଶେଷକୁ ମାଏ ଦେଲେ ଷଡ଼ରସ ।

ଷଡ଼ରସରେ ପୁତ୍ରଙ୍କୁ ଭୋଜନ କରାଇ
ବୋଇଲେ ଖେଳିଯାଅ ଯା ଏବେ ବେନିଭାଇ ।
ଶୁଣିଣ ନୃସିଂହ ସ୍ୱାମୀ ହୋଇଲେ ହରଷ
ସେ ପଦେ ଶରଣ ବିପ୍ର ପୀତାମ୍ବର ଦାସ ।

❋ ❋ ❋

## ଶେଷ ନୃସିଂହଙ୍କ ଖେଳ

ନୃସିଂହଙ୍କ ବାଲ୍ୟଲୀଳା ଏ ପବିତ୍ର ବାଣୀ
ବାତୁଳ ପ୍ରାୟ ହୋଇ ମୁଁ ଲେଖଇ ନ ଜାଣି ।
ସଚରାଚର ପୃଥିବୀ ଅଙ୍ଗେ ଯାର ପୁରି
ତାଙ୍କୁ ବୋଧୁଛନ୍ତି ମାଏ ଖେଳ ଯାଇକରି ।
ସେ କଥା ଲେଖିବାକୁ ଯେ ବଳିଲା ମୋ ମନ
ସାବଧାନେ ତାହା ଏବେ ଶୁଣିବା ରାଜନ ।
ସଖୀମାନଙ୍କୁ ଘେନିଣ ଗଲେ ବେଗେ ଚଳି
ଆନନ୍ଦ ମନେ ମିଳିଲେ ଯାଇ ବନମାଳୀ ।
ସେ ଖେଳମାନଙ୍କ ନାମ ଶୁଣ ହେ ନାରଦ
ନୃସିଂହଙ୍କ ବାଲ୍ୟଲୀଳା ଅଟେ ମୋକ୍ଷପ୍ରଦ ।
ଖେଳ ଖେଳିବାର କଥା ଥୋକାଏ ଯେ ଶୁଣ
ସଖାଗଣ ଘେନି ପ୍ରଭୁ ଖେଳନ୍ତି ବନେଣ ।
ପହଣ୍ଡ ଧାପ ଧାଉଡ଼ି ପଟାମୁଣ୍ଡି ଖେଳ
ତିରିଶ ବାଘବଜାରି ଗଞ୍ଜାପାର ଖେଳ ।
କେହି ତାଳିମାରି ପକାଏ ଯେ ଖଣ୍ଡ ଦୁରୁ
କେ ଛୁଇଁ ନ ପାରି ହୁଡ଼ି ମରେ ଜଗିବାରୁ ।
ଆବର କେହୁ ଖେଳଇ ପଶା ନ୍ୟାୟବଳ
ଗହ୍ନା ସାତପହଣ୍ଡି ଫୋପଡ଼ା ଗୁଣ୍ଡିମାଳ ।
ପଟିଆ ଧଳ ଗଞ୍ଜାଇ ଯୁଗଳ ଶିଖିଆ
ଡହଣା ତାଳମାକୁରି ଜିଣା ଧନ୍ଦପୁଆ ।
ଖେମଟା ନାଟବିନୋଦ ଗୀତ ନାନାରଙ୍ଗେ
ଖେଳନ୍ତି ସଖା ନୃସିଂହ ଶେଷଙ୍କର ସଙ୍ଗେ ।
ଦେହକୁ ଦେହ ଲଗାଇ ସରି ସମ ହୋନ୍ତି
ଖେମଟା ଗୀତ ଗାଇଣ କନ୍ଧେ ବହି ନ୍ୟନ୍ତି ।
କେ ପିଠିରେ ବାହାନାଦ କରି କରେ ଲାଉ
କେ ବୋଲେ ପ୍ରଭୁଙ୍କଲାଗି ସର୍ବେମୋକ୍ଷ ହେଉ ।
ଏଥି ଉତ୍ତାରୁ ବାଇଲେ ବ୍ରହ୍ମା ବ୍ରହ୍ମବୀଣା
ଶୁଭିଲା ତିନିପୁରେ ଯେ ଶବ୍ଦ ଅକଳନା ।
ଶୁଖିଲା ତରୁମାନେ ଯେ ହେଲେ ପଲ୍ଲବିତ
ଶୁକ ପିକ ଶାରୀ ହେଲେ ମଦନେ ଉନ୍ମତ୍ତ ।
ଅବସନ୍ତେ ବହିଲା ଯେ ବସନ୍ତ ପବନ
ଅଫଳନ୍ତି ବୃକ୍ଷମାନେ ଦିଶିଲେ ଶୋଭନ ।
ନାନାବିଧ ପୁଷ୍ପମାନ ଫୁଟି ଆମୋଦନ୍ତି
ମଉଭରେ ମଧୁପ ଯେ ଭ୍ରମେ ଫୁଲେ ମାତି ।
ନାନା ବିନୋଦ କରନ୍ତି ପକ୍ଷୀ ରଙ୍ଗେ କେଳି
ଯୋଗାଧିଯୋଗ ପୁରୁଷ ନେତ୍ର ପଡ଼େ ଢଳି ।
କୁଳବତୀ ନାରୀ ଅସମ୍ଭାଳ ହେଲେ ପୁଣି
ପାଷାଣମାନ ତରଳି ମହିଲେ ଧରଣୀ ।
ଏଥିଉତ୍ତାରୁ ଚୌଷଠି ସହସ୍ର ଯେ କନ୍ୟା
ବନକୁ ଧାଇଁଲେ ମୋହ ହୋଇ ବାରାଙ୍ଗନା ।
ଅଷ୍ଟସଖୀ ଘେନି ଚଉଷଠି ସସ୍ରବାଳୀ
ସମସ୍ତେ ଯାଇ ଭେଟିଲେ ବନେ ବନମାଳୀ ।
ରହିଲେ ଯେ ନୃସିଂହଙ୍କୁ ଶତେ ପୁର ହୋଇ
କେ କାଖ କରଇ କେ ମୁଖେ ଚୁମ୍ବ ଦେଇ ।
କେ ବୁକେ ପକାଇ ପିଠିରେଖ ଲାଉକରେ
କେହି ବେନିକର ଟେକି ବସାଇ ଶିରରେ ।
କେ ବୋଲେ ଏ ଭଗବତୀ ପୁତ୍ର ଭାବଗ୍ରାହୀ
ମାତାକୁ ଦେଖାଇ ପିତା ଆଗେ ଖଚ କହି ।
ଆବର ନୃସିଂହଙ୍କର କେତେ ଗୁଣ ଅଛି
ପୂର୍ବକାଳ କଥାମାନ ଶୁଣିମା କି କିଛି ।
କେ ବୋଲେ କେଡ଼େ ଚତୁର ଅଟନ୍ତି ଏ ହରି
ମୁର ଦିଗବିଜେ କାଳେ ଛନ୍ତି ଯାହାକରି ।
ଶାକଲ୍ୟ ଦ୍ୱୀପେ ବିଷ୍ଣୁଙ୍କ ଦୋରେହା ଯେ ଥିଲା
ସେଠାବକୁ ମୁରଦୈତ୍ୟ ଦିଗବିଜେ କଲା ।
ବାଳକ ଡରି ପଳାଇଗଲେ ଲୋକ ଯହୁଁ
ସେ ନଗ୍ରେ ଏକା ରହିଲେ ଏକା ମହାବାହୁ ।
ସେ ନଗରଯାକ ଦୈତ୍ୟେ କଲେ ସବୁ ଜୁର
ଯହିଁ ଦେଖିଲାକ ତହିଁ ସ୍ୱର୍ଣ୍ଣମୟ ପୁର ।
ଏ ପ୍ରଭୁଙ୍କୁ ଭାବନାଟି ଶୁଣ ଗୋ ସୁନ୍ଦରୀ
ପଲ୍ୟଙ୍କରେ ଶୋଇଥିଲେ ବାଳରୂପ ଧରି ।
ତାହା ଦେଖି ଦୈତ୍ୟ ଯାଇ ରାଜାଙ୍କୁ କହିଲେ
ବାଳକ ଗୋଟିଏ ଏକା ଶୋଇଛି ଦେଖିଲେ ।
ଶୁଣି ଶ୍ରଦ୍ଧାଭରେ ଧାଇଁଗଲା ମୁରାସୁର
ଦେଖିଲା ପଲ୍ୟଙ୍କେ ଶୋଇଅଛନ୍ତି କୁମର ।
ସୈନ୍ୟଙ୍କୁ ବୋଇଲା ଆରେ ଧର କାଖକରି
ରାଜ୍ୟକୁ ବୋଲିଣ ଚାଲ ଯିବାରେ ବାହାରି ।
ଶୁଣିଣ ସଇନ୍ୟମାନେ ଜଣେ ଜଣେ ଉଠି
ଶ୍ରୀଗୋବିନ୍ଦ ସ୍ୱାମୀଙ୍କୁଯେ ଟେକି ଗୋଟି ଗୋଟି
ଉଠାଇ ନ ପାରି ପଡ଼ିଗଲେ ହୋଇ ଭ୍ରମି
ଦେଖି ମୁରାସୁର ଉଠିଲାକ ହୋଇ ତମୀ ।

ଫୁଲଗଭା ପ୍ରାୟ ଟେକିଲାକ ବାଳତକୁ
ମଥା ଉପରେ ବହିଣ ଚାଲିଲା ରାଜ୍ୟକୁ ।
ଦୁଇ ଚାରି ପହଣ୍ଡ ଯେ ଯାଉଁ ପାଦ ଟେକି
ବହି ନ ପାରି ପକାଇଦେଲେ ସେ ଭୂମିକି ।
ମୁରକୁ ଯେତେକ ମାୟା କଲେ ତହିଁ ହରି
ତହିଁରୁ ଥୋକେ କହୁଛି ଶୁଣ ଦୁଇ ଚାରି ।
ବଡ଼ ହଟିଆ ଅଟନ୍ତି ଏହି ଭାବଗ୍ରାହୀ
କତିରେ ଯେ ନ ଦିଶନ୍ତି ଦୂରେ ଦେଖାଯାଇ ।
ଧରୁ ଧରୁ ହସ୍ତରୁ ଯେ ଖସି ପଳାବନ୍ତି
ଅଦୃଶ୍ୟ ହୋଇଣ ପୁଣି ଆଗେ ଉଭାହୋନ୍ତି ।
ପୁଣିହିଁ ଧରୁ ଧରୁ ସେ ନଗ୍ରେ ଗଲେ ପଶି
ଲୁଚିଲେ କାହାକୁ ଦେଖା ନୋହି ବ୍ରହ୍ମରାଶି ।
ସେହିଠାରୁ ମୂରଦୈତ୍ୟ ନଗ୍ରଯାକ ଖୋଜି
ବିଷ୍ଣୁଙ୍କୁ ନ ପାଇ ପୁଣି ଦୈତ୍ୟ ହେଲା ଗଞ୍ଜି ।
ନଗ୍ରୁ ପଳାଇ ବାହାରେ ଆସି ଉଭାହେଲା
ସୈନ୍ୟଙ୍କୁ କଟକ ପୋଡ଼ ବୋଲି ଆଜ୍ଞାଦେଲା ।
ନଗ୍ର ଚାରିପାଶଯାକ ଚଉକୀ ଜଗାଇ
ପୁତ୍ର ପୋଡ଼ିମରୁ ବୋଲି ଲଗାଇଲା ଜୁଇ ।
ଅଗ୍ନିରେ ଧୂମାନ୍ତକରି ରାଜ୍ୟକୁ ତା ଗଲା
ବିଷ୍ଣୁଙ୍କର କଉତୁକ ଅଟେ ଏଡ଼େ ଭଲା ।
ଏ ପ୍ରଭୁ ମହିମା ପାରିବ କେ କରି ଅନ୍ତ
ଆମ୍ଭର ଭାଗ୍ୟକୁ ଜନ୍ମହେଲେ ଲକ୍ଷ୍ମୀକାନ୍ତ ।
ଏରୂପେ ନାୟିକା ନୃସିଂହଙ୍କୁ କୋଳେ ଧରି
ଜଣକୁ ଜଣ ବସିଲେ ଯାଇଁ ସଭାକରି ।
ନୃସିଂହ ବୋଇଲେ ଚାଲ ବନକୁ ଗୋ ଯିବା
ତୋଟାମାନଙ୍କରେ ବୁଲି ବାୟୁ ସେବୁଥିବା ।
ଏକେ ତ ଜ୍ୟେଷ୍ଠମାସ ଅଟେ ଖରାକାଳ
ତୋଟାରେ ଦେଖିବା ଚାଲ ବୁଲି ଚୂତଫଳ
କେତେ ଫଳ ପାଚି ଫୁଟି ପଡ଼ିଥିବ ତଳେ
ସେ ଫଳମାନ ଦେଖିବା ଚାଲ ବେନି ଡ଼ୋଳେ ।
ଏତେକ ବୋଲିଣ ସ୍ୱାମୀ କଲେ ବୀଣାଧ୍ୱନି
ବୁଲନ୍ତି ବନରେ ହରି ସଖା ସଙ୍ଗେ ଘେନି ।
ଚୂତବୃକ୍ଷମୂଳେ ହେଲେ ପ୍ରବେଶ ଯେ ଯାଇ
ଦେଖିଲେ ଯେ କେତେ ଫଳ ଫଳିଅଛି ତହିଁ ।
ନୃସିଂହ ବୋଇଲେ ସଖି ଶୁଣ ନାୟିକାଏ
ଏ ଚୂତଫଳ ଦିଶୁଛି ମୋତେ ଶମ୍ଭୁ ପ୍ରାୟେ ।
ଏଥୁଁ ଗୋଟିଏ ଗୋଟିଏ ପାରିବକେ ତୋଳି
ଦେଖିବା ତୁମ୍ଭର କରାମତି କେଡ଼େ ଭଳି ।
ଯେ ରୂପେ ତୋଳିବ ତାହା କହିବା ଗୋ ଶୁଣ
ଆଣିବ ଗୋ ଲାଖବିନ୍ଧି ଛିଡ଼ି ବେଳକେଣ ।
ଏ ସତ୍ୟ ଆମ୍ବଫଳ ଗୋ ସତ୍ୟରେ ଯେ ବଢ଼େ
ସତ୍ୟରେ ଯେ ଫଳୁଅଛି ଆମ୍ବ ଚାରିଆଡ଼େ ।
ସତ୍ୟ ଥିଲା ପ୍ରାଣୀକି ଯେ ଧର୍ମ ଜଗିଥାଇ
ଧର୍ମ ଥିବା ଲୋକକୁଟି ଲକ୍ଷ୍ମୀ ନ ଛାଡ଼ଇ ।
ଯହିଁ ଲକ୍ଷ୍ମୀ ଥାନ୍ତି ତାକୁ ବିଷ୍ଣୁ ଥାନ୍ତି ଜଗି
ସତ୍ୟବନ୍ତ ଲୋକକୁ ଯେ ବୋଲି ସୁଖଭୋଗୀ
ଏଣୁ ବୁଝିବା ସବୁରି ସତ୍ୟକଥା ଜାଣ
ଜଣକେ ଯେ ବେଳେ ବିନ୍ଧି ଫଳ ତୋଳିଆଣ ।
ଦେଖିବା କାହାର କେଡ଼େ ଅଟେ ଲାଖସଜ
ଶୁଣି ନାୟିକା କହନ୍ତି ପାଇ ମନେ ଲାଜ ।
ବୋଲନ୍ତି ଆମ୍ଭେ ସ୍ତିରୀଏ ଜାଣି ଯେ ନ ପାରୁ
କୁଟୁମ୍ବେ ପରଷି ରାନ୍ଧି ବାଢ଼ି ଦିନ ହରୁ ।
ତୁମ୍ଭେ ବୋଇଲେ ଭୋ ସ୍ୱାମୀ ଲାଖ ବିନ୍ଧ ବୋଲି
କି ପ୍ରକାରେ ବିନ୍ଧିବୁ ଯେ କହ ଲାଖ ଧରି ।
ପ୍ରଭୁ ବୋଇଲେ ତୁମ୍ଭଙ୍କୁ ହେବ କଥା ସଜ
ସେ ଶସ୍ତ୍ରମାନ ଧରିଣ ବିନ୍ଧ ବେଗେ ଆଜ ।
ଶୁଣି ସେ ନାଗରୀମାନେ ଜଣେ ବେଳେବେଳେ
ନେଇଣ ପଥରମାନ ମାଇଲେ ସେ ଡାଳେ ।
ନେଇ ମାରନ୍ତେଣ ଲାଖ ନ ବାଜନ୍ତେ ତହିଁ
ଫିଙ୍ଗନ୍ତେ ସେ ଖଣ୍ଡେଦୂରେପଡ଼େ ଆଡ଼ ହୋଇ ।
ଫଳରେ ନ ବାଜି ସବୁ ଚଳନ୍ତି ଆକାଶେ
ଦେଖି ତାହା ହସ ହସ ହୋନ୍ତି ଜଗଦୀଶେ ।
ଏଥୁ ଅନ୍ତରେ ମିଳିଲେ ଆସି ଦେବବ୍ୟାସ
କନ୍ୟାଙ୍କର ଲାଖ ଦେଖି ହେଲେ ହସ ହସ ।
ବୋଲନ୍ତି ଭଲା ଏ ନୃସିଂହର ବାଲ୍ୟଲୀଳା
କେଡ଼େ ଭାବ କରୁଛନ୍ତି ପ୍ରଭୁ ଚକାଡ଼ୋଳା ।
ସ୍ତିରୀମାନଙ୍କୁ ଲାଖରେ ଭୁଲାଇ ଦିଅନ୍ତି
ତାହାଙ୍କ ମାଗୁଣି ଦେଖି ମନେ ହସୁଛନ୍ତି ।
ଧନ୍ୟ ଏହି ଲୀଳାଗୋଟି ଅଟଇ ପ୍ରସଙ୍ଗ
ସ୍ତିରୀଙ୍କି ମତାଇ ପ୍ରଭୁ ଦେଖେ ଜାନୁଜଙ୍ଘ ।
କାହାର କଟିବନ୍ଧରୁ ବସ୍ତ୍ର ପଡ଼େ ଖସି
କାହାର ଯେ ନୀବିବନ୍ଧ ପଡ଼େ ତଳେ ଖସି ।
କାହା କୁଚରେ ବସନ ଖସେ ହୋଇ ଆଡ଼େ
କାହାର ଅଣ୍ଟାକୁ ବୋଲି ଖୋସା ଫିଟିପଡ଼େ ।
ଲାଖ ହେତୁରୁ ସ୍ତିରୀଏ ନ ଜାଣନ୍ତି କିଛି
ଘେନନ୍ତି ସେ ବ୍ୟାସ ମାତ୍ର ହୃଦେ ତାହା ପାଞ୍ଚି ।

ବିଷ୍ଣୁଙ୍କୁ କିବା ସ୍ତିରୀଙ୍କୁ କିଛି ନ ବୋଲନ୍ତି
ମନରେ ପାଞ୍ଚି କାହାକୁ କିଛି ନ କହନ୍ତି ।
ବ୍ୟାସଙ୍କୁ ଦେଖି ସ୍ତିରୀଏ ହେଲେ ଲଜ୍ଜାଭର
ମଥାରେ ଓଢ଼ଣା ଦେଇ କଲେ ନମସ୍କାର ।
ବ୍ୟାସ ବୋଇଲେ ମାତାଗୋ କେମନ୍ତେ ଏଲାଖ
କାହାକୁ ମାରୁଛ ଶସ୍ତ୍ର ବାଜୁ ନାହିଁ ଦେଖ ।
କଉତୁକ ପ୍ରାୟ ଲାଗିଲାକ ମୋତେ ଏହା
କିବା ତୁମ୍ଭଙ୍କୁ ନଚାଉଛନ୍ତି ଚଉବାହା ।
ତେତେବେଳେ କହିଲେ ଯେ ସ୍ତିରୀ ତାଙ୍କୁ ହସି
ବୋଇଲେ ଏ କଉତୁକ ନୁହେଁ ଜାଣ ଋଷି ।
ଶ୍ରୀନୃସିଂହ ଆମ ମନ ବିଡ଼ିବାର ପାଇଁ
ଚୂତଫଳେ ଫୋପଡ଼େକ ଖଞ୍ଜି ଭାବଗ୍ରାହୀ ।
ଆମ୍ଭକୁ ବୋଇଲେ ଜଣେ ଜଣେ ବେଳେ ମାରି
ଆମ୍ବଫଳ ଆଣି ମୋତେ ଦେଖା ବେଗକରି ।
ତେଣୁ ବିନ୍ଧୁଅଛୁ ଆମେ ସର୍ବେ କରି ଲାଖ
କାହାରି ହିଁ ସୂତ୍ରହୋଇ ବାଜୁ ନାହିଁ ଦେଖ ।
ଦଇବ ଯୋଗେ ତ ଦେଖ ଫଳ ଛିଡ଼ୁ ନାହିଁ
ତେଣୁ ନୃସିଂହ ହସନ୍ତି ଆମଙ୍କୁ ଯେ ଚାହିଁ ।
ବୁଝିଲେ ଆମ ପରମଗୁରୁ ତୁମେ ଅଟ
ଭାଗ୍ୟରୁ ତୁମେ ଆମଙ୍କୁ ଦେଲ ଆସି ଭେଟ ।
ବ୍ୟାସ ବୋଇଲେ କହିବା ତେବେ ମାଏ ଶୁଣ
ବୃକ୍ଷ ନଇଁପଡ଼ନ୍ତା ଗୋ ବାକ୍ୟ ବୋଇଲେଣ ।
ପଥର କାହିଁକି ଏତେ ଘାନ୍ତି ମାରୁଥାନ୍ତ
ତଳକୁ ନୁଅନ୍ତା ବୃକ୍ଷ ଫଳ ତୋଳି ନ୍ୟନ୍ତ ।
ଶୁଣିଣ ଯୁବତୀଗଣ ହେଲେ ଚମତ୍କାର
ବୋଇଲେ ଆମକୁ ତାହା ଦିଅ ମୁନିବର ।
ଶୁଣି ବ୍ୟାସଋଷି ପଢ଼ିଲେକ ମନ୍ତ୍ର ବସି
ତକ୍ଷଣେ ଭେଟିଲା ଭୂମିପରେ ବୃକ୍ଷ ଆସି ।
ତାହା ଦେଖିଣ ସନ୍ତୋଷ ହେଲେ ନାୟିକାଏ
ଜଣକେ ତୋଳିଲେ ଫଳ ଗୋଟିଏ ଗୋଟିଏ ।
ତୋଳନ୍ତି ଚୌଷଠି ସସ୍ତ୍ରଫଳ ବୃକ୍ଷୁଁ ବାଳୀ
ବ୍ୟାସ ଆଜ୍ଞାକଲେ ବୃକ୍ଷ ଶୂନ୍ୟେ ଗଲା ଚଳି ।
ସ୍ତିରୀଏ ବିଷ୍ଣୁଙ୍କୁ ସେହି ଫଳ ଦେଲେ ନେଇ
ପର୍ବତ ସମାନ ପଡ଼ିଲାକ କୁଢ଼ ହୋଇ ।
ତହିଁ ଉତ୍ତାରୁ ସେ ବ୍ୟାସ ଅନ୍ତର୍ଦ୍ଧାନ ହେଲେ
ଫଳ ଦେଖି ଶ୍ରୀନୃସିଂହ ସ୍ତିରୀଙ୍କି ପୁଚ୍ଛିଲେ ।
ବୋଇଲେ ଗୋ ଏତେ ଫଳ କିରୂପେ ତୋଳିଲ
ସ୍ତିରୀକୁଳ ହୋଇ କେତେ କରାମତି କଲ ।

ନାୟିକାଏ ବୋଇଲେତ ତୁମେ ଅନ୍ତର୍ଯ୍ୟାମୀ
ଆପଣ ପୁଚ୍ଛୁତ ସତେ ତାହା କି ନ ଜାଣି ।
ଆମେ ମିଥ୍ୟା କହିଲେ ଛାମୁରେ ଚଳିବକି
ଆପଣ ସବୁରି ମନକଥା ନ ଜାଣକି ।
ଆମ ଦୁଃଖ ଦେଖି ବ୍ୟାସ ଋଷି କଲେ ବିଜେ
ସେ କଥା ଶୁଣ କହୁଛି ଏବେ ଦେବରାଜେ ।
ବୃକ୍ଷକୁ ଆଜ୍ଞାକଲେ ସେ ତଳେ ଗଲା ନଇଁ
ସେ ଫଳ ତୋଳି ଆଣିଲୁ ଆହେ ଭାବଗ୍ରାହୀ ।
ତୁମେ କହିବା ଲଖେ ଛିଣ୍ଡାଇ ନ ପାରିଲୁ
ବ୍ୟାସ କହିବା ଲାଖରେ ତୋଳିଣ ଆଣିଲୁ ।
ପ୍ରଭୁ ବୋଇଲେ ତେବେଗୋ ଶୁଣ ନାୟିକାଏ
ବ୍ୟାସ ତ ଅଟନ୍ତି ବିଷ୍ଣୁଅଂଶ ସର୍ବଦାଏ ।
ତୁମର ବୁଦ୍ଧିବଳେ ତ ନ ପାରିଲ ତୋଳି
ତୁମେ ତୁମ ଫଳ ଘେନି ଗୃହେ ଯାଅ ଚଳି ।
ଯେ ଯାହାର ଫଳ ଘେନି ନଗ୍ରେ ଯାଅ ଏବେ
ଉଛୁର ହେଲା ଆମଙ୍କୁ ମାତା ଲୋଡୁଥିବେ ।
ଏତେ ବୋଲି ବ୍ରହ୍ମବୀଣା ବଜାଇ ନୃସିଂହ
ନଗ୍ରକୁ ଯେ ବିଜେକଲେ ସଖୀ ଘେନି ସଙ୍ଗ ।
ଯେ ଯାହାର ପୁରେ ଯାଇ ହେଲେ ପରବେଶ
ନୃସିଂହ ଶରଣ ମୁହିଁ ପୀତାମ୍ବର ଦାସ ।
ଜାତିରେ ବ୍ରାହ୍ମଣ ମୁହିଁ ଅଟେ ସଦା ମୂର୍ଖ
ବଳେ ମୋହସ୍ତେ ଲେଖାନ୍ତି ଏହା ପଦ୍ମମୁଖ ।
ସେ ପଦ୍ମମୁଖର ପ୍ରଭା ସ୍ୱଧା ମଧୁରୁଚି
ମୋ ଆଗେ ଦୃଶ୍ୟହୋଇ ସେ ଦେଲେ ବରଯାଚି ।
ଶୁକ୍ଳପକ୍ଷ ଶୁଦ୍ଧବର୍ଣ୍ଣ ଅତି ଶୋଭାମୂର୍ତ୍ତି
ବ୍ରହ୍ମାସ୍ୱରୂପ ଶତେକ ଆଦିତ୍ୟର ଜ୍ୟୋତି ।
ପୁଣ୍ଡରୀକ ପ୍ରାୟ ଦିଶେ ବେନି ଚକ୍ଷୁ ଡୋଳ
ତହିଁରୁ ଶତେ ଅଧିକା ଅଳକା କପୋଳ ।
ସୁପୀତ ବସନ କଟୀତଟେ ଶୋଭାବନ
ଦିଶେ ପଦ୍ମମୁଖ ଯେହ୍ନେ ଶାରଦୀୟ ଚନ୍ଦ୍ର ।
ଶ୍ରବଣ ଦେଶେ ମକର କୁଣ୍ଡଳ ବିରାଜେ
ଶଙ୍ଖ ଚକ୍ର ଗଦା ପଦ୍ମ ଶୋହେ ଚାରିଭୁଜେ ।
ଲମ୍ବଇ ହୃଦପଦ୍ମରେ କଉସ୍ତୁଭ ମଣି
ମଳିନ ଦିଶେ ତା ଆଗେ କୋଟି ସୂର୍ଯ୍ୟ ପୁଣି ।
ଭ୍ରୁଭଙ୍ଗୀରେ ଅନୁରାଗେ ଦିଶେ ପଦ୍ମମୁଖ
ଦର୍ଶନ କଲେ ହରଇ କୋଟିଜନ୍ମ ଦୁଃଖ ।
ହୃଦୟରେ ଫୁଟି ଦିଶେ ଶ୍ରୀବତ୍ସର ପ୍ରଭା
ବିଷ୍ଣୁଭଜନକୁ ସେହି ଭକ୍ତଙ୍କର ଆଭା ।

ଗରୁଡ଼ କନ୍ଧରେ ପ୍ରଭୁ ହୋଇଛନ୍ତି ବିଜେ
ନାନା ଅଳଙ୍କାର ମଣ୍ଡି ହୋଇ ଦେବରାଜେ ।
ଆଗେ ଉଭାହୋଇ ମୋତେ ଯାଚନ୍ତି ଯେ ବର
ବୋଲନ୍ତି ଯେ ନରସିଂହ ପୁରାଣ ତୁ କର ।
ଯେତେ ଏହି ଗ୍ରନ୍ଥେ ଜାଣ ବସୁଅଛି ପଦ
ମୁଁ ସିନା ଲେଖୁଅଛି ନ କର ମନେ ଖେଦ ।
ତୋର ମନକଥା ସବୁ ଅଛି ଭଲେ ଚିହ୍ନି
ଚଉଷଠି ଖଣ୍ଡ ଜ୍ଞାନେ ଅଟୁ ଜଣେ ଜ୍ଞାନୀ ।
ଏଥକୁ ତୁହି ନ ଘେନ ଦୋଷ ମନେ କିଛି
ମୋ ନାମରେ ହେତୁ ରଖି ବସା ପଦ ବାଛି ।
ଏରୂପେ ଆଜ୍ଞାଗୋଟି ଶ୍ରୀମୁଖୁ ଶୁଣିଲାରୁ
ତେଣୁ ମୁଁ ଲେଖେ ଏ ଗ୍ରନ୍ଥ ନୃସିଂହ କୃପାରୁ
ନୋହିଲେ ମୋହର ବଳେ ପାରନ୍ତିକି କରି
ସର୍ବଘଟରେ ଗୋବିନ୍ଦ ଅଛନ୍ତି ଯେ ପୁରି
ଏଣୁ ମୁହିଁ ସର୍ବ ଆତ୍ମା ଚରଣେ ଶରଣ
ବିପ୍ର ପୀତାମ୍ବରକୁ ଯେ ରଖ ନାରାୟଣ ।

❋ ❋ ❋

## କପାଳ ଶିଅଳର କଥା

ଏଥୁଅନନ୍ତରେ ସେହି ନାରଦ ମହର୍ଷି
ବ୍ରହ୍ମାଙ୍କ ପାଦରେ ନମି ପଚାରନ୍ତି ବସି ।
ବୋଇଲେ ପାଇଲେ ବ୍ୟାସ କାହୁଁ ଏଡ଼େ ମନ୍ତ୍ର
ତଳକୁ ଲୋଟଇ ତରୁ ପଢ଼ିଲେ ସେ ମନ୍ତ୍ର ।
ଏଥିର ସନ୍ଦେଶ ମୋତେ କହ ପୁରାଣରୁ
କାହୁଁ ଏ ମନ୍ତ୍ର ପାଇଲେ ବ୍ୟାସ କରି ଗୁରୁ ।
ଶୁଣିଣ କେବଣ ଗୁରୁ ମୁଖେ ଏହୁ ମନ୍ତ୍ର
ନୋହିଲେ କରଣୀ ବଳେ କଲେ କିଏ ଯନ୍ତ୍ର ।
ବ୍ରହ୍ମା ବୋଇଲେ ପୁଛିଲ ଯେବେ ତୁମ୍ଭେ ଜାଣ
ଗୁରୁମୁଖେ ନ ଶୁଣିଲେ ବିଦ୍ୟା ଅକାରଣ ।
ନୀଚଠାବରେ ଉତ୍ତମ ବିଦ୍ୟା ଯେବେ ଥିବ
ଗୁରୁ ପ୍ରାୟ ମଣି ତାକୁ ବିଦ୍ୟା ଘେନିଯିବ ।
ନୀଚଲୋକ ବୋଲି ତାକୁ ନ ବୋଲିବ ତୁଣ୍ଡେ
ସୁପଣ୍ଡିତଠାରୁ ସେହୁ ବଳଇ ବ୍ରହ୍ମାଣ୍ଡେ ।
ବ୍ୟାସଙ୍କର କଥା ତେବେ ଶୁଣ ସେ ସିଦ୍ଧାନ୍ତ
ଯେଉରୂପେ ଶୁଣିଲେ ଗୁରୁମୁଖେ ବେଦତତ୍ତ୍ୱ ।
ଏକଦିନେ ବେଦବ୍ୟାସ ଗଲେ ନଇମିଷ
ଦେଖିଲେ ଶିଅଳପତ୍ନୀ କରେ ବନବାସ ।
ଯେଉଁଠାରେ ନିତ୍ୟେ ବସା କରିଛି ସେ ଜାଣ
ଯୋଜନେଯାଏ ଖଜୁରି ନାମେ ଅଛି ବନ ।
ସେ ବନ ମଧ୍ୟରେ ଅଛି କୃପାଳୁ ଶିଅଳ
ବସିଛି ସୁବର୍ଣ୍ଣ ଭାଣ୍ଡ ଧରି ବୃକ୍ଷତଳ ।
ଖଜୁରିଠାରୁ ଶିଖରୁ ଭାଣ୍ଡ ଲମ୍ବିଅଛି
ବୃକ୍ଷରୁ ଦୋରୁଅ ଝରି ଭାଣ୍ଡରେ ପଶୁଛି ।
ସେ ଶିଅଳର ମହିମା କହିବା ହୋ ଶୁଣ
ବୃକ୍ଷଶିଖରୁ ଦୋରୁଅ ଆସେ ଯେମନ୍ତେଣ ।
ତଳେ ବସି ଶିଅଳ ପଢ଼ନ୍ତେ ମନ୍ତ୍ରଗୋଟି
ସେ ବୃକ୍ଷ ପଡ଼ଇ ସେହିକ୍ଷଣି ତଳେ ଲୋଟି ।
ତରୁଗୋଟି ଲୋଟନ୍ତେ ଶିଅଳ ଉଠିଯାଇ
ଭାଣ୍ଡରୁ ଦୋରୁଅ କାଢ଼ି ପୁଣି ବାନ୍ଧିଦେଇ ।
ଯା ଯା ବୃକ୍ଷ ବୋଲନ୍ତେ ସେ ବୃକ୍ଷ ଉଠିଯାଏ
ସେହି କଥା ଦେଖି ବ୍ୟାସ ଆଚମ୍ବିତ ହୁଏ ।
ଚମତ୍କାର ପାଇ ପୁଣି ହୃଦେ ବିଚାରିଲେ
କେତେ ଶାସ୍ତ୍ର ପଢ଼ି ଯେ ନ ଜାଣି ଏକାଭଲେ ।
ଖର ଚନ୍ଦନକାଠ ବହିବା ପ୍ରାୟ ହେଲା
ଚନ୍ଦନର ବାସନା କି ଜାଣଇ କି ଭଲା ।
ବହିବା କାର୍ଯ୍ୟକୁ ଖର ଜାଣଇ ସେ ମିତ୍ର
କି ହେବ ତତ୍ତ୍ୱ ନ ଜାଣି ପଢ଼େ ଏବେ ଶାସ୍ତ୍ର ।
ଏତେ ଶାସ୍ତ୍ର ପଢ଼ି ଆମ୍ଭେ କିଛି ଜାଣୁ ନାହିଁ
କେତେ ତତ୍ତ୍ୱ ମନ୍ତ୍ର ଏହି ଅଛି ଶିକ୍ଷା ପାଇ ।
ପୁଛିଲେ କହିବ ପରା ପଚାରିବା ଦେଖି
ଘେନିବା ଏହାକୁ ଗୁରୁ ପ୍ରାୟ ମନେ ରଖି ।
ଏତେକ ପାଞ୍ଚିଣ ବ୍ୟାସ ଗଲେ ତାର ପାଶ
ବୋଇଲେ ଶିଅଳ ଆହେ ନାମ ତୋର କିସ ।
କରଣି ତୋ ଦେଖି ଆମ୍ଭେ ଆସିଲୁ ଯେ ପୁଛି
ବୁଝିଲେ ତ ମନ୍ତ୍ରସିଦ୍ଧ ତୁମ୍ଭଠାରେ ଅଛି ।
ସବୁ ଶାସ୍ତ୍ର ପଢୁଅଛି ଏହା ପଢି ନାହିଁ
ଦୟାବହି ଏ ମନ୍ତ୍ରଟି ମୋତେ ଦେବ କହି ।
ଶିଅଳ ବୋଇଲେ କି କି ଶାସ୍ତ୍ର ପଢ଼ିଅଛ
ବ୍ୟାସ ବୋଲେ କହିବା ଯାହା ତୁମ୍ଭେ ପୁଛ ।
ଚାରିବେଦ ଷଡ଼ଶାସ୍ତ୍ର ନବ ବ୍ୟାକରଣ
ଛତିଶ ସୁମୃତି ଅଷ୍ଟାଦଶଯେ ପୁରାଣ ।
କାବ୍ୟ ନାଟକ ଜ୍ୟୋତିଷ ଆଦି ଅଳଙ୍କାର
ସ୍ତମ୍ଭନ ମୋହନ ବଶ୍ୟୋଚ୍ଚାଟନ ଆବର ।
ଗୋଟିକା ଅଞ୍ଜନ ଲୋପ୍ୟ ଧରଣ ଧାରଣ୍ୟ
କଉତୁକ ଚିନ୍ତାମଣି ଇତିହାସ ଜାଣ ।

ବେଦାନ୍ତ ଯୋଗାନ୍ତ ଆଉ ନାଗାନ୍ତ ସିଦ୍ଧାନ୍ତ
ଏହିରୂପେ କେତେ ଶାସ୍ତ୍ର ଆସଇ ଆଦ୍ୟନ୍ତ ।
ଶୁଣିଣ ଶିଅଳ ତାହା ଚମତ୍କୃତ ହେଲା
କହିବି ମୁଁ କିସ ବେଦବ୍ୟାସଙ୍କୁ ଭାବିଲା ।
ଏତେ ଶାସ୍ତ୍ର ଅଛି ଯାହାଙ୍କର ଜିହ୍ୱାଗ୍ରତେ
ମୁଁ କିସ ମନ୍ତ୍ର କହିବି ତାଙ୍କୁ ପଚାରନ୍ତେ ।
ତଥାପି କହନ୍ତି ମନ୍ତ୍ର ଓଁକାର ମନ୍ତ୍ରରୁ
ଯେମନ୍ତ କହଇ ସେହି ନୁହଇ କି ଗୁରୁ ।
ଏହି କଥାରୁ ତ ଭୟେ ଲାଗୁଛି ମୋ ମନେ
ଏତେକ ପାଞ୍ଚି ଶିଅଳ ଜଟିଳ ବଚନେ ।
ବୋଇଲେକ ଆହେ ବ୍ୟାସ ଶୁଣିମା ମୋ ବାଣୀ
ଉତ୍ତମ ଦିନେକ ବୁଝି ଆସିବ ହେ ପୁଣି ।
ତୁମ୍ଭଙ୍କୁ କହିବା ସେହି ଦିନ ଆମ୍ଭେ ମନ୍ତ୍ର
ପୁଛିଲେ ଆବଇ ପୁଣ ମୋର ନାମ ଗୋତ୍ର ।
କୃପାଳୁ ବୋଲି ମୋ ନାମ ଅଟଇଟି ଜାଣ
ଜନ୍ମିଛୁ ଆମ୍ଭେ ଶିଅଳ ଜାତିରେଟି ପୁଣ ।
ପୁତ୍ର ମୋହର ଗୋଟିଏ ଅଛଇଟି ପୁଣି
ଦେଇଛନ୍ତି ଦକ୍ଷ ନାମ ଜାତ ନାମ ଜାଣି ।
ଜାତିସ୍ମର ହୋଇ ଜନ୍ମିଅଛି ମୋର ସୁତ
ଶୁଣିଣ ଆଚ୍ଛା ବୋଇଲେ ବ୍ୟାସ ତପୋବନ୍ତ ।
ଶ୍ରଦ୍ଧାରେ ଶୁଣିଣ ବ୍ୟାସ ଗଲେ ତହୁଁ ଚଳି
ମନବୋଧ ହୋଇ ରହିଲେକ ବୋଲ ପାଳି ।
କିଛିଦିନ ଅନ୍ତେ ପୁଣି ବୁଝି ଦିନ ବାର
ସେହି ଶିଆଳଠାବକୁ ଗଲେ ମୁନିବର ।
ଦ୍ୱାରକୁ ଆସିଣ ତାକୁ ପଚାରନ୍ତେ ମୁନି
ଶିଅଳ ବାରତା ପୁଣି ଲୁଚିଲା ସେକ୍ଷଣି ।
ଅଜଣା ପ୍ରାୟହୋଇ ସେ ବନେ ଗଲା ଚଳି
ଏଥୁଅନ୍ତେ ଆସି ଶିଅଳର ପୁତ୍ର ମିଳି ।
ତାହାକୁ ଦେଖିଣ ବ୍ୟାସ ପୁଛିଲେ ଖବର
ବୋଇଲେ କେଣେ ଗଲା ହୋ ପିଅର ତୁମର ।
ଶୁଣିଣ ବୋଲେ ବତ୍ସ ସେ ବନେ ଗଲେ ଚଳି
ସନ୍ଧ୍ୟାକାଳକୁ ପ୍ରବେଶ ହେବେ ଗୃହେ ବୋଲି ।
ଖଜୁରି ଦୋରୁଅ ବହିଆଣି ଭାର କେତେ
ଆମର ଏ ଜୀବିକା ତ ଅଟଇ ଯୁକତେ ।
ଶୁଣି ବ୍ୟାସଋଷି ତହୁଁ ବାହୁଡ଼ିଣ ଗଲେ
ଦିନାକେତେ ଗଡ଼ାଇଣ ପୁଣି ସଜହେଲେ ।
ଭଲଦିନ ବୁଝିଗଲେ ସେ ଶିଅଳପଲ୍ଲୀ
ବ୍ୟାସ ମିଳନ୍ତେ କୃପାଳୁ ଗଲା ତହୁଁ ଚଳି ।
ଦେଖିଲେ ବସିଛି ପୁତ୍ର ଏକା ତାର ଦ୍ୱାରେ
କେମନ୍ତେ ଏକଥା ବୋଲି ପାଞ୍ଚିଲେ ମନରେ ।
ବ୍ୟାସବୋଲେ ଦକ୍ଷ କେଣେଗଲା ତୋର ବାପ
ସତ୍ୟବଚନ କହିଣ ହେଲା ପୁଣି ଗୋପ୍ୟ ।
ଦକ୍ଷବୋଇଲେ ଯେ ଯାଅ ଆସ ଏତେ ହୁଏ
ବାପନାହିଁ ବୋଲନ୍ତେ ସେ କ୍ଷଣେ ଚଳିଯାଏ ।
ବ୍ୟାସ ବୋଇଲେ କହିବା ଶୁଣ ଦକ୍ଷ ତୋତେ
ଦିନେ ଦେଖିଲୁଁ ତୋ ବାପ କଥା ଆଚମ୍ବିତେ ।
ଆମ୍ଭେ ଆସନ୍ତେ ଦେଖିଲୁ ତାକୁ ବୃକ୍ଷମୂଳେ
କିମନ୍ତ କଲା ପଡ଼ିଲା ବୃକ୍ଷ ନଇଁ ତଳେ ।
ଆମ୍ଭେ ସେ କଥା ଦେଖିଣ ଚମତ୍କାର ହେଲୁ
କହିବା ପରା ବୋଲି ଯେ ପଚାରି ବସିଲୁ ।
ସେ ବୋଲଇ ଭଲଦିନ ବୁଝି ତେବେ ଆସ
ଏରୂପେ କହନ୍ତେ ଆମ୍ଭେ ଆସୁ ତାର ପାଶ ।
ଶିଅଳପୁତ୍ର ବ୍ୟାସଙ୍କ ମୁଖୁଁ ଶୁଣି ହସି
ବୋଇଲା ଆସୁଛୁ ଏକଥାକୁ କେତେ ଋଷି ।
ଏବେ ତତପରେ ଆସି ବାହୁଡ଼ି ଗଲେଣି
ମୁହିଁ କହିବି ସେ ମନ୍ତ୍ର ଶୁଣିବାକୁ ମୁନି ।
ବ୍ୟାସ ବୋଇଲେ କହିବା ହେଉ ଆଚ୍ଛା ତେବେ
କାହିଁକି ବା ଆସଯାଅ ହେବା ବ୍ୟର୍ଥ ଆମ୍ଭେ ।
ଆପଣଙ୍କଠାରୁ ଶୁଣି ନିଶ୍ଚିନ୍ତ ହୋଇବା
ଗୁରୁଜ୍ଞାନ କରିଣ ତା ହୃଦେ ରଖିଥିବା ।
ଶୁଣି ବ୍ୟାସଙ୍କୁ ଶିଅଳପୁତ୍ର ଘେନିଗଲା
ଏକାନ୍ତ ସ୍ଥାନେ ବସାଇ ମନ୍ତ୍ର କହିଦେଲା ।
ସେ ମନ୍ତ୍ରର ନାମଗୋଟି ଅଟେ ବେଦତତ୍ତ୍ୱ
ନିର୍ମଳ ମନେ ବସି ସେ କହିଦେଲା ଗୁପ୍ତ ।
କାହାକୁ ଏ ବେଦମନ୍ତ୍ର ତତ୍ତ୍ୱ ନ ଆସଇ
ଯାହାକୁ ଆସେ ସାକ୍ଷାତେ ସେହି ବ୍ରହ୍ମଦେହୀ ।
ନୀଚଲୋକ ହୃଦୟରେ ଗୁଣ ଯେବେ ଥିବ
ଜମ୍ବୁନଦ ପରାୟେ ତାଠାରୁ ଗୁଣ ନେବ ।
ସେ ଲୋକର ଭଲମନ୍ଦ କାହାକୁ କି ଲୋଡ଼ା
କେତେ ରୂପେ ଏ ସଂସାରେ ଛନ୍ତି ବଡ଼ବଡ଼ା ।
ସୁପଣ୍ଡିତ ଲୋକମାନେ ଗୁଣ ଚିହ୍ନୁଥାନ୍ତି
ନୀଚଲୋକ ବୋଲି ଏହି ମନେ ନ ଘେନନ୍ତି ।
ବେଦବ୍ୟାସ ମନ୍ତ୍ର ଶୁଣି ହୋଇଲେ ସନ୍ତୋଷ
ତତ୍ତ୍ୱଭେଦ ପାଇଣ ସେ ଗଲେ ନିଜ ଦେଶ ।
ବାଟେ ଯାଉଁ ସେ ପାଞ୍ଚିଲେ ବିଡ଼ିବା ଯେ ଆଗ
କିରୂପରେ ବୃକ୍ଷ ନଇଁ ପଡ଼ିବ ଭୂଭାଗ ।

ଏହିରୂପେ ଭାବି ମୁନି ଚାହିଁଲେ ଚୌଦିଗେ
ଦେଖିଲେ ଫଳିଛି ନାରିକେଳ ବୃକ୍ଷ ଆଗେ ।
ଲମ୍ବିଛି ଦେଖିଲେ ବୃକ୍ଷଯାକ କେତେ ଫଳ
ମନ୍ତ୍ର ପଢ଼ି ଛୁଅନ୍ତେ ସେ ନଇଁପଡ଼େ ତଳ ।
ସେ କଥା ଦେଖିଣ ମୁନି ଚମତ୍କାର ହେଲେ
ଫଳ ଏକ ଗୋଟି ତୋଳି ହସ୍ତରେ ଧଇଲେ ।
ଯା ଯା ବୃକ୍ଷ ବୋଲନ୍ତେ ସେ ତରୁ ଗଲା ଉଠି
ଆକାଶେ ରହିଲା ଅଗ୍ର ଟେକି ଶୂନ୍ୟେ ଘୋଟ ।
ତାହା ଦେଖିକରି ବ୍ୟାସ ଆନନ୍ଦ ହୋଇଲେ
ମନ୍ତ୍ରସିଦ୍ଧ ହେଲା ବୋଲି ମନେ ବିଚାରିଲେ ।
ସେହିଠାରୁ ସେ ଦକ୍ଷକୁ ଗୁରୁ ପ୍ରାୟ ମାନି
ଆପଣା ଗୃହକୁ ଚଳିଗଲେ ମହାମୁନି ।
ବସିଲେ ଋଷିମାନଙ୍କୁ ଧରି ସଭାକରି
ଅଠାଶୀ ସହସ୍ରଯାଏ ଛନ୍ତି ତପଚାରୀ ।
ଗହ ଗହ ଶୁଭୁଅଛି ବ୍ୟାସ ମନ୍ଦିରେଣ
ଏଥୁଅନନ୍ତରେ ବାଣୀ ଶିଅଳର ପୁଣ ।
ଗୃହରେ ମିଳନ୍ତେ ହୋଇଅଛି ସନ୍ଧ୍ୟାକାଳ
ଖଜୁରି ଦୋରୁଅ ଧରି ମିଳିଲା ଶିଅଳ ।
ପୁତ୍ର ନାମ ଧରି ଦ୍ୱାରେ ଡ଼ାକଦେଲେ ରହି
ଦକ୍ଷ କୁମର ଆସିଲା ବେଗେ ଶୁଣି ଧାଇଁ ।
ପିତା କନ୍ଧୁ ଓହ୍ଲାଇଣ ଭାର ଦେଲା ଥୋଇ
ବ୍ୟାସଙ୍କର କଥା ଆଗ ବସିଣ କହଇ ।
ବୋଇଲା ତାତ ଶୁଣିମା ହେଉ ମୋର ବୋଲ
ବ୍ୟାସଙ୍କୁ କହିବାକୁ କି ବୋଧ ଦେଇଥିଲ ।
ସେ ଆସି ତୁମ୍ଭଙ୍କୁ ଦ୍ୱାରେ ରହି ପଚାରନ୍ତି
ଘରେ ନାହିଁ ବୋଇଲେ ସେ କ୍ଷଣେ ଚଳିଯାନ୍ତି ।
ପୁତ୍ର ବାଣୀ ଶୁଣି ଦେଲା ସେ କୃପାଳୁ ହସି
ମନ୍ତ୍ର କି ପଚାରି ମୋତେ ଆସିଥିଲେ ଋଷି ।
କି ବୋଲି ବ୍ୟାସଙ୍କୁ ମୁହିଁ କହନ୍ତି ଯେ ମନ୍ତ୍ର
କହିଦେଲେ ସେ ପ୍ରଘଟ ହୁଅନ୍ତା ଜଗତ ।
ତଥାପି ତାହାର ମୁଖୁଁ ପ୍ରକାଶିଛି ବେଦ
ମୋ ଛାର କେହ୍ନେ କହନ୍ତି ତାଙ୍କୁ ମନ୍ତ୍ରପଦ ।
ଏ ଘେନି ତାଙ୍କୁ ଦେଖିଲେ ମୁହିଁ ଲୁଚୁଥାଇ
ତଥାପି କହିଲେ ଗୁରୁ ହୋନ୍ତି ସିନା ମୁହିଁ ।
ମନ୍ତ୍ର କହିବା ଲୋକ କି ନୁହଇ ରେ ଗୁରୁ
ତେଣୁ ତାଙ୍କୁ ଲୁଚି ମୁହିଁ ପଳାଏ ଘରରୁ ।
ଦକ୍ଷ ବୋଇଲା ତାତ ମୁଁ ଦେଲି ଆଜ କହି
ତୁ ତାଙ୍କୁ ଲୁଚୁଛୁ ବୋଲି ମୁହିଁ ଜାଣେ ନାହିଁ ।
ତଥାପି ବ୍ୟାସ ପରା ଋଷିଙ୍କି ନ କହିଲେ
ଏ ସଂସାରୁ କିସ ବହି ନିଅନ୍ତାଇ ହେଲେ ।
ଶାସ୍ତ୍ର କହିବା କଥା ନ ମାନେ ଯେଉଁ ପ୍ରାଣୀ
ତାହାଙ୍କୁ ବ୍ରହ୍ମରାକ୍ଷସ ସଙ୍ଗତରେ ଗଣି ।
ଯଜମାନଙ୍କର ଯଜମାନଟି ହୋଇବ
ବେଦ ଯେବେ ପଢ଼ିବଟି ବେଦ ପଢ଼ାଇବ ।
ଦାନ ଯେବେ ଘେନିବଟି ଦାନ ତେବେ ଦେବ
ତେବେ ସେହି ପ୍ରାଣୀ ଜାଣ ସଂସାରୁ ତରିବ ।
କରନ୍ତି ଏ ତିନି କଥାରେଟି ଯେହୁ ଗୋପ୍ୟ
ସଂସାରେ ମଲେଟି ଜାଣ ହୁଅନ୍ତି ସେ ଗୋପ୍ୟ ।
ଆସି ଋଷି ପୁଚ୍ଛି ସିନା ବାହୁଡ଼ି ଯାଆନ୍ତେ
ତେଣୁ ବେଦତତ୍ତ୍ୱ ମନ୍ତ୍ର କହିଦେଲି ତତ୍ତ୍ୱେ ।
କୃପାଳୁ ବୋଇଲା ପୁତ୍ର କେଡ଼େ କର୍ମକଲୁ
ଏଡ଼େ ମନ୍ତ୍ର ଗୋପ୍ୟ ତୁକି ବୋଲି କହିଦେଲୁ ।
ବ୍ରହ୍ମା ଇନ୍ଦ୍ର ରୁଦ୍ରଙ୍କର ଅଜଣା ଯେ ମନ୍ତ୍ର
ତାହା କେଉଁପରି କହିଦେଲୁ ଆରେ ପୁତ୍ର ।
ତଥାପି ଦେଲୁ ସେ ମନ୍ତ୍ର ନୋହିବତ ସିଦ୍ଧି
ବଳେ ଯାଚିଦେଲେ କିରେ କାଟେ ମହୌଷଧି ।
ଯାଚି କହିଲେ କାହାକୁ ଯନ୍ତ୍ର ଆସଇକି
ଏତେକଥା ତୁହିରେ ନ ପାରିଲୁ ତରକି ।
ପୁତ୍ର ବୋଇଲା କାହିଁକି ନୁହନ୍ତା ଯେ ସିଦ୍ଧି
ପାଶୋରିବା ଲୋକଙ୍କର ହଜେ ସିନା ବୁଦ୍ଧି ।
ଆସିବା ପଦ ପାଶୋର କେବେ ଯାଇଛିକି
ପାଷାଣର ଗାର ପ୍ରାୟ ରୁହେ ମନେ ଆଙ୍କି ।
କୃପାଳୁ ବୋଇଲା ପୁତ୍ର ଏମନ୍ତ ନୁହଇ
ତହିଁର ମାର୍ଗର ତତ୍ତ୍ୱ ଦେବା ତୋତେ କହି
ମନ୍ତ୍ର କହିଦେବା ଲୋକ ନହେଁକିରେ ଗୁରୁ
ଯେମନ୍ତ ଘେନିଲ ଶିଷ୍ୟ ହୁଏ ସେହିଠାରୁ ।
ତୁହି ଯେ ଦେଲୁ ସେ ମନ୍ତ୍ର ଗୁରୁ ନୋହିଲୁକି
ତୋତେ ଗୁରୁକରି କେବେହେଁ ସେ ମାନିବେକି
ଦେଖିଲେ ଆଦର ଯେବେ କରିବେ ସେ ତୋତେ
ତେବେ ସେହି ମନ୍ତ୍ର ସିଦ୍ଧି ହେବ ହୃଦଗତେ ।
ତଥାପି ତ ବୁଝିଲେ ତୁ ପୁଣି ନୀଚଜାତି
ତେଣୁ ତୋତେ ବ୍ୟାସଦେବ ନ କରିବେ ଭକ୍ତି ।
ଭକ୍ତି ନ କରନ୍ତେ ମନ୍ତ୍ର ବିଫଳ ହୋଇବ
ଏ କଥା ସନ୍ଧି କହିଲୁ ତୋତେ ଜାଣ ଧ୍ରୁବ ।
ପୁତ୍ର ବୋଇଲା ହେ ବାପା ଚାଲ ତେବେଯିବା
ବ୍ୟାସଙ୍କୁ ଆଦର ବୁଝିକରି ଯେ ଆସିବା ।

କୃପାଳୁ ବୋଇଲା ପୁତ୍ର ଶୁଣ ସେ ସନ୍ଦେଶ
ତୋର ଶିଷ୍ୟର ଗୁଣକୁ ଯାଇ ବୁଝି ଆସ ।
କାଲି ପ୍ରଭାତରୁ ଉଠି ସ୍ନାନ ବେଗେକର
ଆଚାର ନିଷ୍ଠା ହୋଇଣ ଆରମ୍ଭେ ବାହାର ।
ଏମନ୍ତେ ହୁଅନ୍ତେ ପିତାପୁତ୍ରେ କଥା ବସି
ନିଶି ପାହିଗଲା ସୂର୍ଯ୍ୟ ଉଦେ ପୂର୍ବେ ବସି ।
ପିତାର ଯେ ଆଜ୍ଞା ପାଇ ପୁତ୍ର ହେଲା ସଜ
ବୋଇଲା ଦେଖିବି ଭାଗ୍ୟେଥିଲେ ବ୍ୟାସଆଜ ।
ସେ ବ୍ୟାସଋଷି ଅଟନ୍ତି ସ୍ୱୟଂ ବିଷ୍ଣୁରୂପ
ତାହାକୁ ଦର୍ଶନ କଲେ ଯିବ ମୋର ପାପ ।
ଭଲା ସେ ପିଅର ମୋର ଦେଲେ ପଠିଆଇ
ତାଙ୍କ କୃପାରୁ ଭେଟିବି ବ୍ୟାସମୁନି ଯାଇ ।
ଏ କଥା ସାଫଲ୍ୟ ମୋର ଅଟେ ମହାଭାଗ୍ୟ
ଦର୍ଶନ କରିବି ବ୍ୟାସଋଷିଙ୍କି ମୁଁ ଆଗ ।
ଏତେ କହି ଯାନ୍ତେ ବ୍ୟାସ ଆଶ୍ରମକୁ ଚଳି
ଦେଖିଲା ଋଷି ସଭାରେ ବ୍ୟାସ ଛନ୍ତି ମିଳି ।
ଭରସି ନ ଯାଇ ରହିଲାକ ଖଣ୍ଡଦୂରେ
ଚାହିଁଲେ ସେ ବ୍ୟାସଋଷି ଏଥୁଅନନ୍ତରେ ।
ମନେ ପାଞ୍ଚିଲେ ଅଟନ୍ତି ଏତ ଆମ୍ଭ ଗୁରୁ
କାହିଁକି ଆସନ୍ତି ବିଜେକରି ଏତେ ଦୂରୁ ।
ଆମ୍ଭେ ସମାଦର ଯେବେ ନ କରିବା ଯାଇ
ତକ୍ଷଣେ ସେ କୋପକରି ଯିବ ଆଡ଼ହୋଇ ।
ମନ୍ତ୍ର ଘେନି ଆମ୍ଭେ ଯେବେ ପୂଜା ନ କରିବା
ସୁକୃତ ହାନି ହୋଇବ ଲୋକେ ନିନ୍ଦ୍ୟହେବା ।
ଶିଅଳ ବୋଲି ପାଞ୍ଚିବା ଯେବେ ହୃଦଗତେ
ଘେନିମା ମନ୍ତ୍ରସିଦ୍ଧ ନ ହେବ କଦାଚିତେ ।
ମନ୍ତ୍ର ତ ବିଫଳ ହେବ ପୁଣ୍ୟ ନାଶଯିବ
ଏତେକ ପାଞ୍ଚି ସଭାରୁ ଉଠି ବ୍ୟାସଦେବ ।
ଋଷିମାନଙ୍କୁ ବୋଇଲେ ବସିଥାଅ ସର୍ବେ
ସାଧୁ ଆସୁଛନ୍ତି ଦରଶନ ଦେଇଯିବେ ।
ଏହିରୂପେ ବୋଲି ବ୍ୟାସ ଘେନିଣ ଆସନ
କମଣ୍ଡଳୁ ଜଳ ଧରି ଆସିଲେ ବହନ ।
କୃପାଳୁ ପୁତ୍ରର ପାଖେ ପ୍ରବେଶିଲେ ଯାଇ
କୃଷ୍ଣାଜିନ ଛାଲଗୋଟି ଦେଲେକ ପକାଇ ।
ଆସନରେ ବସାଇଣ ଦଣ୍ଡବତ କଲେ
ବେନିପାଦ ଧୋଇଦେଇ ଶିରେ ସିଞ୍ଚିଦେଲେ
ବେଦବ୍ୟାସ ଋଷି ମାନ୍ୟ ଦେଖିଣ ଶିଅଳ ।
ମନେ ମହାଭୟ କରି ଉଠିକଲା କୋଳ
ବୋଇଲା କାହିଁକି କଲ ମୋତେ ଦଣ୍ଡବତ
ପଦେ ମାତ୍ର ମନ୍ତ୍ର କହିଥିଲି ତୁମ୍ଭଙ୍କୁତ ।
ତଥାପି ପଦେ ମନ୍ତ୍ରକୁ ବ୍ୟାସ ପରା ଋଷି
ସିଞ୍ଚିଲେ ମୋ ଛାର ପାଦ ଧୋଇ ଶିରେ ଆସି ।
ବ୍ୟାସ ବୋଇଲେ ତୁମ୍ଭେ ଯେ ଗୁରୁହେଲ ମୋର
ଗୁରୁଦେବ ହୋଇ କିମ୍ପା ଘେନୁଛ ଅନ୍ତର ।
ମନ୍ତ୍ର ଘେନିଣ ଗୁରୁଙ୍କୁ ନ ମାନିବ ଯେବେ
ସୁକୃତ ହାନି ଅମୋକ୍ଷ ମରଇ ଯେ ତେବେ ।
ଶିଅଳ ବୋଲି ତୁମ୍ଭଙ୍କୁ ପାଞ୍ଚିବା କି ଚିତ୍ତେ
ଘେନିମା ମନ୍ତ୍ର ବିଫଳ ହେବ ଜାଣ ନିତ୍ୟେ ।
ଗୁରୁଙ୍କୁ ଦେଖିଣ ଶିଷ୍ୟ ଯେବେ ନ ମାନଇ
ଶତଜନ୍ମଯାଏ ସେହି ନର୍କେ ଜନ୍ମୁଥାଇ ।
ଗୁରୁଙ୍କୁ ଦର୍ଶନ କରି ନ ଦେଲେ ଦକ୍ଷିଣା
ସଂସାରେ ସେ ମହାମୂର୍ଖ ତୁଲେ ହୁଏ ଗଣା ।
ଗୁରୁଙ୍କୁ ଦେଖିଣ ଯେ ନ କରେ ନମସ୍କାର
ମହାଦରିଦ୍ର ହୋଇ ସେ ଜନ୍ମେ ଶତେବାର ।
ଗୁରୁଙ୍କୁ ଦେଖିଲେ ଯେହୁ ମଣେ ବିଷ୍ଣୁ ପ୍ରାୟେ
ତାହାର କନ୍ଧୁ ଲକ୍ଷ୍ମୀ ନ ଛାଡ଼େ ସର୍ବଦାଏ
ଦେହ ଅନ୍ତେ ବଇକୁଣ୍ଠ ଗତିକି ସେ ପାଇ
ଏମନ୍ତ ବୋଲି ଗୁରୁଙ୍କୁ ଆଗେ ବ୍ୟାଚା କହି ।
ଲକ୍ଷେକ କୋଟି ସୁବର୍ଣ୍ଣ ଦକ୍ଷିଣା ଯେ ଦେଲେ
ଲକ୍ଷେ ହୀରା ମୋତି ନେଇକରି ସମର୍ପିଲେ ।
ଗୁରୁଙ୍କୁ ମେଲାଣିକରି ଆସିଲେ ସେ ଚଳି
ସେ କୃପାଳୁ ପୁତ୍ର ଯାଇ ବାପା ଆଗେ ମିଳି ।
କୃପାଳୁ ବୋଇଲେ ରେ କି କଲେ କହ ବ୍ୟାସ
ଦକ୍ଷ ବୋଇଲା ବାପା ହେ କହିବି ମୁଁ କିସ ।
ବ୍ୟାସ କରିବା କଥା ତ ଅତି ଅଲୋକିତ
ଦେଖିଲାକ୍ଷଣି ମୋତେ ସେ କଲେ ଦଣ୍ଡବତ ।
ଆସନେ ବସାଇ ପାଦଧୋଇ ଦେଲେ ସିଞ୍ଚି
ଆଦରକରି ଦକ୍ଷିଣା ଦେଲେ ମୋତେ ଯାଚି ।
ପୁତ୍ର କହନ୍ତେ କୃପାଳୁ ହୋଇଲା ଛକିତ
ବୋଇଲା ମନ୍ତ୍ର ଯେ ତାକୁ ହେଲା ପରାପତ ।
ବ୍ୟାସଙ୍କ ମୁଖୁ ଯନ୍ତ୍ର ନ ଯାଇ ଜାଣ ଆଉ
ସର୍ବଦିନେ ଚିର ହୋଇ ରହିଲାଟି ସେହୁ ।
ଏରୂପେ ସେ ପିତାପୁତ୍ର କରନ୍ତି ବିଚାର
ଆସି ବିଷ୍ଣୁଙ୍କ ରଥ ଲାଗିଲା ଦ୍ୱାରେ ତାର ।
ଯେତେ ବିଷ୍ଣୁଗଣ ସେହି ରଥେ ଆସିଥିଲେ
କୃପାଳୁ କୁଟୁମ୍ବଯାକ ରଥେ ବସାଇଲେ ।

ଦକ୍ଷପୁତ୍ର ଲାଗି ସର୍ବେଗଲେ ମୋକ୍ଷହୋଇ
ମିଳିଲେ ବୈକୁଣ୍ଠପୁରେ ବିଷ୍ଣୁପାଶେ ଯାଇ ।
ବ୍ୟାସଙ୍କୁ ସେ ମନ୍ତ୍ରଦେଇ ଭବୁ ହେଲା ପାର୍
ନାରଦ ଶୁଣି ମଣିଲେ ତାହା ଚମତ୍କାର ।
ବ୍ରହ୍ମାଙ୍କୁ ବୋଇଲେ ମୋତେ ଲାଗିଲା ସଂଶୟ
କହିଲେ କେତେ ବହନ କଥା ଅପ୍ରମେୟ ।
ବେଦବ୍ୟାସ ପରା ଋଷି ନୀଚପାଦଧରି
ପାଇଲେ ପାଦଧୋଇଣ ଦଣ୍ଡବତକରି ।
ଶିଆଳର ମୂର୍ଦ୍ଧନା ନ ଗଲା କିମ୍ପା ଫାଟି
ଏଥିର ସନ୍ଧି କହିବା ମୋହେ ପରମେଷ୍ଠୀ ।
ଶିଆଳ ଛାର ଘେନିଲା ଋଷି ଦଣ୍ଡବତ
ଶରୀର ଜଳି ତାହାର ନ ଗଲା କେମନ୍ତ ।
ହସିଲେ ନାରଦ କାବ୍ୟ ଶୁଣି ବେଦବର
ବୋଇଲେ ଶୁଣହେ ପୂର୍ବ ଜନମ ତାହାର ।
ଶିଅଳ ବୋଲି ତାକୁ ମନେ ପାଞ୍ଚିଲ କି
ଧାତା ଜଣେ ଜନ୍ମିଥିଲା ଆସି ଏ ପୃଥ୍ୱୀକି ।
ଶାପରୁ ଶିଅଳ ଘରେ ଜନମିଲା ଆସି
ଶୁଣିଣ ନାରଦ ପୁଣି ପୁଚ୍ଛିଲେ ବିଶେଷି ।
ବୋଇଲେ ସଂସାରେ କେତେ ବ୍ରହ୍ମା ଛନ୍ତିକି
ତୁମ୍ଭଙ୍କୁ ଯେ ଜାଣୁ ଆମ୍ଭେ ନ ଜାଣୁ ଅଧିକି ।
ଧାତା ବୋଇଲେ ତେବେ ହୋ ବ୍ରହ୍ମା ନାମଶୁଣ
ଦକ୍ଷବ୍ରହ୍ମା ବୋଲି ଏକ ବ୍ରହ୍ମାଥିଲେ ପୁଣ ।
ଚତୁର୍ମୁଖ ବ୍ରହ୍ମା ସିନା ଆମ୍ଭେ ଅଟୁ ପୁଣି
ଶତମୁଖ ବୋଲି ଏକ ବ୍ରହ୍ମା ନାମ ଭଣି ।
ଆବର ସହସ୍ରେ ମୁଖ ବୋଲି ବ୍ରହ୍ମା ଜଣେ
କୋଟିମୁଖ ବ୍ରହ୍ମା ନାମ ବେଦର ବଖାଣେ ।
ଏମାନେ ତ ସେବା କରିଥାନ୍ତି ବିଷ୍ଣୁ ପାଶେ
ଷୋଡ଼ଶ ଉପଚାରରେ ପୂଜାବିଧି ରସେ ।
ଦିନ ବାଣ୍ଟିଣ ବ୍ରହ୍ମା ବରଷଯାକ ସେବେ
ଏରୂପେ ଯେ ବାରମାସ ପୂଜେ ବିଷ୍ଣୁଠାବେ ।
ଆସନ ସ୍ୱାଗତ ପାଦ୍ୟ ଅର୍ଘ୍ୟ ଆଚମନ
ଗନ୍ଧ ପୁଷ୍ପ ଧୂପ ଦୀପ ନୈବେଦ୍ୟ ଚନ୍ଦନ ।
ମହାସଂସ୍କାରେ ବିଷ୍ଣୁଙ୍କ ମନ୍ଦିରେ ଥାଆନ୍ତି
ଏକଦିନେ ଦକ୍ଷବ୍ରହ୍ମା କଲେକ ଅନୀତି ।
କୌତୁକ ଭାବେ ବିଜୟା କିଛି ଦେଲେ ଖାଇ
ବସିଲେକ ପୂଜାକରି ବିଷ୍ଣୁ ପାଶେ ଯାଇ ।
ମନ୍ତ୍ର ପଢ଼ନ୍ତେ ଅକ୍ଷର ଗୋଟି ଗଲେ ହୁଡ଼ି
ମହାବଳ ହୋଇ ହସ୍ତୁ ଦେଲେ ଜଳ ଛାଡ଼ି ।
ଅକ୍ଷର ହୁଡ଼ନ୍ତେ ତାହା ଜାଣି ନାରାୟଣ
ବୋଇଲେ ପୂଜା ତୁହି ନ କର ମୋତେ ପୁଣ ।
ଖାଇଣ ଗୁଡ଼ ଗଞ୍ଜାଇ ଭୋଳ ଏଡ଼େ ହେଲୁ
ଷୋଡ଼ଶ ପୂଜାରୁ ମୋର ଅକ୍ଷର ଛାଡ଼ିଲୁ ।
ଏହି ଦୋଷୁ ତୁହି ଜାତ ହୁଅ ମଞ୍ଚପୁରେ
ଶିଅଳ ହୁଅ ମର୍ତ୍ତ୍ୟରେ ଅଛବର ଘରେ ।
ତାହା ଶୁଣି ଦକ୍ଷବ୍ରହ୍ମା ହୋଇଲେ ଆକୁଳ
ସେବିଲେ ସୁବୁଦ୍ଧି ମନ ହୋଇ ପାଦତଳ ।
ବୋଇଲେ କରିବା ପ୍ରଭୁ ମୋର ଦୋଷ କ୍ଷମା
ନ ଜାଣି ଏ ଅପରାଧ ଅର୍ଜିଲି ମୁଁ ବ୍ରହ୍ମା ।
ବିଷ୍ଣୁ ବୋଇଲେ ଅଜ୍ଞାତ ଗଲାଣି ମୋ ଫିଟି
ତାହା କେ ଆନ କରିବ ଏହି ନବ୍ସୃଷ୍ଟି ।
ଆଜ୍ଞା ଘେନି ଏବେ ମଞ୍ଚପୁରେ ଜନ୍ମହୁଅ
ଦିନ କେତେ ରହି ମନ୍ତ୍ର ବ୍ୟାସଙ୍କୁ ତୁ ଦିଅ ।
ସେ ମନ୍ତ୍ରକୁ ମଧ ଶୁଣିଯାଅ ମୋ ଶ୍ରୀମୁଖୁ
ବେଦର ତତ୍ତ୍ୱ କହିଣ ଦେଉଛି ତୁମ୍ଭଙ୍କୁ ।
ଏତେ ବୋଲି କର୍ଣ୍ଣେ ମନ୍ତ୍ର ଦେଲେ ପ୍ରଭୁ କହି
ବ୍ୟାସ ଶୁଣିଲାଯାଏ ଯେ ଥାଉ ହେତୁ ରହି ।
ଏ ମନ୍ତ୍ରଟି ତୁମ୍ଭଠାରୁ ନେବେ ଦେବବ୍ୟାସ
ତେବେ ତୁମ୍ଭ ଅଙ୍ଗୁଯାଇ ଖଣ୍ଡିବ କଲ୍ମଷ ।
ଉଚ୍ଚଲୋକ ଯେବେ ନୀଚ ଲୋକକୁଟି ମାନେ
ମୋକ୍ଷ ହୋଇଣ ଯେ ନୀଚ ଚଳେ ବିଷ୍ଣୁସ୍ଥାନେ ।
ସେହିଠାରେ ନୀଚଲୋକ ଲଭଇ ସୁକର୍ମା
ଏକଥାଟି ସତ ବୋଲି ବୋଇଲେକ ବ୍ରହ୍ମା ।
ଏଣୁଟି ତୁମ୍ଭେ ଜନମିଥିବ ନୀଚକୂଳେ
ବ୍ୟାସ ମାନ୍ୟ କଲାରୁ ଯେ ଆସି ବିଷ୍ଣୁ ଆଳେ ।
ନୀଚକୂଳେ ଜନ୍ମିବାର ଦୋଷ ଯିବ କ୍ଷୟ
ଶୁଣ ଆହେ ଦକ୍ଷବ୍ରହ୍ମା କହେ ଦେବରାୟ ।
ଲେଉଟି ସେବିବ ବ୍ରହ୍ମା ହୋଇ ମୋତେ ଆସି
ଏରୂପେ କହିଣ ଆଜ୍ଞାଦେଲେ ବ୍ରହ୍ମରାଶି ।
ପୁଣି ଦକ୍ଷବ୍ରହ୍ମା ହୋଇଗଲେ ଅନ୍ତରାଳ
ବିଷ୍ଣୁ ବୋଲେ ମଞ୍ଚେ ଯାଇ ହୋଇଲେ ଶିଅଳ ।
ଶୁଣି ନାରଦ କହନ୍ତି ତ୍ରିଲୋକର ଈଶ
ଏ ଘେନିଣ ଶିଅଳକୁ ନମିଲେ ଯେ ବ୍ୟାସ
ବିଷ୍ଣୁ ଶାପରୁ ଶିଅଳ ବ୍ରହ୍ମା ହୋଇଥିଲେ
ବ୍ୟାସଙ୍କୁ ମନ୍ତ୍ରଦେଇଣ କୃତାର୍ଥ ହୋଇଲେ ।
ଶୁଣି ଫିଟିଗଲା ନାରଦଙ୍କ ମନଭ୍ରାନ୍ତି
ଲକ୍ଷ୍ମୀନୃସିଂହ ଶରଣ ଲକ୍ଷ୍ମୀଧର ନାତି ।

ଜାତିରେ ବ୍ରାହ୍ମଣ ମୁହିଁ ଅଟେ ଯଜୁର୍ବେଦୀ
ପ୍ରଭୁ ଆଜ୍ଞାରେ ଲେଖଇ ପୁରାଣ ସମ୍ପାଦି ।
ପନ୍ଦର ସହସ୍ର ଶ୍ଳୋକ ନୃସିଂହ ପୁରାଣ
ମୋହର ହସ୍ତେ ଲେଖାନ୍ତି ପ୍ରଭୁ ନାରାୟଣ ।
ଯେତେ ମାନବ ଅଛନ୍ତି ଏ ସଂସାରେ ପୁରି
ତାହାଙ୍କ ସଙ୍ଗେ ମୁଁ ଅଟେ ଜଣେ ଦେହଧାରୀ ।
ସବୁ ମନରୁ ମୋ ମନ ଅଟଇ କି ବଡ଼
ଏଣୁ ଗ୍ରନ୍ଥ ଲେଖିବାକୁ ଲାଗେ ମୋତେ ଗାଢ଼ ।
ସବୁରି ମନ ନେଇ ମୋ ମନ ଦେଖିବାରୁ
ତେଣୁ ମୁହିଁ ପଦ ବାନ୍ଧେ ସବୁରି କୃପାରୁ ।
ମହୀରେ ମାନବେ ଯେତେ ଅଛନ୍ତି ଗଣିତା
ମୁଁ ତାଙ୍କ କନିଷ୍ଠ ପୁତ୍ର ଅଟେ କୁଳଜ୍ଞତା ।
ପିତାର ଦୟା କନିଷ୍ଠ ପୁତ୍ରଠାରେ ଥାଇ
ରଖିବେ ପୀତାମ୍ବରଙ୍କୁ ପ୍ରଭୁ ଲକ୍ଷ୍ମୀସାଇଁ ।

* * *

## ନୃସିଂହଙ୍କ ବ୍ରତବିଧି

ଶୁଣହେ ପରୀକ୍ଷ ନୃସିଂହ ବାଲ୍ୟଲୀଳା
ନବ ବରଷ ପ୍ରଭୁଙ୍କୁ ସମ୍ପୂର୍ଣ୍ଣ ହୋଇଲା ।
ନୃସିଂହ ବ୍ରତର ବିଧି କହିବା ହୋ ଶୁଣ
ମୁଖେ ଉଚ୍ଚାରି ପବିତ୍ର ହେବି ତାହା ଜାଣ ।
ତୁହି ମୋକ୍ଷହେବୁ ଆମ୍ଭେ କୃତାର୍ଥ ହୋଇବୁ
ବେନିକୁଳ ବଂଶ ତରିଯିବା ସ୍ୱର୍ଗେ ବାବୁ ।
ଶୁଣିଣ ପରୀକ୍ଷରାଜା ଦଣ୍ଡବତ କଲେ
କୃତକୃତ୍ୟ ହୋଇ ପ୍ରଭୁ ବ୍ରତ ପଚାରିଲେ ।
ଶୁକଦେବ ବୋଇଲେ ହେ ଶୁଣ ନୃପଶ୍ରୋତା
ନାରଦଙ୍କୁ ଯାହା କହିଅଛନ୍ତି ବିଧାତା ।
ସେହି କଥାଯାକ ଏବେ ସାବଧାନେ ଶୁଣ
ପ୍ରଭୁଙ୍କର ବ୍ରତବିଧି ହେଲା ଯେମନ୍ତେଣ ।
ନାରଦ ବୋଇଲେ ସ୍ୱାମୀ ଶୁଣ ପିତାମହ
ନୃସିଂହ ପ୍ରଭୁଙ୍କ ବ୍ରତବିଧି ଏବେ କହ ।
କେଉଁ ବିଧିରେ ନୃସିଂହ ବ୍ରତ ପୁଣି ହେଲେ
ତାହା ସଂକ୍ଷେପି କହିବ ହେଉ ମୋତେ ଭଲେ ।
ଧାତା ବୋଇଲେ କହିବା ତେବେ ତୁମ୍ଭେ ଶୁଣ
ଶ୍ରୀନୃସିଂହ ପ୍ରଭୁ ବ୍ରତ ହେଲେ ଯେମନ୍ତେଣ ।
କୃଷ୍ଣବଲ୍ଲଭ ଯେ ବିପ୍ରମାନଙ୍କୁ ଡକାଇ
ପୁତ୍ରଙ୍କର ବ୍ରତଯୋଗ ବୁଝିଲେ ବସାଇ ।
ରବିଶୁଦ୍ଧି ଗୁରୁଶୁଦ୍ଧି ବାର ଚନ୍ଦ୍ରଶୁଦ୍ଧି
କହିଲେ ବିଦ୍ୱାନ ଜନେ ଲଗ୍ନ କୋଷ୍ଠି ସାଧି ।
କୃଷ୍ଣ ଶୁକ୍ଳପକ୍ଷ ଦଶମୀ ଯେ ଗୁରୁବାର
ସେହି ଦିନ ବ୍ରତଯୋଗ ହେଲା ପୁତ୍ରଙ୍କର ।
ଏହିରୂପେ ବିପ୍ରମାନ କହି ବ୍ରତଯୋଗ
ମେଲାଣି ହୋଇ ଚଳିଲେ ଯେ ଯାହାର ମାର୍ଗ ।
କୃଷ୍ଣବଲ୍ଲଭ ରାଜନ ଶୁଣି ମନେ ତୋଷ
ଭିତରପୁରେ ଯାଇଣ ହୋଇଲେ ପ୍ରବେଶ ।
ଆସନେ ବସି ରାଣୀକି ପାଶେ ହକାରଇ
କହନ୍ତି ପୁତ୍ରଙ୍କ ବ୍ରତଯୋଗ ଶ୍ରଦ୍ଧା ବହି ।
ବୋଇଲେ ସଖି ବୁଝିଲି ଆଜ ବ୍ରତବିଧି
ଏହିକ୍ଷଣି ବିପ୍ରେ କହିଗଲେ ଯୋଗସିଦ୍ଧି
ଶୁଣି ଭଗବତୀ ଆନନ୍ଦିତାମନା ହେଲେ
ପୁତ୍ରକୁ କୋଳରେ ଧରି ଗଣ୍ଡେ ଚୁମ୍ବଦେଲେ ।
ସ୍ୱାମୀଙ୍କୁ ବୋଇଲେ କହ ହେବ କେଉଁ ଦିନ
ଜଣାହେଲେ ସିନା ନିର୍ଭା କରିବା ଉପନ ।
ବଲ୍ଲଭ ବୋଇଲେ ଆଉ ପାଞ୍ଚଦିନ ଅଛି
କୃଷ୍ଣ ଶୁକ୍ଳ ଦଶମୀରେ ବ୍ରତ ଯୋଗାଉଛି ।
ଏମନ୍ତ ହୁଅନ୍ତେ ରାଜା ରାଣୀ କଥା ବସି
ଚୌଷଠି ସହସ୍ରକନ୍ୟା ପ୍ରବେଶିଲେ ଆସି ।
ନୃସିଂହଙ୍କ ବ୍ରତବିଧି କଥାମାନ ଶୁଣି
ଅଣ ଉସବେ ଉସବ କଲେ ସେ ତରୁଣୀ ।
ହୁଳହୁଳି ଦେଇ ଗୀତ ଆନନ୍ଦରେ ଗାନ୍ତି
କେହୁ ଆଖିପତା ମାରି ଈଷତ ହସନ୍ତି ।
କେ ବୋଲେଗୋ ଆଜଠାରୁ ହେଲା ବ୍ରତଭୋଜି
ପ୍ରଭୁଙ୍କୁ ଗନ୍ଧାଧିବାସେ ବେଦୀରେ ଯେ ପୂଜି ।
କେ ବୋଲଇ ଭଗବତୀମାତା କେଡ଼େ ହେଳ
କେବକୁ କରିବେ ସବୁ ଯୋଗାଡ଼ ସଙ୍ଖୋଳ ।
କେ ବୋଲେ ବୁଝିଲେ ଆଗେ ଅଛି ପାଞ୍ଚରାତି
କ୍ଷଣକେ ତା ନିର୍ଭା କରିଦେବ ଭଗବତୀ ।
କେ ବୋଲଇ ତାଙ୍କୁ ଏହା କେତେକ ମାତର
ଯାହାର ଅଟନ୍ତି ପୁତ୍ର ବ୍ରହ୍ମାଣ୍ଡ ଠାକୁର ।
ଭଗବତୀଙ୍କ ଭାଗ୍ୟକୁ ପୁତ୍ର ଭଗବାନ
ଅନ୍ୟ ସ୍ତିରୀ ଗର୍ଭେ ହରି ନୁହନ୍ତି ଜନମ ।
ଏତେବୋଲି କନ୍ୟା ବ୍ରତ ଉସବ ଯେ କଲେ
ପୁରେ ବିଷ୍ଣୁଙ୍କ ପ୍ରତିମା ଝୋଟିମାନ ଦେଲେ
ଘରେଘରେ ପୁରେ ପୁରେ ଲମ୍ବଇ ସୁବର୍ଣ୍ଣ
ଯଜ୍ଞବେଦୀକି ମଣ୍ଡିଲେ ଯତ୍ନେ ସ୍ତିରୀରତ୍ନ ।

ସ୍ଥାପିଲେ ନୃସିଂହମୂର୍ତ୍ତି ତହିଁ ଲକ୍ଷ ଲକ୍ଷ
ଯାହାକୁ ଦେଖିଲାମାତ୍ରେ ହେବ ପ୍ରାଣୀ ମୋକ୍ଷ ।
ଦଶଅବତାର ମୂର୍ତ୍ତି ସ୍ଥାପନା ଯେ କଲେ
ସେ ମୂର୍ତ୍ତି ନାମ କହିବା ଶୁଣ ଆହୋଭଲେ ।
ମତ୍ସ୍ୟ କୂର୍ମ ଯେ ବରାହ ନୃସିଂହ ବାମନ
ପର୍ଶୁରାମ ଶ୍ରୀରାମ ଯେ କୃଷ୍ଣ ସଙ୍କର୍ଷଣ ।
ବୌଦ୍ଧ କଲ୍କି ମିଶିଣ ଯେ ଦଶଅବତାର
ଏହି ପ୍ରତିମା ଲେଖନ୍ତି ପୁର ଘରଦ୍ୱାର ।
ବଦ୍ରିକା ଆଶ୍ରମୁଁ ଯଜ୍ଞଦେବୀଯାଏଁ ବୋଲି
କର୍ପୁରଗୁଣ୍ଡି ସିଞ୍ଚନ୍ତି ଝାଡ଼ିଦେଇ ବାଲି ।
ବେଦୀ ଚାରିପାଖଯାକେ ମଣ୍ଡିଲେ ବନିତା
ହୀରା ନୀଳା ବଇଦୁର୍ଯ୍ୟ ମଣ୍ଡିଲେ ମୁକୁତା ।
ଇନ୍ଦ୍ର ଗୋବିନ୍ଦ ଚାନ୍ଦୁଆ ଉପରେ ଆଚ୍ଛାଦି
ଲକ୍ଷେ ଚାମର କଳସ ବସେ ଯଜ୍ଞବେଦୀ ।
ନେତର ଚିରାଳମାନ ଉଡ଼େ କୋଟି କୋଟି
ଲମ୍ବାନ୍ତେ ମୁକୁତାଝରା ରାଜେ ନବସୃଷ୍ଟି ।
ସୁବର୍ଣ୍ଣର ପୂର୍ଣ୍ଣକୁମ୍ଭମାନ ତ ସଜାଡ଼ି
ଯଜ୍ଞବେଦୀ ମଣ୍ଡପରେ ବସେ ଧାଡ଼ି ଧାଡ଼ି ।
ବେଦୀକୁ ଉଠିଯିବାକୁ ସୁବର୍ଣ୍ଣ ପାବଚ୍ଛ
ମଣ୍ଡନ୍ତି ସ୍ତିରୀଗଣେ କି ଦେବା ତହିଁ ଲକ୍ଷ୍ୟ ।
ଅନେକ ଯୁବତୀ ନୃସିଂହଙ୍କ ପାଶେ ଖଟି
ଚାମର ଢାଳନ୍ତି କେହି ପକାନ୍ତି ଆଲଟି ।
ପୁଷ୍ପବିଞ୍ଚଣା ଧରି କେ ବିଞ୍ଚଇ ଶ୍ରୀଅଙ୍ଗେ
କେହୁ ଉଭା ହୋଇକରି ଚାହାନ୍ତି ଅପାଙ୍ଗେ
କେ ବସି ଛାମୁରେ ଗୀତଗାଏ ଟେକି ବାଣୀ
କେ ବୀଣା ବଜାଇ ହସାଇ କେ ଚକ୍ରପାଣି ।
କେ ଆଳାପ କରଇ କେ ତାଳକୁ ବଜାଇ
ମହ୍ଲାର ରାଗରେ କେହୁ ବସି ଗୀତଗାଇ ।
କେବଣ ସ୍ତିରୀ ବଜାନ୍ତି ବସି କରତାଳି
ମଙ୍ଗଳ ନୋହୁଁ ଦିଅନ୍ତି କେହୁ ହୁଳହୁଳି ।
ଏଥୁଅନନ୍ତରେ କୃଷ୍ଣବଲ୍ଲଭ ଯେ ରାଜା
ମନ୍ତ୍ରୀକି ବୋଲେ ଯୋଗାଡ଼କର ବେଗେଖଞ୍ଜା ।
ନୃସିଂହ ଶେଷଦେବଙ୍କୁ ଯେ କରିବା ବ୍ରତ
ଶ୍ରୀଯଜ୍ଞବେଦୀରେ ନେଇ ଥୁଅନ୍ତୁ ଯାବତ ।
ଶୁଣିଣ ସୁଜାଣ ମନ୍ତ୍ରୀ ଆଜ୍ଞା ପରମାଣେ
ବ୍ରତର ଯୋଗାଡ଼ ଯାକ ଥୋଇଲେ ତକ୍ଷଣେ ।
ଏଥୁଅନ୍ତେ ଦଶମୀ ଯେ ହୋଇଲା ପ୍ରବେଶ
କହିବା ଶୁଣହୋ ଏବେ ବ୍ରତକଥା ରସ ।

ନିତ୍ୟକର୍ମ ଅନ୍ତେ ରାଜା ବେଦୀରେ ଯେ ବସି
ସୁବେଦୀ ବିପ୍ରେ ସେ ତହିଁ ପ୍ରବେଶିଲେ ଆସି ।
ବସିଲେ ଆସନମାନ ପାଇ ଯେଝାମତେ
ପଢ଼ନ୍ତି ଯେ ମନ୍ତ୍ରଭାଗ ଉଚ୍ଚାରି ସମସ୍ତେ ।
ସ୍ତିରୀଙ୍କର ହୁଳହୁଳି ବିପ୍ର ବେଦଧ୍ୱନି
ମାଗଧପୁତ୍ରେ ବଜାନ୍ତି କରେ ଶଙ୍ଖ ଘେନି ।
ମଙ୍ଗଳ ଗୁଜ୍ଜରୀ ରାଗେ ବଜାଇ ମହୁରୀ
ଭାଟ କଏବାର କରନ୍ତି ଯେ ପଟୁଆରି ।
ନାଚନ୍ତି ଯେ ବେଶ୍ୟାଗଣ କରି ବୀଣାନାଦ
ବଜାଇଣ କୋଳାହଳେ ନାନାବର୍ଣ୍ଣେ ବାଦ୍ୟ ।
ବାଜେ ଲକ୍ଷ ଲକ୍ଷ ବୀରକାହାଳୀ ଯେ ଆଗେ
ଲକ୍ଷେକ ଶଙ୍ଖ ଶବଦ ଶୁଭେ ଚଉଦିଗେ ।
ଏକଲକ୍ଷ କରତାଳ ବାଜେ ଘନ ଘନ
ପଢ଼ନ୍ତି ଲକ୍ଷେକ ବିପ୍ର ବସି ବେଦମାନ ।
ଶ୍ରୀନୃସିଂହ ବ୍ରତବିଧି କର୍ମ ଧର୍ମ ଯେତେ
କେ ତାହା ସଂଖ୍ୟା କରିଣ ଲେଖିବ ଜଗତେ ।
ବିପ୍ରବେଦ ଶଙ୍ଖ ହୁଳହୁଳି ଉଚ୍ଚବାଣୀ
ବ୍ରହ୍ମାଙ୍କର କର୍ଣ୍ଣେ ଯାଇ ଶୁଭିଲା ତା ପୁଣି ।
କିସ ଶବ୍ଦ ବୋଲି ପିତା ବସିକଲେ ଧ୍ୟାନ
ନୃସିଂହଙ୍କ ବ୍ରତ ବୋଲି ଜାଣି ପଦ୍ମାସନ ।
ହଂସବାହନେ ଆସିଲେ ବ୍ରହ୍ମା ତହୁଁ ଚଳି
ବଦରିକା ନଗ୍ରମଧ୍ୟେ ଜାଣ ଗଲେ ମିଳି ।
ଯଜ୍ଞବେଦୀକି ଯେ ଚଳିଗଲେ ପିତାମହ
ଦେଖି କୃଷ୍ଣବଲ୍ଲଭର ଉଲ୍ଲସିଲା ଦେହ ।
ଶୁଟିଲେ ବ୍ରହ୍ମାଙ୍କ ପାଶେ ଆସି ପାଦେ ପଡ଼ି
ଆସନେ ବସାଇ ପୁଣି କର ଦୁଇ ଯୋଡ଼ି ।
ବୋଲନ୍ତି ପୁତ୍ରେ ମୋହର ହେବେ ବ୍ରତ ଆଜ
ଆପଣ ଯେ ବିଜେକଲେ ହେଲା ବଡ଼ କାର୍ଯ୍ୟ ।
ପୁତ୍ରଙ୍କୁ ବ୍ରତ ମୋହର କରିବାକ ବସି
ଶୁଣି ବେଦବର କଲେ ପ୍ରଶଂସା ଯେ ହସି ।
ବୋଇଲେ ଧନ୍ୟହେ ରାଜା ଜୀବନ ତୋ ଧନ୍ୟ
ପାଇଅଛ ପୁତ୍ରକରି ସ୍ୱୟଂ ଭଗବାନ ।
ପିତାର ଆଗରେ ପୁତ୍ର ଯେବେ ଯୋଗ୍ୟ ହୋଇ
ତାହାଠାରୁ ଭାଗ୍ୟବନ୍ତ ଭବେ କେହି ନାହିଁ ।
ଶାଶୁ ଆଗେ କୁଳବଧୂ ହୁଏ ଯେବେ ଯୋଗ୍ୟ
ସ୍ତିରୀକୁଳଯାକ ତାକୁ ବୋଲି ମହାଭାଗ୍ୟ ।
ସୁବନ୍ଧୁ ଆଗରେ ବନ୍ଧୁ ବାକ୍ୟ ଯେବେ କହି
କୋଟି ସାଧୁଗୁଣର ତା ଗୁଣ ଶ୍ରେଷ୍ଠ ହୋଇ ।

କୃଷିକାରୀ ଲୋକ ଯେବେ କରେ ଶସ୍ୟଜାତ
ଦେବତା ବ୍ରାହ୍ମଣେ ଦେଲେ ହୁଏ ସେ ବର୍ଦ୍ଧିତ ।
ପତି ଆଗେ ପତ୍ନୀ ଯେବେ ହୁଏ ସତ୍ୟବାଦୀ
ମିତ୍ରଠାରେ ମିତ୍ରର ନ ଥାଇ କୂଟ ଯଦି ।
ସଭା ମଧ୍ୟେ ଯେଉଁ ପ୍ରାଣୀ ମିଛ ନ କହଇ
ତାଠାରୁ ପଣ୍ଡିତଜନ ସଂସାରେ କେ ନାହିଁ ।
ସାଧୁଲୋକ ଆଗେ ଯେହୁ କହେ ଗର୍ବକରି
ତାଠାରୁ କେ ମହାପାପୀ ନାହିଁ ତିନିପୁରୀ ।
ପତିବ୍ରତା ସ୍ତିରୀ ଯେବେ ହୁଏ ପୁତ୍ରବତୀ
ତ୍ରିଭୁବନେ ତାହାଠାରୁ ନାହିଁ ଭାଗ୍ୟବତୀ ।
ଧନବନ୍ତ ଲୋକ ଯେବେ ଗର୍ବିତ ନୁହଇ
ତାହାକୁଟି ଭାଗ୍ୟବନ୍ତ ସଂସାରରେ କହି ।
ଯେଉଁ ପୁରୁଷର ଜାଣ ସନ୍ତାନ ନ ଥାଇ
ସଂସାରେ ସେ କୁପୁରୁଷ ତୁଲେ ଗଣାହୋଇ ।
ତୁ କୃଷ୍ଣବଲ୍ଲଭ ରାଜା ବଡ଼ ଭାଗ୍ୟବନ୍ତ
ପ୍ରତ୍ୟକ୍ଷେ ବିଷ୍ଣୁଙ୍କୁ ପୁତ୍ରରୂପେ କଲୁ ଜାତ ।
ରାଜା ବୋଇଲେ ବ୍ରହ୍ମା ଏ ତୁମ୍ଭର ପ୍ରସାଦେ
ଶ୍ରୀଗୋବିନ୍ଦ ଦୟାକରି ଅଛନ୍ତି ଆନନ୍ଦେ ।
ଆପଣଙ୍କ ଆଗେ କିସ କହିବି ମୁଁ ପୁଣି
କେତେ ଭାଗ୍ୟରେ ପ୍ରଶଂସା ଲଭଇ ପରାଣୀ ।
ଶରୀରକୁ ବହି ଯେବେ ବିଷ୍ଣୁ ନ ଭଜଇ
ରାଜା ହୋଇକରି ଯେବେ ପ୍ରଜା ନ ପାଳଇ ।
ଦରିଦ୍ର ହୋଇଣ ଯେବେ ଲୋଡ଼େ ନାନାଭୋଗ
ଶୁଦ୍ଧଜାତି ହୋଇ ଯେବେ କରେ ବେଶ୍ୟା ସଙ୍ଗ ।
ରୋଗୀ ବୋଇ ଯେବେ କରେ ଆହାରର ପୁଷ୍ଟ ।
ବ୍ରାହ୍ମଣ ହୋଇଣ ଯେବେ ହୁଏ ଅସନ୍ତୁଷ୍ଟ ।
କର୍ମହୀନ ହୋଇ ଯେହୁ ଧାତା ନିନ୍ଦାକରେ
ଅନ୍ନ ଦେଲାରୁ ବିମୁଖ ହୋଇ ଯେହୁ ମରେ ।
ଆପେ ଦାନଦେଇ ଯେହୁ ହରଇ ଲେଉଟି
ତାଠାରୁ ମହାପାପୀ କେ ବ୍ରହ୍ମାଣ୍ଡେ ନାହିଁଟି ।
ପଦାର୍ଥ ଅର୍ଜି ସୁପୁତ୍ରେ ଯେବେ ନ ଦିଅଇ
ସୁବେଳେ ନ ଖାଇ ତାହା ସାଇତି ରଖଇ ।
ସଂସାରେ ତାହା ପଦାର୍ଥମାନ ଅକାରଣ
ଆବର କଥାଏ ମଧ୍ୟ କହୁଥାଇ ପୁଣ ।
ପତ୍ନୀ ଭୂଷଣ ଗୁରସ୍ତ ଯେବେ କଳେବଳେ
କାଢ଼ି ଘେନିଯାଇ ତାହା ବିକଇ ତତ୍କାଳେ ।
ଆୟ ବ୍ୟୟ ଜରି ପୁଣି ଗ୍ରହଣ କରଇ
ତାଠାରୁ ପାତକୀ ନାହିଁ ବ୍ରହ୍ମାଣ୍ଡରେ କେହି ।
ଇହ ପରଲୋକେ ସେହୁ ଅଟେ ବ୍ରହ୍ମଦୋଷୀ
ଆବର ପୁତ୍ର ପାରଇ ସେ ଦ୍ରବ୍ୟକୁ ଗ୍ରାସି ।
ନୋହିଲେ ସେ ଅଳଙ୍କାର ପତ୍ନୀ ଦେଲେ ଯାଚି
ତେବେନେଲେସ୍ୱାମୀକି ନଲାଗେ ଦୋଷ କିଛି ।
ମାତା ଅଳଙ୍କାର ସବୁ ପୁତ୍ରର ଯେ ଅଟେ
ପୁତ୍ର ଜାତକରି ପୋଷିବାର ତାର ଅଟେ ।
ବୁଝିଲେ ତ ପୁତ୍ରଠାରୁ ନାହିଁ ବଡ଼ ଦ୍ରବ୍ୟ
ପୁତ୍ର ଧନରତ୍ନ ପିତା ମାତାଙ୍କର ସର୍ବ ।
ପୁତ୍ରଙ୍କୁ ନଅବରଷ ଆସି ହେଲା ମୋର
ଏହାଙ୍କୁ ବ୍ରତ କରିଣ ଚଳ ବେଦବର ।
ଶୁଣି ବେଦବ୍ରହ୍ମା ମନମଧ୍ୟେ ହସି ହସି
ସତ ଏକଥା ବୋଲିଣ ବିଚାରିଲେ ବସି ।
ଏଠାକୁ ଆସନ୍ତୁ ଦେବତାଏ ବୋଲି ପାଞ୍ଚି
ମନରେ ଧ୍ୟାନ କରିଣ ବସିଲେ ବିରଞ୍ଚି ।
ଏହିରୂପେ ଚିନ୍ତି ବ୍ରହ୍ମା ମନକଲେ ଲୟେ
ମିଳିଲେ ଯେ ଯାହା ଯାନ ଚଢ଼ି ଦେବତାଏ ।
କପିଳାସ କନ୍ଦରରୁ ଆସିଲେକ ଶିବ
ବୃଷଭ ଉପରେ ଚଢ଼ି ବିଜେ ମହାଦେବ ।
ହସ୍ତରେ ତ୍ରିଶୂଳ ଲଲାଟରେ ଚନ୍ଦ୍ରମାଟି
ପୃଷ୍ଠେ ବ୍ୟାଘ୍ରଛାଲ ଶୋଭେ ଉରଗରେ କଟି ।
ଶୁକ୍ଳ ସ୍ଫଟିକ ସ୍ୱରୂପ ଦିଶେ ହର ଗାତ୍ର
ଡମ୍ବରୁ ଆଗେ ବଜାଇ ଆସିଲେ ତିନେତ୍ର ।
ସଙ୍ଗେ ଶିବଗଣ ଘେନି ଚତୁର୍ଦ୍ଦଶ କୋଟି
ନନ୍ଦୀଶ୍ୱର ଆଦି ଘେନି ବିଜୟ ଧୂର୍ଜଟି ।
ମୂଷିକ ବାହନେ ବିଜେକଲେ ଗଣପତି
ଆସିଲେ ମୟୂର ଚଢ଼ି କାର୍ତ୍ତିକେୟ ଯତି ।
ଦୁର୍ଗାମାୟେ ବିଜେକଲେ ଚଣ୍ଡୀବଳ ଘେନି
ସିଂହ ପିଠିରେ ବସିଣ ଅଛନ୍ତି ଭବାନୀ ।
ପବନ ଯେ ବିଜେକଲେ ମୃଗପୃଷ୍ଠେ ବସି
ରତନ ଭଣ୍ଡାର ଘେନି କୁବେର ଯେ ଆସି ।
ଐରାବତ ଗଜ ଚଢ଼ିଆସିଲେ ଦେବେନ୍ଦ୍ର
ଅଛନ୍ତି ସଙ୍ଗତେ ଘେନି ଅପସରାବୃନ୍ଦ ।
ଆବର ଯେ ଚଉଷଠି କୋଟି ବିଦ୍ୟାଧରୀ
ଗନ୍ଧର୍ବଗଣ ତୁଲରେ ଅଛନ୍ତି କିନ୍ନରୀ ।
ଯେ ଯାହା ବାହନ ଚଢ଼ିଗଲେ ଇନ୍ଦ୍ର ସଙ୍ଗେ
ଶଚୀ ସଙ୍ଗେ ଛନ୍ତି ଲକ୍ଷେ ବିଳାସିନୀ ଆଗେ ।
ଚିତ୍ରସେନ ତୁଲେ ଛନ୍ତି ଇନ୍ଦ୍ର ପୁତ୍ରମାନ
ଲକ୍ଷେ ଷାଠିଏ ସହସ୍ର ଅଶୀଏ ନନ୍ଦନ ।

ଆସିଲେକ ଦେବଗୁରୁ ଆଦି ନବଗ୍ରହ
ଦ୍ୱାଦଶ ଆଦିତ୍ୟ ପୁଣି ଚନ୍ଦ୍ରମାର ସହ ।
ଯର୍ମ ବରୁଣଙ୍କ ଆଦି ଦଶ ଦିଗପାଳେ
ଯେ ଯାହା ବାହନ ଚଢ଼ି ମିଳିଲେ ସକଳେ ।
ନକ୍ଷତ୍ର କରଣ ବାର ତିଥି ଯୋଗ ଆଦି
ଏମାନେ ମିଳିଲେ ସର୍ବେ ଆସି ଯଜ୍ଞବେଦୀ ।
ସନନ୍ଦ ଯେ ସନାତନ ବିଶ୍ୱାବସୁ ଦେବ
ବ୍ରହ୍ମାଙ୍କ ପାଖରେ ଆସି ମିଳିଲେ ଏ ସର୍ବ ।
କୋଟିଏ ଚେଲା ଘେନିଣ ବେଦବ୍ୟାସ ଋଷି
ପ୍ରବେଶ ହୋଇଲେ ଯଜ୍ଞ ବେଦୀରେ ସେ ଆସି
ପୌଲସ୍ତରେ ବିଜେକଲେ ଘେନି ଲକ୍ଷେ ଚେଲା
କୋଟିଏ ଚେଲା ଘେନିଣ ବିଭାଣ୍ଡକ ଗଲା ।
ଅର୍ବୁଦେକ ସୈନ୍ୟଘେନି ମିଳିଲେ ମାର୍କଣ୍ଡେ
ମନ୍ତ୍ରଭାଗ ପୋଥି ଧରିଛନ୍ତି ଖଣ୍ଡେ ଖଣ୍ଡେ ।
ଅଶୀ ସହସ୍ର ଶିଷ୍ୟଙ୍କ ସଙ୍ଗେ ଋଷ୍ୟଶୃଙ୍ଗେ
ପ୍ରବେଶ ହୋଇଲେ ଆସି ବଦରିକାସ୍ୱର୍ଗେ ।
ବଶିଷ୍ଠଯେ ବିଜେକଲେ ଲକ୍ଷେ ଶିଷ୍ୟଘେନି
ଶୁଣହେ ନାରଦ ବୋଲି କହେ ପଦ୍ମଯୋନି ।
ଅଙ୍ଗିରା ତୁଳେ ସହସ୍ର ଶିଷ୍ୟ ଘେନିଗଲେ
ଶ୍ରୀନୃସିଂହ ବ୍ରତସ୍ଥାନେ ପ୍ରବେଶ ହୋଇଲେ ।
ଗୌତମ ଋଷିଗଲେକ ଲକ୍ଷେ ଚେଲା ଘେନି
ଯଜ୍ଞବେଦୀର ମଣ୍ଡପେ ବସିଲେକ ମୁନି ।
ଲକ୍ଷେ ଶିଷ୍ୟ ଘେନି ବିଶ୍ୱାମିତ୍ର ଚଳିଗଲେ
ଲକ୍ଷେ ଚେଲା ଘେନି ଭରଦ୍ୱାଜ ବିଜେକଲେ ।
ପରାଶର ମହାଋଷି ଲକ୍ଷେ ଚେଲା ଘେନି
ବଦରିକା ନଗ୍ରେଯାଇ ପ୍ରବେଶିଲେ ମୁନି ।
ମରିଚି ବିଶ୍ରର୍ବା ମୁନି ଭୃଗୁଋଷି ଆଦି
ଲକ୍ଷେ ଲକ୍ଷେ ଚେଲାଘେନିଗଲେ ଯଜ୍ଞବେଦୀ ।
ବ୍ରହ୍ମାଙ୍କ ପାରୁଶେ ସର୍ବେ ବସିଲେକ ଯାଇ
ଋଷିଙ୍କୁ ଦେଖିଣ ରାଜା ସାଷ୍ଟାଙ୍ଗେ ନମଇଁ ।
ତାହାଙ୍କ ଚରଣ ଧୋଇ ନିଜଶିରେ ସିଞ୍ଚି
ଆସନ ଦେଇ ଆଲଟହସ୍ତେ ଧରି ବିଞ୍ଚି ।
ଆବର ଯେ ଅର୍ଘ୍ୟପାତ୍ର ଧରି ଦୁର୍ବାକ୍ଷତ
ବ୍ରହ୍ମାଙ୍କ ପାଦେ ଢାଳିଣ ନମିଲେ ବହୁତ ।
ଈଶ୍ୱରଙ୍କ ପାଦେ ସେହି କଲେ ନମସ୍କାର
ଦୁର୍ଗାଙ୍କୁ ନମିଣ ପୁଣି ସେବିଲେ ପୟର ।
ତହୁଁ ଯାଇ ଇନ୍ଦ୍ରଦେବ କରିଲେ ପ୍ରଣାମ
ଗଣେଶ କାର୍ତ୍ତିକ ପାଦେ ପ୍ରଣମିଲେ ପୁଣ ।

ଦଶଦିଗପାଳ ସେବା କଲେ ଯାଇ ରାଜା
ଆସନମାନ ଦେଇଣ କଲେ ପାଦପୂଜା ।
ଆଦର ପାଇଣ ସର୍ବେ ବସିଲେ ଆସନେ
ଦେବଋଷି ରାଜଋଷି ବ୍ରହ୍ମଋଷି ମାନେ ।
ଏଥୁଅନ୍ତେ ରାଜା ବୋଲେ ଆହେ ବେଦବର
ଆପଣ ପୁତ୍ର ବେନିଙ୍କି ମୋର ବ୍ରତକର ।
ଶୁଣିଣ ଇନ୍ଦ୍ରଙ୍କୁ ବେଦବ୍ରହ୍ମା ଆଜ୍ଞାଦେଲେ
ସୁଧର୍ମା ସଭା ଘେନାଇ ଆସଏବେ ଭଲେ ।
ବିଧାତା ଆଜ୍ଞା ପାଇଣ ଦେବ ଶଚୀନାଥ
ଯଜ୍ଞବେଦୀ ପାଶେ ଆଣି ରଖିଲେ ତ୍ୱରିତ ।
ସମସ୍ତେ ସେହି ସଭାରେ କଲେ ବେହରଣ
କୁସୁମ ବିଞ୍ଚିଲେ ଶୂନ୍ୟେ ଥାଇ ଦେବଗଣ ।
ହରଷେ ନୃତ୍ୟ କରନ୍ତି ସ୍ୱର୍ଗ ବିଳାସିନୀ
ତୁମ୍ବୁରୁ ବାଇ ଗାବନ୍ତି ଟେକି ବୀଣାଧ୍ୱନି ।
ବୀଣା ଅପାଙ୍ଗ ଅଧାଟି ଅଳାବେଣୀ ତାଳ
ମର୍ଦ୍ଦଳ ଗୁଣା ଦୁନ୍ଦୁଭି ବଜାନ୍ତି କଂସାଳ ।
ମଙ୍ଗଳ ଗୁର୍ଜ୍ଜରି ନାଦେ ବାଜଇ ମହୁରୀ
ଏଥୁ ଅନନ୍ତରେ ଆଜ୍ଞାଦେଲେ ମୁଖଚାରି ।
ବୋଇଲେ ପୁତ୍ରଙ୍କୁ ତୋର ବେଗେ ବେଶକର
ବେଦ ବିଧାନରେ ବ୍ରତ ହେବେ ଚକ୍ରଧର ।
ଶୁଣି ସେ ବଲ୍ଲଭ ରାଜା ପତ୍ନୀକି ବୋଇଲେ
ପୁତ୍ରଙ୍କୁ ଘେନି ଦେବୀକି ଯିବା ଚାଲ ଭଲେ ।
ବଲ୍ଲଭରାଣୀ ପୁତ୍ରଙ୍କୁ ବେଶ କରି ଆଣି
ଘଣ୍ଟି ଘାଗୁଡ଼ି ଖଞ୍ଜିଲେ ଶିରେଦେଇ ରାଣୀ ।
କୁଙ୍କୁମ ସଙ୍ଗେ ବୋଳିଣ ଛଡ଼ାଇଲେ ମଳି
ନେତ୍ରରେ ସରୁଅଞ୍ଜନରେଖା ଦେଲେତୋଳି
ରମଣୀୟ ପୀତବସ୍ତ୍ର ଆଣି ପିନ୍ଧାଇଲେ
ଯତ୍ନେବାଛି ସ୍ୱର୍ଣ୍ଣ ନୋଳିକର୍ଣ୍ଣରେ ଖଞ୍ଜିଲେ ।
ବେନି ଅଙ୍ଗୁଳିରେ ମାଏ ଘନସାର ଧରି
ବେନି ପୁତ୍ରଙ୍କ କପୋଳେ ଦେଲେ ଯତ୍ନକରି ।
ବାନ୍ଧିଲେ ତ୍ରିମୁଣ୍ଡୀ ଦୟଣାରେ ଦେବୀଜୂଳ
ଖଞ୍ଜିଲେ କଣ୍ଠରେ ନେଇ ସ୍ୱର୍ଣ୍ଣ ପଦ୍ମମାଳ ।
କର ଅଙ୍ଗୁଳିରେ ଖଞ୍ଜି ମୁଦ୍ରିକା କଙ୍କଣ
ଶ୍ରୀ ପୟରେ ନୂପୁରଯେ ବାଜେ ରୁଣଝୁଣ ।
ବିରାଜଇ ଅଷ୍ଟାଦଶ ଚିହ୍ନେ ଯେଉଁ ପଦ
ଶଙ୍ଖ ଚକ୍ର ଗଦା ପଦ୍ମ କୋଦଣ୍ଡ ଗୋଷ୍ପଦ ।
ଲଙ୍ଗଳ ବେଣୁ ମୂଷଳ ଧ୍ୱଜ ବଜ୍ର ପାଶ
ଖଡ଼ଗ ଜମ୍ବୁ ଶାୟକ କଳଶ ଅଙ୍କୁଶ ।

ଶ୍ରୀଶାରଙ୍ଗ ଚିହ୍ନ ମିଶି ଅଷ୍ଟାଦଶ କହି
ଏରୂପେ ବିଷ୍ଣୁଙ୍କ ଚିହ୍ନ ପାଦେ ବିରାଜଇ ।
ଭକ୍ତକୁ ଦିଶଇ ଏହା ଅନ୍ୟକୁ ଅଦୃଶ୍ୟ
ପୁତ୍ରବୋଲି କରନ୍ତି ମା ପ୍ରଭୁଙ୍କୁ ଯେ ବେଶ ।
ଶେଷଦେବଙ୍କୁ ନୃସିଂହ ପ୍ରାୟେ ବେଶକରି
ତଣ୍ଡୁଳଘେନି ଅଞ୍ଜୋଳି ଦେଲେ ହସ୍ତଭରି ।
ପୂର୍ଣ୍ଣକୁମ୍ଭରେ ରଖିଲେ ଚୂତପତ୍ର ଡାଳ
ତହିଁପରେ ଥୋଇଦେଲେ ନାରିକେଳଫଳ ।
ଏହିମାନ ସ୍ଥାପି ରମ୍ଭାତରୁ ପୋତିଦେଇ
ସଧବା ନାରୀଏଦେଲେ ହୁଳହୁଳି ଯାଇ ।
ଶୁଭେ ବିପ୍ରମାନେ ଆଶିଷମାନ ଯେ କାଣ୍ଡି
ମଙ୍ଗଳାଷ୍ଟକ ପଢ଼ନ୍ତି ପୁଣି ଖଣ୍ଡି ଖଣ୍ଡି ।
ଅଳାବେଣୀ ଅଧାଟି ଯେ ଯୋଡ଼ି ଶଙ୍ଖ ବାଜେ
ଏମନ୍ତ ବେଳେ ବେଦୀରେ କଲେ ପ୍ରଭୁ ବିଜେ ।
ଦେଖିକରି ବେଦବର କଲେ ଜୟେ ଜୟେ
ନମନ୍ତି ଦେବଙ୍କୁ ସଙ୍ଗେ ଘେନି ପଦ୍ମପାୟେ ।
ଜଣ ଜଣକେ ଶୁତିଲେ ଉଠି ପାଦେପଡ଼ି
ଉଠି ଉଭାହୋଇ ଧାତା କହେ କରଯୋଡ଼ି ।
ବ୍ରହ୍ମା ବୋଇଲେ ଶୁଣିମା ହେଉ ଭାବଗ୍ରାହୀ
ତୁମ୍ଭ ଜନ୍ମ ଦେଖି ଆମ୍ଭେ ସର୍ବେ ହେଲୁ ତ୍ରାହି
ଆପଣା ମନକୁ ଆସି ଆପେ ହେଲୁ ଜାତ
ତୁମ୍ଭଙ୍କୁ ଚିହ୍ନିପାରନ୍ତି ଏକା ସୁପଣ୍ଡିତ ।
ପାଷାଣ୍ଡ ଲୋକେ ତୁମ୍ଭଙ୍କୁ ଚିହ୍ନି ନ ପାରନ୍ତି
ବୃଥାରେ ଚକ୍ଷୁ ବୁଜିଣ ମାଳା ଜପୁଥାନ୍ତି ।
ସର୍ବ ଆତ୍ମା ଏକ ବୋଲି ନ ଚିହ୍ନନ୍ତି ହୃଦେ
ଆପଣା ଆତ୍ମାକୁ ମୂଳକରି ଜନପଦେ ।
ରଖନ୍ତି ମନ ପବନ ବେନି ହୃଦେ ଛନ୍ଦି
ବସନ୍ତି ଯେ ଜପକରି ଇନ୍ଦ୍ରିଗଣ ରୁନ୍ଧି ।
ଏ ରଙ୍ଗେ କରନ୍ତି ଯେତେ ଜାଣ ଶ୍ରମ ପଡ଼ି
ଲଭନ୍ତି କ୍ଳେଶମାତ୍ର ନ ଚିହ୍ନି ପଥ ହୁଡ଼ି ।
ତଷୁ କୁଟିଲେ ତଣ୍ଡୁଳ କେହି ପାଇଛି କି
ପବନ ବାନ୍ଧି ତା ରୂପ କେହି ଦେଖିଛ କି ।
ସଂସାରେ କେ ଆକାଶକୁ ମାପି ପାରିଛି କି
ଗଙ୍ଗାର ବାଲିକେ ଗଣି ଅନ୍ତ କରିଛି କି ।
ସମୁଦ୍ର କୂଳ ଗୋଚର କେହି କରିଛି କି
ସେହିରୂପେ ଅଟ ହରି ଅଦୃଶ୍ୟ ପ୍ରାଣୀଙ୍କି ।
ତୁମ୍ଭର ଅଟନ୍ତି ସିନା ଏକ ସର୍ବ ଆତ୍ମା
ଆତ୍ମା ଚିହ୍ନିଲା ଲୋକକୁ ବୋଲିଟି ମହାତ୍ମା ।
କେ ବୋଲେ ପାଇଛି ମୁହିଁ ହରିଙ୍କର ଅନ୍ତ
ବାଳୁତ ତୁଲେ ଲେଖନ୍ତି ତାକୁ ସୁପଣ୍ଡିତ ।
ଆପଣ ତ ସର୍ବ ଘଟେ ଅଟ ଆତ୍ମାରାମେ
ସେ ଆତ୍ମା ନ ଚିହ୍ନି ନର ମରେ ମତିଭ୍ରମେ ।
କୋଟି କୋଟି ବ୍ରହ୍ମାଣ୍ଡ ଯା ପାଦ ଲୋମମୂଳେ
ରେଣୁ ପରମାଣୁ ଉଡୁଛନ୍ତି ଅନ୍ତରାଳେ ।
ମୋତେ ଯେ ସଂସାରେ କଲ ବ୍ରହ୍ମାରୂପେ ଜାତ
ମୁହିଁ କିସ ଜାଣେ ପ୍ରଭୁ ତୁମ୍ଭେ ଆଦିଅନ୍ତ ।
ମନ୍ଦପଣେ ବୋଇଲି ମୁଁ କୃଷ୍ଣବଲ୍ଲଭଙ୍କୁ
ବେଶକରି ଆଣ ବୋଲି କହିଲି ପ୍ରଭୁଙ୍କୁ ।
ମୁହିଁ ପୁଣି କେଡ଼େ ଲୋକ ଛାମୁକୁ ନ ଗଲି
ପ୍ରଭୁଙ୍କୁ ନ କହି ଆଦ୍ୟ ବେଦୀରେ ବସିଲି ।
ଏଥିରେ ଦୋଷାଦୋଷ କରିବ ମୋର କ୍ଷମା
ତୁମ୍ଭେ ସ୍ଥାପିବାରୁ ମୁହିଁ ଅଟେ ସିନା ବ୍ରହ୍ମା ।
ତଥାପି କାହୁଁ ଆସିଣ କଲି କେଡ଼େ କର୍ମ
ଦେହ ଅନ୍ତେ କାହିଁ ଯାଇ ପୁଣି ହେବି ଜନ୍ମ ।
ସୁପଣ୍ଡିତ ଜନକୁ ଏ ଅଟେ ଅଗୋଚର
ମୁହିଁ ସବୁ ଜାଣେ ବୋଲି ବୋଲେ ମୂର୍ଖବର ।
ତୁମର ରୂପ ପ୍ରତ୍ୟକ୍ଷେ ଅଟେ ବ୍ରହ୍ମମୁଖ
ଦେହେ ନ ଲୋଡ଼ି ବାହାରେ ଲୋଡ଼େ ପଦ୍ମକଣ୍ଠ
ତୁମର କି ବାହାର ବା ଭିତରେଟି ଜାଣ
ଅଛିଦ୍ର ରୂପରେ ପୁରିଅଛି ସଂସାରେଣ ।
ଏବେ ଯେ ବଲ୍ଲଭଘରେ ହେଲେ ଆସି ଜାତ
ମୋତେ ସେ ବୋଲିଛି ଏବେ ତୁମେ କର ବ୍ରତ ।
ଆପଣଙ୍କୁ ନ କହିଣ କିରୂପେ କରିବି
ଏତେକ ବୋଲି କହନ୍ତି ଧାତାପଦେ ସେବି ।
ଶୁଣିଣ ନୃସିଂହ ସ୍ୱାମୀ ହେଲେ ହସ ହସ
ବୋଇଲେ ତୁମ୍ଭେ ସାନ କି ବିଧାତା ପୁରୁଷ ।
ଆମ୍ଭହୁଁ ସହସ୍ରଗୁଣେ ତୁମର ମହିମା
ଯେହୁ ହେଲେ ବୋଲୁଅଛି ହରିହର ବ୍ରହ୍ମା ।
ବ୍ରହ୍ମା ସିନା ସରଜିଛି ଏହି ସର୍ବ ସିଦ୍ଧି
ଯେ ବିଧିକି ନ ମାନିଲା ଲୋକଙ୍କୁ ଯେ ନିନ୍ଦି ।
ବିଷ୍ଣୁ ପରା ପୁରୁଷକୁ ନିନ୍ଦାକୁ ଯେ ଡରି
ଆମ୍ଭଙ୍କୁ କେମ୍ଭେ ତୁମ୍ଭେ ନଯିବ ବ୍ରତକରି ।
ଆମେ ଦଶଥର ଯେଣୁ ହେବୁ ଅବତାର
ତେଣୁ ଦଶକର୍ମ ବ୍ରତ କର ଏ ସଂସାର ।
ସପତ ବରଷଠାରୁ ଦଶବର୍ଷ ଯାଏ
ଏଥିମଧ୍ୟେ ଲେଖୁଅଛି ବ୍ରତ ବେଦମୟେ ।

ତଥାପି ବାରବର୍ଷେ ଯେ ନୋହିବଟି ବ୍ରତ
ତା ହସ୍ତଜଳ ଗୋଚର୍ମ ଜଳରୁ ସଞ୍ଜାତ ।
ସପତ ବରଷଠାରୁ ଦଶବର୍ଷ ଯାଏ
ଏଥିମଧ୍ୟେ ବ୍ରହ୍ମକଲେ ସବୁକଥା ଜୟେ ।
ଦଶକର୍ମ ବ୍ରତଯୋଗ୍ୟ ବିପ୍ର ଯେ ପବିତ୍ର
ପରିସ୍ରାକରି ଘେନିବ ଜଳ ଅହୋରାତ୍ର ।
ସନ୍ଧ୍ୟା ତର୍ପଣ ଗାୟତ୍ରୀ ମନ୍ତ୍ର ଜପ କରି
ତେବେ ସେ ବିପ୍ରସଂସାରୁ ହେବେ ସିନାପାରି ।
ଷଷ୍ଠ ଅଷ୍ଟମ ନବମ ଏକାଦଶ ବର୍ଷେ
ବିଜ୍ଞ ସୁପଣ୍ଡିତ ବିପ୍ର ବ୍ରତକରି ବସେ ।
ଉତ୍ତମ ପିତାମାତାଟି ଥିବେ ଗୃହେ ଯାର
ଖୋଜନ୍ତେ ସପ୍ତବରଷୁ ଯୋଗଲଗ୍ନ ତାର ।
ଦିଅନ୍ତି ଉତ୍ତମ ଲଗ୍ନ ବୁଝି ବ୍ରତକରି
ତାଙ୍କଠାରୁ ଭାଗ୍ୟବନ୍ତ ନାହିଁ ତିନିପୁରୀ ।
ଆମ୍ଭ ପିତା ମାତା କରି ବିଷ୍ଣୁରେ ଭକତି
ତୁମ୍ଭଙ୍କୁ ପାଇବା ପାଇଁ ବ୍ରତ କରୁଛନ୍ତି ।
ନୃସିଂହ ମୁଖୁ ଏମନ୍ତ ବାଣୀ ବ୍ରହ୍ମା ଶୁଣି
ସଂଶୟ ଛାଡ଼ି ସେବିଲେ ପ୍ରଭୁ ଚକ୍ରପାଣି ।
ବିଶ୍ୱକର୍ମାଙ୍କୁ ଆଜ୍ଞା ଯେ ଦେଲେ ବେଦବର
ବୋଇଲେ ଛାୟା ମଣ୍ଡପ ନିର୍ମାଣ ତୁ କର ।
ଶୁଣି ବିଶ୍ୱକର୍ମା ଦେଲା ତତକ୍ଷଣେ ସର୍ଜି
ବସିଲେ ଦେବେ ଆସନମାନଙ୍କୁ ଯେ ଭଜି ।
ଏଥୁ ଅନନ୍ତରେ ବ୍ରହ୍ମା କୃଷ୍ଣବଲ୍ଲଭଙ୍କୁ
ବୋଇଲେ ବେଦୀରେ ବସ ଘେନି କୁମରଙ୍କୁ ।
ଆସନ୍ତୁ ଭିତରପୁରୁ ଭଗବତୀ ରାଣୀ
ଦିଅନ୍ତୁ ସେ ହୁଳହୁଳି ବାଜୁ ଶଙ୍ଖବାଣୀ ।
ଶୁଣିଣ ବଲ୍ଲଭରାଜା ବସିଲେ ବେଦୀରେ
ପୁତ୍ରକୁ କୋଳରେ ଧରିଅଛନ୍ତି ସଙ୍ଗରେ ।
ଯୁବତୀଙ୍କୁ ଘେନି କୃଷ୍ଣବଲ୍ଲଭର ରାଣୀ
ଦିଅନ୍ତି ସେ ହୁଳହୁଳି ସୁମଙ୍ଗଳ ବାଣୀ ।
ସ୍ନାନ ଯେ ଆହ୍ନିକ କ୍ରିୟା ସାରି ବେଦବର
ଈଶାନମୁଖ ହୋଇଣ ବସିଲେ ବେଦୀର ।
ପ୍ରଥମରେ କୁଶବଟୁମାନ ସଜାଡ଼ିଣ
କୃଷ୍ଣବଲ୍ଲଭଙ୍କ କରେ ଦେଲେ ନେଇ ପୁଣ ।
ନୃସିଂହ ଶେଷଦେବଙ୍କୁ ଦେଲେ ପୁଣ ଦୁଇ
ଅନାମିକା ଅଙ୍ଗୁଳିରେ ପୁରାଇଲେ ନେଇ ।
ଯଜ୍ଞବେଦୀରେ ବସିଲେ ଆସି ସର୍ବମୁନି
ଅଗସ୍ତି ଯେ ପଉଲସ୍ତି ବଶିଷ୍ଠ ସୁଜ୍ଞାନୀ ।
ଜାବାଲି ବ୍ୟାସ କଶ୍ୟପ ନାରଦ ଆବର
ସନାତନ ଯେ ଦୁର୍ବାସା ଶୁକ ମୁନିବର ।
ଗାଲବ କ୍ରୋଶମୁନି ଯେ ଭୃଗୁ ପଞ୍ଚଶିଖ
ବସିଲେ ବେଦୀରେ ନୃସିଂହଙ୍କ ଚାରିପାଖ ।
ଆବର ଅଛନ୍ତି ଯେତେ ଋଷି ସର୍ବେ ବସି
ବୃହସାମବେଦ ଗାଇ ମନ୍ତ୍ରମାନ ଘୋଷି ।
ସଦାଶିବ ବିଜେ କଲେ ରୁଦ୍ରଗଣ ଘେନି
ବସିଲେ ବେଦୀରେ ଆସି ଘେରି କାତ୍ୟାୟିନୀ ।
ତେତିଶକୋଟି ଦେବଙ୍କୁ ଘେନି ପୁରନ୍ଦର
ଶଚୀକୁ କୋଳେ ଘେନିଣ ବସିଲେ ବେଦୀର ।
କୁସୁମବୃଷ୍ଟି କରନ୍ତି ଦେବେ ଶୂନ୍ୟେ ଥାଇ
ଗହ ଗହ ଶୁଭୁଅଛି ବଦରିକା ଭୂଇଁ ।
ଏ ଉତ୍ତାରୁ ବ୍ରହ୍ମା ବସି ନୃସିଂହଙ୍କ ପାଖ
ଆରମ୍ଭିଲେ ପଢ଼ିଣ ଯେ ଦେଶକାଳ ବାକ୍ୟ ।
ଗଣେଶଙ୍କ ପୂଜାସାରି ବରୁଣ ପୂଜିଲେ
ବଲ୍ଲଭ ହସ୍ତରେ ଜଳ ଦେବତାଙ୍କୁ ଦେଲେ ।
ଆଦିତ୍ୟ ସୋମ ମଙ୍ଗଳ ବୁଧ ବୃହସ୍ପତି
ଶୁକ୍ର ଶନି ରାହୁ କେତୁ ବରି ନବମୂର୍ତ୍ତି ।
ଦଶଦିଗପାଳଙ୍କୁ ଯେ ପୂଜି ପୁଣି ବିହି
ତଦନ୍ତେ ସେ ଏକାଦଶ ରୁଦ୍ର ପୂଜା ଦେଇ ।
ଆବର ଷୋଡ଼ଶ ଚନ୍ଦ୍ର ଦ୍ୱାଦଶ ରବିଙ୍କି
ଅଣଚାଶ ପବନକୁ ପୂଜିଲେକ ଡାକି ।
ଅଷ୍ଟକୁଳ ନାଗଙ୍କୁ ଯେ ପୂଜିଲେକ ବରି
ପଞ୍ଚଭୂତ ପ୍ରାଣ ପୂଜା ଦେଲେ ନାମ ଧରି ।
ସତ୍ତ୍ୱରଜ ତମ ଆଦି ପଚିଶ ପ୍ରକୃତି
ପୂଜିଲେ ଏହାଙ୍କ ନାମ ଧରି ବେଦପତି ।
ନବକୋଟି ଚଣ୍ଡୀଙ୍କୁ ଯେ ପୂଜି ପୁଣି ଧାତା
ରକ୍ଷିଣୀ ଭକ୍ଷିଣୀ ଆଦି ପୂଜିଲେ ଦେବତା ।
ଏକସ୍ତରୀ କହ୍ମାନ୍ତ ଯେ ଚଉଦ ଭୁବନ
ପଚାଶକୋଟି ଭୂମିକୁ ଦେଲେ ଅର୍ଘ୍ୟମାନ ।
ପୁଣି ଚାରିବେଦକୁ ଯେ ପୂଜି ପଦ୍ମଯୋନି
ଗନ୍ଧ ପୁଷ୍ପ ଧୂପ ଦୀପ ନଇବେଦ୍ୟ ଘେନି ।
ଅନ୍ତର୍ମାତୃକାଦି ବହିର୍ମାତୃକାଦି ଯେତେ
ଷୋଡ଼ଶୋପଚାର ପୂଜାକଲେ ମନ୍ତ୍ର ଉକ୍ତେ ।
ସଙ୍କଳପ ବିଧି ପୂର୍ବେ ସର୍ବ ଦେବତାଙ୍କୁ
ଗନ୍ଧ ପୁଷ୍ପ ଧୂପ ଦୀପ ଦେଲେ ଅର୍ଘ୍ୟ ତାଙ୍କୁ ।
ଏରୂପେ ସର୍ବଦେବଙ୍କୁ ପୂଜାବିଧି କରି
ସୁବର୍ଣ୍ଣ ଥାଳୀରେ ପୁଣି ଆଣି ଦ୍ରବ୍ୟ ଧରି ।

ମୃତ୍ତିକା ଆଦି ଗୋମୟ ସ୍ୱର୍ଣ୍ଣପୋଥି ଅନ୍ନ
ନୃସିଂହଙ୍କ ଆଗେ ରଖି ଚତୁର ଆନନ ।
ବେଦରେ ଅଛନ୍ତି ଯେତେ ମାର୍ଗ ଜାଣ ଲେଖି
ସେ କଥାଯାକ କରନ୍ତି ପଢ଼ି ଅଷ୍ଟସଖୀ ।
ବ୍ରହ୍ମା ବୋଇଲେ ଶୁଣିମା ହେଉ ଭାବଗ୍ରାହୀ
ଥୋଇଲୁ ଏତକ ଦ୍ରବ୍ୟ ଛୁଅଁ ବେନିଭାଇ ।
ତୁମ୍ଭର ସର୍ଜନା ସିନା ଅଟଇ ଏକଥା
ତୁମ୍ଭଙ୍କୁ ନ କଲେ ବେଦ୍ଧ ସଂସ୍ୱାର ତ ବୃଥା ।
ବୋଇଲୁ ଛାମୁରେ ଶକୁନ ଯେ ବୁଝିବାକୁ
ଯେ ଯାକୁ ଛୁଉଁଲେ ଦ୍ରବ୍ୟ ତାହା ମିଳେ ତାକୁ ।
ତୁମେ ସିନା ସବୁଦ୍ରବ୍ୟ ରଖିଛ ସଂସାରେ
ତୁମେ ଛୁଇଁଲେ ମିଳିବ ଦ୍ରବ୍ୟ ସବୁଠାରେ ।
ଶୁଣିଣ ନୃସିଂହ ପ୍ରଭୁ ମନେ ଅଳ୍ପ ହସି
ପାଞ୍ଚିଲେ ସର୍ଜିଅଛନ୍ତି ଭଲା ବ୍ରହ୍ମରାଶି ।
ବ୍ରହ୍ମା ପରାୟେ ପୁରୁଷ ବେଦେ ଛନ୍ତି ଭ୍ରମ
ଆମେ ନ କରିବା କି ମାନବେ ଆସି ଜନ୍ମ ।
ଏତେକ ପାଞ୍ଚି ନୃସିଂହ ଚାହିଁଲେ ଦ୍ରବ୍ୟକୁ
ବୋଇଲେ ଏ ବିଦ୍ୟା ସିନା ମୂଳ ବ୍ରାହ୍ମଣଙ୍କୁ ।
ବୁଝିଲେ ଅଠରବର୍ଣ୍ଣେ ବ୍ରାହ୍ମଣ ଯେ ରାଜା
ବିଦ୍ୟା ଘେନି ବ୍ରାହ୍ମଣ ହେ ବ୍ରହ୍ମାଣ୍ଡରେ ପୂଜା ।
ତଥାପି ସେ ବ୍ରହ୍ମାଣ୍ଡଙ୍କୁ ବିଦ୍ୟା ଏକ ମୂଳ
ଦେହେ ବିଦ୍ୟା ଥିଲେ ବଶ ହୁଅନ୍ତି ସକଳ ।
ଏ ଘେନି ସେ ବିଦ୍ୟା ଅଟେ ଜଗତ ଭୂଷଣ
ବିଦ୍ୟାକୁ ବଳି ସଂସାରେ ଦ୍ରବ୍ୟ ନାହିଁ ପୁଣ ।
ଦେହରେ ବିଦ୍ୟା ଥିଲେ ଯେ ପୃଥ୍ୱୀ କଳିପାରି
ପୁସ୍ତକ ଛୁଇଁଲେ ଏତେ ପାଞ୍ଚି ଦେବହରି ।
ଛୁଇଁଲେ ଯେ ଶେଷଦେବ ମୃତ୍ତିକା ଭୂଖଣ୍ଡ
ତେଣୁକରି ବହନ୍ତି ଯେ ଅଶେଷ ବ୍ରହ୍ମାଣ୍ଡ ।
ସଭାରେ ଦେଖି ବହୁତ ଶ୍ରଦ୍ଧା ତହିଁ କଲେ
ନୃସିଂହ ବେନି ଭାଇଙ୍କି ବହୁ ପ୍ରଶଂସିଲେ ।
ବଶିଷ୍ଠ ବୋଇଲେ ପ୍ରଭୁ କେଡ଼େ ବ୍ରହ୍ମରୂପୀ
ଛୁଇଁଲେ ପାଞ୍ଚି ସାରଦାଦେବୀ ମନେ କଳ୍ପି ।
ବିଷ୍ଣୁ ମନୋହାରୀ ଲକ୍ଷ୍ମୀ ସରସ୍ୱତୀମାତା
ତେଣୁ ଛୁଇଁଲେତ ପୋଥି ହେବ ଶାସ୍ତ୍ରଜିତା ।
ଅଗସ୍ତି ବୋଇଲେ କଥା ହୋଇଲା ଏ ସତ୍ୟ
ଅନନ୍ତ କଥା ଲାଗିଲା ମୋତେ ଅଲୋକିତ ।
କେଡ଼େ ଏ ପବିତ୍ରବନ୍ତ ନୃସିଂହର ଭାଇ
ତିଳଚୋପା ପରମାଣେ ପୃଥ୍ୱୀ ଛନ୍ତି ବହି ।

ସେ ପ୍ରଭୁଙ୍କୁ ଦେଖୁଛନ୍ତି ଏ ସଭାରେ ବସି
ମୃତ୍ତିକା ଛୁଇଁଲେ ଦ୍ରବ୍ୟ ହୁଡ଼ି ମନେ ରସି ।
ସଂସାର ଲୋକଙ୍କ ହିତେ ପୃଥ୍ୱୀ ଛନ୍ତି ବହି
ଏରୂପେ ଯେ ଋଷିମାନେ ହ୍ୱନ୍ତି କୁହାକୁହି ।
ଏଥିଉତ୍ତାରେ ପଢ଼ିଲେ ବ୍ରହ୍ମା ମନ୍ତ୍ରପୋଥି
ବୋଇଲେକ ପଞ୍ଚଗ୍ରାସ କର ଜଗଜ୍ୟୋତି ।
ବେଦରେ ପୂର୍ବରୁ ଏହା ହୋଇଛି ଉକତ
ତେଣୁ କରନ୍ତୁ ନୃସିଂହ ସାଂସାରିକ ମତ ।
ଏତେ ବିଚାରି ରାଜାଙ୍କୁ ଆଜ୍ଞାଦେଲେ ବିହି
ବୋଇଲେ କରନ୍ତୁ ପୁତ୍ରେ ପଞ୍ଚଗ୍ରାସ ଯାଇ ।
ଶୁଣିଣ କୃଷ୍ଣବଲ୍ଲଭ ନାୟିକାକୁ ଡାକି
ବୋଲେ ପୁତ୍ରଙ୍କୁ ଭୁଞ୍ଜାଇ ଆଣଲୋ ବେଦୀକି ।
ଶୁଣିଣ ନାୟିକାଗଣ ହରଷ ହୋଇଲେ
ପୁତ୍ରକୁ ଯେ ହୁଳହୁଳି ଦେଇ ଘେନିଗଲେ ।
ଭଗବତୀ ମାତାଙ୍କୁ ତା ସମର୍ପିଲେ ନେଇ
ବୋଇଲେ ପଞ୍ଚଗ୍ରାସ କରା ବେଗେ ନେଇ ।
ଶୀଘ୍ରେ ଭୋଜନ କରିଣ ବେଦୀକି ଯେ ଯାନ୍ତୁ
ଲଗ୍ନଯୋଗେ ବସି ଯଜ୍ଞୋପବୀତ ଘେନନ୍ତୁ ।
ଶୁଣି ନୃସିଂହ ଜନନୀ ପରଷିଲେ ଅନ୍ନ
ପଞ୍ଚବିପ୍ର ଘେନି ଗ୍ରାସକଲେ ଭଗବାନ ।
ଆଗମନ ସାରି ବେଦୀପରେ ବିଜେକଲେ
ଚୌଷଠି ସହସ୍ରକନ୍ୟା ହୁଳହୁଳି ଦେଲେ ।
ଯଜ୍ଞବେଦୀରେ ବସିଲେ ଯାଇ ବେନିଭାଇ
ନୀଳଗିରି ସିଂହାସନ ପ୍ରାୟେ ଶୋଭା ପାଇ ।
ବଳଭଦ୍ର ଜଗନ୍ନାଥ ଦିଶନ୍ତି ଯେ ଶୋଭା
ସେ ରୂପେ ପ୍ରକାଶେ ବେନିଙ୍କର ମୁଖପ୍ରଭା ।
ଗର୍ଭର ସଞ୍ଚାରଠାରୁ ଯେତେ ବ୍ରତକର୍ମ
ବିଧିପୂର୍ବେ ବିଧାତାଏ କଲେ ଯଥାଧର୍ମ ।
ତହିଁ ଉତ୍ତାରୁ ବସିଲେ ବ୍ରହ୍ମା ହୋମକରି
ବଶିଷ୍ଠ ଆଚାର୍ଯ୍ୟ ହେଲେ ହସ୍ତେ କୁଶଧରି ।
ପଞ୍ଚଭୂତ ସଂସ୍କାରକୁ ଶାସ୍ତ୍ରବିଧି କଲେ
କୁଶତ୍ରୟ ଗୋମୟରେ ଭୂମି ସମ୍ମାର୍ଜିଲେ ।
ପଲାଶ ଯେ ଉଦୁମ୍ବର ସମିଧ ଯେ କାଷ୍ଠ
ପକାନ୍ତି ଯେ ବ୍ୟାସମୁନି କରି ମନ୍ତ୍ରପାଠ ।
ଅଗ୍ନେ ଅଗ୍ନିକେ ଯେ ଅଗ୍ନାଳିକେ ମନ୍ତ୍ରକାଣ୍ଡି
ଅଗ୍ନି ଘୃତ ପକାଇଣ କଲେ ସେ କୁଷାଣ୍ଡି ।
ବରୁଣ ମହେନ୍ଦ୍ର ବାୟୁ ଅଗ୍ନି ଶୂନ୍ୟଖଣ୍ଡ
ଅଷ୍ଟାଦଶ କୋଣ ଶକ୍ତକଲେ ଅଗ୍ନିକୁଣ୍ଡ ।

ଘୃତରେ ତିଳ ତଣ୍ଡୁଳ ଯବଧାନ ଦେଇ
ସମିଧ ଘେନି ପକାନ୍ତି ବ୍ୟାସମୁନି ନେଇ ।
ଦିଅନ୍ତି ଅଗ୍ନିରେ ଘୃତ ପଢ଼ି ବଷଟ୍‌କାର
କରନ୍ତି ଯେ ଅଷ୍ଟାଦଶ ବିଧି ବେଦବର ।
ଘୃତ ପଡ଼ନ୍ତେ ଯେ ବହ୍ନି ଉଠେ ଶିଖା ଟେକି
ବୀଜମନ୍ତ୍ର ପଢ଼ି ପୂଜା କରନ୍ତି ଅଗ୍ନିଙ୍କି ।
ଦଶକର୍ମରେ ସଂସାରେ ଯେତେ ବିଧିମାର୍ଗ
କଲେ ସେହି କର୍ମମାନ ପଢ଼ି ମନ୍ତ୍ରଭାଗ ।
ଏଥିଉତ୍ତାରୁ ରନ୍ଧନ ପୁଣି ଚରୁ କଲେ
ଅନଳେ ଯେ ଫଳ କ୍ଷେପି ପୂର୍ଣ୍ଣାହୁତି କଲେ ।
ହୁଅନ୍ତେ ସେ ଚରୁ ସିଦ୍ଧି ଭୁଞ୍ଜି ବେନିଭାଇ
ଆଗମନ ଅନ୍ତେ ପୁଣି ଶ୍ରୀମୁଖଟି ଧୋଇ ।
ସ୍ନାନେ ଶୁଚିହୋଇ ପିନ୍ଧିଲେକ ଝୀନପାଟ
ମଥା ଉପରେ ନେଇଣ ବାନ୍ଧିଲେ ମୁକୁଟ ।
ଖଞ୍ଜିଲେ ଅନେକ ବର୍ଣ୍ଣେ ପୁଷ୍ପମାନ ଗୁନ୍ଥି
କପାଳ ସେ ଠିଆଚିତା ଦେଲେ ବେଦପତି ।
ଏଥୁଅନ୍ତେ ଯେ ସନ୍ୟାସଦୀକ୍ଷା ପୁଣ ଦେଲେ
ପଲାଶଦଣ୍ଡ ଦେଇଣ ଭିକ୍ଷା ମଗାଇଲେ ।
ସୁବର୍ଣ୍ଣ ଥାଳିରେ ମାଏ ଦେଲେ ବଡୁଭିକ୍ଷା
ଷଡ଼ରସେ ରାନ୍ଧିଦେଲେ ଯାହା ଅନ୍ନସଂଖ୍ୟା ।
ପ୍ରଥମରେ ଦେଲେ ଅନ୍ନ ଦ୍ୱିତୀୟେ ବ୍ୟଞ୍ଜନ
ତୃତୀୟରେ ଘୃତ ଦେଇ ତୋଷି ଭଗବାନ ।
ବୋଇଲେ ପୋଏ କରିବେ ମୋତେ ଗତିମୁକ୍ତି
ପୋଷିବେ ଶରୀର ଥିଲାଯାକେ ମୋତେ ନିତି ।
ସଚରାଚରଯାକ ମୁଁ ଦେଲି ତାଙ୍କୁ ଜାଣ
ଶୁଣିଣ ହସିଲେ ମନେମନେ ଭଗବାନ ।
ଏଥିଉତ୍ତାରେ ଯେ ପୁଣି ତା ପରଷିଲେ
ଭଣ୍ଡାରଘରର ଶିରୀଯାକ ସମର୍ପିଲେ ।
ତହିଁଉତ୍ତାରୁ ସୁଜ୍ଞାନୀ ବନ୍ଧୁଥିଲେ ଯେତେ
ସମସ୍ତେ ଯେ ଦ୍ରବ୍ୟେ ଦ୍ରବ୍ୟଦେଲେଯେଝା ମତେ ।
ଚୌଷଠି ସହସ୍ରକନ୍ୟା ଦେଲେ ହୁଳହୁଳି
ପରଷିଲେ ନୃସିଂହଙ୍କୁ ଦେଇ ହୁଳହୁଳି ।
ପର୍ବତ ପରାୟ କୁଢ଼ ହେଲା ଦ୍ରବ୍ୟଯାକ
ନୃସିଂହଙ୍କ ବ୍ରତବିଧି ଅଟେ କଉତୁକ ।
ତହିଁଉତ୍ତାରୁ ମାତାଏ ନେଲେ ବଡ଼ଭିକ୍ଷା
ସାରିଲେ ଯେ ବେଦବର ଅଷ୍ଟହୋମସଂଖ୍ୟା ।
ଅଠାବନ ସଂସ୍କାର ବାସ୍ତରୀ କର୍ମସିଦ୍ଧି
ବିଧିପୂର୍ବେ କଲେ ସବୁ ବ୍ରତକର୍ମ ବିଧି ।

ଶୁଚିସୁତ ସୁକୃତହେ ବହ୍ନି ପଞ୍ଚପୂଜା
ଭୂତବଳି ପ୍ରେତବଳି ଦେଲେ ବଳିଭୋଜା ।
ଦକ୍ଷିଣାବର୍ତ୍ତକ ଶଙ୍ଖେ ତିଳାକ୍ଷତ ଭରି
ଶ୍ରୀନୃସିଂହ ଶେଷଶିରେ ଅଭିଷେକ କରି ।
ଶ୍ରୀପଦ୍ମକରେ ଶ୍ରୀଫଳ ଦୁର୍ବାକ୍ଷତ ଦେଲେ
ଗାୟତ୍ରୀ ମନ୍ତ୍ର ଯେ ବ୍ରହ୍ମା କର୍ଣ୍ଣେ ଶୁଣାଇଲେ ।
ଏଥିଉତ୍ତାରେ ସୂତାକୁ କରି ନବଗୁଣ
ଯଜ୍ଞୋପବୀତ ମନ୍ତ୍ରରେ ମନ୍ତ୍ରୀ ବ୍ରହ୍ମା ପୁଣ ।
ଅଙ୍ଗନ୍ୟାସ କରନ୍ୟାସ ଜୀବନ୍ୟାସ ତିନି
ଏ ମନ୍ତ୍ରପଢ଼ି ପାଡ଼ିଲେ ଗଣ୍ଠି ପଦ୍ମଯୋନି ।
ଆସନ ଯେ ଋଷିଛନ୍ଦ ଧ୍ୟାନମନ୍ତ୍ର ପଢ଼ି
ପଇତା ପବିତ୍ର କରି ରଖିଲେ ସଜାଡ଼ି ।
ଏତେ ମନ୍ତ୍ରି ନ କଲେ ପଇତା ନୁହେ ଶୁଦ୍ଧି
ବିଦ୍ୱାନମାନେ ଜାଣନ୍ତି ଏକା ମନ୍ତ୍ରଭେଦି ।
ଶୁଭଲଗ୍ନ ଧରି ଧଇଲେକ ବ୍ରହ୍ମାଗଣ୍ଠି
ପ୍ରଥମରେ ନୃସିଂହଙ୍କୁ ଦେଲେ ପରମେଷ୍ଠୀ ।
ନୃସିଂହ ଘେନିଲେ ତାହା ନିଜେ ମନ୍ତ୍ରପଢ଼ି
ଶେଷଙ୍କୁ ଦେଲେ ଯେ ଯଜ୍ଞଉପବୀତ ଯୋଡ଼ି ।
ଘେନିଲେ ଯେ ଯଜ୍ଞୋପବୀତକୁ ଶେଷ ପୁଣି
ଏଥିଉତ୍ତାରେ ସେ ପୁଣ କଲେକ ରୋଷଣୀ ।
ସଂସାରରେ ବିଧିମତେ ଯେତେ ଦ୍ରବ୍ୟଧରି
ଯାଉଁଲିରେ ପୁରାଇ ତା ବାନ୍ଧି ନିର୍ଭାକରି ।
ଗଡୁ ତମ୍ୱାପାତ୍ରୀ ଆବର ଯେ କୁଶବିଡ଼ି
ଧଇଲେକ ଶୁବଶ୍ରୁଚ ବାସେ ଗଣ୍ଠିପଢ଼ି ।
ପାଦରେ ପାଣ୍ଡୋଇମାଡ଼ି ଶିରେ ଟେକି ଛତ୍ର
ଶ୍ରୀରାଜଦାଣ୍ଡରେ ଚାଲିଯାନ୍ତି ପଦ୍ମନେତ୍ର ।
ସେରୂପେ ଶେଷଦେବଙ୍କ ରୋଷଣୀ ଯେ ହୋଇ
ଚାଲନ୍ତି ଯେ ଆଗପଛେ ଋଷିମାନେ ଧାଇଁ ।
ନୀଳଗିରି ଜଗନ୍ନାଥ ପହଣ୍ଡି ପରାୟେ
ସେରୂପେ ଶୋଭା ଦିଶନ୍ତି ପ୍ରଭୁ ଦେବରାୟେ ।
ପଢ଼ନ୍ତି ବଚନ ସ୍ତୁତି ସ୍ତୋତ୍ର ବିପ୍ରଜନେ
କୁସୁମ ବୃଷ୍ଟି କରନ୍ତି ଥାଇ ଦେବେ ଶୂନ୍ୟେ ।
ଚନ୍ଦନ ଛେରା ପକାନ୍ତି ତଳେ ବିଳାସିନୀ
ହୁଳହୁଳି ପାଡ଼ନ୍ତି ଯେ ହୁଏ ଶଙ୍ଖଧ୍ୱନି ।
ବ୍ୟାସେ ପଢ଼ିଯାନ୍ତି ଆଶୁଃଶିଶାନ ଯେ କାଣ୍ଡୀ
ଅଷ୍ଟ୍ୟଜକପଢ଼ନ୍ତି ମୁନି ଗଉତମ ଦଣ୍ଡୀ ।
ଅଗସ୍ତି ବେଦ ପକିନ୍ତି ଉଚ୍ଚେ ସ୍ୱରକରି
ଧାମନ୍ତି ନାରଦ ନୃତ୍ୟକରି ବୀଣା ଧରି ।

ପଢ଼ନ୍ତି ଜାବାଳି ସାମବେଦ ବୃହତ୍ସାମ
ଶୁଭୁଅଛି ଗହ ଗହ ବଦରିକାଶ୍ରମ ।
ଆଗରେ କର୍ପୂରଗୁଣ୍ଡ କଣ୍ୱରଷି ସିଞ୍ଚି
ଚାଲନ୍ତି ଯେ ସ୍ତୁତିକରି ବିଷ୍ଣୁଭକ୍ତି ପାଞ୍ଚି ।
ନୃସିଂହ ବ୍ରତ ବିଧିରେ ରାଜେ ମହୀସ୍ଥଳୀ
ଯାବତ କନ୍ୟାଏ ମିଳି ଦ୍ୟନ୍ତି ହୁଳହୁଳି ।
କବରୀ ଫିଟି କାହାରି ଫିଟେ ଫୁଲମାଳ
କାହାର ବା କୁଚମୂଳୁ ଶ୍ରବେ ଶ୍ରମଝାଳ ।
ପିନ୍ଧିବା ବାସ କାହାରି ପଡ଼ି ତଳେ ଖସି
କେ ଆଣ୍ଠୁର ଲୁଗାଟେକି ଚାଲେ ମନେ ହସି ।
ନୃସିଂହବ୍ରତ ଉତ୍ସବ କେ ପାରିବ ଲେଖି
ଚାହିଁବାରେ ପଲକ ନ ପଡ଼େ ବାର ଆଖି ।
ଖେମଟା ରାଗରେ ଗୀତ ଗାନ୍ତି ଥୋକେବାଳୀ
ଚାଲନ୍ତି ନାଚନ୍ତି ଚଉପାଶେ ଢଳି ଢଳି ।
ମଙ୍ଗଳ ନାଦରେ କେହୁ ହୁଳହୁଳି ଦ୍ୟନ୍ତି
ନାଚନ୍ତି ଢ଼ଗଲମାଳି ରଙ୍ଗେ ଗେଲେ ମାତି ।
ଏହିରୂପେ ଚଉଷଠି ସହସ୍ର ନାୟିକା
କାହାର ମୁଖେ କୁଙ୍କୁମ କେହୁ ଲେପେ ଏକା ।
ଲବଣୀ ଧରି ହୁଅନ୍ତ କେହୁ ମରାମରି
ନୃସିଂହ ଆଗେ ଖେଳନ୍ତି କେହୁ ଆଗଭରି ।
ଏହିରୂପେ ବଦରିକାଶ୍ରମ ରାଜଦାଣ୍ଡେ
ନୃସିଂହ ରୋଷଣୀ କରି ଗଲେ ପୂର୍ବମୁଣ୍ଡେ ।
ଶ୍ରୀନୃସିଂହ ପ୍ରଭୁ ବିଜେକରି ପହଣ୍ଡିରେ
ପାଞ୍ଚିଲେ ଏଥି ପଳାଇଯିବା ଖଣ୍ଡେଦୂରେ ।
ରୋଷଣୀଠାରୁ ପଳାନ୍ତି ବିପ୍ରେ ରାଜମାର୍ଗେ
ସେ ପ୍ରକାରେ ଧାଇଁଯିବା ବ୍ରହ୍ମାଙ୍କର ଆଗେ ।
ଏତେକ ପାଞ୍ଚିଣ କାନ୍ଧେ ଯାଉଁଳି ପକାଇ
ଧାଇଁଲେ ଋଷିମାନଙ୍କ ଆଗେ ବେନିଭାଇ ।
ସବୁରି ଆଗେ ପଳାନ୍ତି ଧଇଲେ ଦୁହିଁଙ୍କି
ବ୍ରହ୍ମାଏ ଧାଇଁ ଯାଇଁଣ ଧଇଲେ ଦୁହିଁଙ୍କି ।
ଆବର ଗୋଡ଼ାଇଥିଲେ ଯେତେ ଋଷି ପଛେ
ସମସ୍ତେ ପହଞ୍ଚି ବେଢ଼ି ରହିଲେ ନିଘଞ୍ଚେ ।
ବଶିଷ୍ଠ ଅଗସ୍ତି ବ୍ୟାସ ମାର୍କଣ୍ଡ ଲୋମଶ
ଏମାନେ ବୋଇଲେ ତୁମ୍ଭେ କାହିଁକି ହେ ରୁଷ ।
ନୃସିଂହ ବୋଇଲେ ଆମ୍ଭେ ରୁଷିଲୁ କାହିଁକି
ବ୍ରତକଲେ ବିଭା ମୋତେ ନକଲେ କାହିଁକି ।
ବ୍ରହ୍ମଚାରୀ ହୋଇ ଆମ୍ଭେ ତେବେ ଯିବୁ ଚଳି
ଶୁଣିଣ ହସିଲେ ଋଷିମାନେ ମନେ ଭାଳି ।
ତେତେବେଳେ ବ୍ରହ୍ମା ଏହା ମନେ ପାଞ୍ଚିକରି
ବୋଇଲେ ତୁମ୍ଭର ପ୍ରିୟା ଅଟେ ଜାଣ ଶିରୀ ।
ତାହାଙ୍କ ବ୍ୟତୀତ ତୁମ୍ଭେ ଆନ ଯୁବତୀକି
କେବେହେଁ ନ ଛୁଇଁ ଏବେ ପାଳୁଛ ପୃଥ୍ୱୀକି ।
ଆବର ଯେତେକ ରତି ତୁମ୍ଭ ପ୍ରେମଭାବ
ଶୁଣନ୍ତେ ଲାଗଇ ରସ ଜାଣ ମିଥ୍ୟା ସର୍ବ ।
ଶ୍ରୀନୃସିଂହ ସ୍ୱାମୀ କଲେ ବ୍ରହ୍ମାଙ୍କୁ ଯେ ସ୍ତୁତି
ବୋଇଲେ ମୋ ହୃଦ ଚିହ୍ନି କେହି ନ ଜାଣନ୍ତି ।
ଋଷିମାନେ ବୋଇଲେ ହେ ଏକଥା ପ୍ରାମାଣ
ଶେଷଦେବଙ୍କୁ ପଚାରି କଥା ଏବେ ଜାଣ ।
ସେ କିସ ବୋଲିବେ ଶୁଣିବା ସେ ସତ୍ୟବାଣୀ
ଶୁଣିଣ ପୁଛିଲେ ମନେ ହସି କୁଶପାଣି ।
ଶେଷଦେବଙ୍କୁ ବୋଇଲେ ଶୁଣହେ ଅନନ୍ତ
କାହିଁପାଇଁ ତୁମ୍ଭେ ରୁଷି ଯାଉଛ କହତ ।
ଶେଷଦେବ ବୋଇଲେ ଯେ ବ୍ରତ ତୁମ୍ଭେ କଲ
ବିଭା ନ କରି ବେଦୀରୁ ଉଠାଇଣ ଦେଲ ।
ଗ୍ରାମରୁ ବାହାରକରି ପଚାରୁଛ ବସି
ତେଣୁକରି ଘରୁ ଆମ୍ଭେ ଯାଉଅଛୁ ରୁଷି ।
ବ୍ରହ୍ମା ବୋଇଲେ କହ ହେ କରିବେ କେ ବିଭା
ଶୁଣି ଋଷିଏ ହସନ୍ତି ହୋଇ ତହିଁ ଉଭା ।
ଶେଷଦେବ ବୋଇଲେ ଯେ ଆମ୍ଭ ପିତା ଥାନ୍ତେ
ଆନଲୋକ ବିଭାକରିପାରେ କେ ଜଗତେ ।
ବିଧାତା ବୋଇଲେ ଏହି କଥା ସତ୍ୟ ସତ୍ୟ
ମହା ନିର୍ମାଣ ପୁରୁଷ ଅଟନ୍ତି ଅନନ୍ତ ।
ଶୁଣି ଋଷିଏ ଅନେକ ପ୍ରଶଂସା ଯେ କଲେ
ନୃସିଂହ ଶେଷଦେବଙ୍କୁ ବାହୁଡ଼ାଇ ନେଲେ ।
କୃଷ୍ଣବଲ୍ଲଭର ଆଗେ ଯାନ୍ତି ବେନିଭାଇ
ବଡ଼ଦାଣ୍ଡରେ ଆସିଲା ପ୍ରାୟ ଶୋଭାପାଇ ।
ନୀଳଗିରି ସିଂହାସନେ ଯେହ୍ନେ ଦିଶେ ଶୋଭା
ସେରୂପେ ବେନି ଭାଇଙ୍କ ଦିଶେ ମୂର୍ତ୍ତି ପ୍ରଭା ।
ନୃସିଂହଙ୍କ ଚାରିପାଖେ ଛନ୍ତି ଋଷିଯାକ
ଶୁଭଇ ସବୁରି ମୁଖେ ହରିବୋଲ ଡାକ ।
ବ୍ରହ୍ମା ବିଜେକଲେ ଯାଇ ଭିତର ପୁରକୁ
ପୁତ୍ରକୁ ବନ୍ଦାଅ ବୋଲି କହିଲେ ମାତାଙ୍କୁ ।
ଶୁଣିଣ ଧଇଲେ ଅର୍ଘ୍ୟସ୍ଥାଳୀ ଭଗବତୀ
ପୁତ୍ରେ ଦୁର୍ବାକ୍ଷତ ଦେଇ ବନ୍ଦାଇ ନିଅନ୍ତି ।
ବସାଇ ଆସନେ ପରଷିଲେ ଶାଳୀଅନ୍ନ
ଭୁଞ୍ଜନ୍ତି ସେ ବେନିଭାଇ କରି ଚକୁଦାନ ।

ପରଷେ ନିରୁତା କ୍ଷୀର ମାତା ପୁଣି ଦେଇ
କର୍ପୂରଗୁଣ୍ଡ ମିଶାଇ ଦେଲେ ସଢଖଇ ।
ଅମୃତପାଣି କଦଳୀ ମାଏ ଦେଲେ ପୁଣ
ଭୁଞ୍ଜିଲେ ତାହା ଅନନ୍ତ ପ୍ରଭୁ ନାରାୟଣ ।
ଶ୍ରଦ୍ଧାରେ ଯେ ଶେଷଦେବ ଗେଲଗେଲ ହୋଇ
ଭୁଞ୍ଜିଲା ବେଳେ ପ୍ରଭୁଙ୍କୁ ହସିଦେଲେ ଛୁଇଁ ।
ନୃସିଂହ ଦେଖିଣ ତାହା ହସ ହସ ହେଲେ
କଉତୁକ ହେଲେ ବୋଲି ମନେ ବିଚାରିଲେ ।
ଅନ୍ତର୍ଯ୍ୟାମୀ ପ୍ରଭୁ ଜାଣେ ସବୁଙ୍କରି ମନ
ପ୍ରାଞ୍ଜଳ କଲେ ସେ କଥା ବୁଝନ୍ତି ସୁଜନ ।
ଏକା ଗୋତ୍ର ଏକା ବୀର୍ଯ୍ୟ ଯହୁଁ ଜନ୍ମିଥାଇ
ଅଛଟକେ ଛୁଇଁଲେ ସେ ପୁଣି ଦୋଷ ନାହିଁ ।
ପରଗୋତ୍ର ଲୋକ ସଙ୍ଗେ ଭୁଞ୍ଜି ବସିଥିଲେ
ତାକୁ ଛୁଇଁ ଖାଇଲେଣି ସଙ୍ଖୁଡ଼ିର ତୁଲେ ।
ବ୍ରାହ୍ମଣଙ୍କୁ ବ୍ରାହ୍ମଣ ନ ଛୁଏଁ ଏଣୁକରି
ଛୁଇଁଲେ କରିବ ସ୍ନାନ ଗାୟତ୍ରୀ ସୁମରି ।
ଆଚମନ କରି ଶୁଦ୍ଧ ବସନ ପିନ୍ଧିବ
ନିର୍ମଳସ୍ଥାନେ ବସିଣ ଭୋଜନ କରିବ ।
ଏକଥା ବେଦରେ କହିଅଛନ୍ତି ଦଇବେ
ଆପଣା ଗୋତ୍ରେ ଅନ୍ୟ ନ ଘେନିବ ଯେ କେବେ ।
ଏକଗୋତ୍ରେ ଏକା ବଂଶେ ଦ୍ୱିଧା ନାହିଁ କିଛି
ଆନ ଲୋକେ ଛୁଇଁଲେଟି ହେଲେ ସ୍ନାନଶୁଚି ।
ତଥାପି ଛୁଇଁଲେ ଯେବେ ବାଳଭାବେ ମୋତେ
ଏକଥାକୁ ଦ୍ୱିଧା ମୋର ନାହିଁ କଦାଚିତେ ।
ଆଉ କଥା ଫେଡ଼ି କହୁଅଛୁ ତୁମ୍ଭେ ଶୁଣ
ଏ ସଂସାରେ ସବୁଲୋକ ବିଭା ହୁଅନ୍ତି ଜାଣ ।
ସାତଦିନଯାଏ ସେହୁ ଗଇଣ୍ଡାଳ ପାଡ଼ି
ଭୁଞ୍ଜନ୍ତି ସେ ପତିପତ୍ନୀ ଏକାସନ ମାଡ଼ି ।
ବୁଝହେ ସଙ୍ଖୁଡ଼ିଦୋଷ ନୁହେଁ କି ସେ ସ୍ଥାନେ
ଏଥକୁ ଲେଖିନାହାନ୍ତି ଦୋଷ ମୁନିମାନେ ।
ପତି ପତ୍ନୀକି ଛୁଇଁଲେ ସଙ୍ଖୁଡ଼ି ନୁହେଁକି
ଏ କଥାର ସନ୍ଧି କେହୁ ନ ଜାଣନ୍ତି ତର୍କି ।
ତୁମ୍ଭେ ଯେ ଭାବେ ଛୁଇଁଲେ ମୋତେ ଶେଷଦେବ
ଆମ୍ଭ ଜନନୀ ଥିଲେ ତ ଭାବ ଅପୂରୁବ ।
କ୍ଷଣମାତ୍ରେ ଲକ୍ଷେ ବିପ୍ରଙ୍କୁ ସେ ଅନ୍ନଦେବେ ।
ଏଥକୁ ମୋର ଭୟ ନ ଥାଇ ଜାଣ କେବେ
ଶେଷ ବୋଲେ ଯେବେ ମାତା ନପାରିଲେ ରାନ୍ଧି
ଦଣ୍ଡେ ଗଲେ ତୁମ୍ଭେ ପରା ଉଠିଯିବ କାନ୍ଦି ।

ମାତା ପିତା ହେଲେ ବୃଦ୍ଧ ଆମ୍ଭେ ତ ବାଳକ
କେହୁ ଆଉ ସମ୍ପାଦିଣ ଦେବ ଅନ୍ନପାକ ।
ଶୁଣିଣ ନୃସିଂହଦେବ ହସ ହସ ହେଲେ
ମାତା ପିତାଙ୍କ ହସ କେ କହିପାରେ ଭଲେ ।
ପୁତ୍ରଙ୍କୁ ଧଇଲେ କୋଳକରି ବାପ ମାଏ
ମୁଖରେ ଚୁମ୍ବନଦେଇ ହୁଅନ୍ତି ହୃଷ୍ଟମୟେ ।
ବୋଇଲେ ଲାଗିଲା ଯେବେ ଆମ୍ଭ କଥା ଚିନ୍ତା
ସଂସାରେ ପାଳନ୍ତୁ ଏହିରୂପେ ପିତାମାତା ।
ଏଥିଉତ୍ତାରେ ଯେ ବାଣୀ ଶୁଣ ହୋ ନାରଦ
ଭୁଞ୍ଜିଲେ ନୃସିଂହ ବ୍ରତଭୋଜି ବ୍ରହ୍ମା ରୁଦ୍ର ।
ଆବର ଋଷିଏ ବିପ୍ରେ ଦେବଗଣ ଆଦି
ଭୁଞ୍ଜିଲେକ ବ୍ରତଭୋଜି ଋଷି ସନକାଦି ।
ସବୁଙ୍କୁ ପରଶେ ଭଗବତୀ ଦେଇ ଅନ୍ନ
ଶଏ ପ୍ରକାରେ ଯେ ଭଜା ବିଶାଶେ ତିଅଣ ।
ପ୍ରତ୍ୟକ୍ଷେ ନୃସିଂହ ମାତା ଅଟେ ଭଗବତୀ
ବାଷଠି ପ୍ରକାରେ ପିଠା କରି ପରଷନ୍ତି ।
କାର୍ତ୍ତିକ ଯେ ବିନାୟକଗଣ ଦୁର୍ଗ ଯାଏ
ସବୁଙ୍କୁ ପରଷନ୍ତି ଶ୍ରୀ ଭଗବତୀ ମାଏ ।
ବଦରିକା ନଗ୍ରଲୋକେ ଭୁଞ୍ଜିହେଲେ ତୋଷ
ନାନା ପରକାର ନିର୍ଭା ହୋଇଛି ଷଡ଼ଶ ।
ଯାବତ ଜନତା ଭୁଞ୍ଜି ସର୍ବେ ତୋଷହେଲେ
କୃଷ୍ଣ ବଲ୍ଲଭ ନୃପତି ମଣୋହି ଯେ କଲେ ।
କ୍ଷୀରୋଦ୍ରୀ ପାଟ ପିନ୍ଧିଣ ଆସନରେ ବସି
ବିଷ୍ଣୁଙ୍କୁ ସୁମରି ନୀର ସିଞ୍ଚି ରାଜବଂଶୀ ।
ସୁବର୍ଣ୍ଣ ଥାଳୀରେ ପୁରାଇଣ ଶାଳୀଅନ୍ନ
ପରଷନ୍ତେ ଭଗବତୀ ତୋଷ ସ୍ୱାମୀମନ ।
ନାନାଦି ପ୍ରକାରେ ପିଠା ହୋଇଛି ସଜଡ଼ା
ପୁଳି ନାଡ଼ି ମନୋହର ଅମାଲୁ ଯେ ବଡ଼ା ।
ଡାଳିମ୍ବ କର୍ପୂରକାନ୍ତି ଆଦି ଖଣ୍ଡରସ
ଛେନା ନବାତ ମରିଚଗୁଣ୍ଡି ଛିଞ୍ଚା ରସ ।
ଏରୂପେ ବଲ୍ଲଭ ରାଜା ମଣୋହି ଯେ ସାରି
ଆଚମନ ସାରି ବିଜେକଲେ ଦଣ୍ଡଧାରୀ ।
ଚୌଷଠି ସହସ୍ରକନ୍ୟା ଘେନି ମହାଦେଈ
ବସିଲେ ଭୋଜନଭୋଜି ସବୁଙ୍କୁ ସେ ଦେଇ ।
ଏଥିଉତ୍ତାରେ ନୃସିଂହ ପାଶେ ବ୍ରହ୍ମା ଆସି
ମେଲାଣି ହୋଇବା ପାଇଁ କହନ୍ତି ବିଶେଷି ।
ବୋଲନ୍ତି ଆଜ୍ଞାଦେଲେକ ଆମ୍ଭେ ଯାନ୍ତୁ ଚଳି
ଆପଣ କଲ ବିପ୍ରଙ୍କୁ ବ୍ରତବିଧି ପାଳି ।

ନୃସିଂହ ଅବତାରର ଏହି ବିଧି ବ୍ରତ
ଶୁଣିବା ଲୋକେ ସଂସାରୁ ହୋଇଯିବେ ମୁକ୍ତ ।
ଆପଣଙ୍କ ହୃଦେ ଯେଉଁ ଚିହ୍ନ ଗୋଟି ଅଛି
ପଇତା ବୋଲି ଆମ୍ଭେ ତା ସର୍ବେ ଥାଉଁ ପାଞ୍ଛି ।
ନୋହିଲେ ତ ତୁମ୍ଭ ରୂପ ନୁହନ୍ତା ତ ଜଣା
ନ ଜାଣିଣ ଜାତି ଗୋତ୍ର ସର୍ବେ ହୋନ୍ତୁ ବଣା ।
ଶୁଣିଣ ନୃସିଂହ ପ୍ରଭୁ କଥାମାର୍ଗେ ହସି
ବୋଇଲେ ଆମ୍ଭଙ୍କୁ ତୁମ୍ଭେ ଜାଣହେବ ବିଶେଷି ।
ବ୍ରହ୍ମା ବୋଇଲେ ତୁମ୍ଭଙ୍କୁ ଆମ୍ଭେ ହେଲେ ଜାଣୁ
କେବଳ ନ ପାରୁ ରହି ମୁରର କଷଣୁ ।
ଦେବଙ୍କୁ ଦେଉଛି ଯେତେ ଦୁଃଖ ମୁରଦୈତ୍ୟ
ତାହାକି କହିବି ମୁହିଁ ତୁମ୍ଭର ଅଗ୍ରତ ।
ନୃସିଂହ ବୋଇଲେ ଆଉ ଭାଳୁଛ କାହିଁକି
ତାକୁ ମାରିବାକୁ ଜନ୍ମି ଆସିଛୁ ପୃଥ୍ୱୀକି ।
ଆଉ କଥା ଏକ ବ୍ରହ୍ମା କହୁଅଛି ଶୁଣ
ବିଦ୍ୟା ପଠନରେ ମନ ହେଉଅଛି ଜାଣ ।
ବେଦବିଦ୍ୟା ଧନୁର୍ବିଦ୍ୟା ଆଉ ଯେତେ ବିଦ୍ୟା
ଏହା ଦେହେ ଥିଲେ ତାକୁ ବୋଲି ମହାସିଦ୍ଧା ।
ସୁପଣ୍ଡିତ ଲୋକ ଦେହେ ଯେତେ ବିଦ୍ୟା ଥାଇ
ଗଣ୍ଡଗୋପାଳ ଲୋକଯେ ମୂର୍ଖେ ଲେଖାହୋଇ
ଆମ୍ଭେ ବିଷ୍ଣୁ ବୋଲି ଯେବେ ବିଦ୍ୟା ନ ସାଧିବା
ଅସୁର କୁଳକୁ ଆଉ କି ରୂପେ ମାରିବା ।
ବ୍ରହ୍ମା ବୋଇଲେ ବେଗେ ମୋ ନଗ୍ରକୁ ଆସ
ଏମନ୍ତ କହିଣ ଧାତା ହୋଇଲେ ମେଲାଣି
ଦେବତା ଋଷିଏ ଏହା ଗଲେ ସର୍ବେ ଶୁଣି ।
ଯେ ଯାହାର ପୁରେ ଯାଇ ହୋଇଲେ ପ୍ରବେଶ
ଶ୍ରୀନୃସିଂହ ଶରଣ ମୁଁ ପୀତାମ୍ବର ଦାସ ।

❋ ❋ ❋

## ନୃସିଂହଙ୍କ ଦ୍ୱାରା ମାତାପିତାଙ୍କର କଳହ ମୀମାଂସା

ଏଥୁଅନ୍ତେ ଯେ ଆଦିତ୍ୟଦେବ ଅସ୍ତହୋନ୍ତେ
ବସି ସନ୍ଧ୍ୟାକଲେ କୃଷ୍ଣବଲ୍ଲଭଙ୍କ ସୁତେ ।
ଆସନ ମନ୍ତ୍ରଠାବରୁ ଖୋଳକାଣ୍ଡି ଯାଏ
ଗାୟତ୍ରୀ ମନ୍ତ୍ର ଜପନ୍ତି ସ୍ଥାପି ଦେବରାୟେ ।
ଚୌଷଠି ଅକ୍ଷର ମନ୍ତ୍ର ଗାୟତ୍ରୀ ଜପିଲେ
ରୂପ କରନ୍ତେ ଗାୟତ୍ରୀ ସେ ସ୍ୱରୂପ ହେଲେ ।
ଚାରି ପଦକୁ ପ୍ରକାଶୁ ଆଗେ ଉଭା ହେଲେ
ହୃଦଗତେ ମହାପ୍ରଭୁ ବସାଇ ଜପିଲେ ।
ଏରୂପେ ଚିହ୍ନି ଗାୟତ୍ରୀ ଯେ ବିପ୍ର ଜପିବ
ତାହାଙ୍କ ବଚନ ସିଦ୍ଧ କାହିଁକି ନୋହିବ ।
ଏରୂପେ ଗାୟତ୍ରୀ ଚିହ୍ନି ଯେହୁ ନ ଭଜଇ
ତାହାର ସନ୍ଧ୍ୟା ଯେ ବନ୍ଧ୍ୟା ପ୍ରାୟେକ ହୁଅଇ ।
ଗାୟତ୍ରୀ ସ୍ୱରୂପ ଅଟେ ପ୍ରତ୍ୟକ୍ଷରେ ବେଦ
ଏରୂପେ ଗାୟତ୍ରୀ ସ୍ଥାପି ଜପି ଚତୁର୍ବେଦ ।
ଶ୍ରୀନୃସିଂହ ମହାପ୍ରଭୁ ଗାୟତ୍ରୀକି ଚିହ୍ନି
ଚଳିଲେକ ସନ୍ଧ୍ୟାସାରି ସଙ୍ଗେ ଭାଇ ଘେନି ।
ମଣୋହି ସାରିଣ ପ୍ରଭୁ ଆଚମନ କଲେ
ତାମ୍ବୁଳ ଲାଗିହୋଇଣ ପଲ୍ୟଙ୍କେ ବସିଲେ ।
ନିଦ୍ରାର ଆଳସ୍ୟେ ଘାରି ହୋନ୍ତେ ଭାବଗ୍ରାହୀ
ସୁବର୍ଣ୍ଣ ପଲ୍ୟଙ୍କ ପରେ ନିଦ୍ରାଗଲେ ଯାଇଁ ।
ଆବର ଯେ ଶେଷଦେବ ଶୁଣିଲେ ଯେମିତି
ଶୁଣହେ ନାରଦ କହୁଛନ୍ତି ବେଦପତି ।
ଏଥୁଅନନ୍ତରେ କୃଷ୍ଣବଲ୍ଲଭ ଯେ ରାଜା
ଭଗବତୀ ସହ କକ୍ଷେ ପଲ୍ୟଙ୍କରେ ଶଯ୍ୟା ।
ପାହାନ୍ତି ଅବକାଶରେ ନୃସିଂହଙ୍କ ମାତା
ସ୍ୱାମୀଙ୍କୁ କହନ୍ତି ପରିହାସ ପାଇ ଚେତା ।
ଶ୍ରୀ ନୃସିଂହ ଶେଷେ ଏଣେ ଛନ୍ତି ନିଦ୍ରାଯାଇ
କଉତୁକେ ସ୍ୱାମୀକି ଯେ ପୁଚ୍ଛେ ମହାଦେଇ ।
ବୁଝିଲେ ସ୍ତିରୀଙ୍କି ନୋହେ ବଚନରେ ଜିଣି
ଭୁଲାଇ କହନ୍ତି କେତେ ମାର୍ଗ କଥା ଆଣି ।
ଭାବ ବୁଝିବା ପାଇଁକି କଉତୁକେ ବସି
କଥାଏ କହନ୍ତି ମନେ ପାଞ୍ଚି ହସି ହସି ।
ବୋଇଲେ ହେ ସାବଧାନେ ଶୁଣ ସ୍ୱାମୀ ମୋର
ତୁମ୍ଭେ ତ ଏ ପୃଥ୍ୱୀଯାକେ ଅଟ ରାଜେଶ୍ୱର ।
ଭଣ୍ଡାର ଘର ପଦାର୍ଥ ଧନରତ୍ନ ଯେତେ
ସବୁ କଥାରେ କାରେଣୀ ଅଟ ଏ ଜଗତେ ।
ବିପ୍ରକୁଳକୁ ଆପଣ ଅଟ ଦିବାକର
ପାଇଅଛ ପୁତ୍ରକରି ବ୍ରହ୍ମାଣ୍ଡ ଠାକୁର ।
ଏଣୁ ଶୁଣ ସ୍ୱାମୀ ମାଗୁଅଛି କଥାପଦେ
ଭାଗ ବାଣ୍ଟ ହୋଇବାର ରଖିଛି ଯେ ହୃଦେ ।
ମୋର ଭାଗେ ପୁତ୍ର ବେନ ବାଣ୍ଟି ଦେବା ହେଉ
ତୁମ୍ଭ ମୂଳେ ରାଜ୍ୟାଘୋଷ ପଦାର୍ଥ ଯେ ହେଉ ।
କୃଷ୍ଣବଲ୍ଲଭ ବୋଇଲେ ଶୁଣରେ ବିମ୍ବୋଷ୍ଠୀ
ପୁତ୍ରଙ୍କୁ ରଖିଲ ଯେବେ ତୁମ୍ଭ ଭାଗ ବାଣ୍ଟି ।

ପୁତ୍ରେ ମୋହର ଅଟନ୍ତି ସୃଷ୍ଟି ହର୍ତ୍ତା କର୍ତ୍ତା
କି ଭାଗ୍ୟେ ଆମ୍ଭେ ହେଲଇଁ ତାଙ୍କ ପିତାମାତା ।
ଅହିଅ ମଣ୍ଡଳେ ଜାଣ ଯେଉଁ ସ୍ତିରୀ ଥାଇ
ତାହାଠାରୁ ସୁଲକ୍ଷଣୀ ବ୍ରହ୍ମାଣ୍ଡରେ ନାହିଁ ।
ପ୍ରଭାତୁ ତାହାର ମୁଖ ଚାହିଁବ ଯେ ପ୍ରାଣୀ
ସକଳ ପାତକ ଖଣ୍ଡି ତରିବ ସେକ୍ଷଣି ।
ଆମ୍ଭ ଭାଗ୍ୟରୁ ତୁମ୍ଭେ ତ ସଉଭାଗୀ ଅଟ
ପୁତ୍ରଙ୍କ ସଙ୍ଗତେ ଚଳିଯିବା ବଇକୁଣ୍ଠ ।
ରାଣୀ ବୋଇଲେ ତୁମ୍ଭେତ ମୋର ଆମ୍ଭାଲିଙ୍ଗ
କେବଳ ପୁତ୍ରକୁ ମୋର ଦିଅ ବାଣ୍ଟ ଭାଗ ।
ଶୁଣିଣ କୃଷ୍ଣବଲ୍ଲଭ ମନେ ମନେ ହସି
ବୋଇଲେ ତ ଭଲ ବାଣ୍ଟକଲ ଶୁଭ୍ରକେଶୀ ।
ପିତା ମାତାଙ୍କୁ ତ ପୁତ୍ର ଅଟେ ସମସରି
ଭଲା ମୋତେ ବାଣ୍ଟ ରଖିଦେଲେ ଭିନ୍ନକରି ।
ଏହାକୁ ଜିଣିବା ପାଇଁ କହିବା ନା ପଦେ
ଏମନ୍ତ କଥାଏ ପାଞ୍ଚି ପୁଣି ମନ ହୃଦେ ।
ବୋଇଲେକ ସଖୀ ତୁମ୍ଭେ ନେବ ବେନିବସ୍ତି
ଏଥକୁ ଯେ ନ୍ୟାୟ ପୁଣ କହିବା ଯେ ବାଛି ।
ତୁମ୍ଭର ଆମ୍ଭର ଆସ ପକାଇବା ଗୁଳା
ଯାହା ଭାଗ୍ୟେ ପଡ଼ିବ ସେ ହେବ ତାର ବଳା ।
ରାଣୀ ବୋଇଲେ ତୁମ୍ଭଙ୍କୁ ପାରିବକେ ଜିଣି
ଫାନ୍ଦରେ ପକାଇ ମୋତେ ଭୁଲାଉଛ ଆଣି ।
ତୁମ୍ଭ ଆମ୍ଭର ପଡ଼ିଛି ପୁଣି ନ୍ୟାୟ କଥା
ଆନ ଲୋକ ଆଗେ କହି ନୁହଇ ଏ ପନ୍ଥା ।
ଗୁଳା ପଡ଼ିବାକୁ ଏଥି ସାକ୍ଷୀ କେହୁ ଅଛି
ଯେଉଁ ପୁରେ ପଶିବାକୁ ନ ପାରଇ ମାଛି ।
ଭାରିଯା ପ୍ରାଣକୁ ସିନା ଗୃହସ୍ଥ କାରେଣୀ
ବଚନେ ଭଣ୍ଡିଛ ମୋତେ କହି କେତେ ବାଣୀ ।
ଗୃହସ୍ଥ ଭାରିଯା କଥା ଦାଣ୍ଡେ ଯେବେ ପଡ଼େ
ଲଜ୍ୟାରେ ସଢ଼ି ଯାଇ ନ ପାରେ ଚାଲି ଗୋଡ଼େ
ରାଜା ବୋଇଲେ ତେବେ ଗୋ କଥା ଏକଶୁଣ
ତୁମ୍ଭ ଆମ୍ଭ ବାଣ୍ଟ ଛିଡ଼ିଯିବ ଯେମନ୍ତେଣ ।
ବୁଝିଲେ ତ ପିତାର ଯେ ଅଟେ ପୁତ୍ର ପୁଣି
ମାତାର ଭାଗେ ଦୁହିତା ଶାସ୍ତ୍ରେର ଏ ବାଣୀ ।
ତେଣୁ ମାତା ସ୍ନେହ କରନ୍ତି ଯେ ଦୁହିତାଙ୍କୁ
ଚୋରାଇ ଘରର ଦ୍ରବ୍ୟ ଦିଅନ୍ତି ଝିଅଙ୍କୁ ।
ନ କରେ ପୁତ୍ରଙ୍କଠାରେ ସ୍ନେହ ତେତେ ମାନେ
ବୋଲନ୍ତି ଅର୍ଜିପାରିବେ ସେହୁ ସବୁଦିନେ ।
ସ୍ୱାମୀର ଆଗେ କହନ୍ତି ବସି ଚାଟୁବାଣୀ
ବୋଲନ୍ତି ହେ ଅବଧାନେ ଶୁଣ ପ୍ରାଣମଣି ।
ଦୁହିତା ଶାଶୁ ଘରକୁ ଏବେ ମୋର ଯିବ
ଅଳଙ୍କାର ଯେ ପଦାର୍ଥମାନ ତାଙ୍କୁ ଦେବ ।
ମହତ୍ତ୍ୱକୁ ନ ପାଞ୍ଚିଣ ଦେଲେ ସମ୍ଭାବନା
ଦାଣ୍ଡରେ ତ ଲାଜ ଆମ୍ଭେ ପାଇବା ନା ସିନା ।
ଦାଣ୍ଡକୁ ସୁଲଭକରି ଝିଅ ପଠିଥାଅ
ମାତା ପିତାଙ୍କର ଲଜ୍ଜା ମାତ୍ରକ ନ ଥୁଅ ।
ଦେଖୁଛ ପଡ଼ିଶାଘରର ଝିଅମାନେ କେତେ
ଅଳଙ୍କାର ପିନ୍ଧି ଚାଲୁଥାନ୍ତି ଦାଣ୍ଡେ ନିତ୍ୟେ ।
ଏହିରୂପେ ପତ୍ନୀ ନିଜ ସ୍ୱାମୀକି ତିଆରି
ଘରର ଦ୍ରବ୍ୟ ବୁହାଇ ଦିଏ ସଜକରି ।
ସବୁକୁଳରେ ଝିଅକୁ କରିଥାନ୍ତି ଲୋଭ
ଲୁଚାଇ ପତି ପୁତ୍ରକୁ ଦ୍ୟନ୍ତି ଘରଦ୍ରବ୍ୟ ।
ବୋଲନ୍ତି ଝିଅକୁ ଏଡ଼େ ନିରେଖ ଯେ କରି
ପିତା ହୋଇ ଅନାଦର କର ନବିଚାରି ।
ଏରୂପେ କି ପୃଥ୍ୱୀଯାକ ନୁହେଁ କଥା ବୁଝ
ଘରର ଦ୍ରବ୍ୟ ଲୁଚାଇ ଦ୍ୟନ୍ତି କରି ସଜ ।
ଏମନ୍ତେ ରାଜା ରାଣୀ ଯେ ହ୍ୱନ୍ତି କଥାରସ
ଶ୍ରୀନୃସିଂହ ଚେତା ପାଇ ହେଲେ ହସ ହସ ।
ମାତା ପିତା କଥାହେବା ପ୍ରତିବାକ୍ୟ ଶୁଣି
ପୁଛିଲେ ନୃସିଂହ ଅନ୍ତର୍ଯ୍ୟାମୀ ଚୂଡ଼ାମଣି ।
ବୋଇଲେ ଜନନୀ କାହିଁପାଇଁ ଶେଯୁ ଉଠି
ଚେତାପାଇ ଭାଗ ତୁମ୍ଭେ ହୁଅ ବଣ୍ଟାବଣ୍ଟି ।
ଶୁଣି ଭଗବତୀ ମାତା ମନେ ଲଜ୍ୟାପାଇ
କଥା ପରିହାର କରି କହିଲେ ବଞ୍ଚାଇ ।
ମନେ ମନେ ହସି ବୋଇଲେକ ଶୁଣ ବାପ
ତୁମ୍ଭ ମୁଖ ଦେଖି ଖଣ୍ଡୁଅଛି ସର୍ବ ପାପ ।
ପିତା ତୁମ୍ଭର ଏଘରେ ଥାଉଁ ଥାଉଁ ନିଶି
ନୃସିଂହ କବଚଗୋଟି ପଢ଼ିଥିଲେ ବସି ।
ଏ ସମୟେ ଉଠି ତୁମ୍ଭେ ପାଇଲକି ଚେତା
ତୁମ୍ଭେ ଥାନ୍ତେ ଆମ୍ଭର ଏ ଦ୍ରବ୍ୟ ବାଣ୍ଟହୋନ୍ତା ।
ବାଣ୍ଟିଲେ ତୁମ୍ଭଙ୍କୁ ରଖନ୍ତୁ ତ ଭାଗ ବାଣ୍ଟି
ତୁମ୍ଭେ ତ ଆମ୍ଭା ଆମ୍ଭର ପ୍ରତ୍ୟକ୍ଷରେ ଦୃଷ୍ଟି ।
ତୁମ୍ଭ ଘେନି ଆମ୍ଭେ ସିନା ଲଭିଛୁଁ ଐଶ୍ୱର୍ଯ୍ୟ
ଆବର କାହିଁରେ ଅଛି ଆମର କି କାର୍ଯ୍ୟ ।
ବଲ୍ଲଭ ବୋଇଲେ ବାପ ନୁହଇ ଏମନ୍ତ
ମାତାର ବାଣ୍ଟିବା କଥା ଅଟେ ଭାଗ ସତ ।

ତୁମ୍ଭଙ୍କୁ ବଞ୍ଚାଇ କଥା କହେ ଯେତେ ମାର୍ଗେ
ସେ କଥାଯାକ କହିବା ଶୁଣ ତୁମ ଆଗେ ।
ସୁପୁତ୍ର ଉପୁଜିଥିବ ଯାହାରଟି କୋଳେ
ପିତାମାତାଙ୍କୁ ସେ ବିଷ୍ଣୁ ପ୍ରାୟ କରି ପାଳେ ।
ମାତାଙ୍କୁ ସେ ମଣେ ଲକ୍ଷ୍ମୀ ପିତାଙ୍କୁ ସେ ବିଷ୍ଣୁ
ଏମନ୍ତ ପୁତ୍ରଙ୍କୁ ବୋଲି ସଂସାରରେ ବିଷ୍ଣୁ ।
ସେ ପୁତ୍ର କୁଳଯାକକୁ ଅଟେ ନରୋତ୍ତମ
ତୁମେତ ପ୍ରତ୍ୟକ୍ଷ ବିଷ୍ଣୁ ହୋଇଛ ହେ ଜନ୍ମ ।
ଆମର ନ୍ୟାୟ ଭାଙ୍ଗିବ ତୁମେ ଆଜ ଏକା
ଉପରୋଧ ଛାଡ଼ି କହ ନ ରଖିଣ ଶଙ୍କା ।
ତୁମର ମାଏ ଅତ୍ୟନ୍ତ ଲୋଭ ଆଜ କଲେ
ଭାଗ ବାଣ୍ଟି ନେବା ବୋଲି କଳି ଲଗାଇଲେ ।
ତୁମ ବେନି ଭାଇଙ୍କି ସେ ନେଲେ ଭାଗକରି
ଆମ୍ଭଙ୍କୁ କହିଲେ ଭିନ୍ନ ମାର୍ଗେ କଥା ଚାରି ।
ବୋଇଲେ ପୋଷିବେ ମୋତେ ବୃଦ୍ଧକାଳେ
ତେଣୁକରି ତୁମ୍ଭଙ୍କୁ ମୁଁ ମାଗେ ଭାଗୁଟିଏ ।
ତାହା ଶୁଣି ମନେ ଆମେ ବିଚାର ଯେ କଲୁ
ସ୍ତିରୀକୁଳକୁ ଦୁହିତା ଆମେ ବାଣ୍ଟିଦେଲୁ ।
ବୁଝିଲେ ପିତାମାତାଙ୍କୁ ପୁତ୍ର କନ୍ୟା ଦୁଇ
ଅଟନ୍ତି ସମାନ ଏଥେଁ ସ୍ନେହ ଉଣା ନୋହି ।
ତୁମ ମନକୁ କିରୂପେ ଆସେ ଏହା କହ
ପିତାମାତାଙ୍କ ସଂଶୟ ମନୁ ଫେଡ଼ି ଦିଅ ।
ତୁମ ମାତା ଭାଗ ବାଣ୍ଟି ଦେଲେଣି ତ ସବୁ
ତୁମ ବଚନେ ସନ୍ତୋଷ ଆମେ ପୁଣ ହେବୁ ।
ଏରୂପେ ପିତାଙ୍କ ମୁଖୁ ଶୁଣି ଦେବ ସ୍ୱାମୀ
ମନରେ ପାଞ୍ଚି ବିଚାର କଲେ ଅନ୍ତର୍ଯ୍ୟାମୀ ।
ବୋଇଲେ ପୁଛିଲେ କେଡ଼େ କଥା ମତେ ତାତ
ବୁଝିଲେ ତ ପିତାବୀର୍ଯ୍ୟୁ ପୁତ୍ରହୋଏ ଜାତ ।
କହିବି ପିତାର ପୁତ୍ର ବୋଲି ଯେବେ ମୁହିଁ
ମାତାଏ ସଂସାରେ ତେବେ ନିର୍ମାକ୍ଷୀଯେ ହୋଇ
ମାତା ନ ଥିଲେ କରନ୍ତେ ପିତା କାହୁଁ ଜାତ
ବୁଝିଲେ ପୁତ୍ରକୁ ଦୁହେଁ ଅଟନ୍ତି ସରିତ ।
ମାତା ମୋତେ ଯେତେ କଷ୍ଟ ପାନ୍ତି ଗର୍ଭ ବହି
ବୁଝିଲେ ପିତାଙ୍କୁ ସେହି ରାଗ ନ ଲାଗଇ ।
ଚିହ୍ନିଲେ ମାତାଙ୍କ ଗୁଣ ନୋହେ ପିତା ସରି
ବୁଝିଲେ ପୁତ୍ର ଦୁହିତା ଦୁହେଁ ସମ ସରି ।
ପିତା ସ୍ନେହ ଯାହାଠାରେ ଯେତେ ହୁଏ
ତାହା କହିଦେବା ମନେ ନ କର ସଂଶୟେ ।
ଏତେକ ପାଞ୍ଚି ବୋଇଲେ ଶୁଣ ଆହେ ତାତ
ରଜେ ନ ମିଶିଲେ ବୀର୍ଯ୍ୟ କେବେ ନୋହେଜାତ
ଏଣୁ ସେ ପିତାମାତାର ରଜ ବୀର୍ଯ୍ୟ ଦୁଇ
କଳେବର ଧରି ଆସନ୍ତି ଯେ ଦେହ ବହି ।
ପୁତ୍ର ପୁତ୍ରୀ ଦୁହିଁଙ୍କର ସମ ପିତାମାତା
ତମ ଆଗେ କହିବାକୁ କିସ ମୋ ଯୋଗ୍ୟତା ।
ଆବର ଗୃହରେ ଜାଣ ଯେତେ ଦ୍ରବ୍ୟ ଥିବ
ଦଶଭାଗୁ ଭାଗେ ବାଣ୍ଟି ଦୁହିତାକୁ ଦେବ ।
ଆବର ଯେ ନବଭାଗ ପୁତ୍ରକୁଟି ଦେଇ
ପିତାର ଏ ଧର୍ମ ପୁରାଣରେ ଅଛି କହି ।
ଆବଇ କଥାଏ ମଧ ଶୁଣ ଆହେ ତାତ
ଯେତେ ପୁତ୍ର ପିତା ବୀର୍ଯ୍ୟୁ ହୋଇଛନ୍ତି ଜାତ ।
ଜ୍ୟେଷ୍ଠ ପୁତ୍ରଠାରେ ପିତାଙ୍କର ସ୍ନେହ ଥାଇ
କନିଷ୍ଠ ପୁତ୍ରଙ୍କଠାରେ ମାତା ଦୟା ହୋଇ ।
ମାତାର କନିଷ୍ଠ ପୁତ୍ର ପିତାର ସେ ଜ୍ୟେଷ୍ଠ
ଶୁଣିକରି ପିତାମାତା ହୋଇଗଲେ ହୃଷ୍ଟ ।
ବୋଇଲେ ନୃସିଂହ ତୁମେ ଧନ୍ୟ ଦୟାନିଧି
ଏକ ପଦକରେ ପିତାମାତା ଦେଲେ ବୋଧି ।
ଯେବଣରୂପେ ଆମର ଭାଙ୍ଗିଲୁ ସଂଶୟେ
ଏରୂପେ ସଂସାର ପାଳନ୍ତୁ ସେ ସର୍ବପୋଏ ।
ସୁପୁତ୍ର ସୁକନ୍ୟା ସେହି ଯେ ପୁତ୍ର ଦୁହିତା
ଗୁରୁ ପ୍ରାୟ ସେବନ୍ତି ସେ ସଦା ପିତାମାତା ।
ତୁମର ଯେ ପରିମୁଣ୍ଡା ଯାଉଁ ଆମେ ଘେନି
ବର୍ଦ୍ଧିତାରେ ରହିଥାଇ ପାଳ ଏ ମେଦିନୀ ।
ଏତେ ବୋଲି ପିତାମାତା ହେଲେ ମନ ତୋଷ
ନିଶି ପାହିଣ ରଜନୀ ହେଲା ଆସି ଶେଷ ।
ଦେବାଳୟମାନଙ୍କରେ ଶୁଭେ ଶଙ୍ଖଧ୍ୱନି
ପୂର୍ବଦିଗେ ଉଦେ ଆସି ହେଲେ ଦିନମଣି ।
ଉଠ ଭଗବତୀ ଦେବୀ ପୁତ୍ରେ କଲେ ବେଶ
ସେ ପାଦେ ଶରଣ ବିପ୍ର ପୀତାମ୍ବର ଦାସ ।

❋ ❋ ❋

## ଶେଷ ଓ ନୃସିଂହଙ୍କର ବ୍ରହ୍ମାଙ୍କ ନିକଟରୁ ବିଦ୍ୟାଶିକ୍ଷା

ଏଥକୁ କରିବେ ଦୟା ମୋତେ ଭାବଗ୍ରାହୀ
ନୃସିଂହ ଗ୍ରନ୍ଥର ଅର୍ଥ ମୁହିଁ ନ ଜାଣଇ ।
ବ୍ରହ୍ମାଦି ଶଙ୍କରଙ୍କୁ ଯେ ଅର୍ଥ ନୋହେ ଜଣା
ମନୁଷ୍ୟ ଛାର ହୋଇ ମୁଁ ଲେଖେ ଅଳକଣା ।

ବ୍ୟାସକୃତ ଏ ପଦର ସହସ୍ର ଯେ ଗ୍ରନ୍ଥ
ସତ୍ୟଯୁଗେ ଜନମିଲେ ଶ୍ରୀନୃସିଂହନାଥ ।
ଚାକ୍ଷୁସ ମନୁ ନାମରେ ମନୁବଂଶ ରାଜା
ପାଳନ୍ତି ଯେ ସତ୍ୟଯୁଗଯାକ ଜନପ୍ରଜା ।
କର୍ମକୁ ସଂସାରେ ଚାରିପାଦେ ପ୍ରବର୍ତ୍ତାଇ
ଚଣ୍ଡାଳୁ ବ୍ରାହ୍ମଣଯାଏ ସର୍ବ ସତ୍ୟ କହି ।
ସତ୍ୟରେ ଯେ କାରବାର ହୁଏ ସର୍ବସ୍ଥାନେ
ସତ୍ୟବଚନକୁ ପାଇଥାନ୍ତି ସର୍ବଜନେ ।
ଶ୍ରୀନୃସିଂହ ସ୍ୱାମୀଙ୍କର ମହିମା ହୋ ଶୁଣ
ପାଞ୍ଚିଲେ ବିଦ୍ୟା ପଢ଼ିବା ପାଇଁ ନାରାୟଣ ।
ନରସିଂହ ପାଞ୍ଚିଲେ ତ ଆମ୍ଭେ ବାସୁଦେବ
ମାନବ ହୋଇ କେ ମୋତେ ବିଦ୍ୟା ପଢ଼ାଇବ ।
ବ୍ରହ୍ମା ବିନା ଆନକେ ନ ପାରେ ବିଦ୍ୟା କହି
ପଢ଼ିବା ବିଦ୍ୟା ବ୍ରହ୍ମାଙ୍କ ପୁରେ ଏବେ ଯାଇ ।
ବୁଦ୍ଧି ହେଲାରୁ ବିଦ୍ୟା ନ ପଢ଼େ ଯେହୁ ଜାଣ
ସଂସାର ମଧ୍ୟେ ତାହାକୁ କୁପୁରୁଷେ ଗଣ ।
ଏତେକ ପାଞ୍ଚି ନୃସିଂହ ଶେଷଦେବେ କହି
ବୋଇଲେ ବିଦ୍ୟାପଢ଼ିବା ଚାଲ ବେନିଭାଇ ।
ବ୍ରହ୍ମାଙ୍କର ପୁରେ ଯାଇ ଖଡ଼ିହସ୍ତ ଦେବା
ଯାବତ ବିଦ୍ୟା ସଂସାରେ ଶିଖି ପକାଇବା ।
ଆବର ସାଧିବା କ୍ଷତ୍ରି ବିଦ୍ୟା ଧନୁ ଯଷ୍ଟି
ସାବେଳି ସେ କୁନ୍ତଚକ୍ର ଖଡ଼୍ଗ ଗଦାମୁଷ୍ଟି ।
ମାରି ଦୈତ୍ୟବଳ କରିବାକ ଦେବକାର୍ଯ୍ୟ
ଏତେବୋଲି ଧଇଲେକ ଖଡ଼ି ଦେବରାଜ ।
ପିତାମାତାଙ୍କର ଆଗେ ଧୂଳିମୁଠା ଢ଼ାଳି
ସିଦ୍ଧିରସ୍ତୁ ଲେଖିଣ ଯେ ଗଲେ ଢଳି ଢଳି ।
ଆମ ପିତାମାତା ପଢ଼ାନ୍ତୁ ଯେ ବୋଲି ପାଠ
ଗୁରୁ ନ ଥାଇ ଲେଖନ୍ତି ବିଦ୍ୟା ବେନି ଚାଟ ।
ଗେଲେ ସିଦ୍ଧିରସ୍ତୁ ବୋଲି ପଢ଼ନ୍ତି ସେ ମାତି
ତାହା ଦେଖିଣ ଆନନ୍ଦ ହୁନ୍ତି ଭଗବତୀ ।
ବୋଲନ୍ତି ପୁତ୍ରେ ମୋର ପାଠେ ମନ ଦେଲେ
ସ୍ୱାମୀଙ୍କି ଜଣାଇ ପାଠ ପଢ଼ାଇବି ଭଲେ ।
ଏତେ ପାଞ୍ଚି ମହାଦେଈ ସ୍ୱାମୀ ପାଶେ ଆସି
ପୁତ୍ରଙ୍କ କଥା କହନ୍ତି ମନେ ମନେ ହସି ।
ବୋଲନ୍ତି ପୋଏ ମୋହର ପାଠେ ଦେଲେ ମନ
ଦଶବରଷୁ ହେଲାଣି କେଡ଼େ ତାଙ୍କ ଜ୍ଞାନ ।
ଆପେ ଧୂଳିରେ ଖେଳନ୍ତି ଡାକି ସିଦ୍ଧିରସ୍ତୁ
ହେଲାଣି ଦଶବରଷ ଦିନୁ କେଡ଼େ ହେତୁ ।

ଦିନ ଉତ୍ତମ ବୁଝିଣ ଚାଟଶାଳୀ ନିଅ
ଗୁରୁଙ୍କ ଆଗେ ସମର୍ପି ବେଗେ ନେଇ ଦିଅ ।
ଶୁଣିଣ କୃଷ୍ଣବଲ୍ଲଭ ହେଲେ ଆନନ୍ଦିତ
ବୋଲନ୍ତି ଯେ ବିଦ୍ୟା ପଢ଼ିଯାନ୍ତୁ ବେନିସୁତ ।
ଏରୂପେ ହୁଅନ୍ତେ ତାତ ମାତ କଥା ବସି
ପିତା ମାତାଙ୍କର କଥା ଜାଣି ବ୍ରହ୍ମରାଶି ।
ବୋଇଲେ ପଢ଼ିବା ଆମ୍ଭେ ଗ୍ରାମେ ପାଠ ଯଦି
ମାନବ ମୁଖେ କି ପଢ଼ିହେବ ବିଦ୍ୟାସିଦ୍ଧି ।
ଏକଥା ମାତାପିତାଙ୍କୁ ନ କହିବା ଯେବେ
ଗୁରୁ ରଖିଣ ଆମ୍ଭଙ୍କୁ ଗୃହେ ପଢ଼ାଇବେ ।
ଏତେକ ପାଞ୍ଚି ମନରେ ପ୍ରଭୁ ବ୍ରହ୍ମରାଶି
ମାତା ପିତାଙ୍କ ଛାମୁରେ କହନ୍ତି ଯେ ବସି ।
ବୋଲନ୍ତି ଜନନୀ ଆଗୋ ଶୁଣ ମନଦେଇ
ମାନବ ଆମ୍ଭଙ୍କୁ ବିଦ୍ୟା ନ ପାରିବେ କହି ।
ଆମ ବ୍ରତଦିନ ଯେଉଁ ବ୍ରହ୍ମା ଆସିଥିଲେ
ଦେଖିଛ ତୁମେ ତାହାକୁ ଆମ ପାଇଁ ଭଲେ
ଆମ ବିଦ୍ୟାଗୁଣ ସେ ନ ଦେଖି ଶରୀରେଣ
କେତେ ରୂପରେ ତିଆରିକରି ବ୍ରହ୍ମା ପୁଣ ।
ବୋଇଲେ ତୁମ୍ଭର ପରା ଶିଶୁ ଜନ୍ମ ହୋଇ
ବିଦ୍ୟା ନ ପଢ଼ି ରହିଛ କେହ୍ନେ ଦେହ ବହି ।
ସପ୍ତବରଷୁ ଯେ ବିଦ୍ୟା ନ ପଢ଼ଇ ଜାଣ
ପଲାଶ ପୁଷ୍ପପ୍ରାୟେ ତା ରୂପ ଅକାରଣ ।
ସୁସ୍ତିରୀଙ୍କ ମଧ୍ୟେ ଯେହ୍ନେ ଅଟେ ବନ୍ଧ୍ୟାସ୍ତିରୀ
ପଣ୍ଡିତ ସଭାରେ ତାକୁ ତଥା ଲେଖିକରି ।
ସଂସାର ଲୋକଯାକରେ ଅଟେ ମୂର୍ଖ ଯେହୁ
ତୁମ୍ଭେତ ପରମବ୍ରହ୍ମ କି କିହିବି ଆଉ ।
ମହାକାଳ ପ୍ରାୟେ ସେହୁ ଦିଶେ ମାତ୍ର ଶୋଭା
ବିଦ୍ୟାହୀନ ପ୍ରାଣୀ ଅସୁରଙ୍କ ମତି ପ୍ରଭା ।
ହଂସ ସଭାରେ ବସିଲେ ବକ ଦିଶେ ଯେହ୍ନେ
ବିଦ୍ୟାହୀନ ପ୍ରାଣୀଙ୍କି ଯେ ଲେଖନ୍ତି ତେସନେ
ଆବର କଥାଏ ମଧ୍ୟ ଶୁଣ ଗୋ ଜନନୀ
ବିଦ୍ୟା ପଢ଼ିବା ସମୟ କହୁଥାଉଁ ଶୁଣି ।
ମାତାର ସ୍ତନ ଛାଡ଼ିଣ ଭାର୍ଯ୍ୟାସ୍ତନ ପାଏ
ଏଥିମଧ୍ୟେ ପଢ଼ିଲେଟି ବିଦ୍ୟା ନିର୍ଭାହୋଏ ।
ଆଉ କଥାଏ କହିଲେ ମଧ୍ୟ ବେଦବ୍ରହ୍ମ
ସେ କଥା କହୁଛି ତୁମ୍ଭେ ସାବଧାନେ ଶୁଣ ।
ଛତୁଫୁଟା କାଠ ଆଉ ନିଶଉଠା ପାଠ
କେତେବେଳେ ଜାଣ ନୁହେ ଏ ଦୁଇ ନିରାଟ ।

ବୋଇଲେ ପଢ଼ିବ ଯେକେ ଆସ ଆମ୍ଭ ପୁର
ବିଦ୍ୟା ପଢ଼ିବା ସମୟ ହୋଇଛି ତୁମ୍ଭର ।
ଆସିବ ଉତ୍ତମ ବିଦ୍ୟା ପଢ଼ି ବେନିଭାଇ
ଏମନ୍ତ ବୋଲି ବ୍ରହ୍ମା ଯେ ଗଲେ ମୋତେ କହି ।
ବିଶୁଦ୍ଧ କୁଳରେ ଜନ୍ମି ନୋହିଲେ ପଣ୍ଡିତ
ଯେତେ ସୌନ୍ଦର୍ଯ୍ୟ ହୋଇଲେକି ହୋଇବମାତ
ଗଣ୍ଡଗୋପ ତୁଲେ ସେହି ପ୍ରାଣୀ ଲେଖାହୋଇ
ପୁଣି ମାତା କହନ୍ତି ଯେ ପ୍ରଭୁ ଭାବଗ୍ରାହୀ ।
ସୁପଣ୍ଡିତ ପିତା ମାତା ଯାହାର ଅଟନ୍ତି
ସେହି ସିନା ବାଳକାଳୁ ପୁତ୍ରକୁ ପଢ଼ାନ୍ତି ।
ତୁମ୍ଭେ ଯେ ଜନ୍ମହୋଇଲ ଧାତା ଆଜ୍ଞା ପାଇ
ସହସ୍ରେ ବରଷ ତପ କଲ ମୋତେ ଧ୍ୟାୟି ।
ତୁମ୍ଭ ଭକ୍ତି ଚିହ୍ନି ସୁପ୍ରସନ୍ନ ହେଲି ମୁହିଁ
ବାଳକ ହୋଇ ତୁମ୍ଭର କୋଳେ ଜନ୍ମ ହୋଇ ।
ତୁମ୍ଭର ମୁଁ ମନକଥା ଜାଣି ହୃଦଗତେ
ଆନନ୍ଦରେ ବର ଯାଚି ଦେଲି ଶୁଦ୍ଧଚିତ୍ତେ ।
ତୁମ୍ଭେ ଯେ ପାଞ୍ଚିଲ ମନେ ହୋନ୍ତୁ ପୁତ୍ର ଦୁଇ
ତେଣୁ ଆସି ଆମ୍ଭେ ଜନ୍ମ ବେନିଭାଇ ।
ଆମ୍ଭେ ଯେ ଶ୍ରୀନାରାୟଣ ତୁମ୍ଭେ ତାହା ଜାଣ
ଗର୍ଭକୁ ଆସିଲାକାଳେ ଚିହ୍ନିଛ ଆପଣ ।
ପ୍ରତ୍ୟକ୍ଷ ତୁମ୍ଭର ସାନ ପୁତ୍ର ଅନନ୍ତଟି
ଲୁଚାଇ ସହସ୍ରଫଣା ଅଛନ୍ତି ପ୍ରକଟି ।
ଆମ୍ଭେ ସ୍ୱୟଂବ୍ରହ୍ମ ବୋଲି ତୁମ୍ଭେ ମୋତେ ଜାଣ
ଗର୍ଭେ ସ୍ଥିତିକାଳେ ଦେଖିଅଛି ପ୍ରତ୍ୟକ୍ଷେଣ ।
ଏ ଜନ୍ମ ଅନ୍ତେ ତୁମ୍ଭଙ୍କୁ ନେବଇ ବୈକୁଣ୍ଠ
ଚାରିଜନ୍ମଯାଏ ହେବି ମୁଁ ତୁମ୍ଭର ଚାଟ ।
ଆଦ୍ୟେ ନୃସିଂହ ଦ୍ୱିତୀୟେ ଶ୍ରୀବାମନ ହେବି
ତୃତୀୟରେ ରଘୁନାଥ ରୂପ ପ୍ରକାଶିବି ।
ଚତୁର୍ଥରେ କୃଷ୍ଣମୂର୍ତ୍ତି ମୁହିଁ ହେବି ପୁଣ
ଚାରିଜନ୍ମକୁ ଆମ୍ଭର ମାତା ତୁମ୍ଭେ ଜାଣ ।
ମାତା ବୋଇଲେ ହରି ଏକଥା ହେଲେ ସତ
ଗର୍ଭକୁ ଆସିଲାବେଳେ ଦେଖିଛ ତୁମ୍ଭନ୍ତ ।
ସେକାଳେ ମୁଁ ଦେଖିଥିଲି ବିଷ୍ଣୁ ବୋଲି ପୁଣି
ଦଇବୀମାୟାରୁ ଭୁଲି ନ ପାରେ ତ ଜାଣି ।
ସାକ୍ଷାତେ ବିଷ୍ଣୁଙ୍କୁ ପୁତ୍ର ପ୍ରାୟ ମୁଁ ମଣଇଁ
ପାଦେ ଲୁଚାଇ କୁଙ୍କୁମ ହୃଦରେ ଲେପଇ ।
ଅନନ୍ତ ଘେନି ସଙ୍ଗେ ଯେ ହେଲେ ଅବତାର
ଧଇଲେ ମାନବ ପ୍ରାୟେ ଆସି କଳେବର ।
ଦୁଷ୍ଟଙ୍କ ଭାରା ପୃଥ୍ୱୀ ନ ପାରେ ଯେଣୁ ସହି
ଜନ୍ମହେଲେ ଯେ ମାନବ ତନୁ ଏବେ କହି ।
ବ୍ରହ୍ମା ତ ଅଟନ୍ତି ଗୁରୁ ତୁଲ୍ୟ ପୃଥ୍ୱୀବୀକୁ
ଏବେ ପଢ଼ଇ ଦ୍ୱାପରେ ପୁଚ୍ଛିବେ ତୁମ୍ଭଙ୍କୁ ।
ଶାନ୍ଦିପନି ନାମେ ପୁଣି ହେବେ ବିଦ୍ୟାଗୁରୁ
ପୁତ୍ରକୁ ମାଗି ଦକ୍ଷିଣା ନେବେ ତୁମଠାରୁ ।
ଏହା ମୁଁ ଜାଣୁ ଜାଣୁ ତୁମ୍ଭଙ୍କୁ ପାଶୋରଇ
ପୁତ୍ର ପ୍ରାୟେ ମଣି ବିଷ୍ଣୁ ବୋଲି ନ ବୋଲଇ ।
ସ୍ୱୟଂ ବିଷ୍ଣୁ ହରିଙ୍କୁ କେ ବିଦ୍ୟା ପଢ଼ାଇବ
ମାନବ ଦେହ ପଢ଼ାଇ ଗୁରୁକେ ହୋଇବ ।
ବ୍ରହ୍ମାପୁରେ ପଢ଼ିଯାଇଁ ଏବେ ସବୁ ବିଦ୍ୟା
ପ୍ରତ୍ୟକ୍ଷେ ଦୁହିତା ତାଙ୍କ ଅଟଇ ସାରଦା ।
ସେ ମାତା ତୁମ୍ଭଙ୍କୁ ବେଗେ ପ୍ରସନ୍ନ ହୁଅନ୍ତୁ
ଶରୀରେ ଯାବତ ବିଦ୍ୟାଯାକ ପ୍ରକାଶନ୍ତୁ ।
ନୃସିଂହ ବୋଇଲେ ମାତ ଏହି ଆଜ୍ଞା କର
ତୁମ୍ଭର କୃପାରୁ ଆମ୍ଭେ ମାରିବୁ ଅସୁର ।
ମୂର ଦଇତ୍ୟକୁ ମାରି ମୁରାରି ହୋଇବୁ
ସବୁ କାଳକୁଟି ଏକା ନାମ ରଖିଥିବୁ ।
ଶୁଣିଣ ତାତ ଜନନୀ କଲ୍ୟାଣ ବାଞ୍ଛିଲେ
ବେନିଭାଇ ଯିବାପାଇଁ ବେଗେ ସଜହେଲେ ।
ମାଏ ବୋଇଲେରେ ବାପ ବେଗେ ଆସଯାଇ ।
ଅନ୍ଧର ଲଉଡ଼ି ମୋ ସଙ୍ଖାଳି ତୁମେ ଦୁଇ ।
ବିଦ୍ୟା ଲୋଭେ ମୁହିଁ ସିନା ଦେଉଅଛି ଛାଡ଼ି
ବହନ ଯାଇଣ ଏବେ ଆସ ପାଠ ପଢ଼ି ।
ପୁତ୍ରେ ବୋଇଲେ ଚିନ୍ତା ନ କର ମାତା କିଛି
ଆସିବୁଁ ଯେ ଦଶଦିନେ ବିଦ୍ୟାଯାକ ପୁଚ୍ଛି ।
ମାତାଙ୍କର ମନବୋଧ ମୋହି ପଦ୍ମନେତ୍ର
ଗରୁଡ଼କୁ ଧ୍ୟାନକରି ବସି କ୍ଷଣେମାତ୍ର ।
ଅକ୍ଷୟ ବନମାଳାକୁ ପଦ୍ମକରେ ଧରି
ଏକୋଇଶ ସହସ୍ର ଯେ ମନ୍ତ୍ର ଜପକରି ।
ହରି ତ ସକଳ ଆତ୍ମା ପୁଣି ସର୍ବ ଜୀବ
ତେଣୁ ସେ ଭଜନ୍ତି ବନମାଳୀ ବାସୁଦେବ ।
ଛପନକୋଟି ଯେ ବର୍ଣ୍ଣମାଳା ଧରି ହରି
ବସିଲେ ଗରୁଡ଼ ପୁରୁଷକୁ ଚିନ୍ତାକରି ।
ମନହିଁ ଜାଣଇ ଏକା ସେ ଅକ୍ଷୟମାଳା
ମନେ ନ କଲେ କି ଜପହୁଏ ଅସଙ୍ଖୁଳା ।
ଶ୍ରୀନୃସିଂହ ପ୍ରଭୁଙ୍କର ମନ ହୋଇବାକୁ
ଗରୁଡ଼କୁ ଚିନ୍ତାକରି ବସିଲେ ଯିବାକୁ ।

ବଦରିକା ଆଶ୍ରମକୁ ରମ୍ୟକଟି ଯେତେ
କୋଟିଏ ଯୁଣ ସେ ଲେଖା ହେବ ପଥ ଏତେ ।
ଆପଣ ଚିନ୍ତନ୍ତେ ଆପଣାକୁ ଯୋଗାରୁଢ଼
ଟଳିଲା ଆସନଗୋଟି ଜାଣିଲେ ଗରୁଡ଼ ।
ବୈକୁଣ୍ଠନାଥ ଚିନ୍ତିଲେ ବୋଲି ମନେ ଜାଣି
ବସିଲେ ଧ୍ୟାନ କରିଣ ସ୍ମରି ଚକ୍ରପାଣି ।
ଗରୁଡ଼ ଚିନ୍ତିଲେ ବୋଲି ପ୍ରଭୁ ହେଲେ ଆସିଦୃଶ୍ୟ
ଜଗତ ଆଲୋକ ଦୃଶ୍ୟ ହେଲା ଦଶଦିଶ ।
ଶଙ୍ଖଚକ୍ର ଗଦାବ୍ଜ ଚତୁର୍ଦ୍ଧାରୂପ ଦେଖି
ପିଛାଡ଼ି ଗରୁଡ଼ ଯେ ନ ପାରେ ବେନି ଆଖି ।
ଦେଖାଦେଇ ଗରୁଡ଼ର ଆଗେ ପୁଣି ରହି
ଶ୍ରୀମୁଖ ବାକ୍ୟ କହନ୍ତି ପ୍ରଭୁ ଭାବଗ୍ରାହୀ ।
ବୋଲନ୍ତି ଗରୁଡ଼ ତୁହି ଆସନ ମୋ ଜାଣ
ନିଃଶ୍ୱାସକେ ବୁଲିଯାଉ ସସ୍ରକୋଟି ଯୁଣ ।
ଆମ୍ଭେ ତୋର ଆତ୍ମା ତୁହି ଅଟୁ ଆମ୍ଭ ଦେହୀ
ତେଣୁ ତୁହି ଆମ୍ଭ ଦେହେ ସଦା ଥାଉ ରହି ।
ତୁହି ବହିବାରୁ ଆମ୍ଭ ବିହାରରେ ସୁଖ
ଏରୂପେ କହିଣ ହରି ଗଲେ ଅନ୍ତରୀକ୍ଷ ।
ଏରୂପେ ଶ୍ରୀମୁଖୁଁ ଧ୍ୟାନେ ଶୁଣନ୍ତି ଗରୁଡ଼
ପୁଣି ଚାହିଁଲା ନାହାନ୍ତି ଆଗେ ଯୋଗାରୁଢ଼ ।
ଗରୁଡ଼ ଜାଣି ବସିଲା ପୁଣି ଧ୍ୟାନକରି
ଦେଖିଲା ବଦ୍ରିକାଦେଶେ ବିଜେ ନରହରି ।
ଧ୍ୟାନ ତେଜି ଅନ୍ତରାଳେ ଗଲା ସେହିକ୍ଷଣି
ନିଃଶ୍ୱାସ ମାତ୍ରେ ଭେଟିଲା ଯାଇ ଚକ୍ରପାଣି ।
ବିଦ୍ୟା ପଢ଼ିବାକୁ ବିଷ୍ଣୁ ହୋଇଛନ୍ତି ସଜ
ଏମନ୍ତବେଳେ ମିଳିଲା ଯାଇଁ ପକ୍ଷୀରାଜ ।
ନମସ୍କାର କରି ଶୁତିଲାକ ପାଏ ପଡ଼ି
ଉଠି ଉଭାହୋଇ ପୁଣି କହେ କରଯୋଡ଼ି ।
ବୋଇଲା କେତେକ କାର୍ଯ୍ୟେକଲ ମୋତେଚିନ୍ତା
ଶତ୍ରୁ ଥିଲେ କହ ସ୍ୱାମୀ କରିବି ନାଶନ୍ତା ।
ନୋହିଲେ ଏ ପୃଥ୍ୱୀ ତେଜିବ କି ନରହରି
ଆଜ୍ଞାହୋଇଲେ ଆସିବି ବୁଲି ତିନିପୁରୀ ।
ନୃସିଂହ ଆଜ୍ଞାକଲେକ ଶୁଣି ଖଗେଶ୍ୱର
ତୋ ପ୍ରାୟେ ଭୃତ୍ୟ ମୋତେ ନ ମିଳେତିନିପୁର ।
ଆମ୍ଭ ଆଦ୍ୟର ବିଷୟମାନ ପାଞ୍ଛିଥିଲେ
କେତେ ପୃଥିବୀ ଆବୋରି ଥାଆନ୍ତେ ତ ଭଲେ ।
ଏବେ ମୁହିଁ ରଖିଅଛି ଯେତେ ଭୂମି ଜାଣ
ମୋର କରିବାର ଅଟେ ଯେତେକ ନିର୍ମାଣ ।
ତେତେ ଦୂରଯାଏ ହେଲେ ଅଛି ତୋର କ୍ଷେପ
ଏଥିଉତ୍ତାରେ ଅଛି ଯେ ସେ ଅଟେ ଅମାପ ।
ପଞ୍ଚାଶତ କୋଟି ଯୁଣ ଉତ୍ତାରେ ଯେ ମହୀ
ତାହାକେ ଆନ କରି ନ ପାରେ ଜାଣୁ ତୁହି ।
ପକ୍ଷୀ ବୋଇଲା ଆବର ଅଛି କେତେ କହ
ଶ୍ରୀମୁଖରୁ ଶୁଣିଥିଲେ ଫିଟିବ ସନ୍ଦେହ ।
ପ୍ରଭୁ ବୋଇଲେ ହୋ ଶୁଣ କଶ୍ୟପର ବଳା
ଜାଣିବ ଲେଖିଲେ ଅଙ୍କ ସ୍ଥାପି ପୃଥ୍ୱୀମାଳା ।
ଏକ ଦୁଇ ତିନି ଚାରି ପାଞ୍ଚ ବୋଲି ଜାଣ
ଷଷ୍ଠ ସପ୍ତମ ଅଷ୍ଟମ ନବମ ଭିଆଣ ।
ଏକରେ ଶୂନ୍ୟ ଥୋଇଣ ଦଶ ବଢ଼ୁଥିବ
ଶୂନ୍ୟ ସ୍ଥାପୁଥିଲେ ଦଶଗୁଣ ବଢ଼ୁଥିବ ।
ଏକରେ ଏକ ସ୍ଥାପିଲେ ଏଗାର ଯେ ହୋଇ
ଏକ ଘନ ଶବଦ ସେ ଅଙ୍କୁ ପ୍ରବର୍ତ୍ତାଇ ।
ଦଶରେ ଦଶ ମିଶାଇ ଘନ କରିଦେବ
ଦ୍ୱାଦଶ ଘନ ସ୍ଥାପିଲେ ପିଣ୍ଡ ବୋଲାଇବ ।
ପିଣ୍ଡ ହେଲା ସିନା ଏହି ଆତ୍ମା କେହୁ ଏଥି
ଏହା ନ ଜାଣ କି ଯେବେ ଧରି ପାଞ୍ଜି ପୋଥି
ମୁଖରେ ନ କରି ଗୋଳ ବୁଦ୍ଧି ଥିଲେ ଜାଣ
ଏ ସନ୍ଧି ଯେ ଜାଣେ ସେହି ଅଟଇ କାରଣ ।
ଠୁଳ ନାସ୍ତି ଶୂନ୍ୟ ନାସ୍ତି ଆତ୍ମା ନାସ୍ତି କହି
ବ୍ରହ୍ମଜ୍ଞାନ ବୋଲି ଜାଣି ପ୍ରତ୍ୟକ୍ଷେ ଯେ ମୁହିଁ ।
ନିତ୍ୟପଦ ବୋଲି ଯାହା ଜାଣଟିକି ତୁମ୍ଭେ
ଗୁରୁ କରି ପୂଜାକଲେ କହିଦେବୁ ଆମ୍ଭେ ।
ଗୁରୁଙ୍କ ମହିମା ଗୋଟି ଅପାରୁଁ ଅପାର
ବିପ୍ର ପୀତାମ୍ବର କହେ ଅନୁଭବ କର ।
ବ୍ରହ୍ମଜ୍ଞାନ କହିବାକୁ ଭାଜନ କେ ଅଛି
ଯେ ଜାଣେ ଯେତିକି ସେହି ତେତିକି ସେ ପୁଛି ।
ଏକରୁ ଅନନ୍ତ ହୋଏ ଅନନ୍ତରୁ କାଠି
କାଠି ପର୍ଯ୍ୟନ୍ତ ସବୁରି ଅଛି ଜାଣ ଦୃଷ୍ଟି ।
ଆବର ତେଣିକି ଜାଣ ଅଟଇ ଅମାପ
ମୋ ରୂପକୁ ଜାଣେ ମୁହିଁ ଜ୍ଞାନକୁ ସେ ଗୋପ୍ୟ ।
ଯେତେକ କହିଲୁ ପୃଥ୍ୱୀ ତେତେ ତୁମ୍ଭେ ଜାଣ
ଆବର ଅବତାରର ମହିମା ହୋ ଶୁଣ ।
ମୁଁ ନୃସିଂହ ଅବତାର ହେଲି ଆଦ୍ୟେ ଯାହା
ଏ ଅବତାରେ ତୁ ମୋତେ ହେବୁ ସଦା ସାହା ।
ମାରିବି ମୁଁ ମୁର ଦୈତ୍ୟ କରି ଦୁଷ୍ଟ କ୍ଷୟ
ତୁମ୍ଭର କନ୍ଧରେ ବସି କରିବି ବିଜୟ ।

ନୃସିଂହ ନାମକୁ ମୋର ଏ ସଂସାରେ ଭଜି
ଆରୋଗ୍ୟ ରହିବେ ଲୋକେ ସୁଖଭୋଗ ଭୁଞ୍ଜି ।
ଶ୍ରୀନୃସିଂହ ନାମକୁ ଦେବ ମାନବେ ଯେ ପଢ଼ା
ବିଦ୍ୟା ମୁହିଁ ନ ପଢ଼ିଲେ ହେବେ ପ୍ରାଣୀ ଜଡ଼ା ।
ନର ବାନର ସମସ୍ତେ ଜାଣ ନରସିଂହ
ଶ୍ରୀନୃସିଂହ ନ ପଢ଼ିଲେ ହେବ ବିଦ୍ୟାଭଙ୍ଗ ।
ବ୍ରହ୍ମା ଆସିଣ ବୋଇଲେ ମୋତେ ବିଦ୍ୟା ପଢ଼
ଗରୁଡ଼ ବାହନେ ଚଢ଼ି ଆସ ଯୋଗାରୁଢ଼ ।
ଗରୁଡ଼ ଯେଣୁ ବିଷ୍ଣୁର ମହାଭକ୍ତ ଅଟେ
ପଡ଼ିବ ତାହାର ପାଦରଜ ମେରୁକ୍ରୋଟେ ।
ମେରୁ କ୍ରୋଟରେ ସିନା ମୋ ନଗ୍ର ଯଶୋବନ୍ତୀ
ସର୍ବେ ତୋଷହେବେ ଦେଖି ଗରୁଡ଼ ଜ୍ୟୋତି ।
ଏରୂପେ କହି ମୋତେ ଗଲେ ବେଦବର
ଆପଣ ଯେ ବହି ମୋତେ ନିଅ ଖଗେଶ୍ୱର ।
ମୋହ ପାଖରୁ ତୋତେ ମୁଁ କେଭେ ନ ଛାଡ଼ିବି
ଥିବୁ ତୁ ଅମର ହୋଇ ସଦାକାଳେ ସେବି ।
ଗରୁଡ଼ ବୋଇଲେ ସ୍ୱାମୀ କେଡ଼େ ଭାଗ୍ୟ ମୋର
ମୋ ମନର କଥାଜାଣି ଯାଚିଦେଲେ ବର ।
କି ମାର୍ଗେ ସେବିବି କେଉଁ ଅବତାରେ ମୁହିଁ
ଏ କଥା ମୁଁ ଶୁଣିଥିବି କହ ଭାବଗ୍ରାହୀ ।
ନୃସିଂହ ବୋଇଲେ ଶୁଣହେ ବିନତା ପୁଅ
ଏ ଅବତାରଠାରୁ ମୋ ଆଜ୍ଞା ପାଳିଥାଅ ।
ଧ୍ୱଂସିବି ମୁଁ ଧୈର୍ଯ୍ୟବଳ ନାଶି ମୁରାସୁର
ତୋ କନ୍ଧେ ବସିଯିବି ମୁଁ ବଇକୁଣ୍ଠପୁର ।
ତହିଁ ଉତ୍ତାରୁ ମୁଁ ପୁଣି ତ୍ରେତାଯୁଗେ ଯାଇ
ଶ୍ରୀ ସୂର୍ଯ୍ୟବଂଶରେ ଜନ୍ମହେବୁଁ ଚାରିଭାଇ ।
ଶ୍ରୀ ରଘୁନାଥ ଲକ୍ଷ୍ମଣ ଭ୍ରତ ଶତ୍ରୁଘନ
ଋଷିଚରୁରୁ ଯେ ଆମ୍ଭେ ହେବୁ ଉତପନ୍ନ ।
ତେଣୁ ସେ ଚରୁରୁ ରାମ ବୋଲାଇବୁ ଆମ୍ଭେ
ଏକା ବିଷ୍ଣୁ ଚାରି ନାମ ବଢ଼ ମାତୃଗର୍ଭେ ।
ଦଶରଥ ରାଜାଙ୍କର ବୀର୍ଯ୍ୟ ହେବୁ ଜାତ
କଉଶଲ୍ୟା କଇକେୟୀ ସୁମିତ୍ରା ତ୍ରିମାତ ।
ପିତାଙ୍କର ସତ୍ୟପାଳି ବନବାସ ଯିବୁଁ
ଜନକ ଦୁହିତା ସୀତା ସଙ୍ଗେ ନେଇଥିବୁଁ ।
ଦଣ୍ଡକାରଣ୍ୟ ମଧ୍ୟରେ ଥିବୁ କରି ବାସ
ଏ ସମୟେ ଦଶଶିର ହୋଇଣ ପ୍ରବେଶ ।
ସୀତାଙ୍କୁ ଚୋରାଇ ଲଙ୍କାପୁରେ ଘେନିଯିବ
ସେହିଠାରୁ ଆମ୍ଭ ମନେ ଦୁଃଖ ପ୍ରବର୍ତ୍ତିବ ।

ସମୁଦ୍ରରେ ସେତୁ ବାନ୍ଧି ସୁବଳଯା ଯିବୁ
ରାବଣର ତୁଳେ ବହୁ ଯୁଦ୍ଧ ଯେ କରିବୁ ।
ଇନ୍ଦ୍ରଜିତ ନାମେ ଥିବ ରାବଣର ପୁଅ
ସେ ଆସି ବାନ୍ଧିବ ନାଗପାଶେ ଆମ୍ଭ ଦେହ ।
ସେତେବେଳେ ତୋତେ ଆମ୍ଭେ ମନରେ ସ୍ମରିବୁ
ସୁମରିଲାକ୍ଷଣି ଆମ୍ଭଙ୍କୁ ତୁ ଦେଖାଦେବୁ ।
ତୋତେ ଦେଖିବାରେ ବିଭୀଷଣ ପ୍ରତେ ଯିବ
ସ୍ୱୟଂ ବିଷ୍ଣୁ ବୋଲି ମୋତେ ମନରେ ପାଞ୍ଚିବ ।
ବୋଲିବ ସେ କାହିଁ ଲଙ୍କା ରମ୍ୟକ ଯେ କାହିଁ
ବିଷ୍ଣୁ ନୋହିଲେ ଗରୁଡ଼ ଆସନ୍ତାକି ଧାଇଁ ।
ଏବେ ରାବଣ ମାରିବେ ନିଶ୍ଚେ ରଘୁନାଥ
ତୋର ଘେନି ବିଭୀଷଣ ଚିହ୍ନିବ ଆମ୍ଭନ୍ତ ।
ତୋତେ ଘେନି ନାଗପାଶୁଁ ହେବୁ ଆମ୍ଭେ ପାରି
ରାବଣ ମାରି ଆସିବୁ ଆମ୍ଭେ ନିଜ ପୁରୀ ।
ସେହି ଅବତାର ଅନ୍ତେ ଦ୍ୱାପରରେ ଯାଇଁ
କୃଷ୍ଣ ଅବତାର ହେବୁ ପୁଣି ଦେହ ବହି ।
ଦେବକୀ ଗର୍ଭରୁ ଜନ୍ମି ଗୋପରେ ବଢ଼ିବୁ
ଅଷ୍ଟ ବରଷର ଅନ୍ତେ ମଥୁରାକୁ ଯିବୁ ।
କଂସକୁ ମାରିଣ ରାଜା ଉଗ୍ରସେନ କରି
ଅଷ୍ଟପାଟବଂଶୀ ବିଭାହେବୁ ମନୋହାରୀ ।
ରୁକ୍ମିଣୀକି ଶିଶୁପାଳ ବିଭା ହେବାପାଇଁ
ବେଦୀରେ ବସିଥିବ ଯେ ବରବେଶ ହୋଇ ।
ତେତେବେଳେ ତୋର କନ୍ଧେ ବସି ଆମ୍ଭେ ଯିବୁ
ଶୂନ୍ୟେ ଥାଇ ରୁକ୍ମିଣୀକି ଘେନିଣ ଆସିବୁ ।
ରୁକ୍ମିଣୀ ସହିତ ଆମ୍ଭେ ତୋ ପୁରେ ବସିଣ
ଆସିବୁ ଦ୍ୱାରକା ପୁରେ ଆହୋ ପକ୍ଷୀରାଣ ।
ଲକ୍ଷ୍ମୀନାରାୟଣ ବେନି ବିଭାହୋଇ ସୁଖେ
ଲୀଳାସାରି ବୈକୁଣ୍ଠକୁ ଆସିବୁ ପ୍ରତ୍ୟକ୍ଷେ ।
ଏଥୁଅନନ୍ତରେ ପୁଣ କଳିଯୁଗେ ଯାଇ
ନୀଳନଗ୍ରେ ଜଗନ୍ନାଥ ହେବୁ ବେନିଭାଇ ।
ବ୍ରହ୍ମାଙ୍କୁ ସୁଭଦ୍ରା ବୋଲି ମଧ୍ୟରେ ବସାଇ
ରତ୍ନସିଂହାସନେ ପୂଜ୍ୟ ହେବୁ ବେନିଭାଇ ।
ତୁ ହୋ ଖଗେଶ୍ୱର ଆମ୍ଭ ଆଗେ ବସିଥିବୁ
ଚତୁର୍ଦ୍ଦଶଲୋକଙ୍କୁ ତୁ ଆଦ୍ୟେ ଦେଖାଦେବୁ ।
ପଣ୍ଡାଏ କରିବେ ତୋ ମୋ ମଧ୍ୟେ ଭୋଗଲାଗି
ସେହି ଭୋଗ ଖାଇ ପ୍ରାଣୀହେବେ ସ୍ୱର୍ଗଭୋଗୀ
ତରିବେ ନିର୍ମାଲ୍ୟ ସେବାକରି ପ୍ରାଣୀ ସର୍ବ
ତୋର ମୋର ମଧ୍ୟେ ରହି ପ୍ରସାଦ ଯେ ହେବ ।

ତୁ ମୋହର ଆଗେ ଜାଣ ସଦା ଥିବୁ ରହି
ଦର୍ଶନ କରିବେ ତୋତେ ଆଗେ ସର୍ବଦେହୀ ।
ଯେ ହେଲେ ବୋଲିବେ ଗରୁତ୍ମାନ ଭଗବାନ
ଗରୁଡ଼ ଆସନେ ବସିଛନ୍ତି ଜନାର୍ଦ୍ଦନ ।
ଗରୁଡ଼ ଆସନ ହୋଇଛନ୍ତି ପ୍ରଭୁ ଦେଖ
ତୋ ନାମ ଆଗେଧରି ମୋନାମେହେବେ ମୋକ୍ଷ ।
ଶୁଣି ଖଗପତି ଛାଡ଼ିଲାକ ମନୁ ଶଙ୍କା
ବୋଇଲା ଯେ କେଡ଼େ ଭାଗ୍ୟ ବହିବି ମୁଁ ଏକା ।
ଚକାଆସନ ଲାଗି ମୋ ନାମ ଆଗ ହେଲା
ଧନ୍ୟ ଏ ଜଗନ୍ନାଥର ମହିମା ଯେ ଭଲା ।
ସାନକୁ ବଡ଼ କରଇ ବଡ଼କୁ ସେ ସାନ
ଏ କଥା ସତ ବୋଲି ନ ଜାଣେ ମୂର୍ଖଜନ ।
ରହିବି ପ୍ରଭୁଙ୍କ ସେବା କରି ଯୁଗେ ଯୁଗେ
ବ୍ରହ୍ମାଙ୍କ ଭେଟ ପାଇବି ଗଲେ ଏହିଲାଗେ ।
କେଡ଼େ ଭାଗ୍ୟେ ଜନ୍ମିଲି ମୁଁ କଶ୍ୟପର ବୀର୍ଯ୍ୟେ
ପିଠିରେ ବହିବି ମୁଁ ଯେ ଆଜି ଦେବରାଜେ ।
ଏତେ ବୋଲିଣ ଗରୁଡ଼ ବେଶକଲେ କାୟେ
କାଟିଲା ତିଳକ ନାସିକାରୁ କେଶଯାଏ ।
ସୁବର୍ଣ୍ଣ କୁଣ୍ଡଳ ବେନି ଲମ୍ବାଇଲା କର୍ଣ୍ଣେ
ମଥାରେ ଖଞ୍ଜିଲା ମଲ୍ଲୀଫୁଲ ଅତି ଯତ୍ନେ ।
କନ୍ଧରେ ପଇତା ନବଗୁଣେ ଗଣ୍ଠି ପାଡ଼ି
ପୂର୍ବମୁଖେ ବସି ଘେନିଲା ତା ମନ୍ତ୍ର ପଢ଼ି ।
ମଥାରେ ମନ୍ଦାର ପୁଷ୍ପମାଳା ନେଇ ଖଞ୍ଜି
ଗଳାରେ ଲମ୍ବାଇ ମୁକ୍ତାମାଳ ପୁଞ୍ଜି ପୁଞ୍ଜି ।
ମିଶାଇଣ ରଙ୍ଗ ଶୁକ୍ଳ ପାଟଫୁଲ ବାନ୍ଧି
ପିଠିକି ଲମ୍ବାଇଦେଲା ଚୁଟିକି ଯେ ଛନ୍ଦି ।
ପିନ୍ଧିଲା ବାଛି ହୋଇଣ ସରୁ ଝୀନ ଶାଢ଼ୀ
ବସିଛି ସୁବର୍ଣ୍ଣ କମ ତହିଁ ଧାଡ଼ି ଧାଡ଼ି ।
ବାନ୍ଧିଲା ହୀରା ପାଖୁଡ଼ା ମାଳା ଅଣ୍ଟାରେଣ
ଝୁମୁକି ବଜାଇ ବେନି କରେ ରୁଣଝୁଣ ।
ଘଣ୍ଟ ଯେ ଘଣ୍ଟି ଘାଗୁଡ଼ି ଜାନୁଯୁଗେ ବାନ୍ଧି
ସେ ଶବଦ ନାଦେ ତିନିପୁର ଉଠେ ଭେଦି ।
ଦେହଯାକେ ଅଳଙ୍କାର ଦିଶେ ଝଟ ଝଟ
ତହିଁକି ଦିଶେ କେତକୀ ଶୋଭା ରଙ୍ଗପାଟ ।
ଶିରରୁ ପାଦଯାଏ ଯେ ଲମ୍ବାଇଛି ବେଣୀ
ଅନନ୍ତ ମଥାରେ ଯେହ୍ନେ ଦିଶେ ସପ୍ତଫଣୀ ।
ଶତେକ ଚିରାଳ ଚିତା ବେନି ଖଗେ ବାନ୍ଧି
ଗେଲେ ଗେଲେ ଚାଲଇ ସେ ପାଦ ଦୁଇ ଛନ୍ଦି ।

ଏରୂପେ ସଜ ହୁଅନ୍ତେ କଶ୍ୟପର ବାଳ
ଆଚ୍ଛା ଆଚ୍ଛା ବୋଲି ହସିଲେକ ଆଦିମୂଳ ।
ମାତା ପିତାଙ୍କୁ ପ୍ରଣମି ଉଠି ବେନିଭାଇ
ଗରୁଡ଼ କନ୍ଧରେ ବସିଲେକ ଶ୍ରଦ୍ଧାପାଇ ।
ମିଳିଲେ ବ୍ରହ୍ମାଙ୍କ ନଗ୍ରେ ଯାଇ ନାରାୟଣ
ସଭାରେ ବସିଣ ପିତା ଚାହିଁଲେ ତକ୍ଷଣ ।
ଦେଖିଲେକ ବିଷ୍ଣୁଯାନ ଆସେ ଶୂନ୍ୟେ ଉଡ଼ି
ନନ୍ଦିଘୋଷ ପାଦପ୍ରାୟେ ଶୁଭେ ଘଡ଼ଘଡ଼ି ।
ସଭାରେ ଅଠାଶୀସସ୍ର ଋଷି ଥିଲେ ବସି
ଦେଖିଲେ ଆସନ୍ତି ବିଜେକରି ବ୍ରହ୍ମରାଶି ।
ବ୍ରହ୍ମା ବୋଇଲେ ହୋ ଏବେ ଶୁଣ ଋଷିଜନେ
ନୃସିଂହ ଆସନ୍ତି ବିଜେକରି ଦେଖ ଶୂନ୍ୟେ ।
ଯେଉଁ ନିମନ୍ତେ ଆସନ୍ତି ଏଥେ ଆଦିମୂଳେ
ସେ କଥା ଜଣାହୋଇଲା ମୋତେ ଯୋଗବଳେ ।
ଆସନ୍ତି ବିଦ୍ୟା ପଢ଼ିବାପାଇଁ ବେନିଭାଇ
ପବିତ୍ର ହେବା ଶ୍ରୀମୁଖ ଦରଶନ ପାଇ ।
ଯେବଣ ପ୍ରଭୁଙ୍କୁ ମୁଖୁ ସର୍ବ ବିଦ୍ୟା ଜାତ
ତାହା ପଢ଼ି ପଢ଼ିକରି ସଂସାରେ ମୁଁ ଖ୍ୟାତ ।
ସେ ସବୁ ଏବେ ମାନବରୂପେ ଜନ୍ମିବାରୁ
ଆସନ୍ତେ ପାଠ ପଢ଼ିବା ପାଇଁ ଏତେ ଦୂରୁ ।
ଏରୂପେ ସଭାରେ କହୁଁ କହୁଁ ବେଦବର
ବ୍ରହ୍ମାଙ୍କ ପୁରେ ମିଳିଲେ ଆସି ଚକ୍ରଧର ।
ଗରୁଡ଼ କନ୍ଧୁ ଉତୁରି ଯାନ୍ତେ ସଭାମଧ୍ୟେ
ଦେଖି ବ୍ରହ୍ମା ଅର୍ଘ୍ୟ ଦେଲେ ଶ୍ରୀଗୋବିନ୍ଦପାଦେ ।
ଅର୍ଘ୍ୟ ବନ୍ଦାଇ କରଇ ପିତା ଆଗେ ସ୍ତୁତି
ଜୟ ଜୟ ଶ୍ରୀନୃସିଂହ ପରଂବ୍ରହ୍ମ ମୂର୍ତ୍ତି ।
ଜୟ ଜୟ ଶ୍ରୀନୃସିଂହ ବେନିସସ୍ର ନେତ୍ର
ଜୟ ଜୟ ଶ୍ରୀନୃସିଂହ ତ୍ରିଲୋକ ପୂଜିତ ।
ଜୟ ଜୟ ଶ୍ରୀନୃସିଂହ ବେନି ସସ୍ର କର୍ଣ୍ଣ
ଜୟ ଜୟ ଶ୍ରୀନୃସିଂହ ସହସ୍ର ବଦନ ।
ଜୟ ଜୟ ଶ୍ରୀନୃସିଂହ ସସ୍ର ନାସାପୁଟ
ପ୍ରାଣ ପବନ ଘେନିଣ ବିଜେ ସର୍ବ ଘଟ ।
ଜୟ ଜୟ ଶ୍ରୀନୃସିଂହ ସସ୍ର ବାହୁ ପ୍ରଭା
ଜୟ ଜୟ ଶ୍ରୀ ନୃସିଂହ ସହସ୍ର ଯା ଜିହ୍ୱା ।
ଜୟ ଜୟ ଶ୍ରୀ ନୃସିଂହ ସସ୍ର ଆମ୍ଭା ହରି
ଘଟୁ ବ୍ରହ୍ମାଯାଏ ଅଛ ବ୍ରହ୍ମାଣ୍ଡରେ ପୁରି ।
ଆହେ ପ୍ରଭୁ ତୁମ୍ଭ ମୁଖୁ ବ୍ରାହ୍ମଣ ଉତ୍ପତ୍ତି
ଭୁଜରୁ କ୍ଷତ୍ରିୟକୁଳ ଉରୁଁ ବୈଶ୍ୟଜାତି ।

ପାଦୁ ଶୂଦ୍ରଜାତି ଜନ୍ମ କରିଅଛ ପୁଣି
ନାଭିରୁ ବ୍ରହ୍ମାଙ୍କୁ ପରକାଶ କଲ ଆଣି ।
ମନରୁ କରିଛ ପ୍ରଭୁ ଚନ୍ଦ୍ରମାକୁ ଜାତ
ଦ୍ୱାଦଶ ସୂର୍ଯ୍ୟଙ୍କୁ କଲ ନେତ୍ରରୁ ବ୍ୟକତ ।
ପବନକୁ ଜାତ କଲ ନାସାରୁ ଯେ ପୁଣି
ହୃଦୟରୁ ଜାତକଲ ଦେବତାକୁ ଆଣି ।
ଜିହ୍ୱା ମୂଳରୁ କରିଛ ଅଗ୍ନି ଅବତାର
ହୋଇଛ ଏକା ମୂରତି ବ୍ରହ୍ମା ବିଷ୍ଣୁ ହର ।
ବ୍ୟାପିଛି ଆକାଶେ ତୁମ୍ଭ ଶିର ଅଗ୍ରଭାଗ
ପାତାଳେ ହୋଇଛି ତବ ପାଦପଦ୍ମ ଯୋଗ ।
ସ୍ୱର୍ଗ ତୁମ୍ଭ ଶିର ପୁଣି ମଞ୍ଚ ତୁମ୍ଭ ପାଦ
ଏହି ସକାଶରୁ ତୁମ୍ଭେ ଅଟ ପୂର୍ଣ୍ଣାନନ୍ଦ ।
କେବଳ ମାତ୍ରକ ପ୍ରଭୁ ଏ ସଂସାର ହିତେ
ପ୍ରକାଶ ହେଲ ମାନବରୂପେ ଏ ଜଗତେ ।
କେବଳ ଯେ କିଛି ଭାଗ୍ୟ ଥିଲା ପୂର୍ବେ ମୋର
ଦୁର୍ଲ୍ଲଭ ଦର୍ଶନ ଦେଲ ଶ୍ରୀ ପରମେଶ୍ୱର ।
ଏହା କହି ନମି ବ୍ରହ୍ମା ଶ୍ରୀନୃସିଂହ ଆଗେ
ପଢ଼ନ୍ତି ଯେ ଚାରିବେଦ ଅତି ଭକ୍ତିଯୋଗେ ।
ବ୍ରହ୍ମାଙ୍କ ଭକତି ଦେଖି ପ୍ରଭୁ ଚକ୍ରପାଣି
କହନ୍ତି କୋମଳସ୍ୱରେ ମଧୁ ମଞ୍ଜୁବାଣୀ ।
ବୋଲନ୍ତି ହେ ସାବଧାନ ଶୁଣ ବେଦବରେ
ଆମ୍ଭେ ତ ଆସିଛୁ ବିଦ୍ୟା ପଢ଼ି ତୁମ୍ଭଠାରେ ।
ବ୍ରହ୍ମା ବୋଇଲେ ତ ତୁମ୍ଭ ଦେହଯାକ ବିଦ୍ୟା
ଆଉ କି ପଢ଼ି ସଂସାରେ ହେବ ତୁମ୍ଭେ ସିଦ୍ଧା ।
ଅକଳିତ ବିଦ୍ୟା ଯାର ଦେହେ ଅଛି ପୁରି
ସେ ପ୍ରଭୁ ଆଗେ କହିବି କିସ ମୁଁ ଉଚାରି ।
ଲକ୍ଷ୍ମୀ ସାରଦା ଅଟନ୍ତି ଯାର ନିଜ ପତ୍ନୀ
ସେଠାରେ କହିବ ଯେଉଁ ବିଦ୍ୟା ପଦ୍ମଯୋନି ।
କହିଲେ ନୃସିଂହ ହେଲେ ଏ କଥା ଯେ ସତ
କେବଳ ପଢ଼ିବୁ ଲୋକମାର୍ଗେ ଦିନ ସାତ ।
ବ୍ରହ୍ମା ବୋଇଲେ ଶୁଣିବା ତେବେ ନାରାୟଣ
ତୁମ୍ଭେ ପଢ଼ିଲେ ହୋଇବ ମୋର ବିଦ୍ୟାଗୁଣ ।
ଆସିବ ପାଶୋରିଥିବ ବିଦ୍ୟା ମୋତେ ସବୁ
ପଢ଼ାଉଥିଲେ ବିରାଟ ବିଦ୍ୟା ହେଉ ଗର୍ଭୁ ।
ତିନିହିଁ ଯେ ପୋଥିହସ୍ତ ନିତି ଖଡ଼ିହସ୍ତ
ଏମନ୍ତ ଲୋକର ବିଦ୍ୟା କେବେ ନୁହେଁ ହତ ।
ବିଦ୍ୟାକୁ ଶିଖି ଯେବେ ନ ପଢ଼େ ତିନିପକ୍ଷ
ସେ ବିଦ୍ୟା ପାଶୋରଯାଏ ଶୁଣ ପଦ୍ମମୁଖ ।

ଏରୂପେ କହି ଖୋଜିଲେ ବ୍ରହ୍ମା ଲଗ୍ନ ବାର
ମକର ଶୁକ୍ଳ ପଞ୍ଚମୀ ତିଥି ଗୁରୁବାର ।
ବସି ଖଡ଼ି ଧରି ଶ୍ରୀନୃସିଂହ ଶେଷଦେବ
ଗଣେଶଙ୍କୁ ପୂଜାକରି ଦେଲେ ସବୁ ଦ୍ରବ୍ୟ ।
ଲେଖିଲେ ସାରଦା ଚିନ୍ତା କରି ସିଦ୍ଧି ରସ୍ତୁ
ଆସିଲା ସତରଫଳା ନିମିଷକେ ତତ୍ତ୍ୱ ।
ଆବର ଆସିଲା ବେନିଦଣ୍ଡ ଅଙ୍କ ବନା
ସନ୍ଧ୍ୟା ତରପଣ ପୂଜା ଆଦି କର୍ମ ନାନା ।
ଆବର ପଢ଼ିଲେ ଆରଦିନ ଚାରିବେଦ
ପରେ ଯାହା ପଢ଼ିଥିଲେ ଶୁଣ ହେ ନାରଦ ।
ଷଡ଼ଶାସ୍ତ୍ର ମହାବାକ୍ୟ ନବ ବ୍ୟାକରଣ
ଛତିଶ ଯେ ସ୍ମୃତି ଅଷ୍ଟାଦଶ ଯେ ପୁରାଣ ।
ଏତେକ ବିଦ୍ୟା ପଢ଼ିଲେ ସେହୁ ଚାରିଦିନେ
ଆବର ଶୁଣିମା ଧନୁବିଦ୍ୟା ସାବଧାନେ ।
ଶାରଙ୍ଗ ଯେ ଗଦା ଖଡ଼୍ଗ ଚକ୍ର ବଜ୍ରଶର
ବ୍ରହ୍ମଶକ୍ତି ଯାର ସାଧ କଲେ ଚକ୍ରଧର ।
ମାଲବିନ୍ଧାଣ ଧାରଣ ବିଦ୍ୟା ଆଦି ଯେତେ
ଦେବଅସ୍ତ୍ର ବ୍ରହ୍ମଅସ୍ତ୍ର ରୁଦ୍ରାସ୍ତ୍ର ସହିତେ ।
ମନଭେଦୀ ଶବ୍ଦଭେଦୀ ଦୃଷ୍ଟି ଭେଦୀମାନ
ଶୂନ୍ୟ ମଞ୍ଚଭେଦୀ ଯେ ପାତାଳଭେଦୀ ଜାଣ ।
ବାବଲ ପାଶୁପତ ଯେ ନାରାୟଣ ଶର
ପଶୁଚକ୍ର କାଳଚକ୍ର ତୋମାର ମୁଦ୍‌ଗର ।
ବ୍ରହ୍ମପାଶ ରୁଦ୍ରପାଶ ପୁଣି ନାଗପାଶ
ଅକ୍ଷୟ ଯେ ପାଶୁପତ ବୈଷ୍ଣବୀ କୁଳିଶ ।
ଆବର ଯୋଗ ଅଜପା ଯୋଗ ଶିଶୁବେଦ
ଧରଣ ଧାରଣ ଲୋପକରଣ ପ୍ରସିଦ୍ଧ ।
ବିଧାତାଙ୍କ ମୁଖୁଁ ଏସମସ୍ତ ବିଦ୍ୟା ପାଇ
ଶିଖିଲେ ସପତଦିନ ମଧ୍ୟେ ବେନିଭାଇ ।
ଶ୍ରୀନୃସିଂହ ବିଦ୍ୟାପଢ଼ା ସର୍ବଜନେ ଦେଖି
ବୋଇଲେ ପଢ଼ିଲେ କେତେ ବିଦ୍ୟା ପଦ୍ମଆଖି ।
ଏରୂପେ କଥା ହୁଅନ୍ତେ ଋଷିମାନେ ବସି
ବ୍ୟାସ ବୋଇଲେ ଅଟନ୍ତି ପ୍ରଭୁ ବ୍ରହ୍ମରାଶି ।
ତାଙ୍କୁ ଆସିବା ଏ କଥା କିବା ଚମତ୍କାର
ଯେବଣ ପ୍ରଭୁର ଗର୍ଭେ ଅଛି ଚରାଚର ।
ଚତୁର୍ଦ୍ଦଶ ବିଦ୍ୟା ଯାର ମୁଖୁ ସ୍ଫୁରୁଅଛି
ସେ ପ୍ରଭୁ ଅଗମ୍ୟ ନୋହେ ପଢ଼ିବାର କିଛି ।
ଗରୁଡ଼ କଥା ଲାଗୁଛି ମୋତେ ଅଗୋଚର
ଦଣ୍ଡେ ଚାହିଁଣ ଦେଖୁଛି ବିଦ୍ୟା ହେଲା ତାର ।

ତାହାଙ୍କୁ ବେଦବର ତ ନାହାନ୍ତି ପଢ଼ାଇ
ପ୍ରଭୁଙ୍କଠାରୁ ଦ୍ୱିଗୁଣେ ପଢୁଅଛି ସେହି ।
ଈଷତ କାଣ୍ଡ ସୁରତେ କିଛି ଦେବ ଦେଖି
ଯାବତ ବିଦ୍ୟା ପଢ଼ଇ ଘୋଷି ମନେରଖି ।
ଆବର ସାଧୁଛି କ୍ଷତ୍ରିବିଦ୍ୟା କେତେ ପଢ଼ି
କୋଶାକର୍ଷଣ ହାବୁଡ଼ା ବେକ ମୋଡ଼ାମୋଡ଼ି ।
ବିଧା ଝିଙ୍କା ଗୋଇଠା ଯେ ଛାତି ବୁକୁଡ଼ିହ
କୋରଢ଼ା ଘୋଷଡ଼ା ନାକମୋଡ଼ା ଛେଚାଦେହ
ଏ ଆଦି ସଂସାରେ ଯେତେ ମାଡ଼ ମରାମରି
ଆଢ ତ ଗରୁଡ଼ ତାହା ଗଲା ଶିକ୍ଷାକରି ।
ବ୍ୟାସରଷି ମୁଖୁଁ ଏହି ସବୁ ବାକ୍ୟ ଶୁଣି
ଅଗସ୍ତି ଋଷି କହନ୍ତି ପୁଣି ପରିମାଣି ।
ବୋଇଲେ ଗରୁଡ଼ ଅଟେ କଶ୍ୟପର ପୁଅ
ଗର୍ଭୁ ବିଦ୍ୟାକୁ ଧରିଣ ପ୍ରକାଶିଛି ଦେହ ।
ମହା ବ୍ରହ୍ମଜ୍ଞାନୀ ଷଡ଼କ୍ଷିତିରେ ସେ ଜଣେ
ସାମାନ୍ୟ ପରି ଘେନ କି ତାକୁ ଋଷିଗଣେ ।
ଶୁଣି ମୁନିଏ ବୋଇଲେ କଥା ସତ୍ୟ ସତ୍ୟ
ବିଚାରିଲେ ଗରୁଡ଼ ତ ଅଟେ ବିଷ୍ଣୁ ଭକ୍ତ ।
ଏହିରୂପେ ମୁନିମାନେ ସମସ୍ତେ ପ୍ରଶଂସି
ଗରୁଡ଼କୁ ଧନ୍ୟ ଧନ୍ୟକଲେ ସଭା ବସି ।
ଏଥି ଉତ୍ତାରେ ଯେ ବାଣୀ ଶୁଣହେ ନାରଦ
ନଗ୍ରକୁ ଯିବାକୁ ସଜ ହୋଇଲେ ଗୋବିନ୍ଦ ।
ବ୍ରହ୍ମାଙ୍କୁ ବୋଇଲେ ଆମ୍ଭେ ଗୃହକୁ ଯେ ଯିବୁ
ଆପଣ ଆଜ୍ଞାକଲେ ତ ଦକ୍ଷିଣା ଯେ ଦେବୁ ।
ବ୍ରହ୍ମା ବୋଇଲେ ଦକ୍ଷିଣା ଯେବେ ସ୍ୱାମୀ ଦେବ
ମାଗୁଅଛି ଏହି କଥା ଶୁଣ ବାସୁଦେବ ।
ମୁରାସୁର ଲାଗି ଆମ୍ଭେ ଦେବଯାକ ଯେତେ
ସ୍ୱର୍ଗରେ ରହି ଆମ୍ଭେ ନ ପାରୁ କଦାଚିତେ ।
ତାକୁ ନାଶିଲେ ଦକ୍ଷିଣା ଆମ୍ଭେ ସବୁ ପାଉଁ
ମଲେ ସେ ତିନିପୁରର କଳଙ୍କ ଯେ ଯାଉ ।
ସଂସାର ରକ୍ଷା କରିଣ ଯେବେ ମହାପ୍ରଭୁ
ଏ ଦକ୍ଷିଣା ଦେଲେ ଆମ୍ଭେ ସର୍ବେ ତୋଷହେବୁ ।
ନୃସିଂହ ବୋଇଲେ ପିତା ମାଗିଲ ଏ ଛାର
ମୁର ଦୈତ୍ୟର ନିମନ୍ତେ ମୋର ଅବତାର
ତାକୁ ମାରିଣ ମୁରାରି ନାମ ଆମ୍ଭେ ବହି
ଅବତାର ଅନ୍ତେ ଯିବୁ ବଇକୁଣ୍ଠ ମହୀ ।
ବ୍ରହ୍ମା ବୋଇଲେ ମାଗିବି ସ୍ୱାମୀ ଆଉ କିସ
ମୋତେ କି ନିଅଣ୍ଟ କରିଅଛ ପୀତବାସ ।
ଦେଇଛ ଅକ୍ଷୟ ବ୍ରହ୍ମପଦ ଯହିଁ ତୋଳି
ଏଥିଉତ୍ତାରେ ମାଗିବି କିସ ବନମାଳୀ ।
ମାଗିବି ଆଉ କଥାଏ ତୁମ୍ଭେ ଯେବେ କର
ବ୍ରାହ୍ମଣ କୁଳଯାକଙ୍କୁ ସଂସାରୁ ଉଦ୍ଧାର ।
ଅକଳେ ବିପ୍ର ହୋଇବ ଯେବେ ଅପରାଧୀ
କରିବ ତାହାଙ୍କ ଦୋଷ କ୍ଷମା ଦୟାନିଧି ।
ଶୁଣି ହସିଲେ ପରମ ଦୟାଳୁ ନୃସିଂହ
ବୋଇଲେକ ବ୍ରାହ୍ମଣ ତ ଅଟନ୍ତି ମୋ ଅଙ୍ଗ ।
ମାତା ପିତା ଗୁରୁ ଆଉ ଦେବତା ବ୍ରାହ୍ମଣ
ଏ ପାଞ୍ଚଲୋକଙ୍କୁ ଦେଖି ନ ପାରେ କେ ଜାଣ ।
ଅକଳେ ବିପ୍ର କରିବେ ଦୋଷ ଯେବେ କେହି
ଏହାଙ୍କୁ ଦଣ୍ଡିଲେ ଅଟେ ମୋ ଅପ୍ରାଧୀ ସେହି ।
ଏରୂପେ କହି ଯିବାକୁ ସ୍ୱାମୀ ହେଲେ ସଜ
ସେ ପାଦେ ଶରଣ ହୀନ ପୀତାମ୍ବର ଦ୍ୱିଜ ।

***

## ଶେଷ ଓ ନୃସିଂହଙ୍କର ଗୁରୁ ଗୃହରୁ ଆଗମନ ଓ ବଦରିକାପୁରେ ପ୍ରବେଶ

ମେଲାଣି ନେଇଣ ପ୍ରଭୁ ଗରୁଡ଼ରେ ବସି
ଚଳିଲେ ବ୍ରହ୍ମାଙ୍କ ପାଦେ ନମି ବ୍ରହ୍ମରାଶି ।
ଋଷିମାନଙ୍କୁ ପ୍ରଣମି ପ୍ରଭୁ ଦେବରାଜେ
ଶେଷଦେବଙ୍କୁ ଘେନିଣ କଲେ ପୁଣି ବିଜେ ।
ବିଦ୍ୟା ଦେଇ ପଦ୍ମଯୋନି ଗୁରୁ ହୋଇଛନ୍ତି
ତେଣୁ ପଙ୍କଜାକ୍ଷ ବ୍ରହ୍ମ ପଦରେ ନମନ୍ତି ।
ଋଷିମାନେ ତ ବ୍ରହ୍ମଣ୍ୟ ମହାତପଧାୟୀ
ତେଣୁ ନମିଲେ ସଂଶୟ ମନେ କିଛି ନାହିଁ ।
ଘେନନ୍ତି ବ୍ରାହ୍ମଣ ପଦରଜ ବିଷ୍ଣୁ ଯହିଁ
ଏଣୁ ବିପ୍ରଠାରୁ ବଡ଼ ସଂସାରେ କେ ନାହିଁ ।
ଯେ ଅଟେ ବ୍ରାହ୍ମଣ ସେହି ସ୍ୱୟଂ ବିଷ୍ଣୁ ଜାଣ
ବିଷ୍ଣୁ ହେବାରୁ ବିଷ୍ଣୁ ଯେ ସେବନ୍ତି ଚରଣ ।
ଏରୂପେ ଋଷିମାନଙ୍କୁ ନମି ଦେବରାଜେ
ଘେନି ଶେଷଦେବଙ୍କୁ ସେ କଲେ ପୁଣି ବିଜେ ।
ଶୂନ୍ୟପୁରୁଁ ଦେବତାଏ କଲେ ପୁଷ୍ପବୃଷ୍ଟି
ମେଲାଣିଦେଇ ରହିଲେ ତହିଁ ପରମେଷ୍ଠୀ ।
ରାଜ୍ୟକୁ ଯିବା ନିମନ୍ତେ ପ୍ରଭୁ ଭଗବାନ
ବିଚାରୁ ଚଳିଲା ମର୍ତ୍ତ୍ୟେ ବିଷ୍ଣୁଙ୍କ ବାହନ ।

ବଦରିକା ଆଶ୍ରମରେ ପ୍ରବେଶିଲେ ଯାଇଁ
ଦେଖିବାକୁ ନଗ୍ରଲୋକେ ଆସିଲେକ ଧାଇଁ ।
ନ ଜାଣିମା ଲୋକମାନେ ପୁଚ୍ଛନ୍ତି ବାରତା
କେ ବୋଲେ ଆସିଲେ ଅବା ଗନ୍ଧର୍ବଦେବତା ।
କେ ବୋଲେ ବିଧାତା କେହି ବୋଲେ ହରିହର
କେ ବୋଲେ ଅନଙ୍ଗଦେବ କିବା ଅବତାର ।
ଏମନ୍ତ ବୋଲି ହୁଅନ୍ତି ସର୍ବେ କୁହାକୁହି
କନ୍ୟାମାନଙ୍କ ଆନନ୍ଦ କେ ପାରିବ କହି ।
ପରମଦୟାଳୁ ପ୍ରଭୁ ନୃସିଂହଙ୍କୁ ଦେଖି
ମଦନେ ଘାରି ହୋଇଣ ଚାହାନ୍ତି ନିରେଖି ।
କେଉଁ ଯୁବତୀ ହସିଣ ମାରେ ଆଖିପତା
କେ କୁଚ ଦେଖାଇ କାମେ ହୋଇ ଉନମତା ।
କେବଣ ଯୁବତୀ ଦେଖି ହୁଏ ଛନ୍ନ ଛନ୍ନ
କେ ଆଗେ ଉଭାହୋଇଣ ଦେଖାଏ ଜଘନ ।
କେବଣ ଯୁବତୀ ଅଟେ ଯଉବନେ ଭାରି
ଧାଉଁଛି ବେନି କୁଚକୁ ନିଜ କରେ ଧରି ।
ଦାଣ୍ଡେ ଯାଉଁ ଯାଉଁ ଖୋସା କାହାର ଯେ ଫିଟେ
କାହା ଫୁଲମାଳ ଖସି ପଡ଼ି ତଳେ ଲୋଟେ ।
କେବଣ ଯୁବତୀ ବସି ହେଉଥିଲା ବେଶ
ଧାଇଁଲା ସେ ଅସମ୍ଭାଳେ ମୁକୁଳା ତା ବେଶ ।
ନେତ୍ରର କଜ୍ଜଳ କେହୁ ଘେନୁଥିଲା ଆଣି
ଲୁଚାଇ ଅଙ୍ଗୁଳିରେ ସେ ଧାଏଁ ଦାଣ୍ଡେ ପୁଣି ।
କେ ବସନ ପିନ୍ଧୁ ପିନ୍ଧୁ ଆସେ ଶୀଘ୍ର ଧାଇଁ
ଅଧେ ଗୁଡ଼ିଆଇ ଅଧେ କାଖେ ଅଛି ରହି ।
କେହି ପାଦ ଅଙ୍ଗୁଳିରୁ କାଢ଼ି ଗୋଡ଼ମୁଦି
ଗଣ୍ଡିଆ କମ ବୋଲିଣ କର୍ଣ୍ଣେ ହୋଏ ଛନ୍ଦି ।
କଣ୍ଠି କଣ୍ଠି ମାଳକୁ କଟିରେ କେହୁ ବାନ୍ଧେ
କର୍ଣ୍ଣ ଅଳଙ୍କାର ନେଇ ଭ୍ରମେ ପାଦେ ଛନ୍ଦେ ।
କାହାର ନାସାରୁ ଖସି ପଡ଼ଇ ବସଣି
ଭୋଳାହୋଇ ପୁଚ୍ଛଇ କେ ଦେଢ଼ଶୁରେ ପୁଣି ।
ବୋଇଲେ ଶ୍ରୀନୃସିଂହଙ୍କୁ ଦେଖିଲକି ତୁମ୍ଭେ
ଚିହ୍ନି ଜିହ୍ବା କାମୋଡ଼ିଣ ଲୁଚେ ଅନ୍ୟଠାବେ ।
ଏରୂପେ ଦେଖି ସ୍ତିରୀଏ ଧାମନ୍ତି ବିହ୍ବଳେ
ସଭିଙ୍କ ମାୟାରେ ମୋହିଛନ୍ତି ଆଦିମୂଳେ ।
ଦିଶନ୍ତି ଶରଦଚନ୍ଦ୍ର ପ୍ରାୟେ ଭାବଗ୍ରାହୀ
ଶ୍ରୀପଦ୍ମ ନେତ୍ର ବ୍ରହ୍ମାଣ୍ଡଯାକ ଦିଏ ମୋହି ।
ବେନି କପାଟର ପ୍ରାୟ ଦିଶେ ବକ୍ଷସ୍ଥଳ
ଦିଶନ୍ତି ଶୁଦ୍ଧ ସ୍ଫଟିକ ପ୍ରାୟ ଆଦିମୂଳ ।

ଶିଖିଲେ ଯେବଣ ଧନୁ ବିଦ୍ୟା ଧାତାପୁରେ
ତାହା ବେନିଭାଇ ଧରିଛନ୍ତି ବେନିକରେ ।
ଆବର ଚୂଳର ମୂଳେ ଶୋହେ ପୁଷ୍ପଗଭା
ବଦରିକା ଦାଣ୍ଡେ ଯାନ୍ତେ ଦିଶନ୍ତି ସେ ଶୋଭା ।
କର୍ଣ୍ଣରେ କୁଣ୍ଡଳ ବେନି ଗଳେ ମୋତିହାର
ହୃଦେ ହୀରାପଦ୍ମ କଟିଦେଶ ଶୁକ୍ଳାମ୍ବର ।
ଗରୁଡ଼ କନ୍ଧରୁ ଉଠି ସେହି ବେନିଭାଇ
ଚାଲନ୍ତି ନାରୀଙ୍କ ମଧ୍ୟେ ଅଙ୍ଗ ଢାଳିଦେଇ ।
ନୀଳଗିରି ଜଗନ୍ନାଥ ହସ୍ତୀ ବିଜେ ପ୍ରାୟେ
ଗରୁଡ଼ କନ୍ଧରୁ ଉଠି କରନ୍ତି ବିଜୟେ ।
ଚାହିଁଣ ନାୟିକାମାନେ କାମ ଭୋଳେ ପଡ଼ି
ମୋହିତେ ଧାମନ୍ତି ବିଷ୍ଣୁ ମାୟାରେ ଯେ ପଡ଼ି ।
ପାଞ୍ଚନ୍ତି ଯୁବତୀ ଉଚ୍ଚାଟ ଯେ ତାଙ୍କ ମନ
ବୋଲନ୍ତି ଶରୀରଯାକ ନୋହିଲା ନୟନ ।
ମନ ପୂରାଇ ପ୍ରଭୁଙ୍କୁ ଦେଖନ୍ତୁ ଯେ ଆଜ
ମାଳା କରିଣ ଲଗାନ୍ତୁ ଧରିଣ ଶ୍ରୀଭୁଜ ।
ବୋଇଲେ ଆମ୍ଭ ରୂପ କି ହେବ ହୋଇ ଶୋଭା
ଦେହଯାକରେ ନୋହିଲା କିମ୍ପା ଆମ୍ଭ ଜିହ୍ବା ।
ପ୍ରଭୁଙ୍କର ଦେହଯାକ ଚୁମ୍ବନ୍ତା କେବଳ
ତେବେ ଆମ୍ଭ ଆଶା ସିନା ହୁଅନ୍ତା ସମୂଳ ।
ପ୍ରଭୁଙ୍କ ଶ୍ରୀଅଙ୍ଗେ ଯେତେ ରତି କରନ୍ତାଇ
କି ସୁଖ ଲଭନ୍ତା ଲକ୍ଷେ ଲକ୍ଷେ ବରଷ ଯେ ରହି ।
ପ୍ରଭୁଙ୍କୁ ଦିନେ ପଲଙ୍କେ ଘେନି ନିଦ୍ରାଗଲେ
କୋଟି ସ୍ୱର୍ଗ ସୁଖଭୋଗ ହୁଅନ୍ତା ସମକଳେ ।
ଏ ପ୍ରଭୁ ଯେବେ ହସିଣ ଚାହାଁନ୍ତେ ନିରୀଖି
ନିଶ୍ଚୟ ପ୍ରାଣ ସମର୍ପି ଦିଅନ୍ତୁ ଗୋ ସଖି ।
ଏହିରୂପେ ଯୁବତୀଏ ହୁଅନ୍ତେ କାମେ ବାଇ
ଜାଣିଣ ପ୍ରଭୁ ବୋଇଲେ ଶୁଣ ସର୍ବ ସହି ।
ଏଣିକି ତ ତୁମ୍ଭ ଆମ୍ଭ ସେବା କେତେ ଅଛି
ସେ କଥାକୁ ଶୁଣିଥାଅ କହିବାକ କିଛି ।
ପ୍ରେମଭକତିରେ ତୁମ୍ଭେ ଜିଣିଲ ମୋ ମନ
ଏଣୁ ତୁମ୍ଭ ସମାନେ କେ ନାହିଁ ଭକ୍ତଜନ ।
ତୁମ ମହିମା ଏ ଅବତାରେ କରି ଖ୍ୟାତ
ପୁରାଣେ ପ୍ରସିଦ୍ଧ ହୋଇ ରହିବ ଜଗତ ।
ଏହି ଅବତାର ଅନ୍ତେ ଯାଇ ତୁମ୍ଭେମାନେ
ରହିବ ବୈକୁଣ୍ଠ ନିତ୍ୟସ୍ଥଳେ ଯାଇ ଯତ୍ନେ ।
ତହିଁ ଉତ୍ତାରୁ ଯେ ପୁଣି ରାମ ଅବତାରେ
କରିବି ତୁମ୍ଭଙ୍କୁ ଘେନି ରାସ ସରଯୂରେ ।

ଚୌଷଠି ସହସ୍ର ଯେ ବତିଶସସ୍ର ଶିବ
ଶ୍ରୀରାମଙ୍କ ରାସକେଳି ପ୍ରକାଶ କରିବ ।
ସେହି ଅବତାର ଶେଷେ ଚଳିବା ବୈକୁଣ୍ଠ
ଦ୍ୱାପରେ ଲେଉଟିହେବା ତୁମ୍ଭେ ଆମ୍ଭ ଭେଟ ।
ତହୁଁ ଯାଇ ଷୋଳସସ୍ର ଗୋପକନ୍ୟା ହେବ
କୃଷ୍ଣ ଅବତାରେ ମୋର ରାସ କରାଇବ ।
ସେ ଲୀଳା ଅନ୍ତେ ଚଳିବ ପୁଣି ନିତ୍ୟସ୍ଥଳେ
ତୁମ ଆମ ରାସ ଲାଗିଅଛି ସବୁବେଳେ ।
ଏବର ମହିମା ମୋର ଶୁଣରେ ସୁନ୍ଦରୀ
ତହିଁ ଉତ୍ତାରୁ ବସିବୁ ଆମ୍ଭେ ନୀଳଗିରି ।
କଳିଯୁଗ ଆଦ୍ୟେ ହେବୁ ବଉଦ୍ଧ ତାର
ଦାରୁବ୍ରହ୍ମରୂପ ହୋଇ ପାଳିବୁ ସଂସାର ।
ଚୌଷଠି ସସ୍ରରୁ ତୁମ୍ଭେ ଆଠସସ୍ର ଯିବ
ମୋତେ ସେବାକରି ନୀଳଗିରି କ୍ଷେତ୍ରେ ଥିବ ।
ପଣ୍ଡା ପଡ଼ିହାରୀ ମୁଦିରଥ ଦ୍ୱୈତପତି
ଚାଙ୍ଗଡ଼ା ମେକାପ ପଶୁପାଳକ ମୂରତି ।
ଦ୍ୱାରପାଳେ ଚୋପଦାର ରଖୁଥା ପର୍ଯ୍ୟନ୍ତେ
ସେବାରେ ଲାଗି ମୋହର ଥିବ ଅନୁବ୍ରତେ ।
ଏରୂପେ କହି ସବୁରି ଶିରେ ପ୍ରଭୁ ଆଣି
ଲଦିଲେ ଶ୍ରୀପଦ୍ମକର ନେଇ ଚକ୍ରପାଣି ।
ଦିଅନ୍ତେ ଶ୍ରୀହସ୍ତ ଶିରେ ସର୍ବେ ହେଲେ ତୋଷ
ନୃସିଂହ ଶରଣ ବିପ୍ର ପୀତାମ୍ବର ଦାଶ ।

❋ ❋ ❋

## ବଦରିକା ପୁରରେ ମାତାପିତାଙ୍କସହ ନୃସିଂହଙ୍କର ମିଳନ

ଏ ରୂପେ କନ୍ୟାମାନଙ୍କୁ କହି ନାରାୟଣ
ସିଂହଦ୍ୱାର ଦାଣ୍ଡେ ଯାଇ ମିଳିଲେ ଆପଣ ।
ଦେଖି ଦ୍ୱାରପାଳ ସର୍ବେ ଧାଇଁଲେ ତ୍ୱରିତେ
କହିଲେକ ପଡ଼ିହାରୀ ଆଗେ ବିଧିମତେ ।
ବୋଇଲେ ନୃସିଂହସ୍ୱାମୀ ବିଜେକଲେ ଆସି
ଶୁଣି ପଡ଼ିହାରୀ ଧାଇଁଗଲେ ହସି ହସି ।
ଖୁଣ୍ଟିଆ ବେହେରା ଆଗେ ଜଣାଇ କହିଲା
ନୃସିଂହ ବିଜେ କରିଣ ଆସିବେ ବୋଇଲା ।
ଶୁଣି ଖୁଣ୍ଟିଆ ବେଗେ ଗଲା ଶୀଘ୍ରେ ଧାଇଁ
କହିଲା ସୁଜାଣ ମନ୍ତ୍ରୀ ଆଗେ ଉଭାହୋଇ ।
ନୃସିଂହ ସ୍ୱାମୀ ବିଜୟ କର୍ମେ ଏହି ଲାଗେ
ଶୁଣିଣ ମନ୍ତ୍ରୀ ଉଠିଣ ଗଲେ ତହୁଁ ବେଗେ ।
ମହାରାଜାଙ୍କ ଛାମୁରେ ପ୍ରବେଶିଲେ ଯାଇ
ବୋଇଲେ ସ୍ୱର୍ଗରୁ ବିଜେ କଲେ ବେନିଭାଇ ।
ଭୋଦେବ ଶୁଣିମା ସୂର୍ଯ୍ୟବଂଶ ନୃପମଣି
ସ୍ୱର୍ଗରୁ ଆସିଲେ ବିଜେ କରି ଚକ୍ରପାଣି ।
ନଗ୍ରରେ ବିଜେ ହେଲେଣି ଆସି ଭଗବାନ
କୁମାରପୂର୍ଣ୍ଣିମା ରାତ୍ରେ ଯେହ୍ନେ ଉଦେ ଜହ୍ନ ।
ସେହିରୂପେ ଆସନ୍ତି ଏ ନଗ୍ରେ ବିଜେକରି
ଶୁଣି ହସ ହସ ହୋଇ ଉଠି ଦଣ୍ଡଧାରୀ ।
ରାଣୀହଂସପୁରେ ଯାଇ ଖବର ଯେ ଦେଲେ
ଶୁଣି ପରିବାରୀମାନେ ଶୀଘ୍ରେ ଧାଇଁଗଲେ ।
ମହାଦେଈଙ୍କ ଆଗରେ କହିଲେକ ଯାଇ
ବୋଇଲେ ବିଜେ କଲେଣି ଆସି ବେନିଭାଇ ।
ଏଲାଗେ ବୁଝିଆସିଲୁ ଆମ୍ଭେ ରାଜା ପାଶ
ଶୁଣି ଭଗବତୀ ମାତା ହୋଇଲେ ଉଲ୍ଲାସ ।
ସୁବର୍ଣ୍ଣ ଥାଳିରେ ପୁରାଇଲେ ଦୁର୍ବାକ୍ଷତ
ସହସ୍ରେକ ପରିବାରୀ ଅଛନ୍ତି ସଙ୍ଗତ ।
ପୁତ୍ର ମୁଖ ଦେଖି ମାଏ ଆସନ୍ତି ଯେ ବେଗି
ନାନା ଅଳଙ୍କାର ଦେହେ ହୋଇଛନ୍ତି ଲାଗି ।
ବେନିକରେ ଅର୍ଘ୍ୟପାତ୍ର ଘେନି ରାଜାରାଣୀ
ବନ୍ଦାନ୍ତି ପୁତ୍ରଙ୍କଠାରେ ଦୁର୍ବାକ୍ଷତ ଘେନି ।
ବାଜଇ ଶଙ୍ଖ କାହାଳୀ ଭେରୀ ବୀରବାଦ୍ୟ
ଭାଟକୟେବାର ବିପ୍ରଙ୍କର ବେଦନାଦ ।
ଠାବେ ଠାବେ ନୃତ୍ୟ ଯେ କରନ୍ତି ଗଣିକାଏ
ପୁତ୍ରଙ୍କୁ କୋଳେ ଧଇଲେ ଯାଇ ବାପମାଏ ।
ଶ୍ରୀମୁଖ ପଦ୍ମରେ ନେଇ ଦିଅନ୍ତି ଚୁମ୍ବନ
ରବିଙ୍କୁ ଦେଖି ଫୁଟଇ ଯେହ୍ନେ ପଦ୍ମବନ ।
କୋଳରୁ ଉତୁରି ନରସିଂହ ଶେଷ ବେନି
ଜନନୀ ପିତା ଦୁହିଁଙ୍କୁ କରନ୍ତି ଦୟିନୀ ।
ତାତ ଜନନୀଙ୍କ ମଧ୍ୟେ ବିଜେ ଭଗବାନ
ପହଣ୍ଡ ମଣାଇ ଘେନିଯାନ୍ତ ବିପ୍ରଜନ ।
ଆଦିତ୍ୟ ଚନ୍ଦ୍ରମା କିବା ବିଜେ ଏକାବେଳେ
ତେସନ ପ୍ରାୟକେ ଶୋଭାପାନ୍ତି ବେନି ବାଳେ ।
ପାଦଗତି କରି ଚାଲିଯାନ୍ତି ବେନିଭ୍ରାତ
ନୀଳଗିରି ଦାଣ୍ଡେ ଯେହ୍ନେ ବିଜେ ଜଗନ୍ନାଥ ।
ଶଙ୍ଖ ଚକ୍ର ଗଦାପଦ୍ମ ବିରାଜିତ ଦେହେ
ହରିମନ୍ଦିର ଯେ ନାସା ଅଗ୍ର କେଶଯାଏ ।

ଲୀଳାଗତି କରି ଚାଲୁଛନ୍ତି ବ୍ରହ୍ମରାଶି
ଯେବାମନେଯେହ୍ନେ ଘେନେତାକୁ ତେହ୍ନେ ଦିଶି
ଶାନ୍ତିକି ଦିଶନ୍ତି ମହାଶାନ୍ତି ଜଗଜ୍ଯୋତି
ଦୁଷ୍ଟକୁ ସେ ବ୍ରଜ ପ୍ରାୟ ତେଜ ପ୍ରକାଶନ୍ତି ।
ଭକ୍ତକୁ ଯେ ଭକ୍ତିଭାବେ ସ୍ଥିରୀ ପ୍ରେମଭାବ
ମାତାପିତାଙ୍କୁ ବାଳକ ପ୍ରାୟେ ବାସୁଦେବ ।
ପରମ ଦୟାଳୁ ସେହି ପ୍ରଭୁ ଭାବଗ୍ରାହୀ
ତାହାଙ୍କ କଲ୍ୟାଣ ସୁଖେ ନିବସନ୍ତି ଦେହୀ ।
ସୁବାସଜଳେ ଧୋଇଲେ ପ୍ରଭୁ ବେନିପାଦ
ଶ୍ରୀରନ୍ ପିଢ଼ାରେ ଯାଇ ବସିଲେ ଗୋବିନ୍ଦ ।
ଆଲଟ ପଙ୍ଖା ଧରିଣ ଢାଳନ୍ତି ସଖୀଏ
ଆନନ୍ଦ ହୁଅଇ ପୁତ୍ର ମୁଖ ଦେଖି ମାଏ ।
ଶୀତଳ ମଣୋହି ଲାଗି କରାଇଲେ ମାତ
ସନ୍ତୋଷେ ଭୁଞ୍ଜନ୍ତି ବେନି ପୋଏ ହୋଇ ଚିତ୍ତ ।
ନବାତ ଶାକର ଖଣ୍ଡ ଛେନା ଝିଲ୍ଲିନାଡ଼ି
ଗୋଟିକା ଲବଣୀ ସର ଅଧାମ ପାପୁଡ଼ି ।
ଏରୂପେ ମଣୋହି ସାରି କଲେ ଆଗମନ
ତାମ୍ବୁଳ କର୍ପୁର ଲାଗି ହୋଇ ଭଗବାନ ।
ତହିଁ ଉତ୍ତାରୁ ଗରୁଡ଼ ମନ ସ୍ୱାମୀ ତୋଷି
ଅମୃତ ଭୋଜନ ଦେଲେ ବସି ବ୍ରହ୍ମରାଶି ।
ତହୁତ୍ତାରୁ ବିଦ୍ୟା ପିତା ମାତାଙ୍କର ଆଗେ
କହିଲେ ବିଦ୍ୟା କାଣ୍ଡିଏ ପଢ଼ି ଭାବମାର୍ଗେ ।
ଅତି ସନ୍ତୋଷ ହେଲେ ତା ଶୁଣି ପିତାମାତା
ମନେ ପାଞ୍ଚନ୍ତି ଅଟନ୍ତି ଏ ସୃଷ୍ଟି କରତା ।
କେବଣ ଜନମେ ଆମ୍ଭେ କରିଥିଲୁ ପୁଣ୍ୟ
ତେଣୁ ଆମ ଗୃହେ ଜନ୍ମହେଲେ ଭଗବାନ ।
ପାଇବୁ ଯେ ମୋକ୍ଷଗତି ଲଭି ପୁଣ୍ୟକ୍ଷେତ୍ର
ବୋଲିବେ ଯେ ବିଷ୍ଣୁ କୃଷ୍ଣବଲ୍ଲଭଙ୍କ ପୁତ୍ର ।
ମୋତେ ଯେ ବୋଲିବେ ଲୋକେ ନୃସିଂହଙ୍କ ପିତା
ଏଥିରୁ ଅଧିକ ଆଉ ଅର୍ଜିବା କି କଥା ।
ଏରୂପେ ବୋଲିଣ ତାତ ମାତ ହେଲେ ତୋଷ
ସେ ପାଦେ ଶରଣ ବିପ୍ର ପୀତାମ୍ବର ଦାଶ ।

❋ ❋ ❋

## ବଦରିକାପୁରେ ନୃସିଂହଙ୍କର ଯୌବ ରାଜ୍ୟାଭିଷେକ

ଏଥିଉତ୍ତାରେ ଯେ ଆସି ମିଳିଲେ ସୁଜନ
ନୃସିଂହ ପ୍ରଭୁଙ୍କ ଦେଖି କଲେ ଧନ୍ୟ ଧନ୍ୟ ।
ରାଜାଙ୍କୁ ଚାହିଁଣ ପୁଣ ବହୁ ପ୍ରଶଂସିଲେ
ବୋଇଲେକ ଧନ୍ୟ ରାଜା ଜୀବନତୋ ଭଲେ ।
ନୃସିଂହ ତୁମ୍ଭର ଘରେ ଆସି ହେଲେ ଜନ୍ମ
ପ୍ରତ୍ୟକ୍ଷେ ପାଇଛ ପୁତ୍ର କରି ପରଂବ୍ରହ୍ମ ।
ହସ୍ତେ ପଦ୍ମ ପାଦେ ପଦ୍ମ ଅଛି ମତ୍ସ୍ୟରେଖା
ତୋ ପୁତ୍ର ପ୍ରାୟେକ ପୁତ୍ର କାହିଁକି ନୋହେ ଦେଖା ।
ଏମନ୍ତ ପୁତ୍ର ଯାହାର ଗର୍ଭେ ଜାତହୋଇ
ତାହାଠାରୁ ଭାଗ୍ୟବନ୍ତ ସଂସାରେକେ ନାହିଁ ।
ତୁହି ବଡ଼ ଭାଗ୍ୟବନ୍ତ ଅଟୁ ଆହେ ରାଜା
ସର୍ବେ ମୋକ୍ଷହେବେ କରି ତୋ ପୁତ୍ରଙ୍କୁ ପୂଜା ।
ଏରୂପେ କହି କଲ୍ୟାଣ କରି ବିପ୍ରଜନ
ଛାମୁରେ ଗଲେ ଦକ୍ଷିଣା ପାଇ ସ୍ୱର୍ଣ୍ଣଦାନ ।
ପରିଜନଙ୍କୁ ବଧାଇ ରାଜା ଧନ ଦେଲେ
ସନ୍ତୋଷହୋଇ ସର୍ବେ ଯେ ଯାହା ପୁର ଗଲେ ।
ଯେ ଯାହାର ଘରେ କଲେ ଉତ୍ସବ ବିଧାନ
ଦୁଃଖୀ ଦରିଦ୍ରଙ୍କୁ ଦେଲେ ରାୟେ ବହୁ ଧନ ।
ଅନ୍ନଛତ୍ର ପଣା ପାଣି କାଞ୍ଚନ ତଇଳ
ନାନା ପରକାରେ ଦାନଦେଲେ ମହୀପାଳ ।
ଦାନ ପାଇ ଜନମାନେ ସନ୍ତୋଷରେ ଯାନ୍ତି
କେ ଆଶୀର୍ବାଦ କରି କେ ପ୍ରଶଂସା କରନ୍ତି ।
ମୋହହେଲେ ନୃସିଂହଙ୍କୁ ସର୍ବେ ପୂଜାକରି
ଭୁଞ୍ଜିଲେକ ଧନ ଜନ ଯଶ ଭୋଗ ଶିରୀ ।
ଶ୍ରୀ ବୋଲିବା ଅକ୍ଷରଟି ଅଟେ ମହାଲକ୍ଷ୍ମୀ
ଶିରୀଟି ସବୁରି କନ୍ଧେ ଅଛିଟି ବିଶ୍ରାମି ।
ଶିରୀଚ୍ୟୁତ ଲୋକଙ୍କର ସରେ ଭୋଗ ଶିରୀ
ଶ୍ରୀ ଶବ୍ଦ ଅକ୍ଷର ଲକ୍ଷ୍ମୀ ବୁଝ ହେତୁକରି ।
ଶ୍ରୀ ଅକ୍ଷରଗୋଟି ପ୍ରତ୍ୟକ୍ଷରେ ଲକ୍ଷ୍ମୀ ଅଟେ
ବସନ୍ତି କୀଟରୁ ବ୍ରହ୍ମଯାଏ ସର୍ବଘଟେ ।
ଶିରୀ ଛାଡ଼ିଗଲେ କନ୍ଧୁ ହୁଅନ୍ତି ସେ ଲୋପ
ଶିରୀ ଛାଡ଼ିଲେ ଯେ କୁଜା ବୋଲାଏ କନ୍ଦର୍ପ ।
ଶ୍ରୀ ନୃସିଂହ ପ୍ରଭୁଙ୍କର ଯେବଣ ବଦ୍ରିକା
ଲକ୍ଷ୍ମୀ ଅନ୍ନ କି ତହିଁରେ ହେବ କରି ଲେଖା ।
ଏରୂପେ କେତେକ ଦାନଦେଲେ ମହାରାୟେ
ତହିଁ ଉତ୍ତାରୁ ନୃସିଂହ ଶେଷଦେବ ଦୁହେଁ ।
ଖେଳନ୍ତି ଆନନ୍ଦ ହୋ ବଦରିକା ପୁରେ
ହସି ହସି ବୁଲନ୍ତି ସେ ପଶି ଘରେ ଘରେ ।
ଶକଟା ସାରଣୀ ପଶା ଯୁଆ ନ୍ୟାୟବଳ
ବରଡ଼ି ସାଧନା ମାଲବିନ୍ଧା ଚଉଦଳ ।

ଗଦା ବିଦ୍ୟା ଧନୁବିଦ୍ୟା ବେଦ ବିଦ୍ୟାମାନ
ପଢ଼ନ୍ତି ଶୁଣନ୍ତି ପୁଣି କରନ୍ତି ସାଧନ ।
ଆସନ୍ତି କେବଳ ଦିନ ଭ୍ରମି ରାଜ୍ୟେ ହରି
ବସନ୍ତି ଯେ ସିଂହାସନ ସଭା ଜୟ କରି ।
କରନ୍ତି ପ୍ରଭାତୁଁ ସ୍ନାନସାରି ସନ୍ଧ୍ୟା ଆଗ
ଅଗ୍ନି ଦେବତାଙ୍କୁ ପୂଜି ଦ୍ୟନ୍ତି ହବିଭାଗ ।
ନିତି ନିତି ରାଜନୀତି ବିଧାନ କରନ୍ତି
ସଖାଗଣ ସଙ୍ଗେ ଘେନି ରୁଦ୍ର ପୂଜି ଯାନ୍ତି ।
ଶ୍ରୀବିଷ୍ଣୁ ପ୍ରତିମା ଆଗେ ସ୍ତୁତି ସ୍ତୋତ୍ରପଢ଼ି
ପ୍ରସାଦ ଘେନିଣ ସ୍ୱାମୀ ଆସନ୍ତି ବାହୁଡ଼ି ।
ମଣୋହି ସାରିଣ ପ୍ରଭୁ ହ୍ୱନ୍ତି ପିନ୍ଧା ଲାଗି
ଗନ୍ତାଇତେ ଗନ୍ତାଲାଗି କରନ୍ତି ଯେ ବେଗି ।
ହୃଦପଦ୍ମରେ ପଦକ ଶିରେ ଶୋହେ ପାଗ
ପାଗଉପରେ ମଣ୍ଡଣି ହ୍ୱନ୍ତି ପୁଷ୍ପ ବେଗ ।
ବାହୁରେ ଯେ ବାଜୁ ବନ୍ଧବାନ୍ଧି ଦେବରାଜେ
ଉଡ଼ାଉ ଘେନି ସଭାରେ କରନ୍ତି ଯେ ବିଜେ ।
ଆବର ସଙ୍ଗେ ଅଛନ୍ତି ଯେତେ ବେଶ ହୋଇ
ସେ ବେଶର ଶୋଭାମାନ କେ ପାରିବ କହି ।
ବ୍ରହ୍ମଜାତି ହୀରା ମୁକୁଟର ସପ୍ତଶାଖା
ତହିଁପରେ ଦିଶେ ଫୁଟି ଗଜମୋତି ରେଖା ।
ମାଣିକ୍ୟର ଚାପସରି ହୋଇଣ ଖଞ୍ଜାଣି
ବଇଡୁର୍ଯ୍ୟ ଗୋଟି ଗୋଟି ଦିଶେ ପରମାଣି ।
ମୁକୁତାର ପୁଞ୍ଜି ପୁଞ୍ଜି ଦିଶେ ଚଉପାଶ
ଜକ ଜକ ହୋଇ ଦିଶେ ସ୍ୱର୍ଣ୍ଣ ଜ୍ୟୋତିତ୍ରାସ ।
ଗଗନେ ଦିଶନ୍ତି ଗୁରୁ ଶୁକ୍ର ଯେହ୍ନେ ତୋରା
ସେହି ପରକାରେ ଫୁଟି ଦିଶେ ମୋତି ହୀରା ।
ଅମୃତ କୁଣ୍ଡଳ ବେନି କର୍ଣ୍ଣେ ଶୋଭାପାଏ
ଝଲକ ଦିଶଇ ନବରତ୍ନ ଫୁଟି ଦେହେ ।
କଣ୍ଠେ ସୋରିଷିଆ ମାଳା ଦିଶେ ଶୋଭାବନ
ଆଦିତ୍ୟ ଉଦେହୋଇଲେ ଯେହ୍ନେ ଦିଶେ ଦିନ ।
ଏକସରି ଦୁଇସରି ତ୍ରିସରି ଚୌସରି
ମୋତି ସଙ୍ଗେ ଲମ୍ୱିଅଛି ମୁକ୍ତା କେରି କେରି ।
ହୃଦପଦ୍ମେ ବିରାଜଇ ହୀରାର ପଦକ
ଶ୍ରୀ ନୃସିଂହ ଦେହଯାକ ଦିଶେ ଜକଜକ ।
ହୀରାରେ ରସାଣଦେଇ ସୁବର୍ଣ୍ଣର ସୂତା
ବ୍ରହ୍ମଗଣ୍ଠି ପଡ଼ି କନ୍ଧେ ପକାଇ ପଇତା ।
ଲମ୍ୱିଅଛି ନାଭିଯାଏ ମାଣିକ୍ୟର ମାଳ
ବାହେଣ ବାହୁଟି କଙ୍କଣ ଯେ କରମୂଳ ।

ଅଣ୍ଟାରେ ସୁବର୍ଣ୍ଣସୂତା ଅଙ୍ଗୁଷ୍ଠିରେ ମୁଦି
କଟିରେ କଟିମେଖଳା ଭିଡ଼ିଛନ୍ତି ଛନ୍ଦି ।
ବାସରେ ଯେ ହୀରବାନା ଉଡ଼େ ଫରଫର
ବେନିପାଦେ ଲାଗିହୋଇଛନ୍ତି ତୋଡ଼ର ।
ଚାଲନ୍ତି ପାଦେ ଘାଗୁଡ଼ି ଝୁମୁ ଝୁମୁ ବାଜେ
କଠାଉ ଉପରେ ଉଠି ପୀଢ଼େ କଲେବିଜେ ।
ଏହିରୂପେ ଶେଷଦେବ ହୋଇଛନ୍ତି ସଜ
ଦେଖିକରି ସଭାଲୋକ ହୁଅନ୍ତି ଆଶ୍ଚର୍ଯ୍ୟ ।
ପୁତ୍ରଙ୍କର ବେଶ ଦେଖି ନରପତି ହସି
ଭାରିଯା ପାଶେ ବିଚାରକଲେ ଯାଇ ବସି ।
ବୋଇଲେ ଶୁଣଗୋ ସଖି ନୃସିଂହର ମାତା
ପୁତ୍ରେ ତ ଆସି ଆମ୍ଭର ହେଲେ ସଭାଜ୍ଞାତା ।
ନୃସିଂହଙ୍କୁ ରାଜ୍ୟେ ରାଜା କରିବାକ ଏବେ
ତୁମ୍ଭେ ହେଉ ବୋଇଲ ଯେ ତୋଷ ହେବୁ ଆମ୍ଭେ ।
ଶୁଣିଣ ଶ୍ରୀଭଗବତୀ ହସି କରଯୋଡ଼ି
ବୋଇଲେ ବିଧାତା ଏହା ପୂର୍ବୁ ଅଛି ଗଢ଼ି ।
ଜ୍ୟେଷ୍ଠପୁତ୍ର ଅଟେ ସବୁ କଥାକୁ ଯେ ବଡ଼
ଘରକୁ କାରେଣୀ ଅଟେ ସେ ଅମୃତବାଡ଼ ।
ସଭାକୁତ ମହାଯୋଗ୍ୟ ବଂଶକୁ ତ ଶ୍ରେଷ୍ଠ
ଏକଥା ତ ବେଦେ କହିଛନ୍ତି ସୁରଶ୍ରେଷ୍ଠ ।
ତୁମ୍ଭେ ବିପ୍ରଶ୍ରେଷ୍ଠ ସୂର୍ଯ୍ୟବଂଶୀ ତୁଲ୍ୟ ରାଜା
ପିତା ଆଗେ ପୁତ୍ରଯେବେ ରାଜ୍ୟେପାଏ ପୂଜା ।
ପିତାର ସୁକୃତମାନ ତେବେ ଉଦେହୋଏ
ସଂସାରେ କରନ୍ତି ଧନ୍ୟ ଧନ୍ୟ ସର୍ବଠାଏ ।
ବିଧିରେ ତ ଆମ୍ଭ ପୁତ୍ର ଅଟେ କୁଳଶ୍ରେଷ୍ଠ
ନୃସିଂହର ଶିରେ ଏବେ ବାନ୍ଧ ବେଗେ ପାଟ ।
ଶୁଣିଣ କୃଷ୍ଣବଲ୍ଲଭ ମନେ ଅଳ୍ପ ହସି
ବୋଇଲେ ତୋର ପ୍ରାୟ ନ ମିଳେ ଶୁଭ୍ରକେଶୀ ।
ଏରୂପେ ମାତା ପୁତ୍ରକୁ କାହିଁ ନ ମିଳଇ
ସ୍ତିରୀକୁଳେ ପ୍ରତିଭକ୍ତା ପ୍ରତ୍ୟକ୍ଷେ ଯେ ତୁହି ।
ଏରୂପେ ପତ୍ନୀକି ରାଜା ଧନ୍ୟଧନ୍ୟ କରି
ପାତ୍ରମନ୍ତ୍ରୀଙ୍କି ଡକାଇ ଆଣିଲେ ହକାରି ।
ପରଜା ଦେଶଘୋଷକୁ ବିଶୋଇ ନାୟକ
ପ୍ରଧାନ ଶିଷ୍ଟକରଣ ସେଠା ଯେତେ ଲୋକ ।
ସମସ୍ତେ ଯେ ଶୁଣୁଥାଅ କହୁଛୁ କଥାଏ
କାଲି ଆମ୍ଭେ ବସି ପାଞ୍ଚୁଅଛୁ ବାପ ମାଏ ।
ନୃସିଂହକୁ ରାଜଶାଢ଼ୀ ଦେବା ମନେକଲୁ
ତେଣୁ ତୁମ୍ଭମାନଙ୍କୁ ଏକଥା ପଚାରିଲୁ ।

ଶୁଣି କହନ୍ତି ଯେ ପାତ୍ର ଆଦି କରଯୋଡ଼ି
ବୋଇଲେ ପାଇବା ଏଡ଼େଭାଗ୍ୟ କାହିଁଲୋଡ଼ି ।
ଆମ୍ଭେ ସମସ୍ତେ ବିଚାରିଥାଉଁ ଏହା ମନେ
ଆପଣଙ୍କୁ ଭୟକରି ନ କହୁଁ ବଚନେ ।
ଶ୍ରୀନୃସିଂହ ମହାପ୍ରଭୁ ରାଜା ଯେବେ ହେବେ
କି ଭୋଗ ଭୁଞ୍ଜିବୁ ସ୍ୱର୍ଗପୁରେ ଯାଇ ସର୍ବେ ।
ଶ୍ରୀନୃସିଂହ ମହାପ୍ରଭୁ ପରମ ଦୟାଳୁ
ଦିଅ ରାଜଶାଢ଼ୀ ରାଜ୍ୟେ ପ୍ରଭୁ ବୋଲି ଚଳୁ ।
ଶୁଣିଣ ନୃସିଂହ ପିତା ହୋଇଲେ ସନ୍ତୋଷ
ଶୁଭଲଗ୍ନ ବୁଝିବାକୁ ପୁଚ୍ଛିଲେ ଜ୍ୟୋତିଷ ।
ମକର ଶୁକ୍ଳପଞ୍ଚମୀ ତିଥି ଗୁରୁବାର
ରବିଶୁଦ୍ଧି ଗୁରୁଶୁଦ୍ଧି ବୁଝି ଶୁଭଲଗ୍ନ ତାର ।
ଏରୂପେ କହିଲେ ଜଉତିଷେ ଶୁଭତିଥି
ଶୁଣିଣ ମନେ ଆନନ୍ଦ ହୋଇଲେ ନୃପତି ।
ମନ୍ତ୍ରୀକି ବୋଇଲେ ନିର୍ଭାକର ଯେ ସମ୍ଭାର
ମାଘମାସେ ଶ୍ରୀନୃସିଂହ ହେବେ ନୃପବର ।
ଶୁଣିଣ ସୁଜାଣ ମନ୍ତ୍ରୀ ଆଜ୍ଞା ପରମାଣେ
ଯାବତ ଦ୍ରବ୍ୟ ସଂଗ୍ରହ କରି ବେଗେ ଆଣେ ।
କୃଷ୍ଣବଲ୍ଲଭ ବୋଇଲେ ଶୁଣ ମନ୍ତ୍ରୀବର
ଜମ୍ବୁଦ୍ୱୀପ ରାଜାଙ୍କୁ ଶ୍ରୀମୁଖଲେଖା ମୋର ।
ନରସିଂହ ମହାପ୍ରଭୁ ରାଜା ହେବେ ବୋଲି
ଶ୍ରୀମୁଖ ଆଜ୍ଞା ବୁଲାଇ ଘେନିଆସ କାଲି ।
ଶୁଣିଣ ସୁଜାଣ ମନ୍ତ୍ରୀ ଆନନ୍ଦ ହୋଇଲା
ରାଜାଙ୍କର ଆଜ୍ଞାପାଇ ଶ୍ରୀମୁଖ ଲେଖିଲା ।
ଦୂତଙ୍କର ହସ୍ତେ ଦେଇ ପେଶିଦେଲା ରାଜ୍ୟେ
ଖବର ପାଇ ରାଜାଏ ଆସିକଲେ ବିଜେ ।
ସମସ୍ତଙ୍କୁ ବସା ସଞ୍ଚା ଗୃହମାନ ଦେଇ
ରହିଲେ ନୃପତିମାନେ ସୁଖଭୋଗ ପାଇ ।
ଶ୍ରୀନୃସିଂହ ମହାପ୍ରଭୁ ରାଜା ହେବେ ବୋଲି
ଖବର ପାଇ ଆସିଲେ ସର୍ବ ଋଷି ଚଳି ।
ବଦରିଦେଶେ ମିଳିଲେ ଆସି ଋଷିଯାକ
ବଶିଷ୍ଠ ଯେ ବାମଦେବ ଲୋମଶ ବାଲ୍ମିକ ।
ଗୌତମ ନାରଦ ପରାଶର କଣ୍ୱଋଷି
ସନକ ସନାତନ ଯେ ବେଦଗର୍ଭ ମିଶି ।
ଖବର ପାଇଣ ବ୍ରହ୍ମା ଆସିଲେ ସେ କ୍ଷଣି
ଶ୍ରୀନୃସିଂହ ରାଜା ହେବେ ବୋଲି ମନେ ଜାଣି ।
ଦେବଇନ୍ଦ୍ର ସ୍ୱର୍ଗପୁରୁ ଆସି ବିଜେକରି
ତେତିଶକୋଟି ଦେବଙ୍କୁ ସଙ୍ଗେ ଛନ୍ତି ଧରି ।

ଈଶ୍ୱର ଯେ ବିଜେକଲେ ଶିବଗଣ ଘେନି
ବିଜେକଲେ ଦୁର୍ଗା ଘେନି ସରବ ଯୋଗିନୀ ।
ଦେଖିଣ କୃଷ୍ଣବଲ୍ଲଭ ଆନନ୍ଦିତ ହେଲେ
ଦେବ ଦେବୀମାନଙ୍କୁ ଯେ ନମସ୍କାର କଲେ ।
ବ୍ରହ୍ମାଙ୍କ ଆଗେ କହନ୍ତି ପୁଣି କରଯୋଡ଼ି
ଇଚ୍ଛାକରୁ ନୃସିଂହଙ୍କୁ ଦେବା ରାଜଶାଢ଼ୀ ।
ଶୁଣି ଧାତା ଆନନ୍ଦିତ ହୋଇଣ ବୋଇଲେ
ଭଲ ହେବ ଶ୍ରୀନୃସିଂହ ରାଜତ୍ୱ ପାଇଲେ ।
ସଂସାରର ଭାରାଭର ଛନ୍ତି ଯେହୁ ବହି
ସେହୁ ରାଜା ହେଲେ ହେବ ଆନନ୍ଦିତ ମହୀ ।
ଏତେ କହି ଶ୍ରୀନୃସିଂହ ପାଶେ ଧାତା ଗଲେ
ଋଷି ସଙ୍ଗେ ରାଜା ଯାଇ ନିଉଛାଳି କଲେ ।
ଧାତା ବୋଇଲେ ଶୁଣିମା ହେଉ ମହାପ୍ରଭୁ
ତୁମ୍ଭେ ରାଜା ହେବ ବୋଲି ଆସିଛନ୍ତି ସବୁ ।
ପ୍ରଭୁଙ୍କ ଆଜ୍ଞା ନୋହିଲେ କରିବକେ କୃତ୍ୟ
ଶୁଣିକରି ଶ୍ରୀନୃସିଂହ ହସନ୍ତି ଅଳପ ।
କହନ୍ତି ବ୍ରହ୍ମାଙ୍କ ବାକ୍ୟ ଶୁଣି ନାରାୟଣ
ବୋଲନ୍ତି କରିବ ସିନା ତୁମ୍ଭେ ଏ ଭିଆଣ ।
ତୁମେ ବୈକୁଣ୍ଠ ମଞ୍ଚକୁ ମୋତେ ସିନା ଆଣି
ମାନବେ ଜନ୍ମ କରିଛ ବ୍ରତ କଲ ପୁଣି ।
ତୁମେ ସିନା ମୋତେ ନେଇ ବିଦ୍ୟା ପଢ଼ାଇଲ
ରାଜା କରିବାକୁ ମୋତେ ନିଜେ ବିଜେକଲ ।
ତଥାପି ତ ସବୁବେଳେ ଆମ୍ଭେ ଦେବରାଜ
ତେଣୁ ରାଜା କରିବାକୁ କଲ ଏବେ ସଜ ।
ରାଜାର ତନୟ ସିନା ରାଜ୍ୟେ ରାଜା ହୋଇ
ଆନ ଲୋକ ରାଜା ହୋଇ ରାଜ୍ୟ ନ ପାଳଇ ।
ପାତ୍ର ମନ୍ତ୍ରୀ ପୁତ୍ର ସିନା ସେହି ପଣେ ଯୋଗ୍ୟ
ଆନ ଲୋକ ହୋଇଲେ ନପାରେ କରି ଭୋଗ ।
ସାତପୁରୁଷେ ଯାର ନ ଥାଇ ବଡ଼ପଣ
ସେ ପଣ ପାଇଲେସବୁ ବୋଲେ ଆମ୍ଭେଜାଣ ।
ଆମଠାରୁ ବଡ଼ ହୋଇ ସଂସାରେକେ ନାହିଁ
ଶଫରୀ ମୀନ ପରାୟେ ସେ ଚହଟୁଥାଇ ।
ଋଷିପୁତ୍ର ସିନା ହୋଏ ଋଷିରେ ଯେ ଲେଖ
ଆନ ଋଷି ହୋଇପାରେ କିହୋ ଚତୁର୍ମୁଖ ।
ତୁମେ ତ ଆମ୍ଭଙ୍କୁ ଏବେ ଆସିଲ ବିଚାରି
ନାହିଁ ବୋଲି ତୁମ୍ଭଙ୍କୁ ବା ବୋଲିବା କିପରି ।
ଏଥକୁ ଅଣାଅ ତୀର୍ଥଜଳ ତୁମେ କିଛି
ତହିଁ ଅଭିଷେକ କର ମୋତେ ଯେବେ ପୁଚ୍ଛି ।

ଆଜ୍ଞା ପାଇଣ ବିଧାତା ରାଇ ସପ୍ତମୁନି
ବୋଇଲେ ଚଳ ହୋ ବେଗେ ସ୍ୱର୍ଣ୍ଣଘଟ ଘେନି ।
ସପ୍ତ ସମୁଦ୍ରରୁ ଯାଇ ଆଣ ବେଗେ ଜଳ
ତହିଁରେ ଯେ ଅଭିଷେକ ହେବେ ଆଦିମୂଳ ।
ତୀର୍ଥଜଳ ଆଣିବାକୁ ଗଲେ ସପ୍ତମୁନି
ଭାଣ୍ଡରେ ଜଳ ପୁରାଇ ଆସିଲେକ ଘେନି ।
ଆବର ଯେ ଅଠାଅଶୀ ସହସ୍ରେକ ଋଷି
ସମସ୍ତଙ୍କୁ ଆଜ୍ଞାକରି ତୀର୍ଥେ ଦେଲେ ପେଶି ।
ଶୁଣି ଋଷିମାନେ ଚଳିଗଲେକ ସମସ୍ତେ
ସୁବର୍ଣ୍ଣର କୁମ୍ଭ ଧରିଛନ୍ତି ସର୍ବ ହସ୍ତେ ।
ଗଲେ ଗଙ୍ଗା ଗୟା ଯମୁନା ଯେ ଗୋଦାବରୀ
ସରଯୁ ନଦୀରେ ହୋଇ ମିଳିଲେ କାବେରୀ ।
ଗଣ୍ଡକୀ ଫଲୁଗୁ ଭାଗୀରଥି ସରସ୍ୱତୀ
ନର୍ମଦା ଗୋମତୀ ଚନ୍ଦ୍ରଭାଗା ପଦ୍ମାବତୀ ।
ନିତ୍ୟରୂପେ ତୁଙ୍ଗଭଦ୍ରା ଉତ୍ପଳା ବିମଳା
ବ୍ରାହ୍ମୀ ବଇତରଣୀ ଯେ ସୁକାନ୍ତି କୁନ୍ତଳା ।
ସାବିତ୍ରୀ ଯେ ଗୁରୁଗଙ୍ଗା ମଣିକର୍ଣ୍ଣିକାଦି
ଏ ବିଧି କହନ୍ତି ଯେତେ ତୀର୍ଥ ପୃଥ୍ୱୀ ଭେଦି ।
ଅଠାଶୀ ସହସ୍ରନଦୀ ପୃଥ୍ୱୀରେ ଯେ ବହି
ଅଠାଶୀ ସହସ୍ରଋଷି ଶିରେ ଜଳ ବହି ।
ଯେ ଯାହାର ତମ୍ବାପାତ୍ରୀ ଘୋଡ଼ାଇ ଯେ ଘଟେ
ବ୍ରହ୍ମାଙ୍କ ପାଶେ ଆସିଣ ହେଲେ ଋଷିଚାଟେ ।
ଜଳ ଦେଖିଣ ସନ୍ତୋଷ ହେଲେ ବେଦବର
ବଲ୍ଲଭଙ୍କୁ ବୋଇଲେ ଯୋଗାଡ଼ ନିର୍ଭାକର ।
ଶୁଣିଣ କୃଷ୍ଣବଲ୍ଲଭ ବ୍ରହ୍ମାଙ୍କର ବୋଲେ
ସାମଗ୍ରୀ ଆଣ ବୋଲିଣ ମନ୍ତ୍ରୀଙ୍କି କହିଲେ ।
ଶୁଣିଣ ସୁଜାଣ ମନ୍ତ୍ରୀ ରାଜା ଆଜ୍ଞା ପାଇ
ଅଭିଷେକ ଯୋଗାଡ଼ ଯେ ଆଣିଦେଲେ ଯାଇ ।
ଦଧି ମତ୍ସ୍ୟ ପୂର୍ଣ୍ଣକୁମ୍ଭ ରମ୍ଭା ଚୂତବୃକ୍ଷ
ତୁଳସୀ ନାରୀକେଳ ଯେ ଗରୁଡ଼ ଗୋବତ୍ସ ।
ଆଗରେ ସ୍ଥାପନ କଲେ ଏମାନଙ୍କୁ ଆଣି
ପଢ଼ନ୍ତି ସୁବେଦୀ ବିପ୍ରମାନେ ବେଦବାଣୀ ।
ସିଂହାସନେ ନୃସିଂହଙ୍କୁ କରାଇଲେ ବିଜେ
ଏଥିଅନନ୍ତରେ ଅଶୀଲକ୍ଷ ଶଙ୍ଖ ବାଜେ ।
ବିବିଧ ସୁବେଶେ ଆସି ମିଳିଲେ ଗଣିକା
ସ୍ୱର୍ଗ ଅପସରା ପ୍ରାୟେ ଦିଶନ୍ତି ନାୟିକା ।
ଢାଳନ୍ତି ଚାମର ଶ୍ୱେତପଦ୍ମ ଅବିଛିନ୍ନ
ମଙ୍ଗଳଗୁଜ୍ଜରୀ ରାଗେ ବାଜେ ବାଦ୍ୟମାନ ।
ମଙ୍ଗଳାଷ୍ଟକ ପଢ଼ନ୍ତି ବିପ୍ରେ ଟେକି ଧ୍ୱନି
ଜୟ ଜୟ ଶବଦ ଯେ ଶୁଭେ ପୁର ତିନି ।
କୁସୁମ ବୃଷ୍ଟି କରନ୍ତି ଦେବେ ଶୂନ୍ୟେ ତୋଳି
ଦିଅନ୍ତି ଯେ ହୁଳହୁଳି ନାୟିକାଏ ମିଳି ।
ଏମନ୍ତ ବେଳେ ବସନ୍ତେ ପ୍ରଭୁ ସିଂହାସନେ
ନାରଦ ନାଚନ୍ତି ବୀଣା ବାଇ ଅତି ଯତ୍ନେ ।
ଜାବାଳୀ ମହାଋଷି ଯେ ବିଡ଼ିଆ ଭୁଞ୍ଜାନ୍ତି
କଶ୍ୟପ ମହାଋଷି ଯେ ଚାମର ଢାଳନ୍ତି ।
ବନ୍ଦାନ୍ତି ବଶିଷ୍ଠ ମହାଋଷି ଅର୍ଘ୍ୟ ଆଣି
ତ୍ରନକ ସପତ ଭାଇ ବିଞ୍ଚନ୍ତି ବିଞ୍ଚଣୀ ।
ବାନ୍ଧନ୍ତି ଅଗସ୍ତି ମହାଋଷି ପୁଷ୍ପଗଭା
କରନ୍ତି ଗୌତମ ମହାଋଷି ପାଦେ ସେବା ।
ଟେକନ୍ତି ଶ୍ରୀ ବେଦବ୍ୟାସ ଋଷି ଦଣ୍ଡଛତ୍ର
ଶଙ୍ଖଚକ୍ର ଆଲଟ ଯେ ଉଡ଼େ ଦଣ୍ଡନେତ
ପୁଲହ ମହାଋଷି ଯେ ଧରି ହୀରାବାଡ଼ି
ଆଡ଼ହୋ ଆଗେ କରନ୍ତି ପଡ଼ିହାରୀମାଡ଼ି ।
ବୈନତେୟ ବାହାନଙ୍କୁ କରିଣ ମଣ୍ଡଣି
ସିଂହାସନ ତଳେ ଉଭା କରାଇଲେ ଆଣି ।
ନୀଳାଦ୍ରିରେ ଜଗନ୍ନାଥ ଯେସନେକ ଶୋଭା
ତହୁଁ ଅଧିକ ଦିଶଇ ଶ୍ରୀନୃସିଂହ ପ୍ରଭା
ଦର୍ଶନ କରନ୍ତି ଚାରିପାଶେ ଲକ୍ଷେ ରାଜା
ଆବର ଅଛନ୍ତି ସେବି ସର୍ବ ଜନ ପ୍ରଜା ।
ଚୌଷଠି ସହସ୍ରକନ୍ୟା ଦ୍ୟନ୍ତି ହୁଳହୁଳି
ପଢ଼ନ୍ତି ବ୍ରାହ୍ମଣେ ବେଦ ବାଇ କରତାଳି ।
ସ୍ୱର୍ଗୁ ଅପସରୀ ଆସି ନୃତ୍ୟ ଗୀତ କଲେ
ଖେମଟା ବଜାଇ ରାଜା ସଭାରେ ନାଚିଲେ ।
ବିଧାତା ଚତୁର୍ମୁଖରେ ଚାରିବେଦ ଭଣି
କରନ୍ତି ସକଳ ଦେବେ ପୁଷ୍ପବୃଷ୍ଟି ଆଣି ।
ଏଥିଅନନ୍ତରେ ପୁଣି ସର୍ବ ଋଷିଯାକ
ସହସ୍ର ଶୀର୍ଷକାଣ୍ଡିକ ପଢ଼ି ମନ୍ତ୍ରବାକ୍ୟ ।
ନାନା ତୀର୍ଥ ଜଳ ମନ୍ତ୍ର ପଢ଼ି ସିଦ୍ଧକରି
ପଞ୍ଚାମୃତ ଧଇଲେକ ଭାଣ୍ଡେ ପୁଣି ଭରି ।
ପଣ୍ଡିତେ ବୋଇଲେ ଏବେ ଶୁଭଲଗ୍ନ ହେଲା
ଏହି ଅନୁକୂଳେ ଅଭିଷେକ କର ଭଲା ।
ଶୁଣି ଋଷିମାନେ ଧଇଲେକ ତୀର୍ଥପାଣି
ମନ୍ତ୍ରି ଶ୍ରୀନୃସିଂହ ଶିରେ ଢାଳିଦେଲେ ଆଣି ।
ଢାଳିଲେ ଯାବତ ତୀର୍ଥଜଳ ପ୍ରଭୁ ଶିରେ
କରନ୍ତି ନୃସିଂହ ସ୍ନାନ ବସି ଜଗତିରେ ।

ଚାମର ଢାଳନ୍ତି ଲକ୍ଷେ ରାଜା ଚଉପାଶେ
ଶ୍ରୀଅଙ୍ଗ ପୋଛନ୍ତି ବିପ୍ରମାନେ ଝୀନବାସେ ।
ମୁର୍ଦ୍ଧା ଅଭିଷେକ ପ୍ରଭୁ ନରସିଂହ ହେଲେ
ଜଗନ୍ନାଥ ଦେବ ସ୍ନାନବିଧି ଯେତେ କଲେ ।
ସେହିରୂପେ ଅଭିଷେକ ହେଲେ ନରହରି
ବାଜଇ ଶଙ୍ଖ କାହାଳୀ ଦମଦମା ଭେରୀ ।
ତଦୁତ୍ତାରେ ବ୍ରହ୍ମା କୃଷ୍ଣବଲ୍ଲଭର କରେ
ଶାଢ଼ୀ ବନ୍ଧାଇଣ ଦେଲେ ଶ୍ରୀନୃସିଂହ ଶିରେ ।
ଭଗବତୀ ମାତା ତହିଁ ଆସି ବିଜେକରି
ନୃସିଂହଙ୍କୁ ବନ୍ଦାଇଲେ ଦୁର୍ବାକ୍ଷତ ଧରି ।
ଶେଷଦେବ ଛତ୍ର ଟେକିଛନ୍ତି ପ୍ରଭୁ ଶିରେ
ଗରୁଡ଼ ଚାପଇ ପାଦପଦ୍ମ ବସି ଧୀରେ ।
କର୍ଣ୍ଣାଟେଶ୍ୱର ସେବାରେ ଅଛନ୍ତି ସେ ଲାଗି
ଲୋଡ଼ିଲେ ସାମଗ୍ରୀ ଖଞ୍ଜା କରନ୍ତି ଯେ ବେଗି ।
କରନ୍ତି ଚୌଷଠିସସ୍ର କନ୍ୟା ପାଦପୂଜା
ବୋଲନ୍ତି ନୃସିଂହ ସ୍ୱାମୀ ହେଲେ ଆମ୍ଭ ରାଜା ।
କାହାକୁ ଆମ୍ଭର କିଛି ଆଉ ନାହିଁ ଭୟେ
ଅଚିନ୍ତେ ଭୋଗ କରିବା ଏବେ ଯେଝାଠାଏ ।
ଆବର ସେ ନଗ୍ରେ ଥିଲେ ଯେତେ ସ୍ତିରୀବୃନ୍ଦେ
ସମସ୍ତେ ଦେଲେକ ଅର୍ଘ୍ୟ ନୃସିଂହଙ୍କ ପାଦେ ।
ସୁବେଦୀ ବିପ୍ରଗଣଙ୍କ ପତ୍ନୀ ଯେତେ ଥିଲେ
ସେମାନେ ଶ୍ରୀନୃସିଂହଙ୍କ ପାଦେ ଅର୍ଘ୍ୟ ଦେଲେ
ଦେଖିବା ପାଇଁ ଗହଳ ହେଲେ ନରନାରୀ
ଯୁବତୀମାନେ ଆବର ତପୀ ଛନ୍ତି ପୁରି ।
ସ୍ତିରୀଙ୍କ କୁଙ୍କୁମଲାଗେ ତପୀଙ୍କର କାୟେ
ତପୀଙ୍କ ବିଭୂତି ଲାଗେ ସ୍ତିରୀଙ୍କର ଦେହେ ।
ନାୟିକା ଯାନ୍ତି ଯାବତ ଲୋକ ମଧ୍ୟେ ମିଶି
ହୋଇ ପେଲାପେଲି ଚାଲିଯାନ୍ତି ସର୍ବେ ମିଶି ।
ନୃସିଂହଙ୍କୁ ଦେଖିବାକୁ ହ୍ୱନ୍ତି ଯନ୍ତାଯନ୍ତି
ଏଥି ଉତ୍ତାରୁ ସରିଲା ପୁଣି ରାଜନୀତି ।
ଆସ୍ଥାନୁ ଉଠି ଭିତର ପୁରେ ପ୍ରଭୁ ଗଲେ
ସୁବାସିତ ଜଳେ ଯାଇ ସ୍ନାନବିଧି କଲେ ।
ସୁଝୀନ ବସନ ପିନ୍ଧା ପିନ୍ଧି ଦେବରାଜେ
ସେ ସଭାକୁ ସେହିକ୍ଷଣି କଲେ ପ୍ରଭୁ ବିଜେ ।
ସୁଜାଣ ମନ୍ତ୍ରୀକି ଆଜ୍ଞାଦେଲେ ନରସିଂହ
ବୋଇଲେ ସେ ବ୍ରାହ୍ମଣକୁ ଧନ ଦିଅ ବେଗ ।
ସମସ୍ତେ ସନ୍ତୋଷ ହୋଇ ଯାନ୍ତୁ ଦୟାକରି
ବ୍ରାହ୍ମଣେ ସନ୍ତୋଷ ହେଲେ ବଢ଼ଇ ଯେ ଶିରୀ ।
ବ୍ରାହ୍ମଣମାନଙ୍କୁ ଯେହୁ କରେ ଅସନ୍ତୋଷ
ତାହାର ଶିରୀ ଅବଶ୍ୟ ହୁଏ ଜାଣ ନାଶ ।
ବ୍ରାହ୍ମଣର ଚିତ୍ତ ହରି ଯେଉଁ ପ୍ରାଣୀ ନିଏ
କାଳେକାଳେ ତାର ବଂଶ ଦରିଦ୍ର ଯେ ହୁଏ ।
ରୋଗ ପୀଡ଼ିତ ହୋଇଣ ଅନ୍ତେ ନାଶଯାନ୍ତି
ସେମାନେ ହରି ଚରଣେ ଶତ୍ରୁଟି ହୁଅନ୍ତି ।
ବ୍ରାହ୍ମଣଙ୍କଠାରେ ଯେ କପଟ ବୁଦ୍ଧିକରେ
ଦେଇ ଭୂମିଦାନ ପୁଣି ଲେଉଟି ତା ହରେ ।
ସେ ଲୋକ ନିଶ୍ଚୟ ଜାଣ ନରକେ ପଡ଼ଇ
ଇହ ପରଲୋକେ ତାକୁ ଗତିମୁକ୍ତି ନାହିଁ ।
ବ୍ରାହ୍ମଣର ଦ୍ରବ୍ୟ ଦେଖି ଲୋଭ ଯେହୁ କରେ
ଅବିଚାର ବୁଦ୍ଧିକରି ମୂର୍ଖପଣେ ହରେ ।
ଅନ୍ନ ଅଭାବରେ କ୍ଷୁଧା ପାଇ ବିପ୍ରଜନ
ବିକଳେ ଦୁଃଖିତ ହୋଇ କରନ୍ତି ରୋଦନ ।
ରୋଦନ କରନ୍ତେ ଲୁହ ତଳେ ଯେବେ ପଡ଼େ
ହରିବା ଲୋକର ଶିରୀ ତକ୍ଷଣେ ଯେ ଛାଡ଼େ ।
ଗୋଟିଏ ଯୁଗ ଗଲେ ସେ ଜାଣ ନୁହେଁ ମୋକ୍ଷ
କହନ୍ତି ନୃସିଂହ ନାରାୟଣ ପଙ୍କଜାକ୍ଷ ।
ଆପଣେ ଦେଇ ହରନ୍ତି ଆପେ ଯେଉଁ ପ୍ରାଣୀ
ତାହାଠାରୁ ପାପୀ ନାହିଁ ବ୍ରହ୍ମାଣ୍ଡେ କେ ପୁଣି ।
ଆପେ ଦେଉଥାଇ ଅବା ପର ଦେଇଥାଉ
ବ୍ରାହ୍ମଣର ଦ୍ରବ୍ୟ ଜାଣ ନ ହରିବ କେହୁ ।
ବ୍ରାହ୍ମଣଙ୍କ ତୁଲେ ଜାଣ ନ କରିବ ବାଦ
ଘେନିବ ବ୍ରାହ୍ମଣ ପାଦରଜ ନିତ୍ୟେ ହୃଦ ।
ବ୍ରାହ୍ମଣ ପାଦଧୂଳି ଯେ ହେବ ନିତ୍ୟ ବୋଲି
କି ଫଳ ଲଭିବ ଶ୍ରମେ ତୀର୍ଥକୁ ଯେ ଛଳି ।
ମୁଁ ଏବେ ଦେଖ ବିପ୍ରର ପାବ ଅଛି ବନ୍ଧି
ମାରନ୍ତେ ଚିହ୍ନହୋଇଲା ଦେଖ ମୋର ହୃଦି ।
ଦେଖ ହୋ ମନ୍ତ୍ରୀ ଏବେ ଶ୍ରୀବତ୍ସ ଚିହ୍ନ ପାଦ
ଏତେକ ବୋଲି ନୃସିଂହ ଦେଖାଇଲେ ହୃଦ ।
ନିସ୍ତରଲି ବୋଲି ଶୁଣିଲାକ ମନ୍ତ୍ରୀବର
ବୋଇଲା ଏ ଚିହ୍ନ ମୋତେ ଲାଗେ ଅଗୋଚର ।
କାହିଁକି ଲାଗିଲା ଶ୍ରୀଅଙ୍ଗରେ ବିପ୍ରପାଦ
ଏକଥାଟି କହ ଆଗେ ଶୁଣିମା ଗୋବିନ୍ଦ ।

❋ ❋ ❋

## ଶ୍ରୀବତ୍ସ ବିପ୍ର ବୃତ୍ତାନ୍ତ

ନୃସିଂହ ବୋଇଲେ ଏ ଅପାର କାଳ କଥା
ବୈକୁଣ୍ଠର ମହିମା ଏ ଅଟଇ ବ୍ୟବସ୍ଥା ।

ଆଦି ସତ୍ୟଯୁଗର ଏ ଅଟଇ ପ୍ରସଙ୍ଗ
ପ୍ରଜାପତି ନାମେ ବ୍ରହ୍ମା କଲେ ମହାଯାଗ ।
ଯାବତ ଋଷି ଅଗ୍ନିରେ ଦିଅନ୍ତି ଯେ ହବି
ପ୍ରଜାପତି ପାଞ୍ଚେ କାହାକୁ ମୁଁ ଅର୍ଘ୍ୟ ଦେବି ।
ଯହିଁ ଅଠାଶୀସହସ୍ର ଋଷି ଛନ୍ତି ମିଳି
ସମସ୍ତେ ସରି ଅଟନ୍ତି ମୋତେ ତପଶାଳୀ ।
ଜଣକୁ ଦେଲେ କରିବେ ସିନା ସେହୁ ଗୋଳ
ଏତେକ ବୋଲି ସେ ଅର୍ଘ୍ୟ ଥୋଇଲେ ଭୂତଳ
ରଖନ୍ତେ ଅର୍ଘ୍ୟ ତଳେ ସେ ହସି କ୍ରତୁଋଷି
ବଶିଷ୍ଠଙ୍କୁ ଦିଅ କହିଲେକ ମନ୍ଦେ ହସି ।
ବୁଝିଲେ ବଶିଷ୍ଠ ଋଷି ଅଟନ୍ତି ବ୍ରାହ୍ମଣ
ତାଙ୍କୁ ଅର୍ଘ୍ୟ ଦେଲେ ସର୍ବ ହେବୁ ତୋଷ ମନ
ନାରଦ ବୋଲେ କାହିଁକି ତାଙ୍କୁ ଅର୍ଘ୍ୟ ଦେବ
ଜାତିରେ ପଢ଼ିହାରୀ ସେ ଅଟନ୍ତି ଜାଣିବ ।
ବେଶ୍ୟାସ୍ତିରୀ ଗର୍ଭରୁ ସେ ହୋଇଛନ୍ତି ଜନ୍ମ
ତାହାଙ୍କୁ କି ବୋଲି ଅର୍ଘ୍ୟ ଦେବ ଋଷିବ୍ରହ୍ମ ।
ନୋହିବାର କଥା ଏ ସଭାରେ କହ ଆଣି
ମହତ ମାତ୍ରକ ସାରି ବୁଡ଼ାଉଛ ଜାଣି ।
କ୍ରତୁ ବୋଇଲେକ ଶକ୍ତି ମୁନିଙ୍କି ଯେ ଦିଅ
ନାରଦ ବୋଇଲେ ନୋହିବାର କଥା କହ ।
ଚାଣ୍ଡାଳୀ କନ୍ୟାଗର୍ଭୁ ଯେ ଅଛନ୍ତି ଜନମି
କି ବୋଲି ତାହାଙ୍କୁ ଅର୍ଘ୍ୟ ଦେବ ପାଦେ ନମି ।
କ୍ରତୁ ବୋଲେ ତେବେ ପରାଶରଙ୍କୁ ଯେ ଦିଅ
ବୁଝିଲେ ପ୍ରତ୍ୟକ୍ଷେ ଅଟନ୍ତି ସେ ବ୍ରହ୍ମମୟ ।
ନାରଦ ବୋଇଲେ ସେ ଶବରୀ କନ୍ୟା ଗର୍ଭେ
ପ୍ରତ୍ୟକ୍ଷେ ଜନ୍ମିଅଛନ୍ତି ଅର୍ଘ୍ୟ କେହ୍ନେ ଦେବେ ।
ଜାଣୁ ଜାଣୁ ନୋହିବାର କଥା କିମ୍ପା କହ
ଶୁଣିଣ ହସିଲେ ସଭାଯାକ ଟହ ଟହ ।
କ୍ରତୁ ବୋଇଲେକ ଦିଅ ବ୍ୟାସଙ୍କର ପାଦେ
ବ୍ରହ୍ମର୍ଷିରେ ଗଣା ହୁଅନ୍ତି ସେ ଚାରିପାଦେ ।
ବିଷ୍ଣୁ ସମାନ ଅଟନ୍ତି ଋଷି ବେଦବ୍ୟାସ
ତାଙ୍କୁ ଅର୍ଘ୍ୟ ଦେଲେ ସମସ୍ତଙ୍କୁ ମନ ତୋଷ ।
ଲଗ୍ନ ଆଦ୍ୟପ୍ରାନ୍ତରୁ ସେ ଯେବେ ଜନ୍ମିଥାନ୍ତେ
ବିଷ୍ଣୁ ଆଉ କାହିଁପାଇଁ ଅବତାର ହୋନ୍ତେ ।
ପ୍ରତ୍ୟକ୍ଷେ ଶ୍ରୀ ଭଗବାନ ବୋଲି ମାନନ୍ତାଇ
ଏଣୁ ବ୍ୟାସ ବିଷ୍ଣୁଅଂଶେ ଜାଣ ସର୍ବଦେହୀ ।
ତାଙ୍କୁ ଅର୍ଘ୍ୟ ଦେଲେ ନୋହିବେକ ଅସନ୍ତୋଷ
ସାକ୍ଷାତ ଅଟନ୍ତି ବିଷ୍ଣୁ ଦେହୀ ବେଦବ୍ୟାସ ।

ନାରଦ ବୋଇଲେ ଅର୍ଘ୍ୟ ନ ଯୋଗାଇ ତାଙ୍କୁ
ନୋହିବାର କଥାଯାକ କହୁଛ ଆମ୍ଭଙ୍କୁ ।
କ୍ରତୁ ବୋଇଲେ କାହିଁକି ଏହା ନାହିଁ କଲ
ତାଙ୍କଠାରୁ ବଡ଼ ହୋଇ ନାହିଁ କେ ଅମୂଲ୍ୟ ।
ନାରଦ ବୋଇଲେ ତେବେ ଶୁଣ କ୍ରତୁଋଷି
କି ବୋଲି ସଭାରେ କହ ଏତେ କଥା ବସି ।
ବୁଝିଲେ ଅଟନ୍ତି ବ୍ୟାସ କଇବର୍ତ୍ତୀ ପୁତ୍ର
ତାଙ୍କୁ କି ବୋଲି ବୋଲୁଛ ଦେବା ଅର୍ଘ୍ୟପାତ୍ର ।
ସବୁ ଋଷିଙ୍କର ଜାତି ନେବାକୁ କହ କି
ଆମ୍ଭ କହିବା ବଚନ ଗୋଟି ପାଳିବ କି ।
ଯାହାକୁଟି ଅର୍ଘ୍ୟ ଦେବ କହିବା ତା ଶୁଣ
ଅଛନ୍ତି ଈଶ୍ୱର ବ୍ରହ୍ମା ବିଷ୍ଣୁ ତିନିଜଣ ।
ବିଚାରି ଏ ତିନିମୂର୍ତ୍ତି ମଧ୍ୟେ ଅର୍ଘ୍ୟ ଦିଅ
ନିନ୍ଦା ପାଇବ ଆନକୁ ଦେଲେ ଶୁଣିଥାଅ ।
ଏରୂପେ କହନ୍ତେ ଜାଣ ନାରଦ ଗୋସାଇଁ
ତାହା ଶୁଣି କୋପକଲେ ବ୍ୟାସଙ୍କ ତନୟୀ ।
ବେଦବ୍ୟାସଙ୍କର ଅଟନ୍ତି ଯେ ଜ୍ୟେଷ୍ଠବଳା
ତପରେ ସେ ପରିପୂର୍ଣ୍ଣ ଯୋଗେ ଅନର୍ଗଳା ।
ଅଟଇ ଶ୍ରୀବତ୍ସ ମୁନି ବୋଲି ତାଙ୍କ ନାମ
ବଂଶ ନିନ୍ଦା ଶୁଣି ସେହୁ ହେଲେ ମହାତମ ।
ବୋଇଲେକ ଶୁଣ ଆହେ କଳିପ୍ରିୟ ମୁନି
ନୋହିଲେ ବୁଲ କି ତୁମ୍ଭେ କଳିମୁଣି ଘେନି ।
କାଖେ କଳିମୁଣି କାଖେ କଳହ ବଜାର
ଦିନେକ ଲଗାଅ କଳି କୋଡ଼ିଏ ହଜାର ।
ନୋହିଲାର କଥାଯାକ ହେଲା ବୋଲି କହ
କଳି ନୋହିଲାଯାକେ ଯେ ପେଟକୁ ଶୁଖାଅ ।
କଳି ଲଗାଇଣ ତହୁଁ ପଳାଅ ଯେ ଘୁଞ୍ଚି
ତୁମ୍ଭର ଏତିକି ବଡ଼ପଣ ମାତ୍ର ଅଛି ।
ଆମ୍ଭ ବଂଶ କରଣୀକି ଦେଖାଇଛ ଏବେ
ବେଳରେ କରିବ ପରା ମୁହଁ ବଙ୍କା ସର୍ବେ ।
ବ୍ୟାସ ଯେ ଆମ୍ଭର ବାପ ଅଟେ କୁଳଶ୍ରେଷ୍ଠ
ବ୍ୟାସଙ୍କର ପିତାମହ ଅଟନ୍ତି ବଶିଷ୍ଠ ।
ବଶିଷ୍ଠଙ୍କର ଯେ ପିତା ଅଟେ ବେଦବ୍ରହ୍ମା
ବ୍ରହ୍ମାଙ୍କର ବାପ କେହୁ କହ ତ ଶୁଣିମା ।
ଏତେ ନୀଚକୁଳେ ବ୍ରହ୍ମା କାହିଁକି ଜନ୍ମିଲା
ବିପ୍ରକୁଳକୁ କଳଙ୍କ ବ୍ରହ୍ମା ଯେବେ ହେଲା ।
ବ୍ରହ୍ମାଙ୍କୁ ଯାଉଛି ତେବେ ପଚାରି ଆସିବି
ତୁମ୍ଭର ପିତା କେ ବୋଲି ଖୋଲି ପଚାରିବି ।

ନାରଦ ବୋଇଲେ ଏଡ଼େ ଛଳ ଯେବେ କଲ
ଆଜ୍ଞାଏ କାହିଁକି ନ ପୁଛି ତୁନିହେଲ ।
ତହୁଁ ଚଳିଲେ ଶ୍ରୀବତ୍ସ ମୁନି କ୍ରୋଧ ହୋଇ
ବ୍ରହ୍ମାଙ୍କ ଭୁବନେ ସେହୁ ମିଳିଲେକ ଯାଇ ।
ଦେଖିଲେକ ପିତାମହ ସ୍ନାନବିଧି ସାରି
ଜପୁଅଛନ୍ତି ଗାୟତ୍ରୀ ହସ୍ତେ ଚକ୍ଷୁ ଧରି ।
ଶ୍ରୀବତ୍ସ ମୁନି ଏମନ୍ତ ସମୟରେ ଯାଇ
ଜଣାଇଲେ ସେ ବ୍ରହ୍ମାଙ୍କ ପାୟେ ପଡ଼ି ଶୋଇ ।
ଉଠି ଅପସରି ପୁଣି ରହି ବ୍ରହ୍ମରଷି
ନ ଶୁଣି ବ୍ରହ୍ମା ଭଜନେ ଅଛନ୍ତି ସେ ବସି ।
ଦେଖିଣ ଶ୍ରୀବତ୍ସ ମୁନି କଲେ ମହାକୋପ
ବୋଇଲେ ମର୍ତ୍ତ୍ୟରେ ପୂଜା ନୋହୁ ତୋର ରୂପ ।
ଆଜିଠାରୁ ପୂଜା କେହି ନ କରନ୍ତୁ ତୋତେ
ସଂସାରେ ଅପୂଜା ହୋଇ ରହ ତୁ ଜଗତେ ।
ମୁଁ ଯେ କ୍ରୋଧହୋଇ ଆସିଲଇଁ ତୋତେ କହି
ତୁ ତାହା ନ ବୁଝିଲୁ ଯେ ଧାତା ପଦ ବହି ।
ଯାଉଛି ତୋ କଥା ହର ଆଗେ ଜଣାଇବି
ତାଙ୍କଠାରୁ ନ୍ୟାୟ ଶୁଣି ବାହୁଡ଼ି ଆସିବି ।
ଏତେ ବୋଲି ଶ୍ରୀବତ୍ସ ଚଳିଲେ କଇଳାସ
ଦେଖିଲେ ପଡ଼ିଛି ହର ଉମା ଖେଳରସ ।
ବସିଲେ ଶ୍ରୀବତ୍ସ ମୁନି ଯାଇ ତତକ୍ଷଣି
କହିଲେ ଆପଣା ବଂଶନିନ୍ଦା ଶୂଳପାଣି ।
ସେହି କଥାଯାକ କିଛି ନ ଶୁଣିଲେ ହର
ବୋଇଲେ ମୁନିଙ୍କି ଖେଳ ଭୋଳେ ମାର ମାର ।
ତାହା ଦେଖି ଋଷି ଶାପ ଦେଲେ କ୍ରୋଧ ହୋଇ
ବୋଇଲେ ଶିବ ନିର୍ମାଲ୍ୟ ନ ଭକ୍ଷନ୍ତୁ କେହି ।
ଏତେ ବୋଲି ସେଠାରୁ ବୈକୁଣ୍ଠକୁ ଗଲେ
ଶ୍ରୀଗୋବିନ୍ଦ ପାଶେ ଯାଇ ମୁନି ଉଭାହେଲେ ।
ଦେଖିଲା ଶ୍ରୀଜଗନ୍ନାଥ ଛନ୍ତି ନିଦ୍ରାଯାଇ
ଶଙ୍ଖ ଚକ୍ର ଗଦାପଦ୍ମ ଚାରିଭୁଜେ ବହି ।
ନାରାୟଣଙ୍କୁ ନିଦ୍ରିତ ଦେଖିଣ ସେ ମୁନି
ମନେ ପାଞ୍ଚିଲେ ପ୍ରତ୍ୟକ୍ଷ ଏତ ଅନ୍ତର୍ଯ୍ୟାମୀ ।
କରିବେ ଆମ୍ଭ ଆସିବା କଥା ଅବା ସିଦ୍ଧି
ଭବ ବିରଞ୍ଚିର ପ୍ରାୟ ନୁହେଁ ବିଷ୍ଣୁବୁଦ୍ଧି ।
ସାକ୍ଷାତେ ଶ୍ରୀଗୋବିନ୍ଦଙ୍କୁ ଆସନ୍ତି ମୁଁ ଡାକି
କରନ୍ତି ପ୍ରତିକାର ଏ ସମସ୍ତ ପ୍ରାଣୀଙ୍କି
ନ କହିଲେ ଜାଣନ୍ତି ନ କହିଲେ ଶୁଣନ୍ତି
ତେଣୁ ଅନ୍ତର୍ଯ୍ୟାମୀ ପ୍ରଭୁ ସବୁରି ଅଟନ୍ତି ।

ନାରଦ ବିଟାଳ କରିଛନ୍ତି ଋଷିଯାକୁ
ପ୍ରଭୁ ଆଜ୍ଞାଦେଲେ ଭୋଜିଦେବୁ ଆମ୍ଭେ ତାକୁ ।
ଆମ୍ଭର କରଣୀବଳ ଭୋଜି ସିନା ଅଟେ
କରଣୀ ନୋହିଲେ ଆତ୍ମା ନ ରହଇ ଘଟେ ।
ଏଥକୁ କରୁଣା କରିବେ ଯେ ମହାବାହୁ
ଜଣାଇଲା ପରେ ଜଣାଯିବ କଥା ଆଉ ।
ମୋ ମାନ ମହିମା ରଖିବେ ଶ୍ରୀ ଭଗବାନ
ସଭାରେ ବେଳକେ ବିଜେହେବେ ଜନାର୍ଦ୍ଦନ ।
ଏରୂପେ ମନେପାଞ୍ଚି ଶ୍ରୀବତ୍ସ ମୁନିବର
ଆକୁଳହୋଇ ଛାମୁରେ କହେ ଯୋଡ଼ିକର ।
ବୋଇଲେ ଭୋ ନାରାୟଣ ଶୁଣିମା ଗୋବିନ୍ଦ
କାହିଁକି ବଂଶଯାକ ମୋ ନିନ୍ଦିଲେ ନାରଦ ।
ତେଣୁକରି ଆସିଛି ମୁଁ ଆପଣଙ୍କୁ ନେଇ
ପ୍ରଜାପତି ଯାଗଯାଏ ଯିବା ବିଦାହୋଇ ।
ମୁନିଙ୍କ ଆକୁଳ ଶୁଣି ପ୍ରଭୁ ନାରାୟଣ
ନିଦ୍ରାଲୋକ ପ୍ରାୟେ ଶୁଣିଛନ୍ତି ପଲ୍ୟଙ୍କେଣ ।
ବିଷ୍ଣୁ ନିଦ୍ରା ଦେଖି ମୁନି ଆକୁଳ ହୋଇଲେ
କିରୂପେ ଉଠନ୍ତୁ ବୋଲି ବେଦ ଝଙ୍କାରିଲେ ।
ମହା ଉଚ୍ଚକରି ଟେକନ୍ତେ ଯେ ବେଦଧ୍ୱନି
ନ ଶୁଣିଲା ପ୍ରାୟେ ପ୍ରଭୁ ହୋଇଛନ୍ତି ତୁନି ।
ବିଷ୍ଣୁଙ୍କୁ ଅଚେତ ଦେଖି କୋପେ ମୁନିବର
ବୋଇଲେ ଅନ୍ତର୍ଯ୍ୟାମୀ ଏ ନୁହନ୍ତି ଠାକୁର ।
ଠାକୁର ହେଲେ ସେ ନିଶ୍ଚେଁ ଜାଣନ୍ତେ ମୋ ଦୁଃଖ
କଥାଏ କିଛି କରନ୍ତେ ହେଲେ ପଦ୍ମମୁଖ ।
ଯାହାହେଲେ ହେଉ ପଛେ ମାରିବି ମୁଁ ମାଡ଼େ
କର୍ମ ଆଦରି ରହିବି ମୁହିଁ ମନଦୃଢ଼େ ।
ଏତେକ ବୋଲି ବ୍ରାହ୍ମଣ ଟେକି ଦକ୍ଷପାଦ
ଅତି କ୍ରୋଧରେ ଉଠିଣ ପ୍ରହାରିଲା ହୃଦ ।
ପାଦ ବାଜନ୍ତେ ଶ୍ରୀହରି ଉଠିଲେ ତକ୍ଷଣ
ଚାହିଁଲେକ ଚାରିଆଡ଼େ ନାହାନ୍ତି କେ ପୁଣ ।
ଦେଖିଲେ ପାଖରେ ଏବା ଅଛନ୍ତି ବ୍ରାହ୍ମଣ
ପୁଛିଲେ କେତେବେଳରୁ ଆସିଲେ ଆପଣ ।
ବିପ୍ରଗୋସାଇଁମାନଙ୍କୁ ଆଜ୍ଞାଏ ମୁହିଁ
ଦର୍ଶନ ନ ଥିଲି କରି ନିଦେ ମୋହ ଯାଇ ।
କେତେ ଭାଗ୍ୟ ହେଲା ମୋର ବିଜେକଲ ଆସି
ପ୍ରତ୍ୟକ୍ଷେ ନେତ୍ର ମୋହର ଦେଖିଲା ବ୍ରହ୍ମର୍ଷି ।
ଏରୂପେ ପ୍ରଶଂସାକରି ପ୍ରଭୁ ନରହରି
ଲଜ୍ଜା ପାଇଣ ବ୍ରାହ୍ମଣ ପଳାଇଲା ଡରି ।

ବିପ୍ର ପଳାନ୍ତେ ଧଇଲେ ପ୍ରଭୁ ପୁଣିବଳେ
ଚରଣ ବେନି ଚାପିଲେ ଧରି ଆଦିମୂଳେ ।
ସୁବାସ ଜଳ ଆଣିଣ ବିପ୍ରପାଦ ଧୋଇ
ସେ ଜଳ ସିଞ୍ଚିହୋଇଲେ ମଥାପରେ ନେଇ ।
ଲେଉଟିଣ ପୁଣି ଧରିବି ପାଦରଜ
ଶରୀରଯାକତ ବୋଳିହୁନ୍ତି ଚତୁର୍ଭୁଜ ।
କର୍ପୂର କସ୍ତୁରୀ ପ୍ରଭା ଶ୍ରୀକରରେ ଆଣି
ବୋଳନ୍ତି ବିପ୍ରର ଦେହଯାକ ଚକ୍ରପାଣି ।
ବିଷ୍ଣୁର ଏ ସେବା ଦେଖି ପୁଣି ବିପ୍ର ଡରି
ପଳାଇ ପଡ଼ିଲା ଖଣ୍ଡେଦୂରେ ଝୁଣ୍ଟିକରି ।
ଗୋଡ଼ାଇ କରେ ଧରିଣ ଟେକି ବିପ୍ରଗାତ୍ର
ବିଞ୍ଚନ୍ତି କରେ ବିଞ୍ଚଣୀ ଧରି ପଦ୍ମନେତ୍ର ।
ଶ୍ରୀବସ୍ତ ମୁନିଙ୍କ ପାଦ ଶ୍ରୀକରେ ଆଉଁସି
ବୋଲନ୍ତି କେତେ ଯେ କଷ୍ଟ ପାଇଲ ମହର୍ଷି ।
ବୁଝିଲେ ତ ମହାବଜ୍ର ଅଟେ ମୋର ହୃଦ
ନ ଜାଣି ମାରିଦେଲ ବଥାଉଥିବ ପାଦ ।
କେତେ ଶ୍ରମ ପାଇକରି ଆସିଥିଲ ଏଥେ
ଏତେ ବୋଲିଣ ଘଷିଲେ ପାଦ ଜଗନ୍ନାଥେ ।
ବୋଲନ୍ତି ତୁମ୍ଭ ଘେନି ଶ୍ରୀବସ୍ତ ନାମ ମୋର
ମରିବେ ଶ୍ରୀବସ୍ତ ନାମେ ଭଜି ତିନିପୁର ।
ହରି ଏକା ଶ୍ରୀବସ୍ତ ଶ୍ରୀବସ୍ତ ଏକା ହରି
ଶ୍ରୀବସ୍ତ ଭଜନେ ଯିବେ ସଂସାରୁ ଯେ ତରି ।
ତୁମ୍ଭେ ଶ୍ରୀବସ୍ତ ବିପ୍ରଙ୍କ କୁଳ ସୁଧାକର
ବିଜେ କରିଣ ପବିତ୍ର କଲ ମୋ ମନ୍ଦିର ।
ବିଷ୍ଣୁଙ୍କର ଶାନ୍ତଭାବ ଦେଖି ମୁନିବର
ନମନ୍ତି ଶ୍ରୀପାଦପଦ୍ମେ କରି ନମସ୍କାର ।
ଗାଲେ ମାରିହୋଇ କାମୁଡ଼ିଲେ ଦନ୍ତଜିଭ
ନ ଚିହ୍ନି ମୁଁ ଗୋବିନ୍ଦଙ୍କୁ ଦେଲି ପରାଭବ ।
ମୂର୍ଖପଣେ ପାଦ ମାଇଲି ଯେ ପ୍ରଭୁ ହୃଦେ
କି ଅପରାଧ ଅର୍ଜିଲି ମୁହିଁ ନିରାପଦେ ।
କି କରିବି ଏବେ ମୁଁ ନ ଦିଶେ ବୁଦ୍ଧିବାଟ
ବିଷ୍ଣୁଠାରେ ଅପରାଧୀ ହେଲି ମୁଁ ପାପିଷ୍ଠ ।
ଭୋ ମହାପ୍ରଭୁ ଏମନ୍ତ ଆଜ୍ଞା ମୋତେ କର
ଏ ଦୁଷ୍ଟ ଆତ୍ମା ଯେ ଛାଡ଼ିଯାଉ ଏ ଶରୀର ।
ଏହିରୂପେ ଆକୁଳ ହୁଅନ୍ତେ ଶ୍ରୀବସ୍ତ
ଜାଣିଲେକ ବିପ୍ରକଥା କରି ମନ ସ୍ୱଚ୍ଛ ।
ପ୍ରଭୁ ବୋଇଲେ ଶୁଣିମା ଆହେ ବିପ୍ରମଣି
ତୁମ୍ଭ ପ୍ରାୟେ କୁଳଶ୍ରେଷ୍ଠ ନ ମିଳେ ଧରଣୀ ।
ସମସ୍ତ ଜାତି ଉପରେ ବିପ୍ରକୁଳ ଶ୍ରେଷ୍ଠ
ବ୍ରହ୍ମାଙ୍କୁ ନ ମାନେ ଯେ ସେ ଅଟଇ ପାପିଷ୍ଠ ।
ସବୁ ଜାତି ଦୋଷକଲେ ଦଣ୍ଡମଣ୍ଡ ଅଛି
ବିପ୍ର ଦୋଷ କଲେ ଦଣ୍ଡ ନ ପାରେ ବିରଞ୍ଚି ।
ବିଷ୍ଣୁ ହେଲେ ବ୍ରାହ୍ମଣକୁ ନ ପାରେ ଯେ ଦଣ୍ଡି
ମହାପାପୀ ଏକା ସେହି ବିପ୍ରଙ୍କୁ ଯେ ଭଣ୍ଡି ।
ଏଥକୁ ମୁନି ଭୟ ନ କରେ କଦାଚିତେ ।
ତୁମ୍ଭ ପାଦଚିହ୍ନ ବହିବି ମୁଁ ହୃଦଗତେ ।
ସେ ଚିହ୍ନଟି ଅଷ୍ଟାଦଶ ଚିହ୍ନେ ଲେଖାଯିବ
ଭକ୍ତଙ୍କୁ ମୋର ଝଟକି ଚିହ୍ନ ଦିଶୁଥିବ ।
ବିପ୍ରଙ୍କର ପାଦରଜ ଅଳ୍ପ ନୋହେ ଜାଣ
ଯା ଗୃହେ ପଡ଼ଇ ତାର ବଂଶର କାରଣ ।
ଯାବତ ମଙ୍ଗଳଯାକ ମିଳେ ଆସି ତାକୁ
ଦେହ ଅନ୍ତେ ସେହି ଲୋକ ଚଳଇ ସ୍ୱର୍ଗକୁ ।
ଯେ ଜନ ନିତ୍ୟ ଚିତ୍ତକୁ ନିରିମଳ କରି
ବ୍ରାହ୍ମଣର ପାଦରଜ ଘେନେ ଦେହଭରି ।
ତାହାର ଯେ କ୍ଳେଶମାନ ସଦା ନାଶଯାଇ
ଗୋବିନ୍ଦର ଦୟା ତାକୁ ଅନୁଦିନେ ଥାଇ ।
ଆବର ମଧ ଶୁଣ ଶ୍ରୀବସ୍ତ ମୁନିବର
ବିପ୍ର ପାଦରଜ ଘେନି ବଜ୍ର ମୋର ଶରୀର ।
ବିପ୍ର ପାଦରଜ ମହିମା ଯେ ନୋହେ କହି
ଅବତାର ହୁଅଇ ଯେ ବିପ୍ର ଲାଗି ମୁହିଁ ।
ଏଥକୁ ବିପ୍ର ଆଉ ନ କର ମନେ ଶଙ୍କା
ବିପ୍ରଙ୍କ ଲାଗି ସଂସାରେ ମୋର ଜନ୍ମ ଏକା ।
ମୋତେ ସେହି ବିପ୍ର ଏକା ସଦା ଭଜୁଥାଇ
ବିପ୍ରଙ୍କ ଲାଗି ମୋହର ସଂସାର ହୁଅଇ ।
ବିପ୍ରଙ୍କ ଆଶୀର୍ବାଦୁଁ ମୋ ହୃଦେ ଛନ୍ତି ଶିରୀ
ତେଣୁ ମୋତେ ଶ୍ରୀୟାକାନ୍ତା ବୋଲନ୍ତି ତ୍ରିପୁରୀ ।
ଏତେକ କହି ଗୋବିନ୍ଦ ମୁନି ଘେନି ସଙ୍ଗେ
ଗରୁଡ଼ର କନ୍ଧେ ବସି ଆସିଲେକ ବେଗେ ।
ପ୍ରଜାପତିଙ୍କର ଯାଗେ ମିଳିଲେକ ହରି
ଶ୍ରୀବସ୍ତ ମୁନିଙ୍କି ପ୍ରଭୁ ଆଗେ ଛନ୍ତି କରି ।
ଶଙ୍ଖଚକ୍ର ଗଦାପଦ୍ମ ରଖି ଚାରିଆଡ଼େ
ଗରୁଡ଼ପରେ ବସାଇଛନ୍ତି ଯୋଗାରୁଢ଼େ ।
ମୁନିଙ୍କର ବେନିପାଦ ପଦ୍ମକରେ ଧରି
ବଥଉଥିବ ବୋଲି ଯେ ମଞ୍ଜାଳନ୍ତି ହରି ।
ଶ୍ରୀବସ୍ତ ମୁନି ମହିମା ପ୍ରକାଶିବା ଅର୍ଥେ
ମୁନିର ପାଦ ମଞ୍ଜାଳି ଆସନ୍ତି ସାକ୍ଷାତେ ।

ଋଷିଗଣ ସେ ଯାଗକୁ ଯେତେ ଆସିଥିଲେ
ଶ୍ରୀବସ୍ତ ମୁନିଙ୍କୁ ସର୍ବେ ଧନ୍ୟ ଧନ୍ୟ କଲେ ।
ବୋଇଲେ ବଶିଷ୍ଠବଂଶ ନୁହେଁ ଯେବେ ଶ୍ରେଷ୍ଠ
ବିଷ୍ଣୁ କେମନ୍ତେ କହନ୍ତେ ମୁନିପାଦ ପୃଷ୍ଠ ।
ଏତେକ ବୋଲି ମୁନିଙ୍କି କଲେ ସର୍ବେ ସ୍ତୁତି
ପାଦପଦ୍ମେ ନମି ପୁଚ୍ଛାକଲେ ନବଜ୍ୟୋତି ।
ଶ୍ରୀନାରାୟଣ ବୋଇଲେ ଶୁଣହେ ନାରଦ
ବ୍ୟାସଙ୍କର ବଂଶ ତୁମ୍ଭେ କି ନିମନ୍ତେ ନିନ୍ଦ ।
ରଜରେ ତ କେଉଁ କାର୍ଯ୍ୟ ବୀର୍ଯ୍ୟ ଅଟେ ବ୍ରହ୍ମ
ବ୍ରହ୍ମ ପ୍ରକାଶ ହୁଅନ୍ତେ ଯାବଜ୍ଜୀବ ଜନ୍ମ ।
ବର୍ଣ୍ଣଭେଦ ଘେନି ସର୍ବେ ଉଚ୍ଚନୀଚ ହୁନ୍ତି
ବ୍ରାହ୍ମଣ ବୀର୍ଯ୍ୟରୁ ସିନା ବ୍ରାହ୍ମଣେ ଜନ୍ମନ୍ତି ।
ବିଧିରେ ତ ସ୍ୱୟଂ ବ୍ରହ୍ମା ପ୍ରଭୁ ଭଗବାନ
ଭଗବାନଙ୍କ ନାଭିରୁ ବ୍ରହ୍ମା ହେଲେ ଜନ୍ମ ।
ବ୍ରହ୍ମାଙ୍କ ବୀର୍ଯ୍ୟୁ ବଶିଷ୍ଠ ଋଷି ଛନ୍ତି ଜନ୍ମି
ବଶିଷ୍ଠଙ୍କର ପୁତ୍ର ତ ଶକ୍ତି ମହାମୁନି ।
ଶକ୍ତି ଋଷିଙ୍କର ପୁତ୍ର ପରାଶର ଯତି
ଶୁଣହେ ନାରଦ କହନ୍ତି ଯେ ଜଗଜ୍ୟୋତି ।
ପରାଶର ବୀର୍ଯ୍ୟରୁ ତ ଜନ୍ମ ଦେବବ୍ୟାସ
ସେ ବ୍ୟାସ ଅଟନ୍ତି ଜାଣ ନାରାୟଣ ଅଂଶ ।
ବ୍ୟାସଋଷିଙ୍କର ପୁତ୍ର ଶ୍ରୀବସ୍ତ ଯେ ମୁନି
ତାଙ୍କ ପାଦ ହୃଦେ ବହେ ମୁହିଁ ଥାଅ ଚିହ୍ନି
ଏତେ ବୋଲି ହୃଦପଦ୍ମ ଦେଖାଇଲେ ହରି
ଶ୍ରୀବସ୍ତ ମୁନିଙ୍କ ପାଦ ଫୁଟି ଦିଶେ ବାରି ।
ଦେଖିଣ ତା ଋଷିମାନେ ଆଚମ୍ଭିତ ହେଲେ
ଶ୍ରୀବସ୍ତ ମହାମୁନିଙ୍କର ବହୁ ସ୍ତୁତି କଲେ ।
ବିଷ୍ଣୁ ଅବତାର ପ୍ରାୟ ଦିଶନ୍ତି ଏ ମୁନି
ପ୍ରଭୁଙ୍କୁ ଆଣିଅଛନ୍ତି ସଙ୍ଗେ ଦେଖ ଘେନି ।
କେତେ ଭାଗ୍ୟ ଏ ଶ୍ରୀବସ୍ତ ମୁନି ଅର୍ଜିଥିଲେ
ଗୋବିନ୍ଦଙ୍କ ହୃଦେ ନେଇ ପାଦଚିହ୍ନ ଦେଲେ ।
ନିଶ୍ଚୟ ବିଶିଷ୍ଠବଂଶ ଅଟନ୍ତି ବ୍ରାହ୍ମଣ
ନୋହିଲେ କାହିଁକି ବିଜେକଲେ ଜନାର୍ଦ୍ଦନ ।
ଏତେ ବୋଲି ଋଷିମାନେ ଶ୍ରୀବସ୍ତଙ୍କୁ ନେଇ
ବସାଇଲେ ସଭାମଧ୍ୟେ ଆସନ ଯେ ଦେଇ ।
ସଭାରେ ବସାଇ ଶ୍ରୀବସ୍ତଙ୍କୁ ଋଷିବୃନ୍ଦ
ଶ୍ରୀଗୋବିନ୍ଦ ଆଜ୍ଞାଦେଲେ ଶୁଣ ହେ ନାରଦ ।
ବଶିଷ୍ଠ ବଂଶକୁ କିମ୍ପାକଲ ତୁମ୍ଭେ ଟାହି
ରଜରେ କି କାର୍ଯ୍ୟ ବୀର୍ଯ୍ୟକୁ ଯେ ବ୍ରହ୍ମ କହି ।

ବୀର୍ଯ୍ୟରୁ ଯେ ଗୁଣ ବୁଝ ରାଜପୁତ୍ର ରାଜା
ବୀର୍ଯ୍ୟରୁ ଜନ୍ମ ବୋଲନ୍ତି ଋଷି ବ୍ରହ୍ମଦ୍ୱିଜା ।
ବ୍ରହ୍ମବୀର୍ଯ୍ୟରୁ ବୋଲାନ୍ତି ବୁଧେ ତେଡ଼େ ବଡ଼
ବ୍ରାହ୍ମଣ ରୂପରେ ସିନା ଜାତ ଯୋଗାରୁଢ଼ ।
ଏଣୁ ବିପ୍ର ପାଦ ପୋଛି ସର୍ବେ ହୁନ୍ତି ବୋଲି
ଯେ ବୋଲି ହୁଅଇ ତାକୁ ଗଙ୍ଗାସ୍ନାନ ମିଳି ।

(ଶ୍ଳୋକ)

ପୃଥିବ୍ୟାଂଯାନି ତୀର୍ଥାନିତାନି ତୀର୍ଥାନି ସାଗର
ସାଗର ଯାନି ତୀର୍ଥାନି ବିପ୍ରପାଦସ୍ୟ ଦକ୍ଷିଣେ
ପୃଥିବୀରେ ଗଙ୍ଗାଗୟା ଛନ୍ତି ଯେତେ ତୀର୍ଥ
ତହିଁରୁ ଶତେ ଗୁଣରେ ସାଗର କୃତାର୍ଥ ।
ସାଗରରୁ ଶତେ ଗୁଣ ବିପ୍ରପାଦ ପାଣି
ପିଇଲେ ଯେ ପାଦ ଧୋଇ ତରିବେ ସେକ୍ଷଣି
ବ୍ରାହ୍ମଣର ପାଦ ଦେଖ ଅଛି ହୃଦେ ବହି
ଏଥକୁ ନ କର କ୍ଷୋଭ ନାରଦ ଗୋସାଇଁ ।
ବ୍ରାହ୍ମଣର ଆଶୀର୍ବାଦୁଁ ସଂସାରେ ମୁଁ ବିଷ୍ଣୁ
ବ୍ରାହ୍ମଣର ଆଶୀର୍ବାଦୁଁ ପୁରନ୍ଦର ବିଷ୍ଣୁ ।
ବ୍ରାହ୍ମଣର ଆଶୀର୍ବାଦୁଁ ଶିବ ବହ୍ମଯୋଗୀ
ବ୍ରାହ୍ମଣର ଆଶୀର୍ବାଦୁଁ କୁବେରଯେ ଭୋଗୀ ।
ବ୍ରାହ୍ମଣର ଆଶୀର୍ବାଦୁଁ ଚନ୍ଦ୍ରର ଯେ ଜ୍ୟୋତି
ବ୍ରାହ୍ମଣର ଆଶୀର୍ବାଦୁଁ ବିଜ୍ଞ ବୃହସ୍ପତି
ବ୍ରାହ୍ମଣର ଆଶୀର୍ବାଦୁଁ କନ୍ଧେ ବସେ ଲକ୍ଷ୍ମୀ
ପୋଷନ୍ତି ଜୀବ ଜନ୍ତୁ ଏ ଚରାଚର ଭୂମି ।
ବ୍ରହ୍ମଣର ଆଶୀର୍ବାଦୁଁ ଶୁଦ୍ଧ ଗଙ୍ଗାଜଳ
ତେଣୁ ତହିଁ ଜନମାନେ ବୁଡ଼ନ୍ତି ସକଳ ।
ବିପ୍ରର ଆଶୀର୍ବାଦୁ ଶ୍ରୀଶାରଳା ଠାକୁରାଣୀ
ସବୁରି ଜିହ୍ୱାରେ ବସି ପ୍ରକାଶନ୍ତି ବାଣୀ ।
ପଡ଼ଇ ଯେଉଁ ଗୃହରେ ବିପ୍ର ପାଦରଜ
ସେ ଲୋକର ଧନଶିରୀ ବଢ଼ଇ ଐଶ୍ୱର୍ଯ୍ୟ ।
ବଶିଷ୍ଠ ବଂଶକୁ ସାନ ନ ଘେନଟି ହୃଦେ
ଆମ୍ଭ ଆଜ୍ଞାପାଇ ଅର୍ଘ୍ୟ ଦିଅ ବ୍ୟାସ ପାଦେ ।
ଶୁଣି ଋଷିମାନେ ନମି ଶ୍ରୀବିଷ୍ଣୁ ଚରଣ
ବୋଇଲେ ନିଶ୍ଚୟ ସେହି ଅଟନ୍ତି ବ୍ରାହ୍ମଣ୍ୟ ।
ନୋହିଲେ ଶ୍ରୀବସ୍ତ ପାଦ ବହନ୍ତେ କି ହରି
ଯେ ଅଟେ ଅଜଣା ସେହି ବିପ୍ର ନିନ୍ଦାକରି ।
ଏତେ ବୋଲି ହେଲେ ଋଷି ଯେ ଆନନ୍ଦମୟ
ପ୍ରଜାପତିଙ୍କୁ ବୋଇଲେ ବ୍ୟାସେ ଅର୍ଘ୍ୟ ଦିଅ ।

ଶୁଣିଣ ଯେ ପ୍ରଜାପତି ବ୍ୟାସଋଷି ପାଦେ
ଅର୍ଘ୍ୟଗୋଟି ବନ୍ଦାଇଣ ବସିଲେ ଆନନ୍ଦେ ।
ତେତେବେଳେ ଯାଇକରି ନାରଦ ଗୋସାଇଁ
ଫେଡ଼ି କହିଲେ ହୃଦରୁ କଥା ସମଝାଇ ।
ବୋଇଲେକ ଶୁଣ ଆହୋ ସର୍ବ ଋଷିଗଣେ
ବ୍ୟାସ ଆମ୍ଭଙ୍କୁ ଅଟନ୍ତି ଲେଖା ନାତିପଣେ ।
ନାତିଲେଖାରେ କରିଲୁ ଆମ୍ଭେ ପରିହାସ
ତହିଁକି ଶ୍ରୀବତ୍ସମୁନି ବହି ମନେ ରୋଷ ।
କ୍ରୋଧହୋଇ ବଇକୁଣ୍ଠପୁରେ ଚଳିଗଲେ
ଶ୍ରୀମହାପ୍ରଭୁଙ୍କୁ ଯାଇ ଘେନିଣ ଅଇଲେ ।
ଶ୍ରୀବତ୍ସଙ୍କ ଲାଗି ସର୍ବେ ଦେଖିଲଇଁ ହରି
ଆମ୍ଭ ସାତଜନ୍ମ ପାପ ଗଲାଟି ବାହାରି ।
ଶୁଣି ଋଷିମାନେ ସର୍ବେ ଧନ୍ୟଧନ୍ୟ କଲେ
ମାନବ ମହାଋଷିଙ୍କି ବହୁ ପ୍ରଶଂସିଲେ ।
ବ୍ୟାସଙ୍କୁ ଅର୍ଘ୍ୟ ଦିଅନ୍ତେ ବିଷ୍ଣୁ ହେଲେ ତୋଷ
ତହିଁଉତ୍ତାରୁ ବୈକୁଣ୍ଠେ ଗଲେ ଜଗଦୀଶ ।
ଶୁଣ ଆହେ ମନ୍ତ୍ରୀବର କହନ୍ତି ନୃସିଂହ
ଏଣୁ ବିପ୍ରଙ୍କର ସେବା କରିବଟି ଆଗ ।
ଶୁଣିଣ ସୁଜାଣ ମନ୍ତ୍ରୀ ପ୍ରଭୁପାଦେ ପଡ଼ି
ଉଠି ପୁଣି ଉଭାହୋଇ ଶିରେ କରଯୋଡ଼ି ।
ବୋଇଲା ମୋର ଜୀବନ ଆଜ ଧନ୍ୟଧନ୍ୟ
ଶ୍ରୀମୁଖରୁ ଶୁଣିଲି ଶ୍ରୀବତ୍ସ ପାଦଚିହ୍ନ ।
ଏକଥାରେ ବ୍ରାହ୍ମଣଙ୍କୁ ଯେହୁ ନ ମାନିବ
ଯେହୁ ନ ମାନିବ ସେହୁ ନିଶ୍ଚେ ନାଶଯିବ ।
ଏତେକ ବୋଲିଣ ମନ୍ତ୍ରୀ ବିପ୍ରପାଦେ ଯାଇ
ପ୍ରଣାମକରି ଦକ୍ଷିଣ ମାନ ଦେଲେ ନେଇ ।
କୋଟି କୋଟି ସୁନିଆଁ ଯେ ଦାନ ଗଣିଦେଲା
ବିପ୍ରଙ୍କର ପାଦଧୋଇ ଜଳ ସେବାକଲା ।
ବୋଇଲା ଗୋସାଇଁମାନେ ସୁଖେ ରହ ଏବେ
ଯାବତ ବିପ୍ରଙ୍କୁ ଦୟାକଲେ ବାସୁଦେବେ ।
ବିଦ୍ୟା ବା ଅବିଦ୍ୟା ହେଉ ବ୍ରାହ୍ମଣଙ୍କୁ ପୂଜା
ଏରୂପେ ଆଜ୍ଞାଦେଲେକ ଶ୍ରୀନୃସିଂହରାଜା ।
ଆଜଠାରୁ ବ୍ରାହ୍ମଣଙ୍କୁ ନାହିଁ ଦଣ୍ଡମଣ୍ଡ
ଘାଟବାଟ ଛାଡ଼ିକଲେ ସପତ ବ୍ରହ୍ମାଣ୍ଡ ।
ବ୍ରାହ୍ମଣକୁଳ ଯାକକୁ ନାହିଁ ଦଣ୍ଡଶାସ୍ତି
ଭୂମିଗୃହ କର ଆଦି ହେଲା ସବୁ ନାସ୍ତି ।
ଏହା ନ ମାନି ଘେନିବ ଯେହୁ ବିପ୍ରକର
ନୃସିଂହ ଦଣ୍ଡ ଲାଗିବ ତାକୁ ଅଗୋଚର ।
ବୟାଶୀ ପୁରୁଷ ତାର ପଡ଼ିବେ ନରକେ
ଏହିରୂପେ ଲେଖା ବୁଲିଗଲା ରାଜ୍ୟଯାକେ ।
ଅଚିନ୍ତା ହୋଇ ପରମ ସୁଖେ ଏବେ ରହ
ଶ୍ରୀନୃସିଂହ ପ୍ରଭୁଙ୍କର ବିପ୍ରେ ହେଲା ସ୍ନେହ ।
ମନ୍ତ୍ରୀଙ୍କର ମୁଖୁ ଶୁଣି ବିପ୍ରେ ହେଲେ ତୋଷ
ଶ୍ରୀନୃସିଂହ ସ୍ତୁତିକରି ଗଲେ ଯେଝା ବାସ ।

❋ ❋ ❋

## କର୍ଣ୍ଣାଟେଶ୍ୱର ନୃସିଂହ ପାଦେ ଶରଣ ଓ ବ୍ରହ୍ମାଙ୍କର ରାଜନୀତି କଥନ

ଏଥିଉତ୍ତାରେ ସେ ପ୍ରଭୁ ନୃପତିଙ୍କୁ ଚାହିଁ
ଆମ୍ଭର ଯେ ହୋଇଥାଅ ବୋଲି ଶାଢ଼ୀ ଦେଇ
ଲକ୍ଷେକରାଜାଙ୍କ ଶିରେଦେଲେ ଲକ୍ଷେ ଶାଢ଼ୀ
କର୍ଣ୍ଣାଟେଶ୍ୱର ରାଜା ଯେ କହେ କରଯୋଡ଼ି ।
ବୋଇଲା ଭୋଦେବ ଶୁଣିବାକ ନରସିଂହ
ମୁରାସୁର ଲାଗି ଚାହିଁହେଲି ରାଜ୍ୟଭଙ୍ଗ ।
କହନ୍ତି ସେ ମୁରଦୈତ୍ୟ କଥା ଛାମୁରେଣ
ସୂର୍ଯ୍ୟବଂଶର ରାଜା ଯେ ଅଟଇ ମୁଁ ଜାଣ ।
ବାଳୁତକାଳୁ ଈଶ୍ୱର ପାଦେ ସେବାକଲି
ଷାଠିଏଗଣ୍ଡା ଯୁଗକୁ ଆୟୁଷ ମାଗିଲି ।
ତିରିଶଗଣ୍ଡା ଯାଏ ମୁଁ କରିଥିଲି ଭୋଗ
ଏଥିଉତ୍ତାରେ ସେ ଦୈତ୍ୟ କଲା ରାଜ୍ୟଭୋଗ ।
ସୂର୍ଯ୍ୟବଂଶେ ଜନ୍ମିପାଇଲି ମୁଁ କେତେ ଦୁଃଖ
ଛାର ଅସୁର ହୋଇଣ ନେଲା ସର୍ବ ସୁଖ ।
ବିଶାଶଏ ଯୋଜନ ସେ ରାଜ୍ୟେ ଗଲା ଘେନି
ଡରେ ବଳେ ଶାଢ଼ୀ ବାନ୍ଧିଦେଲେ ପଦ୍ମଯୋନି ।
ଅସୁର ଛାର ହୋଇଣ ନେଲା ରାଜ୍ୟଭୂମି
ଶରଣ ପଶିଲି ମୋତେ ରଖ ଅନ୍ତର୍ଯ୍ୟାମୀ ।
ନୃସିଂହ ସେବାକଲି ମୋ ଭୟ ଏବେ ଯିବ
କିରୂପେ ରହିବି ମୁଁ ଶ୍ରୀମୁଖେ ଆଜ୍ଞା ହେବ ।
ଶ୍ରୀନୃସିଂହ ବୋଇଲେ ଯେ ତୁମ୍ଭେ ସୂର୍ଯ୍ୟବଂଶୀ
ଆମ୍ଭର ପ୍ରତ୍ୟକ୍ଷେ ପିତାମହ ହେଲେ ଆସି ।
ନିଶ୍ଚିନ୍ତେ ଆମ୍ଭ ପାରୁଶେ ଥାଅ ଏବେ ରହି
କିଛିଦିନ ପରେ ମୁରକୁ ମୁଁ ମାରିବଇଁ ।
ସେହି ମୁରାସୁର ପାଇଁ ଅଛୁ ଆମ୍ଭେ ଜନ୍ମି
ତାହାଙ୍କୁ ମାରି ତୁମ୍ଭଙ୍କୁ ଦେବା ରାଜଭୂମି ।

ଏ ମୋହର ସତ୍ୟ ସତ୍ୟ ତିନିବାର ସତ୍ୟ
ମୁର ମାରି ରାଜ୍ୟ ଦେବି ତୁମ୍ଭଙ୍କୁ ନିୟତ ।
ଶୁଣି ରହିଲା କର୍ଣ୍ଣାଟେଶ୍ୱର ବଦରିକା
ବସିଲେ ନୃସିଂହପାଦେ ଛାଡ଼ି ହୃଦୁ ଶଙ୍କା ।
ଏଥିଉତ୍ତାରେ ସେ କୃଷ୍ଣବଲ୍ଲଭ ଯେ ରାଜା
ବ୍ରହ୍ମାଙ୍କ ଚରଣତଳେ କଲେ ଦିବ୍ୟ ପୂଜା ।
ଧାତାଙ୍କୁ ବୋଇଲେ ମୋର କଥା ଶୁଣଆଗ
କହିବାକ ରାଜନୀତି ଶୁଣନ୍ତୁ ନୃସିଂହ ।
ବ୍ରହ୍ମା ବୋଇଲେ କହିବି କିସ ତାଙ୍କୁ ମୁହିଁ
ପ୍ରତ୍ୟକ୍ଷେ ବିଷ୍ଣୁ ଅଟନ୍ତି ସେହି ଭାବଗ୍ରାହୀ ।
ଅଟନ୍ତି ସବୁରି ବୁଦ୍ଧି ଦାତା ଜଗଜ୍ଜ୍ୟୋତି
ସେ ପ୍ରଭୁଙ୍କ ଆଗେ କି କହିବି ରାଜନୀତି ।
ଏଠାକୁ ଏବେ ଯେତେକ ରାଜା ଛନ୍ତି ଆସି
କହୁଅଛୁ ରାଜନୀତି ଶୁଣ ସର୍ବେ ବସି ।
ଏମନ୍ତ ବୋଲିଣ ବ୍ରହ୍ମା ନୃସିଂହ ଛାମୁରେ
କହନ୍ତି ସେ ରାଜନୀତି ଲୌକିକ ବେଭାରେ ।
ବୋଲନ୍ତି ଯେ ଆହେ ନୃପ ଶୁଣ ରାଜମାର୍ଗ
ଦେବାର୍ଚ୍ଚନ କରି ବିପ୍ରେ ପୂଜିବ ଯେ ଆଗ ।
ଶୁଣିଣ ରାଜ୍ୟ ଗୁହାରିମାନ ଯଥାକାଳେ
ଦେବଦର୍ଶନ କରିବ ଯାଇଁ ସନ୍ଧ୍ୟାବେଳେ ।
ପ୍ରଜାଙ୍କୁ ପାଳିବ ନିଜ ପୁତ୍ର ପ୍ରାୟ ପୁଣ
ମଲେଣି ଅଧର୍ମକରି କେତେ ନୃପଗଣ ।
ପ୍ରଜାଙ୍କୁ ପାଳିଲେ ହୁଏ ସଂସାରେଟି ସୁଖୀ
ପ୍ରଜାଙ୍କୁ ପାଳିଲେ ନୁହେଁ ରଜାଙ୍କର ଦୁଃଖୀ ।
ପ୍ରଜାଙ୍କୁ ପାଳିଲେ ଉପୁଜର ନାନା କ୍ଷେତ
କୃଷି ହୋଇଲେଟି ଲୋକେ ହୁଅନ୍ତି ଶିରୀମନ୍ତ ।
ଶ୍ରୀମନ୍ତ ଥିଲା ଲୋକର ନ ଥାଏଟି କଷ୍ଟ
ଲୋକେ କଷ୍ଟୀ ହୋଇଲେଟି ରାଜାହୁଏ ଭ୍ରଷ୍ଟ ।
ଯେ ରାଜା ପ୍ରଜାକୁଳକୁ ନ ପାଳଇ ଜାଣ
ଧନ ଯେ ସନ୍ତାନ ହାନି ହୁଏ ତାର ପୁଣ ।
ଏରୂପେ ପ୍ରଜାଙ୍କୁ ଭୂମି ଦେବ ଜାଣ ବାଣ୍ଟି
କରିବ ଦ୍ୱାଦଶ ହାତ ମାପି ନଳକାଠି ।
ଦୀର୍ଘ ପଞ୍ଚବିଂଶ ପ୍ରତି କରିବ ଯେ ବିଂଶ
ଏତେକ ବାଟୀଏ ହୋଏ ଭଲେ ବାଟୀଚାଷ ।
ମାପର ପ୍ରମାଣେ ପଞ୍ଚବିଂଶ ନଟବାଟୀ
ଏଥିର ଘେନିବ ସଞ୍ଜ୍ଞା ଯେ ପାଞ୍ଚ ପଉଟୀ ।
ଚାରି ପଉଟି ଅପଣା ଭଣ୍ଡାରକୁ ନେବ
ପଉଟି ଏ ମଞ୍ଜି ସେହି ଗ୍ରାମେ ରହିଥିବ ।

ଯେବଣ ଚଷା ଚଷିବ ଜାଣ ସେହୁ ଭୂମି
ବିହନ ଦେବ ତାହାକୁ ହୋଇଣ ନିଷ୍କାମୀ ।
ପ୍ରଜାର ଆୟଟି କୃଷି ଦେବ ସରିଭାଗ
ତେବେ ତାକୁ ଅଧର୍ମ ନ ଲାଗେ ମଧ୍ୟସ୍ୱର୍ଗ ।
ସୁପଣ୍ଡିତଙ୍କ ମୁଖରୁ ଶୁଣିଣ ପୁରାଣ
ପୂର୍ଣ୍ଣକରି ଦେବ ପଣା ଗ୍ରୀଷମ କାଳେଣ ।
ନିତି ଗୁହାରି ଶୁଣିଣ ନିତି ସଭାକରି
ଦେବ ଅନ୍ନଦାନ ବିପ୍ର ଅତିଥିଙ୍କି ବରି ।
ଚାର ପେଶିଣ ଖବରମାନ ଶୁଣୁଥିବ
ମଢ଼ିଫୁଲି ଯୋଗାଡ଼ ସେ ବିଶ୍ୱବାସୀଙ୍କୁ ଦେବ ।
ଡଗରଙ୍କ ମୁଖୁଁ ଶୁଣୁଥିବ ରାଜ୍ୟକଥା
ଅନ୍ଧାରିବିଜେ କରିଣ ଶୁଣିବ ବ୍ୟବସ୍ଥା ।
ନାଗଲୋକ ଦୋଷକଲେ ତା କ୍ଷମା କରିବ
ନିଆଶ୍ରିଲୋକଙ୍କୁ ସଦାବର୍ତ୍ତ ଦାନ ଦେବ ।
ସରିସା ଲୋକର ବଳ ଭାଙ୍ଗିବ ଯେ ବୁଝି
ବ୍ରାହ୍ମଣ ଦୋଷକଲେ ଯେ ଦେବତାଙ୍କୁ ଗଞ୍ଜି ।
ପରଦ୍ୱାରା ଲୋକେ ଦଣ୍ଡଦେଇ ଦୋଷ ଜାଣି
ସେବାକଲେ ଲୋକେ ଦେବ ବର୍ତ୍ତନ ଯେ ଗଣି ।
ଗଜ ଅଶ୍ୱଙ୍କ ଚରଚା କରିବ ଯେ ନିତ୍ୟ
ସମଦରଶୀ ହୋଇଣ ଦେବ ସଦାବର୍ତ୍ତ ।
ଗ୍ରୀଷମକାଳେ ଜାଣିଣ ଦେବ ପାଣି ପଣା
ଅନୁବ୍ରତେ ଅନ୍ନଦାନ ଦେବ ଅକଳନା ।
ପାକାସ୍ୱରଶର ପରେ କରିବ ଯେ ଗତି
ଯୋଗୀନ୍ଦ୍ର ପୁରୁଷଙ୍କ ଏ ଅଟେ ଭାବମତି ।
ମାସକେ ଦିନକେ ଯିବ ବରଷକେ ବାର
ଏରୂପେ ଯେ କଲେ ରତି ଆୟୁ ହୁଏ ଚିର ।
କରିବ ବିଶ୍ୱାସୀ ବୃଦ୍ଧଲୋକେ ଦ୍ୱାରପାଳ
ଦେବାର୍ଚ୍ଚନା ସାରି ପୁଣି ଯିବ ଦେବଆଳ ।
ଦେବ ଦର୍ଶନ କରିଣ ଆସି ଗୃହେ ମିଳି
ରୋଗ ଖଣ୍ଡନ ହୋଏ ଏକଥା ଥିଲେ ପାଳି ।
ଧର୍ମରେ ଥିଲେ ବର୍ଦ୍ଧୁତେ ରାଜା ଦିନ ନିଏ
ଆବର ରାଜା ପ୍ରତିଜ୍ଞା ଶୁଣିମା ଥୋକାଏ ।
ଯାହାକୁ ସେ ଦେଇଥିବ ଯେଉଁ ଅଧିକାର
ଜୀଇଁଥିବାଯାକେ ତାକୁ କରିବ ଆଦର ।
ତାହାଅନ୍ତେ ତା ପୁତ୍ରକୁ ଦେବ ସେହି ପୁଣ
ଶ୍ରୀନୃସିଂହ ଛାମୁରେ ଏକଥା ସର୍ବେ ଶୁଣ ।
ରଣଭୂମିକି ଯେବେଟି ଯିବ ଯୁଦ୍ଧକରି
ଶୁଣ ଆହେ ସେହୁ କଥା କହିବା ବିଚାରି ।

ସପ୍ତ ବରଷର ଅଶ୍ୱ ହୋଇଥିବ ବଢ଼ି
ପଚାଶ ବର୍ଷର କ୍ଷତ୍ରୀ ଯିବ ତହିଁ ଚଢ଼ି ।
ପଦାତି ତିରିଶ ବରଷର ହୋଇଥିବ
ପଚାଷ ବର୍ଷ ମାହୁନ୍ତ ହାତୀ ଚଳିଯିବ ।
ଏମନ୍ତ ଲୋକଙ୍କୁ ଜାଣି ରଣେ ପେଶିଥିଲେ
ରାଜ୍ୟର ପ୍ରାଣୀ ରଖିଣ ଆସେ ସେହୁ ଭଲେ ।
କଟୁଆଳକୁ ଦେଖାଇଥିବ ନିତ୍ୟ ତେଜ
ତେବେ ରାଜା ଆଜ୍ଞାବଳେ ବଢ଼େ ଅଇଶ୍ୱର୍ଯ୍ୟ ।
ଯୁବତୀମାନଙ୍କୁ ଜାଣି ନ ଯିବେ ପରତେ
ମହା ଅବିଶ୍ୱାସୀ ସେହୁ ଅଟନ୍ତି ଜଗତେ ।
ଦକ୍ଷିଣକୁ ମୁଖକରି ନ କରିବ ସ୍ନାନ
ପଦାର୍ଥରେ ଯେ ଆସକ୍ତି ନକରିବ ମନ ।
ବଳ ସ୍ଖଳିତ ଲୋକଟି ନ ଚାଲିବ ସଙ୍ଗେ
ଅନ୍ଧାରି ବିଜେ କରିଣ ଚାଲିବ ଏକାଙ୍ଗେ ।
ବୁଝିବ ସେ ଧୀରଗତି ହୋଇ ରାଜ୍ୟନ୍ୟାୟେ
ଦେବତା ବିପ୍ରଭକତି ହେବ ସର୍ବଦାଏ ।
ଗୋଟାପରିବା ଜାଣ ନ ଯିବ ଅନ୍ତଃପୁରେ
ବୟ ସାଧିକ ଲୋକ ଯେ ଜଗିଥିବ ଦ୍ୱାରେ ।
ବିଦେଶୀ ଦୂତକୁ ରାଜ୍ୟେ ନ ଦେବ ପୁରାଇ
ସୂର୍ଯ୍ୟକାଳରେ ଭୁଞ୍ଜିବ ବସି ପାଦ ଧୋଇ ।
ମୈଥୁନସ୍ଥାନେ ଆଉ ନ ଥିବ କେହି ଜନ
ନ ଲାଗେ ନାଗରୀ ସୁଖ ନୋହିଲେ ନିର୍ଜନ ।
ଋତୁ ସମୟକୁ ଜଗି କରିବ ଶୃଙ୍ଗାର
ହିମେ ବିଶ୍ରମିବ ଦକ୍ଷିଣକୁ ଖୋଲାଘର ।
ମହର୍ଗକାଳେ ଦରିଦ୍ର ଲୋକ ଡାକିଆଣି
ସନ୍ତୋଷରେ ଭୁଞ୍ଜାଇବ ନେଇ ଅନ୍ନପାଣି ।
ବରଷାକାଳେ ବାନ୍ଧିବ ଶଙ୍ଖ ମହୀ ଜଳ
ଗୋଦହନ କରିବ ଯେ ନେଇ ଶିବଆଳ ।
ନିଯୋଗୀ କରିଣ ଉତ୍ତମ ଯେ ଶେଠ ଯାକୁ
କାର୍ଯ୍ୟରେ ପଣ ଦେଇଣ ରଖିବ ତାହାକୁ ।
ଦୁର୍ଭିକ୍ଷକାଳେ କୃଷିରୁ ନ ଘେନିବ ଭାଗ
ପରଜା ସମ୍ଭାଳି ନିଶ୍ଚେ ବସିବଟି ସ୍ୱର୍ଗ ।
ପଥୁକୀ ନିମନ୍ତେ ବାଟେ ରୋପିବ ଯେ ବୃକ୍ଷ
ଏକଥାରେ ଧର୍ମ ତାକୁ ବହୁ ସାହାପକ୍ଷ ।
କୋଷରୁ ଅଧେ ବାଣ୍ଟିବ ସ୍ଥାପି ବୃକ୍ଷ ନେଇ
ବୋଝ ବୋହିବାର ଲୋକେ ରଖିବ ଓହ୍ଲାଇ ।
ଗୋରସ ଆମିଷ ଏକ ସଙ୍ଗେ ନ ଭୁଞ୍ଜିବ
ହରିବାସର ଦିନେ ଯେ ମିଥ୍ୟା ନ କହିବ ।

ବ୍ରତ ଆଚାରି ଲୋକଙ୍କୁ ନ କରିବ ନିନ୍ଦା
ନିନ୍ଦାକଲେ ଉପୁଜଇ ଦେହେ ବ୍ୟାଧି ମନ୍ଦ ।
ରମଣ କରିବା ପାଇଁ ନ ଯିବ ଦିବସେ
ଗର୍ଭେ ପଡ଼ିଲେ ବୀର୍ଯ୍ୟ ଜନ୍ମେ ଦୈତ୍ୟଅଂଶେ
ଦୁହିତା ଜନମ ହେଲେ ହୁଅଇ ଦୋଚାରୀ
ପୁତ୍ର ଜନମିଲେ ଭୋଗ କରେ ନୀଚନାରୀ ।
ଦିବସରେ ରମଣଟି ଅଟେ ଏଡ଼େ ଦୋଷ
ସୁରତିକଲା ଲୋକ ଯେ ହୁଏ ଅଳ୍ପାୟୁଷ ।
ଆବର ଯେ ରାଜନୀତି ଶୁଣ ସାବଧାନେ
ଦେହକୁ ଅକୀର୍ତ୍ତି କେବେ ନ ଆଣିବ ଦିନେ ।
ସୁଚିତ୍ତେ କରିବ ପିତୃ ଶ୍ରାଦ୍ଧ ପତ୍ନୀ ତୁଳେ
ଗୁରୁ ଅପରାଧୀ ନୋହିବଟି କେତେବେଳେ ।
ବର୍ଷକଯାକ ଅର୍ଜିବ ଜାଣ ଯେତେ ଦ୍ରବ୍ୟ
ଦଶଭାଗ କରି ତାହା ମନରେ ବାଣ୍ଟିବ ।
ତହିଁରୁ ଆଠଭାଗ ଯେ ଦେବ କୁଟୁମ୍ବଙ୍କୁ
ବୋଲିବ ସୁଖେ ବସିଣ ଭୁଞ୍ଜ ଏ ଦ୍ରବ୍ୟକୁ ।
ଆବର କରିବ ଭାଗକରେ ଧର୍ମକାର୍ଯ୍ୟ
ତହିଁରେ ପୁଣ୍ୟରେଖା ବଢ଼େ ଅଇଶ୍ୱର୍ଯ୍ୟ ।
ଆବର ଭାଗେ ଗୁରୁଙ୍କୁ ବାଣ୍ଟ କରି ଦେବ
ଆଠଗୋଟି ଭାଗଦେଇ କୁଟୁମ୍ବ ପୋଷିବ ।
ସଂସାରୀ ଲୋକ ଏରୂପେ କଲେ ଧର୍ମ ପାଇ
କହିଲେ ରାଜାମାନଙ୍କ ଧର୍ମ ନ ସରଇ ।
ରାଜାଙ୍କର ପୁଣ୍ୟଫଳୁ ଲୋକେ ଅଛି ଧର୍ମ
ନୋହିଲେ ଲୋପହୋଇଣ ବୁଡ଼ିଯାନ୍ତା କର୍ମ ।
ଆଉଲୋକ ଛାର ହୋଏ ରାଜାକୁ କି ସରି
ଦିନକୁ ଯେ ଲକ୍ଷେ ଟଙ୍କା ପାରେ ଦାନକରି ।
ରାଜାଙ୍କ ଲାଗି ସଂସାରେ ଧର୍ମ ରହିଅଛି
ତେଣୁ ବୋଲନ୍ତି ଅଭୟଦାତା ରାଜବସି ।
ଆବରହିଁ ରାଜନୀତି କହୁଥାଇ ଶୁଣ
ନ କରିବ ମଦ୍ୟଦ୍ୟୁତ ବେଶ୍ୟା ସଙ୍ଗତେଣ ।
ଏମାନଟି ଆଚରିଲେ ଅପୂଜ୍ୟ ସେ ରାଜା
କରିବ ସୁବେଦୀ ବ୍ରାହ୍ମଣଙ୍କ ପାଦପୂଜା ।
କୋଟିଲିଙ୍ଗ ପୂଜିଲେଟି ଯେତେ ହୁଏ ପୁଣ୍ୟ
ଏକା ବିପ୍ରଙ୍କୁ ସେବିଲେ ଲଭେ ବ୍ରହ୍ମଜ୍ଞାନ ।
କୋଟି ଶାଳଗ୍ରାମ ପୂଜି ଯେ ଫଳ ଲଭନ୍ତି
ଏକା ବିପ୍ର ସେବିଲେଟି ତେତେ ଫଳ ପାନ୍ତି ।
ବିପ୍ରମାନେ ଯାହାଠାରେ ହୁଅନ୍ତି ସନ୍ତୋଷ
ତାହାର ଶିରୀ ସମ୍ପଦ ହୁଅଇ ଅଶେଷ ।

ବିପ୍ରଙ୍କର ଦ୍ରବ୍ୟ ଜାଣ ଯେହୁ ପାପୀ ହରେ
ମଲେ ନିଶ୍ଚେଁ ଜାଣ ସେହୁପଡ଼େ ନରକରେ ।
ଯେବଣ ଜନ ସଂସାରେ ଜାଣ ରାଜା ହୋଇ
ବିପ୍ରଙ୍କୁ ନଜରେ ମୂଢ଼ପଣେ ନ ଆଣଇ ।
ସେ ବିପ୍ରଟି ଯେତେ ଭ୍ରମି ଅର୍ଜିଥାଇ ଧନ
ତାଙ୍କୁ ତଣ୍ଡାଇବ ଯେହୁ ନ କରିଣ ଦାନ ।
ସେ ବ୍ରାହ୍ମଣ ତଣ୍ଡଦେଇ କାନ୍ଦଇ ବିକଳେ
ଚକ୍ଷୁରୁ ଲୋତକ ତାର ପଡ଼େ ଯେତେବେଳେ ।
ସେ ଲୁହ ପଡ଼ନ୍ତେ ତା ନ ପାରେ ପୃଥ୍ୱୀ ବହି
ଏଣୁ ସେ ବିପ୍ରକଣ୍ଟକ ଅନ୍ତେ ନାଶଯାଇ ।
ନିଜଦତ୍ତ ପରଦତ୍ତ ପିତାଦତ୍ତ ବୃତ୍ତି
ଏହା ଯେହୁ ଜାଣୁ ଜାଣୁ ସଂସାରେ ହରନ୍ତି ।
ସେ ପ୍ରାଣୀମାନେ ଷାଠିଏ ସହସ୍ର ବରଷ
ବିଷ୍ଠାରେ କୃମି ହୋଇଣ ଭୁଞ୍ଜେ ନର୍କବାସ ।
ତଥାପି ବିପ୍ର ଅର୍ଜିବ ଯେବେ ଅପରାଧ
କେତେବେଳେ ଦୋଷ ତାର ନ ଘେନିବ ହୃଦ ।
ବିପ୍ର କ୍ରୋଧକଲେ ନାଶ ଅବଶ୍ୟଟି ଯାଇ
ବିପ୍ରକୁ ଯେ ମୂଢ଼ ମୂର୍ଖ ପାପୀ ନ ମାନଇ ।
ନୃସିଂହ ସଭାରେ ବସି ଯେତେ ଲୋକ ଅଛ
କହିଲୁ କୃଷ୍ଣବଲ୍ଲଭ ଲାଗି ଏତେ ଲକ୍ଷ୍ୟ ।
ଶୁଣି କୃତକୃତ୍ୟ ହେଲେ ଲକ୍ଷେକ ନୃପତି
ବୋଇଲେ ଶୁଣିଲୁ ଭଲକଥା ରାଜନୀତି ।
ଶ୍ରୀନୃସିଂହ ପ୍ରଭୁ ଘେନି ବ୍ରହ୍ମାଙ୍କ ମୁଖରୁ
ଛାଡ଼ିଲୁ ସର୍ବେ ବିପ୍ରଙ୍କୁ କର ଆଜଠାରୁ ।
ବାନ୍ଧିଘାଟ ଦାଣ୍ଡ ତଣ୍ଡକାର କର ଦାନ
ସର୍ବେ କଲୁ ନାସ୍ତିଦେଇ ଏ ସନ୍ତକମାନ ।
ଏକଥା ନ ମାନି ଯେହୁ ବିପ୍ରଙ୍କୁ ତଣ୍ଡିବ
ତାହାର ସପ୍ତପୁରୁଷ ନର୍କରେ ପଡ଼ିବ ।
ଏତେ ବୋଲିଣ ରାଜାଏ ନୃସିଂହ ଛାମୁରେ
ଦଣ୍ଡ ପ୍ରଣାମ କରିଣ ଗଲେ ଯେଝା ପୁରେ ।
ବ୍ରହ୍ମା ଚଳିଗଲେ ମଧ୍ୟ ମେଲାଣି ଯେ ହୋଇ
ଋଷିଏ ଗଲେ ନୃସିଂହ ପ୍ରଭୁ ଆଜ୍ଞା ପାଇ ।
ଆବର ଯେତେ ଦେବତା ତହିଁ ଆସିଥିଲେ
ଈଶ୍ୱରଙ୍କୁ ଆଦିକରି ସର୍ବେ ଚଳିଗଲେ ।
ନୃସିଂହ ଭିତରପୁରେ ବିଜେକଲେ ଯାଇ
ସଙ୍ଗତେ ଅଛନ୍ତି ଶେଷଦେବ ସାନଭାଇ ।
ପୁତ୍ରଙ୍କୁ ଦେଖିଣ ମାଏ ହୋଇଲେ ଆନନ୍ଦ
ପହଣ୍ଡ ମଣାଇ ନିଅନ୍ତି ଯେ ନାରୀବୃନ୍ଦ ।

ମଣୋହିରେ ବିଜେକଲେ ଗୃହେ ବେନିଭାଇ
ରତନ ପୀଢ଼ା ଉପରେ ବସିଲେକ ଯାଇ ।
ନାନାବର୍ଣ୍ଣେ ପରଷନ୍ତି ମାତା ଷଡ଼ରସ
ଶାକର ନବାତ ଝିଲି ନିରୁତା ଗୋରସ ।
ଆରିଶା ବଡ଼ା ଲଡୁକ ସର ଖଣ୍ଡପୁରି
ପାପୁଡ଼ି କର୍ପୂର ନାଡ଼ିରସ ହଂସକେଳି ।
ତ୍ରିପୁର ଛେନାକାନ୍ତି ଯେ ମନୋହର ପୁଣି
କୋରା ପାରିଜାତବ ଯେ ପରଷନ୍ତି ଆଣି ।
ସଘାର ଖାଇ ନଡ଼ିଆପାଚି ଅଛି ପଡ଼ି
କର୍ପୂର ଯେ ସାଚିପଣା ଦେଲେ ମାଏ ବାଢ଼ି ।
ଏବିଧି ଭୋଜନସାରି ଆଗମନ କଲେ
ତହିଁ ଉତ୍ତାରୁ ବଲ୍ଲଭ ଭୁଞ୍ଜିଣ ବସିଲେ ।
ଅରୁଆ ଶାଳି ଅନ୍ନ ଯେ ପରଷନ୍ତି ରାଣୀ
ଭୁଞ୍ଜିଣ ହେଲେ ସନ୍ତୋଷ ରାଜା ପିଇ ପାଣି ।
ତହିଁ ଉତ୍ତାରୁ ନୃସିଂହ ମାଏ ଗ୍ରାସ କଲେ
ଚୌଷଠି ସହସ୍ର ଆଦି କନ୍ୟାଏ ଭୁଞ୍ଜିଲେ ।
କର୍ଣ୍ଣାଟେଶ୍ୱର ଗରୁଡ଼ ଆଦି ଥିଲେ ଯେତେ
ସମସ୍ତେ ଭୋଜନ ଶେଷକଲେ ଯେଝା ମତେ ।
ଏମାନେ ଯେ ଭୁଞ୍ଜିବାରୁ ଉଚ୍ଛିଷ୍ଟ ଯେ ଥିଲା
ତାହା ପୀତାମ୍ବର ଦାସ ମାଗିଣ ଭୁଞ୍ଜିଲା ।
ଭୁଞ୍ଜିବା ସକାଶୁ ହେଲା ଜ୍ଞାନରେ ଯେ ମତ୍ତ
ମତ୍ତ ହେବାରୁ କଲା ଏ ପୁରାଣକୁ ଗୀତ ।
ଗୀତେକରି ପଦ ଅର୍ଥ ନ ପାରଇ କରି
ବାଳୁତ ପ୍ରାୟ ହୋଇ ସେ ବୋଲେ ହରିହରି ।
ଏଣୁ ଜ୍ଞାନୀଜନେ ମୋର ନ ଧର ଯେ ଦୋଷ
ଶ୍ରୀନୃସିଂହ ଶରଣ ମୁଁ ପୀତାମ୍ବର ଦାଶ ।
ଶ୍ରୀମହାଲକ୍ଷ୍ମୀ ନୃସିଂହ ବିଭାଯୋଗ ବାଣୀ
ତାହା ପୁରାଣ କରିବେ ପ୍ରଭୁ ଚକ୍ରପାଣି ।
କଳିଯୁଗରେ ଜନମି ଅଛି ଦେହ ଧରି
ସତ୍ୟଯୁଗ ଲୀଳା ଯାଉଅଛି ପଦକରି ।
ଶ୍ରୀଆଦ୍ୟ ଅବତାର ଶ୍ରୀମହାଲକ୍ଷ୍ମୀ ଜନ୍ମ
ପ୍ରଭୁ ଲେଖାଇବାରୁ ମୁଁ ଲେଖେ ବିଭାକର୍ମ ।
କୀଟରୁ ବ୍ରହ୍ମ ପର୍ଯ୍ୟନ୍ତ ଛନ୍ତି ଯେତେ ପ୍ରାଣୀ
ସର୍ବେ ଦୟାକର ଲେଖୁଅଛି ବିଭାବାଣୀ ।
ଏଥକୁ ପଣ୍ଡିତଗଣ ନ ଘେନିବ ଦୋଷ
ଶ୍ରୀନୃସିଂହ ଶରଣ ମୁଁ ପୀତାମ୍ବର ଦାସ ।

❋ ❋ ❋

## ଲକ୍ଷ୍ମୀଙ୍କର ସ୍ୱୟମ୍ବର

ଏଥୁଅନନ୍ତରେ ନାରଦ ଯେ ମହାମୁନି
ବ୍ରହ୍ମାଙ୍କର ପାଦେ ନମି କରନ୍ତି ଦୟିନୀ ।
ବୋଲନ୍ତି କହ ଏବେ ଶ୍ରୀଲକ୍ଷ୍ମୀ ଲାଖବିନ୍ଧା
ମିଳିଲେ ବରୁଣପୁରେ ଯାଇ ସର୍ବଯୋଦ୍ଧା ।
ନୃସିଂହ କିପରି ବିଭା ହୋଇଲେ ଲକ୍ଷ୍ମୀଙ୍କି
କିରୂପେ ଲାଖବିନ୍ଧା ସେ ଗଲେ କ୍ଷୀରାବ୍ଧିକି ।
ଆଦ୍ୟେ ଭୃଗୁଋଷି କଲେ ଲକ୍ଷ୍ମୀକି ଯେ ଜାତ
ବରୁଣପୁରେ ଥୋଇଲେ ନେଇକରି ଗୁପ୍ତ ।
ପ୍ରଥମ ସାଗରେ ମୋତେ କହିଥିଲ ଏହା
ତୃତୀୟ ସାଗର ଖଣ୍ଡେ ଶୁଣିବି ଯେ ତାହା ।
ଏବେ ତ ସେ କଥା ଆସି ପଚାରୁଛି ମୁହିଁ
ମହାଲକ୍ଷ୍ମୀ ବିଭା ଶୁଣିବାକୁ ଶ୍ରଦ୍ଧା ବହି ।
ଆପଣ ମୋତେ କହିବ ଏବେ ପଦ୍ମଯୋନି
ଶୁଣିବି ନୃସିଂହ ପୁରାଣର ପୁଣ୍ୟ ଧ୍ୱନି ।
ନାରଦ ପୁଚ୍ଛନ୍ତେ କହନ୍ତି ଯେ ବେଦବର
ବୋଲନ୍ତି କହିବା ଋଷି ଶୁଣ ଗ୍ରନ୍ଥସାର ।
ଏ ଗ୍ରନ୍ଥ ଶୁଣିବେ ପୂର୍ଣ୍ଣକରି ଯେବେ ପ୍ରାଣୀ
କୋଟି ଗଙ୍ଗାସ୍ନାନ ଫଳ ଲଭିବେ ସେ ପୁଣି ।
ଶ୍ରୀମହାଲକ୍ଷ୍ମୀଙ୍କ ବିଭା କହିବା ହୋ ଶୁଣ
ଯାଇ ମିଳିଲେ ଷାଠିଏସସ୍ର ରାଜାଗଣ ।
ଯେବଣ ବାରିଧି ଜଳ ଅଟେ ଅଗୋଚର
ତହିଁ ଗୃହକରି ରହିଛନ୍ତି ରତ୍ନାକର ।
ସେ ପୁର ଅଷ୍ଟରତ୍ନରେ ହୋଇଛି ନିର୍ମାଣ
ଜଗତି ଅଟାଳି ମେଢ଼ ପାଚେରୀ ଯେ ପୁଣ ।
ବସିଛି ଷାଠିଏ ପଦ୍ମଯାଏ ଘର ସାହି
ଅଛନ୍ତି ନାନା ଜାତି ସେ ପୁରେ ସୁଖେ ରହି ।
ଆନନ୍ଦେ ବିହରନ୍ତି ସେ ପୁରେ ଭୋଗ ଭୁଞ୍ଜି
ତହିଁ ପୁଣି ମହାଲକ୍ଷ୍ମୀ ଅଛନ୍ତି ଉପୁଜି ।
ଜଗଜ୍ଜନମାତା ଭାରା ହରଣ ନିମନ୍ତେ
ଅଯୋନି ଯେ ଜନ୍ମି ତହିଁ ଅଛନ୍ତି ଗୁପତେ ।
ମହାପୁଣ୍ୟ ନଗର ସେ ଅଟଇ ବାରିଧି
ସେ ପୁରେ ଅପୂର୍ବ କିସ ଲୋଡ଼ିବେ ଉପାଧି ।
ଜଗତୀ ଅଟ୍ଟାଳି ମେଢ଼ ମଣ୍ଡପ ଦେଉଳ
ଦ୍ୱିତୀୟ ବୈକୁଣ୍ଠ ପ୍ରାୟ ଦିଶେ ପରିମଳ ।
ଶ୍ରୀମହାଲକ୍ଷ୍ମୀଙ୍କ ଯୋଗୁ ସର୍ବଜନେ ସୁଖୀ
ଭୋକିଲା ନାହାନ୍ତି ଜଣେ କେହି ଦୀନଦୁଃଖୀ ।

କଶ୍ୟପ ଋଷିର ପୁତ୍ର ବରୁଣ ଯେ ରାଜା
ନୀରବତୀ ନାମେ ତାଙ୍କ ଅଟନ୍ତି ଭାରିଯା ।
ସେ ମାତା କୋଳେ ଅଛନ୍ତି ଲକ୍ଷ୍ମୀ ଅବତରି
ଶୁଣନ୍ତି ନାରଦ କହନ୍ତି ଯେ ମୁଖଚାରି ।
ଈଳାନାମେ କନ୍ୟା ଲକ୍ଷ୍ମୀଙ୍କର ସାନଭଗ୍ନୀ
ପ୍ରତ୍ୟକ୍ଷେ ଦିଶେ ରୂପ କି ଜାଣି ମହାଲକ୍ଷ୍ମୀ ।
ଈଳା ପ୍ରାୟ କନ୍ୟା ନାହିଁ ବ୍ରହ୍ମାଣ୍ଡରେ ସତୀ
ଶେଷ ନିମନ୍ତେ ଖଞ୍ଜିଛି ତାକୁ ବେଦପତି ।
ମହାଲକ୍ଷ୍ମୀଙ୍କି ନୃସିଂହ ଜାଣ ବିଭାହେବେ
ଈଳାକନ୍ୟାକୁ ହୋଇବେ ବିଭା ଶେଷଦେବେ ।
ଏ ଅବତାର ଅନ୍ତେ ସେ ତ୍ରେତାଯୁଗ ଥାଇ
ଜନ୍ମିବେ ସେ ମହାଲକ୍ଷ୍ମୀ ସୀତା ନାମ ବହି ।
ଏହି ଶ୍ରୀନୃସିଂହ ଯାଇ ରଘୁନାଥ ହେବେ
ସୀତାଙ୍କୁ ବିଭାହୋଇଣ ରାବଣ ମାରିବେ ।
ଏହି ଈଳା ଠାକୁରାଣୀ ହେବେଟି ଉର୍ମିଳା
ଲକ୍ଷ୍ମଣଙ୍କୁ ବିଭାହେବେ ଏ ସୁନ୍ଦରୀ ଈଳା ।
ତ୍ରେତାଯୁଗ ଅନ୍ତେ ପୁଣି ଦ୍ୱାପର ଯେ ହେବ
ଜନ୍ମିବେ ଯେ ରଘୁନାଥ ହୋଇ କୃଷ୍ଣଦେବ ।
ଲକ୍ଷ୍ମଣ ଜନ୍ମ ହୋଇବେ ବଳଭଦ୍ର ରୂପେ
ଉର୍ମିଳା ଜନମ ହେବେ ରେବତୀ ସ୍ୱରୂପେ ।
ରେବତୀ ଦେବୀଙ୍କୁ ବିଭାହେବେ ନୀଳାମ୍ବର
ଜାନକୀ ହେବେ ରୁକ୍ମିଣୀ ଦେବୀ ଅବତାର ।
ରୁକ୍ମିଣୀ ଜାଣ କୃଷ୍ଣଚନ୍ଦ୍ରଙ୍କୁ ବିଭା ହେବେ
ଶୁଣ ହୋ ନାରଦଋଷି କହନ୍ତି ଦଇବେ ।
ପ୍ରଥମ ସାଗରେ ଶୁଣିଲ ତ ଲକ୍ଷ୍ମୀଜନ୍ମ
ଏବେ ଶୁଣିମା କମଳା ବିଭା ଶୁଭକର୍ମ ।
ପଞ୍ଚାଶକୋଟି ପୃଥିବୀ ପାଳିବାକୁ ମାତା
ଭୃଗୁ ଜନ୍ମକଲେ ସେହି ଅଯୋନି ସମ୍ଭୂତା ।
କୋଟି କୋଟି ବିଶ୍ୱକର୍ମା ନ ପାରେ ଯା ଗଢ଼ି
ଆପେ ସମ୍ଭୂତ ହୋଇଲେ ଆପଣେ ନିବାଢ଼ି ।
ନାମ ଧଇଲେ ଦାରିଦ୍ର୍ୟ ଦୋଷ କ୍ଷୟ ଯାଇ
ସବୁରି ଜନନୀ ସେହି ଅଟେ କମଳାଇ ।
କୋଟି କୋଟି ପୃଥ୍ୱୀହୋଏ ଯା ଉଦରୁ ଜାତ
ପ୍ରଳୟ ଉତ୍ପତ୍ତି ରଚନା ଯେ ବିଧିମତ ।
ପୃଥ୍ୱୀ ଆପ ତେଜବାୟୁ ଆକାଶ ପର୍ଯ୍ୟନ୍ତେ
ଯାହାର ଗର୍ଭରୁ ଜାତ ହୁଅନ୍ତି ପଞ୍ଚଭୂତେ ।
ସେ ମାତା ହୋଇଅଛନ୍ତି ବରୁଣର ଝିଅ
ସେବାରେ ଅଛନ୍ତି ଲକ୍ଷେ ନାରୀ ଅପ୍ରମେୟ ।

ତାହାଙ୍କ ସଙ୍ଗେ ଖେଳ ଖେଳନ୍ତି କମଳିନୀ
ଶୁଣ ହୋ ନାରଦ କହନ୍ତି ଯେ କୁଶପାଣି ।
ପଶା ଶକଟା ଶାରେଣୀ ଦ୍ୟୁତ ନ୍ୟାୟବଳ
ଖେଳନ୍ତି ଯେ ମହାଲକ୍ଷ୍ମୀ ହୋଇ କୁତୂହଳ ।
ନୃତ୍ୟ ଗୀତ ବିନୋଦନ ଆଉ ରସଭାବେ
ଖେଳନ୍ତି ପରିବାରୀଏ ଲକ୍ଷ୍ମୀ ଘେନି ସଙ୍ଗେ ।
ଜନ୍ମକୁ ଜନ୍ମ ଅଟନ୍ତି ସେ ଲକ୍ଷ୍ମୀଙ୍କ ଦାସୀ
ଯୁବତୀକୁଳରେ ପ୍ରତ୍ୟକ୍ଷେ ସେ ଚାରୁହଂସୀ ।
ଆବର ହଂସିନୀ ବୋଲି ଯେବଣ ତରୁଣୀ
ଖଟଇ ସେ ସବୁବେଳେ ଲକ୍ଷ୍ମୀ ମନ ଜାଣି ।
ହସାଇ ବସାଇ ସେହୁ ତୋଷେ ଲକ୍ଷ୍ମୀ ମନ
ଏମନ୍ତ ଯେ କାଳ ବହିଗଲା କେତେଦିନ ।
ଫୁଲତୋଟାକୁ ସେ ଚଳିଯାନ୍ତେ ସଖୀ ମେଳେ
ଦେଖିଲେ କ୍ରୀଡ଼ନ୍ତି ପକ୍ଷୀମାନେ କୁତୂହଳେ ।
ଯେସନେ ପତି ପତ୍ନୀଙ୍କ ଭାବ କ୍ରୀଡ଼ାରତ
ସେହିରୂପେ ପକ୍ଷୀମାନେ ହୁଅନ୍ତି ମତାମତ ।
ପକ୍ଷୀଙ୍କର କ୍ରୀଡ଼ାଭାବ ଦେଖି ଯୁବତୀଏ
ମଦନେ ଘାରି ହୁଅନ୍ତି ଉନ୍ମତ୍ତ ଯେ କାୟେ ।
ଭୋଳ ହୋଇ କରନ୍ତି ସେ ସ୍ୱାମୀଙ୍କର ଚିନ୍ତା
ବୋଲନ୍ତି ମିଳନ୍ତେ ଏତେବେଳେ ଯେବେ ଭର୍ତ୍ତା
ଯେ ଯାହାର ସ୍ୱାମୀ ଘେନି ଚୁମ୍ବ ଦିଅନ୍ତାଇ
ସୁରତି କରିଣ ସୁଖେ କାମୁ ତରନ୍ତାଇ ।
ଏରୂପେ ଯୁବତୀଗଣ କାମେ ମତ୍ତ ହୋନ୍ତେ
ସଖୀଙ୍କର ମନକଥା ଜାଣି ଲୋକମାତେ ।
ବୋଇଲେ ହଂସିନୀ ଆଗୋ କହିବିକି ମୁହିଁ
ତୋଟାକୁ ଆସି ଅପୂର୍ବ କଥା ଦେଖିଲଇଁ ।
ପତ୍ନୀମାନଙ୍କ କ୍ରୀଡ଼ା ତୁ ମଧ ଦେଖିବୁଣି
ଭଲା ଖଞ୍ଜିଅଛି ରତି ଧାତା ପଦ୍ମଯୋନି ।
ବନଜନ୍ତୁ ହୋଇ ପୁଣି ଜାଣନ୍ତି ଏ ଭାବ
ମନୁଷ୍ୟ ହୋଇ କିମ୍ପା ଏ କଥା ନ କରିବ ।
ଆମ୍ଭର ସଙ୍ଗେ ଯେତେକ ସଖୀ ଆସିଛନ୍ତି
ପକ୍ଷୀଙ୍କର ବିହାର ଦେଖି ସର୍ବେ ମୋହ ଯାନ୍ତି ।
ବନର ପକ୍ଷୀ ହୋଇଣ ଜାଣନ୍ତି ଏ ରସ
ମନୁଷ୍ୟ ହୋଇ କଲଇଁ କହ ଆମ୍ଭେ କିସ ।
ପକ୍ଷୀଜନ୍ତୁ ହୋଇ ଏଡ଼େ ଅଟନ୍ତି ଏ କାମୀ ।
ଦେଖିବା ଲୋକର ମନ ଯାଉଅଛି ଭ୍ରମି ।
ମୋହର କଥାରୁ ଏବେ ବୁଝ ତୁ ବିଚାରି
ନବଯୁବାରୁ ଅଧିକେ ଥାଇ ଦେହ ଧରି ।

ମନକଥା ମୋର ତୋତେ କହୁଅଛି ଜାଣ
କାହିଁପାଇଁ ପିତା ମୋତେ କଲେ ଅକାରଣ ।
ଆଜିଯାଏ ବରଖଞ୍ଜା ନ କଲେକ ଜାଣି
ତୋତେ ବୋଲି କହୁଛିଟି ଶୁଣ ସଙ୍ଗାତୁଣୀ ।
ପ୍ରାଣରୁ ଅଧିକ ତୁହି ଅଟୁ ମୋର ତେଣୁ
ତେଣୁକରି ହୃଦକଥା କହୁଛି ମୁଁ ଯେଣୁ ।
ଦେବକନ୍ୟା ହେବାରୁ ମୁଁ ଅଛି ଦେହଧରି
ଅନ୍ୟ ସ୍ତିରୀ ହୋଇଥିଲେ ନୁହନ୍ତା ସମ୍ଭାଳି ।
ଏଣୁକରି ଲଜ୍ଜା ଛାଡ଼ି କହୁଛି ମୁଁ ତୋତେ
ପୁଷ୍ପବତୀ ହୋଇ ବଞ୍ଚିବା ଯେ ଦିନା କେତେ ।
ସ୍ତିରୀଙ୍କି ଅବଶ୍ୟ ଅଛି ପୁରୁଷେତ ଖଞ୍ଜି
ପୂର୍ବରୁ ଜାଣ ବିଧାତା ଅଛି ଯାହା ଅର୍ଜି ।
କ୍ଷୁଧା କରୁଥିବା ଲୋକ ଅନ୍ନ ନ ଭୁଞ୍ଜେ କି
ଏ ଶରୀର ବହି କେହୁ ବିଭା ନୋହିଛି କି ।
ଏଦେହ ଅଜରାମର ନୁହଇ କାହାରି
ବାଳକ ଯୁବା ବୃଦ୍ଧ ଏ ନିତିରୂପ ଧରି ।
ଜନ୍ମହୋଇଲେ ଅବଶ୍ୟ ମରେ ଜାଣ ପ୍ରାଣୀ
ରାତ୍ରେକ ହୋଇଲେ ପୁଣି ଦିବସେ ବଖାଣି ।
ଲାଭହେଲା ଠାବରେ ତ ହାନି ଥାଏ ଜଗି
ପାପହେଲାଠାରେ ପୁଣ୍ୟ ପଳାଏ କି ଭାଙ୍ଗି ।
ବାଦ ହୋଇଲେ ସକଳ ହୋଏ ଜାଣ ଜାତ
ଶାଶୁ ଥିଲାଠାରେ ଜାଣ ସୁଖ ପରାପତ ।
ମୋତେ ଯେ ଧାତା ବରୁଣ ରାଜପୁରେ ଆଣି
ଜାତକରି କଲା କର୍ମ ମୋ ବିପାକ ପୁଣି ।
ବରୁଣଠାରୁ ବଡ଼ ବା ସଂସାରେକେ ଅଛି
ତହିଁ ଜନ୍ମି ମୋର ନ ଗଲା ଦୁଃଖ କିଛି ।
ମହାଲକ୍ଷ୍ମୀ ହେଲାରୁ କି ହେବ ବଡ଼ ହୋଇ
କର୍ମରେ ଯାହା ଅଛଇ ଭୁଞ୍ଜିବାନା ତହିଁ ।
ଶ୍ରୀମହାଲକ୍ଷ୍ମୀ ହେଲେ ନ ଗଲା ମୋର ଦୁଃଖ
କେ ସହି ପାରଇ ସଖି କାମର ବିଶିଖ ।
ସ୍ତିରୀଙ୍କ ମଧ୍ୟେ ମୁହିଁ ଅମର ଯୌବନୀ
ରଖିଅଛି ଅକାରଣେ ଯୁବାତର ଘେନି ।
ସ୍ତିରୀଙ୍କ ବେଦନା ସ୍ତିରୀଲୋକଙ୍କୁ ଯେ ଜଣା
ଏହା ନ ଜାଣି କଥାରେ ହେଲେ ତାତବଣା ।
କି ଲାଖଟି ଆଣି ଘରେ ସାଇତି ଅଛନ୍ତି
ତାହା ଅବା ଯେଉଁକାଳେ ବିନ୍ଧିବେ ନୃପତି ।
ଅପାରକାଳ କଥା ଏ ଅଟେ ଅଗୋଚର
ଲାଖ କରୁଁତ ଆୟୁଷ ଚାଲିଯିବ ମୋର ।

ବରୁଣରାଜା କଥା ମୁଁ କହିବି କାହାକୁ
ସ୍ଥାପିଲେ ଅଗମ୍ୟ ଲାଖଗୋଟା ସଂସାରକୁ ।
ସେ ଲାଖ ଯେ ବିନ୍ଧିବ ସେ ମୋତେ ବିଭାହେବ
ଏହିରୂପେ ପାଞ୍ଚି ବାଳ ଆଉ କେତେ ଯିବ ।
ମନ ଇଚ୍ଛାରେ ଖୋଜିଲେ ସିନା ବର ମିଳେ
ବିହି ଲେଖିବାର କଥା ହୁଅଇ ତତ୍କାଳେ ।
ଏରୂପେ କହନ୍ତି କଥାମାର୍ଗେ କମଳିନୀ
ଶୁଣିଣ ହୃଦେ ହଂସିନୀ ପାଞ୍ଚି ମନେ ପୁଣି ।
ବିଚାରେ ଲକ୍ଷ୍ମୀକି ଚିନ୍ତା ଲାଗି ତ ଆସି
କହିବି ଜଗତ ଜନନୀଙ୍କ ମନ ତୋଷି ।
ଏରୂପେ ହୃଦରେ ପାଞ୍ଚି କରପତ୍ର ଯୋଡ଼ି
କହଇ ଶ୍ରୀକମଳାଙ୍କ ପାଦଦଳେ ପଡ଼ି ।
ବୋଇଲେ ଗୋ ସାବଧାନେ ଶୁଣ ଲୋକମାତା
ତୁମ୍ଭ ଆଗେ କହିବାକୁ ଅଛି କି ଯୋଗ୍ୟତା ।
ଲକ୍ଷେକୋଟି ଗୁଣ ଯା ଶ୍ରୀଅଙ୍ଗେ ପୁରିଅଛି
ହସ୍ତେ ପଦ୍ମ ପାଦେ ପଦ୍ମ ପ୍ରକାଶି ଦିଶୁଛି ।
ଜାତି ପଦ୍ମିନୀ ସୁନ୍ଦରୀ ଅଟେ ନବଯୁବା
ତକ୍ଷଣେ ପ୍ରଭୁଙ୍କୁ ହେବ ମନେକଲେ ବିଭା ।
ମନ ନୋହିବାରୁ ତୁମ୍ଭେ ନୁହ ପୁଷ୍ପବତୀ
ତୁମ୍ଭେ ଚିନ୍ତିଲେ ମିଳିବ ବର ତତ୍‌କ୍ଷଣାତି ।
ତୁମ୍ଭ ମନ ଚିହ୍ନି ତୁମ୍ଭ ପିତା ହେଳା କଲେ
ଲାଖଗୋଟି ନିର୍ମାକରି ଅଟିକ୍ତେ ରହିଲେ ।
ଏବେ ବିଭାକୁ ବଳିଲା ଯେବେ ତୁମ୍ଭ ମନ
କରିବେ ଅବଶ୍ୟ ପିତା ତୁମ୍ଭଙ୍କୁ ପ୍ରଦାନ ।
ସପ୍ତଦ୍ୱୀପତାକ ରାଜାଗଣ ଅଣାଇବେ
ଯେ ଲାଖବିନ୍ଧିବ ସେ ତାହାକୁ କନ୍ୟା ଦେବେ ।
ସପ୍ତଦୀପୁଁ ଆସିବେ ତ ଷାଠିଲକ୍ଷ ରାଜା
ତୁମ୍ଭ ପାଇଁ ପୂର୍ବୁ ହୋଇଅଛି ଲାଖ ଖଞ୍ଜା ।
ଲକ୍ଷ୍ମୀ ବୋଇଲେ ଗୋ ତେବେ ଶୁଣ ସଙ୍ଗାତୁଣୀ
ଏତେ ରାଜାରେ ସ୍ୱାମୀକେ ହେବ ମୋର ପୁଣି
ହଂସିନୀ ବୋଇଲେ ତେବେ କହିବାକ ଶୁଣ
ସେବିଲି ହିଙ୍ଗୁଳା ମୁହିଁ ବାଳକାଳୁ ଜାଣ ।
ସେ ମାତା ଦୟାକରିଣ ଦେଲେ ମୋତେ ବର
ବୋଇଲେ କରିବି ଆଜ ମନ୍ତ୍ରସିଦ୍ଧି ତୋର ।
ଅପୂର୍ବ ମନ୍ତ୍ର ଗୋଟିଏ ଦେବି ତୋତେ ଆଜ
ଅପୂର୍ବ ମନ୍ତ୍ର ପଢ଼ିଣ ମନେ ପାଞ୍ଚିବୁ ଯେ କାର୍ଯ୍ୟ ।
ପଟ ଗୋଟିଏ ମନ୍ତ୍ରିତ କରେ ଘେନିଥିବୁ
ଯେ ରୂପ ପାଞ୍ଚିବୁ ତାହା ଚିତ୍ରରେ ଦେଖିବୁ ।

ଚରାଚର ପୃଥ୍ୱୀଯାକେ ରୂପ ତହିଁ ଥିବେ
ଚିତ୍ରପଟେ ସେ ସମସ୍ତେ ଆସି ଦେଖାଦେବେ ।
ଏରୂପେ ହିଙ୍ଗୁଳା ମାତା ଛନ୍ତି ବର ଦେଇ
ତୁମ୍ଭଙ୍କୁ ହେଲେତ ଏବେ ଦେଖାଇବି ମୁହିଁ ।
ସେହି ମନ୍ତ୍ର ପଢ଼ି ପଢ଼ି କରିବି ଯେ ପୂଜା
ଏହିକ୍ଷଣି ଦେଖା ଆସି ଦେବେ ସର୍ବ ରାଜା ।
ଲକ୍ଷ୍ମୀ ବୋଇଲେ ଗୋତାହା ଦେଖା ମତେ ଏବେ
ହିଙ୍ଗୁଳାଙ୍କୁ ଏଡ଼େ ବର ଯେବେ ଅଛୁ ମାଗି ।
ହଂସିନୀ ବୋଇଲା ମାଗୋ ତୁମ୍ଭରି ପ୍ରସାଦେ
ଆସନ୍ତୁ ସବୁ ରାଜାଏ ଦେଖନ୍ତୁ ଆନନ୍ଦେ ।
ଏତେ ବୋଲି ହଂସିନୀ ଆସନ ଶୁଦ୍ଧି କଲା
ସବୁ ରାଜାଙ୍କୁ ସେ ଚିତ୍ରପଟରେ ଭରିଲା ।
ମନ୍ତ୍ରବଳେ ହରିଣ ଆଣିଲା ରାଜାରୂପ
ବସିଛନ୍ତି ଚିତ୍ରପଟେ ଷାଠିସସ୍ର ନୃପ ।
କେ ଶ୍ୟାମଳ ବର୍ଣ୍ଣ କେହି ଗୌରବର୍ଣ୍ଣ ଦିଶି
ଚିତ୍ରପଟେ ସର୍ବେ ବିଜେ କରିଛନ୍ତି ବସି ।
ତାଙ୍କ ମଧ୍ୟେ ବିଜେ ଶ୍ରୀନୃସିଂହ ଦେବରାଜେ
ଚିତ୍ରପଟେ ଅଛନ୍ତି ଗରୁଡ଼ କରି ବିଜେ ।
ଶଙ୍ଖ ଚକ୍ର ଗଦାପଦ୍ମ ବିରାଜେ ଶ୍ରୀକରେ
ଶ୍ରୀନୃସିଂହ ବସିଛନ୍ତି ଚିତ୍ର ଜଗତୀରେ ।
ଶ୍ୱେତ ପଦ୍ମ ଜଳ ପ୍ରାୟ ନେତ୍ର ବେନି ଦିଶେ
କମଳ ବଦନ ଗୋଟି ଜଗଜ୍ଜନ ତୋଷେ ।
ଶିରେ ଶୋହେ ରତ୍ନଚୂଳ କଣ୍ଠେ ରତ୍ନମାଳ
ସୂର୍ଯ୍ୟର ସହସ୍ର ଗୁଣେ ଶ୍ରବଣେ କୁଣ୍ଡଳ ।
କପାଳେ ତିଳକବିନ୍ଦୁ ଦିଶେ ଦିବ୍ୟଶୋଭା
ଶିରରେ ମୁକୁଟ ଧରେ ସପ୍ତ ଗ୍ରହପ୍ରଭା ।
ସୁସଞ୍ଚ ନାସାକୁ ଶୋଭା ରଙ୍ଗାଧର ଦିଶେ
ହୃଦେ ପଦ୍ମମାଳ ବିରାଜଇ ଦଶଦିଶେ ।
ଶ୍ରୀବତ୍ସ ଚିହ୍ନଗୋଟି ଯେ ବକ୍ଷସ୍ଥଳେ ଶୋହେ
କଟଟି ବାହୁଟି ବେନି ଭୁଜେ ଶୋଭାପାଏ ।
କଟିର ପୀତବସନ ରତ୍ନ ଓଢ଼ିଆଣୀ
ଗରୁଡ଼ କନ୍ଧରେ ବସି ବିଜେ ଚକ୍ରପାଣି ।
ଏହିରୂପେ ରାଜାମାନେ ବସି ଚିତ୍ରପଟି
ଲକ୍ଷ୍ମୀଙ୍କ ଛାମୁରେ ତାହା ଦିଶେ ଗୋଟିଗୋଟି ।
ହଂସିନୀ ବୋଇଲା ଆଗୋ ଶୁଣ କମଳିନୀ
ସର୍ବ ଦିଗଯାକୁ ଆସିଲେଣି ନୃପମଣି ।
ଯେ ଯାହା ରୂପକୁ ଏବେ ଦେଖ ଭଲକରି
ଶାକଲ୍ୟ ଦ୍ୱୀପର ଏହି ଅଟେ ଦଣ୍ଡଧାରୀ ।

ଭୂପାଳ କେଶରୀ ବୋଲି ରାଜା ନାମ ଅଟେ
ବଡ଼ପ୍ରତାପୀ ରାଜା ଏ ଅଟେ ଜନପୁଟେ ।
ଏ ରାଜା ତଳେ ଅଛନ୍ତି ପାଞ୍ଚ ଲକ୍ଷ ନୃପ
ଥୋକାଏକ ନାମଶୁଣ କହିବା ସ୍ୱରୂପ ।
ଏମନ୍ତ ବୋଲି ଛାମୁରେ ଥୋଇ ଚିତ୍ରପଟି
ଦେଖାଏ ସୁବର୍ଣ୍ଣ ବାଡ଼ି ଧରି ଗୋଟି ଗୋଟି ।
ଏ ବାବନା ଜାନୁଘଣ୍ଟ ପୁଲଙ୍ଗ ଦେଶର
ଦଶକ୍ରୋଡ଼ ସୈନ୍ୟବଳ ଅଟଇ ଏହାର ।
ସୁଭଦ୍ରା ଦେଶର ଏହୁ ମଣିଭଦ୍ରା ରାଜା
ସତ୍ୟରେ ପାଳଇ ଏହୁ ସର୍ବ ଜନପ୍ରଜା ।
ଏ ଭୂମଅନ୍ୟଦେଶ ରାଜା ନାମ ବିଭୁରକ୍ଷ
ତାର ପାଶେ ରାଜା ଅଛି କାରଣ୍ଡକ ଦେଖ ।
କାକୁସ୍ଥ ଦେଶର ଏହୁ କନ୍ଦର୍ପ ନୃପଣି
ଏରାଜାର ମୁଖ ଦିଶେ ଶଶି ପ୍ରାୟ ପୁଣି ।
ବଜ୍ରାଳୀ ଦେଶର ଯେ ବ୍ରଜମାଳି ରାଣ
ଏ ରାଜା ବଡ଼ ପ୍ରତାପୀ ଅଟେ ସଂସାରେଣ ।
ସୁବାହୁ ଦେଶର ଏ ସୁବାହୁ ବନମାଳୀ
ରାଜାଏ ଦେବାର୍ଚ୍ଚନେ ଏ ଲକ୍ଷେକ କାହାଳୀ ।
ଆଉ ରାଜା ମଣେ ଏ ବିରାଟ ଚନ୍ଦ୍ର ଦେଖ
ନଉ ସହସ୍ର ଏହାର ବାଜଇ ଯେ ଶଙ୍ଖ ।
ନୀଳେନ୍ଦ୍ରି ଦେଶର ନୀଳମାଧବ ଏ ରାୟେ
ଅଠର କନ୍ୟା ଏହାର ଦୁଇଶ ତନୟେ ।
କମଳ ଦେଶର ଏ କନକ ବାଞ୍ଛାନିଧି
ପଣ୍ଡିତପଣେ ଦ୍ୱିଗୁଣେ ଅଟେ ଏହା ବୁଦ୍ଧି ।
ଇନ୍ଧନକେଶରୀ ଏହି କୁନ୍ଦନକେଶରୀ
କୁବେର ପ୍ରାୟକ ଭୋଗକରେ ଏହୁ ଶିରୀ ।
ହିରଣ୍ୟ ଦେଶର ଏ ସୁନନ୍ଦ ନାମେ ରାଜା
ତିନିଶ ଷାଠିଏ ଯାଏ ଏହାର ଭାରିଯା ।
ପ୍ରତିଦିନ ଯୁବତୀଏ କରେ ଏହୁ ଭୋଗ
ଏ ରାଜାର ଅଟେ ବଡ଼ କାମରେ ସୁଆଗ ।
ଏ ଦିଗରୁ ଥୋକେ ନାମ କହିଲି ନୃପତି
ଆହୁରି କହିଲେ ବେଳ ବୁଡ଼ି ହେବ ରାତି ।
ଆହୁରି ଦ୍ୱୀପେ କହିବା ରାଜା ଏବେ ଶୁଣ
ପ୍ଲକ୍ଷଦ୍ୱୀପ ରାଜା ଅଟେ ଏହି ଶମ୍ଭୁରାଣ ।
କାମଦେବ ପ୍ରାୟେ ଦିଶେ ଏହୁ ଦଣ୍ଡଧାରୀ
କାମରେ ରହିଛି ଏହି ରୁଦ୍ର ସେବା କରି ।
ତହିଁ ପାଶେ ବସିଛି ଭଦ୍ରାଙ୍ଗ ଦେଶ ରାୟେ
ବୀରଭଦ୍ର ବୋଲିଣ ଯେ ଏହା ନାମ ହୋଏ ।

ଯମନକ ଦେଶର ଏ ଯଯାତି ଯେ ରାଜା
ତିନିଲକ୍ଷ ଏ ରାଜାର ଅଟନ୍ତି ଭାରିଯା ।
ତହିଁ ପାଶେ ଅଛି ଜାଣ ମଦନ କେଶରୀ
ରମଇ ନିତ୍ୟେହେଁ ଜଣେ ଶୁଦ୍ଧସ୍ନାତା ସ୍ତିରୀ ।
ବୁଝିଲେ ଏହାରି ତିନିପଦ୍ମ ନାରୀରତ୍ନ
ତେଣୁ ରମୁଥାଇ ଯୁବତୀ ଏ ଶୁଦ୍ଧସ୍ନାନ ।
କାଞ୍ଚିଦେଶ ରାଜା ଏହୁ କୁନ୍ଦନକେଶରୀ
ଷୋଳକୋଡ଼ି ଭାରିଯା ଯେ ସର୍ବେ ଯୁବାନାରୀ ।
ରାତ୍ରକେ ଏ ପତ୍ନୀ ଜଣେ କରେ ନିତ୍ୟ ରତି
ଦିନେ ଊଣା ନାହିଁ ଏହାର ଯେ କାମପ୍ରୀତି ।
ତହିଁ ପାଶେ ଅଛି ଜ୍ଞାନକେଶରୀ ଏ ରାୟେ
ମାସକରେ ଥରେ ରତି କରେ ସର୍ବଦାଏ ।
ଏରୂପେ ସାଧନାକରେ ଏହୁ ନିତ୍ୟାଚାର
ଏଥି ଊଣାକଲେ ଯୋଗୀ ହୋନ୍ତି ନୃପବର ।
ରାଜାର ଅଛି ବରାଳସେନ ନାମେ ନୃପ
ଇନ୍ଦ୍ରଦେବ ବୋଲି ଏହୁ କରୁଥାଇ ତପ ।
ତହିଁ ପାଶେ ଅଛି ଦେଖ କାମ ନୃପଶୀଳ
ନିତି ବିଭାହୋଇ ବାନ୍ଧେ ଏ ମୁକୁଟମାଳ ।
ଆବର ନୃପ ଅଛି ଏ ଭୂମଣ୍ଡଳ ରାୟେ
ତେରକୋଡ଼ି ଭାରିଯାରେ ନକୋଡ଼ି ତନୟେ ।
ଏରୂପେ କହିଲଇଁ ଏ ଦିଗେ ଏତେ ରାଜ
ବହୁଳେ କହିଲେ ବେଳ ବୁଡ଼ିବ ଯେ ଆଜ ।
ଶୁଣିମା ଗୋ ଏବେ କୁଶଦ୍ୱୀପ ରାଜା ନାମ
ଚିତ୍ରପଟେ ଦେଖ କ୍ଷଣେ କରି ତୁ ବିଶ୍ରାମ ।
ସୁଦର୍ଶନ ନାମରେ ଯେ ଅଟେ ଏକ ରାଜା
ପୁତ୍ର ପ୍ରାୟେ ପାଳେ ଏହୁ ରାଜା ଜନ ପ୍ରଜା ।
ତହିଁ ପାଶରେ ନନ୍ଦିକେଶ୍ୱର ନାମେ ନୃପ
ରୁଦ୍ରମୂର୍ତ୍ତି ସେବି ଏହୁ କରେ ନିତ୍ୟ ଜପ ।
ତାର ପାଶେ ଅଛି ଦେଖ ଚକ୍ରଧ୍ୱଜ ରାୟେ
ଏହାର ଲକ୍ଷେକ ଗାଁବ ନିତି ଦୁହାଁହୁଏ ।
ତହିଁର ପାଶେ ଅଛି ଭୂପାଳ ନୃପତି
ଲକ୍ଷେ ଧର୍ମଶାଳା ହୁଏ ଦିଏ ସଦାବର୍ତ୍ତି ।
ରାଜାଏ ଅଛି ସୁଜାଣ ସୁରନାନ ରାୟେ
ଗୀତନୃତ୍ୟେ ଏହାର ଯେ ସଦା ଦିନ ଯାଏ ।
ଚଉରାଶୀ ଖଣ୍ଡମାର୍ଗେ ଗୀତ ନୃତ୍ୟ ଥିଲା
ଏ ରାଜାଲାଗି ସଂସାରେ ନୃତ୍ୟ ଉଦେହେଲା ।
କୁଶଳ ବ୍ରହ୍ମା ବୋଲିଣ ଅଛି ଆଉ ରାୟେ
ଅଗମ୍ୟ ତାହାର ଭକ୍ତିଭାବ ଅପ୍ରମୟେ ।

ଜ୍ଞାନ ଅଙ୍କୁଶେ ପ୍ରକୃତିଗଣ ଝିଙ୍କି ରଖେ
ସକଳ ଆତ୍ମା ସମାନ ଶିରୀ ନିତ୍ୟେ ଦେଖେ ।
ଏରୂପେ ଏ କୁଶଦ୍ୱୀପ ରାଜା ଛନ୍ତି ବସି
କହିଲେ ସକଳ ସିନା ହେବ ନାମ ଭାଷି ।
ଏବେ ଆଉ ଦ୍ୱୀପକର ଶୁଣ ରାଜାମାଳ
ବସିଛନ୍ତି କ୍ରୌଞ୍ଚଦ୍ୱୀପ ଯେତେ ରାଜଶୀଳ ।
ଥୋକେ ନାମ ତାହାଙ୍କର କହିବା ଗୋ ଶୁଣ
ବୁଝାଉଛୁ ତହିଁ ଗୋଟି ଗୋଟି କରି ଜାଣ ।
ଭୀମକେଶରୀ ବୋଲି ଏ ରାଜା ନାମ କହି
ନାଗକେଶରୀ ଅଛଇ ତହିଁ ପାଶେ ରହି ।
ବିନ୍ଧ୍ୟକେଶରୀ ବୋଲିଣ ଅଟେ ନୃପମଣି
ବସିଅଛି ଚିତ୍ରପଟେ ଦେଖ କମଳିନୀ ।
କାର୍ତ୍ତିକେଶ୍ୱର ବୋଲି ଏ ରାଜା ନାମ ଅଟେ
ମଧୁକେଶରୀ ବସିଛି ଦେଖ ଚିତ୍ରପଟେ ।
ତହିଁ ପାଶେ ଅଛି ସତ୍ୟକେଶରୀ ଯେ ରାଜା
ସତ୍ୟରେ ଏହୁ ପାଳଇ ପୃଥ୍ୱୀ ଜନ ପ୍ରଜା ।
ପ୍ରତାପକେଶରୀ ବୋଲି ଅଟେ ଜାଣ ଏହି
ଜଳଦକେଶରୀ ବୋଲି ଏହା ନାମ କହି ।
ସୁବର୍ଣ୍ଣକେଶରୀ ନାମ ଏ ରାଜାର ଜାଣ
ହିରଣ୍ୟକେଶରୀ ଅଛି ତହିଁ ପାଶେ ପୁଣ ।
ଜ୍ଞାନକେଶରୀ ବୋଲି ଏ ରାଜା ନାମ ଅଟେ
ଦର୍ଶନ କରିଣ ତୋତେ ଆସିବେ ଏ ଭେଟେ ।
ଥୋକାଏକ ରାଜା ବାଛି କହିଲ ତ ଜାଣ
ସବୁ ନାମ କହିବାକୁ ବେଳ ନାହିଁ ପୁଣ ।
ଗୃହକୁ ଯିବାକୁ କାଳ ଏବେ ହେଲା ଆସି
ପଦ୍ମଦ୍ୱୀପ ରାଜା କଥା ଏବେ ଶୁଣ ବସି ।
ମୃତ୍ୟୁଞ୍ଜୟ ବୋଲି ଏହୁ ରାଜା ନାମ ଅଟେ
ଲକ୍ଷେ ନୃପ ଏ ରାଜାର ପାଦତଳେ ଖଟେ ।
ରଥ ଗଜ ଅଶ୍ୱ ଲାଗି ହୋଇଛନ୍ତି ବସି
ଲାଖବିନ୍ଧାକାଳେ ତୋତେ ଦେଖାଦେବ ଆସି ।
ଆଉ ତହିଁ ପାଶେ ବସିଛନ୍ତି ଲକ୍ଷେ ରାଜା
ଦିଶନ୍ତି ସ୍ୱର୍ଗର କିବା ଯେସନେ ବିଡ଼ୋଜା ।
ଇନ୍ଦ୍ରଦେବତା ପରାୟେ ଛନ୍ତି ତହିଁ ବସି
ତାହାଙ୍କର ନାମ ଥୋକେ ଶୁଣ ଗୁରୁକେଶୀ ।
ବିଜୟ ଦେଶର ଏ ବେଲାଳ ଚକ୍ରବର୍ତ୍ତୀ
ବଡ଼ ସମ୍ଭ୍ରମେ ବସି ଏ କରେ ରାଜନୀତି ।
ଲକ୍ଷେ ଶାଳଗ୍ରାମ ଏହୁ କରେ ନିତ୍ୟପୂଜା
ଲକ୍ଷେ ବୀରକାହାଳୀ ଛାମୁରେ ହୁଏ ବଜା ।
ଲକ୍ଷେ ଶଙ୍ଖ ବାଜିଲେ ଯେ ଉଠେ ଦେବାର୍ଚ୍ଚନ
ଲକ୍ଷେ ବିପ୍ରଭୋଜନ ଏ ଦିଏ ଉଆ ଅନ୍ନ ।
ଆଉ ରାଜାଏ ଅଛି ତା ନାମ ବିଭୁରକ୍ଷ
ନୃସିଂହ ମନ୍ତ୍ର ଜପେ ଏ ବାସି ବାରଲକ୍ଷ ।
ତହିଁର ପାଶେ ଅଛଇ ଯମନିକ ରାଜା
ନିତ୍ୟସ୍ନାନ ସାରି ଏହି କରେ ଅଗ୍ନି ପୂଜା ।
ଏହି ରାଜାଙ୍କୁ ବୋଲନ୍ତି ତହିଁ ଅଗ୍ନିହୋତ୍ରୀ
ବୀରପଣକୁ ଅଟଇ ଏହି ମହାକ୍ଷତ୍ରୀ ।
ଆଉ ରାଜାଏ ଅଛି ତା ନାମ ଚିତ୍ରକେତୁ
ଦେବା ଦୟା ଧର୍ମରେ ଯେ ଏହା ବ୍ରହ୍ମହେତୁ ।
ସତ୍ୟକୁଣ୍ଡଳ ନାମେ ଏ ରାଜା ଅଛି ଦେଖ
ଏହାର ସଭାରେ କେ ନ ଥାଇ ବସି ମୂର୍ଖ ।
ମୂର୍ଖଙ୍କଠାରୁ କନ୍ଦଳ ଜାତ ସିନା ହୋଇ
ମହା ସୁପଣ୍ଡିତେ ଲେଖା ଏ ରାଜା ଅଟଇ ।
ଆବର ରାଜାଙ୍କ ଗୁଣ ଶୁଣ କମଳିନୀ
ଆବର ରାଜାଙ୍କ ନାମ ଅଟେ ଅଷ୍ଟଅବଧାନୀ ।
ପଳକ ମାତ୍ରକେ ଆଠ କଥାଏ ଜାଣଇ
ଏ ରାଜାର ସମାନରେ ନାହିଁ ନରସାଇଁ ।
ଆଉ ରାଜାଏ ବସିଛି ଦେଖ ଚିତ୍ରପଟେ
ବଭ୍ରୁବାହନ ବୋଲି ଏ ରାଜା ନାମ ଅଟେ ।
ରୋଗ କ୍ଳେଶ ଘଉଡ଼ନ୍ତି ଯେତେ ଲୋକ ଯାନ୍ତି
ଛାମୁକୁ ଆସିଲେ ସର୍ବେ କୁଶଳ ହୁଅନ୍ତି ।
ବେନି ଅଙ୍ଗୁଳିରେ ତିନି ଫୁଙ୍କୁକି ମାରନ୍ତେ
ନାହିଁ ବୋଇଲେକ ବିଷ ଝଡ଼େ ତତ୍କ୍ଷଣାତେ ।
କୁଶଳ ହୋଇ କ୍ଷଣକେ ସର୍ବେ ଉଠିଯାନ୍ତି
ଏମନ୍ତ ଏ ରାଜାର ଯେ ଅଟେ କରାମତି ।
ଆବର ନୃପେକ ଦେଖ ବସିଛି ତା ପାଶେ
ବୀରବର ରାଜା ବୋଲି ତା ନାମ ପ୍ରକାଶେ ।
ଏହାର ପ୍ରାୟ ରାଜାକେ ନାହିଁ ପୃଥ୍ୱୀଯାକ
ତିନିଦଣ୍ଡେ ଗୁହାରି ଏ ଶୁଣେ ସର୍ବଲୋକ ।
ଯାବତ ନ୍ୟାୟ ବୁଝିଣ ଲୋକବର୍ଗ ପାଳେ
ସମସ୍ତେ ଧନ୍ୟ କରନ୍ତି ତାକୁ ଭୂମଣ୍ଡଳେ ।
ତାର ପାଶେ ଅଛି ଦେଖ ରାଜା ସତ୍ୟସେନ
ସତ୍ୟରେ ସେ ରାଜ୍ୟ ଜନ ପାଳେ ପ୍ରତିଦିନ ।
ଭଣ୍ଡାରୁ ବିହନ ପ୍ରଜାମାନଙ୍କୁ ଏ ଦିଏ
ସୁଖେ କୃଷିକର ବୋଲି ବାକ୍ୟବୋଧି କହେ ।
ପ୍ରଜାଏ ଯାବତ ମଞ୍ଜିଯାକ ସୁଖେ ନ୍ୟନ୍ତି
ଶସ୍ୟ ଉପୁଜାଇ ସରିଭାଗ କର ଦ୍ୟନ୍ତି ।

ସେ ରାଜା ଦ୍ରବ୍ୟ କହିଲେ ଜାଣ ନ ସରଇ
ଯେତେ ଦାନ ଧର୍ମକଲେ ଉଛୁଳି ପଡ଼ଇ ।
ଧର୍ମେ ଥିଲେ ରାଜା ଶିରୀ ବର୍ଦ୍ଧିତ ଯେ ଜାଣ
ଅଧର୍ମ କରି ଗଲେଣି କେତେ ରାଜାଗଣ ।
ଏରୂପେ ଏ ଦ୍ୱୀପ ରାଜା କହିଲଇଁ ବାଛି
ବହୁଳରେ କହିବାକୁ ବେଳ ନାହିଁ କିଛି ।
ଏବେ ଶ୍ୱେତଦ୍ୱୀପ ରାଜା କହିବଇଁ ଶୁଣ
ଚିତ୍ରପଟେ ବସିଛନ୍ତି ଯେତେ ନୃପଗଣ ।
ବିଷ୍ଣୁଅଂଶ ନୋହିଲେକ ନୋହେ ଦଣ୍ଡଧାରୀ
ଦେଖ ଚିତ୍ରପଟେ ଛନ୍ତି ନୃପଗଣ ପୁରି ।
ମଙ୍ଗଳ ଦେଶର ଧର୍ମ କେଶରୀ ଏ ରାଜା
ଋଣଦେଲେ ଖାତକକୁ ନ ଲେଖଇ ଗୋଜା ।
ଭାଗ୍ୟବନ୍ତ ଖାତକ ଯେ ଦ୍ରବ୍ୟ ନ ବୁଡ଼ଇ
ବରଷକ ଅନ୍ତେ ମୂଳ କଳନ୍ତର ଦେଇ ।
ପୁରୁଷର ଦ୍ରବ୍ୟଟି ସୁଖାତକ ଶୁଝେ
କୁଖାତକ ଲୋକ ଜାଣ ନେଇଯାଇ ଭୁଞ୍ଜେ ।
ଖାଇଦେଲେ ମୁହଁ ପୋଛିଦିଏ ଭୁରୁଡ଼ାଇ
ତାହାକୁ ଅନ୍ନ ବସ୍ତ୍ରଟି କେବେ ନ ମିଳଇ ।
ସୁପୁରୁଷ ଲୋକ ଯେଟି ତାକୁ ଋଣ ଦେବ
ସେ ପାଞ୍ଚଇ ମୋହର ଏ କେଉଁ ବାପଦ୍ରବ୍ୟ ।
ପ୍ରଭୁଙ୍କ ଭଣ୍ଡାର ସିନା ଅଟେ ଦ୍ରବ୍ୟଯାକ
ଯାହାକୁ ସାହା ଦିଅନ୍ତି ନିଅନ୍ତି ସେ ଲୋକ ।
ଦେଲେ ଆଛା ନ ଦେଲେଯେ ଆଛାବୋଲୁଥାଇ
ସେ ଭାଗ୍ୟବନ୍ତର ଦ୍ରବ୍ୟ କେବେ ନ ବୁଡ଼ଇ ।
ବୋଲନ୍ତି ଏ ବିଷ୍ଣୁଙ୍କର ଅଟେ ସର୍ବ ଧନ
ନ ପାଇବା ଲୋକଙ୍କୁ ଯେ ଦ୍ୟନ୍ତି ଭଗବାନ ।
କାହା ବାପ ଧନ କେହୁ କାହାକୁ ଯେ ଦିଏ
ଥିଲାଯାକେ ଏହାର ଯେ ହେତୁଗଲେ ଯାଏ ।
ଆସିଲାଯାଏ କାହାର ନୋହେ କେଉଁ ଦ୍ରବ୍ୟ
ଖାତକ ଦେଲା ଉତ୍ତାରୁ ମୋହର ବୋଲିବ ।
ଏତେକ ପାଞ୍ଚି ସନ୍ତୋଷେ ଦିଏ ରାଜା ଋଣ
କାହାକୁ ସେ ଘାତକରି ନ ମାଗଇ ଜାଣ ।
ଖାତକ ଯାଚିଦେଲେ ତା ଭଣ୍ଡାରେ ରଖଇ
ଧର୍ମର ଦ୍ରବ୍ୟ ତାହାର ନେଲେ ନ ସରଇ ।
ଏମନ୍ତ ଜାଣ କେତେକ ତହିଁ ଦିନ ଗଲା
ଜଣେହେଁ ଘାତକ ତହିଁ ମନ୍ଦପଣ କଲା ।
ସେ ଖାତକର ଆୟୁଷ ଶେଷକାଳ ହୋନ୍ତେ
ଶ୍ରୀଧର୍ମ ଦେବତା ସହି ନ ପାରିଲେ ଚିତ୍ତେ ।

ସପନକାଳେ ତାହାକୁ ଦୃଶ୍ୟହେଲେ ଆସି
ବୋଇଲେ ଋଣ ଲାଗି କି ମରିବୁରେ ଦୋଷୀ ।
ଆମ୍ଭଙ୍କୁ ତୋର କାରଣ ଇଚ୍ଛୁ ଯେବେ ଜାଣ
ତେବେ ତୁହି ଶୀଘ୍ର ଶୁଝ ରାଜା ଦେବା ଋଣ ।
ବର୍ଦ୍ଧିତ ହେବାକୁ ବଂଶ ତୋର ମନେ ଥିଲେ
ରାଜାଋଣ ଶୁଝ ବୋଲି କହି ଚାଲିଗଲେ ।
ସେଠାବରୁ ଖାତକର ମନେ ଶଙ୍କା ହେଲା
କୁଟୁମ୍ବମାନଙ୍କୁ କହି ଋଣ ଶୁଝି ଦେଲା ।
ଧର୍ମ ଥିଲା ପ୍ରାଣୀମାନଙ୍କର ଧନ ନ ବୁଡ଼ଇ
ଏରୂପେ ଏହି ରାଜ୍ୟଟି ସଂସାରେ ଅଟଇ ।
ଆବର ରାଜାର ନାମ ଶୁଣ କମଳିନୀ
ପୁଣ୍ୟବନ୍ତ ବଂଶିକ ଏ ରାଜଚୂଡ଼ାମଣି ।
ଏ ରାଜାର ମହିମାଟି ଅଟଇ ଅଲୋକ
ପରଜାମାନଙ୍କୁ ବାଣ୍ଟିଦେଲା ପୃଥ୍ୱୀଯାକ ।
ବୋଇଲାକ ଯେଝା କୃଷି ଚଷି ସୁଖେ ଖାଅ
ବିବାଦ ବାଦ ନ କରି ଅଚିନ୍ତାରେ ଥାଅ ।
ଏ ପୃଥ୍ୱୀଯାକ ମୋହର ଯେତେ ଗୃହ ଅଛି
ସମସ୍ତଙ୍କ କର ଛାଡ଼ି ଦେଲି ମନମୁଛି ।
ଯାହାର ଯେତେ ପଣି ତା ଘରେ କରୁଥିବ
ଆନଲୋକ ଦ୍ରବ୍ୟ ଦେଖି ହିଂସା ନ କରିବ ।
ଯାହାର ଭାଗ୍ୟେ ଯାହାକୁ ପ୍ରଭୁ ଯେତେ ଦେବ
ତାହାସୁଖେ ଭୋଗକରି ଥାଅ ସର୍ବଶୁଭେ ।
ଏରୂପେ କହିଣ ରାଜା ପୃଥ୍ୱୀକି ପାଳନ୍ତେ ।
ସମସ୍ତେ ତ ଧନବନ୍ତ ହୋଇଲେ ଜଗତେ ।
ଅଚଳାଚଳ ସମ୍ପତ୍ତି ହେଲା ସବୁ ଘରେ
କୁବେର ପ୍ରାୟେକ ଭୋଗ ଭୁଞ୍ଜିଲେକ ନରେ ।
ଏଥିଉତ୍ତାରେ ବଂଶିକ ରାଜା ଚୂଡ଼ାମଣି
ତୁଳସୀ ମାଳ ଗୋଟିଏ ବିକି ନିତ୍ୟ ପୁଣି ।
ଏରୂପେ ଚଳନ୍ତା ଗୃହଖର୍ଚ୍ଚ ନୃପସାଇଁ
ସିଂହାସନେ ବସି ନିତ୍ୟ ହରିନାମ ଗାଇ ।
ଏମନ୍ତ କେତେକାଳ ଭୋଗ ହୋଇଯାନ୍ତେ
ସେ ରାଜାକୁ ରାଣୀ ଜାଣ କହିଲେ ଏକାନ୍ତେ ।
ବୋଇଲେ ଶୁଣିମା ଆହେ ନାଥ ମହାରାଜା
ହେଲେଣିତ କେଡ଼େ ସୁଖୀ ଆମ୍ଭେ ଜନପ୍ରଜା ।
ରାଜ୍ୟଦେଇଣ ତୁଳସୀମାନ ତୁମ୍ଭେ କାଟି
ଚାଲୁଛ ଗୃହଖଣ୍ଡିବ ହୋଇ କେଡ଼େ କଷ୍ଟୀ ।
ପ୍ରଜାଙ୍କୁ ନ ମାଗ କିମ୍ବା କିଛି ଦ୍ରବ୍ୟ ଏବେ
କେତେ ମାଳ ବିକି ନିତି ଖାଉଥିବା ଆମ୍ଭେ ।

ଦୁଃଖୀ ଲୋକର ପରାୟେ କିମ୍ବା ରହିଥିବା
ପ୍ରଜାଙ୍କୁ ମାଗନ୍ତୁ କିଛି ଭାଗ୍ୟବାନ ହେବା ।
ଭାଗ୍ୟବନ୍ତ ଲୋକଙ୍କୁ ଯେ ସର୍ବେ ସେବିଥାନ୍ତି
ଭାଗ୍ୟହୀନକୁ ନଜରେ କେହି ନ ଆଣନ୍ତି ।
ଆମ୍ଭର ଯେ ପୃଥ୍ୱୀ ଖାଇ ହେଲେ ଏଡ଼େ ସୁଖୀ
ଆମ୍ଭେ କାହିଁକି ଦେବଇଁ ଅତି ଦୀନଦୁଃଖୀ ।
ରାଜା ବୋଇଲେ କହିଲେ ରାଣୀ ଏଡ଼େ କଥା
ଆମ୍ଭେ କି-ଅଭାଗ୍ୟବନ୍ତ କିଏ ଭାଗ୍ୟବନ୍ତା ।
ଆମ୍ଭର ଘରେ ଏବେ ଗୋ ନାହିଁ କେଉଁ ଦ୍ରବ୍ୟ
ହୀରା ନୀଳା ସୁନା ରୂପା ଅଛି ଖର୍ବ ଖର୍ବ ।
ଆମ୍ଭର ସତ୍ୟ ବାକ୍ୟରୁ ଦ୍ରବ୍ୟ ଅନ୍ତ କାହିଁ
ଘରଦ୍ୱାର ପୁଣି ବାହାରରେ ଉଛୁଳଇ ।
କୋଟିଏକ ଲକ୍ଷରୂପା ଭଣ୍ଡାରେ ମୋ ଅଛି
ଏହା ବ୍ୟୟ କରିବାକୁ ଆୟୁଷ କାହିଁକି ।
ରାଣୀ ବୋଇଲେ ହେ ପ୍ରଭୁ ଏମନ୍ତ ନୁହଇ
ମଗାଯଚା କଲେ ଉପରୋଧ ଜାଣ ଥାଇ ।
ମହାଭୟ କରିଣ ସେ ସର୍ବେ ଡରୁଥାନ୍ତି
କରପତ୍ରମାନ ଯୋଡ଼ି ଆଗେ ଉଭାହୋନ୍ତି ।
କିଙ୍କରଗଣ ପ୍ରାୟେକ ଆଗେ ଥାନ୍ତି ଖଟି
ଏରୂପେ ନ କଲେ ଆଜ୍ଞା ହୋଏ ବିଫଳଟି ।
ରାଣୀର ମୁଖୁଁ ଏମନ୍ତ ବାକ୍ୟ ରାଜା ଶୁଣି
ବୋଇଲା ଅନ୍ୟଥା ହେବମୋ ସତ୍ୟକି ପୁଣି ।
ରାଜା ବୋଇଲେ ରାଣୀକି କଥା ଦେଖାଇବା
ଧର୍ମର ହେବ ଏଥିରେ ଅଧର୍ମ ଜାଣିବା ।
ମହାଦେଈର ବଚନ କିମ୍ବା ଭାଙ୍ଗିଦେବା
ପ୍ରଜାମାନଙ୍କୁ ଡକାଇ ଆଣି ପଚାରିବା ।
କୋମଳ ବଚନ କହି ମାଗିବା କିଞ୍ଚିତେ
ଦେବା ନ ଦେବାର କଥା ଜଣାଯିବା ପ୍ରାନ୍ତେ ।
ଏତେକ ପାଞ୍ଚି ରାଜନ ମନେ ମନେ ହସି
ରାଣୀକି ବୋଇଲେ ଆରେ ଶୁଣ ଶୁଭ୍ରକେଶୀ ।
ପ୍ରଜାଙ୍କୁ ଯେବେ ମାଗିବା ତୁମ୍ଭେ ମନେକଲ
ଡକାଇ ଆଣି କହିଲେ ତେବେ ହେବ ଭଲ ।
ଏତେ ବୋଲିଣ ପ୍ରଜାଙ୍କୁ ରାଜା ଡକାଇଲେ
ସମସ୍ତେ ଆସିବାରୁ ଏକଥା ଆଜ୍ଞାକଲେ ।
ବୋଇଲେ ହେ ପ୍ରଜାମାନେ କହୁଅଛି ଶୁଣ
ମହାଦେଈ ଆଜ୍ଞା କରିଛନ୍ତି ଯାହା ପୁଣ ।
ବୋଇଲେ ରାଜାର ସିନା ଅଟେ ଜାଣ ପୃଥ୍ୱୀ
ପ୍ରଜାଲାଗି ଏ ସଂସାରେ ସର୍ବେ ପୋଷାହୁନ୍ତି ।
ପ୍ରଜା ଯେବେ ଶସ୍ୟ ଜାତ ନକରନ୍ତେ ପୁଣ
ସଂସାରେ ଦରିଦ୍ର ହୋନ୍ତେ ସମସ୍ତେଟି ଜାଣ ।
ପୃଥ୍ୱୀଯାକ ଆମ୍ଭ ପୋଷୁଛନ୍ତି ଜାଣ ପ୍ରଜା
ବୁଝିଲେ ପୃଥ୍ୱୀକି ମୂଳ ଅଟେ ମହାରାଜା ।
ଏଣୁ ଆମ୍ଭ ରାଣୀ କଥାଏକ ମନକଲେ
ପ୍ରଜାଙ୍କଠାରୁ ଯେ ଧନ ମାଗିବା ବୋଇଲେ ।
ତେଣୁ ଯେ ତୁମ୍ଭଙ୍କୁ ଆମ୍ଭେ କହୁଅଛୁ ଶୁଣ
ଘର ଗୋଟିକେ ଯେ ରୂପାଗୋଟି ହେବ ଜାଣ ।
ଶୁଣିକରି ପୃଥ୍ୱୀଲୋକ ଯୋଡ଼ି ବେନିକର
ବୋଇଲେକ ରାଜା ହୋଇ ମାଗିଲାକ ଛାର ।
ଘରେକ ମାଗିଲେ ଲକ୍ଷେ ଲକ୍ଷେ ଦ୍ୟନ୍ତୁ ଆଣି
ଏହା ଦେବାକୁ ଯେ ଲଜ୍ଜା ଲାଗୁଅଛି ପୁଣି ।
ରାଜା ଆଜ୍ଞାକଲେ ତୁମ୍ଭେ ଏତିକି ଯେ ଦିଅ
ବହୁତ ଦ୍ରବ୍ୟରେ ଲୋଭ ହୁଏ ଅପ୍ରମେୟ ।
ତହୁଁ ଆନନ୍ଦିତ ହୋଇ ପ୍ରଜାମାନେ ଗଲେ
ଘରଗୋଟିକେ ଯେ ଏକ ରୂପା ଆଣି ଦେଲେ ।
ଏରୂପେ ସେ ରାଜ୍ୟଲୋକେ ଦ୍ୟନ୍ତେ ଦ୍ରବ୍ୟଆଣି
ପର୍ବତ କୁଢ଼ ପ୍ରାୟେକ ହୋଇଲା ସେ କ୍ଷଣି ।
ରାଜାବୋଲେ ରାଣୀ ହେଲା କିଗୋ ମନତୋଷ
ଶୁଣିକରି ମହାଦେଈ ହେଲେ ହସ ହସ ।
ପ୍ରଜାଏ ଧନ ଦେଇଣ ଗଲେ ଯେଝା ପୁର
ଶୁଣଗୋ କମଳା ସେହୁ ରାଣୀର ବିଚାର ।
ପଦାର୍ଥ ଦେଖିଣ ରାଣୀ ଆନନ୍ଦିତ ହେଲା
ଏଥିଉତ୍ତାରେ କହିବା ବାଣୀ ଶୁଣ ଭଲା ।
ସତ୍ୟେ ସିନା ଜାଣ ଅଛି ଏ ସଂସାର ରହି
ଅଧର୍ମ କଲା ଲୋକେ ଯେ ଅଚ୍ଛେ ନାଶଯାଇ ।
ରାଜା ସତ୍ୟଗୋଟି ରାଣୀ କରନ୍ତେ ଖଣ୍ଡନ
ଶରୀରେ ଚମଉକୁଣୀ ହେଲା ତାର ଜାଣ ।
ସେ ଚମଉକୁଣୀ ଦେହଯାକ ପୀଡ଼ା ଦ୍ୟନ୍ତେ
ସହି ନପାରି ଆକୁଳ ହୋନ୍ତି ରାଣୀ ଚିତ୍ତେ ।
କି କରିବି ବୋଲି ଅତି ତରଛ ସେ ହୋଇ
ରାଜାଙ୍କ ଆଗେ ଗୁହାରି କଲେ ଶୀଘ୍ର ଯାଇ ।
ବୋଇଲେ ଶୁଣିମା ହେଉ ଆହେ ନୃପମଣି
କାହିଁକି ଦେହଯାକରେ ହେଲା ମୋ ଉକୁଣୀ ।
ରାଜ ବୋଇଲେ ଅନ୍ୟାୟ ତୁମ୍ଭେ ନକଲକି
ପ୍ରଜାଙ୍କୁ ଧନ ମାଗିଣ ତଣ୍ଡିଲ କାହିଁକି ।
ସେ ଦୋଷରୁ ତୁମ୍ଭ ଅଙ୍ଗେ ହେଲେ କୃମି ଜାତ
ଅଧର୍ମ କଲା ପ୍ରାଣୀଏ ହୁନ୍ତି କାଳେ ହତ ।

ମୂଢ଼ଲୋକମାନେ ଏହା ନ ପାରନ୍ତି ଜାଣି
ଅଭକତ ହୋଇ ଦୋଷ ଅର୍ଜୁଥାନ୍ତି ପୁଣି ।
ଆମ୍ଭର ବାକ୍ୟ ଅସତ୍ୟ କଲ ତୁମ୍ଭେ ଯେଣୁ
ତୁମ୍ଭର ଦେହରେ କୃମି ଜନ୍ମହେଲେ ତେଣୁ ।
ରାଣୀ ବୋଇଲେ ଏତେକ ଦୋଷଯେବେ ଅଛି
ନିଅନ୍ତୁ ସେ ବାହୁଡ଼ାଇ ରହିବାକୁ ମୂର୍ଚ୍ଛି ।
ରାଣୀ ମୁଖୁ ଶୁଣି ରାଜା ହସ ହସ ହେଲେ
ଯେଝା ଦ୍ରବ୍ୟ ବାହୁଡ଼ାଇ ସେହିକ୍ଷଣି ଦେଲେ ।
ଦେଲାକ୍ଷଣି ରାଣୀ ଅଙ୍ଗ କୃମି ଗଲେ ଖସି
ଶୁଣ କମଳିନୀ କହନ୍ତି ଯେ ଲକ୍ଷ୍ମୀ ଦାସୀ ।
ଆବର ଯେ ନୃପ ଦେଖୁଅଛ ତାର ପାଶେ
କୁଳଶେଖର ବୋଲି ସେ ରାଜା ନାମ ଭାଗେ ।
ଏ ରାଜ୍ୟର ରାଜ୍ୟେ ଅଛି ଷୋଅଳ ଶାସନ
ପଢ଼ନ୍ତି ବାର ସହସ୍ର ବିପ୍ରେ ବେଦମାନ ।
ରାଜାଙ୍କର ଦେବାର୍ଚ୍ଚନ ସମୟକୁ ଜଗି
ଟେକନ୍ତି ବେଦ ସୁସ୍ୱରେ ଯେ ରୂପେ ଯେ ଭଙ୍ଗୀ
ବ୍ରାହ୍ମଣ ସର୍ବେ ପଢ଼ନ୍ତି ବସି ବେଦ ଘୋଷି
ନ ଲାଗେ ଦୋଷ ଶୁଣିଲେ ଶୂଦ୍ର ତହିଁ ବସି ।
ରାଜା କ୍ଷତ୍ରୀକୁଳକୁ ଅଟେ ବିଷ୍ଣୁ ଅଂଶ
ତେଣୁ ସେ ବିପ୍ର ଗଢ଼ନ୍ତି ବସି ବେଦଘୋଷ ।
ଏରୂପେ କେତେକ ଦିନ ଯାନ୍ତେ ଦିବା ନିଶି
ପୁଷ୍ୟାଅଭିଷେକ କାଳ ହୋଇଲାକ ଆସି ।
ସେଦିନ ପଇତାଲାଗି ହୋନ୍ତେ ମହାରାଜା
ମନ୍ତ୍ରିଲେ ଯଜ୍ଞୋପବୀତ ମନ୍ତ୍ରେ ସର୍ବଦ୍ୱିଜା ।
ଆସନ ଯେ ଋଷିଛନ୍ଦ ଧ୍ୟାନ ମନ୍ତ୍ର ଚାରି
ଚାରିମନ୍ତ୍ର ପଢ଼ି ପଇତାକୁ କରେ ଧରି ।
ତିନିଗୋଟି ମନ୍ତ୍ର ଆଉ ନ ପଢ଼ନ୍ତେ କେହି
ବସ୍ୱାୟନ ବାଜପେୟ ନ ପାରିଲେ ସହି ।
ବୋଇଲେକ ମନ୍ତ୍ର କେହି ନପଢ଼ ବିଚାରି
ପ୍ରମାଣ ଏକଥା ବୋଲି ମନରେ ବିଚାରି ।
ଅଙ୍ଗନ୍ୟାସ ନ କଲେ ଯେ ଅଙ୍ଗ ନୋହେ ଶୁଦ୍ଧି
କରନ୍ୟାସ ନ କଲେଟି ଆତ୍ମା ଯେ ଅମୋଧି ।
ଜୀବନ୍ୟାସ ନ କଲେ ଯେ ଯଜ୍ଞୋପବୀତକୁ
ଅମେଧ କରି ଲେଖିଛି ବେଦେ ପୁଣ ତାକୁ ।
ପଇତାର ଆତ୍ମା ଚିହ୍ନି ନ ପାରିବା ଘେନି
ତେଣୁ ବିପ୍ରଙ୍କ ବିଫଳ ହୋଏ ବେଦଧ୍ୱନି ।
ଏତେକ ପାଞ୍ଚ ବ୍ରାହ୍ମଣ ଗୋସାଇଁଏ ବସି
ବାତ୍ସାୟନ ବାଜପେୟ ସକଳ ପ୍ରଶଂସି ।
ବୋଇଲେ କାଢ଼ିଲେ କେଡ଼େ ସନ୍ଧି ବାତ୍ସାୟନ
ଯଜ୍ଞୋପବୀତ ମନ୍ତ୍ର ଏ ଅଟଇ ପ୍ରଧାନ ।
ଯେ ବିପ୍ର ବୋଲଇ ଏହା ବିପ୍ର ତାଙ୍କୁ ବୋଲି
ବେଦର ତତ୍ତ୍ୱ ମନ୍ତ୍ର ଏ ଅଟଇ କହିଲି ।
ଏରୂପେ ବିପ୍ର କହନ୍ତେ ମିଶ୍ରଙ୍କୁ ଯେ ସ୍ୱଚ୍ଛ
ଭଟ୍ଟମିଶ୍ର ବୋଇଲେ ଏକଥା ନୋହେ ମିଛ ।
ବାତ୍ସାୟନ ବାଜପେୟ ବାକ୍ୟ ଅଟେ ସିଦ୍ଧି
ଜୀବନ୍ୟାସ ମନ୍ତ୍ର କଥା କହିଲେ ପ୍ରସିଦ୍ଧି ।
ଅଙ୍ଗନ୍ୟାସ କରନ୍ୟାସ ମୋତେ ଜଣାଗଲା
ଜୀବନ୍ୟାସ ମନ୍ତ୍ର ଏକ ସଂଶୟ ଲାଗିଲା ।
ବାତ୍ସାୟନ ଆପଣଙ୍କୁ ପୁଛିବା ଏ ତତ୍ତ୍ୱ
ସେହି ଏକା ସନ୍ଧି ଫେଡ଼ି କହିବେ ଆମ୍ଭନ୍ତ ।
ଏରୂପେ ପାଞ୍ଚକରି ଶ୍ରୀବାସ ଭଟ୍ଟ ମିଶ୍ରେ
ବାଜପେୟ ପାଶେ ବସି ପୁଛେ ଜୀବନ୍ୟାସେ ।
ବୋଲନ୍ତି ଆପଣ ଏବେ ଅବଧାନ କର
ଜୀବନ୍ୟାସ ମନ୍ତ୍ରଗୋଟି କରାଅ ଗୋଚର ।
ଶୁଣି ବାଜପେୟ ଆନନ୍ଦିତ ମନ ହେଲେ
ପଇତା ମନ୍ତ୍ରର ସନ୍ଧି ସବୁ କହିଦେଲେ ।
ବୋଇଲେ ପଇତା ମନ୍ତ୍ର କରରେ ଧରିବ
ମଙ୍ଗଳାଷ୍ଟକ ପଢ଼ିଣ ଦେହେ ପୁରାଇବ ।
ପୂର୍ବଗଣ୍ଠି ଯେ ନୂତନ ବେନିଗଣ୍ଠି ଧରି
ବସିବ ଯେ ବ୍ରହ୍ମ ପୁରୁଷକୁ ଧ୍ୟାନ କରି ।
ଚାରିଗଣ୍ଠି ଯୁକ୍ତକରି ଜୀବନ୍ୟାସ ମନ୍ତ୍ରେ
ପୂର୍ବ ପଇତା ଥୋଇବା ଆତ୍ମା ଯଜ୍ଞସୂତ୍ରେ ।
ତେବେ ନୂତନ ପଇତା ଶୁଦ୍ଧ ଜାଣ ହେବ
ପୂର୍ବ ପଇତାକୁ ନିଜ କାନ୍ଧୁ କାଢ଼ିଦେବ ।
ଏତେ ବୋଲି ଜୀବନ୍ୟାସ ମନ୍ତ୍ର କହିଦେଲେ
ମନ୍ତ୍ରକୁ ଶୁଣି ସନ୍ତୋଷ ହୋଇ ବିପ୍ର ଗଲେ ।
ବିପ୍ର ହର୍ଷ ଦେଖି କୁଳଶେଖର ଯେ ରାଜା
ପଇତା ଶୁଦ୍ଧ ବୁଝିଣ ବିପ୍ରେ କଲେ ପୂଜା ।
ପୁଷ୍ୟା ଅଭିଷେକ ହୋଇ ଘେନିଲେ ପଇତା
ଏରୂପେ ସେ ରାଜା ଜାଣ ଅଟେ ବେଦଶ୍ରୋତା
ଏରୂପେ ଅଛନ୍ତି ଶ୍ୱେତଦ୍ୱୀପେ ଯେତେ ନୃପ
କହିଲେ ଥୋକେ ଅଛନ୍ତି ଆଉ ଅପର୍ଯ୍ୟାପ୍ତ ।
ଶୁଣ ଆଗୋ ଜମ୍ବୁଦ୍ୱୀପ ନୃପ କିଛି ଏବେ
ଅଛନ୍ତି ଏ ଚିତ୍ରପଟେ ବସି ରାଜା ସର୍ବେ ।
ଅବନ୍ତୀ ନଗ୍ର ରାଜା ଏ ଅଟେ ସୁରସେନ
ପାଞ୍ଚକ୍ଷଉଣୀ ଏହାର ଥାଟବଳ ସୈନ୍ୟ ।

କଞ୍ଚନ ନଗ୍ର ରାଜା ଏ ଅଟେ କାମେଶ୍ୱର
ଏହାର ଥାଟ ସଇନ୍ୟ ଚଉଦ ସାଗର ।
ଭୈରବ ନଗ୍ର ରାଜା ଏ ଅଟେ ଭଦ୍ରସେନ
ପାଦେ ଚାଲନ୍ତେ ଯେ ପଦ୍ମ ହୁଏ ଉତପନ୍ନ ।
ସୁରଭି ଦେଶ ରାଜାଏ ଅଟେ ସୁରଜିତ
ଏହାର ସଇନ୍ୟ ଜାଣ ପଞ୍ଚାଶ ମର୍ଭୁତ ।
ମାଳବ ଦେଶର ରାଜା ଅଟେ ମହୀକର୍ଣ୍ଣ
ଏହାର ଅଟନ୍ତି ତିନିପଦ୍ମ ଥାଟ ସୈନ୍ୟ ।
ବକ୍ରବେଣୀ ଦେଶର ଏ ସୁରସେନ ରାୟ
ଏହାର ଅଛନ୍ତି ସୈନ୍ୟ ଜାଣ ଅପ୍ରମେୟ ।
କୁଶନଗ୍ର ରାଜା ଅଟେ ଏ ପ୍ରତାପେଶ୍ୱର
ଏହାର ସୈନ୍ୟ ଅଛନ୍ତି ସପତ ସାଗର ।
ଈଶାନଦେଶର ଏହୁ ଯାମନିକା ରାଜା
ଏହାଙ୍କର ବେନି ଶତ କୋଟିଏ ଭାରିଯା ।
ମଳୟ ଦେଶେ ସୁଜାଣେଶ୍ୱର ଏହୁ ରାୟେ
ଏହାର ଅଠରକୋଟି ଅଛନ୍ତି ତନୟେ ।
ଉତ୍ତର କୋଶଳରେ ଏ ଅଟେ ମାନସିଂହ
ନ ପୂଜଇ ଆନ ମୂର୍ତ୍ତି ରାଜେ ବିଷ୍ଣୁ ଅଙ୍ଗ ।
ଅନଙ୍ଗ ଦେଶରେ ଏହୁ ସୁରଙ୍ଗ ନବର
ସକଳ ଶାସ୍ତ୍ରେ ଏ ଜିତା ଅଟେ ଜ୍ଞାନସାର ।
ହେମପୁର ରାଜା ଏହୁ ଅଟେ ଜ୍ଞାନଲାଭ
ଶକ୍ତିମାର୍ଗେ ବଢ଼ିଣଏ ସେବେ ବାସୁଦେବ ।
ଶିବନଗ୍ରେ ରାଜା ଏହୁ ଅଟେ ଶମ୍ଭୁରାଣ
ବିଭୂତ ଭୂଷଣ ହୋଇଥାଏ ସର୍ବାଙ୍ଗେଣ ।
ଈଶ୍ୱର ସେବି ମଣୋହି କରେ ଏହୁ ନିତ୍ୟ
ସକଳ ଦିନେ ଖଆଇ ଦିଏ ସଦାବର୍ତ୍ତ ।
ନୀଳେନ୍ଦ୍ରି ଦେଶ ରାଜା ଏ ଅଟେ ନୀଳକଣ୍ଠ
ଏହାର ଯେ ତିନିପଦ୍ମ ଅଟେ ଗୋରୁଗୋଷ୍ଠ ।
ଯମପୁର ଦେଶର ଏ ଅଟେ ଧର୍ମରାଜା
ଧର୍ମ ନ୍ୟାୟକରି ଏହୁ ପାଳେ ଜନ ପ୍ରଜା ।
ଆବର ଯେ ଦୈତ୍ୟରାଜା ଅଛି ଜଣେ ଦେଖ
ଏହାକୁ ଜନମ କରିଛନ୍ତି ଚତୁର୍ମୁଖ ।
ବଡ଼ ପ୍ରତାପୀ କରିଣ ଧାତା ଜାତକଲେ
ସୁରଦୈତ୍ୟ ବୋଲି ଏହା ନାମ ଗୋଟି ଦେଲେ
କନକାବତୀ ନଗ୍ରେ ଏ ଅଟେ ଦଣ୍ଡଧାରୀ
ତେତିଶକୋଟି ରାଣୀ ଯେ ଏହା ମନୋହାରୀ ।
ସତରଲକ୍ଷ କୁମର ନବଲକ୍ଷ ନାତି
ପୃଥ୍ୱୀକି ବଇରୀ ହୋଇଅଛି ଉତପତ୍ତି ।

ଏହା ଥାଟ ସଇନ୍ୟ ଅଛନ୍ତି ଗୋ ଯେତେ
ଜଗତେ ପୁରିଛି ଗଣି କହିବି ବା କେତେ ।
ନିତିଦିନଯାଏ ବସିକରି ଲେଖାକଲେ
ତେବେ ଅସୁରର ସୈନ୍ୟ ନ ସରିବ ଭଲେ ।
ଏହାର ପାଇଁ ନୃସିଂହ ପ୍ରଭୁ ନାରାୟଣ
ବଦରିକା ଆଶ୍ରମରେ ହେଲେଣି ଜନମ ।
ଅନେକ ଲୀଳା କରିଣ ବଦରିକା ପୁରେ
ମହାରାଜା ହୋଇ ଶାଢ଼ୀ ଘେନିଲେ ମଥାରେ ।
ଏରୂପେ କହିବି କେତେ ରାଜା ଜମ୍ବୁଦ୍ୱୀପେ
ଥୋକାଏ ମୁଁ କହିଲଇଁ ବେଳ ଚାହିଁ ଆପେ ।
ଗୃହକୁ ଚାଲଯିବା ଗୋ ହେଉଛି ଉଛୁର
ଏହା ଶୁଣି ବସି ଲକ୍ଷ୍ମୀ ପୁଛିଲେ ଆବର ।
ବୋଇଲେ ତୁ କହିଲୁ ଯେ ଜନ୍ମିଲେ ନୃସିଂହ
କାହାର ହୋଇଲେ ପୁତ୍ର ଏହା ମୋତେ କହ
ହଂସିନୀ ବୋଇଲେ ତେବେ ଶୁଣ କମଳିନୀ
ପୁଛିଲ ନୃସିଂହଅବତାର ଯେବେ ପୁଣି ।
ସୂର୍ଯ୍ୟବଂଶେ ଜାତ କୃଷ୍ଣବଲ୍ଲଭ ବ୍ରାହ୍ମଣ
ତାହାଙ୍କ ବୀର୍ଯ୍ୟେ ଜନ୍ମିଲେ ଆସି ନାରାୟଣ ।
ସୁବେଦୀ ବ୍ରାହ୍ମଣ ସେହୁ ଅଟନ୍ତି ନୃପତି
କାଣ୍ୱଶାଖା ଯଜୁର୍ବେଦୀ ସେ ବ୍ରାହ୍ମଣଗୋତ୍ରୀ ।
ଯେଣୁ ବ୍ରାହ୍ମଣ ଅଠରବର୍ଣ୍ଣେ ଅଟେ ରାଜା
ତେଣୁ ସର୍ବେ ବ୍ରାହ୍ମଣଙ୍କୁ କରୁଛନ୍ତି ପୂଜା ।
କୃଷ୍ଣବଲ୍ଲଭ ରାଜା ଯେ ବଦରିକାଶ୍ରମେ
ପାଳୁଛନ୍ତି ଲୋକବର୍ଗ ରାଜାକୁଳ ଧର୍ମେ ।
ସେ ରାଜାର ପତ୍ନୀ ନାମ ଅଟେ ଭଗବତୀ
ଅଯୋନି ସମ୍ଭୂତା ଅଗ୍ନିମଧ୍ୟୁ ଉତପତି ।
ତାହାର ଗର୍ଭରୁ ଜନ୍ମିଛନ୍ତି ପୁତ୍ର ଦୁଇ
ଜ୍ୟେଷ୍ଠ ନୃସିଂହ କନିଷ୍ଠ ପୁତ୍ର ଶେଷ ହୋଇ ।
ଶ୍ରୀନୃସିଂହ ମହାପ୍ରଭୁ ଚତୁର୍ଦ୍ଧା ରୂପରେ
ହୋଇଛନ୍ତି ଅବତାର ବଦରିକା ପୁରେ ।
ଦେଖ ଦେଖ କମଳା ଗୋ ନୃସିଂହ ପ୍ରଭୁଙ୍କୁ
ବସିଛନ୍ତି ବେନି ଭାଇ ଘେନି ପିଅରଙ୍କୁ ।
କୃଷ୍ଣବଲ୍ଲଭର କୋଳେ ଛନ୍ତି ବେନି ଭାଇ
ଭାବଗ୍ରାହୀ ପାଶେ ବସିଅଛନ୍ତି ଶେଷହିଁ ।
ଲାବଣ୍ୟ ତନୁ ଅମୃତ ପ୍ରାୟେ ବେନି ଦୃଷ୍ଟି
ଶୋଭା ପାଉଛି ଶ୍ରୀପଦ୍ମମୁଖ ନବସୃଷ୍ଟି ।
ଶଙ୍ଖଚକ୍ର ଗଦାପଦ୍ମ ଶୋହେ ଚାରିକର
ମଥାରେ ଶୋହେ ମୁକୁଟ ମଣି ରତ୍ନହାର ।

ନାସିକାରୁ କେଶଯାଏ ଶୋଭାପାଏ ଚିତା
କପାଳରେ ଝାଲିକମ ସୁବର୍ଣ୍ଣ ପଇତା ।
ମକର କୁଣ୍ଡଳ ବେନି ଶ୍ରବଣରେ ଶୋହେ
କଣ୍ଠରେ ବିରାଜେ ନବରତ୍ନ ସୂର୍ଯ୍ୟ ପ୍ରାୟେ ।
କନ୍ଧରେ ପଇତା ଯଜ୍ଞସୂତ୍ର ନବଗୁଣ
ଆନକୁ ନ ଦିଶେ ଦିଶେ ଭକ୍ତକୁ ସେ ପୁଣ ।
ଶ୍ରୀହୃଦରେ କଉସ୍ତୁଭମଣି ବିରାଜଇ
ତହିଁକି ରବି କିରଣ କୋଟି ନ ଘଟଇ ।
ଦେହେ ଅଗୁରୁଚନ୍ଦନ ହୋଇଛନ୍ତି ବୋଳି
କଟିରେ ଯେ ପୀତାମ୍ବର ପାଟ ଦିଶେ ଝଳି ।
ବାହୁବଳେ ବୀରବାନା ଉଡ଼େ ଫରଫର
ହୃଦେ ବିରାଜେ ଶ୍ରୀବତ୍ସ ଚିହ୍ନ ତିନିପୁର ।
ପାଟଝରୀ ଅଣ୍ଟାରେ ଯେ ଶୋହେ ସୁନାସୂତା
ପାଦପଦ୍ମ ହୀରା ଲାଗି କଠାଉ ମୁକୁତା ।
ଗରୁଡ଼ବାହନେ ବସିଛନ୍ତି ଭାବଗ୍ରାହୀ
ମୁରକୁ ମାରି ମୁରାରୀ ନାମ ଯିବେ ବହି ।
ଏହୁରୂପେ ଦେଖି ନୃସିଂହଙ୍କୁ ଚିତ୍ରପଟେ
ତେତେବେଳେ ମହାଲକ୍ଷ୍ମୀ ଉଠିଲେ ଉଚ୍ଚାଟେ
ହଂସିନୀକି ବୋଇଲେ ଗୋ ଶୁଣ ମହାମୁନି
ତୁମୋତେ ଯେତେ ରାଜା ଗୋ ଦେଖାଇଲୁ ଆଣି
ସବୁ ରାଜାପରେ ଏ ନୃସିଂହ ଚକ୍ରବର୍ତ୍ତୀ
ସାକ୍ଷାତେ ପରମବ୍ରହ୍ମ ଅଟନ୍ତି ମୋ ପତି ।
ଏବେ ଆସି ମନ ମୋର ହୋଇଲା ଦଇର୍ଯ୍ୟ
ନିସ୍ତରିଲି ନିସ୍ତରିଲି ଦେଖି ଚତୁର୍ଭୁଜ ।
ଚିତ୍ରପଟେ ଦେଖାଇଲ ଯେତେ ନୃପବର
ଏମାନେ ଅଟନ୍ତି ମୋର ସ୍ୱାମୀ ପରିଚାର ।
ଏମାନେ ଭୃତ୍ୟର ଭୃତ୍ୟ ପ୍ରାୟେ ମୋତେ ଦିଶି
ଲାଖବିନ୍ଧି ଏକା ମୋତେ ନେବେ ବ୍ରହ୍ମରାଶି ।
ହଂସିନୀ ଏବେ ଗୃହକୁ ବେଗେ ଚାଲଯିବା
ପିତାମାତାଙ୍କୁ ଜଣାଇ ଲାଖ ନିର୍ଭାଇବା ।
ଶୁଣିଣ ହଂସିନୀ ସଖି ହେଲା ବଡ଼ ଶ୍ରଦ୍ଧା
ପାଞ୍ଚେ ଲକ୍ଷ୍ମୀଙ୍କି ଲାଗିଲା ଏବେ କାମବାଧା ।
ଉତ୍ତମ ହେଲା କହିବି ଯାଇ ରାଣୀ ଆଗେ
ଏତେକ ପାଞ୍ଚି ଲକ୍ଷ୍ମୀଙ୍କି ଘେନିଗଲା ସଙ୍ଗେ ।
ଯେ ଯାହା ପୁରେ ମିଳିଲେଯାଇଁ ସର୍ବବାଳୀ
ନୀରବତୀ ରାଣୀ ଆଗେ କହେ ବେଗେ ମିଳି ।
କରପତ୍ର ଯୋଡ଼ି ରାଣୀ ଆଗେ କହେ ବସି
ମହାଲକ୍ଷ୍ମୀ କଥା କହେ ହଂସିନୀ ଯେ ହସି ।

ବୋଇଲେ ଗୋ ମହାଦେଈ ଶୁଣ ପୁଣ୍ୟବାଣୀ
ବିଭାହେବାକୁ ଯେ ମନକଲେ କମଳିନୀ ।
ଫୁଲତୋଟାରେ କହିଲେ ମୋତେ ଆଜ ଫେଡ଼ି
ବୋଇଲେ ରହିବା କେତେ ହୋଇ ଅଭିଆଡ଼ି ।
ବିଭା ନୋହିଣ ହୋଇବା ଯେବେ ରଜୋବତୀ
ପିତାମାତାଙ୍କୁ ସେ ଦୋଷ ବଂଶ ଅପକୀର୍ତ୍ତି ।
ଯୁବତୀକୁଳକୁ ଏହା ଅଟେ ବିଡ଼ମ୍ବନ
ତେଣୁକରି ରଜୋବତୀ ନୁହଇ ମୁଁ ଜାଣ ।
ସାତ ବରଷଠାରୁ ଯେ ନବବର୍ଷଯାଏ
ବିଭା ନ କଲେ ସେ କନ୍ୟା ଦୂଷଣୀୟ ହୁଏ ।
ସପ୍ତଅଷ୍ଟ ନବଦିନେ ନ କରେ ଯେ ବିଭା
ସେ ପିତାମାତାଙ୍କୁ ଜାଣ ପଶୁରେ ଲେଖିବା ।
ଏକାଦଶ ବରଷେ ଯେ ବିଭାକରେ କନ୍ୟା
ରଜସ୍ୱଳା ସ୍ତିରୀ ତୁଲେ ତାହାକୁ ଗଣିମା ।
ବାରବରଷ କନ୍ୟାକୁ ବାରଙ୍ଗନା କହି
ଜାଣୁ ଜାଣୁ କି ବୋଲି ସେ ଘରେ ଛନ୍ତି ଶୋଇ ।
ଏକାଦଶ ବରଷରେ କନ୍ୟା ବିଭାହେଲେ
ପିତାମାତା ଜାଣି ନ ପାରନ୍ତି ପିଣ୍ଡଦେଲେ ।
ପୁରାଣେ ତହିଁରେ ଯେତେ ଦୋଷ ଅଛି ଲେଖି
ଜାଣୁଜାଣୁ ଅଛନ୍ତି ସେ ମୋତେ କିମ୍ପା ରଖି ।
ମାତାକୁ କହ କରନ୍ତୁ ମୋତେ ବେଗେ ବିଭା
ଶୁଣି ନୀରବତୀ ରାଣୀ କାମୋଡ଼ିଲେ ଜିହ୍ୱା ।
ସତ୍ୟ ଏକଥା ବୋଲିଣ ପାଞ୍ଚି ମହାଦେଈ
ବରୁଣ ରାଜାର ଆଗେ କହିଲେକ ଯାଇ ।
ବୋଇଲେ ସ୍ୱାମୀ ଶୁଣିମା ଏବେ କଥାରସ
ମହାଲକ୍ଷ୍ମୀଙ୍କି କରିବା ବେଗେ ବିଭା ଆସ ।
ବିଷ୍ଣୁ ବିନା ଲକ୍ଷ୍ମୀଙ୍କି ନପାରେ ଆନ ଛୁଇଁ
ହରିଙ୍କି ଚିନ୍ତାକର ଆସନ୍ତୁ ବେଗ ହୋଇ ।
ଲକ୍ଷ୍ମୀଙ୍କି ବିଭାହୋଇଣ କରନ୍ତୁ ସେ ଭୋଗ
ଆନ ଛାର ଛୁଇଁ କେ ନ ପାରେ ଲକ୍ଷ୍ମୀ ଅଙ୍ଗ ।
କମଳାରୂପ ଦେଖି ମୁଁ ହେଉଛି କାତର
ଦିନୁଦିନୁ ନୂଆନୂଆ ଦିଶେ ଶୋଭା ତାର ।
ଏ ସୌନ୍ଦର୍ଯ୍ୟରୂପା ଦୁହିତାକୁ ଘରେ ରଖି
ବର ଖଞ୍ଜି ନ କରିଣ ରହିଛ କାହିଁକି ।
ନୀରସଲୋକେ ହେଲେ ଏକଥା କରି ନାହିଁ
ତୁମ୍ଭେ ବୋଲି ରହିଅଛ କନ୍ୟା ଉପୁଜଇ ।
ବଡ଼ଲୋକ ହେବାରୁ ଯେ ନାହିଁ କିଛି ଭୟେ
ମୂଢ଼ ରାଢ଼ଲୋକର ଯେ ମନେ ଭୟ ହୋଏ ।

ତଥାପି ଜୀବିତେ ଯାର ପିତାମାତା ଥାନ୍ତି
ସପ୍ତ ବରଷରୁ ବର ଖଞ୍ଜିଣ ରଖନ୍ତି ।
ତୁମ୍ଭେ ତ ବିଞ୍ଜ କଶ୍ୟପ ଋଷିଙ୍କର ସୁତ
ଆଦ୍ୟରୁ ପୂଜନ୍ତି ତୁମ୍ଭ ନାମ ପୁରୁହୂତ ।
ତୁମ୍ଭ ଜନନୀ ପରା ଅଦିତି ଠାକୁରାଣୀ
କି ବୋଲି ହେଳାରେ ରଖି ଛନ୍ତି ନାତୁଣୀ ।
ଲକ୍ଷ୍ମୀ ପରା ଦୁହିତାକୁ ଘରେ ରଖିଅଛ
ତୁମ୍ଭର ଲାଖ ଲାଗୁଛି ହେଲେ ମୋତେ ମିଛ ।
ଶୁଣିଣ ବରୁଣରାଜା ହୋଇ ହସ ହସ
ବୋଇଲେ ସଖୀରେ ଆଉ ନ ହୁଅ ହରଷ ।
ଏହିକ୍ଷଣି ଲାଖନିଭା ହେବ ଦେଖ ଆଜ
ରାଜାଙ୍କ ମଧ୍ୟେ କରିବେ ବିଜେ ଚତୁର୍ଭୁଜ ।
ଶ୍ରୀମୁଖଦେଖି ଆମ୍ଭର ବଂଶ ଯିବେ ତରି
ଲାଖବିନ୍ଧିଣ ଲକ୍ଷ୍ମୀଙ୍କି ବିଭାହେବେ ହରି ।
ଏତେକ କିହ ବରୁଣ କଲେ ଯାଇ ସଭା
ପୂର୍ବର କଥା ପାଞ୍ଚିଣ ଲାଖ କଲେ ନିର୍ଭା ।
ପୋତିଲେ ସପତ ତାଳ ଉଚ୍ଚେ ସ୍ତମ୍ଭ
ତହିଁ ଉପରେ ଚକ୍ରକୁ ସ୍ଥାପିକରି ଦମ୍ଭ ।
ପବନାବଳୀ ସେ ଚକ୍ର ନାମ ଗୋଟି ଅଟେ
କୁରାଳଚକ୍ର ପ୍ରାୟେକ ବୁଲଇ ନିରାଟେ ।
ତହିଁଉତ୍ତାରୁ ଗ୍ରହଙ୍କୁ ଚିନ୍ତିଲେ ବରୁଣ
ବୋଇଲେ ଭେଟିବି ତୁମ୍ଭ ଘେନି ନାରାୟଣ ।
ମୃଗ ହୋଇ ତୁମ୍ଭେମାନେ ଚକ୍ରେ ବସ ଆସି
ପୂର୍ବେ କହିଥିଲେ ଗୁରୁ ଏକଥା ବିଶେଷି ।
ଏରୂପେ ମନରେ ପାଞ୍ଚି ଚିନ୍ତିଲେ ବରୁଣ
ତତକ୍ଷଣେ ନବଗ୍ରହ ହେଲେ ମୃଗ ଜାଣ ।
କହୁଛନ୍ତି ବେଦବ୍ରହ୍ମା ଶୁଣ ତପଶୀଳ ।
ରୋମାଞ୍ଚ ଋଷିଙ୍କ ଶାପ ନୁହଇ ବିଫଳ ।
ଯେରୂପେ ହୋଇଲେ ମୃଗ କହିବା ତା ଶୁଣ
ଏକା ମୃଗଗୋଟି ଏକ ହେଲେ ଯେମନ୍ତେଣ ।
କେତୁ ମଙ୍ଗଳ ଆବର ଶନିଶ୍ଚର ରାହୁ
ମୃଗଙ୍କର ଚାରିପାଦ ହେଲେ ଜାଣ ଏହୁ ।
ବୁଧଗ୍ରହ ଯେ ଶରୀର ଗୋଟିକି ବହିଲେ
ଚନ୍ଦ୍ର ରବି ଦୁହେଁ ଜାଣ ନେତ୍ର ପ୍ରକାଶିଲେ ।
ଶ୍ରବଣ ବେନି ହୋଇଲେ ଶୁକ୍ର ବୃହସ୍ପତି
ବରୁଣ ଚିନ୍ତିବାରୁ ଏ ହେଲେ ମୃଗମୂର୍ତ୍ତି ।
ବସିଲେ ଲାଖର ସ୍ତମ୍ଭ ଚକ୍ରେ ହୋଇ ମୃଗ
ଦେଖି ଖୋଜିଲେ ବରୁଣ ରାଜା ବିଭା ଯୋଗ ।

ନାରଦ ମୁନିଙ୍କୁ ଚିନ୍ତାକଲେ ଜଳସାଇଁ
ଜାଣିଣ ଆସିଲେ ମହାଋଷି ଶୀଘ୍ର ହୋଇ ।
ମୁନିଙ୍କୁ ଦେଖି ଆସନେ ରାଜା ବସାଇଲେ
ପାଦ୍ୟ ଅର୍ଘ୍ୟଦେଇ ଦଣ୍ଡ ପ୍ରଣାମ ଯେ କଲେ ।
ନାରଦ ଋଷି କଲ୍ୟାଣ ବାଞ୍ଛା ମନେକରି
ବସିଲେ ବରୁଣଙ୍କୁ ସେ କୁଶଳ ପଚାରି ।
ବୋଇଲେ ରାଜା ହୋ ମୋତେ କିମ୍ପାକଲ ଚିନ୍ତା
କହ କୁଶଳ ତୁମ୍ଭର ଶୁଣିବା ବ୍ୟବସ୍ଥା ।
ବରୁଣ ବୋଇଲେ ମୁନି ତୁମ୍ଭର ପ୍ରସାଦେ
ଯାବତ କୁଶଳକରି ଅଛନ୍ତି ଗୋବିନ୍ଦେ ।
ହୋଇଛି ଗୋଟିଏ କଥା ଏହା ବିଡ଼ମ୍ବନ
ଶ୍ରୀମହାଲକ୍ଷ୍ମୀଙ୍କୁ ବିଭା କରି ନ ପାରିଣ
ଅପୂର୍ବ କଥାଏ ମୋତେ ଥିଲେ ଗୁରୁ କହି
ପଚାରିଲି ଲକ୍ଷ୍ମୀଙ୍କର ଜନ୍ମକାଳେ ମୁହିଁ ।
ବୋଇଲି ଲକ୍ଷ୍ମୀଙ୍କି ବିଭା କରିବି କାହାକୁ
ସେ ବୋଇଲେ କର ବିଭା ନୃସିଂହ ପ୍ରଭୁଙ୍କୁ ।
ହେଲେଣି ବଦରିଦେଶେ ହରି ଅବତାର
ପ୍ରତ୍ୟକ୍ଷେ ନାରାୟଣ ଯେ ବ୍ରହ୍ମାଣ୍ଡ ଠାକୁର ।
ମୁଁ ବୋଇଲି ବ୍ରହ୍ମାଣ୍ଡ ଠାକୁର ଯେବେ ହରି
ସେ ତେବେ ସକଳ ଅଟେ ଅଛନ୍ତି ନା ପୁରି
ସବୁ ଆତ୍ମାଯାକ ସେହି ହରି ନୁହନ୍ତିକି
ହରିଙ୍କୁ ନ ଚିହ୍ନି କେହ୍ନେ ଦେବି ମୁଁ ଲକ୍ଷ୍ମୀଙ୍କି ।
ମାନବ ବିଷ୍ଣୁଙ୍କୁ ଦେଲା ବୋଲିବେ ସରବେ
ଏଣୁହୋ ଚିହ୍ନି ବା କହ କେହ୍ନେ ବାସୁଦେବ ।
ପ୍ରଭୁଙ୍କୁ ନ ଦେଖିଲେ ମୁଁ କେବେ ଦେବି ନାହିଁ
ଘରେ ମୋର ମହାଲକ୍ଷ୍ମୀ ଥିବେ ପଛେ ରହି ।
ଗୁରୁ ବୋଇଲେ ସଂଶୟ ମନେ ଯେବେ କଲ
କରି ପାରିବ କି ତୁମ୍ଭେ କିହବା ଯେ ବୋଲ ।
ଦେବତାଙ୍କ ଲାଖ ସେହୁ ହୋଇଛି ଅପୂର୍ବ
ତାକୁ ଜିଣିବାକୁ ବ୍ରହ୍ମାଣ୍ଡେ କେ ନାହିଁ ଧ୍ରୁବ ।
କେବଳ ପାରନ୍ତି ହରି ଏକା ତାକୁ ସନ୍ଧି
ଆନକୁ ଅଜଣା ଅଟେ ଏହି ଲାଖସନ୍ଧି ।
ଏ ଲାଖ ବିଷ୍ଣୁଙ୍କ ପାଇଁ ବିଧାତା ସର୍ଜିଛି
ତୁ ମାତ୍ର ଆଣିବୁ ସାତ ଦିଗୁଁ ରାଜା ବାଛି ।
ରାଜାଙ୍କ ସଙ୍ଗରେ ଥିବେ ଶ୍ରୀନୃସିଂହ ଆସି
ରାଜାଏ ଲାଖ ବିନ୍ଧିବେ ସେହୁ ଥିବେ ବସି ।
ସେ ଲାଖକୁ ବିନ୍ଧି କେହି ନପାରନ୍ତେ ଜାଣ
ତେତେବେଳେ ସେ ସଭାରୁ ଉଠି ନାରାୟଣ ।

ଲାଖ ବିନ୍ଧି ଶ୍ରୀନୃସିଂହ ଲକ୍ଷ୍ମୀ ବିଭାହେବେ
ଶୁଣନ୍ତି ସାଗର କହନ୍ତି ଯେ ଗୁରୁଦେବେ ।
ଗୃହକୁ ନେଇଣ ଏବେ ରଖ ଏହି ଲାଖ
ତୁମ୍ଭ ମନ ହେଲେ ବରିବ ଯେ ରାଜାଯାକ ।
ଏରୂପେ ଯେ ବୃହସ୍ପତି ଛନ୍ତି ମୋତେ କହି
ତେଣୁ ଯେ ତୁମ୍ଭଙ୍କୁ ଜାଣ ସୁମରିଲି ମୁହିଁ ।
ପଞ୍ଚଦଶ ଦିନ ଆଉ ଅଛି ବିଭାଯୋଗ
କିରୂପେ ବରି ଆଣିବା କହ ରାଜାବର୍ଗ ।
ଆପଣ ଯେବେ ରଖିବେ ମୋର ସତ୍ୟବାକ୍ୟ
ଆସିବେ ସପତଦିନ ମଧ୍ୟେ ରାଜାଯାକ ।
ଆବର ଯେ ବ୍ରହ୍ମା ବିଷ୍ଣୁ ଶିବ ସହିତେଣ
ତେତିଶକୋଟି ଦେବତା ମିଳିବେ ଆସିଣ ।
ଆବର ଅଠାଶୀସସ୍ର ଋଷିଯାକ ମଧ
ଏହାଙ୍କୁ ବରଣ କରିଥିବଟି ନାରଦ ।
ତାର ବାର ଯୋଗ ଚନ୍ଦ୍ର ଦଶଦିଗପାଳ
ଏମାନଙ୍କୁ ବରି ମଧ ଥିବ ତପଶୀଳ ।
ଶୁଣିଣ ନାରଦ ଋଷି ହସ ହସ ହେଲେ
ଏଥକୁ କେତେହେଁ ରାଜା ଭାଳୁଛ ବୋଇଲେ ।
ବିଭାର ଯୋଗାଡ଼ମାନ କର ଏବେ ନିର୍ଭା
ପାଞ୍ଚଦିନରେ ତୁମ୍ଭଙ୍କୁ ଖବର କହିବା ।
ସମସ୍ତଙ୍କୁ ବରି ଆସୁଅଛି ଜାଣ ମୁହିଁ
ଏତେ କହିଣ ନାରଦ ଗଲେ ଶୀଘ୍ର ହୋଇ
ମନପବନ ଦଣ୍ଡରେ ବସି କଲେ ବିଜେ
ମିଳିଲେ ଆଦ୍ୟେ ଶାକଲ୍ୟଦ୍ୱୀପ ରାଜା ରାଜ୍ୟେ
ଘଡ଼ିକେ ଭିତରେ ବୁଲି ସକଳ ରାଜାଙ୍କୁ
ନିମନ୍ତ୍ରଣମାନ ଦେଇ କହନ୍ତି ତାହାଙ୍କୁ ।
ବୋଲନ୍ତି ବରୁଣ ବରିଅଛି ସ୍ୱୟମ୍ବର
ସର୍ବ ରାଜାଏ ତାହାର ପୁରେ ବିଜେକର ।
ମହା ଅପୂର୍ବ ଲାଖ ସେ କରିଛି ନିର୍ମାଣ
ସେ ଲାଖକୁ ଯେ ବିନ୍ଧିବ କନ୍ୟା ନେବ ଜାଣ ।
ସେ କନ୍ୟାର ଗୁଣଯାକ ସ୍ୱୟମ୍ବରେ ବସି
କହିଲେ ଯେ ନ ସରିବ ସୁଲକ୍ଷଣ ବାଛି ।
ନାମଗୋଟି କନ୍ୟାର ଯେ ଅଟଇ କମଳା
ଆଜଠାରୁ ଚଳ ସର୍ବେ ନ କରିହେ ହେଳା ।
ଶୁଣି ରାଜାମାନେ ସର୍ବେ ବହୁ ଶ୍ରଦ୍ଧା କଲେ
ନାରଦ ଗୋସାଇଁ ପାଦେ ଦଣ୍ଡବତ ହେଲେ ।
ବରୁଣ ପୁରକୁ ଚଳିଗଲେ ସର୍ବ ରାଜେ
ତହିଁ ଉତ୍ତାରୁ ନାରଦ କଲେ ଦିଗବିଜେ ।

ପ୍ଲକ୍ଷଦ୍ୱୀପରେ ଯାଇଣ ମିଳି ତପଚାରୀ
ସେ ଦ୍ୱୀପ ରାଜାଙ୍କୁ କଲେ ଦଣ୍ଡକେ ଯେ ବରି ।
ବୋଇଲେ ବରୁଣପୁରେ ସର୍ବେ ଚଳିଯାଅ
ପାରିଲେ ଲାଖବିନ୍ଧିଣ କନ୍ୟା ବିଭାହୁଅ ।
ନିମିଷରେ ଲକ୍ଷ୍ମୀଙ୍କର ସୁଲକ୍ଷଣ କହି
କ୍ରୌଞ୍ଚଦ୍ୱୀପରେ ମିଳିଲେ ଶୀଘ୍ର ବେଗେ ଯାଇ ।
ସେ ଦ୍ୱୀପଯାକ ବୁଲିଣ ନୃପଯାକ ବରି
ବୋଇଲେ ଲାଖ ବିନ୍ଧିବ ଯାଅ ଦଣ୍ଡଧାରୀ ।
ବରୁଣ ରାଜା ଯେ କରିଛନ୍ତି ସ୍ୱୟମ୍ବର
ଯେ ବିନ୍ଧିପାରିବ ଲାଖ କନ୍ୟା ହେବ ତାର ।
ସେକନ୍ୟା ପ୍ରାୟେ ସଂସାରେ ନାହିଁ ଶୋଭାସ୍ତିରୀ
ପ୍ରତ୍ୟକ୍ଷେ କମଳା ସେଥି ଅଛି ଅବତରି ।
ଦେଖିଲା ମାତ୍ରେ ସମସ୍ତେ ଆଗ ନିସ୍ତରିବ
ଏକଥା ନିଶ୍ଚେ ପ୍ରତ୍ୟକ୍ଷେ ସାର ଜାଣିଥିବ ।
ଯେ ରାଜାଟି ପୂର୍ବେ ତପ ଥିବ ଜାଣ କରି
ସେ ଜାଣ ଲାଖ ବିନ୍ଧିବ କନ୍ୟା ନେବ ହରି ।
ଶୁଣି ରାଜାମାନେ ଚଳିଗଲେ ହୋଇ ସଜ
ଆଗେ ଦଣ୍ଡ ଟେକି ବଜାଇଣ ପଖାଉଜ ।
ଦେଖିଣ ନାରଦ ତହୁଁ ଗଲେ ବିଜେକରି
କୁଶଦ୍ୱୀପରେ ମିଳିଲେ ଯାଇ ତପଚାରୀ ।
ଷାଠିଏ ଲିତା ମଧ୍ୟେ ସେ ଦ୍ୱୀପଯାକ ବୁଲି
କହନ୍ତି ମନପବନ ଦଣ୍ଡେ ଚାଲି ଚାଲି ।
ବୋଲନ୍ତି ଭୋ ରାଜାମାନେ ସର୍ବେ ତୁମ୍ଭେ ଶୁଣ
ବରୁଣ ପୁରକୁ ବିଜେକର ଏହିକ୍ଷଣ ।
ଅପୂର୍ବ ଲାଖେକ ଖଞ୍ଜିଛନ୍ତି ଯେ ସାଗର
ସେ ଲାଖ ବିନ୍ଧିବ ଯେହୁ କନ୍ୟା ହେବ ତାର
କାଳ ନାହିଁ ଯେ କନ୍ୟାର ଶୋଭା କହିବାକୁ
ତିନିଦିନେ ବରିବି ଏ ସପ୍ତଦ୍ୱୀପଯାକୁ ।
ଶୁଣି ରାଜାମାନେ ତତକ୍ଷଣେ ବିଜେକଲେ
ଏଥୁଅନନ୍ତରେ ଋଷି ପ୍ଲକ୍ଷଦ୍ୱୀପ ଗଲେ ।
ସେ ଦ୍ୱୀପର ରାଜାମାନେ ନାରଦଙ୍କୁ ଦେଖି
ଶ୍ରଦ୍ଧା ବହିଣ ପାଦାର୍ଘ୍ୟ ଦେଲେ ଗୃହେ ରଖି ।
ସମସ୍ତ ରାଜାଏ ଆସି କଲେ ପୁଣ୍ୟମାନ୍ୟ
ବୋଇଲେ ଦେଖିଲୁ ଆମ୍ଭେ ଧନ୍ୟ ତପୋଧନ ।
ନାରଦ ବୋଇଲେ ରାଜା ସର୍ବେ ତୁମ୍ଭେ ଶୁଣ
କ୍ଷଣେ ରହିବାକୁ କାଳ ନାହିଁ ମୋତେ ଜାଣ ।
ବରୁଣ ରାଜା ଅଛନ୍ତି ଏକ ଲାଖକରି
ସେହି ଲାଖ ବିନ୍ଧିବାକୁ ଆସିଛି ମୁଁ ବରି ।

ନିମନ୍ତ୍ରଣମାନ ଧରି କନ୍ୟା ଯାଇ ଦେଖ
ନିଶ୍ଚେ ଦେବେ ଦୁହିତାକୁ ଯେ ବିନ୍ଧିବ ଲାଖ ।
ଶୁଣି ରାଜାମାନେ ନାରଦଙ୍କ ଆଜ୍ଞା ପାଇ
ବେଗହୋଇ ଗଲେ ଲାଖ ବିନ୍ଧିବାର ପାଇଁ ।
ତହିଁ ଉତ୍ତାରୁ ସେ ଋଷି ଚଢ଼ି ମନଦଣ୍ଡେ
ଶୀଘ୍ରରେ ମିଳିଲେ ଯାଇ ଶ୍ୱେତଦ୍ୱୀପ ଖଣ୍ଡେ ।
କହନ୍ତି ସେ ଦ୍ୱୀପେ ନୃପଯାକ ବୁଲି ବୁଲି
ବରୁଣ ଆଜ୍ଞାରେ ମୁଁ ତୁମ୍ଭଙ୍କୁ ନିମନ୍ତ୍ରିଲି ।
କମଳା ମାତାଙ୍କର ଶ୍ରୀଲାଖବିନ୍ଧା ପାଇଁ
ସର୍ବେ ଯାଅ ତୁମ୍ଭେ ଆସିଅଛୁ ଆମ୍ଭେ କହି ।
ଶୁଣି ରାଜାମାନେ ଦଣ୍ଡପ୍ରଣାମ ଯେ କଲେ
ଚରଣ ତଳେ ପଡ଼ିଣ ପାଦ୍ୟ ଅର୍ଘ୍ୟ ଦେଲେ ।
ବୋଇଲେ ଆସିଲେ କେଡ଼େ ଋଷି ଆମ୍ଭ କାର୍ଯ୍ୟେ
ନାରଦ କହିଲେ ତୁମ୍ଭେ କର ଏବେ ବିଜେ ।
ଚାଲ ନୃପମାନେ ଯିବା ବରୁଣର ପୁର
ଦେଖିବା ସେ ଲାଖ ଯାଇଁ ମହାଲକ୍ଷ୍ମୀଙ୍କର ।
ବିନ୍ଧି ପାରିଲେ ଆଛା ନ ବିନ୍ଧିଲେ ହେଁ ଆଛା
ଦେଖି ଲକ୍ଷ୍ମୀ ଆଗ ପୁରାଇବା ମନୋବାଞ୍ଛା ।
ଏରୂପେ ରାଜା ସମସ୍ତେ ଗଲେ ସୈନ୍ୟ ଧରି
ଚଳିଲେ ସେ ନାରଦଙ୍କୁ ଦଣ୍ଡବତ କରି ।
ଦେଖିଣ ନାରଦ ଋଷି କଲ୍ୟାଣ ବାଞ୍ଛିଲେ
ରାଜାଙ୍କୁ ନିମନ୍ତ୍ରି ଜମ୍ବୁଦ୍ୱୀପକୁ ସେ ଗଲେ ।
ମିଳିଲେ କନକାବତୀ ନଗ୍ରେ ବେଗେ ଯାଇ
ଦେଖି ମୁରାସୁର ଦୈତ୍ୟ ପାଦେ ପଡ଼ି ଶୋଇ ।
ମୁନିଙ୍କି ଆସନ ଦେଇ ପଚାରଇ ବସି
ବୋଇଲାକ କେହ୍ନେ କାର୍ଯ୍ୟେ ଅଇଲ ମହର୍ଷି ।
ନାରଦ ବୋଇଲେ ରାଜା ଶୁଣ ମନଦେଇ
ଆସିଛି ବଡ଼ ଅପୂର୍ବ କଥା ତୋତେ କହି ।
କରିଛି ବରୁଣ ରାଜା ଲାଖ ସ୍ୱୟମ୍ବର
ଅପରୂପ ଦୁହିତାଏ ଅଟଇ ତାହାର ।
ଯେହୁ ଲାଖ ବିନ୍ଧିବ ଯେ ଯିବ କନ୍ୟା ଘେନି
ଏହି ସତ୍ୟକରି ରାଜା ଅଛଇ ମେଦିନୀ ।
ତେଣୁକରି ତୋତେ ଆମ୍ଭେ କହିଲୁ ଯେ ଆସି
ଧର ନିମନ୍ତ୍ରଣ ଆମ୍ଭେ ଦେଉଛୁ ମହର୍ଷି ।
ସେ ଲାଖ ଏକା ପାରିବୁ ଯେବେ ବିନ୍ଧି ତୁହି
ଲଭିବୁ କମଳା ତୁ ଯେ ଦିବ୍ୟ ତନୁ ବହି ।
ଶୁଣି ମୁରଦୈତ୍ୟ ବଡ଼ ଆନନ୍ଦିତ ହେଲା
ନିମନ୍ତ୍ରଣ ଘେନି ସେହୁ ବହୁ ପ୍ରଶଂସିଲା ।

ବୋଇଲା ଯେ ଧନ୍ୟ ଧନ୍ୟ ସେ ବରୁଣରାଜା
ଅସୁର ବୋଲି ନ ଡରେ କଲା ମୋତେ ପୂଜା ।
ଦୈତ୍ୟ ବୋଲି ଚିତ୍ତରେ ନ କଲା ଭୟ ମୋତେ
ବୁଝିଲି କପଟ ନାହିଁ ବରୁଣର ଚିତ୍ତେ ।
ଆନ ନୃପତି ହୋଇଲେ ମରୁଥାନ୍ତା ଡରି
ବୋଲନ୍ତା କିରୂପେ ଯିବା ଅସୁରକୁ ବରି ।
ଏମନ୍ତ ପାଞ୍ଚି ମୁରର ଶ୍ରଦ୍ଧା ମନେ ହେଲା
ଶ୍ରୀନାରଦ ଗୋସାଇଁଙ୍କୁ ବହୁ ପୂଜା କଲା ।
ମେଲାଣି ହୋଇଣ ଋଷି ଗଲେ ମୁର ପାଖ
ନିମନ୍ତ୍ରଣ କଲେ ବୁଲି ଜମ୍ବୁଦ୍ୱୀପ ଯାକ ।
ସମସ୍ତ ରାଜାଙ୍କୁ ଛଅଦଣ୍ଡ ମଧ୍ୟେ ବରି
ଚଳିଲେ ନାରଦ ପୁଣି କଇଳାସ ଗିରି ।
ଈଶ୍ୱରଙ୍କୁ ବରିଣ ସେ ବଦରିକା ଗଲେ
କୃଷ୍ଣବଲ୍ଲଭ ପୁରରେ ପ୍ରବେଶ ସେ ହେଲେ ।
ନାରଦଙ୍କୁ ଦେଖିକରି ନୃସିଂହଙ୍କ ତାତ
ପୁତ୍ରଙ୍କୁ ସଙ୍ଗେ ଘେନିଣ କଲେ ଦଣ୍ଡବତ ।
ନାରଦ ବୋଇଲେ ରାଜା ଶୁଣ ମନଦେଇ
ବରୁଣ ବରିଅଛନ୍ତି ତୁମ୍ଭେ ଯିବାପାଇଁ ।
ଲକ୍ଷ୍ମୀ ନିମନ୍ତେ ସେ କରିଛନ୍ତି ସ୍ୱୟମ୍ବର
ଗଲେଣି ସପତଦ୍ୱୀପଯାକ ନୃପବର ।
କମଳା ନିମନ୍ତେ ଲାଖ କରିଛି ନୃପତି
ସେ ଲାଖ ବିନ୍ଧିପାରିବେ ଏକା ଜଗଜ୍ୟୋତି ।
ଶୁଣି ନୃସିଂହଙ୍କ ପିତା ହୋଇଲେ ସନ୍ତୋଷ
ବୋଇଲେକ ଯିବେ ତେବେ ଆମ୍ଭ ବେନି ଶିଷ୍ୟ
ଆମ୍ଭ ରାଜ୍ୟେ ନୃସିଂହ ତ ଅଟେ ମହାରାଜା
ଦେଖ କେଡ଼େ ଧର୍ମେ ପାଳୁଛନ୍ତି ଜନ ପ୍ରଜା ।
ନୃସିଂହ ଜନମଦିନୁ ପବିତ୍ର ଏ ସୃଷ୍ଟି
ନୃସିଂହ ଜନମଦିନୁ ନାହିଁ ପୁରେ ରିଷ୍ଟି ।
ନୃସିଂହ ଜନମଦିନୁ ନାହିଁ ପୁରେ ରୋଗ
ନୃସିଂହ ଜନମଦିନୁ ସମସ୍ତେ ଆରୋଗ୍ୟ ।
ନୃସିଂହ ପୁତ୍ର ଆମ୍ଭର ଲକ୍ଷେ ରାଜାପରେ
ମୁର୍ଦ୍ଧା ଅଭିଷେକ ହେଲେ ଜାଣ ଏ ସଂସାରେ ।
ନାରଦ ବୋଇଲେ ଏବେ ଯିବେ ବେନିଭାଇ
ବାପ ଥିଲା ସଭାରେ ଯେ ନ ହାରଇ କେହି ।
ଆପଣେ ଥିଲେତ ବଳ ହେବ କେଡ଼େ ଜାଣ
ସେ କଥା ଲାଗଇ ମୋତେ ବଡ଼ ବିଡ଼ମ୍ବନ ।
ବରୁଣ କରିଛି ଏଡ଼େ ସଭା ଏହି ବାଣୀ
ନୋହିଲେ କିମ୍ପା ଲୋଡ଼ନ୍ତା ଏତେ ନୃପମଣି ।

ପ୍ରତ୍ୟକ୍ଷେ ଏ ବିଷ୍ଣୁ ବୋଲି ଚିହ୍ନନ୍ତା ସେ ଜାଣି
କିମ୍ପା ନୃସିଂହଙ୍କୁ ବିଭା ନ କରନ୍ତା ପୁଣି ।
ତଥାପି ବିଷ୍ଣୁ ବିନା ନ ପାରେ କେହୁ ବିନ୍ଧି
ଏଣୁ ତୁମ୍ଭଙ୍କୁ କହିଲୁଁ ଆମ୍ଭେ କଥା ସନ୍ଧି ।
ବଲ୍ଲଭ ବୋଲେ କହିଲ ଋଷି ଯେବେ ଏହି
ବୁଝିଲେ ପ୍ରତ୍ୟକ୍ଷେ ମୋର ପୁତ୍ରେ ବିଷ୍ଣୁଦେହୀ ।
କାହିଁକି ହୁଅନ୍ତା ଲାଖ ଛାର ବିଡ଼ମ୍ବନ
ନୃସିଂହ ଆଣିବେ ଲାଖ ବିନ୍ଧି କନ୍ୟା ଜାଣ ।
ନାରଦ ବୋଇଲେ ରାଜା ନୁହଇ ଏମନ୍ତ
ବରୁଣଙ୍କୁ ବୃହସ୍ପତି କହିଛି ସିଦ୍ଧାନ୍ତ ।
ବୋଇଲେ ଲକ୍ଷ୍ମୀଙ୍କୁ ବିଭା କର ନୃସିଂହଙ୍କୁ
ବରୁଣ ବୋଇଲେ ମୋର ଚିହ୍ନା ନାହିଁ ତାଙ୍କୁ ।
ମୁଁ ଯାହାକୁ ଚିହ୍ନିଅଛି କହିବା ତା ଶୁଣ
ସକଳ ଦେହରେ ବସିଛନ୍ତି ନାରାୟଣ ।
ସଂସାରଯାକେ ଅଛନ୍ତି ଯେତେ ତନୁ ଧରି
ବୁଝିଲେ ସବୁରି ଦେହେ ବିଜେ ନରହରି ।
ପୁରିଛନ୍ତି ଆତ୍ମା ରୂପେ ସେହୁ ସର୍ବ ଘଟେ
କାହାକୁ ବରିବ କହ ମନର ଉଚ୍ଚାଟେ ।
ବୃହସ୍ପତି ବୋଇଲେକ ଏହା ଯେବେ ପାଞ୍ଚ
ବିଷ୍ଣୁଙ୍କୁ ଯେବେ ଚିହ୍ନିବ ଲାଖଗୋଟି ସଞ୍ଚ ।
ସପତଦ୍ୱୀପରୁ ରାଜାମାନ ଆଣ ବରି
ତାହାଙ୍କ ସଙ୍ଗେ ନୃସିଂହ ଥିବେ ବିଜେକରି ।
ବଦ୍ରିକାଦେଶେ ଅଛନ୍ତି ହୋଇ ଅବତାର
ଶଙ୍ଖ ଚକ୍ର ଗଦା ପଦ୍ମ ପ୍ରକାଶିଣ କର ।
ସପତଦ୍ୱୀପରୁ ବରି ଆଣିବୁ ରାଜାଙ୍କୁ
ଦର୍ଶନ ପାଇବୁ ତହିଁ ସଙ୍ଗେ ନୃସିଂହଙ୍କୁ ।
ରାଜାଙ୍କୁ ବସାଇ କହୁଥିବୁ ଲାଖ ସନ୍ଧି
ଯେ ଲାଖ ବିନ୍ଧିବ ସେହି ଅଗ୍ରେ ଦୟାନିଧି ।
ଶୁଣିଣ ବରୁଣ ରାଜା କଲେ ମହାସତ୍ୟ
ବୋଇଲେ ଏକଥା ମୋର ହେଲା ନିଶ୍ଚେ ବ୍ରତ ।
ଏଡ଼େ କଥା କରି ପାଞ୍ଚିଅଛି ଜାଣ ମନେ
ତେଣୁ ସେ ରାଜାଙ୍କୁ ଲୋଡ଼ି ନେଲେଣି ଯତନେ
ଏରୂପେ ବଲ୍ଲଭ ରାଜା ଋଷି ମୁଖୁଁ ଶୁଣି
ଭ୍ରମିଥିଲେ ବିଷ୍ଣୁଙ୍କୁ ଯେ ପୁତ୍ର ରୂପେ ମଣି ।
ବୋଇଲେ ବରୁଣ ଯେବେ ଏଡ଼େ ଲାଖକଲେ
ବିଷ୍ଣୁଙ୍କୁ ଚିହ୍ନିବା ତାଙ୍କୁ ଘେନି ଆମ୍ଭ ଭଲେ ।
ଜାଣିମା ପ୍ରତ୍ୟକ୍ଷ ହରି ବୋଲି ନୃସିଂହଙ୍କୁ
ଆଣିବି ଲକ୍ଷ୍ମୀଙ୍କୁ ବିଭାକରି ବଦ୍ରିକାକୁ ।

ବଦୟନ୍ତି ବେଦବ୍ରହ୍ମା ଶୁଣ ହେ ନାରଦ
କୃଷ୍ଣବଲ୍ଲଭ ଘେନିଣ ମନମଧ୍ୟେ ଖେଦ ।
ବିଷ୍ଣୁଙ୍କ ଦଇବୀମାୟା ସବୁ ଅଛି ଲାଗି
ହୁଅନ୍ତି ବ୍ରହ୍ମା ଶଙ୍କର ବଶ ଯାହା ଲାଗି ।
ବରୁଣ ଯହିଁରେ ବଶହୋଇ ଲାଖ କରି
ଆଉ କେ ଚିହ୍ନିବ ଏ ସଂସାରେ ଦେହ ଧରି ।
ନୃସିଂହ ମହିମା ଅଟେ ଅତି ଅଲୌକିକ
ପଞ୍ଚରାତ୍ରେ ନାରଦ ଯେ ବୁଲି ଦ୍ୱୀପଯାକ ।
ସପତ ଦ୍ୱୀପ ନାରଦ ଋଷି ବୁଲିବାର
ଏହା ଯେ ଶୁଣିବ ହେବ ପବିତ୍ର ସେ ନର ।
କୋଟିଏ ତୀର୍ଥର ଫଳ ଲଭିବ ସେ ପ୍ରାଣୀ
ଘରେ ବସି ସପ୍ତଦ୍ୱୀପ ବୁଲିବ ସେ କ୍ଷଣି ।
ଏ ସପତ ଦ୍ୱୀପଯାକେ ଯେତେ ତୀର୍ଥ ଅଛି
ଲଭିବ ତୀର୍ଥଫଳ ଯେ ଘରେ ଦିନ ବଞ୍ଚି ।
ନାରଦ ଭ୍ରମିବା ଯେଉଁପରି ପଞ୍ଚରାତ୍ରେ
ସପ୍ତଦ୍ୱୀପ ପୁଣ୍ୟତୀର୍ଥ ହେବ ଶୁଣ ମାତ୍ରେ ।
ନାରଦ ବିନା ସର୍ବତ୍ର ନ ପାରେକେ ଯାଇ
ଶୁଣିଣ ସପତ ଦ୍ୱୀପେ ଭ୍ରମେ ଘରେ ଥାଇ ।
ନାରଦ ଗୋସାଇଁ ମନପବନରେ ବସି
ବିପ୍ର ପୀତାମ୍ବର ସପ୍ତଦ୍ୱୀପ ବୁଲି ଆସି ।
ପୁରାଣରେ ଲେଖି ପଦ କରିବ ହେ ଠୁଳ
ନାରଦଙ୍କ ମହିମା ଏ ଅଟଇ କେବଳ ।
ସେ ନାରଦ ଋଷିପାଦେ ସର୍ବଦା ମୋ ସେବା
ବିପ୍ର ପୀତାମ୍ବରଙ୍କୁ ଯେ ଗତି ମୁକ୍ତି ଦେବା ।
ଏରୂପେ କୃଷ୍ଣବଲ୍ଲଭ ଆଗେ ଋଷି କହି
ମେଲାଣି ହୋଇଣ ତହୁଁ ଗଲେ ଶ୍ରଦ୍ଧାବହି ।
ବରୁଣପୁରେ ବୁଲିଲେ ଯାଇଁ ତପୋଧନ
ମନପବନ ଦଣ୍ଡରେ ବସିକରି ଜାଣ ।
ଦେଉଳ ମଣ୍ଡପ ଆଦି ଦେଖନ୍ତି ଜଗତୀ
ମେଢ଼ ବେଢ଼ ଅଟ୍ଟାଳି ଯେ ସବୁ ବୁଲିଯାନ୍ତି ।
ଅତ୍ୟନ୍ତ ଭୁବନ ମେରୁ ପଞ୍ଚମ ସେ ମୁଣ୍ଡେ
ସପ୍ତଦ୍ୱୀପରୁ ଅଧିକ ଦିଶେ ସେ ବ୍ରହ୍ମାଣ୍ଡେ ।
ମେରୁର ଚାରିପାରୁଶେ ସପ୍ତଦ୍ୱୀପେ ଛନ୍ତି
ଦ୍ୱୀପ ଗୋଟିକରେ ସିନ୍ଧୁ ଗୋଟି ଆଚ୍ଛାଦନ୍ତି ।
ଯେଉଁ ଦ୍ୱୀପକୁ ଯେବଣ ସିନ୍ଧୁ ଅଛି ବେଢ଼ି
କହିବା ଶୁଣ ପୁରାଣ ଶାସ୍ତ୍ରମାନ କାଢ଼ି ।
ଶ୍ୱେତଦ୍ୱୀପକୁ ରହିଛି ବେଢ଼ି କ୍ଷୀରସିନ୍ଧୁ
ସେ ସିନ୍ଧୁ ମଧ୍ୟେ ବୈକୁଣ୍ଠ କଲେ ଜଗବନ୍ଧୁ ।

ପଞ୍ଚାଶତ ଲକ୍ଷ ଯୁଣ ଦ୍ୱୀପ ଆଡ଼ ଦୀର୍ଘ
ଚୌରାଶି କାଠି ଗର୍ଭୀର ଅଟେ ଜଳମାର୍ଗ ।
କ୍ଷୀର ବୈକୁଣ୍ଠ ସେ ସିନ୍ଧୁଜଳ ମଧ୍ୟେ ଅଛି
ସେ ପୁରେ ଅନନ୍ତଶଯ୍ୟା ହୁଅଇ ଶ୍ରୀବସି ।
ତହିଁକି ଲାଗିଛି ପଦ୍ମ ଦ୍ୱୀପଗୋଟି ଜାଣ
ରହିଛି ଘୃତ ସମୁଦ୍ର ବେଢ଼ି ତାକୁ ପୁଣ ।
ବିସ୍ତାର ତିରିଶଲକ୍ଷ ଯୁଣ ସେହୁ ପାଣି
ଗଭୀର ବତିଶଯୁଣ କାଠି ପରିମାଣି ।
ତହିଁର ପାଶେ ଆବର କୁଳଦ୍ୱୀପ କହି
ତିନିଲକ୍ଷ ଯୋଜନ ଯେ ବିସ୍ତାରଟି ସେହି ।
ତହିଁର ଚାରି ପାରୁଶେ ମଧୁ ସିନ୍ଧୁ ଅଛି
ବିସ୍ତାର ଯେ ବାରଲକ୍ଷ ଯୁଣ ପ୍ରକାଶିଛି ।
ତହିଁର ପାଶେ ଅଛଇ କ୍ରୌଞ୍ଚନାମେ ଦ୍ୱୀପ
ଲକ୍ଷେକ ଯୁଣ ବିସ୍ତାର ଅଟେ ତାର ମାପ ।
ତାହାକୁ ସୁରାସିନ୍ଧୁ ହେ ଅଛି ଜାଣ ବେଢ଼ି
ଚୌରାଶି ଯୁଣ ବିସ୍ତାର ଅଛି ଜଳ ମାଡ଼ି ।
ପନ୍ଦର କାଠି ଯେ ସିନ୍ଧୁ ଗଭୀରର ମାପ
ତହିଁର ପାଖରେ ଅଛି ଶାକଲ୍ୟା ଦ୍ୱୀପ ।
ତିନିଲକ୍ଷ ଯୋଜନ ଯେ ଅଟେ ତା ବିସ୍ତାର
ଦଧିସମୁଦ୍ର ନାମେ ଯେ ବେଢ଼ି ଅଛି ନୀର ।
ତେରଲକ୍ଷ ଯୋଜନ ସେ ଜଳ ଅଛି ବେଢ଼ି
ବାରକାଠି ଗଭୀରକୁ କ୍ଷେପ ତଳେ ପଡ଼ି ।
ତହିଁର ପାଖେ ଅଛଇ ପ୍ଲକ୍ଷଦ୍ୱୀପ ଭୂମି
ନୀଳ ସମୁଦ୍ରକୁ ବେଢ଼ି ରହିଛି ଉତ୍‌କ୍ରମୀ ।
ପଚିଶଲକ୍ଷ ଯୋଜନ ସିନ୍ଧୁ ଆଡ଼ ଦୀର୍ଘ
ଚବିଶକାଠି ଗଭୀର ଅଟେ ଜଳମାର୍ଗ ।
ଆବର କହିବା ଏବେ ଜମ୍ବୁଦ୍ୱୀପ ଶୁଣ
ଲବଣ ସିନ୍ଧୁକୁ ବେଢ଼ି ରହିଛି ତା ଜାଣ ।
ନବଲକ୍ଷ କାଠି ଅଟେ ଗଭୀର ଯେ ଜଳ
ଜମ୍ବୁଦ୍ୱୀପ ସବୁଠାରୁ ଅଟେ ମୋକ୍ଷସ୍ଥଳ ।
ଶ୍ରୀପୁରୁଷୋତ୍ତମ କ୍ଷେତ୍ର ସ୍ୱର୍ଗଦ୍ୱାର ମାଡ଼ି
ଦେବତାମାନେ କରନ୍ତି ସ୍ନାନ ନିତ୍ୟେ ବୁଡ଼ି ।
ଦେବ ତରପଣେ ସନ୍ଧ୍ୟା କରିଯାନ୍ତି ଚଳି
ନୀଳଗିରି ପାଶେ ସିନ୍ଧୁ ଧର୍ମ ପ୍ରତିପାଳି ।
ଏରୂପେ ସପ୍ତସିନ୍ଧୁରେ ମେରୁ ବେଢ଼ି ରହେ
ଶୁଣହେ ନାରଦ କହନ୍ତି ଯେ ପିତାମହେ ।
ସପ୍ତସିନ୍ଧୁ କରୁଣାସିନ୍ଧୁ ନାମେ ଯେ ଜଳ
ବରୁଣକୁ ତାହା ଦେଇଛନ୍ତି ଆଦିମୂଳ ।

ସେ କରୁଣା ବାରାନିଧି ଅମୃତ ମନ୍ଦିର
ତହିଁରେ ନଗର କରିଛନ୍ତି ସେ ସାଗର ।
କରୁଣାସିନ୍ଧୁର କଥା ଅଟେ ଅସଂକ୍ଷେପ
ବେନିଲକ୍ଷ ଯୁଣ ସେ ବରୁଣ ପୃଥ୍ୱୀମାପ ।
ସେ ପୃଥ୍ୱୀର ନାମ ଗୋଟି ଅଟେ ମହାସତ୍ୟ
ସତ୍ୟରେ ପାଳନ୍ତି ତାହା ନୀରବତୀ କାନ୍ତ ।
କହନ୍ତେ ନସରେ ବରୁଣର ନଗ୍ର ସୀମା
ନିର୍ମାଣ କରିଅଛନ୍ତି ଯାହା ବିଶ୍ୱକର୍ମା ।
ଅଶେଷ ବାରାନିଧି ଯେଉଁ ସେ ସାଗର
ନଗରର ପୂର୍ବଦ୍ୱାରେ ଅଛି ସିଂହଦ୍ୱାର ।
ବାରକୋଶ ଓସାରରେ ଅଛି ଦ୍ୱାରବନ୍ଧ
ବେନି ପୁଡ଼ାରେ କପାଟ ଲାଗିଅଛି ଛନ୍ଦ ।
ତହିଁର ପାଖେ ବଖରା ଅଛି ଲକ୍ଷେ ଲକ୍ଷେ
ସୁବର୍ଣ୍ଣ ପାଚେରୀ ଶତେ ଯୋଜନ ଯେ ଉଚ୍ଚେ
ଦ୍ୱାଦଶ ତାଳ କାଙ୍ଗୁଲା ବେଢ଼ମାର୍ଗେ ବନ୍ଧା
ଶୁଦ୍ଧସ୍ଫଟିକର ଘର ସ୍ୱର୍ଣ୍ଣଗଣ୍ଠି ଛନ୍ଦା ।
ତଡ଼ିତର ଜ୍ୟୋତି ପ୍ରାୟେ ଦିଶେ ଦାଉ ଦାଉ
ନାରଦ ଦେଖିଣ ପ୍ରଶଂସନ୍ତି ଯାଉଁ ଯାଉଁ ।
ସିଂହଦ୍ୱାର ଜିଣି ଋଷି ଭିତରକୁ ଯାନ୍ତେ
ନଗ୍ରଯାକ ଦେଖି ତୋଷହେଲେ ତପୋବନ୍ତେ ।
ଅତି ଅଗୋଚର ସେହି ଅକଳନା ପୁର
ନଗ୍ରଯାକେ ବସିଅଛି ଲକ୍ଷେକ ବଜାର ।
କକଟର ପ୍ରାୟେ ବସିଅଛି ଲକ୍ଷେ ଦାଣ୍ଡ
ଉତ୍ତର ଦକ୍ଷିଣ ପୂର୍ବ ପଶ୍ଚିମ ଯେ ମୁଣ୍ଡ ।
ଏରୂପେ ହୋଇଛି ଲକ୍ଷେ ସେହି ଦାଣ୍ଡେ ନିର୍ଭା
ଶ୍ରୀରାଜ ପୀଢ଼ଦାଣ୍ଡ ଯେ ଏତେକ ଜାଣିବା ।
ଆବର ଅଲଗା ସାହି ଅଛି ଯେତେ ଜାଣ
ବରୁଣକୁ ଜଣା ଏକା ଆନକୁ ଅଜାଣ ।
ଘରେ ଘରେ କମଳା ଯେ ଅଛି ଜାଣ ପୁରି
ହୀରାନୀଳା ମୁକ୍ତା ଲମ୍ବିଅଛି କେରି କେରି ।
ବୁଲିଣ ଆସନ୍ତେ ନଗ୍ରଯାକ ମହାଋଷି
ହସି ସଞ୍ଚା ମଞ୍ଚା ଦେଖି ହୋନ୍ତି ମନତୋଷି ।
ବୋଲନ୍ତି ପୁର ନିର୍ମାଣ ଭଲା ଛନ୍ତି କରି
ଠାବେ ଠାବେ ଭିନ୍ନ ଭିନ୍ନ ଦିଶେ ପରିବାରୀ
ଏହିରୂପେ ଘରେ ଘରେ ପୁରେ ପୁରେ ପଶି
ବରୁଣର ଥିବାଠାରେ ମିଳିଲେକ ଋଷି ।
ଦେଖିଣ ସାଗର ସିଂହାସନରୁ ସେ ଉଠି
ନମିଲେ ଶ୍ରୀ ନାରଦଙ୍କ ପାଦତଳେ ଖଟି ।

ଆସନ ଯେ ପାଦାସନ ଦେଇ ବସାଇଲେ
କେଡ଼େ ଶୀଘ୍ର ବିଜେକରି ଆସିଲ ବୋଇଲେ ।
ନାରଦ ବୋଇଲେ ରାଜା ଶୁଣ ଜଳାଧିପ
କାଲି ତୋ ପୁରେ ମିଳିବେ ଆସି ସର୍ବ ନୃପ ।
ବ୍ରହ୍ମା ବିଷ୍ଣୁ ଈଶ୍ୱରାଦି ଦଶଦିଗପାଳ
ତେତିଶକୋଟି ଦେବତା ଘେନି ଆଖଣ୍ଡଳ ।
ମିଳିବେ ଅଠାଶୀସସ୍ର ଋଷି ମଧ୍ୟ ଜାଣ
ତୋହର ଆଜ୍ଞାରେ କଲି ସବୁଙ୍କୁ ବରଣ ।
ସାତଦିନେ ଆସି ଭେଟିବାକୁ ବୋଲିଥିଲୁ
ତେଣୁ ଆସି ଏଡ଼େ ଶୀଘ୍ରେ ଖବର କହିଲୁ ।
ବିଭାର ଯୋଗାଡ଼ ଏକା କରିଥା ତୁ ସିଦ୍ଧି
ସପ୍ତଦିନକୁ ଖଞ୍ଜିଣ ଯାବତ ଉପାଧି ।
ବରୁଣ ବୋଇଲେ ଋଷି ତୁମ୍ଭ ପ୍ରସାଦରେ
ଯାବତ ପ୍ରସାଦ ପୁରିଅଛି ମୋ ଭଣ୍ଡାରେ ।
ଲୋଡ଼ାଖୋଜାକୁ ଯେ ଆଉ ଭୟନାହିଁ ମୋତେ
ଦେଖିବକି ମୋ ଭଣ୍ଡାରେ ଦ୍ରବ୍ୟ ଅଛି ଯେତେ ।
ମୁନି ବୋଇଲେ ଦେଖିଲେ ଆଉହେବ କିସ
ଲାଖବିନ୍ଧା ଦେଖିବାକୁ ମୋର ଅଛି ଆଶ ।
ଯାହାର ଗୃହରେ ଲକ୍ଷ୍ମୀ ଛନ୍ତି ଅବତରି
ତାହା ଘରେ କେଉଁ ଦ୍ରବ୍ୟ ଅପୂର୍ବ ବିଚାରି ।
ମେଲାଣି ହୋଇଣ ଏବେ ଯାଉଁଅଛୁ ରାଜା
ଲାଖବିନ୍ଧାଠାରେ ଯେ କରିବୁ ବିଷ୍ଣୁ ପୂଜା ।
ବରୁଣ ବୋଲେ କାହିଁକି ଆଉ ତୁମ୍ଭେ ଯିବ
ମାଘ ଶୁକ୍ଳ ଦଶମୀରେ ଲକ୍ଷ୍ମୀ ବିଭାହେବ ।
ଏଡ଼େ ଲାଖ କଥାରେ କିରୂପେ ଯିବ ମୁନି
ଆପଣ ସର୍ବଜ୍ଞ ଶୁଣ ବ୍ରହ୍ମଜ୍ଞ ଯେ ଜ୍ଞାନୀ ।
କାହିଁପାଇଁ ଦୂତ ଆଉ ପେଷିବି ଛାମୁକୁ
ବିଜେ କରିଥାଅ ଗୃହେ ମିଳିଛ ଭାଗ୍ୟକୁ ।
ନାରଦ ବୋଇଲେ ରାଜା ସଂଶୟ ନ ଧର
ତୋର ଭଲକଥା ଯାକ ଅଟେ ସେ ଆମ୍ଭର ।
ଆଜହୁଁ ରହିବା ତୋର ନଗ୍ରେ ଯେବେ ଆମ୍ଭେ
ଋଷିମାନେ ତ ଅନ୍ତର ନିଶ୍ଚେ କରିଦେବେ ।
ବୋଲିବେ ନାରଦ ଜାଣ ଅଟେ ବଡ଼ ଲୁଙ୍ଗା
ବ୍ରାହ୍ମଣ ସଙ୍ଗ ଛାଡ଼ିଣ ହୋଇଲେ ଅଲଗା ।
ସଭା କ୍ଷେତ୍ରକୁ ହକରା ଆଉ ନ କରିବା
ଏମନ୍ତ ବୋଲି କହିବେ କିନ୍ତୁ ଋଷି ସଭା ।
ବିପ୍ରଙ୍କର ବଡ଼ପଣ କେଭେ ନ ଛାଡ଼ିବେ
ଉଇଁ ଟୁଇଁ ହୋଇ ବହୁ ବିଚାର କରିବେ ।
ବ୍ରାହ୍ମଣଙ୍କ ଅହଂଗୁଣ ନ ଜାଣ କି ରାଜା
ଅନେକ କୁପିତ ହୁଅନ୍ତି ଯେ ବ୍ରହ୍ମଦ୍ୱିଜା ।
ଶାସନରେ ଗୃହ ବାନ୍ଧି ଯେତେ ବିପ୍ର ଥାନ୍ତି
କେହି କିଛି ଅର୍ଜୁଥିଲେ ସହି ନ ପାରନ୍ତି ।
ବୋଲନ୍ତି ଆଣନ୍ତି ବାଉଁଳିରେ କେତେ ବହି
ପଡ଼ିଶାଘରର କଷ୍ଟ କହି ନ ସରଇ ।
କାହାକୁ କେତେ ଭୁଲାଇ ଜଟି ମାଗିଆଣି
ଖାଉଛି ଉତ୍ତମ ସୁଖେ ବସିକରି ପୁଣି ।
ସ୍ୱପନେ ହେଲେ କୁଣିଆ ଜଣେ ନ ପଡ଼ନ୍ତି
ମାଗିବାର କଥା ଗୋଟି ବହୁତ ଜାଣନ୍ତି ।
ଏହା ଦେଖି ଆମ୍ଭର ତ ଦେହ ସହୁ ନାହିଁ
ଦେଖି ନ ପାରି ହସନ୍ତି ଘରେ ଘରେ ଥାଇ ।
ଶାସନ ବିପ୍ରଙ୍କ ବୁଦ୍ଧି ଏରୂପେଟି ଜାଣ
ଏଣୁ ତୋତେ କହୁଥାଇଁ ଆସିବୁ ମିଶିଣ ।
ଗଲେ ଆସିବୁ ଋଷିଙ୍କ ସଙ୍ଗେ ଜାଣ ମିଶି
ଶୁଣିଣ ବରୁଣ ରାଜା ମନେ ଅଳ୍ପ ହସି ।
ବୋଇଲେ ବିପ୍ରଙ୍କ ଗୁଣ ବିପ୍ରେ ଯେ ଜାଣନ୍ତି
ଆନ ଲୋକେ ଏହା କେବେ ଜାଣି ନ ପାରନ୍ତି ।
ଏତେକ ପାଞ୍ଚି ବରୁଣ ବୋଲେ ବିଜେକର
ଆସିବ କାର୍ଯ୍ୟକୁ ବିଜେକରି ମୁନିବର ।
ଆପଣଙ୍କୁ ନିମନ୍ତ୍ରଣ ଆଜୁ କଲି ମୁହିଁ
ଶୁଣିଣ ନାରଦ ହସିଗଲେ ଶ୍ରଦ୍ଧା ବହି ।
ବ୍ରହ୍ମାଙ୍କ ସଭାରେ ଆସି ହୋଇଲେ ପ୍ରବେଶ
ଏଥିଉତ୍ତାରେ କହିବା ଶୁଣ କଥାରସ ।
ମାଘ କୃଷ୍ଣ ଦଶମୀକୁ ରାଜାଙ୍କୁ ବରନ୍ତେ
ଶୁକ୍ଳ ପ୍ରତିପଦାଠାରୁ ମିଳିଲେ ସମସ୍ତେ ।
ସପ୍ତଦ୍ୱୀପ ରାଜା ପରବେଶ ହେଲେ ଆସି
ବରୁଣକୁ ଭେଟିଦେଲେ ଅକ୍ଷତ ଯେ ତୋଷି ।
ରାଜାଙ୍କୁ ବରୁଣରାଜା ଗଉରବ କରି
ଜଳତରଙ୍ଗ ମନ୍ତ୍ରୀକି ଆଜ୍ଞା ଅବଧାରୀ
ବୋଲେ ଏ ରାଜାମାନଙ୍କୁ ବସା ସଞ୍ଚା ଦିଅ
ଅଶାନ୍ତି ଜଣେ ଯେପରି ନ ହେବଟି ରାୟ ।
ଷାଠିଏ ଲକ୍ଷ ରାଜାଙ୍କୁ ଷାଠିଲକ୍ଷ ଘର
ରହନ୍ତୁ ଯେ ଯାହାର ଆଖଡ଼ାରେ ନୃପବର ।
ଯାବତ ମଣୋହି ଦ୍ରବ୍ୟ ବେଗେ ଦିଅ ଖଞ୍ଜି
ରହନ୍ତୁ ଯେ ଯାହା ଖଞ୍ଜେ ପକ୍ୱଅନ୍ନ ଭୁଞ୍ଜି ।
ରାଉତ ବିଶୋଇ ପାତ୍ର ମନ୍ତ୍ରୀ ବଡ଼ଜେନା
ଦଳାଇ କରଣ ଭୁଞ୍ଜନ୍ତୁ ସେ ସର୍ବସେନା ।

ବରୁଣ ରାଜା ବଚନ ଶୁଣି ମନ୍ତ୍ରୀବର
ଯେ ଯେତେ ଯୋଗ୍ୟ ତାହାକୁ ଦେଲା ତେଡ଼େପୁର
ହସ୍ତୀକି ଯେ ହସ୍ତୀଶାଳ ଅଶ୍ୱେ ଅଶ୍ୱଶାଳ
ବ୍ରୀହି ଘାସ ଦାନାପାଣି ଖଞ୍ଜିଲେ ସକଳ ।
ଯାବତ ଖଞ୍ଜାଚଉକ ଚୂଳି ନିର୍ଭାକରି
ବ୍ରହ୍ମ କ୍ଷତ୍ରୀ ବୈଶ୍ୟ ଶୁଦ୍ର ରନ୍ଧା ଯେଝା ପୁରୀ ।
ଷଡ଼ ରସରେ ଭୋଜନ କଲେ ସର୍ବଜନେ
ସମାନ ଚରଚା ସମସ୍ତଙ୍କୁ ସେହୁ ସ୍ଥାନେ ।
କାହିଁ ପିଠା ଭଜା ହୁଏ ନାହିଁ ସରପୁଳି
କାହିଁ ହୁଏ ଛେନା ଖଜା କାହିଁ ହଂସକେଳି ।
ଅଧାମ ସର ପାପୁଳି କାହିଁ ସାଚିପଣା
ନଡ଼ିଆ ରସ ପଡ଼ିଣ ଖଣ୍ଡ ଖଇ ଚଣା ।
ପଣସ ପିଣ୍ଡୁ ଖଜୁରି ପେଡ଼ ତାଳସଜ
ନାରଙ୍ଗ କମଳାରସ ଗଙ୍ଗାବର ମଞ୍ଜ ।
କେନ୍ଦୁ ଆମ୍ବ ଲେମ୍ବୁଓ ଦାରାକ୍ଷ କନ୍ଦମୂଳ
ଏ ବିଧି ଶତେବର୍ଣ୍ଣ ଉପାଧି ନାନାଫଳ ।
ପ୍ରଧାନ ଶ୍ରେଷ୍ଠ କରିଣ ବିଶୋଇ ନାୟକ
ଚରଚି ରୋଷାଇଶାଳେ ଦ୍ୟନ୍ତି ଦ୍ରବ୍ୟଯାକ ।
ଭୁଞ୍ଜି ଜନେ ଉଠିଗଲେ ସେ ଉଚ୍ଛିଷ୍ଟସ୍ଥାନ
ଖଞ୍ଜା ହୋଇଥିବା ଜନେ ପୋଛନ୍ତି ତକ୍ଷଣ ।
ନଗ୍ର ବାହାରେ ପକାନ୍ତି ଲୋକେ ତାହା ନେଇ
ସ୍ନାନକରିଣ ଆସନ୍ତି ପୁଣି ଶୀଘ୍ର ହୋଇ ।
ଯୋଗାଡ଼ମାନ ଦିଅନ୍ତି ପୁଣି ନିତି ନିତି
କରଣମାନ ଯେ ତାହା ପତ୍ରେ ଲେଖୁଥାନ୍ତି ।
ସାତଲକ୍ଷ ରାଜାଙ୍କର ସୈନ୍ୟବଳ ଯାକୁ
କୋଟି ଲକ୍ଷ ମାଣ ତଣ୍ଡୁଳ ଯେ ମାପିବାକୁ ।
ଷାଠିଲକ୍ଷ ଲୋକ ସେବାରେ ସେ ହୋଇ ଖଞ୍ଜି
ପଡ଼ି ମାପିଣ କରଣ ନିତ୍ୟ ଲେଖେ ପାଞ୍ଜି ।
ଦିନକରେ ଚାରିକୋଟି ପଉଟି ତଣ୍ଡୁଳ
ଭୋଜନ ପରେ ଏତେକ ପୁଣି ନାନା ଫଳ ।
ବରୁଣ ଭଣ୍ଡାର କହିଲେ ଯେ ନ ସରଇ
ଯେ ଯାହା ଲୋଡ଼ଇ ତାହା ତତ୍କାଳେ ମିଳଇ ।
ଭୋଜନ ସ୍ଥାନରେ ଖଞ୍ଜା ବାସପାଣି ଗୁଆ
ଅଖଣ୍ଡିତ ପାନପତ୍ର କର୍ପୂର ବିଡ଼ିଆ ।
ଅଗୁରୁ ଚନ୍ଦନ ଚୂଆ କସ୍ତୁରୀ ଯେ ଘୋରି
ଶରୀରେ ଲେପନ୍ତି ତାହା ସର୍ବ ଦଣ୍ଡଧାରୀ ।
ବକୁଳ ସେବତୀ ଯାଇ ଯୁଈ ମଲ୍ଲୀ ଗଭା
ମଥାରେ ଗୁଞ୍ଜିବସନ୍ତି ନୃପେ ଯାଇ ସଭା ।

ମନଇଚ୍ଛା ଭୋଜନ ଯେ ଦିନେ ତିନିଥର
ଭୁଞ୍ଜନ୍ତି ଯେ ସୁଖେ ବସି ଦ୍ୟନ୍ତି ସୂପକାର ।
ବାଉନ କୋଟି ଭଣ୍ଡାର ଯେଉଁ ବାରାନିଧି
ତହିଁ ଅନ୍ତ କରି କିସ କହିବା ଉପାଧି ।
ଯହିଁରେ ଶ୍ରୀମହାଲକ୍ଷ୍ମୀ ଲାଖବିନ୍ଧା ବାଣୀ
ତହୁଁ ଭୋଜନ ଲେଖିବା କିସ ପରିମାଣି ।
ଗୁଣେ ବହିଲେ ନ ସରି ପୁରେ ଦ୍ୱୟଗୁଣ
ମହାଲକ୍ଷ୍ମୀଙ୍କ ପ୍ରସାଦୁଁ ପଡ଼େ ଉଚ୍ଛୁଳିଣ ।
ଇନ୍ଦିରାଙ୍କ ଉତ୍ସବରେ ବାଜେ ନାନା ବାଦ୍ୟ
ସେ ବାଦ୍ୟର ଥୋକେ ନାମ ଶୁଣହେ ନାରଦ ।
କଂସାଳ ଡିଣ୍ଡିମ ତାଳ ଖୋଳ କରତାଳୀ
ଶଙ୍ଖ ଭେରୀ ମାଦଳ ଯେ ପଡ଼େ ହୁଳହୁଳି ।
ଢୋଲ ଦମା ଟମକ ଯେ ବାଜେ ଘଡ଼ଘଡ଼ି
ମର୍ଦ୍ଦଳ ତବଲ ଚାଙ୍ଗୁ ତୁରୀ ଯୋଡ଼ି ଯୋଡ଼ି ।
ନାନାବିଧ ମନ୍ତ୍ର ପୁଣ ବାଜେ ବିଜିଘୋଷ
ବୀଣା ଅପାଙ୍ଗ ମହୁରୀ ବଂଶୀଧ୍ୱନି ରସ ।
ନିର୍ଘାତ ପଟହ ବକ୍ର ବାଣ କରେ ଧ୍ୱନି
ଡମ୍ବରୁ ଶବଦେ ଉଚ୍ଛୁଳଇ ପୁର ତିନି ।
ଅଶ୍ୱଙ୍କର ଉଡ଼ବଡ଼ି ହସ୍ତୀଙ୍କର ରାବ
ସିନ୍ଧୁ ଗର୍ଜନ ପରାୟ ଶୁଭେ ଭେରୀରବ ।
ପୃଥ୍ୱୀ ଦଲଦଲ ହୋଇ କମ୍ପେ କୋଳାହଳେ
ବ୍ରାହ୍ମଣଙ୍କ ବେଦଧ୍ୱନି ଶୁଭଇ ଚହଳେ ।
ଭାଟ କଏବାର ବେଶ୍ୟାଙ୍କର ନୃତ୍ୟରଙ୍ଗ
ଶଙ୍ଖ ବଜାନ୍ତି ମାଗଧପୁତ୍ରେ କରି ରାଗ ।
ଯୁବତୀଗଣ ମଙ୍ଗଳରାଗେ ଗୀତ ଗାନ୍ତି
ଘରଦ୍ୱାର ସଜାଇଣ ମଣ୍ଡଣି କରନ୍ତି ।
ଦାଣ୍ଡ ପହଁରି ପକାନ୍ତି ଚନ୍ଦନର ଛେରା
ଲେଖନ୍ତି କାନ୍ଥରେ ଚିତ୍ର ହେଙ୍ଗୁଳର ଗିରା ।
ପୀଢ଼ମାନଙ୍କରେ ହୀରା କଳସ ବସାନ୍ତି
ଆଡ଼ମେଘା ଡମ୍ବରୁ ଯେ ବିମଳେ ଶୋଭନ୍ତି ।
ଶତେସରି ଚିତ୍ରପଟ ଦିଶେ ଫୁଟି ଶୋଭା
ନାୟିକାଗଣେ ତା ପିନ୍ଧି ଆଗେ ହୁନ୍ତି ଉଭା ।
ପଞ୍ଚପକ୍ଷୀ ଧଣ୍ଡାରେ ଯେ ସ୍ୱର୍ଣ୍ଣ କେରାକେରା
ଦିଶଇ ଝୀନ ପାଟରେ ପୁଞ୍ଜି ପୁଞ୍ଜି ହୀରା ।
ଘର୍ଘରୀ କ୍ଷୁଦ୍ର ଘଣ୍ଟିରେ ଦରପଣ ଯୋଡ଼ି
ନୀଳପାଟିଆ ଝଟକେ ସୂର୍ଯ୍ୟରଶ୍ମି ପଡ଼ି ।
ଇନ୍ଦ୍ର ଗୋବିନ୍ଦ ଚାନ୍ଦୁଆ ସବୁ ଘରେ ଟଣା
ନାନା ବନ୍ଧେ ବାନ୍ଧିଛନ୍ତି ଦ୍ୱାରବନ୍ଧ ତ୍ରୋଣା ।

ହୀରାର ପଗଡ଼ି କାଠ ନନ୍ଦାବର୍ତ୍ତ କାମ
ଝଟକେ ରତ୍ନପିତୁଳୀ ବାରବାନି ହେବ ।
ହୀରାର ଚୁନି ଉପରେ ମୁକ୍ତା ମାଳିମାଳି
ସେ ପୁରର ନାମ ବର୍ଣ୍ଣି ପାରିବ କେ କଳି ।
ଜଡ଼ ଜଡ଼ାଉ ହିଙ୍ଗୁଳାରଙ୍ଗେ ହରିତାଳେ
ଚିତ୍ର ପ୍ରତିମା ସ୍ଥାପିଣ ଅଛନ୍ତି ସକଳେ ।
ମାଣିକ୍ୟର ଦୀପାବଳି ଜଳେ ଚଉକତି
ଦିବସ କେ ରଜନୀ କେ ବୋଲି ନ ଜାଣନ୍ତି ।
ବିଶ୍ୱକର୍ମା ନିର୍ମାଣ ସେ ଅଟେ ପୁର ଶୋଭା
ଲକ୍ଷ୍ମୀ ନୃସିଂହ ଯହିଁରେ ହେବେ ଆସି ଉଭା ।
ଗୃହ ବଖରା ଗୋଟିକ ବାର ନଳ କାଠି
ଏ ବିଧିରେ ଘର ଅଛି ସସ୍ରେଲକ୍ଷ କୋଟି ।
ସବୁ ଘରେ ମୁକ୍ତାଚୂର୍ଣ୍ଣ ଅଛନ୍ତି ଯେ ଢାଳି
କ୍ଷୀର ବୈକୁଣ୍ଠ ପରାୟ ଦିଶେ ତେଜେ ଝଳି ।
ଷାଠିଏ ଲକ୍ଷ ମଞ୍ଚା ଯେ ଅଛି ନିର୍ଭାହୋଇ
ବସିଲେ ନୃପତିମାନେ ଆସନ ଯେ ପାଇ ।
ସବୁ ମଞ୍ଚାସ୍ତମ୍ଭେ ଖଞ୍ଜା ମଣି ହୀରା ନୀଳା
ମାଳ ମାଳ ହୋଇ ଖମ୍ଭେ ମୁକୁତା ପୋହଳା ।
ଧାଡ଼ି ଧାଡ଼ିରେ ବୃଷାଳ ଖମ୍ବ ପନ୍ତି ପନ୍ତି ।
ନକ୍ଷତ୍ରମାନ ପରାୟେ ଝଟକି ଦିଶନ୍ତି ।
ଛାୟା ମଣ୍ଡପେ ଦକ୍ଷିଣ ଦ୍ୱାର ଘର ଅଛି
ଅନେକ ରତନେ ଦ୍ୱାର ମଣ୍ଡଣି ହୋଇଛି ।
ସୁପାତି ପଲ୍ୟଙ୍କ ଶେଯ ତହିଁ ଅଛି ପଡ଼ି
ତହିଁପରେ ପଡ଼ିଅଛି ସେବତୀ ପାଖୁଡ଼ି ।
କର୍ପୂର ଗୁଣ୍ଡି ବିଛଣା ତହିଁ କୁଞ୍ଜି କୁଞ୍ଜି
ମୃଗଚର୍ମରେ କର୍ପୂର ଗୁଣ୍ଡ ପାଣି ସିଞ୍ଚି ।
ଆଉଜି ବସିବା ପାଇଁ ମୁଚୁଳା ଅସର
ଚାରିଆଡ଼େ ହେମଝୁମ୍ପା ଲମ୍ବେ ନିରନ୍ତର ।
ବସିବାର ଆସନ ଯେ ଅଟେ ଭିନ୍ନ ଭିନ୍ନ
କୋଟି କୋଟି ଅଳଙ୍କାର ଅଛଇ ସମ୍ପୂର୍ଣ୍ଣ ।
ଲକ୍ଷ ଲକ୍ଷ କୋଟି କୋଟି ବସ୍ତ୍ର ପେଡ଼ା ପେଡ଼ା
ବରୁଣର ଦେବା ଶାଢ଼ୀ ଯାକୁ ହେବ ଲୋଡ଼ା ।
ପ୍ରତ୍ୟକ୍ଷେ ସେ କମଳିନୀ ହେବେ ତହିଁ ବିଭା
ଶେଷ ନୃସିଂହ ବସିବେ ଆସି ଯେଉଁ ସଭା ।
ଅଠାଶୀ ସହସ୍ର ଋଷି ଘେନି ବେଦବର
ବରଯାତ୍ରୀ ହୋଇ ବିଭା କରିବେ ଶ୍ରୀଧର ।
ତେତିଶକୋଟି ଦେବତା ଘେନି ସୁରପତି
ନୃସିଂହ ସ୍ୱାମୀ ଗହଣେ ହେବେ ବରଯାତ୍ରୀ
ସେ ପୁର ସମ୍ଭବ କଥା ଅତି ଅନୁପମ
ଯହିଁକି ବିଜେ କରିବେ ଆସି ପରଂବ୍ରହ୍ମ ।
ସପତ ଦ୍ୱୀପ ରାଜାଙ୍କୁ ପଥ ଅଛି ପଡ଼ି
ନଗ୍ରେ ଆସିବାକୁ ଦେଇଛନ୍ତି ବାଟ ଛାଡ଼ି ।
ବାର ଯୋଜନ ଓସାରେ ଫିଟିଅଛି ବାଟ
ଜାଣିଣ ବରୁଣ ଛାଡ଼ିଛନ୍ତି ଜଳଘାଟ ।
ସମସ୍ତେ ତ ସେହି ପଥେ ଯାଆନ୍ତି ଆସନ୍ତି
ଭଲା ଏ ସାଗର ପୁରୁଷର କରାମତି ।
ସପ୍ତଦ୍ୱୀପକୁ ସପତ ବାଟ ଅଛି ଫିଟି
ସେ ପଥରେ ଚାଲିବାକୁ ସ୍ୱର୍ଣ୍ଣ ପାବଛଟି ।
ନଗ୍ରେ ପଶିବାକୁ ଚାରିଆଡ଼େ ଅଛି ବାଟ
ସୁପଥ କରିଣ ଛାଡ଼ିଛନ୍ତି ଜଳଘାଟ ।
ଅମୃତମୟ ବରୁଣ ଜଳପତି ପୁର
ଶୁଣହେ ନାରଦ କହନ୍ତି ସେ ବେଦବର ।
କୃଷ୍ଣବଲ୍ଲଭ ରାଜାଙ୍କୁ ନିମନ୍ତ୍ରଣ କରି
ଗୁଆ ଅକ୍ଷତ ଦେଇଣ ଗଲେ ତପଚାରୀ ।
ବରୁଣର ନିମନ୍ତ୍ରଣ ଯୋଗାଡ଼ ସେ ପାଇ
ପତ୍ନୀର ଆଗେ କହିଲେ ରାଜା ସବୁ ଯାଇ ।
ବୋଇଲେ ସଖିରେ ଶୁଣ ଅପୂର୍ବ କଥାଏ
ବରୁଣ ପୁରକୁ ଯିବେ ଆମ୍ଭ ବେନି ପୋଏ ।
ନାରଦ ଗୋସାଇଁ ଆସି କହିଲେ ଯେମନ୍ତେ
ଶ୍ରୀମହାଲକ୍ଷ୍ମୀଙ୍କୁ ବିଭା କରିବା ନିମନ୍ତେ ।
ସେ କନ୍ୟା ଅଟେ ସାକ୍ଷାତେ ପୁଣି କମଳିନୀ
ଲାଖବିନ୍ଧି ତାକୁ ବିଭାହେବେ ଚକ୍ରପାଣି ।
ତେଣୁ ପୁତ୍ରକୁ ନେଉଛୁ ଆମ୍ଭେ ସଙ୍ଗେ ଧରି
ଦଶଦିନ ଉତ୍ତାରୁ ଯେ ଆସିବୁ ବାହାରି ।
ଶୁଣି ଭଗବତୀ ରାଣୀ ମନେ ବହି ଶ୍ରଦ୍ଧା
ବୋଇଲେ ଅଟନ୍ତି ପୁତ୍ର ମୋର ମହାଯୋଦ୍ଧା ।
ବ୍ରହ୍ମାଙ୍କ ପୁରରୁ ଯାଇ ବିଦ୍ୟା ଛନ୍ତି ପଢ଼ି
କ୍ଷତ୍ରିୟେ ଶୁତିବେ ତାକୁ ଦେଖି ପାଦେ ପଡ଼ି ।
ଅବଶ୍ୟ ତ ଲାଖ ବିନ୍ଧିପାରିବେ ମୋ ପୋଏ
ଏଥକୁ ସ୍ୱାମୀ ତୁମ୍ଭେ ନ କର କିଛି ଭୟେ ।
ମହାଲକ୍ଷ୍ମୀଙ୍କୁ ନୃସିଂହ ଏକା ବିଭାହେବେ
ଶକୁନ ଜାଣି କହିଲି ମୁହିଁ ସର୍ବ ଶୁଭେ ।
ବାମନେତ୍ର ଡେଇଁଲାଣି ମୋର ସାତଥର ।
ଜାଣିଲି ଯେ କାର୍ଯ୍ୟ ସିଦ୍ଧି ହେବ ପୁତ୍ରଙ୍କର ।
ଶ୍ରୀମହାଲକ୍ଷ୍ମୀ ଯେ ବଧୂ ହେବ ମୋର ନିଶ୍ଚେ
କି ପୁଣ୍ୟ ଅର୍ଜିବି ଗଙ୍ଗା ଯାଇ ଥାଇ ମଞ୍ଚେ ।

କି ତପ କରିବି କାଶୀ ଯାଇ ଆଜ ମୁହିଁ
ପ୍ରତ୍ୟକ୍ଷେ ପୁତ୍ର କରି ପାଇଲି ଭାବଗ୍ରାହୀ ।
ଏତେ ବୋଲିଣ ଉତ୍ସବ କଲେ ନଗ୍ରଯାକେ
ଚୌଷଠି ସହସ୍ର କନ୍ୟା ହସନ୍ତି କୌତୁକେ ।
ଏଥୁଅନନ୍ତରେ ଶ୍ରୀନୃସିଂହ ଭାବଗ୍ରାହୀ
ପିତାଙ୍କୁ ବୋଇଲେ ଏତେ ଉତ୍ସବ କିମ୍ପାଇଁ ।
ପିତା ବୋଇଲେ ବରୁଣ ପୁରେ ବାପ ଯିବା
କରିଅଛି କନ୍ୟା ପାଇଁ ସେହୁ ଲାଖ ନିର୍ଭା ।
ତୁମ୍ଭେ ଏକା ଯାନ୍ତେ ଆମ୍ଭେ ନ ଗଲେତ ନୁହେ
ତୁମ୍ଭଙ୍କୁ ପେଷି ରହିବୁ ଆମ୍ଭେ କେହ୍ନେ ଗୃହେ ।
ନୃସିଂହ ବୋଇଲେ ଯିବା ପାଇଁ ହୁଏ ମନ
ତେବେ ଅଛି ଲାଖବିନ୍ଧା ଆଉ କେତେଦିନ ।
ପିତା ବୋଇଲେକ ଆଉ ସାତଦିନ ଅଛି
ନାରଦ ଗୋସାଇଁ ସବୁ ଗଲେ କହି ପୂଛି ।
ନୃସିଂହ ବୋଇଲେ ଯେବେ ଯିବାକୁତ ତ୍ୱରା
ଏଠାକୁ ବରୁଣ ପୁର ସସ୍ତ୍ରଯୁଣ ପରା ।
ସପ୍ତଦିନରେ ବୋଲୁଛ ଲାଖବିନ୍ଧା ହେବ
ତିନିଦିନେ କେଉଁପରି ପାଦେ ଚାଲିଯିବ ।
ଆମ୍ଭ ପାତ୍ରମନ୍ତ୍ରୀ ସୈନ୍ୟ ସାମନ୍ତଟି ଯେତେ
ଏମାନେ ନ ଗଲେ ଶୋଭା ଦିଶିବ କେମନ୍ତେ ।
ତାତ ବୋଇଲେରେ ସୁତ ଏ କଥାତ ସତ
ନ ଗଲେ ତ ସରିଯିବ ଆମ୍ଭର ମହତ୍ତ୍ୱ ।
ଗଲେଣି ସର୍ବଜନ ନ ଯିବା ଆମ୍ଭେ କେହ୍ନେ
ଏଥକୁ ଯେ ସୁବିଚାର କର ବାବୁ ମନେ ।
ଶୁଣିଣ ନୃସିଂହ ସ୍ୱାମୀ ଚିନ୍ତି ଗରୁଡ଼କୁ
ବୋଇଲେ ହେ ପକ୍ଷୀରାଜ ଆସ ମୋ ପାଖକୁ
ତୋ ପୃଷ୍ଠେ ବସି ବରୁଣପୁରେ ଆମ୍ଭେ ଯିବା
ଲକ୍ଷ୍ମୀକି ବିଭାହୋଇଣ ବହୁକା ଆସିବା ।
ଏମନ୍ତ ଚିନ୍ତନ୍ତେ ଶ୍ରୀନୃସିଂହ ଦେବରାଜେ
ତକ୍ଷଣେ ମିଳିଲେ ଆଗେ ଆସି ପକ୍ଷୀରାଜେ ।
କ୍ଷଣମାତ୍ରକେ ବ୍ରହ୍ମାଣ୍ଡ ଯେହୁ ବୁଲିପାରେ
ରମ୍ୟକ ଦ୍ୱୀପୁଁ ମିଳିଲା ଆସି ସେ ସତ୍ୱରେ ।
ପ୍ରଣାମ କଲା ନୃସିଂହ ପଦ୍ମପାଦେ ଆସି
ବୋଇଲା କି ଆଜ୍ଞା ମୋତେ ହେଉ ବ୍ରହ୍ମରାଶି ।
ନୃସିଂହ ବୋଇଲେ ତୁହି ସଦା ମୋର ଦାସ
ନିମିଷକେ ବୁଲିପାରୁ ଭୁବନ ଅଶେଷ ।
ବଇକୁଣ୍ଠ ସିଂହାସନ ସମାନ ତୋ ପିଠି
ସେ ପିଠିରେ ବସି ବ୍ରହ୍ମାଣ୍ଡ ମୁଁ ପାରେ ଘୋଟି ।
ସଂସାରଯାକ ଦିଶୁ ତୁ ପକ୍ଷୀବର ପ୍ରାୟେ
ତୋରପରେ ନିତ୍ୟସ୍ଥଳା ସର୍ବଦା ମୋ ହୁଏ ।
ଯେବଣ ବେନି ଖଗଟି ପ୍ରକାଶେ ତୋ ଦେହୀ
ସବୁରି ପିଛଡ଼ା ତୋର ପଡ଼େ ଖଗ ହୁଇ ।
ଏଣୁ ମନୁଷ୍ୟମାନଙ୍କ ମୁଣ୍ଡେ ଅଛି ମୃତ୍ୟୁ
ଆମ୍ଭାକୁ ଗ୍ରାସୁଅଛି ନ ଜାଣେ କରି ହେତୁ ।
ପ୍ରତ୍ୟକ୍ଷେ ନାରାୟଣ ଅଟୁ ତୁ ବଇଠି
ମନକଲେ କୋଟି ଯୁଣ ବିସ୍ତାରୁ ତୁ ପିଠି ।
ମହାପ୍ରଳୟ କାଳରେ ବହିଛୁ ତୁ ପୃଷ୍ଠେ
ବହିବା ଏକା ଏବେ କି ଚମତ୍କାର ଅଟେ ।
ମୁଁ ଅଟେ ନାରାୟଣ ତୁ ଅଟୁ ଆତ୍ମା ମୋର
ମୋର ଯେତେ ବଳ ତେତେ ପରାକ୍ରମ ତୋର
ଏବେ ମୁହିଁ ତୋତେ ଜାଣ ଲୋଡୁଛି ଯହିଁକି
ତୁହି ମନକଲେ ମୁହିଁ ଆଣିବି ଲକ୍ଷ୍ମୀକି ।
ମୋର ତୋର କଥା ଜାଣ ଅଛଇଟି ଯେତେ
ତୋର ବିନୁ ବାହନ ନ ଗଛେ ଆନ ମୋତେ ।
ଶ୍ରୀନୃସିଂହ ଅବତାର ଅନ୍ତେ ଖଗେଶ୍ୱର
ସ୍ୱଦେହେ ତୋତେ ମୁଁ ନେବି ବଇକୁଣ୍ଠପୁର ।
ଶ୍ରୀମୁଖ ବଚନ ଗୋଟି ଅଟେ ମୋର ସତ୍ୟ
ଆବର କଥାଏ ଏବେ କର ତୁ ତୁରିତ ।
ବରୁଣର ପୁରଯାଏ ବେଗେ ଚାଲ ଯିବା
ଲକ୍ଷ୍ମୀ ନିମନ୍ତେ ଲାଖ ସେ କରିଛି ଦେଖିବା ।
ସେହି ଲାଖ ପାରିବିରେ ବିନ୍ଧି ଯଦି ମୁହିଁ
ତେବେଟି ଲକ୍ଷ୍ମୀଙ୍କି ମୋତେ ଦେବେ ଜଳସାଇଁ
ବିନ୍ଧି ନ ପାରିଲେ ସେ ନ ଦେବ କନ୍ୟାଜାଣ
ଏହିରୂପେ ସତ୍ୟ କରିଅଛି ସେ ବରୁଣ ।
ସପ୍ତଦ୍ୱୀପରୁ ରାଜାଙ୍କୁ ଆଣିଲାଣି ବରି
ଯାହାକୁ ଯୋଗ ଥିବ ସେ ହେବ ତାର ନାରୀ ।
ଏଣୁ ମୋତେ ସେହିଠାକୁ ବେଗେ ବିଜେକରା
ଲକ୍ଷ୍ମୀଙ୍କି ଆଣିଲେ ନାଶିବି ମୁଁ ପୃଥ୍ୱୀଭାରା ।
ଆମ୍ଭେ ଚିନ୍ତିଲେ ତୁ ଯହିଁ ଥିଲେ ଆସୁଥିବୁ
ଏହି ଅବତାର ଅନ୍ତେ ବୈକୁଣ୍ଠକୁ ଯିବୁ ।
ଶୁଣିଣ ସେ ପକ୍ଷୀରାଜ ଯୋଡ଼ି ବେନିକର
ବୋଇଲା ଜୀବନ ଧନ୍ୟ ଧନ୍ୟ ଅଟେ ମୋର ।
ଅବ୍ୟତକ ବ୍ରହ୍ମରାଶି ଯେଉଁ ଭାବଗ୍ରାହୀ
ବୈକୁଣ୍ଠଯାଏ ବିଷ୍ଣୁଙ୍କୁ ନେବି କନ୍ଧେ ବହି ।
ଏବେ ମୁଁ ଆଗେ ବରୁଣପୁରେ ଘେନିଯିବି
ଶ୍ରୀମହାଲକ୍ଷ୍ମୀଙ୍କି ଯାଇଁ ଦର୍ଶନ କରିବି ।

ଏଡ଼େ କଥାରୁ ଆଉକି ଅଛି ମୋର ଭାଗ୍ୟ
ବିଜେକର ପ୍ରଭୁ ଦେଖିବାକୁ ଲାଖ ଆଗ ।
ଏରୂପେ ସେ ନୃସିଂହଙ୍କୁ ଗରୁଡ଼ ଜଣାନ୍ତେ
ମିଳିଲେ ସଭାରେ ଆସି ପାତ୍ର ଯେ ଅମାତ୍ୟେ ।
କର୍ଣ୍ଣାଟେଶ୍ୱର ନୃପତି ସୁଜାଣ ଯେ ମନ୍ତ୍ରୀ
ପଦାତି ସୈନ୍ୟ ମିଳିଲେ ସେହି ମହାକ୍ଷତ୍ରୀ ।
ଗରୁଡ଼କୁ ଦେଖିଣ ସେ ସଭା ସର୍ବଲୋକେ
ବୋଲନ୍ତି ଭଲା ଭକ୍ତ ଏ ଅଟେ ଜନ୍ତୁଯାକେ ।
ସାକ୍ଷାତେ ଗୋବିନ୍ଦଙ୍କୁ ଏ ବହୁଛି ପିଠିରେ
ସବୁ ଭକ୍ତରେ ଶ୍ରେଷ୍ଠ ଏ ଅଟଇ ସଂସାରେ ।
ଦେଖିଣ କୃଷ୍ଣବଲ୍ଲଭ ହୋଇଲେ ଆନନ୍ଦ
ବୋଇଲେ ନୃସିଂହ ମୋର ନିଶ୍ଚୟ ଗୋବିନ୍ଦ ।
ନୋହିଲେ ଗରୁଡ଼ କିମ୍ପା ଏଥକୁ ଆସନ୍ତା
ଅବଶ୍ୟ ଏ ବିଭାହେବେ ବରୁଣ ଦୁହିତା
ଏପରି କୃଷ୍ଣବଲ୍ଲଭ ମନରେ ପାଞ୍ଚନ୍ତେ
ସେ କଥାତ ଅନ୍ତର୍ଯ୍ୟାମୀ ଜାଣି ହୃଦଗତେ ।
ପିତାଙ୍କୁ ବୋଇଲେ ପକ୍ଷୀ ଉପରେ ଯେ ବସ
ଆମ୍ଭଙ୍କୁ ନେଇ ବରୁଣ ରାଜାଙ୍କର ଦେଶ ।
ପାତ୍ର ମନ୍ତ୍ରୀ ଅମାତ୍ୟ ଯେ ସୈନ୍ୟବଳ ଯେତେ
ରଥରେ ବସି ଚଳିଲେ ସର୍ବେ ଯେଝାମତେ
ଏତେ କହି ଶ୍ରୀନୃସିଂହ ଘେନି ସାନଭାଇ
ପକ୍ଷୀପୃଷ୍ଠେ ବିଜେକଲେ ପିତା ସଙ୍ଗେ ଯାଇ ।
ନୃସିଂହ ଆଜ୍ଞାରେ ରଥେ ବସିଗଲେ ସୈନ୍ୟ
ଚଳନ୍ତି ଗରୁଡ଼ ଉପରେ ବସି ଭଗବାନ ।
ବରୁଣପୁରେ ଯାଇଣ ହୋଇଲେ ପ୍ରବେଶ
କଇଳାସୁ ମିଳିଲେକ ଆସି ବ୍ୟୋମକେଶ ।
ଅଠାଶୀ ସହସ୍ର ଋଷି ଘେନି ବେଦବର
ପ୍ରବେଶ ହୋଇଲେ ଆସି ବରୁଣର ପୁର ।
ତେତିଶକୋଟି ଦେବତା ଘେନି ଶଚୀସାଇଁ
ମିଳିଲେ ଆସି ବରୁଣ ରାଜାର ଯେ ମହୀ ।
ସପ୍ତଦ୍ୱୀପୁ ପରବେଶ ହେଲେ ଆସି ରାଜା
ସମସ୍ତଙ୍କୁ ସାଗର ତ କଲେ ପାଦପୂଜା ।
ଜମ୍ବୁଦ୍ୱୀପରୁ ମିଳିଲେ ଆସି ମୁରାସୁର
ତାହାଙ୍କୁ ସନ୍ତୋଷେ ପୂଜା କଲେକ ସାଗର ।
ଉତ୍ତମ ପୁର ମଣୋହି ଖଞ୍ଜା କରିଦେଲେ
ଅକ୍ଷତ ଗୁଆ ନେଇଣ ମଞ୍ଚରେ ବସିଲେ ।
ଦୁଷ୍ଟ ଲୋକଙ୍କୁ ସମସ୍ତେ ଜାଣ ଡରୁଥାନ୍ତି
ଡରିଲା ସକାଶୁ ଅଚ୍ଛେ ସେହି ନାଶଯାନ୍ତି ।

ଏରୂପେ ସେ ମୁରଦୈତ୍ୟ ଗଉରବ ପାଇ
ମଞ୍ଚା ଉପରେ ବସିଲେ ରାଜା ସୁଖେ ଯାଇ ।
ତହୁଁ ଉତ୍ତାରୁ ବରୁଣ ଅର୍ଘ୍ୟଥାଳି ଧରି
ଶ୍ରୀନୃସିଂହ ପାଦପଦ୍ମେ କଲେ ନିଉଛାଳ
ସୁବର୍ଣ୍ଣ ସିଂହାସନରେ ବସାଇଲେ ନେଇ
ତଳେ ଉଭାହେଲେ କାଖେ ବେନି ହସ୍ତଦେଇ ।
କୃତାର୍ଥ ହେଲି ବୋଲିଣ ବହୁ ସ୍ତୁତି କଲେ
ଚରଣ ସେବା ସାରିଣ ଆଗେ ଉଭାହେଲେ ।
ବୋଇଲେ କେତେବେଳୁଁ ମୁଁ ଥିଲି ଅନୁସରି
ଲକ୍ଷ୍ମୀକି ପୁଚ୍ଛିଥିଲେ ତ ଦ୍ୟନ୍ତି ବିଭାକରି ।
ଶ୍ରୀନୃସିଂହ ଆଜ୍ଞାକଲେ ଶୁଣ ଜଳାଧିପ
ସପ୍ତଦ୍ୱୀପ ବରି ଆଣିଅଛ ପରା ନୃପ ।
ସେ ରାଜାମାନେ ବିନ୍ଧନ୍ତୁ ଆଗେ ଲାଖ ଯାଇ
ଲାଖ ନ ବିନ୍ଧି କିରୂପେ ଯିବା ବିଭାହୋଇ ।
ନ ବିନ୍ଧି ବିଭାହେଲେ ତ ପାଇବା ନ ଲଜ୍ଜା
ବିଚାର କରିବେ ନିନ୍ଦା ସିନା ସର୍ବ ରାଜା ।
ମୋତେ ତ ତୁମ୍ଭେ ଜାଣ ମୁଁ ଜାଣଇ ତୁମ୍ଭଙ୍କୁ
ଲାଖ ଆଗେ ନେଇ ବିନ୍ଧା ସକଳ ରାଜାଙ୍କୁ ।
ତହୁଁ ଉତ୍ତାରେ ବୁଝିବା ଆମ୍ଭ କଥା ସବୁ
ବୋଲିବେ ନ ବିନ୍ଧି ଲାଖ କନ୍ୟା ନେଲେ ପ୍ରଭୁ
ଏମନ୍ତ ବୋଲିବେ ଯେ ସେ ଯାନ୍ତୁ ଆଗ ବିନ୍ଧି
ବିନ୍ଧି ନ ପାରିଲେ ଆମ୍ଭେ ଦେବୁ ତାହା ବିନ୍ଧି ।
ଶୁଣିଣ ବରୁଣ ବଡ଼ ଆନନ୍ଦିତ ହେଲେ
ନୃସିଂହ ପିତାଙ୍କୁ ପୁଣି ଶ୍ରେଷ୍ଠାସନ ଦେଲେ ।
ଶେଷଦେବଙ୍କୁ ବସାଇ ସେ ଶ୍ରେଷ୍ଠ ଆସନେ
ନୃସିଂହ ସମ ପୂଜିଲେ କଶ୍ୟପ ନନ୍ଦନେ ।
ବସିଲେ ସୁଜାଣ ମନ୍ତ୍ରୀ ଆଗେ ଅବଧାରୀ
ରହିଲେକ ସୈନ୍ୟଯାକ ଆଗେ ପଟୁଆରି ।
କର୍ଣ୍ଣାଟ ଈଶ୍ୱର କୃଷ୍ଣବଲ୍ଲଭର ପ୍ରାୟେ
ସନମାନେ ଯାଇ ବସିଲେକ ଯେଝା ଠାଏ ।
ମଣୋହିର ଘର ଖଞ୍ଜିଦେଲେ ତାଙ୍କୁ ରାଜା
ସେ ଘରେ ଭାଜିଲେ ପୁଳି ନାଡ଼ି କ୍ଷୀରି ଖଜା ।
ଖଣ୍ଡଅମୃତ ନବାତ ଛେନା ସରପୁଳି
ରଖିଲେ ଯାବତ ଦ୍ରବ୍ୟଯାକ ତହୁଁ ଢାଳି ।
କମଳା ଗୋରସ ସାଚିପଣା ସଙ୍ଗେ ଥୋଇ
ଅରୁଣ ଶାଳିଅନ୍ନ ଯେ କ୍ଷିରୀ ଖଣ୍ଡ ଦହି ।
ନୃସିଂହ ମଣୋହି ପାଇଁ ରଖି ସବୁ ବୁଝି
ମନ ହୋଇଲେ ସମସ୍ତେ ବସୁଥିବେ ଭୁଞ୍ଜି ।

ଗରୁଡ଼ ରହିବା ପାଇଁ ଦିବ୍ୟପୁର ଦେଲେ
ପାତ୍ରମନ୍ତ୍ରୀ ସୈନ୍ୟଯାଙ୍କୁ ଗୃହ ଖଞ୍ଜାଇଲେ ।
ଇନ୍ଦ୍ର ଗୋବିନ୍ଦ ଚାନ୍ଦୁଆ ଉପରେ ଟଣାଇ
ତହିଁରେ ବିଜେକଲେ ସେ ପ୍ରଭୁ ବେନିଭାଇ ।
ଏଥୁଅନନ୍ତରେ ପୁଣି ସେ ବରୁଣ ରାଜା
ଈଶ୍ୱର ଦେବତାଙ୍କୁ ସେ କଲେ ଦିବ୍ୟପୂଜା ।
କରପତ୍ର ଯୋଡ଼ିକରି ଆଗେ ହେଲେ ଉଭା
ବୋଇଲେ ଦିଶିଲା ଏବେ ମୋର ପୁର ଶୋଭା
ପାର୍ବତୀଙ୍କ ଦୟା ଥିବାରୁ ମୋଠାରେ
ବିଜେକଲେ ଆସି ଲକ୍ଷ୍ମୀଦେବୀ ସ୍ୱୟମ୍ବରେ ।
ଏତେ ବୋଲିଣ ବରୁଣ କୃତାଞ୍ଜଳି ହୋଇ
ରଖିଲେକ ଈଶ୍ୱରଙ୍କୁ ଖଞ୍ଜାମାନ ଦେଇ ।
ଈଶ୍ୱର ଯେ ଦିବ୍ୟପୁର ପାଇ ବିଜେକଲେ
ଚନ୍ଦନ ପୁଷ୍ପ ମଣୋହି ଖଞ୍ଜା ଆଦି ଦେଲେ ।
ତହିଁ ଉତ୍ତାରୁ ବ୍ରହ୍ମାଙ୍କୁ ପୂଜାମାନ ସାରି
ଅଠାଂଶୀସସ୍ର ଋଷିଙ୍କୁ ପ୍ରଣିପାତ କରି ।
ପୂଜା ସେବା ସାରି ଗୃହ ସବୁଙ୍କୁ ଯେ ଦେଲେ
ଋଷିଏ ମନ୍ଦିରମାନ ପାଇ ବିଜେକଲେ ।
ଏରୂପେ ହେ ବସା ସଞ୍ଜା ଦେଇ ଜଳରାଜା
ସମସ୍ତ ରାଜାଙ୍କୁ ପୁଣି କଲେ ପାଦପୂଜା ।
ଅଷ୍ଟରତନରେ ପୁର ନିର୍ମାଣ କରାଇ
ରାଜାମାନଙ୍କୁ ଯେ ବିଜେ କରାଇଲେ ତହିଁ ।
ତେତିଶ କୋଟି ଆସନ ନେଇ ବିଧିପୂର୍ବେ
ପୂଜାସେବା କରାଇଣ ବସାଇଲେ ଦେବେ ।
ଦଶଦିଗପାଳଙ୍କୁ ସେ ଆସନ ଖଞ୍ଜିଲେ
ପୂଜାବିଧି କରିସାରି ସେଠାବରୁ ଗଲେ ।
ବାସବ ଦେବଙ୍କୁ ପୁଣି କଲେ ପଉରୁଷ
ଅଷ୍ଟନିଧିପୁର ତାଙ୍କୁ ଦେଲେ ଗୃହବାସ ।
ସବୁରି ହସ୍ତେ ଚନ୍ଦନ ଚୂଆ ଫୁଲ ଦେଇ
କୋମଳ ମଧୁର ବାକ୍ୟେ କହନ୍ତି ବିନୟୀ ।
ବୋଲନ୍ତି ନୃପତିମାନେ ସର୍ବେ ତୁମ୍ଭେ ଶୁଣ
ଯହିଁ ପାଇଁ ଆଣିଅଛି ମୁଁ କରି ନିମନ୍ତ୍ରଣ ।
ସଭାରେ ବିଜେ କରିଣ କର କାର୍ଯ୍ୟ ସିଦ୍ଧି
ଜଣକେ ମଞ୍ଚ ଗୋଟିଏ କରିଛି ଅବଧି ।
ଦୁହିତା ପାଇଁ ମୋହର ଆଣିଅଛି ବରି
ଯେ ଲାଖ ବିନ୍ଧିବ ତାକୁ କନ୍ୟା ବିଭାକରି ।
ସପ୍ତଦିନ ଯାଏ କରିଅଛି ଲାଖ ଖଞ୍ଜା
ବିନ୍ଧିବେକ ସାତଦିନେ ସପ୍ତଦ୍ୱୀପ ରାଜା ।
ଦିନ ଗୋଟିକରେ ଦ୍ୱୀପଗୋଟି ସରିଲାରୁ
ସେଦିନର ଲାଖବିନ୍ଧା ରହିବ ସେଠାରୁ ।
ରାତ୍ରି ପାହିଲେ ଭେଟିବେ ପୁଣି ସବୁ ନୃପ
ଏରୂପେ ବିକଳ୍ପେ ସାତବାରେ ସାତଦ୍ୱୀପ ।
ଭୃଗୁଙ୍କର ବାରଠାରୁ ଗୁରୁବାର ଯାଏ
ଏରୂପେ କଳ୍ପନା କରିଅଛି ଶୁଣ ରାୟେ ।
ଶୁଣିଣ ବେଶଭୂଷଣ ରାଜାମାନେ ହେଲେ
ବରୁଣର ଆଜ୍ଞାପାଳି ମଞ୍ଚାରେ ବସିଲେ ।
ବସିଲେ ସେ ସଭାରେ ଯେ ଯାହା ଧନୁ ଧରି
ସେହି ସଭା ଶୋଭା ଗନ୍ଧର୍ବଙ୍କ ସଭା ପରି ।
ଷାଠିଲକ୍ଷ ରାଜାଙ୍କୁ ଯେ ଷାଠିଲକ୍ଷ ମଞ୍ଚା
ବରୁଣ ସେ ନିର୍ଭା କରିଛନ୍ତି ସର୍ବ ସଞ୍ଚା ।
ସପତ ଦ୍ୱୀପରୁ ଆସିଛନ୍ତି ଯେତେ ଜନ
ସମସ୍ତଙ୍କ ଅର୍ଦ୍ଧୋଳି ଯେ ସହନ୍ତି ବରୁଣ ।
ପୁରାଣେ ସମ୍ଭବ ଆଉ ଯେତେ ଛନ୍ତି କହି
ଗୋଟିଏ ଦ୍ୱୀପ ଅର୍ଦ୍ଧୋଳି ନ ପାରେକେ ସହି ।
ଷାଠିଏଲକ୍ଷ ରାଜାଙ୍କର ଯେତେ ଥାଏ ସୈନ୍ୟ
ଯୋଗାଡ଼ ଦିଅନ୍ତି ସମସ୍ତଙ୍କୁ ଭିନ୍ନ ଭିନ୍ନ ।
ଏମନ୍ତେ ବସନ୍ତେ ସଭା ମଧ୍ୟେ ସର୍ବ ରାଜା
କହନ୍ତି ଯେଣୁ ସାଗର ଲାଖର ପରିଯା ।
ବୋଲନ୍ତି ସାବଧାନେ ହୋ ଶୁଣ ନୃପମାନେ
ଏ ଲାଖ ବିନ୍ଧାର କଥା ଅଟଇ ଯେସନେ ।
ବାରତାଳ ଉଚ୍ଚେ ପୋତିଅଛି ମଣିସ୍ତମ୍ଭ
ତହିଁର ଉପରେ ଦେଖ ଅଛି କେତେ ଦ୍ରବ୍ୟ ।
ପବନାନଳ ନାମରେ ବୁଲେ ଚକ୍ର ତହିଁ
ସେ ଚକ୍ରର ପ୍ରାୟ ମନ ବୁଲି ନ ପାରଇ ।
ଆଖି ପିଛୁଡ଼ିବା ମାତ୍ରେ ସସ୍ରଥର ବୁଲେ ।
ଏରୂପେ ଚକ୍ର ସ୍ଥାପିଣ ବୃହସ୍ପତି ଥିଲେ ।
ସେ ଚକ୍ର ଉପରେ ଦେଖ ମୃଗେକ ବସିଛି
ନାରାଚ ଯେ ମୃଗପୁଚ୍ଛ ଧରି ଦେବ ପୋଛି ।
ମୃଗ ବାମପାଦେ ଯାଇ ନାରାଚ ପଡ଼ିବ
ଦକ୍ଷ କର୍ଣ୍ଣେ ବାଜି ବାମଚକ୍ଷୁକୁ ଆସିବ ।
ବାମ ଚକ୍ଷୁରେ ରହିବ ଗଳି ସ୍ଥିର ହୋଇ
ତେବେ ତାକୁ ବରି କନ୍ୟା ବିଭାଦେବି ମୁହିଁ ।
ଏରୂପେ ବରୁଣ ରାଜା ବହୁଁ ସଭାଗ୍ରତେ
ଶୁଣି ରାଜାମାନେ ବସିଲେକ ସ୍ତମ୍ଭୀଭୁତେ ।
ବୋଇଲେକ କେଡ଼େ ଲାଖ କଲେ ଜଳରାଜା
ବିନ୍ଧି ନ ପାରି ପାଇବେ ସର୍ବେ ପରା ଲଜ୍ଜା ।

ପୁଚ୍ଛଧରୁ ମୃଗ ବୁଲିଯିବା ଶତେବେଢା
ବିନ୍ଧନ୍ତେ ଯେ ଶର ବାଜି ହେବ ପାଦପୀଡା
ପାଦେ ପୁଣି ଗଳି କର୍ଣ୍ଣଦ୍ୱାରେ ଚଳିଯିବ
ବାମ ନୟନରେ ଗଳି ନାରାଚ ଦିଶିବ ।
ପାଦୁଁ କେତେ ଛଡା ପୁଣି ନେତ୍ରୁ କେତେ ଦୂର
ଏ ଲାଖ ବିନ୍ଧିବାକୁ କେ ଅଛି ତିନିପୁର ।
ପାଙ୍ଗୁଳାବାତ ପରାୟେ କମ୍ପେ ଦେହ ଅତି
କାହିଁକି ସ୍ଥାପିଲେ ଏଡେ ଲାଖ ବୃହସ୍ପତି ।
ଏ ରୂପେ ସେ ସଭାଯାକ ହୁଅନ୍ତେ କୁହାକୁହି
ବରୁଣ ମନ୍ତ୍ରୀ ବୋଇଲେ ଡରୁଛ କିମ୍ପାଇଁ ।
ସପତଦ୍ୱୀପଯାକରୁ ଏତେ ରାଜା ଆସି
ଜଣେ ହେଲେ ନ ଉଠିକେ ମନରେ ଭରସି ।
କ୍ଷତ୍ରୀ ହୋଇ ଏଥି କେହି ନାହିଁ ରାଜା ଜଣେ
ଆସିଲତ କାହିଁପାଇଁ ଯିବ କହ କେଣେ ।
ସଭାରେ ଶୁଣି ବୋଇଲେ ସର୍ବ ସତ ସତ
ଆଉ ରାଜାଏ ବୋଇଲେ ଶୁଣ ମୋ ବୃତ୍ତାନ୍ତ ।
ଏ ଲାଖ ବିନ୍ଧିବାକୁ କରିବା ଯେବେ ମନ
କନ୍ୟାକୁ ଆଣନ୍ତୁ ଆଗ ଦେଖିବା ତା ବର୍ଣ୍ଣ ।
ଏହିରୂପେ ରାଜାମାନେ ହୁଅନ୍ତି କୁହାକୁହି
ବରୁଣ ଆଗେ କହିଲେ ମନ୍ତ୍ରୀ ତାହା ଯାଇ ।
ବୋଇଲେ ସାବଧାନେ ତୁ ଶୁଣହେ ସାଗର
ରାଜାଏ ବସି ସଭାର କଲେକ ବିଚାର ।
ବୋଇଲେ ଦେଖନ୍ତୁ କନ୍ୟା ଆଣି ଆମ୍ଭ ଆଗେ
ତେବେଟି ଲାଖେ ବିନ୍ଧିବା ପାଇଁ ଯେଝା ମାର୍ଗେ ।
ବରୁଣ ବୋଇଲେ ମନ୍ତ୍ରୀ ଏକଥା ପ୍ରମାଣ
କନ୍ୟାକୁ ନ ଦେଖି କେହି ନ ବିନ୍ଧିବେ ବାଣ ।
ଏତେକ ବୋଲି ବରୁଣ ଭିତରକୁ ଗଲେ
ମହାଦେଈଙ୍କ ଛାମୁରେ ଗୋଚର କରିଲେ ।
ବୋଇଲେ ଗୋ କମଳାକୁ ବେଶ ବେଗେ କରି
ମେଢକୁ ବିଜେ କରାନ୍ତୁ ଘେନି ପରିବାରୀ ।
ବସନ୍ତୁ ମେଢ ଉପରେ ଦେଖନ୍ତୁ ରାଜନେ
ଶୁଣି ମୃଦୁସୁଲୀ ବେଶ କଲେକ ଯତନେ ।
ପିନ୍ଧିଲେ ନାନାଦି ପୁଷ୍ପ ଖଞ୍ଜି ଦିବ୍ୟଖୋଷା
ଶ୍ୱେତ ପୀତ ରଙ୍ଗ ନାନାବିଧ ଫୁଲମିଶା
ଲଲାଟେ ସୁଗନ୍ଧ କସ୍ତୁରୀର ଚିତା ଘେନି
ନେତ୍ରରେ କଜ୍ଜଳରେଖା କର୍ଣ୍ଣେ କାପବେନି
ନାସାରେ ବସଣୀ ଲମ୍ବେ ମୁକୁତା ପ୍ରଦୀପ
କର୍ଣ୍ଣରେ ଶୋଭଇ ତିନିସରି ସୁନାଚାପ ।
ଶୁଦ୍ଧ ସୁବର୍ଣ୍ଣର ପ୍ରାୟ ଦିଶେ ଦେହ ଜ୍ୟୋତି
ଶରଦଚନ୍ଦ୍ରମା ପ୍ରାୟେ ଦିଶେ ମୁଖକାନ୍ତି ।
ଶ୍ରୀଭୁଜେ ପଦ୍ମ ବିରାଜେ କୋଟିପଦ୍ମ ଆଭା
ବିକାଶଇ ମୁଖପଦ୍ମ କୋଟି ଚନ୍ଦ୍ରପ୍ରଭା ।
ଶ୍ରୀପଦ୍ମ ବେନି ହସ୍ତରେ ପଦ୍ମ ବେନି ଶୋହେ
ବେନିପାଦେ ବେନିପଦ୍ମ ସର୍ବ ମନମୋହେ ।
ପ୍ରତ୍ୟକ୍ଷରେ କମଳା ସେ ବିଷ୍ଣୁ ପ୍ରିୟବତୀ
ରୂପକୁ ନୋହିବେ ସରି କୋଟିଏ ଯୁବତୀ ।
ଦିଶଇ ଯେ ବେନିନେତ୍ରେ ଯେହ୍ନେ ତୀକ୍ଷ୍ଣଶର
ଚାହିଁଦେଲେ ପୁରୁଷଙ୍କୁ ଘୋଟେ କାମଜ୍ୱର ।
ସୁଝୀନ ପଟନୀ ପିନ୍ଧିବାର ଫେର ଉଡେ
ଦେହଯାକ କମଫୁଟି ଦିଶେ ଚାରିଆଡେ ।
ହୀରାନୀଳା ମଣି ମୁକ୍ତା ମାଣିକ୍ୟ ବୈଦୁର୍ଯ୍ୟ
ଅଷ୍ଟରତ୍ନ କାମେ ଭରି ହୋଇ ଦିବ୍ୟସଜ ।
ଗଜଦନ୍ତ ପଲଙ୍କରେ ବସିଲେକ ଯାଇ
ପାରୁଶେ ହଂସିନୀ ମୃଦୁସୁଲୀ ଅଛି ରହି ।
ଚାମର ପୁଚ୍ଛା ହାନ୍ଦୋଳ ଚାରିପାଶେ ଢାଳେ
ଶ୍ରୀଛାମୁରେ ଶ୍ୱେତଛତ୍ର ଟେକନ୍ତି ଦେ କରେ ।
ଲକ୍ଷେକ ବନିତା ମିଳି ହୁଳହୁଳି ଦ୍ୟନ୍ତି
ଲକ୍ଷେକ ଶଙ୍ଖ ମହୁରୀ ବାଜେ ଚଉକତି ।
ଚାରିଦିଗରେ ଶବଦ ଶୁଭଇ ଜନଙ୍କୁ
ବିଜେ କରୁଛନ୍ତି ଲକ୍ଷ୍ମୀ ମେଢ ଉପରକୁ ।
ଯୁବତୀଗଣ ମଧ୍ୟରେ ଚଳଇ ହାନ୍ଦୋଳା
ପଲଙ୍କରେ ବସି ବିଜେ କରନ୍ତି କମଳା ।
ଅନଙ୍ଗ ଲକ୍ଷ୍ମୀ ଅଶେଷ ଗୁଣ ଅଟେ ଯାର
ତାହାଙ୍କ ସମାନ ସ୍ତିରୀ ନାହିଁ କେ ସଂସାର ।
ଶରଦ ଚନ୍ଦ୍ରମା ପ୍ରାୟ ଦିଶେ ମୁଖ ଗୋଟି
ଚାହିଁଲେ ନୟନୁ ବହୁଅଛି ଅମୃତଟି ।
ବାଜେ ଚୌଦିଗେ ଅମୃତ ଜିଣା ବୀଣାପାଣି
ଗହଣ ସମ୍ଭାରେ ଆସୁଛନ୍ତି କମଳିନୀ ।
ଉପରେ କରନ୍ତି ପୁଷ୍ପବୃଷ୍ଟି ଦେବତାଏ
ବିଡିଆ ଲାଗି କରନ୍ତି ମୁଖେ ନାୟିକାଏ ।
ସୁବାସିତ ଜଳ ଧରି କେବଣ କାମିନୀ
ଛାମୁରେ ଦିଅନ୍ତି ଅର୍ଘ୍ୟ ଧୂପ ବିଳାସିନୀ ।
ଲକ୍ଷେକ ବନିତା ମିଳି ଦ୍ୟନ୍ତି ହୁଳହୁଳି
ନାଚନ୍ତି ଗଣିକାଗଣ ବେଢି ଢଳଢଳି ।
ଉଠିଲେ କମଳା ହାନ୍ଦୋଳାରୁ ଯେତେବେଳେ
ଉଠି ଉଭାହୋଇ ଦେଖନ୍ତି ତା ନୃପମାଳେ ।

ଏକ ଦୃଷ୍ଟି ହୋଇ ଚାହିଁଛନ୍ତି ନୃପମଣି
ମେଢେ ବିଜେକଲେ ବ୍ରହ୍ମାଣ୍ଡର ଠାକୁରାଣୀ ।
ନିମିଷକେ ଉଭାହୋଇ ବସିଲେକ ବାଳୀ
ଦେଖି ରାଜାଙ୍କର ତେଜମାନ ଗଲା ଟଳି ।
କାମେ ମୋହ ହୁଅନ୍ତେ ସେ ଚାହିଁ ସବୁ ନୃପ
ବୋଲନ୍ତି ଗଢିଲା ଏଡେକେ ସୌନ୍ଦର୍ଯ୍ୟ ରୂପ ।
ଏହା ପରି ସୁନ୍ଦରୀ ତ ବ୍ରହ୍ମାଣ୍ଡରେ ନାହିଁ
କେତେ କାଳ ବସି ଏହା ଗଢିଲାକ ବିହି ।
କାମ ସମୁଦ୍ରେ ଆଣି ଏ ନାବ ଚଳାଇଲା
ମନସିଜ ବଳକୁ ସେ ମନ୍ଥି ପକାଇଲା ।
ଆମ୍ଭେ ହେଲୁ ଦଧିଭାଣ୍ଡ ଏହୁ ଖୁଆଦଣ୍ଡ
ମନ୍ଥି ପକାଇଲା ସମସ୍ତଙ୍କ ମନକୁନ୍ଦ ।
ଅପାଙ୍ଗ ନେତ୍ରେ ଚାହିଁଛି ବାଳୀ ଟେକି ଯାହା
ସବୁରି ଦେହରେ ଗଲି ବିଦାରୁଛି ତାହା ।
ଦେଖ ମୁଖ ଲୋଚନ ଯେ ଏହା ନାସା ଓଷ୍ଠ
ଚାହିଁଲା ମାତ୍ରେ ସବୁରି ପୁରିଅଛି ପେଟ ।
ଠାରି ଏ ସଖୀମାନଙ୍କୁ କହୁଛି ଯେ ବାଣୀ
ତାହା ଶୁଣିଣ ଧଇର୍ଯ୍ୟ ଧରିବେକ ପୁଣି ।
ହସି ଯେବେ ଦେବ ଚାହିଁ ଲପନକୁ ଟେକି
ଦିଶିବ ମୁକୁତା ପ୍ରାୟ ଦଶନ ଝଟକି ।
ଦେଖ କେଡେ ଶୋଭାବନ ନାସା ବେନିପୁଡା
ହେମ ବସଣୀ ଲାଗିଛି ତହିଁ ହୋଇ ଗଢା ।
କର୍ଣ୍ଣରେ ଯେଉଁ ରତନ ବେନି ପ୍ରକଶିଛି
ଗୁରୁ ଶୁକ୍ର ଉଦେ ପ୍ରାୟ ଆମ୍ଭଙ୍କୁ ଦିଶୁଛି ।
କଣ୍ଠରେ ଯେ ଶୋଭାବନ କହିବା କାହାକୁ
ପାଣି ପିଇଲେ ଝଟକି ଦିଶିବ ସଭାକୁ ।
ଯେଉଁ କୁଚ ବେନି ଦିଶୁଅଛି ଶମ୍ଭୁପ୍ରାୟେ
କାମଦେବ ଲହରୀ କି ସେହିଠାରୁ ବହେ ।
ଧନ୍ୟ ସେ ବିହି କି ଯୋଗେ ଗଢିଛିୟା ଦେହ
ସମ୍ପୂର୍ଣ୍ଣେ ଦିଶୁଛି ଶରୀରରେ ଶିରୋରୁହ ।
ଆବର ଅମୃତ ଅଛି ଦେହଯାକ ପୁରି
ଭେଳିକି ଲାଗୁଛି ଚାହିଁଦେଲା ମାତ୍ରେ ସରି ।
ଭ୍ରୂଲତାର ବକ୍ରଭାବ ଦିଶଇ କେସନ
ଆମ୍ଭଙ୍କୁ ନିଶ୍ଚେ ହେଲା ଏ କାମ ପଞ୍ଚବାଣ ।
ଭ୍ରୂଲତାର ରେଖା ଧନୁ ପୀଡାଗୁଣ କଲା
ଡୋଳାକୁ ଶର କରିଣ ଆମ୍ଭଙ୍କୁ ବିନ୍ଧିଲା ।
କି ଲାବଣ୍ୟ କରି ଗଢିଅଛି କଟିଭାଗ
ଈଶ୍ୱର ଡମ୍ବରୁ ପ୍ରାୟ ଦିଶୁଛି ତରଙ୍ଗ ।

କାମଭାଣ୍ଡର ଅର୍ଗଳୀ ସେହୁ ଅଛି ହୋଇ
ଦେଇଛି କି କଞ୍ଚ ମୃଦ ସୁଧାଭାଣ୍ଡ ଥୋଇ ।
ଢାଙ୍କୁଣୀ କି ଫରୁଆରୁ ରଖି ପକାଇଛି
ଆପଣାର ଦ୍ରବ୍ୟ ଆପେ ଦେଖି ନ ପାରୁଛି ।
ଉଲଟ ରମ୍ଭା ପରାୟେ ଦିଶେ ବେନି ଜାନୁ
ଚାଲନ୍ତେ ନ ଥରେ ଯେହ୍ନେ ଗଗନର ଭାନୁ ।
କନ୍ୟାପାଦ ବେନି ପ୍ରତ୍ୟକ୍ଷରେ ଲକ୍ଷ୍ମୀପାଦ
ସେ ପାଦୁଁ ଚଳିଲା ପ୍ରାୟ ଦିଶେ ମକରନ୍ଦ ।
ଭକତ ଭଣ୍ଡାରକୁ ଏ ଅଟେ ମୋକ୍ଷଦ୍ୱାର
ବିଷ୍ଣୁ ପତ୍ନୀ ପ୍ରାୟ ଦିଶୁଅଛି ଶୋଭାକର ।
ଯେହୁ ଜୀଇଥିବ ବ୍ରହ୍ମ ପ୍ରଳୟର ଯାଏ
ସେହୁ ନ ଦେଖିବ ଏହା ତୁଲ୍ୟ ପ୍ରତିମାୟେ ।
ଯାକୁ ଦେଖିଲେ ଭଜନ ନିଶ୍ଚେ ପାଶୋରିବ
ସବୁବେଳେ ମନେପଡି ଭଜନ ଏ ହେବ ।
ଦିଶଇ ଅଙ୍ଗୁଳିମାନ ଚମ୍ପାକଢି ପ୍ରାୟେ
ପ୍ରକାଶିଛି ଲାଖ ଏ ଦ୍ୱିତୀୟେ ଚନ୍ଦ୍ର କିଏ ।
ଆରକ୍ତବର୍ଣ୍ଣ ପରାୟ ଦିଶେ କରପତ୍ର
ରସାଣ ସୁବର୍ଣ୍ଣ ପ୍ରାୟେ ଦିଶୁଅଛି ଗାତ୍ର ।
ହୀରା ଚୁନି ଲାଗି କାଞ୍ଚଲା ଯେ ଅଛି ଖଞ୍ଜି
ତହିଁ ପାଶେ ରତ୍ନମାଳୀ ଲମ୍ବେ ପୁଞ୍ଜି ପୁଞ୍ଜି ।
ତାଡ ତୋଡର ଯେ ବିଦ ମୁଦି ଦିଶେ ଶୋଭା
ଭାନୁଚନ୍ଦ୍ର ଉଦେ ପ୍ରାୟ ପ୍ରକାଶୁଛି ପ୍ରଭା ।
ପାର୍ବତୀ ସାରଦା କିମ୍ବା ଅଟେ କମଳାକ୍ଷୀ
ଆସି ଏ ସମସ୍ତଙ୍କର ବନ୍ଧିକଲା ଆଖି ।
ଭିନ୍ନ ଭିନ୍ନ କରି କେତେ ବାହୁନିବା ପୁଣ
ରତି କି ମୋହିନୀ ଏହୁ ଅଟେ ପଞ୍ଚବାଣ ।
ଆମ୍ଭେ ରାଜାଗଣଯାକ ହେଲୁ ଦଧିକୁଣ୍ଡ
ସେ କୁଳ ମନ୍ଥିଲା ଏହୁ ହୋଇ ଖୁଆଦଣ୍ଡ ।
ଗୁରୁ ଶୁକ୍ର ମଧ୍ୟେ ଯେହ୍ନେ ଦିଶେ ଚନ୍ଦ୍ରଦ୍ୱରା
ଇନ୍ଦ୍ରଧନୁରେ କି ଗୁନ୍ଥା କରିଛି ତା ହାରା ।
ଲକ୍ଷ୍ମୀ ଶ୍ରୀମୁଖରୁ ତାହା ଦିଶେ ଶୋଭାକର
ସୁଧାନିଧି ଘେନି ଆମ୍ଭଙ୍କୁ ଏ ହେଲା ମୋର ।
ରସିକ ପୁରୁଷଙ୍କ ଏ ହେଲା କାମହ୍ରଦ
କ୍ଷୁଧା ନ ଲାଗଇ ରାତ୍ରେ ନ ମାଡଇ ନିଦ ।
ଦେହଯାକ ଏହାର ହେ ସବୁ ସମସରି
ଚାହାଁଣି ଦେଖିଣ ଆମ୍ଭେ ହେଉ କାମେ ଘାରି ।
ଏମନ୍ତ ବୋଲି ରାଜାଏ ପାଞ୍ଚ ମନେ ମନେ
ମେଢ ଉପରକୁ ଚାହିଁଅଛନ୍ତି ନୟନେ ।

ଆସନରେ ମହାଲକ୍ଷ୍ମୀ ଛନ୍ତି ବିଜେକରି
ଚାମର ଢାଳନ୍ତି ପାଶେ ଲକ୍ଷେ ପରିବାରୀ ।
ହଂସିନୀ ନାମେ ଯେ ବାଳୀ ଲକ୍ଷ୍ମୀ ସଙ୍ଗାତୁଣୀ
ସେବାରେ ସେ ଲାଗିଅଛି ତାଙ୍କ ମନ ଜାଣି ।
ଶ୍ରୀମହାଲକ୍ଷ୍ମୀର ନାମ ରଞ୍ଜାଇବା ପାଇଁ
ପୂର୍ବ ଶାପେ ହୋଇଛନ୍ତି ମର୍ତ୍ତ୍ୟେ ଜନ୍ମ ସେହି ।
ଜାଣଇ ଭୂତ ଭବିଷ୍ୟ ବର୍ତ୍ତମାନ ତିନି
ଜନ୍ମେ ଜନ୍ମେ ଅଛି ଲକ୍ଷ୍ମୀଙ୍କର ସେବା ଘେନି ।
ଯେ କାଳରେ ଭୃଗୁଋଷି ଲକ୍ଷ୍ମୀ ଜାତକଲେ
ତହିଁ ସଙ୍ଗେ ଅଷ୍ଟସଖୀ ପ୍ରକାଶିତ ହେଲେ ।
ବରୁଣପୁରେ ଲକ୍ଷ୍ମୀକି ଥୋଇ ଯିବା କାଳେ
ରହିଲେ ଅଷ୍ଟସଖୀଏ ଲକ୍ଷ୍ମୀ ସଙ୍ଗ ମେଳେ ।
ସେ ଅଷ୍ଟସଖୀଙ୍କ ନାମ କହିବା ହୋ ଶୁଣ
ହଂସିନୀ ହୈମବତୀ ଯେ ହରିଣାକ୍ଷୀ ପୁଣ ।
ପଦ୍ମିନୀ ପାବନୀ ପଦ୍ମନେତ୍ରୀ ପରିମଳା
ଚିତ୍ରପିତୁଳା ଯେ ମିଶି ଏ ଅଷ୍ଟ ଅବଳା ।
ମହାଲକ୍ଷ୍ମୀ ଜନ୍ମିଲେ ସେ ସଖି ଜନ୍ମିଥାନ୍ତି
ମହାଲକ୍ଷ୍ମୀଙ୍କର ସଙ୍ଗ କେବେ ନ ଛାଡ଼ନ୍ତି ।
ଅଷ୍ଟସଖୀପରେ ହଂସିନୀ ଯେ ଅଗ୍ରଲେଖା
କମଳା ମାତାଙ୍କର ଯେ ସଖୀ ଅତି ସଖା ।
ବଦନ୍ତି ଯେ ବେଦବ୍ରହ୍ମା ଶୁଣ ହେ ନାରଦ
ଶ୍ରୀନୃସିଂହ ପୁରାଣେ ଏ ଅଟେ ମୋକ୍ଷପ୍ରଦ ।
ଲକ୍ଷ୍ମୀଙ୍କର ଲାଖବିନ୍ଧା ଏହୁ ପୁଣ୍ୟବାଣୀ
ଶୁଣନ୍ତେ ମୋକ୍ଷ ଗତିକି ଲଭିବେଟି ପ୍ରାଣୀ ।
ଷାଠିଲକ୍ଷ ରାଜା ଆସ୍ଥାନରେ ଛନ୍ତି ବସି
ମହାଲକ୍ଷ୍ମୀ ରୂପ ଦେଖି ହେଉଛନ୍ତି ତୋଷି ।
ବ୍ରାହ୍ମଣ କ୍ଷତ୍ରିୟ ବୈଶ୍ୟ ଶୂଦ୍ରଆଦି ଯେତେ
ଏକଦୃଷ୍ଟି ହୋଇ ଚାହିଁ ଅଛନ୍ତି ସମସ୍ତେ ।
ମେଢ଼ ଉପରକୁ ସର୍ବେ ଅଛନ୍ତି ଯେ ଚାହିଁ
ବୋଲନ୍ତି ଶୂନ୍ୟୁ ପଡ଼ିଲା ଖସି ଚାନ୍ଦମୁହିଁ ।
ବୁଝିଲେ କଳଙ୍କ ଅଛି ଚନ୍ଦ୍ର ଦେହେ ଜାଣ
ସମୟରେ ରାହୁ ଗ୍ରାସୁଅଛି ତାଙ୍କୁ ପୁଣ ।
ପଦ୍ମକୁ ଆଣିଣ ଲକ୍ଷ୍ୟ କରନ୍ତାଇ ଅବା
ସେ ପଦ୍ମ ପଦ୍ମେ ମିଳାଇ ଲାଗି ଚନ୍ଦ୍ରପ୍ରଭା ।
ସମୁଦ୍ର ଭିତରୁ ଜନ୍ମିଲା ଏ ବୋଲନ୍ତାଇଁ
ସେ ଅଟେ ଲୁଣସିନ୍ଧୁ ଏ ଅଟେ ଅମୃତହିଁ ।
ସ୍ତିରୀଙ୍କୁ ଅବଳା ବୋଲି ଲେଖନ୍ତି ନା ବିହି
ଏହା ନ ବୁଝିଲେ କାହା ମନ ନ ଚଳଇ ।

ଆମ୍ଭେ ଯେତେ ରାଜା ଚାହିଁ ରହିଛୁ ନିରେଖି
ନିଶ୍ଚମ୍ଭ ହୋଇ ବସିଛି କେମ୍ନେ ଚନ୍ଦ୍ରମୁଖୀ ।
ଆନ ସ୍ତିରୀ ହୋଇଲେ ତ ତରଳି ପଡ଼ନ୍ତା
କାହାକୁ-ବରିବ ବୋଲି ରାଜାଙ୍କୁ ଚାହାଁନ୍ତା ।
ଏହିରୂପେ ପାଞ୍ଚନ୍ତେ ସେ ସର୍ବ ନୃପବର
ମହାଲକ୍ଷ୍ମୀ ରୂପ ଦେଖି ହୁଅନ୍ତି କାତର ।
ବୋଲନ୍ତି ଏହୁ କାହାକୁ ହେବ ପୁଣି ଯୋଗ୍ୟ
ଯାହାର ଥିବଟି ଭାଗ୍ୟ କରିବ ସେ ଭୋଗ ।
କେ ବୋଲେ କନ୍ୟାର କଥା ପ୍ରତେଲାଗୁ ନାହିଁ
ଲାଖ ବିନ୍ଧିଲେ ସିନା କେ ନେବେ ବିଭାହୋଇ ।
ବ୍ରହ୍ମା ବିଷ୍ଣୁ ରୁଦ୍ର କିବା କରିବେ ଯେ ଭୋଗ
ନର ଛାର ଛୁଇଁବାକୁ କାହିଁ ଏଡ଼େ ଯୋଗ୍ୟ ।
ନ ଜାଣିବା ପଣେ ଆମ୍ଭେ ଆସିଲଇଁ ଧାଇଁ
କାର୍ଯ୍ୟ କେହି ନ ପାଇଣ ଯିବା ଲଜ୍ଜା ପାଇ ।
ତଥାପି ଏଠାକୁ ଆସି ଏହି ଲାଭ ହେଲା
ଲକ୍ଷ୍ମୀ ଦେଖିଲଇଁ ସର୍ବ ପାପ ଛାଡ଼ିଗଲା ।
ଏରୂପେ କହି ରାଜାଏ ହୋଇଲେ ତରଳ
ପ୍ଲକ୍ଷଦ୍ୱୀପ ରାଜାଗଣ ଉଠିଲେ ସକଳ ।
ବୀରଭଦ୍ର ବୋଲିକରି ତାର ନାମ କହି
ବୋଇଲେ ସେ ଏଡ଼େ ଭୟ କରୁଛ କିମ୍ପାଇଁ ।
ଭରସାକରି ବିନ୍ଧିବା ଚାଲ ବେଳେ ବେଳେ
ନ ବିନ୍ଧିଣ ଗଲେ ଲଜ୍ଜା ପାଇବା ସକଳେ ।
ଏତେ ବୋଲି ପୁଚ୍ଛିଲେ ସେ ରାଜା ବରୁଣକୁ
ବୋଇଲେ ଯେ ଲାଖ ସୂତ୍ର ବୁଝାଅ ଆମ୍ଭଙ୍କୁ ।
ସାଗର ବୋଇଲେକ ଯେ କହିବାକ ଶୁଣ
ଏ ଲାଖ ସନ୍ଧି ବିଧାନ ଅଟେ ଯେମନ୍ତେଣ ।
ସପ୍ତଦିନକୁ କଳ୍ପନା ଆମ୍ଭେ ଅଛୁ କରି
ବାରକେ ବିନ୍ଧିଲେ ଦ୍ୱୀପେ ରାଜା ଅନୁସରି ।
ବୃହସ୍ପତିଙ୍କ ଲାଖ ଏ ହୋଇଛି ପ୍ରମାଣ
ତହିଁରେ ଚକ୍ରେକ ବୁଲୁଅଛି ଅନୁକ୍ଷଣ ।
ଚକ୍ରପରେ ଦେଖ ବସିଅଛି ମୃଗରାଜ
ସେ ମୃଗ ପୁଚ୍ଛଧରି ଯେ ବିନ୍ଧିବ ନାରାଚ ।
ସେ ଶର ପଡ଼ିବ ଯାଇଁ ମୃଗ ବାମପାଦେ
ଦକ୍ଷିଣ କର୍ଣ୍ଣେ ଗଳିବ ଆସି ନେତ୍ର ମଧ୍ୟେ ।
କାମନେତ୍ରେ ଗଳି ସେ ନାରାଚ ଲାଗିଥିବ
ଏରୂପେ ବିନ୍ଧିଲେ ତାକୁ କନ୍ୟା ଦେବି ଧ୍ରୁବ ।
ଆବର କଥାଏ ରାଜା କହିଲେକ ଶୁଣ
ଲାଖ ଚାରିପାଶେ ଅଛି ହୀରାପଟା ଜାଣ ।

ଯୋଜନ ପର୍ଯ୍ୟନ୍ତେ ପଟା ବସିଛି ନିଘଞ୍ଚ
ପଟାକୁ ଯିବାକୁ ଅଛି ସୁବର୍ଣ୍ଣ ପାବଚ୍ଛ ।
ତହିଁ ଅନାୟାସେ ପଡ଼ିଯିବ ଯେତେବେଳେ
ତୁଳା ଶେଯ ପଡ଼ିଅଛି ସେ ଲାଖର ତଳେ ।
ତିନିହାତ ଉଚ୍ଚେ ପଡ଼ିଅଛି ତୁଳାଶେଯ
ଅନୁରୂପେ ଚାରିପାଖେ କରିଅଛୁଁ ଉଜ ।
ଏଥକୁ ଭୟଭ୍ରାନ୍ତି ନ କର ତୁମ୍ଭେ କେହି
ବାରେକ ବିନ୍ଧିବେ ଦ୍ୱୀପେ ଦ୍ୱୀପେ ରାଜା ଯାଇ ।
ଏରୂପେ କହି ସପତଦ୍ୱୀପେ ରାଜାଯାଙ୍କୁ
ରଖିଲେ ସପତଭାଗ କରି ସମସ୍ତଙ୍କୁ ।
ମକର ଶୁକ୍ଳପଞ୍ଚମୀ ତିଥି ଗୁରୁବାରେ
ପଦେ କହିଣ ବରୁଣ ବସିଲେ ମଞ୍ଚାରେ ।
ବଦୟନ୍ତି ବେଦବ୍ରହ୍ମା ଶୁଣହେ ନାରଦ
ଲାଖବିନ୍ଧିବାକୁ ସଜହେଲେ ରାଜାବୃନ୍ଦ ।
ପ୍ରଥମରେ ପ୍ଲକ୍ଷଦ୍ୱୀପ ରାଜା ହେଲେ ସଜ
ମଞ୍ଚା ଉପରୁ ଉଠି ସେ ଧଇଲେ ନାରାଚ ।
ଯେ ଯାହାର ଧନୁଶର ଧରି ସଜ କଲେ
ଅଙ୍ଗୁଷ୍ଠିମାନଙ୍କରେ ଯେ କଷଣି ଯୋଖିଲେ ।
ଲାଖକୁ ଆବାହ କରି ନାରାଚ ଯୋଖନ୍ତେ
ଆଦ୍ୟେ ବୀରଭଦ୍ର ରାଜା ଉଠିଲେ ତ୍ୱରିତେ ।
ଗଲା ସୁବର୍ଣ୍ଣ ପାବଚ୍ଛ ଉପରେ ସେ ଚଢ଼ି
ମୃଗ ପୁଚ୍ଛଧରୁଁ ପଡ଼ିଗଲା ମୁଖ ମାଡ଼ି ।
ନୋହିଲା ବୋଲି ଯେ ଆଉ ରାଜାଯାନ୍ତେ ଉଠି
ମାଧବସେନ ବୋଲିଣ ତାର ନାମ ଗୋଟି ।
ସୁବର୍ଣ୍ଣ ପାବଚ୍ଛେ ଉଠି ଉପରକୁ ଯାନ୍ତେ
ଦେଖିଲା ସ୍ତମ୍ଭରେ ଚକ୍ର ବୁଲେ ଅପ୍ରମିତେ ।
ମୃଗପୁଚ୍ଛ ଧରୁଁ ପଡ଼ିଗଲା ଛାଟି ହୋଇ
ହସିଲେ ସଭାରେ ସର୍ବେ ଟହଟହ ହୋଇ ।
ସମସ୍ତଙ୍କ ହସ ଦେଖି ପାଆନ୍ତେ ସେ ଲଜ୍ଜା
ଉଠିଲେ ଯଯାତି ବୋଲି ନାମେ ଏକ ରାଜା ।
କନ୍ୟାକୁ ଦେଖି ମୁର୍ଚ୍ଛିନପାରେ ଦଣ୍ଡଧାରୀ
ଲାଖ ବିନ୍ଧିବାକୁ ଗଲା ଧନୁ କରେ ଧରି ।
ସୁବର୍ଣ୍ଣ ପାବଚ୍ଛ ଚଢ଼ି ଉପରକୁ ଯାନ୍ତେ
ଦେଖିଲା ବୁଲୁଛି ମୃଗ ପବନ ଆଘାତେ ।
ପାଞ୍ଚିଲାକ ମୃଗପୁଚ୍ଛ ଧରି ମୁଁ ଝିଙ୍କିବି
ସ୍ଥିରହୋଇ ରହିଲେ ସେ ନାରାଚ ବିନ୍ଧିବି ।
ଏତେକ ପାଞ୍ଚି ପୁଚ୍ଛକୁ ଧରୁ ବେନି ଭୁଜେ
ମୁଖ ବୁଲାଇ ପଡ଼ିଲା ରାଜା ତୁଳା ଶେଯେ ।

ସେ ରାଜା ହାରିବାଦେଖି ଆଉ ନୃପେ ଉଠି
ଭୁଜକେଶରୀ ବୋଲିଣ ଅଟେ ନାମଗୋଟି ।
ଚଢ଼ି ସୁବର୍ଣ୍ଣ ପାବଚ୍ଛେ ଉପରକୁ ଯାନ୍ତେ
ନଦେଖିଣ ମୃଗପୁଚ୍ଛ ବୁଲି ବେଢ଼ା ସାତେ ।
ବୁଲିଲାକ ଚକ୍ଷୁ ତାରେ ମୃଗ ବୁଲା ଦେଖି
ଧରିବି ଆଗ ବୋଲିଣ ହସ୍ତଦେଲା ଟେକି ।
କାହିଁ ମୃଗବୋଲି ଲୋକଙ୍କୁ ସେ ପୁଛିଲୋଡ଼େ
ଜଳକା ଲୋକଙ୍କ ପରି ନିଜହସ୍ତ ମୋଡ଼େ ।
ଦେଖି ରାଜାମାନେ ହସନ୍ତି ଯେ କର କର
ବୋଲନ୍ତି ତ ଭଲ ଲାଖ ବିନ୍ଧିଲେ ନୃପବର ।
ସବୁଙ୍କରି ମୁଖେ ହାର ଶୁଣି ନୃପମଣି
ନିଜ ରାଜ୍ୟକୁ ପଳାଇଗଲେ ସେହିକ୍ଷଣି ।
ବୋଇଲାକ ଦେଖ ଲାଖ ବିନ୍ଧୁଅଛି ମୁହିଁ
ସେ ରାଜାପ୍ରାୟ ନମଣମୋତେ ତୁମ୍ଭେ କେହି
ଶୁଣିକରି ରାଜାମାନେ ହ୍ୱନ୍ତି କୁହାପୁଚ୍ଛି
ବୋଲନ୍ତି ସଭାରେ ନିଶ କାହିଁକି ମୋଡୁଛି ।
ଲାଖକୁ ବିନ୍ଧି ଧରନ୍ତ ଆସି ଯେବେ ନିଶ
ତେବେ ସିନା ଜଣାଯାନ୍ତା ତୁମ୍ଭ କ୍ଷତ୍ରିଅଂଶ ।
ଶୁଣି ନେପାଳ ଈଶ୍ୱର ବହି ମନେ ଛଳ
ସଭାରୁ ଉଠି ଧଇଲା ଯାଇଁ ଧନୁହଳ ।
ସୁବର୍ଣ୍ଣ ପାବଚ୍ଛେ ଉଠି ପଟାରେ ଉଠିଲା
ବେନିକରେ ଧନୁ ଧରି ନାରାଚ ଯୋଖିଲା ।
ପୁଚ୍ଛଧରୁ ଭ୍ରମି ପଡ଼ିଲାକ ମୁଖ ମାଡ଼ି
ପାବଚ୍ଛ ଉପରେ ପଡ଼ି ଆସେ ଗଡ଼ି ଗଡ଼ି ।
ରାଜାମାନେ ବୋଇଲେ ଏ ବିନ୍ଧିଲା ଏ ଲାଖ
ନିଶମୋଡ଼ି ଯିବା ଆଣ୍ଠ କାହିଁଗଲା ଦେଖ ।
ସେ ରାଜା ସଭାରୁ ଲଜ୍ଜା ପାଇ ଗଲା ଚଳି
ଉଠିଲେ ଆଉ ରାଜାଏ ହସ୍ତେ ଧନୁ ଧରି ।
ବୀରାକ୍ଷସେନ ବୋଲି ସେ ରାଜାନାମ ଅଟେ
ହୁଙ୍କାର ନାଦ କରିଣ ଉଠିଲା ବିରାଟେ ।
ବୋଇଲାକ ମୋତେ କହ କାହିଁ ଅଛି ଲାଖ
ରାଜାଏ ବୋଇଲେ ତେବେ ଭଲକରି ଦେଖ ।
ଜଳକା ଲୋକ ପରାୟ ପୁଚ୍ଛ କିମ୍ପା କଥା
ଲାଖରେ କି କି ଦିଶଇ କହ ସେ ବ୍ୟବସ୍ଥା ।
ସେ ବୋଇଲେ ମୋତେ ଏକା ଦିଶୁଅଛି ସ୍ତମ୍ଭ
ତଥାପି ଜଣା ନୁହଇ ଅଟେ କେଡ଼େ ଦମ୍ଭ ।
ଶୁଣିକରି ସଭାଲୋକେ ହେଲେ ହସ ହସ
ବୋଇଲେ ବାହୁଡ଼ି ସଭା ମଧ୍ୟେ ବେଗେ ବସ ।

ଗୁରୁ ଦେହକୁ ଆଉ ନ କର ଲଘୁ ଜାଣ
ଶୁଣି ବାହୁଡ଼ି ବସିଲା ରାଜା ସଭାରେଣ ।
ଏ ବିଧି ବିନ୍ଧିଲେ ପ୍ଲକ୍ଷଦ୍ୱୀପ ନୃପମଣି
ଏଥି ଉତ୍ତାରୁ ପ୍ରବେଶ ହୋଇଲା ରଜନୀ ।
ବିପ୍ର ପୀତାମ୍ବର ଦାଶ ଲାଖବିନ୍ଧା ଦେଖି
ଭକତି ଧନୁକୁ ଧରି ବିନ୍ଧେ ଶର ଯୋଖି ।
ମନ୍ତ୍ରି ତୀକ୍ଷ୍ଣ ନାରାଚରେ ମହାଲକ୍ଷ୍ମୀ ଆଣି
କାନ୍ଧେ ବସାଇଛି ବ୍ରହ୍ମାଣ୍ଡରେ ଠାକୁରାଣୀ ।
ସେ ମାତା କୃପାରୁ ସଂସାରେ ମୁଁ ବଡ଼ ସୁଖୀ
ଲେଖାନ୍ତି ସପତଦ୍ୱୀପ ବାଣୀ କମଳାକ୍ଷୀ ।
ଏଥୁଅନନ୍ତରେ ଏବେ ନାରଦ ହେ ଶୁଣ
ସରିଲା ଗୋଟିଏ ଦ୍ୱୀପ ଲାଖବିନ୍ଧା ଜାଣ ।
ମେଢ଼ରୁ ବିଜେ କରାଇ ନେଲେ କମଳାଙ୍କୁ
ହୁଳହୁଳି ଦେଇ ବଜାଇଲେ ସେ ବାଦ୍ୟକୁ ।
ମାଜଣା ସାରି ମଣୋହି ପୁଣି କରାଇଲେ
ଭୋଜନ ସାରିଣ ଲକ୍ଷ୍ମୀ ପଲଙ୍କେ ଶୁତିଲେ ।
ସେବାରେ ଅଛନ୍ତି ଲକ୍ଷ୍ମୀ ପରିବାରୀ ଲାଗି ।
କୁସୁମ ବୃଷ୍ଟି କରନ୍ତି ଶୂନ୍ୟେ ଦେବେ ଜଗି ।
ଏଥୁଅନନ୍ତରେ ସେହି ରାତିଗଲା ପାହି
ଦେବଆଳେ ଘଣ୍ଟି ଘଣ୍ଟା ବାଜେ ଘନଘାଇ ।
ସ୍ନାନ ଦେବାର୍ଚ୍ଚନ ବିଧି ସାରି ରାଜାଗଣେ
ଲାଖ ବିନ୍ଧିବାକୁ ସଜହେଲେ ତତକ୍ଷଣେ ।
ଏଥୁଅନନ୍ତରେ ପୁଣି ସେ ବରୁଣ ରାଜା
ହଂସିନୀକି ବୋଇଲେ ଗୋ କର ଲକ୍ଷ୍ମୀ ପୂଜା ।
ମାଜଣା ସାରି କରାଅ ମେଢ଼େ ନେଇ ବିଜେ
ପ୍ରବେଶ ହେଲେଣି ଲାଖମୂଳେ ସର୍ବ ରାଜେ ।
ଶୁଣି ମୃଦୁସୁଲୀ ବେଶଭୂଷା ବିଧିସାରି
ମେଢ଼ ଉପରେ ନେଇଣ ବସାଇଲେ ଶିରୀ ।
ଏଥୁଅନନ୍ତରେ ଶ୍ୱେତଦ୍ୱୀପରେ ଯେ ରାଜା
ବଜାଇ ଶଙ୍ଖ ମହୁରୀ ନାନାବିଧ ବାଜା ।
କହନ୍ତେ ବରୁଣ ଲାଖବିନ୍ଧା ବିଧି ତହିଁ
ଉଠନ୍ତେ ସେ ଦ୍ୱୀପ ରାଜା ସର୍ବେ ସଜହୋଇ ।
ବୋଇଲେକ ଏ ଦ୍ୱୀପର ଯେତେ ରାଜାଗଣ
ଲାଖ ଚଉପାଶେ ଆସ ରହିବା ବେଢ଼ିଣ ।
ଏକାବେଳେ ଧନୁ ଧରି ବିନ୍ଧିବା ସମସ୍ତେ
ଯାହା ଶର ବାଜିବ ସେ କନ୍ୟା ନେବ ସତେ ।
ଏରୂପେ କଥା ହୋଇଣ ନୃପଯାକ ଯାଇ
ରହିଲେ ଲାଖର ଚାରିପାଶେ ଉଭାହୋଇ ।

ବୋଇଲେ ଏକାବେଳକେ ଧରି ଦଶବିଂଶ
ଜଣେ ଧରନ୍ତେ ସେ ମୃଗ ଫିଙ୍ଗିଛି ଆକାଶ ।
ଏରୂପେ ଯେ ରାଜାମାନେ ମନେକରି ପାଞ୍ଚ
ଏକତ୍ରେ ଧଇଲେ ଜଣ କେତେ ମୃଗ ପୁଚ୍ଛ ।
ପଡ଼ିଲା ଯେତେ ରାଜାଙ୍କ ହସ୍ତ ମୃଗ ଲାଞ୍ଜେ
ସମସ୍ତଙ୍କୁ ଦେଲା ଫିଙ୍ଗି ପକାଇ ସେ ଶେଯେ
ଏମାନେ ତ ହାରିବାରୁ ଆଉ ରାଜା ଦେଖି
ବୋଇଲେ ପାଶ ଲଗାଇ ଧର ପୁଚ୍ଛ ଝିଙ୍କି ।
ତହୁଁ ଥୋକାଏ ଯାଇଣ ବିନ୍ଧିବା ନାରାଚ
ତେବେ ଏହି ଲାଖ ବିନ୍ଧି କନ୍ୟା ନେବା ଆଜ ।
ଏରୂପେ ବିଚାର କରି ଉଠି ରାଜାମାନେ
ଲାଖକୁ ବେଢ଼ି ବାନ୍ଧିଣ ରହିଲେ ଯତନେ ।
ପକାନ୍ତେ ଲୌହଶିକୁଳି ପାଶ ମୃଗଲାଞ୍ଜେ
ଛାଟିହୋଇ ପଡ଼ିଲେ ସେ ଯାଇ ତୁଳା ଶେଯେ
ଲେଉଟି ମଞ୍ଚାରେ ସର୍ବେ ବସିଲେକ ଯାଇ
ପାଞ୍ଚଲକ୍ଷ ରାଜାଯାକ ଗଲେ ଲଜ୍ଜା ପାଇ ।
ସେ ଦ୍ୱୀପର ସରିଲା ସେଦିନ ଲାଖବିନ୍ଧା
ଏଥକୁ ସୁଦୟା ମୋତେ କରିବେ ସାରଦା ।
ବୁଝିଲେ ଜମ୍ବୁଦ୍ୱୀପରେ ମୁଁ ଅଟେ ମାନବ
ସପ୍ତଦ୍ୱୀପ କଥା କେଉଁ ମତେ ଜଣାଯିବ ।
ଜମ୍ବୁଦ୍ୱୀପରୁ ବୁଲିଛି ମୁହିଁ ବାରଯୂଣ
ଏଡ଼େ ଭଳି ଜ୍ଞାତା ଅଟେ ସଂସାରେ ମୁଁ ଜାଣ
ସପତଦ୍ୱୀପଯାକରୁ ବାଛି ରାଜା କେତେ
ପଦକରି ମୁଁ ଲେଖଇ ତା ପୁରାଣମତେ ।
ସାରଦା ଦେବୀ କୃପାରୁ ଦିଶେ ମୋତେ ପଦ
ବିପ୍ର ପୀତାମ୍ବରକୁ ଯେ ରଖିବେ ଗୋବିନ୍ଦ ।
ଏଥୁ ଅନନ୍ତରେ ଆସି ହୋଇଲା ରଜନୀ
ସରିଲା ବେନି ଦ୍ୱୀପର ଲାଖବିନ୍ଧା ବାଣୀ ।
ମେଢ଼ରୁ ଶ୍ରୀ ମହାଲକ୍ଷ୍ମୀ ବିଜେ କରିଗଲେ
ମଣୋହି ବିଧି ସାରିଣ ପଲ୍ୟଙ୍କେ ଶୋଇଲେ ।
ସେବାରେ ଅଛନ୍ତି ଲାଗି ସକଳ କାମିନୀ
ଅଚିନ୍ତାରେ ନିଦ୍ରାଗଲେ ଜଗତ ଜନନୀ ।
ଏଥୁ ଅନନ୍ତରେ ସେହି ରାତ୍ରି ଗଲା ପାହି
ଦେବଆଳମାନଙ୍କରେ ଶଙ୍ଖବାଦ୍ୟ ହୋଇ ।
ସ୍ନାନସାରି ମହାଲକ୍ଷ୍ମୀ ମେଢ଼େ ବିଜେକଲେ
ରାଜାଗଣ ସଭାସ୍ଥଳେ ବିଜେ କରିଥିଲେ ।
କୁଶଦ୍ୱୀପ ରାଜା ହେଲେ ମୃଗ ପାଶେ ଉଭା
ଧନୁ ଧରି ଦେଖୁଛନ୍ତି ଯେ ଲାଖର ପ୍ରଭା ।

ଲାଖର ପ୍ରଭା ଦେଖିଣ ସୁଦର୍ଶନ ରାୟେ
ପାରୁ ନ ପାରୁ ବିନ୍ଧିବ ଶର ଯେ ଗୋଟାଏ ।
ମୃଗପୁଚ୍ଛ ଧରୁ ପଡ଼ିଗଲେ ତଳେ ଖସି
ବସିଗଲା ତୁଳା ଶେଯେ ପରେ ରାୟ ଆସି ।
ସଚେତ ହୋଇ ମଞ୍ଚାକୁ ରାଜା ପଳାଇଲା
ଲୁଚି ପଛରେ ରହିଲା ଦେଖା ଯେ ନ ଦେଲା ।
ବିପ୍ରଙ୍କ ପ୍ରାୟ ଜବାବ କଲାକ ନ ଜାଣି
ବୋଇଲା ଏତେ ସରି ଯେ କରୁଥିଲା ପୁଣି ।
ଏ ଲାଖ ଚରିତ ନାହିଁ କାହାକୁ ଯେ ଜଣା
ବୁଝିଲେ ମୃଗର ବଳ ଅଟେ ଅକଳନା ।
ପୁଚ୍ଛ ଧଇଲେ ଫିଙ୍ଗୁଛି ଶିରପାକୁ ଆଗ
ଏ ଲାଖ କେ ବିନ୍ଧିବାକୁ ନାହିଁ ମର୍ତ୍ତ୍ୟ ସ୍ୱର୍ଗ ।
ଏଥିଉତ୍ତାରେ ଯେ ପୁଣି ଆଉ ନୃପବରେ
ରାଜା ପଳାଇବା ଦେଖି ଧନୁ କରେ ଧରେ ।
ନନ୍ଦିକେଶ୍ୱର ବୋଲି ଯେ ଅଟେ ତାର ନାମ
ଲାଖ ବିନ୍ଧିବ ବୋଲିଣ ଗଲା ହୋଇ ତମ ।
ହସ୍ତରେ ଧନୁକୁ ଧରି ନାରାଚ ଯୋଗାନ୍ତେ
ବୁଲାଇ ହୋଇ ପଡ଼ିଲା ରାଜା ପୁଚ୍ଛାଘାତେ ।
ସେ ରାଜା ଲଜ୍ଜା ପାଇଣ ବସନ୍ତେ ମଞ୍ଚାରେ
ଆବର ନୃପେ ଧଇଲା ଯାଇଁ ଧନୁ କରେ ।
ଚନ୍ଦ୍ରଶେଖର ନାମେଣ ଅଟଇ ସେ ରାଜା
ଲାଖ ଦେଖି ଡରି କଲା ମୃଗକୁ ସେ ପୂଜା ।
ଜାଣି ନବଗ୍ରହେ ଅଛନ୍ତି ଯେ ମୃଗ ହୋଇ
ଏହାକୁ ଯେ ନମସ୍କାର କରି ଯିବି ମୁହିଁ ।
ଏରୂପେ ପାଞ୍ଚ ସେ ରାଜା ପାଦେ ସେବାକରି
ମଞ୍ଚା ଉପରେ ବସିଲା ଯାଇଁ ଦଣ୍ଡଧାରୀ ।
କମ୍ପିଲେ ତାହାର କଥା ଦେଖି ସଭାଯାକ
ବୋଇଲେ ଏ ରାଜା ଅଟେ କେଡ଼େ ଅବିବେକ ।
କ୍ଷତ୍ରିକୁଳକୁ ଏ ଜାଣ କଳଙ୍କ ହୋଇଲା
ଲାଖକୁ ନ ବିନ୍ଧି ମୃଗପାଦ ସେବାକଲା ।
ସଭାରୁ ଯେ ଉଠିଯିବା ସହସ୍ରେକ ରାଜ
ଲାଖକୁ ବେଢ଼ିଣ ଚାଲ ବିନ୍ଧିବା ନାରାଚ ।
ରହି ଅକଳନା ଶର ବିନ୍ଧିବା ଯେ ଧରି
ଲାଖକୁ ଜିଣି ଆଣିବା କନ୍ୟାରତ୍ନ ବରି ।
ଏରୂପେ ପାଞ୍ଚ ଲାଖକୁ ବେଢ଼ି ରାଜାଯାକ
ବରୁଣ ବୋଇଲେ ଏହୁ କେବଣ କୌତୁକ ।
କାହିଁକି ଏତେ ଗୁଡ଼ାଏ ରାଜା ଯାଇଛନ୍ତି
ଲାଖ ଚାରିପାଖେ ବୁଲି ବୁଲି ପଳାବନ୍ତି ।
ବରୁଣ ରାଜାର ମୁଖୁଁ ଏ ବଚନ ଶୁଣି
ଜଳତରଙ୍ଗ ମନ୍ତ୍ରୀ ଯେ କହେ ଯୋଡ଼ି ପାଣି ।
ବୋଇଲା ହେ ସାବଧାନେ ଶୁଣ ତୁ ସାଗର
ଲଜ୍ଜା ଭୟକୁ ଯେ ଭୀତି ନାହିଁ ଏହାଙ୍କର ।
ପିତା ଅଜାକାଳେ କେହି ବିନ୍ଧି ନାହିଁ ଲାଖ
ତେଣୁ ପଳାନ୍ତି ଏ ଲାଖ ବିନ୍ଧି ଚାରିପାଖ ।
ଏ ରାଜାମାନଙ୍କ ଜାଣ କିଛି ନାହିଁ କାର୍ଯ୍ୟ
କେବଳ ବିନ୍ଧିବେ ଲାଖ ଏକା ଦେବରାଜ ।
ଏତକୁ ନ କର ଚିନ୍ତା ମନେ ଜଳାଧିପ
ଯେ ଜାଣେ ଯେମନ୍ତେ ବିନ୍ଧି ପଳାନ୍ତୁ ସେ ନୃପ ।
ଶୁଣିଣ ସାଗର ବସିଲେକ ହୋଇ ତୁନି
ବଦନ୍ତି ଯେ ଦେବବ୍ରହ୍ମା ଶୁଣ ତପୋଧନି ।
ସେ ରାଜାଙ୍କ ଅପମାନେ ଆଉ ରାଜାମାନେ
ଧନୁରେ ଶର ଯୋଚିଣ ଗଲେ ଲାଖସ୍ଥାନେ ।
ବେଳକରେ ଦଶବିଂଶ ପଚାଶ ଯେ ଗଲେ
ପଟାର ଉପରେ ଚଢ଼ି ଧନୁ ଓଟାରିଲେ ।
ବୋଇଲେ କେତେକ ରାଜା ପୁଚ୍ଛ ଧରି ଝିଙ୍କ
ଥୋକାଏ ଶର ବିନ୍ଧିଣ ଜିଣିବା ଏ ଲାଖ ।
ଏମନ୍ତ ବୋଲିଣ ରାଜା ଧରନ୍ତେ ଯେ ଭୁଜେ
ବୁଲାଇ ହୋଇ ପଡ଼ିଲେ ଆସି ତୁଳାଶେଯେ ।
ଏମନ୍ତେ ସହସ୍ରେ ରାଜା ପୁଚ୍ଛ ଧରି ଉଠି
ବୁଲାଇହୋଇ ପଡ଼ିଲେ ମହୀତଳେ ଲୋଟି ।
ଏମନ୍ତ ପ୍ରକାରେ ଜାଣ କୁଶଦ୍ୱୀପ ରାଜେ
ମୃଗପୁଚ୍ଛ ଧରି ଖସି ପଡ଼ିଲେ ଯେ ଶେଯେ ।
ତୁଳାଶେଯୁଁ ଉଠି ମଞ୍ଚାକୁ ଯେ ପଳାଇଲେ
ସେ ଦିନ ଲାଖ ବିନ୍ଧି ସେ ଦ୍ୱୀପଯାକ ଗଲେ ।
ମେଢ଼ରୁ ଲକ୍ଷ୍ମୀ ଘରକୁ ଗଲେ ପୁଣି ଜାଣ
ବିପ୍ର ପୀତାମ୍ବର ଦାସ ପଶିଲା ଶରଣ ।
ଏଥୁ ଅନନ୍ତରେ ରାତ୍ରି ପ୍ରବେଶନ୍ତେ ଆସି
ବସିଲେ ଭୋଜନମାନ ସାରି ସୁଖେ ଆସି ।
ଅଚିନ୍ତା ହୋଇ ସେଦିନ ନିଦ୍ରା ଭୋଗକଲେ
ପାହାନ୍ତି ଅବକାଶରୁ ଦେବାର୍ଚ୍ଚନ କଲେ ।
ଏଥୁ ଅନନ୍ତରେ ଲକ୍ଷ୍ମୀ ମେଢ଼େ କଲେ ବିଜେ
ଆବର ତାବଲା ବାଦ୍ୟ ହୁଲୁ ହୁଲୁ ବାଜେ ।
କୁସୁମ ବୃଷ୍ଟି କରନ୍ତି ଶୂନ୍ୟେ ଦେବଲୋକେ
ପରାଗଗୁଣ୍ଡି ପଡ଼ଇ ରାଜଦାଣ୍ଡଯାକେ ।
ପୁରଯାକରେ ଚହଟି ବାସେ ସୁବାସନା
ଚନ୍ଦ୍ର ଶତେଗୁଣ ଦିଶେ ଲକ୍ଷ୍ମୀଙ୍କର ଜ୍ୟୋସ୍ନା ।

ଲକ୍ଷେ ପରିବାରୀ ଛନ୍ତି ସେବାରେ ଯେ ଲାଗି
ମେଢ଼ରେ ମିଳିଲେ ଯାଇ ବିଷ୍ଣୁର ସୌଭାଗୀ ।
ପଦ୍ମ ଆସନେ କମଳା ଦେବୀ ବିଜେକଲେ
ଦେଖି ରାଜାମାନେ ଧନୁହୁଳେ ଗୁଣଦେଲେ ।
କ୍ରଉଞ୍ଚ ଦ୍ୱୀପରେ ଭୀମକେଶରୀ ଯେ ରାଜା
ଉଠିଲା ସିଂହ ପରାୟ କରିଣ ତରିଜା ।
ବୋଇଲେକ ତିନିଦ୍ୱାରେ ଗଲେ ଲାଖବିନ୍ଧି
ଦେଖିଲି କ୍ଷତ୍ରୀ ନାହାନ୍ତି କାହିଁ ତହିଁ ଯୋଦ୍ଧୀ ।
ବୋଇଲା ମୁହିଁ ଯାଉଛି ଏବେ ବିନ୍ଧି ଲାଖ
ମୋର ଲାଖ କରାମତି ସମସ୍ତେ ହେ ଦେଖ ।
ଖଣ୍ଡେଦୂରେ ଖମ୍ବଟାଏ ଅଛି ସିନା ପୋତି
ତହିଁରେ ଦେଇଛି ଥୋଇ ଚକ୍ରଟିଏ ଲଦି ।
ଚକ୍ର ଉପରେ ଗୋଟାଏ ମୃଗ ପୁଣ ଅଛି
ଲୋକଙ୍କୁ ଏ ଛାର ଲାଖ କରି ଡରାଉଛି ।
ଏହିକ୍ଷଣି ଲାଖବିନ୍ଧି ଆସୁଛି ମୁଁ ଦେଖ
ଏତେ ବୋଲି ଧନୁ ଧଇଲାକ ନୃପଶିଖ ।
ପଟାରେ ଚଢ଼ି ପୁଚ୍ଛକୁ ଧରି ବେନି ଭୁଜେ
ବୁଲାଇ ହୋଇ ପଡ଼ିଲା ରାଜା ତୁଳା ଶେଯେ ।
ତହୁଁ ପଳାଇ ବସିଲା ଯାଇ ମଞ୍ଚାପରେ
ତା ଦେଖି ଉଠିଲା ଏକ ରାଜା ଧାଡିକାରେ ।
ନରକେଶରୀ ବୋଲିଣ ଅଟେ ତାର ନାମ
ପଟାରେ ଉଠିଲା ଧନୁ ଧରି ବହି ତମ ।
ଗୁଣରେ ନାରାଚ ଦେଇ ଝିଙ୍କନ୍ତେ ସେ ଭୁଜେ
ବୁଲାଇ ହୋଇ ପଡ଼ିଲା ରାଜା ତୁଳା ଶେଯେ ।
ତା ପଡ଼ିବା ଦେଖି ବିନ୍ଧ୍ୟ କେଶରୀ ଯେ ରାୟେ
ଘୁମରି ଉଠିଲା ଲାଖ ବିନ୍ଧିଲା ପରାୟେ ।
ଚକ୍ଷୁ ତରାଟି ଦନ୍ତକୁ କରି ରଟମଟ
ବୋଇଲା ରାଜାଙ୍କ ମଧ୍ୟେ ଜଣେ ନାହିଁ ଶ୍ରେଷ୍ଠ ।
ଜଣେ ହେଲେ ଲାଖ ବିନ୍ଧି ନ ପାରିଲ କେହି
କ୍ଷତ୍ରିକୁଳକୁ ତ ନିନ୍ଦା ରଖିଲ ଏ ମହୀ ।
ବରୁଣ ରାଜାର ଅନ୍ନ ଖାଇବା ନିମନ୍ତେ
ନିଶ ଫୁଲାଇ ମଞ୍ଚାରେ ବସିଲ ସମସ୍ତେ ।
ଯାଉଅଛି ଲାଖ ମୁହିଁ ବିନ୍ଧିବି ହେ ଦେଖ
ତେତେବେଳେ କେହି ଏକା ନୋହିବ ବିମୁଖ ।
ଲାଖ ବିନ୍ଧି ଏ କନ୍ୟାକୁ କରିବି ମୁଁ ଭୋଗ
ଶୁଣି ରାଜାଏ ବୋଇଲେ ବିନ୍ଧ କିନା ଆଗ ।
ଲାଖ ନ ବିନ୍ଧୁଣୁ କେତେ ହଲାଉଛ ଥୋଡ଼
ଏହିକ୍ଷଣି ଚିହ୍ନା ପଡ଼ିବତ ତୁମ୍ଭ କାଢ଼ ।

ଶୁଣିଣ ମନରେ ଛଳ ବହି ସେହୁ ରାଜା
ଲାଖ ପାଖରେ ମିଳନ୍ତେ ଥରିଲାକ ମଜ୍ଜା ।
ଚକ୍ରର ବୁଲା ଦେଖିଣ ହୋଇଲା ବିହ୍ୱଳ
କାହିଁ ଅଛି ମୃଗ ବୋଲି ଲୋଡ଼େ ମହୀପାଳ ।
ବୋଇଲାକ ମୃଗ କାହିଁ ମୋତେ ଦିଶୁନାହିଁ
ଶୁଣି ଲୋକେ ତାଳିମାରି ହସିଲେକ ଚାହିଁ ।
ବୋଲନ୍ତି ପାଗଳା ବ୍ୟାଧି ଏ ରାଜାଙ୍କୁ ହେଲା
ସଭାରେ କହିବା ଆଣ୍ଠ କାହିଁ ଛାଡ଼ିଗଲା ।
ବୋଇଲେ ରାଜା ମଞ୍ଚାରେ ଯାଇ ଏବେ ବସ
ଉଠାଇ ଆଣିଲେ ଏତେ ବୋଲି ଜଣ ଦଶ ।
ସେ ରାଜାର ଅପମାନ ଦେଖି ଆଉ ରାୟେ
କର୍ଣ୍ଣ କେଶରୀ ବୋଲିଣ ତାର ନାମ ହୋଏ ।
ତାହାର ହାରିବା ଦେଖି ସଭାରୁ ଉଠିଲା
ବାଜୁ ବା ନ ବାଜୁ ବୋଲି ନାରାଚେ ବିନ୍ଧିଲା ।
ସେ ଶର ଉଡ଼ି ଯାଇଣ ସମୁଦ୍ରେ ପଡ଼ିଲା
ଲଜ୍ଜା ପାଇ ସେହି ରାଜା ବାହୁଡ଼ି ଅଇଲା ।
ତାର ଲଜ୍ଜା ଦେଖି କୃତକେଶରୀ ଯେ ଗଲା
ମଞ୍ଚାରୁ ଉଠି ଲାଖକୁ ଯାଇ ପୂଜାକଲା ।
ଶୂନ୍ୟ ଏ ଲାଖ ବୋଲିଣ କଲା ବହୁ ସ୍ତୁତି
ହରିକୀର୍ତ୍ତନ କରି ସେ ଛୁଇଁ ମୃଗମୂର୍ତ୍ତି ।
ପାଞ୍ଚଇ ଦେବତା ମାୟା ଅଟେ ଏହି ଲାଖ
ନ ଜାଣି ବ୍ୟର୍ଥେ ବିନ୍ଧିଣ ହୁଅନ୍ତି ବିମୁଖ ।
ଆମ୍ଭେ ବିନ୍ଧିଲେ ତ ଲଜ୍ଜା ସଭାରେ ପାଇବା
ଗୁରୁ ଦେହ ଲଘୁ କରି କି ସୁଖ ଲଭିବା ।
ଏତେକ ବୋଲି ମୃଗକୁ ସ୍ତୁତି କରି ରାଜା
ବାହୁଡ଼ି ବସିଲା ମଞ୍ଚାପରେ କରି ଶଯ୍ୟା ।
ତାର ବାହୁଡ଼ନ୍ତେ ଆଉ ରାଜା ଏକ ଉଠେ
ପ୍ରତାପକେଶରୀ ବୋଲି ତାର ନାମ ଅଟେ ।
ରେରେକାର ଯେ ହୁଙ୍କାର ନାଦ କରିଗଲା
ପଟାର ଉପରେ ଚଢ଼ି ନାରାଚ ଯୋଚିଲା ।
ଧରନ୍ତେ ସେ ମୃଗ ପୁଚ୍ଛ ପଡ଼େ ଛାଟିହୋଇ
ହସିଲେ ନୃପତିଗଣ ନାକେ ହସ୍ତ ଦେଇ ।
ସଭା ମଧ୍ୟେ ଲଜ୍ଜା ପାଇ ବସନ୍ତେ ସେ ରାୟେ
ଆବର କହିଲେ ରାଜା ଜଣେ ଧର୍ମନ୍ୟାୟେ ।
ଜ୍ଞାନକେଶରୀ ବୋଲିଣ ଅଟେ ତାଙ୍କ ନାମ
ଶ୍ରୀମହାଲକ୍ଷ୍ମୀଙ୍କି ଚାହିଁ କଲେକ ପ୍ରଣାମ ।
ବୋଇଲେ ନୃପ ସମସ୍ତେ ତୁମ୍ଭେମାନେ ପୁଣ
ଏ ଲାଖ ବିନ୍ଧି ଆସିଛ ଯେତେ ରାଜାଗଣ ।

ଲକ୍ଷ୍ମୀଙ୍କି ଦର୍ଶନ କଲ ଏହି ଲାଭ ହେଲା
ବରୁଣଙ୍କେମାକୁ ଦେଖି ପାପ କ୍ଷୟ ଗଲା ।
ବୃହସ୍ପତିଙ୍କ ଲାଖ ନ ପାରେ କେହି ବିନ୍ଧି
ଚାଲ କରିବା ଏ ମହାଲକ୍ଷ୍ମୀ ପୂଜାବିଧି ।
ସୁଭାଗ୍ୟ ଥିବାରୁ ଆମ୍ଭେ ଦେଖିଲାଇଁ ଆସି
ଅଶେଷ ବାରିନିଧିର ପୁର ମଧ୍ୟେ ପଶି ।
ପୂର୍ବରୁ ଆମ୍ଭର ଯେଣୁ ପୁଣ୍ୟ କିଛି ଥିଲା
ତେଣୁ ଏହି ଦେବ ଲାଖ ଧାତା ଦେଖାଇଲା ।
ଲକ୍ଷ୍ମୀଙ୍କ ଦର୍ଶନ ପାଇ ହେଲଇଁ ମୁକତ
ସେ ମାତା ପାଦକୁ ମୋର କୋଟି ଦଣ୍ଡବତ ।
ଜଗନ୍ମାତା କମଳିନୀ ଅଟନ୍ତି ଏ ଜାଣ
କେବଳ ବିଭା ତାହାଙ୍କୁ ହେବେ ନାରାୟଣ ।
ଏରୂପେ କହି ସେ ରାଜା ନମସ୍କାର କଲେ
ସୈନ୍ୟବଳ ଧରି ତାର ରାଜ୍ୟେ ଚଳିଗଲେ
ସେଠାରୁ ସରିଲା ସେହି ଦ୍ୱୀପ ଲାଖ ବିନ୍ଧା
ଏଥୁ ଅନନ୍ତରେ ଆସି ବେଳ ହେଲା ସନ୍ଧ୍ୟା ।
ମେଢ଼ରୁ ମହାଲକ୍ଷ୍ମୀଙ୍କି ବିଜେ କରାଇଲେ
ହାନ୍ଦୋଳାରେ ବସାଇଣ ଦୁନ୍ଦୁଭି ବାଇଲେ ।
ବାଜିଲା ମହୁରୀ ଶଙ୍ଖ ଭେରୀ ତାଳ ବୀଣା
ଢୋଲ ଦମା ଟମକ ଯେ ଅଧା ସରଗୁଣା ।
ଶୂନ୍ୟରୁ କୁସୁମବୃଷ୍ଟି କଲେ ଦେବତାଏ
ବସାଇ ସୁଗନ୍ଧ ଦ୍ରବ୍ୟ ଲକ୍ଷେ ଯୁଣଯାଏ ।
ଗୃହେ ଲକ୍ଷ୍ମୀଙ୍କି ମାଜଣା ବିଜେ କରାଇଲେ
ଲକ୍ଷେ ପରିବାରୀ ଆସି ସେବାରେ ଲାଗିଲେ ।
ମଣୋହି ବିଧାନ ପରେ ଆଗମନ କରି
ପଲ୍ୟଙ୍କରେ ନିଦ୍ରାଗଲେ ଜଗନ୍ନାଥ ଶିରୀ ।
ଏଥୁଅନନ୍ତରେ ସର୍ବେ ସାରିଲେ ଭୋଜନ
ଯେ ଯାହା ଆସନେ ଯାଇ କଲେକ ଶୟନ ।
ଏଥୁଅନ୍ତେ ହେଲା ଯେ ପାହାନ୍ତି ଅବକାଶ
ଦେବ ଆଳୟେ ଶୁଭିଲା ଶଙ୍ଖ ବାଦ୍ୟ ଘୋଷ ।
ବିପ୍ର ପୀତାମ୍ବର ଦାସ ନିଦ୍ରା ଯାଇଥିଲେ
ଶ୍ରୀ ସାରଦା ମାତା ଆସି ସ୍ୱପ୍ନେ ଉଠାଇଲେ ।
ବୋଇଲେ ଚାରିଦ୍ୱୀପର ଲେଖିଲୁ ଯେ ଜାଣ
ଆଉ ତିନି ଦ୍ୱୀପ କଥା ଲେଖି ଏବେ ଆଣ ।
ଏହିରୂପେ ଆଜ୍ଞାଦେଇ ଯାନ୍ତେ ଠାକୁରାଣୀ
ଚେତା ପାଇଣ ମୁଁ ଉଠି ବସିଲି ସେକ୍ଷଣି ।
ଶାରଦା ମାତାଙ୍କ ଶ୍ରୀମୁଖରୁ ଆଜ୍ଞା ପାଇ
ଲେଖୁଛି ପଦ୍ମଦୀପର କଥା ଏବେ ମୁହିଁ ।

ବଦୟନ୍ତି ବେଦବ୍ରହ୍ମା ଶୁଣ ହେ ନାରଦ
ଲାଖବିନ୍ଧାକୁ ଯେ ସଜ ହେଲେ ରାଜାବୃନ୍ଦ ।
ଏଥୁଅନନ୍ତରେ ଲକ୍ଷ୍ମୀ ମେଢ଼େ କଲେ ବିଜେ
ଆଗରେ ଘୁମୁରାବାଦ୍ୟ ଘୁମୁ ଘୁମୁ ବାଜେ ।
ହଂସିନୀ ବୋଇଲା ଆଗୋ ଶୁଣ କମଳିନୀ
ବିନ୍ଧିବେ ଏ ପଦ୍ମନେତ୍ର ରାଜା ଲାଖ ପୁଣି
କମଳା ବୋଇଲା ତୋତେ କହିବା ଲୋ ଶୁଣ
ଏ ରାଜାଯାକେ ମୋର କି କାର୍ଯ୍ୟ ଅଛି ପୁଣ ।
ଏ ନରଲୋକେ କେ ଛୁଇଁ ପାରିବ ମୋ ଦେହ
ଲାଖ ବିନ୍ଧିବେ ନୃସିଂହ-ସ୍ୱାମୀ କେବେ କହ ।
କାହିଁପାଇଁ ପିତା ମୋର ଏଡ଼େ କଥା କଲେ
ନୃପତି ଲୋଚାଏ କରି ବ୍ୟର୍ଥେ ଗଞ୍ଜିହେଲେ ।
ପ୍ରଥମରୁ ନୃସିଂହଙ୍କୁ ଥାନ୍ତେ ଯେବେ ହରି
ଆଜିଯାଏ କିମ୍ପା ଥାନ୍ତି ବିଭା ନୋହିକରି ।
ହଂସିନୀ ବୋଇଲା ଶୁଣ କହୁଛି ଗୋ ମୁହିଁ
ତୁମ୍ଭ ବର କଥା ଜାଣିଅଛି ମୁହିଁ ରହି ।
ଏଥକୁ ମାତା ଆଉ ନ ଘେନ ମନେ ଆନ
ଜମ୍ବୁଦ୍ୱୀପ ରାଜାଗଣ ବିନ୍ଧିବେ ଯେ ଦିନ ।
ସେ ଦିନ ପାଇବ ତୁମ୍ଭେ ପ୍ରଭୁଙ୍କର ଭେଟ
ଆଜକୁ ଯେ ତିନିରାତ୍ର ଅଛି ଲାଖଘାଟ ।
ବରୁଣ ଯେବେ ଗୋ ମାତ ଲାଖ ନ କରନ୍ତେ
ସପ୍ତଦ୍ୱୀପ ରାଜା କେଉଁ ରୂପେ ଜଣାଯାନ୍ତେ ।
ସଂସାରେ ଷାଠିଏ ଲକ୍ଷ ରାଜା ଛନ୍ତି ବୋଲି
ତୁମ୍ଭ ଲାଗି ଜଣାଗଲେ ପୁରାଣେ କହିଲି ।
ବରୁଣ ରାଜା କରନ୍ତି ଆମୋଦ ବହୁତ
ଦ୍ରବ୍ୟ ସାରିବାକୁ ସେହୁ ନୁହନ୍ତି କୁଣ୍ଠିତ ।
ବୁଝିଲେ ଅଟନ୍ତି ରାଜାମାନେ ଧନେଶ୍ୱର
ଦେଖିଲେ ଅପୂର୍ବ ଦ୍ରବ୍ୟ ଘେନନ୍ତି ତତପର ।
ଦ୍ରବ୍ୟ ସରିବା ପାଇଁ ସେ ନ କରନ୍ତି ଭୟେ
ମହତ୍ତ୍ୱକୁ ଜଗି ରହିଥାନ୍ତି ସର୍ବଦାଏ ।
ଅମହତ୍ତ୍ୱ କଥାକୁ ସେ କେବେ ନ ଜାଣନ୍ତି
ରାଜାଙ୍କର ଆଜ୍ଞା ଏହା ଅଟେ କରାମତି ।
ରାଜାମାନଙ୍କର ଏହା ଆଜ୍ଞା ଅଟେ ମୂଳ
ଆଜ୍ଞା ନ ମାନିବା ଲୋକଙ୍କର ପୁରେ କାଳ ।
ଅଟନ୍ତି ବରୁଣ ମହାରାଜା ସତ୍ୟବାଦୀ
ତେଣୁ ସେ ରାଜାମାନଙ୍କୁ ଆଣିଲେ ସମ୍ପାଦି ।
ତଥାପି ଦେବଗୁରୁ ଶ୍ରୀବୃହସ୍ପତି ଆସି
ଏ ଲାଖ ବତାଇ ପୁଣି ଗଲେକ ବିଶେଷି ।

ତେଣୁ ତୁମ୍ଭ ପିଅରଟି କଲେ ଏଡ଼େ ଲାଖ
ଆଉ ତିନିରାତ୍ରେ ଦେଖା ଦେବେ ପଦ୍ମମୁଖ ।
ସପ୍ତଦ୍ୱୀପ ଶେଷେ ଯାଇ ବିନ୍ଧିବେ ନୃସିଂହ ।
ଏକଥା ବିହି ପୂର୍ବରୁ ଲେଖିଅଛି ଯୋଗ
ଏଥକୁ ମନେ ଶଙ୍କା ନ କର କମଳିନୀ
ନିଶ୍ଚେ ନୃସିଂହର ତୁମ୍ଭେ ହେବ ପାଟରାଣୀ ।
ଆମ୍ଭଙ୍କୁ ଏକା ମାତା ଗୋ ଦୟା କରିଥିବ
ସ୍ୱାମୀରେ ଭୋଳ ହୋଇଣ ପାଶୋରି ନ ଦେବ
ଶୁଣିଣ ଶ୍ରୀମହାଲକ୍ଷ୍ମୀ ମନେ ଅଳ୍ପ ହସି
ସଙ୍କୋଚ ପାଇଣ ମାତା ପୀଠେ ଯାଇ ବସି ।
ଏଥିଉତ୍ତାରୁ ନାରଦ ଶୁଣ ଗ୍ରନ୍ଥସିଦ୍ଧି
ପଦ୍ମଦ୍ୱୀପେ ରାଜା ଚଳିଗଲେ ଲାଖବିନ୍ଧି ।
ରାଜାଙ୍କର ଲାଖବିନ୍ଧା ପ୍ରତିଜ୍ଞା ଯେ ଶୁଣ
ମୃତ୍ୟୁଞ୍ଜୟ ନାମେଣ ଯେ ଏକ ନରରାଣ ।
ସେ ବୋଲେ ବିନ୍ଧିଲେ ଯେତେ ରାଜାଆସି ଏଥ
ଲାଖକୁ ଦେଖି ସମସ୍ତେ ହେଲେ ଅଜାଯୂଥ ।
କ୍ଷତ୍ରୀକୁଳଯାକରେ ଏ ପାଣି ବୁଡ଼ାଇଲେ
ବର ଦେଲା ପ୍ରାୟେ ମୃଗଲାଞ୍ଜ ଆଉଁଷିଲେ ।
ମୁହିଁ କି ଏଠାରେ ତାଙ୍କ ପ୍ରାୟେ ଲଘୁ ହେବି
ଏହିକ୍ଷଣି ଲାଖ ବିନ୍ଧି କନ୍ୟା ଘେନିଯିବି ।
ରାଜାମାନେ ବୋଇଲେ ହେ ଆଗ ଲାଖ ବିନ୍ଧ
ସାଗର କରିବା ସତ୍ୟ ଅଟଇ ପ୍ରସିଦ୍ଧ ।
ଲାଖ ଯେ ବିନ୍ଧିବ ସେହୁ ନିଶ୍ଚେ ନେବ କନ୍ୟା
ନାହିଁ ବୋଲିବାକୁ କେହି କରିପାରେ ମନା ।
ଶୁଣି ସେହୁ ରାଜା ଗଲା ନିଶ ମୋଡ଼ି ମୋଡ଼ି
ଧନୁ ଧରି ସେହୁ ପଟାପରେ ଗଲା ଚଢ଼ି ।
ଦଣ୍ଡେଯାଏଁ ନିରେଖି ସେ କନ୍ୟାକୁ ଚାହିଁଲା
ଚକ୍ର ବୁଲିବାର ଦେଖି ଚମତ୍କାର ହେଲା ।
ପାଞ୍ଚିଲା ଧରିବି ଆଗ ଉଠି ମୃଗଲାଞ୍ଜ
ସ୍ଥିର ହୋଇ ରହିଲେ ସେ ବିନ୍ଧିବି ନାରାଚ ।
ଏତେ ବୋଲି ମୃଗପୁଚ୍ଛ ଧରୁ ନୃପବର
ଛାଟିଦେଇ ମୃଗ ତାକୁ ଗଲା ଖଣ୍ଡେ ଦୂର ।
ପିଟି ହୋଇ ପଡ଼ିଲା ସେ ରାଜା ତୁଳାଶେଯେ
ଦଶପାଞ୍ଚେ ଆସି ତାକୁ ଟେକି ନେଲେ ଭୁଜେ ।
ମନ୍ଦିରେ ତାକୁ ନେଇଣ କରାଇଲେ ଚେତା
ଆବର ଲାଖବିନ୍ଧାର ଶୁଣ ଯେ ବାରତା ।
ତାର ଅପମାନ ଦେଖି ବିଜେ ନଗ୍ରରାଜା
ଜନ୍ମରୁ ବାନର ସେହି ଅଟେ ତିନି କୁଜା ।
ଛତିଶ ଅଙ୍ଗୁଳ ଅଟେ ତାର କଳେବର
ଚାଲିଲେ ଚାଖଣ୍ଡେ ଛାଡ଼ି ପଡ଼େ ପାଦ ତାର ।
ଚଉକେ ଚଉକେ ଯାଏ ଅଛି ପାଦ ବଢ଼ି
କପିତ୍ଥ ଫଳ ପ୍ରାୟେକ ତାର ପାଦଯୋଡ଼ି ।
ତା ଅଙ୍ଗୁଳିମାନ ଗରଗଡ଼ ପ୍ରାୟ ଦିଶେ
ଲାଖ ବିନ୍ଧିବ ବୋଲି ସେ ଉଠିଲା ହରଷେ ।
ବେଲାଳ ଚକ୍ରବର୍ତ୍ତୀ ସେ ବାମନର ନାମ
ଗଲା ଲାଖ ବିନ୍ଧିବାକୁ ମନେ ବହି ତମ ।
ପହଣ୍ଡେ ପହଣ୍ଡେ ଚାଲି ପଟାରେ ଉଠିଲା
କର ବଢ଼ାନ୍ତେ ସେ ମୃଗ ପୁଚ୍ଛ ନ ପାଇଲା ।
ପାଞ୍ଚିଲା କାହିଁକି ମୁହିଁ ଆସିଲି ଏଠାକୁ
ହସ୍ତ ମୋର ପାଉ ନାହିଁ ପୁଚ୍ଛ ଧରିବାକୁ ।
ମନରେ ପାଞ୍ଚିଲା ଧନୁ ତଳେ ଦେବି ଥୋଇ
ଆଉଁଷି ଧରିବି ମୃଗପୁଚ୍ଛ ଡେଇଁ ଡେଇଁ ।
ମଣ୍ଡୁକ ପ୍ରାୟେ ସେ ଜାଣ ଉର୍ଦ୍ଧ୍ୱେ ଡେଇଁଗଲା
କେବେହେଁ ସେ ପୁଚ୍ଛ ହସ୍ତେ ଧରି ନ ପାରିଲା ।
ସେ ରାଜାର ଡିଆଁ ଦେଖି ହସି ରାଜବର୍ଗ
ବୋଲନ୍ତି ବାମନ ଧରି ନ ପାରିଲା ମୃଗ ।
ପୁଚ୍ଛକୁ ଧରିବାକୁ ତ ହସ୍ତ ପାଉ ନାହିଁ
କାହିଁକି କରୁଛ ଏଡ଼େ ଶ୍ରମ ଡ଼େଇଁ ଡ଼େଇଁ ।
ତୁମ୍ଭ ଦେହ ହେବ ତିନି ଚାଖଣ୍ଡ ଯେ ଉଚ୍ଚ
ଏଥକୁ ଯେ କେତେ ଡେଇଁ ଧର ମୃଗପୁଚ୍ଛ ।
ଗୋଡ଼ ତ ତୁମ୍ଭର ଚାରିଆଙ୍ଗୁଳ ଯେ ଲମ୍ବ
କିରୂପେ ଡେଇଁଣ ଏଡ଼େ ମୃଗକୁ ଧରିବ ।
ତୁମ୍ଭଙ୍କୁ ହେଲେ କାହାର ଅଭିମାନ ନାହିଁ
ଆମ୍ଭେ ଯେ ହସୁଛୁ ତୁମ୍ଭ ଡେଇଁବାକୁ ଚାହିଁ ।
ଆସ ଆସ ରାଜା ଏହି ସଭା ମଧ୍ୟେ ବସ
ତୁମ୍ଭ ରୂପ ଦେଖିବାରୁ ଲାଗେ ଏଡ଼େ ହସ ।
ଶୁଣି ଯେ ବାମନ ଛାଡ଼ି ଆସିଲେ ବାହୁଡ଼ି
ବସିଲେ ଆସନେ ସଭା ମଧ୍ୟେ ଚକାମାଡ଼ି ।
ଏଥିଅନନ୍ତରେ ଆଉ ରାଜା ଗଲା ଉଠି
ବିଭୁବାକ୍ଷ ବୋଲିଣ ଯେ ତାର ନାମ ଗୋଟି ।
ଚଢ଼ି ପଟା ଉପରେ ସେ ଧରି ମୃଗପୁଚ୍ଛ
ମୁଖ ବୁଲାଇ ପଡ଼ିଲା ରାଜା ଅତି ଉଚ୍ଚ ।
ସେ ରାଜାର ଅପମାନ ଦେଖି ଆର ରାୟେ
ଜନକ ବୋଲି ତାହାର ନାମ ଗୋଟି ହୋଏ ।
ଧନୁ କରେ ଧରି ଉଠିଗଲା ହୋଇ ସଜ
ପାଞ୍ଚିଲେ ପକାଇ ଦେବି ଜାଲ ଗୋଟି ଆଜ ।

ଜାଲରେ ପଡ଼ି ରହିବ ମୃଗ ହୋଇ ଛନ୍ଦି
ତେବେ ମୁଁ ଯାଇ ନାରାଚ ଦେବି ତାକୁ ବିନ୍ଧି ।
ଏରୂପେ ପାଞ୍ଚି ସେ ରାଜା ଜାଲ ପକାବନ୍ତେ
ପଡ଼ିଲା ଛିଡ଼ି ସେ ଜାଲ ଚକ୍ର ଦାଢ଼ ଘାତେ ।
ସେ ରାଜାର ବୁଦ୍ଧିଯାକ ବିଫଳ ହୋଇଲା ।
ଲଜ୍ଜା ପାଇଣ ନୃପତି ସଭାରେ ବସିଲା
ଏଥୁଅନନ୍ତରେ କଥା ନାରଦ ହୋ ଶୁଣ
ଅଷ୍ଟ ଅବଧାନୀ ବୋଲି ଏକ ନୃପ ଜାଣ ।
ରାଜାକୁ ବୋଧି କହିଲେ ସେହୁ ନୃପସାଇଁ
ଏ ଲାଖକୁ ବିନ୍ଧି ନ ପାରିବେ ଆଉ କେହି ।
କଥାଏକ କହୁଥାଇ ସର୍ବେ ତାହା ଶୁଣି
ଏ ଲାଖଗୋଟି ବିନ୍ଧିବେ ଏକା ଚକ୍ରପାଣି ।
ମୁଁ ମୋର ରାଜ୍ୟକୁ ଏବେ ଯାଆନ୍ତି ବାହାରି
ନୃସିଂହ ବିନ୍ଧିବେ ବୋଲି ଅଛି ଅନୁସରି ।
ଏ ଲାଖକୁ ବିନ୍ଧି ବିଭା ହେବେ ପଦ୍ମମୁଖ
ତେଣୁକରି ଜଗି ମୁହିଁ ରହିଅଛି ଦେଖ ।
ଆଉ ବେନିଜନ ଯେବେ ରହିବ ନିର୍ବର୍ତ୍ତୀ
ଦେଖିବା ଲକ୍ଷ୍ମୀନୃସିଂହ ପ୍ରଭୁ ବେନି ମୂର୍ତ୍ତି
ଆମ୍ଭେ ଯେ ଷାଠିଏ ଲକ୍ଷ ରାଜା ଆସିଥାଇ
ବିନ୍ଧିବାର ନୃପଯାକ ଗଲେ ଲଜ୍ଜା ପାଇ ।
କନ୍ୟାର ଲୋଭେ ସିନା କେ ରହିପାରୁ ନାହିଁ
ମୃଗକୁ ଛୁଇଁବା ମାତ୍ରେ ପଳାଇ ଆସଇ ।
ମୃଗ କେ ଅଟେ କାହାକୁ ତାହା ନାହିଁ ଜଣା
ନୃସିଂହଙ୍କ ପାଇଁ ବସିଛନ୍ତି ଜଗି ଠଣା ।
ସାକ୍ଷାତେ ନବଗ୍ରହ ସେ ଛନ୍ତି ମୃଗ ହୋଇ
କାହାର ହସ୍ତ ନ ପାଏ ଲାଖେଛନ୍ତି ରହି ।
ନୃସିଂହ ବିନ୍ଧିବେ ଆସି ଯେତେବେଳେ ଲାଖ
ସମସ୍ତେ ହୋଇବା ମୋକ୍ଷ ରହି ଏଥେ ଦେଖ ।
ମାନବ ଦେହୀ କେହି ନ ପାରେ ତାହା ବିନ୍ଧି
ଦେଖିବା ଲାଖ ବିନ୍ଧିବେ ନିଶ୍ଚେ ଦୟାନିଧି ।
ଏଡ଼େକ ପବିତ୍ର କଥା କେମ୍ଭେ ଯିବା ଛାଡ଼ି
ତେଣୁ ରହିଅଛି ପ୍ରଭୁ ପାଦପଦ୍ମ ଲୋଡ଼ି ।
ଶୁଣି ସେ ଦ୍ୱୀପ ରାଜାଏ ବୋଇଲେ ଏ ସତ୍ୟ
ହୋଇବା ମୋକ୍ଷ ଦେଖିବା ଆମ୍ଭେ ଲକ୍ଷ୍ମୀକାନ୍ତ ।
କହିଲେ ଅଷ୍ଟାବଧାନୀ ରାଜା ସତ୍ୟ ଜାଣ
ଏରୂପେ ପାଞ୍ଚି ରହିଲେ ରାୟେ ନିବର୍ତ୍ତିଣ ।
ସେ ଦିନର ଲାଖବିନ୍ଧା ସରିଲା କାହାଣୀ
ମେଢ଼ରୁ ବିଜେ କରାଇ ନେଲେ କମଳିନୀ ।
ପହଣ୍ଡ ମଣାଇ ଘେନି ଯାନ୍ତେ ଦାସୀଗଣେ
ଆଗରେ ବାଜଇ ଶଙ୍ଖ ବୀଣା ଗରୁଟାଣେ ।
କୁସୁମ ବୃଷ୍ଟି କରନ୍ତି ଶୂନ୍ୟେ ଦେବତାଏ
ହୁଳହୁଳି ଦିଅନ୍ତି ଯେ ମିଳି କାମିନୀଏ ।
ଅଗୁରୁ ଚନ୍ଦନ ଛେରା ପଡ଼େ ଦାଣ୍ଡଯାକେ
ଆଲଟ ଚାମର ଢାଳୁଛନ୍ତି ଚାରିପାଖେ ।
ଅର୍ଘ୍ୟଥାଳୀରେ ବନ୍ଦାଣ ବରୁଣର ରାଣୀ
ମନ୍ଦିରେ ନେଇ ମାଜଣା କଲେ କମଳିନୀ
ସେ ଜଗତ ଜନନୀଙ୍କି ବସାଇ ଆସନେ
ସନ୍ତୋଷ କରାନ୍ତି ଷଡ଼ରସର ଭୋଜନେ ।
ଭୁଞ୍ଜିସାରି ଆଗମନ କଲେ କମଳିନୀ
ପଲ୍ୟଙ୍କରେ ବିଜେ କଲେ ଲକ୍ଷ୍ମୀ ଠାକୁରାଣୀ ।
ନୀରବତୀ ପଲ୍ୟଙ୍କରେ ନେଇ ପହୁଡ଼ାଇ
ଲକ୍ଷେ ପରିବାରୀ ସେବା କଲେ ପାଶେ ଯାଇ ।
ଏଥୁଅନ୍ତେ ସେ ବରୁଣରାଜା ପାଟରାଣୀ
ସ୍ୱାମୀ ଶଯ୍ୟା ପାଶେ ଯାଇ ପ୍ରବେଶିଲେ ପୁଣି ।
ପାଦ ବେନି ମଞ୍ଜାଳି ସେ କଲେ ସ୍ୱାମୀସେବା
ପାଞ୍ଚନ୍ତି ସେ କେଉଁ ଦିନ ଲକ୍ଷ୍ମୀ ହେବେ ବିଭା ।
ବୋଇଲେ ସ୍ୱାମୀ କାହିଁକି କଲ ଏହୁ ଲାଖ
ଏ ଲାଖ ବିନ୍ଧି ଗଲେଣି କେତେ ରାଜା ଦେଖ ।
ଏବେ ତ ବୁଝ ହେଲାଣି ଆସି ପଞ୍ଚରାତ୍ର
ଆଉ ଦୁଇ ଦିନେ ଯିବ ତୁମ୍ଭ ଲାଖ ସୂତ୍ର ।
ଏଡ଼େ ବଡ଼ ଗୂଢ଼ ଲାଖ କାହିଁପାଇଁ କଲ
ବସାଏ ବରି ନବରି ବ୍ୟର୍ଥେ ଗଞ୍ଜିହେଲ ।
ଷାଠିଏଲକ୍ଷ ରାଜା ଯେ ଆଣିଲ ସମ୍ପାଦି
ଜଣେ ହେଲେ ସେଥିରୁ କେ ନ ପାରିଲେ ବିନ୍ଧି ।
ସହିଲଣି କେଡ଼େ ବଡ଼ ଏ ଆର୍ଦ୍ଦୋଳି ଗୋଟା
ମେଢ଼କୁ ତ ଚାଲି ଚାଲି ହେଲେ ଲକ୍ଷ୍ମୀ ଚିଟା ।
ଗୋଟିଏ ଦ୍ୱୀପ ରାଜାଙ୍କ ଯେତେକ ଆର୍ଦ୍ଦୋଳି
ତାହା କେହି ସଂସାରେ ନ ପାରଇ ସମ୍ଭାଳି ।
ଅନେକ ପୁରାଣେ ଅଛି ଏ କଥା ମୁଁ ଶୁଣି
ତୁମ୍ଭେ ବୋଲି ଏଡ଼େ ଚର୍ଚ୍ଚାକର ନୃପମଣି ।
ଷାଠିଏ ଲକ୍ଷ ରାଜାର ଥାଟ ସୈନ୍ୟ ଯେତେ
ଏମାନଙ୍କୁ ଚରଚି କେ ପାରନ୍ତା ଜଗତେ ।
ଆବରହିଁ ଅଠାଅଶୀସସ୍ର ଯେତେ ଋଷି
ଏମାନଙ୍କୁ ସେବି ମନ ପାରନ୍ତା କେ ତୋଷି ।
ତେତିଶକୋଟି ଦେବଙ୍କ ଆର୍ଦ୍ଦୋଳିଟି ଯେତେ
ଏହାଙ୍କ ଭାରା କେ ସହିପାରନ୍ତା ଜଗତେ ।

ତୁମ୍ଭେ ବୋଲିବାକୁ ସ୍ୱାମୀ ଏତେ ଦ୍ରବ୍ୟ ସାରି
ଦେଉଅଛ ସମସ୍ତଙ୍କୁ ଅନ୍ନ ଆଣିକରି ।
ଶୁଣିଣ ବରୁଣରାଜା ମନେ ଅଳ୍ପ ହସି
ବୋଲନ୍ତି କହୁଛି ତେବେ ଶୁଣ ଶୁଭ୍ରକେଶୀ ।
କାର୍ଯ୍ୟଗ୍ରାହୀ ଲୋକ ବୁଦ୍ଧି ନିଶ୍ଚଳ ଯେ ଧରେ
ସେ ଦିନ ଆଖି ବୁଜା ନ କରେ ସବୁଠାରେ ।
ଅଳପ ସାର ବୋଲିଣ ପତ୍ନୀ ତିଆରଇ
ତାର କଲା ନିନ୍ଦାକର୍ମ ଶୁଭ ଉପୁଜଇ ।
ସଂସାରେ ଯେ କରେ କେହି ନ ବୋଲନ୍ତି ଭଲ
ଉତ୍ତମ ଦେଲା ଲୋକଙ୍କୁ ବୋଲନ୍ତି ଅମୂଲ୍ୟ ।
ଯହିଁ ପାଇଁଟି ଭୋଜନ ଆମ୍ଭେ ଦେଉଥାଇଁ
ବର କନ୍ୟା ଦୁହିଁଙ୍କର ଶୁଭ ହେବା ପାଇଁ ।
ଦ୍ରବ୍ୟ ଥାଉଁ ପଦାର୍ଥ ନ ସାରେ ସେ କାର୍ଯ୍ୟରେ
କୁମତି କୁତ୍ସିତ ତାକୁ ବୋଲନ୍ତି ସଂସାରେ ।
ତାର ଯଶ କୀର୍ତ୍ତି ସବୁ ଅକ୍ଳେ ନାଶଯାଇ
ଆରୋଗ୍ୟ ନୁହନ୍ତି କେବେ ବରକନ୍ୟା ଦୁଇ ।
ଶରୀର ଥିଲା ଯାକେ ସେ କ୍ଳେଶ ପାଉଥାନ୍ତି
ଦିନେ ଭଲ ହେଲେ ଦିନେ ଆରୋଗ୍ୟ ନୁହନ୍ତି ।
ଏ ଘେନି ଯେ ଅନ୍ନଦାନ ଅଟେ ମହାପୁଣ୍ୟ
ଯେତେ ଦେବ କେତେ କଷ୍ଟ ଖଣ୍ଡେ ଭଗବାନ ।
ଏଣୁ ଆମ୍ଭେ ସଖି ଏତେ ଲୋକ ଡାକିଆଣି
ଦେବଇଁ ଯେ ଅନ୍ନଛତ୍ର ଭୁଞ୍ଜନ୍ତୁ ହେ ପ୍ରାଣୀ ।
ଅଠାଶୀ ସହସ୍ର ଋଷି ଆଦି ସର୍ବଦେବ
ଷାଠିଏ ଲକ୍ଷ ରାଜାଙ୍କ ଥାଟ ସୈନ୍ୟ ସର୍ବ ।
ଦେବଲୋକ ନରଲୋକ ନାଗଲୋକଯାଏ
ଦଶଦିଗପାଳ ଦେଖୁଛନ୍ତି ଆମ୍ଭ ଗୃହେ ।
ତାର ବାର ଯୋଗ ଲଗ୍ନ କରଣ ଯେ ଆଦି
ଭୁଞ୍ଜନ୍ତି ଲକ୍ଷ୍ମୀଙ୍କ ଭୋଜି ଯେହ୍ନ ଯଥାବିଧି ।
ଶିବଗଣଙ୍କ ସହିତେ ଛନ୍ତି ମହାଦେବ
ପାର୍ବତୀ ସାବିତ୍ରୀ ଆଦି ବ୍ରହ୍ମା ବାସୁଦେବ ।
ଏମାନେ ତ ବିଜେ କରିଛନ୍ତି ଜାଣ ସଖି
ଆବର ଛନ୍ତି ତେତିଶକୋଟି ଦେବ ଲେଖି ।
ନୀରବତୀ ବୋଲେ କହ କିମ୍ପା ଏଡ଼େ ସଭା
ଗୃହେ ନୃସିଂହ ଥାଉଁ ନ କଲେ କିମ୍ପା ବିଭା ।
ନୃସିଂହ ଆମ୍ଭର ପୁରେ କଲେ ଯେବେ ବିଜେ
ବିଭା ନ କରି ଲକ୍ଷ୍ମୀକି ରଖିଲ କି କାର୍ଯ୍ୟେ ।
ବରୁଣ ବୋଲେ ସଖି ଶୁଣ ସେ ବୃତ୍ତାନ୍ତ
ଯହିଁ ପାଇଁ କଲୁ ଲାଖ ଶୁଣ ସେ ଚରିତ

ସେ କଥାର ତାତପର୍ଯ୍ୟ କହିବା ଗୋ ଶୁଣ
ବିଷ୍ଣୁଙ୍କ ବ୍ରହ୍ମାଣ୍ଡେ କେହି ନ ମାନିଲେ ଜାଣ ।
ତହିଁ ପାଇଁ ଏଡ଼େ ଲାଖ କଲୁ ଆମ୍ଭେ ନିର୍ଭା
ସପ୍ତଦ୍ୱୀପ ରାଜା ଲୋଡ଼ି ବସାଇଲୁଁ ସଭା ।
ରାଣୀ ବୋଇଲେ ଭୋ ସ୍ୱାମୀ ବିଷ୍ଣୁ ନିନ୍ଦାକରି
କେଉଁ ଗ୍ରାମେ ଏଡ଼େ ମୂର୍ଖ ଅଛି ଦେହ ଧରି ।
ପୃଥବୀ ତାହାକୁ ବହି ରହିଛି କି ରୂପେ
ଦେବତା ହୋଇଣ ଲୁଚି ଯାଆନ୍ତାଣି ଆପେ ।
ସେ ମଧ୍ୟ ଆମ୍ଭ ପୁରକୁ ଆସିଛି କି କୁହ
ବିଷ୍ଣୁ ନିନ୍ଦା କେହ୍ନେ କରି ଧରିଅଛି ଦେହ ।
ଏଡ଼େ ପାପୀକି ଧରିତ୍ରୀ କେହ୍ନେ ଅଛି ବହି
ଏକଥା କହ ଭୋ ସ୍ୱାମୀ ଶୁଣିବି ଯେ ମୁହିଁ ।
ବରୁଣ ବୋଇଲେ ପ୍ରିୟେ କହିବା ଗୋ ଶୁଣ
ସେ ଦୁଷ୍ଟର କଥା ଯେବେ ପଚାରିଲ ପୁଣ ।
ସପ୍ତଦ୍ୱୀପର ଯେ ସାର ଯେଉଁ ଜମ୍ବୁଦ୍ୱୀପ
ଲକ୍ଷେକ ଯୋଜନ ପ୍ରତି ଅଟେ ତାର ମାପ ।
ମେରୁର ଦକ୍ଷିଣ ଭାଗେ ପଶ୍ଚିମ ଯେ ଦିଗ
କନକାବତୀ ବୋଲିଣ ଅଛି ଏକ ନଗ୍ର ।
ବିଂଶାଶଏ ଯୋଜନଟି ଅଟେ ସେହୁ ଭୂମି
ସେ ପୁରେ ଅସୁର ଏକ ଅଛି ଜାଣ ଜନ୍ମି ।
ଉର୍ବଶୀର ଗର୍ଭରେ ସେ ଧାତାର ବୀର୍ଯ୍ୟରୁ
ସୁଧର୍ମା ସଙ୍ଗରେ ବସି ନୃତ୍ୟ କରୁ କରୁ ।
ଉର୍ବଶୀକି ଦେଖି ବ୍ରହ୍ମା ମୋହ ହୋଇଯାନ୍ତେ
ମଇଥୁନ କରୁ କରୁ ଜାତ ମୁରଦୈତ୍ୟେ ।
ସେ ମୁରର ଭାର ବହି ନ ପାରଇ ମହୀ
ସ୍ୱର୍ଗରୁ ବାସବ ଜାଣି ଦେଲେ ଘଉଡ଼ାଇ ।
ଇନ୍ଦ୍ରର କୋପ ଦେଖି ସେ ପଳାଇଲା ଛାଡ଼ି
ଶିବଙ୍କୁ କଲା ତପ ସେ ହୋଇ ଏକଗୋଡ଼ି ।
ଅମର ବର ପାଇଣ ଦିଗବିଜେ କଲା
କନକାବତୀ ନଗରେ ରାଜା ଯାଇ ହେଲା ।
ଦଶଦିଗପାଳଙ୍କୁ ସେ କଲା ବଶବର୍ତ୍ତୀ
ଦିନକେ ଥରେତାହାକୁ ଭେଟୁ ଆମ୍ଭେ ନିତି
ସଭାକରି ବସଇ ସେ ଦେବଲୋକ ଘେନି
ଆମ୍ଭର ଆଗେ ବିଷ୍ଣୁଙ୍କୁ ନିନ୍ଦିବ ନ ମାନି ।
ପାଶକୁ ଯାଇ ମେଲାଣି ନିତ୍ୟ ହୋଇ ଆସୁ
ଏରୂପେ ଯାଇ ତାହାର ସଭା ମଧ୍ୟେ ବସୁ ।
ବିଷ୍ଣୁର ନିନ୍ଦା ଗୋଟି ନ ପାରୁ କେହି ସହି
ତେଣୁ ଏଡ଼େ ଲାଖ ଜାଣ ସ୍ଥାପିଲି ଗୋ ମୁହିଁ ।

ମୁରାସୁରର ଗାରିମା ଭାଙ୍ଗିବା ନିମନ୍ତେ
ଏ ଲାଖକୁ ବୃହସ୍ପତି ସଞ୍ଚିଥିଲେ ଗୁପ୍ତେ ।
ମୋତେ କହିଲେ ବିନ୍ଧିବେ ଏକା ନାରାୟଣ
ଆନ ଲୋକ ବିନ୍ଧି କେହି ନ ପାରିବେ ଜାଣ ।
ନର ବୋଲି ମୁର ଯେବେ ବୋଲୁଛି ହରିଙ୍କି
ଏଲାଖ ବିନ୍ଧାରେ ଚିହ୍ନା ପଡ଼ିବେ ସଭିଙ୍କି ।
ମୁରାସୁର ମଧ ଲାଖ ନ ପାରିବ ବିନ୍ଧି
ଲଘୁ ହୋଇଣ ରାଜ୍ୟକୁ ଯିବ ସେ ଅବଧି ।
ନୀର ବତୀ ବୋଇଲେ ଏ କେବେ ଜଣାହେବ
ମୁର ଅସୁର ଚଣ୍ଡାଳ ପଳାଇଣ ଯିବ ।
ବରୁଣ ବୋଇଲେ ଆଉ ଦିନେ ମାତ୍ର ଅଛି
ଶ୍ରୀମହାଲକ୍ଷ୍ମୀଙ୍କି ବିଭା ହୋଇବେ·ଶ୍ରୀବସି ।
ତେଣୁ ଏ ରାଜାଙ୍କୁ ମୋର ନଜର ଯେ ନାହିଁ
ସପତ ଦିନେ ବିନ୍ଧିବେ ପ୍ରଭୁ ଭାବଗ୍ରାହୀ ।
ଶୁଣି ନୀରବତୀ ରାଣୀ ହେଲେ ମନେ ତୋଷ
ଏ ଅନ୍ତରେ ହେଲା ପାହାନ୍ତିର ଅବକାଶ ।
ଦେବଆଳୟେ ଶୁଭିଲା ଶଙ୍ଖବାଦ୍ୟ ଧ୍ୱନି
ଯେ ବିଧିରେ ନିତ୍ୟକର୍ମ ସାରି ନୃପମଣି ।
ଲାଖ ବିନ୍ଧିବାକୁ ସଜହେଲେ ଧନୁଧରି
ଶୁଣ ହେ ନାରଦ କହନ୍ତି ଯେ ମୁଖଚାରି ।
ଦ୍ୱିଜହୀନ ବିପ୍ର ମୂଢ଼ ପୀତାମ୍ବର ଦାସ
ସାଧୁଜନମାନଙ୍କର ଚରଣେ ମୋ ଆଶ ।
ନୀଳଗିରି ଜଗନ୍ନାଥେ କୃପା କଲେ ମୋତେ
ତେଣୁ ଏ ନୃସିଂହ ଗ୍ରନ୍ଥ ବଖାଣଇ ଗୀତେ ।
ବିପ୍ର ପୀତାମ୍ବର ନୃସିଂହଙ୍କ ଉପାସକ
କପାଳେ ଘେନିଣ ହରି ମନ୍ଦିର ତିଳକ ।
ଆଦ୍ୟେ ହରି ମଧ୍ୟେ ରାମ ପ୍ରାନ୍ତେ କୃଷ୍ଣ ନାମ
ଏରୂପେ ସେ ତିନି ନାମ ଅଟେ ଏକ ବ୍ରହ୍ମ
ପଛେ ଯାଉଁ ରାମକୃଷ୍ଣ ଶୁଣାନ୍ତି ଜନଙ୍କୁ
ସଂସାରରେ ପାପୀମାନେ ନିସ୍ତରି ଯିବାକୁ ।
ହରେ ରାମ କୃଷ୍ଣ ତିନି ମହାମନ୍ତ୍ରେ କରି
ଶୁଣାନ୍ତି ଶ୍ରୀ ଗୁରୁଦେବ କର୍ଣ୍ଣେ ମନ୍ତ୍ର ଭରି ।
ଏଣୁ ହରିନାମ ଶ୍ରୀ ନୃସିଂହ ପ୍ରବର୍ତ୍ତାଇ
ଶ୍ରୀ ନୃସିଂହ ଉପାସକ ତେଣୁ ଅଟେ ମୁହିଁ ।
ମାୟା ମୋହ ସଂସାରେ ଏ ଅଟଇ ଅନିତ୍ୟ
ନ ଜାଣିଣ ପ୍ରାଣୀମାନେ ଅର୍ଜନ୍ତି ଦୁଷ୍କୃତ ।
ଆପଣାର ଆତ୍ମା ପ୍ରାୟ ସବୁ ଆତ୍ମା ଚିହ୍ନେ
ସମଦରଶୀ ଜନଟି ବିଷ୍ଣୁର ସମାନେ ।

ତଥାପି ତ ବେନିଶତ ବର୍ଷ ଜୀଉଁଥିଲେ
ତେବେ ବା ଶୋଭାପାନ୍ତା ମୁଁ ବଡ଼ ବୋଲାଇଲେ ।
କେହୁ ଅବା ଆଜି କାଲି କେହୁ ବା ଷାଠିଏ
ଚିରିଞ୍ଜୀବୀ ହୋଇ ନାହିଁ ସଂସାରରେ କିଏ ।
ବୁଝିଲେ ସବୁରି ସଙ୍ଗେ ସଂସାରେ ମୁଁ ଜଣେ
ସେବା କରିନାହିଁ ସାଧୁଙ୍କର ଶ୍ରୀଚରଣେ ।
ଶୁଣିମା ହେ ସାଧୁଜନେ ଏଥୁଅନନ୍ତରେ
ଗଲେ ଲାଖ ବିନ୍ଧିବାକୁ ଶାକଲ୍ୟ ନୃବରେ ।
ଆଜ୍ଞାକଲେକ ସାଗର ଶୁର ଲୋ ହଂସିନୀ
ଲକ୍ଷ୍ମୀ ବିଜେକରୁ କେଡ଼େ ବେଗେ ଯାଅ ଘେନି
ଶାକଲ୍ୟ ଦ୍ୱୀପର ରାଜା ବିନ୍ଧିବେ ଯେ ଲାଖ
ଶ୍ରୀବିଷ୍ଣୁ ପାଟରାଣୀକି ଦେଖି ହୋନ୍ତି ମୋକ୍ଷ ।
ଶୁଣିଣ ମୃଦୁସୁଲୀଏ ସୁବେଶ ଯେ କଲେ
ହାନ୍ଦୋଳାରେ ବସାଇଣ ମେଢ଼େ ଘେନିଗଲେ ।
ଆସନେ ବିଜେ କରାଇ ଦେଲେ ହୁଳହୁଳି
ଶଙ୍ଖ ବାଜନ୍ତେ ନଗର ପଡ଼ଇ ଉଚ୍ଛୁଳି ।
ଲକ୍ଷ୍ମୀଶିରେ ଟେକାହୋଇଅଛି ଲକ୍ଷେଛତ୍ରୀ
ଉପରେ ଲକ୍ଷେ ଚାମର ପଡ଼େ ଚଉକତି ।
ଲକ୍ଷେ ପରିବାରୀଛନ୍ତି ସେବାରେ ଯେ ଲାଗି
ଦେଖିଲା ଲୋକମାନେ ଯେ ହୁନ୍ତି ମୋକ୍ଷଭାଗୀ ।
ବଦୟନ୍ତି ବେଦବ୍ରହ୍ମା ଶୁଣ ହେ ନାରଦ
ଗଲେ ଲାଖ ବିନ୍ଧିବାକୁ ଶାକଲ୍ୟ ନରେନ୍ଦ୍ର ।
ପ୍ରଥମୁଁ ଉଠିଲେ ରାଜା ଭୂପାଳ କେଶରୀ
ମୁରର ଶ୍ୱଶୁର ଅଟେ ଏହି ଦଣ୍ଡଧାରୀ ।
ବିପ୍ରକୁଳ ରାଜା ଏହି ଅଟେ ସୁପଣ୍ଡିତ
ମହତ୍ତ୍ୱ ମର୍ଯ୍ୟାଦା କୁଳଶୀଳ ଗୁଣଯୁକ୍ତ ।
ଲାଖର ପାରୁଶେ ରାଜା ହୁଅନ୍ତେ ସେ ଭେଟ
ମନରେ ପାଞ୍ଚିଲା ଏହୁ ଅଟେ ଗ୍ରହକୂଟ ।
ବିଷ୍ଣୁ ବିନା ଆନ କେ ନ ପାରେ ଏହା ବିନ୍ଧି
ଭାଗ୍ୟ ଥିବାରୁ ଦେଖିଲି ଆସି ବାର ନିଧି ।
ଲାଖର ପାଖକୁ ବେଳେ ଯିବା ପରା ଦେଖି
କରି ପ୍ରଦକ୍ଷିଣ ନିଜ ମହତ୍ତ୍ୱକୁ ରଖି ।
ଏରୂପେ ମନେ ପାଞ୍ଚିଣ ଭୂପାଳ କେଶରୀ
ଲାଖକୁ ଯାଇ ରାଜନ ନମସ୍କାର କରି ।
ମୃଗର ପୁଚ୍ଛକୁ ଛୁଇଁଣ ଆସିଲେ ବାହୁଡ଼ି ।
ବସିଲେ ମଞ୍ଚା ଉପରେ ଆସନ ଯେ ମାଡ଼ି ।
ଭୂପାଳ କେଶରୀ ରାଜା ବାହୁଡ଼ିବା ଦେଖି
ବାବନା ଜାନୁଘଣ୍ଟ ଯେ ଉଠି ନିଶ ଟେକି ।

ବୋଇଲେ ଏତେକ ରାଜା କିମ୍ପା ବାହୁଡ଼ିଲା
ଶାକଲ୍ୟ ଦ୍ୱୀପର ଏହୁ ପାଣି ବୁଡ଼ାଇଲା ।
ତଥାପି ମୁହିଁ ଯଦ୍ୟପି ନ ବିନ୍ଧିବି ଲାଖ
ଏହିକ୍ଷଣି ଯିବେ ଭାଜି ଦ୍ୱୀପ ରାଜାଯାକ ।
ଏତେକ ପାଞ୍ଚଣ ରାୟେ ଉଠି ଧାତିକାରେ
ଚଢ଼ିଲା ଧନୁକୁ ଧରି ପଟାର ଉପରେ ।
ମୃଗର ପୁଚ୍ଛ ନ ଧରି ନାରାଚ ବିନ୍ଧିଲା
ଅନ୍ତରୀକ୍ଷେ ଶରଯାଇ ସମୁଦ୍ରେ ପଡ଼ିଲା ।
ଲାଖେ ନ ବାଜିଣ ଶର ଆସିଲା ପଳାଇ
ଲଜ୍ଜା ସଲିଳ ତାହାର ଦେହୁ ଗଲା ବହି ।
ତାର ଅପମାନ ଦେଖି ମଣିଭଦ୍ର ରାୟେ
ମନଟାଣେ ଧନୁଧରି ଗଲା ଲାଖ ଯାଏ ।
ହୁଁକାର ନାଦେ ନାରାଚ ଗୋଟି ଦ୍ୟନ୍ତେ ପେଷି
ଲାଖେ ନ ବାଜି ସେ ଶର ଗଲା ଜଳେ ପଶି ।
ନୋହିଲା ଏ ଲାଖ ବୋଲି ଆଉ ରାଜା ଉଠି
ଚୂଡ଼ାକର୍ଣ୍ଣ ବୋଲି ତାର ଅଟେ ନାମଗୋଟି ।
ଧନୁ କରେ ଧରି ଉଠିଗଲା ଧାତିକାରେ
ନାରାଚ କରେ ଧରିଣ ଉଠିଲା ହୁଁକାରେ ।
ଲାଖେ ନ ବାଜି ସେ ଶର ଶୂନ୍ୟେଗଲା ଉଡ଼ି
ରହିଲା ଜଳରେ ଲୁଚି ସିନ୍ଧୁମଧ୍ୟେ ପଡ଼ି ।
ସେ ରାଜା ଲଜ୍ଜା ପାଇଣ ଆସନ୍ତେ ପଳାଇ
କାମଦଣ୍ଡ ନାମେ ରାଜା ଗଲା ଶୀଘ୍ରେ ଧାଇଁ ।
ସେ ମଧ ଲାଖ ନ ବିନ୍ଧି ପଳାଇ ଅଇଲା
କାହାକୁ ନକହି କରି ମଞ୍ଚାରେ ବସିଲା ।
କଣୟ ବିନ୍ଦ କାକୁସ୍ଥ ଦେଶର ଯେ ରାୟେ
ଉଠି ପ୍ରତିଜ୍ଞା କରି ସେ ଗଲା ଲାଖ ଯାଏ ।
ଧନୁ କରେ ଧରି ବିନ୍ଧିଦ୍ୟନ୍ତେ ତଡ଼ବଡ଼ି
ସ୍ତମ୍ଭରେ ବାଜି ସେ ଶର ଗଲା ତଳେ ପଡ଼ି ।
ତା ଦେଖି ବିରାଟସେନ ନାମେ ଏକରାୟେ
ହୁଁକାର ନାଦ କରିଣ ଗଲା ଲାଖଯାଏ ।
ଧନୁକୁ କରେ ଧରିଣ ନାରାଚ ବିନ୍ଧନ୍ତେ
ପଡ଼ିଲା ସେ ଶରଯାଇ ସିନ୍ଧୁ ମଧଗତେ ।
ଲାଖ ନ ବାଜିବା ଦେଖି ବାହୁଡ଼ି ଆସିଲା
ସେହୁ ଆସନ୍ତେ ଆବର ରାଜାଏ ଉଠିଲା ।
ନନ୍ଦନ ଦେଶର ଯେ କନକ ବାଞ୍ଛାନିଧି
ସେ ବୋଇଲା ଲାଖକୁ ମୁଁ ଆସୁଅଛି ବିନ୍ଧି
ଜଣେ ହେଲେ କେହି ଜାଣି ନ ପାରିଲ ଦେଖ
ମୁହିଁ ଲାଖ ବିନ୍ଧି କନ୍ୟା ଆଣିବି ପ୍ରତ୍ୟକ୍ଷ ।

ଏତେ ବୋଲିଣ ସେ ରାଜାନିଶେ ହସ୍ତଦେଇ
ଉଠିଲା ଧନୁକୁ ଧରି ଲାଖ ପାଶେ ଯାଇ ।
ମୃଗର ପୁଚ୍ଛ ଧରିଣ ବିନ୍ଧନ୍ତେ ନାରାଚେ
ବୁଲିଯାଇ ରାଜା ପଡ଼ିଗଲା ତୁଳାଶେଯେ ।
ତାହା ଦେଖି ଆଉ ଏକ ରାଜା ଗଲା ପୁଣି
ରୋହିତାଙ୍କ ଦେଶର ଯେ ଅଟେ ନୃପମଣି ।
ଶୀତାଂଶୁ ବୋଲି କରିଣ ଅଟେ ତାର ନାମ
ଲାଖ ବିନ୍ଧିବାକୁ ଉଠି ହୋଇଗଲା ତମ ।
ବୋଇଲା ମୁହିଁତ ଲାଖ ବିନ୍ଧିବି ଏକ୍ଷଣି
ମେଢ଼ରୁ ଧରି ଆଣିବି ଆଜ କମଳିନୀ ।
ଏତେ ବୋଲିକରି ଧନୁ ଆମଞ୍ଚନ କଲା
ନାରାଚ ପୁରାଇ ମୃଗ ପାଦକୁ ବିନ୍ଧିଲା
ସେ ଶର ବାଜିଲା ଯାଇଁ ମୃଗ ବାମପାଦେ
କନ୍ୟା ମୋର ହେଲା ବୋଲି ଧଇଲା ଆନନ୍ଦେ ।
ମେଢ଼ର ତଳେ ମିଳନ୍ତେ ଯାଇ ମହୀପାଳ
ନୋହିଲା ଏ ଲାଖ ବୋଲି ନୃପେ କଲେ ଗୋଳ
ବୋଇଲେ ପାଦେ ବାଜିଲା ସିନା ତୁମ୍ଭ ଶର
ନେତ୍ରେ ବାଜିଥିଲେ ବୋଲନ୍ତୁ ଯେ କନ୍ୟା ମୋର ।
ବୋଇଲେ ପାଦେ ବାଜିଲା ନେତ୍ରେ ଗଳି ନାହିଁ
ଏ କନ୍ୟାକୁ ଛୁଇଁବାକୁ ତୁମ୍ଭ ବଳ କାହିଁ ।
ଏହିରୂପେ ନ୍ୟାୟକରି କହନ୍ତେ ରାଜନେ
ସେ ରାଜା ବସିଲା ଲଜ୍ଜାପାଇ ସିଂହାସନେ ।
ତାର ଅପମାନ ଦେଖି ଆଉ ରାଜାଉଠି
ବୀରବାହୁ ବୋଲି ଅଟେ ତାର ନାମଗୋଟି ।
ସେ ବୋଇଲେ ଏତେ ରାଜାହେଲେ ଆସି ରୁଣ୍ଡ
ବିନ୍ଧି କେ ନପାରିଲେ ଏ ଛାର ଲାଖ ଖଣ୍ଡ ।
ଯେ ଯାହା ରାଜ୍ୟରେ ଥାଇ ହେଉଥାଅ ଟାଣି
ଏଠାକୁ ଆସିଣ ଏବେ ବୁଡ଼ାଇଲ ପାଣି ।
ସବୁରି ବଡ଼ପଣ ମୁଁ ଆଜ ରଖିବଇଁ
ଲାଖ ବିନ୍ଧିଣ କନ୍ୟାକୁ ବିଭା ହୋଇବଇଁ ।
ସେ କାଳେ ବୋଇଲା ଆଏ ବିନ୍ଧି କିନା ଲାଖ
ପଳାଇ ନ ଆସ ଏକା ହୋଇଣ ବିମୁଖ ।
ଏମନ୍ତ ଶୁଣି ସେ ରାଜା ଉଠି ଧାତିକାରେ
ହସ୍ତେ ପୁଚ୍ଛ ଧରୁ ଧରୁ ବାଜିଲା ଚକ୍ଷୁରେ ।
ମୃଗପୁଚ୍ଛ ବାଜି ଚକ୍ଷୁ ଗୋଟି ଗଲା ଫୁଟି
ମିଳିଲାକ ଫଳ ବୋଲି ଆସିଲା ଲେଉଟି ।
ଲଜ୍ଜା ସଙ୍କୋଚରେ ସେ ରାଜା ସଭାକୁ ନଗଲା
ଚକ୍ଷୁକୁ କରେ ଆଉଁଷି ରାଜ୍ୟେ ପଳାଇଲା ।

ଏଥୁ ଅନନ୍ତରେ ଆସି ହେଲା ସନ୍ଧ୍ୟାକାଳ
ଛଅ ଦ୍ୱୀପ ଲାଖବିନ୍ଧା ସରିଲା ଜଞ୍ଜାଳ ।
ଜମ୍ବୁଦ୍ୱୀପ ଲାଖବିନ୍ଧା ହେବ ଏବେ ଜାଣ
ବିପ୍ର ପୀତାମ୍ବର ଦାଶ ପଶିଲା ଶରଣ ।
ନୀଳଗିରି ନାଥ ମୋତେ କରିବେକ ଦୟା
ନୃସିଂହ ବିଭା ଲେଖିବି ହେବ ମୋକ୍ଷ କାୟା ।
ମେଢ଼ରୁ ବିଜେ କରିଣ ଗଲେ କମଳିନୀ
ସେବାରେ ଖଟି ଅଛନ୍ତି ଲକ୍ଷେ ବିଳାସିନୀ ।
ହୁଳହୁଳି ଶବ୍ଦେ ଉଛୁଳଇ ତିନିପୁର
ଶଙ୍ଖବୀଣା ବଇଁଶୀ ଯେ ବାଜେ ଅଗୋଚର ।
ନୀରବତୀମାତା କୋଳେ ଲକ୍ଷ୍ମୀଙ୍କି ଯେ ଧରି
ଅମୃତ ମଣୋହି ଲାଗି କରାଇଲେ ଶିରୀ ।
ଆଚମନ କରାଇଣ ଖଟେ ଶୁଆଇଲେ
ସଖିଗଣ ଆସି ମିଳି ଲକ୍ଷ୍ମୀଙ୍କୁ ସେବିଲେ ।
ସପ୍ତଦ୍ୱୀପ ରାଜାଙ୍କର ସରିଲା ମଣୋହି
ଯେ ଯାହାର ଆସନରେ ନିଦ୍ରାଗଲେ ଯାଇଁ ।
ରାତ୍ର ଅନ୍ତେ ରାଜାଗଣ ସ୍ନାନେ ବିଜେକଲେ
ଦେବାର୍ଚ୍ଚନ ବିଧିସାରି ଆସ୍ଥାନେ ବସିଲେ ।
ରାଜନୀତି ବିଧାନ ଯେ ଯାହା ମାର୍ଗେ ସାରି
ଧନୁତୀର କମାଣକୁ ଉଠି କରେ ଧରି ।
ବରୁଣ ବୋଇଲେ ଯେ ଲକ୍ଷ୍ମୀଙ୍କି ସଜକର
ବସନ୍ତୁ ମେଢ଼ରେ ଆସି ଦେଖନ୍ତୁ ନୃବର ।
ଆମ୍ଭ କଲା ସତ୍ୟ ସିନା ଆଜକ ଯେ ଅଛି
ହୁଅନ୍ତୁ ସକଳେ ମୋକ୍ଷ ଦେଖି କମଳାକ୍ଷୀ ।
ଶ୍ରୀଜଗନ୍ନାଥ ପହଣ୍ଡି ବିଜେକଲା ପ୍ରାୟେ
ଚାଲି ବଡ଼ଦାଣ୍ଡ ମେଢ଼େ ବିଜେକଲେ ମାଏ ।
ଶୁଣିଣ ହସନ୍ତି ଦେବୀ ରାଜା ଆଜ୍ଞା ପାଇ
ଲକ୍ଷ୍ମୀଙ୍କି ବେଶ କରିଣ ଦାଣ୍ଡରେ ଚଳାଇ ।
ସ୍ତିରୀଙ୍କ ଗହଣେ ଲକ୍ଷ୍ମୀ ଚାଲି ହ୍ୱନ୍ତେ ଉଭା
କୋଟିଏ ଚନ୍ଦ୍ରମା ପ୍ରାୟ ଦିଶେ ମୁଖପ୍ରଭା ।
ଲକ୍ଷ୍ମୀଙ୍କି ଦେଖିବା ପାଇଁ ସର୍ବେ ଚାହିଁଛନ୍ତି
କୋଟି ଆଦିତ୍ୟକୁ ଜିଣି ଦିଶେ ତେଜ କାନ୍ତି ।
ଶ୍ରୀଲକ୍ଷ୍ମୀଙ୍କ ପାଦପଦ୍ମୁ ବହେ ମକରନ୍ଦ
ପିବନ୍ତି ସକଳ ଜନେ ହୋଇ ଗଦଗଦ ।
ନେତ୍ର ପୁରାଇଣ ସର୍ବେ ଦେଖି ମୋକ୍ଷହୋନ୍ତି
ଦର୍ଶନେ କୀଟରୁ ବ୍ରହ୍ମଯାଏ ଗତିପାନ୍ତି ।
ରୋଗଗ୍ରସ୍ତ ଜନଙ୍କର କ୍ଳେଶ ଗଲା ତୁଟି
ଅନ୍ଧ ଲୋକଙ୍କର ଫିଟିଗଲା ବେନି ଦୃଷ୍ଟି ।

ପାପୀଲୋକଙ୍କର ପାପ ହୁହୁ ଗଲା ହୁଡ଼ି
ଦରିଦ୍ର ଲୋକଙ୍କ ଧନ ଉଚ୍ଛୁଳଇ ବଢ଼ି ।
ଦେଖି ଜଡ଼ାଲୋକମାନେ କହିଲେ ବଚନ
ବଧିର ଲୋକ କର୍ଣ୍ଣକୁ ଶୁଭିଲାକ ସ୍ୱନ ।
ବାତୁଳ ଲୋକମାନଙ୍କ ଭ୍ରମ ଗଲା ହୁଡ଼ି
ସନ୍ନିପାତ ମନ୍ଦୁଙ୍କର ଚଳିଗଲା ନାଡ଼ୀ ।
ଅଷ୍ଟବକ୍ରେ ସିଦ୍ଧହୋଇ ପାଇଲେ ଯେଶୋଭା
ଦରଶନ ପାଇ ବୃଦ୍ଧେ ହେଲେ ନବଯୁବା ।
ଯେତେ କୁବଜା ଜନ ସେ ପୁରେ ଜାଣ ଥିଲେ
ଲକ୍ଷ୍ମୀଙ୍କ ଦର୍ଶନ ପାଇ ସର୍ବେ ଉଜ ହେଲେ ।
କୁଷ୍ଟବ୍ୟାଧିଗ୍ରସ୍ତ ହୋଇଥିଲେ ଯେତେ ଜନ
ସେମାନେ ଦର୍ଶନ ପାଇହେଲେ ଶୋଭାବନ ।
ଆବର ବରୁଣ ପୁରେ ଗଲେ ଯେତେ ରୋଗୀ
ସମସ୍ତେ ଦର୍ଶନ ପାଇ ହେଲେ ରୋଗତ୍ୟାଗୀ ।
ସମସ୍ତେ ଚାହିଁଅଛନ୍ତି ହୋଇ ଏକଦୃଷ୍ଟି
କାହାର ନ ପଡ଼ଇ ଯେ ଆଖି ପିଛଡ଼ାଟି ।
ଅଠାଶୀ ସହସ୍ର ଋଷି ତାଳ ଧରି ବାଇ
କମଳାର ଚାରିପାଶେ ଯାନ୍ତି ଗୀତ ଗାଇ ।
ବ୍ରହ୍ମା ପୁଣି ଚାରିବେଦ ଚାରିମୁଖେ ପଢ଼ି
ଲକ୍ଷ୍ମୀର ପ୍ରଭା ଦେଖି ନଯାନ୍ତି ପାଶୁ ଛାଡ଼ି ।
ଶିବଙ୍କର ସହ ଗୋଡ଼ାଇ ଅଛନ୍ତି ଯେ ଶିବା
ହର ଦେଖନ୍ତି ପାର୍ବତୀଠାରେ ଲକ୍ଷ୍ମୀପ୍ରଭା ।
ବୋଲନ୍ତି ବ୍ରହ୍ମାଣ୍ଡେ ଶୋଭା ନାହିଁ ଏଡ଼େସ୍ତିରୀ
ନ ଜାଣିବା ଲୋକମାନେ ବୋଲୁଥାନ୍ତି ଟେରି
ଉମା ବୋଇଲେ ହେ ସ୍ୱାମୀ ଏ କଥାଟି ସତ
ଲକ୍ଷ୍ମୀଲାଗି ପୋଷି ହୋଇଥାଏ ଏ ଜଗତ ।
ଲକ୍ଷ୍ମୀଙ୍କର ଜ୍ୟୋତି ଲାଗି ସର୍ବ ସ୍ତିରୀଶୋଭା
ନଦିଶେ ଲକ୍ଷ୍ମୀ ନଥିଲା ସ୍ତିରୀ ମୁଖ ପ୍ରଭା ।
ଲକ୍ଷ୍ମୀଥିବା ସ୍ତିରୀଙ୍କର ସୁପ୍ରସନ୍ନ ମୁଖ
ଶୁଣି ମନେ ମନେ ହସି ଯାନ୍ତି ବିରୁପାକ୍ଷ ।
ଦେଖନ୍ତି ସମସ୍ତ ଲୋକ ଦାଣ୍ଡଯାକେ ଯାଇ
ନମନ୍ତି ଶ୍ରୀଲକ୍ଷ୍ମୀ ପାଦେ ବେନି ପାଦ ଧାୟି ।
ଶ୍ରୀମହାଲକ୍ଷ୍ମୀଙ୍କର ଶ୍ରୀମୁଖ ଦନ୍ତପନ୍ତି
ହସି ଚାହନ୍ତେ ସେ ପୂର୍ଣ୍ଣଚନ୍ଦ୍ର ଉଦେ ହୋନ୍ତି ।
ଚାଲନ୍ତେ କମଳାର ଶ୍ରୀନଖପନ୍ତି ଶୋଭା
କିରଣରେ ଦଶଦିଗ ଫୁଟି ଦିଶେ ଶୋଭା ।
ସର୍ବେ ଲକ୍ଷ୍ମୀଙ୍କି ଦେଖିଣ ଭକ୍ତିଭୋଳ ହୋଇ
ନମୁଛନ୍ତି ପାଦପଦ୍ମ ତଳେ ଶିର ଦେଇ ।

ଶ୍ରୀଲକ୍ଷ୍ମୀ ନୃସିଂହ ଯେଣୁ ଅଟନ୍ତି ସେ ଏକ
ତେଣୁ ଭଜନ୍ତି ଲକ୍ଷ୍ମୀଙ୍କ ପାଦେ ସୃଷ୍ଟିଯାକ ।
ଲୀଳାଗତି ହୋଇ ଚାଲୁଛନ୍ତି କମଳିନୀ
ଶ୍ରୀମୁଖକୁ ଦେଖି ମୋକ୍ଷ ହୁନ୍ତି ସର୍ବପ୍ରାଣୀ ।
ମେଢ଼ରେ ଯାଇଣ ବିଜେକଲେ ଲୋକମାତା
ସେବାରେ ଲାଗିଅଛନ୍ତି ଲକ୍ଷେକ ବନିତା ।
ଏଥୁଅନନ୍ତରେ ପୁଣି ଜମ୍ବୁଦ୍ୱୀପ ରାଜା
ଗଲେ ଲାଖ ବିନ୍ଧିବାକୁ ବଜାଇଣ ବାଜା ।
କାଞ୍ଚି ନଗ୍ରର କନକାମ୍ବର ନାମେ ରାୟେ
ଧନୁକରେ ଧରିଣ ସେ ଗଲା ଲାଖ ଯାଏ ।
ଆଡ଼ଚିରା ଗୋଟିଏକ ମାରି ତତକ୍ଷଣି
ତ୍ରିବିକ୍ରମ ପ୍ରାୟ ଉଭା ହେବା ଠିଆ ଠାଣି ।
ଧନୁରେ ଯୋଚି ନାରାଚଗୋଟି ଦ୍ୟନ୍ତେ ଛାଡ଼ି
ଲାଖେ ନ ବାଜି ସେ ଶର ଶୂନ୍ୟେ ଗଲା ଉଡ଼ି ।
ସେ ରାଜାର ଲାଖବିନ୍ଧା ବିଫଳ ଯେ ଦେଖି
ଉଠିଲେ ନୃପେକ ସଭାସ୍ଥାନକୁ ଉପେକ୍ଷି ।
ଗାର୍ଗବ ଦେଶର ରାଜା ଅଟେ ସୁରସେନ
ଧନୁରେ ଯୋଚିଣ ଶର କରେ ଅନୁମାନ ।
ବିଚାରଇ ପୁଚ୍ଛ ଆଗ ଧରିଣ ଝିଙ୍କିବି
ଥବିରେ ରହନ୍ତେ ମୃଗ ଶରକୁ ଛାଡ଼ିବି ।
ଏତେ ପାଞ୍ଚି ପୁଚ୍ଛକୁ ସେ ଧରୁ ବେନିଭୁଜେ
ବେଢ଼ାଏ ବୁଲି ପଡ଼ିଲା ରାଜା ତୁଳାଶେଯେ ।
ତାଦେଖି ହସନ୍ତି ନୃପେ ହୋଇ ଟହ ଟହ
ଭୈରବ ରାଜା ଉଠଇ କମ୍ପାଇଣ ଦେହ ।
ଉଦ୍ରସେନ ବୋଲି ନାମ ଅଟଇ ତାହାର
ବୋଇଲା କ୍ଷତ୍ରିୟ ନୁହଁ ତୁମ୍ଭେ ନୃପବର ।
କେହି ଅବା ପାରିବ କେ ନ ପାରିବ ବିନ୍ଧି
ତହିଁକି ହାସ୍ୟ କରୁଛ କେତେ ତୁମ୍ଭେ ବିନ୍ଧି ।
ଏତେ ବୋଲିଣ ସେ ରାଜା ଉଠି ତମ ହୃଦେ
ବିନ୍ଧନ୍ତେ ଶର ପଡ଼ିଲା ଯାଇ ମୃଗପାଦେ ।
ଶର ବାଜିବାର ଦେଖି ଜିଣିଲି ବୋଇଲା
ବିକ୍ରମ ବୀର ପରାଏ ସଭାରେ ବସିଲା ।
ବୋଇଲା ମୁହିଁ ଏକା ସେ ବିନ୍ଧିଲଇଁ ଲାଖ
ସକଳେ ବୋଇଲେ ଆଗ ଭଲକରି ଦେଖ ।
ମୃଗର ଶ୍ରବଣେ ବାଜି ନାହିଁ ତୁମ୍ଭ ଶର
ଏଡ଼େ ସଭାରେ ବୋଲୁଛ କନ୍ୟାମୋର ମୋର
ବରୁଣ କହିବା କଥା ଲାଖର ଯେ ମାର୍ଗ
ଏରୂପେ ବିନ୍ଧିଲେ କନ୍ୟା କରିବ ସେ ଭୋଗ ।

ଏ ମାର୍ଗେ ହୁଅନ୍ତି ସଭାଲୋକ କୁହାକୁହି
ଶୁଣି ନୃପତି ବସିଲେ ମନେ ଲଜ୍ଜା ପାଇ ।
ତହିଁ ଉତ୍ତାରୁ ମାଳୟ ଦେଶର ଯେ ରାୟେ
ମହୀକର୍ଣ୍ଣ ବୋଲିକରି ତାର ନାମ ହୋଏ ।
ରେ ରେକାର ଶବ୍ଦ କରି ଧାଇଁଲା ସଭାରୁ
ପଳାଇ ଆସିଲା ଲାଖ ଦେଖି ଖଣ୍ଡେ ଦୂରୁ ।
ତାହାର ଭାଜିବା ଦେଖି ଆଉ ରାଜା ଉଠି
ଚନ୍ଦ୍ରବେଶ ଦେଶର ସେ ଅଟଇ ରାଜାଟି ।
ଅନଙ୍ଗସେନ ବୋଲିଣ ସେ ରାଜାର ନାମ
ଲାଖକୁ ଦେଖିଣ ରାଜା କଲାକ ପ୍ରଣାମ ।
ସବୁରି ବିନ୍ଧିବା ଦେଖି ହୋଇ ମନେ ହୃଷ୍ଟ
ବୋଇଲେ ଏ ଲାଖଗୋଟି ଅଟେ ଗ୍ରହକୂଟ ।
ଏହାଙ୍କ ପ୍ରାୟ ବିନ୍ଧିବ ମୁହିଁ ଯେବେ ଯାଇ
ପଳାଇ ଯିବି ମୁଁ ସିନା ବ୍ୟର୍ଥେ ଲଜ୍ଜାପାଇ ।
ଏତେକ ପାଞ୍ଚି ସେ ରାଜା ମୃଗ ଆଉଁଷିଲା
ମୃଗର ଚରଣେ ନମି ମଞ୍ଚାରେ ବସିଲା ।
ତା ଆସିବା ଦେଖି ଉଠିଗଲା କାମେଶ୍ୱର
କୁଶନଗ୍ର ରାଜା ସେହୁ ଅଟେ ନୃପବର ।
ବୋଇଲା ଲାଖ ଛାର ନପାର କେହି ବିନ୍ଧି
ବିଭାହୋଇ କନ୍ୟା ଦେଖ ନେବି ମୁଁ ଅବଧି ।
ଏତେ ବୋଲିଣ ଉଠିଲା ରାଜା ନିଶମୋଡ଼ି
ପଟା ଉପରକୁ ଗଲା ଧନୁ ଧରି ଚଢ଼ି ।
ମୃଗର ପୁଚ୍ଛ ଧରନ୍ତେ ଯାଇ ବେନିଭୁଜେ
ବୁଲାଇହୋଇ ପଡ଼ିଲା ଯାଇ ତୁଳାଶେଯେ ।
ତାହାର ହାରିବା ଦେଖି ଯମନିକ ରାଜା
ଉଠିଲା ନିଶମୋଡ଼ିଣ କରିଣ ତରିଯା ।
ତାହାର ତରିଯା ଦେଖି ବୋଇଲେକ ଭଲ
ଭଲା ଯମନିକ ବୋଲି ଶବଦ ଶୁଭିଲା ।
ବରୁଣକୁ ଯମନିକ ବୋଇଲେ ବଚନ
ବୋଇଲେ କହ ଏବେ ଏ ଲାଖର ବିଧାନ ।
ବରୁଣ ବୋଇଲେ ତେବେ ଶୁଣ ମନଦେଇ
ଏ ଲାଖରେ ନବଗ୍ରହେ ଛନ୍ତି ମୃଗହୋଇ ।
ସ୍ତମ୍ଭ ଗୋଟି ପୋତାହୋଇଅଛି ଆଗେଦେଖ
ସ୍ତମ୍ଭର ଉପରେ ଚକ୍ର ବୁଲେ ଚାରିପାଖ ।
ତହିଁର ଉପରେ ମୃଗ ବୁଲେ ଅନ୍ତରାଳେ
ତାହାର ପୁଚ୍ଛ ବୁଲଇ ଦେଖ ବେନି ଡୋଳେ ।
ଚାରିଭୁଜ ନୋହିଲେ ଏ ଲାଖ ନୋହେ ଜିଣି
ଶୁଣିଣ ହସିଲା ଯମନିକ ମନେ ଗୁଣି ।

ବୋଇଲା ମନେବେ କେହି ନାହିଁ ଚତୁର୍ଭୁଜ
ଚାରିଭୁଜ ହେଲେ ସିନା ବିନ୍ଧିବ ନାରାଚ ।
ବିଷ୍ଣୁ ଏକା ଚତୁର୍ଭୁଜ ହୋଇ ଯେ ପାରନ୍ତି
ଆନ କେହୁ ହୋଇପାରେ ଚତୁର୍ଭୁଜ ମୂର୍ତ୍ତି ।
ଏଡ଼େ ବିଡ଼ମ୍ବନ କରି କିମ୍ପା ଲାଖ କଲୁ
ରାଜା ଲୋଚାଏ ବରିଣ ସନ୍ତାପେ ମାଇଲୁ ।
ବରୁଣ ବୋଇଲା ତେବେ ବରିଛି ମୁଁ ସତ୍ୟ
ତୁମ୍ଭେ ନ ପାରିଲ ବୋଲି ଛାଡ଼ିବି କି ବ୍ରତ ।
ତଥାପି ପ୍ରତିଜ୍ଞା କେଡ଼େ କଲଣି ଆପଣ
ବେଳେ ଏବେ ଲାଖ ଯାଇ ବିନ୍ଧିଆସ ପୁଣ ।
ଆବର ଯେ କହୁଥାଇ ଶୁଣ ଲାଖ କଥା
ଶକୁନି ବୁଝି ଧରିବ ଆହେ ମହାରଥା ।
ପଟା ଉପରେ ଆପଣ ଯେବେ ଚଢ଼ିଯିବ
ମୃଗ ବାମପାଦକୁ ଯେ ନାରାଚ ବିନ୍ଧିବ ।
ବାମପାଦେ ବାଜି ଦକ୍ଷକର୍ଣ୍ଣେ ଯିବ ଗଳି
ତେବେ ତୁମ୍ଭଙ୍କୁ ଏ କନ୍ୟା ଦେବି ସତ୍ୟପାଳି ।
ଏତେ ରାଜା ଆସି କାର୍ଯ୍ୟ ନ କଲେତ ସିଦ୍ଧି
ଆଜକ ଗଲେ ସରିବ ଲାଖବିନ୍ଧା ବିଧି ।
ବରୁଣଙ୍କ ମୁଖରୁ ସେ ଏ ବଚନ ଶୁଣି
ଉଠିଲାକ ଯମନିକ ଧନୁଗୁଣ ଟାଣି ।
ମନେ ପାଞ୍ଚିଲେ ମାନବ ରାଜ ଆମ୍ଭେ ସିନା
କାହିଁକି କ୍ଷତ୍ରିୟବୃତ୍ତି ଗୋଟି ଛାଡ଼ିବାନା ।
ବରୁଣ କହିଲେ ନୋହିଲେ ଯେ ଚାରିଭୁଜ
ନ ପାରିବେ ବିନ୍ଧି କେହି ପୃଥିବୀର ରାଜ ।
ପାରି ନପ ।ରି ବିନ୍ଧିବା ପରା ବେଳେ ଯାଇ
ରହିବା ବୃଥା କିମ୍ପାଇଁ କ୍ଷତ୍ରିକୁଳ ହୋଇ ।
ଏରୂପେ ପାଞ୍ଚି ମନରେ ରାଜା ଦେଲା ହୁଳ
ନାରାଚ ଯୋଚି ତିଆରି ତାକୁ ତତକ୍ଷଣାଳ ।
ବୋଇଲା ହେ ଶର ଫୋଡ଼ିଯିବ ମୃଗପାଦ
ବାମ ନୟନରେ ଗଳି ଦକ୍ଷକର୍ଣ୍ଣ ଭେଦ ।
ଦକ୍ଷିଣ କର୍ଣ୍ଣରେ ଗଳି ଲାଗିଥିବ ପୁଣି
ଦେଖି ଯେମ୍ଭେ ପ୍ରତେଯିବେ ସର୍ବ ନୃପମଣି ।
ଏରୂପେ ତିଆରି ପେଶନ୍ତେ ସେ କହି ଭେଦ
ପଡ଼ିଲା ସେ ଶର ଯାଇ ମୃଗ ବାମପାଦ ।
ବାମପାଦେ ବାଜି ଶର ଶୂନ୍ୟେ ଗଲା ଉଡ଼ି
ଦେଖି ଯମନିକ ରାଜା କହେ ନିଶମୋଡ଼ି ।
ବୋଇଲା ହେ ରାଜାମାନେ ଲାଖ ଏବେ ଦେଖ
ବରୁଣର ଆତଙ୍ଗ ମୁଁ ଫେଡ଼ିଲି ପ୍ରତ୍ୟକ୍ଷ ।

କନ୍ୟାଗୋଟି ବିଭା ମୋତେ କରିବେ ନାହିଁକି
ବରୁଣକୁ ସଭାମଧ୍ୟେ କହ ତୁମ୍ଭେ ଡାକି ।
ରାଜାଏ ବୋଇଲେ ତୁମ୍ଭେ କି ବାତୁଳ ଅଟ
ଲାଖକୁ ନ ବିନ୍ଧି କନ୍ୟା ନେବ ବୋଲି ରଟ ।
ନେତ୍ରରେ କର୍ଣ୍ଣରେ ଉଗୁଳିଲା ନାହିଁ ଶର
ମୃଗର ପାଦକୁ ସିନା ବିନ୍ଧିଛ ନୃପବର ।
ଶୁଣି ଯମନିକ ବସିଲାକ ହୋଇ ତୁନି
ଶୁଣ ହେ ନାରଦ କହନ୍ତି ଯେ ପଦ୍ମଯୋନି ।
ସପ୍ତଦ୍ୱୀପ ଯାକର ଏ ରୂପେ ରାଜାଯାକ
ଲାଖ ବିନ୍ଧିଣ ସକଳେ ହୁଅନ୍ତେ ବିମୁଖ ।
ତ୍ରିହୁତଦେଶ ସୁଜାଣେଶ୍ୱର ରାଜା ଜାଣ
ବିଚାରି କଥାଏ କହିଲା ସେ ସଭାରେଣ ।
ବୋଇଲା ଲାଖ ବିନ୍ଧି ନ ପାର ତୁମ୍ଭେ କେହି
ଦଇବୀ ଲାଖ ନିର୍ମାଣିଛନ୍ତି ଏହା ବିହି ।
କେବଳ ବିନ୍ଧିବେ ଏହି ଲାଖ ନରହରି
ମୃଗରୂପେ ନବଗ୍ରହ ଛନ୍ତି ଦେହ ଧରି ।
ମଙ୍ଗଳ ଶଶୀ ରବି ଯେ ବୁଧ ବୃହସ୍ପତି
ଶୁକ୍ର ଶନିଶ୍ଚର ରାହୁ କେତୁ ନବମୂର୍ତ୍ତି ।
ମୃଗରୂପ ଧରି ଏହୁ ହୋଇଛନ୍ତି ଲାଖ
କେବଳ ବିନ୍ଧିବେ ଏହି ଲାଖ ପଦ୍ମ ମୁଖ ।
ଆହେ ଜମ୍ବୁଦ୍ୱୀପ ରାଜା ସମସ୍ତେ ହେ ଶୁଣ
ଗ୍ରହକୂଟ ଲାଖ ଏହୁ ଅଟଇ ପ୍ରମାଣ ।
ଆମ୍ଭର କିଞ୍ଚିତ ଭାଗ୍ୟ ଥିବାରୁ ଯେ ମାତ୍ର
ଲକ୍ଷ୍ମୀଙ୍କି ଦର୍ଶନ କରି ହେଲୁହିଁ ପବିତ୍ର ।
ଆବର ବରୁଣପୁର ଦେଖିଲୁଁ ଯାହା
ଏକଥାଟି ବଡ଼ ଭାଗ୍ୟ ଜାଣ ନରନାହା ।
ଏବେ ଆସ ରାଜ୍ୟକୁ ହେ ଯିବା ଯେଝା ମତେ
ଏ ଲାଖକୁ ନମସ୍କାର କରିଣ ସମସ୍ତେ ।
ଶୁଣି ରାଜାଏ ବୋଇଲେ ଅଟଇ ଏ ସତ୍ୟ
ଏ ଲାଖ ବିନ୍ଧି କେହି ନପାରେ ରାଜାସୁତ ।
ତଥାପି ଆଜକ ସିନା ଅଛି ଲାଖବିନ୍ଧା
ଏହା ଯେ ବିନ୍ଧିବ ସେହୁ ଅଟେ ମହାଯୋଦ୍ଧା
ଆଜକ ଦେଖିବା ସର୍ବେ ରହି କଉତୁକ
କେଡ଼େ ଉତ୍ସବ ଦେଖିବା ରହିଲେ ଦିନକ ।
ଶୁଣିଣ ସମସ୍ତ ରାଜା ରହିଲେ ନିବର୍ତ୍ତି
ମଞ୍ଚା ଉପରେ ବସିଣ ଲାଖକୁ ଚାହାନ୍ତି ।
ଏଥୁଉତ୍ତାରେ ଯେ ବାଣୀ କହିବା ହେ ଶୁଣ
ଉଠିଲା ଯେ ମୁରାସୁର ସଭା ଚମକିଣ ।

ଅସୁରକୁଳର ରାଜା ଅଟେ ଦୈତ୍ୟମଣି
ହସିଲା ରାଜାମାନଙ୍କ ବିଚାର ଯେ ଶୁଣି ।
ବୋଇଲାକ ଭଲା ବିନ୍ଧି ଆସିଥିଲ ଲାଖ
ବୁଝିଲେ କେ ତୁମ୍ଭଠାରୁ ନାହିଁ ଅବିବେକ ।
ଷାଠିଏ ଲକ୍ଷ ଆସିଲ ସର୍ବ ନୃପରାଣ
ଗୋଟିଏ ହେଲେ ରହି ନଗଲ କେହି ପଣ ।
ସଭାରେ ବସି ଚାହିଁଣ ଆଖି ମିଟି ମିଟି
ନିନ୍ଦିବେ ଲୋକେ ତୁମ୍ଭଙ୍କୁ ଥିବାଯାକ ସୃଷ୍ଟି ।
ବୋଲିବେ କେତେ ଯେରାଜାଥିଲେ ରୁଣ୍ଡହୋଇ
ଜଣେ ହେଲେ ଲାଖ ବିନ୍ଧି ନପାରିଲେ କେହି ।
ମୁର୍ଦ୍ଦିନ ରାଜାମାନେ ତ ଆସିଛ ଏଠାକୁ
ଆଜକ ଦେଖ ବୋଲି ଯେ କହୁଛ ସଭାକୁ ।
ତୁମ୍ଭର ଏକଥା ଶୁଣି କମ୍ପୁଛି ମୋ ଦେହ
ଶୁଣି ଏ' ରାଜା ହସିଲେ ହୋଇ ଟହ ଟହ ।
ତୁନିହୋଇ ବୋଇଲେ ନ ବୁଝିବା କାହିଁକି
ତୁ ମଧ ଖାଇବୁ କଚଡ଼ାଏ ପୃଛ୍ଛ ଝିଙ୍କି ।
ଏରୂପେ କଥା ହୁଅନ୍ତି ସର୍ବେ ତୁନି ତୁନି
ମୁର ବୋଇଲା ହେଉଛ କିସ ଗୁଣି ଗୁଣି ।
ଆଦ୍ୟରେ ମୁଁ ଯେତେବେଳେ ଆସିଲଇଁ ଏଥି
ସେହି ଲାଗେ ଘେନି ଯାଇଥାନ୍ତି ଶୁଭ୍ରକେଶୀ ।
ବରୁଣ କଲା ସତ୍ୟକୁ ଅପସରି ଥିଲି
ସବୁରି ଲଜ୍ଜାକୁ ଚାହିଁ ଉଠିଣ ବସିଲି ।
ଦେଖ ମୋର କରାମତି କି କରୁଛି ଆଜ
ଏତେ କହି ଧନୁ ଟେକି ଧଇଲା ନାରାଚ ।
ବିଷ୍ଣୁରୂପ ପ୍ରାୟ ହୋଇ ଉଠିଲା ଆସ୍ଥାନୁ
ଶତେସିଂହର ବଳକୁ ଧରେ ତାର ତନୁ ।
ଆକର୍ଷି ଧନୁକୁ ଧରିଯାନ୍ତେ ଦୈତ୍ୟରାୟେ
ସ୍ୱର୍ଗପୁରେ ଚାହିଁ ଦେବେ କମ୍ପନ୍ତି ଯେ ଭୟେ ।
ଧନୁକୁ ଟଙ୍କାରେ ଗୁଣ ଦେଇ ମହାବଳୀ
ଟେକନ୍ତେ ଆକର୍ଷି ଗୁଣ କମ୍ପେ ମହୀସ୍ଥଳୀ ।
ରେରେକାର କରି ସଭା ମଧ୍ୟୁ ବାହାରନ୍ତେ
ଲାଖର ପାଶେ ମିଳିଲା ଯାଇ ମୁରଦୈତ୍ୟେ
ବୀରବେଶ ହୋଇ ଦୈତ୍ୟ ହସ୍ତେ ଧନୁଧରି
ମହାଲକ୍ଷ୍ମୀଙ୍କି ରହିଲା ଟିକେ ଅନୁସରି ।
ହୃଦେ ପାଞ୍ଚିଲା ପ୍ରତ୍ୟକ୍ଷେ ଏହି କମଳିନୀ
କମଳାର ସ୍ୱାମୀ ପରା ଅଟେ ଚକ୍ରପାଣୀ ।
ସେ ବିଷ୍ଣୁ ଚକ୍ରପାଣି ତ' ମୋତେ ଡରି ଡରି
ରହିଛି ଗୁପତେ ଲୁଚି ବଇକୁଣ୍ଠପୁରୀ ।

ତୋତେ ଆଣି ଏବେ ଧାତାମୋହହସ୍ତେ ଦେଲା
ନଜାଣି ସିନା ବରୁଣ ଗର୍ଜିହେଉ ଥିଲା ।
ବୁଝିଲେ ମଧ୍ୟପୁରେ ମୁଁ ଅଟେ ବିଷ୍ଣୁ ଏକା
ମୋତେ ନ ଡରି ଶ୍ରୀହରି ନ ଛାଡ଼ିଲ ଚକା ।
ବୈକୁଣ୍ଠପୁରରେ ଲୁଚି ଲୁଚି ରହିକି ସେ ହରି
ତୋତେ ଆଉ ଭୋଗ ସେ ନପାରେ କେବେ କରି
ମୁରର ଯେ ମନକଥା ମହାଲକ୍ଷ୍ମୀ ଜାଣି
ଅଳପ ହୋଇ ହସିଣ ପାଞ୍ଚେ କମଳିନୀ ।
ବୋଲନ୍ତି ଏ ଦୁଷ୍ଟ ପୁଣ ମଞ୍ଚେ ବିଷ୍ଣୁ ଅଟେ
କି ବୋଲି କହିଣ ମୋତେ କଥା ମାର୍ଗେ ଭୁଟେ ।
ସ୍ୱୟଂ ବ୍ରହ୍ମ ହରିଙ୍କି ଏ ନ ମାନିଲା ଯେବେ
ପରାଭବ ପାଇ ଏଥୁଁ ଯାଉଁ ଏ ଦାନବେ ।
ମେଢ଼ରେ ଥାଇଣ ଲକ୍ଷ୍ମୀ ଏରୂପେ ବୋଲନ୍ତେ
ସୁରାସୁର ଛେଚା ପାଇ ଯିବ ଲାଖଘାତେ ।
ଏଥୁଅନନ୍ତରେ ଲାଖବିନ୍ଧା କଥା ଶୁଣ
ଏରୂପେ ପ୍ରତିଜ୍ଞା କଲା ମୁରଦୈତ୍ୟ ପୁଣ ।
ବରୁଣକୁ ବୋଲେ କହ ଲାଖବିନ୍ଧା କଥା
ଶୁଣିଲେ ଫିଟିଯିବଟି ଆମ୍ଭ ମନବ୍ୟଥା ।
ଦେଖିଲାକ୍ଷଣି ଲକ୍ଷ୍ମୀକି ଯାଆନ୍ତି ମୁଁ ଘେନି
ଲାଖକୁ ନବିନ୍ଧି ନେଲେ ହେବ ଧର୍ମହାନି ।
ତଥାପି ତ କେତେ ରାଜା ଆଣିଛୁ ତୁ ବରି
ତେଣୁ ମୁଁ ହୋ ଆଜିଯାଏ ଥିଲି ଅପସରି ।
ପାଞ୍ଚିଲି ବରୁଣ ରାଜା କରିଅଛି ଲାଖ
ନ ବିନ୍ଧି କନ୍ୟାକୁ ନେଲେ ବୋଲିବେ ଯେ ମୂର୍ଖ ।
ଏ ସକାଶୁଁ ଲାଖବିନ୍ଧି ଯାଉଛି ହେ ରାୟେ
ତୋହର ସତ୍ୟ ମୁଁ ପାଳିଥିଲି ଆଜଯାଏ ।
ଶୁଣିଣ ସେ ସାଗର ମନ ମଧ୍ୟେ ଭାଳି
ବୋଇଲେ ଦୁଷ୍ଟ କିପରି ଯାଉ ଏଥୁ ଚଳି ।
ବୃହସ୍ପତିଙ୍କର ମୁଖୁଁ ଶୁଣିଛି ମୁଁ ପୂର୍ବେ
ବୋଇଲେ ଲାଖକୁ ଏକା ନୃସିଂହ ବିନ୍ଧିବେ ।
ବିଷ୍ଣୁଙ୍କ ବିନା ଲକ୍ଷ୍ମୀ ନପାରେ ଆନ ଛୁଇଁ
ଏ ଘେନି ମୋହରଭୟ କାହାକୁ ଯେ ନାହିଁ ।
ଏରୂପେ ମନରେ ପାଞ୍ଚି ସେ ବରୁଣ ରାଜା
ବୋଇଲେ ଶୀଘ୍ର ଉଠିଣ ଲାଖ ବିନ୍ଧି ଯାଯା ।
କେବଳ କଥାଏ ତୋତେ କହୁଛି ସ୍ୱରୂପ
ବିନ୍ଧି ନପାରିଲେ ଏକା ନକରିବୁ କୋପ ।
ପାରିଲେ ତ ଆଛା ହେଲା କନ୍ୟା ନେବୁ ମୋର
ବିନ୍ଧି ନପାରିଲେ ଏକା ରାଜ୍ୟେ ଯିବୁ ତୋର ।

ଶୁଣିକରି ମୁରାସୁର କହେ ମନେ ପାଞ୍ଚି
ବୋଇଲା ମୋର କଥା ତୋତେ ତ ଜଣାଅଛି ।
ପ୍ରତିଜ୍ଞା କଲେ ଉଚ୍ଛୁର ହୋଇବ ନା ସିନା
କହ ଏ ଲାଖର ରୀତି ଶୁଣି ବିନ୍ଧିବା ନା ।
ବରୁଣ ବୋଇଲେ ରାଜାଶୁଣ ଦୈତ୍ୟ ନାହା
ଲାଖର ଯେପରି ଗୁଣ ଯେ ରୂପେଟି ଯାହା ।
କହିବା ସେ ଦ୍ରବ୍ୟମାନଙ୍କର ନାମ ଶୁଣ
ସପ୍ତତାଳ ଉଚ୍ଚେ ସ୍ତମ୍ଭ ପୋତିଅଛି ଜାଣ ।
ସେ ସ୍ତମ୍ଭର ନାମଗୋଟି ଅଟେ ମଣିସ୍ତମ୍ଭ
ସ୍ତମ୍ଭେ ଯାହା ଅଛି ଶୁଣ ତାହା ବିଧିପୂର୍ବ ।
ପ୍ରତ୍ୟକ୍ଷେ ଚକ୍ରେକ ଅଛି ସ୍ତମ୍ଭପରେ ଆଗ
ପବନୁ କୋଟିଏ ଗୁଣେ ତାର ଚାଲି ବେଗ ।
ପବନାବର୍ତ୍ତକ ବୋଲି ଚକ୍ରନାମ କହି
ଚାରୋଟି ଚକ୍ର ସେ ଜାତକଲେ ଜାଣ ବିହି ।
ପବନାବଳୀ ଉତ୍ତାରେ ଆଉ ଚକ୍ର ଶୁଣ
ବହନ୍ତି ସୁରଦଶନ ଚକ୍ର ନାରାୟଣ ।
ଭ୍ରମନ୍ତି ସୂର୍ଯ୍ୟାବର୍ତ୍ତକ ଚକ୍ରେ ଦିନମଣି
ଏ ବେନିଚକ୍ର ସର୍ଜିଲେ ହସ୍ତେ କୁଶପାଣି ।
ସମସ୍ତ ଚକ୍ର ଉପରେ ସୁଦର୍ଶନ ଶ୍ରେଷ୍ଠ
କହିବା ହୋ ଏବେ ଶୁଣ ଲାଖବିନ୍ଧା ବାଟ ।
ଚକ୍ରର ଉପରେ ବସିଅଛି ଏକ ମୃଗ
ତାହାର ପୁଚ୍ଛ ଧରିଣ ବିନ୍ଧିବ ଯେ ଆଗ ।
ସେ ଶର ପଡ଼ିବ ଯାଇ ମୃଗ ବାମପାଦେ
ଦକ୍ଷିଣ କର୍ଣ୍ଣରେ ଗଳି ଆସି,ନେତ୍ର ମଧେ ।
ବାମନେତ୍ରେ ପଶି ଶର ରହିବ ଯେ ଲାଖି
ଏରୂପେ ବିନ୍ଧିଲେକନ୍ୟା ଦେବି ତାକୁ ଦେଖି ।
ବୁଝ ଆହେ ମୁରାସୁର ଲାଖର ଏ ଭାବ
ରାଜାଏ ନ ବିନ୍ଧି ଭାଜିଗଲେଣି ତ ସର୍ବ ।
ଶୁଣିକରି ମୁରାସୁର ହସିଲା ଅନେକ
ବୋଇଲେ କେଡ଼େ ଅଗମ୍ୟ କରିଛି ଏ ଲାଖ ।
ସ୍ତମ୍ଭ ଉପରେ ତୁ ଗୁଣ ଚକ୍ର ବସାଇଲୁ
ଚକ୍ର ଉପରେ ମୃଗେକ ନିର୍ମାଣ ଯେ କଲୁ ।
ବାମ ପାଦକୁ ବିନ୍ଧିବ ଯେବେ ଶର ସ୍ଥାପି
ଦକ୍ଷିଣ କର୍ଣ୍ଣକୁ କହ କେହ୍ନେ ଯିବ କ୍ଷେପି ।
କର୍ଣ୍ଣରୁ ଯାଇ ଭେଦିବ ଶୁଣି ବାମନେତ୍ର
ବିନ୍ଧି ପାରିବ ସଂସାରେ କେହୁ ଏଡ଼େ ଯନ୍ତ୍ର ।
ପାଦକୁ କର୍ଣ୍ଣ ଅଟଇ କେତେଦୂର ଛଡ଼ା
ତହିଁକି ଅଡୁଆ କଲୁ ନେତ୍ରେ ହେବ ଫୋଡ଼ା ।

ତଥାପି କିଏ ସେ ଅବା ବିନ୍ଧନ୍ତା ପାଦକୁ
ପାଦର ଶର ଯିବ ବା କିରୂପେ ନେତ୍ରକୁ ।
ଏତେ ଆଡ଼ବାଙ୍କରେ ବା ବିନ୍ଧିବ କେ ଶର
ମୋତେ ଯହିଁରେ ଲାଗୁଛି ଏହା ଅଗୋଚର ।
ବରୁଣ ବୋଲେ କହିବା ଶୁଣ ଦୈତ୍ୟରାଜ
ଏ ଲାଖକୁ କେବେ ସଞ୍ଚି ନପାରେ ମନୁଜ ।
ଦୁହିତା ମୋହର ଜାତ ହେଲା ଯେଉଁଦିନେ
ଏ ଲାଖକୁ ବୃହସ୍ପତି କହିଲେ ମୋ କର୍ଣ୍ଣେ ।
ବୋଇଲେ ଏ ଲାଖଯନ୍ତ୍ର ପାରିବ ଯେ ବିନ୍ଧି
ତେବେ ତା ହସ୍ତେଦୁହିତା ଗୋଟିଦେବୁ ବାନ୍ଧି ।
ତେଣୁ ଏଡ଼େ ସତ୍ୟ ମୁହିଁ କରିଛି ହେ ରାୟ
ତୁ ବିନ୍ଧି ପାରିଲେ ମୋର ହେଲା ସବୁ ଜୟ ।
ଶୁଣି ମୁରଦୈତ୍ୟ ମନମଧେ ଅଳ୍ପ ହସି
ବୋଇଲା ରାଜାଏ ଥାଅ ମଞ୍ଚାରେ ଯେ ବସି ।
ଝିଅକୁ ତୋହର ଜାଣ ନେବି ଯେତେବେଳେ
ପାଟ ମହାଦେଈ ପଦ ଦେବଇଁ ତତ୍‌କାଳେ ।
ତେତିଶକୋଟି ରାଣୀର ହେବ ଶିରୋମଣି
ଏ ମୋହର ସତବାକ୍ୟ ନୁହେଁ ମିଥ୍ୟା ପୁଣି ।
ସତରଲକ୍ଷ ପୁଅ ମୋ ନବଲକ୍ଷ ନାତି
ଏମାନେଟି ସେବା କରୁଥିବେ ଦିବାରାତି ।
ତୋହର ଏ ସତ୍ୟଘେନି ମୋର ଏଡ଼େ ସତ୍ୟ
ମୁଁ ମଧ କରିବି ଲକ୍ଷ୍ମୀ ସେବା ଅନୁବ୍ରତ ।
ଆସିଲା ଦିନୁ ଲକ୍ଷ୍ମୀଙ୍କୁ ଯାଆନ୍ତିଣି ଘେନି
ତୋହର ସତ୍ୟ ପ୍ରକାଶୁ ହୋଇଛି ମୁଁ ତିନି ।
ଏରୂପେ ଦୈତ୍ୟର ମୁଖୁ ଶୁଣିଣ ସାଗର
ଭାବିଲେ କିରୂପେ ଏଥୁ ଯିବ ଏ ଅସୁର ।
ଏହା ଛାରବଳେ ତ ନପାରେ ଲାଖ ବିନ୍ଧି
ଏଥକୁ ରକ୍ଷା କରିବେ ମୋତେ ଦୟାନିଧି ।
ସେ ପ୍ରଭୁ ବିନା କେହୁ ନପାରେ ଲକ୍ଷ୍ମୀନେଇ
ମାନ ମହିମା ରଖିବେ ମୋର ଭାବଗ୍ରାହୀ ।
ଏତେକ ପାଞ୍ଚି ବରୁଣ ମଞ୍ଚାରେ ବସିଲେ
ମୁରାସୁର ଲାଖବିନ୍ଧା ଶୁଣ ଏବେ ଭଲେ ।
ଧନୁ କରେ ଧରି ଗଲା ସେ ଅସୁରରାଜ
ସୈନ୍ୟଙ୍କୁ ବୋଇଲେ ବେଗେ ବଜାଅପଖାଉଜ ।
ବାଦ୍ୟନାଦ ଘାତରେ ଯେ ପୃଥ୍ୱୀ ଚମକାଅ
ଲାଖ ବିନ୍ଧି କନ୍ୟା ନେବା ହୁଳହୁଳି ଦିଅ ।
ରାଜୀ ଆଜ୍ଞା ପାଇ ସୈନ୍ୟ ବଜାଇଲେ ବାଦ୍ୟ
ଦମ ଦମ ଦୁଲୁ ଦୁଲୁ ଭୁ ଭୁ ଶଙ୍ଖନାଦ ।

ଢୋଲ ଟମକ ନିଶାଣ ବାଜେ ଘଡ଼ ଘଡ଼ି
କଡ଼ା ମର୍ଦ୍ଦଳ ବାଜଇ ହୋଇ ଯୋଡ଼ି ଯୋଡ଼ି ।
କଂସାଳ କମ କାହାଳି ଚାଞ୍ଚୁ ଏକପୁଡ଼ା
ଦୋପାଟିଆ ମହୁରୀ ଯେ ବାଜେ ଯୋଡ଼ା ଯୋଡ଼ା
ବଇଁଶୀ ନାରାଚ କାମବୀଣା ଶିଙ୍ଗାଧ୍ୱନି
ଏରୂପେ ବାଜନ୍ତେ ବାଦ୍ୟ କମ୍ପେ ପୁର ତିନି ।
ଦୁଲୁ ଦୁଲୁ ହୋଇ ପୃଥ୍ୱୀ କମ୍ପେ ତିନିପୁର
ଏହିରୂପେ ବୁଦ୍ଧି କରି ଗଲା ମୁରାସୁର ।
ମେଢ଼ର ଉପରେ ବସିଥିଲେ କମଳିନୀ
ପୁଚ୍ଛନ୍ତି ମୁର ପ୍ରତିଜ୍ଞା ଦେଖି ଠାକୁରାଣୀ ।
ହଂସିନୀକି ବୋଇଲେ ଲୋ ଶୁଣ ମୃଦୁସୁଲୀ
କାହିଁକି ଧାଇଁଛି ଏହୁ କରି ଏଡ଼େ ବୋଲି ।
ଲାଖ ବିନ୍ଧି କେତେ ରାଜା ଗଲେଣି ପଳାଇ
ଏହାର ପ୍ରାୟ ମୂର୍ଖ ତ ମୁହିଁ ଦେଖି ନାହିଁ ।
ହଂସିନୀ ବୋଇଲା ଶୁଣ ମାଗୋ ମହାଲକ୍ଷ୍ମୀ
ବଡ଼ ପ୍ରତାପୀ ଜନ ଏ ଅଛି ମଞ୍ଚେ ଜନ୍ମି
ମୁରଦୈତ୍ୟ ବୋଲିଣ ଏ ଅଟଇ ଦନୁଜ
କନକାବତୀ ନଗ୍ରରେ ଅଟେ ମହାରାଜ ।
ଲେଖାରେ ତେତିଶକୋଟି ଅଟଇ ଯୁବତୀ
ସତରଲକ୍ଷ କୁମାର ନବଲକ୍ଷ ନାତି ।
ଏହାର ପ୍ରତିଜ୍ଞା ସବୁ କହିବି ମୁଁ ଯେବେ
ଉଛୁର ହୋଇବକାଳ ଲାଖବିନ୍ଧା ଠାବେ ।
ତୁମ୍ଭେ ଅନ୍ତର୍ଯ୍ୟାମୀ ଗୋ ଅଟ ଠାକୁରାଣୀ
ବୁଝ ଏ ଦୈତ୍ୟର ଏବେ ଲାଖବିନ୍ଧା ବାଣୀ ।
ଶୁଣି ଦେବୀ କମଳିନୀ ଅଳ୍ପ ମନେ ହସି
ବୋଇଲେ ତେବେ କଚଡ଼ା ଖାଇବ ଏ ଦୋଷୀ
ଲାଖ ନ ବିନ୍ଧିଣ ଲଘି ହୋଇ ଏବେ ଯିବ
ଶ୍ରୀନୃସିଂହ ବିନୁ ମୋତେ ଆନ କେ ଛୁଇଁବ ।
ଲାଖବିନ୍ଧି ଏ ଚାଣ୍ଡାଳ ଏଠାରୁ ଗୋ ଯାଉ
ପିତା କଲା ସତ୍ୟ ମୋର ସଦାକାଳେ ଥାଉ ।
ଏରୂପେ କହି ସେ ଲକ୍ଷ୍ମୀ ହୁଅନ୍ତେ ଯେ ତୁନି
ଚଳିଗଲା ମୁରଦୈତ୍ୟ ଶର କରେ ଘେନି ।
ମନେ ପାଞ୍ଚିଲା ଏରୂପେ ଲାଖ ଅଛି କରି
କାହାକୁ ନୋହିବ ଦୃଶ୍ୟ ମୃଗ କରେ ଧରି ।
ପାଦକୁ ତା ନେଇ କର୍ଣ୍ଣପରେ ଦେବି ଲଦି
ସ୍ତମ୍ଭରେ ବାନ୍ଧି ଦେଇଣ ପକାଇବି ଛନ୍ଦି ।
ତହିଁ ଉତ୍ତାରେ ଏ ମୃଗପୁଚ୍ଛକୁ ଧରିବି
ମନ ଇଚ୍ଛାକରି ସୁଖେ ନାରାଚ ବିନ୍ଧିବି ।

ଦୈତ୍ୟର ମାୟା ତ ନାହିଁ କାହାରିକି ଜଣା
ଏ ଛାର ଲାଖ ମୋତେ କି ହେବ ଅକଳଣା ।
ସମସ୍ତେ ତ ଦେଖୁଥିବେ ପୁଚ୍ଛକୁ ଧରିବି
ସେ ମୃଗର ମାୟାକଥା ମୁହିଁ ଯେ ଜାଣିବି ।
ଏତେକ ପାଞ୍ଚି କୁହୁକ ବାଣ ଦେଲା ପେଷି
କୁହୁଡ଼ିମୟ ହୋଇଲା ଜଗତ ନ ଦିଶି ।
ବଦୟନ୍ତି ବେଦବ୍ରହ୍ମା ଶୁଣ ହେ ନାରଦ
ସତ୍ୟସ୍ଥାନେ ଅସତ୍ୟ ଯେ ପାଞ୍ଚିଲା ପ୍ରମାଦ ।
ଦୈତ୍ୟ ପାଞ୍ଚଯାକ ଜାଣିପାରି ନବଗ୍ରହ
ଯେ ଜନେକ ପ୍ରମାଣରେ ବଢ଼ାଇଲେ ଦେହ ।
କାୟା ବିସ୍ତାରି ଚକ୍ରକୁ ରହିଲେ ଆବୋରି
ପୁଚ୍ଛକୁ ଯେ କୋଟିହାତ ଦେଲେ ଲମ୍ବକରି ।
ଏଥୁଅନନ୍ତରେ ମୁର ଭୀମରୂପ ହୋଇ
ଚଢ଼ିଲା ପଟା ଉପରେ ଘୋରରଡ଼ି ଦେଇ ।
ମୃଗର ପୁଚ୍ଛ ଝିଙ୍କନ୍ତେ ଧରି ବେନିକରେ
ଅନ୍ତରାଳ ହୋଇ ଚକ୍ର ବୁଲିଲା ଶୂନ୍ୟରେ ।
ବିଚାର କରିଣ ମନେ ନବଗ୍ରହମାନେ
ହୁଦୁ ଅଷ୍ଟାଦଶ କରି କାଢ଼ିଲେ ଯତନେ ।
ରାଜ୍ୟକୁ ବୋଲି ତାହାର ଦେବାଫୋପଡ଼ାଇ
ପଡ଼ିଲାକ୍ଷଣି ଯାଉ ଏ ମୂର୍ଚ୍ଛାଗତ ହୋଇ ।
ସିଂହାଦ୍ୱାରେ ଯାଇ ଏକା ଫୋପଡ଼ାକେ ପଡୁ
ବିଷ୍ଣୁଙ୍କ ନିନ୍ଦିବା କଥା ଏହିଠାରୁ ଛାଡୁ ।
ଏତେ ପାଞ୍ଚି ଗ୍ରହମାନେ ମହାକୋପ କଲେ
ଶୂନ୍ୟରେ ଟେକି ଭୂମିରେ ତାକୁ କଚାଡ଼ିଲେ ।
ଛେଚା ଛେଚି କରି ଶୂନ୍ୟେ ଧଇଲେକ ଟେକି
ରାଜ୍ୟକୁ ତାହାର ଫିଙ୍ଗିଦେଲେ ଡାକିହାକି
ଉଡ଼ି ପଡ଼ିଲା ପବନଘାତେ ସିଂହଦ୍ୱାରେ
ସୈନ୍ୟ ହିଁ ଧାଇଁଲେ ତାର ସଙ୍ଗେ ଧାତିକାରେ
ସୁବିଜ୍ଞ ମନ୍ତ୍ରୀ ସହିତେ ସେନାପତି ମୂଳେ
ସମସ୍ତେ ଯାଇଁ ମିଳିଲେ ରାଜ୍ୟେ ତତକାଳେ ।
କାଙ୍କୋଳା ଯେ କାଳକେତୁ ସୁମିତ୍ର ସୌଦାସ
ରଣଚୂଡ଼ା ଚଣ୍ଡମାଳି ବିକୁକ୍ଷୀ ରାକ୍ଷସ ।
କୁକ୍ଷ ଶରଜିତ କଣ୍ଠ ବିକଣ୍ଠର ମୂଳେ
ରାଜା ଯାଆନ୍ତେ ପଳାଇ ଗଲେ ଅନ୍ତରାଳେ ।
ରଥ ଗଜ ଅଶ୍ୱ ଆଦି ପଦାତିଏ ମିଶି
ବସାଭଗ୍ନ ପକ୍ଷୀ ପ୍ରାୟ ଗଲେ ତହିଁ ପଶି ।
ମୁରାସୁର କଟକକୁ ବାରିନିଧି ପୁର
ପନ୍ଦର ସହସ୍ର ଯୁଣ ଅଟେ ପଥ ଦୂର ।

ପବନର ଘାତେ ଉଡ଼ି ପଡ଼ିଲେ ନିର୍ଘାତେ
ଗ୍ରହବିଶ୍ୱରୂପେ ତେଢି ବସି ମୃଗଗତେ ।
ମୃଗ ଫିଙ୍ଗନ୍ତେ କୁହୁଡ଼ି ପୁଣି ଗଲା ଭାଜି
ସିଂହଦ୍ୱାରେ ପଡ଼ିଲାକ ଦୈତ୍ୟ ଗଳଗାଜି ।
କିସ ଯେ ପଡ଼ିଲା ବୋଲି ଧାଇଁଗଲେ ଲୋକେ
ଆମ୍ଭରାଜାବୋଲି ଚିହ୍ନିଲେ ଯୋଥୋକେ ।
ସତର ଲକ୍ଷ କୁମର ନବଲକ୍ଷ ନାତି
ମିଳିଲେକ ଆସି ସର୍ବେ ରାଜା ଚଉକତି ।
ରାଣୀହଂସପୁରୁ ଯେ ମଦନାବତୀ ରାଣୀ
ଖବର ପାଇ ସେ ବାଳୀ ଧାଇଁଲା ସେକ୍ଷଣି ।
ସ୍ୱାମୀର ପାଶେ ଆସିଣ ମିଳିଲା ଆତଙ୍କେ
କି ହେଲା ଏ ବୋଲି ପାଞ୍ଚରାଣୀ ଯାଇବେଗେ
ଧୂଳି ଝାଡ଼ି ଦେଇ ତନୁ ଟେକି ବେନି ଭୁଜେ
ବସାଇଲେ ଆଉ ଜାଇ ନେଇ ହୃଦକଞ୍ଜେ ।
ଯତ୍ନେ ଫୁଙ୍କିବାରୁ କର୍ଣ୍ଣ ଦ୍ୱାରେ ମହାଦେଈ
ଉଠିଲା ସେ ମୂର ଦୈତ୍ୟତହୁଁ ଚେତାପାଇ ।
କିଏ କିସ ବୋଲି ରାଜ ହସ ହସ ହେଲା
କାଉଳି ନୁହ ଗୋବୋଲି ଧୈର୍ଯ୍ୟ କରାଇଲା ।
ଚାରିପାଶେ ଲୋକେ ଧରିଛନ୍ତି ଅସମ୍ଭାଳେ
ବିଞ୍ଚଣା ଗୋପୁଚ୍ଛ କେହି ଢାଳନ୍ତି କୋମଳେ
ସୁବାସ ଜଳେ ପଖାଳେ କେହି ବେନିପଦ
କେହୁ ଆଣି ବୋଳେ ଦେହେ ଚତୁଃସମଗନ୍ଧ ।
କୁଙ୍କୁମ କର୍ପୂର କେହୁ ଅଙ୍ଗେ ଲେପି ଦିଏ
ସାଷ୍ଟାମ ହୋଇ ବସିଲା ରାଜା ସିଂହ ପ୍ରାୟେ ।
ସୈନ୍ୟମାନଙ୍କୁ ଘେନିଣ ବିଜ୍ଞ ମନ୍ତ୍ରୀବର
ଅସୁର କାମରୂପୀଏ ମିଳିଲେ ତତ୍ପର ।
ଖବର ବାଟୁଁ ପାଇଣ ହୋଇ ପଥଶ୍ରମୀ
ରାଜାଙ୍କ ଛାମୁରେ ଆସି ହୋଇଣ ପ୍ରଣମି ।
ନୃପତି ବୋଇଲେ ଆହେ ବିଜ୍ଞ ମନ୍ତ୍ରୀ ଶୁଣ
ସମସ୍ତ ସୈନ୍ୟ ମୋହର ଆସିଲେ କି ପୁଣ ।
ମନ୍ତ୍ରୀ ବୋଇଲା ସମସ୍ତେ ଆମ୍ଭେ ଉଠି ପଡ଼ି
ତୁମ୍ଭଙ୍କୁ ଫିଙ୍ଗନ୍ତେ ଆମ୍ଭେ ଧାଇଁଛୁ ସେ ଲୋଡ଼ି
କାହିଁ ଯେ ପଡ଼ିଲେ ଆମ୍ଭ ରାଜା ବୋଲିକରି
ଖୋଜିଣ ତରସ୍ତେ ହୋଇ ଆସିଲୁ ବାହାରି ।
ତୁମ୍ଭଙ୍କୁ ଦେଖି ପଶିଲା ଏବେ ଆମ୍ଭ ପ୍ରାଣ
ନୋହିଲେ ହଜି ଯାଆନ୍ତା ସର୍ବ ବଡ଼ପଣ ।
ବାଟରୁ ଖବର ପାଇ ଧୈର୍ଯ୍ୟ ଧରି ସର୍ବେ
ତୁମ୍ଭ ଦର୍ଶନେ କୁଶଳ ହେଲୁ ଆମ୍ଭେ ଏବେ ।

ମନ୍ତ୍ରୀର ବଚନ ଶୁଣିକରି ଦୈତ୍ୟଶ୍ୱର
ପ୍ରତିଜ୍ଞା କହି ବସିଲା କେତେ ଯେ ତାହାର ।
ବୋଇଲା ସହସ୍ରେ ଥର ଛେଚିଲେ ଏପରି
ଗୋଟିଏ ଲୋମ ଯେ ବଙ୍କା ନୋହିବ ମୋହରି ।
ମେରୁ ପରେ ନେଇ କଚାଡ଼ିଲେ ଲକ୍ଷେଥର
ମୋହର ଯେ କିସ ହେବ ଶୁଣ ମନ୍ତ୍ରୀବର ।
ମୁହିଁ ପୁତ୍ର ଅବିଚାର କଥା ଯାହା କଲି
ଧର୍ମେ ନ ରହି ଅକର୍ମ କଥା ଆଚରିଲି ।
ସତ୍ୟରେ ବରୁଣ ରାଜା ପଣ ଥିଲା କରି
ସେ ସ୍ଥାନରେ କପଟ ମୁଁ କଲି ନ ବିଚାରି ।
ସେ କୂଟ କଥା କହୁଛି ତୁମ୍ଭେମାନେ ଶୁଣ
ସତ୍ୟେ ରତ୍ନାକର ଲାଖ ସ୍ଥାପିଥିଲା ଜାଣ ।
ମୁହିଁ ତା ସତ୍ୟକଥାକୁ ମନେ ଠେସିଦେଲି
ଚକ୍ରରେ ବସିଣ ମୃଗ ଧରିବି ବୋଇଲି ।
ମୃଗର ପାଦକୁ ନେଇ କର୍ଣ୍ଣେ ଦେବି ଲଦି
କନ୍ୟାକୁ ଘେନିଣ ଯିବି ଲାଖଗୋଟି ବିନ୍ଧି ।
ଏମନ୍ତେ ମନରେ ପାଞ୍ଚି ଯାନ୍ତେ ଲାଖ ପାଖେ
ପୁଚ୍ଛକୁ ଧରନ୍ତେ ଫିଙ୍ଗିଦେଲା ଅନ୍ତରୀକ୍ଷେ ।
ମୋ ପୁଣ୍ୟବଳରୁ ଆସି ରାଜ୍ୟରେ ପଡ଼ିଲି
ଆନ ରାଜ୍ୟେ ପଡ଼ି ମୁଁ ଯା ଲାଜ ନ ପାଇଲି ।
ମୋଠାରୁ ସଂସାରେ ନାହିଁ ଭାଗ୍ୟବନ୍ତ କେହି
ପଡ଼ିଲି ଘରେ ଭାରିଯା ମୁଖକୁ ହେ ଚାହିଁ ।
ଆବର ପୁତ୍ର ନାତିଏ ଅଛନ୍ତି ମୋ ପୁରୀ
ପଡ଼ିଲି ରାଜ୍ୟେ ଆରୋଗ୍ୟ ହୋଇ ଆସିକରି ।
ପତିର ମୁଖୁଁ ମଦନାବତୀ ରାଣୀ ଶୁଣି
ସ୍ୱାମୀର ଓଷ୍ଠ ଧରିଣ କହେ ଯୋଡ଼ି ପାଣି ।
ବୋଇଲା ଭୋ ସ୍ୱାମୀ ଏଡ଼େ ନାଗର କିମ୍ପାଇଁ
ଭାରିଯା ଥାଉ କାହିଁକି ଗଲ ଆଉ ଧାଇଁ ।
ତୁମ୍ଭର ରସିକପଣ ତୁମ୍ଭଙ୍କୁ ତ ସାଜେ
ଏକଥା ଶୁଣିଲେ ଲୋକେ କି ବୋଲିବେ ରାଜ୍ୟେ
ଯାହାକୁ ତେତିଶ କୋଟି ରାଣୀ ନ ଅଣ୍ଟଇ
ନିତି ସେ ପାକାସ୍ୱରଶ ସ୍ତିରୀ ରମୁଥାଇ ।
କାହିଁକି ଏତେ ସୁଲଭ ଭୋଗ ଛାଡ଼ିକରି
ଧାଇଁଗଲ ସମୁଦ୍ରକୁ ଆଣିବାକୁ ସ୍ତିରୀ ।
ଲାଖରେ ଏବେ ନିନ୍ଦିବେ କେତେ କେତେ ରାଜା
କିମ୍ପା କରିବେ ତୁମ୍ଭକୁ ଆଉ ପାଦପୂଜା ।
ନୃସିଂହ ପ୍ରଭୁ ପତ୍ନୀକି କିମ୍ପା ଗଲ ଆଣି
ପ୍ରତ୍ୟକ୍ଷେ କମଳା ସେହୁ ବିଷ୍ଣୁ ପାଟରାଣୀ ।

ବୁଝିଲେ ସଂସାରେ ସ୍ତିରୀ ପୁଂସ ଏକ ଜାଣ
ନ ବୁଝିଣ ଭୁଲୁଥାନ୍ତି ଅପଣ୍ଡିତ ଜନ ।
କହୁଛି ଏଥକୁ ଉପଲକ୍ଷ୍ୟ ପଦେ ଶୁଣ
ମନକୁ ତ ନ ପାଇଲେ କହିବ ଯେ ପୁଣ ।
ନବାତପଣାରୁ ଢାଳେ ଥୋଇ ବେଗେ ଆଣି ।
ତହିଁର ପାଖେ ରଖିବ ଗୁଡ଼ପଣା ଆଣି ।
ଭିନ୍ନ ଭିନ୍ନ କରି ପିଇଦେଇ ଦୁଇ ପଣା
କିରୂପେ ଲାଗିବ ସ୍ୱାମୀ ତାହା ମୋତେ ଜଣା ।
ଖାଇଲେ ଯେବେ ଲାଗିବ ଦୁଇ ପଣା ଏକ
ସେ ରୂପେ ନୁହନ୍ତିଟିକି ସର୍ବ ସ୍ତିରୀଯାକ ।
ବୁଝିଲେ ବ୍ରହ୍ମାଣ୍ଡଯାକ ସ୍ତିରୀ ଅଟେ ଏକ
ନ ଜାଣି ସଂସାରେ ବୁଲୁଥାନ୍ତି ଅବିବେକ ।
ବୁଝିଲେ ସ୍ତିରୀକୁଳକୁ ଅଟେ ଏକା ରସ
ସେ କଥା ଚିନ୍ତି ଏକା ପାରନ୍ତି ସୁପୁରୁଷ ।
ମୁରାସୁର ବୋଇଲା ଗୋ ଶୁଣ ମହାଦେଈ
ତହିଁକି କହିବା ପଦେ ଲକ୍ଷ୍ୟ ବୁଝି ତୁହି ।
ଭ୍ରମର ପ୍ରାୟେ ପୁରୁଷମାନଙ୍କର ମନ
ଦିନକରେ ଲକ୍ଷେ ପୁଷ୍ପ ଚୁମ୍ବନ୍ତି ବୁଲିଣ ।
ଯେହ୍ନେ ଯଥା ବହୁ ପୁଷ୍ପ ତୁମ୍ଭେ ଦିବସକେ
ପୁରୁଷମାନେ ତହିଁରୁ ବଳନ୍ତି ଅଧିକେ ।
ଦେଖିଲେ ଯୁବା ସ୍ତିରୀଙ୍କି ମୋହିତ ହୁଅନ୍ତି
ମନ ଉଚ୍ଚାଟନ କରି ନେତ୍ରେ ଚାହୁଁଥାନ୍ତି ।
ଆମ୍ଭ କ୍ଷତ୍ରୀଗଣ ତୁମ୍ଭେ ନ ଜାଣ କି ରାଣୀ
ରହିପାରୁଁ ଆମ୍ଭେ କି ଅପୂର୍ବ କଥା ଶୁଣି ।
ଯେଉଁ ଲକ୍ଷ୍ମୀ ରହିଅଛି ବରୁଣ ପୁରରେ
ବ୍ରହ୍ମା ହେଲେ ମୋହଯିବ ତାର ଦର୍ଶନରେ ।
ତାହା ଶୁଣି ମହାଦେଈ ହସିଲା ଅଧିକି
ବୋଇଲା ଛେଚାଏ ଖାଇ ଆସିଲ କାହିଁକି ।
ପରସ୍ତିରୀକି ଦେଖିଣ ଲଘୁ ସିନା ହେଲ
ଏକଥା ତୁମ୍ଭର ମୋତେ ନ ଲାଗିଲା ଭଲ ।
ବୁଝ ମହାଲକ୍ଷ୍ମୀ ସେହୁ ଅଟେ ଲୋକମାତା
ମାତାଙ୍କୁ ଲାଖ ବିନ୍ଧିଣ ନେବ କା ଯୋଗ୍ୟତା ।
ସେ ମାତା ଦୁଷ୍ଟ ଲୋକର ଗାରିମା ଭାଙ୍ଗଇ
ଏ କଥା ନ ବୁଝିକରି ଗଲ କାହିଁପାଇଁ ।
ପୂର୍ବକାଳେ ମେରୁକୁ ଯେ ତୁମ୍ଭେ ଉପାଡ଼ିଲ
ଶୁକ୍ରଗୁରୁ ବୋଧନ୍ତେ ଲେଉଟି ରଖିଦେଲ ।
ମେରୁ ଟାଳିବାକୁ କେହୁ ସଂସାରରେ ଅଛି
ଏଡ଼େ ବଳିଷ୍ଠ ହୋଇଣ ନବୁଝିଲ କିଛି ।

ରୀଖକୁ ବିନ୍ଧି ଯାଇଣ କଚଡ଼ାଏ ଖାଇ
ଆପଣ ପଡ଼ିଲ ଏତେଦୂରେ ମୋହଯାଇ ।
ସେ ମହାଲକ୍ଷ୍ମୀକି ଏବେ ଚିହ୍ନିଲ ନାହିଁକି
ସାନକୁ ବଡ଼କରେ ସେ ବଡ଼େ କରେ ରଙ୍କି ।
ଜଗତ ଜନନୀ ସେହୁ ଭୃଗୁରଷି ଜେମା
ମୂର୍ଖଲୋକର ସେ ମାତା ଭାଙ୍ଗନ୍ତି ଗାରିମା ।
ମହାଲକ୍ଷ୍ମୀ ପରି କେହୁ ସଂସାରରେ ହେବ
ତାହାର ସ୍ୱାମୀ ଅଟନ୍ତି ପ୍ରଭୁ ବାସୁଦେବ ।
ତାହା ଶୁଣି ମୁରାସୁର ମନେ ଲଜ୍ଜା ପାଇ
କଥାରେ ହାରନ୍ତେ ରହିଲା ଯେ ତୁନିହୋଇ ।
ଏଥିଉତ୍ତାରେ ରାଣୀକି ମୁର ସଙ୍ଗେ ଘେନି
ଭିତରପୁରେ ମିଳିଲେ ଯାଇ ପତି ପତ୍ନୀ ।
ସତର ଲକ୍ଷ କୁମର ନବ ଲକ୍ଷ ନାତି
ସବୁଙ୍କୁ ସଙ୍ଗେ ଘେନିଣ ସେ ମଦନାବତୀ ।
ସକଳ ସେନାପତି ସୁବିଜ୍ଞ ମନ୍ତ୍ରୀ ଆଦି
ସମସ୍ତେ ହେଁ ଚଳିଗଲେ ରାଜାପାଦ ବନ୍ଦି ।
ଭିତରପୁରେ ଯାଇଣ ସ୍ନାନବିଧି କଲେ
ସନ୍ଧ୍ୟା ତର୍ପଣ ସାରିଣ ଦେବାର୍ଚ୍ଚନେ ଗଲେ ।
ଶିବ ଆଳୟକୁ ଯାଇ ଶିବେ କଲେ ପୂଜା
ଭଜନ ତପ କରି ମଣୋହି କଲେ ରାଜା ।
ପରକ୍ଷେ ମଦନାବତୀ ସ୍ୱାମୀ ମନ ଜାଣି
ଶାଳିଅନ୍ନ ତିନିଶତ ତିଉଣ ଯେ ଆଣି ।
ବାର ବର୍ଣ୍ଣରେ ଯେ ପିଠାବାଢ଼ି ଆଗେଥୋଇ
ଦେଖି ମୁର ତାହା ମନେ ଆନନ୍ଦ ହୁଅଇ ।
ସପ୍ତ ପ୍ରକାରେ ଭଜା ସେ କରି ପ୍ରତି ପ୍ରତି
ପୁଳି ନାଡ଼ି ମନୋହର ଅପମାଲୁ କାନ୍ତି ।
ଖଣ୍ଡଗଜା ପରେ କର୍ପୂରର ଗୁଣ୍ଡ ସିଞ୍ଚି
ଶିଙ୍ଗଡ଼ା ଖାଇଲେ ଲବଣୀ ଯେ ମେଞ୍ଚି ମେଞ୍ଚି
ନବାତ ଯେ ସାଚିପଣା ଆଦି ଦୁଧ ସର
ପରଷଇ ମହାଦେଈ ଭୁଞ୍ଜେ ମୁରାସୁର ।
ଭୋଜନ ବିଧି ସାରିଣ ଆଚମନ କଲା
ଶ୍ରୀମୁଖ ପ୍ରଖାଳି ରତ୍ନ ପୀଢ଼ାରେ ବସିଲା ।
ପାନଗୁଆ ଭୁଞ୍ଜି ରତ୍ନ କଠାଉରେ ଚଢ଼ି
ବସିଲା ସଭାରେ ଆସି ସ୍ୱର୍ଣ୍ଣ ପୀଢ଼ାମାଡ଼ି ।
ସତର ଲକ୍ଷ କୁମର ନବଲକ୍ଷ ନାତି
ବୀରବେଶ ହୋଇଣ ଛାମୁରେ ବସିଛନ୍ତି ।
ସୁବିଜ୍ଞ ମନ୍ତ୍ରୀ ସହିତେ ସେନାପତି ଯେତେ
ରାଜାଙ୍କ ଛାମୁରେ ଆସି ମିଳିଲେ ସମସ୍ତେ ।

ମୁର ବୋଲେ ହେ ସୁବିଜ୍ଞ ମନ୍ତ୍ରୀ ଏବେ ଶୁଣ
ସେନାପତିଏ ଅଛନ୍ତି ମୋର ପାରୁଶେଣ ।
ବରୁଣ ପୁରକୁ ଯାଇ ଭାଜି ଆସିଲଇଁ
ଲାଖ କେ ବିନ୍ଧିଲା ତାହା ଗୋଚର ନୁହଇ ।
ଆମ୍ଭର ଚାର ଗୋଟିଏ ବେଗେ ଏବେ ପେଶ
ଏ କଥା ବୁଝିଣ ସେହୁ କହୁ ଆମ୍ଭ ପାଶ ।
ସୁବିଜ୍ଞ ମନ୍ତ୍ରୀ ଜଣାଏ ମନେ ହସି ହସି
ବୋଇଲା ମୁଁ ଅଶୀଳକୁ ରଖିଅଛି ଆସି ।
ସରିଲେ ଯେ ଲାଖ ବିନ୍ଧା ସେ ଚଳି ଆସିବ
ଆପଣଙ୍କଠାରେ ସବୁ ତକ୍ରାଳେ କହିବ ।
ଶୁଣି ମୁର ମନ୍ତ୍ରୀଠାରେ ବହୁ ସ୍ତୁତି କଲା
ଧନ୍ୟ ମନ୍ତ୍ରୀ ବୋଲି ମୁଖେ ବହୁ ପ୍ରଶଂସିଲା ।
ବୋଇଲାକ ମନକଥା ତୁ ଯେ ମୋର ଜାଣୁ
ଗତ ଆଗତର ବାଣୀ ସକଳ ପ୍ରମାଣୁ ।
ତୋହର ପରା ସୁବିଜ୍ଞ ସଂସାରେ କେ ନାହିଁ
ଭୂତ ଭବିଷ୍ୟତ ବର୍ତ୍ତମାନ ପାରୁ କହି ।
ଏତେ ବୋଲି ରାଜା ବଡ଼ ଗଉରବ କଲା
ଖେଳିବାକୁ ପଶା ଘେନି ସଙ୍ଗରେ ବସିଲା ।
ଶୁଣ ହେ ନାରଦ କହନ୍ତି ଯେ ଚଉମଥା
ବରୁଣ ରାଜା ପୁରର ଲାଖବିନ୍ଧା କଥା ।
ମୁରାସୁରକୁ ଯେ ମୃଗ ଫିଙ୍ଗିଲା ଯେ କାଳେ
ସବୁ ରାଜାମାନେ ବସି ଚାହୁଁଥିଲେ ଡୋଳେ ।
ଚିହ୍ନବର୍ଣ୍ଣ ବେନି ତାର ନ ଦେଖିଲେ କେହି
କାହିଁଗଲା ଦୈତ୍ୟବୋଲି ହୋନ୍ତି କୁହାକୁହି
ଗଲା ଗଲା ରାବ ବୋଲି ଶୁଭନ୍ତେ ଗହଳ
ସଭାରେ ଥାଇ ଚାହାଁନ୍ତି ସର୍ବ ମହୀପାଳ ।
କେ ବୋଲଇ ଗଲା ଗଲା ଲାଖବିନ୍ଧା ଗଲା
କେ ବୋଲଇ ଫିଙ୍ଗା ଘାତେ କାହିଁ ପଡ଼ିମଲା
କେ ବୋଲେ ବିନ୍ଧିଲା ବେଳେ ଶୁଭିଲାକ ରଡ଼ି
କେ ବୋଲଇ କାହିଁଗଲା ଅନ୍ତରୀକ୍ଷେ ଉଡ଼ି ।
ବ୍ରହ୍ମା ବିଷ୍ଣୁ ଶିବ ଥିଲେ ମଞ୍ଚାରେ ଯେ ବସି
ସେ ମଧ୍ୟ ବୋଇଲେ ଗଲା ଗଲା ମନେ ହସି ।
ଦଶ ଦିଗପାଳ ସଭା ମଧ୍ୟେ ବସିଥିଲେ
ସେହି ମଧ୍ୟ ଗଲା ଗଲା ବୋଲି ରାବ ଦେଲେ ।
ଦେଖଣାହାରୀ ସେଠାରେ ବସିଥିଲେ ଯେତେ ।
ଗଲା ଗଲା ବୋଇଲେ ତ ସେମାନେ ସମସ୍ତେ ।
ଅଠାଶୀ ସହସ୍ର ଯାଏ ଥିଲେ ଯେତେ ଋଷି
ସେମାନେ ବୋଇଲେ ଗଲା ଗଲା ମନେ ହସି ।

ବ୍ରାହ୍ମଣ ଗୋସାଇଁ ଯେତେ ସେ ସଭାରେ ଥିଲେ
ସେମାନେ ଗଲା ବୋଲିଣ ଆଶୀର୍ବାଦ କଲେ ।
ସ୍ୱର୍ଗ ଅପସରୀମାନେ ଥିଲେ ଯେତେ ମିଳି
ସେମାନେ ଯେ ଗଲା ବୋଲିଦେଲେ ହୁଳହୁଳି
ମେଢ଼ର ଉପରେ ଚାହିଁଥିଲେ ମହାଲକ୍ଷ୍ମୀ
ଗଲା ଗଲା ବୋଲି ହୃଷ୍ଟ ହେଲେ ପରଂବ୍ରହ୍ମୀ ।
ଜଳର ଭିତରେ ଯେତେ ଜଳଜନ୍ତୁ ଥିଲେ
ସେ ମଧ୍ୟ ଗଲା ବୋଲିଣ ଉଚ୍ଚେ ରାବଦେଲେ ।
ସବୁରି ମୁଖରୁ ଗଲା ଧ୍ୱନିମାନ ଶୁଣି
ବରୁଣ ପୁଚ୍ଛନ୍ତି ତାଙ୍କୁ ନିବର୍ତ୍ତାଇ ବାଣୀ ।
ବୋଲନ୍ତି କେ ଗଲା ବୋଲି ବୋଲି ସର୍ବେ ଗଲା
ମୁର ଦଇତ ଗଲା କି କହ ମୋତେ ଭଲା ।
ବଡ଼ ମାୟାବୀ ଅସୁରେ ଅଟନ୍ତି ଯେ ଜାଣ
ମେଢ଼ରୁ ଲକ୍ଷ୍ମୀକି ଆଉ ନେଲା କି ମୋ ପୁଣ ।
ଶୁଣିଣ ବରୁଣ ମନ୍ତ୍ରୀ ବେଗେ ଗଲା ଧାଇଁ
ମହାଲକ୍ଷ୍ମୀଙ୍କି ଦେଖିଣ ଆସେ ଶୀଘ୍ର ହୋଇ ।
ବୋଇଲା ଶୁଣ ଭୋ ସ୍ୱାମୀ ଦେବ ରତ୍ନାକର
ଦେଖିଲି ଲକ୍ଷ୍ମୀଙ୍କି ବସି ଅଛନ୍ତି ତୁମ୍ଭର ।
ମେଢ଼େବିଜେ କରିଛନ୍ତି ସ୍ୱୟଂ କମଳିନୀ
ବାଜୁଅଛି ଚାରିପାଖେ ବାଦ୍ୟ ବୀଣା ବାଣୀ
ଚାମର ଆଲଟ ପଡ଼େ ତାଙ୍କ ଚଉକତି
ଦେବସ୍ତିରୀମାନେ ଆସି କରୁଛନ୍ତି ସ୍ତୁତି ।
ଆବର ଶୁଣିଲି କଥା ଏକ ଜାଣ ମୁହିଁ
ଲାଖବିନ୍ଧାଠାରୁ ମୁରାସୁର ଗଲା କାହିଁ ।
ଏହା ଶୁଣି ରତ୍ନାକର ତାକୁ ଶ୍ରଦ୍ଧା କଲେ
ଅର୍ଘ୍ୟଥାଳୀ ଘେନିଣ ସଭାକୁ ବିଜେ କଲେ ।
ବୋଇଲେ ରାଜାମାନେ କହିବା ତୁମ୍ଭେ ଶୁଣ
ଯେ ବିନ୍ଧି ପାରିବ କନ୍ୟା ଦେବି ତାକୁ ଜାଣ ।
ସତ୍ୟ ସତ୍ୟ ତ୍ରିବାର ଏ ମୋର ସତ୍ୟବାଣୀ
ଯେ ବିନ୍ଧିବ ଲାଖ ସେହୁ ନେବ କମଳିନୀ ।
ଶୁଣି ସେ ରାଜାମାନେ ଯୋଡ଼ିଲେ କରପତ୍ର
ବୋଇଲେକ ଶୁଣ ଆହେ କଶ୍ୟପଙ୍କ ପୁତ୍ର ।
ତୁମ୍ଭେ ଦେବରାଜ ଆମ୍ଭେମାନେ ନରଅଂଶୀ
ତେଣୁ ଲାଖ ବିନ୍ଧ କେହୁ ନ ପାରୁ ଭରସି ।
ତହିଁରେ ଅଟଇ ମୁରଦୈତ୍ୟେ ତେଡ଼େରାଜା
ମେରୁ ଟେକିବା ସମର୍ଥ ଅଛି ଯାର ମଜା ।
ତେଣୁ କରି ଲାଖଠାରୁ ଗଲା ସେହୁ ଉଡ଼ି
ଜୀଇଛି କି ମରିଛି ସେ କେଉଁଠାରେ ପଡ଼ି ।

ତା ଦେଖି ଆମ୍ଭର ଦେଖ ଥରୁଅଛି ପିଣ୍ଡ
ଏ ଲାଖ ବିନ୍ଧି କେ ଆଉ ନ ପାରେ ବ୍ରହ୍ମାଣ୍ଡ ।
କେବଳ ହୃଦରେ ଆମ୍ଭେ ପାଞ୍ଚୁଛୁ ଏତିକି
ତୁମ୍ଭଙ୍କୁ ଦେଖିଲୁଁ ଭାଗ୍ୟେ ମିଳିଲା ତେତିକି ।
ଆପଣଙ୍କ ନଗ୍ର ଦେଖି ନଥିଲୁ ସ୍ୱପନେ
ପ୍ରତ୍ୟକ୍ଷେ ଏବେ ଆସିଣ ଦେଖିଲୁ ନୟନେ ।
ଶ୍ରୀମହାଲକ୍ଷ୍ମୀ ଦର୍ଶନ ପାଇଲୁଟି ଯାହା
ଏ ବଡ଼ ପୁଣ୍ୟ ଲଭିଲୁଁ ଆମ୍ଭେ ସର୍ବଦେହା ।
ଆବର ଯେ ବ୍ରହ୍ମା ବିଷ୍ଣୁ ଶିବ ଦେବଋଷି
ଏହାଙ୍କୁ ଦେଖିଣ ମୋକ୍ଷ ହେଲୁ ସର୍ବେ ଆସି ।
କୋଟି ଲକ୍ଷ ସୁବେଦୀ ଯେ ବିପ୍ର ପଦ୍ମପାଦେ
ଦରଶନ କଲୁ ଆସି ତୁମ୍ଭ ପରସାଦେ ।
ଏହୁ ଲାଖ ବିନ୍ଧିବାକୁ ନୁହଇ କେ ଯୋଗ୍ୟ
ନରଲୋକ ହୋଇ ଛୁଇଁବ କି ଲକ୍ଷ୍ମୀଅଙ୍ଗ ।
ବୁଝିଲେ ସେ ଲାଖ ଏକା ବିଷ୍ଣୁ ବ୍ୟତିରେକେ
ଆନ ଛାର ଛୁଇଁ କେହି ନ ପାରେତ୍ରିଲୋକେ ।
ଶୁଣି ରତ୍ନାକର ରାଜା ଗଲେ ତହୁଁ ଘୁଞ୍ଚି
ମନ ବିଡୁଥିଲେ ସିନା ସମସ୍ତଙ୍କୁ ପୁଚ୍ଛି ।
ବ୍ରାହ୍ମଣଙ୍କ ସଭାମଧ୍ୟେ ମିଳିଲେକ ଯାଇଁ
ବୋଇଲେ ଗୋସାଇଁମାନେ ଶୁଣ ମନଦେଇ ।
ପାରିଲେ କେ ଲାଖ ବିନ୍ଧିବାକୁ ବିଜେକର
ଯେ ଲାଖ ବିନ୍ଧିବ ତାକୁ କନ୍ୟା ଦେବିମୋର ।
ବ୍ରାହ୍ମଣ କ୍ଷତ୍ରିୟ ବୈଶ୍ୟ ଶୂଦ୍ର ଜାତି ଯେତେ
ଯେ ଲାଖ ବିନ୍ଧିବ ତାକୁ କନ୍ୟାଦେବି ସତ୍ୟେ ।
ଏତେକ ବୋଲି ବରୁଣ କହନ୍ତେ ଯେ ଶାସ୍ତ୍ରେ
ଶୁଣି କହନ୍ତି ସଭାରୁ ଉଠି କ୍ଷମ ମିଶ୍ରେ ।
ବୋଇଲେ ଶୁଣ କଶ୍ୟପ ଋଷିଙ୍କର ସୂନୁ
ଗଡୁ ତମ୍ବାପାତ୍ରୀ ଆମ୍ଭ ଅଟେ ବଡ଼ ଧନୁ ।
କଲ୍ୟାଣ ଯେ ଆଶୀର୍ବାଦ ଅଟେ ଆମ୍ଭ ଶର
ଏ ଶର ପେଷିଣ ଆମ୍ଭେ ଜିଣୁ ତିନିପୁର ।
ବ୍ରାହ୍ମଣଙ୍କ ଆଶୀର୍ବାଦ କଲ୍ୟାଣଟି ମୂଳ
ଲାଖକୁ ବିନ୍ଧି କେହୁ ନ ପାରୁ ବିପ୍ରକୁଳ ।
ଦେଖୁଛୁତ କ୍ଷତ୍ରୀକୁଳ ରହିଲେଣି ଘୁଞ୍ଚି
ବୈଶ୍ୟକୁଳରେ କି ଆଉ କେଉଁ ଲୋକଅଛି ।
ଆବର ଅଛନ୍ତି ଶୂଦ୍ରକୁଳେ ଯେତେ ବସି
ମିଟିମିଟି ଚାହୁଁଛନ୍ତି ନ ପାରି ଭରସି ।
ଗ୍ରହକୂଟ ଲାଖକୁ ନପାରେ କେହୁ ବିନ୍ଧି
ବ୍ରାହ୍ମଣ ମଧ୍ୟ ତହିଁକି ହାରିବେ ଅବଧି ।

ଆବର ଅଛନ୍ତି ଅଠାଅଶୀ ସସ୍ର ଋଷି
ଏମାନେ କି ଲାଖବିନ୍ଧି ନେବେ ଶୁଭ୍ରକେଶୀ ।
ଏହି କଥା ମନକୁ ତ କେଭେ ନ ଯୋଗାଇ
କେବଳ ଲକ୍ଷ୍ମୀଙ୍କି ନେଲେ କମଳାଙ୍କ ସାଇଁ ।
ଶୁଣିଣ ଆନନ୍ଦ ମନ ହୋଇଲା ଜଳଧି
ବୋଇଲା କହିଲେ କ୍ଷମମିଶ୍ରେ କଥାସିଦ୍ଧି ।
ନୋହିଲା ଏ ବିପ୍ରପୁଳ ସଂସାରେ କି ଶ୍ରେଷ୍ଠ
କେଡ଼େ କୋମଳ କହିଣ ମନ କଲେ ହୃଷ୍ଟ ।
ଉମାକାନ୍ତଙ୍କୁ ପୁଚ୍ଛିବ ଏବେ ପରା ଯାଇ
ଲକ୍ଷ୍ମୀଙ୍କର ଜନ୍ମକାଳେ ଆସିଥିଲେ ସେହି ।
ସେ କଥାଗୋଟି ବା ପ୍ରଭୁ ମନେ ରଖିଥିବେ
ଲାଖକୁ ବିନ୍ଧିବେ ପରା ବୁଝିବି ତା ଏବେ ।
ଏମନ୍ତ ମନେ ପାଞ୍ଚିଣ ଶିବ ପାଶେ ଯାଇ
ନମିଲେ ବରୁଣ ରାଜା ପାଦେ ଅର୍ଘ୍ୟ ହେଇ ।
ବୋଇଲେ ଶୁଣ ହେ ସ୍ୱାମୀ ଜଣାଉଛି ଏବେ
ମହାଲକ୍ଷ୍ମୀଙ୍କର ଜନ୍ମ ଜଣାଅଛି ପୂର୍ବେ ।
ଶ୍ରୀହରିଙ୍କ ତୁଲେ ମିଶି ଆସିଲ ଯେ କାଳେ
ରାଣୀଆଗେ ବସି କନ୍ୟା ମାଗିଲେଯେ ଭୋଳେ ।
ତୁମ୍ଭଙ୍କୁ ସେ ଦୁହିତା ନ ଦେଲେ ପରା ରାଣୀ
ଲୁଚାଇ ରଖିଲେ କୁଞ୍ଚି କିଳି କମଳିନୀ ।
ସେତେବେଳେ ତୁମ୍ଭଙ୍କୁ ମୁଁ କହିଥିଲି ବୋଧି
ଲକ୍ଷ୍ମୀନେବ ସ୍ୱାମୀ ପାରିଲେଟି ଲାଖବିନ୍ଧି ।
ଏବେ ତ ଆପଣ ଯାଇ ଲାଖ ବେଗେ ବିନ୍ଧ
କମଳାଙ୍କୁ ବିଭା ହୋଇ ନିଅ ସଦାନନ୍ଦ ।
ବରୁଣର କଥା ଶୁଣି ହସିଲେ ସୁଢ଼ଳ
ବୋଇଲେ କଥାରେ ଯେ ଜିଣିଲ ମହୀପାଳ ।
ଆମ୍ଭ ମହିମା ତୁମ୍ଭଙ୍କୁ ଏବେ ଶୁଣାଇବା
ବ୍ରହ୍ମା ବିଷ୍ଣୁ ହର ଜାଣ ପୁଣ ଏକଦେବା ।
ଏକାହୋଇ ମୁଁ ଯେ ତିନି ନାମେ ଆମ୍ଭେଖେଳୁ
ତ୍ରିଗୁଣ ନାମକୁ ବହି ଏ ସଂସାର ପାଳୁ ।
ଏକ ମୂର୍ତ୍ତି ଆମ୍ଭେ ତିନିଗୁଣ ଅଛୁ ବହି
ବ୍ରହ୍ମା ବିଷ୍ଣୁ ମହେଶ୍ୱର ନାମମାନ ବହି ।
ବିରଞ୍ଚି ଭବ ବିଷ୍ଣୁ ଏ ତିନି ଆମ୍ଭେ ସରି
ସତ୍ତ୍ୱ ରଜ ତମ ହୋଇ ପାଳୁ ବସୁନ୍ଧରୀ
ଏ ତିନି ମୂରତିଙ୍କର ନାମମାନ ପୁଣି
ସେ କଥା କହିବା ଥାଅ ବରୁଣ ହେ ଶୁଣି ।
ଅନ୍ୟ ସ୍ତିରୀ ଭୋଗ ଏହୁ ନକରନ୍ତି କେବେ
ସେ ତିନି ମୂର୍ତ୍ତିଙ୍କ ନାମ କହିବା ହୋ ଏବେ ।

ବିଷ୍ଣୁର ଭାରିଯା ନାମ ଅଟେ କମଳିନୀ
ଈଶ୍ୱରଙ୍କ ଭାର୍ଯ୍ୟା ନାମ ଉମା ଠାକୁରାଣୀ ।
ବ୍ରହ୍ମାଙ୍କ ଭାରିଯା ଅଟେ କେବଳ ସାବିତ୍ରୀ
ଅଟନ୍ତି ଲକ୍ଷ୍ମୀଅଂଶ ଏ ତିନି ପଦ୍ମନେତ୍ରୀ ।
ଏହାଙ୍କ ବିନା ଆମ୍ଭେ ଯେ ଅନ୍ୟ ନାରୀ ଅଙ୍ଗ
କଦାଚିତେ ନଛୁଇଁଣ ଅଛୁଁ ଯୁଗ ଯୁଗ ।
ତଥାପି ବିନ୍ଧିବା କନ୍ୟାଲୋଭେ ଆମ୍ଭେ ଯାଇ
ପାର୍ବତୀ ମନ୍ଦିରେ ମୋତେ ନ ଦେବ ପୁରାଇ ।
ଏରୂପେ କହନ୍ତି ବରୁଣକୁ ବ୍ୟୋମକେଶ
ଶୁଣି ବରୁଣ ମିଳିଲେ ଯାଇ ବ୍ରହ୍ମାପାଶ ।
ପିତାଙ୍କ ପାଦ ନମିଲେ ଶୁତି ପାୟେ ପଡ଼ି
ଉଠି ଉଭା ହୋଇ କହନ୍ତି ଯେ କରଯୋଡ଼ି ।
ବୋଲନ୍ତି ଶୁଣ ଭୋ ସ୍ୱାମୀ ଦେବ ପିତାମହ
ଲକ୍ଷ୍ମୀଙ୍କର କଥା ମୋତେ ଲାଗିଲା ସନ୍ଦେହ ।
ବୃହସ୍ପତିଙ୍କ ବଚନେ ଲାଖ କଲି ସିଦ୍ଧି
ସେ ଲାଖକୁ ଆସି କେହି ନ ପାରିଲେ ବିନ୍ଧି ।
ଆଜ ଭୋଗକଲେ ସରୁଅଛି ଲାଖ କଥା
ଏଥକୁ କହିବା ବୁଦ୍ଧି ମୋତେ ଚଉମଥା ।
ବ୍ରହ୍ମା ବୋଇଲେ ଏବେ ନଭାଳ ତୋର ମନେ
ଲାଖକୁ ବିନ୍ଧି ଏ କନ୍ୟା ନେବେ ଜନାର୍ଦ୍ଦନେ ।
ଶ୍ରୀମହାଲକ୍ଷ୍ମୀଙ୍କି ଆନ ଛାର ଛୁଇଁବ କି
ସବୁରି ଜନନୀ ସାର ଅଟେ ପୃଥିବୀକି ।
ତୁହିତ ଜାଣୁ ସେ ମୁର ଅଟେ କେଡ଼େ ଯୋଧୀ
ମହାଲକ୍ଷ୍ମୀ ପ୍ରତିଜ୍ଞାକୁ ନପାରିଲା ବିନ୍ଧି ।
ଆବର ଲୋକଯାକୁ କି ଘେନି ବଡ଼କରି
କେବଳ ସେ ଲାଖ ଏକା ବିନ୍ଧିରେ ଶ୍ରୀହରି ।
ନୃସିଂହ ପ୍ରଭୁଙ୍କୁ ବେଳେଜଣାଇ ତୁ ଆସ
ଏ ଲାଖ ନିଶ୍ଚେ ବିନ୍ଧିବେ ଜାଣ ଜଗଦୀଶ ।
ଦେଖୁଅଛ ସକଳେ ତ ହାରି ରହିଲେଣି
ବୁଝିଲେ ତ ବିପ୍ରକୁଳେ ଛନ୍ତି ବିଷ୍ଣୁ ଜନ୍ମି ।
ବଦ୍ରିକା ନଗରେ ରାଜା ଅଟନ୍ତି ନୃସିଂହ
ତାହାଙ୍କୁ ଜଣାଇବାରେ ଉଚିତ ତୋ ଆଗ ।
କୃଷ୍ଣବଲ୍ଲଭର ବୀର୍ଯ୍ୟେ ଛନ୍ତି ବିଷ୍ଣୁ ଜନ୍ମି
ସୂର୍ଯ୍ୟବଂଶେ ରାଜା ସେହୁ ଅଟେ ମହାଜ୍ଞାନୀ ।
ନରଲୋକ ବୀର୍ଯ୍ୟେ କେବେ ହୁଅନ୍ତେ କି ଜାତ
ତେଣୁ ତ ମହାସଂଶୟ ଲାଗିଲା ମୋ ଚିତ୍ତ ।
ବ୍ରହ୍ମା ବୋଇଲେ କହିବା ଶୁଣ ତେବେ ତାହା
ଯହୁଁ ସେ କୃଷ୍ଣବଲ୍ଲଭ ପ୍ରକାଶିଲେ ଦେହା ।

ବହୁଳେ କହନ୍ତି ଅବା ଆଉ ନାହିଁ କାଳ
ଉଛୁର ହୋଇଣ ଯିବ ଲାଖ ବିନ୍ଧା ବେଳ ।
କହିବା କୃଷ୍ଣବଲ୍ଲଭ କଥା ଥୋକେ ଶୁଣ
ବ୍ରହ୍ମା ଗାୟତ୍ରୀର ହୃଦୁ ଜାତ ଯେମନ୍ତେଣ ।
ଯେବଣ ଗାୟତ୍ରୀ ଅଟେ ଚୌଷଠି ଅକ୍ଷର
ବିପ୍ରଙ୍କ ଭଜନ ଅଟେ ସେହୁ ମୁକ୍ତିଦ୍ୱାର ।
ଏରୂପେ ବେଦର ଗର୍ଭୁ ଗାୟତ୍ରୀ ଜନ୍ମନ୍ତେ
ସତ ଏହିବେଦ ବୋଲି ପାଞ୍ଚିଲେ ହୃଦ୍ ଗତେ ।
ଶ୍ରୀବ୍ରହ୍ମଗାୟତ୍ରୀ ବାକ୍ୟ ଶରାଗ୍ରତେ ଧରି
ବେଦ ହୃଦପଦ୍ମରୁ ଯେ ତତ୍ତ୍ୱ ଜାତ କରି ।
ସେ ତତ୍ତ୍ୱ ପୁରୁଷ କଥା ଶୁଣ ରତ୍ନାକର
ବେଦକୁ ବୋଇଲେ ବିଷ୍ଣୁକର ଅକାତର ।
ବିଷ୍ଣୁଜନ୍ମ ନୋହିଲେ ଏ ସଂସାର ଯେ ନୋହିଁ
ତହିଁକି ଉପାୟ ଦେବ କର ବେଗେ ତୁହି ।
ଏମନ୍ତ ବୋଲି ସେ ବ୍ରହ୍ମଗାୟତ୍ରୀ ଜଣାନ୍ତେ
ସତ୍ୟ ଏହୁବେଦ ବୋଲିପାଞ୍ଚିଲେ ହୃଦ୍‌ଗତେ ।
ଶ୍ରୀବ୍ରହ୍ମଗାୟତ୍ରୀ ବାକ୍ୟ ହୃଦପଦ୍ମେ ଧରି
ବେଦରୁ ତତ୍ତ୍ୱକୁ ଜାତକଲେ ରୂପ କରି ।
ସେଠାରୁ ସଂସାରେ ନାନାରୂପ ଜାତହେଲେ
ପୃଥ୍ୱୀ ଆପ ତେଜ ବାୟୁ ସଂସାରେ ଜନ୍ମିଲେ ।
ଚନ୍ଦ୍ର ସୂର୍ଯ୍ୟ ଅଗ୍ନି ଆଦି ଯେତେ ଜ୍ୟୋତିରୂପ
ଏରୂପେ ସେ ବେଦତତ୍ତ୍ୱ ହେଲେ ଅସଂକ୍ଷେପ ।
ଏରୂପେ ବେଦର ତତ୍ତ୍ୱ ହେଲା ନାନାଗତି
ଏଗତି ପ୍ରକାର କଥା କେହି ନ ଜାଣନ୍ତି ।
ଏହିରୂପେ ବେଦଗର୍ଭୁ ତତ୍ତ୍ୱ ଜାତ ହେଲା
ବେଦୁଁ ଜାତ ହୋଇ ସେହୁ ବେଦସ୍ତୁତିକଲା ।
ବୋଇଲାହୋ ବେଦମୋତେ କିମ୍ପାକଲୁ ଜାତ
ତୋ ତତ୍ତ୍ୱ କଥାକୁ ଏକା ଜାଣନ୍ତି ପଣ୍ଡିତ ।
ତୋହର ଶରୀରୁ ସର୍ବ ଶରୀର ଉତ୍ପତ୍ତି
ଏହିରୂପେ ବେଦ ତୁହି ହେଲୁ ନାନାଗତି ।
ବେଦର ହୃଦୁ ସକଳେ ହେଲେ ଯେଣୁ ଜାତ
ତେଣୁ ସେ ସକଳ ଆତ୍ମା ବୋଇଲେ ତତ୍ତ୍ୱ ।
ତତ୍ତ୍ୱ ସେ ଆତ୍ମା ବୋଲିଣ ସର୍ବଘଟେ ଅଛି
ନିଜେ ସେ ଦୁହିତା ମାତା ସେହି ବୋଲାଉଛି ।
ଦେଢୁତା ଖୁଡୁତା ଆଦି ଆଉ ଅଜା ନାତି
ମାତୁଳ ଭାଇ ଭଗିନୀ ଭିଣୋଇ ବୋଲାନ୍ତି ।
ପଡସୀ ଜେଠେଇ ଖୁଡ଼ୀ ମାଉସୀ ଆଦି ଏ
ଏମନ୍ତ ଯେ ଏକଆତ୍ମା ଭିନ୍ନ ନାମ ବହେ ।

ଏଣୁ ବିଦ୍ୱଜ୍ଜନମାନେ ବେଦକୁ ଦେହକୁ
ନ ଘେନନ୍ତି ଭିନ୍ନ କରି ସମସ୍ତ ଆତ୍ମାକୁ ।
ଏଣୁ ସେ ବେଦର ତତ୍ତ୍ୱ ସର୍ବଘଟେ କ୍ଷିତି
କାହିଁକି ନା ବେଦ ମତେ ପ୍ରକାଶିଲୁଁ କ୍ଷିତି ।
ଏରୂପେ କହିଲି ତତ୍ତ୍ୱ ଜାଣ ତୁ ଦେବାକୁ
ଶୁଣ ଏବେ ବେଦମାନ କହିବା ତୁମ୍ଭଙ୍କୁ ।
ଚାରିଗୋଟି ବେଦ ଜାଣ ଜନ୍ମ ବେଦଗର୍ଭୁ
ତେଣୁ ଚାରିଜନ୍ମେ ଆମ୍ଭେ ବିଷ୍ଣୁ ପ୍ରାୟ ହେବୁ ।
ଆଦ୍ୟରେ କୃଷ୍ଣବଲ୍ଲଭ ତଦନ୍ତେ କଶ୍ୟପ
ତୃତୀୟରେ ଦଶରଥ ଶେଷ ବସୁଦେବ ।
ଏରୂପେ ନାମ ବହିଣ ବିଷ୍ଣୁ ପିତାହେବ
ଚାରିଜନ୍ମ ଅନ୍ତେ ଯାଇ ବେଦ ସମ୍ଭାଇବ ।
ଏବେ ଜନ୍ମିଲୁ ବେଦୁଁ ତୋ ନାମ ବେଦତତ୍ତ୍ୱ
ବିଷ୍ଣୁ ପିତା ହେବୁ ବୋଲି କଲୁ ଆମ୍ଭେ ଜାତ ।
ସୂର୍ଯ୍ୟବଂଶେ ସୁବେଦୀ ଯେ ବିପ୍ର ତାରବୀର୍ଯ୍ୟେ
କୃଷ୍ଣବଲ୍ଲଭ ନାମରେ ଜାତ ଦେବକାର୍ଯ୍ୟେ ।
ତତ୍ତ୍ୱ ଏହି ବେଦବାକ୍ୟ ଶୁଣିବା ମାତ୍ରକେ
ପ୍ରବେଶ ହୋଇଲେ ଯାଇ ସୁବେଦୀର ପାଖେ ।
ସୁବେଦୀ ରାଜା ରାଣୀର ଏକସଙ୍ଗ କାଳେ
ବୀର୍ଯ୍ୟେ ନିର୍ମଳ ଖସିଲା ତହିଁ ଅନ୍ତରାଳେ ।
କୃଷ୍ଣବଲ୍ଲଭ ନାମେ ସେ ହେଲା ଅବତାର
ଶୁଣ ବରୁଣ କହନ୍ତି ତାଙ୍କୁ ବେଦବର ।
ବିଷ୍ଣୁଙ୍କ ଜନ୍ମ ନିମନ୍ତେ ବେଦମାନ ପାଞ୍ଚି
କୃଷ୍ଣବଲ୍ଲଭଙ୍କୁ ମଞ୍ଚେ ଆଣିଲେକ ସଞ୍ଚି ।
ବେଦରୁ ସମ୍ଭୁତ କୃଷ୍ଣବଲ୍ଲଭ ଏ ଜାଣ
ଶୁଣି ମନରୁ ସଂଶୟ ଛାଡ଼ିଲେ ବରୁଣ ।
କୃଷ୍ଣବଲ୍ଲଭକୁ ଘେନିଗଲେ ବଡ଼ କରି
ବ୍ରହ୍ମାଙ୍କ ପାଦରେ ନମି ଗଲେ ଅର୍ଘ୍ୟଧରି ।
ନୃସିଂହ ପାଦରେ ଢାଳି କଲେ ନମସ୍କାର
ପାଦେ ପଡ଼ି କୃତକୃତ୍ୟ ହେଲେ ରତ୍ନାକର ।
ଦେଖିଲେ ପ୍ରଭୁଙ୍କ ଦେହେ ଚିହ୍ନ ଅଷ୍ଟାଦଶ
ଶଙ୍ଖ ଚକ୍ର ଗଦା ପଦ୍ମ ଶ୍ରୀବତ୍ସ ବିଶେଷ ।
ଆବର ଚିହ୍ନମାନଙ୍କୁ ଦେଖି ଭିନ୍ନ ଭିନ୍ନ
ପାଶ ଅଙ୍କୁଶ ଗୋଷ୍ପଦ ତେଣୁ ଜମ୍ବୁ ଚିହ୍ନ ।
କୋଦଣ୍ଡ କଳସ ଧ୍ୱଜ ଶାରଙ୍ଗ ମୂଷଳ
ଖଡ଼ଗ ବ୍ରଜ ଶାୟକ ଆବର ଲଙ୍ଗଳ ।
ଏରୂପେ ନୃସିଂହ ତେଜ ଦେଖି ରତ୍ନାବର
ବୋଇଲେ କାହିଁକି ଲାଖ କଲି ଅଗୋଚର ।

ଏରୂପେ ପ୍ରଭୁ ସଂସାର ମଧ୍ୟେ ଥାଉଁ ଥାଉଁ
ନ ଜାଣିମା ପଣେ ଗଞ୍ଜି ହେଲି କହୁଁ କହୁଁ ।
ଆଦ୍ୟରୁ ନିମନ୍ତି କିମ୍ପା କଲି ନାହିଁ ବିଭା
କାହିଁକି ଗଞ୍ଜି ହୋଇଣ କଲି ଏଡ଼େ ସଭା ।
ପ୍ରଥମୁଁ ହରିଙ୍କି ଯେବେ ବିଭା କରିଥାନ୍ତି
ଏତେ ଲୋଚାଏ ରାଜା ମୁଁ କିମ୍ପା ନିମନ୍ତନ୍ତି ।
ଏତେ ଲୋଚାଏ ରାଜା ମୁଁ ଦୟା ମୋତେ କର
ଲକ୍ଷ୍ମୀକି ବିଭା ହୋଇଣ ମୁରଦୈତ୍ୟ ମାର ।
ମୁରର ଛଳେ ସିନା ମୁଁ ଥିଲି ଲାଖ କରି
ତୁମ୍ଭଙ୍କୁ ମାନବ ବିଷ୍ଣୁ ବୋଲେ ଦୁରାଚାରୀ ।
ଯାଇଥିଲୁ ଦିନେ ଆମ୍ଭେ ତାହାର ସଭାକୁ
ମୁରାସୁର କଦାଚିତେ ନ ମାନେ ତୁମ୍ଭଙ୍କୁ ।
ମାନବା-ବିଷ୍ଣୁ ବୋଲିଣ ବୋଲଇ ତୁମ୍ଭଙ୍କୁ
ତାହା ଶୁଣି ଆମ୍ଭର ଯେ କମ୍ପୁଥାଏ ବୁକୁ ।
ଏରୂପେ ସେ ରତ୍ନାକର ଜଣାନ୍ତେ ଛାମୁରେ
ଶୁଣିଣ ନୃସିଂହ ହସି କହନ୍ତି ମଧୁରେ ।
ବୋଲନ୍ତି ଆମ୍ଭର ଗୁଣ ତୁମ୍ଭଙ୍କୁ ତ ଜଣା
ମୂରୁଖକୁ ସିନା ଆମ୍ଭେ ଅଟୁ ଅକଳନା ।
ବାଳୁତ କି ନ କହଇ କାକ କି ନ ଭକ୍ଷେ
ଭଲମନ୍ଦ ବୋଲି ନ ଜାଣନ୍ତି ଗଜମୂର୍ଖେ ।
ଅସୁର ବୋଲିବା କଥା କରିବା କି ଛଳ
ତହିଁକି ପାଇଲ ନାହିଁ ସେ କି ପ୍ରତିଫଳ ।
ଜନମିଅଛି ମରିବ ସେହୁ ଆମ୍ଭ ହସ୍ତେ
ପ୍ରକୃତି ମନ୍ଦରୁ ସେ ନ ମାନେ କଦାଚିତେ ।
ମୁଖ ଜନଟିକୁ ଜାଣ ମୃତ୍ୟୁ ଜଗିଥାଇ
ଅପ୍ରକାର ଭାଷାମାନ ମୁଖେ ଉଚ୍ଚାରଇ ।
ଆମ୍ଭଙ୍କୁ ମାନିଲେ କେବେ ସେହୁ ମରନ୍ତାକି
ରହନ୍ତା ଅମର ହୋଇ ସଂସାରେ ତରକି ।
ମୋତେ ଯେବେ ଭଜିଣ ସେ ସଂସାରେ ରହନ୍ତା
ମୁଁ ତାକୁ କିରୂପେ କରି ପାରନ୍ତି ଅହନ୍ତା ।
ମୋତେ ଯେ ଭଜିଲେ ମୋର ଭକ୍ତ ନୁହନ୍ତାକି
ଭକ୍ତକୁ କି ରୂପେ ମାରନ୍ତି ମୁଁ ହସ୍ତଟେକି ।
ମୋତେ ଯେ ନ ଭଜିଲା ସେ ଜାଣ ନିଶ୍ଚେମଲା
ଅବଶ୍ୟ ମାରିବି ସତ୍ୟ ଏ କଥା ମୋ ହେଲା ।
ଶୁଣିଣ ବରୁଣ ରାଜା ବହୁ ଶ୍ରଦ୍ଧା କଲେ
ପ୍ରଭୁଙ୍କଠାରେ କଥାଏ ପୁଣି ଜଣାଇଲେ ।
ବୋଇଲେ ଗୃହକୁ ମୋର ବିଜେ କର ସ୍ୱାମୀ
ଶରଣ ପଶିବି ଲକ୍ଷ୍ମୀ ଦେଇ ଅନ୍ତର୍ଯ୍ୟାମୀ

ରତ୍ନ ବେଦୀକି ମୋହର କରିବା ବିଜୟେ
ଶୁଣିଣ ହସି କହନ୍ତି ପ୍ରଭୁ ଦେବରାୟେ ।
ବୋଲନ୍ତି ଯେ ଏଡ଼େ ଲାଖ କରିଅଛ ତୁମ୍ଭେ
ନ ବିନ୍ଧିଣ ବିଭାହେଲେ କି ବୋଲିବେ ସର୍ବେ ।
ତୁମ୍ଭ କଲା ସତ୍ୟ ପୁଣି ହୋଇବ ବିଫଳ
ଅନ୍ୟାୟ କଥାକୁ ଗଲେ ହସିବେ ସକଳ ।
ଶେଷଦେବ ବୋଇଲେ ହେ ଶୁଣ ରତ୍ନାକର
ଠାକୁରେ କହିବା କଥା ଅଟେ ସୁବିଚାର ।
ରଜୋବତୀ ଯୁବତୀ କେ କରିଛି କି ବିଭା
ନିନ୍ଦା ନଥିବାରୁ ପ୍ରକାଶେ ତ କାମପ୍ରଭା ।
ଅରଜୋତୀକି କେହୁ କରିଛି କି ରତି
ଏ କଥା କଲେ ଦୂଷଣ ନୁହେଁ କି ଅନୀତି ।
ନିନ୍ଦାକର୍ମ କଲେ ସର୍ବେ ପାଇଥାନ୍ତି ଲଜ୍ଜା
ଯାହାର ନାହିଁ ଲଜ୍ଜା ସେ କରେ ସର୍ବ ତେଜ୍ୟା ।
ନିନ୍ଦାକୁ ଡରନ୍ତି ଏକା ଜାଣ ସାଧୁଜନେ
ତା ପ୍ରାୟ ପୁରୁଷ କେ ନି ମିଳେ ତ୍ରିଭୁବନେ ।
ଶୁଣି ସଭାଯାକ ତାଙ୍କୁ ବହୁ ଶ୍ରଦ୍ଧା କଲେ
ଧନ୍ୟ ଧନ୍ୟ ଶେଷ ବୋଲି ବହୁ ପ୍ରଶଂସିଲେ ।
ବରୁଣ ଶୁଣି ରହିଲେ ହୋଇ ତହିଁ ତୁନି
ବ୍ରହ୍ମା ବୋଇଲେ ଏ ଶେଷ ଅଟେ ବ୍ରହ୍ମଜ୍ଞାନୀ ।
ଯେହୁ ବ୍ରହ୍ମଜ୍ଞାନୀ ସେହି ସମଦର୍ଶୀ ଅଟେ
କୋମଳ ବଚନ କହି ତୋଷେ ସର୍ବଘଟେ ।
ଏରୂପେ କହନ୍ତି ବ୍ରହ୍ମା ହୋଇ ସଭାରେଣ
ରୁଦ୍ର ବୋଇଲେ ଏ କୃଷ୍ଣବଲ୍ଲଭ ସୁଜାଣ ।
ପ୍ରତ୍ୟକ୍ଷେ ବେଦରୁ ହୋଇଅଛି ଅବତାର
ତାହାଙ୍କ ପୁତ୍ର ଅଟନ୍ତି ପ୍ରଭୁ ବିଶ୍ୱମ୍ଭର ।
କୃଷ୍ଣବଲ୍ଲଭ ରାଜାର ସାନ ପୁତ୍ରଗୋଟି
ପ୍ରତ୍ୟକ୍ଷେ ଏ ସପ୍ତଫେଣୀ ଅଟେ ଅନନ୍ତଟି ।
ଅନନ୍ତ ଉପରେ ବସି ସର୍ବେ ହୋନ୍ତି ଜ୍ଞାନୀ
ପାରନ୍ତି ବିଷ୍ଣୁକୁ ଲୟ କରି ଆତ୍ମା ଚିହ୍ନି ।
ବାସବ ବୋଇଲେ କଥା ଅଟଇ ପ୍ରମାଣ
ନୃସିଂହ ଏ ଶେଷ ବେନି ସ୍ୱୟଂ ନାରାୟଣ ।
ବଶିଷ୍ଠ ମାର୍କଣ୍ଡ ବ୍ୟାସ ଅଗସ୍ତି ଯେ ଋଷି
ବଲ୍ଲଭ ରାଜାକୁ ସର୍ବେ ବହୁତ ପ୍ରଶଂସି ।
ବୋଇଲେ କୃଷ୍ଣବଲ୍ଲଭ କେଡ଼େ ଭାଗ୍ୟବନ୍ତ
ନୃସିଂହ ସ୍ୱାମୀଙ୍କୁ ତେଣୁ ବୀର୍ଯ୍ୟୁ କଲେ ଜାତ ।
ଏବେ ଯେ ଲାଖବିନ୍ଧିଣ ଲକ୍ଷ୍ମୀ ବିଭାହେବେ
ସେହି ବିଭା ଦେଖି ସର୍ବେ ଭବୁ ତରିଯିବେ ।
ସବୁରି ମୁଖୁ ବଲ୍ଲଭ ଏ ପ୍ରଶଂସା ଶୁଣି
ବୋଲନ୍ତି ପୁତ୍ରକୁ ମୋର ମିଳୁ କମଳିନୀ ।
ଏବେ ଯାଇ ମୋ ନୃସିଂହ ଆସୁ ଲାଖ ବିନ୍ଧି
ଋଷିଙ୍କର ବାକ୍ୟେ ହେଉ ସର୍ବକାର୍ଯ୍ୟ ସିଦ୍ଧି ।
ଶ୍ରୀମଧୁସୂଦନ ଚିନ୍ତି ଲାଖ ବିନ୍ଧି ଆସ
ପିତା ବଚନେ ନୃସିଂହ ହୋଇ ହସ ହସ ।
ବୋଇଲେ ବୁଝିଲି ମୁହିଁ ଶ୍ରୀମଧୁସୂଦନ
ବାପାଙ୍କ ମୁଖୁ ଫିଟିଲା ଏବେ ସୁବଚନ ।
ଯାଉଛି ଚଳି ମିଳିବ ଏବେ ଲାଖସ୍ଥାନେ
ବ୍ରହ୍ମାଶଙ୍କର ଋଷିଙ୍କୁ ନମି ମନେ ମନେ ।
ସମସ୍ତଙ୍କ ବାକ୍ୟ ପାଳି ଗଲେ ଲାଖବିନ୍ଧି
ଭୁଜେ ଧନୁ ଧରି କଟିଦେଶେ ବାସ ପିନ୍ଧି ।
କଣ୍ଠରେ ଯେ ବନମାଳା ବାହେ ବାଜୁବନ୍ଧ
ଅଙ୍ଗୁଳିରେ ଭୂଷଣ ଯେ ବସା ଯୋଡ଼ି ଛନ୍ଦ ।
ଶ୍ରୀବତ୍ସଚିହ୍ନ ହୃଦରେ ଦିଶେ ଶୋଭାବନ
ତହିଁ ପାଶେ ଲମ୍ବେ କଉସ୍ତୁଭ ମଣିରତ୍ନ ।
ଅଣ୍ଟାସୂତା ସୂତା ଯୋଡ଼ାଯୋଡ଼ି ଯେ ଘାଗୁଡ଼ି
ଯଜ୍ଞସୂତ୍ର ପଇତା ଯେ କନ୍ଧେ ଅଛି ପଡ଼ି ।
ଲୀଳାଗତି କରି ଚାଲିଯାନ୍ତି ରାଜଦାଣ୍ଡେ
ଜାଜ୍ୱଲ୍ୟମାନ ଯେ ଜ୍ୟୋତିପ୍ରକାଶେ ବ୍ରହ୍ମାଣ୍ଡେ ।
ବଲ୍ଲଭ ରାଜାଙ୍କ ବାମ ଦକ୍ଷିଣ ଯେ ଭାଗେ
ଚାଲନ୍ତି ନୃସିଂହ ଶେଷଦେବ ରାଜମାର୍ଗେ ।
ବ୍ରହ୍ମା ଶିବ ଇନ୍ଦ୍ର ଆଦି ଦଶଦିଗପାଳ
ଅଠାଶୀସହସ୍ର ଋଷି ଅଛନ୍ତି ସକଳ ।
ବରୁଣ ଦାଣ୍ଡରେ ଚାଲିଯାନ୍ତି ଦେବରାଜ
ଶ୍ରୀନୃସିଂହ ପ୍ରଭା ଦେଖି ଲୁଚନ୍ତି ଯେ ସୂର୍ଯ୍ୟ ।
ଜଗତ ଆଲୁଅମୟ ଦିଶେ ସ୍ୱର୍ଗମଞ୍ଚ
କାହାକୁ ନାହିଁ ତ ଜଣା ନୃସିଂହଙ୍କ ପାଞ୍ଚ ।
ଲାଖର ତଳେ ମିଳିଲେ ଯାଇ ଭାବଗ୍ରାହୀ
ଦକ୍ଷିଣ ପାଖରେ ହର ବାମେ ଛନ୍ତି ବିହି ।
ଅଠାଶୀସହସ୍ର ଋଷି ଛନ୍ତି ଆଗପଛେ
ଦେଖନ୍ତି ସପତଦ୍ୱୀପ ରାଜା ରହି ମଝେ ।
ଶେଷଦେବ ବିଜେ କରିଛନ୍ତି ବାମଭାଗେ
ଜଗତ ଆଲୁଅମୟ ଦିଶଇ ଚୌଦିଗେ ।
କୃଷ୍ଣବଲ୍ଲଭ ବରୁଣ ହସ୍ତ ଧରାଧରି
ଗହଣେ ସେ ଚାଲୁଛନ୍ତି ପୁତ୍ରସ୍ନେହ କରି ।
ସ୍ୱର୍ଗଭୁବନରେ ଲୋକେ ଛନ୍ତି ଶୂନ୍ୟେ ଚାହିଁ
ବରୁଣପୁରରେ ଲୋକେ ହୁଅନ୍ତି କୁହାକୁହି ।

ବୋଲନ୍ତି ନିଶ୍ଚୟ ଲାଖବିନ୍ଧିବେ ଏ ସତ୍ୟ
ଆଜଯାଏ କାହିଁକି ଏ ଥିଲେ ହୋଇ ଗୁପ୍ତ ।
ସୁବିଜ୍ଞ ଲୋକେ ବୋଲନ୍ତି ଏମନ୍ତ ନୁହଇ
ଭାଗ୍ୟବନ୍ତକୁ ସେ ବଳେ ଧାତା ନିୟୋଗାଇ ।
ଯାହାକୁ ସେ ଯେଉଁ ଦ୍ରବ୍ୟ ହୋଇଥାଏ ଯୋଗ
ବଳେହେଁ ବିଧାତା ତାକୁ କରାଏ ବିଭୋଗ ।
ଏଥୁଅନ୍ତେ ଶ୍ରୀନୃସିଂହଦେବ ସାନଭାଇ
କଥାଏ ମନରେ ପାଞ୍ଚି ପ୍ରଭୁ କର୍ଣ୍ଣେ କହି ।
ବୋଇଲେ ଏଠାରେ ଯେତେ ରହିଛନ୍ତି ରାଜା
ଦେଖୁଛ ତ ଲାଖବିନ୍ଧି ପାଇଲେଣି ଲଜ୍ଜା ।
ମହାଗୂଢ଼ ଲାଖ ଧନୁ ବିଚାରିଣ ଧର
କେ ଅବା କି ମନ୍ତ୍ର କରିଥାନ୍ତି କେବା ନର ।
ବ୍ୟାସ ଯେ ଅଛନ୍ତି ଜାଣି ଥିବେ କୂଟ କରି
ତହିଁକି ଦ୍ୱିଗୁଣ ପୁଣି ଅଟେ ତ୍ରିପୁରାରି ।
ସୁର ନର ଗନ୍ଧର୍ବ ଅସୁର ଆଦି ଯେତେ
ବରୁଣପୁରରେ ମିଳି ଅଛନ୍ତି ସମସ୍ତେ ।
ଚେତାଇଲି ମନରେ ମୁଁ ସବୁକଥା ପାଞ୍ଚି
ଏଥକୁ ସ୍ୱାମୀ ମୋ ଦୋଷ ନ ଧରିବ କିଛି ।
ଶେଷଦେବଙ୍କ ମୁଖରୁ ଏ ବଚନ ଶୁଣି
କହନ୍ତି ମନରେ ବଡ଼ ହସି ଚକ୍ରପାଣି ।
ବୋଇଲେରେ ଭାଇ ମୋର କହିବାକ କେତେ
ମୋତେ କୂଟ କରିବାକୁ ଅଛି କେ ଜଗତେ ।
ବ୍ୟାସ ପୁଣି ଅଟନ୍ତି ଯେ ଆମ୍ଭ ଇଷ୍ଟଗୁରୁ
ଶିବ ତ ବଳବନ୍ତ ମୋ ଆତ୍ମା ମରମରୁ ।
ଏଥକୁ ମନେ କିଛି ନ ଘେନ ତୁମ୍ଭେ ଖେଦ
ଆମ୍ଭେ ତ ପରମବ୍ରହ୍ମ ସ୍ୱୟଂ ପୂର୍ଣ୍ଣାନନ୍ଦ ।
ସ୍ୱବୁରି ଚିତ୍ତ ଗୋଚର ହୋଇ ବାବୁ ମୋତେ
ଏଣୁ ମୁହିଁ ଅନ୍ତର୍ଯ୍ୟାମୀ ଅଟଇ ଜଗତେ ।
ଏଥକୁ ମନେ ଭାଇ ନ କର କିଛି ଭୟ
ଆସିବି ମୁଁ ଲାଖ ବିନ୍ଧି କରି ସବୁ ଜୟ ।
ନୃସିଂହ ଶେଷଙ୍କ କଥା ସବୁଙ୍କୁ ଯେ ଜଣା
ଗଲେ ଲାଖ ବିନ୍ଧି ବଜାଇଣ ବ୍ରହ୍ମବୀଣା ।
ବାବଲ ଶର ଯୋଚିଣ ଗୁଣରେ ବସାନ୍ତେ
ଦେଖିଲେ ନବଗ୍ରହେ ଶ୍ରୀଶଙ୍ଖଚକ୍ର ହସ୍ତେ ।
ନିସ୍ତରିଲୁଁ ନିସ୍ତରିଲୁଁ ବୋଲି କଲେ ସ୍ତୁତି
ପ୍ରତ୍ୟକ୍ଷେ ଦେଖିଲୁଁ ପରମବ୍ରହ୍ମ ଜଗଜ୍ୟୋତି ।
ନୃସିଂହ ପାଦେ ଆସିଣ ପଶିଲୁଁ ଶରଣ
ଋଷିଙ୍କ ଶାପୁଁ ଆମ୍ଭଙ୍କୁ କର ପରିତ୍ରାଣ ।

ଜୟ ଜୟ ଶ୍ରୀନୃସିଂହ କର୍ମାକର୍ମ ଦାତା
ଜୟ ଜୟ ଶ୍ରୀନୃସିଂହ ସର୍ବଜନ ପିତା ।
ଜୟ ଜୟ ଶ୍ରୀନୃସିଂହ ଓଁକାର ସ୍ୱରୂପୀ
ଜୟ ଜୟ ଶ୍ରୀନୃସିଂହ ସର୍ବମୟ ବ୍ୟାପୀ ।
ଜୟ ଜୟ ଶ୍ରୀନୃସିଂହ ତୁହି ଲୋମମୂଳୁଁ
ପଞ୍ଚାଶତ କୋଟି ଯୁଣ ପୃଥ୍ୱୀ ଜାତକଲୁଁ ।
ଜୟ ଜୟ ଶ୍ରୀନୃସିଂହ ଅବତାର ଧନ୍ୟ
ଆପଣତ ଗ୍ରହରୂପୀ ଅଟ ଜନାର୍ଦ୍ଦନ ।
ଜୟ ଜୟ ନୃସିଂହ ହେ ଆଦ୍ୟ ଅବତାର
ବାମନ ଶ୍ରୀରଘୁନାଥ କୃଷ୍ଣ ନାମ ସାର ।
ଏହିରୂପେ ଚାରି ଜନ୍ମେ ହେବ ଲୀଳାରସ
ସେ ପାଦେ ଶରଣ ବିପ୍ର ପୀତାମ୍ବର ଦାସ ।
ଏରୂପେ କରନ୍ତି ନବଗ୍ରହେ ମନେ ସ୍ତୁତି
ନୃସିଂହ ବୋଇଲେ ତୁମ୍ଭେ ପାଇବ ମୁକତି ।
ବାମ ପାଦକୁ ନେଇଣ ଦକ୍ଷକର୍ଣ୍ଣ ମୂଳେ
କହିଲେ ସଳଖି ରଖ ବୋଲି ଆଦିମୂଳେ ।
ଏମନ୍ତ ଆଜ୍ଞା ଫିଟନ୍ତେ ପ୍ରଭୁ ଶ୍ରୀମୁଖରୁ
ଶୁଣିଲେକ ରବି ସୋମ କୁଜ ବୁଧ ଗୁରୁ ।
ପ୍ରଭୁ ଆଜ୍ଞାରେ ସେ ମୃଗ ରହିଲେ ସେ ମାର୍ଗେ
କହନ୍ତି ଯେ ବେଦବ୍ରହ୍ମା ନାରଦଙ୍କ ଆଗେ ।
ଶୁଣିଣ ନାରଦ ଋଷି କଲେ ବଡ଼ ଶ୍ରଦ୍ଧା
ବୋଇଲେ କହ ନୃସିଂହ ପ୍ରଭୁ ଲାଖବିନ୍ଧା ।
ବ୍ରହ୍ମା ବୋଇଲେ ନୃସିଂହ ମହିମା ଗୋ ଶୁଣ
ଚତୁର୍ଭୁଜ ମୂରତି ଯେ ହେଲେ ନାରାୟଣ ।
ବେନି ଭୁଜରେ ଧଇଲେ ପ୍ରଭୁ ମୃଗ ପୁଚ୍ଛ
ଆବର ନାରାଚ କଲେ ବେନିଭୁଜେ ସଞ୍ଚ ।
ବାମପାଦ ବୃଦ୍ଧାଙ୍ଗୁଳି ଉପରେଣ ଜାଣ
ଧନୁହୁଳ ରଖିଦେଲେ ପ୍ରଭୁ ନାରାୟଣ ।
ସେ ଧନୁର ମଧ୍ୟଭାଗ ଧରି ବାମକରେ
ଝିଙ୍କିଲେ ପୁଣ ଚଢ଼ାଇ ଦକ୍ଷିଣ ଭୁଜରେ ।
ମଟ ମଟ ହୋଇ ଶୁଭେ ସେ ଧନୁର ଶବ୍ଦ
ଶୁଣିକରି ସଭାଲୋକ ହୋଇଲେ ସ୍ତବଧ ।
ଧନୁ ଧରି ଶ୍ରୀନୃସିଂହ ପୁଣି ଓଟାରନ୍ତେ
ବରୁଣ ମନରୁ ଭ୍ରାନ୍ତି ଫିଟିଲା ତୁରିତେ ।
ମନେ ପାଞ୍ଚିଲେ ମିଳିଲେ ପ୍ରଭୁ ନାରାୟଣ
ଶ୍ରୀମହାଲକ୍ଷ୍ମୀଙ୍କି ବିଭାହେବେ ଏ ପ୍ରମାଣ ।
ମେଢ଼ର ଉପରେ ବସିଥିଲେ କମଳିନୀ
ମନେ ପାଞ୍ଚିଣ ଭେଟିଲେ ଆସି ଚକ୍ରପାଣି ।

ନିସ୍ତରିଲି ନିସ୍ତରିଲି ବୋଲି କଲେ ସ୍ତୁତି
କେତେକାଳେ ଆସିଦେଖିଲି ହେ ଜଗତଜ୍ୟୋତି ।
ଯେଉଁକାଳେ ଭୃଗୁଋଷି କଲେ ମୋତେ ଜନ୍ମ
ସେହିକାଳୁଁ ଭେଟି ମୁଁ ନଥିଲି ପରଂବ୍ରହ୍ମ ।
ତ୍ରୈଲୋକ୍ୟର କରତା ସେ ମୋର ପ୍ରାଣବନ୍ଧୁ
ମୋ ମନ ଜାଣି ଦର୍ଶନ ଦେଲେ କୃପାସିନ୍ଧୁ ।
ଏବେ ତ ଆସି ସଂଶୟ ଗଲା ମୋର ପୁଣ
ନ ଦେଖି ଆକୁଳ ହେଉଥିଲି ଭଗବାନ ।
ଏତେ ବେଲି ମହାଲକ୍ଷ୍ମୀ ଚକ୍ଷୁବେନି ଠାରି
ହଂସିନୀକି ଚିହ୍ନାଇଣ ଦେଲେ ଗୁପ୍ତକରି ।
ବୋଲନ୍ତି ମୋର ଅଟନ୍ତି ଜାଣ ଏହି ସ୍ୱାମୀ
ସୁଦର୍ଶନ ପାଇଲି ତୋ ହେତୁ ଅନ୍ତର୍ଯ୍ୟାମୀ ।
ଯାହା ତୁହି ଚିତ୍ରପଟେ ଦେଖାଇଲୁ ମୋତେ
ସେହି ନୃସିଂହଙ୍କୁ ଏବେ ଦେଖ ନେତ୍ରପଥେ ।
ଶୁଣି ତା ହଂସିନୀ ବୋଇଲା ଯେ ହୋଇ ହୋଇ
ସବୁରି ପ୍ରଭୁ ଅଟନ୍ତି ସେ ଯେ ଭାବଗ୍ରାହୀ ।
ଆପଣ ଅବା ମନରେ ଦୋଷଥିଲେ ଘେନି
ଏହିକ୍ଷଣି ବିବାହ ଗୋ ହେବ ବେନି ଭଗ୍ନୀ ।
ନୃସିଂହ ବେନି ଭାଇଙ୍କି ତୁମ୍ଭେ ବେନିଜେମା
ପୂର୍ବରୁ ଖଞ୍ଜି ଅଛନ୍ତି ଏହା ବେଦବ୍ରହ୍ମା ।
ସାନ ଭଗିନିକୀ ବିଭା ହେବେ ଶେଷଦେବ
ତୁମ୍ଭଙ୍କୁ ବିଭା ହେବେ ଗୋ ପ୍ରଭୁ ପଦ୍ମନାଭ ।
ଶୁଣିଣ ସେ ମହାଲକ୍ଷ୍ମୀ ଅଳ୍ପ ମନେ ହସି
ନୃସିଂହ ଲାଖ ବିନ୍ଧାକୁ ଚାହିଁଛନ୍ତି ବସି ।
ମହାବିକ୍ରମ ମୂରତି ଧରି ନାରାୟଣ
ମୃଗଙ୍କର ପୁଚ୍ଛ ଯାଇ ଧଇଲେ ତକ୍ଷଣ ।
କହନ୍ତି ଶରକୁ ଡିଆରିଣ ପଦ୍ମ ଆଖି
ପାଦେ ବାଜି କର୍ଣ୍ଣେ ଗଳି ରହ ନେତ୍ରେ ଲାଖି ।
ବାମ ଚରଣରେ ଏଡ଼ି ଦକ୍ଷକର୍ଣ୍ଣେ ଗଳି
ଭେଦିଣ ବାମ ନେତ୍ରରେ ରହିବୁ ନିକିଳି ।
ଏରୂପେ କହି ନାରାଚ ପ୍ରଭୁ ଛାଡ଼ିଦ୍ୟନ୍ତେ
ପାଦେ ବାଜି କର୍ଣ୍ଣେ ଗଳି ରହିଲା ନେତ୍ରାନ୍ତେ ।
ମୃଗଦେହ ଛାଡ଼ି ମୋକ୍ଷ ହେଲେ ନବଗ୍ରହେ
ସ୍ୱରୂପ ଧରି ବସିଲେ ଯେ ଯାହାର ଦେହେ ।
ଶ୍ରୀମହାଲକ୍ଷ୍ମୀଙ୍କ ବିଭା ଦେଖିବାର ପାଇଁ
ବରୁଣ ରଖିଲେ ପୁରେ ନିମନ୍ତ୍ରଣ ନେଇ ।
ସଞ୍ଚାମାନ ପାଇ ବସିଲେ ସେ ନବଗ୍ରହେ
ଶୁଣ ହେ ନାରଦ ଋଷି କହନ୍ତି ଧାତାଏ ।

ଏଥୁଅନ୍ତରେ ପୁଣ ରତ୍ନାକର ଉଠି
ସବୁଙ୍କୁ ଦେଖାଇ ଦେଲେ ନେଇଲାଖ ଗୋଟି ।
ଦେଖିକରି ରାଜାମାନେ ଯୋଡ଼ି କରପତ୍ର
ବୋଇଲେ କେ ଜାଣଇ ଏ ଲାଖର ଯେ ସୂତ୍ର ।
ଶିବ ବୋଇଲେ ହେ ଆମ୍ଭେ ଦେଖିଡରୁଥିଲୁ
ଲଜ୍ଜାକୁ ଭୟ କରିଣ ପଳାଇ ନ ଗଲୁ ।
ବ୍ରହ୍ମା ବୋଇଲେ ଆମ୍ଭେ ତ ଅଟୁ ପିତାମହ
ଲାଖକୁ ଦେଖି ଆମ୍ଭର ଥରୁଥିଲା ଦେହ ।
ବ୍ୟାସ ବୋଇଲେ ଆମ୍ଭେ ତ ଯେତେ ଋଷିଅଛୁ
ନୃସିଂହ ଏକା ବିନ୍ଧିବେ ବୋଲି ସର୍ବେପାଞ୍ଚୁ ।
ବରୁଣ ନଗର ପୁରେ ଯେତେ ଲୋକ ଥିଲେ
ସର୍ବେ ମିଶି ନୃସିଂହଙ୍କୁ ଧନ୍ୟ ଧନ୍ୟ କଲେ ।
ଆକାଶରେ ଦେବଗଣ ଶୂନ୍ୟେ ଥିଲେ ଚାହିଁ
କୁସୁମ ବର୍ଷିଲେ ଶ୍ରୀନୃସିଂହ ଶିରେ ନେଇ ।
ସମସ୍ତେ ଲାଖ ଦେଖିଣ ହୋଇଲେ ଆନନ୍ଦ
ଏଥୁଅନନ୍ତରେ ବାଣୀ ଶୁଣ ହେ ନାରଦ ।
ବ୍ରହ୍ମା ଯେ ନୃସିଂହଙ୍କର ଥିଲେ ବାମପାଶେ
ବରୁଣ ରାଜାଙ୍କୁ ଚାହିଁ କହନ୍ତି ହରଷେ ।
ବୋଇଲେ ଯେ କେଡ଼େ ସତ୍ୟକରିଥିଲ ତୁମ୍ଭେ
ଲକ୍ଷ୍ମୀକି ବିଷ୍ଣୁଙ୍କୁ ଏକାଦେବ ବୋଲି ପୂର୍ବେ ।
ଏବେ ଆସି କର ସତ୍ୟ ପୁରିଲା ତୁମ୍ଭର
ନୃସିଂହ ଦେବଙ୍କୁ ଏବେ ଲକ୍ଷ୍ମୀ ବିଭାକର ।
ଶୁଣି ରତ୍ନାକର ବହୁ ଆନନ୍ଦ ହୋଇଲେ
ମହାଲକ୍ଷ୍ମୀ ପାଶକୁ ଯେ ତତକ୍ଷଣ ଗଲେ ।
ପିତାଙ୍କୁ ଦେଖିଣ ଲକ୍ଷ୍ମୀମନେ ଲଜ୍ଜା ପାଇ
ଲୁଚିଣ ବସିଲେ ଦେଖ ସଖୀମେଳେ ଯାଇ ।
ବରୁଣ ବୋଇଲେ ମାଗୋ ଶୁଣିମାଯେ ଲକ୍ଷ୍ମୀ
ତୁମ୍ଭ ସଦୃଶେ ମିଳିଲେ ବର ଅନ୍ତର୍ଯ୍ୟାମୀ ।
ବଦ୍ରିକା ଆଶ୍ରମେ କୃଷ୍ଣ ବଲ୍ଲଭ ଯେ ଦ୍ୱିଜ
ଶ୍ରୀନୃସିଂହ ଶେଷ ବେନି ଯାହାଙ୍କ ଆତ୍ମଜ ।
ତୁମ୍ଭର ସ୍ୱାମୀ ଅଟନ୍ତି ପୁଣି ପଦ୍ମନେତ୍ର
ରତ୍ନମାଳାଏ ପକାଇ ଆସ ତାଙ୍କ ଗାତ୍ର ।
ଅଭୟ ଶ୍ରୀପାଦପଦ୍ମ ଦେଖ ମାଗୋ ଯାଇ
ବରଣ କରିଣ ଆସ ଗଳେ ମାଳା ଦେଇ ।
ରାଜାଙ୍କ ମହିମା ଶୁଣ ଆଗୋ କମଳିନୀ
ବରମାଳା ଦେବାର ସେ ଅଟଇ ନିଶାଣି
ସବୁକଥାରେ ସୁଲଭ ହୁଏ ତହୁଁ ଜାତ
ସେଠାବରେ ମହାଦେଈ ପଦ ହୁଏ ଖ୍ୟାତ ।

ରାଜା ଗଳାରେ ଆଗ ନଦେଲେ ବରମାଳ
ସେ କନ୍ୟା ପୁଣ ଚିହ୍ନି ନପାରେ ନୃପଶୀଳ ।
ଚାଲି ଚାହାଣିରୁ ତତକାଳେ ଚିହ୍ନିଯାନ୍ତି
ଏଣୁ ବରମାଳା ରାଜାଏ ଯେ ଘେନୁଛନ୍ତି ।
ରାଜାଙ୍କ କୁଳକୁ ମାଳା ଅଟଇ ନିଶାଣି
ଉଠ ଏବେ ମାତା ଆଗୋ ମୋର ବୋଲ ଶୁଣି ।
ବର ମୁଖ କନ୍ୟା ମୁଖ ଏକା ହୋଇଥିଲେ
ବିଭା ବେଳକୁ ବିମନ ମନ ନୋହେ ଭଲେ ।
ରାଜକୁଳେ ଏକଥା ଗୋ ପୂର୍ବୁ ଜାଣ ଅଛି
ଏଥକୁ ଲଜ୍ଜା ତୁମ୍ଭେ ନ ଘେନ ମନେ କିଛି ।
ମୋହର ବୋଲ ଘେନିଣ ଶୀଘ୍ର ହୁଅ ସଜ
ମାଳା ଦେଇକରି ଭେଟି ଆସ ଦେବରାଜ ।
ପିତାଙ୍କର ମୁଖୁ ଲକ୍ଷ୍ମୀ ଏ ବଚନ ଶୁଣି
ଉଠି ଉଭାହୋଇ ଚଳିଗଲେ କମଳିନୀ ।
ସଖୀଗଣ ମଧ୍ୟେ ଚାଲିଯାନ୍ତି ବିଜେ କରି
ହଂସିନୀ ଯେ ମୃଦୁସୁଲୀ ଘେନି ପରିବାରୀ ।
ହସ୍ତରେ ଯେ ବରମାଳା ଘେନି କମଳାକ୍ଷୀ
ନୃସିଂହ କଣ୍ଠେ ଲମ୍ବାଇ ଦେଲେ ଶଶିମୁଖୀ ।
ଲକ୍ଷ୍ମୀ ନୃସିଂହ ବେନିଙ୍କ ମୁଖ ଏକହୋନ୍ତେ
ବେନି ପଦ୍ମ ନେତ୍ର ଏକ ହୋଇଲା କି ଯୁକ୍ତେ ।
ନୃସିଂହଙ୍କ ନେତ୍ର ମିଶି ମହାଲକ୍ଷ୍ମୀ ନେତ୍ରେ
ଏକବ୍ରହ୍ମ ପ୍ରାୟ ମୂର୍ତ୍ତି ଦିଶିଲେ ଜଗତେ ।
ପ୍ରଥମୁଁ ତ ଏକବ୍ରହ୍ମ ଅଟେ ବିଷ୍ଣୁମୂର୍ତ୍ତି
ଅଧେ ଲକ୍ଷ୍ମୀ ଅଧେ ବିଷ୍ଣୁ ହୋଇ ଜାତ ହୋନ୍ତି ।
ସେ ଲକ୍ଷ୍ମୀ ନୃସିଂହ ଏଣୁ ଅଟନ୍ତି ଯେ ଏକ
ମାଳା ଦେଇ ବରିଲେକ ବର ପୁଣ୍ୟଶ୍ଳୋକ ।
ଶ୍ରୀମହାଲକ୍ଷ୍ମୀ ଗହଣେ ଥିଲେ ଯେତେବାଳୀ
କଣ୍ଠେ ମାଳା ପକାନ୍ତେ ସେ ଦେଲେ ହୁଳହୁଳି ।
ଅନ୍ୟ ଜନମାନେ ତହିଁ କଲେ ଜୟେ ଜୟେ
କୁସୁମ ବୃଷ୍ଟି କରନ୍ତି ଶୂନ୍ୟେ ଦେବତାଏ ।
ନୃସିଂହ କଣ୍ଠରେ ମାଳା ଦେଇ ଠାକୁରାଣୀ
ମେଡ଼ରୁ ଯେ ବିଜେ କରି ଗଲେ କମଳିନୀ ।
ମନ୍ଦିରେ ଯାଇ ମାଜଣା ବିଧି ମାଏ କଲେ
ଏଥି ଉତ୍ତାରୁ କହିବା ବାଣୀ ଶୁଣ ଭଲେ ।
ଶ୍ରୀନୃସିଂହ ପାଶେ ଯାଇ ବରୁଣ ଯେ ମିଳି
ଜଣାନ୍ତି ଶ୍ରୀନୃସିଂହଙ୍କୁ ପାଦେ ଅର୍ଘ୍ୟଢ଼ାଳି ।
ବୋଲନ୍ତି ଯେ ସାବଧାନେ ଶୁଣ ଚକ୍ରପାଣି
ତୁମ୍ଭଙ୍କୁ ବିଭା କରିବେ ଏବେ କମଳିନୀ ।
ତୁମ୍ଭ ସତ୍ୟ ତୁମ୍ଭେ ଯହୁଁ କରିଲ ପୂରଣ
ହେଲେଣି ତୁମ୍ଭର ପତ୍ନୀ ମୋର ଲକ୍ଷ୍ମୀପୁଣ ।
ଆପଣ ବିଜେ କରିବା ହେଉ ଭାବଗ୍ରାହୀ
ବେଦୀକି ଗଲେ ମୁଁ କନ୍ୟା ଦାନ କରିବଇଁ ।
ବରୁଣ ମୁଖୁ ଏମନ୍ତ ବାକ୍ୟ ହରି ଶୁଣି
ଶ୍ରୀହୃଦପଦ୍ମେ ବିଚାର କଲେ ଚକ୍ରପାଣି ।
ବୋଇଲେ ଶୁଣ କଶ୍ୟପ ଋଷିଙ୍କର ପୁତ୍ର
ତୁମ୍ଭଙ୍କୁ ତ କହିବାକୁ ଲାଗେ ଲଜ୍ଜା ମାତ୍ର ।
ତୁମ୍ଭେତ ଏବେ ଆମ୍ଭର ହେଲ ପିତୃତୁଲ୍ୟ
ବିଷୟ ବୋଧ ଲୋକକୁ ବୋଲିଟି ଅମୂଲ୍ୟ ।
କୃଷ୍ଣବଲ୍ଲଭ ରାଜା ଯେ ଆମ୍ଭ ପିତା ଥାଇ
କିରୂପେ ବିବାହ ହେବି ତାହାଙ୍କୁ ନ କହି ।
ସେ ଆମ୍ଭ ପିଣ୍ଡର କର୍ତ୍ତା ହୋଇଛନ୍ତି ଯେଣୁ
ତାଙ୍କ ସହ କଥା ଭାଷା ଆଗ କର ତେଣୁ ।
ମୂର୍ଖ ମୂଢ଼ ପୁତ୍ର ସିନା ପିତାଙ୍କୁ ନ ମାନେ
କେବେହେଁ ପିତୃବାକ୍ୟ ନ ପାଳେ ପ୍ରତିଦିନେ ।
ପିତାମାନଙ୍କୁ ନ ମାନି କର୍ତ୍ତା ଯେ ହୁଅନ୍ତି
ସେ ପୁତ୍ରକୁ ଅପଣ୍ଡିତ ବୋଲିଣ କହନ୍ତି ।
ଶୁଣିଣ ବରୁଣ ରାଜା ମନେ ଅଳ୍ପ ହସି
କୃଷ୍ଣବଲ୍ଲଭଙ୍କୁ ଭେଟି କହନ୍ତି ପ୍ରଶଂସି ।
ବୋଲନ୍ତି ଧନ୍ୟ ହେ ରାଜା ଜୀବନ ତୋ ଧନ୍ୟ
କେତେ ପୁଣ୍ୟେ ଜନ୍ମ କରିଥିଲୁ ଏ ନନ୍ଦନ ।
ଅତି ଭାଗ୍ୟ ଯେବେ ପିତା ମାତା କରିଥାନ୍ତି
ନୃସିଂହ ଶେଷ ପରାୟ ପୁତ୍ର ଜାତ ହୋନ୍ତି ।
ତୁମ୍ଭ ପ୍ରାୟ ସଂସାରେ କେ ନାହିଁ ଭାଗ୍ୟବନ୍ତ
ଭାଗ୍ୟରୁଟି ତୁମ୍ଭ ବଧୂ ହେଲେ ଲୋକମାତ ।
ସେ ମାତା ଲକ୍ଷ୍ମୀଙ୍କୁ ଚାଲ କରିବାକ ବିଭା
ବ୍ରହ୍ମା ମୂଳେ ଋଷିଘେନି ବସିଲାକ ସଭା ।
ତୁମ୍ଭ ପୁତ୍ର ନୃସିଂହଙ୍କୁ ଲକ୍ଷ୍ମୀଙ୍କୁ ମୁଁ ଦେବି
କୁଟୁମ୍ବଯାକ ଘେନିଣ ଶରଣ ପଶିବି ।
କୃଷ୍ଣବଲ୍ଲଭ ବୋଇଲେ କହିଲ ତ ସତ୍ୟ
କଥାଏ ଏକ ଲାଗୁଛି ମୋତେ ବିପରୀତ ।
କନିଷ୍ଠ ପୁତ୍ର ମୋହର ଅଛି ଶେଷଦେବ
ଶ୍ରୀନୃସିଂହ ବିଭା ଦେଖି ବିମନ ସେ ହେବ ।
ଶୁଣିଣ ବରୁଣ ରାଜା ହେଲେ ହସ ହସ
ବୋଇଲେ ଏଥକୁ ମନେ ନୋହିବା ବିରସ ।
ଆବର ଇଳା ନାମେ ଯେ କନ୍ୟା ମୋର ଅଛି
ଲକ୍ଷ୍ମୀର ସାନଭଉଣୀ ଅଟେ ସେ ମୃଗାକ୍ଷୀ ।

ଶେଷଦେବଙ୍କୁ ଜାଣ ସେ କନ୍ୟାନିଶ୍ଚେଁ ଦେବି
କର ପରବେଶ ଚାଲ ବେଦୀକି ଯେ ଯିବି ।
ଶୁଣିଣ ଆନନ୍ଦ କୃଷ୍ଣବଲ୍ଲଭର ଚିତ୍ତ
ବ୍ୟାସ ବୋଇଲେ ବରୁଣ କେଡ଼େ ସୁପଣ୍ଡିତ ।
ବେନି ଭାଇଙ୍କିଯେ ବେନି କନ୍ୟାବିଭା ହେଲା
ଶୁଣିଣ ସଭାଜନଙ୍କ ମନ ତୋଷ ହେଲା ।
ଆବର ସଭାରେ ଯେତେ ଋଷି ବସିଥିଲେ
ସମସ୍ତେ ତ ବରୁଣକୁ ବହୁ ପ୍ରଶଂସିଲେ ।
ବ୍ରହ୍ମା ମଧ ବରୁଣକୁ କଲେ ଧନ୍ୟ ଧନ୍ୟ
ବୋଇଲେ ପାଇଲା ଭଲା ବନ୍ଧୁ ଭଗବାନ ।
କୃଷ୍ଣବଲ୍ଲଭ ରାଜା ଯେ ଅଟେ ସୂର୍ଯ୍ୟବଂଶୀ
କଶ୍ୟପ ଋଷିର ପୁତ୍ର ତୁମ୍ଭେ ଦେବଅଂଶୀ ।
ବନ୍ଧୁପଣକୁ ଯେ ତୁମ୍ଭେ ବେନି ଏକାଯୋଗ୍ୟ
କାହିଁକି ହେଳା କରୁଛ ଏବେ ବିଭାଯୋଗ ।
ବଲ୍ଲଭ ବୋଲେ ଶୁଣିମା ହେଉ ବେଦବ୍ରହ୍ମା
ଆପଣଙ୍କୁ କହୁଅଛି କଥାଏ ଶୁଣିମା ।
ମାତା ସିନା ଜାଣନ୍ତି ଯେ ପୁତ୍ର ବେଶ କଥା
ଆମ୍ଭ ହାତେ ବରବେଶ ନୁହଇ ସର୍ବଥା ।
ବ୍ରହ୍ମା ବୋଇଲେ ହୋ ତେବେ ଶୁଣ ରତ୍ନାକର
ବଲ୍ଲଭ କହିବା ବାଣୀ ଅଟେ କଥା ସାର ।
ନାରଦ ଆଜି ଯାଆନ୍ତୁ ଶୀଘ୍ରେ ତେବେ ଚଳି
ନୃସିଂହ ମାତାଙ୍କୁ ଯାଇ ଆଣନ୍ତୁ ତତ୍କାଳି ।
ଭଗବତୀ ସଙ୍ଗେ ଚଉଷଠି ସସ୍ର କନ୍ୟା
ଏମାନେ ଥିଲେ ଯେ ବିଭା ହେବ ସମ୍ଭାବନା ।
ବରୁଣ ବୋଇଲେ ପିତା ଏ କଥା ଯଥାର୍ଥ
ବିଷ୍ଣୁ ଜନନୀଙ୍କୁ ଦେଖି ହୋଇବା କୃତାର୍ଥ ।
ଆବର ଦେଖିବା ଚଉଷଠି ସସ୍ର ସଖୀ
ନୃସିଂହ ନାୟିକା ଅଟନ୍ତି ସେ ଶଶିମୁଖୀ ।
ଆପଣ ନାରଦ ଗୋସାଇଁଙ୍କୁ ଆଜ୍ଞା କଲେ
ତେବେ ଶୀଘ୍ର ଯାଇଘେନି ଆସ ବେଗେଭଲେ ।
ଶୁଣି ବେଦବ୍ରହ୍ମା ସେ ନାରଦ ଗୋସାଇଁକି
ପେଷିଲେ ନୃସିଂହ ବିଭାପାଇଁ ବଦରିକି ।
ବୋଇଲା ଯାଉଁ ନୃସିଂହ ଜନନୀଙ୍କି ଘେନି
ମନପବନ ଦଣ୍ଡରେ ବସାଇ ସେ ମୁନି ।
ନୃସିଂହ ଶେଷଙ୍କୁ ବିଭା କରି ମାତା ଆଗେ
ଦଣ୍ଡକ ମଧ୍ୟରେ ଚଳି ଆସୁ ଏହିଲାଗେ ।
ଶୁଣିଣ ନାରଦ ମୁନି ହେଲେ ବେଗେ ସଜ
ଏଥି ଉତ୍ତାରେ ନୃସିଂହ ପ୍ରଭୁ ଦେବରାଜ ।

ସୁଦର୍ଶନ ଚକ୍ରକୁ ଶ୍ରୀପଦ୍ମ ହସ୍ତେ ଧରି
ପେଷିଲେ ବଦରିକାକୁ ଯାବତ ତିଆରି ।
ବୋଇଲେ ନାରଦ ଗଲେ ମାତାଙ୍କୁ ଯେ ଆଣି
ତୁ ମୋହର ନଗ୍ର ଜଗିଥିବୁ ପରିମାଣି ।
ଦିବସ ରାତ୍ରି ଭ୍ରମଣ କରି ଜଗିଥିବୁ
ତୁହି ଥିଲେ ଆମ୍ଭେ ଅଛୁଁ ବୋଲିଣ ଜାଣିବୁ ।
ତୁହି ଯହିଁ ଥାଉ ସେଠାରେ ଥାଇଂ ମୁହିଁପୂରି
ଏ କଥା ସଂସାରେ ନ ପାରେ ଗମ୍ୟକରି ।
ମୁଁ ଅଟେ ସ୍ୱୟଂ ବିଷ୍ଣୁ ତୁ ଅଟୁ ସ୍ୱୟଂ ବ୍ରହ୍ମା
ଏଣୁ ତୁହି ମୁହିଁ ସର୍ବ ଜୀବଙ୍କର ଆତ୍ମା ।
ତୁ ଅଟୁ ପରମ ମୁହିଁ ଅଟେ ଆତ୍ମାରୂପୀ
ମୋ ଆଜ୍ଞା ପ୍ରମାଣେ ପାରୁଁ ତୁ ସଂସାରେ ବ୍ୟାପୀ ।
ଆମ୍ଭେ ଏଠାବରୁ ବିଭାହୋଇ ଗଲାଯାଏଁ
ବଦ୍ରିକା ନଗରେ ଜଗି ରହିବୁ ନିର୍ଭୟେ ।
ଶୁଣି ବିଷ୍ଣୁଚକ୍ର ଶ୍ରୀନୃସିଂହ ପାଦେ ନମି
ନାରଦ ପ୍ରବେଶ ନୋହୁ ଗଲା ଆଗ ଭ୍ରମି ।
ବଦ୍ରିକା ନଗର ଜଗି ଆବୋରି ରହିଲା
ଶତ୍ରୁମାନଙ୍କୁ ସେ କାଳ ପ୍ରାୟକ ହୋଇଲା ।
ଏଥିଅନ୍ତେ ସେ କଳହପ୍ରିୟ ମହାମୁନି
ମିଳିଲା ନୃସିଂହ ମାତା ଆଗେ ରଥ ଘେନି ।
ମନପବନ ଦଣ୍ଡ ଯେ ଅଟେ ମନୋରଥ
ଯେତେ ପାଞ୍ଚିବ ବିସ୍ତାର ହୋଏ ତେତେରଥ ।
ଏରୂପେ ରଥ ଘେନିଣ ମିଳନ୍ତେ ନାରଦେ
ଦେଖି ବିଷ୍ଣୁ ମାତା ନମିଲେକ ଋଷି ପାଦେ ।
ସୁବାସ ଜଳ ଆଣିଣ ପାଦ ପଖାଳିଲେ
ଉଦକ ଧରିଣ କରେ ଶିରେ ସିଞ୍ଚିଦେଲେ ।
ନାରଦ ବୋଇଲେ ଆଉ ବିଳମ୍ବ ନକରୁ
ନୃସିଂହ ଶେଷ ଏ ବିଭା ହେବେ ଚାଲ ଭୀରୁ ।
ମହାଲକ୍ଷ୍ମୀଙ୍କି ଜାଣ ନୃସିଂହ ବିଭାହେବେ
ଇଳା କନ୍ୟାକୁ ଯେ ବିଭାହେବେ ଶେଷ ଦେବେ
ଏ ରୂପେ କହନ୍ତେ ସେ ନାରଦ ଶୁଭବାଣୀ
ଶୁଣି ଆନନ୍ଦ ହୋଇଲେ ଭଗବତୀ ରାଣୀ ।
ବୋଇଲେ ହେ ଋଷି ମୋତେ କହିଲ ଯାଆଜ
ଶୁଣିଲି ଏ ଶୁଭକଥା ପୁତ୍ର ବିଭାକାର୍ଯ୍ୟ ।
ମୁଁ କିଛି ନ ପୁଛୁଁ ମୋତେ ଦେଲ ଆଗକହି
ଏଡ଼େକ ସୁଭାଗ୍ୟ କଥା ଲୋଡ଼ିଲେ ନପାଇ ।
ଏତେ ପାଞ୍ଚି ଭଗବତୀ ନାରଦଙ୍କ ପାଦେ
ନମସ୍କାର କରି ବସି ଶୁଣନ୍ତି ଆନନ୍ଦେ ।

ନାରଦ ବୋଇଲେ ଆଜ ଜଡ଼ ଭାଗ୍ୟମନ୍ତ
ନୃସିଂହ ପ୍ରଭୁଙ୍କୁ ଯେଣୁ ଗର୍ଭୁ କଲ ଜାତ ।
ପ୍ରତ୍ୟକ୍ଷରେ ସ୍ୱୟଂ ବ୍ରହ୍ମ ଅଟନ୍ତି ସେ ହରି
ତୋ ଘରେ ଜନ୍ମି ଅଛନ୍ତି ବିଷ୍ଣୁ ତନୁ ଧରି ।
ତାଙ୍କ ମହିମା କହି ନପାରେ କେ ଜଗତେ
ଲକ୍ଷ୍ମୀଙ୍କର ଲାଖବିନ୍ଧା ଶୁଣ ଆଗୋ ମାତେ ।
ବାହୁବଳେ ହୁଅନ୍ତାଇ କାଳ ମୋତେ ନାହିଁ
ତୁମ୍ଭେ ଏଥୁ ଗଲେ ବିର୍ଭାହେବେ ଭାବଗ୍ରାହୀ ।
ଶ୍ରୀନୃସିଂହ ଲାଖବିନ୍ଧା ଆସିବା କାଳରେ
କନ୍ୟା ହସ୍ତେ ମାଳ ଦେଇ ବରୁଣ ବରିଲେ ।
ମାଳାଦେଇ ବୋଲୁ ବେଦୀକି ସେ ବିଜେକର
ନୃସିଂହ ବୋଇଲେ ଆମ୍ଭ ପିତାଙ୍କୁ ପଚାର ।
ଶୁଣିଣ ବରୁଣ ରାଜା ମନେ ବଡ଼ ହସି
କୃଷ୍ଣବଲ୍ଲଭ ରାଜାଙ୍କୁ କହିଲେ ପ୍ରଶଂସି ।
ବରୁଣ କହିବା କଥା ବଲ୍ଲଭ ଯେ ଶୁଣି
ଶେଷ ନିମନ୍ତେ ମାଗିଲେ କନ୍ୟାଗୋଟି ପୁଣି ।
ସାନ ଦୁହିତାକୁ ଦେବି ବରୁଣ ବୋଇଲେ
ଶୁଣିଣ ବଡ଼ ଆନନ୍ଦ ବଲ୍ଲଭ ହୋଇଲେ ।
ଈଳା ବୋଲି ସେ କନ୍ୟାର ନାମ ଗୋଟି ଅଟେ
ତାହାର ରୂପକୁ ଆଗେ ଦେଖ ଚିତ୍ରପଟେ ।
ଏ ରୂପେ କହିଣ ମୁନି ଚିତ୍ରପଟ ମେଲି
ଦେଖନ୍ତି କନ୍ୟାର ରୂପଗୋଟି ଚିହ୍ନ ବୋଲି ।
ଚାହିଁଣ ସେ ଭଗବତୀ ହେଲେ ଚମତ୍କାର
ବିନା ବେଶେ ସେହି କନ୍ୟା ମୋହୁଛିତ୍ରିପୁର
ଚିତ୍ରପଟେ ବସି ଦିଶେ ଶରଚ୍ଚନ୍ଦ୍ର ପ୍ରାୟେ
ଉମାଠାରୁ ଶତଗୁଣେ ଦିଏ ରୂପମୟେ ।
ଲକ୍ଷ୍ମୀଠାରୁ ଶତଗୁଣେ ଦିଶେ ରୂପକାନ୍ତି
ସାବିତ୍ରୀହୁଁ ଶତଗୁଣେ ସୁନ୍ଦରୀ ଦିଶନ୍ତି ।
ଆବର ସ୍ତିରୀ ଅଛନ୍ତି ଯେତେ ଜଗତରେ
ସୁବେଶ ବୋଇଲେ ସେହୁ ଜିଣିବଶୋଭାରେ ।
ଚିତ୍ରପ୍ରତିମା ହୋଇ ଏ ଦିଶେ ଏଡ଼େ ଶୋଭା
ଚନ୍ଦ୍ରଠାରୁ ଶତଗୁଣେ ଦିଶେ ମୁଖ ପ୍ରଭା ।
ଏରୂପେ ଦେଖାନ୍ତି ମୁନି କନ୍ୟା ଚିତ୍ରପଟେ
ଚାହିଁଲେ ସେ ଭଗବତୀ ଦେବୀ ମନହୃଷ୍ଟେ ।
ଚଉଷଠି ସହସ୍ରେକ ନାୟିକା ଯେ ଥିଲେ
ଚିତ୍ରପଟ ଦେଖି ସର୍ବେ ଆନନ୍ଦିତା ହେଲେ ।
ବୋଇଲେ ଅନନ୍ତଙ୍କୁ ଏ କନ୍ୟା ଏକାସାଜେ
ପଦ୍ମିନୀ ସ୍ତିରୀ ପରାୟେ ଦିଶେ ମୁଖକଞ୍ଜେ ।

ଯହିଁରେ ନାରଦ ମୁନି ଆସିଛନ୍ତି ନେଇ
ତହିଁର ତ ଅବିଗୁଣ ଖୋଜିଲେ କି ପାଇ ।
ଭଗବତୀ ବୋଇଲେ ଗୋ ଶୁଣ ନାୟିକାଏ
ନାରଦଙ୍କ ସଙ୍ଗେ ଚାଲ ଯିବ ବିଭାଯାଏ ।
ଶୁଣିଣ ଉଲ୍ଲାସ ହେଲା ନାୟିକାଙ୍କ ପ୍ରାଣ
ବୋଇଲେ ପଡ଼ିଲୁ ଆମ୍ଭେ ପ୍ରଭୁ ମନେ ଜାଣ ।
ନୋହିଲେ ଏ ଭଗବତୀ ସଙ୍ଗେ କିମ୍ପାନ୍ୟନ୍ତେ
ନୃପକଲେ ଏ ଭାଗ୍ୟ ନ ପାଇ କଦାଚିତେ ।
ସେ ପ୍ରଭୁ ମାତାର ମନ ଉଚ୍ଚାଟନ କଲେ
ନେଇଣ ବଲ୍ଲଭ ରାଣୀ ପାରନ୍ତା କି ଭଲେ ।
ଗଲେ ଚକ୍ଷୁ ପୁରାଇଣ ଦେଖିବା ଗୋ ବିଭା
ଏ ଭାଗ୍ୟ ଗୋ କୋଟିଯୁଗେଲୋଡ଼ି ନପାଇବା
ଏମନ୍ତ ବୋଲି ନାରଦ ମୁନି ଗୋସାଇଁଙ୍କି
କରନ୍ତି ନମସ୍କାର ଯେ ବେନିକର ଟେକି ।
ନାରଦ ବୋଇଲେ ଆଉ ବିଳମ୍ବ ନକର
ନୃସିଂହମାତାର ତୁଲେ ବସ ରଥେ ମୋର ।
ଶୁଣିଣ ନାୟିକାଗଣ ଋଷି ଆଜ୍ଞା ପାଇ
ବଲ୍ଲଭରାଣୀର ତୁଲେ ବସିଲେକ ଯାଇଁ ।
ମନ୍ଦିରର ମାର୍ଜନାକୁ ରଖି ଅଷ୍ଟସଖୀ
ବିଷ୍ଣୁ ଆଜ୍ଞାରେ ଭ୍ରମଇ ଚକ୍ର ଅଗ୍ରେ ରଖି ।
ସୁଜାଣ ମନ୍ତ୍ରୀର ପୁତ୍ର ଚିତ୍ର ମହାରଥା
କହିଲେ ମାଏ ତାହାକୁ ଦେଇ ନଗ୍ରକଥା ।
ଶୁଣି ସେହି ମହାରଥି ଯୋଡ଼ି କରପତ୍ର
ବୋଇଲେ ପ୍ରଭୁର ମୁହିଁ ଅଟେ ବଡ଼ ପାତ୍ର ।
ବୁଝିଲେ ବଦ୍ରିକା ପୁର ଦ୍ୱିତୀ ବଇକୁଣ୍ଠ
ସୁଦର୍ଶନ ଚକ୍ର ଅଛି କରିଣ ଆକଟ ।
ମାଛି ପଡ଼ିଲେକ ଯହିଁ ହେବ ନବଖଣ୍ଡ
ଏହି ନଗ୍ରେ ପଶିବାକୁ ଅଛି କାର ମୁଣ୍ଡ ।
ତୁମ୍ଭେ ବିଜେ କର ନାହିଁ ନଗ୍ରକୁ ଯେ ଭୟ
ଶୁଣି ଚଳିଗଲେ ରାଣୀ ନକରି ସଂଶୟ ।
ନୟନ ପିଛଡ଼ା ମାତ୍ରେ ସେ ନାରଦ ମୁନି
ଭେଟିଲେ ବରୁଣପୁରେ ନେଇ ମହାରାଣୀ ।
ଦେଖିକରି ମହାହୃଷ୍ଟ ହେଲେ ଚତୁର୍ମୁଖ
ବୋଇଲେ ମାତାଙ୍କୁ ନେଇ ବିଷ୍ଣୁପୁରେ ରଖ ।
କୃଷ୍ଣବଲ୍ଲଭଙ୍କୁ ଦେଇଛନ୍ତି ଯେଉଁ ଘର
ସେ ପୁରେ ନେଇଣ ବେଗେ ରଖି ସୁଖକର ।
ଶୁଣିଣ ନାରଦ ଋଷି ଗଲେ ସେହି ଲାଗେ
ରାଣୀ ସମର୍ପିଲେ କୃଷ୍ଣବଲ୍ଲଭର ଆଗେ ।

ନୃସିଂହ ମାତାର କଥା ବରୁଣ ଯେ ଶୁଣି
ନାନାଦ୍ରବ୍ୟର ଯୋଗାଡ଼ କରିଦେଲେ ଆଣି ।
ବନ୍ଧୁର ଆଦର ଘେନି ଗଉରବ କଲେ
ଏଥୁଅନ୍ତେ ଯେ କହିବା ବାଣୀ ଶୁଣ ଭଲେ ।
ମାତା ଆସିବା ଖବର ପାଇ ପୁତ୍ର ବେନି
ଦର୍ଶନ କରିଣ ମାତା ଚୁମ୍ବ ମୁଖେ ଘେନି ।
ପୁତ୍ରଙ୍କୁ କରରେ ଧରି କୋଳେ ବସାଇଲେ
ମନରେ ହୃଷ୍ଟ ହୋଇଣ ପୁଣି ଚୁମ୍ବ ଦେଲେ ।
ନେତ୍ରେ ବେନିପୁତ୍ର ଦେଖି ବହୁହୃଷ୍ଟ ହୋଇ
ସେ ମନହୃଷ୍ଟର କଥା କହି ନ ସରଇ ।
ସ୍ୱାମୀପଦେ ପଡ଼ି ରାଣୀ କଲେ ନମସ୍କାର
ପୁତ୍ରସଙ୍ଗେ ଘେନି ତହିଁ କରନ୍ତି ବିଚାର ।
ନାରଦ ଯିବା ଆସିବା କହିବା ଯେ ବାଣୀ
ଚିତ୍ରପଟେ ଦେଖିବାର କନ୍ୟା ସୁଲକ୍ଷଣୀ ।
ସେ କଥା ଆଗ କହନ୍ତି ରାଣୀ ଭଗବତୀ
ବୋଲନ୍ତି ହେ ସାବଧାନେ ଶୁଣ ପ୍ରାଣପତି ।
ଶେଷଦେବଙ୍କୁ ମୋର ଖଞ୍ଜିବ ଯେ କନ୍ୟା
ନାରଦ ଦେଖାଇ ତାକୁ କଲେ ମୋତେ ଚିହ୍ନା ।
ସେ କନ୍ୟାରୂପେ ନାହିଁ ଏ ସଂସାରେ ସ୍ତିରୀ
ବଲ୍ଲଭ ବୋଇଲେ ତାହା ଜାଣିଲ କି କରି ।
ଖଞ୍ଜିଛୁ ହେଲେ ହେଁ କନ୍ୟା ନେତ୍ରେ ନାହୁଁ ଦେଖି
ତାହା ତୁମ୍ଭେ ଜାଣିଲ କିରୂପେ କହ ସଖି ।
ରାଣୀ ବୋଇଲେ କହିବା ଶୁଣ ତାହା ସ୍ୱାମୀ
ନାରଦ ଗୋସାଇଁ ଅଟନ୍ତି ସେ ଅନ୍ତର୍ଯ୍ୟାମୀ ।
ସେ ମହାଋଷି ମୋହର ହୃଦକଥା ଜାଣି
ଚିତ୍ରପଟେ କନ୍ୟାରୂପ ଦେଖାଇଲେ ଆଣି ।
ସେ କନ୍ୟାର ପ୍ରାୟ ନାହିଁ ଏ ସଂସାରେ ସ୍ତିରୀ
ପଚାର ତ ଦେଖିଛନ୍ତି ଏ ସକଳ ନାରୀ ।
ଶୁଣି ସେ ରାଜନ ବସି କହନ୍ତି ପ୍ରିୟାକୁ
ବୋଲନ୍ତି ବେଦୀରେ ତେବେ ଦେଖିବ ବଧୂକୁ ।
କ୍ଷଣକ ଆବର ଗଲେ ସବୁ ଜଣାଯିବ
ବେନିବଧୂଙ୍କର ରୂପ ଗୋଚର ଯେ ହେବ ।
ପ୍ରତ୍ୟକ୍ଷେ ନବାତପଣା ପାଣି ହେବ ଜଣା
ଦେଖିଛ ଲକ୍ଷ୍ମୀକି ମୁହିଁ ରୂପ ଅକଳନା ।
ଯେତେବେଳେ ଏ ସଭାକୁ ରାଜା ଅଣାଇଲେ
କନ୍ୟାକୁ ଦେଖିବାପାଇଁ ସମସ୍ତେ ଅଇଲେ ।
ସେହି ସମୟେ ଲକ୍ଷ୍ମୀକି ଅଛୁଁ ଆମ୍ଭେ ଦେଖି
ସେ ଲକ୍ଷ୍ମୀରୂପ କହି କେପାରେ ମନେରଖି ।
ଶୁଣି ଭଗବତୀ ରାଣୀ ହୋଇଲେ ଆନନ୍ଦ
ଏଥୁଅନନ୍ତରେ ବାଣୀ ଶୁଣ ହେ ନାରଦ ।
ନାୟିକାଗଣଙ୍କୁ ତହିଁ ଚାହିଁ ଭାବଗ୍ରାହୀ
ଶ୍ରୀମୁଖରେ ସଙ୍ଖୋଳିଲେ ସବୁ ମନ ମୋହି ।
ମୋହିତ ହୋଇଲେ ସର୍ବେ ନମି ପଦ୍ମପାଦେ
ନୃସିଂହଙ୍କ ମନ ଘେନି ସେବିଲେ ଆନନ୍ଦେ ।
ପରମ ଦୟାଳୁ ସେହି ପ୍ରଭୁ ଜଗଦୀଶ
ସେ ପାଦେ ଶରଣ ବିପ୍ର ପୀତାମ୍ବର ଦାସ ।
ଅଲୌକିକ ଗ୍ରନ୍ଥ ଏହି ନୃସିଂହ ପୁରାଣ
କୃପାକରି ଲେଖାନ୍ତି ତ ମୋତେ ନାରାୟଣ ।
ନ ଦେଖନ୍ତେ ସେ ବୋଲନ୍ତି ଲେଖହେ ବହନ
ସାନକୁ ଯେ ବଡ଼ କରେ ବଡ଼କୁ ସେ ସାନ ।
ମୁହିଁ ଯେ ଅନ୍ଧ କୃପାରେ ଚକ୍ଷୁଦାନ ଦେଇ
ଜଡ଼ଲୋକ ମୁଖେ ବାକ୍ୟ ପାରଇ କୁହାଇ ।
ବଧିରକୁ କର୍ଣ୍ଣ ଦାନ ଦେଇପାରେ ଏକା
ତୁହି କିମ୍ପା ଲେଖିବାକୁ କରୁଅଛୁ ଶଙ୍କା ।
ଏରୂପେ ଆଜ୍ଞା ଦେବାରୁ ମୋତେ ନାରାୟଣ
ତେଣୁ ଭୟ ଛାଡ଼ି ମୁହିଁ ଲେଖେ ଗ୍ରନ୍ଥ ଜାଣ ।

❋ ❋ ❋

## ଶେଷ ନୃସିଂହ ଓ ଇଳା କମଳା ବିଭା

ଏଥୁ ଅନନ୍ତରେ ବାଣୀ ଶୁଣ ହେ ନାରଦ
ଶ୍ରୀମହାଲକ୍ଷ୍ମୀ ଦେବୀଙ୍କ ବର୍ଣ୍ଣନା ଯେ ପଦ ।
ମେଢ଼ରୁ ଯେ ବିଜେ କରି ଯାନ୍ତେ କମଳିନୀ
ବେଶ କରାଇଲେ ତାଙ୍କୁ ନୀରବତୀ ରାଣୀ ।
ହଂସିନୀକି ବୋଇଲେ ଗୋ ଶୁଣ ମୃଦୁସୁଲୀ
କନ୍ୟା ବେଶ କର ଯିବେ ବେଦୀକି ଯେ ଚାଲି ।
ଦିଶିବ ଦୁଇଭଗ୍ନିଙ୍କ ବେଶ ଏକପ୍ରାୟେ
ଦେଖି ସଭାରେ ଆଶ୍ଚର୍ଯ୍ୟ ହେବେ ସର୍ବରାୟେ ।
ଇଳା ଯେ କମଳା ବୋଲି ନ ପାରିବେ ବାରି
ଏରୂପେ ହଂସିନୀ ଆଲୋ ଥିବୁ ବେଶକରି ।
ବଡ଼ ଚତୁରୀ ପ୍ରତ୍ୟକ୍ଷେ ତୁହି ବିଶ୍ୱକର୍ମା
ସବୁ ତ ଜାଣୁ ଅଟନ୍ତି ଦୁହେଁ ମୋର ଜେମା ।
ଶୁଣି ମୃଦୁସୁଲୀ ହସି ଗଲା ଅଳ୍ପ ହୋଇ
ବେନି ଭଗ୍ନିଙ୍କୁ ଯେ ସ୍ନାନ କରାଗଲା ନେଇ ।
ରତ୍ନ ଆସନେ ବସାଇ ଦେଇ ବେନି ଜେମା
ସେବାରେ ଲାଗିଅଛନ୍ତି ନିତମ୍ବିନୀ ବାମା ।

ସୁବାସ ପବିତ୍ରଜଳ ସର୍ବତୀର୍ଥୁ ଆଣି
ସହସ୍ର ଜଳଭାଣ୍ଡରେ ପୂରାଇ ତରୁଣୀ ।
ବେନି ଠାକୁରାଣୀ ଦେହେ ପୂରାଇ ସୁଗନ୍ଧ
ସମସ୍ତ ଅଙ୍ଗେ ଲଗାନ୍ତି ହୋଇଣ ଆନନ୍ଦ ।
ତିଳ ଅଁଳା ସୁଗନ୍ଧ ଚନ୍ଦନ ମିଶାଇ
ଘଷିକରି ଶ୍ରୀଅଙ୍ଗରୁ ମଳି ଉକୁଟାଇ ।
ପଖଳା ଖଦି ଧରିଣ ଦେହଯାକ ପୋଛି
କର୍ପୁର ଗୁଣ୍ଡି ଚୂରିଣ ଲେପିଲେକ ବାଛି ।
ଶ୍ରୀଅଙ୍ଗମାନ ଘଷିଣ ମଳି ଛଡ଼ାଇଲେ
ତୀର୍ଥଜଳ ଆଣିକରି ସ୍ନାନ କରାଇଲେ ।
ସରୁ ଝୀନବାସ ଘେନି କେଶ ଯେ ଚିପୁଡ଼ି
ଶ୍ରୀଅଙ୍ଗେ ହଳଦୀ ପୁଣି ଲେପିଲେ ବାହୁଡ଼ି ।
ସୁବାସ ଜଳେ ଧୋଇଲେ ଆଣି ପୁଣି ଦେହ
ବସନରେ ପୋଛି ପୁଣି ସିଞ୍ଚିଲେ ଅମୀୟ ।
ଦିଶିଲେକ ବେନିଭଗ୍ନି ଶୁଦ୍ଧସ୍ୱର୍ଣ୍ଣ ଜିଣି
ଶୁଖାନ୍ତି ମଥାର କେଶ ପୋଛିଣ ତରୁଣୀ ।
ମହାଘନ ପ୍ରାୟ ଶ୍ୟାମ ଦିଶେ କେଶ କଳା
ପ୍ରକାଶେ କବରୀଭାର ଭ୍ରମରର ମାଳା ।
ଶିରରେ ଗୁଞ୍ଜାରାପନ୍ତି ଖୋସିଦେଇ ବାମା
ତହିଁକି ଶତେପୁଣେ ସେ ଦିଶନ୍ତି ଉପମା ।
ଏରୂପେ ହଂସିନୀ ମଥା ଶୋଧନ ଯେ କରି
ଗୋଟି ଗୋଟି କରି କେନା ଚିରୁଣୀରେ ଚିରି ।
ମଥା ଉପରର ଓଦା ନ ଲାଗଇ ବାଳ
ରଖିଲା ପାଶରେ ଆଣି ନାନା ପୁଷ୍ପମାଳ ।
ମଲ୍ଲୀ ମାଳତୀ ମରୁଆ ଜାଈ କରୁବେଲୀ
ସେବତୀ ବକୁଳ ଚମ୍ପା ଦୟଣା ପାଟଳୀ ।
ପ୍ରତି ପ୍ରତି କରି ଗଭାମଧ୍ୟେ ଫୁଲ ଖୋଷି
ଆକାଶେ ଯେହ୍ନେ କୃତ୍ତିକା ତାରାପୁଞ୍ଜ ଦିଶି ।
କମଳାଙ୍କ ଖୋଷାକୁ କି ଉପମା ବା ଦେବା
ଭ୍ରମରୀ ମାରୀ ପରାୟ ଫୁଟି ଦିଷଣ ପ୍ରଭା ।
ହଂସିନୀ ଯେ ମୁଦୁସୁଲୀ ଆଣି ଝୀନଶାଢ଼ୀ
ବେନି ଠାକୁରାଣୀ ଅଙ୍ଗେ ପିନ୍ଧାଇଲେ ଭିଡ଼ି ।
ହୀରା ପୀଢ଼ାରେ ବସାଇ ଦେଲେ ବେନିହେମା
ଅଙ୍ଗେ ଅଳଙ୍କାର ଲାଗି କରାଇଲେ ବାମା ।
ପ୍ରଥମେ ଖଞ୍ଜିଲା ବର୍ଣ୍ଣେ ନେଇ ହୀରାକାପ
ସେ ପାପର ତେଜେ ଲୀନ ସୂର୍ଯ୍ୟଜ୍ୟୋତିଧାପ
କକ୍ଷମାନଙ୍କର ଜ୍ୟୋତି ଝଳେ ଚଉକତି
କାହିଁରେ ବା ପଦ୍ମରାଗ ମାଣିକ୍ୟ ରାଜନ୍ତି ।
ସୁବର୍ଣ୍ଣ ବେଣ୍ଟୁଲୀ ଦୁଇ ଶ୍ରୁତିଶିଖେ ଖଞ୍ଜି
ତହିଁ ଉପରରରେ ମୋତିବସି ପୁଞ୍ଜି ପୁଞ୍ଜି ।
ନାସାରେ ପୁଟେ ନେଇଣ ଖଞ୍ଜନ୍ତେ ବସଣୀ
ଦିଶିଲେ ସେ ଏକପ୍ରାୟେ ବେନି ଠାକୁରାଣୀ ।
ବସଣୀ ଦିଶଇ ତୋରା ଗୁରୁ ଶୁକ୍ର ପ୍ରାୟେ
ପୁଞ୍ଜି ପୁଞ୍ଜି ଅଷ୍ଟରତ୍ନ ଦିଶେ ଠାଏ ଠାଏ ।
କଣ୍ଠରେ ଶୋଭଇ ହାର ସପ୍ତସରି ମାଳ
ମୁକୁତା ଯେ ଗୋଟି ଗୋଟି ଲମ୍ବିଛି ତାତଳ ।
ଅଷ୍ଟରତ୍ନର ପଦକ ହୃଦେ ପୁଣି ଖଞ୍ଜି
ହିମକାଳ ରବି ପ୍ରାୟ ତନୁରେ ବିରାଜି ।
ଭୂଜରେ ଖଞ୍ଜିଲେ ବେନିତାଡ଼ ଯତ୍ନ କରି
ଭଲା ସେ କରଇ ବେଶ ହଂସିନୀ ସୁନ୍ଦରୀ ।
ଖଞ୍ଜିଲା ମୁକୁତା ବିଦମାଳ ଭୁଜମୂଳେ
ପାଟ ସୂତାରେ ତା ଗୁନ୍ଥି ବାନ୍ଧିଲା ତତ୍କାଳେ ।
କରମୂଳେ ରତ୍ନଚୁଡ଼ି ଖଞ୍ଜିଲେକ ନେଇ
ସେ ଚୁଡ଼ିକି ଚାହିଁଦେଲେ ରୂପ ଦିଶୁଥାଇ ।
ଖଞ୍ଜିଲେକ ଅଙ୍ଗୁଷ୍ଠିରେ ମୁଦି ଭିନ୍ନ ଭିନ୍ନ
କାହିଁ ପଦ୍ମରାଗେ କାହିଁ ମସରେଖା ଚିହ୍ନ ।
ଦଶ ଅଙ୍ଗୁଳିରେ ମୁଦି ପାଉଅଛି ଶୋଭା
ଦଶ ଅବତାର ମୂର୍ତ୍ତି ପ୍ରକାଶେ ଯେ ପ୍ରଭା ।
କଟିରେ ରତ୍ନମେଖଳା ଖଞ୍ଜି ଯତ୍ନକରି
ଶୋଭାପାଏ ନାନା ହାର ଅଣ୍ଟାକୁ ଆବୋରି ।
ମୁକ୍ତା କେରି କେରି ଲମ୍ବିଅଛି ଧାଡ଼ି ଧାଡ଼ି
ନବରତ୍ନ ନୂପୁର ପାୟେ ଯୋଡ଼ି ଯୋଡ଼ି ।
ଚାଲନ୍ତେ ଯେ ଝମ ଝମ ଶୁଭେ ଉଚ୍ଚେ ବାଣୀ
ଏରୂପେ ବେଶ ହୋଇଲେ ବେନି ଠାକୁରାଣୀ ।
ପାଦର ଅଙ୍ଗୁଳିଯାକ ଝଲକଇ ମୁଦି
ସେ ମୁଦି ପ୍ରଭା ଚଉଦପୁର ଦିଶେ ଭେଦି ।
ରତ୍ନରେ ଭୂଷଣ ହେଲେ ସେ ବେନି ଭଉଣୀ
ହଂସିନୀକି ପ୍ରଶଂସିଲେ ବରୁଣର ରାଣୀ ।
ବୋଇଲେ ଭଲା ବେଶ ଲୋ କଲୁ ମୁଦୁସୁଲୀ
ଦ୍ୱିତୀ ବିଶ୍ୱକର୍ମା ପ୍ରାୟ ତୋତେ ମୁଁ ମଣିଲି
ହଂସିନୀ ବୋଇଲା ବେଶ ଆହୁରି ଗୋ ଅଛି ।
ଦେଖିବ ଗୋ ବେଶ ପୁରା ହେଲେ କମଳାକ୍ଷୀ ।'
ଏତେକ କହି ହଂସିନୀ ଦେଲା ରତ୍ନମାଳ
ତ୍ରିଶିଖ ପ୍ରାୟ ଟେକି ଦିଶିଲା କପୋଳ ।
ମୁଖେ ତାମ୍ବୁଳ ଭୁଞ୍ଜାଇ ଦେଇ ପୁଣି ବାଳୀ
ନୟନେ ସରୁ କଜ୍ଜ୍ୱଳ ରେଖା ଦେଲା ଆଳୀ ।

ନୀଳ ଉତ୍ପଳ ପରାୟେ ଦିଶେ ନେତ୍ର ପନ୍ତି
ଶୁକ୍ଳପକ୍ଷେ ଭ୍ରମର ଯେରୂପେ ଦିଶେ ଜ୍ୟୋତି ।
ତେସନ ପ୍ରକାରେ ଶୋଭା ଦିଶଇ ନୟନ
ବିଷୟାକୁ ତେଜି ସ୍ମର ଉଦର ସେ ସ୍ଥାନ ।
ସ୍ତିରୀଙ୍କର ନେତ୍ରେ କାମଶର ଅଛି ରଖି
ସେ ଶର ବିନ୍ଧନ୍ତେ ମୋହହୋନ୍ତି ସର୍ବେ ଦେଖି ।
ତହିଁରେ ଗୋ ଘନସାର ରେଖାପୁଣି ଦେଲା
ପୁରୁଷକୁ ସେ ରେଖ ତ ଶ୍ୟେନପକ୍ଷୀ ହେଲା ।
ଚନ୍ଦନରେଖା କପାଳେ ଦେଲା ପୁଣି ନେଇ
ସିନ୍ଦୁରର ବିନ୍ଦୁ ନେଇ ମଧ୍ୟ ଅଛି ଥୋଇ ।
ଅରୁଣର ମଧ୍ୟେ ଯେହ୍ନେ ଚନ୍ଦ୍ର ଦିଶେଶୋଭା
ଯେମନ୍ତ ଦିଶେ ସିନ୍ଦୁର ବିନ୍ଦୁ ଜ୍ୟୋତି ପ୍ରଭା ।
କମଳା ଇଳାର ପାଦେ ଅଳତା ଦିଶଇ
ସାମାନ୍ୟ ଚରଣରେ ଲେଖେ ନେଢ଼ହୋଇ ।
କର୍ପୂର କସ୍ତୁରୀ ମିଶାଦ୍ରବ୍ୟ ଅଙ୍ଗେ ଘଷି
ଚହଟି ଯୋଜନଯାଏ ଦେହ ଉଠେ ବାସି ।
ଶୁଦ୍ଧ ଦର୍ପଣ କନ୍ୟାଙ୍କ ଆଗେ ନେଇଥୋଇ
ହୋଇଲା କି ଏ ବେଶବୋଲି ହଂସିନୀ ପୁଛଇ ।
ଶୁଣି ଦେବୀ କମଳିନୀ ଅଳ୍ପ ମନେ ହସି
କିଛି ନ ବୋଲି ସଲଜେ ଛନ୍ତି ଦୁହେଁ ବସି ।
କନ୍ୟାଙ୍କର ପାଶେ ଥିଲେ ସହସ୍ରେ ଯୁବତୀ
ସେମାନେ ବେଶ ଦେଖିଣ ଚମତ୍କାର ହୋନ୍ତି
ବୋଇଲେ ଧନ୍ୟ ଅଟନ୍ତି ଏହୁ ବେନି ଜେମା
ଏକା କର୍ଣ୍ଣ ପ୍ରାୟ ବିହି ଗଢ଼ିଛି ଜାଣିମା ।
କେ ବୋଲେ ପୃଥିବୀଯାକେ ଥିଲା ଯେତେଗୁଣ
ସବୁ ଏଥେଁ ରଖିଧାତା କଲାକ ନିର୍ମାଣ ।
କେବୋଲେ କମଳା କେହୁ ବୋଲେ ସାରଦାକି
କେ ବୋଲେ ବେଦମତି ଏ ଅଟେକି ପାର୍ବତୀ
ମାଗି ଜାଣିଲେ ଏ ବର ଦେବ ଗୋ ସଭିଙ୍କି
ଦେହ ଘେନି ଅବତାର ହେଲେ ଆସି କ୍ଷିତି ।
କେ ବୋଲେ ଶଚୀ ସାବିତ୍ରୀ ପ୍ରବେଶିଲେ ଆସି
ସେ ରୂପେ ଆମ୍ଭମାନଙ୍କୁ ଦିଶନ୍ତି ପ୍ରକାଶି ।
କେ ବୋଲେ ଗଙ୍ଗା ଯମୁନା ଅଟନ୍ତି ଏବେନି
ଏହାଙ୍କୁ ନ ଗଛି ଆନ ମାନୁଷୀରେ ଆଣି ।
ଶ୍ରୀନୃସିଂହ ପତ୍ନୀ ଏହି ଅଟନ୍ତି କମଳା
ଶେଷଦେବ ପତ୍ନୀ ଏହା ନାମ ଅଟେ ଇଳା ।
ବେନି ଭଗ୍ନି ଅଟନ୍ତି ଏ ଦୁହେଁ ଆଦିମାତ
ଆବର ସ୍ତିରୀ ଏହାଙ୍କ ତଳେ ହେଲେ ଜାତ ।
ଅଟନ୍ତି ଏ ହରି ଅନନ୍ତଙ୍କ ସ୍ତିରୀରତ୍ନ
ଭାଗ୍ୟ ଥିବାରୁ ଆମ୍ଭର କରିଲୁ ଦର୍ଶନ ।
ପବିତ୍ର ଅଙ୍ଗ ଅଟନ୍ତି ଜାଣ ଏହୁ ସ୍ତିରୀ
ଯାହାଙ୍କୁ ଛୁଇଁଲେ କୋଟି ତୀର୍ଥ ନୋହେ ସରି ।
ହସ୍ତେ ପଦ୍ମପାଦେ ପଦ୍ମଶୋଭା ପାଉଅଛି
ତହିଁରେ କେଉଁଗୁଣ ତା ପାରିବ କେ ବାଛି ।
ଆମ୍ଭେ ଯେତେ ସ୍ତିରୀ ଏବେ ଏଠାରେଟି ଥାଇ
ତାଙ୍କ ପାଦ ରେଣୁକୁ ଗୋ ସରି ହେବାନାହିଁ ।
ଲକ୍ଷେ ଲକ୍ଷଣ ଘେନିଣ ଜାତ ଏହି ଦୁହେଁ
ଆନ ସ୍ତିରୀ ସଙ୍ଗେ ଲେଖିବ କି ଲକ୍ଷ୍ମୀକିଏ ।
ଖୋଜିଲେ କୋଟିଏ ଗୁଣ ଏହାଙ୍କର ଅଛି
ଆମ୍ଭେ ନେତ୍ରେଦେଖିଣ ନପାରୁଥାଇ ମୂର୍ଚ୍ଛି
ଏରୂପେ ବୋଲନ୍ତି ଯେଝାମତେ ନାରୀଗଣ
ହୁଳହୁଳି ଦେଇ କଲେ କନ୍ୟାଙ୍କୁ ବନ୍ଦାଣ ।
ବାଜେ ଶଙ୍ଖ ମହୁରୀ ଯେ ଯମକ ଝଞ୍ଜାଳ
ଢୋଲ ଦମାଦମାକୁ ଯେ କାହାଳୀ କଂସାଳ ।
କଡ଼ା ମର୍ଦ୍ଦଳ ଦାଉଣ୍ଡି ଦୋଷରିଆ ଭେରୀ
ମଙ୍ଗଳ ରାଗରେ ଗୀତ ଗାନ୍ତି ଅପସରୀ ।
ନଟ ଭାଟ କୟେବାର କଲେ ପାଶେ ମିଳି
ବେଳ ଜାଣି ସ୍ତିରୀମାନେ ଦ୍ୟନ୍ତି ହୁଳହୁଳି ।
ମଙ୍ଗଳାଷ୍ଟକ ପଢ଼ନ୍ତି ମିଳି ଋଷିଗଣ
ବୋଲନ୍ତି ବେଦୀକି ବରକନ୍ୟା ବେଗେ ଆଣ ।
ଅମୃତ ବେଳା ହୋଇଲା ବିଳମ୍ବ ନକର
ଏତେ ବୋଲି ଋଷି ଟେକିଦ୍ୟନ୍ତି ବେଦସ୍ୱର ।
ଶୁଣିଣ କୃଷ୍ଣବଲ୍ଲଭ ବିପ୍ର ବେଦବାଣୀ
କୁମରକୁ ପରବେଶ କରାଇଲେ ଆଣି ।
ପତ୍ନୀକି ବୋଇଲେ କର ପୁତ୍ରଙ୍କୁ ଗୋ ବେଶ
ଶୁଭଲଗ୍ନ ହେଲା ବୋଲି ଶୁଣ ବେଦଘୋଷ ।
ରତ୍ନାକର ହେଲେ ସବୁ କଲେଣି ନିର୍ମାଣ
ଛାୟାମଣ୍ଡପର ତଳେ ସ୍ୱର୍ଣ୍ଣବେଦୀ ଜାଣ ।
ନାନାବର୍ଣ୍ଣେ ବେଶ ମଣ୍ଡିଅଛନ୍ତି ଗୋ ତହିଁ
ଅଷ୍ଟରତ୍ନ କ୍ରମରେ ଗୋ ପିତୁଳା ରାଜଇ ।
ଗଜମୋତି ମୁକୁତା ଯେ ଲମ୍ବେ କେରା କେରା
ତହିଁପରେ ଖଞ୍ଜିଅଛି ହୀରା ପଦ୍ମହାରା ।
ରଙ୍ଗ କଳା ଶୁକ୍ଳ ପୁଷ୍ପ ମାଳ ମାଳ ହୋଇ
ନକ୍ଷତ୍ର ପନ୍ତି ପରାୟ ଅଛନ୍ତି ଲମ୍ବାଇ ।
ସୁବର୍ଣ୍ଣର ମଣ୍ଡପ ଯେ ତହିଁ ରତ୍ନବେଦୀ
ଚାରିକୋଣେ ଚାରିକୁମ୍ଭ ହୀରାରେ ଆଚ୍ଛାଦି ।

ଚୁତପତ୍ର ନାରିକେଳ ସ୍ଥାପି ରମ୍ଭାବୃକ୍ଷ
ଥୋଇଲେକ ସ୍ତମ୍ଭକରି ମଳୟ ଯେ ଗଛ ।
ଅଗୁର ଶ୍ରେଣୀ ଚନ୍ଦନକାଠ ରୁଅ କରି
କୁନ୍ଦିଛନ୍ତି କଳଶ ଯେ ବସାଇ ଭଉଁରୀ ।
ଅଷ୍ଟରତନରେ ବତା ଛନ୍ଦି ପାଟସୂତା
ଲମ୍ବାଇଲେ ଗଣ୍ଡିପଡ଼ି ଶ୍ରୀ ଗଜମୁକୁତା ।
ତହିଁପରେ ତେଜପତ୍ର ଛାୟେଣି କରାଇ
ଠାବେ ଠାବେ କଳସ ଯେ ଅଛନ୍ତି ବସାଇ ।
ଉଡ଼େ ଶ୍ୱେତ ଚିରାଳ ତା ପରେ ଘନ ଘନ
ଏରୂପେ ବାରାନିଧି ଯେ କଲେ ବିଭାସ୍ଥାନ ।
ଶୁଣି ଭଗବତୀ ମନେ ଆନନ୍ଦିତା ହୋଇ
ପୁତ୍ରଙ୍କୁ ଯେ ବେଶ କଲେ ମୁଖେ ଚୁମ୍ବଦେଇ ।
ବାଜଇ ଶଙ୍ଖ ମହୁରୀ ଟମକ କାହାଳ
ଘଣ୍ଟା ଘଣ୍ଟି ଘାଗୁଡ଼ି ଯେ ଶୁଭେ ଅନର୍ଗଳ ।
ଦମାଲୁ ଯେ ଦୁଲୁ ଦୁଲୁ ବାଜେ ବୀଣା ବଂଶୀ
ହୁଅନ୍ତି ସେ ପରବେଶ ପ୍ରଭୁ ବ୍ରହ୍ମରାଶି ।
ଚତୁରଙ୍ଗ ବଳ ସାଜି ବଲ୍ଲଭ ଯେ ରାୟେ
ସଖୀ ଅମାନତ୍ୟ ଘେନି ସମ୍ଭ୍ରମେ ବିଜୟେ ।
ଅଶ୍ୱ ଗଜ ରଥମାନ ମଣ୍ଡିଲେ ସକଳ
ମହାମନ୍ତ୍ରୀ ସଙ୍ଗତରେ କର୍ଣ୍ଣାଟ ଭୂପାଳ ।
ଉଡ଼ଇ ଚିରାଳ ଯୋଦ୍ଧାବଳ ନୀଳଛତି
ରାଉତ ସଙ୍ଗେ ଘେନିଲେ ମଣ୍ଡି ପାଟ ହସ୍ତୀ ।
ବରଜାତିଏ ସମ୍ଭ୍ରମେ ସଜହେଲେ ଆସି
ଗଜ ଅଶ୍ୱ ଗହଳରେ ପୃଥିବୀ ନ ଦିଶି ।
ନଟ ଭାଟ କୟେବାର ଗଲେ ସର୍ବେ ମିଳି
ଦେଖି ନଗ୍ରଲୋକେ ଧାଇଁଲେ ଯେ ବଳି ବଳି ।
ଏଥିଅନନ୍ତରେ ପୁଣି ନୃସିଂହ ଜନନୀ
ନିଶାକାଳ ତୀର୍ଥଜଳ ଅଣାଇଲେ ରାଣୀ
ନାୟିକାଗଣଙ୍କୁ ଚାହିଁଦେଲେ ମହାଦେଈ
ବୋଇଲେ ନଗ୍ରରୁ ଜଳ ଆଣଲୋ ତୋଳାଇ ।
ସପ୍ତଗୋଟି କୁମ୍ଭ ଘେନି ବେଗେ ଜଳିଯାଅ
ସପ୍ତଗୃହରୁ ତୋଳାଇ ଜଳ ଆଣିଥାଅ ।
ଶୁଣିଣ ନାୟିକାମାନେ ଗଲେ ସେହିକ୍ଷଣି
ନଯାଇଣ ଶଙ୍ଖନାଦ ତୋଳାଇଲେ ପାଣି ।
ସୁଲଭା କାମିନୀମାନେ ଗୃହୁ ଉଠି ଆସି
ଜନ ନେଇ ଜଳ ପୁରି ଦିଅନ୍ତି ସ୍ୱରଶି ।
ଏରୂପେ ସପତ ଘରୁ ତୋଳାଇଲେ ପାଣି
ରଖିଲେ ଭଣ୍ଡାର ଘରେ ଗୁପ୍ତକରି ଆଣି ।
ତେଣୁ ବୋଲନ୍ତି ସେ ପାଣିଟିକି ଚୋରୀଜଳ
ଦାଣ୍ଡରେ ଆସନ୍ତି ବୁଲି ଯେଣୁ ନିଶାକାଳ ।
ଏହିପରି ଦଶଘଡ଼ି ହୁଅନ୍ତେ ରଜନୀ
ସେ ଦିନ ଅଟଇ ମାଘ ଶୁକଳ ଦଶମୀ ।
ସୁଲଭା ନାୟିକା ସ୍ତିରୀ ସୁଲକ୍ଷଣୀ ଜନେ
ଉଠି ରାତ୍ର ଥାଉଁ ଦାଣ୍ଡେ ଚାହିଁଲେ ଗଗନେ ।
ଅରୁଣ ଉଦୟକାଳ ହୁଅନ୍ତେ ରଜନୀ
ଦେବଆଳୟେ ଶୁଭିଲା ଶଙ୍ଖ ବାଦ୍ୟଧ୍ୱନି ।
ଭଗବତୀ ବୋଇଲେ ଲୋ ଶୁଣ ସଖୀଗଣ
ନୃସିଂହ ଶେଷଦେବଙ୍କୁ ସ୍ନାନକରି ଆଣ ।
ଗନ୍ଧାଧିବାସ ସାରିଣ ବେଶ ବେଗେ କର
ବେଦୀକି ଗଲେ ସେ ବିଭାହେବ କନ୍ୟାବର ।
ଶୁଣିଣ ନାୟିକାମାନେ ଚଳିଲେ ତତ୍କାଳେ
ନୃସିଂହ ଶେଷଙ୍କୁ ସ୍ନାନ କରାଇଲେ ଜଳେ ।
ରତ୍ନ ଆସନରେ ବେନି ଭାଇଙ୍କି ବସାଇ
ଢ଼ାଳିଲେ ଯେ ଚୋରାଜଳ ଅଙ୍ଗମାନ ଧୋଇ ।
ଗନ୍ଧ ଅଏଁଳାଲଗାଇ ମଥାମାନ ଘଷି
ଲେଉଟିଣ ସ୍ନାନକଲେ ଜଗଜ୍ଜନବାସୀ ।
ଶ୍ରୀଅଙ୍ଗମାନ ପୋଛିଣ ଶିରୁ ପାଦଯାଏ
ପିନ୍ଧିଲେ କ୍ଷୀରୋଦ୍ରୀ ପାଟ ପିନ୍ଧା ଦେବରାୟେ ।
ରତ୍ନକାଠାଉ ମାଡ଼ିଣ ଗୃହେ ଗଲେ ଚଳି
ଆନନ୍ଦେ ନାୟିକାଗଣ ଦ୍ୟନ୍ତି ହୁଳହୁଳି ।
ମିଳିଲେ ମାତାଙ୍କ ଆଗେ ଯାଇ ବେନିଭାଇ
ଦେଖି ଜନନୀ ପୁତ୍ରଙ୍କ ମୁଖେ ଚୁମ୍ବ ଦେଇ ।
ବେନି ଭାଇଙ୍କି ଯେ ମାଏଦଧି ଆଗେ ଦେଲେ
ଚୋରୀ ଅନ୍ନ ବୋଲି ବିଷ୍ଣୁ ମଣୋହି ତ କଲେ ।
ଆଗମନ ସାରି ନ ପାନଖିଲ ଭୋଗ କରି
ଆସନେ ବସି ସୁବେଶ ହେଲେ ନରହରି ।
ଚୌଷଠି ସହସ୍ର କନ୍ୟା ବାଟିଲେ ହଳଦି
ଟଭାରସ ମିଶାଇଣ ଅଛନ୍ତିତ ମର୍ଦ୍ଦି ।
ବୋଲନ୍ତି ନାୟିକା ଆନନ୍ଦିତା ହୋଇ
ନୃସିଂହ ଶେଷଦେବଙ୍କ ଶ୍ରୀଅଙ୍ଗରେ ନେଇ ।
କେ ଦେହେ ବୋଲେ କେହୁ କପାଳରେ ବୋଳେ
କେ ପାଦ ଲେପଇ କେହି ଲେପେ ବକ୍ଷସ୍ଥଳେ ।
କେ ପିଠିରେ ବୋଳଇ କେ ମୁଖେ ଦିଏ ବୋଳି
ସୁଗନ୍ଧ ଲଗାଇ କେହୁ ଉକୁଟାଇ ମଳି ।
ଦିଶିଲେ ଚନ୍ଦ୍ରମା ପ୍ରାୟ ଶୋଭା ବେନିଭାଇ
ଦେଖିଣ ନୃସିଂହମାତା ଆନନ୍ଦିତତ ହୋଇ ।

କେଶ ଶୁଖାଇ ସୁନାର ଚିରିଣୀ କେ ଧରେ
ଗୁଛି ନାନା ପୁଷ୍ପ ବାନ୍ଧିଦେଲେ ନେଇ ଶିରେ ।
ସେ ପୁଷ୍ପ ଉପରେ କର୍ପୁରର ଗୁଣ୍ଡି ସିଞ୍ଚି
ମଥାଯାକ ଆବାରିଣ ଦିଶେ ଫୁଲ ରୁଚି ।
ବିସ୍ତାରି ପଦାକୁ ପ୍ରକାଶଇ ଫୁଲଜ୍ୟୋତି
ଗଗନେ ଦେଖାନ୍ତି ରୂପ ଯେହ୍ନେ ବୃହସ୍ପତି ।
ସେ ରୂପେ ପ୍ରକାଶ ବେନି ଭାଇଙ୍କର ପ୍ରଭା
ବାଳାର୍କ ଜ୍ୟୋତିର ପ୍ରାୟ ଦିଶେ ରୂପ ଶୋଭା ।
ଶ୍ରବଣରେ ଖଞ୍ଜିଦେଲେ କୁଣ୍ଡଳ ଯେ ନେଇ
ତହିଁ ପାଶରେ ମୁକୁତା ପୁଞ୍ଜି ବିରାଜଇ ।
କୁମାର ପୂର୍ଣ୍ଣିମା ଚନ୍ଦ୍ର ଯେସନେକ ଦିଶି
ସେହିରୂପେ ବେନିଭାଇ ଶରୀର ପ୍ରକାଶି ।
ଖଞ୍ଜିଲେକ କମ୍ବୁ କଣ୍ଠେ ସ୍ୱର୍ଣ୍ଣ କଣ୍ଠମାଳି
ମୁକୁତା ଯେ ଗୋଟି ଗୋଟି ଲମ୍ବେ ତହିଁଝଲି ।
ମାଣିକ୍ୟର ଜ୍ୟୋତି ମାଳି ତହିଁ ପାଶେଖଞ୍ଜି
ଆବର ହୀରା ପଦ୍ମ ଯେ ଶରୀରେ ବିରାଜି ।
ବାହୁଟି ଶିକୁଳି ବାହୁମୂଳେ ବିଦମୁଦି
କଟିରେ କଟିମେଖଳା କରିଣ ଆଛାଦି ।
ବାମପାଶେ ବୀରନେତ ଉଡ଼େ ଫରହର
ଚରଣେ ଶିକୁଳି ଖଞ୍ଜି ହୀରାର ତୋଡ଼ର ।
ଶ୍ରୀପଦ୍ମପାଦ ଅଳତା ରଙ୍ଗମାନ ଦେଇ
ଅଧିକେ ଶୋଭା ଦିଶନ୍ତି ସେହି ବେନିଭାଇ ।
ନୃସିଂହ ଚରଣକୁ କି ଦେବା ପଟାନ୍ତର
ଯାହାର ପଦ୍ମପାଦରୁ ବହେ ଗଙ୍ଗାଧର ।
ସକଳ ସୌନ୍ଦର୍ଯ୍ୟ ଯାକ ଯାହା ହୃଦେ ଅଛି
ସେ ପ୍ରଭୁର ଶୋଭାମାନ ପାରିବ କେ ବାଛି ।
ପ୍ରଭୁଙ୍କର ବେଶ ଦେଖିହର୍ଷ ହେଲେ ମାଏ
ନେତ୍ରେ ଘନସାର ସରୁ କଜ୍ଜଳ ଯେ ଦିଏ ।
ଶ୍ରବଣଯାଏ କାଟିଲେ ଲାଞ୍ଜି ରେଖା ଲାସି
ଭ୍ରମର ପନ୍ତିର ପ୍ରାୟ ସୁନ୍ଦର ସେ ଦିଶି ।
କର୍ପୂର କସ୍ତୁରୀ ଘୋରି ଅଗୁରୁ ଚନ୍ଦନ
ଲଲାଟେ ଚିତା ନବୀନ ଶରୀର ସମାନ ।
ସୁବେଶ ମାର୍ଗେସିନ୍ଦୁର ବିନ୍ଦୁକୁ ରଚିଲେ
ବାଳୁତ ରବି ପରାୟେ ମୁଖ ପ୍ରକାଶିଲେ ।
ମଥାରେ ବାନ୍ଧିଲେ ସୁରୁଝରା ପାଗଭିଡ଼ି
ମୁକୁଟ ଖଞ୍ଜିଲେ ତହିଁପରେ ଗଣି ପାଡ଼ି ।
ଦିଶିଲେ ସେ ବେନିଭାଇ ଅତି ଶୋଭାକର
ସହସ୍ର ଫଣାରେ ଯେହ୍ନେ ଦିଶେ ମହୀଧର ।
ନୀଳାଚଳେ ଯେହ୍ନେ ବଡ଼ ସିଂହାରଯେ ବେଶ
ଦିଶନ୍ତି ସେ ରୂପେ ଶୋଭା ପ୍ରଭୁ ଜଗନୀଶ ।
ନୃସିଂହ ପ୍ରଭୁଙ୍କ ବେଶଗୋଟି ସିନା ଏହୁଁ
କୋଟି ଲକ୍ଷ ବେଶ ହୁଅନ୍ତି ସେ ମହାବାହୁ ।
ପ୍ରଭୁଙ୍କର ବେଶ ଦେଖି ନାୟିକାଏ ଆସି
ମଙ୍ଗଳଗୁଜ୍ଜରୀ ରାଗେ ଗାନ୍ତି ଗୀତ ଘୋଷି ।
ଶ୍ରୀପଦ କରେ ଚନ୍ଦ୍ରୁଳ ପୁରାଇଲେ ନେଇ
ଅନୁକୂଳ କଲେ ପ୍ରଭୁ ତହୁଁ ବେନି ଭାଇ ।
ଗଲେ ମନ୍ଦିରୁ ଦକ୍ଷିଣ ପାଦ ଆଗ ଟେକି
ବହୁଅଛି ସୂର୍ଯ୍ୟଘରେ ବେଳା ଲଗ୍ନ ଝିଙ୍କି ।
ସୁମଙ୍ଗଳ ପାଞ୍ଚ ବନ୍ଦାନ୍ତି ସେ ଭଗବତୀ
ଦେବତା ଆଦିଙ୍କ ପୂଜା ସାରି ଜଗଜ୍ଜ୍ୟୋତି ।
ତଣ୍ଡୁଳ ଦେଲେକ ପ୍ରଭୁ ମାତା ପଣନ୍ତରେ
ଆଘ୍ରାଣ କଲେକ ମାତା ମୁର୍ଦ୍ଧା ଥରେ ଥରେ ।
ଶ୍ରୀନାୟିକାଗଣ ଯାକ ହୁଳହୁଳି ଦେଇ
ଦଧି ମାଛ ପୂର୍ଣ୍ଣକୁମ୍ଭ ସ୍ଥାପିଲେକ ନେଇ ।
ନକୁଳ ରାଜହଂସ ଯେ ଶଙ୍ଖଚିଲ ପକ୍ଷୀ
ଅନୁକୂଳ କଲେ ଆଗେ ଏହାଙ୍କୁ ଯେ ରଖି ।
ମାତାଙ୍କୁ ଯେ ନମସ୍କାର କରି ବେନି ବାଳେ
ନମିଲେଟି ପୋଏ ଯାଇ ପିତା ପାଦତଳେ ।
ପୁତ୍ରଙ୍କର ନମସ୍କାର କରି ଦେଖି ପିତା ମାତା
ବୋଇଲେକ ହୁଅ ବିଭା ସୁଲକ୍ଷଣୀ କାନ୍ତା ।
ଆମ୍ଭ କୂଳବଧୂ ସେହୁ ସଦାକାଳେ ହୋନ୍ତୁ
ଅଇସୁଲକ୍ଷଣୀ ହୋଇ ସବୁଦିନେ ଥାନ୍ତୁ ।
ଏଥୁଅନନ୍ତରେ କୃଷ୍ଣବଲ୍ଲଭ ଯେ ରାୟେ
ବିଭା ସମ୍ଭାର ଘେନିଣ କରନ୍ତି ବିଜୟେ ।
ବାଜଇ ଶଙ୍ଖ ମହୁରୀ ଆଗେ ଘନ ଘନ
ମହାସମ୍ଭ୍ରମେ ଚଳନ୍ତି ଚତୁରଙ୍ଗ ସୈନ୍ୟ ।
ଗରୁଡ଼ ବାହନେ ଚଢ଼ି ଚଳନ୍ତି ନୃସିଂହ
ଯେସନେ ରତିକି ବିଭା ହୋଇଲେ ଅନଙ୍ଗ ।
ପୂର୍ବମୁଖ ହୋଇ ରାଜଦାଣ୍ଡେ କଲେ ବିଜେ
ବରୁଣ ନଗର ଦାଣ୍ଡେ ଯାନ୍ତି ଦେବରାଜେ ।
ନୃସିଂହଙ୍କ ସାନଭାଇ ଦେବଯାନେ ବସି
ଚାଲନ୍ତି ପ୍ରଭୁଙ୍କ ବାମଭାଗେ ହସି ହସି ।
ସୁଜାଣ ମହାମନ୍ତ୍ରୀ ଯେ ସୈନ୍ୟ ସଜକରି
ଲାଗି ହୋଇଥିବା ଅଶ୍ୱ ଆଗେ ପଟୁଆରୀ ।
କର୍ଣ୍ଣାଟେଶ୍ୱର ନୃପତି ପ୍ରଭୁ ବାମଭାଗେ
ଲାଗି ହୋଇବାରୁ ଚଳିଯାନ୍ତି ରାଜମାର୍ଗେ ।

କୃଷ୍ଣବଲ୍ଲଭ ନୃପତି ପାଟଗଜେ ଚଢ଼ି
ଚାଲନ୍ତି ଦାଣ୍ଡେ ମଙ୍ଗଳଅଷ୍ଟକ ଯେ ପଢ଼ି ।
ଟେକାଇଣ ଦଣ୍ଡଛତ୍ର ଯାନ୍ତି ସମ୍ଭ୍ରମରେ
ଛାୟାରେ ରବି କିରଣ ନ ପଡ଼େ ଭୂମିରେ ।
ହସ୍ତୀଙ୍କର ଘଣ୍ଟରବ ଅଶ୍ୱ ମୁଖ ରଡ଼ି
ରଥ ଗର୍ଜ୍ଜନରେ ମେରୁଶିଖ ଯାଏ ପଡ଼ି ।
ପଦାତିଙ୍କ ଗମନ ଯେ ଭେଟ କୟେବାର
ଅପସରୀଙ୍କର ନାଟେ ଉଛୁଳେ ତ୍ରିପୁର ।
ଦେଖଣାହାରୀ ଲୋକ ନ ପାଇ ଠାବ କେହି
ଦେଖିବାପାଇଁ ଚଢ଼ନ୍ତି ଥୋକେ ଚାଳେ ଯାଇ ।
ଅଚିହ୍ନା ଲୋକେ ଚିହ୍ନାନ୍ତି କହିଦେଇ ନାମ
ବୋଲନ୍ତି ଗରୁଡ଼େ ଦେଖ ବିଜେ ପରଂବ୍ରହ୍ମ ।
ଆମ୍ଭ ଭାଗ୍ୟକୁ ସେ ପ୍ରଭୁ ଦେଲେ ଆସିଦେଖା
ମହାଲକ୍ଷ୍ମୀଙ୍କି ସେ ବିଭାହେବେ ଜାଣ ଏକା ।
ଦେବଯାନେ ବସି ଯାନ୍ତି ଶେଷଦେବ ପୁଣି
ଈଳା କନ୍ୟାକୁ ସେ ବିଭାହେବେ ଏହୁ ଜାଣି ।
ଏକତା ବରୁଣ ମୁଖୁଁ ଆମ୍ଭେ ଅଛୁ ଶୁଣି ।
ଏଥିରେ ସଂଶୟ ଆଉ କିଛି ନାହିଁ ପୁଣି ।
କୃଷ୍ଣବଲ୍ଲଭର ବୀର୍ଯ୍ୟେ ଭଗବତୀ ଗର୍ଭେ
ହେଲେ ଅବତାର ଏ ନୃସିଂହ ଶେଷଦେବେ ।
ନୃସିଂହ ଦେବଙ୍କ ପିତା ଅଟନ୍ତି ଯେ ଏହି
କୃଷ୍ଣବଲ୍ଲଭ ବୋଲିଟି ଏହାଙ୍କୁ ଯେ କହି ।
କୃଷ୍ଣବଲ୍ଲଭ ଦେଖୁଛନ୍ତି ହସ୍ତୀ ଚଢ଼ି
ପେଟଯାଏ ଲମ୍ବାଇଣ ଦେଇଛନ୍ତି ଦାଢ଼ି ।
ତହିଁପାଶେ ଅଛି ଦେଖ ଏ ସୁଜାଣ ମନ୍ତ୍ରୀ
କେତେମାର୍ଗେ କହି ପାରଇ ଏ କଥା ଯନ୍ତ୍ରି ।
ତହିଁରପାଶେ କର୍ଣ୍ଣାଟେଶ୍ୱର ନାମେ ରାଜା
ନୃସିଂହ ସେବାଲାଗି କରେ ପାଦ ପୂଜା ।
କନକାବତୀ ନଗ୍ରେ ଏ ଅଟେ ପୂର୍ବ ନୃପ
ସେ ପୁରେ ମୂର ଦଇତ୍ୟ ହେଲେ ଯାଇ ଭୂପ ।
ଏ ଆସି ନୃସିଂହ ପାଦେ ପଶିଲା ଶରଣ
ମୂରଦୈତ୍ୟ କଲାରୁ ଏ ଦେବ ନୃପରାଣ ।
ଅଶୀ ସହସ୍ର ବରଷ ଅଟେ ଏହା ଆୟୁ
ଅଧେ ଭୋଗ କଲାଣି ଏ ଏବେ ପରମାୟୁ ।
ଶୁଣି ଲୋକେ ବୋଇଲେ ଏକେତେ କାଳବୁଢ଼ା
ଭେଣ୍ଡିଆ ଲୋକ ପରାୟେ ବାହୁଛି ତ ଘୋଡ଼ା ।
ଏରୂପେ କହି ହୁଅନ୍ତି ଲୋକେ କଥାମାନ
କହୁଁ କହୁଁ ଦାଣ୍ଡଯାକେ ପୁରିଗଲେ ଜନ ।

ବରୁଣ ରାଜାର ପୁରେ ଯେତେ ସ୍ତିରୀ ଥିଲେ
ସମସ୍ତେ ଶ୍ରୀନୃସିଂହଙ୍କୁ ଦରଶନ କଲେ ।
ମାନିତା ଯେ ଗଉରବ ସର୍ବେ ଏକ ହୋଇ
ଶ୍ରୀନୃସିଂହ ଦେଖିବାକୁ ବେଗେ ଗଲେ ଧାଇଁ ।
ପରମ ଦୟାଳୁ ଶ୍ରୀନୃସିଂହ ପ୍ରଭା ଦେଖି
ପେଲାପେଲି ହୋଇ ଧାଇଁଛନ୍ତି ସର୍ବସଖୀ
ବିଷ୍ଣୁ ପଦ୍ମ ପାଦେ ଅଛି ସର୍ବ ମନପଶି
ଦେଢ଼ଶୂର ଭାଇବୋହୂ ହେଲେ ମିଶାମିଶି ।
ବିଷ୍ଣୁ ଭକ୍ତିରେ ସବୁନି ମନ ଅଛି ଗଳି
ଭୋଳେ ଧାଇଁଛନ୍ତି ଭୂମିପରେ ଲଟଗାଳି ।
ବୁଝ ବିଷ୍ଣୁଭକ୍ତି ମହିମାଟି କେଡ଼େ ଆଣ୍ଟ
ଧଇଲା ହେ ଭାଇବୋହୂ ଦେଢ଼ଶୂର ଓଷ୍ଠ ।
ବିଷ୍ଣୁ ଭକତିରେ ମଜ୍ଜିଚିହ୍ନି ନ ପାରିଲା
ଝିଙ୍କି ଦେଢ଼ଶୁର ବେନିହସ୍ତକୁ ଧଇଲା ।
ବୋଇଲା ଅଟ ତୁମ୍ଭେ ତ ମହତ ପୁରୁଷ
ପରଲୋକ ହିତପ୍ରାୟେ ଦିଶେ ତୁମ୍ଭ ଆସ୍ୟ
ସଂସାରରେ ପରହିତେ ଯେତେ ଲୋକଥାନ୍ତି
ତାଙ୍କୁ ସବୁଲୋକେ କରୁଥାଆନ୍ତି ସ୍ତୁତି ।
ଏଣୁ ତୁମ୍ଭର ଚରଣେ ପଶୁଛି ଶରଣ
ମୋତେ ନେଇଣ ଦେଖାଅ ବେଗେନାରାୟଣ
ଲୋକଙ୍କ ଭିତରେ ମୁହିଁ ନ ପାରିଲି ପଶି
କନ୍ଧରେ ବହିଣ ମୋତେ ଦେଖା ବ୍ରହ୍ମରାଶି ।
ଦାଣ୍ଡେଲୋକ ପୂରିବାରେ ନ ପାରେ ମୁଁ ଯାଇ
ଦେଖିବି ମୁଁ ତୁମ୍ଭେ କୃପାକଲେଭାବଗ୍ରାହୀ ।
ଏରୂପେ କହନ୍ତେ ଭୋଳହୋଇ ଭାଇବୋହୂ
ଦେଢ଼ଶୂର ନ ଚିହ୍ନି ଯେବୋଲେ କଥା ହେଉ
ଆକୁଳ ଦେଖି ତାହାର ଦେଢ଼ଶୂର ଜାଣ
ମନେପାଞ୍ଚଇ ମୋହର କେଡ଼େ ଭାଗ୍ୟ ପୁଣ
ମୁଁ ହେଲେ ବିଷ୍ଣୁଙ୍କୁ ଦେଖି ନପାରନ୍ତି ପଶି
ଏ ସ୍ତିରୀକର୍ମେ ଦେଖିବି ଅବା ବ୍ରହ୍ମରାଶି ।
ବୁଝିଲେ ତ ପରହିତେ ବହୁ ଧର୍ମ ଅଛି
ଏହାକୁ ନେଲେ ବହି ଯେ ଦୋଷ ନାହିଁକିଛି
ମୁହିଁତ ଅଟେ ସବଳ ଏହୁ ଅଟେ ସ୍ତିରୀ
ଦୁହିଁଙ୍କ କର୍ମେ ଦେଖିବୁ ଅବା ଆମ୍ଭେ ହରି
ଏତେ ବୋଲିଣ କନ୍ଧରେ ବହି ତାକୁ ନେଲା
ନୃସିଂହ ପ୍ରଭୁ ଛାମୁରେ ଉଭା କରିଦେଲା ।
ଶ୍ରୀମୁଖ ଦେଖିଣ ଦୁହେଁ ହେଲେ ପରିତ୍ରାଣ
ଭାଇବୋହୂ ଦୋଷ ତହିଁ ନଲାଗିଲା ପୁଣ ।

ଦେଢଶୂର ଦେହରେ ଯେ ମନ୍ଦବ୍ୟାଧିଥିଲା
ଶ୍ରୀନୃସିଂହ ଦର୍ଶନରୁ ତାହା କ୍ଷୟଗଲା ।
ଦୁହେଁ ବିଷ୍ଣୁଙ୍କୁ ଅଜଣା ହୋଇ ଦେଖିଯାଇ
ଭାଇବୋହୂ ଛୁଆଁ ଦୋଷ ନ ଲାଗିଲା ତହିଁ
ପରମଦୟାଳୁ ସେ ନୃସିଂହ ଆଦିମୂଳ
ଦର୍ଶନ ପାଇଣ ରୋଗୀ ହୋଇଲା ନିର୍ମଳ ।
ଏ ରୂପେ ସମସ୍ତେ ହେନ୍ତି ଭଲ ଭକ୍ତି କଲେ
ପ୍ରଭୁ ମହିମା ଶୁଣି କି ଅଛି ଆଉ ଭଲେ ।
ନୀଳଗିରି ବଡଦାଣ୍ଡେ ଯେହ୍ନେ ନରନାରୀ
ପେଲାପେଲି ହୋଇଣ ଯେ ଦରଶନ କରି ।
ସେହିରୂପେ ନରନାରୀ ବରୁଣର ପୁରେ
ପେଲିପେଲି ହୋଇଯାନ୍ତି ବର ଦେଖିବାରେ
ଲୋକ ଗହଳେ ଧାମନ୍ତେ ପଶି ଏକନାରୀ
ଅଙ୍ଗରୁ ବସନ ଖସି ଗଲାକ ବାହାରି ।
ଉଲଗ୍ନ ହୋଇଣ ଦାଣ୍ଡେ ଧାମନ୍ତେ ତରୁଣୀ
ଚିତ୍ତକୁ ରଞ୍ଜାଇ ହୋଇଅଛି ଭୋଳ ପୁଣି ।
ପଡି ଉଠି ଧାଇଁ ଦେଖନ୍ତେ ସେ ପ୍ରଭୁଭୋଳେ
ଦେହରେ ତ ଚେତା ଆସି ପଶିଲାସେକାଳେ
କିକରିବି ବୋଲି ସେହୁ ଲୋଡନ୍ତେ ବସନ
ତକ୍ଷଣେ ତାହାକୁ କୃପାକଲେ ଭଗବାନ ।
ଶୂନ୍ୟରେ ଦିବ୍ୟ ଶାଢୀ ତାହସ୍ତେ ଦେଲେ ଆଣି
କେହି ଦେଖିନାହିଁ ସେ ଉଲଗ୍ନ ହେଲାପୁଣି
ଧନ୍ୟ ନୃସିଂହ ମହିମା ଅଟେ ଏଡେ ଜାଣ
ଯେ ଯେତେ ଭାବେ କରନ୍ତି ତେତେ ତାକୁପୁଣ
ନୃସିଂହ ମହିମା ନାହିଁ କାହାକୁ ଯେ ଜଣା
ଦୁବକୁ ଦାରୁ କରନ୍ତି ଗୁଣ ଅକଳନା ।
ଆବର ସ୍ତିରୀଏ ଜଣେ ଅନ୍ଧପୁତ୍ର ଧରି
ନୃସିଂହ ଦର୍ଶନେ ଧାଇଁଅଛି କାଖକରି ।
ଲୋକଙ୍କ ଗହଳେ ଭିଡେ ନ ପାରଇ ପଶି
ସବୁରି ପଛରେ ପଡି କାନ୍ଦେ ଶୁଭ୍ରକେଶୀ ।
ବୋଲଇ ଅନ୍ଧ ତୁ ଯେବେ ନୁହନ୍ତୁରେ କାଖ
ମୁଁ ଅବା ଦେଖନ୍ତି ପେଲି ପଶି ପଦ୍ମମୁଖ
ତୋତେ ଛାଡିଣ କିରୂପେ ଯିବିରେ ନନ୍ଦନ
କାଖରୁ ଖସିଲେ ପାଦେ ଚକଟିବେ ଜନ ।
ଦାଣ୍ଡରେ ଦେଖ ଲୋକେ ତ ପଡୁଛନ୍ତି ମାଡି
ତୋତେ ଦାଣ୍ଡେ ବସାଇ କିରୂପେ ଯିବି ଛାଡି
ଲୋକଭିଡେ ପଡି ମରି ତୁହି ଯେବେ ଯିବୁ
ମୋତେ ଆଗ ମାରିଦେଇ ପଛେ ଦେଖ ସବୁ
ଏଣୁ କାଖକରି ତୋତେ ଧରିଛି ମୁଁ ଭିଡି
ଦାଣ୍ଡେ ଛାଡିଗଲେ ଲୋକେ ଯିବେ ଦଳିମାଡି
ତୁହି ତ ଅଟୁରେ ଅନ୍ଧ ମୁହିଁତ ନିର୍ବଳ
ତେଣୁ ଆମ୍ଭଙ୍କୁ ଦେଖା ନ ଦେଲେ ଆଦିମୂଳ
ତୁ ଅବା ନଥିଲେ ଯାନ୍ତି ଭିତରେ ମୁଁ ପଶି
ପେଲା ଗୁଞ୍ଜା ହୋଇ ଦେଖନ୍ତି ବା ବ୍ରହ୍ମରାଶି
ସବୁ ଲୋକଙ୍କୁ ଦର୍ଶନ ଦେଲେ ମହାପ୍ରଭୁ
ଆମ୍ଭ ବେନି କର୍ମ ଏହା ଅଭାଗ୍ୟରେ ବାବୁ ।
ତଥାପି ତ ଘରେ ରହିଥାନ୍ତୁ ଯେବେ ତୁହି
ଏକା ଆସିଥିଲେ ଅବା ଦେଖିଥାନ୍ତି ମୁହିଁ ।
ଅନ୍ଧ ବୋଲେ ମାତା ଯେବେ ଏମନ୍ତଟି ହେଲା
ମୋତେ ଘରେ ଛାଡିଦେଇ ଯାଅ ତେବେ ଭଲା
ଶୁଣିଣ ଅନ୍ଧ ଜନନୀ ପୁତ୍ରହସ୍ତ ଧରି
ବୋଇଲା ତୋତେ ଛାଡିଲେ ଆସିବି କିକରି
ତୋତେ ଛାଡି ଆସୁ ଆସୁ ପ୍ରଭୁ ଯିବେ ଚଳି
ଏଥକୁ ତ କାଳ ନାହିଁ ମରିବା ନା ଭାଳି ।
ତୋତେ ମୁହିଁ ଯେଉଁ ଦିନୁ ଗର୍ଭୁ ଜାତ କଲି
ଆର୍ତ୍ତତ୍ରାଣ ବୋଲି ତୋର ନାମଗୋଟି ଦେଲି
ଶ୍ରୀହରିର ନାମ ଯେଣୁ ଆର୍ତ୍ତତ୍ରାଣ କହି ସବୁରି
ଆରତତ୍ରାଣ ସେହି ଭାବଗ୍ରାହୀ ।
ସବୁଲୋକର ଆରତ ଶୁଣନ୍ତି ଯେ ବାବୁ
ଲୋକ ଗହଳ ଘେନି ନ ଦେଲେ ଦେଖାପ୍ରଭୁ
ତଥାପି ଦାଣ୍ଡରେ କେତେ ଲୋକଛନ୍ତି ପୂରି
ତେଣୁ ଆମ୍ଭଙ୍କୁ ଅଦୃଶ୍ୟ ହେଲେ ନରହରି ।
ଲୋକ ପୂରି ଦେଖିବାରେ ନାହିଁ ଥଳକୂଳ
ତେଣୁ ସେ ପ୍ରଭୁର ଦୃଷ୍ଟି ହେଲା ଆଡୁଆଳ ।
ଅନ୍ଧ ବୋଲେ ମାତା ଆଗୋ କି କରିବି ମୁହିଁ
ହୁଡିଣ ମୋତେ ଆରତ ନାମ ଦେଲୁ ତୁହିଁ ।
ମୋର ଛାର ଅକ୍ଷତକୁ ଏ ନାମ ଗୋ ଦେଲୁ
ଆରତତ୍ରାଣଙ୍କ ତୁଲେ ମୋତେ ସମକଲୁ ।
ମୁହିଁ ଦୀନ ଦୁଃଖୀ ଅଟେ ମୂର୍ଖ ଦୀନଜନ
ଆର୍ତ୍ତତ୍ରାଣ ବୋଲି ଦେଲୁ କାହିଁକି ତୁ ନାମ
କେଡେ ପ୍ରଭୁ ତୁଲେ ମୋତେ ମିତ୍ର କରାଇଲୁ
ଆମ୍ଭ କୁଡିଆକୁ ବଇକୁଣ୍ଠ ସମ କଲୁ ।
ତୋ ଘରେ ଖୋଜିଲେ ଶିକା ଖଣ୍ଡିଏ ନଥିବ
ସଚରାଚରର ପ୍ରଭୁ ଅଟେ ବାସୁଦେବ ।
ଆମ୍ଭର କି ବୋଲି ଲୋକବୋଲିବେ ଯେହରି
ଏହା ନ ବୁଝି ଆରତ ହୋଇଲୁ କି କରି ।

ମୋ ଛାର ତେଡେ ନାମକୁ ଅଟେ ଏଡେ ଭଳି
ଏଣୁ ତୋତେ ଦେଖାଯେନ ଦେଲେ ବନମାଳୀ
ଆବର ବୋଇଲୁ ଜନ ବହୁତ ଯେ ହେଲେ
ତାଙ୍କ ମଧ୍ୟରେ ଆମ୍ଭଙ୍କୁ ହରି ପାସୋରିଲେ ।
ବୁଝିଲେ ତ ସର୍ବତ୍ର ସେ ଅଛନ୍ତି ଯେ ପୂରି
ନ ଥିଲେ ଗଜ ଆତଙ୍କୁ ରଖିଲେ କି କରି ।
କାହିଁ ଥିଲା ଗଜ କାହିଁ ଥିଲେ ନାରାୟଣ
ଡାକିଲା ମାତ୍ରକେ ଚକ୍ର ପେଷିଲେ ତକ୍ଷଣ ।
ଗ୍ରାହକୁ ନିବାରି ପୁଣି ଗଜ ଉଦ୍ଧାରିଲେ
ଏ କଥା ଜନନୀ ଗୋ ନ ଜାଣୁ ତୁହି ଭଲେ
ଗଜଠାରୁ ଥିଲେ ଲକ୍ଷେ ଯୋଜନାରେ ହରି
ମଧ୍ୟେ ଆଡୁଆଳ ଥିଲା ଲକ୍ଷେ ଯୂଣ ଗିରି ।
ସେ ଗଜର ଡାକ ଶୁଣି କର୍ଣ୍ଣେ ଆଦିମୂଳ
ଏ କଥା ଜନନୀ ଆଗୋ ବୁଝି କାଳକାଳ ।
ଆତଙ୍କ ଲୋକର ଡାକ ଭିତରୁ ସେ ଜନ୍ମ
ଆତଙ୍କୁ ତାରି ରଖନ୍ତି ତାକୁ ପରଂବ୍ରହ୍ମ ।
ବୁଝିଲେ ତ ତୋର ଦୃଷ୍ଟି ଆଗେ ଛନ୍ତି ହରି
କାହିଁକି ତୁ ଏତେ ଭାଳୁ ମନେ ଚିନ୍ତାକରି ।
ଏରୂପେ ହୁଅନ୍ତେ ମାତା ପୁତ୍ର କଥାମାନ
ସେ କଥା ଜାଣିଲେ ଅନ୍ତର୍ଯ୍ୟାମୀ ଭଗବାନ
ଗରୁଡକୁ ବୋଇଲେ ହେ ବିନତାର ସୁତ
ଅଙ୍କ ବାଙ୍କ ହୋଇ ଚାଲ ପହଣ୍ଡକ ମାତ୍ର ।
ଇଶାନ ମୋଡ ହୋଇଣ ଚାଲିଗେଲେ ଗେଲେ
ଅନ୍ଧକୁ ଯେ ଦେଖା ଦେଇ ଆସିବ ତତ୍କାଳେ
ଏଡେ ଅନ୍ଧ ଦେଖ ଧରି ଆସିଛି ତା ମାତା
ବସିଛି ଆକୁଳେ ଲୋଡି ବିଷ୍ଣୁ କରି ଚିନ୍ତା ।
ଚାଲ ଆହେ ବୈନତେୟଅନ୍ଧେ ଦେଖାଦେଇ
ଦେଖୁ ସେ ତୋହର ଘେନି ଚରାଚର ମହୀ
ଶୁଣି ଖଗେଶ୍ୱର ଶ୍ରୀନୃସିଂହ ସ୍ୱାମୀ ବୋଲେ
ଅଙ୍କ ବାଙ୍କହୋଇ ଚାଲଇ ସେ ଗେଲେଗେଲେ
ଆସୁ ଆସୁ ସେ ଗରୁଡ ପାଞ୍ଚେ ମନେ ହସି
ବିଚାରେ ଅନ୍ଧ ଦେଖିବ କିସ ବ୍ରହ୍ମରାଶି ।
ତଥାପି ଅନ୍ଧର ତ ନ ଦିଶେ ବେନି ଡୋଳ
ସେ କିସ ଦେଖିବ ବୋଲି ଯାନ୍ତି ଆଦିମୂଳ ।
ଜନମକାଳରୁ ତାର ନାହିଁବେନି ଚକ୍ଷୁ
ଏ କଥା ପୂର୍ବୁ ଶୁଣିଛି ମୁହିଁ ଲୋକମୁଖୁ ।
ମାତାକୁ ଧରି ହସ୍ତରେ ସେହି ଦାଣ୍ଡେ ଦାଣ୍ଡେ
ବୁଲିଣ ମାଗଇ ଭିକ୍ଷା ବରୁଣର ଦାଣ୍ଡେ ।

ସେ କାଳେ ମୁଁ ଅନ୍ଧକଥା ଶୁଣିଥିଲି ମାତ୍ର
ଏବେ ସେ ଏଠାକୁ ଆସିଛନ୍ତି ମାତା ପୁତ୍ର ।
ବୁଝିବା ତ ତେବେ ଆଜ ନୃସିଂହ ମହିମା
ଦେଖିବ କେସନେ ଅନ୍ଧ ଚରାଚର ସୀମା ।
ଏରୂପେ ପାଞ୍ଚନ୍ତେ ପକ୍ଷୀବର ମନେ ମନେ
ସେ କଥାକୁ ଅନ୍ତର୍ଯ୍ୟାମୀ ଜାଣିଲେ ଯତନେ ।
ବୈନତେୟ ଆଞ୍ଚୁଣି ନ କରି କଥାସ୍ଫୁଟ
ଯତନରେ ଆସି ମିଳିଗଲେ ହୋଇ ହୃଷ୍ଟ ।
ଦେଖିଣ ଅନ୍ଧଜନନୀ ଯୋଡି କରପତ୍ର
ବୋଇଲା ନିସ୍ତରି ଏବେ ଗଲି ପଦ୍ମନେତ୍ର ।
ପୁତ୍ରକୁ ବୋଲେ ଦେଖିଲୁ କିରେ ବାପ ତୁହି
ଅନ୍ଧ ବୋଇଲା ମାତା ଗୋ କିଛି ଦିଶୁନାହିଁ ।
କେବଳ ନୃସିଂହ ଚାଲି ଆସିବାର ଆଣ୍ଟେ
ଏତେକ ଶବଦ ଶୁଭୁଅଛି କର୍ଣ୍ଣପୁଟେ ।
କିରୂପେ ସେ ବିଜେ ଆସି କଲେ ଭଗବାନ
ଲୋକେ ବୋଲୁଛନ୍ତି ମାତ୍ର ଗରୁଡ ଆସନ ।
ଆବର ଦାଣ୍ଡେ ଶୁଭୁଛି ମାତ୍ର ତୁଣ୍ଡରାବ
ମୋତେ ସେ ଶୁଭଇ ରାବ ହରି ବୋଲି ଭାବ
କମଳାବିହାରୀ ପ୍ରଭୁ କମଳଲୋଚନ
ଶ୍ରୀଗୋବିନ୍ଦ ଗଦାପାଣି ଶ୍ରୀମଧୁସୂଦନ ।
ଏମାନ ଶୁଣି ଲାଗୁଛି ମୋତେ ମଧୁରୁଚି
ଆଉ ଅଶ୍ୱଙ୍କ ଗର୍ଜନ ଚାଲି ପ୍ରକାଶୁଛି ।
ରଥ ଗଜ ସୈନ୍ୟ ବିପ୍ରଙ୍କର ବେଦଧ୍ୱନି
ମହୁରୀ ଶଙ୍ଖ ଶବଦେ କମ୍ପେ ପୁର ତିନି ।
ମୋତେ କାଖକରି ଆଣିଥିଲୁ ଯେବେ ଜାଣ
ଶୁଣୁଛି ବିଜେକରି ସେ ପ୍ରଭୁ ନାରାୟଣ ।
ନେତ୍ର କାହିଁ ମୋର କିସ ଦେଖିବି ଯେ ଆଉ
ସୁଭାଗ୍ୟ ଥିଲାକୁ ମାତ୍ର ଜନ୍ମିଲି ତୋ ଦେହୁ ।
ମାନବ ଦେହ ଧରିଣ ମୁଞ୍ଚେ ହେଲି ଜାତ
ନେତ୍ରେ ନ ଦେଖି ହରିଙ୍କୁ ଜିହ୍ୱାକରେ ନୃତ୍ୟ
ମାତା ବୋଇଲା ପୁତ୍ରରେ ଶୁଣ ମୋର ଧନ
ଆଗେ ବିଜେ କରିଛନ୍ତି ପ୍ରଭୁ ଭଗବାନ ।
ଶଙ୍ଖ ଚକ୍ର ଗଦା ପଦ୍ମ ଶୋଭାପାଏ କର
ଗରୁଡେ ବିଜୟ କରିଛନ୍ତି ଚକ୍ରଧର ।
ନୟନ ତରାଟି ବେଳେ ଚାହଁରେ ମୋ ବାପ
ଆରତତ୍ରାଣର ଏବେ ଦେଖ ନିଜରୂପ ।
ବେନି ଚକ୍ଷୁକୁ ବିସ୍ତାରି ଫାଡି ଧର ବଳେ
ଶ୍ରୀମୁଖ ଦେଖ ଚକ୍ଷୁକୁ ଦିଶିବ ତତ୍କାଳେ ।

ଏରୂପେ ମାତା ତାହାର ପୁତ୍ରେ କହୁଁ କହୁଁ
ଅନ୍ଧର ହୃଦୟେ ଆସି ବିଜେ ମହାବାହୁ ।
ମାତାର ବାକ୍ୟକୁ ବଳା ଗୁରୁପ୍ରାୟ ମଣି
ଚାହାନ୍ତେ ନେତ୍ରକୁ ଫେଡ଼ି ଦିଶେ ଚକ୍ଷୁ ବେନି
ଦିବ୍ୟଚକ୍ଷୁକୁ ପ୍ରଭୁତା ଦେଲେ ନେତ୍ରେ ଥାଇ
ଚାହାଁନ୍ତେ ଦିଶିଲେ ତାର ଆଗେ ଭାବଗ୍ରାହୀ
ଦେଖିଲା ଅନ୍ଧ ଆଗରେ ଦିଶେ ଚକ୍ରଧାରୀ
ଖଗବାହନେ ଅଛନ୍ତି ପ୍ରଭୁ ବିଜେକରି ।
ପୁତ୍ର ବୋଲଇ ଦେଖିଲି ମାଗୋ ଭାବଗ୍ରାହୀ
ହୁଅଇ କି ନ ହୁଅଇ ଚିହ୍ନାଇଦେ ତୁହି ।
ଜନ୍ମରୁ ଆଜିଯାଏ ନ ଥିଲି ଦିନେ ଦେଖି
ସବୁରି ମୁଖେ ଶୁଣି ମୁଁ ଭଜେ ପଦ୍ମଆଖି ।
ମାତାବୋଲେ ଦେଖ ପୁତ୍ରତୋର ଆଗେ ହରି
ବେଗେ ତୁହି ନମ ପାଦେ ଯିବେ ବିଜେକରି
ଗରୁଡ଼ ବାହନେ ବସିଛନ୍ତି ମହାପ୍ରଭୁ
କର ଆରେ ଦଣ୍ଡବତ ମନେ ପାଞ୍ଚି ବାବୁ ।
ଶୁଣିଣ କୁମର ମଣି ପାଦତଳେ ପଡ଼ି
ଶ୍ରୀମୁଖକୁ ଦେଖି ସେହୁ ଧରେ ପାଦଯୋଡ଼ି ।
ଦରାଣ୍ଡି ଶ୍ରୀ ପଦ୍ମପାଦ ତଳୁ ଧୂଳି ଆଣି
ବୋଳି ହୋଇଲା ଶରୀରଯାକ ପୁତ୍ରମଣି ।
ଶ୍ରୀପାଦପଦ୍ମ ଚିହ୍ନିଣ ଚୁମ୍ବେ ମକରନ୍ଦ
ମାତାକୁ ବୋଲେ ଦେଖିଲି ମୁହିଁ ପୂର୍ଣ୍ଣାନନ୍ଦ
ମାତା ବୋଇଲା କହରେ କାହିଁଛନ୍ତି ବସି
ପୁତ୍ର ବୋଲେ ଖଗାସନେ ବିଜେ ବ୍ରହ୍ମରାଶି ।
ମାତା ବୋଲେ କହ ବିଷ୍ଣୁ ଦେହେ କିସଅଛି
ଅନ୍ଧ ବୋଲେ ଅଷ୍ଟାଦଶ ଚିହ୍ନ ବିରାଜୁଛି ।
ମାତାବୋଲେ ପୁତ୍ର ଆଉ କି କି ଦିଶେ କହ
ଶୁଣିଣ ଅନ୍ଧ ତହିଁକି ହସେ ଟହ ଟହ ।
ବୋଇଲା ଜନନୀ ଆଗୋକହେ ଶୁଣ ତୋତେ
ଅପ୍ରତେ କହୁଛୁ କି ନ ଦିଶେ ବୋଲିମୋତେ
ଶ୍ରୀହରି କୃପାରୁ ମୋତେ ଦିଶୁଛି ଯାବତ
ତାହାଙ୍କର ନାମମାନ କହେ ଶୁଣ ମାତ ।
ପ୍ରଥମେ ଶୁଣ ଗୋ ମାତା କହୁଛି ଭୂଲୋକ
ଭୁବ ସ୍ୱହ ମହ ଜନ ତପ ଲୋକଯାକ ।
ଭୂତଳ ସୁତଳ ମହାତଳ ଯେ ପାତାଳ
ରସାତଳ ତଳାତଳ ଅତଳ ବିତଳ ।
ଆବର ବରୁଣ ପୁରେ ଛନ୍ତି ଯେତେ ଲୋକ
ଗଜ ଅଶ୍ୱ ନର ଆଉ ପଦାତି ଯେତେକ ।

ଛାୟାମଣ୍ଡପ ନୃସିଂହ ଆଉ ବିଭା ଦେବୀ
ସମୁଦ୍ରର ସହିତରେ ଯେତେ ନଦ ନଦୀ
ଆକାଶରେ ଦିଶୁଛନ୍ତି ଚନ୍ଦ୍ର ସୂର୍ଯ୍ୟ ଜାଣ
ସ୍ୱର୍ଗରୁ ଆସୁଅଛନ୍ତି ସର୍ବ ଋଷିଗଣ ।
ଅଠାଶୀ ସହସ୍ର ଋଷି ଦେବଗଣ ଆଦି
ବ୍ରହ୍ମା ସହିତରେ ବସିଛନ୍ତି ଛାୟାଦେବୀ ।
ମାତା ବୋଲେ ପୁତ୍ର ନରସିଂହ କେଡ଼େ ପ୍ରଭୁ
ତାହା କୃପାରେ ଦିଶିଲା ଜାଣ ତୋତେ ସବୁ
ଆଜଠାରୁ ସଂସାରରେ ଯେତେ ଅନ୍ଧହେବେ
ତାଙ୍କ ହୃଦେ ଦିବ୍ୟଚକ୍ଷୁଦେବେ ବାସୁଦେବେ
ଅନ୍ଧ ବୋଇଲା ମାତା ଏ କଥା ସିଦ୍ଧ ହେଉ
ଅନ୍ଧକୁ ଯେ ସବୁକଥା ହୃଦେ ଜଣାଯାଉ
ସବୁରି ବେନି ଚକ୍ଷୁ ଯେ ଅନ୍ଧ ବେନି ଚକ୍ଷୁ
ଏ କଥା ନିଶ୍ଚୟ ହେଉ ଗୋବିନ୍ଦ କଟାକ୍ଷୁ ।
ଏରୂପେ ସେ ମାତା ପୁତ୍ର ମନେ ବିଚାରନ୍ତେ
ରହିଲେ ସବୁରି ଅନ୍ଧ ହୃଦେ ପ୍ରଭୁ ଗୁପ୍ତେ ।
ପୁତ୍ର ବୋଇଲା ମାତା ଗୋ ପାଇଲି ମୁଁ ନେତ୍ର
କରୁଣା କଲେ ଗୋ ମୋତେ ଭଗବତୀ ପୁତ୍ର
ତୁ ଯେବେ ଗର୍ଭୁ ମୋତେ ନଥାନ୍ତୁ ଜନ୍ମକରି
ପ୍ରଳୟଯାଏ ମୁହିଁ ନ ଥାନ୍ତି ଦେହ ଧରି ।
ତୋହର ଘେନି ସିନା ଏ ଦେହ ଅଛି ପାଇ
ଶରୀର ନଥିଲେ କିଛି କର୍ମ ନ ହୁଅଇ ।
ଶରୀର ହେଲାରୁ ସବୁ କର୍ମ କରିପାରେ
ଏହି କଥା ମୂଢ଼ ପ୍ରାଣୀ ନ ଜାଣେ ସଂସାରେ
ଜନ୍ମ ନୋହିଥିଲେ ଶ୍ରୀହରିଙ୍କି ଦେଖନ୍ତି କି
ଅଣକାରେ ରହିଣ କି ଚାହାଁନ୍ତି ପୃଥ୍ୱୀକି ।
କେବେ ଜନ୍ମିବି ବୋଲି ମୁଁ ମନେ ପାଞ୍ଚୁଥାନ୍ତି
ମାତା ପିତା ଯୋଗୁ ସିନା ଜନମ ଲଭନ୍ତି ।
ଏଣୁ ଅଟନ୍ତି ସେ ମାତା ପିତା ଜୀବଦାତା
ପିତାମାତା ଘେନି ସିନା ସର୍ବେ ଦେହବନ୍ତା
ଦେହ ଧଇଲେ ଯାଇ ସେ ସବୁ ପାରେ ଅର୍ଜି
ନ ପାରେ ପିତାମାତାଙ୍କ ଋଣ କେହି ଶୁଝି ।
ଯେବେ ପିତାମାତାଙ୍କୁ ସେ ପୁତ୍ର ନ ସେବଇ
ଶ୍ରୀହରି ଦୋରେହୋ ସେ ସଦାକାଳେ ହୋଇ
ଗର୍ଭରେ ଦଶମାସ ସେ ଯେତେ କଷ୍ଟ ସହି
ପାପିଷ୍ଠ ପୁତ୍ର ଏକା ନ ମାନେ ମୂଢ଼ଦେହୀ ।
ପତ୍ନୀକି ସେ ସ୍ନେହକରି ପିତାମାତା ଗଞ୍ଜେ
ଭାରିଯା ସ୍ନେହ ବୋଉକୁ ସୁଧା ପ୍ରାୟ ଭୁଞ୍ଜେ

ଯେତେକ ରୂପେ ସେ ପତ୍ନୀ ପତିକି କହଇ
ଶୁଣି ଗଞ୍ଜୁଥାଇ ପିତାମାତାଙ୍କୁ ସେ ଯାଇ ।
ସୁପୁତ୍ରମାନେ ପତ୍ନୀର ବାକ୍ୟ ନ ଶଣନ୍ତି
ସୁପୁତ୍ର ପିତା ମାତାଙ୍କୁ ସଦା ସେବିଥାନ୍ତି ।
ସେ ପୁତ୍ରର କଦ୍ଭୁ କେବେ ଲକ୍ଷ୍ମୀ ନ ଛାଡ଼ଇ
ଶୁଣ ଗୋ ଜନନୀ ତାକୁ ପୁତ୍ର ବୋଲି କହି ।
ମାତାର ରଣ ପୁତ୍ର ନ ପାରେ କେବେ ଶୁଝି
ସୁଭାଗ୍ୟ ପାଇଲି ତୋହ ଦେହରୁ ଉପୁଜି ।
ପାଇଲି ମୁଁ ଚକ୍ଷୁଦାନ ଦେଖି ଭଗବାନ
ଚାଲ ଗୋ ଜନନୀ ଏବେ ଯିବା ନିଜସ୍ଥାନ ।
ଶ୍ରୀନୃସିଂହ ପାଦେ ମାତା ପୁତ୍ର ବେନି ସେବି
ଚଳିଲେ ଗୃହକୁ ବୋଲି ହୋଇ ଚିରଞ୍ଜୀବୀ ।
ଶ୍ରୀଗୋବିନ୍ଦ ପଦ୍ମପାଦେ ସଦା ମୋର ଆଶ
ସେ ପାଦେ ଶରଣ ପଶେ ପୀତାମ୍ବର ଦାଶ
ଅନ୍ଧର କଲା ଭକ୍ତି ମୋ ହୃଦେ ଉଦେ ହେଉ
କମଳାକାନ୍ତର ଦୟା ସବୁଦିନେ ଥାଉ ।
ଏଥିଉତ୍ତାରୁ ଗରୁଡ଼ ଯେହୁ ମହାପକ୍ଷୀ
ବୋଇଲାକ କେଡ଼େ ପ୍ରଭୁ ଅଟନ୍ତି ପଦ୍ମାକ୍ଷୀ ।
ପ୍ରତ୍ୟକ୍ଷ ଏ ବସୁବର ବିପ୍ରସୁତ ଅନ୍ଧ
ଏ ଅନ୍ଧର ନାମଗୋଟି ଅଟେ ସଦାନନ୍ଦ ।
କେତେ କରୁଣା ତାକୁ କଲେ ଭାବଗ୍ରାହୀ ।
ମାତାର ଗର୍ଭୁ ଏ ଜନ୍ମିଥିଲା ଅନ୍ଧହୋଇ ।
ଶ୍ରୀନୃସିଂହ ଦର୍ଶନରୁ ପାଇଲା ଏ ଚକ୍ଷୁ
କେତେକ ତାର ଅଟେ ଭକ୍ତି ଗୋବିନ୍ଦକଟାକ୍ଷୁ ।
ପ୍ରତ୍ୟକ୍ଷ ଅଟନ୍ତି ସ୍ୱୟଂ ବ୍ରହ୍ମ ନରହରି
ମୁରଦୈତ୍ୟକୁ ମାରିବେ ନିଶ୍ଚେ ଯୁଦ୍ଧକରି ।
ଏହାଙ୍କୁ ମାନବ ବିଷ୍ଣୁ ବୋଲେ ମୁରାସୁର
କାହାରିକି ଜଣାନାହିଁ ନୃସିଂହାବତାର ।
ମୋହଠାରୁ ବଡ଼ ମୂର୍ଖ ଅଛି କିଏ ଜାଣ
ଯାହାର ଆଦିଅନ୍ତ ନପାନ୍ତି ସୁରଗଣ ।
ଦେଖି ଆସୁଁ ମନ୍ଦମନେ ପାଞ୍ଚିଲି ମୁଁ ଯାହା
ଅବଶ୍ୟ ମନରେ ପ୍ରଭୁ ଥିବେ ଜାଣି ତାହା
ମୁଁ ଛାର ବୁଝିବି କିସ ଗୁଣ ଗୋବିନ୍ଦର
ଦେଖିଲା ମାତ୍ରେ ଫିଟିଲା ଅନ୍ଧ ଚକ୍ଷୁଦ୍ୱାର ।
ଏରୂପେ ମନରେ କ୍ଷୋଭ ପାଇ ଖଗପତି
ଗାଲରେ ସେ ମାରି ହୋଇ ମନକଲେ ଭ୍ରାନ୍ତି
ଜାଣିଲେ ସେ ଅନ୍ତର୍ଯ୍ୟାମୀ ଗରୁଡ଼ର ଚିତ୍ତ
ବୋଇଲେ ଗରୁଡ଼ମୋର ଅଟେ କେଡ଼େଭକ୍ତ
ମନରେ ପାଞ୍ଚି ପାଉଛି ଏବେ କେଡ଼େ ଲାଜ
ଶ୍ରୀମୁଖରେ ପାଦେ କହି ତୋଷିବା ନା ଆଜ
ବୋଇଲେ ହେ ଖଗେଶ୍ୱର କହିବା ତୁଶୁଣ
ମୋର ବଡ଼ପଣ ଯେତେ ତୋର ଅଟେ ଜାଣ
ତୋହର ଯେ ବଡ଼ପଣ ମୋର ଅଟେ ସବୁ
ତୁ ଜାଣୁଥିଲେ ଅଟଇ ମୁହିଁ ମହାପ୍ରଭୁ ।
ମୋହର ସେ ଆଜ୍ଞାଯାକ ତୋର ଅଟେ ଆତ୍ମ
ତୋହର ଯେ ଆତ୍ମା ମୁହିଁ ଅଟେ ପରଂବ୍ରହ୍ମ
ପତିତପାବନ ସେହୁ ନୃସିଂହ ମୁରାରି
ତାହାକୁ କନ୍ଧେ ବହି ତୁ ଅଛୁ ସେବାକରି ।
ତୋର ଯଶ କହିବାକୁ କାଳ ମୋତେ ନାହିଁ
ବରୁଣ ନଗ୍ରକୁ ଚାଲ ସଳଖି ଯେ ତୁହି ।
ଶୁଣିଣ ବୈନତେୟ ଯେ ଆଜ୍ଞା ପରମାଣେ
ପହଣ୍ଡ ବିଜୟ ପ୍ରାୟେ ଚଳେ ପକ୍ଷୀରାଣେ ।
ଏଥିଉତ୍ତାରେ ଶୁଣିବା କଥାରେ ଯେ ରସ
ଶ୍ରୀ ଭାରତୀ ମିଶ୍ରଙ୍କର ଏକ ବାଳଶିଷ୍ୟ ।
ତାରଣ ମିଶ୍ର ବୋଲିଣ ଅଟେ ତାଇ ନାମ
ମହାଶାନ୍ତଶୀଳ ସେହି ବ୍ରାହ୍ମଣ ଉତ୍ତମ ।
ଜନ୍ମରୁ ସେ ଜଡ଼ ହୋଇ ଗୃହଥାନ୍ତି ବସି
ଗୋବିନ୍ଦଙ୍କ ଚରଣରେ ଚିତ୍ତକୁ ନିବେଶି ।
ଗରୁଡ଼ ବାହନେ ବସି ଚଳନ୍ତେ ଗୋବିନ୍ଦ
ନନ୍ଦିଘୋଷ ରଥପ୍ରାୟେ ଶୁଭଇ ଶବଦ ।
ଘୁମୁ ଘୁମୁ ଘିଡ଼ିଘିଡ଼ି ଗହଗହ ବାଣୀ
ଚଳନ୍ତି ଗରୁଡ଼ କନ୍ଧେ ବସି ଚକ୍ରପାଣି ।
ଏମନ୍ତ ସମୟେ ଜଡ଼ା ଘରେ ବସିଥିଲା
ଲୋକର ଚହଳ ଶୁଣି ଦାଣ୍ଡକୁ ଧାଇଁଲା ।
ଦେଖିଲାକ ଦାଣ୍ଡେ ଯାଉଅଛନ୍ତି ନୃସିଂହ
ଡାକିବ ବୋଲି ସେ ମନ କଲା ଉଦବେଗ
ସେ କଥାଗୋଟି ତାହାର ଜାଣି ଭାବଗ୍ରାହୀ
ହୃଦୟରେ ବସିବାରେ ଶବ୍ଦଦେଲେ କହି ।
ବୋଇଲେ ଯେ ସାମବେଦ ଗାୟନ ତୁ କର
ଶୁଣିଣ ତାରଣ ମିଶ୍ର ଯୋଡ଼ି ବେନିକର ।
ବିଷ୍ଣୁଙ୍କର ବାଣୀ ଶୁଣି କହନ୍ତି ବଚନ
ତତକ୍ଷଣେ ସାମବେଦ କରନ୍ତେ ଗାୟନ ।
ଜଡାର ସେ ବେଦପଢ଼ା ଶୁଣି ସର୍ବଲୋକେ
ହରି ହରି ଶବ୍ଦକଲେ ଯେ ଯାହାର ମୁଖେ
ଏରୂପେ ନୃସିଂହ ମହିମା ଯେ ଅଲୋକିତ
ଏହା ଅନ୍ତର୍ଯ୍ୟାମୀ ଜାଣନ୍ତି ସେ ସର୍ବ ଚିତ୍ତ ।

ମୋର ମନକଥା ଜାଣି ସେହୁ ଭଗବାନ
ହୃଦରେ ବସି କହନ୍ତି ମୋତେ ପଦମାନ ।
ଶ୍ରୀନୃସିଂହ କଟାକ୍ଷରୁ ଜଣାଯାଏ ମୋତେ
ତେଣୁ ଏହି ପୁରାଣକୁ ଲେଖିଛି ପ୍ରାକୃତେ ।
ଶ୍ରୀମହାଲକ୍ଷ୍ମୀଙ୍କ ବିଭାବିଧି ଦେବବାଣୀ
ତାହା ମୋ କର୍ଣ୍ଣେକହନ୍ତି ପ୍ରଭୁ ଚକ୍ରପାଣି ।
ଜନ୍ମରୁ ମୂର୍ଖ ମୁହିଁ ନ ଜାଣଇ ଅକ୍ଷର
ଶ୍ଳୋକ ପଢ଼ି ଚାରିମାତ୍ରା ହୁଡ଼େ ଚାରିଥର ।
ଚାରିପାଦ ଶ୍ଳୋକ ପଢ଼ି ଚାରିମାତ୍ରହୁଡ଼େ
ଏହିଭଳି ହୋଇ ସଭାରେ ମୁଁ ବିଦ୍ୟାପଢ଼େ ।
ଆଜକୁ ଗଲାଣି ପାଞ୍ଚଜନ୍ମ ମୋର ପୁଣି
ସ୍ୱପନେ କହିଲେ ଏହା ମୋତେ ଗୋସାମଣି
ଏ ଜନ୍ମ ମିଶି ମୋହର ଷଡ଼ଜନ୍ମ ହେଲା
ସାରଦା ଆଜ୍ଞାରୁ ମୁହିଁ ଲେଖେ ଏହା ଭଲା
ତଥାପି ଡରିଣ ମୁହିଁ ପୁରାଣ ଲେଖନ୍ତେ
ସ୍ୱପନେ ଚାପୋଡ଼େମାରି ଉଠାଇଲେମୋତେ
ବୋଇଲେ ଆଜ୍ଞାମୋହରଲେଖ ତୁହିବେଗେ
ନୋହିଲେଟି ପରାଭବ ଦେବି ତୋର ଅଙ୍ଗେ
ଯେଉଁଜନ ଶୁଣି ଏହା ହାସ୍ୟଟି କରିବ
ତହିଁର କଥା ଜାଣିବେ ଜାଣ ବସୁଦେବ ।
ଜନ୍ମ ଯେବେନଥାନ୍ତାକି ବିଷ୍ଣୁ ଜନ୍ମହୋନ୍ତେ
ଦଶ ଅବତାର ହୋଇ ଦୁଷ୍ଟ ନିବାରନ୍ତେ ।
ସଂସାର ମଧ୍ୟେ ସବୁରି ଜନ୍ମ ଜାଣ ଅଛି
ଗୋଚର କରିଣ ତାହା କେହି ନ ପାରୁଛି ।
ଗୋଚର ଯେବେ ହୁଅଇ କିମ୍ବା ଡ଼ରୁଥାନ୍ତା ।
ଏଣୁ ମୁଁ ଗୋଚର କଲି ତୋର ଜନ୍ମକଥା ।
ଏରୂପେ କହି ସାରଦା ଠାକୁରାଣୀ ମୋତେ
ଲେଖନ୍ତି ନୃସିଂହ ଗ୍ରନ୍ଥ ବାଣୀ ମୋରହସ୍ତେ
ଏରୂପେ କେହି ଭାଙ୍ଗିଲେ ମୋର ଭୟ ଜାଣ
ବିପ୍ର ପୀତାମ୍ବର ତାଙ୍କ ଚରଣେ ଶରଣ ।
କହୁଛନ୍ତି ଦେବବ୍ରହ୍ମା ଶୁଣ ହୋ ନାରଦ
ବରୁଣ ଦ୍ୱାରେ ମିଳିଲେଯାଇ ଆଦିକନ୍ଦ ।
ବୈନତେୟ କନ୍ଧୁ ଉତୁରିଲେ ଭାବଗ୍ରାହୀ
ପୂର୍ଣ୍ଣକୁମ୍ଭର ପାରୁଶେ ବିଜେ କଲେ ଯାଇଁ ।
ଶ୍ରୀଦେବଯାନ ରଥରୁ ଶେଷଦେବ ଉଠି
ରହିଲେକ ଉଭାହୋଇ ନୃସିଂହ ପାଖେଟି ।
ହସ୍ତୀର ଉପରୁ କୃଷ୍ଣବଲ୍ଲଭ ଓହ୍ଲାଇ
ଛାୟାମଣ୍ଡପର ତଳେ ବିଜେ କଲେ ଯାଇ ।
ସୁଜାଣ ମନ୍ତ୍ରୀ କର୍ଣ୍ଣାଟେଶ୍ୱର ମହାରାଜା
ଆସନେ ବସିଲେ ତୋଷେ ପାଇ ପାଦପୂଜା
ଏଥୁ ଉତ୍ତାରେ ବଶିଷ୍ଠ ମୁନିବର ପୁଣି
ବରୁଣେ ଡାକି କହିଲେ ନିତ୍ୟାଚାର ବାଣୀ ।
ବୋଇଲେ ବରଙ୍କୁ ବରିଆଣ ବେଗେଦାଣ୍ଡୁ
ବେଦୀରେ ବସି ଶୁଣିବ ମନ୍ତ୍ର ବିପ୍ରତୁଣ୍ଡୁ ।
ଅମୃତ ବେଳରେ ବିଭା କରିବା ଏ ଦୁଇ
ଯୋଗାଡ଼ ଘେନି ବେଦୀରେ ବସି ସଜହୋଇ
ନୃସିଂହ ଶେଷଦେବ ଯେ ବିଭାଶୁଭ ଯୋଗେ
ପୁଣି ରତ୍ନାକର ରାଜା ଗଲେ ଉଠି ବେଗେ ।
ସୁବର୍ଣ୍ଣ ଥାଳୀରେ ମହାପ୍ରସାଦ ପୂରାଇ
ମିଳିଲେ ଋଷିମାନଙ୍କୁ ଘେନି ଦ୍ୱାରେ ଯାଇ ।
ସେ ପୂର୍ଣ୍ଣକୁମ୍ଭକୁ ପାଶେ ଯାଇ ବିଜେ କଲେ
ଶ୍ରୀନୃସିଂହପାଦେ ନେଇପାଦ୍ୟଅର୍ଘ୍ୟ ଦେଲେ
କର୍ପୂର ଚନ୍ଦନ ଦେଲେ ଲଲାଟର ଚିତା
ଖଞ୍ଜିଲେ ନାନାଦି ପୁଷ୍ପମାଳା ଅପ୍ରମିତା ।
ସୁବର୍ଣ୍ଣର କଣ୍ଠିମାଳ ହୃଦେ ଲମ୍ବାଇଲେ
ଏମନ୍ତ ପ୍ରକାରେ ଶେଷଦେବ ନିମନ୍ତ୍ରିଲେ ।
ବେନି ଭାଇଙ୍କର ହସ୍ତ ଧରି ରତ୍ନାକର
ଦାଣ୍ଡୁ ବରିକରି ନେଲେ କମଳାଙ୍କୁ ବର ।
ଆଶୁଃଶିଶାନ କାଣ୍ଡିକି ବିଶିଷ୍ଠ ଯେ ପଢ଼ି
ଦେବୀପରେ ବସାଇଲେ ପୀଢ଼ା ଗୋଟି ପାଡ଼ି
ବେନି ଭାଇ ବେନି ବେଦୀ ହୋଇଅଛି ନିର୍ଭା
ଜଗନ୍ନାଥ ବଳଭଦ୍ର ପ୍ରାୟ ଦିଶେ ଶୋଭା ।
ଉତ୍ତର ଦେବୀରେ ନରସିଂହ ବିଜେ କଲେ
ଦକ୍ଷିଣ ଦେବୀରେ ଶେଷଦେବେ ବସାଇଲେ
ବସିଲେ ଅଠାଶୀସସ୍ର ଋଷି ସଭା କରି
କୃଷ୍ଣବଲ୍ଲଭ ରାଜାଙ୍କୁ ବଶିଷ୍ଠେ ପଚାରି ।
କନ୍ୟାଘର ପୁରୋହିତ ଆମ୍ଭେ ଯେ ହୋଇଲୁ
ବରୁଣପୂଜା କରି ସଂକଳ୍ପ ଉଚ୍ଚାରିଲୁ ।
ତୁମ୍ଭ ପୁରୋହିତ କେହୁ ଆସିଛନ୍ତି କହ
ବିଭାକଥାରେ କାହିଁକି ହେଳାକରି ରହ ।
କଥାବାର୍ତ୍ତା ହୋନ୍ତେ ଲଗ୍ନ ସିନା ଯିବଖସି
କରନ୍ତୁ ବରୁଣ ପୂଜା ପୁରୋହିତେ ବସି ।
ଶୁଣିଣ କୃଷ୍ଣବଲ୍ଲଭ ହସିଲେ ଅଳପ
ଋଷିମାନେ ଅଟନ୍ତି ଯେ ମୋର କୁଳଦୀପ ।
ଅଟନ୍ତି ସର୍ବଲୋକଙ୍କ ତାତ ବେଦବର
ସେ ଏକା କରିବେ ବିଭା ନୃସିଂହଙ୍କୁ ମୋର

ଏହାଶୁଣି ଦେବବର ମନେ ବଡ଼ ହସି
ବୋଇଲେ ଧନ୍ୟ ଏ ରାଜାଅଟେ ସୂର୍ଯ୍ୟବଂଶୀ
ସର୍ବ ଋଷିଙ୍କୁ ଘେନିଲା ସେହୁ ସମ କରି
ଏକା ପଦକେ ବୋଧିଲା ମନ ସବୁଙ୍କରି ।
ପିତା ଆଗେ ପୁତ୍ରକୁଯେ ପରଶଂସା କରେ
ସେ ପିତାର ମନ ଶ୍ରଦ୍ଧା କହିଲେ ନ ସରେ
ମାତା ଆଗେ ପୁତ୍ରକୁ ଯେ ପରଶଂସା କରେ
ସେ ପିତାର ମନ ଶ୍ରଦ୍ଧା କହିଲେ ନ ସରେ
ମାତା ଆଗେ ଝିଅକୁ ସେ ପ୍ରଶଂସାକରିଲେ
ସେ ମାତାକୁ ସ୍ୱର୍ଗତୁଲ୍ୟ ଲାଗେ ଶୁଣୁଥିଲେ ।
ଶାଶୁ ଆଗେ ବଧୂକୁ ଯେ ପ୍ରଶଂସା କରଇ
ସେ ଶାଶୁର ଶ୍ରଦ୍ଧାକଥା କହି ନ ସରଇ ।
ଆମ୍ଭ ଆଗେ ଋଷିଙ୍କୁ ଯେ ପରଶଂସା କଲେ
ଏଥିରୁ ଅଧିକ ଆଉ ଶୁଣିବ କି ଭଲେ ।
ବ୍ୟାସ ବୋଇଲେ ବଲ୍ଲଭ ନୁହନ୍ତି ଯେ ସାନ
ତେଢ଼େ ନୋହିଲେ କି ଶ୍ରୀବିଷ୍ଣୁଙ୍କୁ କଲେ ଜନ୍ମ
ଅଗସ୍ତି ବୋଇଲେ ଆହେ ଏ କଥା ପ୍ରମାଣ
ତେଢ଼େ ନୋହିଲେବେଦରୁ ଜନ୍ମିଲେଟି ଜାଣ
ବ୍ରାହ୍ମଣ କୁଳରେ ଜନ୍ମି ବିଷ୍ଣୁଜାତ ହେଲେ
ଏତେ ଭାଗ୍ୟ ସଂସାରରେ ଅର୍ଜିବେକ ଭଲେ
ବ୍ରାହ୍ମଣଙ୍କ ଜନ୍ମଗୋଟି କକ୍ଷେ ମିଳଇ କି
କୃଷ୍ଣବଲ୍ଲଭ ଅନ୍ୟାୟ କହନ୍ତେ କାହିଁକି ।
ଭୃଗୁ ବୋଇଲେ ବଲ୍ଲଭ କହିଲେ ଯଥାର୍ଥ
ନୃସିଂହ ବେଭାରେ ବ୍ରହ୍ମା ହୁଅନ୍ତେ ପ୍ରୋହିତ
ବୁଝିଲେ ତ ଦେବବର ସର୍ବ ପିତାମହ
ଏହି ଏକା ବିଭାକଲେ ଫିଟିବ ସନ୍ଦେହ ।
ବୁଝିଲେ ବ୍ରାହ୍ମଣମାନେ ତର୍କ ବସିଥାନ୍ତି
ମହାବାକ୍ୟରୁ ମନ୍ତ୍ରେକ ହୁଡ଼ିଲେ ଧରନ୍ତି ।
କନ୍ଦଳ ଲାଗଇଣ ସେ କରନ୍ତି ବିବାଦ
ତେଢ଼ାତେଢ଼ି ପଡ଼ିଲେ ସେ ଘଟାନ୍ତି ପ୍ରମାଦ
ଶୁଣିଣ ମନରେ ହସି ବୋଲେ ସର୍ବ ଋଷି
ଏଥେଁ ବାଦ ନିଶ୍ଚେ କରୁଛନ୍ତି ବିପ୍ରେ ବସି ।
ବ୍ରହ୍ମା ବସିଲେ ସବୁରି ବାଦ ଯିବ ଭାଜି
ଯଥାର୍ଥ କହିଲେ ଭୃଗୁଋଷି କଥା ବୁଝି ।
ନରସିଂହ ବିଭାକୁ ତ ସର୍ବେ ଥାଇ ଆସି
ବୁଝିଲେ ତ ସୁପଣ୍ଡିତ ବୋଲି ବ୍ରହ୍ମାଋଷି ।
ଏହା ଶୁଣି ଋଷିଗଣ ସର୍ବେ ହେଲେ ହୃଷ୍ଟ
ବୋଇଲେ ଶେଷଙ୍କୁ ବିଭା କରନ୍ତୁ ବଶିଷ୍ଠ ।

ବିବାହ କରନ୍ତୁ ନୃସିଂହଙ୍କୁ ବେଦବ୍ରହ୍ମା
ସେ ସିନା ଜାଣିବେ ଚିହ୍ନି ବିଷ୍ଣୁର ମହିମା
ଏକା ଜଣେ ଗଲେ ସିନା ବିଳମ୍ବ ହୋଇବ
ଅମୃତଯୋଗ ଲଗ୍ନ ଯେ ଖସି ଚଳିଯିବ ।
ପୁଣି ବେଦବର ବୋଇଲେକ ହେଉ ହେଉ
ଭୃଗୁଙ୍କ କହିବା କଥା ସବୁଙ୍କୁ ମନାଉ ।
ଏରୂପେ ବୋଲିଣ ବ୍ରହ୍ମା ନୃସିଂହ ବେଦୀରେ
ଆସନ ଶୁଦ୍ଧି କରିଲେ ବସି ନିତ୍ୟାଚାରେ ।
ଶ୍ରୀନୃସିଂହଙ୍କୁ ଆସନ ପାଦାସନ ଦେଇ
ବେଦୀରେ ଯେ ପୂର୍ଣ୍ଣକୁମ୍ଭ ସ୍ଥାପିଲେକ ନେଇ
ବରୁଣକୁ ବୋଇଲେ ହେ ବସ ପୂର୍ବମୁଖେ
ଦଶଦିଗପାଳେ ଉଚ୍ଚାରିଣ ମହାବାକ୍ୟେ ।
ଏତେ ବୋଲି ପୂର୍ଣ୍ଣକୁମ୍ଭେ ଗନ୍ଧପୁଷ୍ପ ଦେଲେ
ଦଶଦିଗପାଳଙ୍କୁ ଯେ ପୂଜାବିଧି କଲେ ।
ନବଗ୍ରହ ପୂଜାବିଧି ସାରିଲେ ତକ୍ଷଣ
ଦେଶକାଳ ମହାବାକ୍ୟେ କଲେ ଉଚ୍ଚାରଣ
ବାର ତିଥି ନକ୍ଷତ୍ର ଯେ ଯୋଗଲଗ୍ନ ଘେନି
ବେଦଭାଗ ମନ୍ତ୍ର ପୂଜା କଲେ ପଦ୍ମ ଯୋନି ।
ବସ୍ତ୍ର ଅଳଙ୍କାର ଆଦି ଶ୍ରୀଫଳ ତଣ୍ଡୁଳ
ନୃସିଂହଙ୍କ କରେ ଦେଲେ ବରୁଣ ଭୂପାଳ
ଯାବତ ଦ୍ରବ୍ୟ ସୁବର୍ଣ୍ଣ ଥାଳି ପରେ ଥୋଇ
ଖଞ୍ଜିଲେ ଶ୍ରୀଅଙ୍ଗେଗୋଟିଗୋଟିକରେ ନେଇ
କର୍ଣ୍ଣରେ ବେନି କୁଣ୍ଡଳ ହସ୍ତେ ରତ୍ନମୁଦି
କନ୍ଧପରେ ନବଗୁଣ ପଇତା ଆଚ୍ଛାଦି ।
ବସ୍ତ୍ରେକ ପିନ୍ଧାଇ ବସ୍ତ୍ରେ ଆଭରଣ କଲେ
ତୁଳସୀମାଳ କର୍ଣ୍ଣରେ ନେଇ ଲମ୍ବାଇଲେ ।
ବୋଇଲେ ମୁଁ ନୃସିଂହଙ୍କୁ ନିଶ୍ଚେ ଦେଲିରମା
ଲକ୍ଷ୍ମୀକି ଦେଇ ଶରଣ ପଶିଲି ଶୁଣିମା ।
ବ୍ରହ୍ମା ବୋଇଲେ ଆପଣ ବଡ଼ ଭାଗ୍ୟବନ୍ତ
ଲକ୍ଷ୍ମୀକି ଘେନାଇ ଏବେ ଆସନ୍ତୁ ତ୍ୱରିତ ।
ଲବଣଚଉଁରୀ ବର ଉପରେ ପକାନ୍ତୁ
ସୁଲକ୍ଷଣୀ ହୋଇ ଯୁଗେ ଯୁଗେ ବର୍ତ୍ତିଥାନ୍ତୁ ।
ଶେଷଦେବଙ୍କୁ ବରଣ ବେଗେ ଏବେ କର
ଶୁଣିଣ ବରୁଣ ରାଜା ବରିଲେ ତତ୍ପର ।
ବିଭା ବିଧିମାର୍ଗ ଶେଷଦେବଙ୍କୁ ଯେ ବରି
ବଶିଷ୍ଠ ଋଷି ପୁଣ୍ୟାହବାଚନ ଉଚ୍ଚାରି ।
ବସ୍ତ୍ର ଅଳଙ୍କାର ପୁଷ୍ପ ଗନ୍ଧ ନେଇ ଦେଲେ
ଶେଷଦେବଙ୍କ ଶ୍ରୀଅଙ୍ଗେ ନେଇଣ ଖଞ୍ଜିଲେ

ବରୁଣ ପୂଜା କରିଣ ଅଧିବାସ କରି
ବରୁଣକୁ ବୋଇଲେ ଯେ ବଶିଷ୍ଠ ହକାରି ।
ଲବଣଚଉଁରୀକି ତୋ କନ୍ୟା ବେଗେ ଆଣ
ବର ଉପରେ ପକାଇ ଚଳନ୍ତୁ ବହନ ।
ଶୁଣିଣ ବରୁଣ ମୁହୁସୁଲୀକି ଯେ ରାଇ
ବୋଲେ କନ୍ୟାଆଣ ହସ୍ତେତଣ୍ଡୁଳଯେ ଦେଇ
ଶୁଣି ମୁହୁସୁଲୀମାନେ ହୋଇ ବେଗେ ସଜ
ଲୁଣ ତଣ୍ଡୁଳରେ ଦେଲେ କର୍ପୂରର ରଜ ।
ବେନି କନ୍ୟାଙ୍କ ହସ୍ତରେ ଆଞ୍ଜୋଳି ଯେଭରି
ଉପରେ କ୍ଷୀରୋହ୍ରୀ ପାଟ ଉପରାଣ କରି ।
ହଂସିନୀ ମୁହୁସୁଲୀ ଯେ ଲକ୍ଷ୍ମୀ ଘେନିକୋଳେ
ନୃସିଂହଙ୍କ ଉପରକୁ ଟେକି ପକାଇଲେ ।
ସେହିରୂପରେ ଶେଷକୁ ଇଳା ଠାକୁରାଣୀ
ଟେକି ଲବଣଚଉଁରୀ ପକାଇଲେ ଆଣି ।
ସୁଲଭକାମିନୀଗଣ କନ୍ୟା ଘେନିଗଲେ
ଭିତରପୁରେ ମାଜଣା ନେଇ କରାଇଲେ ।
ଏଥୁଅନନ୍ତରେ ଶୁଣ ବିଭାକର୍ମ ମାର୍ଗ
କୃଷ୍ଣବଲ୍ଲଭର କୋଳେ ମିଳିଲେ ନୃସିଂହ
ନୃସିଂହଙ୍କ ଆଗେ ଯାଇ ବସିଲେ ବରୁଣ
ବ୍ରହ୍ମାଏ ବାକ୍ୟ ପଢ଼ିଣ କଲେ ଉଚ୍ଚାରଣ ।
ଆଦ୍ୟରେ ସେ ପୂଜାକଲେ ବରୁଣଦେବଙ୍କୁ
ଗଣପତି ପୂଜାସାରି ପୂଜିଲେ ଗ୍ରହଙ୍କୁ ।
ନବଗ୍ରହ ପୂଜାସାରି ସଂକଳ୍ପ ଯେ କଲେ
ଅଷ୍ଟକୁଳା ନାଗପୂଜି ବୈଶାଳା ପୋତିଲେ
ଉଚ୍ଚାରି ନକ୍ଷତ୍ର ତାର ବାର ଯେଝାଗୋତ୍ରେ
ବିଷ୍ଟର ମଧୁପର୍କ ଯେ କଲେ ଅଷ୍ଟନେତ୍ରେ ।
କମଣ୍ଡଳୁରେ ତାବତ ତୀର୍ଥଜଳ ଭରି
ଧୋଇଲେ ବରୁଣ ନୃସିଂହଙ୍କ ପାଦଧରି ।
ବରୁଣ ପୁତ୍ରମାନେ ଯେ ପାଦପଦ୍ମ ତଳେ
ଗଡୁଆ ନଳେ ଥୋଇଣଧୋଇଲେତକ୍ଷାଳେ
ସେ ନୀରକୁ ରତ୍ନାକର ହେଲେ ନେଇବୋଲି
ବୋଇଲେ ଏ ଜଳକୁ ମୁଁ ଥିବି ସତ୍ୟେପାଳି
ନୋହିଲେ କରନ୍ତି କାହିଁପାଇଁ ଏଡ଼େଲାଖ
ଲାଖକୁ ନକଲେ ମୁଁ କିପାନ୍ତି ପାଦୋଦକ ।
ଏହି ଜଳକୁ ଚାହିଁ ମୁଁ ଆଜିଯାଏ ଥିଲି
ଚୌରାଶି ସିନ୍ଧୁରେ ମୁହିଁ ଜଣେଲେଖାହେଲି
ଏତେ ବୋଲିଣ ବରୁଣ ହସ୍ତେ ଅର୍ଘ୍ୟଧରି
ଢାଳିଲେ ଶ୍ରୀପଦ୍ମପାଦେ ଅଭିଷେକକରି ।

ଏଥିଉତ୍ତାରୁ କହିବା ଶୁଣ ବିଧିମାନ
ଆନନ୍ଦେ କରନ୍ତି ବେଦଧ୍ୱନି ବିପ୍ରଜନ ।
ଚୌରାଅଶୀ କାଣ୍ଡି ମନ୍ତ୍ର ବିଭାକୁଯେ ଲୋଡ଼ା
ଅକ୍ଷରେ ନଛାଡ଼ି ବ୍ରହ୍ମା ସବୁ କଲେ ପଢ଼ା ।
ତହିଁ ଉତ୍ତାରୁ ବରର ପାଲଟା ଯେ ଶାଢ଼ୀ
ପିନ୍ଧନ୍ତି ଏ କନ୍ୟା ବୋଲି ଦେଲେ ମନ୍ତ୍ରପଢ଼ି
ନେଇ ଶ୍ରୀଅଙ୍ଗେ କନ୍ୟାକୁ ଶାଢ଼ୀପିନ୍ଧାଇଲେ
ଦେବୀପରେ କମଳାଙ୍କୁ ବିଜେ କରାଇଲେ ।
ବସିଲେ ବରୁଣ ରାଜା କୋଳେ କମଳିନୀ
କୁସୁମ ବୃଷ୍ଟି କରନ୍ତି ଦେବେ ଶୂନ୍ୟେଆଣି
ନୃସିଂହ କୃଷ୍ଣବଲ୍ଲଭ କୋଳେ ବିଜେକଲେ
ଶଙ୍ଖରେ ଜଳ ଭରିଣ ଗୋତ୍ର ଉଚ୍ଚାରିଲେ ।
ନୃସିଂହ ଦକ୍ଷିଣ କରେ ଲକ୍ଷ୍ମୀକର ଆଣି
ମନ୍ତ୍ରି କୁଶଗ୍ରନ୍ଥୀ ବାନ୍ଧିଦେଲେ କୁଶପାଣି ।
ବରୁଣ ମହାରାଜା ଯେ ଶଙ୍ଖେ ଜଳଭରି
କନ୍ୟା ସମର୍ପିଲେ ଶ୍ରୀନୃସିଂହ କରେ ଧରି
କୁଳ ଗୋତ୍ର ଉଚ୍ଚାରନ୍ତି ପଢ଼ି ବେଦବର
ଖଞ୍ଜ ମହୁରୀ ବାଦ୍ୟ ଯେ ବାଜେ ନିରନ୍ତର
ଆନନ୍ଦେ ଦେଖନ୍ତି ଦେବତାଏ ସ୍ୱର୍ଗପୁରେ
କୁସୁମ ବର୍ଷନ୍ତି ବର କନ୍ୟାଙ୍କର ଶିରେ ।
ଦୁହିତା ସମର୍ପି ରାଜା ବରୁଣ ଯେ ଉଠି
ଅଷ୍ଟରତ୍ନେ ଯଉତୁକ ଦେଲେ କୋଟିକୋଟି
ନୃସିଂହଙ୍କ ଶିରେ ଉଡ଼େ ସହସ୍ରେ ଚାମର
ସହସ୍ରେକ ଚିରାଳ ଯେ ଉଡ଼େ ଫରଫର
ଉପରେ ସହସ୍ର ନୀଳଛତ୍ରୀ ଟେକା ହୋଇ
ଶ୍ରୀଅଙ୍ଗେ ଭୂଷଣ କଲେ ଅଳଙ୍କାର ନେଇ
ଲମ୍ବାଇଲେ ଲୋମମୂଳେତାହା ଗୋଟିଗୋଟି
ଦେଖିଲେ ଶତେକ ପଦ୍ମହେବ ଗଣିତାଟି ।
ଗରିଆ ନାହୁଆ ଗଡୁ ସୁନା ରତ୍ନ ଝରି
ହାତଧୂଆ ଗୋଡ଼ଧୂଆ ମୁଖଧୂଆ ଖୋରି ।
ଗଡୁଆ ଖୁରିକି କଂସା ସୁବର୍ଣ୍ଣ ପଲମ
ମୁଖଦେଖା ଦେଲେ ଦର୍ପଣ ସେ ନୂଆକମ
ସହସ୍ରେକ ପଦ୍ମ ଗାଈ ସହସ୍ରେ ପଦ୍ମ ହସ୍ତୀ
ସସ୍ରେ ପଦ୍ମ ବାଜୀଦେଲେ ବାରାନିଧିପତି
ଛୁରାଖଣ୍ଡା ଶାବେଳୀ ଯେ ତର୍କସ କମାଣ
ନୃସିଂହ ସୈନ୍ୟମାନଙ୍କୁ ଦେଲେ ଶସ୍ତ୍ର ପୁଣ
ଆବର ଅଷ୍ଟରତନ ମାଳେମାଳେ ଦେଲେ
ସମସ୍ତେ ନକ୍ଷତ୍ରପ୍ରାୟ ଝଟକି ଦିଶିଲେ ।

ରତ୍ନରେ ସେ ବେଶକରି ଦେଲେ ସମସ୍ତଙ୍କୁ
ଏରୂପେ ସେମାନଦେଲେ ନୃସିଂହ ସୈନ୍ୟଙ୍କୁ
ସମସ୍ତେ ଦ୍ରବ୍ୟ ପାଇଣ ସନ୍ତୋଷ ହୋଇଲେ
ଧନ୍ୟ ହୋ ବରୁଣ ରାଜା ବୋଲି ପ୍ରଶଂସିଲେ
ଶ୍ରୀନୃସିଂହସଙ୍ଗେ ଆସିଅଛୁ ଯେତେ ସୈନ୍ୟ
ସମସ୍ତେ ଦେଖିଲୁ ଏଥେ ଅଷ୍ଟଯେ ରତନ ।
ଏମନ୍ତ ବୋଲି ହୁଅନ୍ତି ଲୋକେ କୁହାକୁହି
ତେବେ ଯେ ବରୁଣ ଯଉତୁକ ସରିନାହିଁ ।
ବରକନ୍ୟାଙ୍କୁ ବନ୍ଧାନ୍ତି ଦ୍ରବ୍ୟ ପୁଣି ଆଣି
ଲକ୍ଷେ ମୁକୁତା ଆଉ ଲକ୍ଷେ ପଦ୍ମମଣି ।
ଲକ୍ଷେକମର୍କତ ଦେଲେ ଲକ୍ଷେ ଦେଲେନୀଳ
ଲକ୍ଷେକସେ ହୀରାଦେଲେ ଲକ୍ଷେମୋତି ମାଳ
ଗଜଦନ୍ତ ପଲଙ୍କରେ ଲକ୍ଷେ ଖଟଦୋଳି
ବିଚିତ୍ର ପାଟର ନିର୍ଭା ଲକ୍ଷେକ ମୁତୁଳି ।
ନାନାବର୍ଣ୍ଣରେ ଚାନ୍ଦୁଆ କମ ସୂଚୀ ଟେରା
ଅଷ୍ଟରତ୍ନ ସିଂହାସନ ପଦ୍ମରାଗ ହୀରା ।
ଭୂଜମୂଳକୁ ବାହୁଟି କମ ବିଦମାଳି
ଦିଶଇ ଅଣ୍ଟାକୁ କମ ସୁନାସୂତା ଝଳି ।
ଅଙ୍ଗୁଳିକୁ ମୁଦ୍ରିକା ଯେ କରକୁ କଙ୍କଣ
ଭୁଜକୁ ବଳୟ ମରକତ ଚହଟିଣ ।
ଶ୍ରୀଭୁଜକୁ ପଦକ ଯେ କର୍ଣ୍ଣକୁ କୁଣ୍ଡଳ
ଏହିରୂପେ ଯଉତୁକ ଦେଲେ ମହୀପାଳ ।
ଏତେ ଦେଇଣ ତୃପତି ନୋହେ ରତ୍ନାକର
ସମର୍ପିଲେ ସପ୍ତସିନ୍ଧୁ ଯୋଡ଼ି ବେନିକର ।
ତେବେ ନ ଲଭନ୍ତେ ତାଙ୍କ ମନ ତୃପତିକି
ଭଣ୍ଡାରଘରକୁ ଦେଲେ ସେ ଜଗଜ୍ୟୋତିଙ୍କି
କୁଟୁମ୍ବଯାକ ଘେନିଣ ସେ ବରୁଣ ରାଜା
ନୃସିଂହଙ୍କ ପାଦପଦ୍ମେ କଲେ ଯାଇ ପୂଜା ।
ଏରୂପେ ଯୌତୁକ ଦେଇ ସେ ବରୁଣ ଦେବ
କୃଷ୍ଣବଲ୍ଲଭଙ୍କୁ ପୁଣି କଲେ ଗଉରବ ।
ବୋଲେ କ୍ଷୀରାବ୍ଧିରୁ ତୁମ୍ଭ ବଧୂ ଜନମିଲେ
ବାରିଧିରେ ଆମ୍ଭେ ଘର କରିଛୁ ବୁଝିଲେ ।
ତୁମ୍ଭ ତୁଲେ ଆମ୍ଭେ କାହୁଁ ହେବୁ ସମସରି
ଯାହାର କୋଳରେ ଜନ୍ମିଛନ୍ତି ନରହରି ।
ଆମ୍ଭ ବା ତୁମ୍ଭଙ୍କୁ ଦେବୁ କେଉଁ ଧନ ଜାଣ
ଦୁହିତା ଦେଇ କେବଳ ପଶିଶଲୁ ଶରଣ ।
ଶୁଣିଣ କୃଷ୍ଣବଲ୍ଲଭ ବହୁ ପ୍ରଶଂସିଲେ
ଧନ୍ୟ ହୋ ବରୁଣ ବୋଲି ବହୁ ଶ୍ରଦ୍ଧା କଲେ

ଜଗତର ଜନନୀଙ୍କି ଦେଲେ ମୋତେ ରଖି
ସ୍ୱୟଂ ମହାଲକ୍ଷ୍ମୀ ଅଟନ୍ତି ଯେ କମଳାକ୍ଷୀ ।
ଏଣିକି ସଂସାରେ ଯେତେ ସ୍ତିରୀ ଜନମିବେ
ସମସ୍ତେ ମହାଲକ୍ଷ୍ମୀର ତଳେ ବୋଲାଇବେ.
ନୃସିଂହଙ୍କୁ ତୁମ୍ଭେ ମହାଲକ୍ଷ୍ମୀ ବିଭାକଲ
ଆଜଠାରୁ ତୀର୍ଥରାଜ ଜାଣ ବୋଲାଇଲ ।
ସବୁ ତୀର୍ଥରୁ ଯେ ତୁମ୍ଭେ ହେଲ ତୀର୍ଥ ଦକ୍ଷ
ତୁମ୍ଭେ ପଶିଲେ ସକଳତୀର୍ଥ ହେବ ମୋକ୍ଷ ।
ସବୁତୀର୍ଥେ ସ୍ନାନକଲେ ଯେତେ ପୁଣ୍ୟହୋଇ
ତହୁଁ ଶତେ ଅଧିକ ଯେ ତୁମ୍ଭ ତୀର୍ଥେ ପାଇ ।
ଶୁଣିଣ ବରୁଣ ରାଜା ହୋଇଲେ ଆନନ୍ଦ
ବଦନ୍ତି ଯେ ବେଦବ୍ରହ୍ମା ଶୁଣନ୍ତି ନାରଦ ।
ଏଥୁଅନନ୍ତରେ ଶୁଣ ନୀରବତୀ ରାଣୀ
ଶ୍ରୀନୃସିଂହ ପାଦେ ଅର୍ଘ୍ୟ ବନ୍ଧାଇଲେ ଆଣି
ଅନେକ ଯୌତୁକ ବନ୍ଧାଇଲେ ଗଜମୋତି
କେ ଲେଖିପାରିବ କରି ପୁରାଣ ପଦ୍ଧତି ।
ବୋଇଲେ ନୃସିଂହଙ୍କୁ ମୁଁ ଛାର କିସ ଦେବି
ଯାହାର ପାଦରୁ ଗଙ୍ଗା ବହୁଛି ପୃଥିବୀ ।
ସଚରାଚର ଯାକରେ ପୂରିଛି ଯା ଦ୍ରବ୍ୟ
ସେ ପ୍ରଭୁଙ୍କୁ କିସ ମୁହିଁ ଦେବଇଁ ଅପୂର୍ବ ।
ଶ୍ରୀମହାଲକ୍ଷ୍ମୀଙ୍କି ଦେଇ ଶରଣ ପଶିଲି
ଏହି କଥା ଯଉତୁକ ଛାମୁରେ କହିଲି ।
ଶୁଣିଣ କହନ୍ତି ମନେ ହସି ଚକ୍ରଧର
ବୋଇଲେ ପ୍ରତ୍ୟକ୍ଷ ତୁମ୍ଭେ ମାତା ସମମୋର
ଏହା ଶୁଣି ନୀରବତୀ ପାଦପଦ୍ମେ ଭଜି
ଶ୍ରୀ ନୃସିଂହ କଥା ଶୁଣି ପ୍ରେମେ ଗଲେ ମଜି
ନୀରବତୀ ସଙ୍ଗେ ଥିଲେ ଯେତେ ସ୍ତିରୀ ଆସି
ଲେଖାରେ କେହୁଜେଠାଇକେଖୁଡ଼ୀ ମାଉସୀ
ଏମାନେ ବନ୍ଧାଇଲେ ଯେ,ପିନ୍ଧି ନୂଆଶାଢ଼ୀ
କୁଶଗ୍ରନ୍ଥୀ ବନ୍ଧନ ଯେ ହସ୍ତ ଦେଲେ ଫେଡ଼ି
ସେ କୁଶଗ୍ରନ୍ଥୀ ଫେଡ଼ିଲେ ଜାଣ ଯେଉଁମାତା
ନୀରବତୀର ଜେଠାଇ ଅଟେ ପତିବ୍ରତା ।
ଅତ୍ରୀ ମୁନିଙ୍କର ସେହୁ ଅଟେ ଜାଣ ପ୍ରିୟା
ସେ ମହାସତୀର ନାମ ଅଟେ ଅନୁସୂୟା ।
ଦେବୀପରେ ସେବାପରି ଲକ୍ଷ୍ମୀ ନୃସିଂହଙ୍କୁ
ହସ୍ତଗ୍ରନ୍ଥୀ ଫିଟାଇ ସେ ଗଲେ ମନ୍ଦରକୁ ।
ଏଥିଉତ୍ତାରେ ବସିଲେ ବ୍ରହ୍ମା ହୋମ କରି
ସଂସ୍କାର କଲେ ଭୂମି କୁଶାଣ୍ଡି ବିଧି ସାରି ।

ବହୁତ ଘୃତ ପାଇଣ ଅଗ୍ନି ତୋଷ ହୋନ୍ତି
ବୈଶ୍ୱାନରଙ୍କ ମହିମା ବ୍ରହ୍ମା ସେ ଜାଣନ୍ତି ।
ଲାଜହୋମ ଜାୟାହୋମ ରାଷ୍ଟ୍ରହୋମ କଲେ
ଚୌଷଠି କାଣ୍ଡି ମନ୍ତ୍ରରେ ବିଭା ବଢ଼ାଇଲେ
ହୋମ ସାରିଣ ଅଗ୍ନିକି କଲେ ବିସର୍ଜନ
ଏଥୁ ଅନନ୍ତରେ ବାଣୀଶୁଣ ସାଧୁଜନ ।
ବରକନ୍ୟାଙ୍କୁ କଲେକ ବ୍ରହ୍ମା ଆଶୀର୍ବାଦ
ତହିଁ ଉତ୍ତାରୁ ବିଷୟ ଶୁଣ ହେ ନାରଦ ।
ଲକ୍ଷ୍ମୀ ନୃସିଂହଙ୍କ ବିଭା ଯେସନେକ ବାଣୀ
ସେହିରୂପେ ଶେଷଦେବ ବିଭାହେଲେ ପୁଣି
ବଶିଷ୍ଠ ଋଷି ପ୍ରୋହିତ ଯହିଁ ଛନ୍ତି ହୋଇ
ତହିଁର ବିଧିପୂର୍ବ କେ ମୁଖେ ପାରେ କହି ।
ବରୁଣ କୃଷ୍ଣବଲ୍ଲଭ ଯହିଁରେ ସମୁଧି
ଶୋଭାପାଏ ଯେସନେ ବାସୁକୀ ଜମ୍ବବେଦୀ
ବିବାହ ବନ୍ଧନ ଗ୍ରନ୍ଥି କରିବାର ବେଳେ
ବସିଛନ୍ତି ଶେଷ କୃଷ୍ଣବଲ୍ଲଭଙ୍କ କୋଳେ
ବରୁଣ ବୋଇଲେ ଇଳା ଠାକୁରାଣୀ ବିଜେ
ଦେଖିବାକୁ ଇଚ୍ଛେ କୃଷ୍ଣବଲ୍ଲଭ ଯେ ରାଜେ ।
ବୋଇଲେକ ଆମ୍ଭଭାଗ୍ୟେ ପାଇଲୁତବୋହୂ
ଦେଖିବା ସାନବଧୂ କି ରୂପେ ଅଟେ ସେହୁ
ବିରୋଧି ନାହିଁ ଦେଖିଲେ କିଛି ଏତେବେଳେ
ବାଳିକା ରୂପେ ଅଛନ୍ତି ସିନା ପିତାକୋଳେ
ଏମନ୍ତ ପାଞ୍ଚ ଓଢ଼ଣା ଅଳ୍ପ ଦେଲେ ଟେକି
ଦେଖିଲେ ବଧୂର ମୁଖ ନୟନ ସଳଖି ।
ଲଜ୍ଜାରେ ଠାକୁରାଣୀ ତଳକୁ ଛନ୍ତି ଚାହିଁ
ପିତା କୋଳେ ବସିଛନ୍ତି ଅଧୋମୁଖୀ ହୋଇ
ଚକ୍ଷୁ ପୁରାଇ ଶ୍ୱଶୁର ଦେଖି ତୋଷ ହେଲେ
ବରୁଣ ରାଜାଙ୍କୁ କହି ବହୁ ପ୍ରଶଂସିଲେ ।
ବୋଇଲେ ଜନ୍ମ କରିଛ ଭଲା କନ୍ୟା ରାଜା
ଏତେ ସେ ତୃପତି ଆସି ହେଲା ମୋରମଜ୍ଜା
ଦେଖିଲି ବଧୂକୁ ମୋ ପୂରାଇ ଚକ୍ଷୁଡୋଳା
ଲକ୍ଷ୍ମୀଠାରୁ ଶତେ ଗୁଣ ପ୍ରକାଶନ୍ତି ଇଳା ।
ଇଳାଙ୍କୁ ସହସ୍ର ଗୁଣେ ଲକ୍ଷ୍ମୀ ପଟାନ୍ତର
ଦୁହିଁଙ୍କି ନୁହେଁ ସରି ସେ ଲକ୍ଷ୍ମୀ ଭଣ୍ଡାରର
ଅତିହିଁ ଭାଗ୍ୟେ ମୋହର ହେଲେ ବେନିବଧୂ
ଉଜ୍ଜ୍ୱଳ ହେଲେ ମୋ କୁଳ ସମୁଦି ପ୍ରସାଦୁ ।
ମୋ ବଧୂଙ୍କ ପ୍ରାୟେ ସଂସାରରେ ବଧୂ ନାହିଁ
ଭଲା ବରୁଣ ପ୍ରକାଶିଥିଲା କନ୍ୟା ଦୁଇ ।

ବରୁଣ ବୋଇଲା ମୁହିଁ ଏବେ ନିସ୍ତରିଲି
ସଭାରେ ସମୁଦି ମୁଖୁ ପ୍ରଶଂସା ପାଇଲି ।
ବଶିଷ୍ଠ ବୋଇଲେ ତୁମ୍ଭେ ଦୁଇକୁଳ ସରି
ବର ଅନୁରୂପ କନ୍ୟାଛନ୍ତି ଅବତରି ।
ଜୁଆଖେଳାଇଣ ଏବେ ବରକନ୍ୟା ନିଅ
ଭିତରପୁରେ ନେଇଣ ବେଗେ ଅନ୍ନ ଦିଅ ।
ଶୁଣି ଅଇଲେ ଅହିଣ ନାରୀ ଶୀଘ୍ର ହୋଇ
ଝୁମୁ ଝୁମୁ କରି ହସ୍ତେ କଉଡ଼ି ବଜାଇ ।
ଚତୁରୀ ନାଗରୀ ସ୍ତିରୀ ଯେତେ ଆସିଥିଲେ
କନ୍ୟାର ହସ୍ତେ କଉଡ଼ି ଆଗେସେହୁ ଦେଲେ
ବୋଇଲେ ପକାନ୍ତୁ ଆଦ୍ୟ ଦାନ କମଳିନୀ
ପଡ଼ିଲେ ଦାନ ବରକୁ ଆମ୍ଭେ ନେବୁ ଜିଣି ।
ଚତୁରୀ ସ୍ତିରୀଙ୍କ କଥା ଶୁଣି ବରଘର
ମନରେ ହସି କହନ୍ତି ପୁଣି ବାକ୍ୟସାର ।
ବୋଇଲେ ଏ କଥାଯେବେକଲ ଗୋପ୍ରମାଣ
ଆମ୍ଭ ଦାନ ପଡ଼ିଲେ କି କରିବ ଗୋ ପୁଣ ।
କନ୍ୟାଘର ବୋଲେ କଥା ତହିଁକି ଯେ ଅଛି
ଯେ ହାରିବେ ତାକୁ କରିବେକ ଗୋତ୍ରବାଛି
ବରଘର ବୋଇଲେ ଏ କଥା ହେଲେ ସରି
ଶ୍ରୀଲକ୍ଷ୍ମୀ ନୃସିଂହ ପାରିବ କେ ଭିନ୍ନ କରି ।
ବଶିଷ୍ଠ ଋଷି ବୋଇଲେ ଏମନ୍ତ ନୁହଇ
କହିବ କି ବେନିକୁଳ ମଧ୍ୟସ୍ଥ ଯେ ହୋଇ ।
ଯେତେ କଡ଼ା ଫିଟାଇବ କନ୍ୟାର କଉଡ଼ି
ଯେତେକ ରଖିବା ହସ୍ତେ ଗଣି ଗଣି ପାଡ଼ି ।
ବରର ପକାନ୍ତେ ଯେବେ ସମାନ ହୋଇବ
ହାର ଜିଣା କାହାକୁ ଯେ ତେବେ ନ ଲାଗିବ
ଉପର ମନରେ ହସି ହୃଦେ ଶଙ୍କା କଲେ
ସମସ୍ତେ ବସିଣ ଜୂତ କ୍ରୀଡ଼ା ଆରମ୍ଭିଲେ ।
ମନରେ ପାଞ୍ଚନ୍ତେ ବେନିକୁଳ ଯେଝା ଯଶ
ଶୁଣ ହେ ନାରଦ ଏ ବିଭା ଖେଳରସ ।
ବଶିଷ୍ଠ ବୋଇଲେମାଗୋପକା ବେଗେଦାନ
ତୁମ୍ଭ ହସ୍ତକୁ ଚାହିଁଣ ଛନ୍ତି କୋଟି ଜନ ।
ଶୁଣି କନ୍ୟାଘର ସ୍ତିରୀହସନ୍ତି କୁହାଟି
ବୋଇଲେ ବିଜ୍ଞାହୋଇ କଉଡ଼ି ପଡ଼ିବଟି ।
ଏହାଶୁଣି ମହାଲକ୍ଷ୍ମୀ ଅଳ୍ପ ହୋଇ ହସି
ପକାଇଲେ କଉଡ଼ିକି ଥବିରେ ସେ ହସି ।
ଦେଖି ନାରୀଏ ଲକ୍ଷ୍ମୀଙ୍କି ବହୁ ପ୍ରଶଂସିଲେ
ସ୍ୱାମୀଙ୍କ କେଡ଼େ ଲୋଭ ଶ୍ରୀମହାଲକ୍ଷ୍ମୀ କଲେ

ହାଲିଆ ହେବେ ଆବର ବୋଲି ମନେପାଞ୍ଚି
କଉଡ଼ି ବିଞ୍ଚିଲେ ଧୀରେ ରଖି ତଳେ ସିଞ୍ଚି ।
ଚତୁରୀ ନାରୀମାନେ ଏରୂପେ କଥା କାଢ଼ି
ଦେଖିଲେ ସପତକଡ଼ା ଫିଟିଛି କଉଡ଼ି ।
ଜୁଆ କଉଡ଼ିକି ଗଣି ଧରନ୍ତେ ସେ ବାଳୀ
ବଶିଷ୍ଠ ବୋଇଲେ ଦିଅ ବରହସ୍ତ ତୋଳି
ନୃସିଂହ ପକାନ୍ତେ ତାହା ସବୁ ଜଣାଯିବ
ତୁମ୍ଭେ କହିବାକୁ କାହିଁପାଇଁ କଥା ଥିବ ।
ଶୁଣି ଯୁବତୀଏ କଉଡ଼ିକୁ ତଳୁ ଟେକି
ନୃସିଂହଙ୍କ କରେ ଦେଲେ କହି ଦାନଟିକି
ଶୁଣି ଅନ୍ତର୍ଯ୍ୟାମୀ ଜାଣି ସବୁଙ୍କରି ମନ
ଟିଆରି କହନ୍ତି କଉଡ଼ିକି ଭଗବାନ ।
ବୋଇଲେ ସେ ଦୁଇକୁଳସମ ହୋଇଯାଉ
କାହାର ମନେ କଳ୍ପନା ନ ଧରନ୍ତୁ କେହୁ ।
ଏଣୁ ହୋ କଉଡ଼ି କହୁଅଛୁ ତୋତେ ବୋଧି
ଫିଟିବୁ ସପ୍ତକଡ଼ା ମୋ ବାକ୍ୟ କରି ସିଦ୍ଧି ।
ଅଳ୍ପ ଊଣା ହେଲେ ସିନା ହାରିବୁଯେ ଆମ୍ଭେ
ବହୁତ ଫିଟିଲେ କାର୍ଯ୍ୟ ନୋହିବଟି କେବେ
ବନ୍ଧୁ ହେଲା ପରେ ଯେହୁ ଘେନେ ଉଚ୍ଚ ନୀଚ
ତାହାକୁ ସଂସାର ଲୋକେ ବୋଲନ୍ତି ପ୍ରପଞ୍ଚ ।
ଶ୍ୱଶୁର ଘରକୁ ଯାଇ କରେ ଯେବେ ଲଘୁ
ଏ କଥା କଲେ ଯେ ବିଭା ନୋହିଥିବ ଆଗୁ
ଏ କୁଳ ସେ କୁଳ ଯେହୁ ଘେନେ ସମକରି
ସଂସାରେ ଧନ୍ୟ କରନ୍ତି ତାକୁ ନରନାରୀ ।
ଏମନ୍ତ ମନରେ ପାଞ୍ଚି ଲକ୍ଷ୍ମୀଦେବୀ ବର
ପକାଇଦେଲେ କଉଡ଼ି ମୁଠି ତତପର ।
ଦେଖିଲେ କଉଡ଼ି ଫିଟିଅଛି ସାତକଡ଼ା
ଚାହିଁକରି ସ୍ତିରୀମାନେ ରହି ହେଲେ ଛିଡ଼ା ।
ଚତୁରୀ ନାରୀ ଜାଣିମା ସିନା ବୋଲୁଥିଲେ
ଏ କଥାକୁ ମହାପ୍ରଭୁ ସାମଞ୍ଜସ୍ୟ କଲେ ।
ବଶିଷ୍ଠ ବୋଇଲେ ଧନ୍ୟ ହେ ନୃସିଂହ ସ୍ୱାମୀ
ବେନି କୁଳର ମହତ୍ତ୍ୱ ରଖି ଅନ୍ତର୍ଯ୍ୟାମୀ ।
ହାର ଜିଣା ବେନି କଥା ନ କଲେ କାହାକୁ
ବୁଝିଲେ ଜୁଆଇଁ ନମିଲେ ତ ଶ୍ୱଶୁରକୁ ।
ବନ୍ଦାଣ କରି ଘରକୁ ଏବେ ଯାଅ ଘେନି
ଦୁଇ କୁଳକୁ ସମାନ ପ୍ରଭୁ କରିଲେଣି ।
ପରମ ଦୟାଳୁ ଏହି ପ୍ରଭୁ ଭାବଗ୍ରାହୀ
ସବୁଙ୍କ ଚିତ୍ତ ଜାଣନ୍ତି ହୃଦମଧ୍ୟେ ରହି ।

ଏରୂପେ ଋଷିଙ୍କ ମୁଖୁ ଯୁବତୀଏ ଶୁଣି
ବନ୍ଦାଣକୁ ବିଜେ କଲେ ବରୁଣଙ୍କ ରାଣୀ ।
ବଦରୀ ତୁଣ୍ଡଳ ଦୁର୍ବା ମଥାରେ ବନ୍ଦାଇ
ବର କନ୍ୟା ଧରି ଗୃହେ ଗଲେ ମହାଦେଈ
ଲକ୍ଷ୍ମୀ ନୃସିଂହଙ୍କୁ ବିଜେ କରାଇ ମନ୍ଦିରେ
ଆସନ ଦେଇଣ ପୂଜା କଲେ ନିତ୍ୟାଚାରେ ।
ଇଳା ଶେଷଦେବଙ୍କୁ ଯେ ନେଇ ସେହିରୂପେ
ଲକ୍ଷ୍ମୀ ନୃସିଂହଙ୍କ ପ୍ରାୟେ ପୂଜିଲେକକଞ୍ଚେ
ଏ ଭାଗ୍ୟ ପାଇ ନାହାନ୍ତି ସ୍ୱର୍ଗେ ଜାଣ ବିଷ୍ଣୁ
ଦିଅନ୍ତି ସେ ଅନ୍ନପାଣି ଭୁଞ୍ଜିଲେଟି ବିଷ୍ଣୁ ।
ପ୍ରତ୍ୟକ୍ଷରେ ନୀରବତୀ ଦକ୍ଷଙ୍କ ଦୁହିତା
ତେଣୁ ଅନ୍ନ ଦେବାକୁ ସେହେଲେବିଷ୍ଣୁ ଭକ୍ତା ।
ଲକ୍ଷ୍ମୀ ନୃସିଂହ ପ୍ରଭୁଙ୍କୁ ଗୃହରେ ବସାଇ
ପାରିବ କେ ସଂସାରେ ଏରୂପେ ଅନ୍ନ ଦେଇ
ଅରୁଆ ଅନ୍ନ ବ୍ୟଞ୍ଜନ ଭଜା ଶତେ ଜାତି
ଷଡ଼ରସେ ସମ୍ପାଦିଣ ଦେଇ ନୀରବତୀ ।
ଦଧି ଗୁଡ଼ ହିଙ୍ଗୁ ବାସନାରେ ପ୍ରମୋଦଇ
ଘରଯାକ ଚହଟି ସେ ସୌରଭ ଉଠଇ ।
ଆଉଟି ନିରତା ଦୁଧ ଦେଲେ ନେଇ ପୁଣ
ପ୍ରମୋଦିତ ହୋଇ ସେହୁ ବାସଇ ଯେ ଜାଣ
କ୍ଷିରୀର ଉପରେ ଖଣ୍ଡ ଦେଲେ ପୁଣ ନେଇ
ପୁଳୀ ନାଡ଼ି ମନୋହର ସେ ସିଂହାର ଖାଇ
କାକରା ଛତୁଆ ଚନ୍ଦ୍ରକାନ୍ତି ରସକୋରା
ଖଜା ଗଜା ପରିପାକ ପାପୁଡ଼ି କାକରା ।
ରୂପା ପଲମରେ ନବାତର ପଣା ନେଇ
ପାଚିଲା କମଳାରସ ତହିଁରେ ପୂରାଇ ।
ଅମୃତପାଣି କଦଳୀ ତହିଁରେ ଯେ ଥୋଇ
ବର କନ୍ୟାଙ୍କ ଛାମୁରେ ପରଷନ୍ତି ନେଇ ।
ଏରୂପେ ସେ ବେନିଭାଇ ମଣୋହି ଯେକଲେ
ଆଚମନ ସାରି ଗୁଆପାନ ଲାଗିହେଲେ ।
ବିପ୍ର ଗୋସାଇଁମାନଙ୍କୁ ନମସ୍କାର କରି
ଆସନେ ଯାଇଣ ବିଜେ କଲେ ନରହରି ।
ତହିଁ ଉତାରୁ ମଣୋହି ଆଉ ସବୁ କଲେ
ବ୍ରହ୍ମାଙ୍କ ସହିତେ ଋଷି ଯେତେ ଯହିଁ ଥିଲେ
ରୁଦ୍ର ଇନ୍ଦ୍ର ଆଦିକରି ଯେତେ ଦେବଲୋକ
ଭୁଞ୍ଜି ବିଷ୍ଣୁ ଭୋଜି ବରୁଣର ନଗ୍ରଯାକ ।
ଏଥୁଅନନ୍ତରେ ରାତ୍ର ହୋଇଲା ପ୍ରବେଶ
ମଧୁଶଯ୍ୟା ମନ୍ଦିରକୁ ମଣ୍ଡି ରାଣୀହଂସ ।

ସୁବର୍ଣ୍ଣ ପଲ୍ୟଙ୍କେ ଶେଯ ସୁପାତି ଯେ ପାରି
ଉପରେ ଚାନ୍ଦୁଆ ରତ୍ନ ଚଉକା ଯେ ଶାଢ଼ୀ ।
ନେତର ପାଟମୁଚୁଳି ବିଚିତ୍ର ଯେ ଶେଯ
ବିଞ୍ଛିଲେ ଶଯ୍ୟା ଉପରେ କର୍ପୂରର ରଜ ।
ଚିତ୍ରବସନେ ଫୁଟାଇ ନାନା ପଦ୍ମକଢ଼ୀ
ତହିଁ ଉପରେ ବଞ୍ଚାଇ ସେବତୀ ପାଖୁଡ଼ି ।
ମର୍କତ ଯେ କେରା କେରା ମୁକ୍ତା ମାଳି ମାଳି
କୁସୁମ ଚାମର ଛନ୍ତି ଚଉପାଶେ ଢାଳି ।
ପଲ୍ୟଙ୍କର ଚାରିପାଶେ ମୁକ୍ତା କେରା କେରା
ଗୃହଯାକେ ଲମ୍ବଅଛି ରାଜମୋତି ଚାରା ।
ପଲ୍ୟଙ୍କ ଚୌପାଶେ ଦର୍ପଣର ବାଡ଼ ଘେରି
ଏହିରୂପେ ନାରୀମାନେ ଛନ୍ତି ନିର୍ଭାକରି ।
ସେହି ଶଯ୍ୟାରେ ନୃସିଂହ କଲେକ ବିଜୟ
ବଦୟନ୍ତୀ ବେଦବ୍ରହ୍ମା ଶୁଣରେ ତନୟ ।
ଶେଷଦେବଙ୍କର ଶର୍ଯ୍ୟା ଏହିରୂପେ ଜାଣ
ସଜ କରିଛନ୍ତି ସୁଚତୁରୀ ନାରୀଗଣ ।
କମଳା ଇଳାଙ୍କୁ ବେଶ କରିଣ ଯୁବତୀ
ଭିନ୍ନ ଭିନ୍ନ ପୁରେ ନେଇ ବିଜେ କରାବନ୍ତି ।
ଶେଷଦେବଙ୍କୁ ଭେଟିଲେ ଇଳା ଠାକୁରାଣୀ
କବାଟ କଞ୍ଝି ଦେଇଣ ଆସିଲେ ତରୁଣୀ ।
ତହିଁ ଉତ୍ତାରୁ ଲକ୍ଷ୍ମୀକି ବିଜେ କରାଇଲେ
ପାଦ ଟେକି ଚାଲୁ ଚାଲୁ ହୁଳହୁଳି ଦେଲେ ।
ସଙ୍ଗେ ସଙ୍ଗେ ତିଆରନ୍ତି ସକଳ ନାଗରୀ
ଚତୁରୀ ନାରୀଙ୍କି ଜିଣିନୁହେଁ ତିନିପୁରୀ ।
କଥାରେ ଭୁଲାଇ କହିଦ୍ୟନ୍ତି ଯେତେ ମାର୍ଗେ
ତାହା ତର୍କି ଜାଣି ପାରିବେ କେ ତିନିସ୍ୱର୍ଗେ
ତଥାପି କମଳା ଅଟନ୍ତି ତ ଅନ୍ତର୍ଯ୍ୟାମୀ
ତର୍କି ଯୁବତୀ ଖଟନ୍ତି ଯେ ପରମ ଲକ୍ଷ୍ମୀ ।
ଥୋକେ ଚତୁରୀ ତାହାଙ୍କୁ କହନ୍ତି ତିଆରି
ବୋଲନ୍ତି ସ୍ୱାମୀକି ଆଜ ଥିବ ବଶକରି ।
ପ୍ରଥମ ଭେଟେ ପତିଙ୍କି ଆଗ ବଶ କଲେ
ସେ ପ୍ରିୟା ବିପୁଳ ଭୋଗ କରେ ସ୍ୱାମୀତୁଲେ
ଆଦ୍ୟରୁ କାନ୍ତର ମନ ବିମନ ଯେ କରେ
କେବେହେଁ ପତିର ମନ ନୁହେଁ ସୁଖତାରେ
ମନ୍ତ୍ର ଯନ୍ତ୍ର ଔଷଧେ ସେ ନାରୀ କରେ ବଶ
ନୁହଁଇ ତାହାର ସ୍ୱାମୀ କେବେ ଚିରାୟୁଷ ।
ଆପଣା ମନ ଯେବେ ନ ପାରେ ବଶକରି
ବଡ଼ ଦୁର୍ଭାଗୀ ଅଟନ୍ତି ସେହୁ ଅପକାରୀ ।

ଗୃହସ୍ଥର ମାନସ ଯେ ଭାରିଯାର ଚିତ୍ତ
ସେ ନାରୀ କରି ପାରଇ ଏକ ଆତ୍ମାଗତ ।
ସେହି ନାରୀ ସଉଭାଗୀ ସଦାକାଳେ ସୁଖୀ
ଶୁଣରେ କମଳା କହନ୍ତି ଯେ ପ୍ରିୟସଖୀ ।
ସ୍ୱାମୀର ମନକୁ ଯେହୁ କରଇ ବିରକ୍ତ
ପତିର ନୁହେଁ ତାଠାରେ କେଭେ ସୁଖଜାତ ।
ନୃସିଂହ ପ୍ରେମ କରିବେ ଯେତେ ଆଜରାତ୍ରେ
ତହୁଁ ବଳି ତୁମ୍ଭେ ପ୍ରେମ କରିବ ଗୋ ଶତେ ।
ଅତି ଆନନ୍ଦିତ ହୋଇ ଆଳାପ କରିବ
ତାଙ୍କୁବଳି ତୁମ୍ଭ ମନ ଷୋଳବିଶ୍ୱା ହେବ ।
ତୁମ୍ଭେତ ନାଗରୀ ସେ ଚତୁର ଶିରୋମଣି
ଦୁହିଁଙ୍କୁ ଦୁହେଁ ଜଗତ ପାର ଏକା ଜିଣି ।
ତୁମ୍ଭର ହୃଦପଦ୍ମେ ଶ୍ରୀପଦ୍ମକର ଲାଗି
ଟେକିବ ମୂହୂର୍ତ୍ତମାତ୍ରେ କାମପ୍ରଭା ଜାଗି ।
ଶ୍ରୀନୃସିଂହ ଅଙ୍ଗେ ତୁମ୍ଭ ଅଙ୍ଗ ଲାଗି ହେଲେ
ବଢ଼ିବ ସଂସାର ସୁଖଭୋଗ ବେଳୁ ବେଳେ
ତୁମ୍ଭେ କି ନ ଜାଣ ଆମ୍ଭେ କହିବୁ ଗୋ କିସ
କୋଟି ଲକ୍ଷ୍ମଣେ ଜନ୍ମିଛ ତୁମ୍ଭେ ବେନିଅଂଶ
ତୁମ୍ଭେ ତ ପରମ ଲକ୍ଷ୍ମୀ ସେହୁ ଜଗଦୀଶ
ଦେଖିଲାକ୍ଷଣି ଯୋ ଆଜ ହେବ ଭାବରସ ।
ଦୁଇମୂର୍ତ୍ତି ଭାବୁଁ ଆଜ ରସ ଉପୁଯିବ
ଭାବବିନୋଦିଆ ଅଟେ ସେହି ବାସୁଦେବ ।
ଏମନ୍ତେ କହନ୍ତେ ନାଗରୀଏ ରସବାଣୀ
ଲଜ୍ଜାକରି ମୁଖେ ବାସ କଲେ କମଳିନୀ ।
ମଥାରେ ଓଢ଼ଣୀ ଦେଇ ଅଳ୍ପ ମନ୍ଦେ ହସି
ବୋଲନ୍ତି ଜାଣିଛ ଏ ସବୁମାର୍ଗେ ପଶି ।
ଏରୂପେ ମନରେ ପାଞ୍ଚ ଲଜ୍ଜା ଭାବେ ଚାଲି
ପହଣ୍ଡ ମଣାଇ ସଙ୍ଗେ ଚାଲନ୍ତି ପୋଇଲୀ
ନୃସିଂହ ଆଗେ ଲକ୍ଷ୍ମୀଙ୍କି ନେଇ ଉଭାକଲେ
ଦେଖି ଅନ୍ତର୍ଯ୍ୟାମୀ ମନେ ଆନନ୍ଦ ହୋଇଲେ
ବୋଇଲେ ଆଜଯାଏ ତ ମୋ ପ୍ରାଣମଣିକି
ବରୁଣ ପାଳିଣ ରଖିଥିଲେ ଏ ଲକ୍ଷ୍ମୀକି ।
ଆନ ଲୋକେ ପାରନ୍ତେ କି ଏହାକୁ ସମ୍ଭାଳି
ମହାପୁରୁଷ ଯୋଗୁଁ ସେ ଥିଲେୟାଙ୍କୁ ପାଳି
ଭୃଗୁଋଷି ଜନ୍ମ କଲାରୁ ଏ ଆଜଯାଏ
ଏବେ ଭେଟ ମୁଁ ପାଇଲି ଆସି ଆମ୍ଭ ପ୍ରିୟେ
ଏହିରୂପେ ଆନନ୍ଦିତ ହେଲେ ପ୍ରଭୁ ମନେ
ଲକ୍ଷ୍ମୀ ନୃସିଂହଙ୍କ ଭେଟ କଲେ ସଖୀଗଣେ ।

ଏଥିଅନ୍ତେ ରମା ପଲ୍ୟଙ୍କର ତଳେ ଯାଇ
ଛାମୁରେ ଯେ ବିଜେକଲେ ତଳେଉଭା ହୋଇ
ହରଷ ଲଜ୍ଜା ଏ ଦୁଇହୃଦେ ଅଛି ପୂରି
କମଳାର ମନକଥା ଜାଣିଲେ ଶ୍ରୀହରି ।
ଶ୍ରୀଲକ୍ଷ୍ମୀ ନୃସିଂହ ଭେଟ କରି ନାରୀଗଣେ
ଘରର କଞ୍ଚିକବାଟ କିଳିଲେ ତକ୍ଷଣେ ।
କହନ୍ତି ଯେ ବେଦବ୍ରହ୍ମା ଶୁଣ ହେ ନାରଦ
ଲକ୍ଷ୍ମୀଙ୍କି ଭେଟ କରାଇ ଗଲେ ନାରୀବୃନ୍ଦ ।
ପ୍ରିୟାର ଯେ କଥାମାନ ଜାଣି ଚକ୍ରପାଣି
କୋଳକରି ଅଙ୍ଗେ ପ୍ରଭୁ ବସାଇଲେ ଆଣି ।
ମୁଖରେ ଚୁମ୍ବନ ଦେଇ ହସ୍ତେ ଓଷ୍ଠ ଧରି
କୋଳ କରିଣ ଯେ କଥା ପୁଚ୍ଛନ୍ତି ଶ୍ରୀହରି ।
ବୋଲନ୍ତି ସଖି ବିହାର କର ମୋର ହୃଦେ
ଶୁଣିବି ମୁହିଁ ଲାବଣ୍ୟ କଥା କହ ପଦେ ।
ବୁଝିଲେ ମୁଁ ଶରୀରୁ ତୁ ଅଟୁ ପ୍ରାଣ ମୋର
କଥା ସତ ସଖି ଆରେ ଅଟେ ନିରାଧାର ।
ଏକା ମହାପୁରୁଷ ମୁଁ ହେଲେ ବେନିମୂର୍ତ୍ତି
ଲକ୍ଷ୍ମୀ ନାରୟଣ ବୋଲି ପ୍ରକାଶିଲି ଜ୍ୟୋତି
ଖଣ୍ଡେ ମହାଲକ୍ଷ୍ମୀ ଖଣ୍ଡେ ହେଲି ନାରାୟଣ
ଏହା ଅବଶ୍ୟ ତୁମ୍ଭଙ୍କୁ ଜଣାଅଛି ପୁଣ ।
କାହିଁକି ନ କହି କଥା ରହୁ କମଳାକ୍ଷୀ
କି ଭାବନା କରୁଅଛ ଭୂମିକି ନିରେଖି ।
ତୁମ୍ଭଙ୍କୁ ଦେଖିବାକୁ ନ ପାରେ ଆଉ ମୂର୍ଚ୍ଛି
ଲଜ୍ଜାରେ ଓଢ଼ଣା ଦେଇ ରହକିମ୍ପା ଲୁଚି
ବିଳମ୍ବ ନ କର ଆଉ ହସି କହ ବେଳେ
ମୋର କାମଶାନ୍ତି ଭାଙ୍ଗି ପକାନି ତତ୍କାଳେ
ମୁହୂର୍ତ୍ତ ପ୍ରାୟେକ ମୋତେ ଲାଗୁ ରାତ୍ର ଯାକ
ଦୁହେଁ ଆଜ କାମରସୁ ତରିବା ବେଳେକ ।
ଆସ ଆସ ସଖି ଆରେ ଦେବା ଏକଯୋଗ
ତୁମ୍ଭ ନବ ଯଉବନ କରିବି ମୁଁ ଭୋଗ ।
ତୁମ୍ଭେ ତ ବନନାଗରୀ ମୁହିଁ ନବଯୁବା
ତୁମ୍ଭ ଅଙ୍ଗ ସଙ୍ଗରୁ ମୋ ଟେକୁ କାମପ୍ରଭା ।
ତୁମ୍ଭ ମୁଖ ହେଉ ପୁଣି ପ୍ରତ୍ୟକ୍ଷ କମଳ
ସେ ମୁଖ ଚୁମ୍ବିବି ମୁହିଁ ହୋଇଣ ଭ୍ରସଳ ।
ତୁମ୍ଭ ଆମ୍ଭ ମୁଖୁ ବହିବ ଯେ ମକରନ୍ଦ
କରିବେ ସେ ମକରନ୍ଦ ପାନ ଭକ୍ତବୃନ୍ଦ ।
ବେଗହୋଇ ଆଲିଙ୍ଗନ କର ମୋତେ ଆସି
ବେନିଭୁଜେ ଭିଡ଼ି କରି ଧର କୋଳେ ବସି

ତୁମ୍ଭେ ତ ଦେବତତ୍ତ୍ୱ ମୁଁ ଅଟେ ବେଦବ୍ରହ୍ମା
ଆମ୍ଭେ ମାତ୍ର ଜାଣୁ ଏକା ତୁମ୍ଭର ମହିମା ।
ତୁମ୍ଭେ ନିତ୍ୟାଚାରୀ ଆମ୍ଭେ ଅଟୁ ବ୍ରତରାଜା
ତୁମ୍ଭଙ୍କୁ ବଜପ ବୋଢ କରନ୍ତି ମୋ ପୂଜା ।
ତୁମ୍ଭ ଅଧରକୁ ମୋର ଓଷ୍ଠ ପଞ୍ଚଗ୍ରାସୀ
ତୁମ୍ଭେ ଶାଳି ଅନ୍ନ ମୁହିଁ ଅଟେ ଉପବାସୀ । ମୁହଁ
ଅଟେ ପଦ୍ମବନତୁ କାରୁଣ୍ୟ ଜଳ
ଜଳ ନ ପାଇ ପଦ୍ମ କି ହେବ ସୁକୋମଳ ।
ଆମ୍ଭେ ସର୍ବ ଆତ୍ମାକୁ ନ କଲେ ନିବେଦନ
ସଂସାରେ ସନ୍ତୁଷ୍ଟ ନୋହିବଟି କାହା ମନ ।
ଅନ୍ୟ ସ୍ତ୍ରୀ ଭୋଗ ଆମ୍ଭର କଦାଚ ଯେ ନାହିଁ
ତୁମ୍ଭ ମନ ଆମ୍ଭ ମନ ଅଟେ ଏକା ସହି ।
ମୁହିଁ କାମଦେବ ଆଗୋ ଅଟ ତୁମ୍ଭେ ରତି
ତୁମ୍ଭ ଅନୁରୂପେ ମୁହିଁ ଅଟଇ ଗୋ ପତି ।
ତୁମ୍ଭେ ଦଧିକୁଣ୍ଡ ମୁହିଁ ଅଟେ ଖୁଆଦଣ୍ଡ
ଖୁଆ ନମନ୍ଥିଲେ ନୋହେ ଲବଣୀଯେରୁଣ୍ଡ ।
ତୁମ୍ଭେ ମହାଲକ୍ଷ୍ମୀ ଆମ୍ଭେ ଅଟୁ ନାରାୟଣ
ତୁମ୍ଭେ ଲୋକମାତା ଆମ୍ଭେ ସର୍ବ ପିତା ଜାଣ
ଆମ୍ଭେ ଅଷ୍ଟରତ୍ନ ତୁମ୍ଭେ ଅଟ ସୁନା ଚକ
ଆମ୍ଭେ କାମରସ ତୁମ୍ଭେ ଅଟ କଉତୁକ ।
ଆମ୍ଭେ ତୀର୍ଥରାଜ ତୁମ୍ଭେ ଅଟ ତୀଥଜଳ
ତେଣୁ ସେ ଗଙ୍ଗାରେ ବୁଡ଼ି ତରନ୍ତି ସକଳ
ଆମ୍ଭେ ଇନ୍ଦ୍ର ଅଟୁ ତୁମ୍ଭେ ଅଟ ଗୋଇନ୍ଦ୍ରାଣି
ତେଣୁ ଇନ୍ଦିରା ନାମ ଗୋ ବହ କମଳିନୀ ।
ତୁମ୍ଭେ ବସୁବତି ଆମ୍ଭେ ଅଟୁ ମହୀଧର
ତେଣୁ ଭାବଗ୍ରାହୀ ଆମ୍ଭେ ଥାଉଁ ଚରାଚର ।
ତେଣୁ ଭାବଗ୍ରାହୀ ଆମ୍ଭେ ଅଟୁ ବ୍ରହ୍ମରାଶି
ଦୈତ୍ୟ ଦଳନେ ଜନମ ହେଲୁ ଏଥେ ଆସି
ବ୍ରହ୍ମରୂପେ ଜାତ ହେଲଇଁ ତ ଦେହ ଧରି
ମୁଁ ବଲ୍ଲଭପୁତ୍ର ତୁମ୍ଭେ ଭୃଗୁର କୁମାରୀ ।
ନୃସିଂହ ଶ୍ରୀମୁଖୁ ଏହି ବାକ୍ୟମାନ ଶୁଣି
ଶୁତିଲେ ସ୍ୱାମୀର ପାଦତଳେ କମଳିନୀ ।
ଉଠି କମଳିନୀ ମୋଡ଼ିକରି ବେନି କର
ସ୍ୱାମୀ ଓଷ୍ଠ ଧରି ବସି ସେବିଲେ ପୟର ।
ମହାବାକ୍ୟରେ କହନ୍ତି ସତୀ ସ୍ଥିରକରି
ବୋଲନ୍ତି ସର୍ବଦା ମୁହିଁ ତୁମ୍ଭ ମନୋହାରୀ ।
ଯେଉଁକାଳୁ ଭୃଗୁଋଷି ମୋତେ କଲେ ଜାତ
ସେ ଦିନୁ ଆପଣଙ୍କୁ ମୁଁ ଚାହାଁଛି ନିରତ ।

ଏତେଦିନେ ଦୟାକରି ଆସି ହେଲେ ବିଭା
ଆବର ବାକ୍ୟେକ ମୁହିଁ କହିବି ଶୁଣିବା
ଆପଣ ଯେ ବ୍ରହ୍ମରାଶି ବେନିଖଣ୍ଡ ହେଲେ
ଲକ୍ଷ୍ମୀ ନାରାୟଣ ହୋଇ ରୂପ ପ୍ରକାଶିଲେ ।
ବେନିଖଣ୍ଡ ହୋଇ ମୋତେକଲଖଣ୍ଡେ ସ୍ତିରୀ
ତେଣୁ ମୁହିଁ ହେଲି ପତ୍ନୀ ତୁମ୍ଭ ମନୋହାରୀ ।
ଏଥକୁ ମୁଁ ପ୍ରାଣନାମ କହୁଅଛି ପଦେ
ଆଜ ସ୍ନେହ ପଛକୁ ନ ଥିବ ପରା ହୃଦେ ।
ବୟସ କାଳଯାକ ସେ ଥିବ ଦୟାକରି
ପୟୋଧର ଖସିଲେ ତା ଦେବଯେପାସୋରି
ଲେଉଟି ଆପଣ କନ୍ୟା ଖଞ୍ଜି ବିଭାହେବ
କେତେବେଳେ ଦିନ ମୋର କିରୂପେସରିବ
ଆଦ୍ୟ ପ୍ରୀତିଭାବ ପ୍ରାନ୍ତକାଳଯାଏ ଥିଲେ
ସେହି ସଉଭାଗୀ ସ୍ୱାମୀ ଅଙ୍ଗେ ଦିନ ଗଲେ
ପତିବିନୁ ସ୍ତିରୀଙ୍କର ନାହିଁ ଅନ୍ୟଗତି
ଭାରିଯାର ଗୃହସ୍ଥ ଯେ ଅଟେ ବିଷ୍ଣୁ ମୂର୍ତ୍ତି ।
ଗୃହସ୍ଥ ଏକା ଅଟନ୍ତି ସ୍ତିରୀଙ୍କ କାରେଣୀ
ଗୃହସ୍ଥ ଘେନି ବୋଲନ୍ତି ସ୍ତିରୀ ସୁଲକ୍ଷଣୀ ।
ଗୃହସ୍ଥ ସିନା ଭାର୍ଯ୍ୟାର ଅଧେ ଅଳଙ୍କାର
ଯେତେ ବେଶ ହେଉଥିଲେତେତେ ସେ ସୁନ୍ଦର
ଗୃହସ୍ଥ ବିହୀନେ ଅଳଙ୍କାର ଯେ ପିନ୍ଧଇ
ସଂସାରେ ପିଶାଚୀ ବୋଲି ସେ ସ୍ତିରୀକି କହି
ସିନ୍ଦୂର କଜ୍ଜଳ ରଙ୍ଗ ଅଳତା ସେ ଶାଢ଼ୀ
ହଳଦୀ ସହିତେଣ ନ ଘେନି ଦେବ ଛାଡ଼ି ।
ବିଧବା ସ୍ତିରୀକି ଏତେ କଥା ଅସୁନ୍ଦର
ଦୋଚାରୁଣୀ ତୁଲେ ତାକୁ ଲେଖନ୍ତି ସୁମର ।
ତାଠାରୁ କେ ମହାପାପୀ ନାହିଁ ଚଣ୍ଡାଳୁଣୀ
ଏରୂପେ କହନ୍ତି ନୃସିଂହଙ୍କୁ କମଳିନୀ ।
ବୋଇଲେ ତୁମ୍ଭର ମୁହିଁ ଅଟେ ଅର୍ଦ୍ଧଅଙ୍ଗ
ସର୍ବଦା ମୋଠାରେ ପ୍ରଭୁ ନୋହିବ ବିଭଙ୍ଗ
ଏରୂପେ ଲକ୍ଷ୍ମୀଙ୍କ ମୁଖୁ ଶୁଣି ଭାବଗ୍ରାହୀ
ବୋଇଲେ କହୁଛି ସଖି ଶୁଣ ସତ୍ୟ ମୁହିଁ ।
ତୁମ୍ଭେ ଯେ ବୋଇଲ ମୋ ବୟସଶେଷକାଳ
ଆମ୍ଭଙ୍କୁ ପାଶୋରିଦେବ ବୋଲି ମଦଭୋଳ
ତୁମ୍ଭେ ଆମ୍ଭ ବୟସ ତ ସବୁଦିନେ ସରି
ସେତେବେଳେ କ୍ଷୟ ବୃଦ୍ଧି ନୁହେଁ ଲକ୍ଷ୍ମୀ ହରି
ତୁମ୍ଭେ ଆମ୍ଭେ ଥିବାଟି ଗୋହୋଇନବଯୁବା
ଆଉ ଲୋକେ କ୍ଷୟ ବୃଦ୍ଧି ନେତ୍ରେଦେଖୁଥିବା
କୋଟି ପଦ୍ମଯୁଗ ଗଲେ ତୁମ୍ଭ ଆମ୍ଭ ସରି
ତୁମ୍ଭ ବ୍ୟତୀତ ଆମ୍ଭେ ନ ଛୁଇଁ ଅନ୍ୟସ୍ତିରୀ ।
ଏ କଥା ଆମ୍ଭର ଜାଣ ଅଟେ ସତ୍ୟ ସତ୍ୟ
ତୁମ୍ଭଙ୍କୁ ମୁଁ ବକ୍ଷ ସ୍ଥଳେ ବହିଥିବି ନିତ୍ୟ ।
ଅନ୍ୟସ୍ତିରୀମାନଙ୍କୁ ଯେ କେବେ ନଛୁଇଁବି
ଅବତାର ଗୋଟିକରେ ଲୀଳା କରୁଥିବି ।
ଏ ଅବତାରେ ତୁମ୍ଭର ନାମ କମଳିନୀ
ରାମ ଅବତାରେ ହେବ ସୀତା ଠାକୁରାଣୀ ।
ସେ ଅବତାରରେ ତୁମ୍ଭେ ଆମ୍ଭ ପ୍ରିୟାହେବ
ଶୁଣ ଗୋ ଲକ୍ଷ୍ମୀ କହନ୍ତି ପ୍ରଭୁ ବାସୁଦେବ
ଶ୍ରୀକୃଷ୍ଣ ଅବତାରରେ ପୁଣ ତୁମ୍ଭେ ଯାଇ ।
ରୁକ୍ମିଣୀ ଅବତାର ଯେ ହେବ ଦୟାବହି ।
କୃଷ୍ଣାବତାରେ ତୁମ୍ଭଙ୍କୁ ଆମ୍ଭେ ଦେବୁ ବିଭା
ଅବତାର ସାରି ପୁଣି ନିତ୍ୟସ୍ଥଳେ ଯିବା ।
ତୁମ୍ଭେ କମଳିନୀ ରୁକ୍ମିଣୀ ଯେ ଏକା ହେବ
ତୁମ୍ଭ ଆମ୍ଭ ବିହାର ଯେ ତହିଁ ପ୍ରକାଶିବ ।
ଏରୂପେ ଲକ୍ଷ୍ମୀଙ୍କ ଆଗେ ମହାପ୍ରଭୁ କହି
ତ୍ରିଲୋକ ମାତାର ମନ ତୋଷି ଭାବଗ୍ରାହୀ
କମଳାଙ୍କୁ ବକ୍ଷସ୍ଥଳେ ବସାଇଲେ ଆଣି
ମୁଖେ ଚୁମ୍ବଦେଇ ଧଇଲେକ ଚକ୍ରପାଣି ।
ତେତେବେଳେ ଲକ୍ଷ୍ମୀଦେବୀ ଛାଡ଼ିଅଙ୍ଗୁ ଲଜ୍ଜା
ନୃସିଂହ ଘେନି ପଲ୍ୟଙ୍କେ କଲେଦେବୀଶଯ୍ୟା
ପିନ୍ଧିବା ବାସ ପାଲଟି ଲକ୍ଷ୍ମୀ ଠାକୁରାଣୀ
ନବୀନଶାଢ଼ୀ ଭୂଷଣ ପୁଣି ହେଲେ ଆଣି ।
ଅଙ୍ଗ ଅଳଙ୍କାର ମାନ ପ୍ରଭୁ ଜଗନ୍ନାଥେ
କୋଳେ ବସାଇ ପ୍ରିୟାକୁ ଖଞ୍ଜାନ୍ତେ ଶ୍ରୀହସ୍ତେ
ନାସାରେ ବସଣି କର୍ଣ୍ଣେ ସ୍ୱର୍ଣ୍ଣକାପ ଯୋଡ଼ି
କଣ୍ଠରେ ରତନମାଳି ଖଞ୍ଜିଲେ ଯେ ଲୋଡ଼ି
ତୋଳାରେ ଉଜ୍ଜ୍ୱଳକାଳି ବସ୍ତ୍ରେପୋଛିଦେଇ
ସରୁକରି ରେଖା ଏକ କାଟିଭାବଗ୍ରାହୀ ।
ଖୋଷାଗୋଟି ସଜାଇଣ ସୂତାଗୋଟିକାଢ଼ି
ମୃଗନାଭି ଚଇଁକୀରି ବାନ୍ଧି କେଶେ ଭିଡ଼ି ।
ଖୋଷାରେ ଝଳକା ରୂପମଣ୍ଡ କେତେଖଞ୍ଜି
ଗର୍ଭୁଁ ଶତେଗୁଣ ଜୁଡ଼ା ପାତି ମନ ରଞ୍ଜି ।
ଅଗୁରୁ ଚନ୍ଦନ ଘୋରି କର୍ପୂର ଯେ ଗୋଳି
କସ୍ତୁରୀ ମର୍ଦ୍ଦିଣ କୁଚେ ଦେଲେ ପତ୍ରାବଳି
ସୌନ୍ଦର୍ଯ୍ୟ ଦେଖି ନୃସିଂହ ପ୍ରଭୁ ମନେ ହସି
ଏରୂପେ ବେଶ କରିଣ ଲକ୍ଷ୍ମୀ ମନ ତୋଷି

ବୋଇଲେ ଲୁଚିଲେ ମୁହିଁ ଖୋଜି ପାରିବିକି
ବୁଝିବା ଚତୁରୀପଣ ତୁମ୍ଭେ କେଡ଼େ ତର୍କୀ ।
ଲକ୍ଷ୍ମୀ ବୋଇଲେ ତୁମ୍ଭଙ୍କୁ ମୁହିଁ ଦେଖୁ ଦେଖୁ
କିରୂପେ ଲୁଚିବ କହ ପଳାଇ ମୋ ପାଖୁ
କୋଳରେ ମୁଁ ଯାକି ଯେବେ ବସିଥିବି ଭିଡ଼ି
ଦେଖିବି ମୁହିଁ କିରୂପେ ତୁମ୍ଭେ ଯିବ ଛାଡ଼ି ।
ଏତେକ ବୋଲି କମଳା କୋଳେ ଧରୁ ଧରୁ
ଆଖିପିଛାଡୁ ଅଦୃଶ୍ୟହୋଇଲେ ସେ ଘରୁ ।
କ୍ଷୁଦ୍ର ଜୀବଗୋଟି ହୋଇ କରିଣ ଶ୍ରୀବତ୍ସି
କମଳିନୀ ଖୋସାରେ ରହିଲେକ ଲୁଚି ।
ନଦେଖି ଖୋଜନ୍ତି ମହାଲକ୍ଷ୍ମୀ ଘରଦ୍ୱାର
ନପାଇଣ ଧ୍ୟାନେ ବସି ଖୋଜିଲେ ତ୍ରିପୁର
ତିନିପୁର ଯାକରେ ନପାନ୍ତେ ଚକ୍ରପାଣି
ଆପଣା ଦେହକୁ ଚାହିଁଦେଲେ କମଳିନୀ ।
ମଥାର ଉପରେ ବସିଛନ୍ତି ପଦ୍ମନେତ୍ର
ଶଙ୍ଖ ଚକ୍ର ଗଦା ପଦ୍ମ ଶୋହେ ନିଜଗାତ୍ର ।
ଦେଖିଲି ଦେଖିଲି ବୋଲି ହସୁଁ କମଳିନୀ
ମଥାରୁ ନେଇ ଧରିଲେ କୋଳେ ଚକ୍ରପାଣି
ବୋଲନ୍ତି ରହନ୍ତ ମୋତେ ଲୁଚି କେତେଦିନ
ଯହିଁଥିଲେ ମୁଁ ଆଣନ୍ତି ତହୁଁ ଖୋଜିଆଣ ।
ତୁମ୍ଭେ ଲଚିବାକୁ ଠାବ କେହୁ ଦିଅନ୍ତା କି
ମୋର ମଥା ନଥିଲେ ତ ଲୁଚିପାରନ୍ତକି ।
ଫାଉଦିଆ ଲୋକଙ୍କୁ କି ଦିଅନ୍ତାକେ ଘର
ତୁମ୍ଭେ ସିନା ଆମ୍ଭଙ୍କୁ ଯେ ଡକାଇଣ ମାର ।
ମୋର ମଥାରେ ସ୍ଥାନ ନଥିଲେ କି କରନ୍ତ
ପୃଥ୍ୱୀଯାକ ବୁଲି ସିନା ବାଉଳି ହୁଅନ୍ତ ।
ତୁମ୍ଭେ ତ ମଥାରେ ମୋର ଅଟ ଶିରୋମଣି
ତେଣୁ ମଥା ପବିତ୍ର ମୋ କଲ ଚକ୍ରପାଣି ।
ଶୁଣିଣ ନୃସିଂହ ପ୍ରଭୁ ଅଳ୍ପ ମନେ ହସି
ବୋଇଲେ ତୁମ୍ଭ ଶିରଟି ଶ୍ରୀଅକ୍ଷରେ ଘୋଷି
ତୁମ୍ଭ ଶ୍ରୀଅକ୍ଷର ଗୋଟି ମଥା ଶିରୋମଣି
ତେଣୁ ଶ୍ରୀବର୍ଣ୍ଣ ଲେଖନ୍ତି ଆଗ ଆଗ ଆଣି ।
ତୁମ୍ଭ ଶ୍ରୀପଦ ସଂସାରଯାକେ ଜାଣ ବଡ଼
ଶ୍ରୀଅକ୍ଷର ଯୋଗୁଁ ବୋଲାଇ ମୁଁ ଯୋଗାରୁଢ଼
ବ୍ରହ୍ମାଣ୍ଡ ଯାକରେ ଯେତେ ଛନ୍ତି ଦେବବହି
ସର୍ବ ମଥାରେ ଅଛନ୍ତି ଶ୍ରୀଅକ୍ଷର ବହି ।
ଆଦ୍ୟରୁ ଶ୍ରୀ ଅକ୍ଷରକୁ ବହନ୍ତି ଶ୍ରୀବତ୍ସି
ଶ୍ରୀ ଆଜ୍ଞା ଲେଖିଣ ରାଜା ବଡ଼ ବୋଲାଉଛି ।
ତୁମ୍ଭ ଶ୍ରୀଅକ୍ଷର ସବୁଙ୍କରି ବଡ଼ପଣ
ଶ୍ରୀଅକ୍ଷର ବହି ବୋଲାଇ ମୁଁ ନାରାୟଣ ।
ଏତେକ କହିଣ ପ୍ରଭୁ ନିଜରୂପ ଧରି
ପ୍ରିୟାମନ ମୋହି ଧରିଲେକ କୋଳକରି ।
ଶଯ୍ୟାର ଚାରିପାଶେ ଯେ ମଣ୍ଡିଥିଲେ ଫୁଲ
ତହୁଁ ମୁଠାଏ ଧଇଲେ ପ୍ରଭୁ ହୋଇ ଗେଲ
ପୟୋଧର ଯୁଗଳକୁ ମାରୁ ପରିହାସେ
ଦେଖି କମଳା ହସନ୍ତି ମନର ସନ୍ତୋଷେ ।
ଏରୂପେ କୌତୁକ କରୁ ପ୍ରଭୁ ଚକ୍ରପାଣି
ଘର ଉପରକୁ ଚାହିଁଦେଲେ ଠାକୁରାଣୀ ।
ଦେଖିଲେ ନେପାଳୀ ମୂଷା ଦୁଇ ଶୋଇଛନ୍ତି
ପତିପତ୍ନୀ ପ୍ରାୟେ ଶୋହେ କ୍ରୀଡ଼ା କରୁଛନ୍ତି
ସେ ବେନିଙ୍କ କଉତୁକ ଦେଖି ଠାକୁରାଣୀ
ହସନ୍ତି ମୁଖରେ ଲୁଗା ଦେଇ କମଳିନୀ ।
ତାହାଙ୍କର କେଳିରସ ବେଳୁବେଳ ହୋନ୍ତେ
ସ୍ୱାମୀଙ୍କି ଠାରି ଦେଖାନ୍ତି ତାହା କରି ଗୁପ୍ତେ
ବୋଲନ୍ତି ଏ ବେନିମୂର୍ତ୍ତି ହେଉଛନ୍ତି ବସ
ତାହାଙ୍କର ରସ ଦେଖି ମାଡୁଅଛି ହସ ।
ଶୁଣିଣ ନୃସିଂହ ସ୍ୱାମୀ ଅଳ୍ପ ମନେରଖି
ବୋଇଲେ ସଖୀ ଦେଖିଲ ତାହାକିଗୋ ହସି
ସେ ବେନି ମୂର୍ତ୍ତିକି ଧରି ପାରିବ କି ଯାଇ
ପୁଛନ୍ତେ ତାହାଙ୍କୁ ଭାବେ ଏକମନା ହୁଇ ।
ସ୍ୱାମୀଙ୍କର ବାକ୍ୟଶୁଣି ହସିଲେ ବିମ୍ବୋଷ୍ଠୀ
ବୋଇଲେ ଧରି ଆଣୁଛି ଦେଖ ମୂଷିକଟି ।
ଏତେକ ବୋଲି କମଳ ଉଠି ଧାଇଁଯାନ୍ତେ
ପଳାବନ୍ତେ ବେନିଜନ୍ତୁ ହସ୍ତ ବଢ଼ାବନ୍ତେ ।
ଲକ୍ଷ୍ମୀଙ୍କି ଦେଖିଣ ଦୁହେ ଭାଜି ପଳାଇଲେ
ପଳାନ୍ତେ ବେନି ମୂଷିକ ନୃସିଂହ ହସିଲେ ।
ସ୍ୱାମୀଙ୍କୁ କୋଳ କରିଣ ଧରି ଶୁଭ୍ରକେଶୀ
ନୃସିଂହ ବୋଇଲେ ତୁମ୍ଭେ କାହିଁକି ଗୋ ହସି
ଯାଇଥିଲ ତ ମୂଷିକ ଧରିବା ପାଇଁକି
ଧରି ପାରିଲ କି କହ ମୂଷିକ ଯୋଡ଼ିକି ।
ବୋଇଲେକେଡ଼େଗୋଆଣ୍ଡେକହୁଥିଆତୁମ୍ଭେ
ମୂଷିକ ଯୋଡ଼ିକ ଧରି ପାରିଲ କି ଏବେ ।
ଯୁବତୀହେଲେ ବଡ଼ିମାମାନ କହୁଥାନ୍ତି
କଥାରେ ହାରିଲେ ଗାରିମା ସେ ନ ଛାଡ଼ନ୍ତି
ତୀର୍ଥକୁ ହୁଅନ୍ତି ସଜ ଘରୁ ଯିବାଯାଏ
ଚାଲି ନ ପାରି ସେ କଷ୍ଟ ଦ୍ୟନ୍ତି ସବୁଠାଏ ।

କରନ୍ତି ଦ୍ରୋହିକା କଥାଯାକ ଲଗାୟୋଚା
ଏରୂପେ ସ୍ତିରୀଙ୍କ ବୁଦ୍ଧି ଅଟଇ ନିଉଞ୍ଚା ।
ଶୁଣିଣ ଶ୍ରୀମହାଲକ୍ଷ୍ମୀ ଅଙ୍କ ମନେ ହସି
ବୋଇଲେ ମୁଁ ଯିବାରୁ ସେ ଗଲେ ଗାତେପଶି
ଦେଖନ୍ତ ହାତେ ପଡ଼ିଲେ ଧରନ୍ତି କି ନାହିଁ
ପ୍ରିୟାର ବଚନ ଶୁଣି ହସି ଭାବଗ୍ରାହୀ ।
ବୋଇଲେ ତାଙ୍କୁ ତ ଏବେ ନ ପାରିଲି ଧରି
କଥାରେ ଜିଣି କହୁଛ ମାତ୍ର ଆଗସରି
କଥାରେ ବୋଇଲେ ଜିଣା ନୁହନ୍ତା କାହିଁକି
ତୁମ୍ଭେ ଜିଣିପାର ସବୁ ଆମ୍ଭର ନୁହେଁ କି ।
ମୋତେ ଯେ ଆଣିଲ ଲାଖ ବିନ୍ଧି ସ୍ୱାମୀ ଜିଣି
ସେ ଜିଣାଯାକ କି ସବୁ ନୋହେ ମୋରପୁଣି
ଆପଣଙ୍କୁ ଘେନି ସିନା ମୋର ସବୁ ବଳ
ପୁଣି ହସି ତୁନି ହେଲେ ପ୍ରଭୁ ଆଦିମୂଳ ।
ଏଥୁଅନନ୍ତରେ ଆସି ରାତ୍ର ହେଲା ଶେଷ
ଦେବଆଳମାନଙ୍କରେ ଶୁଭେ ଶଙ୍ଖଘୋଷ ।
ପ୍ରଭୁ ବୋଇଲେ ସଖିରେ ରାତ୍ର ଗଲା ପାହି
ବିଶେଷରେ ତୁମ୍ଭ ଆମ୍ଭ ମନ ପରା ନାହିଁ ।
ଆମ୍ଭଙ୍କୁ ଲାଗିଲା ଏହିକ୍ଷଣି ରାତ୍ର ପ୍ରାୟେ
ପୂର୍ଣ୍ଣ ହୋଇ ଆନନ୍ଦ ଯେ ନ ଲାଗିଲାକାୟେ ।
ଶୁଣିଣ ଶ୍ରୀମହାଲକ୍ଷ୍ମୀ ଅଙ୍କ ମନେ ହସି
ବୋଇଲେ ଦିନେକି ସରିଗଲା ସବୁ ନିଶି ।
ତୁମ୍ଭେ ଗୋ ପ୍ରାଣବଲ୍ଲଭ ପ୍ରଭୁ ହୃଷିକେଶ
ପ୍ରଭୁଙ୍କ ଛାମୁରେ ଆଉ କହିବି ମୁଁ କିସ ।
ଶୁଣି ଶ୍ରୀନୃସିଂହ ସ୍ୱାମୀ ଲକ୍ଷ୍ମୀ କୋଳକଲେ
ଧନ୍ୟ ଧନ୍ୟ ପ୍ରିୟା ବୋଲି ବହୁ ପ୍ରଶଂସିଲେ
ପ୍ରେମରେ ଆନନ୍ଦ ହୋଇବୋଇଲେଗୋଚଳ
ଏହିକ୍ଷଣି ସ୍ତିରୀଗଣ ହେଲେ ଆସି ମେଳ ।
ନାନାମାର୍ଗେ ପୁଛି ପଚାରିଲେଟି ତୁମ୍ଭଙ୍କୁ
ଲଜ୍ଜାରେ ତୁମ୍ଭେ କହି ନ ପାରିବ ତାହାଙ୍କୁ ।
ଶୁଣି କମଳିନୀ ଅଙ୍କ ଅଙ୍କ ମନେ ହସି
ସ୍ୱାମୀଆଜ୍ଞା ପାଇ ଉଠିଗଲେ ପଦ୍ମ ବାସୀ ।
ମାତାର କୋଳେ ବସିଲେ ଯାଇ କମଳିନୀ
ଦେଖିଣ ଆନନ୍ଦ ହେଲେ ବରୁଣର ରାଣୀ ।
ଇଳାଦେବୀ ବିଜେକରି ଆସିଲେ ସେଲାଗେ
ମାତାର ଛାମୁରେ ଆସି ପ୍ରବେଶିଲେବେଗେ
ବେନି ଦୁହିତାଙ୍କ ମୁଖେ ଦେଲେ ମାଏଚୁମ୍ଭ
କେ କହିପାରେ ରାଣୀର ତହିଁ ଶ୍ରଦ୍ଧାଭାବ ।

ବେନି ଠାକୁରାଣୀଙ୍କି ମାର୍ଜ୍ଜନା କରାଇଲେ ।
ଖଞ୍ଜି ଅଳଙ୍କାର ବେଶଭୂଷଣ ଯେ କଲେ ।
ଏଥିଉତ୍ତାରେ କୃଷ୍ଣବଲ୍ଲଭ ନୃପନାଥ
ସ୍ନାନ ଦେବାର୍ଚ୍ଚନମାନ ସରିଲେ ତ୍ୱରିତ ।
ମନ୍ତ୍ରୀକି ବୋଇଲେ ବେଗେ ସୈନ୍ୟକରସଜ
ବରକନ୍ୟା ଘେନି ଯିବା ରାଜ୍ୟକୁ ଯେ ଆଜ
ଶୁଣିଣ ସୁଜାଣ ମନ୍ତ୍ରୀ ରାଜା ଆଜ୍ଞା ପାଇ
ଟମକ ଦିଆଇଲେ ଆପେ ଯେ ସଜ ହୋଇ
ବରକନ୍ୟା ନେବା ବୋଲିଘୋଷଣାଦିଅନ୍ତେ
ଶ୍ରୀନୃସିଂହ ପ୍ରଭୁ ସ୍ନାନ ସାରିଲେ ତ୍ୱରିତେ ।
ସନ୍ଧ୍ୟାତରପଣ ସାରି କଲେ ଦେବର୍ଚ୍ଚନ
ସେହିରୂପେ ଶେଷଦେବ କଲେ କର୍ମମାନ ।
ଏଥୁଅନ୍ତେ ବାଣୀ ଶୁଣ କହିବା ହୋଇଲେ
ବରୁଣ କୃଷ୍ଣବଲ୍ଲଭ ପାଶେ ବିଜେକଲେ ।
ବଲ୍ଲଭ ରାଜା ଦେଖିଣ କଲେ ଗୁଉରବ
ସମାଧି ଯୋଗାଡ଼ ଆଣି ଦେଲେ ତହୁଁ ଯବ
ରଥ ଜଗ ଅଶ୍ୱ ଆଦି ବହୁ ଧନ ଦେଲେ
ଗଦଗଦ ବାକ୍ୟେ ତାହା ସମର୍ପଣ କଲେ ।
କୃତାଞ୍ଜଳି ହୋଇ ଯେ କୋମଳ ବାକ୍ୟକହି
ଅଟନ୍ତି ତୁମ୍ଭର ଏହି ପୁତ୍ରେ ବିଷ୍ଣୁ ଦେହୀ ।
ନୃସିଂହ ପ୍ରଭୁ ଅଟନ୍ତି ତୁମ୍ଭ ଜ୍ୟେଷ୍ଠ ସୂନୁ
ତାଙ୍କ ମହିମା କେ କଳି ନାହିଁ ବହି ତନୁ ।
ବଡ଼ଲୋକ ବୋଲି ତୁମ୍ଭଙ୍କୁ ମୁଁ ଆଶ୍ରେ କଲି
ଦୁହିତା ବେନି ଦେଇଣ ସମର୍ପି ହୋଇଲି ।
ମୋର ଦୋଷାଦୋଷ କରିବାକ ତୁମ୍ଭେକ୍ଷମା
ଆପଣଙ୍କ କୁଳବଧୂ ହେଲେ ମୋର ଜେମା ।
ଭୋ କୃଷ୍ଣବଲ୍ଲଭ ତୁମ୍ଭେ ସବୁରି ଯେ ବାପ
ଆପଣ ଭକ୍ତି ମୋହର ଘେନିମା ଅଳପ ।
ଦୁହିତା ବେନିକି ମୋର ଦୟା କରିଥିବ
ସେ ଯେତେକ ଦୋଷକଲେ ଆପଣ କ୍ଷମିବ
ତଥାପି ଯୁବତୀ ବୟସର ମଦେ ମାତି
ଶାଶୁ ଡିଆରିଲେ ବାକ୍ୟ ଠେସ ଯେ ଦିଅନ୍ତି
ଜଣକୁ ନ ବୋଲି ଏ ସଂସାରଯାକ ସରି
ଶାଶୁକୁ ମାନନ୍ତି ଏକା ବିବେକିନୀ ନାରୀ ।
ଏ ଘେନି କରିବ ସବୁ ଦୋଷ ତୁମ୍ଭେ କ୍ଷମା
ଶାଶୁରପଣକୁ ତୁମ୍ଭେ ପ୍ରତ୍ୟକ୍ଷେ ତ ବ୍ରହ୍ମା ।
କହନ୍ତେ ବରୁଣ ଏହିରୂପେ ବଲ୍ଲଭଙ୍କୁ
ଶୁଣି ବଲ୍ଲଭ ରାଜାର ଉଲସିଲା ବୁକୁ ।

ଉଠିଣ ବଲ୍ଲଭ ତାଙ୍କୁ ସମ୍ଭାଷଣ କଲେ
ଧନ୍ୟ ଧନ୍ୟ ରତ୍ନାକର ବୋଲି ପ୍ରଶଂସିଲେ ।
ବୋଇଲେ ଅଦିତୀ ପରି ତୁମ୍ଭର ଜନନୀ
ତେଣୁ ଯେକହ ଏତେକ କୋମଳ ଯେଧ୍ୱନି
ସଂସାରେ ମହାପୁରୁଷ ଜଣେ ତୁମ୍ଭେ ଅଟ
ଆମ୍ଭେ ଯେ ମନୁଷ୍ୟ ରାଜା ସୂର୍ଯ୍ୟବଂଶେ ପାଟ
ତୁମ୍ଭେ ଦୁହିତା ଆମ୍ଭର ହେଲେ ପୁଣି ବଧୂ
କୁଳ ମୋ ଉଜ୍ଜ୍ୱଳ ହେଲା ତୁମ୍ଭର ପ୍ରସାଦୁଁ ।
ଯାହାଙ୍କର ଘରେ ବଧୂ ହୁଅନ୍ତି ଅମୂଲ୍ୟ
କୁଟୁମ୍ବଯାକ କରନ୍ତି ତାଙ୍କୁ ପ୍ରାଣତୁଲ୍ୟ
ବେନିକୁଳଯାକକୁ ସେ ଉଦ୍ଧରି ନିଅନ୍ତି
ବାପ ଶ୍ୱଶୁର ବେନିଙ୍କ ମହତ୍ତ୍ୱ ରଖନ୍ତି ।
ତାହାଶୁଣି ରତ୍ନାକର ହୋଇଲେ ସନ୍ତୋଷ
ସମସ୍ତ ରାଜାଙ୍କୁ ପୁଣି କଲେ ପଉରୁଷ ।
ଅକ୍ଷତମାନ ଦେଇଣ ଯତ୍ନେ ପୂଜାକଲେ
ସନ୍ତୋଷ ହୋଇଣ ରାୟେ ବହୁ ପ୍ରଶଂସିଲେ
ସବୁରି ମୁଖୁ ପ୍ରଶଂସା ଶୁଣି ଜଳରାଜା
ବ୍ରହ୍ମାଙ୍କର ପାଦେ ଯାଇ କଲେ ପୁଣି ପୂଜା ।
ବିନୟଭାବେ କହନ୍ତି ବେନି କରଯୋଡ଼ି
ତୁମ୍ଭ ଆଜ୍ଞାରେ ପାଇଲି ବିଷ୍ଣୁଙ୍କୁ ମୁଁ ଲୋଡ଼ି ।
ବ୍ରହ୍ମା ଯେ ବୋଇଲେ ଧନ୍ୟ ତୁ ବରୁଣ ରାଜା
ଲକ୍ଷ୍ମୀ ନୃସିଂହ ଆଣି ତୁ କଲ ଗୃହେ ପୂଜା
ତୋଠାରେ ହେଲାଣି ଆମ୍ଭ ମନ ବଡ଼ ତୋଷ
ହରିଙ୍କି ଜୁଆଇଁ କରି କଲୁ ସର୍ବ ଯଶ
ବରୁଣ ବୋଇଲେ ପିତା ତୁମ୍ଭର ପ୍ରସାଦେ
ଶ୍ରୀଲକ୍ଷ୍ମୀ ନୃସିଂହ ବିଭା କଲି ମୁଁ ଆନନ୍ଦେ ।
ସୃଷ୍ଟି କର୍ତ୍ତା ପ୍ରଭୁଙ୍କର ହେଲି ମୁଁ ଶ୍ୱଶୁର
ଶୁଣିଣ ହସିଲେ ମନେ ମନେ ବେଦବର ।
ପିତାଙ୍କୁ ତୋଷି ବରୁଣ ଗଲେ ତହୁଁ ଗମି
ଈଶ୍ୱର ପାଦେ ହୋଇଲେ ଯାଇଁ ପରମାଣି
ବୋଇଲେ ବରକନ୍ୟାଙ୍କୁ ଆଶୀର୍ବାଦ କର
ଚିରଞ୍ଜୀବୀ ହୋଇ ଭୋଗ କରନ୍ତୁ ସଂସାର ।
ଈଶ୍ୱର ବୋଇଲେ ହୋନ୍ତୁ ବଡ଼ ଭାଗ୍ୟବନ୍ତ
ପାଇଲ ଜୁଆଇଁ କରି ଶ୍ରୀହରି ଅନନ୍ତ ।
ଶୁଣିକରି ରତ୍ନାକର ମନେ ତୋଷହୋଇ
ଋଷିମାନଙ୍କର ପାଦେ ନମିଲେକ ଯାଇ ।
ସୁବର୍ଣ୍ଣର ଗଡୁଢ଼ାଳ ଦେଲେ ଗୋଟି ଗୋଟି
ଅଠାଶୀ ସହସ୍ରକୁ ଅଠାଅଶୀ ସସ୍ରଟି ।

ଋଷିଏ ତା ପାଇ ବଡ଼ ସନ୍ତୋଷ ହୋଇଲେ
ସୁବର୍ଣ୍ଣର ଗଡୁ ଦେଖି ମନେ ଶ୍ରଦ୍ଧାକଲେ ।
ବୋଇଲେହୋ ଧନ୍ୟ ରାଜାଜୀବନତୋଧନ୍ୟ
ଏ ଗୁଣରୁ ପାଇଲୁତୁ ବନ୍ଧୁ ଭଗବାନ ।
ଶ୍ରୀନୃସିଂହ ପ୍ରଭୁଙ୍କର ଶ୍ୱଶୁର ତୁ ହେଲୁ
ଏ ଘେନି ଆମ୍ଭେ ତୋଠାରେ ବହୁଶ୍ରଦ୍ଧାକଲୁ
ବରୁଣ ବୋଇଲେ ସବୁ ଋଷିଙ୍କ କରୁଣା
ଏ କଥା ଏତେ ବୋଲି ନଥିଲା ମୋତେ ଜଣା
ଏତେ ବୋଲିଣ ବରୁଣ ଧରି କରେ ଅର୍ଘ୍ୟ
ସବୁ ଋଷିଙ୍କର ପାଦ ପଖାଳିଲେ ବେଗ ।
ବିଭା ଅକ୍ଷତ ଦେଇଣ ବହୁ ପୂଜା କଲେ
ଋଷିମାନଙ୍କୁ ପ୍ରଣମି ଗୃହେ ଚଳିଗଲେ ।
ଏଥୁଅନନ୍ତରେ ପୁଣି ନୀରବତୀ ରାଣୀ
ବସିଛନ୍ତି କୋଳେ ଘେନି ବେନି ଠାକୁରାଣୀ
ଏମନ୍ତ ବେଳେ ମିଳିଲେ ଆସି ରତ୍ନାକର
ତିଆରନ୍ତି ଓଷ୍ଠ ଧରି ବେନି ଦୁହିତାର
ବୋଲନ୍ତି ମାତା ଗୋ ମୋର ଶୁଣ କମଳିନୀ
ତୁମ୍ଭେ କି ନ ଜାଣ ମୁଁ କି ତିଆରିବି ପୁଣି ।
ପ୍ରତ୍ୟକ୍ଷେ ଲକ୍ଷ୍ମୀ ହୋଇଛ ତୁମ୍ଭେ ଅବତାର
ଆପଣଙ୍କ ଗୁଣ କିଛି ଜାଣେ ବେଦବର ।
ପ୍ରକାଶ ହେଲେ ଗୋ ପୃଥ୍ୱୀ ପାଳିବାର ପାଇଁ
ମୋ ଘରେ ଜନ୍ମିଲେ ଆସିଦୁହିତା ବୋଲାଇ
ଶ୍ରୀନୃସିଂହ ଅନନ୍ତଙ୍କୁ ଦେଲୁ ସତ୍ୟ କରି
ଏହି ପୂଣ୍ୟେ ଆମ୍ଭେ ଯିବୁ ସଂସାରୁ ନିସ୍ତରି ।
ଆଜିଯାଏ ମୋର ଘରେ ଥିଲେ ଭଗ୍ନିବେନି
ପାଳୁଥିଲେ ଅତି ସ୍ନେହେ ତୁମ୍ଭର ଜନନୀ ।
ଦୁହିତା ହୋଇ ମୋହର ଗୃହେ ଥିଲେ ପୁଣି
ଶାଶୁଘରେ ହୋଇଲ ଯେ କୁଳ ଭୁଆସୁଣୀ
ବାପଘରେ ଥିଲେ ଝିଅ କନ୍ୟା ହୋଇଥାଇ
ଶ୍ୱଶୁର ଘରକୁ ଗଲେ ସେ ବୋହୂ ବୋଲାଇ
ବାପଘରେ ଥିବାଯାଏ ଝିଅ ଅଲିଅଳ
ଶାଶୁଘରକୁ ଯେ ଗଲେ ଭାଜେ ତାର ଗେଲ
ବାପଘର ବୁଦ୍ଧିଯାକ ଦେବ ସବୁ ଛାଡ଼ି
ଶାଶୁ ବାକ୍ୟ ପାଳିଥିବ ସଦା କରଯୋଡ଼ି ।
ବଚନଟି ବାଙ୍କକରି ନ କହିବ କେବେ
ଶାଶୁ ଶ୍ୱଶୁରଙ୍କୁ ସେବୁଥିବ ବିଷ୍ଣୁ ଭାବେ ।
ଶାଶୁ ବାକ୍ୟଗୋଟି ଶୁଣି ନ କରିବ ହାସ
ସବୁ କଥାରେ ଶାଶୁଙ୍କୁ ଘେନିବ ବିଶେଷ ।

ବସିଥିଲେ ଶାଶୁଙ୍କୁ ଯେ ଦେଖିଲେ ଉଠିବ
ଚରଣ ସେବାକୁ ନିତି କେବେ ନ ଛାଡ଼ିବ ।
ଘରକୁ ଶାଶୁ ଶ୍ୱଶୁର ଜାଣ ଏକା ମୂଳ
ଅପ୍ରଛ ବୋହୁ ଯେ ଶାଶୁସଙ୍ଗେ କରେ ଗୋଳ
ଶାଶୁର ବୋଲ·ପାଳିଣ ଯେଉଁ ବୋହୂଥାଇ
ତାହାର ଭାଗ୍ୟ ସଂସାରେ ଜାଣ ନ ମିଳଇ ।
ଦିଅର ନଣନ୍ଦ ଶାଶୁ ଶ୍ୱଶୁର ଭଗିନୀ
ସବୁଙ୍କୁ ସେ ସରିକରି ହୃଦେ ଥିବ ଘେନି ।
ସ୍ୱାମୀକି ସେ ସେବା କରିଥିବ ସବୁକାଳ
ଦାସୀଙ୍କ ସଙ୍ଗେନୋହିବକେବେମାଗୋମେଳ
ସ୍ୱାମୀଙ୍କ ସ୍ନେହ କଥାରେ କେଭେ ନ କହିବ
କହିଲେଟି ଭଲମନ୍ଦ ମଧ୍ୟ ଏକ ହେବ ।
ସ୍ୱାମୀ କହିବା ବାଣୀକି ସୁଧାପ୍ରାୟେ ମଣି
ଆଜ୍ଞା ପରମାଣେ ଥିବ କର୍ଣ୍ଣେ ବାକ୍ୟ ଶୁଣି ।
ବିଷ୍ଣୁର ସମାନ୍ ମାନି ବାକ୍ୟ ପାଳୁଥିବ
ସ୍ତ୍ରୀଙ୍କ କୁଳରେ ସେହି ଭାଗ୍ୟବତୀ ହେବ ।
ସଂସାରେ ସୁପତିବ୍ରତା ନାରୀ ପୂଜା ପାଇ
ଅନ୍ତେ ପୁଣି ସ୍ୱର୍ଗପୁର ଲଭଇ ସେ ଯାଇଁ ।
ତୁମ୍ଭେ ତ ପରମଲକ୍ଷ୍ମୀ ସତୀ ଶିରୋମଣି
ମୁଁ କିସ ତିଆରିବି ଗୋ ତୁମ୍ଭେ କି ନ ଜାଣି
ଚାଲିରୁ ସୁବୁଦ୍ଧି ସ୍ତିରୀ ପୁଣି ଜଣାଯାଏ
ତୁମ୍ଭେ ତ ବିଜ୍ଞ କହିବି ମୁହିଁ କିସ ମାଏ ।
ସ୍ୱାମୀର ଆଜ୍ଞା ପାଳିଣ ସଦା ଥିବ ଜାଣ
ମୁହିଁ କିସ କହିବି ଶ୍ରୀଲକ୍ଷ୍ମୀ ଛାମୁରେଣ ।
ଯେଉଁ ମହାଲକ୍ଷ୍ମୀ ବିଷ୍ଣୁଙ୍କର ପ୍ରିୟବତୀ
ମୁହିଁ ତାଙ୍କୁ ତିଆରୁଛି କରିଣ ଭକତି ।
ଅଭ୍ୟବ ଦୁହିତାକୁ ଯେ ମାତା ପିତା ପୁଣି
ସୁବୁଦ୍ଧି ହୁଅ ତିଆରୁଥାନ୍ତି ପୁଣି ପୁଣି ।
ତୁମ୍ଭେ ଲକ୍ଷେଗୁଣେ ହୋଇଅଛ ଅବତାର
ଆବର ସ୍ତିରୀଯାକ ତ ତୁମ୍ଭ ପରିଚାର ।
ଏରୂପେ ଝିଅକୁ କହି ସେ ବରୁଣ ରାଜା
ନୃସିଂହଙ୍କ ପାଦ ସେବି କଲେ ବହୁ ପୂଜା ।
ଅନେକ ସ୍ତୁତି କରିଣ ନୃସିଂହ ଚରଣ
ଲକ୍ଷ୍ମୀଙ୍କୁ ସଙ୍ଗେ ଘେନିଣ କଲେ ସମର୍ପଣ ।
ବୋଲନ୍ତି ନୃସିଂହ ପ୍ରଭୁ ତୁମ୍ଭେ ପୁଣ୍ୟଦେହୀ
ତୁମ୍ଭ ବେନି ଭାଇଙ୍କି ଯେ ଦେଲି କନ୍ୟାହୁଇ
ବଡ଼କୁଳ ବୋଲିଣ ମୁଁ ଶରଣ ପଶିଲି
ମହତ୍ୱକୁ ଜଗି ସ୍ୱାମୀ ଛାମୁରେ କହିଲି ।

ବେନି ଦୁହିତା ମୋହର ଅଲିଅଳ ଜେମା
ଏହାଙ୍କର ଦୋଷାଦୋଷ କରିବ ଯେ କ୍ଷମା
ତୁମ୍ଭେ ପରଂବ୍ରହ୍ମରାଶି ହୋଇ ବେନିଖଣ୍ଡ
ତହୁଁ ଅଧେ ଲକ୍ଷ୍ମୀ କରି ରଖିଲ ବ୍ରହ୍ମାଣ୍ଡ ।
ଆବର ଖଣ୍ଡେକ ତୁମ୍ଭେ ହେଲ ନାରାୟଣ
ସେହି ଲକ୍ଷ୍ମୀ ଭୃଗୁସୁତା କଲ ତୁମ୍ଭେ ପୁଣ ।
ଦୁହିତା କଲେକ ତାଙ୍କୁ ଭୃଗୁଋଷି ଆଣି
ଆମ୍ଭ ପତ୍ନୀ କୋଳେ ଦେଇଗଲେ କମଳିନୀ
ସେହିଦିନୁ ପାଳି ଆମ୍ଭେ ସମ୍ଭାଳିଣ ଥିଲୁ
ବୃହସ୍ପତି କହିବାରୁ ଗୋଚର ହୋଇଲୁ ।
ପ୍ରାଣୁ ଅଧିକ ସମ୍ଭାଳି ଥିଲୁ ଆମ୍ଭେଘରେ
ପ୍ରଭୁଙ୍କୁ ଦେଲୁ ଶରଣ ପଶି ଏବେ ଦାରେ ।
ଏହାଙ୍କୁ ସୁଦୟା କରିଥିବ ଅନୁବ୍ରତେ
ମୁଁ କିସ କହିବି ଆଉ ନୃସିଂହ ଅଗ୍ରତେ ।
କୁମାରୀ ହୋଇ ମୋହର ଗୃହେ ବଢ଼ିଥିଲେ
ଏବେ ମୁଁ ପ୍ରଭୁଙ୍କୁ ଦେଲେ ତୁମ୍ଭର ସେଭଲେ
ଏତେକ ବୋଲି ବରୁଣ ମନେ ଶୋକ କରି
ପିତାଙ୍କ ଶୋକ ଦେଖିଣ କାନ୍ଦନ୍ତି ଯେ ଶିରୀ
ଶ୍ରୀୟା ଶୋକ ଦେଖି ବରୁଣର ମହ୍ୟଦେଇ
ସେ ପୁଣି ଶୋକ କରି ନ ପାରେ କଥା କହି
ରାଣୀ ବୋଇଲେ କୁମାରୀ ଦିନରୁ ତୁମ୍ଭଙ୍କୁ
ପୋଷିଥିଲି ମୁହିଁ କ୍ଷୀର ଦେଇଣ ଦୁହିଁଙ୍କୁ ।
ଆଜଠାରୁ ଗୃହ ମୋର ହେଲା ଏବେ ଶୂନ୍ୟ
ତୁମ୍ଭ ମୁଖ ଦେଖି ଆମ୍ଭେ ସାରୁଥିଲୁଁ ଦିନ ।
ଘର ଅଲଗା ଦିଶିବ ମୋର ଆଜିଠାରୁ
କିରୂପେ ମୁର୍ଚ୍ଛି ମୁଁ ସ୍ନେହ ଛିଡ଼ିବି ହୃଦରୁ ।
ସ୍ୱାମୀ ମନ ପତ୍ନୀ ମନ ଏକ ହେଲା ଯାଏ
ଲାଗୁଅଛି ଆମ୍ଭମନ ପୋଷାଜୀବ ପ୍ରାୟେ ।
ତଥାପି ପୁରୁଷ ଯେ ବିଷୟ ନ ଚିହ୍ନନ୍ତି
କାହା ମୁଖୁ କିସ ଶୁଣି ପତ୍ନୀକି ଗଞ୍ଜନ୍ତି ।
ନବୋଲନ୍ତି ଆମ୍ଭର ଏ ଅଟେ ଅର୍ଦ୍ଧଅଙ୍ଗ
ବୋଲଣା କରନ୍ତି ସେହୁ ନ ବୁଝି ପ୍ରସଙ୍ଗ ।
ଲକ୍ଷ୍ମୀ ମୁଖକୁ ଚାହାଁନ୍ତି ମନ୍ଦେ ମନେ ହସି
ଶାଶୁଙ୍କ କହିବା ବାଣୀ ଶୁଣି ବ୍ରହ୍ମରାଶି ।
ବୋଇଲେ ଜନନୀ କହିଲ ତ ଜନହିତେ
ଏକଥା ଜାଗ୍ରତ କରି ରଖିବି ଯେ ଚିତ୍ତେ ।
ତାହାର ଯଶ ଗୋଟିକ୍ ହେବ କେବେ ଊଣା
ଲକ୍ଷ୍ମୀ ବୋଇଲେ ତୁମ୍ଭର ସବୁ ସ୍ନେହକରୁଣା

ମାତାଙ୍କ କହିବା କଥା ନୁହେଁ ଅପ୍ରମାଣ
ଶୁଣିଣ ହସିଲେ ମନେ ମନେ ନାରାୟଣ
ଏଥିଉତ୍ତାରେ ସେ ବରକନ୍ୟା ସଙ୍ଗକରି
ଗୈଣ୍ଡାଳ ପକାଇ ଚାଲନ୍ତି ସେ ପଛେ ହରି ।
ସୁଖାସନରେ ବସାଇ ହୁଳହୁଳି ଦ୍ୟନ୍ତି
ବଂଶୀ ଶଙ୍ଖ ବଜାଇଣ ପଛେ ଘେରିଯାନ୍ତି ।
ଏହିରୂପେ ଶେଷଦେବ ଇଳା ଠାକୁରାଣୀ
ବେଶ କରାଇଣ ପଛେ ଚଳନ୍ତି କାମିନୀ ।
କମଳାଙ୍କ ଆଗେ ପଛେ ଚଳନ୍ତି କାମିନୀ
କନ୍ଦି ବିକନ୍ଦିରୁ ବୁଲିଯାନ୍ତି ଦାଣ୍ଡେ ପୁଣି ।
ବଦୟନ୍ତି ବେଦବ୍ରହ୍ମା ଶୁଣ ହେ ନାରଦ
ବଲ୍ଲଭଙ୍କ ନଗ୍ରେ ଯାଇ ମିଳିଲେ ସ୍ତ୍ରୀବୃନ୍ଦ ।
ହାନ୍ଦୋଳାରେ ଉଠାଇଣ ବରକନ୍ୟାନେଲେ
ଜନନୀ ପାଦେ ନୃସିଂହ ଶେଷ ଓଳଗିଲେ ।
ଚଉଷଠି ସହସ୍ର ଯେ ନାୟିକାଏ ମିଳି
ଉଭା ହୋଇଣ ଆଗରେ ଦ୍ୟନ୍ତି ହୁଳହୁଳି ।
ପୁତ୍ର ବଧୂଙ୍କୁ ଦେଖିଣ ଭଗବତୀ ରାଣୀ
କୋଳେ ବସାଇଣ ମୁଖେ ଚୁମ୍ବଦେଲେ ପୁଣି
ସେଠାରେ ଉତ୍ସବ କଥା କେ ପାରିବ କହି
ଅଦିତୀ କୋଳରେ ଯେହ୍ନେ ଇନ୍ଦ୍ର ଶଚୀଦୁଇ
ଦିଅନ୍ତି ଯେ ରୂପେ ଲକ୍ଷ୍ମୀ ନୃସିଂହ ଯେ ବେନି
ନିଉଛାଳି ପକାଇଲେ ଲକ୍ଷେ ହୀରା ଘେନି ।
ଦଣ୍ଡାରେ ପକାନ୍ତେ ଲୋକନେଲେ ଯେଝାଠାଏ
ଶୁଣନ୍ତି ନାରଦ ଋଷି କହନ୍ତି କଥାଏ ।
ଚୁମ୍ବନ ଦେଇଣ ମାଏ ଶ୍ରୀଅଙ୍ଗ ଆଉଁସି
ବୋଲନ୍ତି ମୁଁ ମୋକ୍ଷ ହେଲି ଦେଲି ବ୍ରହ୍ମରାଶି
ଏହିରୂପେ ବୋଲି ଧାତା ଶେଷ ଦେବେପୁଣି
କୋଳରେ ବସାଇ ମୁଖେଚୁମ୍ବଦେଲେ ଆଣି
ବଧୂଙ୍କ ମୁଖ ଦେଖିଣ ହେଲେ ମାଏ ଖୁସି
ବୋଲେ ଭଲା କହି ଥିଲେ ସେ ନାରଦ ଋଷି
ଚିତ୍ରପଟେ ଦେଖାଇଣ ଥିଲେ ସେହୁ ମୂର୍ତ୍ତି
ତହିଁରୁ ଶତେ ଅଧିକ ଦିଶେ କନ୍ୟା ଜ୍ୟୋତି
ଧନ୍ୟ ଧନ୍ୟ ଅଟନ୍ତି ସେ ନାରଦ ଗୋସାଇଁ
ଚିତ୍ରପଟେ ଏହା ମୋତେ ଥିଲେ ତ ଦେଖାଇ
ଏ କନ୍ୟାରୂପେ କିରୂପେ ଥିଲେ ବିହି ଗଢ଼ି
ପୃଥ୍ୱୀଯାକ ବିଷୟାଦି ଦେଇ ମନୁଛାଡ଼ି ।
ମଥାରୁ ତଳିପା ଯାଏ ଚାହିଁ ଭଗବତୀ
ମନରେ ପାଞ୍ଚ ଲକ୍ଷଣ ଦେଖି ବିଚାରନ୍ତି ।
ବୋଲନ୍ତି ଏହି ଜଗତେ ଯେତେ ସ୍ତିରୀଥିଲେ
ସବୁ ରୂପ ଏକ କରି କନ୍ୟା ଜନ୍ମ କଲେ ।
ଅଗ୍ନି ଭିତରେ ସୁବର୍ଣ୍ଣ ପୁରାଇଣ ନେଇ
ତୂରି ପରଶ ପଥରେ ଅମୃତ ମିଶାଇ ।
ଏ ତିନିକି ଏକ କରି ଗଢ଼ିଲେକ କନ୍ୟା
ମୃତସଞ୍ଜୀବନୀ ମନ୍ତ୍ରେ ଠୁଳକଲେ ବ୍ରହ୍ମା ।
ତେଣୁ ହେ ଚନ୍ଦ୍ରମାପ୍ରାୟ ଦିଶେଦେହ ତେଜ
ତିଳପୁଷ୍ପକୁ ଆଣି କି କଲେ ନାସା ଉଚ୍ଚ ।
କୁରଙ୍ଗୀନେତ୍ର ପ୍ରାୟେକ ଦିଶେ ଚକ୍ଷୁ ବେନି
କାମଧେନୁ ପ୍ରାୟେ ଦିଶେ ଭ୍ରୁଲତାର ଠାଣି
ନବଘନ ପ୍ରାୟେ କଳା ଦିଶେ କୋଶ ବର୍ଣ୍ଣ
ଗୁରୁ ଶୁକ୍ରବାର ପ୍ରାୟେ ଦିଶେ ବେନି କର୍ଣ୍ଣ ।
ଦିଶଇ ଦର୍ଶନପନ୍ତି ମୁକ୍ତାପନ୍ତି ଜିତି
ଡାହାଣ ଆବର୍ତ୍ତ ଶଙ୍ଖ କଣ୍ଠରେ ଆକୃତି ।
ପଦ୍ମନାଡ଼ ପରାୟେକ ଦିଶେ ଭୁଜ ଠାଣି
ଶମ୍ଭୁ ଆକୃତି ଦିଶଇ ପୟୋଧର ବେନି ।
ସୁଧାରସକୁ ଦେଇଛି ତହିଁ ନେଇ ଢ଼ାଳି
ବସିଅଛି ମନସିଜ ସେ ସ୍ଥାନରେ ଭାଳି ।
ବାଆସ୍ତରୀ ପ୍ରେମରସ ତହିଁ ଅଛି ଥୋଇ
ଘୋଡ଼ାର ହୀରା ଡାକୁଣୀ ତହିଁ ଅଛି ଦେଇ ।
ତହିଁରେ ତ ହୀରାକଢ଼ୀ ଯୋଚିଅଛି ସ୍ଥାପି
ହେମଫରୁଆ ମୁଣ୍ଡିର ପ୍ରାୟେ ଦିଶେ ବ୍ୟାପି
ପକ୍ୱରମ୍ଭା ଫଳ ପ୍ରାୟେ ଦିଶେ ଦେହବର୍ଣ୍ଣ
ତହିଁକି ଉରଜସ୍ଥାନ ଦିଶଇ ଶୋଭନ ।
ବାହୁରେ ବାହୁଟି ଦୁଇ କରେ ରତ୍ନ ଚୁଡ଼ି
ଦିଶନ୍ତି ଅଙ୍ଗୁଳିମାନ ଯେହ୍ନେ ଚମ୍ପାକଢ଼ୀ ।
ଦ୍ୱିତୀୟାର ଚନ୍ଦ୍ର ପ୍ରାୟେ ଦିଶେ ନଖରେଖ
କୁନ୍ଦିଲା କମ ପ୍ରାୟେକ ଦିଶେ ଅତି ତୀକ୍ଷ୍ଣ ।
ଡମ୍ବରୁ ଆକାରେ ଦିଶେ ଅଣ୍ଟାଗୋଟି ସରୁ
ବହିଛି କନ୍ୟାବାସ ଏ ଯଉବନ ଗରୁ ।
ପିମ୍ପୁଡ଼ିର ଅଣ୍ଟାପରି ଦିଶେ ଏକା କଟୀ
କିରୂପେ ଏ କୁଚଭାର ବହିଛି ହୃଦେଟି ।
ଉଠିଣ ଯେବେ ଏ ଚାଲିଯିବ ପାଦଟେକି
ତକ୍ରାଳେ କଟୀକି ଲାଇଁ ପଡ଼ିବ ଭୂଇଁକି ।
ଏଡ଼େ ସଉନ୍ଦର୍ଯ୍ୟ ରୂପ ବିହି ବୋଲି କଲେ
ଲବଣୀ ଉପରେ ଦେଇ ପାଷାଣ ଲଦିଲେ ।
କାମସିଂହାସନ ଅଟେ ଏହା ଜାନୁଯୁଗ
ତହିଁକି ପାଇଛି କେଡ଼େ ଶୋଭା କଟୀଭାଗ ।

ପିନ୍ଧିବା ମେଖଳା ପାଉଅଛି ଶୋଭା ସେହୁ
ଭଲ ଏ କନ୍ୟାକୁ ଗଢ଼ିଥିଲେ ଅଷ୍ଟବାହୁ ।
ତଳିପା ପେଣ୍ଡୁ ଅଣ୍ଟା ଯେ ସବୁ ସମସରି
ଦେଖିଲେ ତ ମୋହ ଜାଣ ହେବେତ୍ରିପୁରାରି
ଉଲଟ ରମ୍ଭା ଜିଣି ତ ଦିଶେ ଜାନୁଯୁଗ
କୁଙ୍କୁମ ବୋଲି ହୁଅନ୍ତେ ଦିଶେ ଫୁଟି ଅଙ୍ଗ ।
ସୁବର୍ଣ୍ଣର କଢ଼ିପ୍ରାୟ ଏକ ଅଙ୍ଗୁଳିପନ୍ତି
ବାଳୁତ ଶଶୀ ପରାୟ ଦିଶେ ନଖଜ୍ୟୋତି ।
ରକ୍ତପଦ୍ମ ପ୍ରାୟ ପାଦେ ଅଳତାର ବେଢ଼
ଚାହିଁଲେ ତ ମୋହ ହୋଇଯିବେଯୋଗାରୁଢ଼
କଞ୍ଚା ହଳଦୀର ପ୍ରାୟେ ଦିଶେ କନ୍ୟା ଦେହ
ଭଲା ଏହି ରୂପେ ଗଢ଼ିଥିଲେ ପିତାମହ ।
ଶ୍ରୀମହାଲକ୍ଷ୍ମୀ ଦିଶନ୍ତି ଯେହ୍ନେ ଶୋଭାକର
ତାଙ୍କୁ ଲୁଚି ଚାହିଁଥିଲେ ନ ଚିହ୍ନିବେ ନର ।
ଏ ପୃଥ୍ୱୀଯାକେ ଯୁବତୀ ଯେତେ ଛନ୍ତି ପୂରି
ଏ ବେନି ଭଗିନୀ ପ୍ରାୟେ ନ ଦିଶନ୍ତି ନାରୀ ।
ବୋଲନ୍ତି ଯୁବତୀଗଣ ଶୁଣ ମହାଦେଈ
ଅଟନ୍ତି ତୁମ୍ଭର ବେନି ବଧୂ ଦେବଦେହୀ ।
ଦିଶନ୍ତି ଲକ୍ଷ୍ମୀଙ୍କ ପ୍ରାୟ ଶେଷଦେବ କାନ୍ତା
ଭଲା ନିର୍ମାଣି ଏହାଙ୍କୁ ଅଛନ୍ତି ବିଧାତା ।
ସାକ୍ଷାତେ ମହାଲକ୍ଷ୍ମୀ ଏ ତୁମ୍ଭ ବେନି ବଧୂ
ଏମନ୍ତ ବୋଲି କହନ୍ତି ସର୍ବେ ସାଧୁ ସାଧୁ ।
ହଂସିନୀ ଯେ ମୁଦ୍ରସୁଲୀ ଦାସୀ ପରିବାରୀ
କମଳା ଇଳା ପାରୁଶେ ଛନ୍ତି ସେବାକରି ।
ଏଥୁଅନନ୍ତରେ ଶୁଣ ହେ ନାରଦ ଦ୍ୱିଜ
ଯିବାକୁ କୃଷ୍ଣବଲ୍ଲଭ ରାଜା ହେଲେ ସଜ ।
ବାଜିଲା ବିଜିଘୋଷ ଯେ ଟମକ ନିଶାଣ
ଢୋଲ ଦମା ଦୁଲୁ ଦୁଲୁ ଶବ୍ଦ ଗରୁ ଟାଣ ।
ବଂଶୀ ହୁଳହୁଳି ଶଙ୍ଖ ମହୁରୀ ଯେ ବାଜେ
ଗରୁଡ଼ାସନେ ଶ୍ରୀଲକ୍ଷ୍ମୀ ନୃସିଂହ ଯେ ବିଜେ
ଇଳାକନ୍ୟାକୁ ଘେନିଣ ଶେଷଦେବ ଯାଇ
ବସିଲେକ ଦେବଯାନେ ସୁବେଶ ଯେହୋଇ
ଚଉଷଠି ସହସ୍ର ଯେ ନାୟିକାଏ ବସି
ହାନ୍ଦୋଳା ଲାଗି ହୋଇଣଗଲେ ଶୁଭ୍ରକେଶୀ
ପାଲିଙ୍କିରେ ବିଜେକଲେ ରାଜା ଆଉ ରାଣୀ
ହଂସିନୀ ପରିବାରୀଏ ସଙ୍ଗେ ଛନ୍ତି ପୁଣି ।
ସୁଜାଣ ମହାମନ୍ତ୍ରୀ ଯେ କର୍ଣ୍ଣାଟେଶ ରାଜା
ହସ୍ତୀର ଉପରେ ଚଢ଼ି ଯାନ୍ତି ବାଇ ବାଜା ।

ଆପଣାର ସୈନ୍ୟଯାକ ସର୍ବେ ହେଲେ ସଜ
ଆରୋହିଣ ଗଲେ ନିଜ ନିଜ ଅଶ୍ୱ ଗଜ ।
ଲୋକଙ୍କର ଗହଳରେ ଚାଲି ନୋହେ ବାଟ
ପାଞ୍ଚ ଯୋଜନକୁ ମାଡ଼ିଯାନ୍ତେ ଆଗେ ଥାଟ
ଏଥୁଅନନ୍ତରେ ବ୍ରହ୍ମା ନୃସିଂହ ସଙ୍ଗତେ
ଋଷିକୁଳଯାକ ଘେନି ମିଳିଲେ ତୁରିତେ ।
ନୃସିଂହଙ୍କ ଗହଣରେ ସର୍ବେ ଯାନ୍ତି ଚାଲି
ଘୋଷଣା ଦେଲେ ମେଲାଣି ହୁଅ ସର୍ବବୋଲି
ଆସିଥିଲେ ସପ୍ତଦ୍ୱୀପେ ଯେତେ ରାଜାପୁଣ
ଚଳିଗଲେ ସର୍ବେ ତହୁଁ ମେଲାଣି ହୋଇଣ ।
ମୁରାସୁର ରାଜାର ଯେ ଥିଲା ଯହିଁ ଦୂତ
ଅସୁର ଛାମୁରେ ଯାଇ ମିଳିଲା ତ୍ୱରିତ ।
ସଭାକରି ମୁରସୁର ରାଜା ବସିଥିଲା
ଦୂତକୁ ଦେଖି ଲାଖର କଥା ପଚାରିଲା ।
ବୋଇଲା ବରୁଣପୁରେ ଥିଲୁ ପରା ତୁହି
କହ ସେ ଲାଖର କଥା ଶୁଣିବଇଁ ମୁହିଁ ।
ବରୁଣର ଦୁହିତା ତ ସ୍ୱୟଂ ଲକ୍ଷ୍ମୀ ଅଟେ
ବିଷ୍ଣୁ ବିନା ଛୁଇଁବାକୁ ଆଉ କେ ନ ଘଟେ
ଏଣୁ ସେ ଲାଖକୁ କେହି ନ ପାରିଲେ ବିନ୍ଧି
ମୋହଠାରୁ ସଂସାରେ କେ ଆଉଅଛିଯୋଧୀ
ସେ ଲାଖ ପାଖକୁ ଯାଇ ପଳାଇ ଆସିଲି
ବିଷ୍ଣୁ ଏକା ବିନ୍ଧିବି ମୁଁ ବୋଲି ବିଚାରିଲି ।
ତଥାପି ମୋତେ ତ ଡରି ବିଷ୍ଣୁ ଜନ୍ମିନାହିଁ
ବୈକୁଣ୍ଠ ପୁରରେ ଲୁଚିଅଛି ଭାବଗ୍ରାହୀ
ହରି ଜନ୍ମିଲେ ପାରନ୍ତା ସିନା ଲାଖବିନ୍ଧି
ବିଭାହୋଇ ଲକ୍ଷ୍ମୀ ଯାନ୍ତେ ଘେନି ଦୟାନିଧି
ମୋହର ଡରେ ତ ଏକା ବିଷ୍ଣୁ ଜନ୍ମୁ ନାହିଁ
ତେଣୁକରି କମଳାକୁ ନ ପାରେ କେ ନେଇ
ରାଜାର ମୁଖୁ ଏମନ୍ତ ବାଣୀ ଦୂତ ଶୁଣି
ବୋଇଲା ଭୋ ସାବଧାନେ ଶୁଣ ଦୈତ୍ୟମଣି
କୃଷ୍ଣବଲ୍ଲଭର ପୋଏ ବିନ୍ଧିଲେ ସେ ଲାଖ
ବୋଲୁଥିଲେ ଲୋକେ ଏହୁ ଅଟେ ପଦ୍ମମୁଖ
ବିଭାହୋଇ କନ୍ୟାକୁ ସେ ରାଜ୍ୟେଘେନିଗଲେ
ସେ ସର୍ବ ଦେଖି ଅଇଲି ମୁହିଁଚକ୍ଷୁ ଡୋଳେ
ତାହା ଶୁଣି ମୁରଦୈତ୍ୟ ପାଞ୍ଚେ ହୃଦଗତେ
ବୋଇଲା ନିଶ୍ଚୟ ବିଷ୍ଣୁ ଜନ୍ମିଲା ଜଗତେ ।
ବିଷ୍ଣୁ ନୋହିଲେ ସେ ଲାଖ ପାରନ୍ତାକେବିନ୍ଧି
ଏବେ ଜାଣିଲି ନୃସିଂହ ଅଟେ ବଡ଼ ଯୋଧୀ

ତଥାପିଯୋଦ୍ଧାହୋଇଲେନୁହେଁ ମୋତେସରି
ବ୍ରାହ୍ମଣକୁଳେ ଜନ୍ମିଲା ଆସି ସିନା ହରି ।
କ୍ଷତ୍ରୀକୁଳେ ଜନ୍ମିଥିଲେହୋନ୍ତା ମୋତେ ଭଏ
ବିପ୍ରକୁଳ ଲୋକ ଯୁଦ୍ଧକୁକି ସରି ହୁଏ ।
ବୁଝିଲେ ସବୁ ଜାତିକି ବିପ୍ର ଅଟେ ଶ୍ରେଷ୍ଠ
ମାଗି ଯାଚି ଖାଇ ସେହୁ ପୋଷୁଥାନ୍ତି ପେଟ
ଗଡୁ ତମ୍ବାପାତ୍ରୀ କୁଶବିଡ଼ା କରେ ଧରି
ଚଳନ୍ତି ପ୍ରଭାତୁ ସନ୍ଧ୍ୟା ତରପଣ ସାରି ।
ପାଣିରେ ବୁଡ଼ି ଆଚାର ନିଷ୍ଠା କରୁଥାନ୍ତି
ପାସୋରି ଯିବ ବୋଲି ସେ ବେଦ ବଖାଣନ୍ତି
ଏମନ୍ତ ଲୋକଙ୍କୁ ମୁହିଁ ଡରଇ କି କେବେ
ମାନବ ଦେହେ ଜନ୍ମିଛି ସିନା ବାସୁଦେବେ
ଜନ୍ମିବ ସହସ୍ରପାଦେ ବିଷ୍ଣୁ ଯେତେବେଳେ
ସେ ଅବତାର ଦେଖି ମୁଁ ମରିବି ତତ୍କାଳେ ।
କଥା ଲହରିରେ ଏହାବୋଲି ତୋତେ କହି
ଏ କଥା ଗୋପ୍ୟ କରିବୁ କାହାକୁ ନ କହି ।
ସହସ୍ର ପାଦେ ଜନ୍ମିଲେ ମାତା ଜୀଇବ କି
ବେନି ପାଦେ ଜନ୍ମୁ ମାତା ପଡ଼ଇ ଚମକି ।
ଅଣ୍ଟା ପିଠି ଯାକ ତାର ସବୁ କରେ ବ୍ୟଥା
ସହସ୍ରେ ପାଦ ହେବାର କେତେକାଳ କଥା
ଏତେ କହିଣ ଅସୁର ହୋଇଲାକ ତୁନି
ଶୁଣ ହେ ନାରଦ କହନ୍ତି ଯେ ପଦ୍ମଯୋନି ।
ଅସୁର ଲୋକରି ବୁଦ୍ଧି ଅଟଇ ବା କେତେ
ମୂର୍ଖପଣେ ବିପ୍ରକୁ ନ ମାନେ କଦାଚିତେ ।
ଯେବଣ ବ୍ରାହ୍ମଣକୁଳ ଅଟେ ବିଷ୍ଣୁଦେହୀ
ତାଙ୍କୁ ନ ମାନେ ବଡ଼ିମାପଣ ହୃଦେ ବହି ।
ପ୍ରଭୁଙ୍କ ବିଷୟ ଏବେ କହିବା ହୋ ଶୁଣ
ଗରୁଡ଼ ଆସନେ ବିଜେ କଲେ ନାରାୟଣ ।
ଶ୍ରୀନୃସିଂହ ବିଭାହୋଇ ଯାନ୍ତି ସର୍ବଶୁଭେ
ବ୍ରହ୍ମା ଜଣାଏ ଶୁଣିମା ପ୍ରଭୁ ବାସୁଦେବେ ।
ଋଷି ସହିତେ ଯାଉଛୁ ଆମ୍ଭେ ସର୍ବେ ଚଳି
ଆପଣଙ୍କ ବିଭାଯୋଗୁ ଥିଲୁ ଆମ୍ଭେ ମିଳି ।
ମେଲାଣି ହୋଇ ଯାଉଛୁ ଏବେ ଯେଝାପୁର
ମୁରର କଥା ଲାଗୁଛି ମୋତେ ଅଗୋଚର
ଦୈତ୍ୟର ଭାରା ପୃଥିବୀ ନପାରିଲା ସହି
ଆଉ ଲୋକଙ୍କର କଥା କହିବି କି ମୁହିଁ ।
ଦେବତା ମାନବ ଆଦି ସର୍ବେ ତାକୁ ଡରି
ମୋତେମାତ୍ର କହୁଥାନ୍ତି କରିଣ ଗୁହାରି ।
ମୋ ହାତରେ କିସ ହେବ କରିବି ମୁଁ କିସ
ଶୁଣିକରି ଶ୍ରୀନୃସିଂହ ହେଲେ ହସହସ ।
ପ୍ରଭୁ ବୋଇଲେ ମେଲାଣି ଏବେ ବ୍ରହ୍ମାହୁଅ
ଋଷିମାନଙ୍କୁ ଘେନି ଯେ ଯାହା ପୁରେଥାଅ
ନିକଟେ ଦୈତ୍ୟରାଜାକୁ କରିବି ମୁଁ ନାଶ
ଏଥକୁ ତୁମ୍ଭେ ଆଉ ନକର ମନେ ତ୍ରାସ ।
ଶୁଣିକରି ପିତାମହ ବଡ଼ ହର୍ଷ ହେଲେ
ଋଷିମାନଙ୍କୁ ଘେନି ଯେଯାହାପୁରେ ଗଲେ
ତେତିଶକୋଟି ଦେବତା ଇନ୍ଦ୍ର ସଙ୍ଗେ ଘେନି
ଅମରନଗ୍ରକୁ ଚଳିଗଲେ ସସ୍ରଯୋନି ।
ଶିବଗଣ ଚଳିଗଲେ ଈଶ୍ୱର ଯେ ଚଳି
ନବଗ୍ରହ ସହିତେ ଯେଯାହା ପୁରେ ମିଳି ।
ଏଥିଅନନ୍ତରେ କୃଷ୍ଣବଲ୍ଲଭ ଯେ ରାଜା
ବରୁଣ ନଗ୍ରେ ବଜାଇ ଗଲେ ବୀରବାଜା ।
ପୂର୍ବଦିଗେ ମୁଖକରି ଚଳିଲେ ପ୍ରଥମୁ
ବିବିଧ ଛାନ୍ଦରେ ବାଦ୍ୟବାଜେ ଘୁମୁ ଘୁମୁ
ଶୂନ୍ୟପରେ ଉଡୁଅଛି ଦିବ୍ୟ ବୀର ନେତ
ହୁଳହୁଳି ଶବଦରେ କମ୍ପଇ ଜଗତ
ଦାଣ୍ଡ ପହଁରି ଚନ୍ଦନ ଛେରା କେହୁଦ୍ୟନ୍ତି
ତହିଁପରେ ଅଷ୍ଟରତ୍ନ ବିଞ୍ଚି ବିଞ୍ଚି ଯାନ୍ତି ।
ବିପ୍ରଙ୍କର ବେଦଧ୍ୱନି ସ୍ତିରୀ ହୁଳହୁଳି
ଉତ୍ସବ ଦେଖି ଆନନ୍ଦ ହୁଏ ମହୀଆଲୀ ।
ଭାଟ ଏକବାର ଗଣିକାଙ୍କ ନୃତ୍ୟଗୀତ
ଜନଗହଳ ହେବାରେ ପୂରଇ ଜଗତ ।
ବରୁଣ ପୁରୁଲକ୍ଷ୍ମୀ ହରି ଘେନି ଆସୁ
ବ୍ରହ୍ମାଣ୍ଡ ଆଲୁଅ ଦେଖାଯାଏ ଲକ୍ଷକୋଶୁ
ଲକ୍ଷ୍ମୀଙ୍କ ଜ୍ୟୋସ୍ନାକୁ ରବିକିରଣ୍ୟେ ଶଙ୍କେ
ଧ୍ରୁବର ପରିଯନ୍ତେ ଲକ୍ଷ୍ମୀଙ୍କ ପ୍ରଭା ଟେକେ
ବରୁଣପୁରୁ ନୃସିଂହ ହୋଇଲେ ବାହାର
ବାଟେ ଥିବା ରାଜାଗଣ ଦ୍ୟନ୍ତି ଉପହାର ।
ଅଛନ୍ତି ଗରୁଡ଼ ପୃଷ୍ଠେ ଯହି ବିଜେକରି
ନିମିଷକେ ଭ୍ରମି ଆରନ୍ତି ଲୋ ତିନିପୁରୀ ।
ଗରୁଡ଼କୁ ଆଜ୍ଞାକଲେ କ୍ଷେତ୍ରବାଟେ ଯିବା
ନୀଳଗିରି ଠାକୁରଙ୍କୁ ଦର୍ଶନ କରିବା ।
ସୃଷ୍ଟି ସର୍ଜ୍ଜନା କାଳୁ ତ ଅଛି ନୀଳଗିରି
ବଳଭଦ୍ର ଜଗନ୍ନାଥ ମହିମା ବିସ୍ତାରି ।
ଆଜନ୍ମରୁ କାରକାଠି ହେଲାଣି ତ ଯୁଗ
ତାହାଙ୍କୁ ଦର୍ଶନ କଲେ ହେବ ଆମ୍ଭ ଭାଗ୍ୟ

ଗରୁଡ଼ ବୋଇଲେ ସ୍ୱାମୀ ଶୁଣ ଦେବହରି
ତୁମ୍ଭେ କାହାକୁ ରଖିଛ ଆଉ ବଡ଼ କରି ।
ଯହିଁ ଦେଖିଲେ ପୂରିଛ ତୁମ୍ଭେ ସବୁଠାରେ
ମୋତେ କାହିଁପାଇଁ ବଣା କରୁଛ ଏଠାରେ
ନୃସିଂହ ବୋଇଲେ ଶୁଣହେ କଶ୍ୟପବଂଶି
ଶ୍ରୀଜଗନ୍ନାଥ ରୂପ ମୁଁ ଆଗରୁ ହୋଇଛି ।
ଆଉ ଅବତାର ଯାକ ପଛେ ଯାଇ ହେଲି
ବୁଝିଲେ ସେ ଜଗନ୍ନାଥ ମୁହିଁ ଏକ ବୋଲି
ଯେ ଅଟଇ ଜଗନ୍ନାଥ ଯେ ନୃସିଂହ ଅଟେ
ଜଗନ୍ନାଥ ହୃଦୁଁ ଜନ୍ମି ନୃସିଂହ ପ୍ରକଟେ ।
ତୋତେବୋଲି ଗରୁଡ଼ ହୋ ସନ୍ଧିଦେଲୁ କହି
ଦେବତା ସବୁରି ଅଟେ ଜଗନ୍ନାଥ ମୁହିଁ ।
ଏହାଶୁଣି ଖଗେଶ୍ୱର ମନେ ହୋଇତୋଷ
ବୋଇଲା ନୃସିଂହଙ୍କର ମହିମା ବିଶେଷ ।
ପାଞ୍ଚେ ଜଗନ୍ନାଥ ନରସିଂହ ଅଟେ ଏକ
ଏହାକୁ ନଚିହ୍ନି ଭ୍ରମି ମରେ ଅବିବେକ ।
ଏତେ ବିଚାରି ଗରୁଡ଼ ଆଜ୍ଞା ପରମାଣେ
ନୀଳଗିରି କ୍ଷେତ୍ରେ ଯାଇ ମିଳିଲେତକ୍ଷଣେ
ଜଗନ୍ନାଥ ବଳଭଦ୍ର ସୁଭଦ୍ରା ତ୍ରିମୂର୍ତ୍ତି
ଏହାଙ୍କୁ ପୂଜାକଲେ ନୃସିଂହ ଜଗଜ୍ୟୋତି
ନୃସିଂହ ଗହଣେ ଥିଲେ ଯେଉଁ ଲୋକବର୍ଗ
ଜଗନ୍ନାଥଙ୍କୁ ଦର୍ଶନ କଲେ ସର୍ବଆଗ ।
ସେବକ ପଶୁପାଳକ ପଣ୍ଡା ମୁଦିରଥ
ବେତବାଡ଼ି କରେ ଧରିଛନ୍ତି ଯେଝାହାତ ।
ଚାଙ୍ଗୁଡ଼ା ମେକାପ ଆଉ ଦଇତାପତିଏ
ଆଡ଼େ ଆଡ଼େ ବୋଲି ଉଚ୍ଚେ ଛାଡ଼ନ୍ତି ରଡିଏ
ଛଡ଼ା ତୁଳସୀର ଦଳ ଯାଚି କରେ ଦ୍ୟନ୍ତି
ଟିକେ ଟିକେ କରି ସର୍ବେ ପ୍ରସାଦ ପାଆନ୍ତି
ଶ୍ରୀନୃସିଂହ ସ୍ୱାମୀ ଯାଇ ଜଗନ୍ନାଥ ହୃଦେ
ଏକବ୍ରହ୍ମହୋଇ ପୂଜା ପାଇଲେ ଆନନ୍ଦେ ।
ଶ୍ରୀମହାଲକ୍ଷ୍ମୀଙ୍କି କୋଳେ ଧରି ଜଗନ୍ନାଥ
ରତ୍ନ ସିଂହାସନେ ବିଜେକଲେ ଚତୁର୍ହସ୍ତ ।
ଶଙ୍ଖ ଚକ୍ର ଗଦା ପଦ୍ମ ଚତୁର୍ଭୁଜ ହୋଇ
ଦରଶନ ଦେଉଛନ୍ତି ଜନ ମନ ମୋହି ।
ନୃସିଂହ ବୋଇଲେ ଶୁଣ ପ୍ରଭୁ ଦାରୁବ୍ରହ୍ମ
ତୁମ୍ଭର ହୃଦୁଁ ହୋଇବୁ ଆମ୍ଭେ ବେଳେଜନ୍ମ
ଯେତେବେଳେ ହିରଣ୍ୟ ଏ ମହୀରେ ଜନ୍ମିବ
ପୁତ୍ରକୁ ତାର ଅନେକ କଷ୍ଟ ସେହୁ ଦେବ ।
ସେ କଷ୍ଟ ଆମ୍ଭେ ତାହାର ନପାରିବୁ ସହି
ତୁମ୍ଭେ ଥିବ ଦୈତ୍ୟ ଆଗେ ସ୍ତମ୍ଭରୂପହୋଇ
କାହିଁ ତୋର ହରି ବୋଲି ପଚାରନ୍ତେ ତାକୁ
ସ୍ତମ୍ଭେ ଛନ୍ତି ଦେଖ ବୋଲି କହିବ ଆମ୍ଭଙ୍କୁ
ସେତେବେଳେ ସ୍ତମ୍ଭ ହୋଇଥିବେ ଜଗଦୀଶ
ତୁମ୍ଭ ହୃଦୁଁ ଆମ୍ଭେ ପୁଣ ହୋଇବା ପ୍ରକାଶ
ତେବେ ଯାଇ ହିରଣ୍ୟକୁ ଆମ୍ଭେ ସଂହାରିବୁ
ଶୁଣି ଆଚ୍ଛା ବୋଇଲେସେ ଜଗନ୍ନାଥ ପ୍ରଭୁ
ଏହିରୂପେ ରତ୍ନସିଂହାସନେ କଥା ହୋଇ
ବିଷ୍ଣୁର ଏ ହୃଦ କଥା ନଜାଣନ୍ତି କେହି ।
ପଣ୍ଡା ପଡ଼ିହାରୀମାନେ ଭୋଗ ଲାଗିକରି
ଦିଅନ୍ତି ଅବଢ଼ାମାନ ସର୍ବମୁଖେ ଭରି ।
ମହାପ୍ରସାଦ ଖାଇଣ ସର୍ବେ ହେଲେ ତୋଷ
ଜଗନ୍ନାଥଙ୍କ ମହିମା ଅଟଇ ଅଶେଷ ।
ନୃସିଂହର ସୈନ୍ୟମାନେ ସମସ୍ତେ ଭୁଞ୍ଜିଲେ
ସୁଜାଣ ମନ୍ତ୍ରୀ କର୍ଣ୍ଣାଟେଶ୍ୱର ରାଜାତୁଲେ ।
କୃଷ୍ଣବଲ୍ଲଭ ରାଜନ ଭଗବତୀ ରାଣୀ
ଚୌଷଠି ସହସ୍ର କନ୍ୟା ଭୁଞ୍ଜିଲେକ ପୁଣି
ଶ୍ରୀ ମହାଲକ୍ଷ୍ମୀ ଆବର ଇଳା ଶେଷଦେବ
ଭୁଞ୍ଜିଲେ ଶ୍ରୀ ଜଗନ୍ନାଥ ତୁଲେ ତୋଷଗର୍ଭ
ଏଥୁଅନନ୍ତରେ ରାତ୍ର ହୁଅନ୍ତେ ପ୍ରବେଶ
ଆଳତି ଲାଗି ହୋଇଲେ ପୁଣି ଜଗଦୀଶ ।
ତାଳ ଖୋଳ ଘଣ୍ଟି ଘଣ୍ଟା ବଜାଇ ବଇଁଶୀ
ଭକ୍ତଜନମାନେ ଦରଶନ କଲେ ଆସି ।
ବଳଭଦ୍ର ଜଗନ୍ନାଥ ସୁଭଦ୍ରା ତ୍ରିମୂର୍ତ୍ତି
ଏହାଙ୍କୁ ପୂଜା କରୁ ଯେ ପାହିଗଲା ରାତି ।
ପ୍ରଭାତରୁ ଉଠି ପ୍ରଭୁ ସ୍ୱର୍ଗଦ୍ୱାରଗଲେ
ସ୍ନାନସାରି ଦେବ ସନ୍ଧ୍ୟା ତରପଣ କଲେ ।
ସେହିଦିନୁ ସ୍ୱର୍ଗଦ୍ୱାର ହେଲା ମହାଯୁଦ୍ଧ
ନୃସିଂହ ଯେ ସ୍ନାନକଲେ ବୁଡ଼ାଇଣ ପାଦ
ଶ୍ରୀ ଲକ୍ଷ୍ମୀ ନୃସିଂହ ପ୍ରଭୁ ସ୍ନାନ କରୁକରୁ
ତୀର୍ଥକୁ ଯେ ତିଆରନ୍ତି ଶୁଣ ଶ୍ରୀମୁଖରୁ ।
ବୋଲନ୍ତି ଏ ସ୍ୱର୍ଗଦ୍ୱାରେ ବୁଡ଼ିବେ ଯେ ନର
ବୟାଳିଶ ପୁରୁଷ ଯାଏ ପୂତ ହେବେ ତାର
ବ୍ରହ୍ମାଣ୍ଡେ ଯେତେକ ତୀର୍ଥ ଯାଉଛନ୍ତି ବହି
ସବୁରି ପରେ ତୁ ତୀର୍ଥରାଜ ହୁଅ ରହି ।
ଏଣୁ ସେହି ତୀର୍ଥରାଜ ସ୍ୱର୍ଗଦ୍ୱାର ହେଲା
ସେ ତୀର୍ଥେ ବୁଡ଼ିବାଲୋକେ କୋଟିତୀର୍ଥ କଲା
ସ୍ୱର୍ଗଦ୍ୱାରେ ସ୍ନାନଯେଉଁପ୍ରାଣୀ କରେବେଳେ
କୋଟିଏ ତୀର୍ଥର ଫଳ ଲଭଇ ତତ୍କାଳେ ।
ସେହି ସ୍ୱର୍ଗଦ୍ୱାରେ ନିତ୍ୟ ଦେବତାଏ ଆସି
ଦରଶନ କରୁଥାଏ ନୀଳଗିରିବାସୀ ।

ସମୁଦ୍ରରେ ବେଳେ ସେହୁ ପ୍ରାଣୀସ୍ନାନକରେ
କୋଟି ଗଙ୍ଗାସ୍ନାନ ଫଳ ଲଭନ୍ତି ସେ ନରେ
ତେତିଶକୋଟି ଦେବତା ଇନ୍ଦ୍ର ସଙ୍ଗେଘେନି
ସ୍ୱର୍ଗଦ୍ୱାର ବାଟେ ମିଳିଲେକ ସସ୍ତ୍ରଯୋନି ।
ବ୍ରହ୍ମା ଖବର ପାଇଣ ଆସି ବିଜେକରି
ଅଠାଶି ସହସ୍ର ଋଷି ଆପେ ସଙ୍ଗେ ଧରି ।
ଶ୍ରୀନୃସିଂହ ମାତା ପାଞ୍ଚେଅଟେକେଡ଼େଭାଗ୍ୟ
ବ୍ରହ୍ମା ବାସବ ମିଳିଲେ ଆସି ଋଷି ସର୍ବ ।
ବିଭା ଯେ ଚଉଠି ବିଧି ଜାଣି ପୁତ୍ରଙ୍କର
ନୀଳଗିରିରେ ମିଳିଲେ ଆସି ବେଦବର ।
ଶୁଣିକରି ଦେବବ୍ରହ୍ମା ଅଳ୍ପ ମନେ ହସି
ବୋଲନ୍ତି ଅଟନ୍ତି ତୁମ୍ଭ ପୁତ୍ର ବ୍ରହ୍ମରାଶି ।
କ୍ଷେତ୍ରକୁ ଆମ୍ଭେ ହେଲେହେଁ ସଦାଆସୁଥାଇଁ
ବଳଭଦ୍ର ଜଗନ୍ନାଥ ଦେଖିକରି ଥାଉଁ ।
ପ୍ରସାଦମାନ ପାଉ ସେ ସ୍ୱର୍ଗଦ୍ୱାରେ ଆସି
ନିତିହିଁ ଦର୍ଶନ କରି ଯାଉଁ କ୍ଷେତ୍ରେ ବସି ।
ଏବେ ତ କ୍ଷେତ୍ରେ ମିଳିଲେ ଆସି ନାରାୟଣ
ସେ ଜଗନ୍ନାଥ ଅଟନ୍ତି ଶ୍ରୀ ନୃସିଂହ ଜାଣ ।
ଏହି ପ୍ରଭୁଙ୍କ ଭିନ୍ନ ନକରି ପାରୁ ଆମ୍ଭେ
ଶ୍ରୀ ଭଗବତୀ କହିଲେ କହ କିନା ତେବେ ।
ସକଳ କାଳେ ଅଛି କି ଏହୁ ନୀଳଗିରି
ଏ ନୀଳଗିରିର କଥା କହ ମୁଖଚାରି ।
ବ୍ରହ୍ମା ବୋଇଲେ ଶୁଣିମା ମାଗୋ ଭଗବତୀ
ଅଛି ଏ ସକଳ କାଳେ ନୀଳଗିରି ସ୍ଥିତି ।
ଯେବଣ କାଳେ ଏସୃଷ୍ଟି ଲୟ ହେଲା ଜାଣ
ସେତେବେଳେ ବଢ଼ିଲା ଏ ଗିରିଆଲୋକେଣ
ଜଳହିଁ ବଢୁଥିଲେ ଏ ଗିରି ବଢୁଥାଇ
ଜଳପରେ ଉଚ୍ଚ ସହସ୍ରେକ ହାତ ହୋଇ ।
ଜଳ ବଢ଼ନ୍ତେ ଅଧିକେ ଗିରିବଢୁ ଅଛି
ଜଳରୁ ଗିରିକି କାତ ନପାଇଲା କିଛି ।
ସର୍ବଜନଙ୍କୁ ଏ ଜଳ ନଷ୍ଟ କରିଦେଲା
ପୃଥ୍ୱୀ ଆପ ତେଜ ବାୟୁ ସବୁ ବିନାଶିଲା ।
ସଚରାଚର ନିପାତ କଲା ଏହୁ ବାରି
ବୁଡ଼ାଇ ନପାରିଲା ତ କେବେ ନୀଳଗିରି
ଏହିରୂପେ କେତେକାଳ ଭୋଗହୋଇଯାନ୍ତେ
ଆପେ ଆପେ ତ ସମ୍ଭୂତ ହେଲେ ଜଗନ୍ନାଥେ
ନୀଳଗିରି ପାଶେ ଅଛି ଯେଉଁ କଳ୍ପବଟ
ତାହା ମହିମା କହି ନପାରେ ସୁରଶ୍ରେଷ୍ଠ
ସେ କଳ୍ପବଟ ପ୍ରତ୍ୟକ୍ଷେ ଅଟେ ଆଦିମୂଳ
ସ୍ୱୟମ୍ଭୁ ବିଷ୍ଣୁ ଆସିଣ ହୋନ୍ତି ତହିଁ ଠୁଳ ।
ରତ୍ନସିଂହାସନ ତଳେ ବଟମୂଳ ଅଛି
ପଦାକୁ ପ୍ରକାଶି ଡାକ ଆକାଶେ ବଢୁଛି ।
ଏହି ବଟ ପୁଟେ ବସିଛନ୍ତି ଅନ୍ତର୍ଯ୍ୟାମୀ
ଜଳକୁ ସଂହାରି ଥୁଅନ୍ତି ଯେଆଣି ଭୂମି ।
ଭଗବତୀ ବୋଇଲେ ହେ ଶୁଣ ବେଦବର
ନୀଳଗିରି କଥା ମୋତେ ଲାଗେ ଅଗୋଚର
ପ୍ରଳୟ କାଳେ କିପାଇଁ ତେତେ ବଢୁଥିଲେ
ଏବେ ସେହି ବିଷ୍ଣୁ ରୂପେ କାହିଁସମ୍ଭାଇଲେ
ବ୍ରହ୍ମା ବୋଇଲେ ମାତାଗୋ କହିବାକତାହା
ଅଟେ ଏହି ନୀଳଗିରି ବିଷ୍ଣୁ ନିଜଦେହା
ବିଷ୍ଣୁ ଆଜ୍ଞାରେ ଏ ଗିରି ଜଳେ ବଢୁଥିଲା
ପ୍ରଳୟ ସରନ୍ତେ ନିଜ ସ୍ୱରୂପ ଧଇଲା
ସତ୍ୟରେ ଉଭା ସତର କୋଡ଼ିଏ ଯେ ହାତ
ତ୍ରେତୟାରେ ବାରକୋଡ଼ି ଲମ୍ୱହେଲା ଜାତ
ଦ୍ୱାପରେ ଯେ ଆଠକୋଡ଼ି ହାତ ଲମ୍ୱ ହୁଏ
ଶୁଣ ଆଗୋ ଭଗବତୀ କହନ୍ତି ଧାତାଏ ।
କଳିଯୁଗେ ବିଶାଶତେ ହାତ ହୁଏ ଜାଣ
ଏରୂପେ ସେ ନୀଳଗିରି ମହିମା ପ୍ରମାଣ ।
ସିଂହାସନ ଆଗେ ଅଛି ଯେ ଗରୁଡ଼ ମୂର୍ତ୍ତି
ତାହାକୁ ଛୁଇଁଲେ କୋଟି ପାପ ବିନଶ୍ୟତି
ସେଠାବକୁ ପଡ଼ି ପତ୍ନୀ ଏକାବେଳେ ଯିବେ
ଗରୁଡ଼କୁ ସ୍ପର୍ଶକରି ଦର୍ଶନ କରିବେ ।
ସେହି ପତି ପତ୍ନୀ ବେନି ସର୍ବକାଳେ ଜାଣ
ପତିବ୍ରତା ହୋଇ ଜନ୍ମ ହୋନ୍ତି ସଂସାରେଣ ।
ବଶିଷ୍ଠ ଅରୁନ୍ଧତୀଙ୍କ ତୁଲେ ଲେଖାହୁନ୍ତି ।
ତାଙ୍କ ମହିମାଗୋଟି କେ କିଛି ନପାରନ୍ତି ।
ଆବର ଏ କ୍ଷେତ୍ରେ ଛନ୍ତି ଯେଉଁ ପଞ୍ଚତୀର୍ଥ
ବେଳେ ସ୍ନାନକଲେ ତହିଁ ହୋଇବ କୃତାର୍ଥ
ଶୁଣି ଭଗବତୀ ବ୍ରହ୍ମାଙ୍କର ପାଦେ ନମି
ବୋଇଲେ ତୀର୍ଥ ଦେଖାଅମୋତେବେଳେଭ୍ରମି
ବଦ୍ରିକା ନଗର ଲୋକେ ଦେଖାନ୍ତୁମୋମିଶି
ଦେଖିଲେ ସେ କହୁଥିବେ ତୁମ୍ଭଙ୍କୁ ପ୍ରଶଂସି ।
ଧାତା ବୋଇଲେ ମାତାଗୋ ଚାଲମିଶିସର୍ବେ
ଦେଖ ଆଗୋ ସ୍ୱର୍ଗଦ୍ୱାର ବାଟଗୋଟି ଏବେ
ସ୍ୱର୍ଗଦ୍ୱାରେ ସିନ୍ଧୁ ଫିଟିଅଛି ସ୍ୱର୍ଗବାଟ
ଦେବ ବୁଲିବାରୁ ଏହୁ ତୀର୍ଥ ଅଟେ ଶ୍ରେଷ୍ଠ ।
ଇଅଁଳା ପିଅଁଳା ବେନି ଶଙ୍ଖବାଟେ ଖସି
ନିତ୍ୟ ଦେବେ ଆସି ସ୍ନାନ କରନ୍ତିଯେପଶି ।
ଦେବଯାନମାନଙ୍କରେ ବସି ଆସୁଛନ୍ତି
ମାନବଙ୍କୁ ଦୃଶ୍ୟ ସେହିକେବେହେଁ ନୁହନ୍ତି ।

ଫିଟିଛି ଯେ ଶୃଙ୍ଗବାଟ ସ୍ୱର୍ଗକୁ ସେ ଜାଣ
ସେ ଶୃଙ୍ଗ ବାଟରେ ଗତାଗତ ଦେବଗଣ ।
ପଞ୍ଚତୀର୍ଥ ବୁଲି ପ୍ରଭୁଙ୍କର ପାଶେ ଯାନ୍ତି
ପ୍ରଭୁଙ୍କୁ ଦର୍ଶନ କରି ସ୍ୱର୍ଗକୁ ଚଳନ୍ତି ।
ଏହିରୂପେ ଏଠାବରେ ଅଟେ ସ୍ୱର୍ଗଦ୍ୱାର
ଦ୍ୱିତୀୟେ ଶ୍ୱେତଗଙ୍ଗା ଏ ଦେଖ ତୀର୍ଥସାର
ତୃତୀୟରେ ଇନ୍ଦ୍ରଦ୍ୟୁମ୍ନ ଚତୁର୍ଥେ ମାର୍କଣ୍ଡ
ପଞ୍ଚମ ତୀର୍ଥର ନାମ ରୋହିଣୀ ଯେ କୁଣ୍ଡ ।
ତହିଁ ଉତ୍ତାରୁ ମାତା ଗୋ ସ୍ଥାନମାନ ଦେଖ
କୋଇଲି ବୈକୁଣ୍ଠ ଏହୁ ଅଟଇ ପ୍ରତ୍ୟକ୍ଷ ।
ଆବର ଯେ ଦେବସ୍ନାନ ମଣ୍ଡପଟି ଏହି
ମୁକ୍ତି ମଣ୍ଡପ ନାମକୁ ଏହାକୁ ଯେ କହି ।
ଜଗନ୍ନାଥ ପ୍ରଭୁଙ୍କ ଏ ଅଟେ ବଡ଼ଦାଣ୍ଡ
ଏଥି ମୃଲେ ପ୍ରାଣୀଙ୍କୁ ନଲାଗେ ଯମଦଣ୍ଡ ।
ଆଡ଼ପମଣ୍ଡପ ନାମେ ଅଟେ ଏ ପ୍ରସିଦ୍ଧି
ବଦ୍ରିକା ଆଶ୍ରମରେ ଏଅଟେ ଯଜ୍ଞବେଦୀ ।
ଏ ବେଦୀରେ ଦିନେ ଜଗନ୍ନାଥଙ୍କୁ ଯେ ଆସି
ଦର୍ଶନ କଲେ କୋଟିଏ ପାପ ହୁଏ ଧ୍ୱଂସି ।
ଆଡ଼ପ ମଣ୍ଡପ ଏହୁ ନୀଳଗିରି ସମ
ନ ଦିନେ ଯାତ୍ରା କରନ୍ତି ଏଥେ ଦାରୁବ୍ରହ୍ମ ।
ନରେନ୍ଦ୍ର ଶଉଚ ବୋଲି ଏ ପୋଖରୀ କହି
ଅଳସା ତୋଟାକୁ ମଧ ଦେଖିଥାଅ ଯାଇ
ନୀଳଗିରି ବୈକୁଣ୍ଠକୁ ଚାରିଦ୍ୱାର ଜାଣ
ବାଉନକୋଟି ଭଣ୍ଡାର ପୂରିଅଛି ପୁଣ ।
ସେ ଭଣ୍ଡାର ଦ୍ରବ୍ୟ ଜାଣକେବେ ଊଣାନୁହେ
ଯେତେ ବ୍ୟୟ କଲେ ଲେଉଟିସେ ପୁରୁଥାଏ
ଶ୍ରୀଜଗନ୍ନାଥ ପ୍ରଭୁଙ୍କ ମହିମା ଆଶ୍ଚର୍ଯ୍ୟ
ନୀଳଗିରି ବୈକୁଣ୍ଠରେ କାକ ଚତୁର୍ଭୁଜ ।
ଶ୍ରୀମହାଲକ୍ଷ୍ମୀ ମୋହିନୀ ଅଟଇ ଏ ପୁର
ଏରୂପେ ଲକ୍ଷ୍ମୀଙ୍କି ଘେନି କରନ୍ତି ବିହାର ।
ପ୍ରଭୁଙ୍କର ରୋଷଘର ଅଟେ ଏହୁ ଜାଣ
ନିତି ରନ୍ଧା ହୁଏ ଷାଠି ପଉଟି ଯେ ଅନ୍ନ ।
ଶ୍ରୀମଣୋହି ଲାଗି ହୋନ୍ତେ ଚତୁର୍ଦ୍ଦିଗଲୋକେ
ଉଛିଷ୍ଟ ଭୁଞ୍ଜିଣ ମୋହ ହୁଅନ୍ତି ତ୍ରିଲୋକେ
ଶ୍ରୀନୀଳଗିରି ରତନ ସିଂହାସନ ପରେ
ବଡ଼ ସିଂହାର ବେଶ ସେଦିନେହୋନ୍ତି ଥରେ
ରାଜନୀତି ଦେବାର୍ଚ୍ଚନ ସର୍ବଦା ହୁଅନ୍ତି
ତିନିଧୂପ ପାଞ୍ଚଅବକାଶେ ଦିନ ନ୍ୟନ୍ତି ।
ବରଷକାଳେ ଦ୍ୱାଦଶ ଯାତ୍ରା ଜାଣ ହୁଏ
ଶୁଣ ଆଗୋ ଭଗବତୀ କହନ୍ତି ଧାତାଏ ।

ଶ୍ରୀନୀଳଗିରି ମହିମା ନୁହଇ ଯେ କହି
ବୁଲିଲେ ମାସକଯାଏ କଳନା ନ ପାଇ ।
ଏ ମର୍ତ୍ତ୍ୟମଣ୍ଡଳକୁ ଏ ଅଟେ ନିତ୍ୟସ୍ଥଳ
ସେ ନିତ୍ୟସ୍ଥଳେ ଅଛନ୍ତି ପୁଣି ଆଦିମୂଳ ।
ଯେ ଅଟେ ଶ୍ରୀଜଗନ୍ନାଥ ସେ ଅଟେ ନୃସିଂହ
ପାଷାଣ୍ଡ ଲୋକେ କହନ୍ତି ଭ୍ରମେ ଭିନ୍ନ ଅଙ୍ଗ ।
ସର୍ବ ଅବତାର ଏକା ଅଟନ୍ତି ଯେ ହରି
ଯୁଗେ ନାମ ବହି ପ୍ରକାଶନ୍ତି ଦେହ ଧରି ।
ସର୍ବ ଅବତାରେ ପ୍ରଭୁ ଅଟନ୍ତି ଯେ ଏକ
ନ ଜାଣି କରନ୍ତି ଭିନ୍ନ ଭିନ୍ନ ମୁର୍ଖ ଲୋକ ।
ଜଗନ୍ନାଥ ଅବତାର ପରେ ସର୍ବମୂର୍ତ୍ତି
କଳେବର ଧରି ପ୍ରଭୁ ଜନ୍ମୁଥାନ୍ତି କ୍ଷିତି ।
ଶୁଣି ଭଗବତୀ ରାଣୀ ଚମତ୍କାର ହେଲେ
ବ୍ରହ୍ମାପାଦେ ନମି ସ୍ୱାମୀ ଛାମୁକୁ ଯେ ଗଲେ ।
ବୋଇଲେ ଶୁଣ ନୃସିଂହ ଶେଷଦେବ ପିତା
ବଡ଼ ଚମତ୍କାର ମୋତେ କହିଲେ ବିଧାତା ।
ବୋଇଲେକ ବଳଭଦ୍ର ଜଗନ୍ନାଥ ଯାଇ
କରନ୍ତୁ ଦର୍ଶନ ଗରୁଡ଼ର ପଛେ ଥାଇ ।
ସେ ପଡ଼ି ପତ୍ନୀର ପୁଣ୍ୟ କହି ନୁହେଁ ଅନ୍ତ
ପୁନର୍ଜନ୍ମ ନ ଲଭନ୍ତି ସେହି କାନ୍ତାକାନ୍ତ ।
ଏତେ କହିଣ ପତିକି ପତ୍ନୀ ସଙ୍ଗେ ଧରି
ଗରୁଡ଼ ପଛେ ଦର୍ଶନ କଲେ ରହି ହରି ।
ଶ୍ରୀନୀଳଗିରି ବୈକୁଣ୍ଠ ଦେଖି ତୋଷହେଲେ
ଜଗନ୍ନାଥ ବଳଭଦ୍ର ଶ୍ରୀଛାମୁକୁ ଗଲେ ।
କୃଷ୍ଣବଲ୍ଲଭ ରାଜା ଯେ ଭଗବତୀ ରାଣୀ
ଭକ୍ତିରେ ଦେଖି ସେବିଲେ ପ୍ରଭୁ ଚକ୍ରପାଣି ।
ଏଥିଉତ୍ତାରେ ସେ ବିଭା ଚଉଠୀ ଯେ କଲେ
ରତ୍ନ ସିଂହାସନେ ଲକ୍ଷ୍ମୀ ନୃସିଂହ ବସିଲେ ।
ହୁଳହୁଳି ଦେଇ ଶଙ୍ଖ ମହୁରୀ ବଜାଇ
ଚଉଠୀ ସାରିଣ ଭୋଜି କଲେ ପୁଣି ଯାଇ ।
ପଞ୍ଚମ ଦିନେ ସେ କାଦପାଣି ଖେଳାଇଲେ
ଷଷ୍ଠଦିନେ ବର ବିଶ୍ରାମ ସେ ପୁଣି କଲେ ।
ସପତମଙ୍ଗଳା ବିଧି ସାତଦିନେ ସାରି
ବଦ୍ରିକାକୁ ଯିବା ବୋଲି ସଜ ହେଲେ ହରି ।
ସକଳ ଋଷିଙ୍କ ଘେନି ଶେଷଦେବ ଯାଇ
ବସି ଦେବଯାନ ମଧ୍ୟେ ରଥଦେଲେ ବାହି ।
ବସିଲେ କୃଷ୍ଣବଲ୍ଲଭ ରାଜା ସୁଖାସନେ
ଆବର ବସିଲେ ସୈନ୍ୟଯାକଯେଝାଯାନେ ।
ନାୟିକାଗଣ ଘେନିଣ ବଗବତୀ ରାଣୀ
ହାନ୍ଦୋଳାରେ ବସାଇଲେ ସମସ୍ତଙ୍କୁ ଆଣି ।

ହଂସିନୀ ମୁହୁସୁଲୀ ଯେ ଲକ୍ଷ୍ମୀ ପରିବାରୀ
ଚଳିଗଲେ ସୁଖାସନେ ସର୍ବେ ବିଜେ କରି ।
ସୁଜାଣ ମନ୍ତ୍ରୀ କର୍ଣ୍ଣାଟେଶ୍ୱର ମହାରାଜା
ନୀଳଗିରି କ୍ଷେତ୍ର ଗଲେ ବାଇ ବୀରବାଜା ।
ଏକାମ୍ର ନବରେ ସେହିଦିନ ରହିଯାଇ
ବିନ୍ଦୁ ସାଗରରେ ସ୍ନାନ କଲେ ବେନିଭାଇ ।
ସନ୍ଧ୍ୟା ତର୍ପଣ ସାରିଣ ମଣୋହି ଯେ କଲେ
ସେ ଦିନ ରହିଣ ଆଦି ସିଦ୍ଧିବନ ଗଲେ ।
ଯୋଗୀନ୍ଦ୍ରମାନଙ୍କ ଦରଶନ ତହିଁ କରି
ତହୁଁ ବିଜେକଲେ ପୁଣି ହୋଇ ଗଙ୍ଗାପାରି ।
ସ୍ନାନ ସନ୍ଧ୍ୟା ତରପଣ ସାରି ଗଙ୍ଗାତୀରେ
ମଣୋହି ବିଧାନ ଲାଗି ହୋଇଲେ ଠାକୁରେ
ସେଠାରୁ ଚଳି ନୈମିଷ୍ୟାରଣ୍ୟ ପୁଣି ଗଲେ
ଅତ୍ରିମୁନିଙ୍କ ମନ୍ଦିରେ ବିଜେ ଯାଇ କଲେ ।
ପତିପୁତ୍ର ସଙ୍ଗେ ଘେନି ଭଗବତୀ ବାଣୀ
ଋଷିପାଦେ ନମି ଅର୍ଘ୍ୟ ବନ୍ଦାଇଲେ ଆଣି ।
ଗଉରବ ପାଇ ମୁନି କଲ୍ୟାଣ ବାଞ୍ଛିଲେ
ନୃସିଂହ ସୈନ୍ୟଯାକଙ୍କୁଘରେବସାଦେଲେ ।
ଅତ୍ରି ମୁନିଙ୍କର ପତ୍ନୀ ନାମ ଅନୁସୂୟା
ଅଟନ୍ତି ଅନ୍ନପୂର୍ଣ୍ଣା ସେ ନିର୍ଲ୍ଲୋଭୀ ନିର୍ମାୟା ।
ମନରେ ଯାହା ପାଞ୍ଚେ ସେ କଥା ହୁଏସିଦ୍ଧି
ପ୍ରଭୁ ପତି ପତ୍ନୀଙ୍କି ସେ ଦେବେ ଅନ୍ନ ରାନ୍ଧି ।
ଅତ୍ରୀ ମହାମୁନି ଜାଣନ୍ତିତ ପ୍ରିୟା ଗୁଣ
ବୋଇଲେ ସଖି ବିଷ୍ଣୁଙ୍କୁ ଆଜ ଦେବା ଅନ୍ନ
ପିତାମାତା ଭଗ୍ନି ଭାଇ ବନ୍ଧୁ ସଙ୍ଗେ ଧରି
ଆମ୍ଭ ଜରେ କୁଣିଆଁ ଯେଆସି ହେଲେ ହରି
ଏ ଭାଗ୍ୟ ସଂସାରେ ଅରଜିବ କେଉଁ ଜନ
ଅଲଭ୍ୟେ ଘରେ ମିଳିଲେ ଆସି ଭଗବାନ ।
ଅନୁସୂୟା ବୋଲେ ହେଲାଣି ଯେ ପାକନିର୍ଭା
ବସନ୍ତୁ ସକଳେ ଭୁଞ୍ଜ ଆମ୍ଭେ ପରଷିବା ।
ଅନୁସୂୟା ମୁଖରୁ ଯେ ଏ ବଚନ ଶୁଣି
ମହା ଚମତ୍କାର ହେଲେ ଭଗବତୀ ରାଣୀ ।
ପୁଚ୍ଛନ୍ତେ ବାହା କାମୋନିହୋଇଲେକାତର
ବୋଲନ୍ତି ତୁମ୍ଭ ପାଇଁକି ରାନ୍ଧିଛି ଆହାର ।
ଆମ୍ଭର ସୈନ୍ୟଯାକଙ୍କୁ କିରୂପେ ଅଣ୍ଟିବ
ପୁରା ଗ୍ରାସ ଆମ୍ଭଙ୍କୁ ଯେ ତୁମ୍ଭେକେହ୍ନେଦେବ
ଅନୁସୂୟା ବୋଲନ୍ତି ଗୋ ଶୁଣ ବିଷ୍ଣୁମାତା
ପତି ପତ୍ନୀ ଯେବେ ହୁନ୍ତି ବିଷ୍ଣୁରେ ଭକତା
ପତି ପତ୍ନୀଙ୍କର ମନ ଏକ ମନ ହେଲେ
ତକ୍ଷଣେ ହୁଅନ୍ତି ସିଦ୍ଧି ମନେ ମନୋସିଲେ ।
ସ୍ୱାମୀର ଆଜ୍ଞାକୁ ଯେଉଁ ସ୍ତିରି ସଦା ପାଳେ
ଭକ୍ତିଭରେ ପାଦଧୂଳି ଘେନି ତିନିବେଳେ ।
ବିଷ୍ଣୁର ଭଜନ ପ୍ରାୟେ ସ୍ୱମୀ ସେବା କରି
ସ୍ୱାମୀର ବଚନଗୋଟି ଶିରପରେ ଧରି ।
ଅଗ୍ନି ପାକସିଦ୍ଧ କରି ପୂଜିବ ସେ ନିତି
ଅଗ୍ନିତୋଷହେଲେ ସର୍ବ ଦେବତୋଷହୋନ୍ତି
ଦେବଙ୍କୁ ଦେଇ ସ୍ୱାମୀକି ଆଗ ପରଶିବ
ସେ ସ୍ତିରୀକି ଅନ୍ନପୂର୍ଣ୍ଣା ସର୍ବଦା ଜାଣିବ ।
ଦଶମୂର୍ତ୍ତିକି ସେ ଖଞ୍ଜି ରାନ୍ଧିଥିବେ ଯେବେ
କୋଡ଼ିଏ ମୂର୍ତ୍ତି ଯେ ଖାଇସନ୍ତୋଷହୋଇବେ
ସକଳବେଳେ ପ୍ରସନ୍ନ ମୁଖ ଅଟେ ଯାର
ସେ ସ୍ତିରୀଙ୍କ ମହିମାଟି ଅଟେ ଅଗୋଚର ।
ଧନ ଦ୍ରବ୍ୟ ପଦାର୍ଥଟି ଯେତେ ବହୁଥାଇ
ଗୁଣେ ବହିଲେ ଯେ ତିନିଗୁଣ ଉଛୁଳଇ ।
ଆବର ସିଦ୍ଧାନ୍ତ ମଧ କହିବା ଯେ ଶୁଣ
ବତିଶ ଦାନ୍ତ ଯାହାର ମୁଖେ ଥାଇ ଜାଣ ।
ବତିଶଗୋଟି ଦଶନ ଯାର ମୁଖେ ଥାଇ
ସେଯାହାବୋଲେତକ୍ଷଣେ ତାହାସିଦ୍ଧହୋଇ
ବତିଶ ଦନ୍ତ ପ୍ରଣୀର ଜୀବେ ବଡ଼ ଦୟା
ତାହାର କନ୍ଧୁ କେବେ ନଛାଡ଼େପଦ୍ମାଳୟା
ପୁରୁଷ ଅବା ହେଉ ସେ ଯୁବତୀ ବା ହେଉ
ମହା ସତ୍ୟବାଦୀ ଜାଣ ଅଟନ୍ତି ଯେ ସେହୁ ।
ବତିଗୋଟି ଦଶନ ଯାହା ମୁଖେ ଥାଇ
ତାହାଠାରୁ ଭାଗବନ୍ତ ସଂସାରେ କେ ନାହିଁ
ବତିଶ ଦଶନ ଲୋକେ ଅଟନ୍ତି ନର୍ମାୟା
ଶୁଣି ଭାଗ୍ୟବତୀ କହନ୍ତି ଯେ ଅନୁସୂୟା ।
ସଂସାରେ ତ ଲକ୍ଷ୍ମୀ ଗୁଣ ଅଟେ ଅକଳନା
ତହିଁକି ଆମ୍ଭ ଗୁଣ ଯେ ବୁଝିଲେ ଦ୍ୱିଗୁଣା ।
ସାରଦା ପାର୍ବତୀ ଅନୁସୂୟା ଅରୁନ୍ଧତୀ
ମହାଲକ୍ଷ୍ମୀ ମିଶି ସଂସାରେ ଯେ ପାଞ୍ଚ ସତୀ ।
ଏ ପାଞ୍ଚ ସତୀଙ୍କ ବାକ୍ୟ ପ୍ରସିଦ୍ଧ ଯେ ଜାଣ
ମନରେ ପାଞ୍ଚିଲ ସିଦ୍ଧି ହୁଏ ତତକ୍ଷଣ
ଆମ୍ଭେ ଏ ପଞ୍ଚକନ୍ୟା ପତିବ୍ରତା ଅଟୁଁ
ବିଷ୍ଣୁ ପ୍ରାୟ ମଣି ସ୍ୱାମୀ ପାଦତଳେ ଖଟୁଁ ।
ପତିର ବଚନ ପାଳି ସଦା ଅଛୁ ଆମ୍ଭେ
ଆନ ସ୍ତିରୀଙ୍କର କଥାକହିବା ଯେ ଏବେ ।
ସଂସାରଯାକେ ଅଛନ୍ତି ଯେତେ ସ୍ତିରୀ ଜାଣ
ଗୁରସ୍ତ କଳା ଧର୍ମ ସେ କରନ୍ତି ଖଣ୍ଡନ ।
ସ୍ୱାମୀଙ୍କର ଆଜ୍ଞାଗୋଟି ଯେ ମାନନ୍ତି ଢାଳେ
ପତିର ସେ ଦୟା ଧର୍ମ ନାଶନ୍ତି ତକ୍ଷଣେ ।

ପଣେ ମାଣେ କାହାଣେ ଯେ ଧର୍ମ ପଳେପତି
ଅଧର୍ମେ ବିଘ୍ନ କରିଣ କ୍ଷଣେ ହେଉଥାନ୍ତି ।
ରାଢ଼େଣୀ ଖପୁରୀ ଅଲକ୍ଷଣୀ ସ୍ତିରୀଯାକ
ପତି ସେବା ନ କରି ସେ ମେଣ୍ଟାନ୍ତି ଯେବାକ୍ୟ
ଧମକି ହୋଇ ତରାଟୁଥାନ୍ତି ପୁଣି ଆଖି
ବୋଲନ୍ତି ଘରେ ତୁମ୍ଭର ଦେବାକୁ କି ଅଛି
ପତିକି ସେ ନ ସେବନ୍ତି ବିଷ୍ଣୁ ନ ସେବନ୍ତି
ଦୟା ଧର୍ମ କର୍ମ ତିଳାର୍ଦ୍ଧେ ସେ ନ କରନ୍ତି ।
ତୀର୍ଥ ବାର ବ୍ରତ ନିନ୍ଦନ୍ତି ଯେ ଅନୁକ୍ଷଣେ
ଏକାଦଶୀ ହେଲେ ଡରେ ପର୍ବତ ପ୍ରମାଣେ
ବୋଲନ୍ତି ପଡୁଛି କେତେକ୍ଷଣି ଏକାଦଶୀ
ହେଲିଣି ଚିକିଟା କରି ରାଣ୍ଡବ୍ରତ ଆସି ।
ପନ୍ଦରଦିନକୁ ଛଗି ହୁଏ କେତେ କ୍ଷଣି
ପବିତ୍ରବନ୍ତ କଥାକୁ ନିନ୍ଦନ୍ତି ରାଢ଼େଣୀ ।
ବିହରନ୍ତି ଲଜ୍ଜା ଛାଡ଼ି ସାହସେ ସଭାକୁ
ଦଣ୍ଡ ପଡ଼ିଲେ ଯେ ଗାଳି ଦ୍ୟନ୍ତି ବିଧାତାକୁ ।
ଏ ଘେନି ବିଧବା ହୋନ୍ତି ଅଳ୍ପଦିନେ ନାରୀ
ଲଭନ୍ତି ସେ ନାନାକ୍ଳେଶ ସ୍ୱାମୀ ଗଲେ ମରି ।
ଏ ମାର୍ଗେ ସଂସାରେ କେତେ ସ୍ତିରୀଜାଣିଛନ୍ତି
କହନ୍ତି ଯେ ଅନୁସୂୟା ଶୁଣ ଭଗବତୀ ।
ପତିବ୍ରତା ସ୍ତିରୀ ପ୍ରତ୍ୟକ୍ଷେ ଯେ ବିଷ୍ଣୁଅଂଶ
ଲକ୍ଷ୍ମୀଅଂଶେ କେତେ ସ୍ତିରୀ ଅଛନ୍ତି ବିଶେଷ
ଅଲକ୍ଷଣୀ ରାଢ଼େଣୀ ଯେ କିମ୍ପାସର୍ବେ ହେବେ
ଲକ୍ଷ୍ମୀବନ୍ତ ସ୍ତିରୀଗୋଟି ସ୍ୱାମୀପାଦେ ସେବେ
ଯେତେ ସ୍ତିରୀ ଲକ୍ଷ୍ମୀଅଂଶ କହିବା ତା ଶୁଣ
ସାରଦା ପାର୍ବତୀ ମହାଲକ୍ଷ୍ମୀ ମାତା ପୁଣ ।
ଅନୁସୂୟା ଅରୁନ୍ଧତୀ ଏହି ପାଞ୍ଚମୂର୍ତ୍ତି
ଏହାଙ୍କୁ ପ୍ରଭାତରୁ ଯେ ସୁମରିବ ନିତି ।
ନାନାବିଧି ପାପ ତାହା ହୋଇବ ନାଶନ
ପୁରୁଷ ଚିନ୍ତିଲେ ପତିବ୍ରତେ ଯିବ ଦିନ ।
ଯୁବତୀ ସୁମରିଲେ ସେ ହେବ ପତିବ୍ରତା
ସୁଲକ୍ଷଣୀ ପଣକୁ ସେ ଅଟଇ ପଣ୍ଡିତା ।
ଏ ପାଞ୍ଚସ୍ତିରୀଙ୍କୁ ଯେହୁ ସୁମରିବ ନିତି
ସେହି ଏକା ଦେବତାଙ୍କ ତୁଲେଲେଖାହୋନ୍ତି
ଆବର ଅଛନ୍ତି ଯେତେ ସ୍ତିରୀ ବ୍ରହ୍ମାଣ୍ଡରେ
ପତିବ୍ରତା ସ୍ତିରୀ ତଳ ଅଟନ୍ତି ବହାରେ ।
ପତିବ୍ରତା ସ୍ତିରୀଙ୍କର ସଙ୍ଗେ ଯେ ଗୋଡାଏ
ସେ ମଧ୍ୟ ପତିବ୍ରତାଙ୍କ ସଙ୍ଗେ ମିଶିଯାଏ ।
ଯେହୁ ପତିବ୍ରତା ସେହୁ ଜାଣ ଲକ୍ଷ୍ମୀଅଂଶୀ
ସ୍ୱାମୀ ଅଭକତା ନାରୀ ଅଟନ୍ତି ରାକ୍ଷସୀ ।
ଶୁଣିଣ ଉଲ୍ଲାସ ହେଲା ଭଗବତୀ କାୟା
ବୋଇଲେ କହିଲେ କେଡ଼େକଥାଅନୁସୂୟା
ଏ ସଂସାରେ ପତିବ୍ରତା ନାରୀ କେତେ ଲୋକ
ଗଙ୍ଗାଜଳ ସମ ଅଟେ ଜାଣ ତାର ବାକ୍ୟ
ସେହି ଗଙ୍ଗା ଚାହିଁଛନ୍ତି ଭକତ ଜନଙ୍କୁ
ଭକ୍ତର ପାଦ ପଡ଼ିଲାକ୍ଷଣି ତରିବାକୁ ।
ବୁଝିଲେ ଗଙ୍ଗା ପରାୟେ ପତିବ୍ରତା ନାରୀ
ଶ୍ରୀଅନୁସୂୟା ଦର୍ଶନେ ଗଲି ମୁଁ ନିସ୍ତରି ।
ଏତେ ପାଞ୍ଚ ଭଗବତୀ ପୁତ୍ରବଧୂ ଘେନି
ଅନୁସୂୟାଙ୍କ ଦର୍ଶନ କଲେ ପାଦେ ନମି ।
ସ୍ୱାମୀ ପୁତ୍ରବଧୂ ଘେନି ଭୁଞ୍ଜିଣ ବସିଲେ
ଚୌଷଠି ସହସ୍ର କନ୍ୟା ସର୍ବେ ଗ୍ରାସକଲେ ।
କର୍ଣ୍ଣାଟେଶ୍ୱର ନୃପତି ସୁଜାଣ ଯେ ମନ୍ତ୍ରୀ
ଗରୁଡ଼ ଆଦି ଭୁଞ୍ଜିଣ ହୋଇଲେ ତୃପତି ।
ସୈନ୍ୟମାନଙ୍କ ସହିତେ ଭୁଞ୍ଜିତୋଷ ହେଲେ
ତେବେ ଅନୁସୂୟାଙ୍କର ଅନ୍ନ ନ ସରିଲେ ।
ପତିବ୍ରତାର ମହିମା ଜାଣ ଏଡ଼େ ଅଟେ
ଯେତେ ପରଷିଲେ ହାଣ୍ଡି ଅଣ୍ଟିବ ନିରାଟେ
ଲକ୍ଷ୍ମୀ ନୃସିଂହ ଅଛନ୍ତି ଯହିଁ ବିଜେ କରି
ତହିଁରେ କେଉଁ ପଦାର୍ଥ ଅପୂର୍ବ ବିଚାରି ।
ଅନୁସୂୟା ଅଟନ୍ତି ସେ ମହା ପତିବ୍ରତା
ତାହାଙ୍କ ମନ କାମନା କିମ୍ପା ଊଣା ହୋନ୍ତା
ଦେଖି ଭଗବତୀ ରାଣୀ ଚମତ୍କାର ହେଲେ
ଅନୁସୂୟା ମାତାଙ୍କୁ ସେ ବହୁ ସ୍ତୁତି କଲେ ।
ଅତ୍ରି ମୁନିପାଦେ ପୁଣି ନମିଲେକ ଯାଇ
ରାଜ୍ୟକୁ ସଜ ହୋଇଲେ ସୁକଲ୍ୟାଣ ପାଇ ।
ମହାଲକ୍ଷ୍ମୀ କୋଳେ ବସାଇଣ ଭଗବାନ
ରାଜ୍ୟକୁ ବିଜେ କରିଣ ଚଳିଲେ ବହନ ।
ସେ ରୂପେ ଶେଷଦେବଙ୍କୁ ଇଳାକନ୍ୟା ଆଣି
ରଥରେ ବସାଇ ବିଜେକଲେ ସପ୍ତଫଣୀ ।
ବସିଲେ କୃଷ୍ଣବଲ୍ଲଭ ରାଜା ସୁଖାସନେ
ବସିଲେ ଚୌଷଠିସସ୍ର କନ୍ୟାଯେଝାମାନେ
ଭବବତୀ ମହାଦେଈ ବସି ହାନ୍ଦୋଳାରେ
ବୀରକାହାଳୀ ମହୁରୀ ବାଜେ ନିରନ୍ତରେ ।
ହଂସିନୀ ଯେ ମୁହୁସୁଲୀ ହାନ୍ଦୋଳାରେ ବସି
ଶ୍ରୀମହାଲକ୍ଷ୍ମୀଙ୍କ ପଛେ ଚଳେ ଶୁଭ୍ରକେଶୀ ।
କର୍ଣ୍ଣାଟେଶ୍ୱର ନୃପତି ସୁଜାଣ ଯେ ମନ୍ତ୍ରୀ
ସୈନ୍ୟସହଗଲେ ହୋଇ ଆନନ୍ଦିତ ମତି ।
ବଜାଇ ସେ ନାନାବାଦ୍ୟ ହୋଇ ଘନ ଘନ
ମିଳିଲେ ବଦ୍ରିକାଦେଶେ ଯାଇ ଥାଟସୈନ୍ୟ

ଖବର ପାଇ ବଦ୍ରିକା ପୁରବାସୀ ଜନ
ସ୍ଥାପିଲେ ଘର ଦ୍ୱାରେ ସ୍ୱର୍ଣ୍ଣ କୁମ୍ଭମାନ ।
ସୁଜାଣ ମନ୍ତ୍ରୀର ପୁତ୍ର ବିଚିତ୍ର ଯେ ରଥି
ବଦ୍ରିକା ରକ୍ଷାପାଳ ସେ ଅଟେ ବିଷ୍ଣୁଭକ୍ତି
ନୃସିଂହ ଆସିବାକୁ ସେ ଥିଲା ବାଟ ଚାହିଁ
ବାନ୍ଧିଲାକ ସ୍ୱର୍ଣ୍ଣଦ୍ୱାରେ ସ୍ୱର୍ଣ୍ଣ ତ୍ରୋଣା ନେଇ ।
ଉଡ଼ାଇ ଶ୍ୱେତ ଚିରାଳମାନ ପଂକ୍ତି ପନ୍ତି
ଦାଣ୍ଡଯାକରେ କଦଳୀଗଛ ଦେଲା ପୋତି ।
ଦଧିମାଛ ପୂର୍ଣ୍ଣକୁମ୍ଭ ଶ୍ରୀଫଳ ସୁପତ୍ର
ସ୍ଥାପିଲାକ ଦାଣ୍ଡଯାକ କରି ଏକଛତ୍ର ।
ନାନାବର୍ଣ୍ଣେ ବସ୍ତ୍ରେ ମଣ୍ଡିଦେଲା ନଗ୍ରଯାକେ
ତହିଁପରେ ପୁଷ୍ପମାଳା ଖଞ୍ଜି କଉତୁକେ ।
ହୀରାର କଳସମାନ ଲମ୍ବେ ପନ୍ତି ପନ୍ତି
କି ଜାଣି ସେ ଦିଶେ ଶରଚନ୍ଦ୍ର ପ୍ରାୟେ ଜ୍ୟୋତି
ବୈକୁଣ୍ଠପୁର ପ୍ରାୟ ସେ ଦିଶେ ପୁରଯାକେ
ସେ ନଗ୍ରପ୍ରଭା କେ କହିପାରେ ତିନିଲୋକେ
ଖାଲ ଖାତ ପୂରାଇଣ ସମ ଅଛି କରି
କର୍ପୂର କସ୍ତୁରୀ ଗୁଣ୍ଡ ପକାଇ ପହଁରି ।
ଏମନ୍ତ ଶଙ୍ଖ ବାଜିଲା ଆସି ସିଂହଦ୍ୱାରେ
ଶୁଣି ଧାଇଁଲେ ନଗରଲୋକ ଦେଖିବାରେ ।
କେ ବୋଲେ ଆସିଲେଶ୍ରୀନୃସିଂହ ବିଭାହୋଇ
ଲକ୍ଷ୍ମୀଙ୍କି ଚାଲ ଦେଖିବା ସର୍ବେ ଆଗ ହୋଇ ।
କେବୋଲେ ଗୋ ବରଯାତ୍ରୀ ନଗ୍ରେପଶିଲେଣି
ଲୋକଗହଳେ ଲକ୍ଷ୍ମୀଙ୍କି ପାରିବ କେ ଚିହ୍ନି ।
ଏରୂପେ ଧାମନ୍ତି ଦେଖିବାକୁ ଲୋକବର୍ଗ
ଗହଳ ଚହଳେ ଉଚ୍ଛୁଳଇ ତିନିସ୍ୱର୍ଗ ।
ସୁଜାଣ ମନ୍ତ୍ରୀ କର୍ଣ୍ଣାଟେଶ୍ୱର ମହାରାଜା
ପଶିଲେ ନଗ୍ରେ ବଜାଇ ବୀରତୂର ବାଜା ।
ଆଗପଛେ ସୈନ୍ୟଯାକ ଛନ୍ତି ପଟୁଆରି
ରଥ ଗଜ ଗହଳେ ନ ଦିଶେ ବସୁନ୍ଧରୀ ।
ଘଣ୍ଟି ଘଣ୍ଟା ଘାଗୁଡ଼ି ଯେ ବାଜେ ରୁଣଝୁଣ
ଢୋଲ ଦମା ଟମକ ଯେ ବାଜେ ଗରୁଟାଣ
ଶତ ଲକ୍ଷ ଚିରାଳ ଯେ ଶୂନ୍ୟ ଜାଣ ଉଡ଼େ
ପାଟଛତ୍ରରେ ସୂର୍ଯ୍ୟର କିରଣ ଉହାଡ଼େ ।
ଚୌଷଠି ସହସ୍ର କନ୍ୟା ହାନ୍ଦୋଳାରେବସି
ଦିଅନ୍ତି ସେ ହୁଳହୁଳି ନଗ୍ରେ ଯାନ୍ତି ପଶି ।
କୃଷ୍ଣବଲ୍ଲଭ ରାଜା ଶ୍ରୀ ଭଗବତୀ ରାଣୀ
ବରକନ୍ୟାଙ୍କୁ ଚଳାଇଛନ୍ତି ଆଗେ ପୁଣି ।
ଗରୁଡ଼ ବାହନେ ବସି ଲକ୍ଷ୍ମୀ ନରସିଂହ
ଶେଷଦେବଙ୍କୁ ଚଳାଇଛନ୍ତି ପ୍ରଭୁ ଆଗ ।
ଉପରେ କୋଟିଏ ପୁଚ୍ଛ ପଡ଼େ ନିରନ୍ତରେ
ମହାସମ୍ଭ୍ରମେ ଚାଲନ୍ତି ପ୍ରଭୁ ଧୀରେ ଧୀରେ ।
ନଗ୍ରର ନରନାରୀଏ ଦେଖି ତୋଷ ହୋନ୍ତି
ବର କନ୍ୟାଙ୍କର ଶିରେ କୁସୁମ ବିଞ୍ଚନ୍ତି ।
ବୋଲନ୍ତି ଏ ଭଲା ଧନ୍ୟ ଲକ୍ଷ୍ମୀ ନରସିଂହ
ଏରୂପେ ବରକନ୍ୟା ନ ମିଳେ ଚାରିଯୁଗ ।
ଶେଷଦେବଙ୍କ କନ୍ୟା ଏ ଇଳା ଠାକୁରାଣୀ
ଭଲା ଏହାକୁ ଖଞ୍ଜିଣ ଥିଲା କୁଶପାଣି ।
ଅଛନ୍ତି ଶେଷଦେବଙ୍କ କୋଳେ ଇଳାଦେବୀ
ହର ପାର୍ବତୀଙ୍କ ପ୍ରାୟ ଦିଶେ ଭଲା ଛବି ।
ନୃସିଂହଙ୍କ କୋଳେ ବସିଛନ୍ତି କମଳିନୀ
ପ୍ରତ୍ୟକ୍ଷେ ଅଟନ୍ତି ବିଷ୍ଣୁଙ୍କର ପାଟରାଣୀ ।
ବରୁଣ ଘରୁ ଅଣିଲେ ଯାଇ ଲାଖବିନ୍ଧି
ଭଲା ଏ କନ୍ୟା ଦୁହିଁଙ୍କି ହେଲେ ବାରାନିଧି
ଏତେ ବୋଲିଣ ନାରୀଏ ହୁଳହୁଳି ଦେଲେ
ବର କନ୍ୟା ପାଦେ ନେଇ ଅର୍ଘ୍ୟ ବନ୍ଦାଇଲେ
ବ୍ରହ୍ମାଙ୍କ କୋଳେ ସାବିତ୍ରୀ ଶୋଭନ୍ତି ଯେସନ
ସେହିରୂପେ ବରକନ୍ୟା ଦିଶନ୍ତି ଶୋଭନ ।
ଚାଲନ୍ତି ଦାଣ୍ଡରେ ସେହୁ ବରକନ୍ୟା ଘେନି
ନାନାଦି ବର୍ଣ୍ଣରେ ବାଦ୍ୟ ବାଜେ ଶଙ୍ଖଧ୍ୱନି
ପୁରଯାକରେ ବୁଲିଣ ମିଳିଲେ ନବରେ
କୃଷ୍ଣବଲ୍ଲଭ ମିଳିଲେ ଯାଇ ଜଗତୀରେ ।
ବର କନ୍ୟାଙ୍କୁ ଘେନିଣ ଭଗବତୀ ରାଣୀ
ମନ୍ଦିରେ ଯାଇ ପ୍ରବେଶ ହେଲେ ସୁଲକ୍ଷଣୀ ।
ନୀଳଗିରି ଜଗନ୍ନାଥ ପହଣ୍ଡ ପରାୟେ
ଉଷତ ହୋଇ ଚାଲନ୍ତି ପ୍ରଭୁ ଦେବରାୟେ ।
ଖଗ ଆସନୁ ଉତୁରୀ ଲକ୍ଷ୍ମୀ ନାରାୟଣ
ରତ୍ନ ପୀଢ଼ାପରେ ଯାଇ କଲେ ବେହରଣ ।
ଦେବଯାନ ରଥପରୁ ଶେଷଦେବ ଉଠି
ଇଳାଙ୍କୁ ଘେନି କୋଳରେ ମନ୍ଦିରେ ବିଜେଟି
ଶ୍ରୀସୁଦର୍ଶନ ଚକ୍ର ସେ ନଗ୍ର ଜଗିଥିଲା
ନୃସିଂହ ଦକ୍ଷିଣକରେ ଯାଇ ସମ୍ପାଇଲା ।
ଭଗବତୀ ମାତାପାଦେ ଅଷ୍ଟସଖି ନମି
ଯେ ଯାହାସେବାରେସେବାକଲେଅନ୍ତର୍ଯ୍ୟାମୀ
କର୍ଣ୍ଣାଟେଶ୍ୱର ନୃପତି ଗଲେ ନବରକୁ
ସୁଜାଣ ମନ୍ତ୍ରୀ ଚଳିଲେ ଆପଣା ପୁରକୁ ।
ଆଜ୍ଞା ପାଇଣ ଗରୁଡ଼ ଗୃହେ ବିଶ୍ରାମିଲେ
ଯାବତ ସୈନ୍ୟଯାକ ଯେ ଯାହା ପୁରେଗଲେ
ସୁଜାଣ ମନ୍ତ୍ରୀର ପୁତ୍ର ଅଟେ ମହାରଥୀ
କୃଷ୍ଣବଲ୍ଲଭଙ୍କୁ ଜଣାଏ ସେ ନଗ୍ରକଥା ।

ବୋଇଲେରାଣୀ ଯେମୋତେଆଜ୍ଞାଦେଇ ଗଲେ
ନଗ୍ର ମୋର ରକ୍ଷାକରି ଥିବୁଟି ବୋଇଲେ ।
ଏବେ ମୁହିଁ ଛାମୁରେ ତା କଲି ସମର୍ପଣ ।
ଶୁଣି ତାକୁ ଅନୁଗ୍ରହ କଲେ ନୃପରାଣ ।
ବୋଇଲେ ମନ୍ତ୍ରୀ ପୁତ୍ର ତୁ ମୋର ଅଟୁମନ୍ତ୍ରୀ
ବାପଠାରୁ ଶତଗୁଣେ ଅଟୁ ମହାକ୍ଷତ୍ରୀ ।
ତୁହି ଥିବାରୁ ନଗ୍ରକୁ ନାହିଁ ଆମ୍ଭ ଡର
ବାପ ପ୍ରାୟେ ମନ୍ତ୍ରୀ ତୁହିହେବୁ ରାଜ୍ୟେମୋର
ବାପ ଅଧିକାରେତୋତେଦେବୁଁ ରାଜ୍ୟେସବୁ
ଏତେ ବୋଲି ମୁଣ୍ଡେଶାଢ଼ୀ ଦେଲେମହାପ୍ରଭୁ
ବୋଇଲେ ସୁଖେ ରାଜ୍ୟକୁ ଥାଆମୋରପାଳି
ପରଭୂମି ରାଜା କେହୁ ନ ପାରନ୍ତୁ କଳି ।
ଶୁଣିକରି ମନ୍ତ୍ରୀପୁତ୍ର ରାଜା ଆଜ୍ଞା ପାଇ
ଘରକୁ ଗଲାସେ ମହା ଆନନ୍ଦିତ ହୋଇ ।
ଏଥୁଅନନ୍ତରେ କୃଷ୍ଣବଲ୍ଲଭ ଯେ ରାଜା
ମଣୋହିପେ ବିଜେକରେ କରି ବିଷ୍ଣୁ ପୂଜା
ଶ୍ରୀନୃସିଂହ ଶେଷଦେବ ଇଳା ମହାଲକ୍ଷ୍ମୀ
ଅମୃତ ଯୋଗାଡ଼ ଲାଗି ହେଲେ ଅନ୍ତର୍ଯ୍ୟାମୀ
ଚୌଷଠୀ ସସ୍ର ନାୟିକା ଭଗବତୀ ମାଏ
ହଂସିନୀ ଆଦି ଯେ ପୂଜି ସାରିଯେଝାଠାଏ
ଏଥୁଅନନ୍ତରେ ରାତ୍ରି ହୋଇଲା ପ୍ରବେଶ
ଲକ୍ଷ୍ମୀଙ୍କି କୋଳରେ ଘେନି ବିଜେ ଜଗଦୀଶ
ବିହାର କରନ୍ତି ମନତୋଷେ ଭାବଗ୍ରାହୀ
ନୃସିଂହ ଲକ୍ଷ୍ମୀଙ୍କ ମନ ପାରନ୍ତି ଯେମୋହି
ଶ୍ରୀନୃସିଂହ ମହାଲକ୍ଷ୍ମୀ ଠାକୁରାଣୀ ତୁଲେ
ଅନେକ କଉତୁକେ ସେ ରାସକ୍ରୀଡ଼ା କଲେ ।
ଇଳାଙ୍କୁ କୋଳରେଘେନିବିଜେଶେଷଦେବ
ନୃସିଂହ ମହାପୁରାଣ ଅଟେ ମହାର୍ଣ୍ଣବ ।
ଲକ୍ଷ୍ମୀ କୋଳେଘେନିକଲେ ଶ୍ରୀନୃସିଂହ ଭୋଗ
ଧନ୍ୟ ଏ ମହିମା ଅବତାର ସତ୍ୟଯୁଗ ।
ତୃତୀୟ ସାଗର ଲକ୍ଷ୍ମୀନୃସିଂହଙ୍କ ଲୀଳା
ତାହା ମୁହିଁ କରେ ପଦ ବାନ୍ଧି ବନ୍ଧୁଭେଳା
ନୃସିଂହ ଅବତାର ଏ ଦିବ୍ୟରସ ବାଣୀ
ଲକ୍ଷ୍ମୀ କୋଳେ ଘେନି ବିହରନ୍ତି ଚକ୍ରପାଣି ।
ଏଥୁଅନନ୍ତରେ ରାତ୍ରି ହେଲା ଆସି ଶେଷ
ଦେବଆଳରେ ଶୁଭିଲା ବିଜେ ଶଙ୍ଖଘୋଷ ।
ବୃକ୍ଷର ଉପରେ କାକ ପିକ ଦେଲେ ରାଗ
ନିଦ୍ରା ତେଜି ଉଠି ଶ୍ରୀନୃସିଂହଶେଷଦେବ
ରତ୍ନପୀଢ଼ାରେ ବସିଲେ ଯାଇ ବେନିଭାଇ
ସୁବାସଜଳେ ଶ୍ରୀମୁଖ ପଖାଳିଲେ ନେଇ ।
ହଶନକାଠି ଯେ ଲାଗି ହେଲେ ପୁଣି ବେଗି
ସ୍ନାନବିଧି ସାରି ସନ୍ଧ୍ୟାକଲେ କାଳ ଜଗି ।
ପ୍ରାତଃକାଳରେ ଯେ ସନ୍ଧ୍ୟା ଅଟେ ସର୍ବଶୁଭ
ଅକାଳରେ ସନ୍ଧ୍ୟାକଲେ ଅଟେ ବନ୍ଧ୍ୟାଭାବ
ବନ୍ଧ୍ୟାସ୍ତିରୀ ପ୍ରାୟ ଫଳ କିଛି ଯେ ନଫଳେ
ଏରୂପେ ହୁଅଇ ସନ୍ଧ୍ୟା କଲେଟି ଅକାଳେ ।
ସନ୍ଧ୍ୟା ନକଲା ବିପ୍ରଟିମହାକାଳ ଫଳ
ନେତ୍ରକୁ ସେ ଫଳ ଯେତେ ଦିଶଇ ସୁଢ଼ଳ ।
ସେହିରୂପେ ସେହିଦ୍ୱିଜ ଦିଶେ ଲୋକବର୍ଗେ
ସନ୍ଧ୍ୟାକଲା ବ୍ରାହ୍ମଣ ଯେ ଯାଏ ସ୍ୱର୍ଗ ମାର୍ଗେ ।
ସନ୍ଧ୍ୟାକଲା ବିପ୍ରକୁ ଯେ ଶୁଚିମନ୍ତ ଲେଖି
ଅକର୍ମେ ବଢ଼ିବାଲୋକ ବଂଶ ନୋହେ ସୁଖୀ
ବୁଝିଲେ ବିଷ୍ଣୁ ପରା ପୁରୁଷ ସନ୍ଧ୍ୟାକାଳେ
ବିପ୍ର ନ କଲେ ଅମେଧ ଅଟଇ ସଂସାରେ
ନାନାବିଧି ସାରି ପ୍ରଭୁ ଦେବାର୍ଚ୍ଚନ କଲେ
ତିଳକ ଲାଗି ହୋଇଣ ମଣୋହିକି ଗଲେ ।
ଆଚମନ ସାରି ସିଂହାସନେ କଲେ ବିଜେ
ସେ ପାଦେ ଶରଣ ବିପ୍ର ପୀତାମ୍ବର ଦ୍ୱିଜେ
ନମଇଁ ନୃସିଂହ ଲକ୍ଷ୍ମୀ ଅଭୟ ପଞ୍ଜର
ବିପ୍ର ପୀତାମ୍ବର ଶ୍ରୀନୃସିଂହ ପରିଚାର ।
ନିରେଖ ଜନକ ବନ୍ଧୁ ଶ୍ରୀଚକା ବଇଠି
ଆତଙ୍କେ ଡାକିଲେ ଶୁଣ ସିଂହାସନୁ ଉଠି ।
ନିମଷ ମାତ୍ରେ ଉଦ୍ଧରି ତାଙ୍କୁ ପ୍ରଭୁ ରଖ
ସେ ରୂପେ ଏଥୁ ଉଦ୍ଧର ମୋତେ ପଦ୍ମମୁଖ
ଏବେ ଆସି ପ୍ରଥମ ଦ୍ୱିତୀୟ ତୃତୀୟକୁ
ସମ୍ପୂର୍ଣ୍ଣ କରି ଲକ୍ଷ୍ମୀ ରଖିଲେ ସଂସାରକୁ ।
ଚତୁର୍ଥଖଣ୍ଡ କରିବି ଏବେ ମୋତେ ଆଜ୍ଞା
ତେବେ ମୁଁ ପାରିବି ଲେଖି ନୃସିଂହଙ୍କ ଆଜ୍ଞା
ସପ୍ତମ ସାଗର ଯାଏ ଅଛି ମନ କରି
ସେ ଅର୍ଥ ଜଣାଇ ମୋତେ ଦେବ ନରହରି
ନମଇଁ ନୃସିଂହ ଲକ୍ଷ୍ମୀକାନ୍ତ ଭାବଗ୍ରାହୀ
ଶରଣ ରଖିଣ ମୋତେ କରିବାକ ତ୍ରାହି ।
ଭୃତ୍ୟଙ୍କର ଭୃତ୍ୟ ମୁହିଁ ଅଟେ ପ୍ରଭୁଙ୍କର
ବିପ୍ର ପୀତାମ୍ବରକୁ ଯେ ଉଦ୍ଧର ଶ୍ରୀଧର ।
ଏଗ୍ରନ୍ଥ ଶୁଣିଣ ଯେହୁ ହାସ୍ୟ ଯେ କରିବ
ସପତ ପୁରୁଷ ତାର ନର୍କରେ ପଡ଼ିବ ।
ମନ ଭକ୍ତିରେ ଏହାକୁ ଯେ ଜନ ଶୁଣିବେ
ଚତୁର୍ବର୍ଗଫଳକ ଯେ ଅଚିରେ ଲଭିବେ ।

**ନୃସିଂହ ପୁରାଣ ତୃତୀୟ ସାଗର ସମାପ୍ତ**